

ଦ୍ୱିତୀୟ ଖଣ୍ଡ

# ଫକୀରମୋହନ ଗ୍ରନ୍ଥାବଳୀ

ବ୍ୟାସକବି ଫକୀରମୋହନ

କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର
ବାଲୁବଜାର - କଟକ ୨

ପ୍ରକାଶକ

**ଶ୍ରୀ ଅନନ୍ତ ମିଶ୍ର**

**କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର**

**ବାଲୁବଜାର, କଟକ-୨**

ଦ୍ୱିତୀୟ ସଂସ୍କରଣ

୧୯୬୩

ମୁଦ୍ରାକର

**ଶ୍ରୀ ରଘୁନାଥ ପ୍ରସାଦ ମିଶ୍ର**

ପ୍ରସାଦ ପ୍ରେସ୍, କଟକ-୨

**ବର୍ଦ୍ଧିତ ମୂଲ୍ୟ :—**

ବନ୍ଧାଇ—ଚବିଶ ଟଙ୍କା

ଅବନ୍ଧା—ଚଉତିରିଶ ଟଙ୍କା

( Price Revised 15 th. January 75 )



**ବ୍ୟାସକବି ଫକୀରମୋହନ ସେନାପତି**

ଜନ୍ମ—୧୮୪୩ ଜାନୁଆରି ମୃତ୍ୟୁ—ଜୁନ ୧୪—୧୯୧୮

# ଗ୍ରନ୍ଥ ସୂଚୀ





# ସୂଚୀ





# ଭୂମିକା

( **ଛ ମାଣ ଆଠଗୁଣ,** ୧ମ ସଂସ୍କରଣ )

ଓଡ଼ିଆରେ ଚିତ୍ତବିନୋଦନ ସୁପାଠ୍ୟ ଗଦ୍ୟ ପୁସ୍ତକ ନାହିଁ, ଏ ଅପବାଦ ଅନେକଙ୍କ ମୁଖରୁ ଶୁଣାଯାଏ । ଅନେକ ସ୍ଥଳରେ ଆମ୍ଭେମାନେ ଉଲ୍ଲିଖିତ ମର୍ମର ପ୍ରଶ୍ନ ଶୁଣି ଲଜ୍ଜାରେ, କ୍ଷୋଭରେ ନତମସ୍ତକ ହୋଇ ରହିଅଛୁଁ । ଆମ୍ଭେମାନେ ଜାଣୁଁ, ବର୍ତ୍ତମାନ ନାଟକ, ଉପନ୍ୟାସ ଲେଖିବାର ପ୍ରବୃତ୍ତି ଅନେକଙ୍କ ମନରେ ଜାଗ୍ରତ ହୋଇଅଛି ଏବଂ ଏ ଶ୍ରେଣୀର କେତେଗୁଡ଼ିଏ ମୁଦ୍ରିତ ଓ ଅମୁଦ୍ରିତ ପୁସ୍ତକ ଆମ୍ଭମାନଙ୍କ ହସ୍ତଗତ ହୋଇଅଛି । ସେ ସବୁଥିରେ ପରିପକ୍ୱତା ଓ ସୂକ୍ଷ୍ମଦର୍ଶନର ପରିଚୟ ଅତି ଅଳ୍ପ ପାଇଅଛୁଁ । ଉପଯୁକ୍ତ ସାଧନା ଓ ଭୂୟୋଦର୍ଶନ ନ ଥିଲେ ଯାହା ହୁଏ, ଏ କ୍ଷେତ୍ରରେ ତାହାହିଁ ଘଟିଅଛି । 'ଛ ମାଣ ଆଠଗୁଣ୍ଠ'ର ଲେଖକ ମହାଶୟ ଉତ୍କଳଭୂମିର ଜଣେ ଲବ୍‌ଧପ୍ରତିଷ୍ଠ ସୁପ୍ରବୀଣ ସାହିତ୍ୟ-ସେବକ । ତାଙ୍କର ଶକ୍ତି ଅଛି, ସାଧନା ମଧ୍ୟ ଅଛି । ସହଜ, ସୁନ୍ଦର ଶବ୍ଦଗୁଡ଼ିକ ସରଳ ମଧୁର ଭାଷାରେ ପ୍ରକାଶ କରିବା ବିଷୟରେ ସେ ସିଦ୍ଧହସ୍ତ । ତତ୍ ପ୍ରଣୀତ 'ଛ ମାଣ ଆଠଗୁଣ୍ଠ' ତାହାର ଉଜ୍ଜ୍ୱଳ ପ୍ରମାଣ । ଏହା ଉତ୍କଳସାହିତ୍ୟ କ୍ଷେତ୍ରରେ ଚିତ୍ତବିନୋଦନ, ସୁପାଠ୍ୟ ଗଦ୍ୟ ପୁସ୍ତକର ଅଭାବ କିୟତ୍ ପରିମାଣରେ ପୂର୍ଣ୍ଣ କରିବ, ଏହି ଆଶାରେ ଆମ୍ଭେମାନେ ଉକ୍ତ ପୁସ୍ତକ ପ୍ରକାଶ କରିବାକୁ ଅଭିଳାଷୀ ହେଲୁଁ । ପରନ୍ତୁ ଏହା 'ଉତ୍କଳ ସାହିତ୍ୟ' ରେ ଖଣ୍ଡାକାରରେ ପ୍ରକାଶିତ ହେଉଥିବା ସମୟରେ ପ୍ରାୟ ସକଳ ଶ୍ରେଣୀର ପାଠକଗଣ ଏଥିପ୍ରତି ଅତ୍ୟନ୍ତ ଅନୁରାଗ ପ୍ରଦର୍ଶନ କରିଥିବାର ଆମ୍ଭେମାନେ ଜାଣିଅଛୁଁ । ଏହା ମଧ୍ୟ ଆମ୍ଭମାନଙ୍କୁ ଏ ପୁସ୍ତକ ପ୍ରକାଶ କରିବା ବିଷୟରେ ସମୁତ୍ସାହିତ କରିଅଛି । ଇତି ।

୨୫ । ୬ । ୧୯୦୨ } ପ୍ରକାଶକ

# ଛ ମାଣ ଆଠ ଗୁଣ୍ଠ

-୧-

## ରାମଚନ୍ଦ୍ର ମଙ୍ଗରାଜ

ରାମଚନ୍ଦ୍ର ମଙ୍ଗରାଜ ଜଣେ ମଫସଲର ଜମିଦାର, ମଧ୍ୟ ମହାଜନ । ନଗଦ ଟଙ୍କା କାରବାରଠାରୁ ଧାନର ମହାଜନୀ ବେଶି । ଶୁଣାଯାଏ ଆଟଡ଼ ପାର୍ଦ୍ଧେ ଗ୍ରର କୋଶ ମଧ୍ୟରେ ଆଉ କାହାରି କାରବାର ଚଳେନାହିଁ । ଲୋକଟି ବଡ଼ ଧାର୍ମିକ । ବର୍ଷ ମଧ୍ୟରେ ୨୪ଟା ଏକାଦଶୀ, ୪୦ଟା ଥିଲେ ମଧ୍ୟ ଗୋଟାଏ ଯେ ଛାଡ଼ି ପଡ଼ନ୍ତା, ଏକଥା ଆମ୍ଭେମାନେ କହିବାକୁ ଅକ୍ଷମ । ଏକାଦଶୀ ଦିନ ତୁଳସୀପତ୍ର ଜଳ ମାତ୍ର ଅବଲମ୍ବନ । ସେଦିନ ଉପର-ଓଳି ମଙ୍ଗରାଜଙ୍କର ଜଗା ଭଣ୍ଡାରୀ କଥା କହୁଁ କହୁଁ କହି ପକାଇଥିଲା, ପ୍ରତି ଏକାଦଶୀ ଦିନ ସଞ୍ଜବେଳେ ଦ୍ୱାଦଶୀ ପାରଣା ସକାଶେ ସାଆନ୍ତଙ୍କ ଶୋଇବାଘରେ ସେରେ ଦୁଧ, ଦିଶୁ ଖଇ, ନବାତ, ପାଚିଲା କଦଳୀ ରଖା ଯାଇଥାଏ । ସେ ( ଜଗା ) ଦ୍ୱାଦଶୀ ଦିନ ବଡ଼ ସକାଳେ ତୁଚ୍ଛା ବାସନ ମାଜେ । ଏ କଥା ଶୁଣି ଜଣକେତେ ମୁହଁ ଚୂହାଁଚୂହିଁ ହୋଇ ମୁରକି ମୁରକି ହସିଥିଲେ । ଜଣେ କହି ପକାଇଲା, ଡୁବ ପାଣି ପିଇଲେ ମହାଦେବଙ୍କ ବାପ ବି ଜାଣି ପାରିବ ନାହିଁ । ଏ କଥାର ଅର୍ଥ ସଫା ବୁଝାଗଲା ନାହିଁ; ମାତ୍ର ଆମ୍ଭେମାନେ ଅନୁମାନ କରିନେଲୁଁ, ଏହା ନିନ୍ଦୁକର କଥା । ସେ କଥା ଛାଡ଼, ବରଞ୍ଚ ଆମ୍ଭେମାନେ ସାଆନ୍ତଙ୍କ ସପକ୍ଷରେ ଓକିଲାତି କରିପାରୁଁ । ରାତ୍ର ଶୂନ୍ୟ ହେବା କାର୍ଯ୍ୟଟା ଯେ ମଙ୍ଗରାଜଙ୍କ ଦ୍ୱାରା ଅନୁଷ୍ଠିତ ହୋଇଅଛି ଏଥିର ପ୍ରତ୍ୟକ୍ଷ ସାକ୍ଷୀ କାହିଁ ? ଶୁଣିବା କଥା ବା ଅନୁମାନ କଥା ପ୍ରମାଣରୂପେ ଗ୍ରହଣ କରିବାକୁ ଆମ୍ଭେମାନେ ନିହାତି ନାରାଜ । ଅଦାଲତର ହାକିମମାନଙ୍କର ତ ଏହି ରାୟ । ଆଉ ଗୋଟାଏ କଥା ଦେଖ, ବିଜ୍ଞାନଶାସ୍ତ୍ର କହେ, ଜଳୀୟ ପଦାର୍ଥ, ସବୁ ବାଷ୍ପାକାର ହୋଇ ଉଡ଼ିଯାଏ । ଦୁଧ ତ ଜଳୀୟ ପଦାର୍ଥ, ଜମିଦାର ଘର ଦୁଧ ବୋଲି ବିଜ୍ଞାନ ବିଧି ଉଠିବ ପରା ! ପୁଣି ସେ ଘରେ ମୂଷା ଚୂଚୂନ୍ଦୁରା ଚୂଟିଆ ଥିଲେ, ଗୁଣ୍ଡରପୋକ ମଶା ମାଛି ଅବା କେଉଁ ଘରେ ନ ଥାନ୍ତି ? ପେଟପାଟଣା ପାଇଁ ଜଗତର ସମସ୍ତ ପ୍ରାଣୀ ଧାଉଁଛନ୍ତି । ବିଶେଷରେ ସେମାନେ ମଙ୍ଗରାଜଙ୍କ ପରି ହରିଭକ୍ତ ବିଳାସଗ୍ରନ୍ଥ ମାହାତ୍ମ୍ୟ ଶୁଣି ନାହାନ୍ତି । ଏଥିକୁ ମଙ୍ଗରାଜଙ୍କ ଧର୍ମନିଷ୍ଠା ପ୍ରତି ସନ୍ଦେହ କରିବା ମହାପାପ ବୋଲି ବିଚାର କରୁଁ । ଆହୁରି ମଧ୍ୟ ପାର୍ଶ୍ୱବର୍ତ୍ତୀ ଘଟଣାମାନଙ୍କ ପ୍ରତି ନଜର ରଖିବା ନିମନ୍ତେ ପ୍ରମାଣ ଆଇନରେ ବିଚାରକମାନଙ୍କ ପ୍ରତି ବିଶେଷ ବିଧି ଅଛି । ମଙ୍ଗରାଜେ ଉଠୁନା ଛୁଅନ୍ତି ନାହିଁ, ମାଛ ଶୁକୁଆ କଥା ଛାଡ଼ ! ଦ୍ୱାଦଶୀ ଦିନ ବ୍ରାହ୍ମଣ ଭୋଜନ କରାଇ ତହିଁ ଉତ୍ତାରେ ପାରଣା କରନ୍ତି । ମଙ୍ଗରାଜେ ଭାରି ହିସିଆର ଲୋକ । ଏହି ବ୍ରାହ୍ମଣ ଭୋଜନରୂପ ମହତ୍‌କାର୍ଯ୍ୟରେ କେବେ ବିଘ୍ନ ଘଟିପାରେ, ଏଥି ସକାଶେ ଜଣେ କେଉଟକୁ ମାଣେ ଓ ଜଣେ ଗୁଡ଼ିଆକୁ ମାଣେ ଏପରି ଦୁଇମାଣ

ଜମି ଖଞ୍ଜି ଦେଇଛନ୍ତି । ଦ୍ୱାଦଶୀ ଦିନ ଭୋର କେଉଁଠି ଦୁଇ ନଉତି ଚୂଡ଼ା ଓ ଗୁଡ଼ଆ କୋଡ଼ିଏ ପଲ ଗୁଡ଼ ଦାଖଲ କରିଯାଏ । ଗୋବିନ୍ଦପୁର ଶାସନ ୨୭ ଘର ବ୍ରାହ୍ମଣ ସମସ୍ତେ ନିମନ୍ତ୍ରିତ ହୋଇ ଆସନ୍ତି । ବେଳ ଛଅ ଘଡ଼ି ମଧ୍ୟରେ ବ୍ରାହ୍ମଣଭୋଜନ ହୋଇଯାଏ । ମଙ୍ଗରାଜେ ସ୍ୱୟଂ ବ୍ରାହ୍ମଣମାନଙ୍କୁ ପରିବେଷଣ କରନ୍ତି । ଥରେ ପତ୍ରରେ ଚୂଡ଼ା ଗୁଡ଼ ଲଗାଇ ଦେଇ ମଙ୍ଗରାଜେ ଉଚ୍ଚ ପାଟି କରି ହାତ ଯୋଡ଼ି କହନ୍ତି, "ଗୋସାଇଁମାନେ କହନ୍ତୁ, ଆଉ କିଛି ଲୋଡ଼ା କି ନାହିଁ । ଢେର ଜଳପାନ, ଢେର ଗୁଡ଼ ଅଛି; ମାତ୍ର ମୁଁ ଜାଣେ, ଆପଣମାନଙ୍କ ଆଖି ବଡ଼, ପେଟ ସାନ, ଆପଣମାନଙ୍କ ପେଟକୁ ବଳି ପଡ଼ିଲାଣି ।" ଏଥି ଉତ୍ତାରେ କୌଣସି ପେଟବିକଳିଆ ବ୍ରାହ୍ମଣ ଜଳପାନ ମାଗି ବସିଲେ ସାନ୍ତେ ତିନିଆଙ୍ଗୁଳିଆ ପାଞ୍ଚ ସାତ ମୁଞ୍ଚା ଚୂଡ଼ା ଧରି ପତ୍ରକୁ ଫୋପାଡ଼ି ଦିଅନ୍ତି । ତହିଁ ଉତ୍ତାରେ ଗୋସାଇଁମାନେ 'ପୂର୍ଣ୍ଣ ହେଲ, ପୂର୍ଣ୍ଣ ହେଲ' କହି ଲମ୍ବା ଲମ୍ବା ହାକୁଟି ମାରି ଆଶୀର୍ବାଦ କରି ପତ୍ର ଛାଡ଼ନ୍ତି । ବ୍ରାହ୍ମଣଭୋଜନ ଉତ୍ତାରେ ଯେଉଁ ଏକ ନଉତି ଚୂଡ଼ା ଓ ଅଧାଅଧି ଗୁଡ଼ ବଳିପଡ଼େ, ତାହା ଭକ୍ତିପୂର୍ବକ ମଙ୍ଗରାଜେ ସେବା କରନ୍ତି । ପାଠକ ଆପଣ ବିଚାରିବେ, ନଉତିଏ ଚୂଡ଼ାରେ ସତେଇଶ ଜଣ ବ୍ରାହ୍ମଣଙ୍କର ପେଟ କପରି ପୂରିଲା ? ହରି ବୋଲ ଭାଇ, ହରି ବୋଲ ! ଏସବୁ କଥାର ଉତ୍ତର ଦେବାକୁ ଗଲେ ଆମ୍ଭମାନଙ୍କର ଆଉ ଲେଖା ଚଳିବ ନାହିଁ । ଯୀଶୁଖ୍ରୀଷ୍ଟ ଦୁଇଖଣ୍ଡ ରୁଟିରେ ବାରଶତ ଲୋକ ଖୁଆଇଲେ, ପୁଣି ଗୃର ପାଛିଆ ବଳି ପଡ଼ିଲା । କାମ୍ୟକ ବନରେ ଶ୍ରୀକୃଷ୍ଣ ଦୁର୍ବାସାଙ୍କ ବାର ହଜାର ଶିଷ୍ୟଙ୍କର ପେଟ କିଏ ଶାଗରେ ପୂରାଇ ଦେଇଥିଲେ । ଏହି ମହାପୁରୁଷଙ୍କ ହସ୍ତ ମହିମା ପ୍ରତି ଯଦି ଆପଣଙ୍କର ବିଶ୍ୱାସ ନ ଥାଏ, ତେବେ ଆମ୍ଭମାନଙ୍କ ମଙ୍ଗରାଜ ଚରିତ ପଢ଼ିବା ନିମନ୍ତେ ଅନୁରୋଧ କରିବାକୁ ସାହସ କରିପାରିବୁ ନାହିଁ । ଏପରି ଶୁଣାଅଛି, ତାଙ୍କର ମାଉସୀ ପୁଅ ଭାଇ ଶ୍ୟାମ ମଲ୍ଲ ସହରକୁ ଯାଇଥିଲେ । ପାପ ଛପା ରହେ ନାହିଁ । ସେ କୁସଙ୍ଗରେ ପଡ଼ି ପିଆଜମିଶା କୋବିଖାଇଥିବା ସାଆନ୍ତଙ୍କ ନିକଟରେ ଅଜଣା ରହିଲା ନାହିଁ । ଆଜଯାଏ ଲୁଚି ବତି ରହି ଥାଆନ୍ତା, ମଙ୍ଗରାଜେ ଖୁବ୍ କମ ଖରଚରେ ଅର୍ଥାତ୍ ଶ୍ୟାମଙ୍କ ବେଢ଼ାବାଟି ପୈତୃକ ଲାଖରାଜରୁ ୧୫ ମାଣ ଜମି ମାତ୍ର ନେଇ ଖଲାସ କରିଦେଲେ । ମଙ୍ଗରାଜେ ଦିନେ ଶ୍ୟାମକୁ ଡାକି ମୁରବିପଣିଆ କରି କହିଲେ, "ଦେଖ ଶ୍ୟାମ, ଏଣିକି ହୁସିଆର ରହ । ମୁଁ ଥିଲି ବୋଲି ମୋ ମୁଲଜାରେ ପାଞ୍ଚଜଣ ତୋତେ ଟେକି ନେଲେ ସିନା, ନୋହିଲେ ତୁ ଏକାବେଳକେ କରସ୍ଥାନ ହୋଇ ଯାଇଥାନ୍ତୁ, ତୋ ସାତ ପୁରୁଷ ଅନ୍ଧନରକରେ ପଡ଼ିଥାନ୍ତେ । ଆଉ ମୁଁ ବୋଲି ସିନା ତୋର ମାଣ ପାଞ୍ଚ ଟଙ୍କାରେ ନେଲି, ଆଉ କେହି ଦୁଇ ଟଙ୍କାରେ ଛୁଅନ୍ତା ନାହିଁ । ଯେତେହେଲେ ତୁ ତ ଭାଇ, କଣ ତୋତେ ଫୋପାଡ଼ି ଦେବି ? ହେଲେ ବିପଦ ଆପଦ ବେଳକୁ ମୁଁ—ଭଲବେଳେ କେହି ନୁହେଁ । ଏହି ସେ ଦିନ ଭୀମା ଗଉଡ଼ର ଫୌଜଦାରୀ ମକଦ୍ଦମାରେ ତୋତେ ଗୁହା ହେବାକୁ କହିଲି, ଘରେ ଲୁଚିଲୁ, ଦେଖାଦେଲୁ ନାହିଁ ।"

ହାୟ ! ହାୟ ! ଯେଉଁ ନିନ୍ଦୁକମାନେ ଖ୍ରୀଷ୍ଟଙ୍କୁ କ୍ରୁଶରେ ଚଢ଼ାଇଲେ, ପରମା ସତୀ ସୀତାଙ୍କୁ ବଣକୁ ପଠାଇଲେ, ସେମାନଙ୍କ ବଂଶଧରମାନେ ଯେ ହରିବାସର-ଉପବାସୀ, ପରୋପକାରୀ ମଙ୍ଗରାଜଙ୍କ ଅଖ୍ୟାତି ରଟନା କରିବେ, ଏହା କିଛି ବିଚିତ୍ର ନୁହେଁ । ନିନ୍ଦୁକମାନେ ଯେଉଁ କଥା କହି ବୁଲିବେ, ଆମ୍ଭମାନଙ୍କୁ ନାଗୃର ହାଲତରେ ସେ କଥା ବୋଲିବାକୁ ହେଉଅଛି । ସେମାନେ କହନ୍ତି ମଙ୍ଗରାଜେ ଗୃହକୋଶ ମଧ୍ୟରେ କାହାରି ଗୋଖୋଜରୁ ଖୋଜେ ଜମି ରଖିଲେ ନାହିଁ । ବାକି ଥିଲା ଭାଇ, ଓର ଖୋଜ ଖୋଜି ଏତେଦିନେ ପାଇଲେ । ଶ୍ୟାମ ପିଆଜ ଖାଇ ବ୍ରାହ୍ମଣ ଭୋଜନ କରାଇଲା, ମଙ୍ଗରାଜ ଘରି ମାଇକିନିଆମାନେ ଯେ ଚମ୍ପାକୁ

ପଠାଇ ହାଟରୁ ପିଆଜ କିଣି ଆଣନ୍ତ—କଥା ଛଳରେ ଆମ୍ଭେମାନେ ମାନଗଲୁଁ, ଚମ୍ପା ପିଆଜ କିଣି ଆଣିଲା, ଖାଇବାର ପ୍ରମାଣ କାହିଁ ? "ପଲଣ୍ଡୁ ଗୃଞ୍ଜନଞ୍ଚୈବ"--ମନୁରେ ଖାଇବାକୁ ସିନା ମନା, କିଣିଲେ ପତିତ ହେବ, ଏ ବିଧି କାହିଁ ? ମାତ୍ର ଭଦ୍ରଲୋକ ଘର ମହିଳା-ମାନଙ୍କ ଦୋଷାଦୋଷ ସମାଲୋଚନାକାରୀ ନିନ୍ଦକ-ମାନଙ୍କ କଥାରେ ଉତ୍ତର ଦେବାକୁ ଆମ୍ଭେମାନେ ସମ୍ପୂର୍ଣ୍ଣ ନାରାଜ ।

— —

-୨-

## ସ୍ୱନାମ ପୁରୁଷୋ ଧନ୍ୟଃ

ମଙ୍ଗରାଜେ ଗରିବର ପୁଅ ଥିଲେ । ଶୁଣାଅଛି, ସାତବର୍ଷ ବୟସରେ ସେ ଛେଉଣ୍ଡ ହୋଇ ବୁଲୁଥିଲେ । ପଇସା ଅଭାବରୁ ବାପର ଶୁଧ ହୋଇ ନାହିଁ । ଗୁଳକୁ ନଡ଼ା ନ ଉଠିବାରୁ କାନ୍ଥ ପଡ଼ି ଯାଇଥିଲା । ଏହାଙ୍କ ବାଲ୍ୟଜୀବନ, ବିଦ୍ୟାଶିକ୍ଷା, କର୍ମକ୍ଷେତ୍ରରେ ପ୍ରବେଶ ପ୍ରଭୃତି ଘଟଣାମାନ ବିଚିତ୍ର ରକମର । ଜଗତର କୌଣସି ପ୍ରଧାନ ଲୋକଙ୍କ ଜୀବନଚରିତ ଅଲୌକିକ ଘଟଣାଶୂନ୍ୟ ନୁହେଁ । ସେ ସବୁ କଥା ଲେଖିବାକୁ ଗଲେ ଢେର କାଗଜ କଲମ, ଢେର ସମୟ ଆବଶ୍ୟକ । ମାତ୍ର ପରିମିତବ୍ୟୟିତା ଯେ ଗୋଟିଏ ମହତ୍ ଗୁଣ, ଏ ବିଷୟରେ ଆମ୍ଭମାନଙ୍କର ଶିକ୍ଷାଗୁରୁ ମଙ୍ଗରାଜେ । ଅର୍ଥନୀତି ସମ୍ବନ୍ଧରେ ମହାପଣ୍ଡିତ ବେଞ୍ଜାମିନ ଫ୍ରାଙ୍କଲିନ ଯେଉଁ ଉପଦେଶ ଦେଇ ଯାଇଅଛନ୍ତି, ସେଥିର ମର୍ମ ଆମ୍ଭେମାନେ ଏହିପରି ବୁଝିଅଛୁଁ । କାଗଜ ବଜାରରୁ କିଣି ଆଣିବା ସହଜ, ବ୍ୟବହାର କରିବା ବଡ଼ କଠିନ । ଏଥିକୁ ଆମ୍ଭେମାନେ ଠିକେ ଠିକେ ସବୁ କଥା ଲେଖି ମଙ୍ଗରାଜୀ ଅର୍ଥନୀତିର ମର୍ଯ୍ୟାଦା ରକ୍ଷା କରିବାକୁ ଚେଷ୍ଟା କରିବୁଁ । ମଙ୍ଗରାଜଙ୍କ ଜମିଦାରୀର ନାମ ଫତେପୁର ସରସଣ୍ଡ, ସଦରଜମା ପାଞ୍ଚହଜାର, ଅଠେଇଶ ବାଟି ବାହେଲ ଲାଖରାଜ, ବାଜେଆପ୍ତି ପନ୍ଦର ବାଟି ସତାଇଶ ମାଣ; ସତେଇଶ ମାଣ କପାଁ ଜାଣ, ଏଥିର ଜଣେ ସାତମାଣିଆ ସରିକଦାର ଥିବାର ଜଜ ଅଦାଲତରେ ଅପିଲ ଦାୟର ଅଛି । ଲୋକେ କହନ୍ତି ଗୃହିଣ ପଞ୍ଚାଶ ହଜାର ଟଙ୍କା ମହାଜନୀରେ ଖେଳୁଅଛି । ବଡ଼ଲୋକ ଘର, କଥା ବଡ଼ ଶୁଭେ । ଆମ୍ଭେମାନେ ଅନୁମାନ କରୁଁ, ୧୫ ହଜାରରୁ ବେଶି ନୁହେଁ । ମିଥ୍ୟା କଥା କହିବା ଆମ୍ଭମାନଙ୍କର ଧର୍ମ ନୁହେଁ । ଇନକମ୍ ଟିକସ ଇଲାକା ପିଆଦାଠାରୁ ଶୁଣି ଏ କଥା କହୁଅଛୁଁ । ଧାନ ମହାଜନୀ କାରଜ ୨° ବରଷ ହେଲା ରଫା ହୋଇ ନାହିଁ, ଏଥିକୁ ସଠିକ ହିସାବ ଦେବାକୁ ଅକ୍ଷମ । ଗଲା ଅଙ୍କ ସୁନିଆ ବାହାରେ ଧାନଘରିଆ ଯେଉଁ ପାଞ୍ଜି ଦାଖଲ କରିଥିଲା, ସେଥି ମଧ୍ୟୋଟରୁ ଆମ୍ଭେମାନେ ଜାଣୁଅଛୁଁ ଯେ ଦୁଇ ହଜାର ସାତ ଭରଣ ପନ୍ଦର ନଉତି ଛ ବିଶ୍ୱା ଦୁଇ କାଣି ଧାନ ଅମାରରେ ଜମା ଅଛି । ଘର ପାଞ୍ଚ ପରସ୍ତ । ତିନି ପରସ୍ତରେ ତିନି ପୁଅ, ଏକ ପରସ୍ତରେ ସାଆନ୍ତ ସାଆନ୍ତାଣୀ ଓ ସାନ ଝିଅ ମାଳତୀ ଥାନ୍ତି, ବାହାର ପରସ୍ତ କଚେରି । କଚେରିଘର ପାଞ୍ଚଶେଣିଆ, ଶେଣିପଟାରେ ବାଘ, ହାତୀ, ବିରାଡ଼ି, ରାଧାକୃଷ୍ଣ, ମାଙ୍କଡ଼ ଖୋଳା ଯାଇଅଛି । କାନ୍ଥ ସବୁରେ ନୀଳ, ଶୁକ୍ଳ, ରକ୍ତ, ହରିତ, ପାଟଳ ବିବିଧ ରଙ୍ଗରେ ପଦ୍ମ କହ୍ଲାର, କୁମୁଦ, ମାଳତୀ ପୁଷ୍ପମାଳ, ବାନରଯୂଥ, ରାକ୍ଷସ ଶ୍ରେଣୀ ଦମ୍ଭେକାତ ରାମ ରାବଣ ଯୁଦ୍ଧ ପ୍ରଭୃତି ପୌରାଣିକ ଘଟଣାମାନ ଅଙ୍କିତ ରହିଅଛି । ରାଜପୁତନାର କୌଣସି ସ୍ଥାନରେ ଗୋଟିଏ ଉଲଙ୍ଗ ସ୍ତ୍ରୀମୂର୍ତ୍ତି ଦେଖି ଟଡ୍ ସାହେବ ଅନୁମାନ କରି ଅଛନ୍ତି, ଭାରତର ପୂର୍ବକାଳର ଅଙ୍ଗନା-ମାନେ ଉଲଙ୍ଗ ଥିଲେ । ହାୟ ! ହାୟ ! ଆମ୍ଭେମାନେ ମଙ୍ଗରାଜଙ୍କ କାନ୍ଥର ଚିତ୍ର ଦେଖାଇ ସାହେବଙ୍କ ମୂର୍ଖତା ଦୂର କରିପାରିଲୁଁ ନାହିଁ । ଭକ୍ତି ରହିତ ସଖୀମଣ୍ଡଳୀ ପରିବେଷ୍ଟିତ ରାଧିକାଙ୍କର ଗେରୁରଙ୍ଗରେ ହାଣ୍ଡିକଲା ବୃନ୍ଦାବାର ଘାଗରା ଦେଖିଲେ ଅବଶ୍ୟ ସାହେବଙ୍କର ମୂର୍ଖତା ଓ ଭ୍ରାନ୍ତି ବଦୂରିତ ହୋଇଥାନ୍ତା । ଏହି

ସମସ୍ତ ଚିତ୍ର ଅଙ୍କିତ କରାଇବା ନିମନ୍ତେ ଅନ୍ୟ ଦେଶରୁ ଚିତ୍ରକର ଲୋଡ଼ିବାକୁ ହୋଇନାହିଁ । ସମସ୍ତ କାର୍ଯ୍ୟ ଚମ୍ପାଙ୍କର ସ୍ୱହସ୍ତ ସମ୍ପାଦିତ ଅଟେ । ଚମ୍ପା ଏତେ ପ୍ରକାର ପଶୁର ଛବି ଚିତ୍ର କରିପାରେ ଯେ ସେପରି ପଶୁ କଲିକତା ଜୁଲଜିକେଲ ଉଦ୍ୟାନରେ ( ଚିଡ଼ିଆ-ଖାନା ) ତୁମ୍ଭେ ଖୋଜି ପାଇବ ନାହିଁ ।

ମଙ୍ଗରାଜ ଉଆସ ଲଗାଲଗି ପଛରେ ଗୋଟିଏ ବଡ଼ ବଗିଚା, ବାଡ଼ ଦୁଆର ପାଖରେ ଭିତର ଗୋଟାଏ ପୋଖରୀ, ପୋଖରୀ ତୁଠ ପାଖରେ ନଡ଼ିଆ ଗଛ, ତା ପଛକୁ କଦଳୀ, ଆମ୍ବ, ପଣସ, ଓଆଉ ଗଛ । ବଗିଚା ପଦାର ତୁଠପାଖ ସୁନାର ଖାଇ ବାଉଁଶ ବାଡ଼ ପ୍ରାଚୀର ପରି ବେଢ଼ି ରହିଅଛି । ମଙ୍ଗରାଜଙ୍କ ପରି ନିଃସ୍ୱାର୍ଥ ଲୋକ ଦୁନିଆରେ ଅଳ୍ପ ଦେଖିବ । ତାଙ୍କର ସବୁ କାର୍ଯ୍ୟ ପରୋପକାର ନିମନ୍ତେ । ସାଆନ୍ତଙ୍କର ଏହି ବଡ଼ ବଗିଚାଟି ଗୋବିନ୍ଦପୁର ହାଟର ସ୍ଥିତି ଓ ଉନ୍ନତିର ମୂଳାଧାର ଅଟେ । ବଗିଚାର ନଡ଼ିଆ, କଦଳୀ, ବାଇଗଣ, କଖାରୁ, ଖଡ଼ାଠାରୁ ଲଙ୍କାମରିଚ ପର୍ଯ୍ୟନ୍ତ ନ ଯାଉଥିଲେ ହାଟର ଏତେ ଜାରି ଦେଖନ୍ତା ନାହିଁ । ସାଆନ୍ତଙ୍କ ବଗିଚାର ପରିବା ବିକା ନ ସରିଲେ ଆଉ କାହାରି ବିକିବାର ଅଧିକାର ନାହିଁ । ସେ ତ ଠିକ କଥା ! ଭଲ ଜିନିସ ଗୁଡ଼ାକ ପଡ଼ି ରହିବ, ଖରାପ ଜିନିସ ଆଗେ ବିକ୍ରି ହେବ, ଏହା ତ ଉଚିତ ନୁହେଁ । ହାଟ ଯେ ନିଜ ଜମିଦାରୀ ମଧ୍ୟରେ, ଅନ୍ୟ ଲୋକର ହୋଇଥିଲେ ଅନ୍ୟ କଥା । ସୁନିଆ ଓ ପର୍ବପର୍ବାଣିରେ ଯେ ସବୁ କଖାରୁ, ବାଇଗଣ, କଦଳୀ ଭେଟି ଆସେ, ସେ ସବୁ ସଲଖେ ସଲଖେ ହାଟକୁ ଯାଏ । ଚୀନ ଦେଶର ପ୍ରାଚୀର ତିଆର ହେଲା ଉତ୍ତାରେ ସମ୍ରାଟ ଦେଶର ସମସ୍ତ ଇତିହାସ ଲେଖକଙ୍କୁ ଧରିଆଣି ହତ୍ୟା କରିଥିଲେ; କାରଣ ପ୍ରାଚୀରରେ କେତେ ଟଙ୍କା ଖରଚ ହେଲା, କାଳେ ସେମାନେ ଲେଖି ପକାଇବେ । ଏଥିକୁ ଆମ୍ଭେମାନେ ସମ୍ରାଟଙ୍କୁ ନରହନ୍ତାରୀ ପୁରୁଷ

ବୋଲି କହୁ । ମହତ୍ ଲୋକମାନେ ମହତ୍ କାର୍ଯ୍ୟ ସାଧନ କରି ସେଥିରେ କେତେ ଟଙ୍କା ଖରଚ ହେଲା, କହି ବୁଲନ୍ତି ନାହିଁ । ମଙ୍ଗରାଜଙ୍କୁ ପଚାରି, ଆପଣଙ୍କ ନଅର ବନାରେ କେତେ ଟଙ୍କା ଲାଗିଲା ? ଉତ୍ତର 'ଢେର ଟଙ୍କା, ଢେର ଟଙ୍କା, ମୁଁ ତ ସେଥିରେ ମରିଗଲି ।' ପାଠକ ନିରାଶ ହେବେ ନାହିଁ, ଅଧୀର ହେବେ ନାହିଁ ।

ପ୍ରତ୍ନତତ୍ତ୍ୱବିଦ୍ୟାବଳରେ ସବୁ ପୁରୁଣା କଥାର ଠିକଣା ଲାଗିଯାଏ । ନଅଶ ବରଷ ଉତ୍ତାରେ ଜଣେ ସାହେବ ଆସି ପୁରୀ ମନ୍ଦିର ତିଆରିରେ କେତେ ଟଙ୍କା ଖରଚ ହେଲା, ତାହା ହିସାବ କରି ତାଲିକା ଦେଖାଇ ଦେଲେ । ମଙ୍ଗରାଜଙ୍କର ଲେଉଟିଆ ଶାଗ ବିକ୍ରି ପର୍ଯ୍ୟନ୍ତ ପଡ଼ି ରହିଅଛି, ଘର ତିଆରି ଖରଚର କି ହିସାବ ମିଳିବ ନାହିଁ ? ଦେଓ୍ୱାନ ଗଙ୍ଗାଗୋବିନ୍ଦ ସିଂହଙ୍କ ମାତୃଶ୍ରାଦ୍ଧ ପରି ଶ୍ରାଦ୍ଧ ଭାରତବର୍ଷରେ ଆଜଯାଏ କେହି କରି ନାହିଁ, କରିବ ନାହିଁ । ବଙ୍ଗଳା ହତାର ସମୁଦାୟ ଜିଲ୍ଲାର କଲେକ୍ଟର ସାହେବ ଡାଲି, ଚାଉଳ, ମଇଦା, ତେଲ, ଘିଅ, ନଡ଼ିଆ, କଦଳୀ କିଣି ପଠାଇବେ ବୋଲି ବଡ଼ଲାଟ ସାହେବ ସେମାନଙ୍କ ଉପରେ ଚିଠି ଜାରି କରିଥିଲେ । ନବଦ୍ୱୀପର ରାଜା ଶିବଚନ୍ଦ୍ର ସେହିପରି ମାତୃଶ୍ରାଦ୍ଧ କରିବାକୁ ଇଚ୍ଛା କରି ଖରଚର ଡାବ ମାଗି ପଠାଇଲେ । ଦେଓ୍ୱାନ ଗଙ୍ଗାଗୋବିନ୍ଦ କେବଳ ଗଞ୍ଜେଇ, ଆପୁ, ଧୂଆଁ ପତ୍ର ଖରଚର ଡାବ ପଠାଇ ଦେଇ ତାହା ଅନୁପାତରେ ସମସ୍ତ ଖରଚ ଠିକଣା ଲଗାଇବାକୁ ସଙ୍କେତ କରି ଭାଷା ଲେଖିଥିଲେ । ଏହିସବୁ ଜିନିଷ ଖରିଦରେ ବାସ୍ତରି ହଜାର ଟଙ୍କା ଖରଚ ପଡ଼ିଥିଲା । ନଗଦାଠ ଖରିଦ ଛାଡ଼ି ସମସ୍ତ ଜମିଦାର ବେଠିରେ ଅନେକ ଜିନିସ ଦେଇଥିଲେ । ଆମ୍ଭେମାନେ ଘର ତିଆରିର ଗୋଟିଏ ହିସାବ ଦେଉଅଛୁଁ । ବୁଦ୍ଧିମାନ୍ ପାଠକମାନେ ତାକୁ ଧରି ମୋଟ ଖରଚ କଥା ବୁଝି ପାରିବେ । ଧାନ ଦର ପାଞ୍ଜିରୁ ଆମ୍ଭେମାନେ ଠିକ ହିସାବ ପାଇଅଛୁଁ । ବଢ଼େଇ କମାର

ବେଠିଆଙ୍କ ପଛ ପନ୍ଦର ଭରଣ ବାଇଶ ନଉତି ଧାନ ଖରଚ ପଡ଼ୁଥିଲା ।

ମଙ୍ଗରାଜଙ୍କ ମୁହଁରୁ ଅନେକ ଥର ଶୁଣା ଯାଇଅଛି, ସେ କେବଳ ପରର ବିକଳ ସହି ନ ପାରି ଧାନ ଟଙ୍କା କରଜ ଦିଅନ୍ତି, ନୋହିଲେ ସେଥିରେ ତାଙ୍କର ନିଜର ଲାଭ କିଛି ନାହିଁ । ଆମ୍ଭେମାନେ କହୁଁ, ବରଞ୍ଚ ଲୋକସାନ । ଧାନ ଦେଢ଼ିରୁ ବେଶି କରଜା ନାହିଁ, ଏଥିରେ ଲାଭ କଣ ? ଦିଅନ୍ତି ଶୁଖିଲା ପୁରୁଣା ଧାନ, ନେବାବେଳକୁ ନୂଆ କଞ୍ଚା । ଆଚ୍ଛା ପାଠକ, ଆପଣଙ୍କ ଓଦା ଲୁଗାଟା ଆଗେ ଓଜନ କରନ୍ତୁ, ଦେଖିବେ ଓଦା ଶୁଖିଲାର କେତେ ପ୍ରଭେଦ । ଗଲା ଅଙ୍କ ପାଞ୍ଜିଆ ଯେ ସାଲତମାମି ଦାଖଲ କରିଥିଲା, ସେଥିରେ ମହାଜନୀ କରଜାରେ ଆଠଟଙ୍କା ଛଅଣା ଦୁଇକଡ଼ା ଦୁଇକ୍ରାନ୍ତି ଗୁଡ଼ତଳେ ପଡ଼ିଥିବାର ଦେଖା ଯାଇଅଛି । ଏତେ-ଗୁଡ଼ାଏ ଟଙ୍କା ଗୁଡ଼ ସକାଶେ ପାଞ୍ଜିଆ ଗାଳି ଖାଇ ଯେଉଁପରି କୈଫିୟତ ଦେଇଥିଲେ, ସେଥିର ସାର ମର୍ମ ଏହି ଭିକାରି ପଣ୍ଡା କରଜ ନେବାର ମୂଳ ପାଞ୍ଚ ଟଙ୍କା, ସେଥିରେ କଳନ୍ତର ଚକ୍ରବୃଦ୍ଧି ପ୍ରମାଣେ ବାର ଟଙ୍କା ପାଞ୍ଚ ଅଣା ଏଗାର ଗଣ୍ଡା ଦୁଇକଡ଼ା, ଗାଏ ଦୁଇପଦକୁ ମୋଟ ଓ ଆଦାୟ ସତର ଟଙ୍କା ପାଞ୍ଚଅଣା ଦୁଇ ପଇସା ବାଦେ ବାକି ଗୁଡ଼ ଦେଢ଼ ଗଣ୍ଡା ।

———

—୩—

## ବାଣିଜ୍ୟେ ବସତେ ଲକ୍ଷ୍ମୀ ସ୍ତଦର୍ଦ୍ଧଂ କୃଷିକର୍ମଣି

ଅସ୍ୟାର୍ଥଃ

ବାଣିଜ୍ୟେ ଲକ୍ଷ୍ମୀଙ୍କ ବାସ,
ତହୁଁ ଅଧେ କଲେ ଚାଷ ।

ଆମ୍ଭେମାନେ ଅନୁମାନ କରୁଁ, ଜଣେ ମରହଟ୍ଟୀ କବି ଏହି କବିତାଟି କହିଅଛନ୍ତି । ଆଜିକାଲିର କବି ହୋଇଥିଲେ ଏହିପରି କହନ୍ତେ:—

"ବାଣିଜ୍ୟେ ଲକ୍ଷ୍ମୀଙ୍କ ବାସ,
ତହୁଁ ଅଧେ ବି. ଏଲ୍. ପାଶ ।"

ମଙ୍ଗରାଜଙ୍କ ନଥିର ଦେଖି କେହି ଅନଭିଜ୍ଞ ଲୋକ ଅନୁମାନ କରିପାରନ୍ତି, ଏହା ଗୋଟିଏ ଅଦାଲତର ବି. ଏଲ୍. ପାଶିପ୍ରା ଉକିଲଙ୍କ ଘର ବାଡ଼ି ଘର ଭଗ୍ନାଂଶର ସମଷ୍ଟି ମାତ୍ର । କଥା କଣ ଜାଣନ୍ତି, 'ଭାଗ୍ୟଂ, ଫଳନ୍ତି ସର୍ବତ୍ର' । ଏହି ଯେ ଅଦାଲତ ଓଳିରେ ଗଣ୍ଡା ଗଣ୍ଡା ଶାଳପାଗିଆ ବୁଲୁଅଛନ୍ତି, ମଙ୍ଗରାଜଙ୍କ କଚ୍ଛରେ ପଚାଶ ଘର ଭଗ୍ନାଂଶ ଗାଏ କରିବାକୁ କେତେ ଜଣ ମିଳିବେ ? ସାଆନ୍ତେ ଆପେ କହନ୍ତି, ସେ କାହାରି ଗୋଟାଏ ପଇସା ଆଣନ୍ତି ନାହିଁ । ନିଜ ବୁଦ୍ଧି, ନିଜ ବାହୁ ବଳରେ ମାଟିରୁ ସୁନା ପଇଦା କରିଅଛନ୍ତି । ଏପରି ଶୁଣାଅଛି, ଶୁଣା କଥା, ଆମ୍ଭେମାନେ ଠିକ୍ କଥା ଜାଣୁ—ମଙ୍ଗରାଜେ ପ୍ରଥମେ ଗାଁ ପଧାନଠାରୁ ଦୁଇମାଣ ଜମି ଭାଗରେ ଧରିଥିଲେ । ବର୍ତ୍ତମାନ ଗୃହଜମି ନିଜଦସ୍ତି ପଦାକାରେ ଚାରି ବାଟି ଛ ମାଣ, ଏହା ଛଡ଼ା ତିନିଶ ବାଟି ସତର ମାଣ ଭାଗରେ ଲାଗିଅଛି । ଜମି ସବୁ ଲାଖରାଜ, କିଛି ନିଷ୍କର ବାଜ୍ୟାପ୍ତି ଅଧିକାଂଶ ଖରିଦା ବ୍ରହ୍ମୋତ୍ତର । କୃଷି ବଳଦ ୧୫ ହଳ । ହଳିଆ ୧୨ ଜଣ, ଏମାନେ ବାରମାସିଆ, ଜାତିରେ ବାଉରି—ତିନି ଜଣ ପାଣ । କୃଷି ଓ ବଗିଚା ଏମାନଙ୍କ ଜିମା । ମଙ୍ଗରାଜଙ୍କ ଶିକ୍ଷା ଓ ଉତ୍ସାହରେ ଏମାନେ କର୍ମଠ ଓ ଉତ୍ସାହୀ । ବ୍ରାହ୍ମ-ମୁହୂର୍ତ୍ତରେ ଶଯ୍ୟା ତ୍ୟାଗ କରିବା ସ୍ୱାସ୍ଥ୍ୟ-ବିଧାନ-ଶାସ୍ତ୍ରର ବିଧି । ଖରା ହେଉ, ବରଷା ହେଉ, ତୋଫାନ ହେଉ, ଝଡ଼ ହେଉ, ମଙ୍ଗରାଜେ ଏହି ବିଧି ଲଙ୍ଘନ କରିଥିବାର କେବେ କେହି ଦେଖି ନାହିଁ । ଶାସ୍ତ୍ରରେ ଲେଖାଅଛି—

"ଯେତେକ ଦେଖ ନଦ ନଦୀ,
ସମସ୍ତେ ମିଳନ୍ତି ଜଳଧି ।
ଆପଣା ଗୁଣ ପାସୋରନ୍ତି,
ଲବଣ ଗୁଣକୁ ଭଜନ୍ତି ।"

ଠିକ୍ କଥା ! ସେହିପରି ସ୍ତ୍ରୀ, ଦାସ, ଦାସୀ ସମସ୍ତେ ସାଆନ୍ତଙ୍କ ଗୁଣକୁ ଉତ୍ତାରୀ ଅଧିକତର ଲାଭ କରିଥାନ୍ତି । ଆମ୍ଭେମାନେ ସାଆନ୍ତଙ୍କ ଘର ଦାସ ଦାସୀମାନଙ୍କୁ ଦେଖି ଏହି ଶିକ୍ଷା ଲାଭ କରିଅଛୁଁ । ମଙ୍ଗରାଜେ ବ୍ରାହ୍ମମୁହୂର୍ତ୍ତରେ ଉଠି ଦାନ୍ତ ଘଷିବୋଲନ୍ତି । କଲିକତା ସହରରେ ଦୁଇଥର ତୋପ ପଡ଼େ । ପ୍ରାତଃକାଳ ତୋପ ରାତିଶେଷ ଜ୍ଞାପକ । ମଙ୍ଗରାଜେ କଚେରି ପିଣ୍ଡାରେ ଛିଡ଼ା ହୋଇ ହଳିଆଙ୍କୁ ଡାକ ଦେଲେ ଗ୍ରାମର ଲୋକେ ଆଖି ବୁଜି ମଧ୍ୟ ଜାଣିପାରନ୍ତି, ରାତି ପାହିଲାଣି, ବୋହୂ ଝିଅମାନେ ଝୁଆରୀଏ ବାହିପ ଇଟିରେ ଲାଗିଯାନ୍ତି । ମଫସଲର ଲୋକେ ଘଣ୍ଟା-ଫଣ୍ଟା ବୁଝନ୍ତି ନାହିଁ । ସୂର୍ଯ୍ୟ ମୁଣ୍ଡ ଉପରକୁ ଆସିଲେ ବଳଦ କାନ୍ଧରୁ ଜୁଆଳି ବାହାରେ । ଆଖପାଖର ଚାଷୀମାନେ ଦୂରରୁ ଅନାଇ ଦେଖନ୍ତି, ମଙ୍ଗରାଜଙ୍କ ବଡ଼ ଡାଳପଣ ଛତା ହିଡ଼ ଉପରୁ ଉଠିଲାଣି କି ନାହିଁ । ମଙ୍ଗରାଜେ ତାଙ୍କର ହଳିଆମାନଙ୍କୁ ପୁଅ ପରି ପାଳନ୍ତି । ମା ବାପ ପିଲାମାନଙ୍କ ଖିଆପିଆ ନିଜେ ନ ଦେଖିଲେ ସେମାନଙ୍କ ମନ ମାନେ ନାହିଁ । ହଳିଆମାନେ ଧାଡ଼ି ହୋଇ ଖାଇବାକୁ ବସିଗଲେ ସାଆନ୍ତେ ରାନ୍ଧୁଣିଆକୁ ଉଚ୍ଚସ୍ୱରରେ ଡାକ ଦିଅନ୍ତି, ଆରେ ତୋରାଣି ଆଣ, ତୋରାଣି ଆଣ, ଏମାନଙ୍କ ତଣ୍ଟି ଶୁଖି ଯାଉଛି । ରାନ୍ଧୁଣିଆ ଅଭ୍ୟସ୍ତ ବିଦ୍ୟା ପ୍ରଭାବରେ ପି ଜଣକୁ ଦୁଇ କଂସା କରି ତୋରାଣି ଦିଏ; କେହି ହଳିଆ ଏତେଗୁଡ଼ାଏ ତୋରାଣି ପିଇବାକୁ ନାରାଜ ହେଲେ ସାଆନ୍ତେ ତାହାର ଉପକାରିତା ଓ ବଳକାରିତ୍ୱ ସମ୍ବନ୍ଧରେ କ୍ଷୁଦ୍ର ଏକ ବକ୍ତୃତା କରି ତାହା ପିଆଇଦେଇ ତହିଁ ଉତ୍ତାରେ ଭାତର ବ୍ୟବସ୍ଥା କରି ଆପେ ସ୍ନାନ କରିବାକୁ ବାହାରିଯାନ୍ତି । ସାଆନ୍ତଙ୍କ ବଗିଚାରେ ସତରଟା ସଜନା ଗଛ । ସଜନା ଶାଗ ହଜମୀ, ବଳକାରକ, ରୋଗନାଶକ, ମୁଖରୋଚକ, ରୋଗୀର ପଥ୍ୟ । ନିର୍ଘଣ୍ଟୁରେ ସଜନାର ଏପରି ଗୁଣ ବର୍ଣ୍ଣନା ଅଛି କି ନାହିଁ, ଆମ୍ଭେମାନେ ଜାଣୁ ନାହିଁ; କାରଣ ସେ ବିଦ୍ୟାରେ ଆମ୍ଭେମାନେ ନିତାନ୍ତ ଅନଭିଜ୍ଞ; କିନ୍ତୁ ସାଆନ୍ତଙ୍କ ମୁଖରୁ 'ଯଥା ଶ୍ରୁତଂ ତଥା ଲିଖିତଂ ।' ସେଥିସକାଶେ ବଗିଚାର ସଜନାଶାଗ କେବେହେଁ ମଧ୍ୟ ହାଟକୁ ଯାଏ ନାହିଁ, ହଳିଆମାନଙ୍କ ବଳବର୍ଦ୍ଧନ ଓ ପୋଷଣ ନିମନ୍ତେ ସମସ୍ତ ଉତ୍ସର୍ଗୀକୃତ । ଏହି ଯେ ଫୁଲ ଦେଖୁଅଛ, ଏପରି ଉପାଦେୟ ପଦାର୍ଥ ପୃଥିବୀରେ ନାହିଁ । ପୁଞ୍ଜାଏ ରାଇ ମନ୍ଦ ସେଥିରେ ମିଶେ, ତା କଥା ଗୁପ୍ତ । ପରମେଶ୍ୱରଙ୍କ ସୃଷ୍ଟିରେ କେତେ ଭଲ ଅଛି, ସେଥିରେ ଭଲମନ୍ଦ ମିଶାମିଶି । ଦେଖ ପଣସ ଖୋସାଗୁଡ଼ିକ ମଧୁର; କିନ୍ତୁ ତାହା ଭିତରେ ସୃତାଗୁଡ଼ାକ ବଦହଜମୀ । କିନ୍ତୁ ଜ୍ଞାନୀଲୋକଙ୍କଠାରେ କିଛି ଅଖଞ୍ଜ ରହେ ନାହିଁ, ଭଲକୁ ଭଲ, ମନ୍ଦକୁ ମନ୍ଦ ବାଛି ଦିଅନ୍ତି । ସଜନାର ସବୁ ଭଲ, କେବଳ ଛୁଇଁଗୁଡ଼ାକ ଖରାପ ଓ ବଦହଜମୀ । ସେଥିପାଇଁ ହଳିଆ କମୀ ଚାକରମାନଙ୍କ ପତ ଛୁଇଁ ପାରେ ନାହିଁ, ବାହାରେ ବାହାରେ ହାଟକୁ ଯାଏ ।

---

–୪–

## ଚାଷ ତଦାରଖ

'ଅୟଂ ନିଜଃ ପରୋବେତି ଗଣନା ଲଘୁଚେତସାଂ ।'

ମଙ୍ଗରାଜେ ନିଜ ପର ଚାଷ ବୁଝନ୍ତି ନାହିଁ । ଶାସ୍ତ୍ରରେ ପାଠ ଡାକୁଛି—ଲଘୁଚେତାମାନେ ଆପଣା ଓ ପର ଏହିପରି ବୁଝନ୍ତି । ସାଆନ୍ତଙ୍କ ଆପଣା ଚାଷ ପ୍ରତି ଯେପରି ନଜର, ପର ଚାଷ ପ୍ରତି ମଧ୍ୟ ସେହିପରି ଦୃଷ୍ଟି । ଆମ୍ଭେ-ମାନେ ଦିନକର କଥା କହିଲେ ଜ୍ଞାନୀ ପାଠକମାନେ ସେଥିରୁ ସବୁ ଜାଣିଯିବେ । ଭାତ ହାଣ୍ଡିରୁ ଗୋଟାଏ ଚିପିଲେ ସବୁ ଜଣାପଡ଼େ । ସରଦାର ହଳିଆ ଗୋବିନ୍ଦ ପୁହାଣ ସକାଳେ ଆସି ଜଣାଇଲା, "ଆଜ୍ଞା, ଦେଢ଼ ମାଣ

ବଲି ଅରୁଆ ରହିଲା, ଚାଲ ନଅଣ ।" ସାଆନ୍ତେ "ହୁଁ" କହି ଚୁପ ହେଲେ । ହଳିଆ ହାତ ଯୋଡ଼ି ଦୁଆରେ ଛିଡ଼ା ହେଲା ।

ସାଆନ୍ତେ ବିଲ ବୁଲି ବାହାରିଛନ୍ତି । ପରିଧାନ ଖଣ୍ଡିଏ ତେଲଚିକଟା ମଠାଲୁଗା,ଅଣ୍ଟାରେ ଗେରୁରଙ୍ଗିଆ ଗାମୁଛା ଭିଡ଼ା, କାନ୍ଧରେ ବିଶାଳ ତାଳପତ୍ର ଛତା । ପଛରେ ଗୋବିନ୍ଦ ପୁହାଣ ବିଲର ହାଲଚାଲ କହି କହି ଚାଲିଅଛି, ଆଉ ଜଣେ ହଳିଆ କାନ୍ଧରେ ଯୋଡ଼ା ଜୁଆଳି ପକାଇ ଚାଲିଅଛି, ତାହାର ନାମ ପାଣ୍ଡିଆ । ଗାଁର ସବୁ ଲୋକ ଉଠି ନାହାନ୍ତି । ଶିବୁ ପଣ୍ଡିତଙ୍କ ସଙ୍ଗରେ ଭେଟ ହେଲା ।

ପଣ୍ଡିତେ ନାସ ସୁଙ୍ଘି ସୁଙ୍ଘି ବାଁ ହାତରେ ତାଳଟିଏ ଧରି ପୋଖରିପାଣି ବାହାରିଛନ୍ତି । ସାଆନ୍ତଙ୍କୁ ହଠାତ୍ ପଛରେ ଦେଖି ତଟବର ହୋଇ ସାତ ସାତ ହାତ ଆଡ଼ ହୋଇଗଲେ ଏବଂ ତାଳଟା ତଳେ ଥୋଇଦେଇ ଧନୁକାକାର ଧାରଣପୂର୍ବକ 'ଅଞ୍ଜଳିବଦ୍ଧୋ ଭୂତ୍ୱା ସାଆନ୍ତଙ୍କର କୀର୍ତ୍ତିମାୟୁର୍ଯଶଃଶ୍ରିୟଂ" କାମନା କଲେ । ସାଆନ୍ତଙ୍କର ସେଥିକି ଦୃଷ୍ଟି ନାହିଁ,ଏକମୁହାଁ ଚାଲିଛନ୍ତି । ସାଆନ୍ତେ ଖଣ୍ଡେ ବାଟ ଚାଲିଗଲା ବାଦ୍ ପଣ୍ଡିତେ ଧୀରେ ଧୀରେ ତାଳଟି ଉଠାଇ ଶ୍ଳୋକଟିଏ ପଢ଼ିଲେ, "ଅଦ୍ୟ ପ୍ରାତରେବାନିଷ୍ଟଦର୍ଶନଂ ଜାତଂ ନ ଜାନେ କିମନର୍ଥମତଂ ଦର୍ଶୟିଷ୍ୟତି ।" ପଣ୍ଡିତମାନଙ୍କର ଶ୍ଳୋକ ପଢ଼ିବା ଅଭ୍ୟାସ, ସେଥିରୁ ଆମ୍ଭମାନେ କଣ ପାଇବୁଁ ?

ଶ୍ୟାମ ଗୋଛାଇତ ଜାତିରେ ବାଉରି । ବିଲ ଗାଁ ତଳେ । ବିଲଗୁଡ଼ିକ ଆଗରୁଆ,ଶୁଆପକ୍ଷିଆ ବୁଲିଗଲାଣି । ଶ୍ୟାମ ନଇଁପଡ଼ି ହିଡ଼ ବାନ୍ଧୁଅଛି । ସାନ୍ତେ ପାଖରେ ଛିଡ଼ା ହୋଇ ସାଲିଁ କଅଁଳ ଭାଷାରେ କହିଲେ, "କିରେ ବାପା ଶ୍ୟାମ !" ଶ୍ୟାମ ହଠାତ୍ ସାଆନ୍ତଙ୍କୁ ଦେଖି ଚମକି ପଡ଼ିଲା । ପାଞ୍ଚହାତ ଦୂରକୁ କୋଡ଼ିଟା ଫୋପାଡ଼ି ଦେଇ ଲଟକିରି କାଦୁଅରେ ଶୋଇପଡ଼ି ଓଳଗି ହେଲା । 'ଆରେ ଉଠ, ଆରେ ଉଠ, ଆରେ ଉଠ୍' ବୋଲି ସ୍ନେହରେ ସାଆନ୍ତେ ସମ୍ବୋଧନ କଲେ । ତହିଁ ଉତ୍ତାରେ ଶ୍ୟାମ ହାତ ଯୋଡ଼ି ଦଶହାତ ଦୂରରେ ଛିଡ଼ା ହେଲା । ତାହା ବାଦ ଶ୍ୟାମ ଓ ସାଆନ୍ତଙ୍କ ମଧ୍ୟରେ ଢେର ବେଳଯାଏ ଦୁଃଖସୁଖ କଥାବାର୍ତ୍ତା ହେଲା । ସବୁ କଥାଗୁଡ଼ାକ ଲେଖିଲେ ପାଠକମାନେ ବିରକ୍ତ ହୋଇ ପାରନ୍ତି । ସେଥି ସକାଶେ ସାରାଂଶ ମାତ୍ର ଲେଖୁଅଛୁ; ଅର୍ଥାତ୍ ଶ୍ୟାମବଂଶ ଉପରେ ସାଆନ୍ତଙ୍କର ଭାରି ନଜର । ଶ୍ୟାମ ବାପା ଅପର୍ତ୍ତିଆ ବେଳ ବେଳ ସଞ୍ଜ ବେଳେ ସାଆନ୍ତଙ୍କ ପାଖରୁ ଯାଇ ବିଲବାଡ଼ିର ହାଲଚାଲ ଜଣାଉଥିଲା ଏବଂ କପଟ ଚାଷ କଲେ ଧାନ ହେବ୍ ଫଳିବ, ଏ ସବୁ କଥା ପଚାରୁଥିଲା, ଇତ୍ୟାଦି ଇତ୍ୟାଦି, ମାତ୍ର ଶ୍ୟାମ ସେପରି କରେ ନାହିଁ । ଇତ୍ୟବସରରେ ବିଲ ଉପରେ ସାଆନ୍ତଙ୍କ ନଜର ଅକସ୍ମାତ୍ ପଡ଼ିଗଲା । ଚମକି ପଡ଼ିଲା ପରି ମୁରବିପଣିଆ କରି କହିଲେ, "ଆରେ ଶ୍ୟାମା, ତୁ କ'ଣ କରିଛୁ ? ତୁ ଟା ତ ନାହାନ୍ତି ଓଲୁ । ଚାଷ କରୁଛୁ ଜାଣୁ ନାହୁଁ । ଆରେ ଏତେ ନିଦଞ୍ଜ କରି ବୋଇଲେ କ'ଣ ଧାନ ଫଳେ ? ଗଛ ନିଃଶ୍ୱାସ ମାରିବାକୁ ତ ବାଟ ରଖି ନାହୁଁ । ଉପାଡ଼ ଉପାଡ଼, ଅଧେ ଉପାଡ଼ି ପକା ।" ଗୋବିନ୍ଦ ଭଲ କରି ଅନାଇ ସାଆନ୍ତଙ୍କର ପୋଷକତା କଲା । ଶ୍ୟାମ ଥରି ଥରି ହାତ ଯୋଡ଼ି କହିଲା, "ଆଜ୍ଞା, ମୁଁ ତ ସବୁ ବରଷ ଏହିପରି ରୁଏଁ, ସମସ୍ତେ ରୁଅନ୍ତି ।" ସାଆନ୍ତେ ବିରକ୍ତ ହୋଇ କହିଲେ, "ଆରେ ଓଲୁ, ଭଲ କହିଲେ ଶୁଣୁନାହୁଁ ?" ଗୋବିନ୍ଦ ଆଡ଼କୁ ଚାହିଁ କହିଲେ, "ଆରେ ଗୋବିନ୍ଦ, ଦେଖାଇ ଦେ ତ ।" ଏହି କଥା ମୁହଁରୁ ନ ବାହାରୁଣୁ ଗୋବିନ୍ଦ ଏବଂ ପାଣ୍ଡିଆ ଦୁଇ କିଆରି ବିଲ ଅଧା ପଦା କରି ପକାଇଲେ । ଶ୍ୟାମ ଉବା ପାଡ଼ି ସାଆନ୍ତଙ୍କ ଗୋଡ଼ତଳେ ଗଡ଼ୁଥାଏ । ସାଆନ୍ତେ ରାଗିଯାଇ ସାଆନ୍ତାଣୀଙ୍କ ସହିତ ଶ୍ୟାମର ଭାଇ ଲେଖା ସମ୍ବୋଧନ କରି କହିଲେ, "ତୁ ବିଲ କରି ଜାଣ ନ ଜାଣ, କରଜା ଧାନର ମୂଳ

କଳନ୍ତର ବଶ୍ବା ଏ ରଖିଲେ ଜାଣିବୁ ।" ଶ୍ୟାମ ଉପରେ କାଟପିତୁଲାଟି ପରି ଛୁଞ୍ଚା ହୋଇଥାଏ । ସାଆନ୍ତେ "ଆରେ ଗୋବନ୍ଧା, ଥାଉ, ଥାଉ, ସେ ଯାହା ଇଚ୍ଛା କରୁ"—ଏହା କହି ଆପଣା ଅରୁଆ ବଳ ଆଡ଼କୁ ଦୁଇ ଘର ଚଳ ଧରି ବାହାରି ଗଲେ ।

———

—୪—

## ମଙ୍ଗରାଜଙ୍କ କୁଟୁମ୍ବ

ରାମଚନ୍ଦ୍ର ମଙ୍ଗରାଜେ ଜଣେ ବହୁପୋଷୀ ଲୋକ । ଘରେ ଖାଇବାକୁ କୁଟୁମ୍ବ ଢେର । ନିଜ ସାଆନ୍ତ ସାଆନ୍ତାଣୀଙ୍କୁ ଛାଡ଼ି ତିନି ପୁଅ ହିସାବରେ ତିନି ବହୂ, ପୋଇଲି ପରିବାରି କୋଡ଼ିଏ କି ବାଇଶ—ଏହିପରି ତିରିଶେ ଲଗାଲଗି । ପ୍ରତି ଜଣର କଥା ଲେଖିବାକୁ ଗଲେ ଢେର ଲେଖିବାକୁ ହେବ । ମାତ୍ର ଆପଣ ତ ଆମ୍ଭମାନଙ୍କ ସ୍ୱଭାବ ଜାଣନ୍ତି, ମିଛ କଥା ଲେଖିବା, କଥା ବଢ଼େଇ ଲେଖିବା, ଅକାରଣ କଥା ଲେଖିବା, ଆମ୍ଭମାନଙ୍କ ଧାତୁରେ ଚଳେ ନାହିଁ । ମଧ୍ୟ "ମା ଲିଖେତ୍ ସତ୍ୟମପ୍ରିୟଂ"—ଅର୍ଥାତ୍ ସତ୍ୟ କଥାରୁ ମଧ୍ୟ ଅଧାଅଧି ଛାଡ଼ି ଦେବାକୁ ହୁଏ । ଉଆସ ମଧ୍ୟରେ ସ୍ତ୍ରୀ ସଂଖ୍ୟା ବେଶି, ରାମ ଭଣ୍ଡାରକୁ ଛାଡ଼ି ପୁରୁଷ ତୁଣ୍ଡ ପ୍ରାୟ ଶୁଭେ ନାହିଁ । ସାଆନ୍ତେ ତ ଧନ୍ଦାରେ ଲାଗିଥାନ୍ତି । ତିନିପୁଅ ଯୁଆଣ ଚଉପଟ ଖେଳିବା, ଗୋବର ଚଢ଼େଇ ଧରିବା, ଲୋକଙ୍କ ସହିତ ଦଙ୍ଗାଫସାଦ କରିବାରେ ସେମାନଙ୍କୁ ବେଳ ଅଣ୍ଟେ ନାହିଁ । ଗଞ୍ଜେଇ ପତ୍ର ଖାଇବାକୁ ମଧ୍ୟ କିଛି ବେଳ ଲୋଡ଼ା । ଗୋବିନ୍ଦପୁର ହାଟର ଗଞ୍ଜେଇ ଦୋକାନୀ ଜଣେ ଗହକ ଉପରେ ଖପା ହୋଇ କହିଲା, "ଆରେ ଯା ମ ! ମାଲ ନ ନେ, ଏକା ସାଆନ୍ତଘର ବାବୁମାନଙ୍କପାଇଁ ମାଲ ନିଅଣ୍ଟ ।" ବାପ ପୁଅଙ୍କର ପ୍ରାୟ ଭେଟ ହୁଏ ନାହିଁ । ଜଣେ ମୁରବିଭଳିଆ ଲୋକ କହିଥିଲା, "ଆହେ ମଙ୍ଗରାଜେ, ପୁଅମାନଙ୍କୁ କିଆଁ ପାଖ ପୂରାଅ ନାହିଁ ?" ମଙ୍ଗରାଜେ ଉତ୍ତର ଦେଲେ, "ଆହା, ତୁମ୍ଭେ କ ଶାସ୍ତ୍ର ଶୁଣି ନାହିଁ ?"

"ଲାଲୟେତ୍ ପଞ୍ଚବର୍ଷାଣି ଦଶବର୍ଷାଣି ତାଡ଼ୟେତ୍;
ପ୍ରାପ୍ତେ ତୁ ଷୋଡ଼ଶେ ବର୍ଷେ ପୁତ୍ରଂ ମିତ୍ରବଦାଚରେତ୍ ।"

ଅର୍ଥାତ୍ ପୁଅମାନଙ୍କ ପାଞ୍ଚରୁ ପାଞ୍ଚ ବର୍ଷପର୍ଯ୍ୟନ୍ତ ଲାଳ ବଢ଼େ, ଦଶବର୍ଷ ପର୍ଯ୍ୟନ୍ତ ସେମାନଙ୍କୁ ତଡ଼ିବ, ଷୋଳବର୍ଷ ହେଲା ଉତ୍ତାରେ ସେମାନଙ୍କ ସହିତ ଆଉ ମିତ୍ରମାନଙ୍କ ସହିତ ବଦ୍ ଅର୍ଥାତ୍ ଖରାପ ଆଚରଣ କରିବ ।" ବାସ୍ତବରେ ଦେଖାଯାଉଛି, ସାଆନ୍ତେ କାହାର କାହାରି ସହିତ ସଙ୍ଗାତ ମିତ୍ର ବସି ମାଲିମକଦମା କରି ସେମାନଙ୍କ ଜମି ଜମା ଛଡ଼ାଇ ନେଇ ବଦ୍ ଆଚରଣ କରନ୍ତି, ହେଲେ ସାଆନ୍ତେ ପୁତ୍ରମାନଙ୍କ ସମ୍ବନ୍ଧରେ ଯେଉଁ ଶାସ୍ତ୍ରୀୟ ପ୍ରମାଣ ପ୍ରୟୋଗ କଲେ, ତାହା ଠିକ୍ ବୋଲି ବୋଧ ହେଉ ନାହିଁ । ଶୁଣାଯାଏ, ପୁଅମାନେ ନିଶାପାଣିରେ କିଛି ଉଡ଼ାଇ ଦେବାରୁ ବାପ ପୁଅଙ୍କର ଅପଡ଼ । ଉଆସ ମଧ୍ୟରେ ସାଆନ୍ତାଣୀ ଗୋଟାଏ କୋଠରୀରେ ପଡ଼ିଥାନ୍ତି, କାହାରି ସହିତ କଥା ନାହିଁ । କେବଳ ଭାତ ଭିକାରି, ଭୋଗୀ ଶୋଷୀ ଆସିଲେ ତାହାଙ୍କୁ ଖୋଜନ୍ତି । ବୋହୂମାନଙ୍କ କଥା ଲେଖିବା ଅନୁଚିତ । ବଡ଼ଲୋକ ଘରର ବୋହୂଝିଆସୁଣୀ କଥା ଦାଣ୍ଡରେ ପକାଇଲେ ଲୋକେ ଆମ୍ଭମାନଙ୍କୁ କ'ଣ କହିବେ ? ସେମାନେ ଯେପରି ଦିନ ପହରକରେ ବିଛଣାରୁ ଉଠି ଦୁଇ ତିନି ଘଣ୍ଟା ମଧ୍ୟରେ ଦାନ୍ତଘଷ ଘଷି ମର୍ଦ୍ଦନ ସ୍ନାନ ସାରି ଭୋଜନ କରି ଦିନବେଳେ ବେଲକୁଡ଼ ଯାଏ ଶୋଇପଡ଼ନ୍ତି; ସେ କଥାଗୁଡ଼ିକ ଲେଖିଲେ କ'ଣ ହେବ ? ବେଲକୁଡ଼ସରିକି ପୁଣି ଉଠି ଖେଳ ଦଶ୍ତ ଦଶ୍ତ ସାରି ତାହା ବାଦ ଗାଁ କଥା ଶୁଣିବା, ପୋଇଲିମାନଙ୍କ ମଧ୍ୟରେ କଳି ଲଗାଇ ଦେବା, କଳି ଭାଙ୍ଗିବା, ହସିବା ବସିବାରେ ଅଧରାତି ହୋଇଯାଏ । ରୁକୁଣୀ, ମରୁଆ, ଚେମୀ, ନାକଫୋଡ଼ୀ,

ଟେଗା, ବଗଲ, ଶୁକ, ଚାଟ, କୌଶଲ୍ୟାଙ୍କୁ ଛାଡ଼ି ଆହୁରି କେତେଗୁଡ଼ିଏ ପୋଇଲା ଅଛନ୍ତି । ସେମାନଙ୍କ ନାମ ଆମ୍ଭମାନଙ୍କୁ ଅଜଣା । କେହି ବାଳବିଧବା, କେହି ଯୁବତୀ ବିଧବା, କେହି ଆଜନ୍ମ ବିଧବା, କେହି ବା ସଧବା, ନାନା ପକ୍ଷୀ ଏକ ବୃକ୍ଷରେ ବାସ କଲା ପରି ମଙ୍ଗରାଜଙ୍କ ଘରେ ଆଶ୍ରୟ ନେଇଅଛନ୍ତି । ମଧ୍ୟ କେତେ ଆସୁଛନ୍ତି କେତେ ଯାଉଛନ୍ତି, ତାହାର ଠିକଣା ନାହିଁ । ଅନେକଗୁଡ଼ିଏ ନିଷ୍କର୍ମା ପୋଇଲା ରୁଣ୍ଡ ହେଲେ ପୃଥିବୀର କଳି ଜାତ ହୁଏ, ମଙ୍ଗରାଜ ଉଆସ ଏହି ସନାତନ ବିଧିକୁ ଲଙ୍ଘି ନ ଥିଲା । ରାତି ଅଧଯାଏ ଉଆସ ମଧ୍ୟରେ ମାଛହାଟ ବସିଲା ପରି ଘୋ ଘୋ ଶବ୍ଦ ଶୁଭୁଥାଏ ।

---

-୨-

## ଚମ୍ପା

ଉଆସ ମଧ୍ୟରେ ଯେତେ ଲୋକ ଅଛନ୍ତି, ସେଥିମଧ୍ୟରୁ ଚମ୍ପା ଓରଫେ ଚମ୍ପା ସାଆନ୍ତାଣୀ, ଓରଫେ ହରକଲା ସହିତ ମଙ୍ଗରାଜବଂଶର କି ସମ୍ପର୍କ, ଏ କଥା କାହାରିକୁ ଜଣା ନାହିଁ । ତାହାର ଜାତି, କୁଳ, ପିତୃବଂଶ ସମ୍ବନ୍ଧରେ ମଧ୍ୟ ସମସ୍ତେ ଅନଭିଜ୍ଞ । ଚମ୍ପା ମଙ୍ଗରାଜ ଘରେ ଦାସୀ କି ସାଆନ୍ତାଣୀ ବ୍ୟବହାର ଦ୍ୱାରା ବୁଝିବାର କାହାରି ଶକ୍ତି ନାହିଁ । କେବଳ ଏତିକି ମାତ୍ର କହିପାରୁ ଯେ, ମଙ୍ଗରାଜଙ୍କ ଉଆସ ମଧ୍ୟରେ ଚମ୍ପାର କ୍ଷମତା ସୀମାତୀତ । ଅଧିକ କଣ ସାଆନ୍ତାଣୀଙ୍କ କ୍ଷମତାଠାରୁ ଢେର ବେଶି । ବାହାରର ହଳିଆ ମୂଲିଆ କଚେରି କରଣଯାଏ—ତାହାଠାରେ ହାତଯୋଡ଼ି ଥାନ୍ତି । ଚମ୍ପାର ଗୋଟିଏ ନାମ ହରକଲା, ସତ କଥା କହିବାକୁ ଗଲେ ଏହି ନାମ ଧରି ତାହାକୁ କେହି ଡାକିବାର ଶୁଣି ନାହୁଁ । ହରକଲା ଶବ୍ଦର ବ୍ୟୁତ୍ପତ୍ତି କଣ, ଏହି ନାମଟି ନିନ୍ଦ୍ୟ କି ପ୍ରଶଂସନୀୟ ଏହା ବୋଲିବାକୁ ଆମ୍ଭମାନେ ନିତାନ୍ତ ଅକ୍ଷମ; ମାତ୍ର ଚମ୍ପା କାନରେ ଦିନେ କଥା ପକାଇଲା, ଲୋକମାନେ ତାହାକୁ 'ହରକଲା' ବୋଲନ୍ତି । ସେ ଶୁଣି ଭାରି ଖପା ହେଲା, କାନ୍ଦି କାନ୍ଦି ମଙ୍ଗରାଜଙ୍କଠାରେ ଗୁହାରି କଲା, ଖୁବ୍ ଧରପଗଡ଼ ହେଲା, ଦୁଇଦିନ ପର୍ଯ୍ୟନ୍ତ ଖୋଜତଲାସ ହେଲା; ମାତ୍ର ହରକଲା ନାମର କେଉଁଠାରୁ ଉତ୍ପତ୍ତି, କେତେ ଦୂର ବିସ୍ତୃତ, କିଛି ଠିକଣା ମିଳିଲା ନାହିଁ । ଅବଶେଷରେ ସାଆନ୍ତେ କହିଲେ, "ହେଉ ହେଉ ଦେଖାଯିବ । ଖବରଦାର ! ଚମ୍ପାକୁ କେହି ହରକଲା କହିବ ନାହିଁ ।" ସେଦିନ ଗ୍ରାମର ଏ ମୁଣ୍ଡଠାରୁ ସେ ମୁଣ୍ଡଯାଏ ଏବଂ ଆଖପାଖ ଦୁଇ ଚାରି ଗ୍ରାମରେ ସମସ୍ତଙ୍କୁ ସମସ୍ତେ ସାବଧାନ କରାଇ ଦେଲେ— ଖବରଦାର ! ଚମ୍ପାକୁ କେହି ହରକଲା କହିବ ନାହିଁ । ମାସେ ଦୁଇମାସ, ଚାରିମାସ ଛ ମାସ ଟୋକୀଠାରୁ ବୁଢ଼ୀ, ଟୋକାଠାରୁ ବୁଢ଼ାଯାଏ ସାଙ୍ଗ ମନମିଳାପ ଲୋକ ଦେଖିଲେ ଚାରିଆଡ଼କୁ ଅନାଇ ମୁରୁକି ମୁରୁକି ହସି ପରସ୍ପରକୁ ସାବଧାନ କରାଇ ଦିଅନ୍ତି, "ଖବରଦାର ! ଚମ୍ପାକୁ କେହି ହରକଲା କହିବ ନାହିଁ ।" କ୍ରମଶଃ ସେହି କଥା ସଂକ୍ଷିପ୍ତସାରରୂପ ଧାରଣ କଲା, ଯଥା – ଖବରଦାର କେହି ଚମ୍ପାକୁ, ଖବରଦାର କେହି, ଖବରଦାର ଇତ୍ୟାଦି । ପିଲାଗୁଡ଼ାକ ହାତତାଳି ଦେଇ ଦାଣ୍ଡରେ ନାଚନ୍ତି—

'ଖବରଦାର !
ଗୋବରା ଜେନା ଚଉକିଦାର ।'

ପିଲାଗୁଡ଼ାକ ସବୁଦିନେ ଜଞ୍ଜାଳିଆ, ସେମାନଙ୍କ କଥା କିଏ ଧରିବେ ? ଯାଉ, ସେ ବାଜେ କଥାରୁ କଣ ହେବ ? ହେଲେ ସାଆନ୍ତଙ୍କ ଘର ସହିତ ଚମ୍ପାର ଖୁବ୍ ଘନିଷ୍ଠ ସମ୍ବନ୍ଧ ଥିବାରୁ ପାଠକମାନେ ତାହାର ନାମ ଅନେକ ଥର ଶୁଣିବାକୁ ପାଇବେ । ଏଥିକୁ ତାହାର

ରୂପ ଗୁଣ ସମ୍ବନ୍ଧରେ ସମସ୍ତ କଥା ଫେଡ଼ି କହିଦେବା ଆମ୍ଭମାନଙ୍କ ପକ୍ଷରେ ନିତାନ୍ତ କର୍ତ୍ତବ୍ୟ ହେଉଅଛି । ଆଜି ଗ୍ରନ୍ଥସ୍ଥ ନାୟକ ନାୟିକାମାନଙ୍କର ରୂପ ଗୁଣ ବର୍ଣ୍ଣନା କରିବାକୁ ଲେଖକମାନେ ସାହିତ୍ୟ ଆଇନାନୁସାରେ ବାଧ୍ୟ । ସୁତରାଂ ଏହି ସନାତନ ରୀତି ଲଙ୍ଘନ କରିବାକୁ ଆମ୍ଭମାନଙ୍କର ଆୟତ୍ତ ନାହିଁ । ପୁଣି ଗ୍ରନ୍ଥକାରମାନଙ୍କର ଖସ୍‌ଲତ ଅଛି । ଗୋଟିଏ ନାୟିକାକୁ ପାଇଲେ ଛେନାଗୁଡ଼ ପାଇଲା ପରି ସବୁ କଥା ପାସୋରି ଯାଇ ତାହାର ରୂପ ବର୍ଣ୍ଣନ କରିବାକୁ ତରବର ହୋଇ ବସିଯାନ୍ତି । ଆମ୍ଭେମାନେ ଯେ ରୂପ ବର୍ଣ୍ଣନା କରିବା ବିଷୟରେ ଅକ୍ଷମ, ତାହା ନୁହେଁ । ଏହି ଦେଖ କଦଳୀ, ପଣସ, ରମ୍ଭା, ଆମ୍ବ, ଡାଳିମ୍ବ, ଟଭ ଏହିପରି ଯେ ସବୁ ଗଛ, ପତ୍ର, ଫଳ, ଫୁଲ ଅଛି ଚମ୍ପାର ବିଶେଷ ବିଶେଷ ଅଙ୍ଗ ସହିତ ବିଶେଷ ବିଶେଷ ପଦାର୍ଥ ମିଳାଇ ଦେଲେ ତ ରୂପ ବର୍ଣ୍ଣନା ଛିଡ଼ିଲା ! ମାତ୍ର, ଆଜିକାଲି ସେପରି ମଡ଼ହର୍ଣ୍ଣି ବର୍ଣ୍ଣନା ଚଳିବ ନାହିଁ । ଇଂରାଜୀ ପଢ଼ୁଆ ପାଠକମାନଙ୍କ ମନୋରଞ୍ଜନ ନିମନ୍ତେ ଇଂରାଜୀ ଧରଣରେ ରୂପ ବର୍ଣ୍ଣନା ଆବଶ୍ୟକ । ଭାରତର କବିମାନେ ସୁନ୍ଦରୀ ସ୍ତ୍ରୀକୁ କହନ୍ତି, 'ଗଜେନ୍ଦ୍ରଗାମିନୀ', ଇଂରାଜ କହିବେ, ''ଛି ଛି । ତାହା ତ ନୁହେଁ ଘୋଡ଼ା ପରି ଯେ 'ଗେଲପ' ଚାଲି ପାରେ, ସେହି ସିନା ପରମା ସୁନ୍ଦରୀ ।'' ଆମ୍ଭେମାନେ ଦେଖୁଅଛୁଁ, ଆଜିକାଲି ପହିଲି ଆଷାଢ଼ର ମହାନଦୀର ବଢ଼ି ପାଣି ପରି ଏ ଦେଶକୁ ଇଂରାଜୀ ସଭ୍ୟତା ଯେପରି ମାଡ଼ି ଆସୁଅଛି, ସେଥିରେ ଖୁବ୍ ସମ୍ଭବ ନବ୍ୟସଭ୍ୟ ଶିକ୍ଷିତ ବାବୁମାନେ ଆପଣା ଆପଣା ଅଙ୍କଲକ୍ଷ୍ମୀମାନଙ୍କୁ 'ଗେଲପ' ଚାଲି ଶିଖାଇବା ନିମନ୍ତେ ଗୋଟିଏ ସବାର ନିଯୁକ୍ତ କରିବାକୁ ପ୍ରସ୍ତାବ କରି ବସିବେ । ସେ କଥା ଯାହାହେଉ, ଆମ୍ଭେମାନେ କହୁଁ ସୁନ୍ଦରୀମାନଙ୍କ ଚାଲିର ଉପମେୟ ବସ୍ତୁ ପୁରାଣ କୌଣସି କବି ଠିକ୍ କରି ପାରି ନାହାନ୍ତି । ବାଘର କରାନ୍ତୁ, ଘୋଡ଼ା ଆଉ ହାତୀମାନେ ଚାରି ଗୋଡ଼ରେ ଚାଲନ୍ତି, ମାତ୍ର ଆମ୍ଭମାନଙ୍କ ଚମ୍ପାର ଦୁଇଗୋଟି ଗୋଡ଼ରୁ ବେଶି ନାହିଁ । ସୁତରାଂ, ତାହାକୁ ଗଜେନ୍ଦ୍ରଗାମିନୀ ବା ଅଶ୍ୱବରଗାମିନୀ ବୋଲିବା ନିତାନ୍ତ ଅସଙ୍ଗତ ଅଟେ । ତେବେ ଚମ୍ପା ହାମୁଡ଼ି ହାମୁଡ଼ି ଚାଲିଲେ କିପରି ଦିଶନ୍ତା, ସେ କଥା ଅନୁମାନ କରି କହିବାକୁ ଆମ୍ଭେମାନେ ସମ୍ପୂର୍ଣ୍ଣ ଅକ୍ଷମ । ପୁଣି ପଦ ସଂଖ୍ୟା ସମ୍ବନ୍ଧରେ ମରାଳ ସହିତ ସାମଞ୍ଜସ୍ୟ ଥିବାରୁ ତାହାକୁ ମରାଳଗାମିନୀ ବୋଲିବା ଅସଙ୍ଗତ ନୁହେଁ । ଅଳଙ୍କାର ଶାସ୍ତ୍ରର ମର୍ଯ୍ୟାଦା ରକ୍ଷାପାଇଁ ଉପମାନ ଉପମେୟ ଠିକ୍ ରଖି କହିବାକୁ ଗଲେ, ମରାଳ କେତେବେଳେ ଖାଲି ଗୋଡ଼ରେ, କେତେବେଳେ ଡେଣା ମେଲାଇ ଛନ୍ଦି ଉଡ଼ା ଦେଲାପରି ଚାଲେ । ଆମ୍ଭମାନଙ୍କ ଚମ୍ପା ଗୋହିରୀ ମଝିରେ ମାଣିଆବନ୍ଦୀ ପଣତ କାନି ଉଡ଼ାଇ ଦୁଇ ଡେଣା ଦୋହଲାଇ ଚାଲିବା ବେଳେ ଠିକ ତାହାକୁ ମରାଳଗାମିନୀ ବୋଲିଯାଇ ପାରେ । ଚମ୍ପାର ବୟସ ଆମ୍ଭେମାନେ ଅନୁମାନ କରୁଁ ତିରିଶ ଲଗାଲଗି; ମାତ୍ର ତାହାର ନିଜ ମୁହଁରୁ ଅନେକ ଥର ଶୁଣା ଯାଇଅଛି, ସାଆନ୍ତାଣୀଙ୍କ ମଙ୍ଗଳକୃତ୍ୟ ଦିନ ତାହାର ଏକୋଇଶ ହୋଇଥିଲା । ଏ ହିସାବରେ ଚମ୍ପାର ବୟସ ଢେର କମ୍ । ଏପରି ଯୁବତୀର ରୂପ ବର୍ଣ୍ଣନା କରିବାକୁ ହେଲେ ଖୁବ୍ ସାବଧାନତା, ଖୁବ୍ ବିଜ୍ଞତା, ଖୁବ୍ ବହୁଦର୍ଶିତା ଆବଶ୍ୟକ । ବିଲାତି ଜିନିସାତ୍ ସହିତ ରୁଚି ନାମଧେୟ ପଦାର୍ଥ ବିଶେଷ ଏ ଦେଶକୁ ନୂଆ ଆମଦାନି ହୋଇଅଛି । ତାହା ପ୍ରତି ନଜର ରଖି ନ ଚଳିଲେ ତୁମର ପାଠ ସରିଲା ! ତୁମେ ମୂର୍ଖ ଅସଭ୍ୟ ଡଳେ ଗଲ ! ସେ ଦିନ ଉପେନ୍ଦ୍ର ଭଞ୍ଜଙ୍କ ଦୁର୍ଦ୍ଦଶା ଦେଖି ଆମ୍ଭେମାନେ ଏହି ଶିକ୍ଷା ପାଇଅଛୁଁ । ବାପ ମା ପୁଣ୍ୟବଳରୁ ସେ ବିଚାରା ଖସିଯାଇଅଛି, ନୋହିଲେ ଇସ୍ତକ ମହାପାତ୍ରଠାରୁ ମହାରାଜା ଯାଏଁ ଯେପରି ଚିଗ୍ଧ ଧରିଥିଲେ, ତାହା କପାଳରେ ଯେ କଣ ଘଟିଥାନ୍ତା, ଠାକୁରଙ୍କୁ ଜଣା । ଏପରି ମହାରଥୀର ତ ଏହି ଦଶା, ଆମ୍ଭେମାନେ ବା କେତେ କଡ଼ାରେ ଗଣ୍ଡାଏ ! 'ଗୁରୁଦେବ ପ୍ରସାଦେନ'

ଆମ୍ଭେମାନେ ସୁରୁଚି କବିତା କିଛି କିଛି ରଚନା କରିବାକୁ କ୍ଷମ । ଆପଣ ମନେ କରିବେ, ଏଇଟା ମିଛୁଆ, କିଛି ଜାଣେ ନାହିଁ । ଆଚ୍ଛା ନମୁନା ଦେଖନ୍ତୁ: —

"ଅର୍ଦ୍ଧ ବୟ ଉଲ୍ଲଙ୍ଗିନୀ, ମୃଦୁକହାସିନୀ,
ବସ୍ତ୍ରଶୂନ୍ୟା, ରକ୍ତହସ୍ତା, ତୁରଙ୍ଗଗାମିନୀ,

ମାର୍ଜାରନୟନା, ତାମ୍ରକେଶା, ଅଣ୍ଟାଭିଡ଼ା,
ସ୍ୱାଧୀନଭର୍ତ୍ତୃକା, ପାଞ୍ଚ ଜଣ ଆଗେ ଛିଡ଼ା,

ପରପୁରୁଷକୁ ଧରି ନର୍ତ୍ତକୀ ସୁନ୍ଦରୀ,
ଆହା ଆହା ଅପରୂପ ସ୍ୱର୍ଗବିଦ୍ୟାଧରୀ !"

ଆଉ କୁରୁଚିପୂର୍ଣ୍ଣ ଉପେନ୍ଦ୍ର ଭଞ୍ଜ ଶୁଣିବେ ?

'ଓଲଟ କଦଳୀ ପ୍ରାୟେ ଜାନୁ,
ନିତମ୍ବଯୁଗଳ ଜିଣି ସାନୁ ।'

ଆଉ ଲେଖିବାକୁ ସାହସ ଅଣ୍ଟିଲା ନାହିଁ । କେଜାଣି ବିଜୁଳି ପୁଣି ଚମକି ଉଠିବେ । ଆମ୍ଭେମାନେ ସୁରୁଚି କବିତା ଲେଖିବାକୁ ଜାଣୁ ସତ୍ୟ; ହେଲେ ଦିନ ଦୁଇ ପରେ ତୁଚ୍ଛା ମିଛ ଲେଖିବାକୁ ସାହସ ହେଉନାହିଁ । ଇତ୍ସ୍ତିକ ବାଳପାଠଶା ବାଳିକା ବିଦ୍ୟାଳୟର ପଞ୍ଚମ ଶ୍ରେଣୀର ଛାତ୍ରୀ ଶ୍ରୀମତୀ ଟେମୀ ବେହେରାଠାରୁ ବେଥୁନ ସ୍କୁଲର ଉଚ୍ଚତମ ଶ୍ରେଣୀର ଛାତ୍ରୀ ମିସ୍.ଏସ୍.ଏମ୍.ରେ—ଓରଫେ କୁମାରୀ ଶଶୀମୁଖୀ ରାୟ ପର୍ଯ୍ୟନ୍ତ ଦେଖିଲୁଁ । କେହି ସୁରୁଚିସମ୍ପନ୍ନ ସୌନ୍ଦର୍ଯ୍ୟ ବଢ଼ାଇ ବିରାଡ଼ି ଆଖି ପରି କରିପାରି ନାହାନ୍ତି । ଏଣେ ସତ ଲେଖିଲେ ଅସଭ୍ୟ ହେଲେ ଯିବୁଁ, ମିଛ କଥା ତ କଲମରୁ ବାହାରିବ ନାହିଁ, ଉପାୟ କଣ ? କାଳିଦାସେ ରଘୁବଂଶ ଲେଖିଲାବେଳେ କଲମ ଅଟଳ ହେବାରୁ କହି ବସିଲେ—

"ଅଥବା କୃତବାଗ୍‌ଦ୍ୱାରେ ବଂଶେଽସ୍ମିନ୍ ପୂର୍ବସୂରିଭିଃ
ମଣୌ ବଜ୍ରସମୁତ୍କୀର୍ଣ୍ଣେ ସୂତ୍ରସ୍ୟେବାସ୍ତି ମେ ଗତିଃ ।"

ଏବେ ତ ବାଟ ଦିଶିଗଲା; ନିଜେ କାଳିଦାସେ ରମ୍ଭା ରୂପ ବର୍ଣ୍ଣନାର ନମୂନା ରଖି ଯାଇଅଛନ୍ତି । ଦାସେ ବୋଇଲେ—

"ତନ୍ୱୀ ଶ୍ୟାମା ଶିଖରିଦଶନା ପକ୍ୱବିମ୍ବାଧରୋଷ୍ଠୀ ।"

ଅସ୍ୟାର୍ଥ—ତନୁ ବୋଲନ୍ତେ ଶରୀର, ରମ୍ଭାର ତନୁ ଥିବାରୁ ସେ ତନ୍ୱୀ । ଶ୍ୟାମା ବୋଲନ୍ତେ କାଳିଆ ନୁହେଁ, ଗୋରା ନୁହେଁ, ଶ୍ୟାମଳବର୍ଣ୍ଣ, ରମ୍ଭା ଶ୍ୟାମଳ ବର୍ଣ୍ଣା । ଶିଖରିଦଶନା—ଶିଖରୀ ବୋଲନ୍ତେ ପାହାଡ଼, ଦଶନ ବୋଲନ୍ତେ ଦାନ୍ତ; ରମ୍ଭାର ଛାମୁଦାନ୍ତ ଦୁଇଗୋଟି ବାହାଡ଼ା ହୋଇ ଗୋଟାକ ଉପରେ ଗୋଟିଏ ଚଢ଼ିଯାଇ ପର୍ବତ ଶୃଙ୍ଗ ପରି ଟେକି ରହିଥିବାରୁ ସେ ଶିଖରିଦଶନା । ଆଉ ପକ୍ୱବିମ୍ବାଧରୋଷ୍ଠୀ—ପକ୍ୱ ବୋଲନ୍ତେ ପାଚିଲା, ବିମ୍ବ ବୋଲନ୍ତେ କୁଆଁରିକୋଳି, ଅଧରଓଷ୍ଠ ବୋଲନ୍ତେ ତଳଉପର ଓଠ, ଅର୍ଥାତ୍ ପାନ ବୋଳରେ ରମ୍ଭାର ଦୁଇ ଓଠ ଲାଲ ହୋଇ ଯିବାରୁ ସେ ପକ୍ୱବିମ୍ବାଧରୋଷ୍ଠୀ, ଇତ୍ୟାଦି ।

ପୁଣି ଦାସେ --"ମଧ୍ୟେ କ୍ଷାମା—ସ୍ତୋକନମ୍ରା—" ପ୍ରଭୃତି ଢେର କଥା କହିଅଛନ୍ତି । ମାତ୍ର ରମ୍ଭାର ଯେ ସବୁ ଅଙ୍ଗ ବସ୍ତ୍ରାବୃତ; ଅର୍ଥାତ୍ ଆମ୍ଭେମାନେ ଯେ ସବୁ ଅଙ୍ଗ ଦେଖି ନାହୁଁ, ସେ ସମସ୍ତ ଅଙ୍ଗ ବର୍ଣ୍ଣନା କରିବାକୁ ନିତାନ୍ତ ନାରାଜ । ଦାସେ ତ ଦାସେ, 'ଯାହା ନ ଦେଖିଛୁଁ ଦୁଇ ନୟନେ, ତାହା ନ ଲେଖିବୁଁ ଗୁରୁବଚନେ' । ତେବେ ଦେଖା ସ୍ଥାନଗୁଡ଼ିକ ବର୍ଣ୍ଣନ କରିବାକୁ ଛାଡ଼ିବା ପାତ୍ର ଆମ୍ଭେମାନେ ନୋହୁଁ । ଯଥା—

"କଜ୍ଜଳ ପୂରିତ ଲୋଚନ ଭାଲେ,
ଗୁଣ୍ଡିମିଶା ଖିଲ୍ଲୀ ପୂରିତ ଗାଲେ । ୧ ।

ତୈଳହରିଦ୍ରା ବୋଳିତ ଦେହେ,
କୁକ୍କୁରୀବ ଶୀଘ୍ରଂ ଧାବତି ଗେହେ । ୨ ।

ଷୋଳହାଣ୍ଡିଶାଢ଼ୀବସ୍ତ୍ରଚକଚକ୍କେ,
ଥୋପଭଉଡ଼ାକୁଡ଼ା ଶୋଭିତ ଉଚ୍ଚେ । ୩ ।

ଦୁମୁ ଦୁମୁ ଗୁମ୍ ଗୁମ୍ ଚଲନଂ ତସ୍ୟା,
ଚଳନ୍ତି ବା ଧାବନ୍ତି ବିଷମସମସ୍ୟା । ୪ ।

କଙ୍କଣ ଚୁଡ଼ି ହସ୍ତେ ବିରାଜେ,
ଝମ ଝମ ଝମ ଝୁଣ୍ଟିଆ ବାଜେ । ୫ ।

ସା ଯଦା ଚଳନ୍ତି ଗୋହିରୀ ଦାଣ୍ଡେ,
ହସ୍ତ ହଲାଇ ଗୃଣ୍ଡେ ଗୃଣ୍ଡେ । ୬ ।

ଦେଖି ଶଙ୍କିଯାନ୍ତି ଗ୍ରାମ୍ୟ ଲୋକେ,
ଡର ମର ଲୋଚଯାନ୍ତି ଥୋକେ । ୭ ।

ଇତି ରୂପବର୍ଣ୍ଣନଂ ପଜ୍ଝଟି ଛନ୍ଦେ,
ଅତଃ ଗୁଣ ବର୍ଣ୍ଣ୍ୟନ୍ତେ ବିବିଧପ୍ରବନ୍ଧେ । ୮ ।"

---

– ୭ –

## ବୁଢ଼ୀ ମଙ୍ଗଳା

"ଯା ଦେବୀ ବୃକ୍ଷମୂଳେଷୁ ଶିଳାରୂପେଣ ସଂସ୍ଥିତା;
ନମସ୍ତସ୍ୟୈ ନମସ୍ତସ୍ୟୈ ନମସ୍ତସ୍ୟୈ ନମୋନମଃ ।
ମୃତ୍ତିକାଶ୍ୱଗଜାରୂଢ଼ା ବନ୍ଧ୍ୟାସୁଃ ପୁତ୍ରଦାୟିନୀ;
ବାଞ୍ଛା ସିଦ୍ଧାୟିଣୀ ଦେବୀ ନାରସୁଣୀ ନମୋସ୍ତୁତେ ।"

ଅନୁରାଗଦିଗର ପଶ୍ଚିମ କୋଣ ଗାଆଁ ଭିତରୁ ହାଟକୁ ଯିବା ବାଟର ଡାହାଣ ହାତ ପାଖରେ ଗୋଟିଏ ଭାରି ବରଗଛ ଅଛି । ଗଛ ମୂଳର ଚିହ୍ନ ନାହିଁ, କୋଡ଼ିଏ ତିରିଶ ଟିଗାଟା ଓର ଚଡ଼ ଡାଳଗୁଡ଼ାକ ପରସ୍ପର ଛନ୍ଦାଛନ୍ଦି ହୋଇ ଗଛଟି ପ୍ରାୟ ବାର ଟଙ୍କର ଭୂଇଁ ଜମି ମାଡ଼ି ବସିଅଛି । ସାନ ସାନ ଡାଳ ଓ ପତ୍ରଗୁଡ଼ାକ ଏପରି ନିବିଡ଼ ହୋଇଅଛି ଯେ, ଖରା ଟେଜ ମୂଳକୁ ବାଜେ ନାହିଁ । ଗଛଟି ବହୁକାଳର । ପୁରୁଖା ପୁରୁଖା ଲୋକମାନେ କହନ୍ତି, ଏଇଟି ସତ୍ୟଯୁଗର ଠାକୁରାଣୀ ଗଛ । ସେମାନେ ପିଲାକାଳରୁ ଦେଖି ଆସୁଛନ୍ତି, ଏହା ବଢ଼ିବାକୁ କି ଛୁଡ଼ିବାକୁ ନାହିଁ । ଗଲା ସାତଅଙ୍କ ତୁଳାମାସ ଉଆଁସ ଦିନ ଭାରି ଗୋଟାଏ ତୋଫାନ ହୋଇଥିଲା, ଗାଆଁର ସମସ୍ତ ସଜନା ଗଛ ଏବଂ କଦଳୀଗଛ ପ୍ରଭୃତି ଉପୁଡ଼ି-ଗଲା । ଏ ଗଛରୁ ଗୋଟିଏ ପତ୍ର ମଧ୍ୟ ଝଡ଼ିଲା ନାହିଁ । ଠାକୁରାଣୀ ମହିମା ।

ମଝିରେ ବେଣିଗୋଟି ଓର ଗଛ ପରି ଛୁଡ଼ା ହୋଇଅଛି, ତାହା ମୂଳରେ ଗ୍ରାମଦେବତୀଙ୍କ ଆସ୍ଥାନ । ଠାକୁରାଣୀଙ୍କ ନାମ ବୁଢ଼ୀ ମଙ୍ଗଳା । ମଙ୍ଗଳାଙ୍କର ଅଢ଼େଇମାଣ ଦେବୋତ୍ତର ଜମି ଅଛି । ବାର ଗୁଣ୍ଠ ଆଠବିଶ୍ୱା ବିଜେ ଆସ୍ଥାନ ତଳ, ବାକି ଦୁଇମାଣ ଜଳଜମି ଦେହୁରୀ ଭୋଗକରେ ଓ ଠାକୁରାଣୀଙ୍କ ପୂଜା କରେ । ଗ୍ରାମରେ ବିଶେଷରେ ମାଇକିନିଆମାନଙ୍କ ମଧ୍ୟରେ ଦେଉଣୀର ଭାରି ମହିମା । ଠାକୁରାଣୀ ସ୍ୱପ୍ନରେ ଦେଉଣୀକୁ ଦେଖା ଦିଅନ୍ତି; ସବୁ କଥା କହନ୍ତି । କାହାର ବାଡ଼ରେ କଦଳୀଟାଏ, ବାଇଗଣଟାଏ, କଖାରୁଟାଏ ଫଳିଲେ ଆଗ ଫଳଟା ଠାକୁରାଣୀଙ୍କୁ ନ ଦେଲେ ସେ ଖାଏ ନାହିଁ ।

ମଣ୍ଡପଟି ପକ୍‌କାର ତିଆରି । ମଝିରେ ଠାକୁରାଣୀ-ଙ୍କର ନିଜମୂର୍ତ୍ତି । ମୂର୍ତ୍ତିଟି ଖୁବ୍ ବଡ଼, ଓଜନରେ ଦଶ ପସୁରିରୁ ଊଣା ହେବ ନାହିଁ, ଦୁଇ ଗୃହସ୍ଥ ହଲାଇବାଟା ଶିଳ ମିଶିଲେ ଯେତେ ବଡ଼ ତହିଁରୁ ବଳପଡ଼ିବ । ଗୋଟାଯାକ ଚାରି ଆଙ୍ଗୁଳ ବହଳ ସିନ୍ଦୂର ବୋଳା । ବଡ଼ଠାକୁରାଣୀଙ୍କୁ ଘେରି ଅଉ ଚାରିଗୋଟି ସାନ ମୂର୍ତ୍ତି ଅଛନ୍ତି । ମଣ୍ଡପ ଡାହାଣ ଭାଗର କିଛି ଦୂରରେ ଭଙ୍ଗା, ଦଦରା ଦଦ୍ଦ ମାଟିର ହାତୀ, ଘୋଡ଼ା ପଣେ କି ଦୁଇ ପଣ ଜମା ହୋଇ ଅଛି । ଠାକୁରାଣୀଙ୍କୁ ମାଟିର ହାତୀ ବା ଘୋଡ଼ା ଚଢ଼ିବାକୁ ଦେଲେ ପିଲାମାନଙ୍କର ପୀଡ଼ା

ଗୁଡ଼ଯାଏ । ବଡ଼ ବଡ଼ ଲୋକଙ୍କର ପୀଡ଼ା ଗୁଡ଼ବାର ମଧ୍ୟ ଦେଖା ଓ ଶୁଣାଅଛୁ । ଏଥିସକାଶେ ଠାକୁରାଣୀଙ୍କ ପାଗା କେବେଁ ଖାଲିଥାଏ ନାହିଁ । ଦେବୀଙ୍କର ପୂଜା ପ୍ରତିଦିନ ହୁଏ ନାହିଁ । ଶୁଖିଲାପତ୍ର ଆଉ ଅଳିଆରେ ଢାଙ୍କି ହୋଇ ଥାଆନ୍ତି । ବିଭା, ପୁଆଣିଘର, କାହାରି ପୁଅ ଝିଅର ବେଧାମ୍ ଆରମ୍ଭ ହେଲେ କମ୍ବା କାହାର ମାନସିକ ଥିଲେ ପୂଜା ହୁଏ । ଗାଆଁରେ ବାଡ଼ ପଡ଼ିଲେ ପୂଜାର ଧୂମ ଲାଗିଯାଏ । କବିରାଣୀମାନଙ୍କ ପରି ମାସକୁ ମାସ ଠାକୁରାଣୀଙ୍କର ଆୟ ନାହିଁ । ବିପଦ ପଡ଼ିଲେ ଡାକ୍ତର ଆଉ ଓକିଲଙ୍କ ଦୁଆରପରି ଠାକୁରାଣୀଙ୍କ ଆସ୍ଥାନ ଚମକି ଉଠେ, ଗ୍ରାମର ଲୋକଙ୍କ ଭେଦା ଟଇସାରେ ପୂଜାଖର୍ଚ୍ଚ ଚଳେ । ଠାକୁରାଣୀ ଭାରି ପ୍ରତ୍ୟକ୍ଷ ଦେବତା, ଏହାଙ୍କ ଅନୁଗ୍ରହରୁ ଗ୍ରାମରେ ଆପଦ ବିପଦ ଘଟେ ନାହିଁ । କେବେ କେବେ ମାଉସୀ ବୁଢ଼ୀ ପ୍ରବଳ ହୋଇ ଗ୍ରାମରେ ପଶିଯାଏ, ମାତ୍ର ଭଲକରି ପୂଜା ଦେଲେ ଶଏ ପଞ୍ଚାଶ ଜଣରୁ ବେଶି ନେଇ ପାରେ ନାହିଁ, ଗୁଡ଼ ପଳାଏ ।

ଆପଣ ସଭ୍ୟ ପାଠକ, ଏକଥା ଶୁଣି ହସିବେ । ବିଜ୍ଞାନଶାସ୍ତ୍ର ଯୋଖି ଦେଇ କହିବେ, ରୋଗ ହେଲେ ଔଷଧ ଖାଅ, ଠାକୁରାଣୀଙ୍କ ପୂଜା କଣ ? ଆଚ୍ଛା, ଆମ୍ଭେମାନେ ପଚାରୁଁ, ବଙ୍ଗଳା ଏପିଡେମିକ ଫିଭର ଓ ବୋମ୍ବେ ବିଶେଷ ପୂଜା ପାଇବାର ଏହା ଗୋଟିଏ ବିଶେଷ କାରଣ ଅଟେ । କେଉଁ କେଉଁ ବା କେତେଜଣ ବନ୍ଧ୍ୟା ଦେବୀଙ୍କ ବରରୁ ପୁତ୍ରଲାଭ କରିଅଛନ୍ତି ସେଥିର ବିଶେଷ ତାବ ଦେଇ ପାରିବୁ ନାହିଁ; ମାତ୍ର ଆମ୍ଭେମାନେ ନିର୍ମାଲ୍ୟ ଛୁଇଁ କହିପାରୁ, ଗ୍ରାମରେ ଯେଉଁ ସ୍ତ୍ରୀମାନେ ସନ୍ତାନବତୀ ହୋଇଅଛନ୍ତି, ପ୍ରଥମ ବିବାହ ସମୟରେ ସେମାନେ ବନ୍ଧ୍ୟା ଥିଲେ । ପୂର୍ବେ ବୋଲିଅଛୁ, ଘାଟିକୁ ଯିବାପାଇଁ ଠାକୁରାଣୀଙ୍କ ଆଗରେ ଗୋଟିଏ ବାଟ ଅଛି । ଗ୍ରାମର ମାଇକିନିଆମାନେ ସେହି ବାଟେ ଯିବା ଆସିବା କରନ୍ତି । ଗୋଟିଏ ସ୍ତ୍ରୀ— ବୟସ ଅନ୍ଦାଜ ତିରିଶ ହେବ, ପ୍ରତିଦିନ ସ୍ନାନ କରି ଆସି କାଖରୁ ମାଠିଆଟି ଓହ୍ଲାଇ ଠାକୁରାଣୀଙ୍କ ଆଗରେ ଥୋଇ ଦିଏ, ପହିଁଆରେ ଦେବୀଙ୍କ ଆଗଟି ପହିଁଚଦେଇ, ମାଠିଆରୁ ଟୋକେ ପାଣି ନେଇ ଠାକୁରାଣୀ ଗଛ ମୂଳରେ ଦିଏ ଓ ଭୂଇଁରେ ମୁଣ୍ଡିଆ ମାରି ଗୁନ ଗୁନ କଣ ଜଣାଏ ଏବଂ ପ୍ରତିଦିନ ସଞ୍ଜବେଳେ ଗୋଟିଏ ବଳିତା ଜାଳିଆଣି ଠାକୁରାଣୀ ସ୍ଥାନରେ ସଞ୍ଜ ଦିଏ ଏବଂ କଣ ପ୍ରାର୍ଥନା କରେ । ଏହିପରି କରୁଥିବାର ଛ'ମାସ ହେଲା ଲୋକମାନେ ଦେଖି ଆସୁଛନ୍ତି । ତାହା ମନର କଥା କେହି ଜାଣେ ନାହିଁ, କାରଣ ସେ ସ୍ତ୍ରୀଟି ବଡ଼ ଲାଜକୁଳୀ, ସବୁବେଳେ ଓଢ଼ଣା ପକାଇ ଥାଏ, କାହାରି ସହିତ ମିଶେ ନାହିଁ, କାହାରି ସହିତ କଥା କହେ ନାହିଁ ।

ଗ୍ରାମର ଗୋରୁଜଗା ପିଲାମାନେ ଖରାବେଳେ ପଡ଼ିଆରେ ଗୋରୁ ଛାଡ଼ିଦେଇ ଠାକୁରାଣୀଙ୍କ ନିକଟ ଗଛମୂଳରେ ଖେଳନ୍ତି । ହଠାତ୍ ଖେଳ ଛାଡ଼ି ପାଞ୍ଚଣ ଧରି ସମସ୍ତେ ଯେଉଁ ଛିଡ଼ା ହୋଇଗଲେ, ସେମାନଙ୍କ ଦେଖାଦେଖି ଗ୍ରାମର ୧୦।୧୫ଜଣ ଲୋକ ରୁଣ୍ଡ ହୋଇ-ଗଲେଣି, କାଲି ତ ପୂଜା ହୋଇ ନାହିଁ, ଠାକୁରାଣୀଙ୍କ-ଠାରେ ପୂଜା ସରଞ୍ଜାମ କାହୁଁ ପଡ଼ିଲା ? ମନ୍ଦାର ଫୁଲ, ଶତବର୍ଗ ଫୁଲର ମାଳ, ଖଇ, ଉଖୁଡ଼ା ଗୁଡ଼ିଆଡ଼େ ବୁଣି ପଡ଼ିଅଛି, ଠାକୁରାଣୀଙ୍କ ଦେହରେ ତଟକା ହଳଦୀ ଲାଗିଅଛି । ଠାକୁରାଣୀ ପୂଜା ଗ୍ରାମ ମଧ୍ୟରେ ଗୋଟିଏ ବିଶେଷ ଘଟଣା । ଭେଦା ହୁଏ, ବାଇଦ ବାଜେ, ଗ୍ରାମର ସମସ୍ତେ ଦେଖିବାକୁ ଆସନ୍ତି । ପୂଜା ସନ୍ଧ୍ୟା ସମୟରେ ହୁଏ, ମାନସିକ ପୂଜା ମଧ୍ୟ ସେହିପରି ହୁଏ । କାହିଁ, କାଲି ତ ବାଇଦ ବାଜି ନାହିଁ, ସଞ୍ଜବେଳେ ପୂଜା ହୋଇ ନାହିଁ, ଏସବୁ କାହୁଁ ଆଇଲା ? ଗୋଟାଏ ପିଲା ଡାକାପଡ଼ି କହିଲା, 'ଏଟା କଣ ଏଟା କଣ ?' ସମସ୍ତେ ଢାଳିପାଇ ଦେଖିଲେ, ଠାକୁରାଣୀ ପଛରେ ଭାରି ଗୋଟାଏ ବିଲ । ବିଲ ମୁହଁ ଠାକୁରାଣୀ ମଣ୍ଡପଠାରୁ ତିନି ହାତ ଦୂରରେ । ତାହାର ମୁହଁଟା ଖୁବ୍ ବଡ଼, ଜଣେ ମନୁଷ୍ୟ ଯାଇ ବସିପାରେ । ଗାଁ ଯାକ ଏକଥା ମେଳିଗଲା ।

ଲୋକମାନେ ଦେଖିବାକୁ ଧାଇଁଲେ, ମଙ୍ଗରାଜେ ମଧ ଶୁଣିପାରି ଧାଇଁ ଆଇଲେ । ନାନା କଥା ହୋଇ ଶେଷରେ ସ୍ଥିର ହେଲା, କୌଣସି ଭକ୍ତର କଷ୍ଟ ଫେଡ଼ିବା ନିମନ୍ତେ ଠାକୁରାଣୀ କାଲି ନିଶାଭାଗ ରାତିରେ ବିଜେ ହୋଇଥିଲେ । ବିଲଟା ତାଙ୍କ ବାଘ ଖୋଳି ପକାଇଅଛି । ମଙ୍ଗରାଜେ କହିଲେ, "ଏହି ବିଲ ମଧରେ ବର୍ତ୍ତମାନ ବାଘ ଥିବାର ଜଣା ଯାଉଅଛି ।" ବାଘ ନାମ ଶୁଣି ସମସ୍ତେ ପଳାଇଲେ । ଶେଷରେ ମଙ୍ଗରାଜେ ଚମ୍ପା ମୁହଁକୁ ଚାହିଁ ହସିଲେ । ବୋଧହୁଏ, ଏହା କୌଣସି କାର୍ଯ୍ୟର ସାଙ୍କେତିକ ଚିହ୍ନ । ତହିଁ ଆରଦିନ ଆଉ କେହି ବିଲ ଦେଖିଲେ ନାହିଁ । ଏହି କଥାଟା ଗ୍ରାମ ମଧରେ ଅନେକ ଦିନ ପର୍ଯ୍ୟନ୍ତ ଆଲୋଚନା ହେଲା । ଖିମା ମା ଭଣ୍ଡାରୁଣୀ କହିଲା, "ମୋର ବୟସ ସାତଗଣ୍ଡା କି ଦେଡ଼ପଣ କି ଚାରିପଣ ହେଲାଣି, ଗ୍ରାମରେ ଯେତେ ବୁଢ଼ା ଦେଖୁଛ, ମୁଁ ସମସ୍ତଙ୍କୁ ବିଭା କରାଇଅଛି, ସମସ୍ତେ ମୋ ଆଗରେ ପିଲା । ମୁଁ ନିଜ ଆଖିରେ ଠାକୁରାଣୀଙ୍କୁ ଏଥରକୁ ଲଗାଇ ଚାରି ଥର ଦେଖିଲାଣି । କାଲି ନିଶାଭାଗ ରାତିରେ ବାହାରକୁ ଉଠିଥିଲି, ଗୋହିରୀ ମଝିରୁ ଝୁଣାଗନ୍ଧ ଆସିଲା, ଝମର ଝମର ଶୁଭିଲା । ଅନାଇଲି, ବାଘ ଉପରେ ବସି ଠାକୁରାଣୀ ବିଜେ ହେଉଅଛନ୍ତି । ବାପ ରେ ! ସେ ବାଘଟା କେଡ଼େ ! ମୁଁ କେତେ ବାଘ ଦେଖିଛି, ଏଡ଼େ ବଡ଼ ବାଘ କାହିଁ ଦେଖିବାର ନାହିଁ । ତାର ଲମ୍ବଟା ସାତ କି ଆଠ ହାତ ହେବ । ମୁଣ୍ଡଟା ବଡ଼ ପଣ୍ଡା ମୁଣ୍ଡ ପରି ହିପଣ୍ଡ କଳା । ବାଘଟା ମୋ ଆଡ଼କୁ ତରାଟି ଚାହିଁଲା । ମୁଁ ତ ଡରରେ ଡାଟି କିଳି ପକାଇଲି ।" ଅଧରାତି ବେଳେ ଦାଣ୍ଡରେ ବାଘ ଚାଲିବା ଶବ୍ଦ ଶୁଣିଥିବାର ଆହୁରି ମଧ ଚାରି ପାଞ୍ଚ ଜଣ ବୁଢ଼ା ମନୁଷ୍ୟ ସାକ୍ଷ୍ୟ ଦେଲେ । ସକାଳେ ବାଘ ଖୋଜ ଚମ୍ପା ଚନ୍ଦ୍ରୀ ଦେଖିଥିବାର ଦୃଢ଼ରୂପେ କହିଲା । ଠାକୁରାଣୀ ଆସି ଥିବାର ନିଃସନ୍ଦେହରେ ସ୍ଥିର ହେଲା ।

---

## –୮–

## ଜମିଦାର ସେଖ୍ ଦିଲ୍‌ଦାର ମିଆଁ

ସେଖ୍ କେରାମତ ଅଲ୍ଲିଙ୍କ ଘର ପ୍ରଥମେ ଆରା ଜିଲ୍ଲାରେ ଥିଲା, ବର୍ତ୍ତମାନ ଜିଲ୍ଲା ମେଦିନୀପୁର । ସେଖ୍ କେରାମତ୍ ଅଲ୍ଲିଙ୍କୁ ସମସ୍ତେ ଆଲମିଆଁ ବୋଲି ଡାକନ୍ତି, ଆମ୍ଭେମାନେ ସେହି ନାମ ଲେଖିବୁଁ । ଆଲମିଆଁ ପ୍ରଥମେ ଘୋଡ଼ାର ସୌଦାଗର ଥିଲେ । ପଶ୍ଚିମ ହରିହର ଛତର ମେଳାରୁ ଘୋଡ଼ା କିଣି ଆଣି ବଙ୍ଗଳା, ଓଡ଼ିଶାରେ ବିକି କରିବା ତାଙ୍କର ବ୍ୟବସାୟ ଥିଲା । ମେଦିନୀପୁର ଜିଲ୍ଲାର ବଡ଼ ସାହେବଙ୍କୁ ଗୋଟାଏ ଘୋଡ଼ା ବିକିଥିଲେ, ସେ ଘୋଡ଼ାଟି ଭଲ ପଡ଼ିବାରୁ ସାହେବ ମଉସୁଫ ଭାରି ଖୁସି ହୋଇ ମିଆଁଙ୍କ ବ୍ୟବସାୟ ଓ ରୋଜଗାର ବିଷୟରେ ଅନେକ କଥା ମେହେରବାନି କରି ପଚାରିଲେ ଏବଂ ସୌଦାଗରୀରୁ ବିଶେଷ ଲାଭ ନ ଥିବାର ଶୁଣି ତାଙ୍କୁ ଗୋଟିଏ ଚାକିରୀ ଦେବାକୁ ଇଚ୍ଛା କରି, ସେ (ଆଲମିଆଁ) ଲେଖାପଢ଼ା ଜାଣନ୍ତି କି ନାହିଁ ପଚାରିଲେ । ମିଆଁ କହିଲେ, "ହଜୁର, ମୁଁ ପାରସି ଜାଣେ, କାଗଜ କଲମ ଦେଉନ୍ତୁ, ମୋ ନାମ ପୁରା ଲେଖିଦେବି ।" ପୂର୍ବେ ପାର୍ସିବିଦ୍ୟାର ଭାରି ଆଦର ଥିଲା । ଅଦାଲତର ଚଳିତ ବିଦ୍ୟା ଥିଲା ପାର୍ସି । ଭାରତ ଭାଗ୍ୟରେ ବିଧାତା ଏହିପରି ଲେଖନୀ ମୁନ ମାରିଛନ୍ତି; କାଲି ଥିଲା ପାର୍ସି ଆଜି ହେଲା ଇଂରାଜୀ, ଏ ଉତ୍ତରେ କିଏ ତାଙ୍କୁ ଜଣା; ମାତ୍ର ଏ କଥା ନିଶ୍ଚିତ, ଦେବନାଗରୀ କପାଳ ପଥର ତଳେ । ଇଂରାଜୀ ପଣ୍ଡିତମାନେ କହନ୍ତି, 'ସଂସ୍କୃତ ମୃତଭାଷା ।' ଆମ୍ଭେମାନେ ସେ କଥା ଆଉ ଟିକିଏ ସଫା କରି ବୋଲୁଅଛୁଁ, ଏହା ଦରମଲା ଲୋକମାନଙ୍କ ଭାଷା । ସେ କଥା ଥାଉ, ସାହେବ ମଉସୁଫଙ୍କ ମେହେରବାନିରୁ ମିଆଁ ସାହେବ ଗୋଟିଏ ଚାକିରି ପାଇଲେ, ସେ ଚାକିରିର ନାମ ଥାନାଦାରୋଗାଇ । ମିଆଁ ସାହେବ ନାନା ବିଘ୍ନରେ ଏବଂ ନିର୍ବିଘ୍ନରେ ତିରିଶ ବର୍ଷ ପର୍ଯ୍ୟନ୍ତ ଚାକିରି କରି ଅନେକ ବିଷୟ ସମ୍ପତ୍ତି ଅର୍ଜ୍ଜନ କରି ଯାଇଥିଲେ ।

ଘରି, ବାଗବଗିଚ୍ଛ, ଘର ଆସବାବମାନ ଗ୍ରୁଡ଼ି ଜମିଦାରୀ ତାଲୁକ ଗୃହଗୋଟା । ପୂର୍ବେ ଓଡ଼ିଶା ଜମିଦାରୀ ସବୁ କଲିକତାରେ ନିଲାମ ହେଉଥିଲା । ମିଆଁ ଥରେ କଲିକତାକୁ ଗୋଟାଏ ଖୁଣ୍ଟି ମାମଲା ଚଲାଣ ଦେବା ପାଇ ତାଲୁକେ ଫତେପୁର ସରଷଣ୍ଡ ନିଲାମରେ କିଣିଥିଲେ । ଆପଣଙ୍କ ମନରେ ଆମ୍ଭମାନଙ୍କ କଥା ପ୍ରତି ସନ୍ଦେହ ହୋଇପାରେ । ଥାନା ଦାରୋଗା ବର୍ତ୍ତମାନ ବେଙ୍ଗଲ ପୋଲିସରେ ଇନ୍‌ସ୍ପେକ୍ଟର ତ ? ଏତେ ଟଙ୍କା କାହୁଁ ଅର୍ଜିଲା ? ମାତ୍ର ଆପଣ ଆଖି ବୁଜି ପଢ଼ିଯାଆନ୍ତୁ, ଆମ୍ଭମାନଙ୍କ କଥାରେ ପଦେ ମିଛ ନାହିଁ, ନିର୍ମଳ ସତ । ଏ କଥା ସମସ୍ତେ ଜାଣନ୍ତି, ଜଣେ ବିପୋଟି ଗୋବିନ୍ଦ ପଣ୍ଡା ବ୍ରାହ୍ମଣର ଗୋଟିଏ ମକଦ୍ଦମା ଡିଗ୍ରୀ କରିଦେବାରୁ ପଣ୍ଡେ କଲ୍ୟାଣ କରି କହିଥିଲେ, "ଦୋପଟି ବାବୁ, ତୁମ୍ଭେ ଦାରୋଗା ହୁଅ ।" ଆପଣ କଥାଟାର ହାଲ ବୁଝିଲେଟି ? ବୁଦ୍ଧିମାନ୍ ଲୋକେ ଠାରରୁ ସବୁ ବୁଝି ଯା'ନ୍ତି । କଲିକତାର ପ୍ରସିଦ୍ଧ ଧନୀ ମୋତି ଶୀଲ ପ୍ରଥମେ ଖାଲି ବୋତଲ ବିକୁଥିଲେ, ଜଣେ ଶୁଣ୍ଢ଼ୀ ବିଳାପ କରି କହିଥିଲା, 'ମୋତି ଶୀଲ ଭୁଚ୍ଛ ବୋତଲ ବିକି ଜୋଡ଼ପତି, ମୁଁ ପୂରା ବୋତଲ ବିକି କଙ୍ଗାଳୀ ।' ଆମ୍ଭମାନଙ୍କର ଭୟ,କୌଣସି ବି.ଏ., ଏମ୍ ଏ. ପାଶିଆବାବୁ ଆଲି ମିଆଁଙ୍କ କଥା ଶୁଣି ଶୁଣ୍ଢ଼ୀ ପରି ବିଳାପ କରିବେ, 'ହାୟ ହାୟ, ମିଆଁ ଓଲଟା କଲମରେ ଭୁଚ୍ଛା ନାମଟା ଲେଖି ଜମିଦାର, ଆମ୍ଭେ ଧଳଖ କଲମରେ ଲମ୍ବା ଲମ୍ବା ଏସେ ଲେଖି ଖାଇବାକୁ ପାଉ ନାହୁଁ ।' କଥାଟା କଣ ବାବୁ ଜାଣନ୍ତି, "ଭାଗ୍ୟଂ ଫଳତି ସର୍ବତ୍ର, ନ ବିଦ୍ୟା ନ ଚ ପୌରୁଷଂ ।"

ଆଲିମିଆଁଙ୍କର ଗୋଟିଏ ମାତ୍ର ପୁତ୍ର, ନାମ ଶେଖ୍ ଦିଲ୍‌ଦାର ମିଆଁ ଓରଫ ଚ୍ଛୋଟମିଆଁ । ପୁଅକୁ ଲାଏକ୍ ଏବଂ ଇଲମ୍‌ଦାର କରିବା ସକାଶେ ଦାରୋଗା ସାହେବଙ୍କର କିଛିମାତ୍ର ଗଫଲାମୃତି ନ ଥିଲା । ପାରସି ପଢ଼ାଇବା ନିମନ୍ତେ ଅନେକ ଦିନ ପର୍ଯ୍ୟନ୍ତ ଘରେ ଆଖୁନ୍‌ଜୀ ନିଯୁକ୍ତ ଥିଲେ । ଛୋଟମିଆଁ ପନ୍ଦରବର୍ଷ ମଧ୍ୟରେ ପାରସ୍ୟ ଭାଷାର ବିଲକୁଲ ବର୍ଣ୍ଣମାଳା ଓ ବନାନ ଶିଖି ପକାଇଥିଲେ । ଛୋଟମିଆଁଙ୍କର ବାଇଶ ବରଷ ପୂରି ଗଲାଣି, ଏତେବେଳେ ଆଖୁନ୍‌ଜୀ ଆଗରେ ବସି ଝୁଲିଝୁଲି କିତାପ ପଢ଼ିଲେ ଲୋକେ କଣ ବୋଲିବେ ? ପୁଣି ଦୋସ୍ତମାନେ ଆସି ଅକାରଣେ ବସି ରହନ୍ତି, ସେମାନଙ୍କର କଷ୍ଟ ଦେଖିବା ମିଆଁଙ୍କର ବରଦାସ୍ତ ହେଉ ନ ଥିଲା । ବିଶେଷରେ ଆଖୁନ୍‌ଜୀ କେବେ କେବେ ବୋଲନ୍ତି, "ନିଶା ଖାନେସେ ଆଦ୍‌ମୀ ଜାନୁଅର ହୋ ଯାତା ହୈ ।" ଏକଥା ନିହାଏତ୍ତ ବେବରଦାସ୍ତ ।

ଦିନେ ଓପରଓଳି ଆଖୁନ୍‌ଜୀ ସାହେବ ଖାନା ଖାଇ ଚିତ୍ ହୋଇ ଶୋଇଥିଲେ, କେଉଁଟମାନେ ଯେପରି ଚାଗ କାଟିବା ସକାଶେ ଛଣପଟ ବିଡ଼ା ମେଲାଇ ଦେଇଥାନ୍ତି; ସେହିପରି ବିଡ଼ାଏ ପାଚିଲା ଦାଢ଼ି ମିଆଁଙ୍କ ବେକ ଏବଂ ଗୁଣ୍ଡିକୁ ଢୋଡ଼ାଇ ପକାଇଥିଲା । ଗୋଟାଏ ଜଳନ୍ତା ଟିକିଆ ଦାଢ଼ି ମଝିରେ ପଡ଼ି ପଡ଼ି ପଡ଼ି କରି ପୋଡ଼ି ଗୁଣ୍ଡିରେ ଲାଗିବାରୁ ଆଖୁନ୍‌ଜୀ ଧଡ଼ପଡ଼ ହୋଇ ଉଠିପଡ଼ି, "ତୋବା, ତୋବା" କହି ଦାଢ଼ି ଝାଡ଼ିବାକୁ ଲାଗିଲେ । ଟିକିଆ ଖଣ୍ଡ ଭାଙ୍ଗି ନିଆଁ ଝୁଲିସବୁ ଲୁଗାପଟାଯାକ ବୁଣି ପଡ଼ିଲା । ପାଚିଲା ଦାଢ଼ି ଗୁଡ଼ାକ ହୁଣ୍ଡବାଣ ପରି ଗୃହଆଡ଼େ ଉଡ଼ୁଥାଏ । "ଆ ମେରି ତୋବା ରେ, ଆ ମେରି ତୋବା ରେ" କହି ମିଆଁ ଘରଯାକ ଡିଆଁ ମାରି ନିଆଁ ଲିଭାଉଥାନ୍ତି । ଲଙ୍କା ପୋଡ଼ିବାବେଳେ ହନୁମାନ ମୁହଁରେ ନିଆଁ ଲାଗିବାରୁ କିପରି ଦିଶୁଥିଲା, ମହର୍ଷି ବାଲ୍ମୀକି ସେ କଥା ଖୋଲସା କରି ଲେଖିଯାଇ ନାହାନ୍ତି; ତେଣୁ ଅନ୍ୟେମାନେ ଉପମା ସ୍ଥଳରେ ସେ କଥାଟା ଉଲ୍ଲେଖ କରିବା ଯୁକ୍ତିସଙ୍ଗତ ନୁହେଁ ବୋଲି ବିବେଚନା କରୁଅଛୁଁ । 'ସର୍ବନାଶେ ସମୁତ୍ପନ୍ନେ ଅର୍ଦ୍ଧଂ ତ୍ୟଜତି ପଣ୍ଡିତଃ ।' ଆଖୁନ୍‌ଜୀ ସାହେବ ଏହି ନୀତିଶାସ୍ତ୍ର ଅନୁସାରେ ଅଧା ଅଧି ଦାଢ଼ି ଆୟତ୍ତପୂର୍ବକ

"ବିସ୍ମିଲ୍ଲା ବିସ୍ମିଲ୍ଲା" କହି ସେ ଦିନ ରାତିରେ କବାଟ କିଳି ରହିଲେ, ତହିଁ ଆର ଦିନ ସକାଳଠାରୁ ତାଙ୍କୁ କେହି ମେଦିନୀପୁର ମଧ୍ୟରେ ଦେଖି ନାହିଁ । ଆଲି-ମିଆଁଙ୍କ କାନରେ ଏ କଥା ପଡ଼ିବାରୁ ସେ କହିଲେ, "କୁଛ୍ ପରୱାୟ୍ ନେହି, ମେରା ଦିଲୁ ତ ଇଲମ ହାସଲ କରିନେଇଛି । ମୁଁ କେବଳ ମୋ ନାମ ଲେଖି ଜାଣେ, ଏତେ ଦୌଲତ କମାଇଲି । ମେରା ଦିଲୁ ତ ବହୁତ ଶିଖିଲଣି; ସେ ଦିନ ମୋ ଆଗରେ ଇମତାନ ଦେଲା, ଆପଣା ନାମ ଲେଖିଲା, କଲିକତା, ମେଦିନୀପୁର, ହାତୀ, ଘୋଡ଼ା, ବାଗ୍‌ବଗିଚା କେତେ କଥା ଲେଖିଗଲା । ବଡ଼ ସାହେବ ଖବର ପାଇଲେ ଏଇଲାଗେ ତାଙ୍କୁ ଦାରୋଗାଗିରି ଦେବେ, ମାତ୍ର ମୁଁ ଏ କଥା ଲୁଚାଇଛି, ମୁଁ ଦିଲୁକୁ ଚାକିରି କରିବାକୁ ଦେବିନାହିଁ । ସେ ପିଲା-ଲୋକ, ଏତେ ମେହେନତ୍ ଉଠାଇ ପାରିବ ନାହିଁ ।" ତାହା ବାଦ ଆଲି ମିଆଁ ଲଡ଼କାକୁ ପାଖରେ ବସାଇ ବିଷୟକର୍ମ ଚଳାଇବା ବିଷୟରେ ଅନେକ ଉପଦେଶ ଦେଲେ । ବିଶେଷରେ ଓଡ଼ିଆ ଜମିଦାରୀ ବିଷୟରେ ବହୁତ ହୁସିଆର ସକାଶେ ଉପଦେଶ ଦେଇ କହିଲେ, "ଦେଖ, ସେ ଦେଶରେ ଯେଉଁ ମହାନ୍ତିମାନେ ଅଛନ୍ତି ସେମାନେ ବଡ଼ ଚୋର, ମୁଁ ହିସାବ କଟାପରେ ଖୁବ୍ ମଜବୁତ ବୋଲି ମୋତେ ଠକାଇ ପାରନ୍ତି ନାହିଁ । ସେମାନଙ୍କ ଠକାପଣିଆ ଶୁଣିବ ? ଏକ, ଦୁଇ, ତିନି ଆଉ ଚାରି ଏହି ଦୁନିଆର ହିସାବ, ମାତ୍ର ସେମାନଙ୍କ ହିସାବ କଣ ଜାଣ — ଏକକେ ଏକ, ଦୁଇକେ ଦୁଇ, ଦୁଇଦୁଣେ ଚାରି । ଦେଖ ଏକ, ଦୁଇ ଚାରି ହେଲା, ବିଚମେ ତିନ୍ କାହାଁ ଗେୟା ? ଏହି ତିନରୁପେୟା ଚୋରି, ଇତ୍ୟାଦି ଇତ୍ୟାଦି ।"

ଜମିଦାରବଂଶର ପରିଚୟ ନିମନ୍ତେ ଏତେ ଗୁଡ଼ାଏ କଥା ଲେଖିବାକୁ ହେଲା, ମାତ୍ର ଏହା ସବୁ ପୁରୁଣା କଥା । ଆଜକୁ ପାଞ୍ଚ ବର୍ଷ ହେଲା ସେଖ୍ କେରାମତ ଆଲି ଫୌତ ହୋଇଗଲେଣି । ଛୋଟାମିଆଁ ଓରଫ ସେଖ୍ ଦିଲ୍‌ଦାର ବର୍ତ୍ତମାନ ଖୋଦ୍ ମାଲିକ । ଘଣ୍ଟି ଅଧାଜ ଘଡ଼ିକ ଭିତରେ ଜମିଦାର ସେଖ୍ ଦିଲ୍‌ଦାର ମିଆଁ କଚେରି ଘରେ ବସିଅଛନ୍ତି, ଘରଟା କୋଠା । ସେପରି ଛୋଟିଆ ମୋଟିଆ କୋଠରୀ ନୁହେଁ, ଖୁବ୍ ଲମ୍ବା ଚଉଡ଼ା କୋଠା । ଘର ତଳେ ଗୋଟିଏ ବଡ଼ ଶତରଞ୍ଜି ବିଛଣା ହୋଇଅଛି । ଯେଟା ବୋଧହୁଏ ବଡ଼ ପୁରୁଣା, ଦଶ କି ବାର ଜାଗାରେ ତେଲ ଚଳା ଦାଗ, ଟିକିଆପୋଡ଼ା ଜାଗା ପନ୍ଦର କି କୋଡ଼ିଏ, ଧଡ଼ି ଚିରା । ସେହି ଶତରଞ୍ଜି ମଝିରେ କାନ୍ଥକୁ ଲଗାଇ ଏକ ବନାରସୀ ବିଛଣା, କାନ୍ଥକୁ ଭିଡ଼ି ବଡ଼ ଗୋଟାଏ ବନାରସୀ ତକିଆ, ଦୁଇ ପାଖରେ ଚକା ବୋଇତ-କଖାରୁ ପରି ଦୁଇଗୋଟା ସାନ ବନାରସୀ ତକିଆ, ସେହି ବିଛଣାରେ ଖୋଦ ଜମିଦାର ସେଖ୍ ଦିଲ୍‌ଦାର ମିଆଁ ବସିଅଛନ୍ତି । ପୋଷାକ କନ୍‌ଖାପ ତିଲି ପାଜାମା, ସାଟିନ୍ ଚପ୍‌କନ୍, ମୁଣ୍ଡରେ ବନାରସୀ ଟୋପୀ, କାନରେ ଅତର ତୁଳାକାଠି, ଆଗରେ ରୂପାର ଅତର ଦାନ୍, ଗୋଲାପଦାନ୍, ତାହା ପାଖରେ ବଡ଼ ଏକ ସାତହାତ ନଳଯୁକ୍ତ ଗୁଡ଼ଗୁଡ଼ି ହୁକା, ହୁକା ଉପରେ ସାନ ଆଣ୍ଠିକା ପରି ଚିଲମ, ତହିଁ ଉପରେ ସରପୋଷ । ସେଥିରୁ ଚାରିକେରା ରୂପାଶିକୁଳି ଝୁଲି ଆସି ମାଟି ସ୍ପର୍ଶ କରଅଛି । ମହାଦେବଙ୍କଠାରେ ଯୋଗୀ ଧାରଣା ଦେଲା ପରି ନଳଟା ମିଆଁଙ୍କ ପାଦ ସ୍ପର୍ଶକରି ପଡ଼ିଅଛି, ଆଜ ତାହାର ଆଦର ନାହିଁ । ଚକ୍ରନେମି କ୍ରମେଣ ମନୁଷ୍ୟ-ମାନଙ୍କ ପରି ଅଚେତନ ପଦାର୍ଥମାନଙ୍କର ମଧ୍ୟ ଭାଗ୍ୟର ପରିବର୍ତ୍ତନ ଦେଖାଯାଏ । ଘରକୋଣ ଓ ଏଣେ ତେଣେ ଛିଣ୍ଡା ଗୁଞ୍ଜୁଣି, ଜଳପୂର୍ଣ୍ଣ ବଦନା, ଦୁଇ ଚାରିଟା ମଦତ୍ତ ହୁକା, ଗୁଡ଼ାଖୁ ଗୁଳି, ମଦତ୍ ଓ ଗଞ୍ଜେଇ ପାଉଁଶ, ପିଆଜ ଚୋପା, ଛେଁକା ଲଣ୍ଡି ଆବଶ୍ୟକ ଓ ବର୍ଜିତ ପଦାର୍ଥମାନ ପଡ଼ିଅଛି । ସବୁଠାରୁ ବେଶି ଭାଗ ପାନପିକ, ପାନସିଠା । ଆମ୍ଭେମାନେ ସ୍ୱକୀୟ ବୁଦ୍ଧିର ତାତ୍ପର୍ଯ୍ୟରେ ବୁଝିଅଛୁଁ, ଏ ଘର ମଧ୍ୟରେ କେବେ କେବେ ଗୁଞ୍ଜୁଣି ବୁଲେ, ନୋହିଲେ କୋଣରେ ଏତେ ଅଳିଆ କାହିଁ ଠୁଳ ହେଲା ? ଘର

ଉପର ଭଙ୍ଗା । କାର୍ଣ୍ଣିସମାନଙ୍କରେ ଓଦେଲମାନେ ଯେପରି ଦର୍ପଣ ଆଲମାରିରେ ଆଇନ ପୋଥି ସଜାଡ଼ି ଦେଇ ଉକିଆଳ ଆଉ୍ଜ୍ନ ମକେଲଙ୍କୁ ଚାହିଁ ବସିଥାନ୍ତି, ବୁଢ଼ିଆଣୀମାନେ ସେହିପରି ଜାଲ ଟାଙ୍ଗି ମଶାଟି ମାଛିଟିକୁ ଚାହିଁ ବସିଅଛନ୍ତି । କଡ଼ ଫାଙ୍କମାନଙ୍କରେ ଘରଚଟିଆମାନଙ୍କର ମଜଲିସ । ସେହି ମଜଲିସରୁ ବେଳେ ବେଳେ ଯାହା କୁଟାକେରିଏ, ଝଡ଼କା ଖଣ୍ଡେ ଖସୁଅଛି । ଏଣିକି ମଜଲିସ ଆଜ ବନ୍ଦବସ୍ତ । ମିଆଁ ସାହେବ ଗାଲରେ ହାତ ଦେଇ ଗୁମ୍ ଖାଇ ବସିଛନ୍ତି । ଓ୍ୱାଟରଲୁ ଯୁଦ୍ଧରେ ହାରି ନେପୋଲିୟନ ଏପରି ଭାବନାରେ ବସି ପାରି ନ ଥିଲେ । କାରଣ ସେଣ୍ଟ-ହେଲେନା ପଠାଇବାପାଇଁ ଇଂରେଜମାନେ ତାହାଙ୍କୁ ଧରପକଡ଼ କରୁଥିଲେ । ଆଗରେ ସାତଜଣ ମୋସାହେବ ଭାବନାରେ ବସି ଢୋଳଉଛନ୍ତି, ଓ୍ୱାଦ୍‌ଜୀ ବକାଉଲ୍ଲ ଖାଁ ଦୁଇ ଚୋଡ଼ କୁଣ୍ଢାଇ ଦାଢ଼ିଟିକୁ ଆଣ୍ଠୁ ଉପରେ ନଇ ଦେଇ ବସିଅଛନ୍ତି । ପଠାଣ ଘର ତଲକ୍‌ଦଆ ମାଇକିନିଆଙ୍କ ପରି ତାନପୁରାଟା ଏବଂ ଚଡ଼ିଆରେ ବାଜିହାଣ୍ଡି ପରି ତବଲା ଦୁଇଟା ଗଡ଼ୁଅଛି । ଘରର ଗୋଟାଏ କୋଣରେ ଖିଜମଦ୍‌ଦାର ଫତୁଆ ବାଁହାତରେ କଣ ଗୋଟାଏ ପଦାର୍ଥ ରଖି ଡାହାଣ ହାତ ବୁଢ଼ା ଆଙ୍ଗୁଳିରେ ଚପୁଛି, ବେଳେ ବେଳେ ମଝି ଆଙ୍ଗୁଳିରେ ବୁନ୍ଦା ବୁନ୍ଦା ପାଣି ପକାଉଛି । ମୁନ୍‌ସୀ ଜାହେର୍ ବକସ ଏକଖଣ୍ଡ କାଗଜରେ ଲେଖା ତାଲ୍ଲ ଧରି ହପୋଟି ଆଗରେ ଗ୍ରେର ଆସାମୀ ପରି ଛିଡ଼ା ହୋଇଅଛନ୍ତି ।

ମିଆଁ ସାହେବ ଆଖି ବୁଜି ଗୋଟାଏ ଦୀର୍ଘ ନିଃଶ୍ୱାସ ପକାଇ କହିଲେ, "ଏବେ ଉପାୟ କ'ଣ କରିଯିବ ?" ମୁନ୍‌ସୀ ସାହେବ କହିଲେ, "ବନ୍ଦେ ନଓ୍ୱାଜ, ମୁଁ ହିନଯାକ ବୁଲିଲିଣି, କାହିଁ କିଛି ପଟିଲା ନାହିଁ । ମହାଜନ ରାମଦାସ କହିଲା, ତାହାର ତମସୁକ ବାବଦ କୋଡ଼ିଏ ହଜାର ଓ ହାତ ଉଧାର ବାବଦ ଚାରିହଜାର ଟଙ୍କା ହେଲାଣି, ଆଉ କରଜ ଦେବାକୁ ସେ ନାରାଜ ହେଲା । ବଜାରର ମୁଦି ଦୋକାନିମାନଙ୍କର ପାଉଣା ଚାରି ହଜାର, ସେମାନେ ସଉଦା ଜାଲ ଦେଲେ ନାହିଁ ।" ମିଆଁ କହିଲେ, "ବେକୁବ୍, କମ୍‌ବକ୍ତ, ନାଲାଏକ ! ବାପାଙ୍କ ଅମଲରୁ ରାମ ସରକାର କୋଡ଼ିଏ ବର୍ଷ ଚାକର ଥିଲା, ତାକୁ ବାହାର କରି ତୁମେ ଦୋସ୍ତ ଓ ଲାଏକ ମନୁଷ୍ୟ ବୋଲି ଦେବତ୍ତୀ କାମ ଦେଲି, ଗରଜ ଚଳାଇ ପାରୁ ନାହଁ ?" ମୁନ୍‌ସୀ ଜାହେର ବକ୍‌ସ କହିଲେ, "ହଜୁର ! ମୁଁ କପରି ନାଲାଏକ ହେଲି ? ରାମ ସରକାର କିଛି କରଜ କରିପାରୁ ନ ଥିଲା, ମୁଁ ପାଞ୍ଚ ବରଷ ମଧ୍ୟରେ ପଚିଶ ହଜାର କରଜ ଆଣି ଦେଲି ।"

ମିଆଁ କହିଲେ, "ସେ କଥା ଯାଉ, ଏବେ ଇଜ୍ଜତ୍ କପରି ରହେ ? 'ସମ୍ପତ୍ତି ଯାଉ, ମହତ ଥାଉ । ମହତ ଗଲେ ନ ମିଳେ ଆଉ ।'" ମୋସାହେବ-ମାନେ ଢୋଳାଉଥିଲେ, ଏ କଥା ଶୁଣି ପାଟିକରି ଏକାବେଳକେ କହିଲେ 'ଅଲବବତ୍ ଅଲବତ୍ତ, ଉଆଜବ୍ ଉଆଜବ୍ ।' ମିଆଁ କହିଲେ, "ଯାଓ, ଘର ଆସବାବ ହେଉ ବା ଜମିଦାରୀ ହେଉ, ବନ୍ଧକ ଦେଇ ଆଜିକା ମଜଲିସ୍‌ର ବନ୍ଦୋବସ୍ତ କର । ଦେଖ, ଜଲଦି, ରାତି ହୋଇଗଲା । ବେଶି ଟଙ୍କା ଦରକାର ନାହିଁ । ବାଈଜୀ ଖେମଟାଉ୍ ଶଏ ଟଙ୍କା ଓ ବାଈଜୀ ସାଙ୍ଗଲୋକ ଓ ଦୋସ୍ତମାନଙ୍କ ଖାନା ପିନା ଓ ସକାଶେ ଏକଶ ଟଙ୍କା ବହୁତ ହେବ ।" ଦୋସ୍ତମାନେ କହିଲେ, "ଉଆଜବ୍, ଉଆଜବ୍, ବହୁତ ରୁପେୟାର ଦରକାର କଣ ?" ଦୋସ୍ତ ହନୁମିଆଁ କହିଲେ, "ହଜୁର ଏହି ଯେ ଖେମଟାବାଲୀ ଖାତୁମଉନ୍‌ନିସା ଆସିଛନ୍ତି, ଏ ବହୁତ ଇଲମ୍‌ଦାର । କାଶ୍ମୀରର ଅଉଲ ନମ୍ବର ବାଈ, ଏହାଙ୍କର ଇଲମ ଓ ରାଗରାଗିଣୀର କସରତ୍ ହଦ୍‌ରେ ହଦ୍ । ସେ କି ଏ ଦେଶକୁ ପସନ୍ଦ କରନ୍ତି ? କେବଳ ମୁସାଫେର ସକାଶେ ଆସିଅଛନ୍ତି । ମୁର୍ଶିଦାବାଦ

ନବାବ, ଲକ୍ଷ୍ନୌ ନବାବ, ଧୋମକା ବାଦସା, ସୋମକା ବାଦସାମାନେ ଏହା ଗୀତ ଶୁଣିବାକୁ ଡାକ ପଠାନ୍ତି, ମାତ୍ର ବନ୍ଦାଙ୍କର ଖାତର ରଦ ରଦ । ହଜୁରଙ୍କ କେରାମତ ନେକନାମି ଦୁନିଆରେ ଜାହେର, ସେଥି ସକାଶେ ଆପେ ଆସି ଏଠାରେ ମଜଲିସ କରିବାକୁ କହୁଅଛି ।" ମଜଲିସସାରା ଲୋକ ଏକାବେଳକେ କହିଲେ, "ହଜୁରଙ୍କୁ ଦୁନିଆରେ କିଏ ନ ଜାଣେ ? ହଜୁରଙ୍କ ଖାନା ପଲଉ ଯେ ଦିନେ ଖାଇଛି, ଜିନ୍‌ଦଗ୍ ଭରି ସେ ଇସ୍ତାଦ୍ କରୁଥିବ ।"

ପିଆଦା ସେଖ୍ ଫଜ୍ଲୁ ସଲାମ କରି ଜଣାଇଲା, "ହଜୁର ! ଓଡ଼ିଶା ଜମିଦାରୀରୁ ଜଣେ ମହାଜନ ମୁଲାକାତ୍ ସକାଶେ ଆସିଅଛନ୍ତି ।" ହୁକୁମ ହେଲା, "ତାହାକୁ ହାଜର କରାଅ ।" ଆଗନ୍ତୁକ ଉପସ୍ଥିତ ହୋଇ ଆଗରେ ନଗଦ ପାଞ୍ଚ ଟଙ୍କା ନାଜରାଣା ଥୋଇ ଦେଇ ଭୂମିରେ ହାତ ଲଗାଇ ତିନି ଥର ସଲାମ କଲେ । ମଜଲିସ ମଧ୍ୟରେ ଯେତେ ଜଣ ସଭ୍ୟ ବସିଥିଲେ, ସମସ୍ତଙ୍କୁ ଏକ ଏକ ସଲାମ କଲେ; ଖିଜମଦ୍‌ଦାର ମଧ୍ୟ ଛୁଟି ଗଲା ନାହିଁ । ମିଆଁ ହୁକୁମ କଲେ, "ବହୁତ କଦରଦାନ ଆଦମ ।" ପାଲବାଲା ପାଳିଆମାନେ ଏକସ୍ୱରରେ ଗୀତ ଧରିଲାପରି ସମସ୍ତେ ତାଳି ଦେଲେ, "ବହୁତ କଦର ଦାନ, ବହୁତ ହୁସିଆର ଆଦମ୍ ।"

ମିଆଁ ପଚାରିଲେ, 'ତୁମ୍ଭର ନାମ କ'ଣ ?'
ରାମଚନ୍ଦ୍ର ମଙ୍ଗରାଜ ।
କ୍ୟା ! ରାମଚନ୍ଦର ମାମଲତ୍‌ବାଜ୍ ?'
"ନା ହଜୁର ମଙ୍ଗରାଜ ।"
'ଅଚ୍ଛା ଓଇ ହୁଆ, ରାମଚନ୍ଦର ମଙ୍ଗୋରାଜ ।'

ମଙ୍ଗରାଜ ଜଣାଇଲେ, "ମୁଁ ନିହାତି ଅଳ୍ପ କିଛି ଜିନିସ ନଜର ଆଣିଅଛି । ହୁକୁମ ହେଲେ ହାଜର କରିବ ।"

"ବହୁତ ଅଚ୍ଛା, ଦେନ ଆସ ।" ଭେଟିର ତାଲିକାଟି ଏକ ଖଣ୍ଡିକରେ ଲେଖା ଥିଲା, ପଢ଼ାଗଲା, ପାଞ୍ଚଟା ଓଳିଆରେ ସରୁ ଅରୁଆ ଚାଉଳ ଭରଣେ ଆଠ ନଉତି, ମୁଗଡାଲି ଦୁଇ ଓଳିଆରେ ବତିଶ ନଉତି, ହରଡ଼ଡାଲି ଏକ ଓଳିଆକୁ ଅଠର ନଉତି, ଘିଅ ଏକ ମାଠିଆକୁ ପଚିଶ ସେର, ବନ୍ତଳ କାଠିଆ କଦଳୀ ପାଞ୍ଚକାନ୍ଦି, ପାଚିଲା କଦଳୀ ଦୁଇ କାନ୍ଦି, ଆମ୍ବୁ ଆଠ ବିଶା । ଇତି

ମିଆଁ ହୁକୁମ କଲେ, "ବହୁତ ଅଚ୍ଛା ଚାଉଳ; ପଲଉର ଲାଏକ, ଘିଅ ମଧ୍ୟ ବହୁତ ଭଲ ।" ମଙ୍ଗରାଜେ କହିଲେ, ହଜୁର ଆମ ଦୁନିଆର ମାଲିକ, ହଜୁରଙ୍କ ଦାନା ପନ୍ଦର ପୁରୁଷ ହେଲା ଖାଇ ଆସୁଅଛୁଁ, ଏ ତ ସାମାନ୍ୟ ଜିନିସ, ମେହେରବାନି ହେଲେ ପଲଉ ଚାଉଳ, ଘିଅ, ଡାଲି ବରାବର ହାଜର କରିବ । ମିଆଁ ଓ— ମିଆଁ ଓ—ମିଆଁ ଓ ଓସ୍ତାଦ୍‌ଜୀ ଭାରି ଖୁସିଟା ହୋଇ ତାନପୁରା କାନ ବାଁ ହାତରେ ମୋଡ଼ି ସୁର ଦେଇ ବସିଲେ । ଗୁମ୍-ଗୁମ୍-ଗୁମ୍ ତାକ-ଧିନ୍ ଧିନ୍ ଧିନ୍ ତାକ ଧିନ୍-ଧିନ୍ ଗୁମ୍—ତାବଲା ବାଜି ଉଠିଲା, ମିଆଁ ହୁକୁମ ଦେଲେ, ଜଲଦି ପଲଉର ବନ୍ଦୋବସ୍ତ କର ।' ଖ୍ରୀଷ୍ଟିୟାନମାନେ କହନ୍ତି, ପୃଥିବୀର ଶେଷ ଦିନରେ ସ୍ୱର୍ଗର ଦୂତ ବଂଶୀ ବଜାଇଲେ ସମସ୍ତ ମୃତ ଲୋକ କବରରୁ ଉଠି ବସିବେ । ମଜଲିସ ଅବଶୋଷରେ ମରି ପଡ଼ିଥିଲା, ମଙ୍ଗରାଜଙ୍କ ଟଙ୍କାର ଝଣ ଝଣ ଶବ୍ଦରେ ବଞ୍ଚି ଉଠିଲା । ମିଆଁ ସାହେବ ନଳ ମୁହଁରେ ଦେଇ ଦୁଇ ଚାରି ଥର ଭଲକରି ଟାଣିଲେ । କଳା ପର୍ବତରେ କୁହୁଡ଼ି ବୁଲିଲା ପରି ଦାଡ଼ିସାରା ଧୂଆଁ ଖେଳିଗଲା । ସରକାର କେନାଲଦ୍ୱାରା ଯେପରି ପରଗନା ପରଗନା କରି ମହାନଦୀର ଜଳ ବାଣ୍ଟୁଅଛନ୍ତି, ନଳ ଯୋଗରେ ହୁକା ଭିତରେ ଜମାଥିବା ଧୂଆଁ ସମସ୍ତଙ୍କ ମୁହଁକୁ ବାଣ୍ଟିଗଲା । ମେଁ ଏଁ ଏଁ, ମେଏଁ ଏଁ । ପଲଉ ସକାଶେ ଗୋଟା ଖାସି ଅଣାଗଲା । ମଜଲିସ ଆଗରେ ଦରି

ଛୁଣ୍ଡିଲା, ଅଢ଼େଇ ଟଙ୍କା । ମଙ୍ଗରାଜେ ଚମକ ପଡ଼ି କହିଲେ, "କଣ, ଏହି ଛେଳିଟିର ଦାମ ଅଢ଼େଇ ଟଙ୍କା ? ବାପ୍‌ରେ ! କେତେ ଦାମ୍ !" ମିଆଁ ପଚାରିଲେ ତୁମ ଗ୍ରାମରେ ଦାମ୍ କେତେ ? ଡାକ୍ତର ମତ୍ସ୍ୟ ପରୀକ୍ଷା କଲା-ପରି ଛେଳିର ଅଗ୍ର, ପଶ୍ଚାତ୍, ବାମ, ଦକ୍ଷିଣ ଉତ୍ତମ-ରୂପେ ନିରୀକ୍ଷଣପୂର୍ବକ ମଙ୍ଗରାଜେ କହିଲେ, "ଛେଳିଟାର ଦାମ କଣ ? ଚାରି ପଇସା କି ଛ ପଇସା ହେବ, ହୁକୁମ ହେଲେ ପଲଞ୍ଚ ସକାଶେ ଦଶ ଗଣ୍ଡା କି ପନ୍ଦର ଗଣ୍ଡା ପଠାଇ ଦେଇପାରେ । ହଜୁର ଲୋକ ଚକ୍ଲି ଜମିଦାରୀରେ ଚାକର ରଖି ନାହାନ୍ତି, ସେଥି-ସକାଶେ ଏତେ ଟଙ୍କା ବରବାଦ୍ । ଅଢ଼େଇ ଟଙ୍କା ଛେଳି ? ବାପ ରେ !" ଏ କଥାଟା ଶୁଣି ମଜଲିସ୍‌ରେ ଯେ କିପରି ଆନନ୍ଦ କୋଳାହଳ ଉଠିଲା, ତାହା ବର୍ଣ୍ଣନାତୀତ । କ୍ଲାଇବ ସାହେବଙ୍କ ପଲାଶୀଯୁଦ୍ଧ ଜୟ ସମ୍ବାଦ ଶୁଣି ବିଲାତରେ ଡାଇରେକ୍‌ଟର ସଭା ନିଶ୍ଚୟ ଏତେଦୂର ଆନନ୍ଦିତ ହୋଇ ନ ଥିଲେ । କାରଣ ସେତେବେଳେ ଦିଲ୍ଲୀ ଦରବାରର ଡର ସେମାନଙ୍କ ମନରୁ ଛୁଟି ନ ଥିଲା । ଓସ୍ତାଦ୍‌ଜୀ ପୁରିଆ ରାଗିଣୀର ଆଳାପ କରିବାକୁ ଲାଗିଲେ । ସମସ୍ତେ ଆନନ୍ଦରେ ଉନ୍ମତ୍ତ, ସମସ୍ତଙ୍କର ମୁହଁରୁ ହସ ଉଚ୍ଛୁଳି ପଡ଼ୁଅଛି, କେବଳ ମଙ୍ଗରାଜ ଦାନ୍ତ ପୋଡ଼ ମୁହଁ ଶୁଖାଇ ବସିଛନ୍ତି । ଜାଲ ମଧ୍ୟରେ ବୁଣା ଚାଉଳ ଖାଇଲାବେଳେ ପକ୍ଷୀମାନଙ୍କ ଆନନ୍ଦ ବ୍ୟାଧ ଭିନ୍ନ ହୋଇ ଦେଖୁଥାଏ । ଆମ୍ଭେମାନେ ମଙ୍ଗରାଜଙ୍କ ମନର କଥା ଭଲ ରୂପେ ବୁଝିପାରୁଁ । ସେ ସମୟରେ ବୋଧହୁଏ ଭାବୁଥିଲେ, "ଆ ବାପ ଚଢ଼େଇ ଆ, କାଣ୍ଡିଆ ପାଖକୁ ଆ ।"

ଜଣେ ଚାକର ଧାଇଁଆସି ବାଈଜୀଙ୍କ ଶୁଭାଗମନର ସମ୍ବାଦ ଦେଲା । ଯାଃ ! ସର୍ବନାଶ ! ଏ କଥାଟା ସେ କାହାରି ମନରେ ନାହିଁ । ଓସ୍ତାଦ୍‌ଜୀ ପୁରୁଣା ହୁସି-ଆର ଲୋକ, ସେହି କେବଳ ଏ କଥାଟା ମନେ କରାଇ ଦେଲେ, ବାଈଜୀଙ୍କୁ ଶହେ ଟଙ୍କା ନଜରାନା ଦେବାକୁ ହେବ । ପୁନର୍ବାର ଭାବନା, ପୁନର୍ବାର ଆନ୍ଦୋଳନ । ଭାରତବର୍ଷର ବ୍ୟୟସଙ୍କଳନ ନିମନ୍ତେ ପାର୍ଲିଆମେଣ୍ଟରେ ବୋଧହୁଏ ଏହାଠାରୁ ଅଧିକ ଆନ୍ଦୋଳନ ହୋଇ ନ ଥାଏ । କିନ୍ତୁ ସ୍ଥିରହୋଇ ପାରିଲା ନାହିଁ, ବେଳ ନାହିଁ । ବେଳ ଉଣ୍ଡି ମଙ୍ଗରାଜେ ହାତଯୋଡ଼ି କହିଲେ, "ହଜୁର ! ଗୋଲାମ ହାଜର ଥାଉଁ ଥାଉଁ ଏତେ ଚିନ୍ତା କି ସକାଶେ ?" ପୁନର୍ବାର ପ୍ରଶଂସା, ଧନ୍ୟବାଦ ସମସ୍ତଙ୍କ ମୁହଁରୁ ବାହାରି ମଙ୍ଗରାଜ କାନରେ ତାଳ ପଡ଼ିଲା । ମିଆଁ ହୁକୁମ ଦେଲେ, "ଆଚ୍ଛା ମଙ୍ଗରାଜ, ତୁମେ ବର୍ତ୍ତ-ମାନ ଯେ ଉପକାର କଲ, ସେଥିର ଇନାମ ଅଲବତ୍ତା ପାଇବ, ଏ ସିବାୟ ଟଙ୍କାକୁ ସୁଧ ଚାରିଅଣା ହିସା-ବରେ ପାଇବ ।" ମଙ୍ଗରାଜେ କହିଲେ, "ରାମ, ରାମ, ରାମ । ହଜୁର, ମୁଁ ପିଆଜ ଆଉ ବିଆଜ ଖାଏ ନାହିଁ ।" ଓସ୍ତାଦ୍‌ଜୀ କହିଲେ, "କଣ, ବିଆଜ ଖାଏ ନାହିଁ ? ବହୁତ ଇମାନ୍‌ଦାର ଲୋକ । କୋରାନରେ ଯେ ପଚଶ ହାରାମ୍ ବୟାନ ଅଛି, ବିଆଜ ସେଥିରୁ ଗୋଟାଏ ।"

ଇତିହାସ ଲେଖକ ବୋଲନ୍ତି, କ୍ଲାଇବ ସାହେବ ଦିଲ୍ଲୀ ବାଦସାହାଙ୍କ ପାଖରୁ ବଙ୍ଗଳାର ସୁବାଦାରୀ ନେବାବେଳେ ଏତେ ଅଳ୍ପ ସମୟ ଲାଗିଥିଲା ଯେ, ଗୋଟାଏ ଗଧ ବିକା କଣାରେ ତାହାଠାରୁ ଅଧିକ ସମୟ ଦରକାର । ତେବେ, ଫତେପୁର ସରଖଣ୍ଡର ସରବରାକାରୀ ଓ ସମସ୍ତ କ୍ଷମତା ପାଇବା ମଙ୍ଗରାଜଙ୍କ ପକ୍ଷରେ ବିଳମ୍ବ କ'ଣ ?

———

## —୯—

## ଗାଁର ହାଲଚାଲ

ତାଲୁକେ ଫତେପୁର ସରଖଣ୍ଡ ଗୋଟାଏ ଭାରି ବଡ଼ ତାଲୁକା । ସଦରଜମା ପାଞ୍ଚ ହଜାର ଦୁଇଶ ଆଠ ଟଙ୍କା ଛ ଅଣା, ମଫସଲ ଅସୁଲ ଅଢ଼େଇ ପଟ ।

ଫାଉଫଉଉଗଡ଼ ଗ୍ରଡ଼ଦାଅ । ଏଥିରେ ପାଞ୍ଚଗୋଟି ମୌଜା-ମୌଜେ ରାମନଗର, ବାଲିଆ, ହାଣ୍ଡିଖାଇ, ସଉ-ଭୁଣିଆ ଓ ଗୋବନ୍ଦପୁର । ଗୋବନ୍ଦପୁର ସବୁଠାରୁ ବଡ଼, ଗଣା ଅଧିକରେ ପାଞ୍ଚଶ ଘରବସ୍ତି, ସବୁଜାତିର ଲୋକ ଅଛନ୍ତି । ଗୋଟାଏ ଦୋକାନ ଅଛି । ସେ ଦୋକାନରେ ସବୁ ଜିନିସ ମିଳେ—ଡାଲି, ଚାଉଳ, ଧିଆଁପତ୍ର, ଲୁଣ, ତେଲ ଯାହା ଖୋଜ ପାଇବ, ଦୁଇପୁର ପଇ-ସାର ଘିଅ ଖୋଜିଲେ ମଧ ମିଳିପାରେ । ଦୋକାନର ତିନ ପୁରୁଷରୁ ଦଶମୂଳ ସାଇତା ଅଛି । ଦୁଇ ତିନ କୋଶରୁ ବୈଦ୍ୟମାନଙ୍କର ଡାକ ଆସେ । ଗ୍ରାମଟି ଲମ୍ବା ଲମ୍ବି ; କିନ୍ତୁ ସିଧା ସଳଖ ନୁହେଁ, ଆଠଅଙ୍କିଆ । ଅସୁର ପୋଖରି ଉତ୍ତର ଆଉ ପଶ୍ଚିମ ଆଡ଼ର ଅଧେ ମାଡ଼ିବସିଅଛି । ମଝିରେ ଗୋହିରୀ, ଦୁଇ ସାହାଲ ଦର, ମଝି ଗୋହି-ରୀଟା ଖୁବ୍ ଓସାରିଆ ହେଲେ ମଧ ଯିବା ଆସିବା ବାଟ ଦଶ ବାର ହାତରୁ ବେଶି ନୁହେଁ । ବାଟ ଦୁଇପାଖ ସମସ୍ତଙ୍କ ଦୁଆର ଆଗରେ ଖତଗାଡ଼,ଖଣ୍ଡେ ଖଣ୍ଡେ ଖାଲି ଜାଗା ଅଛି, ସକାଳେ ସେଠାରେ ଗାଈ ବଳଦ ବନ୍ଧା ହୁଅନ୍ତି । ସ୍ଥାନେ ସ୍ଥାନେ ଖଣ୍ଡେ ଖଣ୍ଡେ ଶଗଡ଼ ଥୁଆ ହୋଇଅଛି । ଗୋହିରୀରୁ ସମସ୍ତଙ୍କ ଦୁଆରକୁ ଯିବା ପାଇଁ ଅଲଗା ଅଲଗା ବାଟ । ଗ୍ରାମଟି ତିନ ଭାଗରେ ବିଭକ୍ତ—ମାଅନ୍ତସାଇ, ଚନ୍ଦ୍ରାସାଇ, ବ୍ରାହ୍ମଣସାଇ ।

ମାଅନ୍ତସାଇରେ ଖୋଦ୍ ରାମଚନ୍ଦ୍ର ମଙ୍ଗରାଜଙ୍କ ଘର, ଏଥିପାଇଁ ଖୁବ୍ ଡାକ୍ । ରାତି ଦଶ ଦଣ୍ଡ ପର୍ଯ୍ୟନ୍ତ କଚେରି ଜାରି । ଦୋକାନଟା ମଧ ଏଇ ସାଇରେ । ରାତି ପହରକ ସରିକି ଆଉ ସବୁ ସାଇ ଭୁନଚାନ୍ ।

ବ୍ରାହ୍ମଣ ସାଇର ପ୍ରକୃତ ନାମ ଶାସନ । ଶାସନ ଭାଗ ପଚାଶ ଗୋଟା ପୂଅନ୍ଧ୍ରା ବାସ୍ତବ ଘର । ଶାସନ ଗୋହିରୀ ଦୁଇ ପାଖରେ ଦେଢ଼ ଶ ଅନ୍ଦାଜ ନଡ଼ିଆ ଗଛ, ମୂଳରେ ବଡ଼ ପିଣ୍ଡି ବନ୍ଧା ଅଛି, ସେଠାରେ ବଳ-ଦେବ ପୂଜା ହୁଏ । ପିଣ୍ଡିଠାରୁ ଦଶପନ୍ଦର ହାତ ଛାଡ଼ି କେତେଗୁଡ଼ାଏ ଗଜାଭଳିଆ ନଡ଼ିଆଗଛ, ମୂଳ ସଫା ସୁତରା । ସେଇଟା ଗୋସାଇଁ ମାନଙ୍କର ବୈଠକ ଜାଗା । ନାସଶୁଙ୍ଘା, ଭାଙ୍ଗଘୋଟା, ଯଜମାନଘର କଥା, ଅର-ଜନ କଥା, ଇତ୍ୟାଦି ଇତ୍ୟାଦି କଥାମାନ ସେଇଠାରେ ସମାଧା ହୁଏ । ଦିନେଦିନେ ସେଠାରେ ବଡ଼ ଗୋଳମାଳ ହୁଏ, ସେ ଦିନ ଯଜମାନ ଘରୁ ମିଳିଥିବା ଶ୍ରାଦ୍ଧ ଚାଉଳ ବା ସମ୍ଭାମାନ୍ୟ ଦକ୍ଷିଣା ବାଣ୍ଟ ହେଉଥିବାର ସହଜରେ ଜଣା ପଡ଼ିଯାଏ । ସେ କଳି ଶୁଣି ଲୋକମାନେ କହନ୍ତି, "ବ୍ରାହ୍ମଣଗୁଡ଼ାକ ଚାଉଳ ମୁଠାକ ସକାଶେ କୁକୁର ପରି କଳି କରୁଅଛନ୍ତି ।" ମାତ୍ର ଲୋକମାନଙ୍କର ଏପରି କଥାଟା ଆମ୍ଭମାନଙ୍କୁ କିଛି ସୁଖ ଲାଗେ ନାହିଁ । ତାହାର କାରଣ, ଏମାନେ ନିପଟ ମୂର୍ଖ, ଗଉଁରଲୁଡ଼ି, ବ୍ରାହ୍ମଣ କର୍ମହୀନ ହେଲେ ମଧ ଛତିଶ ବର୍ଣ୍ଣର ରଜା ତ । ଏମାନଙ୍କୁ କୁକୁର ସଙ୍ଗେ ତୁଳନା କେତେବେଳେ ହେଲେ ଉଚିତ ନୁହେଁ । ଉପମାଟା ମଧ ଭଲ ହେଲା ନାହିଁ । କାରଣ ପ୍ରେତ ଉଦ୍ଦେଶ୍ୟରେ ଉତ୍ସୃଷ୍ଟ ଓଦା ଚାଉଳ ସକାଶେ ବ୍ରାହ୍ମଣମାନଙ୍କର କଳି । ଆଉ କୁକୁରଙ୍କ କଳି ଅଇଁଠା ଭାତ ସକାଶେ । ଦେଖନ୍ତୁ, ପ୍ରେତ ଉଚ୍ଛିଷ୍ଟ ଆଉ ମନୁଷ୍ୟ ଉଚ୍ଛିଷ୍ଟ, ଓଦା ଚାଉଳ ଆଉ ସିଝା ଚାଉଳ, କଥାଟା କେତେ ଗୁଡ଼ାଏ । ଆଉ କୁକୁରମାନେ କାମୁଡ଼ାକାମୁଡ଼ି ଲଗାନ୍ତି, ବ୍ରାହ୍ମଣମାନେ ବାଡ଼ିଆ ବାଡ଼େଇ ହୁଅନ୍ତି ସିନା, ଗୋଟାଏ ବ୍ରାହ୍ମଣ ଆଉ ଗୋଟାକୁ କାମୁଡ଼ିବାର ବା ରାମ୍ପୁଡ଼ିବାର ତ ଦେଖା ନାହିଁ । ଆକାଶରେ ଶାଗୁଣା ଉଡ଼ିଲେ କେଉଁଠାରେ ମଡ଼ ପଡ଼ିଥିବାର ଯେପରି ଜଣାଯାଏ, ସେହିପରି ଦିନ ପହରକ ବେଳେ ଗୋସେଇଁମାନେ ଚଡ଼ାଇରଡ଼ା ହୋଇ ପଲ ପଲ ବାହାରିଲେ, କେଉଁ ଗାଁରେ ମନୁଷ୍ୟ ମରିଥିବାର ଲୋକେ ଅନୁମାନ କରନ୍ତି ।

ପାଣିଗ୍ରାହୀ ଭାଗ ବାଟିକ ମିଶି ଶାସନ ଭାଗ ଜମି ପାଞ୍ଚଶ ମାଣ । ତ୍ରିକାଳ ସନ୍ଧ୍ୟାରେ ଆଶୀର୍ବାଦ କରି ଜମି

ଭୋଗ ଦଖଲ କରିବା ନିମନ୍ତେ ମରହଟ୍ଟା ସୁବାଦାର ତମ୍ବା ପାତିଆ ସନନ୍ଦ ଦେଇଅଛନ୍ତି । ତ୍ରିକାଳ ବୋଇଲେ ଭୂତ, ଭବିଷ୍ୟତ୍, ବର୍ତ୍ତମାନ । ଭୂତ କଥା ଭୂତଙ୍କୁ ଜଣା; ଭବିଷ୍ୟତ କଥା କୌଣସି ମନୁଷ୍ୟ ଜାଣନ୍ତି ନାହିଁ, ବର୍ତ୍ତମାନ କଥା ଆମ୍ଭେମାନେ ଜାଣୁଁ । ଗୋରୁ ଗାଈ ଖୋଜି ଆଣି ବାନ୍ଧିବା, ଗୁହାଳରେ ଧୂଆଁ ଦେବା, ହଳିଆଙ୍କୁ ପଖାଳପାଣି ଦେବାରେ ସନ୍ଧ୍ୟାବେଳଟା ଗଡ଼ିଯାଏ, ଭୂମିଦାତାଙ୍କୁ ଆଶୀର୍ବାଦ କରିବେ କେତେବେଳେ ? କଥା ପଡ଼ିବାରୁ ଦିନେ ଭୋବନ ବାହିନୀପତି କହି ବସିଲେ, "ଆମ୍ଭର ଭୂମି କାହିଁ ଯେ, ସନ୍ଧ୍ୟାରେ ଆଶୀର୍ବାଦ କରିବୁଁ ?" କଥାଟା ମଧ୍ୟ ନିହାତି ମିଛ ନୁହେ, ଶାସନ ଭାଗ ପାଞ୍ଚଶ ମଣ ମଧ୍ୟରୁ ଦଶ ବର୍ଷ ମଧ୍ୟରେ ଚାରି ଶ ମାଣ ବିକା ଭଙ୍ଗା ସରିଲାଣି । ବାକି ଯେ ଜମି କେତେ ମାଣ ମଙ୍ଗରାଜେ ସମ୍ଭାଳିଛନ୍ତି ବୋଲି ଅଛି । "ଗୋବ୍ରାହ୍ମଣହିତାୟଚ" ମଙ୍ଗରାଜଙ୍କର ଭାରି ଯତ୍ନ । ବୁଲା ଗୋରୁଗୁଡ଼ିକ ମଙ୍ଗରାଜେ ସାବଧାନ କରି ଆପଣା ଗୋଠରେ ରଖନ୍ତି, କେହି ପାଣ ଏପରି କି ଉଆରସୀ ଗୋରୁ ଆଣି ବକ୍ସିସ୍‌ସ୍ୱରୂପ କିଛି କିଛି ନେବାର ସଚରାଚର ଦେଖାଯାଏ । ବଳଦ ଗୁଡ଼ି କେବଳ ଗାଈ ସଂଖ୍ୟା ତିନିଶହରୁ ଟପି ଗଲାଣି । ଗୋମାତା ବାର ଜାଗାରେ ବୁଲି କଷ୍ଟ ପାଇବେ, ସେଥି ସକାଶେ ସମ୍ଭାଳିଛନ୍ତି, ନିହାତି ବଳ ପଡ଼ିଲେ ବର୍ଷକୁ ବର୍ଷ ପଠାଣ ଗୋଆଳଙ୍କୁ ଅଧା ଅଧି ଦେବାକୁ ପଡ଼େ । ସେପରି ବ୍ରାହ୍ମଣମାନଙ୍କ ଜମିଗୁଡ଼ିକ କିଣି ନେଇଛନ୍ତି, ସମ୍ଭାଳ ରଖିଛନ୍ତି । ଗୋସାଇଁମାନେ ଜମି ନ ବିକି କଣ କରିବେ ? ଏକ ବ୍ରାହ୍ମଣିଆ ଚାଷ, ତାହା ବାଦ ଚୋରଗୁଡ଼ାକ ବାଛି ବାଛି ବ୍ରାହ୍ମଣ ଜମିରୁ ଧାନ ଚୋରିକଲେ । ମଙ୍ଗରାଜଙ୍କୁ କିଛି ଜମି ବିକି ଦେଲେ ଚୋରମାନେ ଡରରେ ପାଖ ପଶି ପାରନ୍ତି ନାହିଁ । ଆଉ ମଙ୍ଗରାଜେ ପାଞ୍ଚ ପାଞ୍ଚ ଟଙ୍କାରେ ପାଞ୍ଚ ମାଣ ଜମି କିଣିଲେ ବୋଲି କେହି କେହି କହନ୍ତି । ଏ କଥାଟା ସେମାନଙ୍କର ବୁଝିବାର ଭୁଲ । ଆଚ୍ଛା, ତୁମ୍ଭେ ଭରଣେ ବୁଣିଲେ ପାଞ୍ଚ ଭରଣ କାଟ ତ ? ମଙ୍ଗରାଜଙ୍କ ଟଙ୍କାଟା କ ବାଞ୍ଝ ? ସେଥିର କଣ କଳନ୍ତର ନାହିଁ ?

ଶାସନ ମଝିରେ ଶିବୁ ପଣ୍ଡିତଙ୍କ ଘର । ଏହାଙ୍କ ଜେଜେ ବଡ଼ ଖାଡ଼ଙ୍ଗା ପୂରା ସାତ ପାଦ ବ୍ୟାକରଣ ମୁହେଁ ମୁହେଁ କହି ଯାଉଥିବାର ପଣ୍ଡିତଙ୍କଠାରୁ ଶୁଣାଯାଏ । ନୈଷଧାନ୍ତ ପାଠ ତାହାଙ୍କଠାରେ ଅଟକୁ ନ ଥିଲା । ପଣ୍ଡିତଙ୍କ ନାନା ବ୍ୟାକରଣର ଶବ୍ଦ ଓ ସନ୍ଧିଗୁଡ଼ାକ କୋଇଲି ଗୀତ ପରି ହୁଁାକି ଯାଉଥିଲେ । ସେମାନଙ୍କ ପୋଥି ସବୁ ଖଟୁଲିରେ ସାଇତା ଅଛି । ପଣ୍ଡିତେ ପ୍ରତିଦିନ ପୂଜାକରନ୍ତି । ଆପେ ପଣ୍ଡିତେ ମଧ୍ୟ ଜଣେ ଟାଣ ପଣ୍ଡିତ । ପୋଥିରୁ ଡୋରି ନ ଫିଟାଇ ପାଞ୍ଚ ବର୍ଗ ଅଭିଧାନ କହି ଯାଇ ପାରନ୍ତି । ପଣ୍ଡିତଙ୍କ ସାଆନ୍ତ ବାପଙ୍କର ମଉଳା ପୁଅ ଭାଇଙ୍କର ଭଣଜାଇର ମାଉସୀପୁଅ ଭାଇ ନବଦ୍ୱୀପ ଯାଇ ନ୍ୟାୟଶାସ୍ତ୍ର ପଢ଼ି ଆସିଥିଲେ । ସାର କଥା ଖାଡ଼ଙ୍ଗାବଂଶ ସକାଶେ ଶାସନର ବିଦ୍ୟା କେତେବେଳେ ଛାଡ଼ି ନାହିଁ । ଏହାଙ୍କ ଦାଣ୍ଡ ପିଣ୍ଡାରେ ଚୌପାଢ଼ୀ, ଶାସନ ପିଲାମାନେ ଦୁଇ ଓଳି ପଢ଼ନ୍ତି, ଏକରୁକଣ କର୍ମକର୍ତ୍ତାଙ୍କ ଷୋଳ ପଣ ଏହିଠାରେ ପଢ଼ା ହୁଏ । କେହି କେହି ପିଲା ବର୍ଗେ ଦୁଇ ବର୍ଗ ପର୍ଯ୍ୟନ୍ତ ଉଚ୍ଚ ଶିକ୍ଷା ମଧ୍ୟ ଲାଭ କରନ୍ତି ।

ପଶ୍ଚିମ ସାହାଲା ତନ୍ତୀସାହିରେ ଚନ୍ଦ୍ରୀ ଦେଉଣଘର, ଏହି ସାହିର ରୋହିଣୀଟା ସଫାସୁତରା; ଖଡ଼ଗାଡ଼ ଗୋବର ଗଦା କିଛି ନାହିଁ । ଆପଣ ମନେ କଲେଣି, ଏଠାରେ ପାଞ୍ଚ ଅଇନ ଜାରି ଅଛି, ମିଉନିସିପାଲଟିର ଶଗଡ଼ଆସି ଅଳିଆ ସବୁ ଉଠାଇ ନେଇଯାଏ । ଆପଣଙ୍କୁ ସାବଧାନ କରି ଦେଉଅଛୁଁ, ଆମ୍ଭମାନଙ୍କଠାରୁ ନ ଶୁଣି କୌଣସି କଥା ସିଦ୍ଧାନ୍ତ କରି ପକାଇବେ ନାହିଁ । ଅନେକ ଅନୁସନ୍ଧାନ ଅନେକ ପ୍ରମାଣ ସଂଗ୍ରହ କରି ଆମ୍ଭମାନଙ୍କୁ ଲେଖିବାକୁ ହୁଏ । ଆପଣମାନଙ୍କର ଏପରି

ଭ୍ରମ ଅପନୋଦନ ନିମନ୍ତେ ଆମ୍ଭମାନଙ୍କର ଏତେ ପରିଶ୍ରମ, ନୋହିଲେ ପ୍ରୟୋଜନ କଣ ? ପୁଣି ଏଣୁତେଣୁ ଗୁଡ଼ାଏ ଲେଖି ପକାଇବା ଆମ୍ଭମାନଙ୍କ ଅଭ୍ୟାସର ବିପରୀତ । ଅକାଟ୍ୟ ପ୍ରମାଣ ନ ପାଇଲେ କିମ୍ବା ଯାହା ନ୍ୟାୟ ଶାସ୍ତ୍ରସଙ୍ଗତ ନୁହେ ଏମନ୍ତ କଥାଗୁଡ଼ାକ ଆମ୍ଭେମାନେ ଶୁଣୁ ନାହୁଁ । ଯାହା ଲେଖିବୁଁ, ସେ କଥା-ଗୁଡ଼ାକ ନ୍ୟାୟ ଶାସ୍ତ୍ର ଅନୁସାରେ ପ୍ରମାଣ କରିଇ ଦେବୁଁ, ଆପଣଙ୍କର ପାଟି ଫିଟାଇବାର ବାଟ ନ ଥିବ । ଦେଖନ୍ତୁ ପ୍ରମାଣ ପ୍ରୟୋଗ ନିମନ୍ତେ ନ୍ୟାୟଶାସ୍ତ୍ର କହନ୍ତି, "ପର୍ବତୋ ବହ୍ନିମାନ ଧୂମାତ୍" ଅର୍ଥାତ୍ ପର୍ବତରୁ ଧୂଆଁ ବାହାରୁଛି କିପାଁ ? ନା, ଭିତରେ ନିଆଁ ଅଛି । ମହାନଦୀର ପାଣି ବଢ଼ି ଆସୁଅଛି । ଦେଖିଲେ ଜାଣିବ, ଉପରେ ଭାରି ବର୍ଷା ହୋଇଗଲାଣି । କାର୍ଯ୍ୟ କାରଣର ଗୋଟାଏ ଏମନ୍ତ ନିତ୍ୟ ସମ୍ବନ୍ଧ ଅଛି । "ନ କାର୍ଯ୍ୟଂ କାରଣଂ ବିନା" କାରଣ ନ ଥିଲେ କାର୍ଯ୍ୟ ହୁଏ ନାହିଁ । ଏଠାରେ ନଦୀ ବୃଦ୍ଧିର କାରଣ ହେଲା ବୃଷ୍ଟି । ସେହିପରି ଆମ୍ଭେମାନେ ଅକାଟ୍ୟ ଯୁକ୍ତି ଦେଖାଇ ପ୍ରମାଣ କରିଇଦେଇ ପାରୁଁ, ଗୋବର ସହିତ ଗୋରୁର ନିତ୍ୟ ସମ୍ବନ୍ଧ ଅଛି । କାରଣର ଅଭାବ ହେଲେ କାର୍ଯ୍ୟର ଅଭାବ ହେବ, ଏ କଥା ଆପଣ ଅବଶ୍ୟ ସ୍ୱୀକାର କରିବେ । ସୁତରାଂ ତନ୍ତୀସାଇର ଗୋବର ଗଦାର ଅଭାବର କାରଣ ଗୋରୁର ଅଭାବ, ଅର୍ଥାତ୍ ତନ୍ତୀସାଇରେ ଗୋରୁ ନାହିଁ, ସୁତରାଂ ଗୋବର ନାହିଁ । ଆପଣମାନଙ୍କ ମନରେ ଆଉ ଗୋଟାଏ ଭାରି ଖଟକା ଲଗିପାରେ । ଗୋରୁଗୁଡ଼ାକ ବାଘ ଭାଲୁ ନୁହନ୍ତି ଯେ ବଣରେ ରହିବେ, ଏମାନେ ଗ୍ରାମ୍ୟପଶୁ, ଗ୍ରାମରେ ରହିବା ଏମାନଙ୍କର ସ୍ୱଭାବ । ଯେଉଁଠାରେ ପାଣି, ସେହିଠାରେ ମାଛ; ସେହିପରି ଗ୍ରାମରେ ଗ୍ରାମ୍ୟ ପଶୁ ଏହା ଧରାବନ୍ଧା କଥା । ତନ୍ତୀସାଇ ଗୋଟାଏ ଗ୍ରାମ, ତେବେ ଗ୍ରାମ୍ୟପଶୁ ନାହାନ୍ତି କି ସକାଶେ ? ଆମ୍ଭେମାନେ ପରମେଶ୍ୱରଙ୍କ ସୃଷ୍ଟିକୌଶଳରେ ଅନେକ ବ୍ୟଭିଚାର ଦେଖିବାକୁ ପାଉଁ, ହୁଏ ତାହାଙ୍କର କାର୍ଯ୍ୟରେ ଗଫଲତି, ନ ହୁଏ ଢିଲା । ଦେଖନ୍ତୁ, ପଶୁ କହ, ପକ୍ଷୀ କହ, କୀଟ ବୋଲ, ପତଙ୍ଗ ବୋଲ, ସବୁ ଜାତିରେ ଅଣ୍ଡିରା ମାଈ ଅଛନ୍ତି, ସେଥି ମଧ୍ୟରେ ତ ଗୋଟାଏ ଗୋଟାଏ ହିଞ୍ଜଲ ଦେଖାଯାଏ । ସେହିପରି ତନ୍ତୀସାହି ଗ୍ରାମ ହେଲେ ମଧ୍ୟ ଏଥିରେ ଗ୍ରାମ୍ୟ ପଶୁ ନାହିଁ । ପଶୁ ସମ୍ବନ୍ଧରେ ଏହା ହିଞ୍ଜଲ ଅର୍ଥାତ୍ ଏଠାରେ ବନ୍ୟପଶୁ ବାଘ, ଭାଲୁ କିମ୍ବା ଗ୍ରାମ୍ୟପଶୁ ଗାଈ, ଗୋରୁ କିଛି ନାହାନ୍ତି । ତାହାର ମଧ୍ୟ କାରଣ ଥାଇପାରେ, କାରଣ ବିନା କାର୍ଯ୍ୟ ନାହିଁ, ଏହା ନ୍ୟାୟଶାସ୍ତ୍ରର ସୂତ୍ର ଅଟେ । ବ୍ୟାକରଣ ରଚକମାନେ ସୂତ୍ର ଠିକ୍ କରି ନ ପାରିଲେ ନିପାତନସିଦ୍ଧ ବୋଲି ଗୋଟାଏ କଥା କହି କାର୍ଯ୍ୟ ସାରି ଦିଅନ୍ତି, ମାତ୍ର ଏହା ଏକ ପ୍ରକାର ଠକପଣିଆ । ତାହା ଆମ୍ଭମାନଙ୍କ ହାତରେ ହେବ ନାହିଁ । ସେ କଥା ଥାଉ, ତନ୍ତୀସାଇରେ ଗୋରୁ କିଆଁ ନାହିଁ, ତାହାର କାରଣ ବୁଝନ୍ତୁ । ବାଇବେଲରେ ଲେଖାଅଛି, 'ଜଣେ ସେବକ ଦୁଇଜଣ ସାଆନ୍ତର ସେବା କରିପାରେ ନାହିଁ ।' ସଚରାଚର ଦେଖାଯାଏ, ଶାସ୍ତ୍ରକାରମାନେ ଠିକେ ଠିକେ ଦୁଇ କଥା କହି କାର୍ଯ୍ୟ ସାରିବସନ୍ତି । ଟୀକାକାର ନ ଥିଲେ ମୂଳଗ୍ରନ୍ଥ ବୁଝିବା ନିତାନ୍ତ କଠିନ । ମଲ୍ଲିନାଥ, ମଥୁରାନାଥ, ଶ୍ରୀଧର ବ୍ୟାଖ୍ୟା କରିଦେଇ ନ ଥିଲେ, ରଘୁବଂଶ, ନ୍ୟାୟ, ଭାଗବତ ପରି ଗ୍ରନ୍ଥମାନ ଆଜଯାଏ ଡୋରିଭିଡ଼ା ହୋଇ ପଡ଼ିଥାନ୍ତା । ସେହିପରି ଆମ୍ଭେମାନେ ବାଇବେଲର ବ୍ୟାଖ୍ୟାକରି ନ ଦେଲେ ବୁଝିବା ସହଜ ନୁହେ । ଆପଣ ନ ହୁଏ ଟାଣିଟୁଣି ଏକପ୍ରକାର ପାଠ ଲଗାଇଯିବେ, ମାତ୍ର ସମସ୍ତଙ୍କ ହାତରେ ତ ସବୁ କଥା ହୁଏ ନାହିଁ । ବାଇବେଲ ସୂତ୍ରର ଅର୍ଥ ଏହି କି, ଜଣେ ମନୁଷ୍ୟ ଏକ ସମୟରେ ଦୁଇ କାର୍ଯ୍ୟ କରି ପାରେ ନାହିଁ । ଅର୍ଥାତ୍ ଲୁଗା ବୁଣାରେ ତନ୍ତୀମାନଙ୍କର ଦିନ ଯାଏ, କୃଷି କରିବାକୁ ବେଳ କାହିଁ ? କୃଷି ଯଦି ନ କଲେ, ବଳଦ ରଖିବାର ଦରକାର କଣ ? ବଳଦ ନ ଥିଲେ ଗୋବର କାହୁଁ ଆସିବ ? ଗୋବର ଅଭାବରୁ ଖତଗଦାର ଅଭାବ । ଖତଗଦା ନ ଥିବାରୁ ଦାଣ୍ଡସଫା ।

ଆଜିକାଲି ଊଣେଇଶ ଶ ସମ୍ବତ୍ସରରେ ବିଜ୍ଞାନ-ଶାସ୍ତ୍ରର ଖୁବ୍ ମର୍ଯ୍ୟାଦା; କାରଣ, ଏହି ଶାସ୍ତ୍ର ସବୁ ଉନ୍ନତିର ମୂଳ ଅଟେ । ଦେଖନ୍ତୁ, ଇଂରେଜମାନେ କେଡ଼େ ଗୋରା, ଆଉ ଓଡ଼ିଆମାନଙ୍କ ଦେହ କାଳିଆ । ସେଥିର କାରଣ ସେମାନେ ବିଜ୍ଞାନଶାସ୍ତ୍ର ପଢ଼ିଅଛନ୍ତି, ଓଡ଼ିଆମାନେ ଜାଣନ୍ତି ନାହିଁ ! ଆମ୍ଭେମାନେ ହାଲି ବିଜ୍ଞାନର ଚର୍ଚ୍ଚା ଆରମ୍ଭ କରିଅଛୁଁ । ବର୍ତ୍ତମାନ ପ୍ରସଙ୍ଗଟା ଆମ୍ଭେମାନେ ସେହି ଶାସ୍ତ୍ର ଅନୁସାରେ ପ୍ରମାଣ କରିଦେଇ ପାରୁଁ । ଆପଣ ପାଠରେ ମନ ଦେଉନ୍ତୁ, ବିଜ୍ଞାନଶାସ୍ତ୍ର ଯେ କେଡ଼େ ଠିକ, ତାହା ବୁଝି ପାରିବେ । ଉକ୍ତ ଶାସ୍ତ୍ରର ସୂତ୍ର ଏହି, ଏକ ସ୍ଥାନରେ ଦୁଇଗୋଟି ବସ୍ତୁ ରହି ନ ପାରେ । ଆପଣଙ୍କ ଦୁଧପିଆ ଗିନାରେ ପାଣି ରହେ ତ ? ଏ କଥା ବୋଲିବେ, ସେଥିପାଇଁ ଉକ୍ତ ସୂତ୍ର ବ୍ୟାଖ୍ୟା ଆବଶ୍ୟକ । ଅର୍ଥାତ୍ ଗୋଟିଏ ସ୍ଥାନରେ ଏକ ସମୟରେ ଦୁଇଗୋଟି ପଦାର୍ଥ ରହି ନ ପାରେ । ଗିନାରେ ଦୁଧ ପୂର୍ଣ୍ଣ ଥିଲେ ଆଉ ପାଣି ରହି ପାରିବ ନାହିଁ । ଲୁଗାବୁଣା ସକାଶେ ବାହାର ଭିତର ଦୁଇ ଜାଗା ଦରକାର । ଘର ଭିତରେ ଲୁଗା ବୁଣାଯାଏ ; ଲୁଣ୍ଡି କାଟିବା, ତାଗୀ କରିବା ଇତ୍ୟାଦି କର୍ମ ବାହାରେ ହୁଏ । ସୁତରାଂ ତାସଣ ଜାଗାରେ ଗୋବର ଗଦା ରହିବା ନିତାନ୍ତ ଅସମ୍ଭବ । ଆଉ ସ୍ତ୍ରୀ ପୁରୁଷ ମିଳିତ ନ ହେଲେ ଲୁଗା ପ୍ରସ୍ତୁତ ହୋଇପାରେ ନାହିଁ । ସୂତାରେ ତୋରଣି ଦେବା, ନଟେଇ ବା ଚରଖିରେ ଚଢ଼ାଇବା ନଳି ବଳିବା, ଏ ସବୁ ତନ୍ତଆଣୀମାନଙ୍କର କାର୍ଯ୍ୟ । ଗାଈ ବଳଦ ଦାଣ୍ଡରୁ ଖୋଜି ଆଣି ବାନ୍ଧିବାକୁ ସେମାନଙ୍କର ବେଳ କାହିଁ ? ଇତ୍ୟାଦି ଆହୁରି ମଧ୍ୟ ଅନେକ କାରଣ ଅଛି; ମାତ୍ର କଥା ବଢ଼େଇ ଲେଖିବା ଆମ୍ଭମାନଙ୍କ ଦେହରେ ଚଳେ ନାହିଁ, ସେହିପାଇଁ ଠିକେ ଠିକେ ସବୁ କଥା ଲେଖିପକାଉଁ ।

---

-୧୦-

## ଭଗିଆ ଆଉ ସାରିଆ

ତନ୍ତୀସାଇ ମୁଣ୍ଡରେ ଘଟବତି ଘର ଆଉ ଦଧିବାମନ ମନ୍ଦିର । ତନ୍ତୀମାନଙ୍କ ଜାତିଆଣ ଟଙ୍କାରେ ମନ୍ଦିରଟି ତିଆର ହୋଇଅଛି । ଜାତିଆଣ ଟଙ୍କା କଣ ଜାଣନ୍ତି ? ଅବଶ୍ୟ ଏ କଥାଟା ଆପଣଙ୍କୁ ବୁଝାଇ ଦେବା ଦରକାର ନାହିଁ; ମାତ୍ର ଆଉ ଆଉ ନବ୍ୟ ବାବୁମାନଙ୍କୁ ବୁଝାଇଦେବା ଦରକାର । କାରଣ ସେମାନେ ବିଦ୍ୱାନ୍, ବଡ଼ ବଡ଼ କଥା ପଢ଼ି ଅଛନ୍ତି, ବଡ଼ ବଡ଼ କଥା ଜାଣନ୍ତି । ଆପଣା ଜେଜେବାପର ବାପ ନାମ ପଚରି, ଅଣ୍ଡାଳି ହେବେ; କିନ୍ତୁ ଇଂଲଣ୍ଡର ତୃତୀୟ ଚାର୍ଲସର ପଞ୍ଚଦଶ ପୁରୁଷଙ୍କ ନାମ ସେମାନଙ୍କର କଣ୍ଠସ୍ଥ । ଇଂରେଜ ସମାଜ ବା ଫରାସୀ ସମାଜର କଥାଗୁଡ଼ାକ ପଢ଼ିଲେ ଲୋକେ ବିଦ୍ୱାନ୍ କହିବେ, ଆପଣାର ବା ପ୍ରତିବାସୀ ଜାତି ଓ ସମାଜର କଥା ଜାଣିବାର ଦରକାର କଣ ? ଯାଉ ସେଥିରେ କଣ ଅଛି ? ବାବୁମାନେ ଏ କଥା ଶୁଣିଲେ ଖପା ହୋଇଯିବେ, ଆମ୍ଭମାନଙ୍କର କହିବାର ଦରକାର କଣ ? ଜାତିଆଣ ଟଙ୍କାର ଅର୍ଥ ଏହି ଯେ, ଜାତି ମଧ୍ୟରେ କେହି ଭଲ ମନ୍ଦ କଲେ, ପଞ୍ଚମାନେ ତାହାକୁ ଜରିମାନା କରନ୍ତି କିମ୍ବା କେହି ଗରିବ ଜାତିଭାଇ ଦେଇ ନ ପାରିଲେ ପଞ୍ଚଗୋସାଇଁ କିଛି ମାନ୍ୟ ନେଇ ତାହାକୁ ଉଠାଇ ନିଅନ୍ତି । ଟଙ୍କା ପରମାଣିକ ଜିମାରେ ଥାଏ । ସେହି ଟଙ୍କାରେ ମନ୍ଦିରଟି ତିଆର ହୋଇଅଛି । ଏହି ନିୟମ ସବୁ ହାଟୁଆ ଜାତିରେ ଚଳେ । ଆହା ! ଏହି ସୁନ୍ଦର ପ୍ରଥାଟି ଦିନକୁ ଦିନ ଲୋପ ପାଉଅଛି । ଆଜିକାଲି ଅଦାଲତ ଦୁଆର ମେଲା, ଲୋକମାନେ ଜ୍ଞାନୀ ଅର୍ଥାତ୍ ସଭ୍ୟ ହେଲେଣି, ପଞ୍ଚଶାସନ କିଏ ମାନୁଛି ? ଇଂରେଜୀ ଆଇନ କହେ, 'ଦେଖ ବାବା ସାବଧାନ ! ତୁମ୍ଭେ ଯେବେ କିଛି ଅପରାଧ କର,

ଆଉ ସେଥିରେ ଯଦି ଆଇନସଙ୍ଗତ ପ୍ରମାଣ ପାଉଁ, ଦଣ୍ଡ ଦେବୁଁ ।' ଚଲାକ୍ ଲୋକ କହିଲା, 'ଆଜ୍ଞା ଆପଣ ଯେମନ୍ତ ପ୍ରମାଣ ନ ପାଇବେ, ସେଥିର ଫିକର ମୋତେ ଜଣା ।' ଆଉ ଓଁଗାଲ ତାହା ପିଠି ଷ୍ଟପୁଡ଼ାଇ କହିଲେ, 'କୁଛ୍ ପରବା ନେହି, ଟଙ୍କା ଆଣ, ମୁଁ କଳାକୁ ଧଳା, ଧଳାକୁ କଳା କରି ଦେବ ।' ଏଥିରେ ଏ ଫଳ ହେଉଅଛି ଯେ, ଅନେକ ଚଲାକ ଓ ଧନବାନ୍ ଲୋକ ଶତ ଅପରାଧ କରି ମଧ୍ଯ ଦେହ ଝାଡ଼ି ଚାଲି ଯାଉଅଛନ୍ତି । ନିରୀହ ନିର୍ଦ୍ଧନ ଲୋକଙ୍କୁ ହରବରରେ ପଡ଼ିବାକୁ ହେଉଅଛି । ଆଉ ଦୁଇ ଚଷ ମକଦ୍ଦମାଂରେ ଟଙ୍କା ବାଣ୍ଟି କଙ୍ଗାଳ । ସେହି ଟଙ୍କା ବାର ଭୂତ ଗୋଟାଇ ଖାଉଅଛନ୍ତି । ଆଉ ପଞ୍ଚୁଆତଙ୍କ ଆଖିରେ ଧୂଳି ପକାଇବାର ବାଟ ନାହିଁ । ପୁଣି ପ୍ରକୃତ ଅପରାଧୀଠାରୁ ଜରିମାନା ଅଧୁଲ ଟଙ୍କା ସତ୍କାର୍ଯ୍ୟରେ ଲଗୁଥିଲା ।

ନବବୁଦ୍ଧିଭଉର ସହିତ ତନ୍ତୀ ଜାତିର ଗୋଟାଏ ସମ୍ବନ୍ଧ ଥିବାର ସମସ୍ତେ ବୋଲନ୍ତି । କାହାର ବୁଦ୍ଧିର ତ୍ରୁଟି ଦେଖିଲେ ଲୋକେ ବୋଲନ୍ତି, ''ଆରେ ଭୁଟା ତନ୍ତୀ ନା କଣ ରେ ?'' ଅର୍ଥାତ୍ ତୁ ତନ୍ତୀ ପରି ହୁଣ୍ଡା । ଆପଣ ସନ୍ଧ୍ୟାରା ଶିଖିଥିଲେ ତନ୍ତୀମାନଙ୍କର ଦଧିବାବନ ମନ୍ଦିର ଉଦ୍ଧାର କଥା ଶୁଣି ସେହି ପ୍ରବାଦକୁ ଅକାଟ୍ୟ ସତ୍ୟ ବୋଲି ବିଶ୍ୱାସ କରିବେ । ଆପଣ କହିବେ, ସାଧାରଣ ଟଙ୍କାଗୁଡ଼ାକ ଏପରି ଅପବ୍ୟୟ କର୍ଯା ? କଲେକ୍ଟର ସାହେବଙ୍କ ନାମରେ ସ୍କଲର୍ସିପ ବାନ୍ଧ, ନୋହିଲେ ଲାଟ ସାହେବଙ୍କ ନାମରେ ହାସପାତାଳ ବସାଅ, ମନ୍ଦିର ଟା କଣ ?

ଆପଣଙ୍କ ମନ ଯୋଗାଇ କଥା କହିବା ଆମ୍ଭମାନଙ୍କର କାର୍ଯ୍ୟ; ମାତ୍ର ଆପଣଙ୍କ କଥାଟା ଆମ୍ଭମାନଙ୍କ ମନକୁ କଟରେ ଲଗୁଅଛି । ଆପଣଙ୍କୁ କୁହାଯାଉ ନାହିଁ ଏ କଥା ଠିକ୍; କିନ୍ତୁ ତନ୍ତୀ ବୁଦ୍ଧି ଅର୍ଥ କଣ ଜାଣନ୍ତି, ଏହା ଗୋଟାଏ ଯୋଗାରୂଢ଼ ଶବ୍ଦ । ଯେମନ୍ତ ପଙ୍କଜ ବୋଇଲେ ପଦ୍ମ, ତେବେ ପଙ୍କରୁ ଯେ ଜାତ ହେବ ଅର୍ଥାତ୍ ଘୋଡ଼ାଦଳ, ଶିଉଳ, ଶାମୁକା, ଗେଣ୍ଡା ସମସ୍ତେ କ ପଦ୍ମ ? ତାହା ନୁହେଁ । ସେହିପରି ତନ୍ତୀ ଅର୍ଥ ନବୁଦ୍ଧିଆ, ନବୁଦ୍ଧିଆ ଅର୍ଥ ତନ୍ତୀ ନୁହେଁ । ସେ ଦିନ ମାଞ୍ଚେଷ୍ଟରର ତନ୍ତୀମାନେ ଯେ ପାର୍ଲିଆମେଣ୍ଟ କମ୍ପାଇ ଦେଲେ, ତାହା କ ଜାଣନ୍ତି ନାହିଁ ? ଆପଣ ଯେ ବାବୁ ସାଜିଅଛନ୍ତି, ତାହା ତ କେବଳ ତନ୍ତୀ ପ୍ରସାଦାତ୍ । ଏପ୍ରକାର ତନ୍ତୀଙ୍କ ବୁଦ୍ଧି ପ୍ରତି ଦୋଷାରୋପ କରିବା ଏକ ପ୍ରକାର ବେଇମାନି । ହିସାବ ଧରିଲେ ଆମ୍ଭମାନଙ୍କ ପୂର୍ବପୁରୁଷ ସମସ୍ତେ ତନ୍ତୀ ଥିଲେ । ଏଥିର ପ୍ରମାଣ ସଂଗ୍ରହ ନିମନ୍ତେ ପ୍ରତ୍ନତତ୍ତ୍ୱ ବିଦ୍ୟାର ଅନୁଶୀଳନ କରିବାର ଦରକାର ନାହିଁ । ଗ୍ରାମ ଗ୍ରାମରେ ଠାକୁରମନ୍ଦିରଗୁଡ଼ାକ ସେଥିର ପ୍ରତ୍ୟକ୍ଷ ସାକ୍ଷୀ । କୌଣସି ବିଷୟରେ ଦୁଇ ପଟ ନ ଦେଖି ହଠାତ୍ ସିଦ୍ଧାନ୍ତରେ ଉପନୀତ ହେବା ତନ୍ତୀତ୍ୱର ଚିହ୍ନ ବୋଲି ଆମ୍ଭେମାନେ ବିଶ୍ୱାସ କରୁଁ । ଦେଖାଯାଉ ଠାକୁର-ମନ୍ଦିରଗୁଡ଼ାକ ବାସ୍ତବିକ ତନ୍ତୀଙ୍କ କାର୍ଯ୍ୟ କ ନୁହେଁ । ଘୋର ମଫସଲିଆ ଲୋକମାନଙ୍କ କଥା ଆପଣଙ୍କୁ ଜଣାଥିବ । ସେମାନେ ଦିନଯାକ ଦୁଃଖ ଧନ୍ଦାରେ ଲାଗିଥାନ୍ତି, ସଞ୍ଜ ହେଲେ ମୁଠାଏ ମୁଠାଏ ଖାଇ ଶୋଇ ପଡ଼ନ୍ତି । ଗ୍ରାମରେ ଧର୍ମପ୍ରଚାରକ ନାହାନ୍ତି, ଲାଇବ୍ରେରୀ ନାହିଁ, ଧର୍ମକଥା କାହୁଁ ଶୁଣିବେ ? ଠାକୁର ମନ୍ଦିରରେ ସଞ୍ଜ ସକାଳେ ଶଙ୍ଖ ଘଣ୍ଟା ବାଜେ । ପିଲାଠାରୁ ବୁଢ଼ା ପର୍ଯ୍ୟନ୍ତ ସମସ୍ତଙ୍କୁ ଏହି ଶବ୍ଦ ଜଣାଇ ଦିଏ, ଜଗତରେ ପ୍ରଭୁ ଅଛନ୍ତି । ଯେଉଁଠାରେ ଭାଗବତ ଗାଦି ଅଛି; ରାଧାଷ୍ଟମୀ, ଜନ୍ମାଷ୍ଟମୀ, କାର୍ତ୍ତିକ ମାସ ପ୍ରଭୃତି ପର୍ବଦିନ ମନ୍ଦିରରେ ଭାଗବତ ପାଠ ହୁଏ, ଲୋକମାନେ ଯାଇ ଶୁଣନ୍ତି । ମନ୍ଦିର ନ ଥିଲେ ପ୍ରଭୁଙ୍କର ନାମ ବା ଧର୍ମଗ୍ରନ୍ଥ ଶୁଣିବାର ଉପାୟ ନ ଥିଲା । ବିଦେଶୀ ଲୋକ କମ୍ପା ଗ୍ରାମରେ କାହାର ଖଞ୍ଜ ଅଖଞ୍ଜରେ ଘଡ଼ରନ୍ଧା ହୋଇ ନ ପାରିଲେ, ପୂଜାହାରୀ ପାଖରେ ଯୋଡ଼ାଏ ପଇସା

ପକାଇ ଦେଲେ ପେଟେ ପ୍ରସାଦ ଖାଇବାକୁ ମିଳେ । ପଞ୍ଚୁଆତ, ଗ୍ରାମଲୋକଙ୍କ ଦୋଷାଦୋଷର ବିଚାର ଠାକୁର ମନ୍ଦିରରେ ହୁଏ । ଆମ୍ଭେମାନେ ସଂକ୍ଷେପରେ ଇଂରେଜୀ ତର୍ଜମା କରିଦେଲେ ଆପଣ ସହଜରେ ବୁଝି ପାରିବେ, ଠାକୁରମନ୍ଦିରଗୁଡ଼ିକରେ ଗ୍ରାମ ମଧ୍ୟରେ ଚର୍ଚ୍ଚ ( ଭଜନାଳୟ ), ପବ୍ଲିକ ଲାଇବ୍ରେରୀ ( ସାଧାରଣ ପୁସ୍ତକାଳୟ ), ହୋଟେଲ ( ଭୋଜନାଳୟ ), ଟାଉନ୍‌ହଲ ( ଭାଗବତ ଘର ) ଏହି ଚାରି କାର୍ଯ୍ୟ ଚଳେ । ସେ କଥା ଯାଉ, ଆମ୍ଭମାନଙ୍କୁ ଆଉ ଆଉ କଥା ଲେଖିବାକୁ ହେବ ।

ଆଉ ଆଉ ହାଟୁଆଜାତିଙ୍କ ପରି ତନ୍ତୀମାନଙ୍କର ମଧ୍ୟ ଜଣେ ପରମାଣିକ ଅଛି, ସେ ଜାତି ମଧ୍ୟରେ ପ୍ରଧାନ । ପରମାଣିକଙ୍କୁ ନ ଧରିଲେ ଜାତିଆଣ କର୍ମ କିଛି ଚଳେ ନାହିଁ । ବାହା ପୁଆଣି ହେଲେ ପରମାଣିକ ଜାତିରେ ଗୁଆ ଦିଏ । ସେଥି ସକାଶେ ମୁଣ୍ଡିଏ ଲୁଗା ଆଉ ଗୋଟିଏ ଗୁଆ ମାନ୍ୟ ପାଏ । ଜାତିର ହାରି ଗୁହାରି ପରମାଣିକଠାରେ ହେଲେ ସେ ଗୁଆ ଦେଇ ପଞ୍ଚୁଆତ ସଞ୍ଜୁଳ ଆଣେ । ସଭାରେ ଫୁଲ ଚନ୍ଦନ ଆଗେ ପରମାଣିକଙ୍କୁ ଦିଆଯାଏ । ଜାତିଭାତରେ ପରମାଣିକ ଆଗେ କୃଷ୍ଣ ନ କଲେ କାହାରି ହାତ ଚଳେ ନାହିଁ । ଏହି ପରମାଣିକ ପଦଟା ପୁରୁଷାନୁକ୍ରମିକ; ଅର୍ଥାତ୍ ପରମାଣିକ ପୁଅ ପରମାଣିକ ହେବ କିମ୍ବା ତାହା ବଂଶରୁ କେହି ଜଣେ ହେବ, ସେ ସେ ଲୋକ ହୋଇ ପାରିବ ନାହିଁ । ବର୍ତ୍ତମାନ ପରମାଣିକର ନାମ ଭଗିଆ ଚନ୍ଦ । ଭଗିଆ ବିଚରା ବଡ଼ ସାଦା ସିଧା ଲୋକ, ଛନ୍ଦ କପଟ ତା ମନକୁ ଛୁଇଁ ନାହିଁ । ତାକୁ ଶାଗ କହ—ହଁ; ମୁଗ କହ— ହଁ । ଗାଁ ଲୋକମାନେ ଭଗିଆକୁ ହୁଣ୍ଡା ତନ୍ତୀ ବୋଲି ଡାକନ୍ତି । ଆପଣଙ୍କୁ କହିବାକୁ ଏତେବେଳେ ସଳଖ ଦାଣ୍ଡ ପଡ଼ିଗଲା । ଆମ୍ଭେମାନେ ଇସାରାରେ ସବୁ କଥା ବୁଝିପାରୁଁ । ଆପଣଙ୍କ ମୁହଁ ଆକାରରୁ ସବୁ କଥା ଜଣା ପଡ଼ିଗଲାଣି । ଆପଣ କହୁଛନ୍ତି ବା କହିବେ କିମ୍ବା କହିବାକୁ ମନେ କରିଅଛନ୍ତି ବା କରିବେ—ଏ ଗୁଡ଼ାକ କପଟ ତନ୍ତୀ ନୁହନ୍ତି ତ ଆଉ କ'ଣ ? ବାପ ପରମାଣିକ ଥିଲା ବୋଲି ହୁଣ୍ଡାଟାକୁ ସରଦାର କରି ସବୁ ତନ୍ତୀଗୁଡ଼ାକ ତାକୁ କୁହାଉଛନ୍ତି । ଅରେ ବାବୁ, ଯେବେ ଜଣେ ସରଦାର କରିବାର ଦରକାର ହେଲା, ପାର୍ଲିଆମେଣ୍ଟର ମେମ୍ବର ବା ଇଉନାଇଟେଡ଼ ଷ୍ଟେଟର ପ୍ରେସିଡେଣ୍ଟ ବାଛିଲାପରି ପାଞ୍ଚଜଣଙ୍କର ଭୋଟ (ମତ) ନେଇ ଜଣେ ସିଆଣାବୁଝିଲା ଲୋକଙ୍କୁ ପରମାଣିକ କର । ତା ନ କରି ବାପ ପରମାଣିକ ଥିଲା ବୋଲି ଅଯୋଗ୍ୟ ଲୋକଟାକୁ ପରମାଣିକ କରି ବସିଅଛ । କଥାଟା ଏକା ସତ । ମନ ମାନିଗଲା ପରା । ହକ କଥାରେ ଉଁ ଚୁଁ କରିବାକୁ କି ବାଟ ଥାଏ ? ଆମ୍ଭେମାନେ ବରାବର ତନ୍ତୀମାନଙ୍କ ପଟ ଧରି ଚାଲିଥିଲୁଁ, ଏଣିକି ଆଉ ବାଟ କାହିଁ ? ଆମ୍ଭେମାନେ ପ୍ରତିଜ୍ଞା କରିଅଛୁଁ ବା କରିବୁଁ ତନ୍ତୀ କଥାରେ ଆଉ ପାଖ ପଶିବୁଁ ନାହିଁ । ହେଲେ, ତନ୍ତୀମାନଙ୍କୁ ଚିହ୍ନି ରଖିବାର ଉଚିତ । ହେ ପାଠକ ଅବଧାନ, ଆମ୍ଭମାନଙ୍କର ଜ୍ଞାନ ଅତି ଅଳ୍ପ, ସୁତରାଂ ତନ୍ତୀ ଚିହ୍ନିବାକୁ ନିତାନ୍ତ ଅକ୍ଷମ । ଅନୁଗ୍ରହ କରି ଆମ୍ଭମାନଙ୍କୁ ତନ୍ତୀ ଚିହ୍ନାଇ ଦେଉନ୍ତୁ ।

ହିନ୍ଦୁ ହୋଇଥିଲେ ବେଦ ବେଦାନ୍ତ ହିନ୍ଦୁଶାସ୍ତ୍ର ଅବଶ୍ୟ ମାନ୍ୟ କରିବେ । ଶାସ୍ତ୍ରରେ ଅଛି, "ଶମୋଦମସ୍ତପଃ ଶୌଚଂ ସନ୍ତୋଷଂ କ୍ଷାନ୍ତିରାର୍ଜ୍ଜବଂ ମଦ୍‌ଭକ୍ତିଶ୍ଚ ଦୟା ସତ୍ୟଂ ବ୍ରହ୍ମପ୍ରକୃତୟସ୍ତ୍ୱିମାଃ"—ଏହି ସମସ୍ତ ବ୍ରହ୍ମତତ୍ତ୍ୱର ଲକ୍ଷଣ । ସେହି ବ୍ରାହ୍ମଣ ପୂଜନୀୟ, ବରଣୀୟ, ଭକ୍ତିର ଯୋଗ୍ୟ । ଏପରି ବ୍ରାହ୍ମଣଙ୍କ ପଦଧୂଳି ଆମ୍ଭେମାନେ ମସ୍ତକରେ ଧାରଣ କରିବାକୁ ଶହେବାର ପ୍ରସ୍ତୁତ । ମାତ୍ର—

ଶୁଣ ପରୀକ୍ଷ ନରନାଥ । ତାମ୍ବୁଡ଼ା ଶୁଙ୍ଘିଆ ପଖାଳ ଭାତ
ସି-ଅକ୍ଷର ବିବର୍ଜିତ । ଚିତା ଫଟାଦି ଶୋଭିତ ।

ବିଲ ବାଛିବାକୁ ଆଗ । ଦହି ଚୂଡ଼ାକୁ ବାଘ ।
ସନ୍ଧ୍ୟା-ଗାୟତ୍ରୀହୀନ । ବିଲରୁ ଚିପନ୍ତି ମୀନ ।

ପୋଥିରୁ ନଫିଟେ ଡୋର । ଯଜମାନ ଗୃହଳ ଶ୍ରେଷ୍ଠ ।
ସଭାରେ ନ ଫିଟେ ପାଟି । ନାମଟି ସୁନ୍ଦର ତ୍ରିପାଠୀ ।

ସୁନ୍ଦର ତିହାଡ଼ଙ୍କୁ ଓଲଗି ହୁଏ, କାରଣ ସେ ବ୍ରାହ୍ମଣ ଔରସରୁ ଜାତ । ସୁନ୍ଦର ତିହାଡ଼ ଆପଣଙ୍କ କୁଳପୁରୋହିତ, ଯେହେତୁ ତାହାଙ୍କ ବାପ ପୁରୋହିତ ଥିଲେ । ଆପଣଙ୍କୁ ବୋଲିବାକୁ ସାହସ ଅସ୍ନାହିଁ; କିନ୍ତୁ ଆମ୍ଭେମାନେ ପାଞ୍ଜିରେ ନାମ ଲେଖି ରଖିଲୁ ।

ପୁଣି ଶାସ୍ତ୍ରରେ ଲେଖା ଅଛି –

'ଅଜ୍ଞାନତିମିରାନ୍ଧସ୍ୟ ଜ୍ଞାନାଞ୍ଜନଶଲାକୟା ।
ଚକ୍ଷୁରୁନ୍ମୀଲିତଂ ଯେନ ତସ୍ମୈ ଶ୍ରୀ ଗୁରବେ ନମଃ ।'

ଅଜ୍ଞାନରୂପ ନେତ୍ର ରୋଗରେ ଅନ୍ଧ ବ୍ୟକ୍ତିର ଚକ୍ଷୁ ଜ୍ଞାନରୂପ ଅଞ୍ଜନଶଳାକାଦ୍ୱାରା ଯେ ଉନ୍ମୀଳିତ କରନ୍ତି, ସେହି ଗୁରୁଙ୍କୁ ନମସ୍କାର କର ।

ସତ୍ୟ ବୋଲନ୍ତୁ ଏପରି ଲୋକଙ୍କୁ ଗୁରୁ କରନ୍ତି, କି ଗୁରୁର ପୁତ୍ର ଆପଣଙ୍କ ଗୁରୁ ? ଯାଉ, ସେ କଥାଗୁଡ଼ାକ କହିଲେ କଣ ହେବ ? ମାତ୍ର ଚିନ୍ତା ଚାହ୍ମା ପଡ଼ିଗଲେ । 'ଗୋଦରା ଲୋ, ଆପଣା ଗୋଡ଼କୁ ଅନା !' ଖୋଜି ବସିଲେ ହରଦର 'କୁହୁଡ଼ିପହିଁରା' ଢେର ପାଇବ । ଧାନ କୁଟୁଣୀ ଭଗବତ ପଢ଼ିଲା ପରି ଆମ୍ଭେମାନେ ଗାଁ କଥା ଲେଖୁଁ ଲେଖୁଁ ଆପଣଙ୍କ ଭଲଆ ଲୋକଙ୍କ କଥା କହି ବସିଅଛୁଁ । ତେବେ କଣ ଜାଣନ୍ତି, ବିଷପୂଟା ପଡ଼ିଲେ ଖାଲରେ ପଡ଼ୁ, ଢିପରେ ପଡ଼ୁ, ସମସ୍ତେ ହିକଥା ମାରି ଦିଅନ୍ତି । ସଙ୍କୀର୍ତ୍ତନରେ ହାଡ଼ିଡ୍ରାଟା ମଧ୍ୟ ଆଁ କରିଦିଏ ।

ସେ ସବୁ କଥା ଥାଉ, ଏବେ ଗାଁ କଥା ଶୁଣନ୍ତୁ । ଆଜିକା ମାପକୁ ପଲମ । ଭଗିଆ ଯେପରି ହୁଣ୍ଡା, ତା ଭାର୍ଯ୍ୟାଟି ମଧ୍ୟ ସେହିପରି ହୁଣ୍ଡୀ । ନାମ ସାରିଆ । ବୟସ ଅନ୍ଦାଜ ପଚିଶ ହେବ । ସାରିଆର ଗୁଣ ତ ଶୁଣିଲେ, ରୂପ କଥା ଶୁଣିବେ କି ? ଦେଖନ୍ତୁ, ପରପ୍ରତ୍ୟାଶୀ ହେବା ଗୋଟାଏ ବଡ଼ ଖରାପ କଥା । ଆପଣା ବୁଦ୍ଧିବଳରେ ଅନୁମାନଦ୍ୱାରା କଷ୍ଟ କଷ୍ଟ ବୁଝିବାକୁ ଚେଷ୍ଟା କରନ୍ତୁ । କେବଳ ଆମ୍ଭମାନଙ୍କ ହାତକୁ ଗୁହିଁ ରହିବେ ନାହିଁ । ଅନୁମାନ ଦ୍ୱାରା କପରି ବୁଝିବାକୁ ହୁଏ, ସେଥିର ମୂଳ ସୂତ୍ର ଶୁଣିଲେ ଆପଣଙ୍କ ବାଟ ଫିଟି ଯିବ । ଯେବେ ଶୁଣିବେ ଯୁବତୀ ରାଜକନ୍ୟା, ତକ୍ଷଣେ ବୁଝି-ଯିବେ, ସେ କନ୍ୟାଟି ଭାରି ସୁନ୍ଦରୀ, ଭାରି ଗୁଣବତୀ, "ନାହିଁ ନ ଥିବ ପଟାନ୍ତର, ରମା ଉମା ସଙ୍ଗେ ତାକୁ ଧର ।" ହେଉପଛେ ଉଆଉଗାଙ୍ଗୀ, ପେଚୁନାକୀ, ସେ କଥା ଧରିବେ ନାହିଁ । ଯେବେ ଶୁଣିବେ, ଫଲଣା ଜମିଦାର ହାତରେ ଢେର ଟଙ୍କା ଅଛି, ତକ୍ଷଣେ ବୁଝି ଯିବେ, ସେ ରୂପବାନ୍, ଗୁଣବାନ, ଦାତା, ଦୟାଳୁ ଇତ୍ୟାଦି ଇତ୍ୟାଦି । ଆମ୍ଭମାନଙ୍କ ସାରିଆ ଗାଁର ତନ୍ତି-ଆଣୀଟିଏ, ଏବେ ସକଳ କଥା ବୁଝି ନିଅନ୍ତୁ । ଭଗିଚନ୍ଦ ଆଉ ସାରିଆ ଘରକୁ ଦୁଇପରାଣୀ । ମାଇକିନିଆମାନେ କହନ୍ତି, "ଦୁଇ ପରାଣିଆ ଭଲ, ବାନ୍ଧି କତରା ଚଲ ।" ଆମ୍ଭମାନଙ୍କ ହୁଣ୍ଡା ହୁଣ୍ଡୀ କଥା ସେହିପରି । ନକଡ଼ ଛକଡ଼ ନାହିଁ । ଦୁଇ ଜଣଙ୍କର କମିନ୍ଷେ ଗୁଡ଼ବାଡ଼ ଥାଏ ନାହିଁ । ଦୁହେଁ ମିଳିମିଶି ଘର କାମ କରନ୍ତି, ଭଗିଆ ତନ୍ତ ବୁଣିବାବେଳେ ସାରିଆ ନଳୀ ବଳେ, ଲୁଣ୍ଡି ବେଳେ ଚରଖରେ ସୂତା ଦିଏ । ସାରିଆ ଭାତ ରାନ୍ଧିବାବେଳେ ଭଗିଆ ଚୁଲି ଫୁଙ୍କେ, ପାଣି ଆଣି ଦିଏ । ଗାଁର ମସ୍କରା କିନ୍ଦୁକ ଲୋକମାନେ ସେମାନଙ୍କୁ ଦେଖି ତଗ ମେଲନ୍ତି—"ସାରି ଭଗିଆକୁ ଦେଖ, ବଗଲା ବଗୁଲି ଲେଖ ।" ଆହା ! କି ଅପୂର୍ବ କବିତା ହେଲା । ମାତ୍ର ଆମ୍ଭେମାନେ ବୋଲୁଁ, ଏପରି ନିନ୍ଦା ଯେଉଁମାନଙ୍କ ନାମରେ ରଟେ, ସେହିମାନେ ଏକା ଜଗତରେ ପ୍ରକୃତ ଭାଗ୍ୟବାନ । ସ୍ୱର୍ଗର କାଳ୍ପନିକ ସୁଖକୁ ସେହିମାନେ ଏକା ପ୍ରାଣରେ ଅନୁଭବ କରନ୍ତି । କୌଣସି ଇଂରାଜ କବି କହିଅଛନ୍ତି, 'ଯେଉଁମାନେ ବିଶୁଦ୍ଧ ଦାମ୍ପତ୍ୟପ୍ରେମ ଅନୁଭବ କରନ୍ତି, ସେମାନେ ସ୍ୱର୍ଗୀୟ ଜୀବ । ସେହି

ପ୍ରେମରେ ଯାହାର କଳଙ୍କ, ସେ ନରକର ଯନ୍ତ୍ରଣା ଭୋଗକରେ ।'

ଓହୋ ! ଆମ୍ଭେମାନେ ଗୋଟାଏ ଉତ୍କଟ ଭୁଲ କରି ପକାଇଅଛୁଁ; 'ମୁନୀନାଞ୍ଚ ମତିଭ୍ରମଃ' । ମୁନିମାନେ ଲେଖାପଢ଼ା କରିବା ବେଳେ ବଡ଼ ଭୁଲ କରି ପକାନ୍ତି, ଅର୍ଥାତ୍ ଯେଉଁମାନେ ଲେଖିବାବେଳେ ଭୁଲନ୍ତି ସେମାନେ ମୁନି । ସୁତରାଂ, ଆଜଠାରୁ ଲୋକମାନେ ଯେ ଆମ୍ଭମାନଙ୍କୁ ମୁନି କିମ୍ବା ଋଷି ବୋଲି ଡାକିବେ, ସେ ବିଷୟରେ କିଛିମାତ୍ର ସନ୍ଦେହ ନାହିଁ । ଓହୋ, କି ଭାଗ୍ୟ ! ବରଷ ସାରା ସାହେବଙ୍କ ଦୁଆରେ ନେଉଳ ପରି ଲୁଙ୍ଗ୍ ଲୁଙ୍ଗ୍ ହେବାକୁ ନାହିଁ, କରଜଦାମ କରି ହଜାର ହଜାର ଟଙ୍କା ଖରଚରେ ଡାକ୍ତରଖାନା ବସାଇବାକୁ ନାହିଁ, କିମ୍ବା ନିହାତି ସହଜ କଥା ବକ୍‌ସିସ୍ ଦେଇ ଫରାସୀମାନଙ୍କ ଗୋଡ଼ହାତ ଧରିବାକୁ ନାହିଁ, ମାହାଲଆଟାରେ କେଡ଼େ ନାମଟାଏ ପାଇଗଲୁ । ମାତ୍ର, ସତ୍ୟର ମର୍ଯ୍ୟାଦା ରକ୍ଷା ନିମନ୍ତେ ସ୍ୱାର୍ଥତ୍ୟାଗ କରିବାକୁ ଆମ୍ଭେମାନେ କେବେହେଁ କାତର ନୋହୁଁ । "ନ ମିଥ୍ୟା ପାତକଂ ପରଂ", ଅସ୍ୟାର୍ଥ—ମିଥ୍ୟା ଆଉ ପାତକ ପରି ନିକଟକୁ ଯାଏ ନାହିଁ, ଆପଣା ପାଖେ ଥାଏ । ଏଥିସକାଶେ ଆମ୍ଭମାନଙ୍କୁ ସତ୍ୟ କଥା ଲେଖିବାକୁ ହେଉଅଛି । ଭଗି ସାରି ଦୁଇ ପ୍ରାଣୀ ନୁହନ୍ତି । ଗୋଟିଏ ଗାଈ ଅଛି, ନାମ ନେତ—ତାକୁ ଲଗାଇ ତିନି ପ୍ରାଣୀ । ଗାଈଟାକୁ ଆମ୍ଭେମାନେ ମନୁଷ୍ୟ ସଙ୍ଗରେ ଗଣିଲୁଁ, ସେଥିରେ କଥା ଅଛି । ନେତକୁ ସାରିଆ ଝିଅପରି ପୋଷିଥାଏ, ଝିଅପରି ଗେହ୍ଲା କରେ । ପରମେଶ୍ୱର ମନୁଷ୍ୟ ମନରେ ଏକ ଆଶ୍ଚର୍ଯ୍ୟ ଅପତ୍ୟ ସ୍ନେହ ଦେଇଅଛନ୍ତି । ଭୋକବେଳେ ଭାତ ନ ପାଇଲେ ଲୋକେ ଡାଳ ପତ୍ର ଚୋବାଇବା ପରି ଯାହାର ପିଲାଛୁଆ କିଛି ନାହିଁ, ସେ କୁକୁର ପିଲାଟିଏ, ବିରାଡ଼ି ପିଲାଟିଏ କିମ୍ବା ଛତ୍ରାଟିଏ ପୋଷି ତାକୁ ଭଲ ପାଏ । ସାରିଆ ଦିନରାତି ନେତ ସଙ୍ଗରେ ଲାଗିଥାଏ । ପଦାରୁ ଫିଟି ମଧ୍ୟ ନେତ କାହିଁ ଯାଏ ନାହିଁ, ସାରିଆ ପାଖେ ପାଖେ ଥାଏ । ଟିକିଏ ଦାଣ୍ଡକୁ ଗଲେ ସାରିଆ ଡାକେ, 'ନେତ ଲୋ !' ନେତ କହେ; ହଁ—ମାଁ । ଧାଇଁ ଆସି ସାରିଆକୁ ଚାଟେ, ସାରିଆ ତା' ଦେହରେ ହାତ ବୁଲାଇ ଦେଇ ଢେର ଆଦର କରେ, ଢେର ଦୁଃଖ ସୁଖ କଥା କହେ । ପଖାଳ ବେଳରେ ନେତ ମୁହଁ ଉଞ୍ଚାଇ ଦେଲେ ସାରିଆ ତାକୁ ଗୋଟିଏ ସାନ ପ୍ରେମଚାପୁଡ଼ା ମାରି ଡାକୁଣୀଟା ବୋଲି ଗାଳି ଦିଏ । ଆମ୍ଭେମାନେ ଜାଣୁ ସେହି ଗାଳି ଭିତରେ ସାରିଆର ଆନନ୍ଦ ଓ ପ୍ରେମ ପୂର୍ଣ୍ଣ ଥାଏ । ଭଗିଆ, ସାରିଆ, ନେତ ତିନିପ୍ରାଣୀ ଗୋଟିଏ ଘରେ ଶୁଅନ୍ତି । ସାରିଆ ନେତ ପଛରେ ଝିଟୀ ଓ ଘଷି ଗୁଣ୍ଡାରେ ଗୋଟାଏ ଧୂଆଁ ଦିଏ । ନେତଟି ବଡ଼ ସୁଲକ୍ଷଣୀ, ହାଲକୁ ପ୍ରଥମେ ପଛରେ ଛଡ଼ାଟିଏ ଲାଗିଛି । ନେତର ସର୍ବାଙ୍ଗ କଳା, ମୁଣ୍ଡରେ ଚାନ୍ଦ । 'କାଳି ଗାଈ ମୁଣ୍ଡରେ ଚାନ୍ଦ, ତାକୁ ଆଣି ଶ୍ରାଦ୍ଧରେ ବାନ୍ଧ' । ଶିଙ୍ଗ ପାତଳ ଆଉ ଝାମ୍ପରା, ଲାଞ୍ଜ ସରୁ ଖୁବ୍ ଲମ୍ବା । ଲାଞ୍ଜ ଅଗରେ ଚଅଁର ପରି ପେଣ୍ଡା ବାଳ ଭୂଇଁରେ ଲେଟି ଯାଉଛି । ପିଠିଟି ନୂଆଣ, ମୁଠୁଣିକରୁ କିଛି ଉଣା ଚୌଡ଼ା, ଚିଗୁଟି ଚୌଡ଼ା, ହାକୁଡ଼ିଟିଏ ସାନ ପାଣିକଖାରୁ ପରି ପେଟିଆଡ଼କୁ ନଇଁ ପଡ଼ିଛି, ବେକର ଥଳୀଟା ଆଉ ଗାଈଠାରୁ କିଛି ବେଶି ଝୁଲୁଛି, ଦୁଧ ନାଡ଼ଟା ଗୋଟାଏ ପାଳଦଉଡ଼ା ପରି ମୋଟ, ପହ୍ଲା କଥା କଣ କହିବୁଁ ? "ପୟୋଧରସ୍ତୁ ଭୂତ-ଚତୁଃସମୁଦ୍ରାଃ ।" ନେତ କଳଙ୍ଗା ଗାଈ ପରି ଖୁବ୍ ଯେ ଗୋଟାଏ ଉଞ୍ଚା, ତାହା ନୁହେଁ; ମଧ୍ୟଭିଳା । ଡାକରିଷି ବଚନ ଅଛି—

'ପେଟେ ଉଞ୍ଚ ଗାଈ । ପଟେ କୁଣ୍ଡା ଖାଇ ।
ଘାସ ଦେଖି ବାଇ । ତାହୁଁ ଦୁଧ ପାଇ ।"

କଥା କଣ କି, ଗାଈ ମୁହଁରେ ଦୁଧ । ତେବେ ଆପଣ କି ଠେକ ଧରି ଗାଈ ଥୋବଣିଟା ଦୁହିଁ ବସିବେ ? କଥା ସେପରି ନୁହେଁ, ଚାଈ ଗୋଟିଏ କାଗଜକଲ ପରି ।

କଲ ମୁହଁରେ ଛୁଣ୍ଡାକନା, ଛୁଣ୍ଡା ଦଉଡ଼ି, ପଚୁ ପନସି, ପଚୁ ଭୁଲାଗୁଡ଼ାଏ ପୂରାଇ ଦେଲେ ପଛବାଟେ ସଫା ଧଳା ସୁନ୍ଦର, ଚକ୍‌ଚକ କାଗଜ ବାହାରି ପଡ଼େ । ସେହିପରି ଗାଈ ମୁହଁରେ କୁଣ୍ଡା, ପେଜ, ଘାସଗୁଡ଼ାଏ ପୂରାଇ ଦିଅ, ମଧ୍ୟାବାଟେ ଦୁଧ ବୋହି ପଡ଼ିବ । ନେତର ଦୁଧର ପରିମାଣଟା ଆମ୍ଭମାନଙ୍କୁ ଜଣା ନାହିଁ । ସେଦିନ ମଙ୍ଗରାଜଙ୍କ ଦରବାରରେ ନେତ କଥା ପଡ଼ିଥିଲା, ସମସ୍ତେ ଅନୁମାନ କଲେ, ଦୁଇ ଓଳ ପାଞ୍ଚ ସେରରୁ ଊଣା ନୁହେଁ । ମଙ୍ଗରାଜେ ଗୋଟାଏ ନିଃଶ୍ୱାସ ପକାଇ କହିଲେ, "ଏଁ ! ତନ୍ତୀ ବାପୁଡ଼ାର ଏମନ୍ତ ଗାଈ ?"

ଲୋକେ କହନ୍ତି, ପିତା ଗୁଣରେ ପୁତ୍ର', ମାତ୍ର ଏକଥା ମଧ୍ୟ ସତ୍ୟ —"ବଂଶନାଶ ବେଳକୁ ଘୋଡ଼ାମୁହାଁ ପୁଅର ଜନ୍ମ ।" ଭଗିର ବାପ ଗୋବିନ୍ଦଚନ୍ଦ୍ର, ଗାଁରେ ଜଣେ ସେରନ୍ତା ଲୋକ ଥିଲା । ନିଜ ଗାଁ । ଗୁଡ଼ ଆଖ ପାଖ ଦୁଇ ଚାରିଖଣ୍ଡ ଗାଁରେ ତାଙ୍କ ଆଡ଼ ବସିଲା, ଗୋବିନ୍ଦଚନ୍ଦ୍ରକୁ ଡାକ । ଭାରି ଭାରି ମାମଲା ଝୁଙ୍କିଲେ ଗୋବିନ୍ଦକୁ ଖୋଜା ପଡ଼େ, ଅର୍ଥାତ ପିଆଦା ସମନ ଆସିଲେ କମ୍ପା ଡାକରେ ବେରଙ୍ଗ୍ ଭଡ଼ା ଆସିଲେ, ଗୋବିନ୍ଦ ନ ଯିବା ପର୍ଯ୍ୟନ୍ତ ଲୋକମାନେ ଘରୁ ବାହାରୁ ନ ଥିଲେ । ଗୋବିନ୍ଦ ନିଜେ ତନ୍ତ ବୁଣୁ ନ ଥିଲା, ତନ୍ତୀମାନଙ୍କ ବୁଣାଲୁଗା କଣିନେଇ ହାଟରେ ବିକେ, କମ୍ପା ଉପୁରି ମହାଜନ ଆସିଲେ ମାଲ ଟୋଇ ଦିଏ । ଏଥିରେ ତାହାର ଭଲ ପାଞ୍ଚ ପଇସା ହାତକୁ ଚଢ଼ୁଥିଲା । ଗୋବିନ୍ଦ ହାତରେ ହଜାର ହଜାର ଥିବାର ଲୋକେ ଅନୁମାନ ବିଦ୍ୟାରେ ଗଣି ପକାଉଥିଲେ । ଲୋକମାନେ ଆପଣା ପରମାୟୁ ଓ ପରଧନକୁ ବେଶି ଦେଖନ୍ତି । ଯାହାହେଉ, ଗୋବିନ୍ଦ ଯେ ଦଶଟଙ୍କା ଅରଜିଥିଲା, ଏ କଥା ସତ । ଜମିଦାର ବାଘ ସିଂହ ବଂଶ ପଡ଼ି ଆସିବାବେଳେ ଖଣ୍ଡେ ଖଣ୍ଡେ ଜମି ବିକି ହେଲା । ଗୋବିନ୍ଦପୁର ଗାଁ ତଳେ ଟିକେ ଗହିର ଜମି ଛମାଣ ଆଠ ଗୁଣ୍ଠ ବାହାଲ ନିସ୍କର, ତାକୁ ଗୋବିନ୍ଦ କଣି ନେଇଥିଲା । 'ଗାଁ ଧୋଉରୀ ପାଣି ଯେଉଁଠି ପଡ଼େ, ପଧାନ ହଳ ସେଇଠି ଚଷେ ।' ଅସ୍ୟାର୍ଥ—ପଧାନ ଗ୍ରାମର ସର୍ବୋତ୍କୃଷ୍ଟ ଜମିଖଣ୍ଡ ଚାଷ କରେ । ଜମିଖଣ୍ଡରେ ଗାଁ ଧୋଉରୀପାଣି ପଡ଼େ, ଭାରିକନ୍ଦ ପାଣି ବହୁଳ ହେତୁରୁ ରାବଣା ଧାନ ହୁଏ । 'ଜମି ପାଇଲେ ସିଆଣା, ଧାନ ବୁଣିବ ରାବଣା । ହାତେ ଲମ୍ବ କାଟିବ ଶୀସା, ଝରି ମରିବେ ସାଇ ପଡ଼ିଶା ।' ଧୋଇ ନାହିଁ, ମରୁଡ଼ି ନାହିଁ, ମାଣକୁ ଆଠ ଭରଣ ତ ଆଗେ ଥୋଇଦିଅ ! ଭଗିଆ ତନ୍ତୀଲୋକ, ଚାଷ କରିବ କଣ ? ବଖରା ଦେଇ ମାଣକୁ ପାଞ୍ଚ ଭରଣ ପାଞ୍ଚ ନଉତି ଧାନ ପାଏ । ଭଗି ହୁଣ୍ଡା ହେଲେ କଣ ହେବ, ତାହାର ଢେର ସଦ୍‌ଗୁଣ ଥିଲା । ଶ୍ରାଦ୍ଧ, ମଙ୍ଗଳା, ନବାନ୍ନରେ ଜାତିଭାଇଙ୍କ ମୁହଁ ଧୁଆଏ, ଭାଟ ଭିକାରି ଦୁଆରୁ ଫେରନ୍ତି ନାହିଁ । "ହାଉଡ଼ାର ଦୁଷ୍ମନ ନାହିଁ ।' ହୁଣ୍ଡା ହୁଣ୍ଡି କଥା କହି ଜାଣନ୍ତି ନାହିଁ, ଗାଁରେ କଳି ହେଲେ କବାଟ କିଳି ଦିଅନ୍ତି । ଗାଁର ସମସ୍ତେ ଏମାନଙ୍କୁ ଭଲ ପାନ୍ତି । ଅଭାବ ସମସ୍ତ ଦୁଃଖର ମୂଳ । ଧନ, ବିଦ୍ୟା, ଖ୍ୟାତି, ସ୍ୱାସ୍ଥ୍ୟ ପ୍ରଭୃତି କୌଣସି ବାଞ୍ଛନୀୟ, ଲୋଭନୀୟ ଏବଂ ଅତ୍ୟାବଶ୍ୟକ ପଦାର୍ଥର ଅଭାବ ହେଲେ ଲୋକେ କଷ୍ଟ ଅନୁଭବ କରନ୍ତି । ଆମ୍ଭମାନଙ୍କ ତନ୍ତୁବାୟୁ-ଦମ୍ପତିର କୌଣସି ପଦାର୍ଥର ଅଭାବ ନ ଥିଲା । ପବିତ୍ର ଦାମ୍ପତ୍ୟ ସ୍ନେହ, ବିଶୁଦ୍ଧ ପ୍ରେମ, ଅଖଣ୍ଡ ସନ୍ତୋଷ, ନିରବଚ୍ଛିନ୍ନ ସ୍ୱାସ୍ଥ୍ୟ, ସରଳ ଧର୍ମଭାବ ପ୍ରଭୃତି ସ୍ୱର୍ଗୀୟ ଭାବମାନ ଯଦି ଆପଣ ଏକ ସ୍ଥାନରେ ସମାବେଶ ଦେଖିବାକୁ ଇଚ୍ଛା କରନ୍ତି, ତେବେ ଆମ୍ଭେମାନେ ଏହି ଗ୍ରାମ୍ୟ ତନ୍ତୁବାୟୁ ପରିବାରର ନାମ ଉଲ୍ଲେଖ କରିପାରୁଁ ! ଆମ୍ଭେମାନେ ଆଜନ୍ମକାଳ ଦେଖି, ଶୁଣି, ପଢ଼ି, ବୁଝିଅଛୁଁ ନିରବଚ୍ଛିନ୍ନ ସୁଖ ବିଧି ମନୁଷ୍ୟ କପାଳରେ ଲେଖି ନାହାନ୍ତି । ତନ୍ତୁବାୟୁ ପରିବାର କି ଏହି ନୈସର୍ଗିକ ନିୟମର ବହିର୍ଭୂତ ? ମହାକବି କାଳିଦାସ ଲେଖିଅଛନ୍ତି, "ପ୍ରାୟେଣ ସାମଗ୍ର୍ୟବିଧୌ ଗୁଣାନାଂ ପରାଙ୍ମୁଖୀ ବିଶ୍ୱସୃଜଃ ପ୍ରବୃତ୍ତିଃ ।" ଏହି ମହାବଚନକୁ ବା କିପରି ଅମର୍ଯ୍ୟାଦା କରିବୁ ?

ତେବେ ଏମାନେ କି ପୂର୍ଣ୍ଣ ସୁଖୀ ନୁହନ୍ତି ? କିଏ କହିବ କିପରି ବା କହି ପାରିବ ? ଶାଳଗ୍ରାମର ବସିବା ଶୋଇବା ସମାନ । ମନୁଷ୍ୟ ହୃଦୟସ୍ଥ ଭାବ ହାସ୍ୟ-କ୍ରନ୍ଦନ-ସ୍ରୋତ ଧରି ବାହାରି ପଡ଼େ । ଏମାନେ ହସିବାର କେହି ଦେଖି ନାହିଁ, କାନ୍ଦିବାର କେହି ଶୁଣିନାହିଁ । କଥାରୁ ଧରା ଯାନ୍ତି, କାହାରି ସଙ୍ଗରେ ତ କଥା କହିବେ ନାହିଁ । ଆମ୍ଭମାନଙ୍କ ପାଖରେ, କିନ୍ତୁ କାହାରି କଥା ଲୁଚିବାର ବାଟ ନାହିଁ । ବାଣୁଆ ମାନେ ଖୋଜର ମଡ଼ା ଧରି ଧରି ଯାଇ ଜନ୍ତୁ ଭେଟନ୍ତି । ସେହିପରି ଆମ୍ଭେମାନେ ଲୋକମାନଙ୍କ କାର୍ଯ୍ୟ ସବୁର ପିଛା ଧରି ଧରି ସେମାନଙ୍କ ମନର ଭାବ ଧରି ପକାଉଁ । ସେ ଦିନ ରାତିରେ ରୁକୁଣୀ ମା ବୋହୂର ଷଠିଘରକୁ ସାରିଆ ଯାଇଥିଲା, ପିଲାଟିକୁ ଚୁମ୍ବ ଦେଇ ଚାଲି ଆସିଲା, ଟିକିଲି ବାଣ୍ଟଯାଏ ରହିଲା ନାହିଁ । ଘରକୁ ଆସି ପେଟ ଟାଣୁଛି ବୋଲି କହି ଉପାସ ଶୋଇ ରହିଲା । ଆମ୍ଭେମାନେ ଏହା ମଧ୍ୟଜାଣୁଁ; ଅନେକ ରାତି ପର୍ଯ୍ୟନ୍ତ ନ ଶୋଇ ଏକଡ଼ ସେକଡ଼ ହେଉଥିଲା । ଭଗିଆ ଥରେ କହିଲା, "ଦଇବ ତ ଦେଇ ନାହିଁ; ଦୁଃଖ କଲେ କଣ ହେବ ?" କଣ ଦେଇ ନାହିଁ କିଛି ତ ବୁଝା ଗଲା ନାହିଁ ? ବାରବରତରେ ସାରିଆର ଆଜିକାଲି ଭାରି ମନ । ବୁଢ଼ୀ ମଙ୍ଗଳାଙ୍କଠାରେ ବେଶି ବେଶି ଭକ୍ତି ଦେଖା ଯାଉଅଛି । ଡାକ୍ତର ଆଉ ଓକିଲଙ୍କ ଦୁଆରେ କାହାକୁ ଦେଖିଲେ ବୁଝିନେବ, ସେହି ଲୋକଟା ଉପରେ କିଛି ବିପଦ ପଡ଼ିଛି । ଆମ୍ଭମାନଙ୍କ ବୁଢ଼ୀମଙ୍ଗଳାଙ୍କ ଦ୍ୱାରା ଡାକ୍ତର ଆଉ ଓକିଲ ଦୁଇ କାର୍ଯ୍ୟ ହୁଏ । ଗାଁରେ କାହାରି କିଛି ପୀଡ଼ା ହେଲେ କିମ୍ବା ମାଲିମାମଲା ପଡ଼ିଲେ ମଙ୍ଗଳାଙ୍କର କିଛି ଲାଭ ହୁଏ । ମଙ୍ଗଳାଙ୍କଠାରେ ସାରିଆର ଭକ୍ତି ଦେଖି ବୁଝୁଅଛୁଁ ତାହା ମନରେ କିଛି କଷ୍ଟ ଜାତ ହୋଇଅଛି । ସାରିଆ ପିଣ୍ଡାରେ ବସି ନଡ଼ି ବୁଲାଉଥିବାବେଳେ ଦାଣ୍ଡରେ କୌଣସି ସାନ ପିଲା ଖେଳୁଥିବାର ଦେଖିଲେ ତାହା ହାତ ନଟେଇଟା ବୁଲେ ନାହିଁ । ଉଆଁସ ପୁନେଇରେ ଘରେ ପିଠାଟିଏ, ଛେନା ଟିକିଏ ହେଲେ ସାରିଆ ନିଶ୍ୱାସ ପକାଏ । ଭଗି ଗୁଣି ନିୟମ ପକାଇ ନ ଖୁଆଇଲେ ଖାଏ ନାହିଁ । ସେଦିନ ସାନ କସ୍ତା ଯୋଡ଼ିଟିଏ ଜଣେ ପରମାସ ଦେଇ ଭଗି ପାଖରୁ ବୁଣାଇ ନେଲା । ଯୋଡ଼ିଟି ବୁଣାଗଲା ବୋଲି ସାରିଆ ତାକୁ ଓଳିଏ ଯାଏ ଚଉଣ୍ଡିବା ବେଳେ ତା ଆଖିରେ ପାଣି ଛଳ ଛଳ ହେଉଥିବାର ଭଗି ଦେଖି ଗୋଟାଏ ଲମ୍ବା ନିଶ୍ୱାସ ପକାଇଲା ।

---

-୧୧-

## ଗୋବରା ଜେନା

ଚଣ୍ଡୀସାହିକୁ ଚାରି ଶ ପାଞ୍ଚ ଶ କଦମ ଦୂର ବିଲ ମଝିରେ ଡମସାହି । ଏଟା ଅଲଗା ମୌଜା ନୁହେଁ, ଗୋବିନ୍ଦପୁର ସାମିଲ । ସେଠାରେ ଦଶଘର ଡମ ଆଉ ଗୋବରା ଜେନା ଚୌକିଆର ଘର । ଗୋବରା ଜେନା ନିଜ ମୌଜାରେ ଚୌକିଦାର, ତାହାର ଦେଢ଼ମାଣ ଚୌକିଆ ଜାଗୀର ଅଛି, ଏ ସିବାୟ ଫି ଘରୁ ଧାନକଟା ସମୟରେ ଗୋଟାଏ ଲେଖାଏଁ ହଳା ପାଏ । ଜେନା ମଜକୁର ଆପଣା କାମରେ ଖୁବ୍ ହୁସିଆର । ତାହା ଯୋଗେ ଗ୍ରାମରେ ଚୋରି ଚମାରି ହୁଏ ନାହିଁ । ଫି ବରଷ ଗ୍ରାମମଧ୍ୟରେ ଚାରି ପାଞ୍ଚ ନମ୍ବର ସିନ୍ଧି ହୁଏ ସତ୍ୟ; କିନ୍ତୁ ଜେନା ମଜକୁରର କିଛି ଦୋଷ ନାହିଁ । କାରଣ ସେହିସବୁ ଚୋରି ରାତିରେ ଜେନାପୁଅ ଜାତିଆଣ କାମରେ ଚାରି ପାଞ୍ଚକୋଶ ଦୂରବର୍ତ୍ତୀ ଗ୍ରାମକୁ ଯାଇଥାଏ । ଚୌକିଦାର ସାରା ରାତି ଗ୍ରାମରେ ପହରା ଦିଏ, ମାତ୍ର ସେ ଏପରି ହୁସିଆରରେ ପହରା ଦିଏ ଯେ, ସେ କଥା କେହି କେତେବେଳେ ଜାଣି ପାରନ୍ତି ନାହିଁ । ପାଟିକରି ପହରା ଦେଲେ ଭୁଣ୍ଡ ଶୁଣି ଚୋର ଯେ ପଳାଇ ଯିବେ । ହରୁଣା ପୋଲିସ ଭାରି ଲାଞ୍ଚଖିଆ ଥିଲେ, ଏପରି ଗୋଟାଏ ପ୍ରବାଦ ଅଛି । ସତ ମିଛ ଜଗନ୍ନାଥ

ଜାଣନ୍ତି । ଲୋକମାନଙ୍କ ପାଖିରେ କିଏ ହାତ ଦେବ ? ବାଘ ମଣିଷ ଖାନ୍ତି—ସବୁ ବାଘଗୁଡ଼ାକ ମଣିଷଖିଆ ? ସାଧୁ ସଚ୍ଚରିତ୍ର ବାଘ କି ଦୁନିଆରେ ନାହାନ୍ତି ? ଆମ୍ଭମାନଙ୍କ ଜେନାପୁଅ ସେହିପରି ଜଣେ ସାଧୁ ସଚ୍ଚରିତ୍ର ଲୋକ । ଆପଣାର ହକ୍ ଅର୍ଥାତ୍ ବାର୍ଷିକ ହଳା, ବାହାପୁଆଣିରେ ଖଦି ମୁଣ୍ଡିଏ, ଉପର ବର ଠାରୁ ଚୌକିଆ ରେଶମ ଟଙ୍କାଟିଏ ଆଉ ମଲା ମରୁଡ଼ିରେ ଭାତୁଆ ବାବଦକୁ କିଛି ଖର୍ଚ୍ଚା ଏବଂ ପିଢ଼ାରୁ ଲାଉ କଖାରୁଟା ଛଡ଼ା କାହାରି ଠାରୁ କିଛି ଲାଞ୍ଚ ରିସପତ୍ ଛୁଏଁ ନାହିଁ । ଆଉ ଚୋର, ସାପକାମୁଡ଼ା, ଜଳବୁଡ଼ି ମାମଲା ପଡ଼ିଲେ ପୋଲିସରେ ଏତଲା ଖର୍ଚ୍ଚା ଟଙ୍କାଟିଏ, ସେ ତ ଆଇନରେ ଅଛି, ସେଥିରେ ଚୌକିଆର କଣ ଇଲାକା ? ବରଞ୍ଚ ଗୋବର୍ଦ୍ଧନ ଭାରି ଦୟାଳୁ ଲୋକ, କେହି ଗରିବ ଉପରେ ମାମଲା ପଡ଼ିଲେ କଂସାଖଣ୍ଡି ଥାଳିଟି ନେଇ କାମ ତୁଲାଇ ଦିଏ । ମାସକୁ ଥରେ ପୋଲିସରେ ରିପୋର୍ଟ ଦେବାକୁ ଯିବାବେଳେ ଗ୍ରାମରୁ କଦଳୀ କାନ୍ଦିଟା, ଲାଉ, କଖାରୁ ପୁଞ୍ଜାଏ ମୁନ୍‌ସି ଜମାଦାର ବରକନ୍ଦାଜ ସକାଶେ ନେବାର ତ ସୁବାମତି କଥା । କାମ ଝଞ୍ଜଟ ହେତୁରୁ ଜେନାପୁଅ ରାତି ଓଳିଟା ଘରୁ ଭାତ ଖାଇ ପାରେ ନାହିଁ । ପାଳି କରି ଗାଁ ଲୋକଙ୍କ ଘରୁ ଖାଏ । ଯାହା ଘରୁ ଯେଉଁଦିନ ଖାଇବାର, ବେଳ ଥାଉଁ ଥାଉଁ ମୁଠାଏ ଗୁଣ୍ଡିଲ ପକାଇବା ସକାଶେ କହିଯାଏ । ଖଞ୍ଜ ଅଖଞ୍ଜରେ ଭାତ ହୋଇ ନ ପାରିଲେ ଜେନାପୁଅ ସେଦିନ ରାତିରେ ତାହା ଘର ଚୋରି କାମରେ ଢିଲ କରିଦିଏ । ଚୋରମାନେ ତତକ୍ଷଣେ ଏକଥା ଜାଣି ପାରି ସେହିଦିନ ରାତିରେ ତାହା ପିଢ଼ା ବା ବାଡ଼ିରୁ ଫଳ କଦଳୀଟା କିମ୍ବା ବିଲରୁ ଧାନ ଚୋରିକରି ନେଇଯାନ୍ତି, କିମ୍ବା କିଛି ନ ପାଇଲେ ତାହା ଦାଣ୍ଡ ଦୁଆର ଖୁମ୍ବଟା ଭାଙ୍ଗି ଦେଇ ଯାନ୍ତି । ଗୋବର୍ଦ୍ଧନ ଗାଁରେ ଭାତ ଖାଇସାରି ଆପଣା ଘର ପର୍ଯ୍ୟନ୍ତ, 'ଗାଁ ଲୋକେ ହୁସିଆର, ଘରବାଲେ ଖବରଦାର' ପାଟିକରି ଡାକ ଦିଏ । ଚେଇଁଥିବା ପିଲାମାନେ ସେ ଡାକ ଶୁଣି ଶୋଇପଡ଼ନ୍ତି । ତାହା ବାଦ୍ ସେ ଗାଁରେ ସାରା ରାତି ପହରା ଦିଏ, ଏକଥା କାହାକୁ ଜଣାପଡ଼େ ନାହିଁ । ଗୋବରା ଜେନାକୁ ଗୋଟାଏ ପାଣ ମଧ୍ୟରେ ଗଣିବ ନାହିଁ । ହଜାରେ ପାଞ୍ଚଶ ଗଣି ଦେବାର ଲୋକ । ଧାନ ପାଞ୍ଚ ସାତ ଭରଣ ମଧ୍ୟ ଘରେ ସାଇତା ଅଛି । ଯେ ଯେତେ ହୁସିଆର ହେବ, ଆପଦ ବିପଦ କାହାରିକୁ ଛାଡ଼ ନାହିଁ । ଥରେ ଗୋଟାଏ ଚୋରି ମାମଲା ତାହା ଉପରେ ଝୁଙ୍କି ଥିଲା । ଶୁଣିବାରେ ଅଢ଼େଇଶ ଟଙ୍କା ମୁନ୍‌ସିକୁ ପେଲିଦେଇ ଖଲାସ ପାଇଲା । ସେ ମାମଲାର ହାଲ ଏହି କି; ମାଖନପୁର ମୌଜାର ଭୁବନ ଶା ତେଲି ମହାଜନଘର ଡକାଇତି ମକଦ୍ଦମାରେ ଆଠଜଣ ଡକାଇତ ଗ୍ରେପ୍ତାର ହୋଇଥିଲେ । ଗୋବରା ଜେନା ସହାୟରେ ଏହି ଡକାଇତି ହୋଇ ଥିବାର ଏବଂ ଆହୁରି ଦଶ ପନ୍ଦର ନମ୍ବର ଚୋରିରେ ତାହାର ସହାୟ ଥିବାର ଏବଂ ଚୋରାମାଲ ସବୁ ତାହାଦ୍ୱାରା ବିକ୍ରି ହେଉ ଥିବାର ଆସାମୀମାନଙ୍କ ମଧ୍ୟରୁ ହକଡ଼ଆ ପାଣ ପ୍ରକାଶ କଲା । ମାତ୍ର ଆଉ ଆଉ ଆସାମୀମାନେ ଏ କଥା ଅସ୍ୱୀକାର କରିବାରୁ ଗୋବରା ଦେହକୁ ଆଞ୍ଚ ଲାଗିଲା ନାହିଁ ।

ଗୋବରା ଜେନାର ଯୋଗ୍ୟତାରେ ମଙ୍ଗରାଜେ ତାହା ଉପରେ ଭାରି ଖୁସି । ସେ ସକାଳ ସଞ୍ଜବେଳେ ମଙ୍ଗରାଜଙ୍କ କଚେରିରେ ହାଜର ଥାଏ । ଅଧରାତିବେଳେ ଗୋବରା ଓ ମଙ୍ଗରାଜ ନିରୋଳାରେ ବସିଥିବାର ଲୋକେ ଦେଖିଛନ୍ତି । ଫତେପୁର ସରସଣ୍ଡ ତାଲୁକାରେ ଅନେକ ପାଣଙ୍କ ଘର ଅଛି । ସେମାନେ ଚୋର, ଡକାଇତ, ରାହାଜାନୀ ବ୍ୟବସାୟୀ ଥିବାର ଲୋକେ ସନ୍ଦେହ କରନ୍ତି । ପୋଲିସ ଏବଂ ଜେଲଖାନା ସହିତ ଘନିଷ୍ଠ ସମ୍ବନ୍ଧ ଏହି ସନ୍ଦେହର କାରଣ ଅଟେ । ଗୋବର୍ଦ୍ଧନର ଗୋଟିଏ ମହତ୍ ଗୁଣ, କୌଣସି ପାଣ ଜେଲ ଗଲେ ତାହାର ଅସହାୟ ପିଲା ବାଳକଙ୍କୁ ଚଳାଏ ଏବଂ ମଙ୍ଗରାଜଙ୍କ ଖମାରରୁ ଦାନ ଦିଆଇଦିଏ । ମାତ୍ର ନିନ୍ଦୁକ ଲୋକର ନିନ୍ଦାକଥା କାହିଁ ଛାଡ଼ ନାହିଁ, ଲୋକମାନେ ଗୋବର୍ଦ୍ଧନର

ଏହି ସଦ୍‌ଗୁଣର ଅନ୍ୟପ୍ରକାର ଅର୍ଥ କରନ୍ତି । ସେଥି ସଙ୍ଗେ ସଙ୍ଗେ ମଙ୍ଗରାଜଙ୍କ ଦାତବ୍ୟତା ଉଲ୍ଲେଖ କରିବା ମଧ୍ୟ ଗୋଟାଏ ଭାରି ଖରାପ କଥା ଅଟେ ।

———

-୧୨-

## ଅସୁର ଦୀଘି

ଗୋବିନ୍ଦପୁର ମୌଜାରେ ଗୋଟିଏ ମାତ୍ର ପୋଖରୀ । ଗ୍ରାମର ସମସ୍ତ ଲୋକ ଏଥିରେ ଜଳ କାରବାର କରନ୍ତି । ପୁଷ୍କରିଣୀଟା ଖୁବ ବଡ଼, ଆଉ ଦୀର୍ଘ ନଳ ଦେଲେ ଦଶ ବାରବାଟିରୁ ଊଣାପଡ଼ିବ ନାହିଁ । ନାମ ଅସୁରଦୀଘି । ଏଥିରେ ପୂର୍ବେ ଷୋଳଟା ଘାପଦଣ୍ଡି ଥିଲା, ଦେବତା ବଳଆରରୁ ସବୁ ଉଡ଼ିଯାଇଅଛି । ଗୁହିରପାଖ ଆଉ ବଗ-ଚଗଠାରୁ ଦଶ ବାର ହାତ ଉଚ । ଏ ପୋଖରୀଟି କେତେକାଳର, କିଏ ଖୋଳାଇଛି, ଏଥିର ସଠିକ ବୃତ୍ତାନ୍ତ ଆମ୍ଭେମାନେ କହିବାକୁ ଅକ୍ଷମ । ଶୁଣିବାରେ ଅସୁରମାନେ ଖୋଳିଛନ୍ତି, ଅସମ୍ଭବ ନୁହେଁ । ଏତେବଡ଼ ଜଳକାର୍ଯ୍ୟ ଯେ କରିପାରେ, ସେ କି ଆମ୍ଭମାନଙ୍କ ପରି ମନୁଷ୍ୟ ? ଗ୍ରାମର ପଞ୍ଚାନବେ ବର୍ଷର ବୁଢ଼ା ଏକାଦୁଶିଆ ଚନ୍ଦ୍ରୀ ମୁହଁରୁ ପୁଷ୍କରିଣୀ ସମ୍ବନ୍ଧରେ ଯେଉଁ ଇତିହାସ ସାରସଂଗ୍ରହ କରିଅଛୁଁ, ତାହାର ସଂକ୍ଷିପ୍ତ ବୃତ୍ତାନ୍ତ ଏହି—

ବାଣାସୁର ଏହି ପୋଖରୀ ଖୋଳାଇ ଅଛି । ସେ ଆପଣା ହାତରେ କୋଡ଼ି ଗାଣ୍ଡୁଆ ଧରି ଖୋଳି ନାହିଁ । ତାହା ହୁକୁମରେ ଅସୁରମାନେ ଆସି ଗାତ ମଧ୍ୟରେ ଖୋଳି ପକାଇଲେ । ଖୋଳୁ ଖୋଳୁଁ ଗାତ ପାହିଗଲା । ଦକ୍ଷିଣଆଡ଼ୁଆ କୋଣରେ ବାର ଚଉଦ ହାତ ଓସାର ଗୋଟାଏ ମୁହାଁଣ ଅଛି, ସେଠାରେ ମାଟି ପଡ଼ି ପାରିଲା ନାହିଁ । ଦାଣ୍ଡରେ ଲୋକ ଗୋଳବୋଳ ହେଲେଣି, ଅସୁରମାନେ ଏବେ ଯାଆନ୍ତି କୁଆଡ଼େ ? ପୋଖରୀ ମଧ୍ୟରେ ବିଲ ଖୋଳି ଗଙ୍ଗାକୂଳରେ ବାହାରି ପଡ଼ିଲେ । ସେଠାରେ ଗଙ୍ଗାସ୍ନାନ କରି ପଳାଇଗଲେ । ଆଗେ ଗଙ୍ଗାସାଗରରେ ବାରୁଣୀ ହେଲେ ଅସୁରଦୀଘିକୁ ପାଣି ଡେଣ୍ଡି ଆସୁଥିଲା । ଗ୍ରାମରେ ବହୁତ ଅନାଗୁର ହେବାରୁ ଏଣିକି ଆଉ ପାଣି ଆସୁ ନାହିଁ । ଇଂରେଜୀ ପଢ଼ୁଆ ବାବୁମାନେ ସାବଧାନ ! ଆମ୍ଭମାନଙ୍କ ଏକାଦୁଶୀ ଚନ୍ଦ୍ରଙ୍କ ଇତିହାସ ଶୁଣି ହସିବେ ନାହିଁ, ତାହାହେଲେ ମାର୍ଶମାନ୍ ଆଉ ଟଡ୍‌ଙ୍କ ଲେଖାରୁ ଆଠଣି କାହିଁ ଉଡ଼ିଯିବ ।

ଦୀଘିରେ ମାଛ ଅଛନ୍ତି । ଆପଣ କହିବେ, ଯହିଁ ପାଣି ତହିଁ ମାଛ, ଏକଥା ଲେଖିବାର ଦରକାର କଣ ? ମାତ୍ର ଆପଣଙ୍କ କଥାଟା ଯୁକ୍ତିସଙ୍ଗତ ହେଲା ନାହିଁ । ଆଖୁ ସହିତ ଗୁଡ଼ର, ଦେହ ସହିତ ହାଡ଼ର ଯେମନ୍ତ ନିତ୍ୟ ସମ୍ବନ୍ଧ, ପାଣି ସହିତ ମାଛର ସେପରି କିଛି ନୁହେ । ତାହା ହେଲେ ଆପଣଙ୍କ ଘର ପାଣି ମାଠିଆରୁ ତ ମାଛ ବାହାରୁଥାନ୍ତେ ? ଅନୁମାନ ବା ଅଯୌକ୍ତିକ କଥା ଲେଖିବା ଆମ୍ଭମାନଙ୍କର ଅଭ୍ୟାସ ନୁହେ । ଅସୁର ଦୀଘିରେ ଯେ ମାଛ ଅଛନ୍ତି, ଆମ୍ଭେମାନେ ସେଥିର ଅକାଟ୍ୟ ପ୍ରମାଣ ଦେଉଁ । ଏହି ଦେଖନ୍ତୁ, ଦକ୍ଷିଣ ଆଡ଼ଆରେ ପାଣିକୁ ପାଞ୍ଚ ହାତ ଛୁଉଁଆଁ କରି ସାନ ବଡ଼ ତିନିଗୋଟା ଅଣ୍ଡିଆ କୁମ୍ଭୀର ପଡ଼ିଅଛନ୍ତି । ସବୁଦିନେ ପଡ଼ନ୍ତି । ଏମାନେ କି ସକାଶେ ଦୀଘିରେ ଅଛନ୍ତି ? କଣ ଖାଇ ବଞ୍ଚନ୍ତି ? ସେମାନେ କି ଗୋରୁ ଗାଈ ପରି ପଡ଼ିଆରେ ଘାସ ଚରିବାର କେହି ଦେଖି ଅଛନ୍ତି ? ନା ଜୈନମାନଙ୍କ ପରି ଅହିଂସା ପରମ ଧର୍ମ ଜାଣନ୍ତି ? ଅବଶ୍ୟ ଦୀଘିରୁ କୌଣସି ପଦାର୍ଥ ଖାଇ ବଞ୍ଚି ଅଛନ୍ତି । ସେ କି ପଦାର୍ଥ ? ଅଣ୍ଡିଆ କୁମ୍ଭୀରମାନଙ୍କର ଆଉ ଗୋଟିଏ ନାମ ମାଛୁଆ କୁମ୍ଭୀର, ଅର୍ଥାତ୍ ଏମାନେ ମାଛ ଖାଆନ୍ତି । କେହି କହିବେ, ଏମାନେ ମାଛ ଖାଆନ୍ତି ସତ୍ୟ, ଆଉ ସ୍ଥାନରୁ ମାଛ ଆଣି ଖାଆନ୍ତି । ହାଟରେ ମାଛ

ଶୁଖୁଆ ମିଳେ ସତ୍ୟ, ମାତ୍ର ଏମାନେ ପଇସା ନେଇ ହାଟକୁ ମାଛ କିଣିବାକୁ ଯିବାର ତ କେବେ ଦେଖା ନାହିଁ । ଆଉ ଗାଆଁକୁ କେଉଟଣୀମାନେ ମାଛ ବିକିବାକୁ ଆସିଲେ ଗାଁ ମାଇକିନିଆମାନେ ଧାନ ଚାଉଳ ଦେଇ ମାଛ ବଦଳାନ୍ତି । ଆମ୍ଭେମାନେ ଶପଥ କରି କହିପାରୁଁ କୁମ୍ଭୀରମାନେ ତ ସେପରି ଧାନ ଚାଉଳ ଦେଇ ମାଛ କିଣିବାର କେବେ ଦେଖି ନାହୁଁ । ସୁତରାଂ ପ୍ରମାଣ ହେଲା, ପଢିରେ ମାଛ ଅଛନ୍ତି । ଏତିକି ଯେ ଯଥେଷ୍ଟ ପ୍ରମାଣ ତାହା ନୁହେଁ, ଆହୁରି ମଧ୍ୟ ଅନେକ ଅକାଟ୍ୟ ପ୍ରମାଣ ଅଛି । ଏହି ଦେଖନ୍ତୁ, ଚାରିଟା କାଦୁଅ ଖୁମ୍ପି ଗୋଟିପୁଅ ପିଲାଙ୍କ ପରି ନାଚି କୁଦି ବୁଲୁଅଛନ୍ତି । ଚୋଡ଼ୀ ପିଲାଟିର, ଦଣ୍ଡେଇ ପିଲାଟିର ବେକ ଚିପୁଛନ୍ତି ବୋଲି ସିନା ଏତେ ନାଚ କୁଦ । କେହି କହିବେ, କାଦୁଅଖୁମ୍ପି ଗୁଡ଼ାକ କି ନିଷ୍ଠୁର କି ଦୁଷ୍ଟ, ପରର ବେକ ଚିପି ଏତେ ଆନନ୍ଦ ? ଭାଇ, କିଣ କହିବୁଁ ବରୃଷ କାଦୁଅ ଖୁମ୍ପିକୁ ନିଷ୍ଠୁର ବୋଲ, ଦୁଷ୍ଟ ବୋଲ, ସଇତାନ ବୋଲ, ଯାହା ବୋଲ, ସେ କିଛି ତୁମ ନାମରେ ହୁରମତ ବାହାରର ନାଲିସ ରୁଜୁ କରିବ ନାହିଁ; କିନ୍ତୁ ଜାଣିବ, ତୁମ ମନୁଷ୍ୟ ଜାତିଭାଇ ମଧ୍ୟରେ ଯେ ଯେତେ ବେକ ଚିପି ପାରେ, ସେ ସେ ତେତେ ବାହାଦୁର; ସେହି ମାନ୍ୟ, ସେହି ଗଣ୍ୟ, ‘ସ ଚ ଦର୍ମ୍ମୋପୂ’, ଏ କଥା କି ଜାଣନ୍ତି ନାହିଁ ? ଚାରି ପାଞ୍ଚଗଣ୍ଡା ଧଳା ବଗ, ଚାରି ପାଞ୍ଚ ଗୋଟି କାଣ୍ଡି ବଗ ମାଟି ଲୋକ ମୂଳିଆଙ୍କ ପରି ସକାଳୁ ସନ୍ଧ୍ୟା ବେଳ ଯାଏଁ କାଦୁଅ ଚକଟୁଛନ୍ତି । ପଢିରେ ମାଛ ଥିବାର ଏହା ତୃତୀୟ ପ୍ରମାଣ । ଯୋଡ଼ାଏ ପାଣିକାଉ କେଉଁ ଦେଶରୁ ଉଡ଼ିଆସି ପଢି ମଧ୍ୟରେ ଦୁଇ ଚାରି ବୁଡ଼ ମାରି ପେଟ ପୂରାଇ ଫେର କରି ଉଡ଼ିଗଲେ । ଗୋଟାଏ ପାଣିକାଉ ଜମମ ସାହେବଙ୍କ ଗାଉନ ପରି କୂଳରେ ବସି ଡେଣା ଶୁଖାଉଅଛି । ହେ ହିନ୍ଦୁ ଧର୍ମୀ ବଗମାନେ, ଇଂରେଜ ପାଣିକାଉଙ୍କୁ ଦେଖ, କେଉଁ ଦେଶରୁ ଖାଲି ପକେଟରେ ଉଡ଼ିଆସି ଟେଙ୍ଗ ବେଙ୍ଗ ଗଡ଼ଶାରେ ପେଟ ପୂରାଇ ଚାଲିଗଲେ । ପଢିକୂଳର ବରଗଛରେ ତୁମ୍ଭମାନଙ୍କର ବସା, ଦିନଯାକ ଚାରି ଚକଟି ଚକଟି ଦଣ୍ଡେଇ ପିଲା କେରଣ୍ଡି ପିଲାରୁ ଅଧିକ କିଛି ପାଉନାହିଁ । ଜୀବନସଂଗ୍ରାମ କାଳ ଉପସ୍ଥିତ, ଏଣିକି ଆହୁରି ପଲ ପଲ ପାଣିକାଉ ଆସି ଟେଙ୍ଗ ବେଙ୍ଗ ସବୁ ବିହି ନେଇଯିବେ । ତୁମ୍ଭେମାନେ ବିଦେଶକୁ ଯାଇ ସମୁଦ୍ର ପହଁରି ନ ଶିଖିଲେ ଆଉ ରକ୍ଷା ନାହିଁ ।

ଚିଲ ଖୁବ ସିଆଣା, ଭାରି ହୁସିଆର, ଗୁରୁ-ଗୋସାଇଙ୍କ ପରି ଡାଳରେ ତୁନି ହୋଇ ବସିଅଛି, ଥରେ ପାଣିକି ଝାମ୍ପିପଡ଼ି ଯାହା ଉଠାଇନିଏ, ସେଥିରେ ତାହାର ଦିନକ କଟିଯାଏ । ଗୋସାଇଁମାନେ ବରଷକ ଯାକ ପିଣ୍ଡାରୁ ଓହ୍ଲାନ୍ତି ନାହିଁ, ବରଷକୁ ଥରେ ଶିଷ୍ୟ ଦୁଆରକୁ ଝାମ୍ପ ମାରନ୍ତି ।

ବଗଚରିଠାରୁ ଚାଳିଶ ପଚାଶ ହାତ ଦୂର ପାଣିଯାଏ ବଉଳ ମାଳା ଦଳ ଟିଙ୍ଗଡ଼ା ପୂର୍ଣ୍ଣ । ସେହି ଦଳ ମଧ୍ୟରେ ହିନ୍ଦୁ ଘର ଭୁଆସୁଣୀଙ୍କ ପରି କଇଁ ଗୁଡ଼ିକ ରାତିରେ ତୁନି ତୁନି ଫୁଟନ୍ତି, ଦିନବେଳେ ଡାଙ୍କିଡୁଙ୍କି ରହନ୍ତି । ସେଥି ମଧ୍ୟରେ ପାଣିଶିମୁଳୀ ଫୁଲଗୁଡ଼ିକ ଅଭ-ଆଡ଼ୀ ଝିଅଙ୍କ ପରି ଲାଜ ନାହିଁ, ସରମ ନାହିଁ, ଦିନ ରାତି ପବନରେ ଫକ୍ ଫକ୍ ଡେଉଁଛନ୍ତି । ପାଣି ଭିତରକୁ ରତାକଇଁ । ଏମାନେ ଶିକ୍ଷିତା ଖ୍ରୀଷ୍ଟାନ ଲେଡ଼ି, କଇଁ ଦଳରୁ ବାହାରି ଗଲେଣି, ପଦ୍ମ ଦଳରେ ମିଶି ପାରି ନାହାନ୍ତି । ପଢି ମଝିରେ ଦଳ ନାହିଁ । ରାତିରେ ବୁଢ଼ୀ ମଙ୍ଗଳା ଠାକୁରାଣୀ ବୁଲନ୍ତି, ସେଥିସକାଶେ ଦଳ ହୋଇ ପାରେ ନାହିଁ । ଭାରତ କବିଙ୍କର ସର୍ବସ୍ୱଧନ ଲକ୍ଷ୍ମୀଙ୍କର ନିବାସ, ସରସ୍ୱତୀଙ୍କର ଆସନ, ବ୍ରହ୍ମାଙ୍କର ଜନ୍ମସ୍ଥାନ ପଦ୍ମବନରେ ପୂର୍ଣ୍ଣ । ଫୁଲଗୁଡ଼ିକରେ ଠାକୁରାଣୀଙ୍କର ଷୋଳପଣି ଅଧିକାର । ଜଣେ ଲୋକ ଥରେ ଗୋଟାଏ ଫୁଲ ଆଣିବାକୁ ପହଁରି ଯାଇଥିଲା । ଠାକୁରାଣୀ ତାହା ଗୋଡ଼ରେ ଶିକୁଳି ଲଗାଇ ପାଣି ଭିତରକୁ ଭିଡ଼ି-ନେଲେ । ସେହି ଦିନଠାରୁ ଆଉ କେହି ଫୁଲକୁ ଅନାଏ ନାହିଁ ।

ଅସୁରଢିପିରେ ଚାରିଟା ଭୂତ, ଧରିବାକୁ ଗଲେ ତିନିଟା । ଦକ୍ଷିଣ ଭୂତଟାକୁ କେହି ଯାନ୍ତି ନାହିଁ । ଗ୍ରାମରେ କେହି ମରିଗଲେ ସେହି ଭୂତରେ ଦଶାହକ୍ରିୟା ହୁଏ । ଏହି ଭୂତଟା ବଡ଼ ଭୟଙ୍କର ସ୍ଥାନ । ରାତି ତ ରାତି, ଦିନବେଳେ ମଧ୍ୟ ସେଠାକୁ କେହି ଯିବାର ଦେଖା ନାହିଁ । ଏହି ଭୂତ ଉପରକୁ ଭାରି ବଡ଼ ଗୋଟିଏ ଅଶ୍ୱତ୍ଥ ଗଛ ଅଛି, ସେଥିରେ ସର୍ବଦା ଯୋଡ଼ିଏ ବ୍ରହ୍ମଦୈତ୍ୟ ଥିବାର ସମସ୍ତଙ୍କୁ ଜଣା । ଅଧରାତିରେ ଦୈତ୍ୟମାନେ ଗଛ ଅଗରେ ବସି ପାଦି ମାଟିକୁ ଗୋଡ଼ ଲମ୍ବାଇ ଦେଇଥିବାର ଅନେକ ଲୋକ ଦେଖିଛନ୍ତି । କିଏ କିଏ ଦେଖିଛନ୍ତି, ନାମ ଜଣା ନାହିଁ, କିନ୍ତୁ ଦେଖିବାର ସତ । ଆହୁରି ମଧ୍ୟ ଏହି ଆଡ଼ଆଡ଼େ ଅନେକ ପିଶାଚୁଣୀ, ଡାକୁଣୀ ସବୁଦିନେ ଘର କରି ରହି ଅନ୍ଧାର ରାତିରେ ଆଲୁଅ ଜାଳି ମାଛ ଧରୁଥିବାର, ବିଶେଷରେ ବର୍ଷାର ଅନ୍ଧାର ରାତିରେ ଫଳଫଳ ହୋଇ ବୁଲୁଥିବାର ପ୍ରତ୍ୟକ୍ଷ ପ୍ରମାଣ ଯଥେଷ୍ଟ ଅଛି । ପୂର୍ବ ତରଫରେ ଧୋବା ଭୂତ । ଦୁଇଜଣ ଧୋବା ଇଶ୍ ଇଶ୍, ଧାମ ଧାମ କରି ପଥର ଉପରେ ଲୁଗା ବାଡ଼ଉଛନ୍ତି । 'ଗାଁ ପରିଗୁଣ ଧୋବାଭୂତରୁ ଜଣା' । ଅଖାପାଲ ପରି ମୋଟା ମୋଟା ଶଗଡ଼େ ମଇଳା ଲୁଗା ଗଦା ହୋଇଅଛି । ଲୁଗା ସିଜାଇବା ଶୁଖାଇବା କାମରେ ଚାରି ଜଣ ଧୋବଣୀ ଲାଗିଛନ୍ତି । ଉତ୍ତର ପଶ୍ଚିମ କୋଣରେ ତନ୍ତୀ ଭୂତ । ଗାଁ ମଝାଲରେ ଥିବାରୁ ସେଠାରେ ସକାଳେ ମାଇକିନିଆମାନଙ୍କର ହାଟ ବସେ । ହାଟ ନାମ ଶୁଣି ଆପଣ ମନେ କରିବେ ନାହିଁ ଯେ, ଏଠାରେ ମାଇକିନିଆ କିଣାବିକା ହୁଅନ୍ତି । ପାଟି ଆଉ ଜନତା ଢଙ୍ଗରେ ସମାନ ଥିବାରୁ ହାଟ କହିଲୁ । ରାନ୍ଧୁଣୀ ଗାଧୁଆବେଳେ ଭାରି ଭିଡ଼ ହୁଏ । ଗ୍ରାମରେ ଡେଲିନିଉଜ୍ ଖବରକାଗଜ ଛପା ହେଉଥିଲେ, ସମ୍ପାଦକଙ୍କ ସମ୍ବାଦ ସଂଗ୍ରହ ନିମନ୍ତେ ଅଧିକ ପରିଶ୍ରମ କରିବାକୁ ହୁଅନ୍ତା ନାହିଁ । ଖଣ୍ଡେ ପେନ୍‌ସିଲ କାଗଜ ଘେନି ଏହିଠାରେ ବସିଲେ ସମସ୍ତ ସଂଗ୍ରହ କରି ପାରନ୍ତେ । ତଳ ଘାଟରେ କାହା ଘରେ କଣ ରନ୍ଧା ହୋଇଥିଲା, ଆଜି ରାନ୍ଧଣାର କି ବ୍ୟବସ୍ଥା, କିଏ କେତେବେଳେ ଶୋଇଲା, କାହାକୁ କେତେ ମଶା କାମୁଡ଼ିଲା, କାହା ଘରେ ଲୁଣ ନ ଥିଲା, କିଏ ତେଲ ଟିକିଏ କାଳି ଆଣିଛି, ରାମା ମା ଘର ନୂଆ ବୋହୂଟା ବଡ଼ କଳିହୁଡ଼ୀ, କାଲି ଅଣିଲା, ଆଜି ଶାଶୁକୁ ଜବାବ ଦେଲାଣି, କମଳୀ କେବେ ଶାଶୁଘରକୁ ଯିବ, ସରସ୍ୱତୀ ଝିଅଟି ବଡ଼ ଭଲ, ରାଣ୍ଡୀ ଯେପରି ଲାଜ ସରମ ସେହିପରି । ପଦ୍ମା ପାଣିରେ ବସି ଦାନ୍ତ ଘଷୁ ଘଷୁ ଗୋଟିଏ କ୍ଷୁଦ୍ର ବକ୍ତୃତା ଆରମ୍ଭ କରିଅଛି, ସାର ମର୍ମ, ତା ପରି ରାନ୍ଧୁଣୀ ଗ୍ରାମରେ ନାହାନ୍ତି; ଇତ୍ୟାଦି, ଇତ୍ୟାଦି ଦରକାରି ବେଦରକାରି କଥାମାନ ଅବିଶ୍ରାନ୍ତ ଚାଲୁଅଛି । କେତେକ ଜଣ ସୁନ୍ଦରୀ ମୁଖର ଆହୁରି ସୌନ୍ଦର୍ଯ୍ୟ ବଢ଼ାଇବା ନିମନ୍ତେ ପଣେନ୍ତକାନିରେ ମୁହଁ ରଗଡ଼ୁଛନ୍ତି । ଲକ୍ଷ୍ମୀ ରଗଡ଼ି ରଗଡ଼ି ବସଣୀରେ ଉପର ନାକ ଦୁଇ ପୁଡ଼ା ରଙ୍ଗା କରି ପକାଇଲାଣି । ବିମଳୀ ପାଣି ପାଖରେ ବସି ଆପଣା ହାତର ବାଇଶିପଳିଆ ପିତ୍ତଳ ବାହୁବଳା ଅଧବୋଝେ ବାଲି ପକାଇ ସବଳେ ମର୍ଦ୍ଦନ କରୁ କରୁ କୌଣସି ଅଜ୍ଞାତନାମା ଲୋକ ଉଦ୍ଦେଶ୍ୟରେ ଅଭିଧାନ ବହିର୍ଭୂତ ଶବ୍ଦମାନ ପ୍ରୟୋଗପୂର୍ବକ ଏକ ଦୀର୍ଘ ବକ୍ତୃତା ଆରମ୍ଭ କରିଅଛି । ଗଲା ରାତିରେ ତାହାର କଖାରୁ ଗଛ କାହାର ଗୋରୁ ଖାଇ ଯାଇଥିବା ବକ୍ତୃତାର ବିଷୟ ଅଟେ । ବିମଳୀ କ୍ରମଶଃ ଗୋସ୍ୱାମୀର ଊର୍ଦ୍ଧ୍ୱତନ ତିନି ପୁରୁଷ ତ୍ରିଶ କୁତ୍ସିତ ପଦାର୍ଥ ବିଶେଷରେ ଖାଦ୍ୟର ବ୍ୟବସ୍ଥା କରି ଗୋରୁର ଅତ୍ୟାଗ୍ରହତା, ଆପଣା ବାଡ଼ିର ଉର୍ବରତା ଏବଂ କୁଷ୍ମାଣ୍ଡବୃକ୍ଷର ତେଜସ୍ୱିତା ଓ ଭବିଷ୍ୟତ୍ ଫଳବତ୍ତା ଏବଂ ଅତି ଶୀଘ୍ର ଗୋସ୍ୱାମୀ ଉପରେ ଭାରି ବିପଦ ପଡ଼ିଲେ ଗୋରୁଟିକୁ ଯେ ବ୍ରାହ୍ମଣଙ୍କୁ ଦାନସ୍ୱରୂପେ ଦିଆଯିବ, ସେ ସମ୍ବନ୍ଧରେ ବିବିଧ ପ୍ରମାଣମାନ ପ୍ରୟୋଗ କରୁଅଛି । ଆମ୍ଭେମାନେ ଘାଟରୁ ଆହୁରି ମଧ୍ୟ ଅନେକ ସମ୍ବାଦ ସଂଗ୍ରହ କରିଥାନ୍ତୁ; ମାତ୍ର ହଠାତ୍ ମାରକଣ୍ଡିଆମା ଆଉ ଯଶୋଦା ମଧ୍ୟରେ ଭୟଙ୍କର କଳି ଉପସ୍ଥିତ ହେବାରୁ ସମସ୍ତ କଥା ବନ୍ଦ ହୋଇଗଲା ।

ଯଶୋଦା ପାଣି ମଧ୍ୟରେ ପେଟ ବୁଡ଼ାଇ ଦାନ୍ତ ଘଷୁଥିଲା । ପାଞ୍ଚ ବରଷିଆ ପିଲା ମାରକଣ୍ଡିଆ କୁଦି ନାଚି ପାଣି ଗୋଳିଆ କଲା ଏବଂ ଉପରେ ପାଣିଛିଟା ପକାଇବାରୁ ଯଶୋଦା ପାଣିରୁ ଉଠିପଡ଼ି ଚିତ୍କାର କରି କୁତ୍ସିତ ଭାଷାରେ ପିଲାଟାକୁ ଗାଳି ଦେବାକୁ ଲାଗିଲା ଏବଂ ତାହାର ପରମାୟୁର ଅଳ୍ପତା କାମନା କରିବାରୁ ମାରକଣ୍ଡିଆ ମା ଧାଇଁ ଆସି ସମାନ ସ୍ୱରରେ ଉପଯୁକ୍ତ ଉତ୍ତର ଦେବାକୁ ଲାଗିଲା । ଅବଶେଷରେ ମାରକଣ୍ଡିଆ-ମା ପରାସ୍ତ ହୋଇ ପିଲାକୁ ଚାପୁଡ଼ାଏ ମାରି, ପାଣିକଳସୀ କାଖରେ ବରବର ହୋଇ ମାରକଣ୍ଡିଆର ହସ୍ତଧାରଣ ପୂର୍ବକ ଗୃହାଭିମୁଖେ ଗମନ, ହେଁ ହେଁ କରି ଦାନ୍ତ ନିଷିଡ଼ି ମାରକଣ୍ଡିଆର କ୍ରନ୍ଦନ, ଇତି ଯୁଦ୍ଧକାଣ୍ଡ ।

ବଜ୍ର ପଡ଼ିଯାଏ, କିନ୍ତୁ ଢଡ଼ଢଡ଼ ଶବ୍ଦଟା ଆକାଶରେ ଢେର ବେଳଯାଏ ରହେ । କଳି ଭାଙ୍ଗିଲାଣି; କିନ୍ତୁ ସମାଲୋଚନା ଅନେକ ବେଳଯାଏ ଚାଲିଲା । ଦରବୁଢ଼ୀ ଓ ବୁଢ଼ୀ ମାଇକିନିଆମାନେ ଦୁଇ ଦଳ ହୋଇ କେହି ମାରକଣ୍ଡିଆର କେହି ଯଶୋଦାର ପକ୍ଷ ସମର୍ଥନ କରିବାକୁ ଲାଗିଲେ । ଆମ୍ଭେମାନେ କିନ୍ତୁ ସମ୍ପୂର୍ଣ୍ଣରୂପେ ଯଶୋଦାର ପକ୍ଷପାତୀ । ବିଶେଷ ବିବେଚନା ଏବଂ ସୂକ୍ଷ୍ମ ବିଚାରଦ୍ୱାରା ବୁଝୁଅଛୁଁ, ଉପସ୍ଥିତ ଉତ୍ପାତର ମୂଳ କାରଣ ମାରକଣ୍ଡିଆ । ସେ ସମ୍ପୂର୍ଣ୍ଣରୂପେ ଦୋଷୀ, ତାହାର ଅପରାଧ ଅମାର୍ଜନୀୟ । ତାହାକୁ ଆହୁରି ଗାଳିଦିଅ, ମାରି କି ଯାହା କର, ଆମ୍ଭେମାନେ ସେଥି ସକାଶେ ଜବାବଦେହି କରିବାକୁ ପ୍ରସ୍ତୁତ ଅଛୁଁ । ଦେଖନ୍ତୁ, ଜଳ ଲୋକମାନଙ୍କର ଜୀବନ, ପୁଣି ତନ୍ତୀ ଭୁଠ ଜଳ ସମସ୍ତେ ପିଅନ୍ତି, ସେ ଜଳକୁ ଗୋଳିଆ କରିବା କି ସାମାନ୍ୟ ଅପରାଧ ? ଦେଖ ତ, ପରେ କି ଛ କୋଡ଼ି ମାଇକିନିଆ ଗାଧୋଇବାକୁ ଆସିଲେ, ପ୍ରାୟ ସମସ୍ତେ ପେଟ ବୁଡ଼ାଇ ପାଣିରେ ବସି ଦାନ୍ତ ଘଷିଲେ । ନବଫେନଖଣ୍ଡବତ୍ ଶୁକ୍ଳବର୍ଣ୍ଣ ଛେପ ଖଙ୍କାର ସେମାନଙ୍କ ମୁଖରୁ ବାହାରି ଚାରିଆଡ଼େ ଭାସୁଅଛି, ଝାଡ଼ା ଲୋହିତ ପାଠଲାଭ୍ ଜଉଚଣ୍ଡି ମଳ ମଧ୍ୟ ମେଞ୍ଚା ମେଞ୍ଚା ଭାସୁଅଛି, ସେଥି ସହିତ ଆଉ କଣ ଭାସୁଛି କି ନାହିଁ ବୋଲିଯାଇ ନ ପାରେ, କାରଣ ସମସ୍ତ ସ୍ତ୍ରୀଲୋକ ପଡ଼ିଆରୁ ଆସି ଜଳଶୌଚ କରିଅଛନ୍ତି । ଆଉ ଲୋକ କଥା ଛାଡ଼; ନିଜେ ଯଶୋଦା ସେହିପରି କରୁଥିବାର ତାକୁ ପଚାରିଲେ ସେ ଅସ୍ୱୀକାର କରିବ ନାହିଁ । ଏହା ତ ସନାତନ ପ୍ରଚଳିତ ପ୍ରଥା, ଅପରାଧର କଥା ସେ ଲୁଚାଇବୁଁ ? ଜଣେ ମସ୍କରାଲୋକ କହୁଥିଲା, 'ମାଇକିନିଆମାନେ ପୋଖରୀରୁ ମାଠିଆରେ ଯେତେ ଜଳ ନିଅନ୍ତି, ତାହାର ପା'ଭାଗ ଜଳ ଛାଡ଼ି ଯାଆନ୍ତି । ଏ କଥା ଠିକ୍ ସତ୍ୟ ହେଲେ ମଧ୍ୟ ଆମ୍ଭମାନଙ୍କ ଚକ୍ଷୁର ଅଗୋଚର । କେତେ ଜଣ ଶୋଇବା ହେଁସ କାଚି ନେଇଗଲେ, ସାନ ସାନ ପିଲାଙ୍କର ଶେଯ କନ୍ଥା ଆହୁରି ନାନା ପ୍ରକାର କନା କତରା କଚୁ ହେବାର ଦେଖାଗଲା; ସେ ଯାହା ହେଉ ସ୍ତ୍ରୀଲୋକମାନେ ଘାଟରେ ଏତେ କାର୍ଯ୍ୟ କଲେହେଁ ମାରକଣ୍ଡିଆ ପରି ନାଚି କୁଦି କେହି କିଛି କାର୍ଯ୍ୟ କରି ନାହିଁ । ନାଚି କୁଦି ନ କଲେ କି ପାଣି ଗୋଳିଆ ହୁଏ ? ଏଥି ସକାଶେ ଆମ୍ଭେମାନେ ବୋଲୁଅଛୁଁ, ମାରକଣ୍ଡିଆର ଅପରାଧ ନିତାନ୍ତ ଉତ୍କଟ ଅଟେ ।

ତନ୍ତୀଭୁଠକୁ ତିନିଶ କଦମ ଛାଡ଼ି ସାଆନ୍ତ ଭୁଠ । ସକାଳଓଳି ଏ ଭୁଠକୁ କେହି ସ୍ତ୍ରୀଲୋକ ଯାଆନ୍ତି ନାହିଁ, ସମ୍ପୂର୍ଣ୍ଣରୂପେ ପୁରୁଷମାନଙ୍କର ଦଖଲ । ବୈଶାଖମାସିଆ ଦିନ, ବେଳ ଛ'ଘଡ଼ି ନୋହୁଣୁ ଆକାଶରୁ ନିଆଁ ଛିଣ୍ଡି ତାତି ପବନଟା ଦେହରେ ଝାଁ ଝାଁ ବାଜୁଅଛି । ଚଷ ବିଲରୁ ଧୂଳି ଉଡ଼ି ମାଟିରେ ନିଆଁ ଲାଗି ଧୂଆଁ ଉଡ଼ିଲା ପରି ଜଣାଯାଉଅଛି । ଘାଟରେ ଲୋକ ପୂରି ଗଲେଣି । ଅନ୍ଧାର ପକ୍ଷ ପିଛିଲା ଜହ୍ନରାତି ତିନି ପହର ବେଳେ ଚଷାମାନେ ହଳ ଯୋଚି ଦେଇଥିଲେ, ସମସ୍ତଙ୍କର ହଳ ଫିଟିଲାଣି । କେହି ଘରୁ କାନ୍ଧରେ ଲଙ୍ଗଳ ଆଉଜାଇ ଦେଇ ତେଲ ଟିକିଏ ମୁଣ୍ଡରେ ଓ ପାଞ୍ଚଆଙ୍ଗୁଳିଆ କରି

ଦେହରେ ବୋଳ ହୋଇ ଆସିଅଛୁ, କାହା କାନ୍ଧରେ ଅର୍ଦ୍ଧ ଅଙ୍ଗୁଳ ମୋଟା ଚୋରଣିପକା ଗାମୁଛା, କେହି ନିର୍ଗାମୁଛା, କେତେ ଜଣ ବାହାରେ ବାହାରେ ବିଲରୁ ଆସି ଘାଟରେ ବଳଦ କାନ୍ଧରୁ ଜୁଆଳି ବାହାର କରି ରଖି ପାଣିରେ ପଶିଗଲେ । କେତେ ହଳ ବଳଦ ପେଟେ ପେଟେ ପାଣି ପିଇ କୂଳରେ ଚରୁଛନ୍ତି । କେତେ ଜଣ ଶୁଖିଲା ଦାନ୍ତକାଠି ଚୋବାଇ ଚୋବାଇ ଆସି ପାଣିରେ ପଶି ଜିଭ ଛେଲି କୂଳକୁ ଦାନ୍ତକାଠି ଫୋପାଡ଼ି ଦେଲେ । ତୁଠ ଦୁଇ ପାଖରେ ଅଧଶଗଡ଼େ ଶୁଖିଲା ଦାନ୍ତକାଠି ଜମା ହୋଇଅଛି । ପୁରୁଷ ଲୋକମାନେ ଯେ ତୁନି ତୁନି ଗାଧୁଅନ୍ତି ତାହା ନୁହେଁ, ମାଇକିନିଆମାନଙ୍କ ପରି ଢେର କଥା କହନ୍ତି, ମାତ୍ର ସେହି ଏକରକମ କଥା, ସେହି ପୁରୁଣା କଥା, ସେଗୁଡ଼ାକ ଲେଖିଲେ କ'ଣ ହେବ ? କିଆ ଗହ୍ୱରରେ କେତେ ପଣି ବୃଷା ସରିଲାଣି, ବରଚକି ଆଜି ଦୋହଡ଼ା ସରିଲା, ରାମା ବଡ଼ ଗହ୍ୱରରେ ଅକ୍ଷିମୁଠି ପକାଇଲା, ଖମା ବଳଦ ଚଞ୍ଚଳିଆ, ସାଆନ୍ତଘର ଧଳା ବଳଦ ଯୋଡ଼ାକ ବଳଦ ନୁହନ୍ତି ତ, ଯୋଡ଼ାଏ ହାତୀପିଲା । ମୁଁ କସରା ବଳଦଟା କିଣି ମୁଠାଏ ଟଙ୍କା ପାଣିରେ ପକାଇ ଦେଇଛି, ସାଆନ୍ତଘର କରଜ ଅମାର ଏହି ମାସରେ ଫିଟିବ, ଏହି ମାସ ପନ୍ଦର ଦିନରେ ଶ୍ରବଣା ପଶିବ, ନାହାକ କହୁଛି ଲଗାଣ ହେବ । ଏ ସବୁକଥା ସମସ୍ତଙ୍କୁ ଜଣା, ଅଧିକ କରି କଣ ଲେଖିବୁଁ ?

---

-୧୩-

## ହିତୋପଦେଶ

ପ୍ରଥମା—ଘର ତ ଫୁସ୍‌ଫୁସ୍ ?

ଦ୍ୱିତୀୟା— ଉଠିବ ପରା ବାସ ।

ପ୍ରଥମା—ଶୁଷ କି ବାସ ?

ଦ୍ୱିତୀୟା—ସର୍ବନାଶ ।

ଏ କିଏ ରେ ବାପା ! ତନ୍ତୀ ତୁଠରେ କବିତା !

ବାହ୍ମଣୀ ଗାଧୁଆବେଳ ଗଡ଼ିଗଲାଣି, ତନ୍ତୀ ତୁଠରେ ଦିଓଟି ଦରବୁଢ଼ୀ ଦଶ ଦଶ ହାତ ଗୁଡ଼ ବସି ଦାନ୍ତ ଘଷୁ ଘଷୁ ଏ କଥାଗୁଡ଼ିକ କହି ପରସ୍ପର ମୁହଁକୁ ଗୃହାଁ-ଗୃହିଁ ହେଲେ, ମୁରକି ମୁରକି ହସି ପୁଣି ଊଣଗଲା ପରି ତୁନି ହେଲେ ।

ତୁମ୍ଭେ ପାଠକରି କଥା କହ, ସେଥିରେ କେହି ମନ ଦେବେ ନାହିଁ, ନିହାତି ପାଖଲୋକ ମଧ୍ୟ ନ ଶୁଣିଲା ପରି ରହିବେ; କିନ୍ତୁ ଦୁଇଜଣ ଫୁସ୍‌ଫୁସ୍ ହେଉନ୍ତୁ, ଲୋକଙ୍କ ମନ ଦେଖ ସେହିଠାରେ, କଥାଟା ଶୁଣିବାପାଇଁ ସମସ୍ତଙ୍କ ମନ ଗୁଡ଼େଇପୁଡ଼େଇ ହେଉଥାଏ । ବାସ୍ତବିକ ସାନ ମଞ୍ଜି ଭିତରେ ବଡ଼ଗଛ ଲୁଚି ରହିଲା ପରି ତୁନି କଥା ମଧ୍ୟରେ କେବେ କେବେ ଘର କାରଖାନା ଥାଏ । ତୁଠରେ ତ ଆଉ କେହି ନାହିଁ, ଦରବୁଢ଼ୀ ଦିଓଟି କି ସକାଶେ ତୁନି ତୁନି ଇଶାରାରେ ଏପରି କଥା କହିଲେ, ପୁଣି ଉତ୍ପୋଇ ତୁନି ହେଲେ ?

ତନ୍ତୀତୁଠରେ ପାଣି ଗଡ଼ନ୍ତି ଡାହାଣହାତି ଅଧାଅଧି ବାଟକୁ କୋଡ଼ିଏ ହାତ ଅନ୍ଦାଜ ଗୁଡ଼ ଯାଉଁଳି ବର ଅଶ୍ୱତ୍ଥ ଗଛ ଲଗାଲଗି ହୋଇ ରହିଅଛି । ଗଛ ଦିଓଟି ଅଧା ଭଳିଆ ଥାକୁଲି ଥାକୁଲି, ପୁଣି ସେଥିରେ କଅଁଳ ପତ୍ର ଲଦି ହୋଇଅଛି । ଘାଟ ପାଖ ବାଟ ପାଖରେ ବର ଅଶ୍ୱତ୍ଥ ବିଭା କରାଇ ଦେଲେ କନ୍ୟାଦାନର ଫଳ ମିଳେ । ହିନ୍ଦୁମାନଙ୍କର ଏହି ସଂସ୍କାରର ଚିହ୍ନ ଅନେକ ସ୍ଥାନରେ ଦେଖାଯାଏ । ମାଇକିନିଆ ଦିଓଟି କଥା କହୁକହୁ ସେହି ଗଛ ମୂଳକୁ ଦୁଇ ତିନି ଥର ଅନାଇଥିଲେ । ଏବେ କଥା କାହିଁ ଯାଏ ? ଚୋର ତ ଅନ୍ଧାର ରାତିରେ ଖୁବ୍ ହୁସିଆରରେ ଚୋରି କରେ, ଜେଲଖାନାକୁ ଏତେ କିଏଁ କାହୁଁ ଅଇଲେ ? ବୁଦ୍ଧି-ମାନ୍ ହୁସିଆର ଗୋଏନ୍ଦା ଆଖିରେ ଧୂଳି ପକାଇବା ସହଜ କଥା ନୁହେ । ଅବଶ୍ୟ ଗଛମୂଳର ପଦାର୍ଥବିଶେଷ

ସହିତ ଏମାନଙ୍କ କଥାର ଘନିଷ୍ଠ ସମ୍ବନ୍ଧ ଅଛି । ଠିକ ! ଆମ୍ଭମାନଙ୍କ ଅନୁମାନ ସମ୍ପୂର୍ଣ୍ଣ ଠିକ । ଖିଅ ମୁଣ୍ଡଟି ହାତରେ ପଡ଼ିଲେ ବୁଦ୍ଧିମାନ ଚର୍ଚ୍ଚୀ ଯେମନ୍ତ ବଡ଼ାଏ ସୂତା ସଳଖେ ସଳଖେ ଟାଣି ଆଣେ, ଆମ୍ଭମାନଙ୍କୁ ସେହିପରି ବୁଦ୍ଧିମାନ ଜାଣିବ, ଟିକିଏ ସଙ୍କେତ ଦେଇ ସବୁ କଥା ଆମ୍ଭମାନଙ୍କଠାରୁ ଶୁଣିଯାଅ । ଯାଉଁଳିଗଛ ଉହାଡ଼ରେ ଦୁଇଟି ସ୍ତ୍ରୀ ବସି କଣ କୁହାକୁହି ହେଉଛନ୍ତି । ମଲ—ଯା ! ଏମାନଙ୍କୁ ଯେ ଆମ୍ଭେମାନେ ଭଲକରି ଚିହ୍ନୁ । ଅସମୟରେ ଅସ୍ଥାନରେ ଏମାନେ ବସି କଣ କହୁଛନ୍ତି ? ମିଳନଟା ମଧ୍ୟ ଭାରି ଚମତ୍କାର ରକମର । ଗୋଟିଏ ଧୂର୍ତ୍ତା ନଷ୍ଟ ପ୍ରକୃତି ଶୃଗାଳୀ, ଆଉଗୋଟିଏ ଠିକ୍ ବଗ୍‌ଖେତ—ନିତାନ୍ତ ନିରୀହ ମେଣ୍ଢ଼ୀ । ଦୁହିଙ୍କ ମଧ୍ୟରୁ ଜଣେ ନାକବସଣୀ ଟେକି ସାପୁଣି ଫଣା ଟେକି ସାବଧାନତା ସହିତ ଅନାଇଲା ପରି ଚାରିଆଡ଼କୁ ଅନାଇ ଅନର୍ଗଳ ବକ୍ତୃତା ଓଜାଡ଼ ପକାଉଅଛି । ବାମପାର୍ଶ୍ୱରେ ପାଖରେ ମାଣିମାଠିଆଟି ଥୁଆ, ଡାହାଣ ହାତରେ ଦାନ୍ତକାଠି ଖଣ୍ଡିଏ ମୁଠା, କପାଳଯାଏ ଓଢ଼ଣା ଟଣା । ଗୋଟିଏ ଉତ୍କଟ ଶବ୍ଦ ଶୁଣିଲେ ମେଣ୍ଢ଼ୀ ଯେପରି ସେହି ଦିଗକୁ ଚାହିଁକା ହୋଇ ଚାହିଁ ରହିଥାଏ, ସେହିପରି ସେହି ସ୍ତ୍ରୀଟି 'ସ୍ଥିର ମନ ଧୀର ବୁଦ୍ଧି ପଞ୍ଚଭୂତ ଆତ୍ମା ହୋଇସ୍ତ ନିର୍ମଳ ହୃଦ କମଳ'ରେ ଶୁକଦେବଙ୍କ ମୁଖରୁ ପରୀକ୍ଷିତ ପୁରାଣ ଶୁଣିଲା ପରି ବାକ୍ୟାବଳୀ ଶ୍ରବଣ କରୁଅଛି । ମାତ୍ର ସେଗୁଡ଼ିକ ତାହା ମସ୍ତକଭଣ୍ଡାରରେ ସଞ୍ଚିତହେଉଅଛି କି ଆର କାନବାଟେ ସଳଖେ ସଳଖେ ବାହାରି ଯାଉଅଛି, ତାହାର ସ୍ଥିରତା ବୋଲିବାକୁ ଆମ୍ଭେମାନେ ନିତାନ୍ତ ଅକ୍ଷମ ।

ଆପଣ ଅବଶ୍ୟ ସେମାନଙ୍କ କଥା ଶୁଣିବାକୁ ଇଚ୍ଛା କରିବେ, ସନ୍ଦେହ ନାସ୍ତି । ଜଣେ ମନୁଆଲ କହିଥିଲା,

"ସଂସାର ବିଷବୃକ୍ଷସ୍ୟ ମଦ୍ୟମାଂସାମୃତ ଫଳଂ ।"

ଅର୍ଥାତ୍ ସଂସାରରୂପ ବିଷବୃକ୍ଷରେ ମଦ୍ୟ ମାଂସ ଏହି ଦୁଇଟି ଅମୃତ ଫଳ ଫଳିଅଛି । ଏକଥା ଶୁଣି ବୃଦ୍ଧ ମନୁ ବୋଇଲେ—

"ନ ମାଂସଭକ୍ଷଣେ ଦୋଷୋ ନ ମଦ୍ୟେ—
ପ୍ରବୃତ୍ତିରେଷା ଭୂତାନାଂ—"

ଅର୍ଥାତ୍—ଭୂତମାନେ ବା ଭୂତ ପରି ଲୋକମାନେ ଏପରି କଥା କହନ୍ତି । ଠିକ କଥା, 'ବୃଦ୍ଧସ୍ୟ ବଚନଂ ଗ୍ରାହ୍ୟଂ ।' ମାତ୍ର ସଂସାରରୂପ ବିଷବୃକ୍ଷରେ ଯେ ଦୁଇଗୋଟି ଅମୃତ ଫଳ ଫଳିଅଛି, ଏକଥା ଠିକ୍ ସତ୍ୟ । ଚକ୍ଷିବ କିଏ ? କେବଳ ଆମ୍ଭମାନଙ୍କୁ ସେ ଫଳ ଦୁଇଟି ଜଣା, 'ପରୋପକାରଂ ସ୍ୱର୍ଗାୟ' । ପରର ଉପକାର କରିବା ହେଉଛି ଆମ୍ଭମାନଙ୍କର ବ୍ରତ । ଆପଣମାନଙ୍କର ଉପକାର ସାଧନ ନିମନ୍ତେ ସେହି ଫଳ ଦୁଇଟିର ନାମ ପ୍ରକାଶ କରୁଅଛୁ । ଗୋଟିଏ ଫଳର ନାମ ଗୁପ୍ତ କଥା ଶୁଣିବାକୁ ଇଚ୍ଛା, ଆଉ ଗୋଟିକର ନାମ ପରନିନ୍ଦା । ତୁମେ କାହାରି ଘରର ଗୁପ୍ତ ଛିଦ୍ର କଥା କହ କି କାହାର ନିନ୍ଦା କର, ଦେଖିବ ଲୋକମାନେ ଭାରି ଆନନ୍ଦରେ ମନ ଦେଇ ଶୁଣିବେ । ବୁଝିବା ହେଲେଟି କି ? ଫଳର ମହାତ୍ମ୍ୟ ନ ଥିଲେ କି ତାହାର ଏଡ଼େ ଆନନ୍ଦ ହୁଅନ୍ତା ?

ଆମ୍ଭେମାନେ କଣ ଲେଖିବାକୁ ଯାଇ କଣ ଲେଖି ପକାଉଅଛୁଁ । ଯେତେବେଳେରେ ଆହୁଲା ଭିଡ଼, ପାଣି ସୁଅଟା ନାଆକୁ ଲକ୍ଷ୍ୟସ୍ଥାନରୁ ଦୂରକୁ ଟାଣିନିଏ । ମାତ୍ର ଟାଣୁଆ ନାଉରି ମଙ୍ଗ ଛାଡ଼େ ନାହିଁ । ଆମ୍ଭମାନଙ୍କ କଲମ ଏଣେ ତେଣେ ଯାଉଅଛି ସତ୍ୟ, ମାତ୍ର ମୂଳ କଥାଟା ହଲଚଲ ହୋଇ ପାରିବ ନାହିଁ, କଥାଟା ଦାଣ୍ଡେ ଚାଲିଥିବ ।

ସେ କଥା ଯାଉ, ଆପଣଙ୍କୁ ଆଉ ସନ୍ଦେହରେ ପକାଇ ରଖିବା ଉଚିତ ନୁହେଁ । ଏ ଦୁଇଟି ସ୍ତ୍ରୀଲୋକ କିଏ, କି କି କଥା କହୁଅଛନ୍ତି, ସବୁ ଖୋଲସା କରି କହି-ଦେବା ଉଚିତ । କୌଣସି କୌଣସି ଲୋକ ଗୋଟିଏ

କଥା କହିବା ଆଗରୁ ଅନେକ ମୁଖବନ୍ଧ, ଅନେକ ବକ୍ତୃତା କରିବସନ୍ତି; ମାତ୍ର ଆମ୍ଭମାନଙ୍କର ସ୍ୱଭାବ ଏହାର ସମ୍ପୂର୍ଣ୍ଣ ବିପରୀତ । ଯା ବୋଲିବାର ପରିଷ୍କାର କରି ଝଟ୍ ପଟ୍ କହି ପକାଉଁ । ଆଉ ଅନେକ ଲୋକ ଭୟରେ ଅନେକ କଥା ଲୁଚାନ୍ତି କିମ୍ବା କହୁ କହୁ କଣ କହିପକାନ୍ତି । ଏହି ଦେଖନ୍ତୁ ନା, ଦରବୁଢ଼ୀ ମାଇକିନିଆ ଦିଓଟି ଇଶାରାରେ କଣ କହୁ କହୁ ଚୁପ ହୋଇଗଲେ । ମାତ୍ର ଚତୁରିଆଣୀ ମାଇକିନିଆମାନଙ୍କଠାରୁ ଆମ୍ଭମାନଙ୍କର ସାହସ ଖୁବ୍ ବେଶି । ଫେର ପରି ସବୁ କଥା କହିଯିବୁଁ । ଆଉ ଗୋଟିଏ କଥା କଣ ଜାଣନ୍ତି ? ଆମ୍ଭ ଭଳିଆ ଲୋକ ଡକାପାଡ଼ିଲେ ମଧ୍ୟ କେହି ଶୁଣିବାକୁ ନାହିଁ; କିନ୍ତୁ କେହି ପ୍ରଧାନ ଲୋକ ଆଁ କରିଦେଲେ ଦେଖିବେ ଦୁଇ ଶ ଲୋକ ତାଙ୍କ ପାଟିକି ଅନାଇ ରହିବେ । ବିଲାତର ଲୋକେ ପ୍ରଧାନ ପ୍ରଧାନ ଲୋକଙ୍କ କଥା ଶୁଣିବାପାଇଁ ଅଣ୍ଟାରେ ପଇସା ଖୋସି ଦଉଡ଼ନ୍ତି । ଗଛମୂଳିଆ ସ୍ତ୍ରୀଲୋକ ଦିଓଟି ଗ୍ରାମରେ ସୁବିଖ୍ୟାତ । ଆପଣ ମଧ୍ୟ ସେମାନଙ୍କୁ ଭଲକରି ଚିହ୍ନନ୍ତି । ମନୁଷ୍ୟମାନେ ରୂପରେ ନୁହେଁ, ଗୁଣରେ ସିନା ଚିହ୍ନା ଯାନ୍ତି ! ଭଲ ହେଉ ବା ମନ୍ଦ ହେଉ ସାଧାରଣର କଣ୍ଠରୁ ଯାହାର ଗୁଣ ଯେତେ ବେଶି, ସେ ସେତେ ବିଖ୍ୟାତ ଗୋବିନ୍ଦପୁର ଗ୍ରାମରେ ଊଣା ଅଧିକ କାହାଣେ ମାଇକିନିଆ ଅଛନ୍ତି, ସେମାନଙ୍କ ମଧ୍ୟରେ ଏ ଦିଓଟି ବଛା । ଗୋଟିଏ ଚତୁରତା ଓ ଧୂର୍ତ୍ତତାରେ, ଆଉ ଗୋଟିଏ ସରଳତା ଓ ନିର୍ବୋଧତାରେ । ଦିଓଟି ବିଖ୍ୟାତ ସ୍ତ୍ରୀଲୋକ, ପୁଣି ଗୁପ୍ତ କଥା, ଆପଣ କି ନ ଶୁଣି ଛାଡ଼ିବେ ? ସେଥିସକାଶେ ସିନା ଲେଖିବାକୁ ବସିଅଛୁ ।

ଆମ୍ଭେମାନେ ବହୁ ପରିଶ୍ରମ ବହୁ ଯତ୍ନ କରି ସେମାନଙ୍କର କଥା ସଂଗ୍ରହ କରିଅଛୁଁ । ଗୋଟିଏ ସ୍ତ୍ରୀ ଭାରି ଏକ ଲମ୍ବା ବକ୍ତୃତା କରିଥିଲା । ଆପଣ କେତେ ଗୁଡ଼ାଏ କଥା ଶୁଣିବାକୁ ଅସୁଖ ପାଇବେ, ଲମ୍ବା କଥା ଲେଖିବାରେ ଆମ୍ଭେମାନେ ମଧ୍ୟ ଅନଭ୍ୟସ୍ତ । ତାହାର ସାରମର୍ମ ଲେଖୁଅଛୁଁ ।

ଦେଖ ସାରିଆ—ବୁଢ଼ୀମଙ୍ଗଳା ସବୁର ମୂଳ, ତାଙ୍କ ଆଜ୍ଞାରେ ପୃଥିବୀ ଚଳୁଛି, ସଂସାର ଆତଯାତ ହେଉଛି, ତାଙ୍କ ଆଜ୍ଞା କି ଅନାସ୍ଥା ହବ ? କେତେ ବାର ବରତ କରି ଦେବୀଙ୍କ ଆଜ୍ଞା ପାଇଛି, ତୁମ୍ଭର ଖୁବ୍ ଭାଗ୍ୟ, ଏତେ ଭାଗ୍ୟ କାହିଁ ଦେଖିବାର ନାହିଁ ପରା ! ଏକା ସାନ୍ତଙ୍କ ଘର ଉପରେ ଦୟା ଥିଲା, ଏବେ ତମ ଉପରେ ହେଲା । ତମେ ମଙ୍ଗଳାଙ୍କ ମନ୍ଦିରଟା ବନାଇ ଦିଅ ତ, ଦେଖିବ, ତମ ଘର ଲକ୍ଷ୍ମୀ-ଭଣ୍ଡାର ହୋଇଯିବ । ପଣ ପଣ, କାହାଣ କାହାଣ ଟଙ୍କା କାହୁଁ ଆସି ଘରେ ପଶିବ, ଧାଡ଼ଧାଡ଼ ଧାନ ମରେଇ ବସିଯିବ, ଭଗବାନ କି ଆଉ ଚନ୍ତ ବୁଣିବ ? ତମ ପଛରେ ଦଶଜଣ ପୋଇଲି ଗୋଡ଼ାଇବେ, ତମେ ମଙ୍ଗଳାଙ୍କ ଆଜ୍ଞା ମାନ, ଯେପରି ହେଉ ମନ୍ଦିରଟା ବନାଇ ଦିଅ । ଟଙ୍କା ସକାଶେ ଭାବନା କଣ ଅଛି ? ମଙ୍ଗଳାଙ୍କ ନାଁ ଶୁଣିଲେ ଟଙ୍କା କିଏ ନ ଦେବ ? ଆଉ କୁଆଡ଼େ କିଁଏ ଖୋଜିବ ? ମଙ୍ଗରାଜଙ୍କ କାନରେ ପଡ଼ିଲେ ରାତି ଅଧରେ ଟଙ୍କା ଗଣି ଦେବେ । ସେ କଥାରେ ମୁଁ ଲାଗା ହେଲି, ମୁଁ ଟଙ୍କା ଆଣି ଦେବି । ତୁମକୁ କିଛି କରିବାକୁ ହେବ ନାହିଁ । ବେଶି ଟଙ୍କା ଲୋଡ଼ା ନାହିଁ, ଦେଢ଼ଶ ଟଙ୍କା ହେଲେ ଖୁବ୍ ଗୋଟାଏ ବଡ଼ ମନ୍ଦିର ହୋଇଯିବ । କେନ୍ଦରାପଡ଼ାରେ ଯେ ବଳଦେବଙ୍କ ମନ୍ଦିର ଅଛି, ଠିକ୍ ସେତିକି ଉଞ୍ଚା ସେତିକି ଚଉଡ଼ା ହେବ । ତମ ଛ ମାଣ ଆଠ ଗୁଣ୍ଠ ଜମି କିଣି ଲେଖି ଦେବ, ମୁଁ ଟଙ୍କା ଆଣି ଦେବି । ତମ ଜମି ତ କେହି ନେଇଯିବ ନାହିଁ, ଯେଉଁ ଠା ଜମି ସେହିଠାରେ ରହିବ; କେବଳ ଗୁଜାରେ ଲେଖାଯିବ । ମନ୍ଦିର ବନା ସରିଲେ ତ ତମେ କେତେ ଲୋକଙ୍କୁ ଟଙ୍କା ଦବ । ମା ମଙ୍ଗଳା କିଛି ସପନ ଦେଇଥିବେ, ନିଶ୍ଚେ ଦେଇଥିବେ । ସେ ପ୍ରଥମେ ସପନ ପରି ଗୋଟିଏ ସୁନା ଟଙ୍କା ଦିଅନ୍ତି, ସେ କି ରୂପା ଟଙ୍କା ଦେବେ ।

ବକ୍ତୃତାକାରିଣୀର କଥା ଯେ ସାରିଆ ହୃଦୟଙ୍ଗମ କରି ପାରିଲା; ଏହା ଆମ୍ଭେମାନେ ବିଶ୍ୱାସ କରିପାରୁ

ନାହିଁ । ସେ ବଲବଲ କରି ଚାହିଁ ରହିଥାଏ । ପଣ ପଣ ଟଙ୍କା, ଦେଡ଼ଶ ଟଙ୍କା । ଦେଡ଼ଶ ଟଙ୍କାର ଅର୍ଥ ବୁଝିବା ତାହା ପକ୍ଷରେ କି ସହଜ କଥା ? ଟଙ୍କାକର ପଇସା ଗଣିବାକୁ ହେଲେ ସାରିଆ ଗାଁକୁ ବାହାରେ ନାହିଁ, ଭଗିଆ ଆଉ ସେ ଦୁଇ ଜଣ କବାଟ କିଲ ଦେଇ ଦୁଇ ତିନି ଘଣ୍ଟା ମଧ୍ୟରେ ଗଣିକରି ଠିକ୍‌କରନ୍ତି । ଯେଉଁ ଦିନ ପାଞ୍ଚ ସୁଉକା କି ଅଠର ଅଣାର ଲୁଗା କିଣି ହୁଏ, ସେଦିନ ତାହା ଭାଇ ଲୋକନାଥିଆ ପାଖରୁ ଗଣାଇ ଆଣେ । ଆଉ ତାହା ଘରେ ପାଞ୍ଚ ଛ ଜଣ ପୋଇଲା ପଶିବେ, ଏହା ବିପଦ କି ସମ୍ପଦ ! ମହା ମୁସ୍କିଲ ! ଭଗିଆ ପାଖରେ ନାହିଁ, କରେ କଣ ? ପଳାଇ ପାରିଲେ ରକ୍ଷା । ସାରିଆ ଗୋଟାଏ ଦୀର୍ଘ ନିଶ୍ୱାସ ପକାଇ ଥରେ ପାଣି ମାଠିଆକୁ ଅନାଇ—'ଚମ୍ପା ସାନ୍ତାଣୀ' ଏତିକି କହି ତୁନି ହେଲା, ଆଉ କିଛି କହି ପାରିଲା ନାହିଁ । ମାତ୍ର ଧୂର୍ତ୍ତା ଚତୁରୀ ଚମ୍ପାର କିଛି ବୁଝିବାକୁ ବାକି ରହିଲା ନାହିଁ । ତାହାର ମନ ଯେ କିଛି କାଟ କଲା ନାହିଁ, ତାହା ସେ ବେଶ୍ ବୁଝି ନେଲା । ପକ୍ଷୀ ଶିକାର ହାତରୁ ପଳାଇବା ସକାଶେ ଛଟପଟ ହେଲାଣି । ତେର ଦିନ ଖୋଜି ଖୋଜି ବଗଡ଼ ଲଗି ଧରିଅଛି, ତାହା ଦାଢ଼ରୁ କି ସହଜରେ ପଳାଇବ ? ମନ୍ତ୍ର ବଦଳାଇବା ଦରକାର ।

ଚମ୍ପା—"ଦେଖ ସାରିଆ, ଟଙ୍କାରେ କଣ ଅଛି, ସୁନାରେ କଣ ଅଛି ? ଟଙ୍କା ସୁନାରେ କେହି ସ୍ୱର୍ଗକୁ ଯାଏ ନାହିଁ, ମୂଳକଥା ପିଲାଝିଲା । ଯେଉଁଘରେ ପିଲା ନାହିଁ, ସେ ଘର ତ ଦିନ ଦିପହରେ ଅନ୍ଧାର । ବାଞ୍ଝ ବରଡ଼ି ହେବା କି ଊଣା ପାପ ? ସାଆନ୍ତଙ୍କ ଘରେ ବେଳ ପୁରାଣ ହୁଏ, ମୁଁ ଶୁଣେ । ସେଦିନ ଗୋସାଇଁ ପୋଥିରେ ଟାଇଲେ—

"ଯାହାର ପିଲାଝିଲା ନାହିଁ,
ସକାଳୁ ତା ମୁହଁ ଚାହିଁବ ନାହିଁ ।
ଡିନପୁଆଣି ସୁଲକ୍ଷଣୀ
ବାଞ୍ଝ ବରଡ଼ୀ ଗାଁ ନଉଛୁଣୀ ।
ଯାହାର ଘରେ ପୁଅ ଝିଅ ନ ଥାଏ,
ସେ ମାଇକିନିଆ ବଡ଼ ଦୁଃଖ ପାଏ ।"

ଭାଗବତ ପାଠ କଣ ମିଛ ? ମାହାଳିଆକୁ ସମସ୍ତେ ଗାଦିକୁ ମୁଣ୍ଡିଆ ମାରୁଛନ୍ତି ? ଆଉ ତମେ ଦେଖିବଟି, ବଡ଼ସକାଳୁ ତମ ଦୁଆରବାଟେ କେହି ଲୋକ ଚାଲନ୍ତି ନାହିଁ । କାହିଁକି ଚାଲନ୍ତି ନାହିଁ ? ତମ ମୁହଁ ଦେଖିବେ ନାହିଁ ବୋଲି । ତମେ ଶୁଣିଥିବ ଆମ ସାଆନ୍ତାଣୀ ପ୍ରଥମେ ବାଞ୍ଝ-ଥିଲେ, ଦିନ ଘଡ଼ିଏ ଯାଏ ଆମ୍ଭେମାନେ ତାଙ୍କ ମୁହଁ ଚାହୁଁ ନ ଥିଲୁ ପରା । ସାଆନ୍ତାଣୀ କାନ୍ଦି କାନ୍ଦି ମଙ୍ଗଳାଙ୍କୁ ପୂଜା ଦେଲେ, ଦେବୀଙ୍କର ତମ ଉପରେ ଯେପରି ଦୟା ହେଲା, ସେହିପରି ତାଙ୍କୁ ଦୟା ହେଲା । ଏବେ ଦେଖ ନାତି ନାତୁଣୀ ଦେଖିବାକୁ ବସିଲେଣି ।"

ସାରିଆ ଚାହିଁ ସ୍ୱପ୍ନ ଦେଖୁଅଛି, କଥା ସବୁ ଶୁଣି ତା କାନ ଝାଁ ଝାଁ ଡାକିଲାଣି, ପଳାଇବାକୁ ଇଚ୍ଛା, ବାଟ କାହିଁ ? ବିରାଡ଼ି ମୂଷା ବେକ ମାଡ଼ି ବସିଅଛି । ଦୁଇ ଆଖିରେ ପାଣି ଡଳ ଡଳ କରୁଅଛି । କଥା କହିବାକୁ ଇଚ୍ଛା, ପାଟି ଫିଟୁ ନାହିଁ । ବହୁତ କଷ୍ଟରେ ପାଟି ଫିଟିଲା—

ସାରିଆ—ମୁଁ କଣ କରିବ ? ଲୋକେ କହୁଛନ୍ତି, ସାଆନ୍ତେ ଜମି କାଟ ନେଇଗଲେ ଫେରାଇ ଦିଅନ୍ତି ନାହିଁ ।

ଚମ୍ପା—ରାମ ! ରାମ ! ରାମ ! ଏ କି କଥା କହିଲ ! ମଙ୍ଗଳା କାମକୁ ଟଙ୍କା ଦେବେ, ତମ ଜମି ନେବେ ? ସେ ଗାଁ ଲୋକଙ୍କ କଥା ଶୁଣୁଛ କାହିଁକି ? ଏ ଗୋବିନ୍ଦପୁର ଗାଁଟା ପୃଥିର ନଉଛୁଣା । ଏ ଗାଁ ମାଇକିନିଆଏ ଦିନ ଦିପହରେ ବୁଡ଼ାଇ ମାରିବେ ପରା ! ତମ ସୁଖ ଦେଖି ସେମାନେ ହାଇଁପାଇ ହେଉଛନ୍ତି । ଏ ଗାଁରେ ଶାଗଖିଆକୁ ପେଜଖିଆ ଦେଖିପାରେ ନାହିଁ । ତମେ କାହାରି

ପାଖରେ କିଛି କହିବ ନାହିଁ । ଆହୁରି ଦେଖ, ଠାକୁରାଣୀଙ୍କ ଅଜ୍ଞା ନ ମାନଲେ ଆଖି ଫୁଟିଯାଏ, କାନକୁ ଶୁଭେ ନାହିଁ, ଲୋକେ ମରଯାନ୍ତି । ଗୋପୀନାଥପୁରର ତିନିଜଣ ମାଇକିନିଆ ଠାକୁରାଣୀଙ୍କ କଥା ନ ମାନିବାରୁ ଏକାବେଳକେ ରାଣ୍ଡ ହୋଇଗଲେ, ତମେ କଣ ଏ କଥା ଶୁଣି ନାହିଁ ?

ସାରିଆ ନିଶ୍ଚଳ କାଠ ପିତୁଳାଟି ପରି ବସି ସବୁ କଥା ଶୁଣୁଥିଲା, ଶେଷ କଥାଟା ଶୁଣି ଆଉ ସମ୍ଭାଳି ପାରିଲା ନାହିଁ, କାନ୍ଦି ପକାଇଲା । କରିଁକରିଁ ହୋଇ କହିଲା, "ମୁଁ କଣ କରିବି ? ଚମ୍ପା ସାନ୍ତାଣୀ ମୁଁ କଣ କରିବି ?"

ଚତୁରା ଚମ୍ପା ଏତେବେଳେ ସାରିଆର ମନକଥା ବେଶ ବୁଝିନେଲା, ମନ୍ତ୍ର କାମ କରିଥିବାର ଜାଣି ମନ ମଧ୍ୟରେ ଖୁବ୍ ଖୁସିଟାଏ ହୋଇ କହିଲା, "ଦେଖ ସାରିଆ ! ତମର କିଛି ଡର ନାହିଁ । ତମକୁ କିଛି କରିବାକୁ ହବ ନାହିଁ, ମୁଁ ସବୁ କରିଦେବି ।"

ସାରିଆ ନାହିଁ ନାହିଁ, ମୋର କିଛି ଲୋଡ଼ା ନାହିଁ, ସେ ଭଲ ଥାଆନ୍ତୁ ।

ଚମ୍ପା—କିଛି ଡର ନାହିଁ, ଭଗବାନ ଗୋଡ଼ରେ କଣ୍ଟା ବାଜିବ ନାହିଁ । ( ଚମ୍ପା ଦଧିବାମନ ଧଣ୍ଡା ଓ ମୂର୍ତ୍ତିଏ ରସକୋରା ମହାପ୍ରସାଦ ସାରିଆ ହାତରେ ଦେଇ କହିଲା ) ଦେଖ ସାରିଆ, ଏହି ଧଣ୍ଡା, ଏହି ମହାପ୍ରସାଦ ସାକ୍ଷୀ ରହିଲେ, ମୁଁ ତମର ସବୁ ଭଲ କରିଦେବି, ତମର ତିନି ପୁଅ ହେବ, ଆଉ ଭଗବାନର କୋଟିଏ ଆୟୁଷ ହେବ, କିଛି ଚିନ୍ତା ନାହିଁ ।

ସାରିଆ—ମୁଁ କଣ କରିବି ? ଚମ୍ପା ସାନ୍ତାଣୀ, ମୁଁ କଣ କରିବି ?

ଚମ୍ପା—ତମକୁ କିଛି କରିବାକୁ ହବ ନାହିଁ, ଆଜି ସନ୍ଧ୍ୟାବେଳେ ଭଗବାନ ଓ ତମେ ଦୁଇଜଣ ଏଠିକି ଆସିବ, ଯାହା କରିବାକୁ ହେବ, ମୁଁ କରି ଦେବି । ଆଉ ମଙ୍ଗଳାବରତ ଧରିଲେ ଯେତେବେଳଯାଏ ମଙ୍ଗଳାଙ୍କ କାମ ନ ହୋଇଚି, ଦୁଇଜଣ ମିନାନ କରି ଉପାସ ରହିଥିବ, ଖାଲି ଅଳ୍ପ ଅଳ୍ପ ଚୂଡ଼ା ଖାଇବ । ତମେମାନେ ବରତ କଥା ଜାଣ ନାହିଁ, ସେଥିପାଇଁ ସବୁ କହୁଚି ।

ତାହାବାଦ ସାରିଆ ଧୀରେ ଧୀରେ ନଦି ମଧ୍ୟକୁ ଗାଧୋଇବାକୁ ଗଲା । ଚମ୍ପା କେତେବେଳଯାଏ ଗଛମୂଳରେ ଠିଆ ହୋଇ ଗୃହ ଆଡ଼କୁ ଅନାଇ ସନ୍ତୁଷ୍ଟ ଚିତ୍ତରେ ସାଆନ୍ତଙ୍କ ଉଆସ ଆଡ଼କୁ ଚାଲିଗଲା ।

ଆମ୍ଭେମାନେ ଗୁପ୍ତଭାବରେ ଅନୁସନ୍ଧାନ କରି ସମ୍ବାଦ ପାଇଅଛୁଁ, ସେଦିନ ଅଧରାତିଯାଏ ସାରିଆ ଉଆସ ମଧ୍ୟରେ ଥିଲା, ଭଗବାନ କଚେରିରେ ଥିଲା । ତହିଁ ଆରଦିନଠାରୁ ଚାରିଦିନଯାଏ ଭଗବାନକୁ ଗାଁ ମଧ୍ୟରେ କେହି ଦେଖିନାହିଁ । ତାହାକୁ କଟକ ବାଟରେ ଲୋକେ ଦେଖିବାର କେହି କେହି କହନ୍ତି ।

---

-୧୪-

## ମନ୍ତ୍ରଣା

ହୁକେ—ହୁକେ—ହୋ । ହୁକେ—ହୁକେ—ହୋ । ହୁକେ—ହୋ, ବିଲୁଆ ଡାକିଲେ, ଠିକ୍ ଅଧରାତି । ମଫସଲ ଗାଁରେ ଘଡ଼ି ଘଣ୍ଟା ନାହିଁ, ବିଲୁଆ ଡାକ ଶୁଣି ରାତି ଠିକ୍ କଲୁଁ । ଏହି ପ୍ରାଣୀଗୁଡ଼ିକ ଗ୍ରାମର ଭାରି ଉପକାରୀ । କ୍ଷୁଦ୍ର ଗ୍ରାମରେ ମିଉନିସିପାଲିଟି କମିଶନର ନାହାନ୍ତି । ଗ୍ରାମରୁ ମଲା କୁକୁରଟି, ମଲା ମୂଷାଟି, ମଲା ବିରାଡ଼ିଟି, ଆଉ ଆଉ ମଇଲା ଦ୍ରବ୍ୟ

ଉଠାଇବା କାର୍ଯ୍ୟ ଏମାନଙ୍କ କ୍ଷମା । ଅଧିକନ୍ତୁ, ଗୋବିନ୍ଦପୁର ଗ୍ରାମ ନିସ୍ତବ୍ଧ, ଟେଁ—ଭେଁ ଶବ୍ଦଟି ନାହିଁ । ତେଲି ସାହିରେ ଗୋଟିଏ ଶେଯପିଲା କୁଆଁ କୁଉଁଆ କୁଆଁ କରି କାନ୍ଦୁଥିଲା, ତାହାର ମା ନିଦ ଅଳସରେ ପିଲାକୁ ଥାପୁଡ଼ାଥାପୁଡ଼ି କରି ଘରି ଘରି ମୂଲ୍ୟବାନ ଏବଂ ଦୁଷ୍ପ୍ରାପ୍ୟ ଜନସମାନ ଯାଚି ଏବଂ ଗେରି, ଚୌକିଆ, ବାଘ ପ୍ରଭୃତି ଭୟଙ୍କର ପ୍ରାଣୀମାନେ ଆସୁଥିବାର ଭୟ ଦେଖାଇ ଏବଂ ପିଲାଟି ଯେ ଖୁବ୍ ଭଲ, ସେ କାନ୍ଦିବ ନାହିଁ, ତୁନି ହୋଇ ଶୋଇ ପଡ଼ିବ ଇତ୍ୟାଦି ପ୍ରଶଂସାବାଦ କରି ଶୁଆଇ ପକାଇଲାଣି । ମଙ୍ଗରାଜଙ୍କ କଚେରି ଅଗଣାରେ ଆମ୍ଭମାନଙ୍କ ଗୋବରା ଜେନା ଆଉ ସଉଭୁଣିଆ ମୌଜାର ଚୌକିଆ ଦାସ ଜେନା, ଦୁଇଜଣ ଚାରିଚାରି ଲେଖାଏଁ ଲମ୍ବ ବାଉଁଶବାଡ଼ି ଦୁଇଖଣ୍ଡ, ବଏଁ ବଏଁ ଲମ୍ବ ଦୁଇଟା କଆଁ ବରିଆ ପାଖରେ ପକାଇ ନିଶ୍ଚିନ୍ତଭାବରେ ଶୋଇଛନ୍ତି । ବାହାରର ଲୋକେ ମନରେ କରିବେ, ମଙ୍ଗରାଜଙ୍କ କଚେରିରେ ଦୁଇଟା ଘୁଷୁରି ଚରୁଛନ୍ତି ଅବା । ଆମ୍ଭେମାନେ ସର୍ବଦା ସବୁ ବିଷୟରେ ସାବଧାନ ଥାଉଁ, ସବୁ ବିଷୟ ଅନୁସନ୍ଧାନ କରି ବୁଝୁଁ; ତଥାପି ପ୍ରଥମେ ଆମ୍ଭମାନଙ୍କର ମଧ୍ୟ ଭ୍ରମ ହୋଇଥିଲା; ମାତ୍ର ଭଲକରି କାନ ଡେରି ଶୁଣିବାରୁ ଶୁଣାଗଲା, ଚୌକିଦାର ଦୁଇଜଣଙ୍କ ନାକର ଘୁଙ୍ଗୁଡ଼ି ଡାକ ଭ୍ରମପ୍ରମାଦର କାରଣ ଅଟେ । କଚେରି ବାହାର ପିଣ୍ଡାରେ ତିନିଜଣ ପ୍ରଜା ପଟାପଟ୍ ପଟାପଟ୍ ଚାପୁଡ଼ା ବାଡ଼େଇ ହୋଇ ଗଡ଼ୁଥାନ୍ତି । କ୍ଷୁଧା, ଚିନ୍ତା, ମଶା ଏମାନଙ୍କ ସହିତ ନିଦ୍ରାର ସଉଭୁଣୀ ସମ୍ବନ୍ଧ ଥିଲାପରି ଜଣାଯାଏ । ପ୍ରଜା ତିନିଜଣ କରଜା ଧାନ ସକାଶେ ଅଟକ ଅଛନ୍ତି । ଦିନପାକ ଦକ୍ଷିଣ ହସ୍ତର କାର୍ଯ୍ୟ ସଙ୍ଗେ ସମ୍ପର୍କ ନାହିଁ, ତାହା ଉପରେ ମଶା, ଏ ଉପରେ ଚିନ୍ତା, ଆଉ ନିଦ କଥା କଅଁ ପଚାରୁ ?

କଚେରି ପ୍ରସ୍ତ ବିଟି ଭିତରକୁ ଯିବାର ପ୍ରଥମ ପ୍ରସ୍ତରେ ମଙ୍ଗରାଜଙ୍କ ପହଡ଼ଘର । ପ୍ରୟୋଜନ ହେଲେ ଲୋକେ ତାହାକୁ ଗନ୍ତାଘର ବୋଲି ମଧ୍ୟ କହନ୍ତି । ଉଆସର ସବୁ ଘରଠାରୁ ଏ ଘରଟି ଶ୍ରେଷ୍ଠ ହେବାର ଉଚିତ, ମଧ୍ୟ ସେ ବିଷୟରେ ତ୍ରୁଟି ହୋଇନାହିଁ । ଘରଟି ଆଠ, ପାଞ୍ଚ ଶେଣିଆ, ପୂର୍ବ ଦୁଆରି, ସମ୍ମୁଖରେ ଚୌଡ଼ା ପିଣ୍ଡା । ଦୁଆରେ ପଣସକାଠର ଯାଉଁଳ କବାଟ ଲଗିଅଛି, କବାଟରେ ଗୁଣ୍ଡକୋଣିଆ ଛକ ପଡ଼ି ବିଚା, ଛକରେ ଛତିବାଲା ଲୁହାମେଖ ବାଡ଼ିଆ । ବାହାରକୁ କଡ଼ା ଆଉ ଶିକୁଳି ଦୁଇ ଲଗିଅଛି, ଦୁଇଟା ବଡ଼ ବଡ଼ ନଳୀ କୋଲପ ପଡ଼େ । ଘର ପଶ୍ଚିମ ପଟ କାନ୍ଥର ପେଟେ ଉଞ୍ଚରେ ଦେଢ଼ ଗୁଣ୍ଡଖଣ୍ଡେ ଓସାର ଗୋଟାଏ ଗଜଲଗା ଝରକା ଲଗିଅଛି । ମଗୁଣିର ମାସ ଗୁରୁବାରକୁ ଘର ଲିପାପୋଛା ହେଲେ କଦାଚିତ୍ ସେ ଝରକା ଫିଟେ । ଘର ଗୃହ କୋଣ ଘିଟିଘିଟିଆ ଅନ୍ଧାର, ତୁମ୍ଭ ଆମ୍ଭ ପକ୍ଷରେ ଦିନବେଳେ ଆଲୁଅ ଲୋଡ଼ା । ଘର କୋଣ-ମାନଙ୍କରେ ଅସରପା ବୋଲେ ମୁହିଁ, ମୂଷା ବୋଲେ —ମୁହିଁ । ବର୍ଣ୍ଣସାଦୃଶ୍ୟ ହେତୁରୁ ହେଉ ବା ନାମ ସାମଞ୍ଜସ୍ୟ ହେତୁରୁ ହେଉ, ଚମ୍ପା କହେ ଅସରପାଲକ୍ଷ୍ମୀ; ଘରେ ଅସରପା ଥିଲେ ଅପର୍ଣ୍ଣି ଆସେ, ସୁତରାଂ ଅସରପା ବଂଶ କାହାରି ବିନା ବାଧା ବଳାତ୍କାରରେ ପୁତ୍ର ପୌତ୍ରାଦିକ୍ରମେ ଘର କୋଣମାନ ଅଧିକାର କରି ରହି ଅଛନ୍ତି । ଘର ଉତ୍ତରପଟ କାନ୍ଥକୁ ଲଗାଇ ଗୋଟାଏ ଲମ୍ବା ବାଉଁଶ ଘଡ଼ୁଞ୍ଜି ଉପରେ ତିନିଟା ବଡ଼ ବଡ଼ ପୁରୁଣା ବେତ ଆଉଁଶୁର ଥୁଆ । ଘଡ଼ୁଞ୍ଜି ତଳେ, ତକ୍ତପୋଷ ତଳେ, ଘର କୋଣରେ ଗୁଡ଼ ମାଠିଆ ଆମ୍ବୁଲ ହାଣ୍ଡି, କରଞ୍ଜ ତେଲ ଡବା ପୁଞ୍ଜା ତିନି କ ଗୃହ । ଆଉ ମୌଜାମାନଙ୍କରେ ଥିବା ତୋଟାରୁ କରଞ୍ଜ ସବୁ ବାଡ଼ିଆ ହୋଇ ଆସେ । ତେଲି ବେଠିରେ ପେଡ଼ିଦିଏ, ସେହି ତେଲ ସବୁ ଗନ୍ତାଘରେ ସାଇତା ଥାଏ । ବରଷକ ତେଲ କଣାରୁ ଖଲାସ—ବରଞ୍ଚ ବଳିପଡ଼େ । ଦକ୍ଷିଣପଟ କାନ୍ଥ ପାଖକୁ ଦୁଇଟା ବଡ଼ ବଡ଼ ଆମ୍ବକାଠର ସିନ୍ଦୁକ । ଆଉ ତାକୁ ଲଗାଇ ଗୋଟାଏ ଶାଳକାଠର ସିନ୍ଦୁକ । ଏଟା ଲକ୍ଷ୍ମୀ ସିନ୍ଦୁକ, ପ୍ରତିଦିନ ଚମ୍ପା ସଞ୍ଜ

ହୁଏ, ଗୁରୁବାରକୁ ଗୁରୁବାର ସିନ୍ଦୂର ଚନ୍ଦନ ଦେଇ ପୂଜା ହୁଏ, ଅରୁଆ ଚାଉଳ ଗୁଡ଼ ଭୋଗ ଲାଗେ । ଓଳିରେ ତିନି ଚାରିଟା ଶିକାରେ ଘିଅମାଠିଆ ଝୁଲୁଅଛି । ଗୋଠରୁ କାଠଘିଅ ଆସି ସେଥିରେ ଜମା ହୁଏ । ସିକା ଆଉ ଓଳିମାନଙ୍କରେ କଳା କଳା ପାଲକ-ଥୁପନା ପରି ବୁଢ଼ିଆଣି ବସା ମେଞ୍ଚା ମେଞ୍ଚା ହୋଇ ଝୁଲୁଅଛି । ପଶ୍ଚିମପଟ କାନ୍ଥ ପାଖକୁ ଉତ୍ତର ଦକ୍ଷିଣ ହୋଇ ମଙ୍ଗରାଜଙ୍କ ବଡ଼ ତକ୍ତପୋଷ । ଦକ୍ଷିଣବାଗ ମୁଣ୍ଡ ପାଖକୁ ଭରା ଗୋଟାଏ ବଡ଼ ମାଣ୍ଡି, ହେଁସ ଉପରେ ମୋଟା ଦଶିଆ ଲୁଗାର ଦୋହରା ବିଛଣା । ଚଦରକୁ ଦେଖିଲେ ହଠାତ୍ ବୁଟାଦାର ଛିଟ ଲୁଗା ବୋଲି ଭ୍ରମ ଜନ୍ମିପାରେ । ମାତ୍ର ଆମ୍ଭେମାନେ ଭଲ କରି ଦେଖିଅଛୁଁ, ରକ୍ତକୃଷ୍ଣାଭ ଚିହ୍ନଗୁଡ଼ିକ ମୃତ ଓଡ଼ଶର ଶରୀରନିଃସୃତ ଶୁଷ୍କ ଶୋଣିତବିନ୍ଦୁ ଅଟେ ।

ଆଜି ଏହି ଅଧରାତି ସମୟରେ ସେହି ତକ୍ତପୋଷ ଉପରେ ଗୋଟିଏ ପୁରୁଷ ଏବଂ ତଳେ ଗୋଟିଏ ସ୍ତ୍ରୀ ବସି ଭାରି କଥାବାର୍ତ୍ତାରେ ଲାଗି ଯାଇଛନ୍ତି । ପାଠକମାନଙ୍କୁ ଚିହ୍ନାଇ ଦେବାକୁ ହେବନାହିଁ । ଏହି ସ୍ତ୍ରୀ ପୁରୁଷ ଦୁଇଜଣ ଆମ୍ଭମାନଙ୍କର ଚମ୍ପା ଆଉ ଖୋଦ ରାମଚନ୍ଦ୍ର ମଙ୍ଗରାଜ । ଚମ୍ପା ତକ୍ତପୋଷ ଉପରେ ଦୁଇ ହାତ ପକାଇ ଭିଡ଼ି ବସିଅଛି, ମଙ୍ଗରାଜ ତାହା ଆଡ଼କୁ ଈଷତ୍ ଝୁଙ୍କି ପଡ଼ିଅଛନ୍ତି । ତକ୍ତପୋଷଠାରୁ ତିନି ହାତ ଦୂରରେ ପିତଳର ଗୋଟିଏ ଦୀପରୁଖା ଥୁଆ, ତାହା ଉପରେ ମାଟି ବଇଠାଟିଏ ମିଞ୍ଜି ମିଞ୍ଜି ହୋଇ ଜଳୁଅଛି । ଦୀପରୁଖାଟି ସର୍ବାଙ୍ଗ ତେଲ କାଣ୍ଟିରେ ଲିପ୍ତ । ରୁଖାତଳ ଥାଳିଆରେ ବଳିତା ଗୁଳମିଶା ମାଳିଆ ତେଲ ପଟଲ ହେବ ଜମା ଅଛି ।

ଚମ୍ପା ଆଉ ମଙ୍ଗରାଜେ ଅନେକ ରାତି ପର୍ଯ୍ୟନ୍ତ କି କଥାବାର୍ତ୍ତା କି ମନ୍ତ୍ରଣା କଲେ ସବୁ କଥାଗୁଡ଼ିକ ଶୁଣିବାକୁ ଆପଣ ସୁଖ ପାଇବେ ନାହିଁ । ଆମ୍ଭମାନଙ୍କର ମଧ୍ୟ ଅଧିକ ଲେଖିବା ଅଭ୍ୟାସର ବିରୁଦ୍ଧ, ଅଥଚ ଏହି କଥାଗୁଡ଼ିକ ସତ୍ୟଘଟଣା ବୋଲି, ଗାଲ୍ପଗଲ୍ପ ବୋଲି, ଉପନ୍ୟାସ ବୋଲି, ରୂପନ୍ୟାସ ବୋଲି ଏଥିର ପ୍ରଧାନ ନାୟକ ନାୟିକାମାନଙ୍କର କଥା ଛାଡ଼ିଲେ କର୍ମ ଅଚଳ । ସୁତରାଂ ଚାରିଆଡ଼କୁ ଚାହିଁ ପାଠ ଲଗାଇବା ସକାଶେ 'ଢଡ଼ରୁ ତେଲ ନ ସରୁ, ପୁଅ ମୁଣ୍ଡ ନୁଖୁରୁ ନ ରହୁ' ଭଳିଆ କରି ଦେବାକୁ ହେଲା ।

ଚମ୍ପା କହିଲା, "ବାପର ଠିକ୍ ନାହିଁ, ମା'ର ଠିକ୍ ନାହିଁ, ଦଗାବାଜି କରି ପଠାଣ ଟୋକାଠାରୁ ଜମିଦାରୀ ଆଣି ଗାଁରେ ବୋଲାଉଛି କି ନା ଜମିଦାର । ହେଲୁ ହେଲୁ ଜମିଦାର, ତୋ ଘରକୁ । ଗୋରୁ ଛାଡ଼ିଦେଇ ଫନ୍ଦା ଉଜାଡ଼, ଫେର କନା—କହିଲେ ଗାଳି ? ପଳାଇ ଯାଇ ମାଇକିନିଆ ଭିତରେ ଲୁଚିଲା, ଚଢ଼ିଥାଆନ୍ତା ତ ହାତରେ ! ସାଆନ୍ତେ ଜଣେ ନୁହେଁ; ଦୁଇ ଜଣ ନୁହେଁ, ଗାଁ ଲୋକଗୁଡ଼ାକ ଜମା ହୋଇ ଥାଆନ୍ତି, ଦୋକାନ ପିଣ୍ଡାରେ ବସି ପାଟିକରି ଗାଳି ଦେଉଥାଏ । ମୁଁ ପାନ କିଣିବି କଣ, ଦୋକାନ ଦୁଆର ପାଖରୁ ପଳାଇ ଆସିଲି । ଅଲପାଇସିଆ, ଖଣ୍ଡିଆ, ନଈଶୁଆ ! ସାଆନ୍ତେ, ମୁଁ କି ଛାଡ଼ିବା ଲୋକ ? ଆଉ କେହି ହୋଇଥିଲେ ତା ନାକ କାମୁଡ଼ି ପକାଇ ଥାଆନ୍ତା ପରା ? ମାତ୍ର ମଣିଷଟା ଅସୁର ପରି ଦେଖିଆ । ତା ବାଉଁଶ ଠେଙ୍ଗା ଦେଖି ମୋ ପିଲୋହି ପାଣି ହୋଇଗଲା । ତୁମେ ଏହାର ବାଟ କର, ନୋହିଲେ ମୁଣ୍ଡ ଫଟେଇ ଦେବି, ବିଷ ଖାଇ ମରିବି, ପାଣିରେ ବୁଡ଼ି ମରିବି ।" ଚମ୍ପା ଏହା କହି ଧକେଇ ଧକେଇ କାନ୍ଦିବାକୁ ଲାଗିଲା ।

ମଙ୍ଗରାଜେ — ତୁନି ହ ଚମ୍ପା, ତୁନି ହ । ସେହି ଠେଙ୍ଗାକୁ ତ ମୋର ଡର । ଚାରିଟାକୁ ଚାରିଟା ଅସୁର ପରି ନିହାତି ମୂର୍ଖ । କଥା ପଦକେ ଠେଙ୍ଗା କାଢ଼ି ବସିବେ । ଆଉ ସେ କଥା ତ କେତେ ଦିନୁ କରାଇ ଦେଇ ସାରନ୍ତିଣି । ଆମର ଗୋଟିଏ ବାଲେଇ ପିଲା ସେ

ଗାଁକୁ ଗଲେ ପଛକୁ ଚାହିଁଥିବେ । ଗୋବର ଏତେ ଟୋକା, ଏତେ ହୁସିଆର, ତା ହାତରେ ତ କିଛି ହେଲା ନାହିଁ । ସେ କଣ କରିବ ? ଦିନ ରାତି ଲୋକ ଜଗୁଆଳ ।

ଚମ୍ପା—ନା ନା ସାଆନ୍ତେ, ସେ କଥା ହେବ ନାହିଁ, ତୁମେ ଏହାର ବାଟ କର, ନୋହିଲେ ମୁଁ ତ ଗାଁ ମାଇକିନିଆଙ୍କ ଆଗରେ ମୁହଁ ଦେଖାଇ ପାରିବି ନାହିଁ ? ସେମାନେ କି ଏଡ଼େ ପାରୁଆ ହେଲେ, ତୁମକୁ ଜିଣିଲେ ?

ମଙ୍ଗରାଜ—ଦେଖ ଚମ୍ପା, ଶାସ୍ତ୍ରରେ ଅଛି, 'ଛଳେ ବଳେ କଉଶଳେ, ଶତ୍ରୁକୁ ସାଧିବ ହେଳେ ।' ମୁଁ ତ ପାରିଲି ନାହିଁ, ତୁ ଏଥିର କିଛି ଫିକର କାଢ଼, ତୁ କରିପାରିଲେ ସବୁ ହେବ । ଦେଖ, ମୁଁ ତିନି ବରଷ କାଳ ଲାଗି ଲାଗି ସେ ଚାନ୍ଦୀକୁ ପାରି ନ ଥିଲି, ତୁ ଯେପରି ହାତ ଦେଲୁ କାମ ଫତେ ।

ଚମ୍ପା ବଇଠା ତେଜି ଦେଇ ଖୁବ୍ ଗୋଟାଏ ହସିଲା, କହିଲା, "ଦେଖ ସାଆନ୍ତେ, ପ୍ରଥମେ ମନରେ କରିଥିଲି ପାରିବି ନାହିଁ, ବୁଦ୍ଧି ଖରଚ କଲେ କଣ ନ ହୁଏ ? ସେ ଛ ମାଣ ଆଠଗୁଣ୍ଠ ଚକକୁ କାଲି ହଳ ଯିବ ତ ?"

ମଙ୍ଗରାଜ—ମୁଁ ହଳିଆମାନଙ୍କୁ କହି ଦେଇଛି, କାଲି ସକାଳେ ହଳ ନେବେ, କଡ଼ାଣ ଦୋହଡ଼ ସବୁ ସରିବ । ମୁଁ ମଧ୍ୟ ବିଲକୁ ଯିବି ।

ଚମ୍ପା—ସେମାନଙ୍କ ଘର ଭାଙ୍ଗିଦେଇ ଭଲ କଲ । ଘରେ ଥିଲେ କେତେବେଳେ ଜମି ସକାଶେ ଲଗାନ୍ତେ ।

ମଙ୍ଗରାଜ—ଜମି ଛ ମାସ ମିଆଦରେ କଟବନ୍ଧକ ଥିଲା, ମିଆଦ ଗଲାରୁ ଜମି ପାଇଲୁ, ମକଦ୍ଦମା ଖର୍ଚ୍ଚ ସକାଶେ ଘର ନିଲାମ ହେଲା, ମୁଁ କିଣିନେଇ ଭାଙ୍ଗି ଦେଇଛି ।

ଚମ୍ପା—ଜମି ହେଉ, ଘର ହେଉ, ଯାହା ହେଉ, ସେହି ଗାଈଟି ଲାଗି ମୁଁ ଏତେ କଥା କଲି । ଗାଈ ତ ନୁହେଁ, ଗୋଟିଏ ଗୁଣ୍ଡୁଣୀ ହାଣ୍ଡି । ଆଜି କଚେରି ପିଣ୍ଡାରେ ବାନ୍ଧି ଆସିଅଛି, କାଲିଠାରୁ ଉଆସ ଭିତରେ ବାନ୍ଧିବି ସେ ଦୁଇଟା କୁଆଡ଼େ ଗଲେ ?

ମଙ୍ଗରାଜ—କେଉଁ ଦୁଇଟା ? ଭଗିଆ, ସାରିଆ ? ବାବନାଭୂତ ପରି ସ୍ତ୍ରୀ ଓଲି ତା ଓଳରେ ପଶୁଛନ୍ତି ।

ଚମ୍ପା—ସେଦିନ ସକାଳେ ସାରିଆ ମଙ୍ଗଳା ପାଖରେ କାନ୍ଦି କାନ୍ଦି ମୁଣ୍ଡ କୋଡ଼ ହେଉଥାଏ, ମତେ ଦେଖି ଆହୁରି କାନ୍ଦିଲା, କଣ କହିବ ବୋଲି ମୋ ପାଖକୁ ଆସୁଥିଲା, ମୁଁ ମୁହଁ ବୁଲାଇ ଦେଇ ଚାଲି ଆସିଲି ।

ତାହା ବାଦ ଚମ୍ପା ଓ ମଙ୍ଗରାଜଙ୍କ ମଧ୍ୟରେ ଅନେକ ରାତି ପର୍ଯ୍ୟନ୍ତ କଥାବାର୍ତ୍ତା ହେଲା, ଶେଷରେ ଏମନ୍ତ ସାବଧାନ ଏମନ୍ତ ଗୁପ୍ତଭାବରେ ବସି ମନ୍ତ୍ରଣା କଲେ ଯେ, ଆମ୍ଭେମାନେ କୌଣସିକ୍ରମେ ସେଥିର ସନ୍ଧାନ ପାଇ ପାରିଲୁଁ ନାହିଁ । ପରସ୍ପର ମୁହଁକୁ ଚାହିଁ ବସିଛନ୍ତି । ଦୁହେଁ କଥାରେ ମଗ୍ନ । ଏମନ୍ତ ସମୟରେ ସେହି ଦୁହିଁଙ୍କ ମଧ୍ୟରେ ଗୋଟିଏ ସ୍ତ୍ରୀମୂର୍ତ୍ତିର ଛାୟା ପଡ଼ିଲା । ଦୁହେଁ ଚମକି ପଡ଼ିଲା ପରି ସେହି ମୂର୍ତ୍ତିକୁ ଅନାଇ ରହିଲେ । ହଠାତ୍ କଥାବାର୍ତ୍ତା ବନ୍ଦ । ଅ.ଗନ୍ତୁକା ଫଁ କରି ଗୋଟିଏ ନିଶ୍ୱାସ ପକାଇଲେ । ମନରେ ଦାରୁଣ କଷ୍ଟ ଜାତ ହେଲେ ଯେଉଁ ନିଶ୍ୱାସ ପଡ଼େ, ଏହା ସେହିପରି ତତଲା ନିଶ୍ୱାସ । ସମସ୍ତେ ନୀରବ ନିଶ୍ଚଳ କାଷ୍ଠପ୍ରତିମା ପରି ସ୍ପନ୍ଦହୀନ, ଘର ନିସ୍ତବ୍ଧ ।

କିଛିକ୍ଷଣ ଉତ୍ତାରେ ମଙ୍ଗରାଜ ସେହି ସ୍ତ୍ରୀମୂର୍ତ୍ତିଟିକୁ ଅନାଇ ପଚାରିଲେ, "କଣ ?"

ସମସ୍ତେ ନିରୁତ୍ତର ।

ପୁନର୍ବାର ମଙ୍ଗରାଜେ ପଚାରିଲେ, "କଣ ?"

କିଛି ଉତ୍ତର ନାହିଁ, ପୁନର୍ବାର ପୂର୍ବବତ୍ ଦୀର୍ଘ ନିଶ୍ୱାସ ।

ମଙ୍ଗରାଜେ କିଞ୍ଚିତ ବିରକ୍ତ ହୋଇ ପୂର୍ବଠାରୁ ଉଚ୍ଚ ସ୍ୱରରେ ପଚାରିଲେ, "କଣ ? କିଛି କହୁ ନାହଁ କିଆଁ ?

ସାଆନ୍ତାଣୀ—( ଆଗନ୍ତୁକା ମଙ୍ଗରାଜଙ୍କ ଭାର୍ଯ୍ୟା ) ଅତି ଧୀରେ, ଅତି ବିନୟରେ କହିଲେ, "ମୁଁ କହୁଚି ରାତି ହେଲାଣି, ଶୋଇପଡ଼, ଆଜି ସେ କଥାଗୁଡ଼ା ପାଞ୍ଚ ନାହିଁ ।"

ଚମ୍ପା ଅବଜ୍ଞା କରି ଗମ୍ଭୀର ସ୍ୱରରେ କହିଲା 'ହୁଁ' ।

ମଙ୍ଗରାଜ ଆଚ୍ଛା ମୁଁ ଯାଉଛି, ତୁମ୍ଭେ ବାହାରକୁ ଯାଅ ।

ଚମ୍ପାର ଅବଜ୍ଞାସୂଚକ 'ହୁ' ଶବ୍ଦ ସାଆନ୍ତାଣୀଙ୍କ କଲିଜାରେ ବର୍ଚ୍ଛାପରି ବାଜିଥିଲା, ତାହାବାଦ "ଆଚ୍ଛା ତୁମ୍ଭେ ବାହାରକୁ ଯାଅ" କଥାଟା ତାଙ୍କୁରେ ସହସ୍ର ବିଚ୍ଛୁ କାମୁଡ଼ିଆ ପରି ଜଣାଗଲା । ଚମ୍ପା ରହିବ ଭିତରେ, ମୁଁ ଯିବି ବାହାରକୁ ? ଯେସବୁ ଘଟନାରେ ପୁରୁଷଙ୍କ କଠିନ ମନ ଭାଙ୍ଗି ପଡ଼େ, କୋମଳମନା ସହଜରେ ସହି ଯାଆନ୍ତି । ସହିଷ୍ଣୁତା ଗୁଣ ସ୍ତ୍ରୀମାନଙ୍କର ପୁରୁଷ-ମାନଙ୍କଠାରୁ ଢେର ବେଶି, ସେମାନେ ଢେର ସହି ପାରନ୍ତି, ମାତ୍ର ସ୍ୱାମୀର ଅନାଦର ଏବଂ ଅବିଶ୍ୱାସ ସଞ୍ଚି ସ୍ତ୍ରୀମାନଙ୍କ ପକ୍ଷରେ ଅସହ୍ୟ । ପୁଣି ସ୍ୱାମୀ ସାକ୍ଷାତରେ ଦାସୀକୃତ ଅବଜ୍ଞା ମରଣାଧିକ କଷ୍ଟକର । ତେବେ ଉପସ୍ଥିତ ଘଟନା ନୂତନ ନୁହେଁ, ଚିରକାଳ ସହି ସହି ଅଭ୍ୟାସ ପଡ଼ିଯାଇଅଛି, ତଥାପି ସାଆନ୍ତାଣୀଙ୍କ କଣ୍ଠରୋଧ ହୋଇଗଲା, ମୁଣ୍ଡ ବୁଲାଇଲା, ସମସ୍ତ ଅଙ୍ଗ ଅବଶପ୍ରାପ୍ତ ହୋଇଗଲା । କୌଣସିରୂପେ ସମ୍ଭାଳି ହୋଇ ଧୀରେ ଧୀରେ ଘରୁ ବାହାରିଆସି ପିଣ୍ଡାରେ ବାଡ଼କୁ ଆଉଜି ଲଟ୍‌କରି ବସିଗଲେ । ଆମ୍ଭେମାନେ ସମ୍ବାଦ ପାଇଅଛୁଁ, ସେହି ରାତିଠାରୁ ସାଆନ୍ତାଣୀଙ୍କ ମୁଖରୁ କେହି କିଛି କଥା ଶୁଣି ନାହିଁ । ମଧ୍ୟ ମନ ଲୁଚାଇବାକୁ ବିଶେଷ ଚେଷ୍ଟା କରୁଥିଲେ ସୁଦ୍ଧା ସର୍ବଦା ତାହାଙ୍କ ଆଖିରୁ ପାଣି ବହୁଥିବାର ଦେଖା ଯାଉଅଛି ।

ଚମ୍ପା—ଧଡ଼୍ କରି କବାଟଟା ଆଉଜାଇ ଦେଇ ଆପଣା ସ୍ଥାନରେ ବସି କହିଲା, "ମୋତେ କେହି ଗାଳି ଦେଇ ଗୁଞ୍ଜୁଣି ମାରୁ ମୋତେ କାଟିବ ନାହିଁ, ମାତ୍ର ତୁମକୁ ପଦେ କେହି କହିଲେ ମୋ ହୃଦ ହାଣି ହୋଇଯାଏ । ସାଆନ୍ତାଣୀଙ୍କ କଥା ଶୁଣିଲ ତ ? ଆଉ କେହି ହେଲେ ମୁହଁ ଗୃହାନ୍ତା ନାହିଁ ପରା ? ସାରିଆ କଥାବେଳେ ତ ସବୁ ବୁଝି ନେଇଅଛ । ତୁମକୁ ଫେର କିଏ ବୁଝାଇଦେବ ? ବରଷକ ସାରା ଲାଗିଲା, ମୁଠା ମୁଠା ଟଙ୍କା ଘରୁ ବାହାରି ଗଲା, କଟକ ମାମଲା ଲାଗିଲା, ବଗିଚାର ଦଶ ଶଗଡ଼ କି କୋଡ଼ିଏ ଶଗଡ଼ ପଥର ମଙ୍ଗଳା ମାଆଙ୍କୁ ବୋହି ଦେଲ; ଶେଷରେ ସା'ନ୍ତାଣୀ କହନ୍ତି କି ନା, ସାରିଆର ଛ ମାଣ ଆଠ ଗୁଣ୍ଠ ଜମି ଛାଡ଼ି ଦିଅ, କି ନା ତାହା ଘର ଭାଙ୍ଗ ନାହିଁ ।" ଏହା କହି ଚମ୍ପା ଠୋ ଠୋ କରି ହସିଲା ।

ଘୋର ନୈଶ ନିସ୍ତବ୍ଧତା ଭେଦ କରି ସେହି ପୈଶାଚିକ ବିକଟହାସ୍ୟ ସା'ନ୍ତାଣୀଙ୍କ କର୍ଣ୍ଣପଟହ ଭେଦ କରିଥିବ । ମାତ୍ର ଚେତନବେଳେ ତାହାଙ୍କର ସେଥିର ଦାରୁଣତ୍ୱ ଅନୁଭବ କରିବାର ଶକ୍ତି ନ ଥିଲା ।

ମଙ୍ଗରାଜ ଚମ୍ପା ମଧ୍ୟରେ ଯେଉଁ କଥା ଚାଲିଲା ଅନ୍ୟଙ୍କୁ ଅଗୋଚର, କେବଳ ଚମ୍ପା ମୁଖର କଥା ଏତିକି ଶୁଣାଅଛି, "ତୁମେ ତ ମୋତେ ଖଣ୍ଡେ ଡୋଲି, ଗୃହଟା ଭାର ସଜାଡ଼ି ଦିଅ, ଦେଖିବ ମୁଁ ପଦ୍ଧ ନ କରି ପାରେ, ନାକ କାଟି ଦେବ ।"

———

-୧୫-

## ବାଘସିଂହ ବଂଶ

ପ୍ରସିଦ୍ଧ ଆଇନ ଆକବରୀ ଲେଖକ ଆବୁଲ ଫାଜଲ ବୋଲନ୍ତି, 'ଓଡ଼ିଶାରେ ପ୍ରକୃତ ଭୂମ୍ୟଧିକାରୀ ଖଣ୍ଡାଏତମାନେ ଥିଲେ ।' ପ୍ରକୃତରେ ଗଜପତି ଦରବାରରେ ଖଣ୍ଡା ମୁଠିଠାରୁ ଲେଖନୀମୁନ ପର୍ଯ୍ୟନ୍ତ ସମସ୍ତ ରାଜକାର୍ଯ୍ୟ ସେମାନଙ୍କ ହସ୍ତଗତ ଥିଲା । ବେତନ ନିମନ୍ତେ ରାଜ୍ୟାଗାରୁ ନଗଦ ଟଙ୍କା ପାଉ ନ ଥିଲେ, ଓଡ଼ିଶାର ଅଧିକାଂଶ ଭୂମିଖଣ୍ଡ ଜାଗିର ସ୍ୱରୂପ ପୁରୁଷାନୁକ୍ରମେ ବାଣ୍ଟି ଖାଉଥିଲେ । ଖଣ୍ଡାଏତମାନଙ୍କ ବାହୁବଳରେ ଓଡ଼ିଶା ବହୁକାଳ ପର୍ଯ୍ୟନ୍ତ ସ୍ୱାଧୀନତା ରକ୍ଷା କରିବାକୁ ସକ୍ଷମ ହୋଇଥିଲା । ପଠାଣମାନେ ତିନି ବର୍ଷରୁ ଅଧିକ କାଳ ବଙ୍ଗଳା ଦେଶରୁ ଡେଇଁ ଡେଇଁ ମଧ୍ୟ ସୁବର୍ଣ୍ଣରେଖା ପାର ହୋଇପାରି ନ ଥିଲେ । ପାଇକମାନେ ସର୍ବଦା ରାଜ-ଦରବାରରେ ଉପସ୍ଥିତ ନ ଥାନ୍ତି । ଦଳପତିମାନେ ଆପଣା ଆପଣା ଅଧୀନସ୍ଥ ପାଇକମାନଙ୍କୁ ନେଇ ଗୋଟିଏ ଗୋଟିଏ ଚକରେ ବାସ କରୁଥିଲେ । ଦଳପତିମାନଙ୍କ ବୈଠକ ସ୍ଥାନର ନାମ ଚୌପାଢ଼ୀ । ସେ ସ୍ଥାନରେ ମାଲବନ୍ଧାଣ, ଫରିଖେଳ, କାଣ୍ଡବନ୍ଧା ଏବଂ ଗୁଳି ମାରିବା ଏହିପରି ପ୍ରକାର ବିଦ୍ୟାର ଆଲୋଚନା ହେଉଥିବା ଯୋଗୁଁ ତାହା ଚୌପାଢ଼ୀ ନାମରେ କଥିତ ହେଉଥିଲା । ଗଜପତି ବଂଶର ପତନ ଉତ୍ତାରେ ଟୋଡ଼ରମଲ ବଡ଼ ବଡ଼ ଚୌପାଢ଼ୀକୁ କିଲ୍ଲା ନାମରେ ବନ୍ଦୋବସ୍ତ କରି ଅଛନ୍ତି । ଓଡ଼ିଶାର ଅନେକ ସ୍ଥାନରେ ଆଜି ପର୍ଯ୍ୟନ୍ତ ନାମମାତ୍ର କ୍ଷୁଦ୍ର କ୍ଷୁଦ୍ର ଚୌପାଢ଼ୀ ବିଦ୍ୟମାନ ଥିବାର ଦେଖାଯାଏ ଏବଂ ପ୍ରାଚୀନ ଦଳପତିମାନଙ୍କର ଅଯୋଗ୍ୟ ବଂଶଧରରେ ମଧ୍ୟ ଅଭାବ ନାହିଁ ।

ଆମ୍ଭମାନଙ୍କର ବାଘସିଂହ ବଂଶ ପୂର୍ବୋକ୍ତ ଦଳପତି-ମାନଙ୍କର ଜଣେ ବଂଶଧର ଅଟନ୍ତି । ଏମାନଙ୍କର ସଂଜ୍ଞା ମଲ୍ଲ, ଜ୍ୟେଷ୍ଠପୁତ୍ରର ଉପାଧି ବାଘସିଂହ, ଜ୍ୟେଷ୍ଠପୁତ୍ର ଜାଗିରର ଉତ୍ତରାଧିକାରୀ । ଅନ୍ୟ ପୁତ୍ରମାନେ ଖଞ୍ଜିଆ ପାଆନ୍ତି । 'ପଦା ଭୂଇଁରେ ଗର ଦାରୁ' । ବାଘସିଂହ ବଂଶ କ୍ଷୁଦ୍ର ଜାଗିରଦାର ଥିଲେ ମଧ୍ୟ ମଫସଲରେ ନାମଡାକ ଥିଲା । ରତନପୁର ମୌଜାରେ ଚୌପାଢ଼ୀ, ସେଠା ନିକଟର ଖଣ୍ଡାଏତ ମାହାଲ । ତାକୁ ଛାଡ଼ି ତାଲୁକେ ଫତେପୁର ସରଷଣ୍ଡ ଏବଂ କେତେକ ଖଣ୍ଡ ବାଜେ ରପୋର୍ଟ ଜମିଦାରୀ ଥିଲା । ନଟବର ଘନଶ୍ୟାମ ବାଘସିଂହ ଜମିଦାରୀ ସବୁ ଉଡ଼ାଇ ଦେଇ ଯାଇଛନ୍ତି । ଲୋକଟା ବଡ଼ ସାହାଖର୍ଚ୍ଚୀ ଥିଲେ । ଖର୍ଚ୍ଚ ବେଳେ ଆଗ ପଛ ବିଚାର ଥାଏ ନାହିଁ । ଆଜି ପାଞ୍ଚ ବୋଇଲେ ନାହିଁ, ସାତ ବୋଇଲେ ନାହିଁ, ହାତରେ ପଡ଼ିଲା ଦେ ଖରଚ । ମୁହଁ ହରାଇ କିଏ ଟଙ୍କାଏ ମାଗିଦେଲେ ନା ପଦ ଶୁଣିବ ନାହିଁ । ଯାତ, ଭିଖାରୀ ପାଇଁ ଦ୍ୱାର ମେଲା । ଘଡ଼ାହାଣ୍ଡି ବସାଇ ଠୋକାଇ ଦେବା ତାଙ୍କ ଆଗରେ ଛିଡ଼ା ହେବାକୁ ଲୋକମାନଙ୍କର ଭରସା ଘଟୁଥିଲା । ଖାଇବା ଖୁଆଇବାକୁ ଷଣ୍ଢଟାଏ । ଗାଁ ଲୋକେ କହନ୍ତି, ବାଘସିଂହ ଆଗରେ ବସି ଯାହାକୁ ଥରେ ସରୁ ଚକୁଳି, ନଡ଼ିଆପୁର ମଣ୍ଡା, ପାଚିଲା କ୍ଷୀରୀ ଖୁଆଇଛନ୍ତି, ବଞ୍ଚିଥିବାଯାଏ ତାହା ମନରୁ ଯିବ ନାହିଁ । ନଟବର ଘନଶ୍ୟାମଙ୍କ ଦେହକରେ ଋଣ ଥିଲା, ତାଙ୍କ ପଛେ ପଛେ ଜମିଦାରୀସବୁ ଯାଇଅଛି, ଥିବା ମଧ୍ୟରେ ଖଣ୍ଡାଏତ ମାହାଲ । ନଟବର ଘନଶ୍ୟାମ ବାଘସିଂହଙ୍କର ଚାରି ପୁଅ । ଜ୍ୟେଷ୍ଠ ଭୀମସେନ ବାଘସିଂହ, ଅନ୍ୟ ତିନି ପୁତ୍ର ପ୍ରହ୍ଲାଦ ମଲ୍ଲ, କୁମ୍ଭକର୍ଣ୍ଣ ମଲ୍ଲ; ବଳରାମ ମଲ୍ଲ । ପୁଅମାନେ ବାପ ପରି ଉଡ଼ାବାଜ ନୁହନ୍ତି, ଘରଆଡ଼କୁ ନଜର ରଖି ଚାଲନ୍ତି । ପୂର୍ବ ସମ୍ପତ୍ତି ନାହିଁ, ଏକରକମ ଦୁଃଖେ ରାମ ସୁଖେ ରାମ ଚଳିଯାଏ । ପାଟ ଗଲେ ପାଟକନା, ପୁରୁଣା ଘର ବୋଲି ଲୋକେ ମାନନ୍ତି, ଭୟ ଭକ୍ତି କରନ୍ତି । ରତନପୁର ମୌଜାରେ ବାଘସିଂହ ଘର ଛାଡ଼ି ଗଉଡ଼, ଭଣ୍ଡାରୀ, ବାଡ଼ୀ, ଗୁଡ଼ିଆ, ମୂଅଭାଗ୍ୟା ଅଠର ଘର । ଏମାନେ ବାଘସିଂହ ପୂର୍ବବଂଶ ଦିଆକ ଜାଗିର ପୁରୁଷାନୁକ୍ରମେ ଭୋଗକରି ଆସୁଅଛନ୍ତି । ଦରକାରବେଳେ

ବାଢସିଂହ ଘରେ ବେଠ କରନ୍ତି । ପୁରୋହିତ ଘର ମଧ୍ୟ ଏହି ଗ୍ରାମରେ । ସେମାନଙ୍କୁ ଗୁଡ଼ି ତିନି ଆଠ ଘର, ପର୍ବପର୍ବାଣିରେ ବାଜା ବଜାଇବା ସକାଶେ ଏମାନଙ୍କର ଜାଗୀରି ଅଛି । ବାଢସିଂହ ଘରେ ପହରା ଦେବା ଏମାନଙ୍କର ଆଉ ଗୋଟିଏ କାର୍ଯ୍ୟ । ଆଜକୁ ତିନି ବରଷ ହେଲା ନାନା କାରଣରୁ ମଙ୍ଗରାଜଙ୍କ ସହିତ ବାଢସିଂହ ବଂଶର ଭାରି କଳି ଲାଗି ଅଛି । ମଙ୍ଗରାଜ ଖୁବ୍ ବୁଦ୍ଧିମାନ, ମାଲି ମାମଲାରେ ଖୁବ୍ ଜାହାଁବାଜ; କିନ୍ତୁ ଠେଙ୍ଗା ନାମ ଶୁଣିଲେ ଡରି ବାହାରନ୍ତି ନାହିଁ । ଏଣେ ବାଢସିଂହ ବଂଶ ବୋଲନ୍ତି, “ଠେଙ୍ଗା ସର୍ବାର୍ଥ ସାଧିକା ।” ବିଶେଷରେ ତିଅରମାନଙ୍କ ଭୟରେ ମଙ୍ଗରାଜଙ୍କ ଲୋକେ ରତନପୁର ପାଖ ପଶି ପାରନ୍ତି ନାହିଁ; କିନ୍ତୁ ତିଅରମାନେ ବାଡ଼ି ମଧ୍ୟରେ ଗୈରିମାଲ ପୋତି ରଖିଥିବା ଅପରାଧରେ ଜେଲ ଯାଇଅଛନ୍ତି । ଲୋକେ ବୋଲନ୍ତି, ତିଅରମାନେ କୌଣସି ପୁରୁଷରେ ଗୈରି ବିଦ୍ୟା ଜାଣନ୍ତି ନାହିଁ । ମଙ୍ଗରାଜଙ୍କର ଏଥିରେ ଦୁଇ ଥଳୀ ଟଙ୍କା ଖରଚ । ମଙ୍ଗରାଜଙ୍କର ଉଦୁଆଁ ଗୋରୁ ରତନପୁର ମୌଜାର ଫସଲ ଉଜାଡ଼ କରିବାରୁ ସେଦିନ ବଳରାମ ମଲ୍ଲି ଗୋବିନ୍ଦପୁର ମୌଜା ଦୋକାନ ପିଣ୍ଡାରେ ବସି ମଙ୍ଗରାଜଙ୍କୁ ଆଚ୍ଛା ଦୁଇପଦ ଶୁଣାଇ ଦେଲେ । ମଙ୍ଗରାଜେ ପାଟି ଫିଟାଇ ପାରିଲେ ନାହିଁ । ଗୋବିନ୍ଦପୁରଠାରୁ ରତନପୁର ଦୁଇକୋଶ ଛଡ଼ା; ମାତ୍ର ଦୁଇ ମୌଜାର ବିଲ ଲଗାଲଗି । ମଙ୍ଗରାଜଙ୍କ ଗୋରୁ ରତନପୁର ମୌଜା ଉଜାଡ଼ କରୁଥିବାର ସର୍ବଦା ଶୁଣାଯାଏ ।

---

## -୧୭-

## ଚାଙ୍ଗିମାଉସୀ

ଆଜ ସ୍ନାନପୂର୍ଣ୍ଣିମା, ଜ୍ୟେଷ୍ଠମାସିଆ ଦିନ, ଭାରି ଖରା, ମହାପ୍ରଭୁ ଅଣସରକୁ ଯାଉଛନ୍ତି, ଭାରି ଗୁଳୁଗୁଳି । ଆଜକୁ ଅଢ଼େଇମାସ ହେଲା ଟୋପାଏ ପାଣି ଦେଖିବାକୁ ନାହିଁ । ପବନ ଗୁମ୍‌ସୁମ୍ କରି ରହିଅଛି, ଖୁଣ୍ଟା ଗଛଗୁଡ଼ାକ ଜଗନ୍ନାଥ ମହାପ୍ରଭୁଙ୍କ ଆଗରେ ଗରୁଡ଼ଖମ୍ବ ପରି ଛିଡ଼ା ହୋଇଅଛନ୍ତି । ଆଉ ଗଛ ଥାଉ, ଅଶ୍ୱତ୍ଥ ପତ୍ର ଗୋଟିଏ ମଧ୍ୟ ଖସ୍ କରିବାକୁ ନାହିଁ । ଦାଣ୍ଡ ବାଲିଗୁଡ଼ାକରେ ମୁଠାଏ ଧାନ ପକାଇଦେଲେ ଚଡ଼ଚଡ଼ କରି ଖଇ ଫୁଟିଯିବ । ଗାଆଁର ବୁଲାକୁକୁର କାଳିଆଡିଙ୍ଗା କୁକୁରଟା ପୋଖରୀ ପଙ୍କରେ ପଡ଼ି ଲଟପଟ ହେଉଅଛି, ଆଉ ଜେଟ୍ଟେ ଜିଭଟା କାଢ଼ିପକାଇ ଧକାଉଅଛି ପାଣିକି ଯାଉନାହିଁ । ପାଣିଗୁଡ଼ାକ ତାତି ଯାଇଛି ନା କଣ ? ପଡ଼ିଆରେ ଗୋଟାଏ ମଧ୍ୟ ଗୋରୁ ବାଛୁରୀ ନାହାନ୍ତି, ଗଛମୂଳରେ ଶୋଇପଡ଼ି ବୈଷ୍ଣବମାନେ ମାଳି ଝୁଲି ଧରି ହରିନାମ ଭଜନା ପରି ଆଖି ବୁଜି ପାକୁଳି କରୁଅଛନ୍ତି । ଆକାଶରେ ଗୋଟିଏ କାଉ କୋଇଲି ଉଡ଼ିବାକୁ ନାହିଁ, ପତ୍ର ମଧ୍ୟରେ ଲୁଚି ଆଁ କରି ବସିଅଛନ୍ତି । ମୁଣ୍ଡଫଟା ଖରା, ଦିନ ତିନିପହର ଗଡ଼ି ଗଲାଣି; ତଥାପି ଆକାଶରୁ ନିଆଁ ଛୁଟୁଅଛି ।

ହୁଁ ମେରା ଭାଇରେ ହୁଂ ହୁଁ,
ଖବରଦାର ରେ ହୁଂ ହୁଁ,
ଜୋର କରି ରେ ହୁଂ ହୁଁ,
ଡାହାଣେ ଧରି ରେ ହୁଂ ହୁଁ,
ବାଁକୁ ଗୁଡ଼ ରେ ହୁଂ ହୁଁ,
ଖଡ଼ପା ଖଡ଼ପା ଖଡ଼ପା—

ରତନପୁର ମୌଜା ଗୋହିରୀରେ ଗଉଡ଼ ଡାକ ଶୁଭିଲା । ଆଗରେ ଗୋଟାଏ ଡୋଲି, ପଛଲାଗି ପାଞ୍ଚଟା ଭାର ଚାଲିଅଛି । ଡୋଲିଟା ଦଶିଆ ଲୁଗାରେ ସମ୍ପୂର୍ଣ୍ଣ ଢଙ୍କା । ଗ୍ରାମରେ ପୁରୁଷ ଲୋକ ପ୍ରାୟ କେହି ନାହାନ୍ତି । ଚାଲିବାଡ଼ି କାମ ନ ଥିବାରୁ ବାଢସିଂହ ଭାଇମାନଙ୍କ ସହିତ କେନ୍ଦ୍ରାପଡ଼ା ବଳଦେବଙ୍କ ସ୍ନାନଯାତ୍ରା ଦେଖିବାକୁ ଯାଇଅଛନ୍ତି । ଗାଁ ଏ ମୁଣ୍ଡ ସେ ମୁଣ୍ଡ ଚହଲ ପଡ଼ିଗଲା ସୁଆରୀ ଆଇଲା ସୁଆରୀ ଆଇଲା । ବୁଢ଼ୀ ଦରବୁଢ଼ୀ

ମାଇକିନିଆମାନେ ଧଡ଼କରି କବାଟ ମେଲାଇଦେଇ ଗୋହିରିକୁ ବାହାରି ପଡ଼ିଲେ । ବୋହୂଗୁଡ଼ାକ କବାଟ ଦରଆଉଜା କରି ଫାଙ୍କବାଟେ ମୁହଁ ଗଳାଇ ନାକବସଣି କାଢ଼ିଦେଲେ । ଗାଁ ମାଇକିନିଆଙ୍କ ମଧ୍ୟରେ ଢୋଲଖା-ଗୋଷ୍ଠୀ ସମ୍ବନ୍ଧରେ ନାନା ତର୍କ ଉପସ୍ଥିତ ହେଲା । ପ୍ରଥମେ ଲଗ୍ନ ବିଚାର, ପରେ ବ୍ୟକ୍ତି ବିନିର୍ଣ୍ଣୟ । କେହି କହିଲା, ନୂଆବୋହୂ, କେହି କହିଲା ଜମାଦାର, କେହି କହିଲା ସାହେବ । ଜେମାମା ଅକାଟ୍ୟ ଯୁକ୍ତି ଦେଖାଇ କହିଲା, "ଆଜି ସ୍ନାନପୂର୍ଣ୍ଣିମୀ, ଜମାଦାର ସାହେବ ଘରକୁ ପରିବାଘର ନେଇ ଯାଉଅଛନ୍ତି ।" ଢୋଲ ବାଘସିଂହ ଚଉରା ପାଖରେ ମୁହଁ ବୁଲାଇ ନ ଥିଲେ ଜେମାମା ଅନୁମାନ ସିଦ୍ଧାନ୍ତରେ ପରିଣତ ହେବାର ଖୁବ୍ ସମ୍ଭାବନା ଥିଲା । ବେହେରାମାନେ ବାଘସିଂହ ଦୁଆରେ ଢୋଲଟା ଗୁମ କରି ଥୋଇ ଦେଇ ଗାମୁଛାରେ ମୁହଁ ବିଞ୍ଚିହେଲେ, ଗମ ଗମ କରି ଦେହରୁ ଝାଳ ବହି ଯାଉଅଛି, ବାଁ ହାତ ପାପୁଲିରେ ମୁହଁରୁ ଫୋଟ ଫୋଟ ପୋଛି ପକାଉଛନ୍ତି । ଭିତରକୁ ଖବର ଗଲା ନୂଆବୋହୂ ମାଉସୀ ଆସିଅଛନ୍ତି । ଗଲା ମକର ମାସରେ ବାଘସିଂହଙ୍କ ପୁଅ ଚନ୍ଦ୍ରମଣି ଡାଳପୋଡ଼ା ଫତେସିଂହଙ୍କ ଝିଅକୁ ବିଭା ହୋଇଅଛନ୍ତି । ଏହି ଢୋଲ ଯେ ସଳଖେ ସଳଖେ ଡାଳପୋଡ଼ାରୁ ଅଇଲା, ବିନା ବ୍ୟାଖ୍ୟାରେ ବୁଝିବାକୁ ଗ୍ରାମର ବୁଦ୍ଧିମତୀ ସ୍ତ୍ରୀମାନଙ୍କ ପକ୍ଷରେ ଅଶକ୍ତ ହେଲା ନାହିଁ । ମାଣିକ ଭଣ୍ଡାରୁଣୀ ସାଆନ୍ତାଣୀମାନଙ୍କୁ ଖବର ଦେବା ସକାଶେ ଭିତରକୁ ଧାଇଁଲା ।

ଆମ୍ଭମାନଙ୍କ ମାଣିକର ନାମ ଶୁଣିଥିବେ, ନଚେତ୍ ଶୁଣିବା ଆବଶ୍ୟକ । ଏହାକୁ ତୁଚ୍ଛା ଭଣ୍ଡାରୁଣୀଟିଏ ବୋଲି ଜାଣିବେ ନାହିଁ । ଏ ବୁଦ୍ଧିରେ, ମାମଲତରେ, ଗୁଣରେ, ଅନେକ ପୁରୁଷର କାନ କାଟି ଗୁଣ୍ଡି ଦେଇପାରେ । ଗ୍ରାମର ସମସ୍ତ ଲୋକେ ଏହାକୁ ଡରି ଥାଆନ୍ତି । ବୁଢ଼ୀ ଦରବୁଢ଼ୀ ପର୍ଯ୍ୟନ୍ତ ଘର ଘର କଥାରେ ଏହାଠାରୁ ପରାମର୍ଶ ନେଇ କାର୍ଯ୍ୟ କରନ୍ତି । ଗୁଣିବିଦ୍ୟାରେ ଏହା ଆଗରେ କେହି ଛିଡ଼ା ହୋଇ ପାରିବ ନାହିଁ । ଗାଁ ଆର କଅଁଳା ପିଲାଙ୍କୁ ଦୃଷ୍ଟି ହେଲେ ଫୁଙ୍କି ଉଡ଼ାଇ ଦିଏ । ଡାକ୍ତରପଣରେ ଖୁବ୍ ଟାଣ—ବୋହୂଝିଅ ଦେହକୁ ଲାଗିଲେ ଉଠିଆରି ପର୍ଯ୍ୟନ୍ତ ପୁଆଣ୍ଟି ପାଖଛଡ଼ା ହୁଏ ନାହିଁ । ମୂଳ ମୂଳକା ମଧ୍ୟ ଢେର ଜାଣେ । ପର ଉପକାର କରିବାକୁ ଯେପରି ହୁମ୍ ଯୁମ୍, ଉପରେ ପଡ଼ି କଜିଆ କରିବାକୁ ସେହିପରି ମଜବୁତ୍ । କଜିଆରେ ଲାଗିଅଛି ତ ସେଦିନ ଗାଧୂଆ ନ ହେଲା । କାହାରି ଦେହପା'କୁ ଲାଗିଲେ ତାହାକୁ ଯଦି ଦପଦ କଅଁଳେଇ କହି ଦେଇଅଛି, ନ ଖାଇ ନ ଶୋଇ ରାତିସାରା ବସି ଦେହରେ ହାତ ବୁଲାଉ ଥିବ । ବାହା ପୁଆଣିରେ ଡାକ ନ ଡାକ ମାଣିକ ଉପସ୍ଥିତ, କହ ନ କହ ସବୁ କାମ କରିପକାଇବ । ମାଣିକ ନ ଜାଣେ ଏମନ୍ତ କଥା ନାହିଁ । କଟକ କଥା, ସାହେବ ଘର କଥା, ପୁରୀ ଜଗନ୍ନାଥ ମନ୍ଦିର କଥା ଇତ୍ୟାଦି କଥାମାନ ଗ୍ରାମର ସ୍ତ୍ରୀଲୋକମାନେ ମାଣିକ ମୁହଁରୁ କେବଳ ଶୁଣିବାକୁ ପାଆନ୍ତି । ମାଛ ବିନା ପୋଖରୀ ଥାଇପାରେ; ମାତ୍ର ନିନ୍ଦକ ଛଡ଼ା ଗାଁ ନାହିଁ । କେହି କେହି କହନ୍ତି ମାଣିକଟା ଉଦବଉଦୀ, ମିଛୁଆଣ୍ଡି, ଅଗଡ଼କହୀ, ଏହାର ତିନିପୁରୁଷରେ କେହି ଗାଁ ଡେଇଁ ନାହାନ୍ତି, କଟକ କଥା, ସାହେବ ଘର କଥା କାହୁଁ ଜାଣିଲା । ବାଘସିଂହ ଉଆସରେ ମାଣିକର ଭାରି ଖାତିର । ସହସ୍ର ଥର କହିଥିବ, ଶଏଥର ଶୁଣିଥିବ ରଜାପୁଅ, ମନ୍ତ୍ରୀପୁଅ, ସାଧବପୁଅ, କଟୁଆଳପୁଅ ଚାରିଜଣ ମିଳି ବିଦେଶ ଯିବା କଥା, କରଲେଈଦେଈ କଥା, ନଈ ସେପାରି ମଙ୍ଗଳା କଥା ଇତ୍ୟାଦି କାହାଣୀମାନ ଶୁଣିବା ସକାଶେ ପ୍ରତିଦିନ ସନ୍ଧ୍ୟାବେଳେ ସାଆନ୍ତାଣୀମାନଙ୍କର ଡାକରା ଆସେ । ରାମ ରାବଣ ଯୁଦ୍ଧ କଥା ମାଣିକ ମୁହେଁ ମୁହେଁ କହିଯାଏ, ଯେ କଥା ପଚାର ସେଥିର ଜବାବ ନିଶ୍ଚୟ ପାଇବ । ମାତ୍ର ଗୋଟିଏ କଥା, ସେ ଯାହା କହିବ, ତୁମ୍ଭେ ସେଥିରେ ହୁଁ ଦେଇ ଯାଉଥିବ । ଯଦି ବୋଲ ନୁହେଁ ପରା, ଆଉ ଯାଅ କାହିଁ ? ସେ କଥା

ଯାଉ, 'ସ୍ୱନାମା ରମଣୀ ଧନ୍ୟା ।' ମାଣିକକୁ ଗ୍ରାମରେ ସମସ୍ତେ ଭଲ ଜାଣନ୍ତି, ଆମ୍ଭମାନଙ୍କର ଚିହ୍ନାଇ ଦେବା ଅନାବଶ୍ୟକ ।

ଡୋଲି ମଝିଦାଣ୍ଡରେ ଯାଉଥିବାବେଳେ ମାଣିକ ପଛରେ ଥିବା ଭଣ୍ଡାରି ସାଙ୍ଗରେ କଥାବାର୍ତ୍ତା କରି ହାଲଟା ବୁଝିଗଲା, ତାହା ବାଦ ବାଢସିଂହଙ୍କ ଦାଣ୍ଡ-ଦୁଆରୁ ପାଟିକରି ଉଆସ ଭିତରକୁ ଧାଇଁଲା । "ବଡ଼ ସାଆନ୍ତାଣିଏ, ସାନ ସାଆନ୍ତାଣିଏ, ମଝିଆଁ ସାଆନ୍ତାଣିଏ ଧାଇଁ ଆସନ୍ତୁ, କେଉଁଠାରେ ଅଛନ୍ତି ? ଡାଳିଯୋଡ଼ାରୁ ସମୁଦ୍ଧୁଣୀଙ୍କ ସୁଆରି ଆସି ଓଳିଏ ହେଲା ଦାଣ୍ଡଦୁଆରେ ବସିଲାଣି । ସମୁଦ୍ଧୁଣୀଙ୍କ ଆସିବା କଥା ମୁଁ ତିନି ଦିନ ହେଲା ଶୁଣିଲିଣି, ଆପଣମାନଙ୍କୁ କହିବାକୁ ଭୁଲି ଯାଇଅଛି । ସେ କାଲିଠାରୁ ଡାଳିଯୋଡ଼ାରୁ ବାହାରିଲେଣି, ମୁଁ କହୁଛି, କହ, ଏତେ ଡେରି କିଆଁ ହେଲା ? ଡାଳିଯୋଡ଼ାରୁ ଆସିବା ବାଟ ପାଖରେ ଯେ ବଡ଼ ପୋଖରୀଟାଏ ଅଛି, ସେହିଠାରେ ଗାଧୁଆ ପାଧୁଆ କରିବାରେ ବିଳମ୍ବ ହୋଇଗଲା ।" ବାଢସିଂହଘରର ତିନି ଯାଆ ଏକ ଯାଗା ହୋଇ ପରସ୍ପର ମୁହଁ ଚୁହାଁଚୁହିଁ ହେଲେ । ସେଥିର ଅର୍ଥ ଅଭ୍ୟାଗତା ଅନାହୂତା ସମୁଦ୍ଧୁଣୀ ସମ୍ବନ୍ଧରେ କର୍ତ୍ତବ୍ୟ ନିରୂପଣ । ମାତ୍ର ମାଣିକ ଏକାବେଳକେ ମୀମାଂସା କରିଦେଲା, "ଶୀଘ୍ର ଯାଇ ସମୁଦ୍ଧୁଣୀଙ୍କୁ ପାଛୋଟି ଆଣନ୍ତୁ ।"

ବାଢସିଂହଙ୍କ ଦାଣ୍ଡଦୁଆର କବାଟଫାଟକରୁ ଫୁଲଗୁଣା ବସଣି ସହିତ ଦୁଇ ତିନି ଗୋଟି ନାସିକା ଦୃଷ୍ଟ ହେଲା । ମାଉସୀ ଡୋଲିରୁ ଓହ୍ଲାଇପଡ଼ି ଗୁମ ଗୁମ କରି ଭିତରକୁ ପଶିଗଲେ । 'ସମୁଦ୍ଧୁଣି, ସମୁଦ୍ଧୁଣି' କହି ପୂର୍ବୋକ୍ତ ନାସିକାଧାରିଣୀମାନଙ୍କୁ ପରସ୍ତେ କୁଣ୍ଢାଇ ଗଲେ । ଗୃହାଧିଷ୍ଠାତ୍ରୀ ସାଆନ୍ତାଣୀମାନେ ନୀରବରେ ହସି ହସି ସମୁଦ୍ଧୁଣୀ ହାତଧରି ଭିତରକୁ ନେଇଗଲେ । ସମୁଦ୍ଧୁଣୀଙ୍କ ଅଭ୍ୟର୍ଥନା ବିଷୟରେ ମାଣିକର ଉଦ୍‌ଯୋଗ ଅନୁଷ୍ଠାନ ବେଶି । ସେ ଆଗେ ଆଗେ ଚଞ୍ଚଳ ଧାଇଁଯାଇ ବାଢସିଂହ ପଦ୍ମୁଡ଼ଘର ଆଗ ମେଲିରେ ଗୋଟାଏ ତିନି ହାତ ଲମ୍ବା ପୁରୁଣା ଖଟଡ଼ ପକାଇଦେଲା । ମାଉସୀ ସେଥିରେ ବସିପଡ଼ି ତିନି ସମୁଦ୍ଧୁଣୀଙ୍କ ହାତ ଧରି ପାଖରେ ବସାଇଲେ । ପାଞ୍ଚଟା ଭାର ମଝିଅଗଣାରେ ଥୁଆଗଲା । ଭାରର ଡାବ— ପାଚିଲା ଆମ୍ବ ଏକ ଭାର, ବଡ଼ ବଡ଼ ଯୋଡ଼ାଏ ଖଜା ପଣସ ଏକଭାର, ପାଚିଲା କଞ୍ଚା କଦଳୀ ଦୁଇ କାନ୍ଧି ଦୁଇ ପୁଞ୍ଜା ସହିତ ଏକଭାର, ପିଠଉ ପାଣିରେ ଧଳା କଦଳୀପତ୍ରରେ ମୁହଁବନ୍ଧା ବଡ଼ ବଡ଼ ତିନି ହାଣ୍ଡିକୁ ଦୁଇ ଭାର—ଗାଏ । ଗାଁ ମାଇକିନିଆମାନେ ଦେଖିବାକୁ ଧାଇଁଲେ; ରେବଣ୍ଟା, ଶୁକୁରୀ, ଟଙ୍କୀ, ମାଳିଆ, ଜେମାମା, ଖିମା ମାଉସୀ, ହଗୁରମା, ଯୋଦରୀ, ମେଙ୍କୀ, କନକ, ନେତଜେଜୀ, ସାବୀ, କମଳୀ, ପଦ୍ମଅପା, ଶାମାବୋହୂ, ନଳିତା, ବିଷ୍ଣା, ସୁମିତ୍ରା, ଗଉଡ଼ଘରର କନିଆବୋହୂ; କେହି ପିଲା କାଖେଇ କେହି ପିଲା ହାତଧରି ଚାଲିଇ, କେହି ଜଣଙ୍କ ପଛରେ, କେହି ଏକାକିନୀ ଧାଇଁ ଆସୁଛନ୍ତି । ଶନ୍ଦାମା ଘର ଲିପୁଥିଲା, ହୁଅପାଣିହାତ ଧୋଇବାକୁ ବେଳ ନାହିଁ, ସାପଫେଣ ପରି ହାତଟି ଟେକି ଅଛି । ବାଢସିଂହଙ୍କ ଅଗଣା ପୂରିଗଲା, ଦେବୀପ୍ରତିମା ଦେଖିଲା ପରି ମାଇକିନିଆମାନେ ଏକ ଧ୍ୟାନରେ ମାଉସୀଙ୍କର ରୂପ-ମାଧୁରୀ ଅନୁଭବ କରୁଅଛନ୍ତି; କିନ୍ତୁ ବନିଆ, ବାଙ୍କିଆ କାଳିଆ, ବନମାଳିଆ, ଗୋପାଳିଆ, ରମିଆ, ଉମେଷିଆ, କାଶୀ, ଦୈତ୍ୟାରି ପ୍ରଭୃତି ଗ୍ରାମର ଦୁଷ୍ଟ ପିଲାଗୁଡ଼ାକ ମାଉସୀଙ୍କ ସୌନ୍ଦର୍ଯ୍ୟ ଦର୍ଶନ ବିଷୟରେ ମନୋଯୋଗ ନ କରି ବିରାଡ଼ି ଶୁଙ୍ଘୁଆ ଖାଲୋଇକୁ ଅନାଇଲା ପରି ବାହାରେ ଥୁଆ ହୋଇଥିବା ପାଚିଲା କଦଳୀ, ପାଚିଲା ଆମ୍ବକୁ ଅନାଇ ରହିଛନ୍ତି । ଏହା ଯେ ଅସଭ୍ୟତାର ଏବଂ ନୀତିଶାସ୍ତ୍ର ବିରୁଦ୍ଧ କାର୍ଯ୍ୟ ସେଥିରେ ସନ୍ଦେହ ନାହିଁ । ଆଉ ସେମାନଙ୍କର ବୃତ୍ତରେଖା ନିମଗଣ୍ଡରେ ଯେପରି ସଙ୍କୋଚଭାବ ଧାରଣ କରି ଆସୁଥିଲା, ବୁଦ୍ଧିମତୀ ମାଣିକ ସେଥିର ପ୍ରଚ୍ଛନ୍ନ ଅସଦାଭିପ୍ରାୟ ହୃଦୟଙ୍ଗମ କରି ଛଷରୁ

ତର୍ଜନପୂର୍ବକ ଡାହାଣ ହାତ ହଲାଇ ସେମାନଙ୍କୁ ଅପସାରିତ କରିଦେଇ ନ ଥିଲେ ଗୋଟାଏ ଲୁଠତରାଜ ମାମଲା ଉଠୁ ହେବାର ଖୁବ୍ ସମ୍ଭାବନା ଥିଲା ।

ବୋହୂ ମାଉସୀ ମୁଣ୍ଡରେ ମା ମଙ୍ଗଳା ପରି ମୁଣ୍ଡାଏ ସିନ୍ଦୂର ଆଖିରେ କଜ୍ଜଳ, ନାକରେ ଗୁଣା, ତା ଉପରେ ନାଟମୟୂର, ବାଁ ପୁଡ଼ାରେ ବସଣୀ, ଦୁଇ କାନରେ ବଡ଼ ବଡ଼ ଦୁଇଟା କାପ, ବେକରେ ଗୁପସରି, ତା ତଳେ ପାଟ ସୂତାରେ ଗୁନ୍ଥା ମାଳେ କୁରୁଜାତକ, ବାହୁରେ ବନ୍ଦ, ହାତରେ ପଇଞ୍ଚ, ତାହା ଉପରେ କଟା, ତାହା ଉପରେ ଚୂଡ଼ି,ହାତ ପାଞ୍ଚ ଅଙ୍ଗୁଳିରେ ରୂପା ଗୁଡମୁଦି ସାତ ଗୋଟା, ଗୋଡ଼ରେ ଚବିଶପଲ ଓଜନରେ ଦୁଇଟା କଂସାବାଙ୍କ, ଗୋଡ଼ ଦଶ ଅଙ୍ଗୁଳିରେ ଝୁଣ୍ଟିଆ । ମୁଣ୍ଡରେ ଦଶ ବାର କେରି ପାଟଥୋପରେ ବିଶାଳ ଜୁଡ଼ା, ତାହା ଉପରେ ତିନଟା ବେଙ୍ଗପାଠିଆରେ ତିନକେରି ଶିକୁଳିଲଗା ଗୋଜକାଠି ଖୋସା, କୁମ୍ଭକର୍ଣ୍ଣୀ ଧଡ଼ି ଷୋଳହାତି ବରମପୁରି ପାଟଶାଢ଼ୀ ପିନ୍ଧା, ଗାଲରେ ଗାଲେ ପାନ । ଡାଳପୋଡ଼ା ଫତେସିଂହ ଘର ବେଶ ଚଳ, ପୂର୍ବରୁ କାନରେ ଶୁଣାଥିଲ,ବର୍ତ୍ତମାନ ଆଖିରେ ଅଳଙ୍କାର ବିଭବ ଦେଖି ଗାଁ ମାଇକିନିଆମାନେ ବୁଝିଗଲେ, ହଁ, ଘରପରି ଘରଟାଏ ।

ମାଉସୀ ବସିପଡ଼ି କହିଲେ, "ମୋ ଝିଅଟି କାହିଁ ? ମୋ ଝିଆରି କାହିଁ ? ମୋ ଝିଆରିକୁ ଦେଖିବି । ଆହା ! ମା ଛେଉଣ୍ଡୀଟି ଶୁଖି ଯିବଣି ।" ସାନ ଖୁଡ଼ୀଶାଶୁ ନୂଆବୋହୂଟିକୁ ଧରି ଆସିଲେ । ବୋହୂଟି ଦେଢ଼ ହାତ ଓଢ଼ଣା ଟାଣି ଅଳ୍ପ ନଇଁ ନଇଁ ଆସି ମାଉସୀ ଗୋଡ଼ତଳେ ଲଟ୍‌କରି ମୁଣ୍ଡିଆଟିଏ ମାରିଲା । ମାଉସୀ ଝିଆରିକୁ କୁଣ୍ଢାଇ ପକାଇ ବାହୁନି ବସିଲେ, "ଆରେ ମୋ ଝିଅ ରେ ତୋତେ ନ ଦେଖି ଅନ୍ଧ ହୋଇ ଯାଇଥିଲି । ଆରେ ମୋ ଚନ୍ଦ୍ରଉଦଆ ରେ, ମୋ ଘର ଅନ୍ଧାର କରି ଆସିଛୁ,ଆରେ ମୋ କଳାମଣିକ ରେ !" ମାଉସୀ ବାହୁନି ବାହୁନି ଅଥୟ ହୋଇଗଲେଣି ଦୁଇ ଆଖିରୁ ଝର ଝର କରି ପାଣି ବୋହି ପଡ଼ୁଛି । ବଡ଼ ସମୁଦ୍ଧୁଣୀ କୁଣ୍ଢାଇ ପକାଇ ଆପଣା ପଣତକାନିରେ ଆଖି ପୋଛି ଦେଲେ ଏବଂ ଅନେକ ପ୍ରକାର ବୁଝାଇ ସମୁଝାଇ ତୁନି କରାଇଲେ । ମାଉସୀ କହିଲେ, "କଣ କହୁଛ ସମୁଦ୍ଧୁଣି, ଝିଅ ଆସିଲା ଦିନୁ ଅନ୍ନଜଳ ପିତାକରି ଦେଲଣି । ଖାଲି ଦାଣ୍ଡକୁ ଚାହିଁ ବସିଥାଏ, ଏଣୁ ଲୋକଟିଏ ଗଲେ ପଚାରେ, ବାକଟିଏ ଗଲେ ପଚାରେ ।"

ଝିଆରି ତ ନୂଆ ପାଟି ଶୁଣି ଏବଂ ବାହୁନା ଦେଖି ଚାଟଙ୍କା ହୋଇ ଗଲାଣି, ମାଉସୀ ମୁହଁ ଦେଖିବାପାଇଁ ଟିକିଏ ଓଢ଼ଣା ଟେକୁଥିଲା । ଚତୁରା ମାଉସୀ ଝିଆରିର ଅଭିପ୍ରାୟ ସହଜରେ ବୁଝିପାରି ଓଢ଼ଣା ଟାଣିଦେଇ କହିଲେ, "ଆରେ ମୋ ଲାଜକୁଳୀବଦନ ରେ, ଆରେ ମୋ ଲାଜକୁଳୀଲତା ରେ, ତୋତେ କିଏ ଲାଜ ଶିଖାଇବ ରେ ! ସମୁଦ୍ଧୁଣୀ କଣ କହିବ, ଏହା ମାଆର ଏହିପରି ଲାଜ ଥିଲା, ବୁଢ଼ୀ ହୋଇ ମଲା, ଶାଶୁମାନଙ୍କ ଆଗରେ ଆଖି ଫିଟାଇ ଚାହିଁ ନାହିଁ, ଓଢ଼ଣା ଟେକି ନାହିଁ । ଶାଶୁ ସାଙ୍ଗରେ ଭଟ ଭଟ ଲଗାଇବ ପଛକେ, ଖୁଡ଼ଶାଶୁ-ମାନଙ୍କୁ ଗାଳି ଦେବ ପଛକେ, ସେହି ଓଢ଼ଣା ଭିତରୁ । ଧାନ ପେଟରୁ କଣ ବାଲୁଙ୍ଗା ବାହାରିବ ? ତୁଳସୀମଞ୍ଜିରୁ କଣ ବିଛୁଆତି ହେବ ? ଭଲେଝିଅ ହୋଇ ଯେବେ ଲାଜ ନ ହେଲା, ଧିକ ତା ଜୀବନ, ଛୁଡ଼ ତା କଥା ।" ଝିଆରି ତ ମାଉସୀ କଥା ଶୁଣି ଆହୁରି ଚାଙ୍କୁଡ଼ି ହୋଇ ବେଙ୍ଗୁଲି ପରି ବସିଲା । ଠାଙ୍ଗିରେ ତାହାର ଗୋଟିଏ ମାଉସୀଘର ଥିବାର ସେ ଘରେ ଶୁଣିଥିଲା, ସେ ତା ମାର ଖୁଡ଼ୁତା ଝିଅ ଭଉଣୀ ; ମନରେ ବୁଝିଲା । ଏ ସେହି ମାଉସୀ ।

ତାହା ବାଦ ବୋହୂ ମାଉସୀ ହସି ହସି ସମୁଦ୍ଧୁଣୀ-ମାନଙ୍କ ସହିତ କଥାବାର୍ତ୍ତା କଲେ, ସମୁଦ୍ଧୁଣୀ ସମୁଦ୍ଧୁଣୀ

କଥା, ହସକୌତୁକ କଥା, ଝାପରଝାପୁର କଥା ଢେର ହେଲା । ଆପଣଙ୍କର ସେ ସମସ୍ତ କଥା ଶୁଣିବାକୁ ଇଚ୍ଛା ଥାଇପାରେ, ମାତ୍ର ଭଲଲୋକ ଘର ବୋହୂ ଝିଅବୋହୂ କଥା ପ୍ରକାଶ କରିବାକୁ ଆମ୍ଭେମାନେ ନିତାନ୍ତ ନାରାଜ । ତେବେ ଆପଣ ଯଦି ଶୁଣିବାକୁ ନିତାନ୍ତ ଇଚ୍ଛା କରନ୍ତି, ଆଉ ଯାହା କହିଲେ କୌଣସି ଦୋଷ ନାହିଁ ତେତିକ କଥା କହିପାରୁ । ବୋହୂ ମାଉସୀ କହିଲେ :—

"ଏ ବରଷ ଭାରି ଯୋଗ ପଡ଼ିଛି, ସମସ୍ତେ ବଳଦେବ ଯାତ ଦେଖିବାକୁ ଧାଇଁଛନ୍ତି, ଆମ ଗାଁ ତ ଶୂନସାନ । ମୁଁ କହିଲି, ଆଜ୍ଞାବେଳ ଚଢ଼ିଲା, ଦଉଁ ଦେଖା ସମୁଦ୍ଧୁଣୀ ଭେଟ ଏକ ସାଙ୍ଗରେ ହୋଇଯିବ । ଝିଅଟି କେମନ୍ତ ଅଛି ଦେଖିବ । ସମସ୍ତଙ୍କୁ ହେଣ୍ଡରେଇ ହେଣ୍ଡରେଇ ଘରୁ କାଢ଼ିଲି । ଆମର ସେମାନେ, ଆଉ ଭଣୋଇ ସାଆନ୍ତ ଗୋଟାଏ ଗୋଟାଏ ଘୋଡ଼ାରେ ଚଢ଼ି ଦାଣ୍ଡେ ଦାଣ୍ଡେ ଆଗରେ ଯାଇ ତୋଟାରେ ବସିଛନ୍ତି । ଭଣ୍ଡାରୀ ଗଉଡ଼ ସମସ୍ତେ ସେମାନଙ୍କ ସାଙ୍ଗରେ, ମୁଁ କହିଲି, ଝିଅଟିକୁ ନ ଦେଖି ଯିବନାହିଁ । ଏକା ବାହାରି ଅସିଲି । କାଲି ଦର୍ଶନ ସାରି ସମସ୍ତେ ଏହି ବାଟେ ବାହୁଡ଼ିବା । ବାଟରେ ଶୁଣିଲି, ସମୁଦ୍ଧୀମାନେ ଯାତ ଦେଖି ଯାଇଛନ୍ତି । ଭଲ ହେଲା, ସମସ୍ତେ ସାଙ୍ଗ ହୋଇ ଆସିବା । ଦେଖ ସମୁଦ୍ଧୁଣୀ, ତୁମ୍ଭମାନଙ୍କ ସଙ୍ଗରେ ଦୁଃଖ ସୁଖ କଥା, ହସକୌତୁକ କଥା କିଛି ହୋଇ ପାରିଲା ନାହିଁ । ଫେରିବାବେଳେ ଏହିଠାରେ ଚାରି ଦିନ ରହି ଯିବ । ଭଣୋଇ ସାଆନ୍ତେ କହୁଥିଲେ, କେବଳ ଦିନେ ରହିବେ । ଦେଖିବାଟି ଭଲ, କପରି ଚାରିଦିନ ନ ରହିବେ, ଅଣ୍ଟାରେ ହାତ ପୂରେଇ ଦେବ ପରା ! ଝିଅଟି ମୁଣ୍ଡରେ ହାତ ବୁଲାଇ କହିଲେ, "ମାରେ, ଝିଅରେ, ଆହା ! ପିଲା ଲୋକ କେଜାଣି ଚିହ୍ନି ପାରିବୁ ନାହିଁ, ଢେର ଦିନ ହେଲା ଦେଖିନାହୁଁ, ମୁଁ ଫେରିଆସେ, ନିରୋଳାରେ ବସି ଢେର କଥା କହିବ ।" କାନରେ ଭୁନ ଭୁନ କହିଲେ 'ତୋ ଲାଗି ଯାବାରୁ ଢେର ଜିନସ ଆଣିବ ।'

ବୋହୂ ମାଉସୀ ବାଡ଼ିଆଡ଼କୁ ଯିବାକୁ ଇଚ୍ଛା କରି ଠିଆ ହୋଇ କହିଲେ, "ଦେଖ ସମୁଦ୍ଧୁଣୀ, ମୁଁ ଚଦୋଆଡ଼େ ଗଲେ ସ୍ନାନ କରେ, ଚାରି ଥର ଯିବ ପଛେ, ଚାରିଥର ସ୍ନାନ । ଘର ପଛକୁ ଗଲେ ଲୋଟାଏ ପାଣି ।' 'ଆଗୁରେ ଲକ୍ଷ୍ମୀ ବଗିଚରେ ପଣ୍ଡିତା ।' ଏହା କହି ଦାଣ୍ଡଦୁଆର ତୋଲ ପାଖକୁ ଗୁମ୍‌ଗୁମ୍ କରି ବାହାରିଗଲେ । ସାଙ୍ଗ ଭଣ୍ଡାରୀ ପୂର୍ବରୁ ଚାଳଟିଏ ଧରି ଛିଡ଼ା ହୋଇଥିଲା । ବୋହୂ ମାଉସୀ ପାଣି ଚଢ଼ିଯିବା ଉପରେ ଲୋଟା ମୁହଁରେ ହାତ ଘୋଡ଼ାଇ ବାଡ଼ ଦୁଆରକୁ ବାହାରି-ଗଲେ । ବାଙ୍ଗ ହରର ପୋଇଲି ମୁକୁଟୀମା ଓଳଚଳ ଦେଖାଇ ଦେଇ ବାଡ଼ଦୁଆରେ ଛିଡ଼ା ହେଲା । ବୋହୂ ମାଉସୀ ତାକୁ ଅନାଇ କହିଲେ, "ଦେଖ ସକାଳୁ ମାତେ ପୀଡ଼ା ହେଲାଣି, କଣ କରିବ, ଚାରିଆଡ଼େ ଲୋକ, ପୁରୁଷ ହେଉ ସ୍ତ୍ରୀ ହେଉ, କେହି ଅନାଇଲେ ମୁଁ ବସି ପାରେ ନାହିଁ ।" ମୁକୁଟୀମା "କହିଲା, ନାହିଁ, ନାହିଁ, ଏଠାରେ କେହି ନାହାନ୍ତି, ଆପଣ ଯାଆନ୍ତୁ, ଆପଣ ଯାଆନ୍ତୁ ।" ଏହା କହି ଘର ମଧ୍ୟକୁ ଆସି ବାଡ଼ଦୁଆର ଆଉଜାଇ ଦେଲା ।

ଅନ୍ଧାର ହୋଇ ଆସିଲାଣି ବୋହୂ ମାଉସୀ କହିଲେ, "ମୁଁ ଆଉ ରହି ପାରିବ ନାହିଁ, ସେମାନେ ବାଟ ଚାହିଁ ବସିଥିବେ ।" ସମୁଦ୍ଧୁଣୀମାନେ କିଛି ଖାଇବାକୁ କହିଲେ । ବୋହୂ ମାଉସୀ ଜିଭ କାମୁଡ଼ିପକାଇ କହିଲେ, "ରାମ—ରାମ—ରାମ ! କଣ କହିଲ ସମୁଦ୍ଧୁଣୀ, କଣ କହିଲ ? ଏ ଘରେ ଝିଅ ଦେଇଛି, ପାଣି ଛୁଇଁବ ?" ବିଦାବେଳେ ବୋହୂ ମାଉସୀ ସମୁଦ୍ଧୁଣୀମାନଙ୍କୁ କୁଣ୍ଢାଇ ପକାଇ କହିଲେ—

"ଦେଉଳୁ ମେଲାଣି ଯାଉଛୁ ସଙ୍ଗାତ,
ମନଟି ରଖିଲ ବାନ୍ଧି ।
ଧନ ଗଣ୍ଡ ସିନା ସରବ ନାହିଁଟି
ସକେଇ ସକେଇ କାନ୍ଦି ।"

ଡୋଲି ଗାଁରୁ ବାହାରି ବିଲବାଟ ଅନ୍ଧାରରେ ମିଶିଗଲା । ଏଣେ ସାନନ୍ତମାନଙ୍କ ଦେଖିବା ସକାଶେ ଘର ସବୁ ରଖାଇ ଦିଆଗଲା । ବୋହୂ ମାଉସୀ ବିଦାୟ ହୋଇଗଲା ବାଦ ତାଙ୍କ ରୂପ ଗୁଣ ବିଷୟରେ ତେର ସମାଲୋଚନା ହେଲା । ସମସ୍ତେ ପ୍ରଶଂସା କଲେ, କେହି ରୂପର, କେହି ଗୁଣର, କେହି ଅଳଙ୍କାରର, କେହି ପାଚିଲା କଦଳୀର । ମାତ୍ର ମାଣିକ କହିଲା, "ହେଲା ହଁ, ବଡ଼ଲୋକ ଘର, ରୂପଟା ଏକା ସେରୂପ ନୁହେଁ, ଗୁମ୍ଫୁଦାନ୍ତ ଦୁଇଟା ବାହାର୍‌ଡ଼ା, ଗାଲ ଦୁଇଟା ଉଆଉଫଡ଼ା ପରି ।" ହଗୁରି ମା କହିଲା, "କଥାଟାରେ ଏକା ମିଠା ନାହିଁ, ଠୋସ୍ ଠୋସ୍ ।" ମୁକୁଟା ମା କହିଲା, "ଚାଲିଟା ଧସ ଧସ୍ ।" ଶଙ୍କୀ କହିଲା, "ହଁ ହଁ ହସଟା ଫସ୍‌ଫସ୍ ।" ଶୁକୀ କହିଲା, "ଚିହାଣୀଟା କସ୍ ମସ୍ ।" ମୁହୂର୍ତ୍ତ ମଧ୍ୟରେ 'ଏକୋହି ଗୁଣରେ ଦୋଷସନ୍ନିପାତ' ହୋଇଗଲା । ନୂଆ ବୋହୂଙ୍କ ମାଉସୀ ସମ୍ବନ୍ଧରେ ଅନେକ ପ୍ରଶ୍ନ କରାଗଲା, ମାତ୍ର ସେ ଏତିକି କହିଲା—

"ଝାଙ୍ଗୀ ମାଉସୀ ।"

—୧୭—

## କପର ଘର ପୋଡ଼ିଲା

ଆଜି ଅନନ୍ତପୁର ଗ୍ରାମରେ ହାହାକାର ପଡ଼ିଅଛି । ଗଲା ଅଧରାତ୍ରିରୁ ବାଘସିଂହ ଘରେ ନିଆଁ ଲାଗି ସମସ୍ତ ଘର, ଧାନ ଅମାର ପୋଡ଼ି ଛାରଖାର ହୋଇ ଗଲାଣି । ନିଆଁ ପାଉଁଶ ବୋଲି ହୋଇ କାଳିଆ କାଳିଆ କାନ୍ଥଗୁଡ଼ାକ ଛିଡ଼ା ହୋଇଅଛି । ଏପର୍ଯ୍ୟନ୍ତ ନିଆଁ ଲିଭି ନାହିଁ । ଘର ଭିତରେ ଚାଳ ବସିପାଇ ଧୂ ଧୂ ହୋଇ ଜଳୁଅଛି । ମୂଳବାଉଁଶଗୁଡ଼ାକ ଫଟ୍ ଫଟ୍ କରି ଫୁଟୁଅଛି । କେଉଁଠାରେ କାନ୍ଥ ଉପରେ ବାଉଁଶ ଯୋଡ଼ାଏ, କେଉଁଠାରେ ନଡ଼ା ମେଞ୍ଚାଏ ଲାଗି ଜଳୁଅଛି । ମୋଟା ମୋଟା ଖୁମ୍ବଗୁଡ଼ାକ ଅଗ୍ନିସ୍ତମ୍ଭ ପରି ଦିଶୁଅଛି । କବାଟରେ ନିଆଁ, ଚୌକାଠରେ ନିଆଁ, ଘରଆଡ଼େ ନିଆଁ । ଧାନଘର ଭିତରେ ନିଆଁ ପଶି ଘର ଧୂଆଁ ବାହାରୁଅଛି । ଜ୍ୟେଷ୍ଠମାସିଆ ଦିନ, ଚାଳ ବାଡ଼ ଶୁଖି ଝୁଣା ହୋଇ ରହିଥିଲା, ପାଖ ମାଡ଼ିବାକୁ ସାଧ କାହାର ? ପବନ ଏତିକବେଳେ କାହିଁ ଥିଲା, କେବଳ ଅଣ୍ଟୁ ଭିତରକୁ ନିଆଁ ଯାଇ ପାରନାହିଁ, କବାଟ ଧରିଲାଣି । ହଳିଆମାନେ ମାଠିଆ ମାଠିଆ ପାଣି ପକାଇ ଅଣ୍ଟୁ କବାଟ ପାଖକୁ ଯିବାକୁ ଚେଷ୍ଟା କରୁଅଛନ୍ତି । ପାଇକାଳିମାନେ ବାହୁଡ଼ି ଆଇଲେଣି । ଦିନ ଛ ଘଡ଼ି—ତଳେ ନିଆଁ, ଉପରେ ନିଆଁ, ଘରୁ କୁଟା କେରାଏ ବାହାରି ନାହିଁ । ଅଧରାତ୍ରିରେ ନିଆଁ ଲାଗିଲା, ମାଇକିନିଆମାନେ ନିଦବାଉଳାରେ ହାଉଳିଖାଇ ଦେହଲୁଗା ଘେନି ବାହାରି ଢୋଟା ମଧ୍ୟରେ ଗଛମୂଳରେ ବସିଅଛନ୍ତି । ବଣବେଗଡ଼ ପରି ଘରନିଆଁକୁ ଅନାଇ ଡକା ପାଡ଼ୁଛନ୍ତି । ହଳିଆମାନେ ଗଞ୍ଜ ବଳଦ ଫିଟାଇଦେଇ ଆଗରୁ ଟେଲାଇ ଯାଇଥିଲେ । ସେମାନେ ଚେଷ୍ଟା କରିଥିଲେ କେତେକ ଜିନିଷ ବଞ୍ଚାଇ ପାରିଥାନ୍ତେ; ମାତ୍ର ପରପାଇଁ କେତେ ଜଣ ନିଆଁରେ ପଶନ୍ତି ? ଦିନ ବୁଡ଼ି ଆସିଲାଣି । ବାଘସିଂହ ଘରେ ପିଲାଠାରୁ ବୁଢ଼ାଯାଏ କାହାରି ଦାନ୍ତରେ ଦାନ୍ତକାଠି ବାଜି ନାହିଁ; ପିଲାଗୁଡ଼ାକଙ୍କୁ ଆଉ ବୋହୂଗୁଡ଼ାଙ୍କୁ ଭୋକ ମାରିଗଲାଣି । ବୁଢ଼ା ପୁରୋହିତ କେନ୍ଦ୍ର ରଥେ ଅନେକ ବୁଝାଇ ସମଝାଇ ସମସ୍ତଙ୍କୁ ଦାନ୍ତ ଘଷାଇଲେ । ଘରୁ ଗୁଡ଼, ଚୂଡ଼ା, କଂସା କଂସା ତୋରାଣି ସମସ୍ତଙ୍କୁ ମୁନ୍ଦାଏ ମୁନ୍ଦାଏ ପିଆଇ ସାଷ୍ଟମ କରାଇଲେ । ମାଇକିନିଆ ମଧ୍ୟରେ କେହି ଖାଇଲା ବା କେହି ନ ଖାଇଲା, ବାଘସିଂହଙ୍କ ଘରଆଡ଼େ ଢକ ଢକ କରି ଚାଳେ ପାଣି ପିଇଦେଇ ପଡ଼ିଗଲେ । ଧାନଘର ଛାଡ଼ି ଆଉ ଆଉ ଘରେ ନିଆଁ ଲିଭିଲାଣି, କୌଣସି

କୌଣସି ଘରୁ ଅଳପ ଅଳପ ଧୂଆଁ ବାହାରୁଅଛି । ରାତି ଅନ୍ଦାଜ ଦୁଇଘଡ଼ି, ଘରମାନଙ୍କ ସନ୍ନିକଟ ବାଘସିଂହ ଆଉ ଗାଁ ଲୋକ ସମସ୍ତେ ଗୋଟାଏ ଗଛମୂଳରେ ବସିଛନ୍ତି । ବାଘସିଂହ ପଚାରିଲେ,'ନିଆଁ କପରି ଲାଗିଲା ?'ସମସ୍ତଙ୍କର ପ୍ରଶ୍ନ 'ନିଆଁ କପରି ଲାଗିଲା ?' ଉତ୍ତର ଦେଉଛି କିଏ ? କେଳୁ ରଥେ କହିଲେ, "ନିଆଁ ଲଗାଇବ କିଏ, ବାଘ ଦୁଆରକୁ କିଏ ଆସିବ ? ହିଙ୍ଗୁଳା ଠାକୁରାଣୀଙ୍କର କର୍ମ ।" ସମସ୍ତେ ତାହାଙ୍କ ମୁହଁକୁ ଚାହିଁ କହିଲେ; "ଠିକ୍, ଏହି କଥା ଠିକ୍ ।" ଗୋବିନ୍ଦ ରଥେ କହିଲେ, "ନାହିଁ ହୋ, ତାହା ନୁହେଁ ବୁଢ଼ୀ ମଙ୍ଗଳାଙ୍କ କୋପ । ଦେଖୁନାହାନ୍ତି, ମଙ୍ଗରାଜେ ବରଷକ ସାରା ପୂଜା ଲଗାଉଛନ୍ତି । ମୁଁ କେତେ ଥର କହିଲି, ପୂଜା ପଠାଅ, ଶୁଣିଲେ ନାହିଁ, ଏବେ ଦେଖିଲେ ତ ? ମୁଁ ନ ବୁଝି ନ ସୁଝି କିଛି କଥା କହେ ନାହିଁ । ଠାକୁରାଣୀ କୃଷ୍ଟ ନ ହେଲେ ଓଳପଛ ପାଳଦଉଡ଼ି ଗଦାରୁ ନିଆଁ କାହୁଁ ଅଇଲା ?" ମାଣିକ କହିଲା, "ସେ ସବୁ କଥା ଯାହା ହେଉ, ନୂଆବୋହୂ ପଦହରାଟା ଏକ ବଡ଼ ଖରାପ । ସେ ଏ ଘରେ ପାଦ ଦେବା ଦିନୁ ନାନା ଅମଙ୍ଗଳ ଗୋଡ଼ାଉଛି ।"ଶାମାମା କହିଲା, "ଏ କଥାଟା ଏକା ସତ, ଠିକ୍ ସତ । ଉପରେ ସିନା କହିପାରୁ ନ ଥିଲି । ଦେଖିଲେ ନା, ଚୈତମାସରେ କିଛି କାହିଁ ନାହିଁ, ଗାଈଟାକୁ ସାପ ଦଂଶି ଦେଲା । ସାପ କ'ଣ ଏ ଗାଁରେ ନ ଥିଲେ ? ଗାଈ କାମୁଡ଼ୁଥିଲେ କେଉଁ ଦିନ ? ମୋହର ତ ବାରପୁଞ୍ଜା ବୟସ ହେଲା, 'ବାଘସିଂହ ଘର ଗାଈକୁ ସାପ କାମୁଡ଼ିଛି' ଏ କଥା ଶୁଣି ନାହିଁ ।" ମକର ହଳିଆ କହିଲା, "ନୁହେଁ ତ କଣ ? ଦୁଇ ବରଷ ତଳେ ମୋହର ହାଣ୍ଡି ପରି ଦୁଇଟା ବଳଦ ଗୁମ ଗୁମ କରି ବସି ଗଲେ ।" ଅର୍ଜୁନା ହଳିଆ କହିଲା, "ଏହି ଆମ୍ଭ ଚୋଟାରେ, ଗୋରୁ ଚରୁଥିଲେ, ଏ ବରଷ ଗୋଟାଏ ଦେଖିବାକୁ ସପନ ।" ହଳିଆ ହଳିଆଣୀ, ଭଣ୍ଡାରି ଭଣ୍ଡାରୁଣୀ ସମସ୍ତଙ୍କ ଅନୁମାନ, ଯୁକ୍ତି ଏବଂ ପ୍ରମାଣ ପ୍ରୟୋଗଦ୍ୱାରା ସ୍ଥିର ହେଲା, ବୋହୂ ପଦହରା ଘରପୋଡ଼ାର କାରଣ ଅଟେ । ଏହି ସିଦ୍ଧାନ୍ତର ପୋଷକତା ନିମନ୍ତେ ମାଣିକ ପୁନଶ୍ଚ କହିଲା, "ଦେଖ-ନାହିଁ, ବୋହୂମାଉସୀ ଯେପରି ପାଦ ଦେଇଛି ତିନିଦିନ ଯାଇନାହିଁ, ତିନି ପକ୍ଷ ଯାଇ ନାହିଁ, ଅମଙ୍ଗଳ ସାଙ୍ଗେ ସାଙ୍ଗେ ।" ବାଘସିଂହପଚାରିଲେ,"ବୋହୂମାଉସୀକିଏ ? ବୋହୂ ମାଉସୀ କିଏ ?" ଡୋଲି ଚଢ଼ି ବୋହୂମାଉସୀର ଆଗମନ, ଅଶ୍ୱାରୋହଣ ପୂର୍ବକ ଡାଳିଯୋଡ଼ା-ଫତେସିଂହଙ୍କର ଦେବଦର୍ଶନକୁ ଯାତ୍ରା ଇତ୍ୟାଦି କଥା ଦୃଷ୍ଟ, ଯଥାଶ୍ରୁତ ସାଳଙ୍କାରେ ପୂର୍ବକଥିତ ମାଣିକ ବର୍ଣ୍ଣନା କଲା ଏବଂ ସଙ୍ଗେ ସଙ୍ଗେ ମାଉସୀ ଆଣିଥିବା ଘରର ସଂଖ୍ୟା, ଘରସ୍ଥିତ ପଦାର୍ଥମାନଙ୍କ ବିଷୟ ବର୍ଣ୍ଣନ କରିବାକୁ ବିସ୍ମୃତ ହେଲା ନାହିଁ । ସାବମା କେଉଟୁଣୀ କହିଲା, "ସେ ଗୋବିନ୍ଦପୁରକୁ କେତେଥର ଚୂଡ଼ା ବିକିବାକୁ ଯାଇ ଦେଖିଆସିଛି, ବୋହୂମାଉସୀ ରୂପ ଠିକ ରାମଚନ୍ଦ୍ର ମଙ୍ଗରାଜଙ୍କ ଘରର ଚମ୍ପା ପରି ।" ଶଙ୍କର ହଳିଆ କହିଲା, "ଯେଉଁ ଲୋକଟା ପଦାର ଘର ଆଣିଥିଲା, ସେଟା ମଙ୍ଗରାଜଙ୍କ ହଳିଆ ।" ବାଘସିଂହ ଭାଇମାନେ ମୁହଁ ଚାହାଁଚାହିଁ ହୋଇ କହିଲେ, "କାହିଁ ଆମ୍ଭେମାନେ ତ ଦାଣ୍ଡେ ଦାଣ୍ଡେ କେନ୍ଦ୍ରାପଡ଼ାରୁ ଆସୁଅଛୁଁ, ଡୋଲି କିମ୍ବା ଘୋଡ଼ା ତ ଦେଖିଲୁ ନାହିଁ ?" କେନ୍ଦ୍ରାପଡ଼ା ଦାଣ୍ଡ ଏବଂ ଡାଳିଯୋଡ଼ା ଫତେସିଂହ ଘରଠାକୁ ଗତାଗତ ଲୋକ ଗଲେ । ସେମାନେ ବାହୁଡ଼ି ଆସି ଯେଉଁ ସମ୍ବାଦ ଦେଲେ, ସେଥିରୁ ଜଣାଗଲା ସର୍ବୈବ ମିଥ୍ୟା, ମାଉସୀର ଅସ୍ତିତ୍ୱ ଅସ୍ୱୀକାର । ଏହି ଘଟଣା ଦିନେ ଗ୍ରାମ ମଧ୍ୟରେ ଅନେକ ଦିନ ପର୍ଯ୍ୟନ୍ତ ଆଲୋଚନା ହେଲା, ଆଖ ପାଖ ଗ୍ରାମରେ ମଧ୍ୟ କଥା ଚହଟିଲା । ସମସ୍ତେ ଅନୁମାନ କଲେ, ଏହା ମଙ୍ଗଳାର ମାୟା । ଆମ୍ଭେମାନେ କହୁଁ, ପିଶାଚୀର କାର୍ଯ୍ୟ ହୋଇ ପାରେ । ଡାଳିଯୋଡ଼ା ଫତେସିଂହ ସଞ୍ଜୁଳା ଆସି ଝିଅକୁ ଦେଇ ଗଲେ । ଲୋକେ କହନ୍ତି, "ପିଲାଟା ଯେପରି ଅନ୍ନ ଜଳ ଛାଡ଼ି ବସିଥିଲା, ବାପ ଦିନେ ଯାଇ ନ ଥିଲେ ପ୍ରାଣ ପାଇବା କଠିନ ହୋଇଥାନ୍ତା ।"

---

## -୧୮-

## ସାଆନ୍ତାଣୀ

"ସର୍ବେ ଚଳିବେ କାଳବଳେ
କଥା ରହିବ ମହୀତଳେ ।

ଶ୍ରାବଣ ମାସ ରାଧାଷ୍ଟମୀ ଦିନ, ଖୁବ୍ ଭୋର, ଅଳ୍ପ ଅଳ୍ପ ଅନ୍ଧାର ଅଛି, ଲୋକମାନେ ବିଛଣା ଛାଡ଼ି ନାହାନ୍ତି । ଅବଶ୍ୟ ଅନେକ ଲୋକଙ୍କ ନିଦ ଭାଙ୍ଗିଲାଣି; ମାତ୍ର ଖୁବ୍ ଦରକାର ନ ଥିଲେ ବର୍ଷା ଆଉ ଶୀତଋତୁର ପାହାନ୍ତି ବିଛଣାଟା ଲୋକମାନଙ୍କୁ ଟିକିଏ ଟାଣି ଧରେ । ମଙ୍ଗରାଜ ଘର ପୋଇଲି ମରୁଆ ଡାଲଟିଏ ତେବରି ହାତରେ ଧରି ଖାଇବା ହାତରେ କବାଟ ଫିଟାଇ ଘରୁ ବାହାରି ପଡ଼ିଲା । ହଠାତ୍ ତାହାର ଦୃଷ୍ଟି ଚଉରା ଉପରେ ପଡ଼ିଗଲା, ସେ ଥକା ହୋଇ ଠିଆ ହୋଇଗଲା । ଧଳାଟାଏ କଣ ? ତୁଳସୀ ଚଉରାଟା ମଙ୍ଗରାଜଙ୍କ ମଝି ଅଗଣା ମଧ୍ୟରେ । ସାନ୍ତାଣୀଙ୍କ ନିଜସ୍ୱ ମଧ୍ୟରେ ଚଉରାଟି । ବୃନ୍ଦାବତୀ ପୂଜା ତାହାଙ୍କ ଜୀବନର ବ୍ରତ । ତୋଟା ମଧ୍ୟରୁ ପୁଅଟିଏ ଆଣି ନିଜେ ରୋଇଛନ୍ତି । ସକାଳୁ ଉଠି ଚଉରା ଚାରିପାଖ ଖରକିବା, ଗୋବର-ପାଣିରେ ଲିପିଦେବା, ଗାଧୋଇ ଆସି ମୂଳରେ ପାଣି ଦେବା, ଅରୁଆ ଚାଉଳ ପୁଞ୍ଜାଏ ଭୋଗ ଦେବା, ସଞ୍ଜ-ଦେବା, ଏହି ସବୁ କାର୍ଯ୍ୟ କରୁ କରୁ ଦିନ ଅଣ୍ଟେ ନାହିଁ । ସଞ୍ଜ ଦେଇ ସାରି ବେକରେ ପଣନ୍ତ କାନି ପକାଇ ପ୍ରାୟ ଅଧ ଘଡ଼ିଏ ଜୁହାର ହୁଅନ୍ତି । ତୁନି ତୁନି କଣ କହନ୍ତି ବୃନ୍ଦାବତୀଙ୍କୁ ଜଣା ।

ମରୁଆ ଧୀରେ ଧୀରେ ଚଉରା ପାଖକୁ ଯାଇ ଭଲ କରି ଅନାଇଲା । ଏଁ ଏ କଣ ? ସାଆନ୍ତାଣୀ ଏଁ— ସାଆନ୍ତାଣୀ ଏଁ — ସାଆନ୍ତାଣୀ ଏଁ —ଉତ୍ତର ନାହିଁ । ମରୁଆ ଡାଲଟି ତଳେ ଥୋଇଦେଇ ଦେହରେ ହାତ ଦେଇ ହଲାଇଲା । ରାତିରେ ଅସରାଏ ପାଣି ବର୍ଷି ଯାଇଛି । ଲୁଗାପଟା ଓଦା, କାଦୁଅ ଲଟପଟ, ଦେହଟା କାଠପରି ହୋଇ ଯାଇଛି, କୁଆପଥର ପରି ଶୀତଳ । ମରୁଆ ଗୋଟାଏ ଭୟଙ୍କର ରଡ଼ି ଛାଡ଼ି ବାହୁନି ବସିଲା—"ମୋ ସାଆନ୍ତାଣି ଗୋ, ମୋ ସାଆନ୍ତାଣି ! କାହିଁ ଛାଡ଼ିଗଲ, ମୋ ସାଆନ୍ତାଣି ! ଟିମ୍ପୁଡ଼ି ପେଟବଥା କଥା କିଏ ଜାଣିବ, ମୋ ସାଆନ୍ତାଣି ଗୋ । ମୋତେ ଜର ହେଲେ କିଏ ପଥି ରାନ୍ଧି ଖୁଆଇବ, ମୋ ସାଆନ୍ତାଣି ଗୋ ।" ମରୁଆ ପାଟି ଶୁଣି ଉଆସର ସମସ୍ତେ ଧାଇଁ ଆସିଲେ, ଅଗଣା ପୂରିଗଲା । ସମସ୍ତେ ବାହୁନି ବସିଲେ, ବୋହୂମାନଙ୍କ ମୁଣ୍ଡରେ ଲୁଗା ନାହିଁ, କାନ୍ଦି ଲୋଟି ଯାଉଛନ୍ତି । ସମସ୍ତଙ୍କଠାରୁ ବେଶି ବାହୁନିଲା ଚମ୍ପା । ସେ ବାଡ଼ଦୁଆରଠାରୁ ଦାଣ୍ଡଦୁଆର ପର୍ଯ୍ୟନ୍ତ ଧାଁ ଦଉଡ଼ କରି ଡାକ ଛାଡ଼ୁଥାଏ । ସମସ୍ତେ କାନ୍ଦି ବସିଅଛନ୍ତି, କିଏ କାହାକୁ ତୁନି କରାଉଛି ? ମୁହୂର୍ତ୍ତ ମଧ୍ୟରେ ଗାଁ ଏମୁଣ୍ଡ ସେ ମୁଣ୍ଡ ବିଦ୍ୟୁତ୍ ଗତିରେ ଖବର ହୋଇଗଲା । ସ୍ତ୍ରୀଲୋକମାନେ ଚାପିପାଇଟି ଛାଡ଼ି, ପୁରୁଷମାନେ ଦୁଃଖ ଧନ୍ଦା ଛାଡ଼ି ସାଆନ୍ତାଣୀଙ୍କ ଗୁଣ ଗାଇ ବସିଲେ । ନିତାନ୍ତ ନିଃସମ୍ପର୍କୀୟା ସ୍ତ୍ରୀମାନେ ମଧ୍ୟ କାନ୍ଦିକାଇଲେ । କେହି କହିଲା—ଆଜି ମହାଷ୍ଟମୀ, ପୁଣ୍ୟଦିନରେ ଗାଁରୁ ଲକ୍ଷ୍ମୀ ଚାଲିଗଲେ । କେହି କହିଲା—ମଙ୍ଗରାଜଙ୍କ ଘର ବଢ଼ନ୍ତି ଏତିକି, ଆଜିଠାରୁ ଶିରୀ ଛାଡ଼ିଲା । ଗାଁ ସ୍ତ୍ରୀମାନଙ୍କ ମଧ୍ୟରେ ସ୍ୱାମୀସେବା କଥା ପଡ଼ିଲେ ସାଆନ୍ତାଣୀଙ୍କୁ ପଟାନ୍ତର ଦେଉଥିଲେ । ତାହାଙ୍କ ଚରିତ୍ର ଯେମନ୍ତ ନିର୍ମଳ, ଧର୍ମରେ ସେହିପରି ମତି । ସ୍ତ୍ରୀମାନଙ୍କ ସର୍ବସ୍ୱ ଧନ 'ପତିସୋହାଗ' ବିଧାତା ତାହାଙ୍କ କପାଳରୁ ପୋଛି ଦେଇଥିଲା, ମାତ୍ର ସେଥିକି ତାଙ୍କର ଶୋଚନା ନ ଥାଏ । ସେ ମନରେ ଭଲ କରି ବୁଝିଥିଲେ, ପତିସେବା ସ୍ତ୍ରୀମାନଙ୍କର ଧର୍ମ, ପତିସେବାରେ ସ୍ତ୍ରୀମାନଙ୍କ ସୁଖ । କେବଳ ପତିସେବା ନୁହେଁ, ମନୁଷ୍ୟ ସେବାକୁ ମଧ୍ୟ ସେ ମହାସୁଖକର ଜ୍ଞାନ କରୁଥିଲେ । ମୁଣ୍ଡକୁ ହାତ ପାଇଲା ଦିନୁ ପୁଅମାନେ ପାଖ ପଶନ୍ତି ନାହିଁ ।

ବୋହୂମାନେ ଯେ ଅମାନ୍ୟ କରନ୍ତି ତାହା ନୁହେଁ, ମାତ୍ର ମୁରବି ମାନ୍ୟଟା ଥିଲା ନାହିଁ । ଶାଶୂ ବାଧିକ ପଡ଼ିଛନ୍ତି ବୋଲି ଯେ ବୋହୂମାନେ ତେଲହାତଟା ଗୋଡ଼ରେ ହାତରେ ବୁଲାଇ ଦେଇଛନ୍ତି, ଏ କଥାଟା କେବେ ଦେଖିବାରେ ଆସି ନାହିଁ । ଏଇଟା କିନ୍ତୁ ସାଆନ୍ତାଣୀଙ୍କ ନିଜକୃତ ଦୋଷର ଫଳ । ଘରଣୀପଣିଆ ଜଣାଇବା, ପୁଅ, ବୋହୂ, ଗୃହକର, ପୋଇଲିମାନଙ୍କୁ ଶାସନରେ ରଖିବାର କ୍ଷମତା ତାଙ୍କର ନ ଥିଲା । ସେ କଥାଟାକୁ ସେ ମଧ୍ୟ ସୁଖ ପାଉ ନ ଥିଲେ । ତାଙ୍କଠାରେ ଧିଆ ମୂଳା ଅଧିଆ ମୂଳା ସମାନ । ତାଙ୍କୁ ଯେ ମାନିଲା ଭଲ, ଯେ ନ ମାନିଲା ସେ ମଧ୍ୟ ଭଲ । କେହି ଦଶ ପଦ ଗାଳି ଦେଉ, ଜାଡ଼ୀ ହାଉଡ଼ୀ ପରି ଥାନ୍ତି । ଶାଳଗ୍ରାମର ଶୋଇବା ବସିବା ପରି ତାଙ୍କ ହସ କାନ୍ଦ କେହି ଜାଣି ପାରିବେ ନାହିଁ । କାହାରି ସଙ୍ଗରେ କଳି କିମ୍ବା କାହାରି ସଙ୍ଗରେ ଭାବ ନାହିଁ । କାହାରି ପାଖରେ ବସି ଦୁଃଖ ସୁଖ ଦୁଇଟା କଥା କହିବାର କେହି ଦେଖି ନାହିଁ । କେବଳ ଉଆସ ମଧ୍ୟରେ କାହାର ବେମାରି ହେଲେ ଦିନ ନାହିଁ, ରାତି ନାହିଁ, ଜଗି ବସି ସେବା କରନ୍ତି । ବେମାରି ସମୟରେ ପୋଇଲି ହେଉ ବା ବୋହୂ ହେଉ, ନାହିଁ କରୁ କରୁ ଗୋଡ଼ରେ ହାତରେ ହାତ ବୁଲାଇ ଦେବେ । ବାହାରେ ହେଉ, ଘରେ ହେଉ, କେହି ଉପାସ ଥିଲେ ତାହାକୁ ନ ଖୁଆଇ ଜଳ ଛୁଅନ୍ତି ନାହିଁ । ଗାଁ ର ଦରିଦ୍ର ବୁଢ଼ୀ ବା ଅନାଥା ବିଧବାମାନଙ୍କର ସବଦା ଖବର ନିଅନ୍ତି । କାହାରି ଘରେ ଖାଇବାକୁ ନ ଥିବାର ଶୁଣିଲେ ସାଆନ୍ତଙ୍କୁ ଲୁଚାଇ, ପୁଅ ବୋହୂଙ୍କୁ ଲୁଚାଇ, ଚାଉଳ ମାଣେ, ବିରିଜାଉ ମୁଠାଏ, ଲୁଣ ବଳକଟେ, ତେଲ ଟିକିଏ, କଖାରୁ ଖଣ୍ଡେ, ଭେଣ୍ଡି ଜହ୍ନି ପୁଞ୍ଜାଏ, ଯାହାର ଯାହା ଦରକାର ପଠାଇ ଦିଅନ୍ତି । ଗାଆଁ ର କାହାରି ବୋହୂ-ଝିଅଦେହକୁ ଲାଗିଲେ ପୋଇଲି ପଠାଇ ତନଖି କରନ୍ତି । ଦେଉନ୍ତୁ ନ ଦେଉନ୍ତୁ, ଗରିବ ଦୁଃଖୀମାନଙ୍କର ତାଙ୍କଠାରେ ଗୋଟାଏ ବଡ଼ ଆଶା ଭରସା ଥାଏ । ଅନେକ ପରଜାଏ ଖାତକ, ଅନେକ ଦରିଦ୍ର ପ୍ରଜା ସାଆନ୍ତାଣୀଙ୍କ ଯତ୍ନରେ ମଙ୍ଗରାଜଙ୍କ ହାଡ଼ରୁ ମୁକ୍ତ ପାଇ-ଥିବାର ଶୁଣାଯାଏ । ମଙ୍ଗରାଜ କାହାରି ଉପରେ ଜୁଲମ କଲେ ସେ ଯଦି ବୋହୂ ଝିଅ ପଠାଇ ସାଆନ୍ତାଣୀଙ୍କ କାନରେ ଦୁଃଖ କଥାଟା ବଜାଇ ପାରିଲା ତେବେ ତ ବସ୍ । ସେଥି ସକାଶେ ମଙ୍ଗରାଜଙ୍କଠାରୁ ତେର ଗାଳି ଗଞ୍ଜଣା ଶୁଣିବାକୁ ହୁଏ । ଚମ୍ପା ଟାହିଲ ମାହିଲ କେତେ କଥା କହେ; ମାତ୍ର ସାଆନ୍ତାଣୀ ତେତେବେଳେ କାଲୁଣୀ । କାହାର ଉପକାର କରି-ପାରିଲେ କୋଟିନିଧି ପାନ୍ତି । ଶିବୁ ପଣ୍ଡିତେ ସାଧୁ-ଭାଷାରେ କହନ୍ତି, 'ସାଆନ୍ତାଣୀ ଦୟା, ସ୍ନେହ, ଭକ୍ତି ପ୍ରଭୃତି ସ୍ୱର୍ଗୀୟ ଗୁଣାବଳୀର ମୂର୍ତ୍ତିମତୀ ଦେବୀ ।'

ସାଆନ୍ତାଣୀଙ୍କର କିନ୍ତୁ ଗୋଟିଏ ବିଚିତ୍ର ସ୍ୱଭାବ ଥିଲା, ସେଟି ଦୋଷ କି ଗୁଣ, ଆମ୍ଭେମାନେ ସ୍ଥିର କରି ପାରୁ ନାହୁଁ, ଆପଣମାନେ ବୁଝନ୍ତୁ । ପାଞ୍ଚଟା କଥା ଯୋଡ଼ି ରଙ୍ଗଭଙ୍ଗ କରି କହିବାର ଶକ୍ତି ତାଙ୍କର ନ ଥିଲା, ପୁଣି କଥାଗୁଡ଼ାକ ଏତେ ଧୀର ଯେ ଦାଣ୍ଡଦୁଆର ଲୋକେ କେଭେଁ ତାଙ୍କର ତୁଣ୍ଡ ଶୁଣି ନାହାନ୍ତି; ମାତ୍ର ସାଆନ୍ତେ ଉଆସ ମଧ୍ୟରେ କୌଣସି ପୋଇଲି ବା ଗୃହକର ଉପରେ ରାଗି ଚଳି ହେଲେ ବା ମାରିବାକୁ ବସିଲେ ସାଆନ୍ତାଣୀ କିଛି ନ ବୁଝି ନ ସୁଝି ମଝିରେ ପଶିଯାନ୍ତି ଏବଂ ବିବିଧ ଯୁକ୍ତି ପ୍ରୟୋଗପୂର୍ବକ ତାହାର ନିର୍ଦ୍ଦୋଷତା ପ୍ରମାଣ କରାଇବାକୁ ବିବିଧ ପ୍ରକାର ଚେଷ୍ଟା କରନ୍ତି । ତେତେବେଳେ ତାଙ୍କର ସତ୍ୟ ମିଥ୍ୟା ଜ୍ଞାନ ଥାଏ ନାହିଁ; ସୁତରାଂ ସାଆନ୍ତଙ୍କ ରାଗଟା ତାଙ୍କର ମୁଣ୍ଡ ଉପର ଦେଇ ଚାଲିଯାଏ । ପରପାଇଁ, ବିଶେଷରେ ଦୋଷୀକୁ ରକ୍ଷା କରିବାପାଇଁ ମିଥ୍ୟା କଥା କହିବା ଏବଂ ଅନ୍ୟର ଅପରାଧ ସକାଶେ ଆପେ ଲାଞ୍ଛିତ ହେବା ଅବଶ୍ୟ ବୁଦ୍ଧିମନ୍ତର କାର୍ଯ୍ୟ ନୁହେଁ; ମାତ୍ର ଆଜଯାଏ ତାଙ୍କର ସ୍ୱଭାବ ବଦଳି ନ ଥିଲା । 'ସ୍ୱଭାବୋ ନୈବ

ମୃତ୍ୟୁରେ ।’ ଦୋଷୀ ହେଉ ବା ନିର୍ଦ୍ଦୋଷ ହେଉ, କାହାର କଷ୍ଟ ଦୁଃଖ ଦେଖିଲେ ସେ କାନ୍ଦି ପକାଉଥିଲେ ।

ଆଉ ଗୋଟିଏ କଥା, ଉଆସ ମଧ୍ୟରେ ଦୁଇଟା ପୋଇଲି ମଧ୍ୟରେ ବା ବୋହୂ ବୋହୂ ମଧ୍ୟରେ କଳି ହେଲେ ସେ ପ୍ରାୟ ଦୁର୍ବଳ ପକ୍ଷ ଧରି ଚାଲିବାର ଦେଖାଯାଏ, ଏଇଟା ଅବଶ୍ୟ ପକ୍ଷପାତିତାର ଚିହ୍ନ । ବୁଝି ସମଜ ପକ୍ଷ ଧରିବାକୁ ହୁଏ, ତାଙ୍କଠାରେ ଏ ଗୁଣର ନିତାନ୍ତ ଅଭାବ ଥିଲା ।

ସାଆନ୍ତାଣୀଙ୍କର ଗୋଟିଏ ମହତ୍ ଦୋଷ ଥିଲା— ଅବଶ୍ୟ ମହତ୍ ଦୋଷ ବୋଲିବାକୁ ହେବ । ସାଆନ୍ତେ ସେଥିସକାଶେ ଚିରକାଳ ବିରକ୍ତ । ତାଙ୍କର ଘରକରଣା ବୁଦ୍ଧି ଜଉସୁଦ ନ ଥିଲା । ଟଙ୍କା ପଇସା ଯେ କି ମହାମୂଲ୍ୟ ପଦାର୍ଥ, ସେ ତାହା ଜାଣୁ ନ ଥିଲେ । ସେ ଖୋଜନ୍ତି ନାହିଁ; ସୁତରାଂ ହାତପେଠ ହୁଏ ନାହିଁ । ଯଦି ଦୈବାତ୍ ଦୁଇ ଅଣା ଚାରିଅଣା ପଇସା, ଟଙ୍କାଟିଏ ମୁକଟିଏ ହାତରେ ପଡ଼ିଯାଏ, ଧାନଉଷୁଆଁ ହାଣ୍ଡି ତଳେ, ନୋହିଲେ କୁଣ୍ଡାହାଣ୍ଡି ତଳେ ଉଗାଡ଼ି ପକାନ୍ତି, ନୋହିଲେ ଚାଳ ବାଡ଼ରେ ଖୋସି ଦିଅନ୍ତି । ଗାଁର କାହାରି ଝିଅ ଶାଶୁଘର ଯିବାବେଳେ ଶାଢ଼ୀ ଖଣ୍ଡେ କିମ୍ବା ଥୋପ ଯୋଡ଼ାଏ କିମ୍ବା ଭୁଜା ଉଖୁଡ଼ା ଦୁଇ ମାଣ ମୁକୁନ୍ଦା ହାତରେ କିଣାଇ ଦିଅନ୍ତି କିମ୍ବା କାହାରି ଘରେ ଖାଇବାର ନ ଥିଲେ ତାହା ଭାଗ୍ୟରେ ପଡ଼େ । ଏପରି ଦେବାର ଶୁଣାଯାଏ; କିନ୍ତୁ କେହି କେବେ ଦେଖିନାହିଁ । ଯାହାହେଉ ସାଆନ୍ତାଣୀଙ୍କର ଦୋଷ ଥାଉ ବା ଗୁଣ ଥାଉ, ଘରଠାରୁ ବାହାର ପର୍ଯ୍ୟନ୍ତ ସମସ୍ତେ ହାୟ ହାୟ କରୁଅଛନ୍ତି । କେବଳ କାନ୍ଦୁ ନାହିଁ ଜଣେ । ମୁକୁନ୍ଦା ହଳିଆ ପାଳୁଆ ପାଟିଟା ଆଁ କରି ଆଖି ବୁଜି ମାଂସଶୂନ୍ୟ ଡେଙ୍ଗା ହାଡ଼ୁଆ ଗୋଡ଼ ଦୁଇଟା ଲମ୍ବାଇଦେଇ ବାଡ଼କୁ ଆଉଜି ବସିପଡ଼ିଅଛି ।

ମୁକୁନ୍ଦାର ତିନି କୁଳରେ କେହି ଥିବାର ଜଣା ନାହିଁ । ତାହାର ବୟସ, ଜାତି, କୁଳ, ଗୁଣ ଗ୍ରାମର କଥା କିଏ ଶୁଣିବେ ? ହଳିଆ ବାପୁଡ଼ା କଥା କିଏ ପଚାରେ ? ସେ ନିଜେ କହେ, ସାଆନ୍ତାଣୀଙ୍କ ଜନ୍ମ ସମୟରେ ଦାଈକୁ ଡାକିବାକୁ ଯାଇଥିଲା, ତାହା କୋଳରେ ସାଆନ୍ତାଣୀ ଏତେଡ଼ିଟିଏ, ବାପଘରୁ ସାଙ୍ଗେ ସାଙ୍ଗେ ଆସିଅଛି । ହାଉଡ଼ା କଥା ହାଉଡ଼ା ମା ଜାଣେ, କେବଳ ମୁକୁନ୍ଦା ସାଆନ୍ତାଣୀଙ୍କ ମନକଥା ବୁଝୁଥିଲା । କୌଣସି କଥାରେ ସାଆନ୍ତାଣୀ ମନୋଦୁଃଖ କଲେ ମୁକୁନ୍ଦା ଆସି ଜଳ ଜଳ କରି ତାଙ୍କ ମୁହଁକୁ ଚାହିଁ ରହେ, ସାଆନ୍ତାଣୀ ତା ମୁହଁକୁ ଚାହିଁ ମୁଣ୍ଡ ତଳକୁ ପୋତି ଦିଅନ୍ତି । ସେହି ଚାହାଣୀ ଅର୍ଥାତ୍ ନୀରବ ବକ୍ତୃତାରେ ସବୁକଥା ଛିଡ଼େ । ସାଆନ୍ତାଣୀ ସାନ୍ତ୍ୱନା ନ ପାଇ ତୁନି ହୁଅନ୍ତି । ସାଆନ୍ତାଣୀ କିଛି ମାତ୍ର ମନୋଦୁଃଖ କଲେ ଯାହା ଆଖିରୁ ଝର୍ ଝର୍ ହୋଇ ପାଣି ବୋହି ପଡ଼ୁଥିଲା, ଆଜି ମରିପଡ଼ିଛନ୍ତି, ସେ କାନ୍ଦୁ ନାହିଁ । ଯାହାର ଜଗତର ସମସ୍ତ ସୁଖ, ସମସ୍ତ ଶାନ୍ତି, ସମସ୍ତ ଭରସା, ସମସ୍ତ ଆଶା, ସମସ୍ତ ସାନ୍ତ୍ୱନା, ସମସ୍ତ ସ୍ନେହ ଏକସଙ୍ଗରେ ଶେଷ ହୋଇଥାଏ, ସେ କାନ୍ଦେ ନାହିଁ । କେବଳ ସେ ବେଳେ ବେଳେ ଫୁଁ—ଫୁଁ ନିଃଶ୍ୱାସ ପକାଉଅଛି । ବୋଧହୁଏ, ସେଥି ସକାଶେ ତାହାର ଶୁଷ୍କ ହୃଦୟ ଫାଟିଯାଉ ନାହିଁ ।

ମଙ୍ଗରାଜେ ମୁଣ୍ଡ ପାଖରେ ବସି ଏକଧ୍ୟାନରେ ସାଆନ୍ତାଣୀଙ୍କ ମୁହଁକୁ ଅନାଇ ଅଛନ୍ତି । ନିଶ୍ଚଳ, ସ୍ତବ୍ଧ ଦୁଇ ଆଖିରୁ ଲୋତକ ବହି ଯାଉଅଛି । ମଙ୍ଗରାଜଙ୍କ ଆଖିରୁ କେହି କେବେ ଲୋତକ ଦେଖି ନାହିଁ, ଆଜି ନୂତନ ଦେଖାଗଲା । ଲୋକେ କହନ୍ତି, ସ୍ନେହ ମାୟା ମମତା ଚକ୍ଷୁଲଜ୍ଜା ଧର୍ମ କର୍ମ ମଙ୍ଗରାଜଙ୍କ ମନକୁ ଛୁଇଁ ନାହିଁ । ସେ ଭଲକରି ବୁଝିଥିଲେ, “ଟଙ୍କା ଏବ ମନୁଷ୍ୟାଣାଂ ଚତୁର୍ବର୍ଗ ଫଳପ୍ରଦା ।” ଦିବା ରାତ୍ର ତାଙ୍କର ଟଙ୍କା ଥିଲା ଧ୍ୟାନ—ଟଙ୍କା ଥିଲା ଜ୍ଞାନ । ସେ ତୁନି ହୋଇ

ବର୍ଷି ଶତବାର ଅନେକ ଥର ଦେଖାଯାଇଅଛି; କିନ୍ତୁ ସେ ସମୟରେ ଏକ ପ୍ରକାର ଜ୍ୟୋତି ତାଙ୍କ ଆଖିରୁ ବାହାରୁଥାଏ । ସମୁଦ୍ରଗର୍ଭଜାତ ଉତ୍ତାଳ ତରଙ୍ଗମାଳା ବେଳାଭୂମିରେ ପଡ଼ି ଲୀନ ହୋଇଗଲା ପରି ହୃଦୟଜାତ ନାନା ଆଶା ନାନା ଚିନ୍ତାର ତରଙ୍ଗ ଆସି ଭ୍ରୂଲତାର ଉପରିଭାଗରେ ରେଖାକାର ଧରି ଲୀନ ହେଉଥାଏ । ଆଜି ଭାବନା; କିନ୍ତୁ ଅନ୍ୟରୂପ । ନେତ୍ର ଅର୍ଦ୍ଧନିମୀଳିତ, ସ୍ପନ୍ଦନଶୂନ୍ୟ, ଅଶ୍ରୁସିକ୍ତ । ମଙ୍ଗରାଜ କି ସାଆନ୍ତାଣୀଙ୍କ ସକାଶେ କାନ୍ଦୁଛନ୍ତି ? ପ୍ରିୟବସ୍ତୁର ବିୟୋଗ ମନୁଷ୍ୟ ପକ୍ଷରେ ଅସହ୍ୟ । ମଙ୍ଗରାଜ କି ପବିତ୍ର ଦାମ୍ପତ୍ୟ-ପ୍ରେମର ସ୍ୱର୍ଗୀୟ ମାଧୁରୀ ଅନୁଭବ କରୁଥିଲେ ? କାହିଁ? ସେ ସାଆନ୍ତାଣୀଙ୍କୁ ପ୍ରେମରେ ଦୁଇଟା କଥା କହିବାର ତ କେହି କେବେ ଶୁଣି ନାହିଁ । ତେବେ ଆଜି ଏତେ ବ୍ୟାକୁଳ କିମ୍ପାଇଁ ? ଯାହାହେଉ, ସାଆନ୍ତାଣୀଙ୍କ ବିଚ୍ଛେଦ ଯନ୍ତ୍ରଣା ଯେ ସେ ଅନୁଭବ କରୁଅଛନ୍ତି, ସହଜ ବିଶ୍ୱାସରେ ଆମ୍ଭେମାନେ ଏହା ବୋଧ କରୁଅଛୁଁ । ଯାହାକୁ ଆଠ କଳସ ମାଡ଼ି ବେଦୀ ଉପରେ ବିବାହ କରି ଅର୍ଦ୍ଧାଙ୍ଗରୂପେ ଗ୍ରହଣ କରିଅଛି, ସେ ଭଲ ହେଉ ବା ମନ୍ଦ ହେଉ, ତାହା ପ୍ରତି ଗୋଟାଏ ମାୟା ଥାଏ । ଏହି ନୈସର୍ଗିକ ମାନବ ଧର୍ମ ଅତିକ୍ରମ କରିବା ସହଜ-ସାଧ୍ୟ ନୁହେଁ । ଯେ ସ୍ତ୍ରୀ ଧର୍ମକାର୍ଯ୍ୟର ସହଧର୍ମିଣୀ— ପ୍ରାଣାଧିକ ସନ୍ତାନ ସନ୍ତତିଙ୍କ ଜନନୀ, ଯେ ସ୍ତ୍ରୀ ସୁଖ ଦୁଃଖରେ ଏକମାତ୍ର ସମଭାଗିନୀ, ଯେ ସ୍ତ୍ରୀ ରୋଗରେ ଶୁଶ୍ରୂଷାକାରିଣୀ, ବିପଦରେ ମନ୍ତ୍ରୀ, ଶରୀର ରକ୍ଷାରେ ଧାତ୍ରୀ, ତୁମ୍ଭେ ଯଦି ନିତାନ୍ତ ପାଷଣ୍ଡ ହୁଅ, ତାହାର ଗୁଣଗରିମା ଅନୁଭବ କରିବାର ଶକ୍ତି ଯଦି ନିତାନ୍ତ ତୁମ୍ଭର ନ ଥାଏ—ଜୀବନକାଳରେ ତାହାକୁ ପ୍ରେମ କର ଅବା ନ କର; କିନ୍ତୁ ତାହାର ବିଚ୍ଛେଦ-ଯନ୍ତ୍ରଣା ଅବଶ୍ୟ ଭୋଗ କରିବାକୁ ହେବ । ଆଉ ସାଧ୍ୱୀ ସଚ୍ଚରିତ୍ରା ପତିପରାୟଣା, ଧାର୍ମିକା ସ୍ତ୍ରୀର ଗୁଣଗରିମା ଯେଉଁ ଲୋକ ଥରେ ମାତ୍ର ହୃଦୟରେ ଅନୁଭବ କରୁଅଛି, ତାହାର ବିଚ୍ଛେଦ ଯନ୍ତ୍ରଣା ଯେ କିରୂପ ଅସହ୍ୟ, ତାହା ବର୍ଣ୍ଣନା କରିବାକୁ ଭାଷାର ସୃଷ୍ଟି ହୋଇନାହିଁ । ତାହା ସ୍ତ୍ରୀ-ବିୟୋଗବିଧୁର ବ୍ୟକ୍ତି କେବଳ ହୃଦୟରେ ଅନୁଭବ କରେ । ନାଗ ସର୍ପ ଯାହାକୁ ଦଂଶନ କରିଅଛି, ସେହି ବ୍ୟକ୍ତି ବିଷର ଯନ୍ତ୍ରଣା ଜାଣେ, କଥାରେ ବୁଝାଇବାର କଥା ନୁହେଁ । ସେହି ବ୍ୟକ୍ତି ଜାଣେ, ଶୋଣିତବାହିନୀ ଶିରା ସମସ୍ତ ଛିନ୍ନଭିନ୍ନ ହୋଇ ଯାଇ ତାହାର ହୃତ୍ପିଣ୍ଡ ଶୁଷ୍କଭାବରେ ପଡ଼ିଅଛି, ସେହି ବ୍ୟକ୍ତି ବୋଧ କରେ ଜଗତର ସମସ୍ତ ସୁନ୍ଦର ପଦାର୍ଥର ସୌନ୍ଦର୍ଯ୍ୟ, ସମସ୍ତ ମାଧୁର୍ଯ୍ୟର ମଧୁରିମା, ସମସ୍ତ ପୁଷ୍ପର ସୁଗନ୍ଧ, ସମସ୍ତ ସଙ୍ଗୀତର ତାନଲହରୀ, ସମସ୍ତ ପବିତ୍ରତା ଚିତାଗ୍ନିରେ ଦଗ୍ଧୀଭୂତ ହୋଇ ଯାଇଅଛି । ସଂକ୍ଷେପରେ କହିବାକୁ ଗଲେ, ସେ ଆପଣାକୁ ମୃତ ଲୋକ ମଧ୍ୟରେ ଜୀବିତ, ଜୀବିତ ମଧ୍ୟରେ ଆପଣାକୁ ମୃତ ବୋଲି ଜ୍ଞାନ କରେ ।

ମଙ୍ଗରାଜଙ୍କ ଜୀବନକ୍ଷେତ୍ରରେ ଦୁଇଗୋଟି ନଦୀ ପ୍ରବାହିତ ହେଉଥିଲା । ଗୋଟିଏ ଉତ୍ତାଳତରଙ୍ଗମୟୀ ସର୍ପକୁମ୍ଭୀରସଙ୍କୁଳା କୂଳପ୍ଲାବିନୀ ଚର୍ମଣ୍ୱତୀ, ଆଉ ଗୋଟିଏ ଅନ୍ତଃସ୍ରୋତା ପୂତସଲିଳା କୂଳପାବନୀ ଫଲ୍‌ଗୁ । ହିଏତ ମଙ୍ଗରାଜେ ବୁଝିଛନ୍ତି, ଫଲ୍‌ଗୁ ଚିରକାଳ ନିମନ୍ତେ ବିଦାୟ ଗ୍ରହଣ କଲା । ମଦ୍ୟପର ସମ୍ମୁଖରେ ଗିନାଏ ଜଳ, ଗିନାଏ ମଦିରା ଥୁଆ ହୋଇଥିଲେ ସେ ସୁରା ଗିନାଟିକୁ ଅଧିକ ଆଦର କରେ ଏବଂ ଯତ୍ନରେ ରଖେ; ମାତ୍ର ଜଳ ଗିନାଟିର ଏକାବେଳକେ ଅଭାବ ହେଲେ ସେ ତେତେ-ବେଳେ ବୁଝିପାରେ ସୁରା ଉନ୍ମାଦକାରିଣୀ ସତ୍ୟ; ମାତ୍ର ଜଳ ତାହାର ଜୀବନ ।

ମଙ୍ଗରାଜଙ୍କ ଅବସ୍ଥା ଦେଖି ଆମ୍ଭେମାନେ ଅନୁମାନ କରୁଅଛୁଁ, ତାଙ୍କ ମନରେ ଦୁଃଖ ଓ ଅନୁତାପ ଉଭୟ ଉପସ୍ଥିତ ହୋଇଅଛି । ଦୁଃଖରେ ମନୁଷ୍ୟ କାନ୍ଦେ, ଅନୁତାପରେ କାନ୍ଦେ ନାହିଁ, ଦୁଃଖ ହୃଦୟର ଜ୍ୱଳନ୍ତ ଅଙ୍ଗାର, ଅନୁତାପ ତୁଷାନଳ । ନିଜର ଦୁଷ୍କୃତି, ନିଜର ଅଯତ୍ନ ସହିତ ସାଆନ୍ତାଣୀଙ୍କ ମୃତ୍ୟୁର ନିକଟ ସମ୍ବନ୍ଧ ଥିବାର ଅନୁମାନ କରି ସେ ଅନୁତାପ କରୁଅଛନ୍ତି କି ?

ତାଙ୍କଦ୍ୱାରା ସଂଖ୍ୟାତୀତ ଦୁଷ୍କୃତ ଅନୁଷ୍ଠିତ ହୋଇଅଛି । କାହିଁ, କେବେ ହେଲେ ସେ ତ ଅନୁତାପ କରୁଥିବାର କେହି ଦେଖି ନାହିଁ । କିଏ ବୋଲିପାରେ ? କ୍ଷଣ-ପରିବର୍ତ୍ତନଶୀଳ ମନୁଷ୍ୟସ୍ୱଭାବ କିଏ ଜାଣେ ? ବିଶ୍ୱବିଧାତା ସମାନ ଉପାଦାନରେ ଜଗତରେ ସମସ୍ତ ନରନାରୀଙ୍କୁ ସୃଷ୍ଟି କରିଅଛନ୍ତି । ରକ୍ତ, ମାଂସ, ଅସ୍ଥି,ମଳ ମୂତ୍ରରେ ଯେପରି ଶରୀର ଗଠିତ; ସେହିପରି ଦୟା, ମାୟା, ସ୍ନେହ, ମମତା, ହିଂସା, ଦ୍ୱେଷ ନିଷ୍ଠୁରତା ପ୍ରଭୃତି ବୃତ୍ତିମାନଙ୍କରେ ମନ ଗଠିତ । ସେହି ସମସ୍ତ ବୃତ୍ତି ଉପଯୁକ୍ତରୂପେ ସମାନଭାବରେ କାର୍ଯ୍ୟକାରୀ ହେଲେ ମନୁଷ୍ୟ ମନୁଷ୍ୟ ହୋଇଥାଏ । ମାତ୍ର ଯେବେ ଗୋଟିଏ ଉପାଦାନ ବଳବତ୍ତର ହୋଇ ସୀମା ଲଙ୍ଘନ-ପୂର୍ବକ ଅନ୍ୟ ବୃତ୍ତିମାନଙ୍କ ଉପରେ ଆଧିପତ୍ୟ ବିସ୍ତାର କରେ, ତେବେ ସେ ମନୁଷ୍ୟର ମନୁଷ୍ୟତ୍ୱ ଲୁପ୍ତ ହୋଇ ଯାଏ, ତେତେବେଳେ ହୁଏତ ସେ ଦେବତା, ନଚେତ୍ ରାକ୍ଷସ ରୂପରେ ପରିଣତ ହୁଏ । ଅର୍ଥାତ୍ ମନୁଷ୍ୟର ମନ ସ୍ୱର୍ଗୀୟ ଓ ନାରକୀୟ ଦୁଇପ୍ରକାର ବୃତ୍ତିରେ ଗଠିତ। ସ୍ୱର୍ଗୀୟବୃତ୍ତି ମନୁଷ୍ୟକୁ ଦେବରୂପରେ ପରିଣତ କରେ ଓ ନାରକୀୟ ବୃତ୍ତି ରାକ୍ଷସ କରି ପକାଏ । ଯଦି ତୁମ୍ଭେ ଶୁଣ, ଗୋଟିଏ ଲୋକ ଦୟାପରବଶ ହୋଇ ଅନ୍ୟର ଜୀବନ ରକ୍ଷା କରିବାକୁ ଯାଇ ଆପଣାର ଜୀବନ ବିସର୍ଜନ କଲା, ତେତେବେଳେ ତାହାକୁ କି ଦେବତା କହିବ ନାହିଁ ? ଯେତେବେଳେ ଶୁଣ, ଜଣେ ଲୋକ କେତେ ଖଣ୍ଡ ସୁନା ଅଳଙ୍କାର ସକାଶେ ଗୋଟିଏ ଶିଶୁହତ୍ୟା କଲା, ମିଳାଇ ଦେଖ, ପୁରାଣବର୍ଣ୍ଣିତ ରାକ୍ଷସ ସହିତ ତାହାର ମେଳ ହେଉଅଛି କି ନା ? ମାତ୍ର ଏପରି ଦୃଷ୍ଟାନ୍ତ ବିରଳ ନ ଥିଲେ ମଧ୍ୟ ସଚରାଚର ଦେଖାଯାଏ ନାହିଁ । ମନୁଷ୍ୟ ଚିରକାଳ ମନୁଷ୍ୟ ଏବଂ ମନୁଷ୍ୟ ମନର ମୂଳ ଉପାଦାନ ସମାନ ଥିଲେ ମଧ୍ୟ ବାହ୍ୟ ପ୍ରକୃତି ଅସାମଞ୍ଜସ୍ୟମୟ । କୋଟି କୋଟି ମନୁଷ୍ୟ ମଧ୍ୟରେ ଜଣକ ରୂପ ସହିତ ଅନ୍ୟ ଜଣକର ରୂପର ମିଳନ ନାହିଁ, ମାନସ ପ୍ରକୃତି ମଧ୍ୟ ସେହିପରି । କାହାର କାହାର କୌଣସି ଚିତ୍ତବୃତ୍ତି ବଳବତୀ, କାହାର ଦୁର୍ବଳା, କାହାର କାହାର ଚିରନିଦ୍ରିତା । ସମୟବିଶେଷରେ ଘଟନାଚକ୍ର ପରିବର୍ତ୍ତରେ ନିଦ୍ରିତା-ବୃତ୍ତି ସମସ୍ତ ଜାଗରିତ ହୋଇ ଉଠିବାର ଦେଖାଯାଏ । ମଦ୍ୟପ ଦୁରାଚାର ଜଗାଇ ମାଧାଇ ପରମବୈଷ୍ଣବ ହେବେ; କିଏ ଜାଣିଥିଲା ? ଆଉ ଖ୍ରୀଷ୍ଟବିଦ୍ୱେଷୀ ଅତ୍ୟାଚାରୀ ପାଉଲ ଆଜି ପୂଜନୀୟ ମହର୍ଷିପଦବାଚ୍ୟ । ଗାଧିନନ୍ଦନ ରାଜର୍ଷି ବିଶ୍ୱାମିତ୍ରଙ୍କର ସହସ୍ର ସହସ୍ର ଯୁଗ-ବ୍ୟାପୀ ତପସ୍ୟା ତତୋଽଧିକ ଜ୍ୱଳନ୍ତ ବ୍ରହ୍ମନିଷ୍ଠା ମେନକାର ନିମେଷ ମାତ୍ର ଅପାଙ୍ଗ ଦୃଷ୍ଟିରେ ଟଳିଗଲା । ବିଶେଷ ଅନୁଧାବନ କରି ଦେଖ, ଏପରି ହଠାତ୍ ପରିବର୍ତ୍ତନର ମୂଳ କାରଣ ଘଟନା ଏବଂ ସଂସର୍ଗ ଭଗବାନ ଶଙ୍କରାଚାର୍ଯ୍ୟଙ୍କର ମହାବାକ୍ୟ ସମସ୍ତଙ୍କର ସ୍ମରଣ ରଖିବାର ଉଚିତ —

> "କ୍ଷଣମିହ ସଜ୍ଜନସଂଗତିରେକା
> ଭବତି ଭବାର୍ଣ୍ଣବତରଣେ ନୌକା ।"

ସନାତନ ବ୍ରହ୍ମଧର୍ମର ଉପଦେଶ—ତୁମ୍ଭେ ପାପକୁ ଘୃଣାକର, ପାପୀକୁ ଘୃଣାକର ନାହିଁ ।

ଯେଉଁ ବୃତ୍ତିର ବଶମ୍ବଦ ହୋଇ ମନୁଷ୍ୟ ଅନୁତାପ କରେ, ମଙ୍ଗରାଜଙ୍କର ସେହି ବୃତ୍ତି ଆଜି ଉତ୍ତେଜିତ ହୋଇ ଉଠି ନାହିଁ, ଏ କଥା କିଏ କହିପାରେ ? ଆମ୍ଭେମାନେ ଅନ୍ତର୍ଯ୍ୟାମୀ ନୋହୁଁ, ମଙ୍ଗରାଜଙ୍କର ମନର ଭାବ କିପରି ଜାଣିବୁଁ ? ଜାଣିଲେ ମଧ୍ୟ ଦୁଃଖ ଏବଂ ଅନୁତାପ ଯୁଗପତ୍ କିପରି ତାହାଙ୍କ ମନକୁ ବଶୀଭୂତ କରି କଣ୍ଠରୋଧ ଏବଂ ବାହ୍ୟଜ୍ଞାନ ଶୂନ୍ୟ କରି ପକାଉଅଛି, ତାହା ବର୍ଣ୍ଣନା କରି ଆପଣଙ୍କୁ ବୁଝାଇ ଦେବାର ଶକ୍ତି ନାହିଁ । ଜଡ଼ା ଯେପରି କଥା କହି ନ ପାରି ହାତ ଗୋଡ଼ ହଲାଇ ଆପଣା ମନ ଭାବ ପ୍ରକାଶ କରିବାକୁ ଚେଷ୍ଟା କରେ, ଆମ୍ଭେମାନେ ସେହିପରି ଏଣୁ ତେଣୁ ଗୁଡ଼ାଏ କହି ପକାଇଲୁଁ ।

ହେ ପାଠକ ଅବଧାନ, କ୍ଷମା କରନ୍ତୁ, ଏତକ ହେଉ, ଦେବଦୁନ୍ଦୁଭି ଅଦ୍ଭୁତ ନାଗରା ବାଜିଲାଣି, ଶୁକ୍ଳପକ୍ଷଉଡ଼ ଗୋଟାଇ ନେଇ ମଙ୍ଗଳ ପେଡ଼ିରେ ରଖିବା ସକାଶେ ଗ୍ରାମରୁ ସୁଲକ୍ଷଣୀ ଅଦ୍ଭୁତ ସ୍ତ୍ରୀମାନେ ଦାଣ୍ଡକୁ ଚାହିଁ ବସିଛନ୍ତି, ଏତକ ହେଉ ।

'ହରି ହରି ବୋଲ ମନ ।'

———

-୧୯-

## ପୁଲିଶ ତଦାରଖୀ

ପ୍ରତିଦିନ ଗୋବିନ୍ଦପୁରରେ ଯେପରି ରାତି ପାହେ, ଆଜି ମଧ୍ୟ ଠିକ୍ ସେହିପରି ପାହିଅଛି; କିନ୍ତୁ ସୂର୍ଯ୍ୟ ସଙ୍ଗେ ଦେଖା ନାହିଁ । ମେଘଟା ଝିରଝିର ଫିର ଫିର କରୁଥିଲା । 'ସକାଳ ମେଘ ମେଘ ନୁହେଁ, ସକାଳ କୁଣିଆ କୁଣିଆ ନୁହେ ।' ଆକାଶଟା ଟିକିଏ ସଫା ହୋଇଗଲାଣି, ବର୍ଷାବନ୍ଦ କାମ ସରିଛି, କେହି ବିଲବାଡ଼ିକୁ ଯିବାକୁ ନାହିଁ । କେହି ପିଣ୍ଡାରେ ବସି ବାଟଣା ବାଟୁଛି, କେହି ଗୁହାଳ କଡ଼ାରେ ଲାଗିଛି, କେହି କେହି ଝାମ୍ପିଟାଏ ମୁଣ୍ଡେଇ ହାତରେ ଦଉଡ଼ି ଖଣ୍ଡେ ଦା'ଟାଏ ଧରି କାହାର୍ଲାଟାଏ ଓଟାର ଓଟାର ବାହୁଙ୍ଗିଟାଏ କାନ୍ଧରେ ପକାଇ ଘାସ କାଟିବାକୁ ବାହାରିଅଛି, କେହି ପିଢ଼ାରେ ଚଢ଼ି କଖାରୁଡଙ୍କ ସଳଖି ଦେଉଅଛି, ଘରେ ଲୁଣ ନ ଥିବାର ଶୁଣି ହରି ପୁହାଣ ବିବିଧ ଯୁକ୍ତି ପ୍ରଦର୍ଶନପୂର୍ବକ ଆପଣା ଭାର୍ଯ୍ୟାର ଅପରିମିତ ବ୍ୟୟଶୀଳତା ସାବ୍ୟସ୍ତ କରୁଅଛି । ମାଇକିନିଆମାନେ ବାସିପାଇଟି ସାରି ବାଡ଼ ପୋଖରୀକୁ ବାହାରିଲେଣି । ଟେଙ୍କିସାଇଟା ଝସ୍—ଦୁମ୍, ଝସ୍—ଦୁମ୍ ଶବ୍ଦରେ ଉଚ୍ଛୁଳି ପଡ଼ୁଅଛି, ଟେଙ୍କିଆଣୀ-ମାନେ ପିଣ୍ଡାରେ ବସି ଖଡ଼ର ଖଡ଼ର କରି ନଟେଇ ବୁଲାଇ ପକାଉଅଛନ୍ତି । ବେଳ ଅନ୍ଦାଜ ଦିନଦଣ୍ଡକ ଦଣ୍ଡେ ଦୁଇଦଣ୍ଡ ବେଶି, ଶାମ ସାହୁ ଘର ହଳିଆ ଗୋପାଳ ସାମଲ ଝାମ୍ପିଟିଏ ମୁଣ୍ଡରେ ଦେଇ କୋଡ଼ ଧରି ନଇଁପଡ଼ି ବିଲର ହିଡ଼ ବାନ୍ଧୁଥିଲା । ବାଟଚାଲିଆ ବିଲ, ସାଆନ୍ତ ଘର ହଳିଆ ଘୁଷୁରିଆ ଗୋବରା ଜେନା ଘରଆଡ଼କୁ ଚଞ୍ଚଳ ଚାଲିଅଛି, ଗୋପାଳିଆ ଉପରେ ନଜର ପଡ଼ିଯିବାରୁ ତାକୁ ହାତ ଟେକି ଇଶାରା କରି ପାଖକୁ ଡାକିଲା । ତାକୁ କହିଲା, "ମୁଁ ଗୋଟାଏ ଘର କାମରେ ଯାଉଛି, ଘର ଗୁପ୍ତ କଥା, ତୋତେ ବିଶ୍ୱାସ ପାଏ ବୋଲି କହୁଛି ।" ତାହା କାନରେ ଭୁନ ଭୁନ କରି କ'ଣ କହିଲା । "ବୁଝି ଖବରଦାର ! ଏ କଥା ଯେମନ୍ତେ ଆଉ କାହା କାନରେ ନ ପଡ଼େ, ସାଆନ୍ତରେ ମନା ଅଛି ।" ଘୁଷୁରିଆ ଯାଉଁ ଯାଉଁ ବାଟରେ ମକର ଜେନା ପାଣକୁ ଭେଟିଲା, ତାହା କାନରେ ମଧ୍ୟ ଭୁନ ଭୁନ କେତେଟା କଥା କହି କଥାଟା ଗୁପ୍ତରେ ରଖିବା ସକାଶେ ଉପଦେଶ ଦେଇ ଚାଲିଗଲା । ତାହା ବାଦ ଦିନେଇ ସାହୁ, ବିନୋଦିଆ ନଟବରିଆ, ଖିମାମା ଏମାନଙ୍କ ସଙ୍ଗରେ ସାକ୍ଷାତ ହେଲା, ସେମାନଙ୍କୁ ମଧ୍ୟ ସେହିପରି ଭୁନ ଭୁନ କହି ସେହିପରି ଗୁପ୍ତରେ ରଖିବାକୁ ଉପଦେଶ ଦେଲା । ଗୋପାଳିଆ କାମ କରିବ କଣ, ସାଉପାଖକୁ ଧାଇଁଲା—ହରି ସାହୁ କହିଲା ଶାମ ସାହୁକୁ, ହଟିଆ କହିଲା ନଟିଆକୁ, ଜେମାମା କହିଲା ଶାମାମାକୁ, ଶ୍ରୀମତି କହିଲା କନ୍ୟାବୋହୂକୁ, ଗ୍ରାମ ଗୋଟାକଯାକ କୁହାକୁହି ହେଲେ । ସମସ୍ତଙ୍କର ଭୁନ ଭୁନ କଥା, ଗୋପନ ରଖିବାକୁ ସମସ୍ତଙ୍କର ଉପଦେଶ । କେହି କହିଲା, ଉଚ୍ଛୁଣି ଜମାଦାର ପହଞ୍ଚିବ, ଆଉ ଜଣେ ପ୍ରତିବାଦ କରି କହିଲା, ନାହିଁ ନାହିଁ, ଖୁଣି ମାମଲା ଦାରୋଗା ନିଜେ ଘୋଡ଼ାରେ ଚଢ଼ି ଆସିବେ; ମାତ୍ର ଜାଣିବା ଶୁଣିବା ଲୋକମାନେ କହିଲେ, ଏ କି ଡମ ଆମ ଘର କଥା ? କଟକରୁ ନିଜେ ଲୁମ୍ଫୁନ ପଲଟମ ଘେନି ଆସିବ, ଗାଁଲୋକେ ଯେ ବନ୍ଧା ଛନ୍ଦା ହେବେ, ଏହା ନିଃସନ୍ଦେହ, ସନ୍ଦବାଦସମ୍ମତ । ଦଣ୍ଡକ ମଧ୍ୟରେ ଗାଁ ନିସ୍ତବ୍ଧ ହୋଇଗଲା । ବୋହୂ ଗୁଡ଼ାକ ପାଣିରେ ବୁଡ଼ପଡ଼ି ଘରକୁ ଧାଇଁଛନ୍ତି, ଲୁଗା ଚିପୁଡ଼ିବାକୁ ବେଳ ନାହିଁ, ଲୁଗା ଧଡ଼ର ଧଡ଼ର ବାଜି ଗୋଡ଼ତଳେ ଝରି

ଝରହୋଇ ପାଣି ବୋହି ପଡ଼ୁଅଛି । ଚଞ୍ଚଳରେ ମାଠିଆ ପୂରାଇ ପାର ନାହିଁ, ଅଧମାଠିଆଏ ପାଣି, ବେଶି ଦେଶହିତୈଷୀମାନେ ସଭାରେ ବକ୍ତୃତା କଲା ପରି ଘଡ଼ିରେ ଘଡ଼ିରେ କରି ଭାରି ଗର୍ଜନ କରୁଅଛି । ବେବନ୍ଦସ୍ତ ଅବଧାନେ ସହସା ଅନ୍ତର୍ଦ୍ଧାନ ହେବାରୁ ଗୁଡ଼ ଟୋକାଗୁଡ଼ାକ ଗୋହିରୀରେ ଭାରି ଗୋଳମାଳ କରି ଧାଁ ଦଉଡ଼ ଲଗାଇ ଅଛନ୍ତି । ଖୁଣି ଆସାମୀକୁ ପୁଲିସ ବାନ୍ଧି ନେଲା ପରି ଗୋଟାଏ ସାନ ପିଲାକୁ ବଡ଼ ଗୁଡ଼ ଧରି ଘେନି ଯାଇଥିଲେ । ସେହି ପିଲାଟା ସମସ୍ତଙ୍କ ଠାରୁ ବେଶି ଧାଇଁଛି ।

ଦୂଷୁରିଆ ଫେରି ଆସି ସାଆନ୍ତଙ୍କୁ ଖବର ଦେଲା, ଗୋବରା ଜେନା ଘରେ ନାହିଁ, ସେ କାଲି ରାତିରୁ ଘରକୁ ଯାଇ ନାହିଁ । ସାଆନ୍ତେ ପ୍ରଥମେ ହାଲିଆ ପଠାଇଲେ, ତାହା ବାଦ ଆପେ ଚଳିଯାଇ ଦୁଆର ଦୁଆର ବୁଲିଲେ, ଜଣକର ସୁଦ୍ଧା ଭେଟ ପାଇଲେ ନାହିଁ । ଆଉ ଯାହା ଦୁଆରକୁ ଯାନ୍ତି, ତାହାର କବାଟ କିଳା, ଘରେ କେହି ନାହିଁ । ମଙ୍ଗରାଜ ନିତାନ୍ତ ବ୍ୟସ୍ତ ହୋଇ ଚଡ଼ ଘର ବାହାର ହେଉଛନ୍ତି, କାହାରି ଭେଟ ନ ପାଇ କିଛି ସ୍ଥିର କରିପାରୁ ନାହାନ୍ତି । ଦୂଷୁରିଆ ହଳିଆ ଗୋଟାଏ ଠେଙ୍ଗାଧରି ବାଡ଼ପଟରେ କୁକୁର ତଡ଼ୁଅଛି, ଯୋଡ଼ାଏ ବଳୁଆ କଆବଣ ଭିତରେ ପଶି ଜଳ ଜଳ କରି ଓଳାକୁ ଚାହିଁ ଭୁନହୋଇ ପଡ଼ିଛନ୍ତି ।

ବେଳ ଦୁଇ ପ୍ରହର ଗଡ଼ିଗଲା । ଗୋବିନ୍ଦପୁର ଗ୍ରାମ ପୂର୍ବମୁଣ୍ଡରେ ଗୋଟାଏ ଟାଙ୍ଗଣ ଘୋଡ଼ା ଉପରେ ଏକ ବିଶାଳ ମୂର୍ତ୍ତି ସୁଆର ଦେଖା ଗଲେ । ସୁଆରଙ୍କ ବିଶାଳଦାଢ଼ି ଗୁଚ୍ଛ ଯୋଡ଼ାଇ ପକାଇଅଛି, ଦେହରେ ଛ କଳିଆ ଢିଲା ହାତ ଚପକନ୍, ମୁଣ୍ଡରେ ଜାମଦାନ ଲୁଗାର ବାଙ୍କ ଟୋପି, ଗୋଡ଼ରେ ଢିଲା ପାଇଜାମା । ଘୋଡ଼ା ଠୁକ ଠୁକ କରି ମିଠା କଦମ ଚାଲୁଅଛି । ଆଗରେ ପଛରେ ପାଞ୍ଚଜଣ ଠେଙ୍ଗାବନ୍ଧ ଚୌକିଦାର ନସର ପସର ହୋଇ ଧାଇଁଛନ୍ତି । ସମସ୍ତଙ୍କ ଆଗରେ ଗୋବରା ଜେନା ଠେଙ୍ଗା କାନ୍ଧେଇ ଧାଇଁଛି । ମଙ୍ଗରାଜଙ୍କ ଦୁଆର ଆଗରେ ଗୋବରା ପଛମୁହିଁ କରି ଛିଡ଼ା ହୋଇଗଲା । ସୁଆର କହିଲେ, "ଏହି ଘର ?" ଗୋବରା ହାତଯୋଡ଼ି କହିଲା, 'ଖୋଦାବନ୍ଦ !' ସୁଆର ଘୋଡ଼ାରୁ ଓହ୍ଲାଇ ପଡ଼ି 'ବିସମିଲ୍ଲା' କହି ନିଃଶ୍ୱାସଟାଏ ପକାଇଲେ ।

ଘଡ଼ିକ ଉତ୍ତାରେ ଗୋହିରୀଦାଣ୍ଡରେ ଆହୁରି ଏକ ଘୋଡ଼ସୁଆରମୂର୍ତ୍ତି ଦେଖାଗଲା । ଘୋଡ଼ାଟି ଦଲଖିଆ ଟଟୂ, ବୟସ ପ୍ରବୀଣତାର ସାକ୍ଷ୍ୟ ଦେବା ନିମନ୍ତେ ଦେହର ପଞ୍ଜରା ହାଡ଼ଗୁଡ଼ାକ ଉପରକୁ ବାହାରି ପଡ଼ିଅଛି, ପଛ ଦୁଇ ଗୋଡ଼ ଘଷି ହୋଇ ଲୋମଶୂନ୍ୟ ଘାଯୁକ୍ତ ହୋଇଗଲାଣି, ଖୋଲ ପଶିଯାଇ ବଡ଼ ବଡ଼ ଆଖି ଦୁଇଟା ବାହାରି ପଡ଼ିଅଛି, ପିଠିରେ ଖୁରସା, ତାହା ଉପରେ ଲାଲ ବନାତର ଗୁରିଜାମା । ସୁଆରଟି କିନ୍ତୁ ବିଶାଳ ଶରୀର, ପୋଷାକ ମଧ୍ୟ ବଡ଼ଲୋକ ଭଳିଆ -- ମାଣିଆବନ୍ଦୀ ଗୁରିପୁଲିଆ ଧୋତି ପିନ୍ଧା, ଦେହରେ ବନ୍ଧଲଗା ଗଞ୍ଜା ମୁଣ୍ଡରେ ମଚ୍ଚିସିଆ ଛପୁଲିଆ ରୁହୁମୀ ବନ୍ଧା । ଘୋଡ଼ା ପଛରେ ଜଣେ ଚୌକିଦାର ବାଉଁଶ ଠେଙ୍ଗା କାନ୍ଧରେ ପକାଇ ଡାହାଣ ହାତରେ ଖଣ୍ଡେ ବାସଙ୍ଗଛଡ଼ି ଧରି ବାଡ଼ୋଉଅଛି ଏବଂ ପାଟିରେ ଟାକରା ଫୁଟାଉଅଛି । ସଇସ ପାଣଟୋକା ଖଣ୍ଡେ ଖୋଟ ଦଉଡ଼ି ବାଗଡ଼ୋର ଲଗାଇ ଆଗରେ ଭିଡ଼ୁଅଛି । ଘୋଡ଼ାଟା ବେକ ଲମ୍ବ କରିଦେଇ ବଡ଼ କଷ୍ଟରେ ଧୀରେ ଧୀରେ ଟଳ ଟଳ ହୋଇ ଚାଲୁଅଛି । ଏ ସୁଆର ମଧ୍ୟ ପୂର୍ବ ସୁଆରଙ୍କ ପରି ମଙ୍ଗରାଜ ଦୁଆର ଆଗରେ ଜଣେ ଲୋକ କାନ୍ଧରେ ଦୁଇ ହାତ ଭରା ଦେଇ ଓହ୍ଲାଉଁ ଓହ୍ଲାଉଁ ହାମୁଡ଼ି ପଡ଼ିଗଲେ । ଉଠି ପଡ଼ି ସେହି ଲୋକ ଗାଲରେ ଠୋ କରି ଚାପୁଡ଼ାଟାଏ ମାରିଲେ – ଅର୍ଥାତ୍ ଲୋକମାନେ ଜାଣନ୍ତୁ, ସେହି ଲୋକର ଅସାବଧାନତା ଏହି ପତନର କାରଣ ଅଟେ; ନୋହିଲେ ଏତେ

ପକ୍କା ସୁଆର ପଡ଼ିବାର ନୁହେ । ସୁଆର ଓହ୍ଲାଇଯିବା ମାତ୍ରକେ ସହସ୍ର ପିଲା ଧରୁଁ ଧରୁଁ ଜଗନ୍ନାଥ ମହାପ୍ରଭୁଙ୍କ ରଥଆଗ ଶରଧା ବାଲିରେ ଭକ୍ତ ଗଡ଼ିଗଲା ପରି ଘୋଡ଼ାଟା ତିନି ଚାରିଥର ଗଡ଼ିଯାଇ ଠିଆହେଲା । ଘୋଡ଼ାଟା ଧୂଳିରେ ଗଡ଼ୁଥିବା ସମୟରେ ସୁଆର ମଧ୍ୟ ହାତନିଷିଡ଼ି ଦେହର ସ୍ଥାନଅସ୍ଥାନରେ ଯାବୁଗୁଡ଼ାକ କୁଣ୍ଡେଇ ପକେଇଲେ ।

ସେଖ୍ ଇନାଏତ୍ ହୋସେନ୍ କଟକ ଜିଲ୍ଲାରେ ଜଣେ ଅଉଲନମ୍ବର ପୁଲିସ ଦାରୋଗା, ପାର୍ଶି ଇଲମରେ ଭାରି ମଜ୍‌ବୁତ୍ । ଓଡ଼ିଆ ନାଲିଏକ ଇଲମ୍, ସେଥି ସକାଶେ ସେ ଲେଖନ୍ତି ନାହିଁ, ସରକାରୀ କାଗଜରେ ପାର୍ଶି ଦସ୍ତଖତ୍ କରନ୍ତି । ଲାଏକଣ୍ଡ ହେବାରୁ ବାର ବରଷ ହେଲା ଏକ କଲମରେ କେନ୍ଦ୍ରପଡ଼ା ଥାନାରେ ଅଛନ୍ତି । ଗଲା ବରଷ କେବଳ ସଦର କଚେରି ସେରସ୍ତାଦାର ଆଉ ପେସ୍କାରଙ୍କ ପାର୍ବଣ ଫରମାସ ପହଞ୍ଚିବାରେ ବିଳମ୍ବ ହେବାରୁ ଥରେ ବଦଳିର ଗୋଳମାଳ ଶୁଣା ଯାଇଥିଲା । ମୁନସି ଚକ୍ରଧର ଦାସ ମଧ୍ୟ ଜଣେ ଓଆକଫକାର ପୁଲିସ ଅମଲା । ଏହାଙ୍କ ରିପୋର୍ଟ ପଢ଼ି ମେଜେଷ୍ଟ୍ରର ସାହେବ ଭାରି ଖୁସ୍ ଥିବାର ଚୌକିଦାରମାନଙ୍କଠାରୁ ସର୍ବଦା ଶୁଣାଯାଏ ।

ମଙ୍ଗରାଜଙ୍କ କଚେରି ମେଲାରେ ପୋଲିସ କଚେରି ବସିଅଛି । ଖୋଦ ଦାରୋଗା ସେଖ୍ ଇନାଏତ୍ ହୋସେନ୍ ଖଣ୍ଡେ ସତରଞ୍ଜିରେ ଦାଢ଼ି ମେଲାଇ ଦେଇ ବସିଅଛନ୍ତି । ଆଗ ଡାହାଣ ପାଖରେ ମୁନ୍‌ସି ଚକ୍ରଧର ଦାସ ହେଁସ ଉପରେ ବସ୍ତା ଦୋଡ଼ା ଚାରିଜାମାରେ ବସିଅଛନ୍ତି । ଆଗରେ କୋଡ଼ିଏ ହାତ ଦୂରରେ ବରକନ୍ଦାଜ ଗୋଲାମ କାଦର ଓ ହରି ସିଂହ ଏବଂ ପାଞ୍ଚ ଜଣ ଚୌକିଦାର ଛିଡ଼ା ହୋଇଅଛନ୍ତି । ରାମଚନ୍ଦ୍ର ମଙ୍ଗରାଜ ଗ୍ରେପ୍ତାର୍ ହୋଇ ସେମାନଙ୍କ ନଜରବନ୍ଦରେ ମୁଣ୍ଡକୁ ତଳେ ପୋତି ଦେଇ ବସିଅଛନ୍ତି । ମଙ୍ଗରାଜଙ୍କ ଘର ଚାରିପିଟି ମହାସଭା ବସିଗଲାଣି, ବାହାର ମନୁଷ୍ୟ ଭିତରକୁ ଯିବାକୁ, ଭିତର ମନୁଷ୍ୟ ବାହାରକୁ ଆସିବାକୁ ହୁକୁମ ନାହିଁ । ପ୍ରଥମେ ସ୍ତ୍ରୀଲୋକମାନଙ୍କୁ ଏକତରଫ କରି ଦିଆଯାଇ ଘର ଖାନତଲାସ ଆରମ୍ଭ ହେଲା । ଘରର ପ୍ରତ୍ୟେକ ସିନ୍ଦୁକ ପେଟେରା ଆଡ଼ଖାର ତଲାସ ହେଲା, ଧାନ ଅମାରରେ ଲୁହା ଗଜ ମାରି ତଦାରଖ ହେଲା, ଘଡ଼ହାଣ୍ଡି ଖୋଜାଗଲା, ଦୁଇ ଚାରି ଜାଗା ଖୋଳାଗଲା, ଦୁଇ ଚାରି ଜାଗା ଚାଳ ଓଲଟା ଗଲା, କୌଣସି ସନ୍ଦେହୀ ମାଲ ଠିକଣା ହେଲା ନାହିଁ । କେବଳ ମଙ୍ଗରାଜଙ୍କ ପହଡ଼ ଘରୁ ତିନି ଚାରି ହାତ ଲମ୍ବା ରେକେ ମୋଟ ଗୋଟାଏ ବାଉଁଶ ଠେଙ୍ଗା ବରାମଦ ହେଲା । ବାଡ଼ି ପଛ ଓଳିତଳେ ଗୋଟାଏ ସ୍ତ୍ରୀଲୋକର ଲୁଗା ଖଣ୍ଡେ ପୁରୁଣା ହେଁସରେ ଘୋଡ଼ା ହୋଇଥିବାର ବରାମଦ ହୋଇ ଦାଣ୍ଡଦୁଆରକୁ ଅଣାଗଲା । ସେହି ଲୁଗା ତନ୍ତୁଆଣୀ ସାରିଆର ଥିବାର ଗୋବରା ଜେନା ସନାକ୍ତ କଲା । ଦାରୋଗା ଦାଢ଼ିରେ ହାତ ବୁଲାଇ କହିଲେ, "କେଉଁ ରାମଚନ୍ଦର ମଙ୍ଗରାଜ ! ଅବ୍ କ୍ୟା ମତଲବ ହୈ—ରତନପୁର ଡୋମ୍ ଲୋକୋଁକା ମାମଲା ଇୟାଦ ହେ କି ନାହିଁ ।" ମୁନ୍‌ସି କହିଲେ, "ଏକା ମାଘରେ ଶୀତ ଗଲା ବୋଲି ମଙ୍ଗରାଜେ ମନେ କରିଥିଲେ ପରା ?" ଆମ୍ଭେମାନେ ଗୋପନରେ ସନ୍ଧାନ କରି ବୁଝିଲୁଁ, ରତନପୁର ଡୋମମାନଙ୍କୁ ଜେଲ କରାଇ ଦେବା ସକାଶେ ମଙ୍ଗରାଜେ ଦାରୋଗାଙ୍କୁ ହଜାରେ ଟଙ୍କା ଲାଞ୍ଚ ଯାଚିଥିଲେ, ମାତ୍ର ଫାଙ୍କି ଦେଇଥିବାରୁ ଦାରୋଗା ସେହି କଥାଟା ମନେ କରାଇ ଦେଲେ ।

ମାମଲା ତଦାରଖି ଆରମ୍ଭ ହେଲା । ମୁନସି ଚକ୍ରଧର ଦାସ ବିଶାଳ ବସ୍ତାନି ଫିଟାଇ ସେରସ୍ତା ମେଲିଦେଲେ । ବେକରେ ଦଉଡ଼ି ବନ୍ଧା, ମୁହଁରେ ଶୋଲବିଣ୍ଡା ଦିଆ ଚେନବାସନର ଦୁଆତ ଆଗରେ ଥୁଆଗଲା । ପାହାଡ଼ି ଗୋଟାଏ ଶରକଲମ ଶିଙ୍ଗକାଠବେଣ୍ଟିଆ ଛୁରିରେ କାଟି ଖଣ୍ଡେ ସାନ କାଗଜରେ ପରୀକ୍ଷା କଲେ, "ଶ୍ରୀଗୁରୁଦେବ

ଉଦ୍ଧାର କରିବେ” ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ଚରଣେ ଶରଣ” “ଶ୍ରୀ ବଳଦେବଜୀଉଙ୍କ ଚରଣେ ଶରଣ” “ଶ୍ରୀ ଲିଙ୍ଗରାଜ ମହାପ୍ରଭୁଙ୍କ ଚରଣେ ଶରଣ” “ଶ୍ରୀ ଗ୍ରାମଦେବତୀଙ୍କ ଚରଣେ ଶରଣ” ଇତ୍ୟାଦି ଦେବଦେବୀଙ୍କ ନାମ ଲେଖି କଚେରି କାମରେ ହାତ ଦେଲେ ।

ସରକାର କୁମ୍ପାନୀ ବାହାଦୁର ମୁଦେଇ । ରାମଚନ୍ଦ୍ର ମଙ୍ଗରାଜ । ସା । ଗୋବିନ୍ଦପୁର । ଜି । କଟକ ମୁଦାଲା ।

ସାରିଆ ନାମକ ଚନ୍ଦ୍ରିଆଣୀକୁ ବଧ କରି ତାହା ଘରୁ ନେତ ନାମକ ଗାଈ ଏକରାଶ ଏବଂ ଅନ୍ୟାନ୍ୟ ମାଲ ଲୁଟତରାଜ କରି ଆଣିଥିବାର ମୋକଦ୍ଦମା ।

ଗୃହ ତଲାସ ହେଲା—ବରକନ୍ଦାଜ ଚୌକିଦାର-ମାନେ ଗ୍ରାମଯାକ ବୁଲି ଆସି ଖବର ଦେଲେ, ଗ୍ରାମରେ ପୁରୁଷଲୋକ ଜଣେ ନାହିଁ; କବାଟ ଫାଙ୍କରୁ ସ୍ତ୍ରୀଲୋକମାନେ ଯେ ଜବାବ ଦେଲେ, ସେଥିରୁ ଜଣାଗଲା, ଆଠ ପଣ ଲୋକ ଯାଇଛନ୍ତି କୁଣିଆ ଘରକୁ, ଚାରି ପଣ ଗୋରୁ ଖୋଜି, ଦୁଇ ପଣ ଜଗନ୍ନାଥ ଦର୍ଶନକୁ, ଦୁଇ ପଣ ପଡ଼ିଛନ୍ତି ବାଧିକି । କେବଳ ଦୁଇ ପଣ ଭଲଲୋକ ଭିନ୍ନ ଗ୍ରାମବାସୀ ଗୃହୀ ଆପଣାର କର୍ତ୍ତବ୍ୟ ବୁଝି ଆପେ ହାଜର ହୋଇଗଲେ । ଗ୍ରାମର ଲୋକ ହାଜର ନ ହେବାରୁ ଦାରୋଗା ଖପା ହୋଇ ବରକନ୍ଦାଜମାନଙ୍କୁ ଉଲ୍ଲୁ, ଗଧା, ବେକୁଫ, ନାଲାଏକ ଇତ୍ୟାଦି ଇତ୍ୟାଦି ସମ୍ବୋଧନ କରିବାରୁ ଗ୍ରାମଯାକ ହୁରି ହାଲର ପଡ଼ିଗଲା । ଗୁମାଗୁମ୍ ମାଡ଼ ଆଉ କବାଟ ଭଙ୍ଗା । ସନ୍ନିପାତ ରୋଗୀ କଚରି ଢୋଡ଼ି ହୋଇ ପଡ଼ି ଯମକୁ ଫାଙ୍କି ଦେଇ ଦୁଇ ଦିନ ରହି ଯାଇପାରେ, ମାତ୍ର ପୁଲିସକୁ ଫାଙ୍କି ଦେବ କିଏ ? ପ୍ରକୃତ ଲୋକଗୁଡ଼ିକ ସଲଖ ସଲଖ ଘରୁ ବାହାରି ଆସିଲେ । ଦୁଇ ଦିନ ପର୍ଯ୍ୟନ୍ତ ବତିଶ ଜଣ ଗୃହୀଙ୍କ ଜବାନବନ୍ଦୀ ଗ୍ରହଣ କରାଗଲା । ପ୍ରଥମ ଦିନରେ ଦୁଇ ଜଣ ଚୌକିଦାର ହିମତ୍‌ରାଏ ଲସ୍ ମାଇନା ସଜ୍ଜାଶେ କଟକ ଚାଲାଣ ଦିଆଗଲା । ମୁନସି ସାହେବ ଜେଲଖାନା କଏଦୀଙ୍କ ତଯ୍ୟାର ଅଟେଇ ଦସ୍ତା ହରିତାଳ କାଗଜରେ ଜବାନବନ୍ଦୀ କଲମବନ୍ଦ କରି ପକାଇଲେ । ଆପଣଙ୍କ ଜାଣିବା ନିମନ୍ତେ ସେଥିରୁ କେତେକ ଜଣ ସାକ୍ଷୀଙ୍କ ଜବାନବନ୍ଦୀ ଏଠାରେ ପ୍ରକାଶ କରୁଅଛୁଁ—

୧ ନମ୍ବର ଗୃହୀ, ତରଫ ସରକାର କୁମ୍ପାନି-ବାହାଦୁର, “ମୋ ନାମ ଗୋବିରା ଜେନା, ବାପର ନାମ ଗୃହିଆ ଜେନା ମୃତୋଫା, ଜାତିରେ ପାଣ, ବୟସ ୪୫ ବର୍ଷ, ପେଶା ଗ୍ରାମର ଚୌକିଦାରି । ସା । ଗୋବିନ୍ଦପୁର । ପ୍ର । ବାଲୁବିଶି, ଜିଲେ । କଟକ—

ମୁଁ ମୌଜାମଜକୁର ଚୌକିଆ, ସାଧାରଣ ଗ୍ରାମରେ ଠିଆ ପହରା ଦିଏଁ । ଗଲା ରାତିରେ ପହରା ଦେବା ସମୟରେ ଅଧରାତ୍ରି ଅନ୍ଦାଜ ସାରିଆ ଚନ୍ଦ୍ରିଆଣୀ “ମାରି ପକାଇଲା, ମାରି ପକାଇଲା” ବୋଲି ମଙ୍ଗରାଜଙ୍କ ବାଡ଼ି ପଛଆଡ଼େ ହୁରି ପକାଉଥାଏ, ମୁଁ ଶୁଣିଅଛି । ତାକୁ କେହି ବାଉଁଶ ବାଡ଼ିରେ ମାଇଲାପରି ଜଣା ଯାଉଥାଏ ।”

ସୁଆଲରେ ଜବାବ ଦେଲା, “ନା, ମୁଁ ସେ ସମୟରେ ମଙ୍ଗରାଜଙ୍କୁ ଦେଖି ନାହିଁ ।” ପୁନର୍ବାର କହିଲା, “ହଁ ହଁ ତାଙ୍କପାଟି ଶୁଣିଅଛି । ଏହି ଗାଈ ସାରିଆର, ଏହାର ନାମ ନେତ । ଆଜକୁ ମାସେ ହେଲା ମଙ୍ଗରାଜଙ୍କ ଅଗଣାରେ ବନ୍ଧା ହେବାର ଦେଖୁଅଛି । କିପରି ଏଠାକୁ ଆସିଲା ଜାଣେ ନାହିଁ ।” ପୁନର୍ବାର କହିଲା, “ମଙ୍ଗରାଜେ ବାନ୍ଧି ଆଣିଛନ୍ତି ।”

। ଏ ବାଡ଼ି ସନ୍ତକ ଗୋବିରା ଜେନାର ସହି ।

୨ ନମ୍ବର ଗୃହୀ—ସନା ରଣା ପ୍ରଥମେ ହାଜର ହୋଇ କୌଣସି କଥା ଜାଣି ନ ଥିବାର ପ୍ରକାଶ

କଲ୍ । ଦାରୋଗା ସାହେବ ଭାରି ଖପା ହୋଇ ତାହାକୁ ଗୃହଶାଳୀ ବୁଲାଇ ଆଣିବା ସକାଶେ ହୁକୁମ ଦେବାରେ ସେ ଦୁଇଜଣ ବରକନ୍ଦାଜ ହେପାଜତରେ ଅଧଘଣ୍ଟା ବାଦ ମୁକୁଳା ବାଳ, ଧୂଳିଆ ଦେହ, ପିଠି ହାତ ଗାଲରେ ମାଡ଼ର ଦାଗ ସହିତ ହାଜର ହୋଇ କହିଲା, "ହଜୁର, ମୁଁ ସବୁ ସତ କହିବି । ମୋ ନାମ ସନା ରଣା, ବାପର ନାମ ବନା ରଣା, ଜାତି ମାଳୀ, ବୟସ ତିରିଶ, ପେଷା ଗ୍ରାମଦେବତି ପୂଜା ଆଉ ଚାଷ । ସା । ଗୋବିନ୍ଦପୁର । ପ୍ର । ବାଲୁବିଶି । ଜି । କଟକ ।

ମୁଁ ସାରିଆକୁ ଚିହ୍ନେ; କିପରି ମଲ୍ଜାଣେ ନାହିଁ । ଆଜିକୁ ଅନ୍ଦାଜ ବରଷେ କି ଦେଢ଼ ବରଷ ହେବ ସକାଳ ଓଳି, ମଙ୍ଗରାଜେ ମୋତେ ଜଣେ ହଳିଆ ହାତରେ ଡକାଇ ତୋଟା ମଧ୍ୟରେ ମୋତେ ନିରୋଳାରେ କହିଲେ, 'ଦେଖ୍ ସନା, ତୋତେ ମୁଁ କହୁଛି, ତୁ ଗୋଟାଏ କାର୍ଯ୍ୟ କରିବୁ । ମୁଁ ଯାହା କହୁଛି, ସେ କାମଟା କରିଦେଲେ ତୋତେ ଭଲ ଗହିରି ଜମି ଦୁଇ ମାଣ ଚଷିବାକୁ ଦେବି; ଆଉ ଦୁଇଟଙ୍କା ଖଜା ଖାଇବାକୁ ଦେବି ।' ମୁଁ ପଚାରିଲି 'କଣ କରିବି ?' ସାଆନ୍ତେ କହିଲେ, ' ଏହି ଯେ ଭଗିଆ ଚନ୍ଦ୍ରୀଅଛି- ତା ମାଇପ ଯେ ସାରିଆ, ସେଟା ବାଞ୍ଝ । ପୁଅ ହେବାପାଇଁ ପ୍ରତିଦିନ ବୁଢ଼ୀ ମଙ୍ଗଳାଙ୍କ ପାଖରେ ମୁଣ୍ଡିଆ ମାରେ । ତୁ ଯାଇ ତାକୁ କହିବୁ, ଠାକୁରାଣୀ ସ୍ୱପ୍ନରେ କହିଛନ୍ତି, ତୁ ପୂଜା ଦେ, ଠାକୁରାଣୀ ତୋ ସାଙ୍ଗରେ ଆପେ କଥା କହିବେ, ଆଉ ତୋତେ ପୁଅ ଦେବେ ।' ମୁଁ ଯାଇ ଦୁଇ ତିନିଥର ଭଗିଆକୁ ଆଉ ସାରିଆକୁ ସାଆନ୍ତଙ୍କ କହିବା ମାଫିକେ କହିଲି, ସେମାନେ ଭଲ କରି ଶୁଣିଲେ, ମାତ୍ର କିଛି ଜବାବ ଦେଲେ ନାହିଁ । ଦିନେ ଉପର ଓଳି ଭଗିଆ ମୋତେ ତା ଦୁଆରକୁ ଡାକି ନେଲେ, କିପରି ପୂଜା ହେବ, କି ଦ୍ରବ୍ୟ ଲୋଡ଼ା କେତେ ଖରଚ ହେବ, ସବୁ କଥା ପଚାରିଲା । ମୁଁ ତାକୁ ସବୁ ବୁଝାଇଦେଲି । ପୂଜା ଦ୍ରବ୍ୟ କିଣିବା ସକାଶେ ତା ପାଖରୁ ଦଶ ଅଣା ଦୁଇ ପାହି ପଇସା ଅଣିଲି । ଦିନେ ଶନିବାର ସଞ୍ଜ ବାଦ୍ ମୁଁ, ମଙ୍ଗରାଜେ ଆଉ ଜଗା ଭଣ୍ଡାରି, କୋଡ଼ି ଧରି ଜଣେ ହଳିଆ, ଚାରିଜଣ ମଙ୍ଗଳାଙ୍କ ନିକଟକୁ ଗଲୁଁ । ମଙ୍ଗରାଜ କହିବା ଅନୁସାରେ ଠାକୁରାଣୀଙ୍କ ଆସ୍ଥାନ ଚକ୍ର ପଛ ଦିଗକୁ ଗୋଟାଏ ବଡ଼ ଗାଡ଼ ଖୋଳାଗଲା, ଗାଡ଼ ମଧ୍ୟରେ ଜଗା ଭଣ୍ଡାରି ଲୁଚି ରହିଲା, ଗାଡ଼ମୁହଁ ଡାଳ ପତରେ ଲୁଚାଇ ଦିଆଗଲା । ମୁଁ ସକାଳୁ ଖବର ଦେଇ ସାରିଆ ଆଉ ଭଗିଆକୁ ଉପାସ ରଖାଇଥିଲି, ଅଧରାତି ବେଳେ ଗ୍ରାମ ନିସୋଳ ହେବାରେ ସେମାନଙ୍କୁ ଡାକିଆଣି ପୂଜା କଲି, ଭୋଗ ଲଗାଇ ଠାକୁରାଣୀଙ୍କି ଅନେକ ଜଣାଣ କଲି । ମୋ କହିବା ଅନୁସାରେ ସାରିଆ ଏବଂ ଭଗିଆ ବେକରେ ଲୁଗା ପକାଇ ମୁହିଁ ମାଡ଼ି ଠାକୁରାଣୀ ଆଗରେ ଧାରଣା ପଡ଼ିଥାନ୍ତି । ମୁଁ ଆହୁରି ଜଣାଣ କରି କହିଲି, 'ମା ମଙ୍ଗଳା ! ସାରିଆକୁ ଆପେ ବର ଦିଅ, ସେ ଅନେକ ଦିନ ହେଲା ତୁମର ସେବା କରୁଅଛି, ଅନେକ ଲୋକଙ୍କୁ ବର ଦେଲଣି, ଏମାନଙ୍କୁ ବର ଦିଅ ।' ଜଗା ଗାଡ଼ ଭିତରୁ ଜବାବ ଦେଲା, 'ଆଲୋ ସାରିଆ, ତୁ ଅନେକ ଦିନ ହେଲା ମୋର ପୂଜା କରୁଛୁ, ପ୍ରତିଦିନ ଗାଧୋଇ ଯିବାବେଳେ ମୋତେ ଜୁହାର ହୋଇ ଯାଉ, ପାଣି ଟୋପାଏ ଦେଉ, ମୁଁ ସେ ପାଣି ପାଏଁ, ତୋତେ ବର ଦେଉଛି, ତୋର ତିନି ଗୋଟି ପୁଅ ହେବ, ଆଉ ତୋହର ଢେର ଟଙ୍କା ସୁନା ହେବ, ତୁ ମୋହର ଦେଉଳ ତୋଳାଇ ଦେ । କାଲି ବଡ଼ ସକାଳେ ଅଧିଆ ମୁହଁରେ ଦୁଇ ପ୍ରାଣୀ ଚନ୍ଦ୍ରୀତୋଠକୁ ଆସିବ, ମୋ ପୂଜା ମନ୍ଦାରଫୁଲ ପେଣ୍ଠାରେ ପଡ଼ିଥିବ, ତା ତଳେ ଖୋଳିବୁ, ଯାହା ପାଇବୁ ଘରେ ନେଇ ରଖିବୁ, ପ୍ରତିଦିନ ପୂଜା କରିବୁ, ତୋତେ ସେହିପରି ଥଳ ଥଳ ଦେବି । ମୋ ଆଜ୍ଞା ନ ମାନିଲେ ଭଗିଆ ବେକ ମୋଡ଼ିଦେବି ।' ସାରିଆ ଭଗିଆ ଦୁଇଜଣ ଶୁଣି ଡରରେ ଥରୁଥାନ୍ତି, କିଛି କଥା କହି ପାରିଲେ ନାହିଁ । ମୁଁ ପୂଜା ସାରି ସେମାନଙ୍କୁ କିଛି

ଭୋଗ ଦେଇ ଘରେ ଗୁଡ଼ ଆସିଲା, ବାକି ଭୋଗକୁ ବାନ୍ଧିଲା । ମୁଁ ସେମାନଙ୍କୁ ଗୁଡ଼ ଆସିବା ବାଦ୍ ଜଗା ହସି ହସି ଗାଡ଼ରୁ ବାହାର ଆସିଲା । ଆମେ ଦୁଇଜଣ ଯାଇ ସାଆନ୍ତେ ଦେଇଥିବା ଗୋଟିଏ ମୋହର ତୋଠ ପାଖରେ ଗ୍ରୋତ ତାହା ଉପରେ ମନ୍ଦାରଫୁଲ ଥୋଇଦେଇ ଘରକୁ ଗଲୁ । ତହିଁ ଆରଦିନ ମୁଁ ଭଗି ଦୁଆରକୁ ଯାଇଥିଲି । ମୋତେ ଦେଖି ସେ ଦୁଇଜଣ କାନ୍ଦୁଣୁମାନ୍ଦୁଣୁ ହୋଇ କହିଲେ, 'ଆମେମାନେ ଦେଉଳ କପଟ ତୋଳାଇବା, ବୁଦ୍ଧି କହିଦିଅ ।' ମୋ କହିବା ଅନୁସ ରେ ତାହାର ଜମି 'ଛ ମାଣ ଆଠଗୁଣ୍ଠ' ମଙ୍ଗରାଜଙ୍କ ପାଖରେ ବନ୍ଧକ ଦେଇ ଟଙ୍କା ନେଲେ । ସରକାରରୁ ଜମାଦାର ଆସି ଭଗିଆ ଘର ଭାଙ୍ଗିଲେ, ଜମାଦାର ଛୁଡ଼ା ହୋଇଥାଏ, ତାହାର ସବୁ ଜିନିସ ବୋହି ନେଇଗଲେ । ଘର ଭଙ୍ଗାଗଲା ଦିନଠାରୁ ଭଗିଆ ବାୟା ହୋଇ ଗାଁରେ ବୁଲୁଅଛି, ସାରିଆ ସାତ ଆଠ ଦିନ ହେଲା ମଙ୍ଗରାଜଙ୍କ ବାଡ଼ ଦୁଆରେ ବସି କାନ୍ଦୁଥିବାର ମୁଁ ଶୁଣିଅଛି ।''

ସୁଆଲରେ ଜବାବ ଦେଲା—''ମଙ୍ଗରାଜେ ଭଗିଆକୁ କେତେ ଟଙ୍କା ଦେଲେ ମୁଁ ଜାଣେ ନାହିଁ, କେବଳ ତମସୁକ ରେଜିଷ୍ଟ୍ରି କରିବା ସକାଶେ କଟକକୁ ନେଇ ଯାଇଥିବା ସମୟରେ ସାରିଆ ସକାଶେ ଖଣ୍ଡେ ଶାଢ଼ୀ କିଣି ଦେଇଥିଲେ, ମୁଁ ଜାଣେ । ଦେଉଳ ତୋଳିବା ସକାଶେ କୋଡ଼ିଏ ଶଗଡ଼ ଅନ୍ଦାଜ ପଥର ମଙ୍ଗରାଜେ ମଙ୍ଗଳାଙ୍କ ନିକଟରେ ପକାଇଅଛନ୍ତି । ମଙ୍ଗରାଜେ ସେହିଦିନ ମୋତେ ପୃରଅଣା ପଇସା ଦେଇଥିଲେ, ଆଉ କିଛି ଦେଇ ନାହାନ୍ତି, ମୁଁ ଡରରେ ମାଗେ ନାହିଁ । ମୁଁ ଆଉ କିଛି ଜାଣେ ନାହିଁ ।

( ଦସ୍ତଖତ୍ ) ହନା ରଣା ।

୩ ନମ୍ବର ଗ୍ରହା—''ମୋ ନାମ ମରୁଆ, ବାପର ନାମ ଲକ୍ଷ୍ମଣ ବିହାଡ଼ୀ, ଜାତି ବ୍ରାହ୍ମଣ, ବୟସ ଜଣା ନାହିଁ, ସାଃ ହାଲ—ଗୋବିନ୍ଦପୁର, ଜି—କଟକ ।

ସୁଆଲରେ ଜବାବ ଦେଲା, ସାରିଆ କି ରୋଗରେ ମଲା ମୋତେ ଜଣା ନାହିଁ । ଆଜକୁ ଆଠଦିନ ହେଲା ଆମ ବାଡ଼ଦୁଆରେ ବସିଥିଲା । ଦିନରାତି ଏକ ଜାଗାରେ ବସିଥାଏ, ଯାହାକୁ ଦେଖେ ଡାକ ପାଡ଼େ, 'ମୋ ଛ ମାଣ ଆଠଗୁଣ୍ଠ, ମୋ ଛ ମାଣ ଆଠଗୁଣ୍ଠ, ମୋ ନେଚ, ମୋ ନେଚ'—ଏତିକି କହି ଡାକ ପାଡ଼ୁଥାଏ । ସାଆନ୍ତାଣୀଙ୍କୁ ଦେଖିଲେ ଗୋଡ଼ତଳେ ପଡ଼ି ଗଡ଼େ, କାନ୍ଦେ । ସାଆନ୍ତାଣୀ ମଧ୍ୟ କାନ୍ଦନ୍ତି । ଚମ୍ପା ତାକୁ ତିନିଥର ଗ୍ରଞ୍ଚିଣି ମାରି ତଡ଼ି ଦେଲା । ସେ ଗଲା ନାହିଁ । ସେ ଆଠ ଦିନ ହେଲା କିଛି ଖାଇ ନାହିଁ । ସାଆନ୍ତାଣୀ ଆପଣା ଖାଇବା ଭାତ ଖଣ୍ଡେ କଦଳୀ ପତ୍ରରେ ତା ପାଖରେ ଥୋଇ ଦିଅନ୍ତି, ସେ ଖାଏ ନାହିଁ । ଭାତ କୁକୁର ନୋହିଲେ ଗାଈ ଖାଇଯାଏ । କେବେ କେବେ ସାଆନ୍ତାଣୀ ବସି କୁହା ବୋଲ କଲେ ଦୁଇଗୁଣ୍ଡା ଗୁଣ୍ଡାଏ ଖାଏ । ସାଆନ୍ତାଣୀ ମଧ୍ୟ ସାତଦିନ ହେଲା ଖାଇ ନାହାନ୍ତି, ଖାଇବାକୁ କହିଲେ ସେ ଅଧିକ କାନ୍ଦନ୍ତି । ସେଥି ସକାଶେ ମୁଁ କିଛି କହେ ନାହିଁ । ସପ୍ତମୀ ଦିନ ଏକବାର ଗାନ୍ଧି ବୁଢ଼ୀ ମଙ୍ଗଳାଠାକୁ ଯାଉଥିଲେ, ଚେତିକବେଳେ ସାରିଆ ପାଟି କରିବାରୁ ହବିଷ ଭାତ ତା ପାଖରେ ବସାଇ ଦେଲେ । ଚେତିକ-ବେଳୁ ସାଆନ୍ତାଣୀ ଘରକୁ ଆସି ଯେ ପଡ଼ିଛନ୍ତି, ସେ ପଡ଼ିଛନ୍ତି । ଗଲା ଅଷ୍ଟମୀ ଦିନ ତାଙ୍କର କାଳ ହେଲା ।''

ସୁଆଲରେ ଜବାବ ଦେଲା, ''ସାଆନ୍ତାଣୀଙ୍କର କି ବେମାରି ହୋଇଥିଲା, ଜାଣେ ନାହିଁ । ସ୍ନାନପୂର୍ଣ୍ଣିମୀ ଆଠ ଦଶ ଦିନ ଆଗରୁ ତାଙ୍କୁ ଅଳ୍ପ ଅଳ୍ପ ବେମାରି ଧରିଥିଲା । ସ୍ନାନପୂର୍ଣ୍ଣିମୀ ଦିନ ଚମ୍ପା କୁଆଡ଼େ ସୁଆରେ ଚଢ଼ି ଯାଉଥିଲା, ହସି ହସି ଆସି କଣ କହିଲା । ସେହିଦିନୁ ସାଆନ୍ତାଣୀଙ୍କର ବେମାରି ବଢ଼ିଅଛି, ରାତିରେ କିଛି ଖାଆନ୍ତି ନାହିଁ, ଦିନବେଳେ ଖିଆ ମଧ୍ୟ ସେହିପରି, ସବୁବେଳେ କାନ୍ଦନ୍ତି । ସାରିଆ ଜମି ଗୁଡ଼ ଦେବା ସକାଶେ ସାଆନ୍ତଙ୍କ ଗୋଡ଼ତଳେ ପଡ଼ି ଢେର

କହିଲେ । ସାଆନ୍ତ ଶୁଣିଲେ ନାହିଁ । ଚମ୍ପା ଖଟା ହେବାରୁ ସାଆନ୍ତାଣୀ ଆଉ କିଛି କହିଲେ ନାହିଁ, ଅନ୍ନ ଛାଡ଼ିଦେଲେ । ମୁକୁନ୍ଦ ବଇଦ ପାଖରୁ ତାଙ୍କ ବେମାରି ସକାଶେ ଔଷଧ ଆଣି ଦେଇଥିଲି । ସେ ଔଷଧ ଖାଇଲେ ନାହିଁ, ମୁଣ୍ଡରେ ମାରି ଥୋଇଦେଲେ ।''

**ସୁଆଲ** ର ଜବାବନ୍ଦୀ—''ମୁଁ ମୁଁ ଆଜକୁ ଦଶ ବରଷ ହେଲା ଏହି ଘରେ ଅଛି । ମୋ ବାପଘର ପୁରି ବ୍ରାହ୍ମଣଶାସନରେ ଥିଲା । ମୋ ସ୍ୱାମୀର ନାମ ଜଗନ୍ନାଥ ଷଡ଼ଙ୍ଗୀ । ଶୁଣିଛି ବିଭାବେଳେ ମୋର ସାତ ବରଷ ବୟସ ହୋଇଥିଲା, ସ୍ୱାମୀର ବୟସ ହୋଇଥିଲା ତିନ କୋଡ଼ି ଚାରି ବରଷ । ମୋ ସ୍ୱାମୀ ତାଙ୍କ ଜମି ବିକି ମୋ ବାପକୁ ଆଠ କୋଡ଼ି ଟଙ୍କା ଦେଇଥିଲେ । ବିଭା-ବେଳେ ମୋ ସ୍ୱାମୀର ଶ୍ୱାସ ବେମାରି ଥିଲା । ସେହି ବେମାରିରେ ସେ ମଲେ । ମୋ ସ୍ୱାମୀଘରେ ଆଉ କେହି ନ ଥିଲେ । ନନା ଯାଇ ତାଙ୍କ ଜମି ବାଡ଼ି ବିକି ଦେଇ ମୋତେ ଘରକୁ ଘେନି ଆସିଲେ । ନନାଙ୍କ ଘରେ ପାଞ୍ଚ ସାତ ବରଷ ରହିଥିଲି । ଗ୍ରାମରେ ଲକ୍ଷ୍ମୀ ଦାସ ବାବାଜି ଥିଲେ । ମୁଁ ତାଙ୍କ ପାଖକୁ ଚୈତନ୍ୟ-ଚରିତାମୃତ ଶୁଣିବାକୁ ଯିବାରୁ ଭାଇମାନେ କଳି ଲଗାଇଲେ । ମୁଁ ବୃନ୍ଦାବନ ଯିବା ସକାଶେ ବାବାଜିଙ୍କ ସାଙ୍ଗରେ ଦିନେ ରାତିରେ ଚାଲିଲି ଆସି କଟକ ତେଲଙ୍ଗା ବଜାରରେ ଥିଲି । ସାଆନ୍ତ ମାମଲା କରିବା ସକାଶେ କଟକ ଯାଇଥିଲେ । ତାଙ୍କ ସାଙ୍ଗରେ ଆସି ଏହି ଘରେ ଅଛି ।''

୦ ଏ ମୁଦ୍ଦ ସନ୍ତକ ମରୁଆର ସହି ।

୪ ନମ୍ବର ଗୁହା—''ମୋ ନାମ ବାଇଧର ମହାନ୍ତି, ବାପର ନାମ ଡମ୍ବରୁଧର ମହାନ୍ତି, ଜାତି କରଣ, ବୟସ ୫୭ ବରଷ, ସାଃ କନକପୁର, ପ୍ରଃ ଝଙ୍କଡ଼, ଜଃ କଟକ ।

''ଆଜକୁ କୋଡ଼ିଏ ବରଷ ହେଲା ମୁଁ ଏହି **ଫତେପୁର** ସରହଦ୍ଦ ତାଲୁକରେ ଗୁମାସ୍ତା ଅଛି । ପ୍ରଥମେ ମେଦିନୀପୁରର କେଶରୀମତ ଅଲି ଜମିଦାର ଥିଲେ, ବର୍ତ୍ତମାନ ଜମିଦାର ରାମଚନ୍ଦ୍ର ମଙ୍ଗରାଜେ କଟବନ୍ଧକ ସୂତ୍ରେ ଏହି ଜମିଦାରୀ ପାଇଅଛନ୍ତି ।''

( ଦାରୋଗା ଗୁହାଙ୍କୁ ଢେର ସୁଆଲ କଲେ, ଗୁହା ମଧ୍ୟ ଢେର ଜବାବ ଦେଲେ । ସେ ସମସ୍ତ ଛାଡ଼ି ଦେଇ ଆମ୍ଭେମାନେ ଗୁହା ଜବାବର ସାର ସାର କେତୋଟି କଥା ବାଛି ଲେଖୁଅଛୁଁ । )

ଗୁହାର ଜବାବ—''ମଙ୍ଗରାଜେ ଘରୁ କିଛି ଟଙ୍କା ଦେଇ ଜମିଦାରୀ କିଣି ନାହାନ୍ତି, ଜମିଦାରୀ ଅସୁଲି ଟଙ୍କାରୁ କିଣିଛନ୍ତି । ମଙ୍ଗରାଜେ ପ୍ରଥମ ବରଷ ଖଜଣା ଟଙ୍କା ଅସୁଲ କରି ନେଇ ଜମିଦାର ଦଲଦାର ମିଆଁଙ୍କୁ ଦେଲେ । ଦୁସରା କିସ୍ତି ଟଙ୍କା ଅସୁଲ କରିନେଇ ମେଦିନୀପୁର ଗଲେ, ମୁଁ ସାଙ୍ଗରେ ଗଲି, ଜମିଦାରଙ୍କୁ କହିଲେ, ''ପୁରୁଣା ଜମିଦାର ବାଘସିଂହ ବଂଶ ମେଳି ଲଗାଇବାରୁ ଖଜଣା ଅସୁଲ ହେଲା ନାହିଁ, କଣ ହେବ ? କାଲି ନାଟବନ୍ଦୀ ।'' ମଙ୍ଗରାଜେ ତମସୁକ ଲେଖାଇ ନେଇ ଖଜଣା ଟଙ୍କା କରଜ ଦେଲେ । ଏଣେ ଜମିଦାର କରଜ କରିଅଛନ୍ତି ବୋଲି ପ୍ରଜାମାନଙ୍କଠାରୁ କଲନ୍ତର ନଅନ୍ତି । ପ୍ରତି କିସ୍ତିରେ ଏହିପରି ହୁଏ । ଶେଷ ଥର ମଙ୍ଗରାଜେ ମୁସାହେବମାନଙ୍କୁ ଅନେକ ଲାଞ୍ଚ ଦେଇ ଅସଲ ସୁଧ ତିରିଶ ହଜାର ଟଙ୍କାରେ ତମସୁକ ଲେଖାଇ ନେଲେ । ଦଲୁମିଆଁ ନଶାରେ ପଡ଼ିଥିବା ସମୟରେ ତମସୁକ ଦସ୍ତଖତ କରିଦେଲେ । ମଙ୍ଗରାଜେ ଆଉ ମେଦିନୀପୁର ନ ଯାଇ କଟକରେ ମାମଲା କରି ଜମିଦାରୀ ଦଖଲ କରିଗଲେ ।''

ସୁଆଲରେ ଜବାବ ଦେଲା ''ହଁ, ଭଗିଆ ଚନ୍ଦ୍ରୀ-ଠାରୁ ଛ ମାଣ ଆଠଗୁଣ ଜମି କଟକବାଲା କରି

ନେଇଥିଲେ । କବାଲରେ ଦେଢ଼ଶ ଟଙ୍କା ଲେଖା ଅଛି । ତମସୁକ ଲେଖାଇ ମାମଲା ଖରଚ ଇତ୍ୟାଦି ସେଥିରେ କେତେ ଟଙ୍କା ଖରଚ ପଡ଼ିଅଛି, ପାଞ୍ଜି ଦେଖିଲେ କହିବି—(ଗୁହାରୀ ପାଞ୍ଜି ଦେଖି କହିଲା) ଗାଏ ଟ ୩୪୫୵ ୧୨୨ ।”

ଗୁହାରୀ କହିଲା—“ହଁ, ସାଆନ୍ତେ ଭଗିଆ ନାମରେ କଟକ ଅଦାଲତରେ ନାଲିଶ କରିଥିଲେ । ମକଦ୍ଦମାର ଏତଲନାମା, ଡିକ୍ରିଜାରି ପରୁଆନା, ନିଲାମି ଇସ୍ତାହାର, ସବୁ ମୋ ପାଖରେ ଅଛି, ଭଗିଆକୁ କିଛି ଦିଆ ଯାଇ ନାହିଁ । ଅଦାଲତର ପିଆଦା ଅସି ସାଆନ୍ତଙ୍କଠାରୁ ବକସିସ୍ ନେଇ ମୋ ପାଖରୁ ରସିଦ ଲେଖାଇ ନେଇ ଚାଲିଯାଏ । ସାରିଆ କପଟ ମଲା, ମୁଁ ଜାଣେ ନାହିଁ । ଏହି ଗାଈଟା ଭଗିଆର ।”

( ସ୍ୱାକ୍ଷର ) ବାଇଧର ମହାନ୍ତି

୫ ନମ୍ବର ଗୁହାରୀ—“ମୋ ନାମ ଚମ୍ପା; ବାପର ନାମ ଜଣା ନାହିଁ, ଜାତି ଏହି ଘର ମନୁଷ୍ୟ, ସାଃ ଗୋବିନ୍ଦପୁର, ଜିଃ କଟକ—ମୁଁ ସାରିଆକୁ ଚିହ୍ନେ ନାହିଁ, ତା ଘର ଏ ଗାଁରେ ନୁହେଁ, ସେ ଆମ ଦୁଆରେ ମରି ନାହିଁ, ଆଉ କୁଆଡ଼େ ମରିଯାଇ ଆମ ଦୁଆରେ ପଡ଼ିଥିଲା, ତାକୁ ଜର ହୋଇଥିଲା, ମରିଗଲା । ଆମ ସାଆନ୍ତ ତାକୁ କିଛି କହି ନାହାନ୍ତି । ସାଆନ୍ତ ବଡ଼ ଭଲଲୋକ, ହଳିଲ ପାଣିରେ ଗୋଡ଼ ଦିଅନ୍ତି ନାହିଁ । ସାଆନ୍ତାଣୀଙ୍କୁ ଜର ହୋଇଥିଲା, ସେ ମରିଗଲେ । ତାଙ୍କପାଇଁ ମୁଁ ଭାତ ଖାଉନାହିଁ । ତେର କାନ୍ଦୁଛି । ( ଗୁହାରୀ କାନ୍ଦି ବସିଲା, ଦାରୋଗା ଧମକ୍ ଦେବାରୁ ତୁନି ହେଲା ) ଏହି ଗାଈଟା ଆମର ଘର ବାଛୁରି, ପୁନର୍ବାର କହିଲା—ସାରିଆକୁ ଟଙ୍କାଦେଇ କିଣିଛୁ ।”

ଠ । ଏ ମୁଦି ସନ୍ତକ ଚମ୍ପାର ସହି ।

ଅଧିକ ରାତି ହେବାରୁ କଚେରି ବନ୍ଦ ହେଲା । ଦାରୋଗା, ମୁନ୍‌ସି, ଚୌକିଦାର, ଗୋବରା ଜେନା ଅନେକ ରାତି ପର୍ଯ୍ୟନ୍ତ ବସି ପରାମର୍ଶ କଲେ । ଉପଯୁକ୍ତ ଗୁହାରୀ ଠିକଣା କରାଯାଇ ତହିଁ ପର ଦିନ ପୁନର୍ବାର ସାକ୍ଷୀ ଜବାନବନ୍ଦୀ ଆରମ୍ଭ ହେଲା ।

୬ନମ୍ବର ସାକ୍ଷୀ—“ମୋ ନାମ ବନା ଜେନା, ବାପର ନାମ ଦନା ଜେନା, ଜାତି ପାଣ, ବୟସ ୮, ପେଷା ହଳଆଗିରି । ସା । ମହାମପୁର । । ପ୍ର । ବାଲୁବିଶି । ଜ । କଟକ—ମୁଁ ସାରିଆକୁ ଚିହ୍ନେ । ତା ଦୁଆରକୁ ତେର ଥର ଯାଇଛି । ତା ଘର ସଉରୁଣିଆ । ମୌ । ବ୍ରାହ୍ମଣ ସାହିରେ ନା ନା ପାଣସାହିରେ । ପୁନର୍ବାର କହିଲା । ନା ନା ଏହି ଗ୍ରାମରେ । ରାମଚନ୍ଦ୍ର ମଙ୍ଗରାଜ ଆଜକୁ ଆଠଦିନ ହେଲା ତାହାକୁ ଧରି ଆଣି ବାଡ଼େଇଥିଲେ । ଏହି ବାଉଁଶ ବାଡ଼ିରେ ବାଡ଼ଉଥିଲେ । (ସାକ୍ଷୀ ବାଡ଼ି ଦେଖାଇଦେଲା ) ଗଲା ଦ୍ୱାଦଶୀ ଦିନ ଅଧରାତି ବେଳେ ରାମଚନ୍ଦ୍ର ମଙ୍ଗରାଜ ବାଡ଼ଉଥିଲେ, ଦେଖିଅଛି । ସାରିଆ ପିଠିରେ କୋଡ଼ିଏ ପାହାର ବାଡ଼େଇଲେ । ମୁଁ ସାଉଦର ଗୋରୁ ଖୋଜି ଆସିଥିଲି । ମୋ ଘର ଏଠାକୁ ଦୁଇକୋଶ ବାଟ । ସାଆନ୍ତଙ୍କ ସାଙ୍ଗରେ ମୋହର ତକରାର ନାହିଁ । ଗୋବରା ଜେନା ଚୌକିଆ ମୋ ଭଣୋଇ ନୁହେ ।”

। ଏ ବାଡ଼ି ସନ୍ତକ ବନା ଜେନାର ସହି ।

୭ ନମ୍ବର ଗୁହାରୀ—“ମୋ ନାମ ଧକେଇ ଜେନା, ବାପର ନାମ ନାଙ୍ଗୁଡ଼ି ଜେନା, ଜାତି ପାଣ, ବୟସ ଜଣା ନାହିଁ, ପେଷା ହଳଆଗିରି । ସା । ରାଇପୁର । ପ୍ର । ବାଲୁବିଶି । ଜ । କଟକ ।

ଗଲା ନବମୀ ଦିନ ଅଧରାତି ବେଳେ ମୁହାଲି ରାମଚନ୍ଦ୍ର ମଙ୍ଗରାଜ ଏହି ବାଉଁଶ ବାଡ଼ିରେ ସାରିଆକୁ ବାଡ଼ଉ ଥିଲେ, ମୁଁ ଦେଖିଅଛି । ମୁଁ ଲୁଣ କିଣିବାକୁ ଦୋକାନକୁ ଆସିଥିଲି । ରାତି ହୋଇଯିବାରୁ ଦୋକାନ ପିଣ୍ଡାରେ ଶୋଇଥିଲି । ଗୁମ୍ ଗୁମ୍ ଶବ୍ଦ ଶୁଭିବାରୁ ମୁଁ

ଦୋକାନ ଘର ଉପରେ ଚଢ଼ି ଅନାଇଲି । ପୁନର୍ବାର କହିଲି, ନାହିଁ ନାହିଁ, ମୁଁ ମଙ୍ଗରାଜଙ୍କ ପିଣ୍ଡାରେ ଚଢ଼ି ଅନାଇଲି, ଦିଶୁଥିଲା । ମୁଁ ଏହି ଗାଈକୁ ଚିହ୍ନେ, ନିଜେ ଢେର ଥର ଦୁହିଁଛି । ଏ ଗାଈର ନାମ ବଉଳା, ଏ ଗାଈ ଭଗିଆ ତନ୍ତୀର । ରାମଚନ୍ଦ୍ର ମଙ୍ଗରାଜ ତା ଘରୁ ଚୋରି କରି ଆଣିଅଛି, ସିନ୍ଧି କରି ଚୋରି କରି ଆଣିଛନ୍ତି ।"

ମୁଦାଲାର ସୁଆଲରେ ଜବାବ ଦେଲା—"ଗୋବରା ଜେନା ମୋ ମାଉସୀ ପୁଅ ଭାଇ ନୁହେ । ସେ ମୋତେ ଡାକି ଆଣି ନାହିଁ । ମୁଁ ଗୁହାରି ଦେବା ସକାଶେ ଆପଣା ଇଚ୍ଛାରେ ଆସିଅଛି । ସେ ମୋତେ ଖାଇବାକୁ ଦିଏ ନାହିଁ । ମୁଁ ଘରୁ ଚୂଡ଼ା ଗୁଡ଼ଲ ବାନ୍ଧି ଆଣିଅଛି । ନବମୀ ଆଜକୁ କୋଡ଼ିଏ କି ବାଇଶ ଦିନ ହେଲା ଗଲାଣି । ଆଜି କି ତିଥି କଣ, ମୋତେ ଜଣା ନାହିଁ ।"

। ଏହି ବାଡ଼ି ସନ୍ତକ ଧକେଇଜେନାର ସହି ।

୮ନମ୍ବର ଗୁହାରି—"ମୋ ନାମ ଖତୁ ଚନ୍ଦ, ବାପର ନାମ ଜଗା ଚନ୍ଦ । ଜାତି ତନ୍ତୀ, ବୟସ ୨୮, ପେଷା ଲୁଗା ବୁଣା, ସା । ଗୋବିନ୍ଦପୁର, ଜିଲେ କଟକ ।

ଏ ଗାଈ ଭଗିଆର ଜାଣେ । ଭଗିଆ ମୋ ପଡ଼ିଶା । ଯେଉଁ ଦିନ ସରକାରୀ ଜମାଦାର ଆସି ଭଗିଆ ଘର ଭଙ୍ଗାଇ ଦେଲେ, ସେହିଦିନ ମଙ୍ଗରାଜେ ଗାଈ ବାନ୍ଧି ଆଣି ଉଆସରେ ରଖିଅଛନ୍ତି । କି ସକାଶେ ଗାଈ ବାନ୍ଧି ଆଣିଲେ ମୋତେ ଜଣା ନାହିଁ । ମଙ୍ଗରାଜଙ୍କ ହଳିଆ-ମାନେ ଯାଇ ଭଗିଆ ଘର ଭାଙ୍ଗି ପକାଇଲେ, ଘରର ସବୁ ଜିନିଷ ବୋହି ଆଣିଲେ । ଭଗିଆ, ସାରିଆ ଦୁଇଜଣ ଡକାଚାଡ଼ ଦାଣ୍ଡରେ ଗଡ଼ୁଥାନ୍ତି । ସରକାରୀ ଜମାଦାର ଆସିଥିବାରୁ ଆମ୍ଭେମାନେ କବାଟ କିଳି-ଦେଇ ଘରେ ଲୁଚିଥିଲୁଁ । ମୁଁ କବାଟ କିଳିଦେଇ ଜଳାରେ ଅନାଇ ଥାଏ । ଚଉକିଆ ଗୋବରା ଜେନା ମୋତେ ଡାକୁଥାଏ । ମୁଁ ଜବାବ ଦେଲି ନାହିଁ । ମୋ ଭାରିଯା ଜବାବ ଦେଲା, ମୁଁ ଘରେ ନ ଥିବାର କହିଲା ।"

( )—ଡଙ୍ଗି ସନ୍ତକ ଖତୁ ଚନ୍ଦର ସହି ।

ଜବାବ ଅସାମୀ ରାମଚନ୍ଦ୍ର ମଙ୍ଗରାଜ—ପିତାର ନାମ ଧମା ନାୟକ, ଜାତି ଖଣ୍ଡାୟତ, ବୟସ ୫୨, ପେଷା ଜମିଦାରୀ । ସା । ଗୋବିନ୍ଦପୁର । ଜି । କଟକ ।

ଜବାବ ଦେଲା—"ମୁଁ ସାରିଆକୁ ମାରି ନାହିଁ । ଭଗିଆ ମୋ ପାଖରୁ ଟଙ୍କା କରଜ ନେଇଥିଲା, ନାଲିଶ କରି ତାହାର ଛ ମାଣ ଆଠଗୁଣ୍ଠ ଜମି ଡିକ୍ରୀ କରି ନେଇଅଛି, ମୋକଦ୍ଦମା ଖର୍ଚ୍ଚାକୁ ତାହାର ଗାଈ ନେଇଅଛି ।"

( ସ୍ୱାକ୍ଷର ) ରାମଚନ୍ଦ୍ର ମଙ୍ଗରାଜ ।

ଠିକ୍ ଏହି ସମୟରେ ଗୋଟାଏ ବାୟା ସେଠାରେ ପହଞ୍ଚିଲା । ଅଣ୍ଟାରେ ଖଣ୍ଡେ ଛିଣ୍ଡା କନା ଗୁଡ଼ାଇଅଛି; ମୁଣ୍ଡବାଳ ମୁକୁଳା, ଦେହସାରା ଧୂଳି କାଦୁଅ, ହାତରେ ଗୋଟିଏ ବାଜେ ହାଣ୍ଡି ଧରିଅଛି, ଖୁବ୍ ନାଚିଲା, ସାରିଆ ସାରିଆ ବୋଲି ଗୀତ ଗାଇଲା । ତାକୁ ଦେଖି ଗାଁ ଲୋକମାନେ ହାହାକାର କରି କହିଲେ, "ଆରେ ଭଗିଆ ତୋ କପାଳରେ ଏହା ଥିଲା।" ମଙ୍ଗରାଜ ଉପରେ ନଜର ପଡ଼ିବାରୁ ବାୟା ତାକୁ କାମୁଡ଼ିବାକୁ ଧାଇଁଲା । ଚଉକିଆମାନେ ତାକୁ ଧରି ପକାଇଲେ; ସମ୍ଭାଳି ନ ପାରି ଦାରୋଗାଙ୍କ ହୁକୁମ ଅନୁସାରେ ବାନ୍ଧି ପକାଇଲେ ।

ଦାରୋଗା ମାମଲା ତଦାରଖି ଖତମ କଲେ; ବତିଶ ଜଣ ଗୁହାରି ଜମାନବନ୍ଦୀ ହୋଇଥିଲା । ସେଥି-ମଧ୍ୟରୁ ଚାରିଜଣ ଗୁହାରିଙ୍କୁ ବାହାଲ ରଖି ଆଉ ଆଉ ଲୋକମାନଙ୍କୁ ରେକ୍‌ସୋତ୍ ଦେଲେ ।

ଆସାମୀ ଚାଲାଣି ।

ବେଳ ପ୍ରହରକ ସମୟରେ ମଙ୍ଗରାଜ ଚାଲାଣ ହେଲେ । ହାତରେ ହାତକଡ଼ି, ଚୌକିଆ ବରକନ୍ଦାଜ

ଘେରିଛନ୍ତି, ମଝିରେ ମଙ୍ଗରାଜେ ମୁଣ୍ଡରେ ଖଣ୍ଡେ ଗାମୁଛା ପକାଇ ମୁଣ୍ଡ ପୋତି ଚାଲିଛନ୍ତି । ଗ୍ରାମ ଲୋକମାନେ ଯାବାକାଳୀ ପରି ଛିଡ଼ା ହୋଇ ଚାହିଁ ଅଛନ୍ତି । ଆଗରେ ଦାରୋଗା, ପଛରେ ମୁନସି । ମଙ୍ଗରାଜଙ୍କର ଏହି ଦୁର୍ଦ୍ଦଶା ଦେଖି ଗ୍ରାମର କେହି ବ୍ୟାକୁଳ ହୋଇଥିଲେ କି ନାହିଁ, ଆମ୍ଭେମାନେ ଠିକ୍ କହିବାକୁ ଅକ୍ଷମ । କେବଳ ଚମ୍ପା "ମୋ ସାଆନ୍ତ, ମୋ ସାଆନ୍ତ, ମୋ ସାଆନ୍ତଙ୍କୁ କାହିଁ ନେଇଯାଉଛ, ମୋ ସାଆନ୍ତେ" ଇତ୍ୟାଦି କରୁଣ ରାଗିଣୀରେ ଡାକ ଛାଡ଼ି ଧାଇଁଥିବା ବେଳେ ବାଟ ଉଚ୍ଛୁଳ ପଡ଼ୁଥାଏ । ସାଆନ୍ତେ ପଛକୁ ମୁହଁ ବୁଲାଇ ଦୁଇ ତିନି ଥର ଫେରି ଯିବାକୁ କହିଲେ । ଦାରୋଗା ମୁନସି ହକ୍‌ଦାର ହେଲେଣି, ଶୁଣିବାକୁ ନାହିଁ, ମୁଣ୍ଡରେ ଲୁଗା ନାହିଁ, କାନ୍ଦି ଅଥୟ ହୋଇ ଯାଉଛି । ଏହିପରି ଦୁଇ କୋଶ ଯାଇ ସାଆନ୍ତଙ୍କୁ ଶୁଣାଇ ଶୁଣାଇ କହିଲା, "ଗନ୍ତାଘର ଚାବିଗୁଡ଼ାକ ଉଇ ଧରିଯିବେ, ମୂଷା ଖାଇଯିବେ, କଣ ହେବ ?" ମଙ୍ଗରାଜେ ଟିକିଏ ଛିଡ଼ା ହୋଇ ଯାଇ ଲମ୍ବ ଲମ୍ବ ଦୁଇଟା ନଳୀକଞ୍ଚି ତା ହାତରେ ଦେଇ କହିଲେ, "ସବୁ ସାବଧାନରେ ରଖିବୁ, କିଛି ଚିନ୍ତା କରିବୁ ନାହିଁ ।" ଚମ୍ପା କଞ୍ଚି ଦୁଇଟା ଖୁବ୍ ସାବଧାନରେ ଅଣ୍ଟିରେ ଖୋସି ଦେଇ କହିଲା, ଆପଣ 'ଠା'ରେ ବସୁଥିବେ, ଉପାସ ରହିବେ ନାହିଁ ।" ଗୋବିନ୍ଦା ଭଣ୍ଡାରି ସାଙ୍ଗେ ସାଙ୍ଗେ ଥିଲା । ଦୁଇଜଣ ସାଙ୍ଗ ହୋଇ ଘରକୁ ବାହୁଡ଼ିଲେ । ବାହୁଡ଼ିବା ସମୟରେ ଚମ୍ପାର କାନ୍ଦଣା କେହି ଶୁଣି ନାହିଁ ।

ଦାରୋଗା ସାହେବ ଥାନାରେ ପହଞ୍ଚି ଗୁହା ଜମାନବନ୍ଦୀ ସମସ୍ତ ପୁନର୍ବାର ଥରେ ଶୁଣି ମୁନସିଙ୍କ ପରାମର୍ଶ ଅନୁସାରେ କାଟକୁଟ କରି ଗୁହାମାନଙ୍କୁ ସଦୁପଦେଶ ଦେଲେ । ତାହା ବାଦ ରିପୋର୍ଟ ସହିତ ଆସାମୀକୁ ଜିଲା ମେଜେଷ୍ଟର ସାହେବଙ୍କ ହଜୁରକୁ ଚାଲାଣ ଦେଲେ । ଆମ୍ଭେମାନେ ଦାରୋଗାଙ୍କ ରିପୋର୍ଟର ଏକ ପ୍ରସ୍ତ ସଇମୋହର ନକଲ ହାସଲ କରିଅଛୁଁ । ଆପଣଙ୍କର ଇଚ୍ଛା ହେଲେ ଶୁଣନ୍ତୁ ।

ଦାରୋଗା ରିପୋର୍ଟର ନକଲ ।

ଧର୍ମାବତାର,

ଚଳିତ ଅକ୍ଟୋବର ମାସ ତିନି ତାରିଖ ଭୋର ଅଠବଜେ ଅଧୀନ ଆପଣା ଏଲକା ମଧ୍ୟରେ ଆପଣା କଚେରି ଜାଗାରେ ବସି ସରକାରି କାମ ଅଞ୍ଜାମ କରୁଥିବା ହାଲତ—ମୁନସି ଚକ୍ରଧର ଦାସ ବନ୍ଦା ଡାହାଣ ପାଖରେ ବସି ରୋଜନ ଡାଇରି କଲମବନ୍ଦ କରୁଥିବା ହାଲତ—ବରକନ୍ଦାଜ ଗୋଲାମ କାଦର ଓ ହରି ସିଂ ଆପଣା ପହରାରେ ମୁତୟନ ଥିବା ହାଲତ—ଅତ୍ର ଥାନା ଏଲାକା ଫତେପୁର ସରସଣ୍ଡି ମୌଜା ଗୋବିନ୍ଦପୁର ଚୌକିଆ ଗୋବରା ଜେନା ହାଜର ଆସି ଜାହେର କଲା କି, ତାଲୁକା ମଜକୁର ମୌଜା ମଜକୁର ରହସ ସାରିଆ ନାମକ ଚନ୍ତାଣୀକୁ ଖୁଣ କରିଥିବା । ବନ୍ଦା ଏହି ରିପୋର୍ଟ ପାଇବା ମାତ୍ର ଲହମାକ ଗୁଦସ୍ତ ନ କରି ହଜୁରକୁ ପ୍ରଥମ ଏତଲାଇ କାଟି—ଆସାମୀ ଜଣେ ଜମିଦାର ଥିବା ଏବଂ ସେ ଜଣେ ମଶୁର ବଦମାଏସ ଏବଂ ଜାଲମବାଜ ଥିବା ହାଲତ ଏବଂ ମାମଲା ଭାରି ସଙ୍ଗୀନ ଥିବା ଲିହାଜ ବନ୍ଦା ତଡ଼େଦମ ଉକ୍ତ ସ୍ଥାନକୁ ରମାନା ହୋଇ ସରଜମିନରେ ପହଞ୍ଚି ଦସ୍ତୁର ମୁତାବକ ଆସାମୀ ଘର ମହାସଗ ଖାନତଲାସ ବହୁତ ହୁସିଆରରେ ଆସାମୀକୁ ଗେରଫ୍ତାର କଲା ବାଦ, ମହିଲୁକଆ ସାରିଆର ଲାଶ୍ ଏବଂ ତାହାର ଘରର ମାଲ ଆସବାବ ଏବଂ ମହିଲୁକଆର ନେତ ନାମକ ଏକରାଶ ସଫେଦା ଗାଈ ଆସାମୀ କମାରୁ ବରାମଦ କରିଅଛି । ଆସାମୀ ଯେଉଁ ବାଉଁଶ ବାଡ଼ରେ ସାରିଆକୁ ଖୁଣ କରିଅଛି ସେ ବାଡ଼ ମଧ୍ୟ ବରାମଦ ହେବା ହାଲତ—ଆସାମୀ ରାମଚନ୍ଦର ମଙ୍ଗରାଜ ଆପେ ଏକଗୋଟା ବାଉଁଶ ବାଡ଼ରେ ସାରିଆକୁ ଖୁଣ କରିଥିବା ଚାରିଜଣ ଗୁହାଙ୍କ ଜବାନବନ୍ଦିରୁ ସାଫ ସାବିତ । ଏମାନେ ଚକ୍ଷୁଇତଗୁହା ଥିବା ସାଫ ସାବିତ । ଆସାମୀ ଯେ ଜଣେ ଜାଲମବାଜ୍ ଜଣେ ଇମାନଦାର

ମୁସଲମାନର ଜମିଦାରୀ ଜୁଆଚୋରୀରେ କରି ନେଇଅଛୁ, ତାହା ଚାରି ନମ୍ବର ଗୁହା ଜମାନବନ୍ଦିରୁ ସାଫ ସାବତ । ଏହି ସବୁ ହାଲ ଲହାଜରେ ଆସାମୀ ଉପରେ ଖୁଣ ସାବତ ହେବାରୁ ହଜୁରକୁ ଗୁଜାଣ ଦେଲି, ହଜୁର ଖୋଦାବନ୍ଦ ମା ବାପ, ଦୁନିଆର ବାଦସା, ରିପୋର୍ଟ କସୋର ମାଫ ହେବ, ନୌସନାରୀ ତଜ୍‌ବଜ୍ ହେବ ।

୧୦ ତାରିଖ ଅକ୍ଟୋବର ସନ ୧୮୩୧
ଦାରୋଗା ଇନାଏତ ହୋସେନ
ଥାନେ କେନ୍ଦ୍ରାପଡ଼ା ।

ପ୍ରକାଶ ଥାଉ କି ଅଲାହିଦା ଫର୍ଦ୍ଦ ମୁତାବକ ଆସାମୀ ଘରୁ ବରାମଦ ହୋଇଥିବା ଚୋରି ମାଲ ହରି ସିଂ ବରକନ୍ଦାଜ ହେପାଜତରେ ଭେଜାଗଲା । ଏପରି ଆସାମୀ ସାରିଆକୁ ଖୁନ୍ କରିବାରୁ ତାହାର ମାଲିକ ଭଗିଆ ଚନ୍ଦ ଘରି ବାପୁ ହୋଇ ଲୋକମାନଙ୍କ ଉପରେ ଜୁଲମ କରୁଥିବା, ତାହାର ହେପାଜତ ସକାଶ କେହି ଏଗାନା ଲୋକ ନ ଥିବା ହାଲତ ହଜୁରକୁ ଗୁଜାଣ ଦେଲି, ହଜୁର ମାଲିକ୍ ।

ତାରିଖ ସନ ଏହେର ।

---

–୨୦–

## ଓକିଲ ରାମରାମ ଲାଲା

କାଠ ରେଲିଂ ବେଢ଼ା ନାଜରଖାନା ଗାରଦଘରର ଗୋଟାଏ କୋଣରେ ବାଡ଼କୁ ଆଉଜି ଆଖି ବୁଜି ଗୋଟିଏ ଆସାମୀ ବସିଅଛୁ । ଚାରି ଜଣ ବରକନ୍ଦାଜ ପହରା । ଆହା, ଲୋକଟାକୁ ପଦେ କଥା କହିବାକୁ କେହି ନାହିଁ । ସମସ୍ତେ ସୁଖର ସାଥୀ, ଅର୍ଥର ଦାସ, ବେଳ ପଡ଼ିଲେ କେହି କାହାର ନୁହେଁ । ତୁମ୍ଭେ ତ ଦେଖିଛ, ଯାହା ଦୁଆରେ ଦ୍ରବ ମରୁ ନାହିଁ, ଯାହା ଦୁଆରେ ମଣିଷ ଦେଖାନଦେଲେ । ଅବସ୍ଥା ସବୁ କରାଏ । ଜଣେ ବିଲାତି କବି କହିଛନ୍ତି, 'ସୂର୍ଯ୍ୟହୀନ ଜଗତ୍ ଆଉ ବନ୍ଧୁଶୂନ୍ୟ ଜୀବନ ସମାନ ।' ଏଣୁ ମନୁଷ୍ୟକୁ ବନ୍ଧୁ ଛାଡ଼ିପାରେ ନାହିଁ । 'ଦଣ୍ଡବତ ମଙ୍ଗରାଜେ ।' ଆସାମୀ ଚମକି ପଡ଼ି ଅନାଇଲେ । ପୂର୍ବେ ସେ ଢେର ଢେର ଦଣ୍ଡବତ ଶବ୍ଦ ଶୁଣିଥିଲେ; ମାତ୍ର ଆଜି ଦଣ୍ଡବତ ଶବ୍ଦଟା ଶୁଣି ତାଙ୍କ ପିଣ୍ଡରେ କିଛି ପ୍ରାଣ ପଶିଲା ପରି ଜଣାଗଲା । ବନ୍ଦୀ କିଛି କଥା କହି ନ ପାରି ଗୋଡ଼ଠାରୁ ମୁଣ୍ଡଯାଏଁ ସେହି ମୂର୍ତ୍ତିକୁ ଦର୍ଶନ କରୁଅଛନ୍ତି । ବିଶାଳ ମୂର୍ତ୍ତି, ଆଣ୍ଠୁ ଲମ୍ବିତ ବାହୁ, ଦେହରେ ତିଳହାତ ଆଜାନୁଲମ୍ବିତ ଛିଟକିଲିଆ ବନ୍ଧଲଗା ସ୍ଥାନେ ସ୍ଥାନେ କାଳିଚିହ୍ନିତ ଚପକନ, ମୁଣ୍ଡରେ ହାତେ ଚଉଡ଼ା ଚବିଶ ହାତ ଲମ୍ବ ଜରିମୁହାଁ ଛାଳିଆ ପାଗବନ୍ଧା, ପାଗୋଡ଼ି ଖଣ୍ଡିକ ପଛରୁ ଫେରି ଆସି ବାଁ କାନ ଡାହାଣ କାନ୍ଧରେ ଡାହାଣ କାନ ବାଁ କାନ୍ଧରେ ଗୁଡ଼ିରେ ଛକା ପଡ଼ିଛି, ଫିକିଫୁଲିଆ ମାଣିଆବନ୍ଧୀ ଖଦି ପିନ୍ଧା, ଗୋଡ଼ରେ ଫୁଲପକା ମରହଟ୍ଟୀ ଯୋତା, କାନରେ ପାହାଡ଼ୀ ଶର କଲମ, ଯାଉଁଳି ଦାନ୍ତ, ଏକଗାଲିଆ ଗାଲେ ପାନ । ସେହି ମୂର୍ତ୍ତି ଦେଖି ଆଶା, ଭରସା, ବିସ୍ମୃତି, ସନ୍ଦେହ ଆସାମୀ ମନକୁ ମନ୍ଥି ପକାଉଅଛି । କିଛି କଥା କହିପାରୁ ନାହାଁନ୍ତି । ଜଣା ଲୋକ ପରି, ସେହି ଲୋକ ପରି ଦଣ୍ଡବତ କଲେ, ଏ କିଏ ? ଆମ୍ଭେମାନେ ଅନୁମାନ କରୁଁ, ଏ ଜଣେ ବନ୍ଧୁ ହେବେ । ଚାଣକ୍ୟ ଶାସ୍ତ୍ରରେ ଆମ୍ଭମାନଙ୍କର ବିଶେଷ ଜ୍ଞାନ ଥିବାରୁ ଏପରି ମୀମାଂସା କରିବାକୁ ସାହସ କରିଅଛୁଁ । ଶାସ୍ତ୍ରରେ ଅଛି, "ରାଜଦ୍ୱାରେ ଶ୍ମଶାନେ ଚ ଯ ତିଷ୍ଠତି ସ ବାନ୍ଧବଃ ।" ବୋଇଲେ ରାଜଦ୍ୱାରେ କି କଚେରିରେ, ଶ୍ମଶାନେ କି ମଶାଣି ପଦାରେ, ତିଷ୍ଠତି କି ଥାନ୍ତି ଇତ୍ୟର୍ଥଃ । ସ ବାନ୍ଧବ ଅର୍ଥାତ୍ ଓକିଲମାନେ କଚେରିରେ, ଆଉ ବିଲୁଆମାନେ ମଶାଣିରେ ଥାନ୍ତି, ଏମାନେ ବାନ୍ଧବ । କେବଳ ଜୀବିତ ପକ୍ଷେ ଆଉ ମୃତପକ୍ଷେ ପ୍ରଭେଦ । ଆସାମୀକୁ ବିସ୍ମିତ ଦେଖିଯାଏ ଭଲ ଭିକକରି

ରହିଁ ରହିବାକୁ ହେଲା ନାହିଁ । ପହରା ବରକନ୍ଦାଜ ଗୋପୀ ସିଂହ ଚହ୍ନାଇ, "ଦେଖ, ଏହାଙ୍କର ନାମ ରାମ ରାମ ଲାଲ, କଚେରିର ବଡ଼ ଓକିଲ, ଏହାଙ୍କୁ ଆଚ୍ଛା କରି ଧର । ସାହେବଙ୍କୁ ଏହାଙ୍କ କଥା ଖୁବ୍ ଶୁଣନ୍ତି ।" ଓକିଲ ବାବୁ ଖୁସି ହୋଇ ଗୁଡ଼ ଅଉ ଦୁଇ ବାହୁରେ ଦୁଇଥର ଆଖି ବୁଲାଇଲେ, ଦୁଇଥର ଗଳା ଖଙ୍କାରି ପୁରୁଣା ସ୍ନେହୀ ମଣିଷପରି କହିଲେ, "ମଙ୍ଗରାଜେ, ମାମଲାଟା ଏତେ ବଢ଼ିଗଲା, ଆଗରୁ ମୋତେ ଖବର ଦେଲ ନାହିଁ ? ସଂସାର ଯାକ ମାମଲା ମୋ ପାଖରେ, ଲୋକମାନେ ଥୁକ ପକାଇବାକୁ ସୁଦ୍ଧା ବେଳ ଦେଉ ନାହାନ୍ତି, ତେବେ ମଧ୍ୟ ଆପଣଙ୍କ ନାମ ଯେପରି କାନରେ ପଡ଼ିଲା, ଧାଇଁଛି ।" ମଙ୍ଗରାଜ ଫଁ କରି ନିଃଶ୍ୱାସଟାଏ ପକାଇ ଭେ କରି କାନ୍ଦ ପକାଇଲେ, ହାତ ଯୋଡ଼ି ଭୂଇଁରେ ମୁଣ୍ଡ ଲଗାଇ ଦେଲେ ।

ଓକିଲ—"ଉଠନ୍ତୁ ଉଠନ୍ତୁ, ଏଣିକି ସବୁକଥା ମୋତେ ଲାଗିଲା, ଆପଣ ନିଶ୍ଚିନ୍ତରେ ବସନ୍ତୁ, କିଛି ପରବାଏ ନାହିଁ । କାଲି ରାତିରେ ସାହେବଙ୍କ କୋଠିକି ଯାଇଥିଲି, ଢେର ଢେର ମାମଲା କଥା ପଡ଼ିଲା, ଆପଣଙ୍କ କଥା ମୋତେ ଜଣା ଥିଲେ ଆଜି କଣ ବୋଲି କଣ କରି ପକାଇଥାନ୍ତି । ଆପଣଙ୍କ ମକଦ୍ଦମା ହାଲ ମୁଁ ସବୁ ବୁଝିଗଲିଣି, ସବୁ ମିଛ, ସବୁ ମିଛ । ସେହି ଯେ ମୁହଁପୋଡ଼ା ଦାରୋଗା, ତାହାର ଏତେ ଖେଳ । ସେହି ଦାରୋଗାର ହାଲ କଣ କରିବି, ଦେଖିବେ । ଥରେ ସାହେବଙ୍କ ସଙ୍ଗରେ କଥା ହେଉ ।"

ମଙ୍ଗରାଜ—(ହାତ ଯୋଡ଼ି) "ଓକିଲ ସାହେବ ! ମୁଁ କଣ କହିବି, ମୋତେ ବଞ୍ଚାଉନ୍ତୁ, ମୋତେ ପ୍ରାଣ ଦିଅନ୍ତୁ. ଆପଣ ମୋର ଧର୍ମର ବାପ, ମୁଁ ପିଲାଲୋକ, ପିଲା ବୁଦ୍ଧି, ଆପଣଙ୍କୁ ସବୁ ଲାଗିଲା ।"

ଓକିଲ—"ଆପଣଙ୍କୁ କିଛି କହିବାକୁ ହେବ ନାହିଁ, ମୁଁ ତ ସବୁ ଜାଣେଁ, ସବୁ କହିବି । ତେବେ ଗୋଟାଏ କଥା କଣ ଜାଣନ୍ତି, ମାମଲାଟା କିଛି ଟାଣ, ଭାରି ଟାଣ, ଫାଶିର ମାମଲା, ବେଳରୁ ନ ଜଗିଲେ ଫାଶୀ ଠିକ୍ । ପୁଣି ସେହି ପୋଡ଼ାମୁହାଁ ଦାରୋଗାଟା ପିଛା ଧରି ରହିଛି । ଆପଣ ତ ବୁଦ୍ଧିମନ୍ତ ଲୋକ, ଅଧିକ କଣ କହିବି, କଚେରୀ ମାମଲା କଥା ସବୁ ଆପଙ୍କୁ ଜଣା, କିଛି ଖରଚ ଲାଗିବ, ଖରଚକୁ ଡରିଲେ ହେବ ନାହିଁ, ହାତ ଫିଟାଇବାକୁ ହେବ । ଦାରୋଗା କଣ କହି ବୁଲୁଛି ଶୁଣିଲେଣି ତ ? ଫାଶୀ ମକଦ୍ଦମା । ପ୍ରାଣ ଥିଲେ ସବୁ । ଟଙ୍କା ଆପଣ ଅର୍ଜିଛନ୍ତି, କି ଟଙ୍କା ଆପଣଙ୍କୁ ଅର୍ଜିଛି ? ଆପଣ ସେଥିର ଗୋଟାଏ ଠିକ୍ ପକାଉନ୍ତୁ ।"

ମଙ୍ଗରାଜ ( କାନ୍ଦ କାନ୍ଦ )—"ଆଜ୍ଞା, ଏଥିରେ କେତେ ଟଙ୍କା ଲାଗିବ ? ମୋ ହାତରେ ତ ଗୋଟିଏ ପଇସା ନାହିଁ, ସାଙ୍ଗରେ କେହି ଲୋକ ନାହିଁ । ଯେ ଗୁମାସ୍ତା ରହିକରି ଆସିଅଛନ୍ତି, ଦାରୋଗା ସେମାନଙ୍କୁ ମୋ ସାଙ୍ଗରେ କଥା କହି ଦେଉନାହିଁ । ମୋତେ ଖଲାସ କରି ଦେଉନ୍ତୁ, ଘରକୁ ଗଲେ ହଜାରେ ଟଙ୍କା ଆପଣଙ୍କୁ ଦେବି ।"

ଗୋପୀ ସିଂହ—"ଆହେ ମଙ୍ଗରାଜେ, ତୁମେ କି ଏହି ବୁଦ୍ଧିରେ ଜମିଦାରୀ କରୁଥିଲ ? ଏଠାରେ କଣ କଣା ବିକା କଥା ଯେ, ଧାର ଉଧାର ଚଳିବ ? 'ମକ୍‌କେଲ ବୋଲେ ରଖ ମଉସା, ଓକିଲ ବୋଲେ ଆଣ ପଇସା ।' 'ଟଙ୍କାଟି ଥୁଅ କଥାଟି କୁହ ।' ଟଙ୍କା କାଢ଼, ଟଙ୍କା କାଢ଼, ମାମଲା ଜିଣିବ ତ ଟଙ୍କା କାଢ଼ । ଓକିଲ ସାହେବ, ମୁଁ ଆଉ ଆସାମୀ ସାଙ୍ଗରେ କଥା କହିବାକୁ ଦେବି ନାହିଁ । ନାଜର ଦୁଇ ପଦ କଥା କହିବାକୁ ହୁକୁମ ଦେଇଥିଲେ । ମୁଁ ଏକଲା ନାହିଁ, ଆମ୍ଭେମାନେ ଚାରିଜଣ ।"

ଓକିଲ—"ଶୁଣୁଛ ତ ମଙ୍ଗରାଜେ ! ସହଜ କଥା ନୁହେ, ବରକନ୍ଦାଜ ଠାରୁ ହାକିମ ପର୍ଯ୍ୟନ୍ତ ସମସ୍ତଙ୍କୁ

ହାତ କରିବାକୁ ହେବ । ମାମଲା ଯେପରି ଝାଣ, ଆଉ କେହି ଓକିଲ ହୋଇଥିଲେ ନଗଦ ଦଶ ହଜାର ଧରି ମଧ୍ୟ ମୁହଁ ଦେଇ ପାରନ୍ତା ନାହିଁ, ମୁଁ ବୋଲି ଏଥିରେ ପଶୁଛି । ଆପଣ ଯେତେବେଳେ ଧର୍ମବାପ ବନାଇଲେଣି, ଆଉ କଣ ଭସାଇ ଦେବି ? ଆଚ୍ଛା; ଏହି ମାମଲାରେ ଯେତେ ଟଙ୍କା ଖରଚ ହେବ, ମୁଁ ଖରଚ କରୁଛି, ଏଥିରେ ତ ଦଶ ହଜାରରୁ ପଇସାଏ ଊଣା ନୁହେଁ । ଆପଣଙ୍କ ଜମିଦାରୀ ମୋତେ କଟକବଲା ଲେଖି ଦେଉନ୍ତୁ । ସବୁ ଟଙ୍କା ଯେ ଏବେ ଖରଚ ହୋଇଯିବ, ଏପରି ନୁହେ । ଆପଣ ଖଲାସ ହେଲେ ମୁଁ କଡ଼ା ଦାମ ହିସାବ ବୁଝାଇ ଦେବି ।"

ମଙ୍ଗରାଜେ ଗାଲରେ ହାତ ଦେଇ ଦଣ୍ଡେ ବସି କଣ ଭାବିଲେ । ସାପର ଗୋଡ଼ ସାପକୁ ଦିଶେ! କଟକବାଲା ଅର୍ଥ ମଙ୍ଗରାଜେ ଭଲ ଜାଣନ୍ତି । ତେବେ ମନୁଷ୍ୟ ଭାସି ଯାଉଥିବା ବେଳେ ବାଘ ଲାଞ୍ଜଟା ମଧ୍ୟ ହାତରେ ପଡ଼ିଲେ ଛାଡ଼େ ନାହିଁ ।

ଓକିଲ ରାମରାମ ଲାଲ କାର୍ଯ୍ୟବେଳେ ଖୁବ୍ ଚଞ୍ଚଳ । ଦୁଇ ଘଣ୍ଟା ମଧ୍ୟରେ ସିଠାମ କଣି, କବାଲା ଶଠା, ସାଫି ଶେଷ କଚେରିରେ କାଜିଖାନାରେ କବାଲା ରେଜେଷ୍ଟରୀ ସମାପ୍ତ । ଓକିଲ ସାହେବ ଶେଷରେ କହିଲେ, "ମଙ୍ଗରାଜେ ! ଆପଣ ବେପରବାଏ ହାଜତଖାନାରେ ବସିଥାନ୍ତୁ, ମୁଁ ଅଛି, ଚିନ୍ତା ନାହିଁ ?"

— —

## -୨୧-

## କଟକ ସେସନ ଜଜକୋଠ

ଆଜି ଜଜକୋଠରେ ଭାରି ଭିଡ଼ । କଚେରିଆ, ବଜାରି ହଟାରି ପର୍ଯ୍ୟନ୍ତ ଦେଖିବାକୁ ଧାଇଁଛନ୍ତି । କୌଣସି ସ୍ଥାନରେ ବାଘ ପାଲ ହେଲେ ଦେଖଣାହାରୀ-ମାନେ ଯେପରି ଗାଆଁଶିଆମାନଙ୍କ ବେଶ ବାନ୍ଧିବା ଆଗରୁ ଜମି ଯାଆନ୍ତି, ସେହିପରି ଜଣ ଜଣ କରି କଚେରି ପୂରି ଗଲେଣି । ଭାରି ଭିଡ଼, ଭାରି ଗୋଳମାଳ, ଦୁଇଜଣ ଚପରାସି, 'ଗ୍ରେ-ଓପ୍, ଗ୍ରେ-ଓ-ପ୍' କହି ଆହୁରି ଗୋଳମାଳ ବଢ଼ାଉଛନ୍ତି । ମଫସଲର ଜଣେ ମାତବ୍ବର ଜମିଦାର ମଣିଷମାରୁ ମାମଲାରେ ଚଲାଣ ହୋଇଆସିଛି । ମେଜେଷ୍ଟର ସାହେବ ଦୋହରା ସମ୍ବୋଦ କରିଥିଲେ, ପାଞ୍ଚ ଦିନ ହେଲା ମକଦ୍ଦମା ଚାଲିଛି, ଆଜି ଶେଷ ବିଚାର ଦିନ, ମାମଲା ଏ ପର୍ଯ୍ୟନ୍ତ ପଡ଼ି ନାହିଁ । କାଲି ବୁଧବାର ବିଲାତି ମେଲ ଯିବ । ସାହେବ 'ମାଇ ଡିଅର ଲେଡ଼ି' ଆରମ୍ଭ କରି ଚଞ୍ଚଳ ଚିଠିଖଣ୍ଡି ଲେଖି ପକାଉଛନ୍ତି । ଫୌଜଦାରୀ ମାମଲା ପଡ଼ିଲେ ହାକିମ ସାହେବ ବିଲାତି ଛାପା କାଗଜ ମେଲାଇ ବସନ୍ତି କମ୍ବା ଚିଠି ଲେଖା ଆରମ୍ଭ କରନ୍ତି, ପେସ୍କାର ଜମା ସବୁ କାର୍ଯ୍ୟ । ସାହେବ ଜମାନବନ୍ଦୀ କାଗଜରେ ଗାରେଗାରେ ଦସ୍ତଖତ ଟାଣି ଦେବା ଆଉ ରାୟ ଶୁଣାଇବାରେ ମାଲିକ । ଆଜି ସାହେବଙ୍କୁ ସବୁ କାର୍ଯ୍ୟ ହାତରେ କରିବାକୁ ହେବ; କାରଣ ଆଜି ସାକ୍ଷୀ ଜଣକ ଇଂରେଜ, ମଧ୍ୟ ଇଂରାଜୀରେ ରାୟ ଲେଖିବାକୁ ହେବ । ଆଜିକାର କାରଖାନା ସବୁ ଇଂରେଜୀମୟ; ମାତ୍ର ଆମ୍ଭେମାନେ ଓଡ଼ିଆ, ପାଠକ-ମାନେ ମଧ୍ୟ ସେହିପରି, ଛାପାଖାନାର ଅକ୍ଷରଗୁଡ଼ାକ ମଧ୍ୟ ଏହି ଦେଶୀ; ସୁତରାଂ ଆମ୍ଭମାନଙ୍କୁ ତରଜମା କରି ସମସ୍ତ କଥା ଲେଖିବାକୁ ହେଉଛି । ସାହେବ ମେଞ୍ଚାଏ ଛେପରେ ଲଫାଫା ବନ୍ଦ କରି ଚପରାସୀ ହାତରେ ଡାକଘରକୁ ପଠାଇ ଦେଇ କହିଲେ, "ଡ଼ିଏଲ ବାବୁ ! ମକଦ୍ଦମା ପେସ୍ କର ।" ସରକାର ତରଫ ଓକିଲ ଈଶାନଚନ୍ଦ୍ର ସରକାର ଏବଂ ପୋଲିସ ଦାରୋଗା ଇନାଏତ ହୋସେନ—ମୁଦାଲା ତରଫ ଓକିଲ ରାମ ରାମ ଲାଲ ହାଜର ।

ଆସାମୀ ରାମଚନ୍ଦ୍ର ମଙ୍ଗରାଜ, ଆସାମୀ-କାଠଗଡ଼ା ଭିତରେ ହାତ ଯୋଡ଼ି ଠିଆ ହୋଇଛନ୍ତି । ଜଜ୍ ସାହେବଙ୍କ ଡାହାଣ ପାଖରେ ଚୌକିରେ ବସି ହୋଲ୍

ବାଇବେଲ ଧରି ଡାକ୍ତର ସାହେବ ଜମାନବନ୍ଦୀ ଦେଲେ –

"ମୋ ନାମ ଏ. ବି. ସି. ଡି. ଡଗ୍‌ଲସ, ବାପର ନାମ ଇ. ଏଫ୍. ଜି. ଏଇଚ୍. ଡଗ୍‌ଲସ୍, ଜାତି ଇଂରେଜ, ବୟସ ୪୦, ହାଲ ସାକିନ କଟକ । ଆମ୍ଭେ କଟକ ଜିଲ୍ଲାର ସିଭିଲ ସାର୍ଜନ । ଗତ ୮ତାରିଖ ଭୋର ସାତଟା ତିରିଶ ମିନିଟ ସମୟରେ ସରକାରୀ ଲସ ମାଇନା ଘରେ ଆମ୍ଭ ସାକ୍ଷାତରେ ସାରିଆର ଲସ ପୋଷ୍ଟମର୍ଟେମ ଏକ୍‌ଜାମିନ୍ କରାଯାଇଛି । ଚୌକିଦାର ଗୋବରା ଜେନା ଚହ୍ଲିତ ଦେବା ଅନୁସାରେ ଆମ୍ଭେ କହୁଛୁଁ, ତାହା ସାରିଆର ଲସ ଥିଲା । ଆମ୍ଭେ ଯେତେଦୂର ପରୀକ୍ଷା କରିଅଛୁ, ସାହସ କରି କହିପାରୁଁ, କୌଣସି ପ୍ରାଣ-ନାଶକ ଅସ୍ତ୍ର ବା ଅନ୍ୟ ପଦାର୍ଥ ଏହାର ମୃତ୍ୟୁର କାରଣ ନୁହେ । ଦୀର୍ଘକାଳ ଉପବାସ ରହି ବିଶେଷ ମାନସିକ ଯନ୍ତ୍ରଣା ଭୋଗ କରି ମରି ଯାଇଥିବାର ଆମ୍ଭେ ଯଥେଷ୍ଟ ପ୍ରମାଣ ପାଇଅଛୁଁ ।"

ଜଜ ସାହେବଙ୍କ ସୁଆଲରେ ସାକ୍ଷୀ ଜବାବ ଦେଲେ, "ଲସ ଦେହରେ କୌଣସି ପୀଡ଼ାର ଲକ୍ଷଣ ଥିଲା ନାହିଁ, ଅଥଚ ତାହା ଦେହର ରକ୍ତ ଶୁଖି ଯାଇଥିଲା । ହୃଦୟରେ ପ୍ରାୟ ରକ୍ତ ଥିଲା ନାହିଁ । ପାକସ୍ଥଳୀ ପ୍ରାୟ ଶୂନ୍ୟ ଥିଲା । ମୂତ୍ରାଧାର, ମଳବାହିନୀ ନାଡ଼ିରେ କିଛି ପଦାର୍ଥ ନ ଥିଲା । ଏହି ସମସ୍ତ ଲକ୍ଷଣ ଦ୍ୱାରା ଜାଣୁଛୁ ସେ ଉପବାସରେ ମରିଛି ।"

ସରକାରୀ ଓକିଲଙ୍କ ସୁଆଲରେ ଜବାବ—"ହଁ, ଲସ ପିଠିରେ ତିନି ଜାଗାରେ ଚିହ୍ନ ଥିବାର ଗୋବରା ଜେନା ଆମ୍ଭଙ୍କୁ ବିଶେଷରୂପେ ଦେଖାଇଲା । ଆମ୍ଭେ ମଧ୍ୟ ଉତ୍ତମରୂପେ ପରୀକ୍ଷା କରି ଦେଖିଅଛୁଁ, ତାହା ମାଡ଼ର ଦାଗ ନୁହେ, ପ୍ରାଣତ୍ୟାଗ ଉତ୍ତାରେ ଗରମ ଲୁହା କିମ୍ବା ଅନ୍ୟ କୌଣସି ଆଗ୍ନେୟ ପଦାର୍ଥରେ ଦାଗ ଦେଲେ ଯେପରି ଚିହ୍ନ ହୁଏ, ଏହା ସେହିପରି ଈଷତ୍ ପୋଡ଼ା ଚିହ୍ନ ।"

ପୁନର୍ବାର ସରକାରୀ ଓକିଲଙ୍କ ସୁଆଲରେ—"ନା ଆମ୍ଭେ ନିଜେ ଛୁରି ଧରି ଶବ କାଟି ନାହୁଁ, ନେଟିଭ ଡାକ୍ତର ଗୌରାଙ୍ଗ କର, ଆଉ କମ୍ପାଉଣ୍ଡର ବାସୁଦେବ ପଟ୍ଟନାୟକ ଦୁଇ ଜଣ ଆମ୍ଭ ସାକ୍ଷାତରେ ଶବଚ୍ଛେଦ କରିଛନ୍ତି ।

ପୁନର୍ବାର ଓକିଲ ସୁଆଲରେ ସାକ୍ଷୀ କିଞ୍ଚିତ୍ ଖପା ହୋଇ ଜବାବ ଦେଲେ, "ଆମ୍ଭେ ଆଜକୁ ସାଢ଼େ ଦଶ ବରଷ ହେଲା ସିଭିଲ ସର୍ଜନୀ କରି ଆସୁଛୁଁ, ପ୍ରଥମେ ମିଲଟେରୀ ଡିପାର୍ଟମେଣ୍ଟରେ ଥିଲୁଁ, ଆମ୍ଭେ ଲଣ୍ଡନ କଲେଜରେ ଡାକ୍ତରୀ ପଢ଼ି ପାସ କରିଛୁଁ ।"

ପୁନର୍ବାର ସୁଆଲରେ ଜବାବ ଦେଲେ, "ପ୍ରଥମେ ଆମ୍ଭେ ହସ୍‌ପିଟାଲ ଆସିଷ୍ଟାଣ୍ଟ ଥିଲୁ, ବର୍ମାଯୁଦ୍ଧରେ ଆମ୍ଭର ପ୍ରମୋଶନ ହୋଇଛି ।"

ଜଜ ସାହେବ ଆସାମୀ ଓକିଲକୁ ଅନାଇ କହିଲେ, "ତୁମାରା କୁଛ ସବାଲ ହେ ?"

ଆସାମୀ ତରଫ ଓକିଲ ରାମରାମ ଲାଲାଙ୍କ ସୁଆଲ, ଡାକ୍ତର ସାହେବଙ୍କୁ ଅନାଇ କହିଲେ, "ଆଚ୍ଛା ମିସଲ ଉପରେ ଆସାମୀର ଯେଉଁ ବାଉଁଶ ଠେଙ୍ଗା ଅଛି, ଏହି ଠେଙ୍ଗାର କିଛି ଦାଗ ଲସ ପିଠିରେ ଥିଲା କି ?"

ଜଜ ସାହେବ—"ନନସେନ୍‌ସ ! ଅଉର କ୍ୟା ପୁଛନେକା ହେ ପୁଛୋ ।"

ଓକିଲ ସାକ୍ଷୀକୁ ପୁନର୍ବାର ଜେରାକଲେ – "ଆଚ୍ଛା, ଆପଣ କହୁଛନ୍ତି ସାରିଆ ଉପାସ ରହି ମରିଛି, ସେ ଆପେ ଉପାସ ରହିଥିଲା, କି ଆସାମୀ ତାକୁ ଉପାସ ରଖାଇଥିଲା ?"

ଜଜ ସାହେବ—"କୁଛ୍ ବାତ୍ ନେହି, ଗୋ ଅନ୍, ଚଲେ ଚଲେ ।"

ପୁନର୍ବାର ଜେରା - "ଆଚ୍ଛା, ସାରଆ ଆସାମୀ ଦୁଆରେ ମରିଥିବାର କିଛି ପ୍ରମାଣ ଅଛି ?"

ଜଜ ସାହେବ ଖପା ହୋଇ କହିଲେ—"ଦେଖୋ, ତୁମ୍ ଏସା ବେହୁଦା ସବାଲ କରେଗେ ତ ତୁମାରା ଓକାଲତି କେନ୍‌ସଲ କର ଦେଗା ।"

ଓ..ଲ –"ହଜୁର ଖୋଦାବନ୍ଦ୍ –ମା ବାପ— ଦୁନଆକା ବାଦସା ।" *

ଆସାମୀର ଜବାବ ନଆଗଲା ଉତ୍ତାରେ ଦୁଇ ପକ୍ଷ ଓକିଲଙ୍କ ବକ୍ତୃତା ହେଲା, ଘାର ଝଟାପଟା ଲଗିଲା, ଊଣା ନୁହେ, ଅଢ଼େଇ ଘଣ୍ଟା କାଳ ବକ୍ତୃତା । ଏହି ଅବ-କାଶରେ ସାହେବ ବେଁ ଲମ୍ବର ଖଣ୍ଡେ ଛପା କାଗଜ ପଢ଼ି ପକାଇ ଟିଫିନ ଖାଇ ଆସିଲେଣି । ହାକିମ ବନ୍ଦ କରାଇ ନ ଥିଲେ ବକ୍ତୃତା ବରାବର ଚାଲିଥାନ୍ତା ।

ହାକିମଙ୍କ ହୁକୁମ ଅନୁସାରେ ସେରସ୍ତାଦାର ରୋବକାରୀ ଲେଖି ପ୍ରକାଶ କଲେ । ସେହି ରୋବକାରୀଟା ବାରଫର୍ଦ କାଗଜରେ ଲେଖାଗଲା । ରୋବକାରୀ ଲେଖାଯାଇ ପ୍ରକାଶ ହେବାକୁ ତିନ ଦିନ ଲଗିଲା । ଆମ୍ଭେମାନେ ସେହି ରୋବକାରୀର ସହିମୋହର ନକଲ ହାସଲ କରିଛୁ; ମାତ୍ର ଆମ୍ଭେମାନେ ସମସ୍ତ କଥା ସଂକ୍ଷେପରେ ବୋଲି ଆସୁଥିବାରୁ ସେହି ରୋବକାରୀର ଯେତିକ କଥା ପ୍ରକାଶ କଲେ ପାଠକ ମକଦ୍ଦମାର ସମସ୍ତ ହାଲ ବୁଝି ପାରିବେ, ଆମ୍ଭେମାନେ ତେତିକ ସାର ଅଂଶ ମାତ୍ର ପ୍ରକାଶ କରୁଛୁଁ ।

ରୋବକାରୀ କଚେରୀ ଅଦାଲତ ଓ ଫୌଜଦାରୀ ସେସନ୍ ଜଜ୍ କୋର୍ଟ ଇଜଲାସ ଏଇଚ୍. ଆର, ଜେକସନ୍ ସ୍କୋୟାର ସେସନ୍ ଜଜ୍ ମିଲକପୁତ ଶ୍ରୀଯୁତ ଇଷ୍ଟଇଣ୍ଡିଆ କୋମ୍ପାନୀ ବାହାଦୁର ଓଡ଼ିଶା ଖଣ୍ଡ ଜିଲେ କଟକ ।

ସରକାର ବହାଦୁର ମୁଦେଇ-ବନାମ-ରାମଚନ୍ଦ୍ର ମଙ୍ଗରାଜ ସାଃ ଗୋବିନ୍ଦପୁର, ପ୍ରଃ ଅସୁରେଶ୍ୱର, ଜିଲେ କଟକ ମୁଦାଲା । ସାରିଆ ନାମକ ଗୋଟିଏ ଚଣ୍ଡାଳୁଣୀ ସ୍ତ୍ରୀକୁ ହତ୍ୟା କରିଥିବା ଏବଂ ତାହା ଘରର ଆସବାବ ଲୁଟତରାଜ କରି ନେଇଥିବାର ମାମଲା ।

ନଥିର ସମସ୍ତ କଥା କାଗଜାତ୍ ଏବଂ ପକ୍ଷମାନଙ୍କର ସମସ୍ତ କଥା, ଓକିଲମାନଙ୍କର ଜବାବ ସୁଆଲ ଦୃଷ୍ଟି ଏବଂ ଶ୍ରବଣରେ ଆସିଲା ଉତ୍ତାରେ ଜଣାଗଲା କି, ଏହି ମକଦ୍ଦମା ପୋଲିସ ଚାଲାଣୀ ଅଟେ । ଜିଲ୍ଲାର ମାଜିଷ୍ଟ୍ରେଟ ସାହେବ ଆସାମୀ ଉପରେ ନରହତ୍ୟା ଅଭିଯୋଗ କରି ଏହି ମକଦ୍ଦମା ସେସନ ସମ୍ପ୍ରୋଦ କରିଛନ୍ତି । ଆସାମୀର ଦୋଷ ସାବ୍ୟସ୍ତ କରାଇବା ନିମନ୍ତେ ପୋଲିସ ଆଠଜଣ ସାକ୍ଷୀର ଜବାନବନ୍ଦୀ କରାଇଛି । ଆମ୍ଭେ ସାକ୍ଷୀମାନଙ୍କୁ ଅତି ସତର୍କତା ଏବଂ ମନୋଯୋଗ ସହିତ ପରୀକ୍ଷା କରିଛୁଁ ଏବଂ ଉଭୟ ପକ୍ଷ ଓକିଲମାନଙ୍କ ବକ୍ତୃତା ଶ୍ରବଣ କରି ଏହି ସିଦ୍ଧାନ୍ତରେ ଉପନୀତ ହୋଇଛୁଁ କି, ଆସାମୀ ପୋଲିସ କଥିତମତେ ବାଉଁଶ ଠେଙ୍ଗାରେ ପ୍ରହାର କରି ସାରିଆକୁ ବଧ କରିନାହିଁ, ଦୀର୍ଘକାଳ ଉପବାସ ଏବଂ ମନଃକଷ୍ଟ ତାହାର ମୃତ୍ୟୁର କାରଣ ଅଟେ । ଆମ୍ଭର ଏପରି ବିଶ୍ୱାସ କରିବାର ହେତୁ ଏହି କି – ପ୍ରଥମ— ନରହତ୍ୟା ମକଦ୍ଦମାର ପ୍ରଧାନ ସାକ୍ଷୀ ସିଭିଲ ସର୍ଜନ ସୁସ୍ପଷ୍ଟରୂପେ ପ୍ରକାଶ କରିଅଛନ୍ତି କି, ଲାସ ଦେହରେ କୌଣସି ପ୍ରକାର ଆଘାତର ଚିହ୍ନ ନ ଥିଲା ।

ଆମ୍ଭେ ସାକ୍ଷୀମାନଙ୍କ ଦ୍ୱାରା ଯଥେଷ୍ଟ ପ୍ରମାଣ ପାଇଛୁ ଯେ, ଏହି ମକଦ୍ଦମାଟି ସମ୍ପୂର୍ଣ୍ଣରୂପେ ଗଠିତ ଅଟେ । ଆମ୍ଭର ବିଶ୍ୱାସ ପ୍ରଥମ ରିପୋଟକାରୀ ଗୋବରା ଜେନା ଚୌକିଦାର ସୂତ୍ରପାତକାରୀ ଅଟେ । ତାହାର ପ୍ରଥମ ରିପୋର୍ଟ ସହିତ ମିଳାଇ ଦେଖିଲେ ସ୍ପଷ୍ଟ

* ଓକିଲ ପାଠକ ଅବଧାନ—ଆପଣ ଭୁଲିବେ ନାହିଁ, ଏ ମାମଲାଟା ଷାଠିଏ ବର୍ଷ ତଳର ।

ଜଣାଯାଏ, ସେ ମିଥ୍ୟାକୁ ସତ୍ୟରୂପେ ପ୍ରତିପନ୍ନ କରାଇବା ନିମନ୍ତେ ଯଥେଷ୍ଟ ଚେଷ୍ଟା କରି ଅଦାଲତରେ କୂଟ ପ୍ରଶ୍ନରେ ଆତ୍ମରକ୍ଷା କରିବାକୁ ଅସମର୍ଥ ହୋଇଛି । ମକଦ୍ଦମାର ଦୃଷ୍ଟ ସାକ୍ଷୀ ବନା ଜେନା ଏବଂ ଧକେଇ ଜେନା ଙ୍କ ଯେଉଁମାନେ ଆସାମୀ ବାଉଁଶ ବାଡ଼ରେ ସାରିଆକୁ ମାରି ପକାଇଥିବାର ବୟାନ କରନ୍ତି, ସେମାନେ ଚୌକିଦାରର ଆତ୍ମୀୟ, ସେମାନଙ୍କ ଘର ଆସାମୀ ଘରଠାରୁ ଦୁଇ କୋଶ ଦୂର, ଅର୍ଦ୍ଧରାତ୍ରି ସମୟରେ ଜାଗରିତ ହୋଇ ଆସାମୀର କାର୍ଯ୍ୟମାନ ଦେଖିବା ନିତାନ୍ତ ଅସମ୍ଭବ । ପୋଲିସ ମାମଲା ଉକ୍ତ ସ୍ଥାନର ଯେଉଁ ନକ୍ସ ଦାଖଲ କରିଅଛି, ସେଥିରୁ ସ୍ପଷ୍ଟ ଜଣାଯାଏ, ଆସାମୀ ଯେଉଁ ସ୍ଥାନରେ ଠିଆହୋଇ ସାରିଆକୁ ବଧ କରିବାର କଥିତ ହୁଏ, ଆଉ ସାକ୍ଷୀମାନେ ଯେଉଁ ସ୍ଥାନରେ ଠିଆ ହୋଇ ଥିବାର ପ୍ରକାଶ କରନ୍ତି, ତନ୍ମଧ୍ୟରେ ତିନ ପରସ୍ତ ଘର ବ୍ୟବଧାନ, ସୁତରାଂ ଦୃଷ୍ଟିରେଖା ଭେଦକରି ଚଳିବା ନିତାନ୍ତ ଅସମ୍ଭବ ଏବଂ ଅନ୍ୟାନ୍ୟ ପାର୍ଶ୍ୱ ଘଟନା ଏବଂ କୂଟ ପ୍ରଶ୍ନରେ ସାକ୍ଷୀମାନଙ୍କର ବିଶୃଙ୍ଖଳ ଜବାବ ଦ୍ୱାରା ଏମାନଙ୍କୁ ଅବିଶ୍ୱାସ କରିବାର ଯଥେଷ୍ଟ କାରଣ ବିଦ୍ୟମାନ ରହିଅଛି । ଏହି ହତଭାଗ୍ୟମାନେ ସରଳ ଗ୍ରାମଲୋକ ଥିବାଯୋଗୁଁ ଅନ୍ୟ ଲୋକ କୁମନ୍ତ୍ରଣାରେ ପ୍ରତାରିତ ହୋଇ କପଟ କାର୍ଯ୍ୟ କରିବାକୁ ପ୍ରବୃତ୍ତ ହୋଇଅଛନ୍ତି, ସେଥିର ଗୁରୁତର ହୃଦୟଙ୍ଗମ କରିବାକୁ ସେମାନେ ଅକ୍ଷମ ଏବଂ ଗୋବରା ଜେନା କୂଟ ପରୀକ୍ଷାରେ ବାରମ୍ବାର ମିଥ୍ୟାକଥା କହୁଥିବାର ପ୍ରକାଶ ପାଇଛି, ଅତଏବ ଆମ୍ଭେ ତାହାକୁ ଫୌଜଦାରୀ ସପୋର୍ଦ କଲୁଁ ।

ଆସାମୀର ପୂର୍ବ ଦୁଷ୍ଟଚରିତ୍ର ପ୍ରମାଣ କରାଇବା ସକାଶେ ପୋଲିସ କେତେ ଜଣ ସାକ୍ଷୀର ଜବାନବନ୍ଦୀ କରାଇଛି; କିନ୍ତୁ ତଦ୍ଦ୍ୱାରା ଆମ୍ଭେ ଏହି ପ୍ରମାଣ ପାଇଅଛୁଁ କି, ଆସାମୀ ଅନ୍ୟ ଲୋକର ସମ୍ପତ୍ତି ହରଣ କରିବା ସକାଶେ କୁଟିଳ ବୁଦ୍ଧି ପ୍ରୟୋଗ କରିବା ବିଷୟରେ ନିପୁଣ ଅଟେ ; ମାତ୍ର ତାହାର ପ୍ରତି ଦୋଷଯୁକ୍ତ ବଳପ୍ରକାଶ କରିବାର ପ୍ରମାଣ ନାହିଁ । ସୁତରାଂ ଏପରି ଲୋକଦ୍ୱାରା ନରହତ୍ୟା ଘଟନା ହେବା ଅସମ୍ଭବ ଅଟେ ଏବଂ ହତ୍ୟା କରିବାର କୌଣସି କାରଣ ମଧ୍ୟ ଦେଖୁ ନାହିଁ ।

ମୃତ ସାରିଆ ବା ଭଗି ଚନ୍ଦର ପାନିଆ ଡୁଙ୍ଗୀ ନରିଜ ଚରଖି ତନ୍ତବୁଣାର ସରଞ୍ଜାମ ଏବଂ କଂସା ତାଲ ପ୍ରଭୃତି ଗୃହର ବ୍ୟବହାର୍ଯ୍ୟ ଦ୍ରବ୍ୟ ପୋଲିସ ଆସାମୀ ଘରୁ ବରାମଦ କରିଛି । ମାତ୍ର ଆସାମୀ ସିବିଲକୋର୍ଟରେ ଯେଉଁ ତାଲିକା ଦାଖଲ କରେ, ସେଥିରୁ ଜଣାଯାଏ ଯେ, ଭଗି ଚନ୍ଦ ଛ ମାଣ ଆଠଗୁଣ୍ଠ ଜମି ଆସାମୀଠାରେ କଟକବନ୍ଧକ ରଖିଥିଲା । ସେହି ମାମଲାର ଅଦାଲତ ଖର୍ଚ୍ଚା ଆଦାୟ ଜମିଲାକୁ ଆସାମୀ ନିଲାମସୂତ୍ରେ ସେ ସବୁ ଖରିଦ କରି ନେଇଅଛି । ଅବଶ୍ୟ ସ୍ୱୀକାର କରିବାର ଯଥେଷ୍ଟ କାରଣ ବିଦ୍ୟମାନ ଅଛି ଯେ, ସେହି କଟ-କବାଲା ନାଲିସ୍ ନିଲାମ ସମସ୍ତ ପ୍ରତାରଣାପୂର୍ଣ୍ଣ; ମାତ୍ର ଉପସ୍ଥିତ ମକଦ୍ଦମାରେ ସେ ସମସ୍ତ ବିଷୟ ବିବେଚ୍ୟ ନୁହେ । ଆସାମୀ ଭଗି ଚନ୍ଦର ଛ ମାଣ ଆଠଗୁଣ୍ଠ ନିଷ୍କର ଭୂମି ଏବଂ ତାହାର ସର୍ବସ୍ୱ ହରଣ କରିବାରୁ ସେହି ଦୁଃଖରେ ଭଗି ଚନ୍ଦ ପାଗଳ ହୋଇ ଯାଇଥିବା, ସାରିଆ ଅନାହାରରେ ପ୍ରାଣତ୍ୟାଗ କରିଥିବା ଆମ୍ଭେ ବିଶ୍ୱାସ କରୁଁ ; ମାତ୍ର ସେଥିପାଇଁ ଆସାମୀକୁ ନରହତ୍ୟା ଅପରାଧରେ ଅପରାଧୀ କରାଯାଇ ନ ପାରେ ।

ଆସାମୀ ଅଗଣା ମଧ୍ୟରୁ ନେତ ନାମକ ଏକ ଗାଈ ଧଳା ରଙ୍ଗର ଗାଈ ପୋଲିସ ବରାମଦ କରିଅଛି । ଗାଈ ଭଗି ଚନ୍ଦର ଥିବା ପକ୍ଷମାନେ ସ୍ୱୀକାର କରୁଅଛନ୍ତି । ଆସାମୀ ପ୍ରକାଶ କରେ ତାହାର ମକଦ୍ଦମା ଖର୍ଚ୍ଚା ଆଦାୟ ନିମନ୍ତେ ଅଦାଲତର ପିଆଦା ନିଲାମ କରିବାରୁ ପ୍ରକାଶ୍ୟ ନିଲାମରେ ସେ ତାହା ଖରିଦ କରିଅଛି । ମାତ୍ର ଏହା ସମ୍ପୂର୍ଣ୍ଣ ଅସତ୍ୟ ଅଟେ; କାରଣ

ସିବିଲକୋର୍ଟ ଦସ୍ତଖତ୍ ମୋହରଯୁକ୍ତ ଯେଉଁ କଲମୀ ଫର୍ଦ ଆମ୍ଭ ସାକ୍ଷାତରେ ଉପସ୍ଥିତ କରାଯାଇଅଛି, ସେଥିରେ ନେତ ଗାଈର ଉଲ୍ଲେଖ ନାହିଁ । ଆମ୍ଭେ ଯଥେଷ୍ଟ ପ୍ରମାଣ ପାଇଛୁଁ ଯେ, ଆସାମୀ ଶଠତା, ପ୍ରତାରଣାଦ୍ୱାରା ପର ସମ୍ପତ୍ତି ଆତ୍ମସାତ୍ କରିବା ବିଷୟରେ ଖୁବ୍ ନିପୁଣ ଅଟେ । ସେ ଜଣେ ସାମାନ୍ୟ ଲୋକ ଥିଲା । ଅସତ୍ ଉପାୟ ଅବଲମ୍ବନ ଦ୍ୱାରା ଅନେକ ଉପାର୍ଜନ କରିଛି ଏବଂ ସେ ଗ୍ରାମର ଜମିଦାର ଏବଂ କ୍ଷମତାଶାଳୀ ଥିବାରୁ ଏବଂ ଭଗିଆ ଚନ୍ଦକୁ ଦୁର୍ବଳ ଏବଂ ପ୍ରତିକାର କରିବାକୁ ଅକ୍ଷମ ଜ୍ଞାନ କରି ସ୍ୱାଭାବିକ ଲୋଭରିପୁ ଦ୍ୱାରା ଚାଳିତ ହୋଇ ଉଲ୍ଲିଖିତ ଗାଈକୁ ଆତ୍ମସାତ୍ କରିଅଛି । ଏହି ସମସ୍ତ କାରଣ ଦୃଷ୍ଟିରେ

ହୁକୁମ ହେଲା କି,

ଆସାମୀ ରାମଚନ୍ଦ୍ର ମଙ୍ଗରାଜକୁ ନରହତ୍ୟା ଅପରାଧରୁ ମୁକ୍ତ ଦିଆଯାଇ ନେତ ନାମକ ଗାଈକୁ ଆତ୍ମସାତ୍ କରିଥିବା ଅପରାଧରେ କଠିନ ପରିଶ୍ରମ ସହିତ ଛ ମାସ କାରାଦଣ୍ଡ ଏବଂ ପାଞ୍ଚ ଶତ ଟଙ୍କା ଜରିମାନା କରାଯାଉ । ଜରିମାନା ଅସୁଲ ନ ହେଲେ ଅତିରିକ୍ତ ତିନିମାସ କାରାରୁଦ୍ଧ ରଖାଯାଉ । ଇତି । ମେ ମାସ ୧୬ ତାରିଖ ସନ ୧୮୩୨ ମସିହା ।

ଏଇଚ୍. ଆର୍. ଜେକ୍‌ସନ
ସେସନ ଜଜ୍ ।

କଚେରି ଶେଷ ହେଲାଣି । ଜଜ୍‌ସାହେବଙ୍କ ବଗି ଚାଲିଗଲାଣି । ଚାରି ଜଣ ବରକନ୍ଦାଜ ଜଣେ ଆସାମୀକୁ ହାତକଡ଼ି ଦେଇ ନାଜରଖାନାରୁ ଜେଲ ଓଆରେଣ୍ଟ ଧରି ବାହାରିଲେ । ଓକିଲ ରାମରାମ ଲାଲ୍ କଚେରି ଆଗ ବରଗଛ ମୂଳରେ ବସିଥିଲେ । ଆସାମୀ ଉପରେ ତାଙ୍କର ଦୃଷ୍ଟି ପଡ଼ିଯିବାରୁ ସେ ଦୂରରୁ ଡାକଦେଲେ, "ଦେଖନ୍ତୁ ମଙ୍ଗରାଜେ, ଆଜି ଆପଣଙ୍କ ସକାଶେ ସାହେବଙ୍କ ଆଗରେ କିପରି ଲଢ଼ିଲି ଦେଖିଲେ ତ ? ଫାଶିରୁ ଖଲାସ କରାଇ ଦେଲି । କିଛି ପରବାଏ କରିବେ ନାହିଁ, ବେଧଡ଼କ ଜେଲଖାନାକୁ ଚାଲିଯାଆନ୍ତୁ, ମାଠିଆଏ ତେଲ ପେଡ଼ି ଥିବେ ନାହିଁ, ସୁପ୍ରିମକୋର୍ଟରେ ଅପିଲ କରି ଖଲାସ କରାଇ ଦେବି ।"

ଆମ୍ଭେମାନେ ନିଶ୍ଚିତ ସମ୍ବାଦ ପାଇ ଅଛୁଁ ଆପିଲ ବିଷୟରେ କୌଣସି ଯତ୍ନ କରାଯାଇ ନାହିଁ ।

———

-୨୨-

## ଗୋପୀସାହୁ ଦୋକାନ ଘରେ

ବିରୂପାନଦୀ କୂଳ—ଗୋପାଳପୁର ଘାଟ, ଏହିଟି କଟକ ଯିବାର ଦାଣ୍ଡ, ଲୋକମାନେ ଏହିଠାରେ ପାରି ହୁଅନ୍ତି । ଆଗେ ଗୋପାଳପୁର ଗ୍ରାମ ଏହିଠାରେ ଥିଲା, ଗଲା ଆଠ ଅଙ୍କ ବୋଦୁଅ ଅଷ୍ଟମୀ ବଢ଼ି ବଢ଼ିରେ ଭାସି ଯାଇଅଛି । ଗ୍ରାମ ଗଲାଣି, ନାମ ଯାଇନାହିଁ । ଭୂଇଁ ଉପରେ ଗୋଟିଏ ଭାରି ବଡ଼ ବରଗଛ । ଗଛମୂଳରେ ଗୋପୀ ସାହୁର ଦୋକାନଘର । ଘରଟି ସାତପାଞ୍ଚ । ସେଥି ମଧ୍ୟରୁ ଅଧିକରେ ଗୋଟିଏ କୋଠରୀ, ଅଧେ ମେଲା । ଆଗରେ ଦୁଇହାତ ଲମ୍ବ ପିଣ୍ଡା । ଦୈବ ଦୁର୍ବଳେ କେହି ବାଟୋଇ ରହିଗଲେ ମେଲାଘରେ ରୋଷେଇ କରନ୍ତି । ଗୋପୀ ବୁଢ଼ା ହୋଇଗଲାଣି, ବଳବାଡ଼ କି ଆଉ ପୂର୍ବରୁ ନାହିଁ । ଗଲା ଅଙ୍କରେ ବୁଢ଼ୀ ଚାଲିଗଲା ଦିନରୁ ତା ଅଣ୍ଟା ବସିଗଲାଣି । ପୁଅମାନେ ମଧ୍ୟ ବୁଢ଼ାକୁ ଧନ୍ଦାରେ ପକାନ୍ତି ନାହିଁ । ଗୋପୀ ଭୁଞ୍ଜା ବସିବା ଲୋକ ନୁହେଁ, ବସିବାଠାରୁ ଘଷିବା ଭଲ—ବରଷେ ହେଲା ଫନ୍ଦାଟାଏ ଫାନ୍ଦିଛି । ଦିନ ପହରକବେଳେ ଚାରିଟା ମୁହଁରେ ଦେଇ ଦୋକାନକୁ ଆସେ, ସଞ୍ଜବେଳେ ଦୋକାନଘରେ ଲମ୍ବା ନଳୀ କୋଲପଟାଏ ପକାଇ ଘରକୁ ଚାଲିଯାଏ । ଦୋକାନଠାରୁ ଘର ଅଧକୋଶେ ଛଡ଼ା । ଦୋକାନରେ ଚାଉଳ, ଡାଲି, ଲୁଣ, ଚୂଡ଼ା, ଧୂଆଁପତ୍ର ରଖିଥାଏ ।

ସଞ୍ଜବେଳେ ଘରକୁ ଯିବାବେଳେ ପସରା ସବୁ ଗୋଟାଏ ଟୋକେଇରେ ଭରତି କରି ଘରକୁ ନେଇଯାଏ । ଗୋପୀ ଗାଁ ଲୋକଙ୍କ ପାଖରେ କହେ, ସେ ଏଣିକି ବଡ଼ ସାହାଖର୍ଚ୍ଚୀ ହୋଇ ପଡ଼ିଲାଣି । ସଞ୍ଜବେଳେ ସୋରିଷେ ସୋରିଷେ ଆପୁ ନ ଖାଇଲେ ରାତିରେ ନିଦ ହୁଏ ନାହିଁ । ଆପୁ ଖାଇସାରି ଚୂଡ଼ାଗୁଣ୍ଡି ଦି'ଟା କମ୍ବା ମୁଢ଼ି ଗୁଣ୍ଡ ଦି'ଟା ପାଟିରେ ନ ପକାଇଲେ ନୁହେଁ । ଧୂଆଁ ଅଭ୍ୟାସ ତ ଅଛି । ହେଲେ ଖର୍ଚ୍ଚ ନିଜ ଅର୍ଜନରୁ ଚଳାଏ । ପୁଅମାନେ ଦୋକାନ କରିବା ସକାଶେ ଯେ ଆଠଣିଟିଏ ଦେଇଥିଲେ, ସେଥିରୁ ଯେ ପଇସାଏ ଅଧଲାଏ ବାହାରେ, ସେଥିରେ ଚଳିଯାଏ, ପାଣ୍ଠିରେ ହାତ ଲାଗେ ନାହିଁ ।

ଅଶିଣମାସିଆ ଦିନ; ଦିନସାକ ମେଘଟା ଘୋଡ଼େଇଛି, ଦୁଇ ତିନ ଅସରା ପାଣି ମଧ୍ୟ ହୋଇଗଲାଣି । ବର୍ଷା ପଡ଼େ ଟପରି ଟପରି, ବାଟଟା କାଦୁଅରେ ଚପର ଚପର, ବାଟୋଇ କେହି ନାହାନ୍ତି । ବେଳ ଆହୁରି ଦଣ୍ଡେ ଅଛି; ମାତ୍ର ମେଘ ଘୋଟିଥିବାରୁ ଅନ୍ଧାର ହୋଇ ଆସିଲା ପରି ଜଣା ଯାଉଅଛି । ଗୋପୀ ଦୋକାନକୁ ଅନାଇ କହିଲା, ''ଆଜି ସକାଳୁ କାହା ମୁହଁ ଗୁହିଁଥିଲି, ଅଧଲାଟିକର ଧୂଆଁ ପତ୍ର ମଧ୍ୟ ସରିଲା ନାହିଁ ।'' ଗୋପୀ ଦୋକାନକୁ ଗୋଟାଏ ଟୋକେଇରେ ପୂରାଇ ଗାମୁଛା ମୁଣ୍ଡରେ ବାନ୍ଧି ପିଣ୍ଡାରେ ବସିଲା । ଆକାଶକୁ ଅନାଇ ଆପେ ଆପେ କହିଲା-''ବେଳ ବୁଡ଼ି ନାହିଁ । ନଦୀଘାଟକୁ ଅନାଇଅଛି, କେହି ବାଟୋଇ ପାରି ହୋଇ ଆସିବ ପରା । ନଦୀକୂଳକୁ ଏକ ଧ୍ୟାନରେ ଅନାଇ ଭଜନ ଆରମ୍ଭ କରିଅଛି—

''ଦିନ ଗଲାଟିରେ ସରି,
ବୃଥା କାଳ କାଟିଦେଲି ନ ଭଜି ଶ୍ରୀହରି । ଘୋଷା ।
ବହି ଯାଉଅଛି ଆୟୁ ନଦୀସ୍ରୋତ ପରି
ପଡ଼ିଲେ କାଳସାଗରେ ନ ଆସିବ ଫେରି ।
ବିଷୟରେ ମତ୍ତ ହୋଇ ଦିବସ ଶର୍ବରୀ,
ଆପଣାର ନିଜ ଧାମ ରହିଛି ପାସୋରି ।
ଦୀନଜନେ ଦୟା କର ଦୟାନିଧି ହରି,
ନିରନ୍ତର ତୁମ୍ଭ ନାମ ଥିବ ହୃଦେ ଧରି ।''

''ଏ ଦୋକାନି—ରହିବାକୁ ଜାଗା ମିଳିବ ?''

ଗୋପୀ ଚମକିପଡ଼ି ଅନାଇଲା, ଦୋକାନ ଆଗରେ ଦୁଇଜଣ ବାଟୋଇ । ଜଣାଟି ମିଛା, ମୁଣ୍ଡରେ ଗାମୁଛା-ଗୁଡ଼ିଆ, ପିଠିରେ ସାନ ଗୋଟାଏ ବୋକାଗ୍ଧ, କାନ୍ଧରେ ତାଳପତ୍ର ଛତାଟିଏ, ଜଣେ ପୁରୁଷ; ତା ପଛଆଡ଼େ ଗୋଟିଏ ସ୍ତ୍ରୀ, ପାଠଶାଢ଼ୀ ଖଣ୍ଡିଏ ପିନ୍ଧା, କୁମ୍ଭକର୍ଣ୍ଣ ଧଡ଼ି ସୂତାଶାଢ଼ୀ ଖଣ୍ଡିଏ ଚଉତା ହୋଇ ଉପରଣା ପଡ଼ିଛି, ସର୍ବାଙ୍ଗ ଢଙ୍କା, କେବଳ ନାକର ଫୁଲଗୁଣା ଆଉ ନାଟମୟୂର ଦିଶୁଛି । ଲୋକେ କହନ୍ତି, 'ଭେକ ଥିଲେ ଭିକ ।' ଲୁଗାପଟାରୁ ଗୋପୀ ବୁଝିଗଲା, ଆଣ୍ଟିଆ ମହାଜନ । ଗୋପୀ ଚଞ୍ଚଳ ଦୋକାନ ପିଣ୍ଡାରୁ ଓହ୍ଲାଇପଡ଼ି ଦୁଇ ଜଣଙ୍କୁ ଦୁଇଟା ଦଣ୍ଡବତ ହୋଇ କହିଲା, ''ଆଜ୍ଞା ଆସନ୍ତୁ, ଦୋକାନ ଉପରକୁ ଆସନ୍ତୁ, ରୋଷେଇ କରନ୍ତୁ, ସବୁ ସରଞ୍ଜାମ ଅଛି, ଦେବା ।'' ଗୋପୀ ଦୁହିଙ୍କ ଗୋଡ଼କୁ ଅନାଇ ଦୁଇ ତାଳ ପାଣି ଦେଲା, ଆଉ ମେଲା ଘରେ ଛିଣ୍ଡା ପଟି ଖଣ୍ଡ ମେଲାଇ ଦେଲା । ସ୍ତ୍ରୀ ଲୋକଟି ଆଗେ ଗୋଡ଼ ଧୋଇ ଓଦାଲୁଗା ପାଲଟି ପଟିରେ ଯାଇ ଚକା ପାଡ଼ି ବସିଲେ । ଦେହର ଅଳଙ୍କାରମାନ ଦେଖି ଗୋପୀ 'ଆଜ୍ଞା, ସାଆନ୍ତ'ସାଆନ୍ତାଣୀ'ଇତ୍ୟାଦି ସମ୍ବୋଧନ କଥାମାନ ପ୍ରତି କଥା ଆଗରେ ବୋଲି ଯାଉଅଛି । ଏଣେ ସ୍ତ୍ରୀଲୋକ ଗୋପୀର ଭକ୍ତି ଦେଖି ଭାରି ଖୁସି ହୋଇ ଗଲେଣି, ପଣତକାନିରୁ ଗୁରିଅଣିଟିଏ ଫିଟାଇ ଗୋପୀ ପାଖକୁ ଫୋପାଡ଼ି ଦେଇ କହିଲେ, ''ଏ ବୁଢ଼ାପୁଅ, ରୋଷେଇ ସରଞ୍ଜାମ ଦେ ।'' ଗୋପୀ ଲଣ୍ଡଭଣ୍ଡ ହୋଇ ସୁଉକିଟିଏ ଉଠାଇ ନେଇ ଦୁଇ ହାତରେ ଲେଉଟା ଲେଉଟି କରି ଦୁଇ ତିନି ଥର ଦେଖିଲା, ତାହା ବାଦ ଦୁଇଥର ଚୁମା ଖାଇ ଦୁଇ ଥର ମୁଣ୍ଡରେ

ମାର କୁଞ୍ଚତଳ କାନରେ ବାନ୍ଧି ନାକ ପାଖରେ ଖୋସି ଦେଲା । ଗୋପୀ ମୁଖ ଦେଖି ଜଣାଯାଏ, ସେ ଆଉଥରେ ମନ ମଧ୍ୟରେ ବୋଲୁଥିବ, "ଆଜି ସକାଳେ କାହା ମୁହଁ ଚାହିଁଥିଲି, ସଉଦା ନ ନେଉଣୁ ସୁଉକ ହଟାଏ ।" ଦୋକାନ ଆରମ୍ଭ ଦିନରୁ ଏହା ନୂଆ କଥା । ଗୋପୀ ରୋଷେଇ ସରଞ୍ଜାମ ସମସ୍ତ; ଅର୍ଥାତ୍ ଚାଉଳ, ଚେପାଳିଆ ଶାଗଜାଇ, ଲୁଣ ଆଣି ଥୋଇ ଦେଇ ଆଗେ ନିଆଁ ବରହା ଫୁଙ୍କି ଚୁଲି ଲଗାଇଦେଲା । ସ୍ତ୍ରୀଲୋକଟି ଭାତ ରାନ୍ଧିବାକୁ, ପୁରୁଷ ମାଠିଆ ଢେବର ହାତରେ ଧରି ପାଣି ଆଣିବାକୁ ବାହାରିଲେ । ସ୍ତ୍ରୀ ଲୋକଟି କହିଲେ, "ଆରେ ବୁଢ଼ାପୁଅ, ଏଠି ଦୁଧ ଘିଅ ମିଳିବ ? ଦୁଧ ଘିଅ ନ ହେଲେ ମୁଁ ଖାଏ ନାହିଁ ।" ଗୋପୀ କହିଲା, "ଆଜ୍ଞା ସତକଥା, ସତକଥା, ନ ମିଳିବାକୁ ସିନା; ଏସବୁ କଣ ଗ୍ରାମ୍ୟ ଠା' ବସିବା ଜିନିସ ? ଜଳଖିଆ ପାଇଁ ଆଜ୍ଞା କାଣ୍ଡିଆ ସରୁ ଚୂଡ଼ା ହୁଅନ୍ତା, ନରୁଚା ଗାଈ ଦୁଧ ହୁଅନ୍ତା, ନବାତ ନୋହିଲେ ଦକ୍ଷିଣୀ ନୂଆ ଗୁଡ଼ ହୁଅନ୍ତା । ଆଉ ଖାଦା ପାଇଁ ବଡ଼ ଶେଉଳ ନୋହିଲେ ବାଳିଆମାଛ, ବନ୍ତଳ କଦଳୀ, ମୁଗଜାଈ, ଦୁଧଘିଅ ହୁଅନ୍ତା । କଣ କରିବି ? ଆଜ୍ଞା ଏଇଟା ତ କାଙ୍ଗାଳି ଦେଶ, ଆପଣଙ୍କର ପଦାରବିନ୍ଦଧୂଳିରଜ କିପରି ମୋ କପାଳକୁ ପଡ଼ିଗଲା । ଆଜ୍ଞା ଗୋଟାକେତେ ପଇସା ଦିଅନ୍ତୁ, ଗାଁ ବୁଲି ଦେଖେଁ ।" ସ୍ତ୍ରୀଲୋକଟି ପୁନର୍ବାର ଗୋଟାଏ ସୁକି ଫୋପାଡ଼ି ଦେଲେ । ଗୋପୀ ପୂର୍ବପରି କାନରେ ବାନ୍ଧି ଗ୍ରାମକୁ ଧାଇଁଲା । ରାତି ଅଧଘଡ଼ି ସମୟରେ ଗୋପୀର ସାନପୁଅ ବୃନ୍ଦାବନ ଖଣ୍ଡେ କଦଳୀପତ୍ର ଠୋଲାରେ ଦୁଇ ତିନି ତୋଳା ଘିଅ, ଗୋଟାଏ ମାଟି ଠେକିରେ ମାଣେ ଅନ୍ଦାଜ ଦୁଧ, ଯୋଡ଼ାଏ ବାଇଗଣ ଦୋକାନ ପିଣ୍ଡାରେ ଥୋଇଦେଇ କହିଲା, "ଆଜ୍ଞା ବାପା ବଟେଇଦେଲା, ସେ ଅନ୍ଧାରକଣା, ଆସିପାରିଲା ନାହିଁ ।"

ଦୋକାନରେ ତୃତୀୟ ଲୋକ ନାହିଁ, ସ୍ତ୍ରୀଲୋକଟି ଭାତ ରାନ୍ଧୁଛି, ପୁରୁଷଟି ଯୋଗାଇ ଦେଉଛି, ଦୁହେଁ କଥାବାର୍ତ୍ତା ଆରମ୍ଭ କଲେ ।

ସ୍ତ୍ରୀ—ଶୁଣିଲୁ ରେ ଗୋବିନ୍ଦା ! ଶୁଣିଲୁ ତ, କାନ ଲଗେଇ ଶୁଣିଲୁ ତ, ମତେ ସମସ୍ତେ ସାଆନ୍ତାଣୀ କହୁଥିଲେ; ଯେଉଁଠିକି ଯିବ ସମସ୍ତେ ସାଆନ୍ତାଣୀ କହିବେ, ତତେ ସାଆନ୍ତ କିଏ କହୁଥିଲା ? ଆରେ ଚାଲ, କଟକକୁ ଚାଲ, ତତେ କଣ କରିଦେବି ଦେଖିବୁ, ତତେ ଚିରଦିନ ହେଲା ବୁଝେଇ ବୁଝେଇ ଥକିଲଣି ।

ଗୋବିନ୍ଦା—ନା ଚମ୍ପା ସାଆନ୍ତାଣୀ, ଚାଲ ଆମ ଗାଁକୁ ଯିବା; ସେଇଠି ରହିବା । ବିଲବାଡ଼ି କିଣିବା, ଚାଷ କରିବା, ହଳିଆ ରଖିବା ।

ଚମ୍ପା—ଆରେ, ସତେ, ଲୋକେ ଯାହା କହନ୍ତି,

'ଅତି ନଉଛଣା ଅନ୍ଧାର ରାତି,
ଅତି ନଉଁଛଣା ଭଣ୍ଡାର ଜାତି ।'

ବିଲବାଡ଼ି କଣ ହେବ ରେ ? ଆରେ ଯାହା ହାଙ୍ଗରେ ଆଣିଛୁ, ଶହେ ବରଷ ଦ'ଶ ବରଷ ବସି ଖାଇଲେ ତ ସରିବ ନାହିଁ ।

ଗୋବିନ୍ଦା—ନା ସେ କଥା ହେବ ନାହିଁ, ମୁଁ ଗାଁକୁ ଯିବି, ଘରୁ ଢେର ଦିନ ହେଲା ଖବର ପାଇ ନାହିଁ, ମୋ ମନ କମିତି ଗୁଡ଼େଇ ପୁଡ଼େଇ ହେଉଛି । ନୋହିଲେ ମୋ ଭାଗ ଦିଅ, ମୁଁ ଯାଏଁ । ତୁମର ଯାହା ମନ କର ।

ଚମ୍ପା—ଭାଗ ? ଭାଗ କଣ ? ଭାଇ ଭାଗ ? ଆରେ ଯାହା କହନ୍ତି—

'ପଡ଼ୋଶୁଣୀ ପିଠା ଦେଖି ରବାଇ ଖବାଇ,
ଢିକିଫଡ଼ାରେ ଗୁଡ଼ ଲଗାଇ ଭଡ଼ ଭଡ଼ ଚୋବାଇ ।'

ଧନ ସେଠି ଥିଲା ମୋର—ଏଠି ବି ମୋର, ମୁଁ କଣ ଚୋରି କରି ଆଣିଛି ? ସାତଦିନ ହେଲା ବରଷା ନାହିଁ, କାଦୁଅ ନାହିଁ, ଏ ଗାଁ ସେ ଗାଁ, ଯୁ ଓଳି ତା ଓଳି ବୁଲେଇ ବୁଲେଇ ମାରିଲଣି । କହିଲୁ ସାଆନ୍ତ ପହଡ଼ଘର କଣରେ ତିନି ଜାଗାରେ ସୁନା ଟଙ୍କା, କଲ ଟଙ୍କା, ସୁନା ଗହଣା ସବୁ ପୋତା ହୋଇଥିଲା, କିଏ ପୋତିଥିଲା ? ନିଶୂନ ରାତିରେ ମୁଁ ଗାତ ଖୋଳେ, ସାଆନ୍ତ ମୁଁ ଦୁହେଁ ପୋତୁଁ । ତୁ କଣ ଜାଣିଥିଲୁ ? ଏ ସବୁ ମୋର ନା ଆଉ କାହାର ?

ଗୋବନ୍ଦା—ଟଙ୍କା ତ ପୋତିଥିଲ, ସବୁ କରିଥିଲ, କଞ୍ଚି ନ ପାଇଥିଲେ କିଛି ପାଇଥାନ୍ତ କି ? କଞ୍ଚି ଆଣିବ ବୁଦ୍ଧି କିଏ କାଢ଼ିଲା ?

ଚମ୍ପା—'ଏହିକି ଏତେ—ନା—ମୁଦି ନାହିଁ ଗୋଡ଼ କଚୁଡ଼ୁ କେତେ !' ବଡ଼ ବୁଦ୍ଧିଟାଏ କାଢ଼ିଲ ରେ ! ମତେ ଆଉ ବୁଦ୍ଧି ଆସନ୍ତା ନାହିଁ । ଦେଖିଛୁ, ସେଦିନ ସାଆନ୍ତଙ୍କ ପଛେ ପଛେ ଚାଲିଲା ବାଲରେ ଦୁଇ କୋଶ ବାଟ ଧାଇଁ ଗୋଡ଼ରେ ଫୋଟକା ବାହାରି ପଡ଼ିଲା; କାନ୍ଦି କାନ୍ଦି ଚୋଟି ବସିଗଲା, କହୁଛି କଣ ନା, ବୁଦ୍ଧି କହିଲା । 'ବୁଦ୍ଧିରେ ବୁଦ୍ଧି—ନା ବଳେଇ ପଡ଼ି ଯାଇଛି କୁଦି ?' ଆଚ୍ଛା କହିଲୁ, ମୁଁ ଯେ ସେ ରାଣ୍ଡ ବ୍ରାହ୍ମଣୀ ସାଙ୍ଗରେ ସଙ୍ଗାତ ବସି ରାତିଏ ରହି ତା ଦରୁ ଜମିର ସନନ୍ଦ ଆଣ୍ଠୁଖୁର ଭିତରୁ ଯେନି ଆସିଲି, ସେ ବୁଦ୍ଧି ତୁ କହି ଦେଇଥିଲୁ ?

ଗୋବନ୍ଦା ଆଉ କିଛି ନ କହି ରୁଷି ଆସି ପିଣ୍ଡାରେ ବସିଲା । ଚମ୍ପା ମଧ୍ୟ ତୁନି । ଏକା ଚାହାଲୀରେ ପାଠ, ଏକ ଅବଧାନର ଚାଟ, ଚତୁର ଚତୁରି କଥା, କେହି କାହାକୁ ଊଣା ନୁହେ, ସହଜରେ କିଏ ପଞ୍ଝାବୁଝା ଦେବ ? ଦୁଇ ଜଣକୁ ଦୁଇ ଜଣ ଚିହ୍ନନ୍ତି । ଚମ୍ପାର ଭାବନା, ଯଦି ଗୋବନ୍ଦା ଘରକୁ ଯାଏ, ଟଙ୍କା ସୁନା-ଗୁଡ଼ାକ ତା ହାତରୁ ଯାଇ ଭଣ୍ଡାର ଘରେ ପଶେ, ପୁନର୍ବାର ହାତପେଠ ହେବା ସହଜ ନୁହେ । ପୁଣି ଗୋବନ୍ଦାର ମା ଆଉ ଭାର୍ଯ୍ୟା କଥା ମଧ୍ୟ ତା ମନରେ ପଡ଼ିଲା । ଏଣେ ଗୋବନ୍ଦାର ଭାବନା, ଚମ୍ପା କଟକ ସହରରେ ପଶିଲେ ତାକୁ ଆୟତ୍ତ ରଖିବା ସହଜ ହେବ ନାହିଁ । ଅଇଣ୍ଠାଖାଇ କୁକ୍କୁର ଆଉ ଖଣ୍ଡିଏ ଅଇଁଠାପତ୍ର ସମ୍ମୁଖରେ ଦେଖିଲେ ପୂର୍ବ ପତ୍ର ଗୋଡ଼ରେ ଦଳି ଦେଇଯାଏ । ବିପରୀତମୁଖୀ ଦୁଇ ବଳ ସମାନ ହେଲେ ଦୁହେଁ ସ୍ୱ ସ୍ୱ ସ୍ଥାନରେ ସ୍ଥିର ହୋଇ ରହନ୍ତି ।

ରାତି ଅନ୍ଦାଜ ପାଞ୍ଚ ଘଡ଼ି କି ଛ'ଘଡ଼ି, ଭାତ ଡାଲି ପ୍ରସ୍ତୁତ ହୋଇ ଗଲାଣି, ଚମ୍ପା ଅଳ୍ପ କାଳ ଛିଡ଼ା ହୋଇ କଣ ଭାବିଲା, ପାଖକୁ ଆସି ସାକୁଲେଇ ସାକୁଲେଇ କହିଲା, "ଦେଖ ଗୋବନ୍ଦା, ତୁ ତ କହୁଛୁ, ନଈ ଆର ପାରି ଚାରି କୋଶ ବାଟରେ ତୋ ଘର । ହେଉ ଚାଲ, କଟକକୁ ଚାଲ, ମୁଁ କିଛି ଟଙ୍କା ଦେବି, ତୁ ଘରେ ଦେଇଯିବୁ । ତୁ ଯଦି ମୋ କଥା ନ ଶୁଣୁ, ଟଙ୍କା ତ ଟଙ୍କା, ସୁନା ତ ସୁନା, କାଣି କଉଡ଼ି ଧୋଇ ପାଣି ଟୋପାଏ ? ଆ, ଆ, ବଡ଼ ଭୋକ ଲାଗିଲାଣି, ଖାଇବା ଆ ।" ଗୋବନ୍ଦା ମଧ୍ୟ ଭୋକରେ କାଉଳ ହେଲା, ବୋଧହୁଏ ସେ ଏଥିରେ ଅଧା ରାଜି ହୋଇ ଉଠ ଉଠ ହେଉଥିଲା, ମାତ୍ର ଅନ୍ଧାରରେ ଚମ୍ପାକୁ ତ ଦିଶୁ ନାହିଁ, କିଛି ଜବାବ ନ ପାଇ ସେ ଭାରି ଖପା ହୋଇ କହିଲା, "ମଲା ଯା, ପୋଇଲାକୁ ସାଆନ୍ତ କହିଲେ ମୁଣ୍ଡରେ ଚଢ଼ନ୍ତି । ଯା ମ ଯା, ଖାଇଲୁ ଖାଇଲୁ ନ ଖାଇଲୁ ନାହିଁ ।" ଗୋବନ୍ଦା ଉଠୁଥିଲା, ପୁନର୍ବାର ବସିପଡ଼ି ଚମ୍ପାକୁ ଚରିଟି ମରିଟି ଚାହିଁଲା । ପାଞ୍ଚିଲା, ହଁ ମୁଁ ପୋଇଲା, ତୁ ସାଆନ୍ତାଣୀ ; ମାତ୍ର ପାଟି ଫିଟାଇ କିଛି କହିଲା ନାହିଁ । ଗୋବନ୍ଦା ଆପଣାର କେଡ଼େ ସୌଭାଗ୍ୟ ସ୍ୱପ୍ନ ଦେଖୁଥିଲା, କେତେ ବିଲ ବାଡ଼ି, କେତେ ବଳଦ ହଳିଆ, କେତେ ଦୁହାଁଳ ଗାଈ ଘରେ ବନ୍ଧା, କେତେ ଖାତକ ଟଙ୍କା କରଜ ନେବାକୁ ଆସି ଦୁଆରେ ବସିଛନ୍ତି,

ସବୁଥିରୁ ଏକାବେଳକେ ନିରସ । ବନସାକ ପାଣି କାଦୁଅରେ ବୁଲି ବୁଲି ଥକା, ତା ଉପରେ ଭୋକ । ଗୋବନ୍ଧା ଏତେବେଳଯାଏ ମନର ଦୁଃଖରେ ବସି ଭାବୁଥିଲା । ବର୍ତ୍ତମାନ ଚମ୍ପା 'ପୋଇଲା' କହିବାରୁ ତାକୁ ରେ ବିଛା କାମୁଡ଼ିଲା ପରି ସର୍ବାଙ୍ଗ ଜଳୁଅଛି, କିଛି କହିପାରୁ ନାହିଁ । ସେ ଜାଣେ, ତାପରି ଦୁଇ ଜଣ ଲୋକ ବଳରେ ଚମ୍ପା ସାଙ୍ଗରେ ପାରିବେ ନାହିଁ । ସେ କେତେ ଥର ମଙ୍ଗରାଜ ଘର ଭେଣ୍ଡିଆ ହଳିଆମାନଙ୍କୁ ବାଡ଼େଇ-ଥିବାର ନିଜ ଆଖିରେ ଦେଖିଛି । ତୁଷ ମଧ୍ୟରେ ନିଆଁ ଥିଲା ପରି ତା ମନକୁ ଭିତରେ ପୋଡ଼ି ପକାଉଛି ।

ଚମ୍ପା ଦୁଇ ପଟ ଭାତ ବାଢ଼ି, ଭାତ ମଝିରେ ଗାଡ଼ କରିଦେଇ ଡାଲି ବାଢ଼ି ଦେଲା, ବୃନ୍ଦାବନ ଯେ ଦୁଧଠେକିଟି ଦେଇଥିଲା, ତେତିକ ବାହାରକୁ ଥରେ ଅନାଇ ଦେଇ ଆପଣା ଭାତରେ ଢାଳି ଦେଲା । ଗୋବନ୍ଧା ଅନ୍ଧାରରେ ବସି ଦେଖୁଛି । ଦୁଧ ଢଳା ଦେଖି ତା ଦେହରେ ନିଆଁ ଢାଳି ଦେଲା ପରି ଜଣା ଗଲା । ମନରେ କଲା, ଦୁଧ ଟିକିକରେ ତ ଏହା, ଟଙ୍କା ସୁନା କଥା ତ ଅଛି ।

ଚମ୍ପା ଡାକି ଦେଲା, "ହେଇ ତୋ ଭାତ ରହିଲା, ଖା ବା ନ ଖା, ମୁଁ ଏତେ ଗୋଡ଼ ଧରିପାରେ ନାହିଁ ।" ଚମ୍ପା ଓଦା ହାତଟା ମୁହଁରେ ବୁଲାଇ ଦେଇ ଠୁଙ୍ଗା ହୋଇ ଭାତପଟ ପାଖରେ ବସି ବଡ଼ ବଡ଼ ଗୁଣ୍ଡା ସୁଡ଼ ସୁଡ଼ ଶବ୍ଦରେ ଦଣ୍ଡକ ମଧ୍ୟରେ ପଟ ଖାଲି କରିଦେଲା । ଚୁଲିମୁହଁ ପାଖରେ ମୁହଁଟା ଧୋଇ ପକାଇ ପୁନର୍ବାର ଥରେ ବାହାରକୁ ଅନାଇ ଡାକିଲା, "ଆରେ ଆ, ଭାତ ଖାଆ ।" ଉତ୍ତର ନାହିଁ । ଖପା ହୋଇ କହିଲା, "ଆରେ ଯାକୁ କହନ୍ତି, ଶୁଖ ଭାତ ତୋଟି କୁଣ୍ଡାଇବା ।" ଜଳନ୍ତା ନିଆଁରେ କୁଟା ପକାଇଲା ପରି ଗୋବନ୍ଧାକୁ ଏ କଥା ଜଣାଗଲା । ତାହାବାଦ ଚମ୍ପା ପଟି ଖଣ୍ଡିକ ଉପରେ ଗଣ୍ଠୁରି ଲୁଗାରୁ ଅଧେ ମେଲାଇ ଦେଇ ଗଣ୍ଡିସ୍ରିଟି ସାବଧାନରେ ବେକତଳ ପର୍ଯ୍ୟନ୍ତ ଦେଇ ଶତ୍ ହୋଇ ଶୋଇ ପଡ଼ିଲା । ଗୋବନ୍ଧା ସେହିପରି ପିଣ୍ଡାରେ ବସି ଭାବୁଛି । ସେ ବର୍ତ୍ତମାନ ଭଲ କରି ବୁଝିଲାଣି, ସାପୁଣୀ ମୁଣ୍ଡରୁ ମଣି ନେବା ସହଜ ନୁହେଁ । ଆମ୍ଭେମାନେ ଗୋବିନ୍ଦପୁରର ଲୋକଙ୍କଠାରୁ ଯେପରି ଶୁଣିଛୁଁ, ସେଥିରୁ ଅନୁମାନ କରୁଅଛୁଁ, ଗୋବନ୍ଧାର ଆଉ ଅଧିକ କିଛି ପ୍ରତ୍ୟାଶା ଥିଲା । ସ୍ତ୍ରୀଠାରୁ ମର୍ଯ୍ୟାଦା, ପ୍ରେମ, ଭକ୍ତି, ଆନୁଗତ୍ୟ ପ୍ରତ୍ୟାଶା କରିବା ପୁରୁଷ ଜାତିର ସ୍ୱଭାବ । ଚମ୍ପାର ଆଚରଣରୁ ଜଣାପାଏ, ତାହାର ଇଚ୍ଛା, ଭଲ ପାଏଁ ତ ଭଲ ପାଏଁ, ହେଲେ ତୁ ଯେଉଁ ଭଣ୍ଡାଣି ସେହି ଭଣ୍ଡାଣି । ଗୋବନ୍ଧା ଏହି ଅବସ୍ଥାରେ କେତେ ବେଳଯାଏ ବସିଲାଣି, ସେ ଜାଣେ ନାହିଁ ।

ଘୋର ଅନ୍ଧକାର ରାତି, ମଣିଷ ନିଜ ଦେହ ଦେଖି ପାରିବ ନାହିଁ । ସାଁ ସାଁ କରି ଦକ୍ଷିଣା ପବନ ବାଡ଼େଉଛି, ଡୁହାକୁ ଡୁହା ବରଷା, ବରଗଛଟା ଗୋଟାଏ ଅନ୍ଧକାର ଗଦା ପରି ଛିଡ଼ା ହୋଇ ଦୋହଲି ଦୋହଲି ଗୋଟାଏ କେମନ୍ତ ଆତଙ୍କଜନକ ଶବ୍ଦ କରୁଅଛି । ଗୁଡ଼ାଏ ବାଦୁଡ଼ି ସାନ ସାନ ଅନ୍ଧକାର-ଖଣ୍ଡପରି ଚାରିଆଡ଼ୁ ଉଡ଼ି ସେହି ଅନ୍ଧକାର ଗଦାରେ ଝୁଲି ପଡ଼ୁଛନ୍ତି, ପୁଣି କେତେଖଣ୍ଡ ଅନ୍ଧକାର ପରି ବାହାରି ଆକାଶରେ ଉଡ଼ିଯାଉଛନ୍ତି, କଟ୍‌କଟ୍ ଶବ୍ଦ କରି ବରଫଳ ଖାଉଅଛନ୍ତି, ଟପ୍ ଟପ୍ ହୋଇ ବରଫଳ ତଳେ ପଡ଼ୁଛି । ଚତୁର୍ଦ୍ଦିଗରେ ପୈଶାଚିକ ଶବ୍ଦ, ଘର ମଧ୍ୟରେ ଚମ୍ପାର ଅନୁନାସିକ ଶବ୍ଦ ଆହୁରି ଭୟଙ୍କର ଶୁଭୁଅଛି । ସେହି ଅନ୍ଧକାର ଗଦାତଳେ ଦୁଇଟା ପକ୍ଷୀର ଖେଁ—ଖେଁ କାମୁଡ଼ା-କାମୁଡ଼ି ଶବ୍ଦ ଶୁଣି ଗୋବନ୍ଧା ଚମକି ପଡ଼ି ଅନାଇଲା । ଘର ମଧ୍ୟରେ ଜଳୁଥିବା ଦୀପର ତେଜଟି କ୍ରମଶଃ କ୍ଷୀଣ ହୋଇ ଆସୁଅଛି । ଶେଷ ସନ୍ଧ୍ୟାରେ ପଶ୍ଚିମ ଆକାଶରେ ଗୋଟିଏ ମାତ୍ର ଲୋହିତ କିରଣ ରେଖା ଅନନ୍ତ ଆକାଶରେ ପଡ଼ିଲା ପରି ଘର ମଧ୍ୟରେ

ଜଳୁଥିବା ଫାଟରୁ ଗୋଟିଏ କିରଣ ରେଖା ନିସ୍ତେଜ-ଭାବରେ ସେହି ଅନ୍ଧକାର ତଳେ ପଡ଼ିଅଛି । ଗୋବିନ୍ଦା ଭଲ କରି ଅନାଇ ଦେଖିଲା, ଦୁଇଟା ବିଲୁଆ ବରଫଳ ଖାଉ ଖାଉ କଳି ଲଗିଲେ; ଗୋଟାଏ ବିଲୁଆ ଆରଟାକୁ ତଡ଼ି ଦେଇ ଆପେ ସମସ୍ତ ଫଳ ଅଧିକାର କରି ବସିଲା । ଗୋବିନ୍ଦା ବିଲୁଆର କାର୍ଯ୍ୟ ଦେଖି କଣ ବୁଝିଲା, କଣ ମନରେ ପାଞ୍ଚିଲା, ଉଠିବସି ଚଉଆଡ଼କୁ ସାବଧାନରେ ଅନାଇଲା, ଧୀରେ, ଅତି ଧୀରେ ଉଠିଯାଇ ଚମ୍ପାର ଗୋଡ଼ଠାରୁ ମୁଣ୍ଡଯାଏ ଅନାଇଲା, ଠଣାରେ ମୁଠି ରଖି ଦେଇଥିଲା, ଧୀରେ ଧୀରେ ଆଣି ସେଥିରୁ କଣ ଫିଟାଇ ଅଣ୍ଟାରେ ଭଲ କରି ଲୁଗା ଭିଡ଼ି ଦେଇ ସେହି ପଦାର୍ଥଟା ଦୃଢ଼ରୂପେ ଧରିଲା, ଧୀରେ ଧୀରେ ଯାଇ ଚମ୍ପାକୁ ଏକଧ୍ୟାନରେ ଅନାଇଲା, ଭୂମି ଉପରେ ପଡ଼ି ନିଦ୍ରିତ ଶୂକରକୁ ବଣ ମଧ୍ୟରୁ କେନ୍ଦୁଆ ଯେପରି ଅନାଏ, ସେହିପରି ଏକଧ୍ୟାନରେ ଚାହିଁଅଛି, ତାହାର ଆଖି ଦୁଇଟା ଜଳୁଅଛି, ଡାହାଣ ହାତରେ ଦୃଢ଼କରି କଣ ଧରିଅଛି, ଏତେ ସାବଧାନ, ଏତେ ଧୀର ଯେ, ନିଃଶ୍ୱାସଟା ମଧ୍ୟ ବଳରେ ପକାଉ ନାହିଁ । ଡାହାଣ ଗୋଡ଼ଟି ଆଗକୁ ପକାଇବା ମାତ୍ରେ ଗୋଟାଏ ଜ୍ୟୋତି ଚକ ଚକ କରି ଚମ୍ପା ଉପରେ ଦେଇ କାନ୍ଥରେ ବୁଲିଗଲା, ଗୋବିନ୍ଦା ଚମକି ପଡ଼ି ଏକାବେଳକେ ପିଣ୍ଡାତଳକୁ ଓହ୍ଲାଇ ପଡ଼ିଲା । ଚତୁର୍ଦ୍ଦିଗକୁ ସାବଧାନରେ ଅନାଇଲା, କାହିଁ କିଛି ନାହିଁ, କେବଳ ପୂର୍ବପରି ଚତୁର୍ଦ୍ଦିଗରେ ଘୋର ପୈଶାଚିକ ଶବ୍ଦ, ଗଛ ତଳଡାଳର କେତେ ଖଣ୍ଡ ଅନ୍ଧକାର ଫଡ଼ ଫଡ଼ ହୋଇ ଉଡ଼ି ପଳାଇଲେ, ବିଲୁଆଟା ଚାହିଁଥିଲା, ପଳାଇ ଗଲା, ତାହା ହସ୍ତରେ ଥିବା ପଦାର୍ଥ ବିଶେଷରେ ଆଲୁଅ ପଡ଼ି ଚକ ଚକ ଦିଶିଲା । ଗୋବିନ୍ଦା ସମସ୍ତ ବୁଝି ପାରିଲା । ପୂର୍ବଠାରୁ ଅଧିକ ସାହସ ବାନ୍ଧି ଧୀରେ ଧୀରେ ଗୋଡ଼ ପକାଇ ଘର ମଧ୍ୟକୁ ଗଲା । ଶୂକର ଉପରେ କେନ୍ଦୁଆ ଯେପରି ଝାମ୍ପି ପଡ଼େ, ସେହିପରି ଚମ୍ପା ଉପରକୁ ଝାମ୍ପି ପଡ଼ିଲା । ଠିକ୍ ସେହି ସମୟରେ ଦୀପଟା ଗର୍ତ୍ତକୁ ପୋଡ଼ିଯାଇ ଦପ୍ କରି ଜଳଉଠି ନିଭିଯିବାରୁ କିଛି ଦିଶିଲା ନାହିଁ । ଘର ମଧ୍ୟରେ ଉତ୍କଟ ଗଁ ଗଁ ଶବ୍ଦ, ଗୋଡ଼ହାତ ବାଡ଼େଇବା ଶବ୍ଦ ଶୁଭି ନିସ୍ତବ୍ଧ ହୋଇଗଲା । ସେହି ଶବ୍ଦ ଶୁଣି ବିଲୁଆ ଧଡ଼ପଡ଼ ହୋଇ ପଳାଇଗଲା । ଗଛଠାରୁ ଅନ୍ଧକାର ଖଣ୍ଡ ବୁଲିଗଲା ପରି ବାଦୁଡ଼ିଗୁଡ଼ାକ କର୍କଶ ଡେଣା ଶବ୍ଦ କରି ଉଡ଼ିବାକୁ ଲାଗିଲେ । ଏହି ସମୟରେ ଗୋଟାଏ ପ୍ରବଳ ଝଞ୍ଜା ପବନ ଆସି ଗଛର ଡାଳମାନଙ୍କୁ ଦୋକାନ ଘରକୁ କଡ଼କରି ଦୋହଲାଇ ଦେଲା । ମୁହୂର୍ତ୍ତକ ସକାଶେ ସେଠାରେ ଅଦୃଶ୍ୟ ଅନ୍ଧକାର ମଧ୍ୟରେ ପ୍ରଳୟ ଉପସ୍ଥିତ ହେଲା ପରି ଜଣାଗଲା ।

---

-୨୩-

## କର୍ମଫଳ

ଗୋପାଳପୁର ପାଖରେ ବିରୂପା ନଈଟା ଭାରି ଚୌଡ଼ା, ଅଧକୋଶରୁ ଊଣା ନୁହେ । ମାତ୍ର ଧାରଟା ତେତେ ଚୌଡ଼ା ନୁହେ, ଗଣ୍ଡିଭଳିଆ ଜାଗା କମ ଚୌଡ଼ା ହୁଏ । ନଈର ଦକ୍ଷିଣ ତରଫଟାରେ ଧାର, ଗୋପାଳପୁର ଘାଟରେ ଭୁଛା ବାଲି । ସେହିପରି ଟାଙ୍ଗୁଆ ବଢ଼ି ହେଲେ ତୋଠଯାଏ ପାଣି ଯାଏ । ଦଶ ବାର ଦିନ ହେଲା ସେପରି ବର୍ଷା ନ ଥିବାରୁ ନଈଟା ଶୁଖି ପଡ଼ିଥିଲା, ଗଲା ପରଦିନ ଓପର ଓଳଠାରୁ ଅଳ୍ପ ଅଳ୍ପ ପାଣି ପଡ଼ୁଅଛି, ମେଞ୍ଚା ମେଞ୍ଚା ଫେଣ ଧାଡ଼ି ଧାଡ଼ି ହୋଇ ଭାସି ଯାଉଅଛି । କୌଣସି କୌଣସି ସ୍ଥାନରେ ପାଣିକଖାରୁ ପରି ଫେଣଟାଏ ଭଉଁରିରେ ପଡ଼ି ଭାଙ୍ଗି ଟିକି ଟିକି ହୋଇ ଯାଉଅଛି । କାଠି କୁଟା କେତେ ଭାସି ଯାଉଅଛି, ଠିକଣା ନାହିଁ । ଗଣ୍ଡ ଜାଗା ଥିବାରୁ ଏଠାରେ ଗୋମୁହାଁ । କୁମ୍ଭୀରର ଉପଦ୍ରବ ଭାରି, ଦାଢ଼ିଅଣି ପଡ଼ିଆଳ ତ ପଣ ପଣ । ଏଠାରେ ଭରସି ଆଣ୍ଠୁଆଣିରୁ

କେହି ବେଶି ପାଣିକି ଯାଇପାରେ ନାହିଁ । ପୁଣି ନୂଆ-ପାଣି ପଡ଼ିଲେ କୁମ୍ଭୀରଗୁଡ଼ାକ ଭାରି ମାତନ୍ତି । "ନୂଆ ବଢ଼ିକି ଡରେ ନାହିଁ, ଫେଣରୁ କୁମ୍ଭୀର ଖାଏ ।" ଘାଟରେ ଦିନ ରାତି ଖଣ୍ଡିଏ ଡଙ୍ଗା ବନ୍ଧା ଥାଏ; ଗାଉଁଲି ଲୋକେ, ହାଟୁଆ ଲୋକେ ପାରି ହୁଅନ୍ତି । ସରକାରୀ ଡାକ ପାରି କରିବା ସକାଶେ ନାଉରୀ ଦିନ ରାତି ଜଗିଥାଏ, ସରକାରରୁ ମାସକୁ ଦୁଇ ଟଙ୍କା ଦରମା ପାଏ । ଗାଉଁଲି ଲୋକ ନଗଦ କିଛି ଦିଅନ୍ତି ନାହିଁ, ପୁଷମାସ ଧାନକଟା ସମୟରେ ନାଉରୀ ବୁଲି ବୁଲି ପ୍ରତିଘରୁ ଗୋଟାଏ ଗୋଟାଏ ଦୁଲା ଅସୁଲ କରେ । ହାଟପାଳି ଦିନ ହାଟୁଆମାନେ କେହି ପିଠାଶୁଖୁଆ ବୁଞ୍ଜାଏ, କେହି ବାଇଗଣ ଯୋଡ଼ାଏ, କେହି ଲୁଣ ଚିମୁଟେ, କେହି ତେଲ ଦି'ଟୋପା ଦେଇ ଯାଏ । କୌଣସି କୌଣସି ଦିନ ବଡ଼ ବଡ଼ ମହାଜନ, ଅବଦ୍ଧା ବାଟୋଇ ପହଞ୍ଚି ଗଲେ ପଇସାଏ ଅଧଲାଏ ଖଜାଣିଆ ଦେଇ ଯାନ୍ତି । ଦେଶ କାଳ ପାତ୍ର ଭେଦେ ଏହି ଲାଭ ଊଣା ଅଧିକ ହୁଏ; ମାତ୍ର ସରକାରୀ ମନୁଷ୍ୟ; ଅର୍ଥାତ୍ ଥାନା ଦାରୋଗା, ମୁନସି, କାନଗୋଇ ପାରି ହେବା ଦିନ କାନ ମୋଡ଼ାଟା, ଚାପୁଡ଼ାଟା, ଗାଳିଟା କେବେ ଊଣା ହୁଏ ନାହିଁ । କେଉଟ ଚାନ୍ଦିଆ ବେହେରା କହେ, 'ଏହି ଘାଟ ବାହି ତା ଦେହକୁ ପାହିଲାଣି, ତା ପରି ଜଣେ ଆସୁଆ ନାଉରୀ ଏ ଖଣ୍ଡମଣ୍ଡଳରେ ଦେଖା ନାହିଁ ।'

ରାତି ଶେଷ ହୋଇ ଆସିଲାଣି । ରାତିରେ ଭାରି ବର୍ଷା, ଭାରି ତୋଫାନ ଥିଲା, ବର୍ତ୍ତମାନ ପାଣି କମ୍ପା ପବନ ନାହିଁ, ମେଘଟା ସେହିପରି ଦୌଡ଼ାଉଛି, ଅକାରଣ କେଉଁଠି କପରି ଫାଙ୍କରେ ସାନ ସାନ ତାରାଟିମାନ ଜୁଳୁ ଜୁଳୁ କରି ଅନାଇ ଲୁଚି ଯାଉଛନ୍ତି । ଠିକ ଏହି ସମୟରେ ଜଣେ ବାଟୋଇ ସାନ ଗଣ୍ଠିଟିଏ ପିଠିରେ ବୋକଚ କରି ଘାଟ ପାଖରେ ନଦୀ କୂଳେ କୂଳେ ବୁଲୁଅଛି, ନଦୀ କୂଳେ କୂଳେ ଚାରି ପାଞ୍ଚଶ ହାତ ଚାଲି ଯାଇ ପୁନର୍ବାର ଘାଟକୁ ଫେରି ଆସୁଅଛି । ଜଣାଯାଏ ପହଁରି ନଦୀ ପାରି ହେବାକୁ ଲୋକଟାର ଇଚ୍ଛା, ହେଲେ ବଳ ଖଟୁ ନାହିଁ । ଘାଟଠାରେ ଠିଆ ହୋଇ ଡାକିଲା, "ଏ ନାଉରୀ ଭାଇ, ଏ ନାଉରୀ ଭାଇ !" ଚାନ୍ଦିଆ ବେହେରା ବାଲିରେ କାଠଟା ପୋତି ଖଣ୍ଡେ ଲମ୍ବା ଦଉଡ଼ିରେ ଡଙ୍ଗାଟା ଖଟାଇ ଦେଇ ଛୁଠ ପାଖରେ ଭୂଇଁ ପଲାରେ ଶୋଇଅଛି । ବାଟୋଇ ପୁନର୍ବାର ଥରେ ଅତି ସାବଧାନରେ ଡାକିଲା, "ଏ ନାଉରୀ ଭାଇ, ଏ ନାଉରୀ ଭାଇ !' ବାଟୋଇ ଡାକ ଶୁଣି ଚମକ ପଡ଼ିଲା ପରି ଥରେ ପଛକୁ ଅନାଇଲା । ନାଉରୀ କ ଶୋଇ ଯାଇଛି ? ଏତେ ଡାକରେ ଜବାବ ନାହିଁ କିଆଁ ? ମାତ୍ର ଆମ୍ଭେମାନେ ନିଶ୍ଚୟ ଜାଣୁଁ, ନାଉରୀ ରାତି ଦଣ୍ଡେ ଥାଉଁ ଉଠି ବସିଥାଏ । ଶାସ୍ତ୍ରକାରମାନେ ବୋଲିଅଛନ୍ତି, ବ୍ରାହ୍ମମୁହୂର୍ତ୍ତରେ ଶଯ୍ୟା ତ୍ୟାଗ କରିବ । ଶାସ୍ତ୍ରବିଧି ପାଳିବା ସକାଶେ ଯେ ଚାନ୍ଦିଆ ଉଠିଥାଏ, ଏହା ନୁହେ । ଦିନେ ଦିନେ ରାତି ପିଛିଲା ପହରରେ ଡାକ ଆସି ପଡ଼ି-ଯାଏ, ସେଥି ସକାଶେ ସେ ଜାଗ୍ରତ ଥାଏ । ଆଉ ଗୋଟିଏ କଥା, ସଞ୍ଜବେଳୁ ଘାଟ ବନ୍ଦ ହୋଇଯାଏ, ସଅଳେ ସଅଳେ ଚୁରଟା ଖାଇଦେଇ ଶୋଇପଡ଼ିଥାଏ । ରାତିଟାଯାକ କେତେ ଶୋଇବ ? ଚାନ୍ଦିଆ ପଲା ମଧ୍ୟରେ ଦୁଇ ଆଣ୍ଠୁ ଉପରେ ମୁଣ୍ଡଟି ଦେଇ ଠୁଙ୍ଗା ହୋଇ ବସିଛି, ଆଗରେ ନିଆଁ ଜମେଇ, ଭୁଷ ନିଆଁକୁ ଦୁଇ ହାତ ବଢ଼ାଇ ଦେଇଅଛି । ବୋଧହୁଏ ସେ ମନ ମଧ୍ୟରେ ଭାବୁଛି, ଅବେଳରେ ଏ ବାଟୋଇଟା କିଏ ? ସରକାରୀ ଲୋକ ତ ନିଶ୍ଚୟ ନୁହେ, ଏ ଲୋକଟା ଭାଇ ଭାଇ ଡାକୁଛି, ସରକାରୀ ଲୋକ ହୋଇଥିଲେ ତା ଦର-ଆଡ଼ ଭାବ ଦେଖା କରି ଡାକନ୍ତା । ଯିଏ ହେଉ ଡାକୁ-ଥାଉ, ରାତି ପାହୁ ଦେଖିବ । ପୁନର୍ବାର ଡାକ, "ଏ ନାଉରୀ ଭାଇ, ଆ ବାହାରି ଆ, ଖଜାଣିଆ ଦେବ ।" ଚାନ୍ଦିଆ ଆଉ ସମ୍ଭାଳି ପାରିଲା ନାହିଁ, ଖଜାଣିଆ ନାଁ ଶୁଣି ଦୁଇ ତିନିଥର କାଶିଲା । ଖଜାଣିଆ ଶବ୍ଦରେ କପରି ଗୋଟାଏ ମନମୋହନ ଶକ୍ତି ଅଛି । ନାଉରୀ ତ

ନାଉରୀ, ଖଜାଣିଆ ଶବ୍ଦ ଶୁଣିଲେ କେଡ଼େ କେଡ଼େ ଲୋକମାନେ କାଣି ପକାନ୍ତି । ବୁଢ଼ାଆ ପଲ ମଧ୍ୟରୁ ଜବାବ ଦେଲା, "କଏ ପାଟି କରୁଛ ହୋ, ରୁହ ରାତି ପାହୁ, ଲକ୍ଷେ ଟଙ୍କା ଦେଲେ ତ ମୁଁ ବାହାରକୁ ବାହାରିବ ନାହିଁ ।"

ବାଟୋଇ—ଦେଖ, ଭାଇ ନାଉରି, ମୋର କଟକରେ ମାମଲା ଅଛି, ଚଞ୍ଚଳ ଯିବ, ନେ ପାଞ୍ଚ ଟଙ୍କା ନେ ।

ପାଞ୍ଚ ଟଙ୍କା ! ଏ କଣ ଏ ? ଗୋଟାଏ ପହରକୁ ପାଞ୍ଚଟଙ୍କା ? ବୁଢ଼ାଆ ଜୀବନରେ କେବେ ଏପରି ଘଟନା ଘଟି ନାହିଁ, ଏକାବେଳକେ ପାଞ୍ଚ ଟଙ୍କା ତା ହାତରେ ପଡ଼ୁଛି କି ନାହିଁ, ସେ ବିଷୟରେ ଆମ୍ଭମାନଙ୍କର ଘୋର ସନ୍ଦେହ ଅଛି । ସେ ପୂର୍ବ ମୁହୂର୍ତ୍ତରେ ପ୍ରତିଜ୍ଞା କରିଥିଲା, ଲକ୍ଷେ ଟଙ୍କା ପାଇଲେ ମଧ୍ୟ ବାହାରନ୍ତା ନାହିଁ, ଲକ୍ଷକରୁ ପାଞ୍ଚ ଫେଡ଼ ଦେଲେ ବାକି କେତେ ଊଣା ହେଲା, ଏ କଥା ଆଲୋଚନା କରିବା ବୋଧହୁଏ ଅନାବଶ୍ୟକ ବୋଧ କଲା । ଏଣେ ଡର, ବାଟୋଇଟା ଯେବେ ବାହୁଡ଼ ଯାଏ, ଅବା ରାତି ପାହିଗଲେ ପଇସା-ଟାଏ ନୋହିଲେ ପୋଡ଼ାଏ । ବୁଢ଼ାଆ ପଲଭିତରୁ ଡାକ ଦେଲା, "ରହ ତେବେ ରହ ମୁଁ ଯାଏଁ ।" ନିଆଁ ଉପରେ ଫୁଙ୍କ ଫୁଙ୍କି କାହାଳି ଲଗାଇ ହାତରେ ଆଉଲ-ଟାଏ ଧରି ପଲରୁ ବାହାରି ପଡ଼ିଲା, ପିନ୍ଧିଲା ଲୁଗାପଟା ଅଣ୍ଟାରେ ଭିଡ଼ ଦେଇ ମୁଣ୍ଡରେ ଗାମୁଛାଟାଏ ଗୁଡ଼ାଇ ଟୋପରଟା ଥୋଇଦେଲା । ବାଟୋଇକୁ କହିଲା, "ଆଣ ଆଣ, କଣ ଦେଉଛ ଦିଅ । ତୁମେ ବୋଲି ମୁଁ ବସାରୁ ବାହାରିଲି, ଆଉ କେହି ହୋଇଥିଲେ ମୁଁ କି ଉଠିଥାନ୍ତି ?" ବାଟୋଇ ପାଞ୍ଚଟି ଟଙ୍କା ବଢ଼ାଇ ଦେଲା । ନାଉରୀ ଦୁଇ ହାତରେ ଏକ, ଦୁଇ, ତିନି, ଚାରି, ପାଞ୍ଚ, ଏ ହାତ ସେ ହାତ କରି ତିନିଥର ଗଣିଲା । 'ଟଙ୍କା ନେବ ଗଣି, ପାଣି ପିଇବ ଛାଣି ।' କାହାଳଟା ବଳରେ ଭିଡ଼ ଦେଇ ଆଲୁଅରେ ଥରେ ଟଙ୍କାଗୁଡ଼ାକ ଦେଖି ନେଲା । କୁଞ୍ଚକାନିରେ ବାନ୍ଧି ଅଣ୍ଟାରେ ଭଲକରି ଖୋସି ଦେଇ ଆକାଶକୁ ପୁଣି ଗୃହଆଡ଼କୁ ଅନାଇଲା, ଆଉ ରାତି ନାହିଁ । ବାଟୋଇ ନାଆ ଆଗ ମଙ୍ଗରେ ବସି ସାରିଲାଣି । ନାଉରୀ ଡାକ ଦେଲା, ଭଲ କରି ସମ୍ଭାଳି ବସ । ଡଙ୍ଗାରେ ଡାହାଣ ହାତ ତିନି ଥର ଲଗାଇ ମୁଣ୍ଡରେ ମାରି ଫଟାଇଦେଲା, 'ଜୟ ଗଙ୍ଗା ମାତା' କହି ନାଆରେ ଉଠି ବସିଲା । ଉପର ପାଣି ଚୋଡ଼ ପଡ଼ୁଛି, ସମ୍ଭାଳି ହେଉ ନାହିଁ, ଆଉଲ ବାହୁ ବାହୁ ଡଙ୍ଗାଟା ତେର ତଳକୁ ଭାସିଗଲା । ମୋହାଳି ଠେଲୁ ଠେଲୁ ନଦୀ ଛ'ପଣି, ଦଶପଣି ହୋଇଅଛି; ରାତି ପ୍ରାୟ ପାହି ଆସିଲାଣି । ଗୋପାଳପୁର ତୋଠପାଖରୁ ଗୋଟାଏ ଗୀତ ଶୁଭିଲା—

'ଏ--ଏ--ଏ--ରାମ ଯେ ଲଇକ୍ଷଣ ହୋ ଗଲେ ମୃଗ ମାରି
କୁଡ଼ିଆ ଦୁଆରେ ଆସି ଉଭା ବ୍ରହ୍ମଚାରୀ ।
ବୋଇଲେ ସୀତାଯ୍ୟା ଗୋ ଭିକ୍ଷା ଦିଅ ଆମ୍ଭଙ୍କୁ,
ନୋହିଲେ ଅଭିଶାପ ଗୋ ଦେବୁ ରାମ ଲଇକ୍ଷଣଙ୍କୁ ।'

ବାଟୋଇ ଡଙ୍ଗାରେ ବସି ବାରମ୍ବାର ଗୋପାଳ-ପୁର ତୋଠଆଡ଼କୁ ଚାହିଁଛି । ଗୀତର ଧ୍ୱନି ଅନ୍ଧାର ଅନ୍ଧକାରରାଶି ଭେଦ କରି କାନରେ ପଡ଼ିବାରୁ ବାଟୋଇ ଚଙ୍ଗ ଚଙ୍ଗ ହୋଇ ଠିଆ ହୋଇ ସେହି ଦିଗକୁ ଅନାଇଲା । ନାଉରୀ କାନକୁ ଶବ୍ଦ ଯାଇ ନାହିଁ, ଏକମନରେ ଡଙ୍ଗା ବାହୁଥିଲା, ଡଙ୍ଗା ଟଳଟଳ ହେବାରୁ ଡାକ ଦେଲା,'ଆରେ ବସିପଡ଼, ବସିପଡ଼ ।' ବାଟୋଇର ଭାବ ଦେଖି ନାଉରୀ ମଧ୍ୟ ତୋଠ ଆଡ଼କୁ ଚାହିଁ କହିଲା, 'ଓହୋ ଟପାଟା ହାବୁଡ଼ିଲା ଯେ ।' ଏହା କହି ଡଙ୍ଗା ମଙ୍ଗ ଫେରାଇ ଦେଲା । ବାଟୋଇ ବ୍ୟାକୁଳ ହୋଇ କହିଲା,"ଏ ନାଉରୀ ଭାଇ, ଡଙ୍ଗା ଫେରା ନା, ଫେରା ନା, ମତେ ଆଗ ପାରି କରିଦେ ।" ନାଉରୀ କହିଲା, "ମଲା ଯା, ସରକାରୀ କଥା, ମୁଁ କଣ ଜେଲ

ଯିବ ?” ରାତ ଶେଷ, ଅଳ୍ପ ଅଳ୍ପ ଆଲୁଅ ପଡ଼ିଲଣି, ନାଉରୀ ଦେଖିଲା, ବାଟୋଇର ସର୍ବାଙ୍ଗ ରକ୍ତମୟ, ଲୁଗାରେ ରକ୍ତ, ହାତରେ ରକ୍ତ ବୋକରୁରେ ରକ୍ତ । ଦୋଳରେ ଫଗୁ ଖେଳିଲା ପରି ଲାଲ ଟହ ଟହ ଦିଶୁଅଛି । ନାଉରୀ ଚମକି ପଡ଼ି କହିଲା, “କଣ ହେ ! ରକ୍ତ କାହୁଁ ଆଇଲା ? ତୁମେ କଣ କାହାକୁ ମାରିଛ ?” ବାଟୋଇ ଚଞ୍ଚଳ ଗଣ୍ଠିରୀଟି ଧରି ନାଉରୀ ହାଁ ହାଁ କହୁଁ କହୁଁ ନଦୀକି ଡେଇଁ ପଡ଼ିଲା । ପଦରେ କୋଡ଼ିଏ ହାତ ପହଁରି ଯାଉଁ ଯାଉଁ କାହୁଁ ଗୋଟିଏ ଗୋମୁହାଁ କୁମ୍ଭୀର ଆସି ଟପ କରି ଧରି ପକାଇଲା; ଗଣ୍ଠିରୀଟି ଅଳ୍ପ ଦୂର ଭାସି ଯାଇ ବୁଡ଼ିଗଲା । ଗୁନ୍ଦିଆ ଗୁହିଁ ଥାଏ । ଏ ଲୋକଟା କିଏ, କେଉଁଠାରୁ ଆଇଲା, କାହିଁ ଯାଉଥିଲା ? ବୁଝିବା ହେଲେ ପାଠକ ଅବଧାନ ! ଆମ୍ଭେମାନେ ହେଲୁଁ ଗ୍ରନ୍ଥକାର; ସୁତରାଂ ସର୍ବଜ୍ଞ । ଏହି ଯେ କୁମ୍ଭୀର ଲୋକଟାକୁ ନେଇଗଲା, କିପାଇଁ ନେଇଗଲା, କାହିଁ ନେଇଗଲା, ତାହା ସହିତ ସଦ୍‌ବ୍ୟବହାର କଲା କି ଅସଦ୍‌ବ୍ୟବହାର କଲା, ଏ ସମସ୍ତ ଗୁପ୍ତ ବିଷୟ ଆମ୍ଭ-ମାନଙ୍କୁ ଭଲ ଜଣା । ହେଲେ ଗୁନ୍ଦିଆ ବେହେରା କୌଣସି କାରଣରୁ ଏ କଥା ଅନେକ ଦିନ ପର୍ଯ୍ୟନ୍ତ ଲୁଚାଇ ଥିବାରୁ ଆମ୍ଭେମାନେ ପ୍ରକାଶ କରିବାକୁ ନାରାଜ । ଲୋକଟା ଡଙ୍ଗାରୁ ପାଣିକୁ ଡେଇଁ ପଡ଼ିବା ବେଳେ ତାହା ଗଣ୍ଠିରୁ ଡେଢ଼ ହାତ ଲମ୍ବ ବଡ଼ିଏ ତାଳପତ୍ର ଡଙ୍ଗାରେ ପଡ଼ିଯାଇଥିଲା, ସେହି ବଡ଼ାଟା ଗୁନ୍ଦିଆ ପଲା ମଧ୍ୟରେ ଲୁଚାଇ ରଖିଥାଏ । କିଛି ଦିନ ଉତ୍ତାରେ ଜଣେ ପଣ୍ଡିତ ଅବଧାନଙ୍କୁ ପଢ଼ାଇବାରୁ ସେ ଖଣ୍ଡେ ପତ୍ରରୁ ଏହିପରି ପଢ଼ିଲେ :—

ଶ୍ରୀ ଶ୍ରୀ ମୁକୁନ୍ଦଦେବଙ୍କ ସାତ ଅଙ୍କ କୁମ୍ଭମାସ କୃଷ୍ଣପକ୍ଷ ଦ୍ୱିତୀୟା ଦିନ ବେଳ ଦୁଇ ଦଣ୍ଡ ସମୟରେ ଗୋବିନ୍ଦପୁର ଜମିଦାର ରାମଚନ୍ଦ୍ର ମଙ୍ଗରାଜ ମହାଜନଙ୍କ ସୁସାକ୍ଷାତକୁ ଏହି ଗ୍ରାମର ରହିବା ଲୋକ ତେଲିପୁଅ ଶାମ ସାହୁର ଦେଲା ଗୁଜା, ଏ ନିମନ୍ତେ ଗୁଜା ଲେଖି-ଦେଲା କି ମୋ ପୁଅ ଝିଅ ବିଭାଘରକୁ ଆପଣଙ୍କଠାରୁ ଦଶଟଙ୍କା କରଜ ନେଲି, ଆସନ୍ତା ଧନୁ ମାସରେ ମୋ ଖଳା ଉପରୁ ଆପଣଙ୍କ ଖମାର ଗଉଣୀରେ ଦାଣ୍ଡ ଭାଉ ପ୍ରମାଣେ ଧାନ ମାପିନେଇ ତହିଁ କଳନ୍ତରକୁ ଅଧା କି ମୂଳ ନଉଛିକେ ଆଠବିଶ୍ୱା ପରିମାଣେ ମାପିନେବେ । ଏ ପ୍ରମାଣ, ଏଥିକୁ ସାକ୍ଷୀ ଚନ୍ଦ୍ରସୂର୍ଯ୍ୟ ଦଶ ଦିଗପାଳ ।

ଗୁନ୍ଦିଆ ବେହେରା ଡଙ୍ଗା ବାହି ନେଲାବେଳେ ଢେର ଦିନ ପର୍ଯ୍ୟନ୍ତ ଠିକ ସେହି ସ୍ଥାନରେ ପାଣିକୁ ଥରେ ଅନାଏ ।

———

–୨୪–

## ଖୁଣି ତଦାରଖ

ବେଳ ଅନୁମାନରେ ପହରେ କି ଛ ଦଣ୍ଡ, ଆଜି ବର୍ଷା ନାହିଁ; ଗୋପୀ ସାହୁ ଦୋକାନୀ ଚିରାଗଣ୍ଠିକ କଳା କନାପରି ଗାମୁଛା ଖଣ୍ଡିଏ ମୁଣ୍ଡରେ ପକାଇ ଦୋକାନ ଟୋକେଇ କାନ୍ଧରେ, ହାତରେ କଞ୍ଚିଟା ଧରି ଦୋକାନକୁ ଆସିଲା । ଦୋକାନ ଫିଟାଇ ମେଲା ଘରକୁ ଅନାଇ ଦେଲା । ଯାହା ଦେଖିଲା, ସେଥିରେ ତାକୁ ପ୍ରାୟ ଝାମ ମାରି ଗଲାଣି, କାଠଟି ପରି ଠିଆ ହୋଇଛି, ପାଟିରେ କଥା ନାହିଁ । କେବେ ଦେଖା ନାହିଁ, କେବେ ଶୁଣା ନାହିଁ, ଗୋଟିଏ ସ୍ତ୍ରୀଲୋକ ଗଳାକୁ ଚିହିଁ ମରି ପଡ଼ିଛି, ଘରସାରା ରକ୍ତମୟ, ଖଲପଟରେ ରକ୍ତ, ଚୂଲି ମୁହଁରେ ରକ୍ତ, ଭାତହାଣ୍ଡିରେ ରକ୍ତ, ରକ୍ତ ପିଚକାରୀ ମାରି କାନ୍ଥ ବାଡ଼ରେ ଝୋଟି ଦେଲା ପରି ହୋଇଯାଇଛି । ଗୋପୀ ଧାଇଁ ଯାଇ ଗାଁରେ କହିଲା । ଗାଁଲୋକେ ଧାଇଁଲେ । ଗାଁ ଚୁଟିଆ ସନ୍ତୁଆ ଜେନା ଫାଣ୍ଡିକି ଏତାଲା ଦେବାକୁ ଧାଇଁଲା । ମନାମପୁରରେ ବାଲଗସ୍ତି ଫାଣ୍ଡି ଗୋପାଳ-ପୁରଠାକୁ ଦେଢ଼ କୋଶ ଦୂର । ବେଳ ତିନି ପ୍ରହର ସମୟରେ ବାଲଗସ୍ତି-ଜମାଦାର ସେଖ୍ ଡୋରବଲ୍ଲି,

ବରକନ୍ଦାଜ ପିଚୁ ଖାଁ ଘଟନା ସ୍ଥାନରେ ଆସି ଉପସ୍ଥିତ ହେଲେ । ସେଖ୍ ଚୋରବଲ୍ଲି ଜଣେ ରବେୟା ହାକମ । ଆଖପାଖ ଚାରି କୋଶରେ ତାଙ୍କ ନାମ ଶୁଣିଲେ ଲୋକେ ଥରନ୍ତି, ଗର୍ଭିଣୀ ଗାଈ ବାଛ ଛାଡ଼ିଦିଏ । ଜମାଦାର ସାହେବ ସର୍‌ଜମିନରେ ଉପସ୍ଥିତ ହୋଇ ଦାଢ଼ି ଆଉ ନାକ ଯୋଡ଼ାଇ ଲାସ ମାଇନା କରିବାକୁ ଗଲେ । ଲାସ ଗୋଟିଏ ସ୍ତ୍ରୀଲୋକ, ପାଟ ଶାଢ଼ୀ ଖଣ୍ଡେ ପିନ୍ଧିଛି, ହାତରେ ବେକରେ ରୂପା ଓ ସୁନାର କେତେ ଖଣ୍ଡ ଅଳଙ୍କାର । ପଠାଣମାନେ କୁକୁଡ଼ା ଜବେ କଲାପରି ତାହ ବେକ କଟା, ପାଖରେ ଖଣ୍ଡେ ରକ୍ତବୋଳା ଛୁରି ପଡ଼ିଛି, ଲାସଟା କିଛି ପଚି ଉଠିଲାଣି, ମଡ଼ୁବସାରେ ମାଛି ବସିଲା ପରି କାହାଣ କାହାଣ ମାଛି କଟା ଜାଗାରେ ବସିଅଛନ୍ତି ଏବଂ ଘର ସାରା ଭଣ ଭଣ ହୋଇ ଉଡ଼ୁଅଛନ୍ତି । ଲାସଟା ଚାରି ଆଙ୍ଗୁଳ ଜିଭ କାଢ଼ି-ପକାଇ କାମୁଡ଼ ଦାନ୍ତ ନିସିଡ଼ ଦେଇଅଛି, ଚାଳକୁ ତରାଟି ଚାହିଁଅଛି, ବାଳ ମୁକୁଳା, ରକ୍ତରେ ଲଟପଟ, ଦୁଇ ପାଖରେ ଚାରି ଆଙ୍ଗୁଳ ବହଳରେ ରକ୍ତ ପଚି କାଳିଆ ପଡ଼ିଗଲାଣି, ସେଥିରୁ ଗୋଟାଏ ଉତ୍କଟ ଦୁର୍ଗନ୍ଧ ବାହାରୁଅଛି । ଗାଲ ଦୁଇଟା ଓଆଉ ପରି ଓ ପେଟଟା ଗୋଟାଏ ଓଳିଆ ପରି ଫୁଲି ଗଲାଣି । ଦେଖାଗଲା, କୌଣସି ଲୋକ ତାହା ବାଳ ଗୋଟାଏ ହାତରେ ଧରି, ମୁହଁ ଗୋଟାଏ ଗୋଡ଼ରେ ମାଡ଼ିବସି ଛୁରିରେ ତା ବେକ କାଟିଅଛି । କଟା ବେଳେ ସ୍ତ୍ରୀଲୋକଟା ଗୋଡ଼ ବାଡ଼େଇ ହେବାରୁ ଘର ଖୋଳା ହୋଇଯାଇଅଛି । ଦୁର୍ଗନ୍ଧ ଆଉ ଭୟଙ୍କର ମୂର୍ତ୍ତି ଯୋଗୁ ଜମାଦାର ବେଶି ବେଳଯାଏ ରହିପାରିଲେ ନାହିଁ । ବାହାରକୁ ବାହାରି ଆସି ଆପଣା ଜ୍ଞାନବଳରେ ଠିକ୍ କଲେ, ଏ ମକଦ୍ଦମା, ଖୁଣି, ଲେକିନ୍ ଡକାଇତି ନୁହେ ଆଗେଜ । ଡକାଇତି ହୋଇଥିଲେ ଲାସ ଦେହରେ ଅଳଙ୍କାର ଥାନ୍ତା ନାହିଁ । ଜମାଦାରଙ୍କ ହୁକୁମରେ ଦୁଇଜଣ ହାଡ଼ି ଲାସ ଗୋଡ଼ରେ ଦଉଡ଼ି ଲଗାଇ ଘୋଷାରି ଘୋଷାରି ଆଣି ନଈ ଅଡ଼ାରେ ପକାଇଲେ । ଘୋଷାରି ଆଣିବା ବେଳେ ତାହାର ପାଟଶାଢ଼ୀ ଖଣ୍ଡ ଲଙ୍ଗଳା କରି କାଢ଼ି ନେବାରୁ ଲାସଟା ଆହୁରି ଭୟଙ୍କର ଦିଶିଲା । ସରକାରକୁ ଭେଜିବା ସକାଶେ ଲାସ ଦେହରୁ ଅଳଙ୍କାର ସବୁ ବାହାର କରାଇ ଜମାଦାର ଥଳିରେ ରଖିଲେ, କେବଳ ଗୋଡ଼ର କଂସା ପାହୁଡ଼ ନ ବାହାରିବାରୁ ମେହେନ୍ତରମାନେ ଲାସର ଦୁଇ ଗୋଡ଼ ଗୋଟି କୁରାଢ଼ିରେ ହାଣି ପାହୁଡ଼ ବାହାର କରି ନେଇଗଲେ ।

ତହିଁ ଆରଦିନ ପ୍ରାତଃକାଳରୁ ମକଦ୍ଦମା ତଦାରଖ ଆରମ୍ଭ ହେଲା, ଆଖପାଖ ପାଞ୍ଚ ଖଣ୍ଡ ଗ୍ରାମରୁ ବରକନ୍ଦାଜ ଏବଂ ଚୌକିଦାରମାନେ ଯାଇ ଆସାମୀ ଗିରେପ୍ତାର କରି ଆଣିଲେ । ଜମାଦାର ସାହେବ ବର-ଗଛ ମୂଳରେ ବସି ମକଦ୍ଦମା ତଦାରଖ କରୁଅଛନ୍ତି; ତିନି ଚାରିଶ ଆସାମୀ ଧରା ହୋଇ ଆସିଲେଣି; ମାତ୍ର ସମସ୍ତେ ଜମା ହୋଇ ନାହାନ୍ତି, ତଦାରଖ ଉପରେ ଚେକସତ୍ ହୋଇ ଯାଉଅଛନ୍ତି । ଆସାମୀ ଧରା ହୋଇ ଆସିଲେ ତାକୁ ଲାସ ନିକଟରେ ବସାଇ ରଖାଯାଏ, ଲାସଟା ଫୁଲି ଚାରି ଗୁଣ ମୋଟା ହୋଇ ଗଲାଣି, ଜିଭଟା ଗୋଟାଏ ସାନ କଦଳୀ ଭଣ୍ଡାପରି ଦିଶୁଛି, ଦୁର୍ଗନ୍ଧ କଥା ଛାଡ଼ । ଉଲଙ୍ଗ ସ୍ତ୍ରୀ ମୂର୍ତ୍ତି ତ ସତ; ଏହାର ଗୋଡ଼ ପାପୁଲି ନାହିଁ, ଚାଲୁଥିଲା କିପରି ? ଏଟା କି ରାକ୍ଷସୀ ? ଆସାମୀମାନଙ୍କୁ ବହୁତ ବେଳଯାଏ ଲାସ ନିକଟରେ ବସିବାକୁ ହୁଏ ନାହିଁ, ଦୁର୍ଗନ୍ଧ ଏବଂ ଭୟରେ ଶୀଘ୍ର ଜମାଦାରଙ୍କ ନିକଟରେ ହାଜର ହୋଇ ଯିବାକୁ ହେଉଅଛି । ବରଗଛ ମୂଳରେ ଜମାଦାରଙ୍କ କଚେରି । ନଈ ବାଲିରେ ଦଶ ପନ୍ଦର ଗଣ୍ଡା ଶାଗୁଣା ଏକଧ୍ୟାନରେ ଅନାଇ ବସିଅଛନ୍ତି; କେତେଟା ଉଡ଼ି ଆସୁଅଛନ୍ତି, ଦଶ ପନ୍ଦର ଗୋଟା ବିଲୁଆ କୁକୁର ଜମା ହୋଇ ଗଲେଣି, ଚାରି ଛ'ଟା କୁକୁର ଗୋଟାଏ ଗୋଡ଼ର ପାପୁଲି ସକାଶେ କାମୁଡ଼ା କାମୁଡ଼ି ଲଗାଇ ଅଛନ୍ତି; କିଛି ଦୂରରେ ଆଉ ଗୋଟାଏ ଗୋଡ଼ ପାପୁଲିକୁ ସାତଟା ଶାଗୁଣା ଝିଙ୍କାଝିଙ୍କି କରୁଥିଲେ, ଗୋଟାଏ

ବଲ୍‌ଆ ଆସି ସେମାନଙ୍କ ନିକଟରୁ ଛଡ଼ାଇ ନେଇଗଲା; ଶାଗୁଣା ଗୁଡ଼ାକ ଅଲ୍ପ ଘୁଞ୍ଚିଯାଇ ଡେଣା ମେଲାଇ ବସିଅଛନ୍ତି । ଗୃହି ଜଣ ହାଡ଼ି ନାକରେ ଲୁଗା ବାନ୍ଧି ଠେଙ୍ଗା କାନ୍ଧରେ ପକାଇ କୁକୁର ଶାଗୁଣା ଘଉଡ଼ାଉ ଅଛନ୍ତି । ଜମାଦାର ଅନେକ ଲୋକଙ୍କ ଇଜାହାର କଲମବନ୍ଦ କରି ପକାଇଲେଣି ।

ଦୋକାନୀ ଗୋପୀସାହୁ ବୁଢ଼ା ଇଜାହାର ଦେଲା, "ଆଜ୍ଞା ମୋହର ତିନି କାଳ ଗଲାଣି, କଲେ ଅଛି, ମୁଁ କ ଏ ବୟସରେ ମିଛ କହିବି ? ଆଜ ଏକାଦଶୀ, ଦାନ୍ତରେ ତୃଣ ଦେଇ ନାହିଁ, ଏହି ବଷ୍ଟ୍ଯ ବୃକ୍ଷ ମୂଳରେ ସତ୍ୟ କହୁଛି, ମୁଁ ଏ ମାମଲା କଥା କିଛି ଜାଣେ ନାହିଁ, ଛ ମାସ ହେଲା ଘରେ ବାଧିକା ପଡ଼ିଛି, ଦୋକାନକୁ ଆସି ନାହିଁ ।"

ନାଉରି ଗୃନ୍ଧିଆ ବେହେରା ଇଜାହାର ଦେଲା, "ବରଷା ଆଉ ତୋଫାନ ହେବାରୁ କେହି ନଈ ପାରି ହେଉ ନାହାନ୍ତି, ଗୁରୁବାର ହେଲା ନଈ କୂଳକୁ ଆସି ନାହିଁ ।" ଏହିପରି ଗ୍ରାମର ଅନେକ ଲୋକଙ୍କ-ଠାରୁ ଇଜାହାର ନିଆଗଲା ।

ବେଳ ବୁଡ଼ି ଆସିଲାଣି, ଗ୍ରାମରେ ଆଉ କେହି ଲୋକ ନାହାନ୍ତି, ସମସ୍ତଙ୍କଠାରୁ ତଦାରଖ ସରିଲାଣି, ମକଦ୍ଦମା କାଲି ପର୍ଯ୍ୟନ୍ତ ରଖାଯିବ କି ଆଜିରେ ଖତମ କରାଯିବ, ଜମାଦାର ବରକନ୍ଦାଜ ଦୁଇ ଜଣ ବସି ବିଚାର କରୁ-ଅଛନ୍ତି, ଏହି ସମୟରେ ଗଛ ଡାଳରୁ ଗୋଟାଏ ଶଙ୍ଖଚିଲ ପୋଚେଇପାଣି କରି ଦେବାରୁ ଜମାଦାରଙ୍କ ଦାଢ଼ିର ଅଧାଅଧି ଧଳା ହୋଇଗଲା । ତୋବା ତୋବା କହି ଜମାଦାର ଉଠି ପଡ଼ିଲେ । ଚିଲମାନଙ୍କୁ ଅନାଇ କମ ବଖତ୍ ବେକୁବ୍, ହାରାମଜାଦା ବୋଲି କ୍ରୋଧରେ ଗାଳିଦେବାକୁ ଲାଗିଲେ । ଚୌକିଦାରମାନେ ମଧ୍ୟ ଗାଳି ଦେଇ ଚିଲମାନଙ୍କୁ ଢେଲା ମାରିବାକୁ ଲାଗିଲେ । ଜମାଦାରଙ୍କ ଲମ୍ବା ଦାଢ଼ି ପରିଷ୍କାର କରିବାକୁ ତିନି ବଦନା ପାଣି ଲାଗିଲା ।

ଜମାଦାର ମାମଲା ଖତମ କରିବାକୁ ବସି ଲୋକ-ମାନଙ୍କୁ କହିଲେ, 'ଦେଖ, ଏହି ଲୋକ କିଏ ଜଣାନାହିଁ, ବୋଧହୁଏ ଯାତ୍ରୀ, ଏହାକୁ କେହି ଖୁନ କରି ନାହିଁ, ଏ ସାପକାଟି ।" ଗୋପୀସାହୁ ଦୋକାନୀ ଆଗକୁ ଆସି ସାକ୍ଷ୍ୟ ଦେଲା, ଧର୍ମାବତାର. ଏଠାରେ ସାପର ଭାରି ଉପଦ୍ରବ, ନଈ ବଢ଼ିରେ କାହୁଁ ଭାସି ଆସି ହଜାର ହଜାର ସାପ ଏଠି ଅଛନ୍ତି, ସାପ ଭୟରେ ଗ୍ରାମ ଭାଙ୍ଗିଗଲା; ମୁଁ କାଲି ଦୋକାନକୁ ଆସିଥିଲି, ଗୋଟାଏ ଲମ୍ବ କୋଳଥିଆ ନାଗ ବୁଲୁଥିଲା, ମୁଁ ଭୟରେ ପଳାଇଲି ।"

ଗୁଣ୍ଡିଆ ମୁହଁରୁ ମଲିକ କହିଲା, "ଧର୍ମାବତାର ! ଏଠାରେ ଅନେକ ସାପ, ମୁଁ ସେଦିନ ହଜୁରକୁ ଏହି-ବାଟେ ଯାଇଥିଲି, ଏହି ଗଛ ମୂଳରେ ପନ୍ଦରଟା ନାଗ ସାପ ଶୋଇଥିଲେ, ମୁଁ ଦେଖି ପଳାଇଗଲି ।

ଗତ ପରଦିନ ରାତ୍ରରେ ସ୍ତ୍ରୀଲୋକଟା ଘର ମଧ୍ୟରେ ଶୋଇଥିବା ସମୟରେ ଦୁଆରେ ଗୋଟାଏ ଚମ୍ପା ସାପ ବୁଲୁଥିବା ବିଷୟରେ ମୃଗପୁର ମୌଜାର ଗୁଣ୍ଡିଆ ଗୁଧେଇ ଧପଟ ସିଂ ସାକ୍ଷ୍ୟ ଦେଲା ।

ଜମାଦାର ସମସ୍ତଙ୍କର ସାକ୍ଷ୍ୟ କଲମବନ୍ଦ କରି ଗୋଟିଏ ପଶ୍ଚିମା ଭିକାରୁଣୀ ଯାତ୍ରୀ ଗ୍ରାମରେ ଭିକ୍ଷା କରି ଖାଉଥିବା ଓ ତାହାକୁ ଗତ ପରଦିନ ରାତ୍ରରେ ଗୋପାଳପୁର ମୌଜାରେ ସାପକାଟି ହୋଇଥିବା ଓ ଲାସ ଦେହରେ ସାପ କାମୁଡ଼ା ଚିହ୍ନ ଜାହେର ଥିବା ଏବଂ ଏହା ମୃତ୍ୟୁ ବିଷୟରେ ଅନ୍ୟପ୍ରକାର ସକ୍ କମ୍ବା ଦାବୀ ଦାବା ନ ଥିବା ଏକ ରିପୋର୍ଟ କେନ୍ଦ୍ରାପଡ଼ା ଥାନା ଦାରୋଗା ନିକଟକୁ ପଠାଇ ମାମଲା ଖତମ କଲେ । ଦାରୋଗା ଏବଂ ମୁନସୀଙ୍କ ରେସମ ସହିତ ରିପୋର୍ଟ ପୁଲିସ ଥାନାକୁ ପଠାଗଲା । ଜମାଦାରଙ୍କ ହୁକୁମ ଅନୁସାରେ ଗୃହିଜଣ ହାଡ଼ି ଲାସ ବେକରେ ଦଉଡ଼ି ଲଗାଇ ଭିଡ଼ି ନେଇ ନଦୀରେ ଭସାଇ ଦେଲେ । ନାଉରି ଗୃନ୍ଧିଆ ବେହେରା

ଦେଖିଲା, ଲସଟା ନଦୀରେ ଭାସି ଯାଉଁ ଯାଉଁ ଯେଉଁଠାରେ ବାଟୋଇଟାକୁ କୁମ୍ଭୀର ଧରିଥିଲା, ଠିକ୍ ସେହି ସ୍ଥାନରେ ତାକୁ ଗୋଟାଏ କୁମ୍ଭୀର ଧରି ନେଇଗଲା ।

ଜମାଦାର ଡଙ୍ଗା ପାରି ହେଉଁ ହେଉଁ ବରକନ୍ଦାଜକୁ କହିଲେ, "ଦେଖ, ଏଡ଼େ ମାମଲାଟାରେ ଦୁଇଶ ମଧ ପୂରି ହେଲା ନାହିଁ ।" ବରକନ୍ଦାଜ କହିଲା, "ଖୋଦା ମାଲିକ, ଯୋ ହୁକୁମ ହୁଆ ।"

ଗୋପୀ ସାହୁ ସେହିଦିନଠାରୁ ଆଉ ଦୋକାନକୁ ଯାଇ ନାହିଁ, କାର୍ତ୍ତିକ ତିନିଦିନିଆ ଲଗାଣରେ ଘର ପଡ଼ିଗଲା, ସେ ବାଟଟା ମଧ ପଡ଼ିଗଲା । ବୃଦ୍ଧିଆ ବେଢ଼େଇ ଅଧକୋଶେ ତଳକୁ ହରିପୁର ପାଖରେ ନାଆ ପକାଇଲାଣି । ରାତ୍ର ତ ରାତ୍ର, ଦିନରେ ମଧ ଭୟରେ ସେଠାକୁ କେହି ଯାନ୍ତି ନାହିଁ । ସେହି ବରଗଛରେ ଗୋଟାଏ ବଡ଼ ପେଚୁଣୀ ବସି ଡାଳ ଦୋହଲାଏ, ମଧ ସେହି ପେଚୁଣୀଟା ଖରାବେଳେ ନଈ ବାଲି ଉଡ଼ାଇ ଖେଳୁଥିବାର ଅନେକ ଲୋକ ଦେଖିଲେଣି । ଗୋପାଳପୁର ତୋଠର ଆଉ ନାମ ନାହିଁ, ଲୋକେ କହନ୍ତି ପେଚୁଣୀପଦା ।

---

-୨୫-

## ମଙ୍ଗରାଜ ଘରର ହାଲଚାଲ

ଛ ମାଣ ଆଠଗୁଣ୍ଠ କ'ଣ ? କଥିତ ଅଛି, ପୃଥିବୀର ବିଖ୍ୟାତ ମଣି କୋହିନୂର ଯାହାଠାରେ ରହେ, ତାହାର ବଂଶ ନାଶ କରିଦିଏ । ଆଲ୍ଲାଉଦ୍ଦୀନଠାରୁ ରଣଜିତ୍ ସିଂହ ପର୍ଯ୍ୟନ୍ତ ତାହାର ଜାଜ୍ୱଲ୍ୟମାନ ପ୍ରମାଣ; ମାତ୍ର ସେହି ମଣି ଆମ୍ଭମାନଙ୍କ ପ୍ରଜାମାତୃ ମହାମାନ୍ୟା ପ୍ରତ୍ୟକ୍ଷ କମଳାସ୍ୱରୂପା ଶ୍ୱେତଦ୍ୱୀପବାସିନୀ ଭାରତେଶ୍ୱରୀଙ୍କ ଶିରୋଭୂଷଣ ହେବା ଦିନଠାରୁ ଇଂଲଣ୍ଡର ମହିମା ଦିନକୁ ଦିନ ପୃଥିବୀ ବ୍ୟାପୁଅଛି । ଅନ୍ୟର ପ୍ରାଣନାଶକାରୀ ବିଷ ଦେବାଧିଦେବ ଉମାପତିଙ୍କ କଣ୍ଠସ୍ଥ ହୋଇ ତାଙ୍କର ମହାଦେବତ୍ୱ ପ୍ରକାଶ କରୁଅଛି । ସାର କଥା, ଉପଯୁକ୍ତ ଦ୍ରବ୍ୟ ଉପଯୁକ୍ତ ସ୍ଥାନରେ ନ୍ୟସ୍ତ ହେଲେ ଜଞ୍ଜାଳର କାରଣ ହୁଏ ନାହିଁ । ତେଡ଼େ ବଡ଼ କଥା ଛାଡ଼ି ଦିଅ, ନିହାତି ସାନରୁ ସାନ ଆମ୍ଭମାନଙ୍କ 'ଛ ମାଣ ଆଠ ଗୁଣ୍ଠ' କଥା ଦେଖ, ଲୋକମାନେ କହନ୍ତି, "ଗୋବିନ୍ଦପୁର ଗାଁ ତଳଚକ ଛ ମାଣ ଆଠଗୁଣ୍ଠ ଜମି ପରି କଳନ୍ଦି ଆଉ ନାହିଁ, ମାତ୍ର ଜମିଟା ଘରବୁଡ଼ା । ବାଘସିଂହ ବଂଶଟା ଲଣ୍ଡଭଣ୍ଡ ହୋଇଗଲା, ସାରିଆ ତ ଧନ ପ୍ରାଣରେ ଗଲା, ମଙ୍ଗରାଜ ବଂଶକଥା ତ ଦାଣ୍ଡରେ ପଡ଼ିଛି । ଜମିଟା ନେବାର ଛ ମାସ ଛ ପକ୍ଷ ଯାଇ ନାହିଁ ଦଶାଟା ଦେଖ ।"

ମଙ୍ଗରାଜ କଟକ ଯିବାର ଚତୁର୍ଥ ଦିନ ସକାଳେ ଦେଖାଗଲା, ଗଡ଼ାଘର ଗୃହଜାଗା ଆଣ୍ଠିଏ ଖୋଲା । ସେହିଦିନ ସକାଳୁ ଗୋବିନ୍ଦା ଆଉ ଚମ୍ପା ଉଆସ ମଧରେ ଦିଶୁ ନାହାନ୍ତି, ସେ ଦୁଇ ଜଣ ଆଗଲା ପିଛୁଲା ହୋଇ କଟକଦାଣ୍ଡ ପଦ୍ମପୁର ଗହିରରେ ଯାଉଥିବାର ଲୋକେ ଦେଖିଆସି ଗ୍ରାମରେ କହିଲେ । ପୁଅମାନେ ବାପ ଉପରେ ଶଙ୍କି ରହିଥିଲେ, ଏତେବେଳେ ପୋବାର ପଡ଼ି ଯାଇଅଛି । ବଡ଼ ପୁଅଙ୍କର ଆଗରୁ କିଛି ବାତୁଲ ଛିଟା ଥିଲା, ବର୍ତ୍ତମାନ ଦିନ ରାତି ଗଞ୍ଜେଇ ଭଡ଼ ଭଡ଼ ସାଫ ବାପ୍ପା ହୋଇ ଗଲେଣି । ମଝିଆଁ ଆଉ ସାନ ପୁଅଙ୍କର ନାକ ପୋଛିବାକୁ ତର ନାହିଁ, ମକର ମହାନ୍ତି ମୁଣ୍ଡ ଉପରେ, ଗୋବରା ଚଢ଼େଇ ଧରାରେ ଲାଗିଅଛନ୍ତି, ଦିନ ରାତି ଧାନ ବିକା ଲାଗିଛି ।

ଅଜ ଗାଁରେ ଚହଳ ପଡ଼ିଛି, ମଙ୍ଗରାଜ ଘରଦ୍ୱାର ନିଲାମ ହେବ । ବେଳ ଅନ୍ଦାଜ ଛ ଘଡ଼ି, ପୋଲିସ ଜମାଦାର, ବରକନ୍ଦାଜ, ଚୁଟିଆ ଏପରି ଆଠ ଦଶ ଜଣ ମଙ୍ଗରାଜଙ୍କ ଉଆସ ଦୁଆରେ ଉପସ୍ଥିତ ହେଲେ ।

ଜଜ୍ ସାହେବ ମଙ୍ଗରାଜଙ୍କୁ ହଜାରେ ଟଙ୍କା ଜରିମାନା କରିଥିଲେ, ଚଳନ୍ତି ସମ୍ପତ୍ତି ନିଲାମ ହୋଇ ଟଙ୍କା ଅସୁଲ ହେବ । ଜମାଦାର ଘରେ ପଶି ମାଲମତାଗୁଡ଼ାକ ବାହାରିଆଣି ଦାଣ୍ଡରେ ଜମା କରୁଅଛନ୍ତି । ବଣିବସାରେ ଚେମଣା ପଶିଲାପରି ବୋହୂ ଭୁଆସୁଣୀଗୁଡ଼ାକ ଘରୁ ବାହାରି ଯାଇ ଉଆସ ପଛ ତୋଟାରେ କାଉଳି ହେଉଛନ୍ତି । ପୁଅ କେହି ଘରେ ନାହାନ୍ତି । ଗୁମୁକରଣ କଣ କହିବାକୁ ଯାଉଥିଲା, ଜମାଦାର ଆଖି ଦେଖାଇବାରୁ ତୁନି ହୋଇ ଗାଲରେ ହାତ ଦେଇ ପିଣ୍ଡାରେ ବସି ପଡ଼ିଅଛି । ମୁକୁନ୍ଦା ସମସ୍ତଙ୍କ କଥାରେ 'ହୋଇ ଆଜ୍ଞା, ହୋଇ ଆଜ୍ଞା' କହି ଲଣ୍ଡଭଣ୍ଡ ହେଉଛି ।

ଦାଣ୍ଡରେ ମାଲମତାଗୁଡ଼ାକ ନିଲାମ ହେଲା । ନିଲାମ ତ ନିଲାମ ହ'ପାଣିଆ ବଳଦ ହଳକର ଦାମ ସାଢ଼େ ଚାରି କି ପାଞ୍ଚ ଟଙ୍କା କେବେ କିଏ ଶୁଣିଥିଲା ? ଦୁହାଁଳ ଗାଈଗୁଡ଼ାକ ଟଙ୍କାଏ ଟଙ୍କାଏ, ହ'ବରଷିଆ ଛଡ଼ା ସାଙ୍ଗେ ସାଙ୍ଗେ । ପ୍ରଥମେ ପ୍ରଥମେ ନିଜ ଗାଁ ଲୋକ ନିଲାମ ଡାକୁ ନ ଥିଲେ, ଦାମ ଦେଖି ପଛକେ ଗୋଟାକ ଉପରେ ଗୋଟାଏ ପଡ଼ିଲେ । ଜମାଦାର ତ ନିଲାମ କରି ଟଙ୍କା ନେଇଗଲା, ବାକି ଯେ ଗାଈ ବଳଦଗୁଡ଼ାକ ଥିଲେ ଏ ବିଲ ସେ ବିଲ, ଏ ଦାଣ୍ଡ ସେ ଦାଣ୍ଡ ଲଣ୍ଡଭଣ୍ଡ ହେଉଛନ୍ତି, ଅଟ୍‌କାଇବାକୁ କେହି ନାହିଁ, ବଙ୍ଗଳା ଗୋଆଲା ଗୋଠରେ କେତେ ଗଲେଣି, କେତେ ବଣା ହୋଇ ଆଉ ଆଉ ଗ୍ରାମରେ ବୁଲୁଅଛନ୍ତି । ହଳିଆମାନେ ଦୁଇ ଦୁଇ ବରଷର ଦରମା ପାଇ ନ ଥିଲେ, ଶୁଣାଯାଏ ତୋଟା, ନଡ଼ିଆ ବଗିଚା, ଗୋରୁ ଗାଈରୁ ସେମାନେ ଅସୁଲ କରି ନେଉଛନ୍ତି ।

ଭୁଲ ଅଧା ଅଧି ହେଲାଣି, ଆଶୁଧାନ ଶୁଖିବାର ହୋଇ ନାହିଁ, ପାଣ ହଳିଆଗୁଡ଼ାକ ପଳାଇ ଗଲେଣି, ଖାଲି ପଳେଇବା ନୁହେ, ଗୋରୁ ଲାଙ୍ଗୁଡ଼ ଧରି ପାରି । ଗାଁର ତେଲପରି କଥାଟା ହାଟରେ ତାଳପରି ଫୁଲିଯାଏ, ସେ କଥାଟା ଏକା ସତ । ଗୁରୁଆଡ଼େ କଥା ବାଜୁଛି, ଜଜସାହେବ ମଙ୍ଗରାଜଙ୍କ ହାତରୁ ତାଲୁକ ଛଡ଼ାଇ ନେଇ ଜଣେ ଓକିଲଙ୍କୁ ଦେଲେ ! ସେ ଓକିଲ ଆସନ୍ତା ମକର ସଂକ୍ରାନ୍ତି ଦିନ ଦୁଇଶ ପାଇକ ଘେନି ପାଞ୍ଚଟା ଘୋଡ଼ା ଦୁଇଟା ସବାରିରେ ଚଢ଼ି ଗାଁ ଦଖଲ କରିବାକୁ ଆସିବ । ପ୍ରଜାମାନେ ଶୁଣି କହିଲେ, "ଘୋଡ଼ାରେ, ତୋତେ ଚୋରି ନେବ, ନା, ସେଠି ଦାନାପାଣି ଏଠି ଦାନାପାଣି । ଯେ ରାଜା ହେବ, ତାର ପ୍ରଜା ହେବୁଁ, ଆପଣା ଗଣ୍ଡାକ କିଏ ଛାଡ଼ିବ ?" ମାତ୍ର ଦୁଷମନପକ୍ଷିଆ ଲୋକମାନେ ଭାରି ଖୁସି । ଆପଣା ଅସୁଲ ତ ଥାଉ, ଉପରେ ଲାଜରେ ମଙ୍ଗରାଜଙ୍କ ପାଇକ ଗାଁରେ ଛିଡ଼ା ହୋଇପାରୁ ନାହାନ୍ତି । ବେଗଡ଼ା ଲୋକେ ପାଇକମାନଙ୍କୁ ଦେଖିଲେ ଗଛପଥରକୁ ଲଗାଇ ଦୁଇପଦ କଥା ଶୁଣାଇ ଦିଅନ୍ତି ।

---

–୨୭–

## ବାବାଜୀ ଲଲିତା ଦାସ

ଗଲା କାଲିଠାରୁ ଗାଁରେ ଭାରି ଗୋଟାଏ ଚହଲ ପଡ଼ିଛି । ହାଟ, ବାଟ, ଗାଧୁଆତୁଠ, ହାଣ୍ଡିଶାଳ, ଢେଙ୍କିଶାଳ ଯେଉଁଠାକୁ ଯାଅ, ଶୁଣ ସେହି କଥା । କେଉଁଠାରେ ତୁନି ତୁନି କଥା ଚାଲିଛି, କେହି ପାଟି କରି କହୁଛି, କେହି ଜଣେ କୁହାଳିଆ ହାତ ହଲାଇ, ମୁଣ୍ଡ ହଲାଇ କଥା ମେଲୁଛି, ପାଞ୍ଚଜଣ ବସି ଥିର ମନରେ ଶୁଣୁଛନ୍ତି । କଥାଟା ତ ନାନାରୂପ ଧାରଣ କରି ଚାଲିଛି, ଆମ୍ଭେମାନେ ତାହାର ସାରାଂଶ ଆପଣଙ୍କୁ ଶୁଣାଇବୁ ।

ମଙ୍ଗରାଜେ କଟକ ଯିବା ସାତ ଦିନଠାରୁ ପୁରୀକ୍ଷେତ୍ରରୁ ଗୋଟିଏ ବାବାଜୀ ଆସି ଗୋବିନ୍ଦପୁରର ଭାଗବତଘରେ ମଠ କରିଅଛନ୍ତି । ବାବାଜୀଙ୍କ ନାମ

ଲଲିତା ଦାସ, ବୟସ ଅଧୋଡ଼ା, ବର୍ଣ୍ଣ ଶ୍ୟାମଳ, ଦେହଟି ଥାକୁଲଥୂକୁଲ, ମୁଣ୍ଡଟି ଲଣ୍ଡା, ମଝିରେ ଚଉବୁଜ ଡେମ୍ପ ପରି ଚୂଟିକ, ବେକରେ ମୋଟା ମୋଟା ତୁଳସୀ-କଣ୍ଠି ପାଞ୍ଚ ଫେର ବଳିଛି । ବାବାଜୀ ମୁହଁ ଅନ୍ଧାରରୁ ଉଠି ପ୍ରାତଃସ୍ନାନ ସାରି ନାସାଅଗ୍ରରୁ କେଶ ପର୍ଯ୍ୟନ୍ତ ଚିତା ଆଉ ଡେଡ଼୍‌ଲେଟର ଅଫିସରୁ ବେରଂ ଚିଠି ବାହୁଡ଼ିଲା ପରି ସର୍ବାଙ୍ଗରେ ଛାପା ଲଗାଇ ହରିନାମ ଶୁଣାଇବା ସକାଶେ ଗ୍ରାମକୁ ବାହାରନ୍ତି । ପରିଧାନ କୌପୀନ, ତାହା ଉପରେ ବହିର୍ବାସ, ପିଠିରେ ନାମାବଳୀ, ହାତରେ ଝୁଲି । ବାବାଜୀ ଗ୍ରାମରେ ବୁଲି ଲୋକମାନଙ୍କୁ ହରିନାମ ଶୁଣାନ୍ତି, ସନ୍ଧ୍ୟା ସମୟରେ ଖଞ୍ଜଣୀ ବଜାଇ କୀର୍ତ୍ତନ ଗାନ୍ତି, ତହିଁ ଉତ୍ତାରେ ଚୈତନ୍ୟ ଭାଗବତ ପାଠ । ସନ୍ଧ୍ୟା ସମୟରେ ଭାଗବତ ଘରେ ଭାରି ବୈଠକ ହୁଏ, ଗ୍ରାମର ବୁଢ଼ାଭଲଆ ଦଶ ବାର ଜଣ ତଲ୍ଲୀ ଭେକ ନେବାର କଥା ହେଲାଣି । ବାବାଜୀଟି ଭାରି ନିର୍ଲୋଭ, କେହି କିଛି ଦେଲେ "ହରେ କେଷ୍ଟ, ହରେ କେଷ୍ଟ" କହନ୍ତି । ଏପରି ସାଧୂ କେବେ କାହିଁ ଦେଖା ନାହିଁ । ଆଜକୁ ଦୁଇ ଦିନ ହେଲା ବାବାଜୀ କାହିଁ ଅନ୍ତର୍ଦ୍ଧାନ ହୋଇଗଲେଣି, ସାଙ୍ଗେ ସାଙ୍ଗେ ମଙ୍ଗରାଜଙ୍କ ଉଆସର ମରୁଆକୁ ଖୋଜା ପଡ଼ୁଛି । କେହି କେହି କହନ୍ତି, ସେ ବାବାଜୀଙ୍କ ସାଙ୍ଗରେ ବୃନ୍ଦାବନ ଧାମକୁ ଚାଲିଗଲା । ବାସ୍ତବରେ ସେ ଯଦି ସାଧୂ ସହବାସରେ ତୀର୍ଥଯାତ୍ରା ଉଦ୍ଦେଶ୍ୟରେ ବାହାରି ଯାଇଥାଏ, ତେବେ ଆମ୍ଭେମାନେ ତାହାର ଚରିତ୍ର ବିପକ୍ଷରେ କୌଣସି ମନ୍ତବ୍ୟ ପ୍ରକାଶ କରିବା ଦ୍ୱାରା ସାଧୂ ଏବଂ ସାଧ୍ୱୀଙ୍କର ନିନ୍ଦାଜନିତ ମହାପାତକ ଅର୍ଜନ କରିବାକୁ ଅନିଚ୍ଛୁକ । କେବଳ ଗୋଟାଏ କଥା ଶୁଣିବାବେଳକୁ ମନଟା କିପରି ଗୁଡ଼େଇ ପୁଡ଼େଇ ହେଉଛି । ମରୁଆ ସାନ ବୋହୂଙ୍କର ଭାରି ବିଶ୍ୱାସୀ ଥିଲା, ସବୁବେଳେ ତାଙ୍କରି ପାଖରେ ଥାଏ । ମରୁଆ ସହିତ ସାନ ବୋହୂଙ୍କ ବାକ୍‌ସରେ ଥିବା ଅଳଙ୍କାରଗୁଡ଼ିକ ମଧ୍ୟ ମିଳୁ ନାହିଁ, ବାପଘରୁ ଏବଂ ଶାଶୁଘରୁ ବିଭା ସମୟରେ ମୁହଁଦେଖାଣି ଯାହା ନଗଦ ଟଙ୍କା ପାଇଥିଲେ, ତାହା ମଧ୍ୟ ବାକ୍‌ସରେ ଥିଲା । ବାକ୍‌ସ ମେଲା ହୋଇ ପଡ଼ିଛି, ପଦାର୍ଥ କିଛି ନାହିଁ । ସମସ୍ତେ ମାଲ ସହିତ ମରୁଆର ସମ୍ପର୍କ ରଖି କଥା କହୁଛନ୍ତି । ସାନବୋହୂ ତ ସାଫ ଉଲ୍ଟା ପାଡ଼ୁଛନ୍ତି । ସମସ୍ତେ ଉଠା ପାଡ଼ ତୁନି ହେଲେ, ମରୁଆକୁ ଖୋଜିବାକୁ କିଏ ଯାଉଛି ?

ଯେଉଁ ଦୁଆରେ ଦିନ ନାହିଁ, ରାତି ନାହିଁ, ଲୋକ ଯିବା ଆସିବା ଗହଳି ଲାଗିଥିଲା, ସେ ଦୁଆରେ ଦୂବ ମାଡ଼ିଗଲାଣି ।

ସାର କଥା, କେତୋଟା ମାସ ମଧ୍ୟରେ ସମ୍ପତ୍ତି, ଗୌରବ, ଆଧିପତ୍ୟ ସବୁ ଛାରଖାର ହୋଇ ଗଲାଣି ।

"ନିର୍ଜଗାମ ଯଦା ଲକ୍ଷ୍ମୀଃ
ଗଜଭୁକ୍ତକପିତ୍ଥବତ୍ ।"

———

— ୨ —

## ଅପୂର୍ବ ମିଳନ

ମନୁଷ୍ୟ ଆପଣା କର୍ମଫଳ ଭୋଗ କରେ । ତୁମ୍ଭେ ଭଲ ଅବା ମନ୍ଦ ଯେପରି କର୍ମ କରିବ, ତହିଁର ପ୍ରତିଫଳ ଅବଶ୍ୟ ତୁମ୍ଭଙ୍କୁ ଭୋଗ କରିବାକୁ ହେବ । ହେ ବୁଦ୍ଧିମାନ୍, ତୁମ୍ଭେ ଅତି ନିର୍ଜନରେ ଅତି ସାବଧାନରେ କିଛି କର୍ମ କରି ମନେ କରୁଛ, ମନୁଷ୍ୟର ଦୃଷ୍ଟିରେଖାର ଅନ୍ତରାଳରେ ରହିଛ । ଭୂମିରେ ଗୋଟିଏ କ୍ଷୁଦ୍ର ବୀଜ ପୋତିବା ବେଳେ କେହି ଦେଖେ ନାହିଁ ସତ୍ୟ; ମାତ୍ର ସେଥିରୁ ଜାତ ବୃକ୍ଷର ମନୁଷ୍ୟ ନେତ୍ର ଅତିକ୍ରମ କରିବାର ଉପାୟ ନାହିଁ । ପୁଣି ତୁମ୍ଭେ ଯେଉଁ ବୃକ୍ଷ ରୋପଣ କଲ, ତାହାର ଫଳ ତୁମ୍ଭଙ୍କୁ—କଦାଚିତ୍ ବଂଶପରମ୍ପରାକୁ

ଭୋଗ କରିବାକୁ ହେବ । ହେ ବଳବାନ୍, ଧନବାନ୍, ଗର୍ବିତ, ତୁମ୍ଭେ ଯାହାକୁ ଅତି ସାମାନ୍ୟ ଲୋକ ବୋଲି ତୁଚ୍ଛ ଜ୍ଞାନ କରୁଛ, ଦିନେ ତାହାର ଦ୍ୱାରା କି କାର୍ଯ୍ୟ ସାଧିତ ହୋଇପାରେ, ତୁମ୍ଭେ ତାହା ଜାଣ ନାହିଁ । ବଙ୍ଗ, ବିହାର, ଓଡ଼ିଶାର ସୁବାଦାର ଗୋଟିଏ ସାମାନ୍ୟ ଫକୀର ପ୍ରତି ଅତ୍ୟାଚାର କରି ରକ୍ଷା ପାଇପାରି ନାହାନ୍ତି । ଶିଖ ଗୁରୁ ଗୋବିନ୍ଦ ଜଣେ ସାମାନ୍ୟ ମୁସଲମାନର ଉପକାର କରି ପ୍ରାଣ ସଙ୍କଟ ଘୋରବିପଦରୁ ରକ୍ଷା ପାଇଥିଲେ । ସେ ଐତିହାସିକ ବଡ଼ ବଡ଼ କଥା ଛାଡ଼ିଦିଅ। ବାଘସିଂହ ଘରେ ଚୌକିଆ ଥିବା ହେତୁରୁ ରତନପୁରର ଯେଉଁ ଡମମାନଙ୍କୁ ଆମ୍ଭମାନଙ୍କ ମଙ୍ଗରାଜେ ଚଲାନ୍ତ କରି ଜେଲ ଦିଆଇଥିଲେ, ଘଟନାସୂତ୍ରରେ ଆଜି ସେହିମାନଙ୍କ ହାତରେ ଲାଞ୍ଛନା ଭୋଗ କରିବାକୁ ହେଲା ।

ରତନପୁର ମୌଜାର ଡମମାନେ ପ୍ରଥମ ଦିନ ମଙ୍ଗରାଜଙ୍କୁ ଜେଲଖାନାରେ ଦେଖି—ସଙ୍ଗାତ ତ ଅଇଲେ ଶଶୁର ଅଇଲେ—ସାଆନ୍ତେ ଅଇଲେ—କହି ହସି ହସି ଝାପରି କରି ତାଙ୍କୁ ଦଣ୍ଡବତ କରିଥିଲେ। କେହି ଜଣେ ଧନବନ୍ତ ବଡ଼ ଲୋକ ଜେଲ ଗଲେ ପୁରୁଣା ସରଦାର କଏଦୀମାନେ କିଛି ପାଇବା ଆଶାରେ ତାହା ପ୍ରତି ଅତ୍ୟାଚାର କରିଥାନ୍ତି । ମଙ୍ଗରାଜେ ରତନପୁରିଆଙ୍କ ସାଙ୍ଗରେ ଘଣା ପେଲିବା ସମୟରେ ତାଙ୍କ ଉପରେ ଗୋଇଠାଟାଏ, ଖୁନ୍ଦାଟାଏ ବାଜି ଯାଉଥାଏ ।

ଆମ୍ଭେମାନେ ଗୋଟିଏ କଥା କହିବାକୁ ଭୁଲି ଯାଇଛୁ । ମିଥ୍ୟା ସାକ୍ଷ୍ୟ ଦେବା ଅପରାଧରେ ଗୋବରା ଜେନାର କଠିନ ପରିଶ୍ରମ ସହିତ ଏକ ବର୍ଷ ମିଆଦ ହୋଇ ଯାଇଛି ।

ଦିନ କାହାରିକୁ ଅନାଇଁ ବସି ରହେ ନାହିଁ । ଚିରକାଳ ସମାନ ଭାବରେ ଦିନ ରାତି ବହି ଯାଉଛି । ମଙ୍ଗରାଜେ ଘଣା ପେଲୁଛନ୍ତି ବୋଲି ସେ ଦିନ ଅଟକି ରହିବ, ଏମନ୍ତ କିଛି ନୁହେଁ । ଲୋକେ କହନ୍ତି, 'ସୁଖର ଦିନ ଘୋଡ଼ାରେ ଧାଏଁ; ଦୁଃଖର ଦିନ ହାତୀରେ ଚଢ଼ି ଯାଏ ।' ତୁମ୍ଭେ ଯାହା କହ, ଦିନ ତାହାର ନିଜର କାର୍ଯ୍ୟ ଭଲ ବୁଝେ । ତାହାର ଆଠ ପହରରୁ ନିମିଷେ ଆଡ଼ିବାଙ୍କ ହେବାର ନାହିଁ । ଏକ – ଦୁଇ—ତିନି—ଗୃହିଦିନ କରି ମଙ୍ଗରାଜଙ୍କ ଜେଲ ମିଆଦ ଦୁଇମାସ କଟି ଗଲାଣି ।

ସେ ଯେଉଁ ବଖରାରେ ଶୋଉଥିଲେ, ସେ ବଖରାଟା ମରାମତି କରାଯିବାର ପ୍ରୟୋଜନ ହେବାରୁ ତାଙ୍କୁ ଅନ୍ୟ ଗୋଟିଏ ବଖରାକୁ ନିଆଗଲା । ଜେଲଖାନାରେ ଗୋଟିଏ ଗୋଟିଏ ବଖରାରେ ଆଠଟି ଲେଖାଏଁ ମାଟିରେ ପିଣ୍ଡି ବନ୍ଧା ଥାଏ । ରାତିରେ କମ୍ବଳ ପାରି ସେଥିରେ ଆଠଜଣ କଏଦୀ ଶୁଅନ୍ତି । ଦୈବାତ୍ ରତନପୁର ମୌଜାର ଛ' ଜଣ ଡମ, ଗୋବରା ଜେନା ଏବଂ ମଙ୍ଗରାଜେ ଏହି ଆଠଜଣ ଗୋଟିଏ ବଖରାରେ ରହିଲେ ।

ଗୃହ ଦିନ ତଳେ ମଙ୍ଗରାଜଙ୍କ ଉପରେ ଘୋର ନୋଟାଏ ବିପଦ ଘଟି ଯାଇଛି । ଆଜିକାଲି କଟକ ଦରଘାବଜାରରେ ଯେ ଗୋଟିଏ ପାଗଲାଖାନା ଅଛି, ଏପରି ପୂର୍ବେ ନ ଥିଲା । ବାଯ୍ୟାମାନଙ୍କୁ ଜେଲଖାନାରେ ବନ୍ଦିକରି ରଖା ଯାଉଥିଲା । ମଙ୍ଗରାଜଙ୍କ ରହିବା କୋଠରିର କିଛି ଦୂରରେ ପାଗଲା ଗାରଦ । ସେଠାରେ ଗୋଟିଏ ଭୟଙ୍କର ବାୟା ଥିଲା । ସେ ରାତିଯାକ ଶୁଏ ନାହିଁ, ମୋ ସାରିଆ, ମୋ ଛ ମାଣ ଆଠଗୁଣ୍ଠ କହି ନାଚେ, ଚଲାମାରେ, ଡକା ପାଡ଼େ, ହସେ । ସେ ମଙ୍ଗରାଜଙ୍କୁ ଦେଖିଲେ ସର୍ବଦା କାମୁଡ଼ିବାକୁ ଧାଏଁ । ବରକନ୍ଦାଜମାନେ ଧରାଧରି କରି ରଖନ୍ତି । ସେ ଦିନ ହଠାତ୍ ଧାଇଁଆସି ମଙ୍ଗରାଜଙ୍କ ନାକ କାମୁଡ଼ି ପକାଇ ଛିଣ୍ଡାଇ ଦେଇଅଛି ।

ଆଜ ଜେଲଖାନା ଦୁଆରେ ଭାରି ଗୋଳମାଳ, ଦୁଇଗୋଟା ରୋଗୀ ପଡ଼ିଛନ୍ତି । ଗୋଟିଏ ଶୁକ୍ ଶୁକ୍ ହେଉଥିଲା, ମରିଗଲା । ଆଉ ଗୋଟାକୁ ଧୂଆଧୁଇ କରି ନେଟିଭ ଡାକ୍ତର ଓ କମ୍ପାଉଣ୍ଡର ପଟି ବାନ୍ଧି ଦେଉଛନ୍ତି ।

ବେଳ ୯ ଘଣ୍ଟା ସମୟରେ ଡାକ୍ତର ସାହେବ ଆସି ଲାସ ମାଇନା କଲେ; ରୋଗୀର ସର୍ବାଙ୍ଗ ପରୀକ୍ଷା କଲେ । ଜେଲ ଦାରୋଗା ରେଜିଷ୍ଟରୀ ବହି ଦେଖି କହିଲେ—

ଲାସ—୯୭୭ ନମ୍ବର କଏଦୀ ଗୋବରା ଜେନା ।

ରୋଗୀ—୯୫୭ ନମ୍ବର କଏଦୀ ରାମଚନ୍ଦ୍ର ମଙ୍ଗରାଜ । ରୋଗୀର ସର୍ବାଙ୍ଗ ସ୍ଥାନେ ସ୍ଥାନେ ଫୁଲିଛି, ନାକଦଣ୍ଡା ଫାଟିଯାଇ ରକ୍ତ ବହୁଛି, ସମୟ ସମୟରେ ରକ୍ତ ବାନ୍ତି ହେଉଛି । ଡାକ୍ତର ସାହେବ ରୋଗର କାରଣ ମାଡ଼ ବୋଲି ସ୍ଥିର କଲେ ।

ଖୁବ୍ ତଦାରଖ ହେଲା, ଧୂମ୍‌ଧାମ୍ ହେଲା, କିଏ ମାଡ଼ ମାରିଲା ସ୍ଥିର ହେଲା ନାହିଁ । ରୋଗୀର କଥା କହିବାର ଶକ୍ତି ନାହିଁ । କେବଳ ଗତ ରାତିରେ ପହରା ବରକନ୍ଦାଜ ଅର୍ଦ୍ଧରାତ୍ର ସମୟରେ ଦୁମ୍‌ଦାମ୍-ଗୁମ୍‌ଗାମ୍ ଶବ୍ଦ ଶୁଣିଥିବାର ସାକ୍ଷ୍ୟ ଦେଲା । ଅନ୍ୟ ଛ ଜଣ ସାକ୍ଷ୍ୟ ଦେଲେ, କଏଦୀ ଦୁଇ ଜଣ ପରସ୍ପର ବାଡ଼ିଆ ବାଡ଼େଇ ହୋଇ ଅଛନ୍ତି ।

ମକଦ୍ଦମା ତଦାରଖି ଖତମ ହେଲା । ଡାକ୍ତର ସାହେବ ହୁକୁମ ଦେଲେ—ରୋଗୀର ବଞ୍ଚିବାର ସମ୍ଭାବନା ବିରଳ, ତାହାର ଜ୍ଞାତି ବନ୍ଧୁ ଇଚ୍ଛାକଲେ ଚିକିତ୍ସା ସକାଶେ ଘରକୁ ନେଇଯାଇ ପାରନ୍ତି । ପୋଲିସ ଥାନାଦ୍ୱାରା ଗୋବିନ୍ଦପୁରରେ ସାହେବଙ୍କ ହୁକୁମ ପହଞ୍ଚିଲା ।

ପୁଅମାନେ ଧାନଅମାର ତାଳପୋଛ ପ୍ରାପ୍ତ କରି ଦେଲେଣି । ସେମାନେ ବାପକୁ ଚାହାନ୍ତି । ଫେରି ଆଇଲେ କି ରକ୍ଷା ? କେଉଁ ବୁଦ୍ଧିମାନ୍ ଲୋକ ଜାଣି ଜାଣି ଆପଣା ବିପଦକୁ ଡାକି ଆଣେ ? "ଆତ୍ମାନଂ ସତତଂ ରକ୍ଷେତ୍" ଏ ନୀତିବାକ୍ୟଟା ସମସ୍ତଙ୍କୁ ଜଣା ।

ବୁଢ଼ା ହଳିଆ ମୁକୁନ୍ଦା ଲଣ୍ଡଭଣ୍ଡ ହୋଇ ଦୁଇଟା ଅଣ୍ଡିରା, ଚାରି ଛ'ଟା ପହ୍ଲାଣସଜ ବିକି ଦେଇ ଖଣ୍ଡେ ଡୋଲି ଧରି ତରଭର ହୋଇ କଟକ ଧାଇଁଲା ।

———

## ଉପସଂହାର

ତିନି ମାସ ତଳେ ତୁଳସୀ ଚଉରା ପାଖରେ ସାଆନ୍ତାଣୀ ଯେପରି ପଡ଼ିଥିବାର ଦେଖାଯାଇଥିଲା, ଠିକ୍ ସେହି ସ୍ଥାନରେ, ଠିକ୍ ସେହିପରି ଉପରକୁ ମୁଣ୍ଡ କରି ପୁରୁଣା କନ୍ଥା ଖଣ୍ଡିକରେ ମଙ୍ଗରାଜେ ପଡ଼ିଛନ୍ତି । ହାତ ଗୋଡ଼ ନଡ଼ବଡ଼ ହେବାକୁ ନାହିଁ, ଆଖିରେ ପଲକ ପଡ଼ୁ ନାହିଁ, ଏକ ଧ୍ୟାନରେ ଉପରକୁ ଚାହିଁ ରହିଛନ୍ତି । ଶିବା ଚମାର, କାର୍ତ୍ତିକ ନାୟକ ଦୁଇଜଣ ବୈଦ୍ୟ ଲାଗିଥିଲେ, କାଲି ରାତିରୁ ଜବାବ ଦେଇ ଅଲଗା ହୋଇ ଗଲେଣି, ଗେପିଆ ତନ୍ତୀ ହାତ ଲଗାଇଛି । ଗୋପିଆ ତନ୍ତୀ ଓରଫ ଗୋପୀ କବିରାଜ ଜଣେ ଡାକପୁକାର ଟାଣୁଆ ବୈଦ୍ୟ । ଚାରି ଖଣ୍ଡ ଗ୍ରାମରେ ଲୋକେ ତାହାକୁ ଜାଣନ୍ତି, ଦିନ ରାତି ତାହାର ନାକ ପୋଛିବାର ତର ଥାଏ ନାହିଁ, ସକାଳୁ ଉଠି ପାଛୁଡ଼ାଟା ଅଣ୍ଟାରେ ଭିଡ଼ି ଦେଇ କାନ୍ଧରେ ନାଳିଆ ଗାମୁଛା ପକାଇ କାଖତଳେ ଔଷଧ ବଟୁଆ ଝୁଲାଇ ଦେଇ ବାଙ୍କ ମୁଣ୍ଡ ମୂଳିଆ ବାଉଁଶ ବାଡ଼ି ହାତରେ ଧରି ରୋଗୀ ଖୋଜିବାକୁ ବାହାରେ । ବଟୁଆ ମଧ୍ୟରେ ବାଇଶି ନିଦାନ ରୋଗର ଔଷଧ ବଟିକା ଅଲଗା ଅଲଗା ଲୁଗାରେ ସାଇତା ଅଛି । ଗୋପୀର ଦଦେଇ ଜଣେ ନାମଜାଦା

ବୈଦ୍ୟ ଥିଲେ, ତାଙ୍କ ଔଷଧ ରୋଗୀ ଦେହରେ ଚକମକି ପଥର ପରି ଲଗିଯାଏ । ତାଙ୍କ ହାତଡଆର ବଟିକା ଗୋପୀ ଆଜଯାଏ ସାଇତି ରଖିଅଛି ।

ଗୋପୀ ମଳୁବଛଣା ଡାହାଣ ପାଖରେ ବସି ଢେର ବେଳଯାଏ ନାଡ଼ି ଚିପିଲେ, ଉପରକୁ ଅନାଇ, ଆଖିବୁଜି, ଦାନ୍ତ ନିପିଡ଼ି ରୋଗ ଅନୁମାନ କଲେ । ମୁକୁନ୍ଦା ଭକ ଭକ କରି କବିରାଜଙ୍କ ମୁହଁକୁ ଚାହିଁଥାଏ । ପଚାରିଲା, "କବିରାଜେ କଣ ଦେଖିଲେ ?" କବିରାଜେ ଗମ୍ଭୀର ଭାବରେ ସ୍ଥିର ହୋଇ ବସି କହିଲେ, "ଏଁ, ବୋଇଲା, 'କଣ୍ଠାଶ୍ଳେଷପ୍ରଣୟିନିଜନେ କିଂ ପୁନର୍ଦୁରସଂସ୍ଥେ'— ବୋଇଲା କଣ୍ଠରେ ତ ଶ୍ଳେଷ୍ମା ଲାଗିଲେ ପ୍ରାଣ ଯାଏ, ସେ ପୁଣି ଦୂରକୁ ଚାଲିଗଲେ କଣ ହେବଟି ? ହେଲେ, ମୁଁ କି ଏମାନଙ୍କ ପରି ଅପାଠୁଆ କବିରାଜ ହୋଇଚି ? ଦେଖ, ମୁଁ ରୋଗକୁ କାନରେ ବାନ୍ଧିନେବି ।" କବିରାଜେ ଏହା କହି କାନରେ ଗଣ୍ଠିପକାଇଲେ ।

ମୁକୁନ୍ଦା ପଚାରିଲା, "ମଳୁର ଗୋଟାଏ ଗୋଟାଏ ଜାଗା ଫୁଲିଛି କିଆଁ ?" କବିରାଜେ—"ଏଁ, ବୋଇଲା, 'ସ୍ଵର୍ଣ୍ଣାଦଷ୍ଟଗୁଣଂ ଶୋଥଂ ।' ବୋଇଲେ ଶ୍ଳେଷ୍ମା ଦୋଷ ଗୁଣରୁ ଶୋଥ ହୁଏ । ହେଉ, ଭାବନା ନାହିଁ, କସ୍ତୁରୀ ପେଟରେ ପଡ଼ିଲେ ସବୁ ଛାଡ଼ିଯିବ । 'କସ୍ତୁରୀ ତିଲକଂ' ପେଟକୁ ଚାଲିଯିବ, ଆଉ ତିଲକ କରି ଦେବାକୁ ହେବ । କବିରାଜେ ମୁକୁନ୍ଦା ପାଖରୁ ନଗଦ ଚାରିଅଣା ପଇସା ନେଇ ଦେଢ଼ ମାତ୍ରେ କସ୍ତୁରୀ ବଟୁଆରୁ କାଢ଼ିଲେ । ଏଥିକୁ ଅନୁପାନ ଦରକାର । କବିରାଜେ ବୋଇଲେ, "ପାଠ କହିଲା, 'ମୁସ୍ତକଂ କଣ୍ଟକୀ ଚର୍ଚ୍ଚା, ଶୁଣ୍ଠି ପିପ୍ପଳି ମେବଚ' । ଏଁ, ବୋଇଲା, ଚାରରେ ଶୁଣ୍ଠି ପିପ୍ପଳି ବଚ ମୁଥ ମାରି କୁଟିବ ।" ମୁକୁନ୍ଦା ପଚାରିଲା, "କେତେ ଲେଖାଏଁ ଏ ସମସ୍ତ ପଦାର୍ଥ ଆସିବ ?" କବିରାଜେ— "ଏଁ—ବୋଇଲା, 'ଅନୁପାନ ବିଶେଷେଣ କରୋତି ବିବିଧାନ୍ ଗୁଣାନ୍ ।' ବୋଇଲା ଅନୁପାନ ବିଶେଷ କରି କି ଅଧିକ କରି ଦେଲେ ବିଧା ମାନେ ପରି ଗୁଣ ହେବ ।"

କବିରାଜେ ରୋଗର ବ୍ୟାଖ୍ୟା ଏବଂ ଔଷଧର ବ୍ୟବସ୍ଥା କରୁ କରୁ ରୋଗୀ ଅଥୟ ହୋଇ ପଡ଼ିଲେଣି, କ୍ରମଶଃ ନିଃଶ୍ଵାସ ବଳ ପଡ଼ୁଛି, ଦୁଇ ଆଖି କୋଣରୁ ଦୁଇ ଟୋପା ଜଳ ଗଡ଼ି ପଡ଼ିଲାଣି । ମଙ୍ଗରାଜେ ଗୁରିଦାନ ହୋଇ ପଡ଼ିଛନ୍ତି । ଏକଧ୍ୟାନରେ ଆକାଶକୁ ଚାହିଁ ପଡ଼ିଛନ୍ତି, କେତେବେଳେ ଟିକିଏ ଆଖି ଲାଗିଗଲେ ହାଉଳି ଖାଇଲା ପରି ଚମକି ପଡ଼ି କହନ୍ତି, "ଥ—ମା - ଆ—ଗୁଁ ।" ସ୍ଵର କ୍ଷୀଣ, କ୍ରମଶଃ କ୍ଷୀଣତର, କିଛି ବୁଝାଯାଉ ନାହିଁ । ତାଙ୍କୁ ଟିକିଏ ଘୁଇନିଦ ଲାଗିଲେ ଦେଖନ୍ତି ଆକାଶରେ ଏକ ଭୟଙ୍କରୀ ମୂର୍ତ୍ତି, ବିଶାଳ ମୁଣ୍ଡର ବାଳ ମୁକୁଳା, ମୂଳାପରି ବଡ଼ ବଡ଼ ଧଳା ଧଳା ଦାନ୍ତ, ଦୁଇ ତିନି ହାତ ଲମ୍ବ ଜିଭ ଲହ ଲହ କରି ତାଙ୍କୁ ଖାଇବାକୁ ଧାଇଁଛି । ମଙ୍ଗରାଜଙ୍କ ମନରେ ହୁଏ, ଚମ୍ପା ଧାଇରେ ଭଗିଆ ଚମ୍ପା ପିଣ୍ଡାରେ ଗୋଟିଏ ସ୍ତ୍ରୀ ନଟି ବୁଲୁଥିବାର ଦେଖିଥିଲେ । ସେହି ସ୍ତ୍ରୀମୂର୍ତ୍ତି ଭୟଙ୍କର ବିକଟାଳ ରୂପ ଧାରଣ କରି ଏହିପରି ବିକୃତ ଅବସ୍ଥାକୁ ପ୍ରାପ୍ତ ହୋଇଅଛି । ଏ ସେହି ମୂର୍ତ୍ତି ଯେମନ୍ତ ବଜ୍ରସ୍ଵରରେ କହୁଛି, "ମୋ ଛମାଣ ଆଠ ଗୁଣ୍ଠ ଜମି ଦେ ।" ମଙ୍ଗରାଜେ ହାଉଳି ଖାଇ କହନ୍ତି, "ଥ - ମା - ଆ - ଗୁଁ ।" ମଙ୍ଗରାଜଙ୍କର ଆଉ ଥରେ ଆଖି ଲାଗିଲା । ଦେଖିଲେ ଗୋଟାଏ ଭୟଙ୍କର ନର-କଙ୍କାଳ ଦିଗନ୍ତବଳରେ ଦେହ ଲମ୍ବାଇ ମୁଖବ୍ୟାଦାନ-ପୂର୍ବକ ତାଙ୍କୁ ଗ୍ରାସ କରିବା ନିମନ୍ତେ ଯେମନ୍ତେ ଏକ ଧ୍ୟାନରେ ମୀରବରେ ଚାହିଁ ରହିଅଛି । ତାଙ୍କୁ ଭଲ ଭାବରେ ଜଣାଗଲା ଯାହାର ଜମି ଛଡ଼ାଇ ନେବାରୁ ଅନାହାରରେ ଶୁଖି ଶୁଖି ପ୍ରାଣତ୍ୟାଗ କରିଥିଲା, ଏଇଟି ସେହି ମୂର୍ତ୍ତି । ଆଉ ଦେଖିଲେ, ଭଗିଆ ପରି ସହସ୍ର ସହସ୍ର ବାପ୍ଯୁ ଆକାଶମାର୍ଗସ୍ଥ ଘୋର କଳାମେଘ ମଧ୍ୟରୁ ବାହାରୁ-ଅଛନ୍ତି, ସମସ୍ତଙ୍କ ହସ୍ତରେ ଖଡ଼୍ଗ ଏବଂ ଲୁହାର ମୁଦ୍‌ଗର; ଏକାବେଳକେ ସମସ୍ତ ମୁଦ୍‌ଗର ତାଙ୍କ

ମୁଣ୍ଡରେ ପଡ଼ିଲା ପରି ଜଣାଗଲା । ମଙ୍ଗରାଜେ ଉଠି ଛୁଡ଼ି ପଳାଇବାକୁ ବାହାରିଛନ୍ତି, ଦେହରେ ଶକ୍ତି ନାହିଁ, ପାଟି ଫିଟୁ ନାହିଁ । ମଙ୍ଗରାଜେ ଅନାସ୍ତୃତ ହୋଇ ସେହି ଅନାଥଶରଣ ପତିତପାବନ ଭଗବାନଙ୍କ ପବିତ୍ର ନାମ ହୃଦୟ ମଧ୍ୟରେ ଚିନ୍ତା କରିବାକୁ ଲାଗିଲେ । ସେ ଦେଖିଲେ—ଅନନ୍ତ ଆକାଶରେ ସୂର୍ଯ୍ୟମଣ୍ଡଳର ଅତି ଊର୍ଦ୍ଧ୍ୱରେ ରତ୍ନସିଂହାସନରେ ଗୋଟିଏ ଜ୍ୟୋତିର୍ମୟୀ, ଶାନ୍ତିମୟୀ, ଆଶ୍ରାପ୍ରଦାୟିନୀ ସ୍ତ୍ରୀମୂର୍ତ୍ତି ବିରାଜିତା, ପୂର୍ବ ପୂର୍ବ ପୀଡ଼ା ସମୟରେ ସେ ମୂର୍ତ୍ତି ଶଯ୍ୟା ପାଖରେ ବସି ମଙ୍ଗରାଜଙ୍କ ଦେହରେ କୋମଳ ହସ୍ତ ବୁଲାଉଥିଲେ । ବିମାନବାସିନୀ ଲାବଣ୍ୟମୟୀ ମୂର୍ତ୍ତି ସେହି ମୂର୍ତ୍ତିର ପ୍ରତିଛାୟା ଅଟେ । ସେହି ମୂର୍ତ୍ତି ଅଙ୍ଗୁଳି ସଙ୍କେତ କରି ମଙ୍ଗରାଜଙ୍କୁ ପାଖକୁ ଡାକୁଛନ୍ତି । ମଙ୍ଗରାଜଙ୍କ ଆତ୍ମା ସେହି ମୂର୍ତ୍ତିକୁ ଲକ୍ଷ୍ୟକରି ଧାବିତ ହେଲା । ମଙ୍ଗରାଜଙ୍କ ଉଆସରେ ଚହଳ ପଡ଼ିଲା । ହରି ବୋଲ, ହରି ବୋଲ, ହରି ବୋଲ ।

---

## ନିର୍ଘଣ୍ଟ

**—୧—**

ପାରଣା—ବ୍ରତ ବା ଉପବାସ ପରେ ପ୍ରଥମଭୋଜନ ।

ଦଶୁ—ସାମାନ୍ୟ ପରିମାଣ ।

ନଉତି—ଶସ୍ୟ ମାପିବାର ପାତ୍ର ବିଶେଷ, ଗଉଣି । ବିଭିନ୍ନ ଅଞ୍ଚଳରେ ଭିନ୍ନ ଭିନ୍ନ ପରିମାଣରେ ନଉତି ବ୍ୟବହୃତ ହୁଏ ।

ପଲ—ଓଜନରେ ଚାରି ତୋଳା ପରିମାଣ ।

ରୂଢ଼—କ୍ଷୌର ହେବା ପରେ ମୁଣ୍ଡ ଓ ମୁହଁରେ ବଢ଼ିଥିବା କେଶମୂଳ ।

ହରିବାସର—ଏକାଦଶୀ ।

ଗୋଖୋଜ—ଗୋରୁ ଖୁରା, ସେହି ପରିମାଣ ବିସ୍ତୃତ (ଜମି) ।

ପଲାଣ୍ଡୁ—ପିଆଜ ।

ଗୁଞ୍ଜନ—ଗାଜର । ଗାଜର, ଗୁଞ୍ଜନ ଓ ନାଗର-ବର୍ଣ୍ଣକ ଏହି କେତୋଟି ଗାଜରର ନାମ (ଦ୍ରବ୍ୟଗୁଣ) ।

**—୨—**

ଶ୍ରଧ—ଅନ୍ତ୍ୟେଷ୍ଟିକ୍ରିୟାର ଶେଷରେ କର୍ତ୍ତବ୍ୟ କର୍ମ ଶୁଦ୍ଧିକ୍ରିୟା ।

ମଦଥୋଟ—ଭିନ୍ନ ଭିନ୍ନ ବ୍ୟକ୍ତିଠାରୁ ଆଦାୟ ହୋଇଥିବା ପରିମାଣର ସର୍ବମୋଟ ।

ଭରଣ—୮୦ ଗଉଣି ।

ବିଶ୍ୱା—ଗଉଣିର ୧୬ ଭାଗରୁ ଏକ ଭାଗ ।

କାଣି—ଏକ ବିଶ୍ୱାର ଚତୁର୍ଥାଂଶ ।

ପରଧ୍ମ—ଖଞ୍ଜା ।

ପାଞ୍ଚ ଶେଣିଆ—ଚାଳ ଘରର ଖୁଣ୍ଟ ଉପରେ ବା କାନ୍ଥ ଉପରେ ଲମ୍ବ ବାଗରେ ଦିଆ ଯାଇଥିବା ଲମ୍ବ କାଠକୁ ଶେଣି କହନ୍ତି । ଯେଉଁ ଘରର ଚାଳରେ ପାଞ୍ଚଟା ଶେଣି ଥାଏ, ତାହାକୁ ପାଞ୍ଚ ଶେଣିଆ କହନ୍ତି । ଏହି ଶେଣି ଉପରେ ରୁଅ ପଡ଼ି ଚାଳ ତିଆରି ହୁଏ ।

ଶେଣିପଟା—ଶେଣିଦେହରେ ଲଗା ଯାଇଥିବା ପଟା ।

ଭିତ୍ତି—କାନ୍ଥ ।

ବୁଟାଦାର—ଲୁଗାରେ ଛୁଞ୍ଚି ଫୋଡ଼ ସୂତାରେ ବା ଜରିରେ ତିଆରି ହୋଇଥିବା ଛୋଟ ଫୁଲ ବା ଗୋଲ ଗୋଲ ଟିପ ଚିହ୍ନକୁ ବୁଟା କହନ୍ତି । ଯେଉଁ ଲୁଗାରେ ବୁଟା ଦିଆ ଯାଇଥାଏ ତାହାକୁ ବୁଟାଦାର କହନ୍ତି ।

ପଘାର—କ୍ଷେତର ସୀମା, ହିଡ଼ ଉପରେ ଦିଆ ଯାଇଥିବା ବାଡ଼ ।

ସୁନାରଖାଇ ( ସୁନାରଖାଇ )—ହଳଦିଆ ରଙ୍ଗର ଏକଜାତୀୟ ବାଉଁଶ ।

ସୁନିଆ—ଓଡ଼ିଆ ସନର ଓ ପୁରୀ ରାଜାଙ୍କର ଅଙ୍କର ପରିବର୍ତ୍ତନ ଦିବସ; ଭାଦ୍ରବ ଶୁକ୍ଳ ଦ୍ୱାଦଶୀ । ସୁନାରେ ଅଙ୍କ କଟାଯିବାରୁ ସୁନିଆ ନାମ ହୋଇଛି ।

ଡାବ—ଡାଲକା ।

ବେଠି—ବିନା ବେତନରେ ବାଧ୍ୟତାମୂଳକ କାର୍ଯ୍ୟ ।

ପାଞ୍ଜିଆ ଯେ ହିସାବପତ୍ର ରଖେ ।

ସାଲତମାମି—କୌଣସି ବର୍ଷର ଶେଷ ହିସାବ ବା ବିବରଣ ।

—୩—

ନଅର—ରାଜା ବା ଜମିଦାରଙ୍କ ଘର ।

ବାଷଠି ଘର ଭଗ୍ନାଂଶର ସମଷ୍ଟି—ଅନେକଙ୍କର ଘର ଭାଙ୍ଗି, ଅନେକଙ୍କର ସର୍ବନାଶ କରି ଯାହା ତିଆରି ହୋଇଅଛି ।

ପଇଦା—ଉତ୍ପତ୍ତି ।

ବାଟି—୨୦ ଏକର ବା ମାଣ ପରିମାଣ (ଜମି) ।

ଚବିଶଦିସ୍ତି ପଦିକା— ଭୂମି ମାପିବାର ଯଷ୍ଟିକୁ ପଦିକା କହନ୍ତି । ଭିନ୍ନ ଭିନ୍ନ ମାପର ପଦିକା ଅଛି । ଯେଉଁ ପଦିକାର ପରିମାଣ ଚବିଶଦିସ୍ତି ତାହାକୁ ଚବିଶଦିସ୍ତି ପଦିକା କହନ୍ତି । ଦିସ୍ତି = ହାତମୁଠା ପରିମାଣ; ପ୍ରାୟ ୫ ଇଞ୍ଚ ବା ୬ ଆଙ୍ଗୁଳ । ୨୪ ଦିସ୍ତି = ୧୦ ଫୁଟ ୫ ଇଞ୍ଚ ୧ ଯବ ବା ପ୍ରାୟ ୭ ହାତ ।

ଲାଖରାଜ—ନିଷ୍କର ଜମି; ଯେଉଁ ଜମିରେ ରାଜସ୍ୱ ମାଫ କରାଯାଇଅଛି ।

ବାଜ୍ୟାପ୍ତି—ଯେଉଁ ଜମି ପୂର୍ବେ ନିଷ୍କର ଥିଲା; କିନ୍ତୁ ପରେ ସେଥିରେ ରାଜସ୍ୱ ଧାର୍ଯ୍ୟ ହୋଇଅଛି ।

ନିଷ୍ଟି ବାଜ୍ୟାପ୍ତି—ଯେଉଁ ଲାଖରାଜ ଜମିକୁ ଇଂରାଜ ଗବର୍ଣ୍ଣମେଣ୍ଟ ବାଜ୍ୟାପ୍ତି କରି ତହିଁ ଉପରେ ଅଧାଜମା ଧାର୍ଯ୍ୟ କରିଅଛନ୍ତି ।

ବ୍ରହ୍ମୋତ୍ତର—ରାଜାମାନେ ବ୍ରାହ୍ମଣମାନଙ୍କ ଭରଣ ପୋଷଣ ପାଇଁ ଯେଉଁ ଜମି ଦାନ କରିଥିଲେ ଏବଂ ଚିରକାଳ ପାଇଁ ଉକ୍ତ ଜମିମାନ ରାଜସ୍ୱ ଦାୟରୁ ମୁକ୍ତ କରି ଦିଆ ହୋଇଥିଲା ।

ଖରିଦା ବ୍ରହ୍ମୋତ୍ତର—ବ୍ରହ୍ମୋତ୍ତର ଜମିକୁ ଦାନ ଗ୍ରହୀତା ବା ତାଙ୍କର ଉତ୍ତରାଧିକାରୀ ଅନ୍ୟ ବ୍ୟକ୍ତିକୁ ବିକି କରିଦେଇଥିଲେ, ଖରିଦ୍ଦାର ସେ ଜମିକୁ ନିଷ୍କରରୂପେ ଭୋଗ କରିବାର ହକଦାର ନ ଥିବାରୁ ତା ଉପରେ କେଉଁ ସ୍ଥାନରେ ପୂରା ଜମା, କେଉଁସ୍ଥାନରେ ଅଧା ଜମା ଧାର୍ଯ୍ୟ ହୋଇଅଛି । ଏ ବୃତ୍ତିକୁ ଖରିଦା ବ୍ରହ୍ମୋତ୍ତର ବୋଲାଯାଏ ।

ହଳିଆ ହଳବାହିବା ଗୃହକର, କୃଷକ ।

ବ୍ରାହ୍ମ-ମୁହୂର୍ତ୍ତ— ସୂର୍ଯ୍ୟୋଦୟ ପୂର୍ବ ଘଣ୍ଟା; ଭୋର ।

ଭୁଆସୁଣୀ—ନବବଧୂ ।

ବାସିପାଇଟି— ଭୋରରୁ ଉଠି ଯେଉଁ ସବୁ ଗୃହକର୍ମ କରାଯାଏ ।

ନିର୍ଦ୍ଦଣ୍ଡ—ଯେଉଁ ବିହିରେ ଦ୍ରବ୍ୟମାନଙ୍କର ଗୁଣ ବର୍ଣ୍ଣିତ ହୋଇଥାଏ ।

—୪—

ଅୟଂନିଜଃ ଇତ୍ୟାଦି – ନୀଚମନାମାନେ ନିଜ ପର ମଧ୍ୟରେ ଭେଦ ଚିନ୍ତା କରନ୍ତି ।

ତଳ—ଛୁଆ ହେବାର ଉପଯୁକ୍ତ ଗଛଗଛ ।

ଜୁଆଳି—ଲଙ୍ଗଳ ଓ ଶଗଡ଼ର ଯେଉଁ ଦଣ୍ଡ ବଳଦଙ୍କ କାନ୍ଧରେ ରହେ ।

ଅଦ୍ୟ ଇତ୍ୟାଦି—ଆଜ ସକାଳୁ କଷ୍ଟଜନକ ଦୃଶ୍ୟ ଦେଖିଲିଣି, ପରେ କି ବିପଦ ହେବ କେ ଜାଣେ !

ଶୁକପକ୍ଷିଆ—ଶୁଆପକ୍ଷି ପରି ଶାଗୁଆ ବର୍ଣ୍ଣ ।

ଶୁଆପକ୍ଷିଆ ବୁଲି ଗଲାଣି ଶାଗୁଆ ବର୍ଣ୍ଣ ଧରିଲାଣି ।

ଓଳଗି—ନମସ୍କାର, ପ୍ରଣାମ ।

ନିଘଞ୍ଚ—ପରସ୍ପର ସଂଲଗ୍ନ ।

—୫—

ପରିବାରୀ—ଯେଉଁ ଦାସୀ ପରିବାରର ଜଣେ ବ୍ୟକ୍ତିରୂପେ ପରିଗଣିତ ହୋଇଅଛି ।

ଚଉପଟ—ଏକ ପ୍ରକାର ପଶା ଖେଳ ।

ଗହନ—ଗବାକ୍ଷ, ପଣ୍ୟଦ୍ରବ୍ୟର ବେଢ଼ା ।

ଲାଳୟେତ୍ ପଞ୍ଚବର୍ଷାଣି—ଜନ୍ମଠାରୁ ପାଞ୍ଚବର୍ଷପର୍ଯ୍ୟନ୍ତ ଶିଶୁକୁ ଲାଳନ ପାଳନ କରିବ ।

ଦଶବର୍ଷାଣି ତାଡ଼ୟେତ୍—ଆହୁରି ଦଶ ବର୍ଷ ଅର୍ଥାତ୍ ସେ ପନ୍ଦର ବର୍ଷ ବୟସ୍କ ହେବା ପର୍ଯ୍ୟନ୍ତ ତାହାକୁ ଶାସନ କରିବ ।

ପ୍ରାପ୍ତେ ତୁ ଇତ୍ୟାଦି—ପୁତ୍ର ଷୋଳ ବର୍ଷ ପ୍ରାପ୍ତ ହେଲେ ତାହାକୁ ମିତ୍ରବତ୍ ଆଚରଣ କରିବ ।

ଭାଟ—ସ୍ତୁତି ପାଠକ ।

—୬—

ହରକଳା—ନାନା ଅସତ୍ ବିଦ୍ୟାରେ ପାରଦର୍ଶୀ ।

ଖସଲତ୍—ମନ୍ଦ ଅଭ୍ୟାସ, ଦୁର୍ଗୁଣ ।

ଗେଲପ—ଡେଇଁ ଡେଇଁ ଦୌଡ଼ିବା ।

ଗୋହିରୀ—ଦୁଇ ପାଖରେ ଘର ବା ବାଡ଼ ଥିବା ସଂକୀର୍ଣ୍ଣ ପଥ ।

ମାଣିଆବନ୍ଧୀ—ବଡ଼ମ୍ବା ରାଜ୍ୟର ମାଣିଆବନ୍ଧ ନାମକ ସ୍ଥାନରେ ତନ୍ତୀମାନଙ୍କ ଦ୍ୱାରା ପ୍ରସ୍ତୁତ ହେଉଥିବା ରେଶମ ଧଡ଼ିଆ ଲୁଗା ବା ଶାଢ଼ୀ ।

ପଣତ କାନି—ସ୍ତ୍ରୀ ଲୋକମାନେ ପିନ୍ଧିଥିବା ଶାଢ଼ୀର ଶେଷଭାଗ ।

ମଙ୍ଗଳକୃତ୍ୟ—ବିବାହ ।

ବିଚରା—ଉପାୟାନ୍ତରହୀନ, ନିରାଶ୍ରୟ ।

ଇସ୍ତକ (କୌଣସି ବିଷୟ ବା ବ୍ୟକ୍ତି) ଠାରୁ ଆରମ୍ଭକରି, ଲଗାଏତ୍ ।

ନିତମ୍ବ—ପିଚ୍ଛ ।

ସାନୁ—ପର୍ବତର ଉପରିସ୍ଥ ସମତଳ ଭୂମି ।

ଅଥବା କୃତବାଗ୍ଦ୍ୱାରେ ଇତ୍ୟାଦି—ପୂର୍ବ ପଣ୍ଡିତ-ମାନେ ରଘୁବଂଶର ଯେଉଁ ଇତିହାସ ଲେଖିଯାଇ ଅଛନ୍ତି, ମୁଁ ତାହାର ସାହାଯ୍ୟ ନେଇ ସେହି ବଂଶର ଇତିହାସ ଲେଖିବି । ମଣିରେ କୌଣସି କଠିନ ଧାତୁଦ୍ୱାରା ଛିଦ୍ର ଖୋଦିତ ହେଲେ, ସୂତ୍ର ସେହି ଛିଦ୍ର ମଧ୍ୟ ଦେଇ ଯେପରି ସହଜରେ ଗଳିଯାଏ, ମୋର ଲେଖା ମଧ୍ୟ ସେହିପରି ସହଜ ସାଧ୍ୟ ହେବ ।

କୃତବାର୍ ଦ୍ୱାରେ—କାଳିଦାସଙ୍କର ପୂର୍ବବର୍ତ୍ତୀ ପଣ୍ଡିତମାନେ ରଘୁବଂଶର ଇତିହାସ ରୂପ ଯେଉଁ ବାକ୍ୟର ଦ୍ୱାର ରଚନା କରିଅଛନ୍ତି, କାଳିଦାସ ଏହି ଦ୍ୱାର ମଧ୍ୟଦେଇ ଗତି କରିବେ ।

ବାହାଡ଼ା—ଧାଡ଼ିରୁ ପୃଥକ୍ ହୋଇ ବାହାରି ଥିବା (ଦାନ୍ତ) ।

ଷାମା—ସରୁ, କ୍ଷୀଣ । ସ୍ତୋକ—ଅଳ୍ପ, କ୍ଷୁଦ୍ର ।

କଚ୍ଛେ—କଚ୍ଛମାରି ପିନ୍ଧିଥିବା । ପରିଧେୟ ବସ୍ତ୍ରର ପଶ୍ଚାଦ୍ ଭାଗକୁ କଚ୍ଛ କହନ୍ତି ।

ଥୋପଭିଡ଼ା ଜୂଡ଼ା—ଯେଉଁ ଜୂଡ଼ାରେ ଫୁଲହାର ବନ୍ଧା ହୋଇଥାଏ । ( ଥୋପ—ପୁଷ୍ପଗୁଚ୍ଛ । ଜୂଡ଼ା—ସ୍ତ୍ରୀ ଲୋକମାନଙ୍କର ଏକତ୍ରବନ୍ଧା ହୋଇଥିବା ମୁଣ୍ଡର କେଶ, ଖୋପା ) ।

କଙ୍କଣ—ହାତ ଖଡ଼ୁ ।

ଝୁଣ୍ଟିଆ—ସ୍ତ୍ରୀମାନେ ଗୋଡ଼ର ମଝି ଆଙ୍ଗୁଠିରେ ପିନ୍ଧିଥିବା ଝଣଝଣ ଶବ୍ଦକାରୀ ମୁଦି ।

ଦାଣ୍ଡ—ରାସ୍ତା, ବାଟ, ପଥ ।

ଗୃଣ୍ଡେ ଗୃଣ୍ଡେ—ଅନ୍ତର୍ଣିହିତ ।

ଥୋକେ—ଅଳ୍ପ କେତେକ ବ୍ୟକ୍ତି ।

ପଜ୍ଝଟି—ସଂସ୍କୃତ ଛନ୍ଦ ବିଶେଷ ।

-୭-

ପୁରୁଖା—ପ୍ରବୀଣ, ବୃଦ୍ଧ । ଆସ୍ଥାନ-- ପ୍ରତିମା ଆଦି ବସିବାର ସ୍ଥାନ ।

ଦେଉରୀ—ଗ୍ରାମ ଦେବତାଙ୍କ ପୂଜକ ।

ପାଗା—ପଶୁ ରହିବାର ମେଲା; ଭକ୍ତମାନେ ଗ୍ରାମଦେବୀଙ୍କୁ ଦେଇଥିବା ମାଟିଘୋଡ଼ା ରହିବାର ସ୍ଥାନ ।

ପୁହାଣିଘର--ରଜସ୍ୱଳା ବାଳିକାର ସ୍ୱାମୀ ସହିତ ପ୍ରଥମ ମିଳନ ରୂପ ଅନୁଷ୍ଠାନ ।

ନିର୍ମାଲ୍ୟ—ପୁରୀର ଜଗନ୍ନାଥ ବା ଭୁବନେଶ୍ୱରର ଲିଙ୍ଗରାଜ ମହାପ୍ରଭୁଙ୍କ ମହାପ୍ରସାଦ ଅନ୍ନକୁ ଶୁଖାଇ କରି ରଖାଯିବା ପ୍ରସାଦ ।

[ ଦେବତାଙ୍କୁ ଅର୍ପିତ ବସ୍ତୁ ବିସର୍ଜନ ପୂର୍ବରୁ ନୈବେଦ୍ୟ ଓ ବିସର୍ଜନ ପରେ ନିର୍ମାଲ୍ୟ ହୁଏ ]

ଭେଦା—ଗୃନ୍ଥା । ପଣ୍ଡା—ଅଣ୍ଡିରା ମଇଷି ।

ଚାଟି—ବାଉଁଶ ଓ ତାଳପତ୍ରରେ ତିଆରି ହୋଇଥିବା କବାଟ ।

-୮-

ମେହେରବାନ—ଦୟା, ଅନୁଗ୍ରହ । ଓରଫ—ଅନ୍ୟ ନାମ ।

ଗଫଲତ୍ତି—ଅବହେଳା । ଆଖୁନ—ପାରସୀ ଓ ଆରବୀ ଭାଷାର ଶିକ୍ଷକ ।

ତାଗ—ସରୁ ସୂତା, ଡୋର ।

ତୋବା ତୋବା—ହାୟ ହାୟ, ଛି ଛି, ରାମ୍ ରାମ୍ । କୌଣସି ଅପବିତ୍ର ବସ୍ତୁ ଦେଖିଲେ ବା କଲେ ମୁସଲମାନ୍‌ମାନେ ଘୃଣା ବା ଅନୁତାପସୂଚକ ଏହି ବାକ୍ୟ ଉଚ୍ଚାରଣ କରିଥାନ୍ତି ।

ବିସମିଲ୍ଲା—ଆଲ୍ଲା ବା ଈଶ୍ୱରଙ୍କ ନାମ ସ୍ମରଣ ।

ଇଲମ ହାସଲ କରିବା—କୌଣସି ବିଦ୍ୟାକୁ ଆୟତ୍ତ କରିବା ।

ଇମ୍ତାନ୍—ପରୀକ୍ଷା । ଲଡ଼କା—ପୁତ୍ର ।

ବିଚ୍‌ମେ—ମଧ୍ୟରେ । ଫୌତ—ମୃତ ।

କିନଖାପ୍—ଜରି ବା ସୂତା ଦ୍ୱାରା ଖଚିତ ପାଟଲୁଗା ।

ସାଟିନ—ରେଶମ ନିର୍ମିତ ମୋଟା ଓ ଚିକ୍‌କଣ ଲୁଗା ।

ସର୍‌ପୋଷ—ଢାଙ୍କୁଣି ।

ବଦନା--ମୁସଲମାନଙ୍କ ବ୍ୟବହୃତ ଗଡ଼ୁ ବା ନଳଯୁକ୍ତ ପାନପାତ୍ର ।

ବାଇଜ ହାଣ୍ଡି—(ବାହ୍ୟ ଶବ୍ଦଜ) —ଅଶୌଚ୍ଚରେ ଯେଉଁ ପାକପାତ୍ରମାନ ବର୍ଜିତ ହୋଇ ଫୋପଡ଼ା ଯାଏ ।

ଖିଜମତ୍‌ଦାର—ଭୃତ୍ୟ, ସେବକ ।

ବନ୍ଦେନର୍ଓ୍ୱାଜ—ଏ ଦାସର ଶରଣଦାତା ବା ରକ୍ଷକ ।

ତମସୁକ—ଖାତକର ମହାଜନକୁ ଲେଖିଦେବା ଋଣ ଗ୍ରହଣର ନିଦର୍ଶନ ପତ୍ର ।

କାଲ—ଦୋକାନୀଠାରୁ ଉଧାରି କରି ସଉଦା କିଣିବା ।

କମ୍ ବକ୍ତ—ହତଭାଗ୍ୟ । ନାଲ୍‌ଏକ୍—ଅଯୋଗ୍ୟ ।

ମୋସାହେବ—ଆମୋଦପ୍ରିୟ ସଙ୍ଗୀ ବା ସହଚର ।

ଓଆଜିବ୍– ନ୍ୟାୟସଙ୍ଗତ, ଉଚିତ ।

ଆସବାବ—ଚଳନ୍ତି ଜିନିସପତ୍ର ।

ବେକ୍‌ସନ୍ଦ—ବିବାକ ।

ଖେମଟାବାଲି—ଖେମଟା ଗାଇବା ଓ ନାଚିବା ନର୍ତ୍ତକୀ । [ ଖେମଟା—ସଙ୍ଗୀତର ତାଳ ବିଶେଷ ]

ଇଲ୍‌ମଦାର—ବିଦ୍ୱାନ, ପଣ୍ଡିତ ।

ଅଉଲ ନମ୍ବର—ପ୍ରଥମ ଶ୍ରେଣୀର, ସର୍ବୋତ୍କୃଷ୍ଟ ।

କସରତ୍ - କୌଣସି ବିଦ୍ୟାର ପରିଶୀଳନ ।

ହଦ୍—ଚୂଡ଼ାନ୍ତ । ମୁସାଫେରି—ଭ୍ରମଣ । ରଦାରଦ୍—ଅଗ୍ରାହ୍ୟ କରିବା ।

କେରାମତ—ଶକ୍ତି, ସାମର୍ଥ୍ୟ ।

ନେକନାମି—ସୁନାମ, ସୁଖ୍ୟାତି ।

ଜାହେର—ପ୍ରସ୍ଫୁରିତ । ଜନ୍‌ଦଗ୍ - ଜୀବିତକାଳ ।

ଇଆଦ—ସ୍ମରଣ । ମୁଲ୍‌କାତ୍—ଦେଖାସାକ୍ଷାତ୍ ।

କଦରଦାନ—ଗୁଣଗ୍ରାହୀ ।

ବନ୍ତଳ କଦଳୀ—କଞ୍ଚାରେ ତରକାରି ହୋଇ ଖିଆଯିବା କୌଣବିଶିଷ୍ଟ ଏକପ୍ରକାର କଦଳୀ ।

କାଠିଆ କଦଳୀ—ପାଚିଲେ ଖିଆଯିବା ଏକପ୍ରକାର କଦଳୀ ।

କାଣ୍ଡିଆ—ପକ୍ଷୀଙ୍କୁ ନଳଦ୍ୱାରା ଧରିବା ପାଇଁ ବ୍ୟବହୃତ ଅଠାଯୁକ୍ତ କାଠି ।

ବେଳ ଉଣ୍ଡି—ସୁବିଧାଜନକ ସମୟ ବା ସୁଯୋଗ ଅନ୍ୱେଷଣ କରି ।

ଇନାମ୍—ପୁରସ୍କାର ।

ବିଆଜ—ଋଣ ଲଗିବା ଟଙ୍କାର ସୁଧ ।

ହାରାମ୍—କୋରାନ ନିଷିଦ୍ଧ ଖାଦ୍ୟ ବା କର୍ମ ।

ବୟାନ—ବର୍ଣ୍ଣନ ।

–୯–

ଫାଉ ଫାଉରାତ—ଉପରି ଲାଭ ।

ଦଶମୂଳ—ଜ୍ୱର, କାଶ ଓ ଶ୍ୱାସନାଶକ ପାଚନାର୍ଥ ବ୍ୟବହୃତ ଆୟୁର୍ବେଦୋକ୍ତ ଦଶଗୋଟି ଗଛର ମୂଳ, ଯଥା—ବେଲ, ଗମ୍ଭାରି, ଫଣଫଣା, ଅଗିବଥୁ, ପାଟେଲି, ଶାଲପର୍ଣ୍ଣୀ, ବୃହତୀ, ଅଙ୍କରାନ୍ତି ଓ ଗୋଖରା ।

ନାଁଉଆରସୀ– ଯେଉଁ ସମ୍ପତ୍ତିର କେହି ଦାବିଦାର ନାହିଁ ।

କଲାନ୍ତର - ସୁଧ । ଜେଜେ—ପିତାମହ ।

ଖଟୁଲି—ଶାଳଗ୍ରାମ ଆଦି ଦେବତା ଓ ଭାଗବତ ଗ୍ରନ୍ଥ ଆଦି ରଖିବାର କ୍ଷୁଦ୍ର କାଷ୍ଠ ସନ ।

ପାଞ୍ଚ ବର୍ଗ ଅଭିଧାନ—ଅମରକୋଷ ଅଭିଧାନର ପାଞ୍ଚ ଅଧ୍ୟାୟ ।

ଜାରି—ପ୍ରଚଳିତ, କାର୍ଯ୍ୟରେ ପରିଣତ ।

ହିଞ୍ଜଲ—ନପୁଂସକ ।

ନିପାତନ ସିଦ୍ଧ—ବ୍ୟାକରଣର ସାଧାରଣ ନିୟମ ଦ୍ୱାରା ଯାହା ନିଷ୍ପନ୍ନ ହୁଏ ନାହିଁ ।

ଲୁଣ୍ଡି—ତଲିର ମଣ୍ଡିଦିଆ ସୂତା ।

ତାଗୀ—ଡୋରି, ସରୁ ସୂତା । ।

ତାପଣ—ଲୁଗା ବୁଣିବା ପୂର୍ବରୁ ଟାଣୀ ସୂତାକୁ ମଣ୍ଡଦେଇ ମାଜିବା ।

ନଳ—ଯେଉଁ କାଠିରେ ତନ୍ତୀମାନେ ସୂତା ଗୁଡ଼ାଇ ରଖନ୍ତି ।

-୧୦-

ଜାତିଆଣ—ଜାତି ସମାଜ ସମ୍ବନ୍ଧୀୟ ।

ଜେଜେବାପ - ପିତାମହ, ଗୋସାଇଁ ବାପା ।

ପରମାଣିକ (ପ୍ରାମାଣିକ) — ଗ୍ରାମର ପ୍ରଧାନ ବ୍ୟକ୍ତି ।

ଫିକର — ଉପାୟ, କୌଶଳ ।

ହରବର — ବିପଦଅନିଷ୍ଟ ।

ହୁଣ୍ଡା — ମୂର୍ଖ, ନିର୍ବୋଧ ।

ଯୋଗରୂଢ଼ ଶବ୍ଦ - ଯେଉଁ ଶବ୍ଦର ପ୍ରକୃତିପ୍ରତ୍ୟୟ ଅନୁସାରେ ହେଉଥିବା ଅର୍ଥ ଅନେକଗୁଡ଼ିଏ ବସ୍ତୁକୁ ବୁଝାଏ; କିନ୍ତୁ ବ୍ୟବହାରରେ ତନ୍ମଧ୍ୟରୁ ଗୋଟିଏ ବିଶିଷ୍ଟ ବସ୍ତୁକୁ ବୁଝାଏ ।

ଖଞ୍ଜ ଅଖଞ୍ଜ—ସୁବିଧା ଅସୁବିଧା ।

ପୂଜାହାରୀ—ରନ୍ଧୁଣିଆ ବ୍ରାହ୍ମଣ ।

ଗୁଆ ଦେବା—ଗୁଆ ଦେଇ ବନ୍ଧୁ ବାନ୍ଧବଙ୍କୁ ବିବାହାଦି ଅନୁଷ୍ଠାନକୁ ନିମନ୍ତ୍ରଣ କରିବା ।

ସଙ୍କୁଳିବା—ପ୍ରଗାଢ଼ ସ୍ନେହର ସହିତ ନିମନ୍ତ୍ରଣ କରିବା ।

ଶମ—ଇନ୍ଦ୍ରିୟ ନିଗ୍ରହ, ରିପୁ-ଦମନ ।

ଦମ—ଆତ୍ମସଂଯମ ।

ତପଃ - ଧ୍ୟାନ, ବ୍ରତାଚରଣ ।

ଶୌଚ - ଶୁଦ୍ଧି, ନିର୍ମଳତା ।

ସନ୍ତୋଷ—ତୃପ୍ତି । କ୍ଷାନ୍ତି—କ୍ଷମା ।

ଆର୍ଜବ—ସାଧୁତା, ସରଳତା ।

ବ୍ରହ୍ମ ପ୍ରକୃତି—ବ୍ରାହ୍ମଣୋଚିତ ସ୍ୱଭାବ ।

ତାମ୍ବଡ଼ା-ଶୁକୁଆ—ବଡ଼ ଚୂନ୍ଦ୍ରଡ଼ ଶୁକୁଆ ।

ସି-ଅକ୍ଷର ବିବର୍ଜିତ ଯାହାର ବିଦ୍ୟାରମ୍ଭ ହୋଇ ନାହିଁ, ଗଜମୂର୍ଖ, ନିରକ୍ଷର [ସି-ଅକ୍ଷର ସି-ଅକ୍ଷର 'ସିଦ୍ଧିରସ୍ତୁ'ର ପ୍ରଥମ ଅକ୍ଷର 'ସି' । ସିଦ୍ଧିରସ୍ତୁ = ବିଦ୍ୟା ସିଦ୍ଧି ହେଉ । ଶିଶୁର ପ୍ରଥମେ ବିଦ୍ୟାରମ୍ଭ ବେଳେ ଗୁରୁ ଭୂମିରେ ଖଡ଼ିଦ୍ୱାରା 'ସିଦ୍ଧିରସ୍ତୁ' ଲେଖି ଶିଶୁଙ୍କ ହାତ ଧରି, 'ସିଦ୍ଧିରସ୍ତୁ' ଉଚ୍ଚାରଣ କରି ତାହା ଉପରେ ଶିଶୁର ହାତକୁ ଘୂରାଇ କରନ୍ତି । ଏଥିପାଇଁ 'ସି-ଅକ୍ଷର'ର ଅର୍ଥ- ଶିଶୁର ବିଦ୍ୟାରମ୍ଭ । ]

ସନ୍ଧ୍ୟା —ଯେଉଁ ବେଳାରେ ଭଗବାନଙ୍କୁ ସମ୍ୟକ୍- ରୂପେ ଧ୍ୟାନ କରାଯାଏ, ସନ୍ଧ୍ୟା ସମୟରେ କର୍ତ୍ତବ୍ୟ ଉପାସନାଦି ।

ଗାୟତ୍ରୀ—ପ୍ରସିଦ୍ଧ ବୈଦିକ ମନ୍ତ୍ର ବା ସ୍ତବ ବିଶେଷ । ["ଓଁ ଭୂର୍ଭୁବଃ ସ୍ୱଃ ତତ୍ ସବିତୁର୍ବରେଣ୍ୟଂ ଭର୍ଗୋଦେବସ୍ୟ ଧୀମହି ଧିୟୋ ଯୋନଃ ପ୍ରଚୋଦୟାତ୍" ବ୍ରାହ୍ମଣ ଏହି ମନ୍ତ୍ରଦ୍ୱାରା ପ୍ରତିଦିନ ସକାଳେ, ସନ୍ଧ୍ୟାରେ ଓ ମଧ୍ୟାହ୍ନରେ (ତ୍ରିସନ୍ଧ୍ୟାରେ) ଉପାସନା କରନ୍ତି । ]

ଡୋର—ମସୃଣ ଓ ଦୃଢ଼ ସୂତ୍ର ।

ଯଜମାନ—ଯେଉଁ ବ୍ୟକ୍ତି ପୁରୋହିତଙ୍କୁ ନିଯୁକ୍ତ କରି ତାଙ୍କଦ୍ୱାରା ଯାଗକ୍ରିୟା କରାନ୍ତି ।

ତ୍ରିପାଠୀ—ଯେ ତିନିବେଦ ପାଠ କରିଅଛି, ବ୍ରାହ୍ମଣମାନଙ୍କ ଉପାଧି ବିଶେଷ ।

ଔରସଜାତ-ଜାତ—ଧର୍ମପତ୍ନୀଙ୍କ ଗର୍ଭରୁ ଜାତ, ( Lawfully begotten । )

ତିମିର—ନେତ୍ର ରୋଗ ।

ଅଞ୍ଜନ ଚକ୍ଷୁରଞ୍ଜନାର୍ଥ ବ୍ୟବହୃତ ଲେପ, କଜ୍ଜଳ ।

ଶଳାକା — ଆଖିରେ ସୁରମା ଲଗାଇବା କାଠି ।

ଅଜ୍ଞାନ ତିମିରାନ୍ଧସ୍ୟ···ଇତ୍ୟାଦି—ଅଜ୍ଞାନରୂପ ନେତ୍ରରୋଗରେ ଅନ୍ଧ ହୋଇଥିବା ଲୋକର ଚକ୍ଷୁ ଜ୍ଞାନରୂପ ଅଞ୍ଜନକାଠିରେ ଯାହାଙ୍କ ଦ୍ୱାରା ଉନ୍ମୀଳିତ [ଖୋଲା] ହୁଏ, ସେହି ଗୁରୁଙ୍କୁ ନମସ୍କାର ।

ଚକ୍ଷୁ ଉନ୍ମୀଳିତ ହେବା– ଦୃଷ୍ଟିଶକ୍ତି ଫେରିପାଇବା ।

କୁହୁଡ଼ି ପହଁରା – ଯେ ଅସାଧ୍ୟ ସାଧନ ପାଇଁ ଚେଷ୍ଟା କରେ ।

ହୁଣ୍ଡା—ଓଲୁ, ନିର୍ବୋଧ । ପଟାନ୍ତର—ଉପମା ।

ଫଲଣା—ଅମୁକ ।

କଚରା—ଛୁଣ୍ଡା ମସିଣା ।

ନକଡ଼ି ଛକଡ଼ି—ଗୋଳମାଳ, ଅଡୁଆ ।

ମସ୍କରା—ମସ୍କରିଆ ଅଳିଲ, ପରିହାସକ ।

ବଗଲା—ବଗ ।

ଲୁଙ୍ଗ୍ ଲୁଙ୍ଗ୍ ହେବା [ ଲୁଙ୍ଗ୍ ପୁଙ୍ଗ୍ ହେବା ]—କୌଣସି ବ୍ୟକ୍ତିର ପଛେ ପଛେ ରହି ସେ ବ୍ୟକ୍ତି ଯେଉଁଆଡ଼େ ଯାଉଥାଏ, ତାହା ପଛେ ପଛେ ଯିବା; ଅନୁସରଣ କରିବା ।

ଛଡ଼ା—ମାଈ ବାଛୁରି, ଅପ୍ରସୂତା ଧେନୁ ।

ପଘା—ଗୋମେଷାଦି ବାନ୍ଧିବା ରଜ୍ଜୁ ।

ଶ୍ରୀଘର—ଧନୀ ଲୋକର ଘର ।

ଝାମ୍ପର—( ବଙ୍ଗଳା—ଝାଙ୍କଡ଼ା ) ବୁଦା ସଦୃଶ ଛୋଟ ବନ୍ଧ ଘନସନ୍ନିବିଷ୍ଟ ଓ ନାତିଦୀର୍ଘ ।

ଚଅଁର—ଚମରୀ ଗାଈର ଲାଙ୍ଗୁଳର ଲମ୍ବ ଲୋମଗୁଚ୍ଛ ଏକତ୍ର ମୂଳରେ ବନ୍ଧାଯାଇ ତିଆରି ହୋଇଥିବା ଚାମର ।

ଟେଣ୍ଡା ବାଳ—ସ୍ଥୂଳ କେଶଗୁଚ୍ଛ ।

ନୁଆଣ—ଛୋଟ ନଡ଼ା ।

ହାକୁଡ଼—ଷଣ୍ଢ ଆଦିଙ୍କର କାନ୍ଧ ଉପରେ ବାହାରିଥିବା ମାଂସପିଣ୍ଡ ।

ପହ୍ନା—ଗୋରୁ ପ୍ରଭୃତିଙ୍କ ସ୍ତନ ।

କଳଙ୍ଗା ଗାଈ—ଦାକ୍ଷିଣାତ୍ୟରୁ ଆନୀତ ଏକପ୍ରକାର ବଡ଼ ଗାଈ ।

ଠେକ—ମାଟିର ଘଡ଼ି ।

ଥୋବଣି ?( ଥୋମଣି )—ପଶୁମାନଙ୍କର ମୁହଁ ଓ ନାକର ଅଗ ।

ପନାସି—ଏକପ୍ରକାର ଘାସ ।

ବାପୁଡ଼ା—ନଗଣ୍ୟ ବ୍ୟକ୍ତି ।

ସେରନ୍ଦା—ପ୍ରଧାନ ।

ବେରଙ୍ଗ ଚିଠି—ଯେଉଁ ଚିଠିର ଡାକମାସୁଲ ପତ୍ରଗ୍ରହୀତାଠାରୁ ଆଦାୟ ହୁଏ ।

ପଠାଇ ଦେବା—ବନ୍ଦି କରି ଦେବା ।

ଗାଁ ଧୋଉରୀ—ଗ୍ରାମର ଧୋଇ (ପାଣି) ।

ପଧାନ—ଗ୍ରାମର ରାଜସ୍ୱ ଅସୁଲକାରୀ କର୍ମଚାରୀ ।

ହଳ—ଭୂମିକର୍ଷଣ ଯନ୍ତ୍ର, ଲଙ୍ଗଳ ।

କଳାନ୍ଦ—ଉର୍ବର । ମରୁଡ଼ି—ଅନାବୃଷ୍ଟି ।

ବଖରା—କୃଷିକାର୍ଯ୍ୟରେ ଦୁଇ ଜଣଙ୍କ ମଧ୍ୟରେ ଭାଗ କରି ଫଳ ବାଣ୍ଟିନେବା ।

ଭାଟ—ପୂର୍ବେ ଭାଟମାନେ ରାଜାମାନଙ୍କ ନିକଟରେ ପ୍ରତ୍ୟହ ସ୍ତୁତିପାଠ କରି ଚଳୁଥିଲେ । ଏହି ପ୍ରାଚୀନ ପ୍ରଥା ଲୁପ୍ତ ହେବାରୁ ଏବେ ଭାଟମାନେ ଦ୍ୱାରେ ଦ୍ୱାରେ କବିତା ବୋଲି ଭିକ୍ଷା କରି ପେଟ ପୋଷନ୍ତି ।

ପ୍ରାୟେଣ ସାମଗ୍ର୍ୟବିଧୌ ଗୁଣାନାଂ ପରାଙ୍ମୁଖୀ ବିଶ୍ୱସୃଜଃ ପ୍ରବୃତ୍ତିଃ—ଈଶ୍ୱର କାହାରିକୁ ସବୁ ଗୁଣରେ ପରିପୂର୍ଣ୍ଣ କରି ସୃଷ୍ଟି କରିବାକୁ ଇଚ୍ଛା କରନ୍ତି ନାହିଁ ।

ବାଗୁଆ—ବ୍ୟାଧ ।

ଷଠିଘର—ଶିଶୁର ଜନ୍ମର ଷଷ୍ଠଦିନରେ ଅନୁଷ୍ଠିତ ଉତ୍ସବ ।

ବାରବରତ—ଭିନ୍ନ ଭିନ୍ନ ବାରରେ ଯଥା:-ରବି, ସୋମ, ଇତ୍ୟାଦି ) ହୋଇଥିବା ଭିନ୍ନ ଭିନ୍ନ ପୂଜା ଓ ଉପବାସ ।

ଜିଆଁସ—ଅମାବାସ୍ୟା ।

କସ୍ତା—ରଙ୍ଗିନ୍ ବା ଲାଲ୍ ସୂତାର ଲୁଗା ।

ଯୋଡ଼—ଜୋଡ଼; ଏକତ୍ର ବ୍ୟବହୃତ ଧୋତି ଚଦର ।

-୧୧-

କଦମ—ଚାଲିଲାବେଳେ ଦୁଇ ଗୋଡ଼ ମଧ୍ୟରେ ଥିବା ଅନ୍ତର ।

ସିବାଏ—ଛଡ଼ା, ବ୍ୟତୀତ ।

ହଲା—କ୍ଷେତରୁ କଟା ହୋଇଥିବା ଧାନଗଛମାନଙ୍କର ବିଡ଼ା ।

ମଜକୁର—ପୂର୍ବୋକ୍ତ । ଲାଞ୍ଚ—ଘୁଷ୍, ରିସ୍ୱତ୍ ।

ରୋସମ—ରାଜା ବା ଜମିଦାରଙ୍କୁ ଦିଆଯିବା ଶୁଳ୍କ ବା ଫିସ୍ ।

ଭତଆ—ଦରମା, ଖୋରାକ ।

ରିସ୍ୱତ୍—ଉତ୍କୋଚ, ଘୁଷ୍ ।

ସୁବାମତ—ସାଧାରଣ ।

ସଲ୍ଲା—ପରାମର୍ଶ, ଷଡ଼୍ଯନ୍ତ୍ର ।

ରାହାଜାନି (ରାହାଜାନି)—ରାଜପଥରେ ଦସ୍ୟୁବୃତ୍ତି ।

-୧୨-

ନଳ ଦେଲେ—ନଳଦ୍ୱାରା ମାପିଲେ । (ନଳ—ଜମି ମାପିବାର ଦଣ୍ଡ, ପଦିକା । ଭିନ୍ନ ଭିନ୍ନ ଅଞ୍ଚଳରେ ଭିନ୍ନ ଭିନ୍ନ ଲମ୍ବର ନଳ ବା ପଦିକା ବ୍ୟବହୃତ ହୁଏ ।)

ମେପଦଣ୍ଡି—ଗୋଟଙ୍ଗର ମଧ୍ୟସ୍ଥଳରେ ପୋତାଯିବା ଖୁଣ୍ଟ ।

ବଳଆରରୁ—ପ୍ରଭାବରୁ ।

ସଠିକ—ଠିକ, ନିର୍ଭୁଲ ।

ବାରୁଣୀ—ଗଙ୍ଗା ଓ ସମୁଦ୍ରରେ ସ୍ନାନ କରିବାର ପ୍ରଶସ୍ତ ଯୋଗ ।

[ ଚୈତ୍ର କୃଷ୍ଣ ତ୍ରୟୋଦଶୀ ଦିନ ଗଙ୍ଗାରେ ଓ ସମୁଦ୍ରରେ ପ୍ରଶସ୍ତ ସ୍ନାନଯୋଗ ଘଟେ । ]

ଟେଣ୍ଡି ଆସିବା—ଟେଣ୍ଡାଦ୍ୱାରା ପାଣି ଢାଳିଲେ ଜଳ ଯେପରି କ୍ଷେତ୍ର ମଧ୍ୟକୁ ମାଡ଼ିଆସେ, ସେହିପରି ମାଡ଼ି ଆସିବା ।

ଥଣ୍ଟିଆ—ବଡ଼ ଥଣ୍ଟବିଶିଷ୍ଟ ।

କାଦୁଅଖୁମ୍ପି—ଏ ପକ୍ଷୀ କାଦୁଅ ଅଞ୍ଚଳ କାଦୁଅରୁ ପୋକ ଧରି ଖାଏ ।

ଗୋଟିପୁଅ—ସଙ୍ଗୀତ ଦଳର ନାଚୁଆ ପିଲା ।

ହୁରମତ—ଇଜ୍ଜତ, ସମ୍ଭ୍ରମ ।

ରୁଜୁ କରିବା—ଉପସ୍ଥାପିତ କରିବା ।

କାଣ୍ଠିବଗ—ଧୂସରବର୍ଣ୍ଣ ବକପକ୍ଷୀ ।

ପାଣିକାଉ—ଜଳଚର କାକ ।

ଭୁଠ—ଗାଧୁଆ ପାଧୁଆ କରିବାର ଘାଟ ।

ଦଶାହକିଯ୍ବା—ମୃତ ବ୍ୟକ୍ତିର ପ୍ରେତ ଉଦ୍ଦେଶ୍ୟରେ ଦଶମ ଦିନ କରାଯିବା କ୍ରିୟା ।

ବ୍ରହ୍ମଦୈତ୍ୟ—ପ୍ରେତଯୋନି ପ୍ରାପ୍ତ ଅବିବାହିତ ବ୍ରାହ୍ମଣ; ବ୍ରହ୍ମରାକ୍ଷସ ।

ପିଚାଶୁଣୀ—ସ୍ତ୍ରୀଭୂତ । ଡାକୁଣୀ—ଡାହାଣୀ ।

ବସଣୀ—ନାକର ଅଳଙ୍କାର ବିଶେଷ ।

ବାହୁବଳା—ବାହୁଖଡ଼ୁ; ଇତରଜାତୀୟା ସ୍ତ୍ରୀମାନେ ବାହୁରେ ପିନ୍ଧିବା କଂସା ବା ପିତଳର ଚୂଡ଼ି ।

ଦାନ୍ତ ନସିଡ଼—ଦାନ୍ତ ଦେଖାଇ, ଓଷ୍ଠ ଦୟକୁ ବିସ୍ତାର କର ।

ଜବାବଦେହୀ—ଦାୟୀ ।

ବୋଡ଼ି—ପାଞ୍ଚ ଗଣ୍ଡା ବା ୨୦ ଗୋଟା ।

ପଣ—କୋଡ଼ିଏ ଗଣ୍ଡା ବା ୮୦ ଗୋଟା ।

ତୋରଣି ପକା—ପଖାଳରୁ ଭାତତକ କାଢ଼ିନେଲେ ଯେଉଁ ଅବଶିଷ୍ଟ ଜଳୀୟ ଅଂଶ ରହେ ତାକୁ ତୋରଣି କହନ୍ତି । ଗାମ୍ଭୀରକୁ ଚରୁଇବା ପାଇଁ ତୋରଣିରେ ପକାନ୍ତି ।

ଦୋହଡ଼ା—ଦ୍ୱିତୀୟ ଥର ହଳ କରିବା ।

ଅଖିମୁଠି—ଅକ୍ଷୟ ତୃତୀୟା ଦିନ କୃଷକ ଧାନବୁଣା ଅନୁକୂଳ କରି ଯେଉଁ ବିହନକୁ ପ୍ରଥମେ ହାତମୁଠାରେ ଧରି କିଆରିରେ ବୁଣେ ।

କସରା—ଧଳା ଓ ନାଲି ମିଶ୍ରିତ ରଙ୍ଗ; ମାଟିଆ ।

ଶ୍ରବଣା—ଶ୍ରବଣା ନକ୍ଷତ୍ର ( ଶ୍ରାବଣ ମାସର ପୂର୍ଣ୍ଣିମା ଏହି ନକ୍ଷତ୍ରଯୁକ୍ତ ତିଥି ଅଟେ )

ନାହାକ—ଜ୍ୟୋତିଷ ଶାସ୍ତ୍ର ଚର୍ଚ୍ଚାକାରୀ ବ୍ୟକ୍ତି ।

ଲଗାଣ—ବହୁଦିନ ବ୍ୟାପୀ ଝଡ଼ ଓ ବୃଷ୍ଟି ।

–୧୩–

ଥାକୁଲ ଥୁକୁଲ—ଛନ୍ଦକାପି ।

ଗୋଏନ୍ଦା—ଗୁପ୍ତଚର ।

ସଙ୍କୁନ—ସଙ୍କେତ ।

ନାକବସଣୀ—ନାକଚଣା, ନାକର ଅଳଙ୍କାର ବିଶେଷ ।

ଭୂତ—ପ୍ରାଣୀ, ଜୀବ, ଜନ୍ତୁ । ଲଗା—ଜାମୀନ ।

ବଲ ବଲ କରି ଚାହିଁବା—ଓଲୁ ପରି ନିର୍ନିମେଷ ନୟନରେ ଚାହିଁବା ।

ବାଞ୍ଝ—ବନ୍ଧ୍ୟା ( ସ୍ତ୍ରୀ ) ।

ବରଡ଼—ଯେଉଁ ସ୍ତ୍ରୀର ସନ୍ତାନ ହୋଇ ନାହିଁ ।

ନିଉଛୁଣୀ—ହୀନ, ଘୃଣ୍ୟ ।

ମାହାଲିଆ—ଅକାରଣ, ବୃଥା ।

ଗାଦି—ପୋଥି ଆଦି ଏକତ୍ର ରଖାଯିବା ସ୍ଥାନ, ଭାଗବତ ଗାଦି ।

ଧଣ୍ଡା—ଦେବତାଙ୍କ ଛଡ଼ାମାଳ, ଯେଉଁ ପୁଷ୍ପମାଳ ଦେବତାଙ୍କ ବେକରେ ଥିଲା ଏବଂ ତାଙ୍କଠାରୁ କଢ଼ାଯାଇ ଭକ୍ତକୁ ଦିଆ ହୋଇଅଛି ।

ମହାରଦ ( ମହାର୍ଦ୍ଦ )—ମହାପ୍ରସାଦ ।

–୧୪–

ଶେଯ—ଶଯ୍ୟା, ବିଛଣା ।

ଥାପୁଡ଼ା ଥାପୁଡ଼ କରିବା—ଧୀରେ ଧୀରେ ଚାପୁଡ଼ା ମାରିବା ।

ବିଏଁ—ଦୁଇ-ହାତକୁ ବିସ୍ତୃତ କଲେ ଏକ ହାତର ଅଗଠାରୁ ଅନ୍ୟ ହାତର ଅଗ ପର୍ଯ୍ୟନ୍ତ ଦୈର୍ଘ୍ୟ ।

ଘୁଙ୍ଗୁଡ଼ି—ନିଦ୍ରାକାଳୀନ ନାସିକା ଶବ୍ଦ ।

ପହଡ଼ (ଦେବତା ରଜା ଆଦିଙ୍କର ) ଶୟନ ।

ଗନ୍ତାଘର—ଭଣ୍ଡାର ଘର ମାଲଖାନା ।

ଆଟୁ— ଘରର ଚାଳ ତଳେ ପଦାର୍ଥ ସଞ୍ଚୟ କରିବା ପାଇଁ କିମ୍ବା ଚାଳରେ ନିଆଁ ଲାଗିଲେ ଗୃହ ମଧ୍ୟସ୍ଥ ପଦାର୍ଥମାନଙ୍କୁ ଅଗ୍ନିରୁ ରକ୍ଷା କରିବା ପାଇଁ କରାଯିବା ବାଉଁଶ ଓ ମାଟିର ଛାତ ବା ଚାଳ ।

ମେଖ—କଣ୍ଟା, ପିରକ ।

ନଳୀ କୋଲପ—ନଳ ପରି ସରୁ, ଲମ୍ବ ଓ ଶୂନ୍ୟଗର୍ଭ ତାଲା ।

ଗଜ—ଝରକା ବା ଫାଟକ ମଧ୍ୟସ୍ଥ ଲମ୍ବ ଲୁହା ବା କାଠର ଛଡ଼ । 

ଘିଟିଘିଟିଆ—ଅତ୍ୟନ୍ତ ଗାଢ଼ (ଅନ୍ଧାର) । 

ଅସର୍ପି—ସୁନା ମୋହର; ସ୍ୱର୍ଣ୍ଣମୁଦ୍ରା । 

ଘୁଡ଼ୁଞ୍ଚ—କାଠ ବା ବାଉଁଶର ବେଞ୍ଚ ବା ଚତୁଷ୍ପଦା ସନ । 

ଆଡ଼ଖୁର—ଲୁଗା ଆଦି ରଖିବା ପାଇଁ ବ୍ୟବହୃତ ବେତର ପେଡ଼ି । 

ଓଗ—ଗୃହଘରର ବଡ଼ କାଠକଡ଼ ( ଯାହା ଉପରେ ଗୁଜ ବସାଯାଇ ଗୃହର ଶେଣୀ ରଖାଯାଏ । ) 

ଜାଠ—ଲଗୁଆ, ଦୃଢ଼ବନ୍ଧନ ନିୟମିତ ରୂପେ ବ୍ୟବହାର୍ଯ୍ୟ ବସ୍ତୁ କୌଣସି ବ୍ୟକ୍ତିଠାରୁ ଆଣିବା ପାଇଁ ଚୁକ୍ତି । 

ଥୁପନା—ମରହଟ୍ଟୀ ପାଲଙ୍କି ଭିତରେ ଝୁଲୁଥିବା ସୂତା ବା ରେସମର ପେଣ୍ଡା । ମାଣ୍ଡି—ତକିଆ । 

ହେଁସ—ଏକ ପ୍ରକାର ମୋଟା ଘାସର ମସିଣା । ବେରୁହାଁ, ଜୁଣ, ବେଣା, ତେଲଙ୍ଗା ଓ ସନ୍ତରା ଆଦି ତୃଣକୁ ଶୁଖାଇ ଖୋଟ ବା ଛଣପଟ ଦଉଡ଼ା ଦ୍ୱାରା ହେଁସ ବୁଣାଯାଏ । 

ଦରିଆ—ମୋଟା ସୂତାରେ ବୁଣା ଯାଇଥିବା ଗୃହର । 

ଦୋହର—ଦୁଇ ପରସ୍ତ । ଓଡ଼ଣ—ଘରପୋକ । 

ଦୀପରୁଖା—ପ୍ରଦୀପ ରଖାଯିବାର ଆଧାର; ପିଲସଜ । 

ବଇଠା—ପ୍ରଦୀପ । ମିଞ୍ଜି ମିଞ୍ଜି ହୋଇ—ଅସ୍ପଷ୍ଟ ଭାବରେ । 

ଗୁଲ—ପୋଡ଼ାଗୁଡ଼ାଖୁ, ବଳଚା ବା ପିକାର ଭସ୍ମାଂଶ । 

ଗାଲ୍‌ଗଲ୍ପ ମିଥ୍ୟା ଗଳ୍ପ । 

ଲୁଖୁରା—ତୈଳହୀନ । 

ଫନ୍ଦା—ଖନ୍ଦ, ଫସଲ । 

ଅଳପାଇସିଆ—ଅଳ୍ପକାଳଜୀବୀ, ଅଳ୍ପାୟୁ । 

ଖଣ୍ଡିଆ—ବିକଳାଙ୍ଗ । ନଈଶୁଆ—ତୁ ନଈରେ ଶୋ; ଅର୍ଥାତ୍ ଶୀଘ୍ର ମରି ଯା ଓ ତୋର ଶବକୁ ଲୋକେ ନେଇ ନଈରେ ପକାଇ ଦିଅନ୍ତୁ । 

ପାରୁଆ—ଶକ୍ତିଶାଳୀ । 

ଫତେ—ବିଜୟ, କାର୍ଯ୍ୟସିଦ୍ଧି । 

ଚକ—ଏକତ୍ରାବସ୍ଥିତ ବହୁ କ୍ଷେତ୍ରର ସମଷ୍ଟି । 

କଡ଼ାଣ—ପ୍ରଥମ ଥର କର୍ଷଣ । 

ଗୁଣ୍ଠୁଣୀ—ହାଣ୍ଡି—ଅଳ୍ପ ଉଚ୍ଚ ହାଣ୍ଡି । 

ବାବନାଭୂତ—ଯେଉଁ ମୃତବ୍ୟକ୍ତିର ଆତ୍ମା ପ୍ରେତତ୍ୱରୁ ମୁକ୍ତିଲାଭ କରି ନାହିଁ । ( ହିନ୍ଦୁମାନଙ୍କର ବିଶ୍ୱାସ ଯେ ମୃତ ବ୍ୟକ୍ତିର ପ୍ରେତ ଉଦ୍ଦେଶ୍ୟରେ ଦଶାହ ନିର୍ଦ୍ଦିଷ୍ଟ ଶୁଦ୍ଧିକ୍ରିୟା ଓ ଶ୍ରାଦ୍ଧାଦି ସମ୍ପାଦିତ ହେଲେ ଓ ଗୟାରେ ପିଣ୍ଡଦାନ କଲେ ମୃତ ବ୍ୟକ୍ତିର ଆତ୍ମା ପ୍ରେତତ୍ୱରୁ ମୋକ୍ଷଲାଭ କରି ପିତୃଲୋକକୁ ଯାଏ । ) 

ଲଠ କରି—ହଠାତ୍ । 

କର୍ଣ୍ଣପଟହ—କାନ ଭିତରେ ଥିବା ଯେଉଁ ପତଳା ଚମ-ପରଦାରେ ବାହାରରୁ ଯିବା ଧ୍ୱନି ବାଜିଲେ ଶୁଭେ । 

ଡୋଲି—ଶିବିକା, ଖଟିଆ । ସବାରି ବୋହିବା ପାଇଁ ଗୃହ ସମ୍ପା ତତୋଽଧିକ ବାହକ ଲୋଡ଼ା ହୁଅନ୍ତି, କିନ୍ତୁ ଡୋଲି ସବାରି ପରି ବଡ଼ ବା ଭାରି ନୁହେଁ ବୋଲି ତାକୁ ଦୁଇ ଜଣ ବାହକ ସହଜରେ ବହି ନେଇ ପାରନ୍ତି । ଏଥିପାଇଁ ସଫସଲରେ ଓ ସହର ମଧ୍ୟବିତ୍ତ

ଓ ଗରିବ ଘରର ବୋହୂ ଝିଆସୁଣୀମାନେ ଡୋଲିରେ ଯିବା ଆସିବା କରନ୍ତି । ଧନ ପରିବାରର ସ୍ତ୍ରୀମାନେ ସବାରିରେ ଯିବାଆସିବା କରନ୍ତି ।

ଘର—ବାହୁଙ୍କର ଦୁଇ ପାଖରେ ଝୁଲି ହୋଇ ଏକ ସଙ୍ଗେ ବୁହାଯିବା ଦୁଇଟି ବୋଝ ।

-୧୫-

ଖଣ୍ଡା ମୁଠି—ଖଡ୍‌ଗ ଆଦିର ବେଣ୍ଟ ।

ଲେଖନମୁନ—ଲେଖନର ସୂକ୍ଷ୍ମ ଅଗ୍ରଭାଗ (ଲେଖନ କଲମ ) ।

ଡ଼ିଙ୍ଗିବା—ଲୁଚିକରି ଗୃହିଁବା ।

ଚକ୍ର—କେତେଗୁଡ଼ିଏ ଗ୍ରାମର ସମଷ୍ଟି ବା ଚକଲା; ରାଜ୍ୟର କୌଣସି ବିଶିଷ୍ଟ ଶାସନ ବିଭାଗ ।

ଚୌପାଡ଼ୀ ଉପରେ ଗୃହ ବା ଛପର ଥିବା, କିନ୍ତୁ ଚାରିଆଡ଼େ ଖୋଲାଥିବା ବୈଠକ ଘର ।

ମାଲବନ୍ଧାଣି—ମଲ୍ଲମାନଙ୍କର ଭିନ୍ନ ଭିନ୍ନ ରକମର ପେଁଚ ।

ଫରିଖେଳ—ଖଣ୍ଡାଖେଳ ।

ପଦାଭୂଇଁ—ଟାଙ୍ଗରା, ବୃକ୍ଷଶୂନ୍ୟ ସ୍ଥାନ ।

ଦାରୁ—ଦେବଦାରୁ ବୃକ୍ଷ ।

ବାଜେ ରିପୋର୍ଟ ଜମିଦାରି ରିପୋର୍ଟର ଅର୍ଥ ସରକାରଙ୍କୁ ଦେୟ ରାଜସ୍ୱ, ଇଂରାଜ ସରକାରଙ୍କ ବନ୍ଦୋବସ୍ତ ପୂର୍ବେ ଯେଉଁ ଜମିଦାରି ସବୁ ବର୍ତ୍ତମାନ ଥିଲା, ସେ ସବୁର ରକବା ମାପ କରିବାରେ କେତେ ଗୁଡ଼ିକ ଅଧିକା ଜମି ବାହାରିଲେ । ଏହି ଅଧିକା ଜମି ଉପରେ ରାଜସ୍ୱ ଧାର୍ଯ୍ୟ ହେଲା ଓ ସେ ଜମି ଯାହା ଦଖଲରେ ଥିଲା, ସେ ବ୍ୟକ୍ତିକୁ ସରକାର ଜମିଦାର ବୋଲି ସ୍ୱୀକାର କଲେ । ଏହିରୂପେ ଇଂରାଜ ସରକାରଙ୍କ ବନ୍ଦୋବସ୍ତ ଫଳରେ କେତେଗୁଡ଼ିଏ ନୂତନ ଜମିଦାରି ସୃଷ୍ଟି ହେଲା । ଏହି ଜମିଦାରି ଗୁଡ଼ିକୁ "ବାଜେ ରିପୋର୍ଟ ଜମିଦାରି" ଏବଂ ତାହାର ରାଜସ୍ୱକୁ "ବାଜେ ରିପୋର୍ଟ" ବୋଲାଗଲା ।

ରିପୋର୍ଟ—ସଦର ଜମା ।

ଭାଟ—ସ୍ତୁତିପାଠକ । ସାହାଖର୍ଚ୍ଚୀ—ଅପବ୍ୟୟୀ ।

ଚକୁଳି—ଗୁଡ଼ ଓ ବିରି ବଟାରେ ତିଆରି ପତଳା ପିଠା ।

ମଣ୍ଡା—ପିଷ୍ଟକ ବିଶେଷ ।

ପାଳୁଅ କ୍ଷୀରି—ପାଳୁଅ ମୂଳ ଚୂର୍ଣ୍ଣକରି ଅଟା ପ୍ରସ୍ତୁତ ହୁଏ; ଏହି ଅଟାରେ ତିଆରି ହୋଇଥିବା କ୍ଷୀରି ।

ଉଦୁଆଁ—ଖୋଲା, ମୁକୁଳା ।

ଜାହାଁବାଜ—ପାରଦର୍ଶୀ, ନିପୁଣ ।

ଶୋଧିବା—ଗାଳିଦେବା ।

ଉଜାଡ଼—ନାଶ, କ୍ଷତି ।

-୧୭-

ଅଣସର (ଅନବସର)—ଯେଉଁ ସମୟରେ ଯାତ୍ରୀମାନଙ୍କୁ ଦର୍ଶନ ଦେବା ପାଇଁ ଜଗନ୍ନାଥଙ୍କୁ ଅବସର ନ ଥାଏ, ଆଷାଢ଼ କୃଷ୍ଣ ପ୍ରତିପଦଠାରୁ ପନ୍ଦର ଦିନ କାଳ । ("ଦେବସ୍ନାନ ପୂର୍ଣ୍ଣିମା ଦିନ ଦେବସ୍ନାନ ମଣ୍ଡପରେ ଜଗନ୍ନାଥ ବଳଭଦ୍ର ଓ ସୁଭଦ୍ରାଙ୍କ ମୂର୍ତ୍ତିସ୍ୱ ଉପରେ ପାଣି ଢଳା ହୋଇ ତାଙ୍କୁ ସ୍ନାନ କରାଯାଏ; ତେଣୁ ସେ ମୂର୍ତ୍ତିମାନଙ୍କ ଉପରୁ ରଙ୍ଗ ଛୁଡ଼ିଯାଏ । ମୂର୍ତ୍ତିମାନଙ୍କୁ ସ୍ନାନ ମଣ୍ଡପରୁ ନେଇ ଗୋଟିଏ ଘରେ ରଖି ସେହିଠାରେ ନେତ୍ରୋତ୍ସବ ପର୍ଯ୍ୟନ୍ତ ଚିତ୍ରକାରମାନେ ଚିତ୍ର କରନ୍ତି । ରଙ୍ଗ କରା ଯାଉଥିବା ମୂର୍ତ୍ତିଙ୍କ ସମ୍ମୁଖରେ ଗୋଟିଏ ଟାଟି ଡେରା ହୋଇଥାଏ । ମୂର୍ତ୍ତିମାନେ ସ୍ନାନ କରିବାରୁ ତାଙ୍କୁ ସରଦି ଧରିଛି ବୋଲି ଯାତ୍ରୀମାନଙ୍କୁ

କୁହାଯାଏ ଓ ଯେ ସମୟରେ ଯାତ୍ରୀମାନେ ମୂର୍ତ୍ତିମାନଙ୍କୁ ଦର୍ଶନ କରିପାରନ୍ତି ନାହିଁ । ଏହି ଅଣସର ସମୟରେ ପୁରୀ ଅଞ୍ଚଳରେ ଅସହ୍ୟ ଗ୍ରୀଷ୍ମ ଅନୁଭୂତ ହୁଏ ।”

( ଓଡ଼ିଆ ଭାଷାକୋଷ )

ଗୁଳଗୁଳ—ବାୟୁ ସଞ୍ଚାଳନର ଅଭାବ ହେତୁରୁ ଅତ୍ୟଧିକ ଗ୍ରୀଷ୍ମ ।

ଗୁମ୍‌ସୁମ୍—ଚୂପ୍ ହେବା ।

ଖୁଣ୍ଟା—ଶୁଷ୍କ ବୃକ୍ଷର ଶାଖାହୀନ କାଣ୍ଡ ।

ବୁଲାକୁତ୍ତା—ଯେଉଁ କୁତ୍ତା ନାନା ସ୍ଥାନରେ ବୁଲୁଥାଏ; ଯେଉଁ ମାଈ କୁକୁରକୁ କୌଣସି ବ୍ୟକ୍ତି ପୋଷି ନ ଥାଏ ।

କାଳୀତିଲକୀ ( ତିଲକାଳକୀ )—ଯାହା ଦେହରେ କଳିଆ ଛୁପା ବା ଦାଗ ଅଛି ।

ପାକୁଳି କରିବା—ରୋମନ୍ଥନ, ଗିଳିତ ଚର୍ବଣ ।

ଖଡ଼ପା—(ପାବନିକ ଖଡ଼ପା ଶବ୍ଦଜ) ଗଉଡ଼ମାନେ ପାଲିଙ୍କି କାନ୍ଧେଇ ଯିବାବେଳେ ଗୋଡ଼ରେ କଣ୍ଟା ଇତ୍ୟାଦି ପଶିଲେ ତାହା ବାହାର କରିବା ନିମିତ୍ତ ଠିଆ ହେବା ପାଇଁ ଡାକ ନ କହି ‘ଖଡ଼ପା’ ଏହି କଥା କହନ୍ତି । ଏହି ସଙ୍କେତ ବଚନର ଅର୍ଥ—ମୋ ଗୋଡ଼ରେ କଣ୍ଟା ପଶିଲା ଟିକିଏ ରହ ।

ଦଶିଆ—ମୋଟା ବସ୍ତ୍ର ।

ଗୁମକର—ଗୁମ ଶବ୍ଦକର ।

ଗମଗମ କର—ବିଶେଷ ପରିମାଣରେ ।

ପୋଷ ପୋଷ—ଅର୍ଦ୍ଧାଞ୍ଜଳି ପରିମାଣ, ଏକହାତରେ କରତଳକୁ ପାତ୍ରାକୃତ କଲେ ତହିଁରେ ଧରିବା ବସ୍ତୁର ପରିମାଣ ।

କଅଁଳା—ନବଜାତ ।

ଦେହକୁ ଲାଗିଲେ—ପ୍ରସବ ବେଦନା ଅନୁଭବ କଲେ ।

ଉଠିଆରି—ଶିଶୁ ଜନ୍ମ ହେବାର ସପ୍ତମ, ଅଷ୍ଟମ ବା ନବମ ଦିନର କୃତ୍ୟ ବା ଅନୁଷ୍ଠାନ । ସେ ଦିନ ଅନ୍ତୁଡ଼ି ନାଆଁ ଉଠାଯାଇ ପ୍ରସୂତି ସ୍ନାନ କରେ ଓ ଅନ୍ତୁଡ଼ିଶାଳ ସଫା ହୁଏ ।

ପୁଆତି—ପ୍ରସୂତି ।

ମୂଳମୂଳକା—ଔଷଧରେ ବ୍ୟବହୃତ ଚେର ମୂଳ ଆଦି; ଚେର ମୂଳ ।

ହୁମପୁମ—ଅଁଗୁଆ ।

ଡବଡବୀ—ଯେଉଁ ଲୋକ ପେଟରେ କିଛି କଥା ଗୋପନ ନ ରଖି କହି ବୁଲେ; ଗପୁଡ଼ୀ । ( ଡବଡ଼ବା - ପୁଂ )

ଆଗତକହି—ଯେ ମନଗଢ଼ା ଭବିଷ୍ୟତ କଥା କହେ ।

ସାଧବ—ମହାଜନ, ବଣିକ ।

କଟୁଆଳ—ନଗରରକ୍ଷୀ ପ୍ରହରୀମାନଙ୍କ ଅଧ୍ୟକ୍ଷ ।

ପାଛୋଟି ଆଣିବା—ଆଗନ୍ତୁକ ବ୍ୟକ୍ତି ଆପଣା ନିକଟରେ ପହଞ୍ଚିବା ପୂର୍ବରୁ ଖଣ୍ଡେ ଦୂରକୁ ଯାଇ ସାଙ୍ଗେ ସାଙ୍ଗେ ଆଣିବା ।

ଫୁଲଗୁଣା—ନାକର ପୁଡ଼ାରେ ପିନ୍ଧୁଥିବା ଏକପ୍ରକାର ଗୁଣା, ( ଗୁଣା—ସ୍ତ୍ରୀମାନଙ୍କର ନାକରେ ପିନ୍ଧାଯିବା ବର୍ତ୍ତୁଳାକାର ଅଳଙ୍କାର ବିଶେଷ ) ।

ପରସ୍ତେ—ଏକଥର । ଖରଡ଼—ଗାଲିଚା, ମେଷ-ଲୋମ ନିର୍ମିତ ମୋଟ ଆସନ ।

ଟିଉ—ଗୁଡ଼ଲକୁ ବଡୁଲାଇ ବାଟିକରି ତିଆରି କରାଯିବା ଘନମଣ୍ଡ ।

ଗାଏ—ସବମୋଟ ।

ଚୁଲ୍ହପାଣି—ଘର ଓ ଅଗଣାଦ ଲିପିବାରେ ବ୍ୟବହୃତ ଗୋବରପାଣି ।

ଖାଲୋଇ—କେଉଟମାନେ ମାଛ ଧରି ଯେଉଁ ଆଧାରରେ ରଖନ୍ତି ।

ଉକୁ ହେବା—ଘଟିବା ।

ନାଟମୟୂର—ଯେଉଁ ଅଣ୍ଡିରା ମୟୂର ଅତି ମନୋହର ରୂପ ଲାଞ୍ଜକୁ ପଙ୍ଖାପରି ବିସ୍ତୃତ କରି ନୃତ୍ୟ କରେ, ତାହାକୁ ନାଟମୟୂର କହନ୍ତି । କୌଣସି କୌଣସି ଗୁଣୀ ଉପରେ ନାଟମୟୂର ଶବ୍ଦ ବ୍ୟବହୃତ ହୋଇଥାଏ ।

କାପ—କାନର ଅଳଙ୍କାର ବିଶେଷ ।

ଗୁପସରି—ଶିକ ପରି ବେକର ଚଉଡ଼ା ଅଳଙ୍କାର ବିଶେଷ ।

କୁରୁଜାତକ—ସୁନା ମୋହର ।

ବିଦ—ସ୍ତ୍ରୀମାନଙ୍କର ବାମ ବାହୁର ଅଳଙ୍କାର ବିଶେଷ ।

ପଇଞ୍ଚ—ଏକ ପ୍ରକାର ଖଡୁ ।

କଟା—ସ୍ତ୍ରୀ ଲୋକମାନଙ୍କର ହାତରେ ପିନ୍ଧିବା ଏକ ପ୍ରକାର ପାତିଆ ପରି ପାତଳା ଓ ଉପରେ ଦାଢ଼ୁଆ ହୋଇଥିବା ଖଡୁ ।

ଗ୍ରାମମୁଦ୍ରା—ଯେଉଁ ମୁଦରେ ନାମ ଅଙ୍କିତ ହୋଇଥାଏ ।

କଂସାବାଙ୍କ—ବକ୍ରାକୃତି କଂସାର ଗୋଡ଼ଖଡୁ ।

ପାଟଥୋପ—ଯେଉଁ ସୂତା ବା ଫିତାର ଦୁଇ ମୁଣ୍ଡରେ ଦୁଇ ଗୋଟି ପାଟ ନିର୍ମିତ ଫୁଲ ଲଗିଥାଏ ।

ଜୁଡ଼ା—କବରୀ, କେଶ ବିନ୍ୟାସ ।

ବେଙ୍ଗ ପାଟିଆ—ବେଙ୍ଗର ପାଟି ପରି ଆକାର ବିଶିଷ୍ଟ ଘୁଙ୍ଗୁର ।

ଗୋଜକାଠି—ସ୍ତ୍ରୀମାନେ ଜୁଡ଼ାରେ ଖୋସିବା କାଠି । (ଗୋଜକାଠିରେ ଶିକୁଳି ଲଗା ହୋଇଥାଏ ଏବଂ ସେହି ଶିକୁଳିରେ ବେଙ୍ଗପାଟିଆ ଘୁଙ୍ଗୁର ଝୁଲୁଥାଏ ।)

ମା ଛେଉଣ୍ଡୀ—ମାତୃହୀନ ।

ବାହୁନିବା—ଗୁଣ ବର୍ଣ୍ଣନା କରି କାନ୍ଦିବା ।

ଚନ୍ଦ୍ରଉଦଆ—ବାଣ ବିଶେଷ; ଯେଉଁ ବାଣକୁ ଜାଳିଲେ ଚନ୍ଦ୍ରୋଦୟ ହେଲା ଭଳି ଧଳା ଆଲୋକ ଦେଖାଯାଏ ।

ଲାଜକୁଳୀ—ଲଜ୍ଜାବତୀ ।

ବାଲୁଙ୍ଗା—ବିନା କର୍ଷଣେ ଜାତ ଧାନ୍ୟ,ତୃଣଧାନ୍ୟ, ମାବାର । [ଏହି ଧାନ କୃଷି ଉତ୍ପନ୍ନ ଧାନ ଗଛରୁ ଝଡ଼ିପଡ଼ି କ୍ଷେତରେ ପଡ଼ି ରହିଥାଏ ଏବଂ ଗଛ ଉଠେ ଓ ଫଳେ । ଏହି ଧାନ କର୍ଷିତ ଧାନ ଗଛ ସଙ୍ଗେ କିଆରିରେ ଉଠିଲେ କୃଷି ଧାନ ଅପେକ୍ଷା ଆଗରୁ ପାଚିଯାଏ ଓ କିଆରିରେ ଝଡ଼ି ପଡ଼େ । ଏହି ବାଲୁଙ୍ଗା ଧାନ କିଆରିକୁ ନଷ୍ଟ କରି ପକାଏ । ଏଥିପାଇଁ କୃଷକମାନେ ଧାନ କିଆରିରୁ ବାଲୁଙ୍ଗା ଗଛମାନ ଆଗରୁ ଓପାଡ଼ି ପକାନ୍ତି । ଧାନ କ୍ଷେତରୁ ବାଲୁଙ୍ଗା ନ ଓପାଡ଼ିଲେ ତିନି ବର୍ଷ ମଧ୍ୟରେ କିଆରିଯାକ ବାଲୁଙ୍ଗାମୟ ହୋଇଯାଏ ଓ ମାଟିରୁ ସାର ଟାଣିନେଇ କୃଷି ଧାନ ଗଛକୁ ଦୁର୍ବଳ କରି ପକାଏ । ]

ଆଗରେ ଲକ୍ଷ୍ମୀ,ପଛରେ ପଣ୍ଡିତା ବିଷ୍ଣୁଙ୍କର ଦୁଇ ପତ୍ନୀ—ଲକ୍ଷ୍ମୀ ଓ ସରସ୍ୱତୀ । ଲକ୍ଷ୍ମୀ ପୃଥିବୀରେ ସୌନ୍ଦର୍ଯ୍ୟ ଶୋଭା, ଧନ, ଐଶ୍ୱର୍ଯ୍ୟ ଓ ସୌଭାଗ୍ୟର ଅଧିଷ୍ଠାତ୍ରୀ ଦେବୀ ବୋଲି ପ୍ରସିଦ୍ଧା । ସରସ୍ୱତୀ ବିଦ୍ୟାର ଅଧିଷ୍ଠାତ୍ରୀ ଦେବୀ । ମାନବ ବିଦ୍ୟା ସୌଭାଗ୍ୟ ପ୍ରଭୃତି କାମନା

କରେ । ସଦାଗୃହବିଶିଷ୍ଟ ହେଲେ ସେ ଲକ୍ଷ୍ମୀ ଲାଭ କରେ; ଅର୍ଥାତ୍ ତାହାର ଧନ, ସୌନ୍ଦର୍ଯ୍ୟ ଓ ସୌଭାଗ୍ୟ ଲାଭ ହୁଏ । ପୁନଶ୍ଚ ଅନୁସନ୍ଧାନ ଦ୍ୱାରା ନିର୍ଣ୍ଣୟ ତତ୍ତ୍ୱ କଲେ ସେ ସରସ୍ୱତୀ ଲାଭ କରେ, ଅର୍ଥାତ୍ ପଣ୍ଡିତ ହୁଏ । ( ଆଗୃହ୍ୟଶାସ୍ତ୍ରାନୁମୋଦିତ ଆଚରଣ । ବିଗୃହ, ଅନୁସନ୍ଧାନ ଦ୍ୱାରା ତତ୍ତ୍ୱ ନିର୍ଣ୍ଣୟ । )

ଢ଼ାଲ—ଲୋଟା । ସଙ୍ଗାତ—ଘନିଷ୍ଠ ବନ୍ଧୁ, ମିତ୍ର ।

ସକେଇକାନ୍ଦିବା – ଘନ ଘନ ରୁଦ୍ଧନିଶ୍ୱାସ ତ୍ୟାଗ ପୂର୍ବକ କାନ୍ଦିବା ।

–୧୭–

ଝୁଣା ହେବା – ଝୁଣା ପରି ଦାହନଶୀଳ ହେବା ।

ମୁହାଁଇବା—(କୌଣସି ଦିଗକୁ) ଗତି କରିବା ।

ଯାତ୍ରାକାଳି - ଯାତ୍ରା ଦେଖିବାକୁ ଆସିଥିବା ବ୍ୟକ୍ତି ।

ନିଦବାଉଳୀ – ଗାଢ଼ ନିଦ୍ରାରେ ଶୋଇଥିବା ବ୍ୟକ୍ତି ହଠାତ୍ ନିଦରୁ ଉଠିଲେ ତାହାର ଯେଉଁ କିଂକର୍ତ୍ତବ୍ୟବିମୂଢ଼ ଅବସ୍ଥା ଘଟେ ।

ହାଉଳି ଖାଇବା – ହଠାତ୍ ଭୀତ ହୋଇ ଚିତ୍କାର କରିବା ।

ଝୋଲ୍ ମାରିବା— ଅଚେତନ ହେବା ।

ମୁନ୍ଦାଏ – ସାମାନ୍ୟ ପରିମିତ ।

ସାଷ୍ଟମ କରାଇବା - ଅଚେତ ବା କ୍ଳାନ୍ତ ହୋଇଥିବା ବ୍ୟକ୍ତିକୁ ସେବା ଶୁଶ୍ରୂଷାଦ୍ୱାରା ସଚେତ କରାଇବା ।

ପହରା – ଭାଗ୍ୟ ।

–୧୮–

ଡେବରି—ବାଆଁ ।

ଚଉରା —ହିନ୍ଦୁଙ୍କର ତୁଳସୀବୃକ୍ଷ ରୋପଣ କରିବାର ସ୍ତୂପ ବିଶେଷ ।

ପୁଆ—ଗଜା ଗଛ ।

ପଣନ୍ତ—( ପଣତ ) ପିନ୍ଧିବା ବସ୍ତ୍ରର ଶେଷଭାଗ ।

କାନି—ପିନ୍ଧା ଲୁଗାର ପ୍ରାନ୍ତଭାଗ ।

ବୃନ୍ଦାବତୀ – ତୁଳସୀ ଚଉରାରେ ପ୍ରତିଷ୍ଠିତ ହୋଇ ପୂଜା ପାଉଥିବା ତୁଳସୀ ଗଛ ।

ପଟାନ୍ତର – ତୁଳନା, ଉପମା ।

ଜାଡ଼ୀ—ବାକଶକ୍ତିରହିତ, ବୋବା ( ସ୍ତ୍ରୀ ) ।

ତନଖି—ତତ୍ତ୍ୱାବଧାନ, ତଦାରଖ ।

ଗରଜାଏ—ପ୍ରାପ୍ୟ ଆଦି ଦେବାକୁ ଅକ୍ଷମ, ଧନହୀନ ।

ଖାତକ – ଧାରୁଆ, ଋଣଗ୍ରହୀତା ।

ଟାହୁଲି ମାହୁଲି—ଥଟ୍ଟା, ପରିହାସ ।

ଘରକରଣା ବୁଦ୍ଧି—ନିଜ ଗୃହସଂସାର ସୁଚାରୁ-ରୂପେ ପରିଚାଳନ କରିବାର ବୁଦ୍ଧି ।

ଜଡ଼ସୁଦ—ମୂଳରୁ ସୁଦ୍ଧା, ଆଦୌ, ଜମାରୁ ।

ହାତପେଠ – ହସ୍ତଗତ, ପେଠ (ପଇଠ)– ପ୍ରବିଷ୍ଟ, ଆଗତ, ଦାଖଲ ।

ଧାନଉଷୁଆଁ ହାଣ୍ଡି – ଯେଉଁ ହାଣ୍ଡିରେ ଧାନ ଉଷୁଆଁ ବା ଅର୍ଦ୍ଧସିଦ୍ଧ ହୁଏ ।

ଉଗାଡ଼ – ( କୌଣସି ପୋଲ ବସ୍ତୁକୁ ) ଲେଉଟାଇ ତଦ୍ୱାରା ଅନ୍ୟ ବସ୍ତୁକୁ ଢାଙ୍କିଦେବା ।

ଟୋପ—ଦୁଇ ପାଖରେ ତସରର ରଙ୍ଗିନ ଫୁଲ ଲଗିଥିବା ପାଟଫୁଲ, ଯାହାକୁ ସ୍ତ୍ରୀ ଓ ଶିଶୁମାନେ ଜୂଡ଼ାରେ ପିନ୍ଧନ୍ତି । ( ପାଟଫୁଲ ଫୁଲଲଗା କସ୍ତା ସୂତାର ଫିତା ) ।

ମାଣ – ଶସ୍ୟାଦିର ମାପ ବିଶେଷ । [ ୧ ଭରଣ = ୨୦ ଗଉଣୀ; ୧ ଗଉଣୀ = ୧୨ ମାଣ । ଗଉଣୀର ତାରତମ୍ୟ ଅନୁସାରେ ମାଣର ତାରତମ୍ୟ ହୋଇଥାଏ ।

ଯଥା ୪ ସେରିଆ ଗଉଣୀର ମାଣ ୪ ସେର, ୬ ସେରିଆ ଗଉଣୀର ମାଣ ୬ ସେର ଇତ୍ୟାଦି । ]

ହଳିଆ ହଳ କାମରେ ନିଯୁକ୍ତ ଚାକର ।

ଆଠ କଳସ ମାଡ଼ୁ—ଆଠଗୋଟି ପୂର୍ଣ୍ଣକୁମ୍ଭ ସ୍ଥାପିତ ହୋଇଥିବା ବେଦୀରେ ବସି । ବିବାହ ବେଦୀରେ ଆଠଗୋଟି ପୂର୍ଣ୍ଣକୁମ୍ଭ ସ୍ଥାପିତ ହୁଏ ।

ଚର୍ମଣ୍ୱତୀ—ଭାରତର-ଉତ୍ତର-ପଶ୍ଚିମସ୍ଥ ବୁନ୍ଦେଲ-ଖଣ୍ଡ ଅନ୍ତର୍ଗତ 'ଚମ୍ବଲ' ନଦୀ ।

ଅହିଅ ନାଗରା—ମୃତ ସଧବା ସ୍ତ୍ରୀର ଶବ ସଙ୍ଗେ ଶ୍ମଶାନଯାଏ ବଜାଯିବା ନାଗରା ବା ଢୋଲ ।

ଶୁଭ କଉଡ଼ି—ଅହିଅ କଉଡ଼ି, ସଧବା ସ୍ତ୍ରୀର ଶବ ଶ୍ମଶାନକୁ ନିଆହେଲା ବେଳେ ଶବ ଆଗେ ଆଗେ ସ୍ୱାମୀ ଯେଉଁ ଖଇମିଶା କଉଡ଼ି ବୁଣେ ।

ମଙ୍ଗଳ ପେଡ଼ି ସିନ୍ଦୂର ପେଡ଼ି, ସିନ୍ଦୂର ଫରୁଆ, କଜଳପାତି, ଆରସି, ପାନିଆ, ମହମ ଆଦି ସ୍ତ୍ରୀମାନଙ୍କର ପ୍ରସାଧନ ଦ୍ରବ୍ୟସମ୍ଭାର ରଖିବା ପାଇଁ ବେତର ବା ବାଉଁଶର ଛୋଟ ପେଡ଼ି ।

ଅହିଅ—ସଧବା ।

-୧୯-

କୁଣିଆ—ଅତିଥି, ଦୂରାଗତ ବ୍ୟକ୍ତି ।

ଝାମ୍ପି—ମୁଣ୍ଡରେ ପିନ୍ଧାଯିବା ତାଳପତ୍ରର ଟୋପି ।

କାହାଳୀ—ପତ୍ର ଆବରଣରେ କରାଯିବା ଧୂଆଁପତ୍ରର ବଡ଼ ପିକା ।

ଓଟାରିବା—( ଟାଙ୍କିଇ ଧୂଆଁ ଆଦି ) ଶୋଷିବା ।

ବାହୁଙ୍ଗୀ—ଭାରଦଣ୍ଡ ।

ଟାଙ୍ଗଣ—ଛୋଟ ଘୋଡ଼ା, କ୍ଷୁଦ୍ରାକୃତି ଘୋଟକ ବିଶେଷ ।

ସୁଆର—ଅଶ୍ୱାରୋହୀ, ସବାର ।

ଛକଳିଆ—ସର୍ବାଙ୍ଗରେ ଛଅଗୋଟି କଲି ଥାଏ ।

କଲି—କୁର୍ତ୍ତାର କାଖ ଓ ପକେଟ ପାଖରେ ଦିଆଯିବା ତ୍ରିକୋଣ ବା ଚତୁଷ୍କୋଣ ବିଶିଷ୍ଟ ପୃଥକ୍ ବସ୍ତ୍ରଖଣ୍ଡ ।

ଚପ୍‌କନ୍—ଆଜାନୁଲମ୍ବିତ ଚସ୍ତ କୁର୍ତ୍ତା ।

କାମଦାନି—ବୁଣାହେବା ବେଳୁ ସୂକ୍ଷ୍ମ ସୂକ୍ଷ୍ମ ରଙ୍ଗ ଓ କାରୁକାର୍ଯ୍ୟ ସୂତାଲଗା ।

ପାଇଜାମା ଗୋଡ଼ମୁଣା, ପତଲୁନ ।

କଦମ—ଅଶ୍ୱର ଗତିବିଶେଷ ।

ନସର ପସର—ହଲ ହଲ ।

ଦଳଖିଆ - ଯେଉଁମାନେ ଦାନା ଖାଇବାକୁ ପାଆନ୍ତି ନାହିଁ । କେବଳ ଦଳ ଘାସ ଖାଇ ବଞ୍ଚନ୍ତି ।

ଟଟ୍ଟୁ ଛୋଟ ଘୋଡ଼ା । ଖୋଲ—ଗହ୍ୱର ।

ଖୁଗୁସ—ଘୋଡ଼ା ଉପରେ ଗୁରଜାମା ତଳେ ପକାଯିବା ମୋଟା ବସ୍ତ୍ରର ଆସନ ।

ଗୁରଜାମା—ଘୋଡ଼ାର ପିଠିରେ ଚଢ଼ିବା ତୁଳାରେ ପୂର୍ଣ୍ଣ ବସ୍ତ୍ରନିର୍ମିତ କୋମଳ ଚତୁଷ୍କୋଣ ଆସ୍ତରଣ ବିଶେଷ ।

ଗୁରଫୁଲିଆ—ଧଡ଼ିରେ ଗୁର ଧାଡ଼ି ଫୁଲ ଥିବା (ବସ୍ତ୍ର) ।

ବନ୍ଧ—ବାନ୍ଧୁଣୀ, ବାନ୍ଧିବା ଦଉଡ଼ି ।

ଗନ୍ତା—ଏକ ପ୍ରକାର କୁରୁତା । ଏ କୁରୁତାରେ ଦୁଇ କଡ଼ରେ ପଟି ବା ଡୋରି ଲାଗିଥାଏ; କୁର୍ତ୍ତାକୁ ଦେହରେ ପିନ୍ଧି ସାରି ଦୁଇ ଆଡ଼ରୁ ଡୋରିକୁ ଭିଡ଼ିଆଣି ଗଣ୍ଠି ପକାଇଲେ କୁର୍ତ୍ତାଟି ଦେହରେ କସି ହୋଇ ଲାଗି ରହେ ।

ରହମୀ (ରେଶମୀ)—ରେଶମ ନିର୍ମିତ ଚାଦର ।

ଠାକରା ଫୁଟାଇବା – ତାଳୁରେ ଜିଭ ଲଗାଇ ଶବ୍ଦ କରିବା ।

ବାଗ୍‌ଡୋର – ଘୋଡ଼ାର ମୁଖ-ରଜ୍ଜୁ । ଘୋଡ଼ାର ମୁହଁରେ ଲଗାଯାଇଥିବା କଜେଇର ଏକ ପାଖରେ ଏ ଡୋରିକୁ ଲଗାଇ ଘୋଡ଼ାର ମୁଣ୍ଡ ବାଟେ ବୁଲାଇ ଆଣି କଜେଇର ଆର ପାଖରେ ସଂଲଗ୍ନ କରାଯାଏ ଓ ତହିଁର ଲମ୍ବ ଅଂଶକୁ ଚଢ଼ାଳିଇବା ଲୋକ ଧରେ ।

ସରଧା ବାଲି – ଜଗନ୍ନାଥଙ୍କ ବଡ଼ଦାଣ୍ଡର ବା ରଥ ଦାଣ୍ଡର ଧୂଳି । ଭକ୍ତମାନେ ଏହାକୁ ଭକ୍ତି ସହିତ ଦେହରେ ବୋଳି ହୁଅନ୍ତି ।

ଓଆକଫକାର କୌଣସି ବିଷୟରେ ଅଭିଜ୍ଞ ।

ଗ୍ରେପ୍ତାର – ରାଜାଦେଶରେ ଅପରାଧୀ ବା ସନ୍ଦେହୀ ବ୍ୟକ୍ତିକୁ ଧରିବା ବା ବନ୍ଦୀ କରିବା ।

ନଜରବନ୍ଦୀ – କଡ଼ା ବା ସତର୍କ ଦୃଷ୍ଟିରେ ରଖା-ଯିବାର ଅବସ୍ଥା ।

ଖାନତଲସି—ସନ୍ଦେହଯୁକ୍ତ ବ୍ୟକ୍ତିର ଘରତଦାରଖ ।

ଅମାର ଶସ୍ୟାଗାର, ଧାନ-କୋଠି ।

ଓଲଗ (ଉଲୁଗ)—ଚାଳ ଉପରୁ ଛୁଅଣି ହୋଇ-ଥିବା ନଡ଼ାକୁ ଓଟାର ଆଣିବା ।

ରେକା – ବୁଢ଼ା ଆଙ୍ଗୁଠି ଓ ମଝି ଆଙ୍ଗୁଠିର ପରିଧି ।

ରେକେମୋଟ –ବୁଢ଼ା ଆଙ୍ଗୁଠି ଓ ମଝି ଆଙ୍ଗୁଠିର ପରିଧି ପରିମାଣ ମୋଟ ।

ଓଳି – ଘରର ଚାଳର ପ୍ରାନ୍ତ ।

ବରାମଦ ହୋଇ – କୌଣସି ଅପରାଧ-ଘଟିତ ଦ୍ରବ୍ୟକୁ ଖୋଜି ବାହାର କରାପାଇ ।

ଲାଶ୍ – ଶବ, ମୃତ ଦେହ ।

ସନାକ୍ତ କରିବା – କୌଣସି ବ୍ୟକ୍ତିକୁ ବା ବସ୍ତୁକୁ ଚିହ୍ନୋଟ କରିବା ।

ଇଆଦ୍ – ସ୍ମରଣ, ମନେ ପକାଇବା ।

ବସ୍ତାନ – କାଗଜପତ୍ର ଏକତ୍ର ବନ୍ଧା ଯାଇଥିବା ପୁଡ଼ା ।

ସେରସ୍ତା – ସରକାରୀ କାଗଜ ।

ଶରକଲମ – ଶରତୃଣର କଲମ ।

ମୁଦେଇ – ଫଉଜଦାରୀ ମକଦ୍ଦମାରେ ବାଦୀ ବା ଫରିୟାଦୀ ।

ମୁଦାଲି – ଫୌଜଦାରୀ ମକଦ୍ଦମାରେ ଆସାମୀ ।

ବରକନ୍ଦାଜ – ପିଆଦା, ଚପରାସୀ ।

ହାଲର – ଉଚ୍ଚ ଧ୍ୱନି ।

ହମରାଏ – (ଅମୁକର) ଜମାଦାରୀରେ ।

ହରତାଳ-କାଗଜ—ପୂର୍ବେ କଟକ ଜିଲ୍ଲାର ପଦ୍ମପୁର ଅଞ୍ଚଳରେ ହାତରେ ପ୍ରସ୍ତୁତ ହେଉଥିବା ଏକ ପ୍ରକାର ହଳଦିଆ କାଗଜ ।

ଜବାନବନ୍ଦୀ – ଲିପିବଦ୍ଧ ସାକ୍ଷୀର ଉକ୍ତି ।

କଲମବନ୍ଦ କରିବା – ଲେଖିବା ।

ମୁର୍ଦ୍ଦାଫରା – ମୃତ ।

ସନ୍ତକ—ସ୍ୱାକ୍ଷର ବଦଳରେ ଅଙ୍କିତ ଚିହ୍ନ ।

ନିସୋର – ନିଃଶବ୍ଦ ।

ଧାରଣା ପଡ଼ିବା -ଅଧା ପଡ଼ିବା, କୌଣସି ବ୍ୟକ୍ତି ବା ଦେବତାଙ୍କ ନିକଟରେ ଏକାଗ୍ରଭାବରେ ଅନୁସରଣ କରି ପଡ଼ି ରହିବା ।

ଚଳାଏ – ପୋଷେ, ଏକ ଅର୍ଦ୍ଧାଞ୍ଜଳି ପରିମାଣ ।

କାନ୍ଦୁଣୁମାନ୍ଦୁଣୁ—କ୍ରନ୍ଦନୋଦ୍ୟତ, କାନ୍ଦଲା ପରି ।

ସୁଆଲ—ମକଦ୍ଦମାରେ ଏକ ପକ୍ଷ ବିପରୀତ ପକ୍ଷର ସାକ୍ଷୀକୁ କୂଟପରୀକ୍ଷା ସକାଶେ ଯେଉଁ ପ୍ରଶ୍ନ କରେ ।

ଏକବାର – କୌଣସି ଉପବାସ ଓ ବ୍ରତର ପୂର୍ବଦିନ କୃତ୍ୟ ହବିଷ୍ୟ ।

କଟବନ୍ଧକ - ଜମିର ଆୟରୁ କେତେକ ବର୍ଷ ମିଆଦରେ ଋଣର ସୁଧ ଓ ଅସଲ କ୍ରମେ କ୍ରମେ ପରିଶୋଧ ହେବ — ଏହି ସର୍ତ୍ତରେ ମହାଜନ ନିକଟରେ ଭୂମି ଆବଦ୍ଧ ହେବା ।

କିଷ୍ଟିବନ୍ଦି — ଜମିଦାରମାନଙ୍କ ପାଇଁ, ସରକାରଙ୍କୁ ଦେୟ ରାଜସ୍ୱକୁ ଖଜଣାଖାନାରେ ଜମିଦାରମାନେ ଦାଖଲ କରିବା ନିମନ୍ତେ ସରକାରଙ୍କ ନିର୍ଦ୍ଧାରିତ ଦିବସ ।

ତମସୁକ — ଋଣପତ୍ର, ଖାତକର ମହାଜନକୁ ଲେଖିଦେବା ଋଣଗ୍ରହଣର ନିଦର୍ଶନ ପତ୍ର ।

କଟକବାଲା ( କଟ୍ କବାଲା ) — ଖାତକ ନିରୂପିତ ସମୟ ମଧ୍ୟରେ ଋଣ ପରିଶୋଧ କଲେ ତା ଭୂମି ତାର ହେବ; ନଚେତ୍ ଋଣଟଙ୍କା ନିମନ୍ତେ ଆବଦ୍ଧ ବୃତ୍ତିକୁ ମହାଜନ କବାଲା କରିଥିବାର ବିବେଚିତ ହେବ । ଏହି ସର୍ତ୍ତରେ କରାଯିବା ଋଣପତ୍ର ।

ଏତଲାନାମା — ଅଦାଲତର ବିଜ୍ଞାପନ ପତ୍ର ।

ଡିଗ୍ରିଜାରି — ଅଦାଲତଙ୍କ ନିଷ୍ପତ୍ତିକୁ କାର୍ଯ୍ୟରେ ପରିଣତ କରିବାର ପଦ୍ଧତି ।

ପରୁଆନା — ଆଦେଶ ପତ୍ର, ହୁକୁମନାମା ।

ନିଲାମି ଇସ୍ତିହାର — କୌଣସି ସମ୍ପତ୍ତି ନିଲାମ ହେବା ସମ୍ବନ୍ଧେ ପୂର୍ବରୁ ସର୍ବସାଧାରଣଙ୍କୁ ନିଲାମର ତାରିଖ, ସର୍ତ୍ତ ଓ ସ୍ଥାନ ଆଦି ଜଣାଇବା ପାଇଁ ପ୍ରକାଶିତ ବିଜ୍ଞାପନ; (Sale-Proclamation) ।

ଜଲା — ଛିଦ୍ର, ରନ୍ଧ୍ର ।

ବାହାଲ ରଖିବା — ପୂର୍ବେ ଯେପରି ଥିଲା, ସେହିପରି ରଖିବା ।

ବେକସୋନ୍ତ — ବଦାସ୍ତ, ଟମଲଣି ।

ଚଲାଣ — ପୁଲିସ ଦ୍ୱାରା ଧୃତ ଅପରାଧୀ ବ୍ୟକ୍ତିଙ୍କୁ ମାଜିଷ୍ଟ୍ରେଟଙ୍କ ନିକଟକୁ ବିଚାରାର୍ଥ ପ୍ରେରଣ କରିବା ।

ନଲୀକଞ୍ଜ — ନଳୀ କୋଲପର ଗୃହକାଠି ।

ଠା — (ରାଜା ଆଦିଙ୍କ) ଭୋଜନ ।

ବାହୁଡ଼ିବା — ଫେରି ଆସିବା ।

ସଇମୋହର ନକଲ — ଭାରପ୍ରାପ୍ତ କର୍ମଚାରୀଙ୍କ ସ୍ୱାକ୍ଷର ଓ ଅଫିସର ମୋହର ମରାଯାଇଥିବା ସରକାରୀ କାଗଜପତ୍ରର ଅବିକଳ ନକଲ ।

ଅଞ୍ଜାମ — କାର୍ଯ୍ୟ ସମ୍ପାଦନ ।

ହାଲତ — ଅବସ୍ଥାରେ ।

ବନ୍ଦା — ଆପଣଙ୍କର ଆଜ୍ଞାକାରୀ ଭୃତ୍ୟ, ଅଧୀନ ।

ରୋଜନା — ପ୍ରତିଦିନର ।

ଡାଇରି — ଦୈନିକ କାର୍ଯ୍ୟ-ବିବୃତ୍ତି ।

ମୁତାଲ୍ଲିକ — ନିଯୁକ୍ତ ।

ଜାହେର — ପ୍ରକାଶ । ମଜକୁର — ପୂର୍ବୋକ୍ତ ।

ଲହମାକ - ( ଆ, ଲହ୍ମା, = କ୍ଷଣ, ମୁହୂର୍ତ୍ତ ) କ୍ଷଣମାତ୍ର ।

ଗୁଦସ୍ତ — ( ଫା, ଗୁଜସ୍ତ କାଳକାଟିବା ) କାଳ-ଯାପନ ।

ଏତଲାଇ — ସମ୍ବାଦ, ଖବର । ମଶୁର — ପ୍ରସିଦ୍ଧ ।

ଜାଲିମବାଜ୍ — ଜୁଲମ୍‌ବାଜ୍, ଅତ୍ୟାଚାରୀ ।

ସଙ୍ଗିନ୍ — ଗୁରୁତର । ଲିହାଜ — ବିବେଚନାରେ ।

ତଡ଼େଦମ — କ୍ଷଣମାତ୍ର ବିଳମ୍ବ ନ କର ।

ଓକୁ — ଯେଉଁଠାରେ କୌଣସି ଅପରାଧର ଘଟନା ଉଦ୍ଭବ ହୋଇଅଛି ।

ରମାନା ହୋଇ — ଯାତ୍ରା କର । ସରଜମିନ — ମକଦ୍ଦମା ସମ୍ପର୍କୀୟ ସ୍ଥାନ ।

ମହାସଗ—(ଫା,ମଏସଗ—କୁକୁରକୁ ସୁଦ୍ଧା ବାଦ ନ ଦେଇ)—ଗୃହର ଯାବତୀୟ ପଦାର୍ଥ ଓ ସ୍ଥାନ ।

ମହଲୁକଆ—ସ୍ତ୍ରୀଲୋକ ।

ଆସବାବ—ଗୃହର ସାଜସଜ୍ଜା, ଚଳନ୍ତ ଜନସପତ୍ର ।

ଏକବଗଣ—ଏକ ଗୋଟା ( ଆ, ଗ୍ରଣ୍‌=ମସ୍ତକ ) ।

ସଫେଦା—ଶୁକ୍ଳ, ଧଳା ।

ବଗମଦ କରିବା—କୌଣସି ଅପରାଧଘଟିତ ବ୍ୟକ୍ତିକୁ ଖୋଜ ବାହାର କରିବା ।

ସଫ୍ ସାବ୍ୟସ୍ତ—ସ୍ପଷ୍ଟରୂପେ ପ୍ରମାଣିତ ।

ରୁଇତ—(ଆ, ରୁଇତ=ଦୃଷ୍ଟି) ପ୍ରତ୍ୟକ୍ଷଦର୍ଶୀ ।

ରୁଇତ ଗୁହା—ଗୃଷ୍ଟସ ସାକ୍ଷୀ ।

ଇମାନ୍‌ଦାର—ବିବେକବାନ୍, ଧାର୍ମିକ ।

ନୌସନାସ୍ତି--( 'ନସେରଓ୍ୱାନ'ର ଅପଭ୍ରଂଶ ) ନସେରଓ୍ୱାନଙ୍କ ଉପଯୁକ୍ତ, ଅତି ନିରପେକ୍ଷ । (ପାରସ୍ୟ ଦେଶରେ 'ନସେରଓ୍ୱାନ' ନାମକ ଜଣେ ରାଜା ଥିଲେ । ସେ ତାଙ୍କ ନିରପେକ୍ଷ ନ୍ୟାୟବିଚାରର ସକାଶେ ପ୍ରସିଦ୍ଧ ଥିଲେ । )

ତଜବିଜ୍—ବିଚାର, ବିବେଚନା ।

ଦାରୋଗା—ପୁଲିସ୍ ଥାନାର ଭାରପ୍ରାପ୍ତ ଉଚ୍ଚ କର୍ମଚାରୀ ।

ଅଲାହିଦା—ଅଲଗା, ସ୍ୱତନ୍ତ୍ର, ପୃଥକ୍ ।

ମୁତାବକ—ଅନୁସାରେ ।

ଡେପ୍‌ଜିଟ୍—ଯତ୍ନପୂର୍ବକ ରଖିବାପାଇଁ କୌଣସି ବ୍ୟକ୍ତିଙ୍କ ଜିମ୍ମାଦାରି ।

ଭେଜାଗଲା—ପଠାଗଲା ।

ଜୁଲମ—ଉତ୍ପୀଡ଼ନ, ଅତ୍ୟାଚାର ।

ଏଗାନା—ଆତ୍ମୀୟ ।

ଗୁଲାଣ ଦେଲା—ବିଚାରାର୍ଥ ପ୍ରେରଣ କଲା ।

ହଜୁର—ପ୍ରଭୁ, ହାକିମ ।

ସନ—ସାଲ, ବର୍ଷ, ଅବ୍ଦ । [ଦେଶୀ ଅବ୍ଦ ପୂର୍ବେ 'ସନ' ଶବ୍ଦ ଲେଖାଯାଏ ଏବଂ ସାଧାରଣତଃ ସବୁ ପ୍ରକାରର ଅବ୍ଦ ପରେ 'ସାଲ' ଶବ୍ଦ ଏବଂ ଇଂରାଜୀ ଅବ୍ଦ ପରେ 'ମସିହା' ଲେଖାଯାଏ, ଯଥା:—(ଦେଶୀୟ) ସନ ୧୩୨୯ ସାଲ, (ଇଂରାଜୀ) ସନ ୧୯୦୧ ସାଲ ବା ମସିହା । ]

-୨୦-

ଜରିମୁହାଁ—ଯେଉଁ ଲୁଗାର ମୁହଁ ବା ପ୍ରାନ୍ତରେ ଜରି ବୁଣା ହୋଇଥାଏ ।

ଢାଲଆ—ବିସ୍ତୃତ ।

ପାଗ୍ଡ଼ି—ଉତ୍ତରୀୟ, ଚାଦର ।

ଫୁଲପକା—ଯାହା ଉପରେ ଫୁଲ ଚିତ୍ରିତ ହୋଇଥାଏ ।

ଯାଉଁଳ--ଯୋଡ଼ା ।

ସ୍ଟାମ—Stamp, ଦଲିଲ ଆଦି ଲେଖାହେବା ପାଇଁ ସରକାରଙ୍କ ମୂଲ୍ୟମିଶ୍ର କାଗଜ ।

ଅସଲ—କୌଣସି ଦଲିଲର ମୌଳିକ ପାଣ୍ଡୁଲିପି ବା ଖସଡ଼ା ।

ସଫି—ଅସଲରୁ ବା ପାଣ୍ଡୁଲିପିରୁ ଅବିକଳ ହୋଇ ନକଲ କରାଯାଇଥିବା ଲେଖା ।

କାଜଖାନା—ରେଜେଷ୍ଟ୍ରି ଅଫିସ । ଓଡ଼ିଶାରେ ଇଂରେଜୀ ଅମଳ ଆରମ୍ଭରେ କାଜିମାନେ ଦଲିଲମାନ ରେଜେଷ୍ଟ୍ରି କରୁଥିଲେ ।

କବାଲା—ଭୂମି ଆଦିର ବିକ୍ରୟ ପତ୍ର ।

ରେଜେଷ୍ଟ୍ରର—ନିର୍ଦ୍ଧାରିତ ନିୟମାନୁସାରେ ନିର୍ଦ୍ଧାରିତ ବିଷୟମାନ ଲିପିବଦ୍ଧ କରିବା କାର୍ଯ୍ୟ ।

ବେପରବାୟ – ନିର୍ଭୟ ଚିତ୍ତରେ, ନିଶ୍ଚିନ୍ତ ମନରେ ।

ହାଜତ ଖାନା—ବିଚାର ଶେଷ ପୂର୍ବରୁ ଆସାମୀକୁ ଯେଉଁ ଘରେ ଅବରୁଦ୍ଧ କରି ରଖାଯାଏ ।

-୨୧-

ପାଲା – ଧର୍ମ ସଙ୍ଗୀତସହ ନୃତ୍ୟ ଗୀତାଦି ।

ବାଦିପାଲା—ଲଢ଼େଇ ପାଲା, ଯେଉଁ ପାଲାରେ ଏକାଧିକ ପାଲାବାଲାଦଳ ଆପଣା ଆପଣା ଯୋଗ୍ୟତା ଦେଖାନ୍ତି ।

ଦୋହରା ( ଦଉରା )—ହାଇକୋର୍ଟ ଓ ସେସନ୍ ଜଜ୍‌ଙ୍କ ଦ୍ୱାରା ଗୁରୁତର ଅପରାଧମାନଙ୍କ ବିଚାର ।

ଦୋହରସପ୍ରୋଦ ( ଦଉରା ସୁପର୍ଦ )—ଗୁରୁତର ଅପରାଧରେ ଅଭିଯୁକ୍ତ ବ୍ୟକ୍ତିକୁ ବିଚାର ନିମନ୍ତେ ମାଜିଷ୍ଟ୍ରେଟଙ୍କ ଦ୍ୱାରା ସେସନ୍ କୋର୍ଟକୁ ପ୍ରେରଣ ।

ଫୌଜଦାରୀ ମାମଲା—ଅପରାଧଘଟିତ ମକଦ୍ଦମା ।

ତରଜମା—ଅନୁବାଦ ।

ଆସାମୀ—ମୁଦାଲା, ଫଉଜଦାରୀ ଅଦାଲତରେ ଅପରାଧରେ ଅଭିଯୁକ୍ତ ବ୍ୟକ୍ତି ।

ପୋଷ୍ଟମର୍ଟେମ ଏକଜାମିନ—ମୃତ୍ୟୁର ପରକାଳୀନ ପରୀକ୍ଷା ।

ମିଲଟେରି ଡିପାର୍ଟମେଣ୍ଟ—ସାମରିକ ବିଭାଗ ।

ପ୍ରମୋସନ—ପଦୋନ୍ନତି ।

ମିସଲ—ବିଚାରାସନ; ଅଦାଲତରେ ବିଚାରପତିଙ୍କ ବସିବାର ସ୍ଥାନ ।

ନନ୍‌ସେନ୍‌ସ—ଅନର୍ଥକ ବାକ୍ୟ, ଅସଙ୍ଗତ ବାକ୍ୟ ।

ବେହୁଦା—ଅନ୍ୟାୟ; ଅନୁଚିତ ।

କେନ୍‌ସଲ କରଦେଗା—ଲୋପ କରିଦେବୁଁ ।

ବେଁ—ପ୍ରାୟ ୪ ହାତ ।

ଟିଫିନ୍—ମଧ୍ୟାହ୍ନର ଜଳଖିଆ ।

ସେରସ୍ତାଦାର—ଅଫିସର ପ୍ରଧାନ କର୍ମଚାରୀ ।

ରୋବକାରୀ—ରୁବକାରିରେ ମକଦ୍ଦମା ସଂକ୍ରାନ୍ତ ସମସ୍ତ ଜ୍ଞାତବ୍ୟ ବିଷୟର ବିବରଣ ଓ ଅଦାଲତଙ୍କ ମୀମାଂସାର ହେତୁବାଦ ଓ ଗୃହୀତ ପ୍ରମାଣର ସାରାଂଶ ଲିପିବଦ୍ଧ ହୋଇ ତାହା ହାକମଙ୍କ ଦସ୍ତଖତ ଓ ମୋହରଯୁକ୍ତ ହୋଇଥାଏ ।

ଇଜଲାସ୍—ବିଚାରପତିଙ୍କ ବୈଠକ ସ୍ଥାନ ।

ମିଲକୟତ୍—ଜମିଦାରୀ, ଭୂସମ୍ପତ୍ତି ।

ସେସନ ( ସେସନ୍‌ସ )—ଗୁରୁତର ଫଉଜଦାରୀ ମାମଲା ( ଯଥା:—ନରହତ୍ୟା, ଗୁରୁତର ଆଘାତ ଡକାଏତି ) ମାନଙ୍କ ବିଚାର କରିବା ପାଇଁ ପ୍ରତିଷ୍ଠିତ ଅଦାଲତ ।

ସପ୍ରୋଦ—ସମର୍ପଣ ।

ପାନିଆ ଲୁଗାବୁଣା ସମୟରେ ଟାଣୀ ସୂତାକୁ ଧାରାମତେ ଟାଣି ଧରିବା ନିମିତ୍ତ ବ୍ୟବହୃତ କଙ୍କତିକା ସଦୃଶ ଯନ୍ତ୍ରବିଶେଷ ।

ଡଙ୍ଗୀ—କଣ୍ଡା, ଲୁଗାକୁ ତନ୍ତରେ ବୁଣିବା ପାଇଁ ଭରଣୀ ସୂତା ଗୁଡ଼ିଆ ହୋଇଥିବା କାଠି ।

ନରାଜ [ ନରାଜୁ ]—ଯେଉଁ ଦାରୁ ଦଣ୍ଡରେ ତନ୍ତୀଙ୍କର ଲୁଗାବୁଣା ପାଇଁ ଟାଣି ସୂତା ଗୁଡ଼ିଆ ହୋଇଥାଏ; ତନ୍ତକାଠ ।

ଚରଖା [ ଚରକା ] –ସୂତା କାଟିବାର ଚକ୍ରଯୁକ୍ତ ଯନ୍ତ୍ର, ଅରଟ ।

ସିବିଲକୋଟ—ଦେବାନି ଅଦାଲତ ।

ଜୁମିଲାକୁ – ବାବଦକୁ ।

ଜେଲ ଓଆରଣ୍ଟ—କାରାବାସ ସକାଶେ ଆଦେଶ-ପତ୍ର ବା ପରବାନା ।

ସାବ୍ୟସ୍ତ—ଉତ୍ତମରୂପେ ପ୍ରମାଣିତ ।

ଗଠିତ—ରଚିତ, ମନଗଢ଼ା ।

ସୂତ୍ରପାତ—କୌଣସି ବିଷୟର ଆରମ୍ଭ ।

ବୟାନ କରିବା—ବର୍ଣ୍ଣନା କରିବା ।

ମସିହା—ଖ୍ରୀଷ୍ଟାବ୍ଦ, ଇଂରାଜୀ ସନ ।

ପରବାଏ—ଚିନ୍ତା, ଉଦ୍‌ବେଗ ।

ବେଧଡ଼କ – ଭୟ ନ କରି ।

ପେଡ଼ିବା—ଦଳିବା, ପେଷିବା ।

ସୁପ୍ରିମକୋର୍ଟ—କଲିକତାରେ ଇଷ୍ଟଇଣ୍ଡିଆ କମ୍ପାନୀଙ୍କ ପ୍ରତିଷ୍ଠିତ ସର୍ବୋଚ୍ଚ ଅଦାଲତ । ଏହି ଅଦାଲତ ପ୍ରଥମେ ସଦର ଦେବାନୀ ଅଦାଲତ ଥିଲା, ପରେ ସୁପ୍ରିମକୋର୍ଟ ହେଲା; ବର୍ତ୍ତମାନ କଲିକତା ହାଇକୋର୍ଟରେ ପରିଣତ ହୋଇଅଛି ।

ଅପୀଲ—ନିମ୍ନ ହାକିମଙ୍କ ହୁକୁମ ବିରୁଦ୍ଧରେ ଉପରିସ୍ଥ ହାକିମଙ୍କଠାରେ ବିଚାର ପ୍ରାର୍ଥନା ।

ଖଲାସ—କାରାମୁକ୍ତ ।

-୨୨-

ସାତପାଞ୍ଚ—ସାତ ହାତ ଲମ୍ବ ଓ ପାଞ୍ଚ ହାତ ଚଉଡ଼ା ।

ମେଲା – ଅନ୍ତତଃ ଗୋଟାଏ କାନ୍ଥ ନ ଥିବା ଘର ।

ବାଟୋଇ – ପଥିକ ।

ଫନ୍ଦା – ଜୀବିକା ନିର୍ବାହର ଉପାୟ, ବୃତ୍ତି ।

ପସରା – ପଣ୍ୟାଧାର, ବିକ୍ରେୟ ଦ୍ରବ୍ୟ ରଖିବା ଗୁଣ୍ଡୁଗ୍ଡା ।

ଧାମ – ବାସସ୍ଥାନ ।

ଜଠା – ପିନ୍ଧିବା ଲୁଗା ।

ବୋକଟ – ଲୁଗାପଟା ଆଦିର ବଡ଼ ଗଣ୍ଠିରି ।

କୁମ୍ଭକର୍ଣ୍ଣୀ – [ପୂର୍ବେ କୁମ୍ଭକର୍ଣ୍ଣରେ ପ୍ରସ୍ତୁତ ହୋଇ-ଥିବାରୁ] ଏକପ୍ରକାର ସୂତା ଶାଢ଼ୀ ।

ଚଉତ – କେତେଗୁଡ଼ିଏ ଭାଙ୍ଗରେ ଭଙ୍ଗା ହୋଇଥିବା [ଲୁଗା] ।

ଉପରଣା – ସ୍ତ୍ରୀଲୋକମାନେ ପିନ୍ଧିବା ଲୁଗା ଉପରେ ଘୋଡ଼ହେବା ଚାଦର ।

ଭେକ – ପୋଷାକ, ବେଶ, ପରିଚ୍ଛଦ ।

ଆଣ୍ଟୁଆ – ଟାଣୁଆ, ଧନୀ ।

ପଟି – ପଥର ଚଟେଇ ।

ଚକା—ଦୁଇ ଜାନୁକୁ ପରସ୍ପର ଛନ୍ଦି ବସିବା ଆସନ, ପଦ୍ମାସନ ।

ଟ୍ରେପାଳଆ—ଟ୍ରେପା ଲଗିଥିବା ।

ନିଆଁ ବରିଆ—ଅଗ୍ନିସଞ୍ଚୟ କରିବାପାଇଁ କୁଟାରେ ବଳାଯାଇଥିବା ଲମ୍ବା ମୋଡ଼ା ।

ଗ୍ରମୁ—ରାଜାଙ୍କୁ ଆପଣ ବୋଲି ନ କହି ଗ୍ରମୁ ସମ୍ବୋଧନ କରାଯାଏ ।

କାଣ୍ଡିଆ—ତୁଷ ଆଦି ପରିଷ୍କୃତ ହୋଇଥିବା ।

ନବାତ—କନ୍ଦ, ସଫା କରାଯାଇଥିବା ଗୁଡ଼ ।

ଖଦା—ବଡ଼ଲୋକଙ୍କ ରୋଷେଇ ବା ପାକଶାଳା ।

ମୁଗଜାଇ—କଞ୍ଚା ମୁଗରୁ ଚୋପା ବାହାର କରାଯାଇ ଡାଲି ରାନ୍ଧିବା ପାଇଁ ପ୍ରସ୍ତୁତ କରାଯିବା ଫାଳମାନ ।

ଅନ୍ଧାରକଣା—ଅନ୍ଧାର ବା ରାତିରେ କଣା ବା ଦୃଷ୍ଟିହୀନ ।

ନଉଁଛଣା—ତୁଚ୍ଛ, ହୀନ, ଘୃଣ୍ୟ ।

ଗୁଡ଼େଇ ପୁଡ଼େଇ ହେବା—ଘାଣ୍ଟିହେବା, ଉଦ୍‌ବେଳିତ ହେବା ।

ନିଶୂନ—ନିସ୍ୱନ, ନିଶବ୍ଦ ।

ରବାଇ ଖବାଇ—ଅସୂସ୍ଥାବଶତଃ ହୃଦୟରେ ଅଶାନ୍ତ ଅନୁଭବ କରି ।

ସାକୁଲାଇବା—କାକୁତି ମିନତି କରିବା ।

କାଉଳି—ବ୍ୟାକୁଳ । ତରଟି ମରଟି ଚୁହିଁବା—ଆଖିର ଡୋଳାକୁ ବିସ୍ତାର କରି ଚୁହିଁବା ।

ଠୁଙ୍ଗାହୋଇ ବସିବା—କେବଳ ଗୋଡ଼ର ତଳପାକୁ ଭୂମିରେ ଲଗାଇ ଦେହର ଅନ୍ୟ କୌଣସି ଅଂଶ ଭୂମିରେ ନ ଲଗାଇ ବସିବା ।

ତୋଟି—ତଣ୍ଟି, କଣ୍ଠନଳୀ ।

ଠଣା—କାନ୍ଥକୁରୁ ।

ମୁଠି—ଭଣ୍ଡାରିମାନଙ୍କର କ୍ଷୁର ଆଦି ରଖିବାର କନାର ବା ଚମଡ଼ାର ମୁଣି ।

ଶୂକସ୍ୱ—ମାଣ୍ଡି ଘୁଷୁରି ।

କେନ୍ଦୂଆ—ତନ୍ତ୍ରୀବାଦ୍ୟ; ଏକପ୍ରକାର ଶ୍ରେଷ୍ଠ ବାଦ୍ୟ ।

-୨୩-

ଗଣ୍ଡ—ଗଭୀର ଜଳ ଥିବା ସ୍ଥାନ ।

ଗୋମୁହାଁ—ଏକ ଜାତି କୁମ୍ଭୀର; ଏମାନେ ମନୁଷ୍ୟ ଓ ଗୋରୁ ଆଦି ଜୀବଙ୍କୁ ପାଟିରେ ଧରି ପାଣିକୁ ନେଇ ଯାଆନ୍ତି ଏବଂ ପରେ ତାକୁ ଖଣ୍ଡ ଖଣ୍ଡ କରି ଖାଆନ୍ତି ।

ଦାଢ଼ଆଣି ଥଣ୍ଟିଆ କୁମ୍ଭୀର ।

ଘଡ଼ିଆଳ—ଘଡ଼ମୁହାଁ ବଡ଼ କୁମ୍ଭୀର । ଏହାରଦାଢ଼ି ଉପରେ ଗୋଟିଏ ଘଡ଼ ପରି ପାଷାକୃତି ଗହ୍ୱର ଥାଏ ।

ଗଣ୍ଡିରି—ବଡ଼ ବୋକଟ । ସଅଲେ—ଶୀଘ୍ର ।

ଉମ୍ନେଇ—ଅଗ୍ନି ରଖିବାର ମାଟି ପାତ୍ର ।

ଘରଆଡ଼—ସ୍ତ୍ରୀ ।

ନାଉରି—ନୌକାବାହୀ, ନୌକାଚାଳକ ।

ପଟ୍ଟାର—ଡଙ୍ଗାରେ ଚଢ଼ି ପାର ହେଉଥିବା ଯାତ୍ରୀ ।

ଆଉଲି—ଡଙ୍ଗାକୁ ଚଳାଇବାପାଇଁ ବ୍ୟବହୃତ ପକ୍ଷଯୁକ୍ତ ଦଣ୍ଡ ।

ଟୋପର—ବାଉଁଶପାତିଆ ବା ତାଳପତ୍ରରେ ପ୍ରସ୍ତୁତ ମୁଣ୍ଡର ଆବରଣ ବା ଢାଙ୍କୁଣି, ଝାମ୍ପି ।

ଚଙ୍ଗ ଚଙ୍ଗ ହେବା—ଅସ୍ଥିର ହେବା ।

ଟପା—ଯେଉଁ ଲୋକ ଡାକଥିଲ ବହେ ।

ମଙ୍ଗ—ନୌକାର ମୁଣ୍ଡ । ଡଙ୍ଗାର ଆଗ ପାଖର ମଙ୍ଗକୁ ଆଗମଙ୍ଗ ଓ ପଛ ପାଖର ମଙ୍ଗକୁ ପଛମଙ୍ଗ କହନ୍ତି ।

ଫଗୁ—ଅବିର ।

ଟହଟହ—ଅତ୍ୟନ୍ତ ଗାଢ଼ (ରକ୍ତବର୍ଣ୍ଣ) ।

ଡେମ୍ଫ—ବିସ୍ତାରିତ କରତଳର ବୁଢ଼ା ଆଙ୍ଗୁଠି ଅଗରୁ ବଣି ଆଙ୍ଗୁଠି ଅଗ ପର୍ଯ୍ୟନ୍ତ ବିସ୍ତାରର ପରିମାଣ । [ ବିସ୍ତୃତ କରତଳର ବୁଢ଼ା ଆଙ୍ଗୁଠିର ଅଗଠାରୁ କାଣି ଆଙ୍ଗୁଠିର ଅଗ ପର୍ଯ୍ୟନ୍ତ ବିସ୍ତୃତିକୁ ଚୁଖଣ୍ଡ ବୋଲାଯାଏ ]

ଅଙ୍କ—ରଜାଙ୍କ ସିଂହାସନାରୋହଣଠାରୁ ଗଣାଯିବା ବର୍ଷ ।

କୁମ୍ଭମାସ—ସୌରମାନ ଫାଲ୍‌ଗୁନ ମାସ ।

ଗୁଜା—ଋଣପତ୍ର, ତମସୁକ ।

—୨୪—

ଗଣ୍ଠିଲ—ବହୁ ଗ୍ରନ୍ଥିଯୁକ୍ତ ।

ଝାମ—ମୂର୍ଚ୍ଛା ।

ଫାଣ୍ଡି—ପୁଲିସ ରଖାଯାଇଥିବା ଗ୍ରାମ୍ୟକେନ୍ଦ୍ର । ଫାଣ୍ଡିରେ ଉଚ୍ଚତମ କର୍ମଚାରୀ ଜମାଦାର ଅଟନ୍ତି ।

ରବେସ୍ତା — ଜବର୍‌ଦସ୍ତ, କଡ଼ା ।

ଜବେ — ହଲାଲ୍, ମୁସଲମାନମାନଙ୍କ ଦ୍ୱାରା କୋରାନର ନିର୍ଦ୍ଦିଷ୍ଟ ମନ୍ତ୍ର ପାଠପୂର୍ବକ ପଶୁପକ୍ଷୀ ଆଦିଙ୍କର କଣ୍ଠଚ୍ଛେଦନ ।

କାହାଣ — ଷୋଳପଣ, ୩୨୦ ପୁଞ୍ଜା, ୧୨୮୦ ଗୋଟା ।

ଭଣ ଭଣ—ମାଛି ପ୍ରଭୃତିର ଶବ୍ଦ ବିଶେଷ ।

ବହଳ — ମୋଟା ।

ଓଳିଆ—ଶସ୍ୟାଦି ସଞ୍ଚୟ କରିବା ନିମନ୍ତେ କୁଟା ବା ପାଳର ପୋଟଳ ।

ଲେକିନ୍ — କିନ୍ତୁ ।

ଆଗେଜ — (ଫା-ହରଗିଜ୍) ଆଦୌ, କଦାପି ।

ପାହୁଡ଼—ଗୋଡ଼ର ବଳା ।

ଗୋଛି — ଗୁଳ୍ଫମୂଳ, ଗୋଡ଼ର ଶିରାମାନ ଗୋଇଠି ଉପରେ ଯେଉଁଠାରେ ଏକତ୍ର ହୋଇଥାଏ ।

ଗୋଡ଼ ପାପୁଲି—ପଦପୃଷ୍ଠ । ପାଦ ତଳକୁ ତଳିପା ଓ ପାଦପୃଷ୍ଠକୁ ପାପୁଲି ବୋଲାଯାଏ ।

ଇଜାହାର—ପୁଲିସ ନିକଟରେ ଦେବା ଅପରାଧର ଖବର ।

ବିଷ୍ଣୁ ବୃକ୍ଷ — ତୁଳସୀ ଗୁଳ୍ମ ।

ଦାନ୍ତରେ ତୃଣ ଦେଇ ନାହିଁ — ନିର୍ଜଳ ଉପବାସ କରିଛି ।

ଦାନ୍ତରେ ତୃଣ ଦେବା—କିଛିମାତ୍ର ଖାଇବା (ଓଡ଼ିଆ ଭାଷାକୋଷ) । ଏଠାରେ ତୃଣ ବା ତୃଣ ଅର୍ଥ ଘାସ ବା କୁଟା ନୁହେଁ, କୌଣସି ସାମାନ୍ୟ ଖାଦ୍ୟପଦାର୍ଥ ଅର୍ଥରେ ଏହା ବ୍ୟବହୃତ ହୋଇଅଛି ।

ବାଧିକବା—ପ୍ରାଣାନ୍ତକ ପୀଡ଼ିତ ହେବା ।

କମବଖତ୍—ହତଭାଗ୍ୟ ।

ହାରାମଜାଦ — ପାଜି, ଦୁଷ୍ଟ ।

କୋଳଥିଆ — କୋଳଥ ପରି ମାଟିଆ ରଙ୍ଗ ବିଶିଷ୍ଟ ।

ନାଗ — ଗୋଖର ସାପ ।

ଛାଟିଆ — ପାଇକ, ଚୌକିଆ । ଏମାନେ ପହରା ଦେବାପାଇଁ ହାତରେ ବେତ ଧରିଥିବାରୁ ଏମାନଙ୍କୁ ଛାଟିଆ କୁହାଯାଏ ।

ସକ୍ — ସନ୍ଦେହ ।

ଦାୱାଦାବା — ଅପରାଧର ଅଭିଯୋଗ ।

ରିପୋର୍ଟ — କୌଣସି ଘଟନା ଲିଖିତ ବିବରଣୀ ବା ବୃତ୍ତାନ୍ତ ।

ଖତମ୍ — ଶେଷ, ସମାପ୍ତି ।

ବ୍ରେସମ୍ — ବକ୍‌ସିସ୍, ପୁରସ୍କାର ।

ଫୁଲନ୍ଦା — ବଡ଼ ଲଫାଫା

ଖୋଦା — ଈଶ୍ୱର ।

ପେତ୍ତୁଣୀ — ମୃତ ସ୍ତ୍ରୀଲୋକର ଆତ୍ମା ।

-୨୪-

ଗଡ଼ିଆର — ମୌଜାର ନିମ୍ନ ସମତଳ ଅଞ୍ଚଳ ।

ପୋବାର — ପଶା ଖେଳର ଦାନବିଶେଷ; ୧୩ ସଂଖ୍ୟକ ଦାନ; [ ଗୋଟିଏ କାଠିରେ ୬, ଅନ୍ୟଟିରେ ୬ ଓ ଆଉ ଗୋଟିକରେ ୧ ବିନ୍ଦୁ ପଡ଼ିଲେ ଏହି ଦାନ ହୁଏ ) ଆନନ୍ଦ ବା ଲାଭ ।

କାଉଳ — ବ୍ୟାକୁଳ ।

ଗ୍ରାମୁକରଣ — ରାଜା ବା ବଡ଼ଲୋକଙ୍କ ହିସାବପତ୍ର ରକ୍ଷକ, ପେସ୍କାର ।

ଦ୍’ପାଣିଆ—ଦୁଇ ବର୍ଷ ହଳ ବା ଶଗଡ଼ରେ ଲଗାଯାଇଥିବା [ ବଳଦ ] ।

ଗୋଆଲ—ଗଉଡ଼ ।

ଗୋଠ—ଗୋରୁ ଇତ୍ୟାଦିଙ୍କ ପଲ ।

ବଣା—ପଥଭ୍ରାନ୍ତ, ପଥଭ୍ରଷ୍ଟ ।

ବରତନ—ବେତନ ।

ତୁଳ—ସୌରମାନ କାର୍ତ୍ତିକ ମାସ ।

ଆଶୁଧାନ—ଯେଉଁ ଧାନ ଶୀଘ୍ର ପାଚେ, ବିଆଳି ଧାନ ।

ଶୁକ୍ରବାର—କଟା ଆରମ୍ଭ, କଟା ଅନୁକୂଳ । ଶୁକ୍ରବାର ଦିନ ଧାନକଟା ଆରମ୍ଭ ହୁଏ । ସେଦିନ କଟାଯାଇଥିବା ବଡ଼ାକୁ କୃଷକ ଅତି ଯତ୍ନ ସହିତ ରଖେ ଏବଂ ଧାନକଟା ଶେଷରେ ସେ ଧାନରୁ ଚାଉଳ ବାହାର କରି ଖେଚେଡ଼ି, କ୍ଷୀରି ଆଦି କରି ମହାଲକ୍ଷ୍ମୀଙ୍କ ଭୋଗ କରେ ଓ ନିଜେ ଖାଏ ।

ବେଗଡ଼ା—ଦୁଷ୍ଟ ।

-୨୭-

ଅଧୋଡ଼ା—ଦରବୁଢ଼ା ।

ଖଞ୍ଜଣୀ—ଚର୍ମାବୃତ କ୍ଷୁଦ୍ର ବାଦ୍ୟ ।

ଭେକ ନେବା—ଗୁରୁଙ୍କଠାରୁ ମନ୍ତ୍ରଗ୍ରହଣ ସମୟରେ ଡୋର କୌପୁନି ଆଦି ଗ୍ରହଣ କରି ବୈଷ୍ଣବ ହେବା ।

ନିର୍ଜଗାମ ଯଦା ଲକ୍ଷ୍ମୀଃ ଗଜଭୁକ୍ତ କପିତ୍ଥବତ୍—ଲକ୍ଷ୍ମୀ ଛାଡ଼ି ଗଲବେଳେ ଗଜ ଖାଇଲା କଇଥ ଭଳି ମନୁଷ୍ୟର ଘର ଭିତର ଫମ୍ପା କରି ଦେଇ ଯାଆନ୍ତି । ପ୍ରବାଦ ଅଛି ଯେ, ହାତୀକୁ କଇଥ ଫଳ ଖାଇବାକୁ ଦେଲେ ହାତୀ ଲଣ୍ଡିରେ କଇଥଟି ଗୋଟାସୁଦ୍ଧା ବାହାରେ; କିନ୍ତୁ ସେ କଇଥ ମଧ୍ୟସ୍ଥ ଶସ କିଛି ନ ଥାଏ ଓ କଇଥଟି ଫମ୍ପା ବାହାରେ ।

-୨୭-

ଘଣା—ତୈଳବୀଜ ପେଡ଼ିବାର ଯନ୍ତ୍ର ।

ପହର—ତିନି ଘଣ୍ଟା, ଚାରି ଦଣ୍ଡ, ଦିବସର ବା ରାତିର ଚାରି ଭାଗରୁ ଏକ ଭାଗ ସମୟ ।

ଆଡ଼ବାଙ୍କ—ସାମାନ୍ୟ ବ୍ୟତିକ୍ରମ ।

ପାରିବା—ଭୂଇଁରେ ବିଛାଇବା ।

ଆତ୍ମାନଂ ସତତଂ ରକ୍ଷେତ୍—ନିଜକୁ ସର୍ବଦା ରକ୍ଷା କରିବା ।

ଅଣ୍ଡିରି—ଅଣ୍ଡିରା ବାଛୁରି, ଦାମୁଡ଼ି ।

ପହ୍ଲାଣ—ବଳଦ କମ୍ବା ହାତୀ ଉପରେ ପଡ଼ିବା ଅଖାର ବିଛଣା ବା ଗଦି ।

## ଉପସଂହାର

ନଡ଼ବଡ଼ ହେବା—ହଲିବା ।

ଡାକଫୁକାର—ବିଖ୍ୟାତ ।

ପାଛୁଡ଼ା—ଘରଦର ।

ବଟୁଆ—ପାନଗୁଆ ପ୍ରଭୃତି ରହିବାର ବସ୍ତ୍ରନିର୍ମିତ ଥଳୀ ବିଶେଷ ।

ନିଦାନ—ଲ କାରଣ ପ୍ରସୂତ (ରୋଗ) ।

ଦଦେଇ—ପିତାଙ୍କ ଜ୍ୟେଷ୍ଠଭ୍ରାତା, ଦେଉଳୁତା ।

ମଳ୍ଲ—ରୋଗୀ ।

କଣ୍ଠାଶ୍ଳେଷ ଇତ୍ୟାଦି—

"ମେଘାଲୋକେ ଭବତି ସୁଖିନୋଽପ୍ୟନ୍ୟଥାବୃତ୍ତିଚେତଃ
କଣ୍ଠାଶ୍ଳେଷପ୍ରଣୟିନିଜନେ କିଂ ପୁନର୍ଦୂରସଂସ୍ଥେ ।"

( ମେଘଦୂତଃ )

ଗ୍ରୀଷ୍ମପ୍ରଧାନ ଦେଶରେ ଅସହ୍ୟ ଗ୍ରୀଷ୍ମଋତୁର ଅବସାନରେ ଆଷାଢ଼ ମାସରେ ବର୍ଷାଋତୁର ଆରମ୍ଭ ହୁଏ । ମେଘ ଦେଖିଲେ ଏହି ବର୍ଷାଋତୁ କଥା ମନେପଡ଼େ । ଯେଉଁମାନେ ନିଜର ସ୍ତ୍ରୀ ସହିତ ସୁଖରେ ବାସ କରୁଅଛନ୍ତି, ସେମାନେ ମଧ୍ୟ ଏହି ମେଘ ଦେଖି ଏବଂ ବର୍ଷାଗମ କଥା ଭାବି ବିକାରଗ୍ରସ୍ତ ହୁଅନ୍ତି । ଯେଉଁମାନେ ବିରହୀ ଏବଂ ନିଜର ସ୍ତ୍ରୀଠାରୁ ଅନେକ ଦୂରରେ ବାସ କରୁଅଛନ୍ତି ଏବଂ ପ୍ରୀକଣ୍ଠାଲିଙ୍ଗନପ୍ରୟାସୀ ଏହି ମେଘ ଦେଖିଲେ ସେମାନଙ୍କ ମନରେ କି ଉତ୍ତେଜନାର ଉଦୟ ହେଉଥିବ, ତାହା ସହଜରେ ଅନୁମେୟ ।

ଶ୍ଳେଷ୍ମା — କଫ, ସର୍ଦ୍ଦି ।

ସ୍ୱର୍ଣ୍ଣାଜଷ୍ଟଗୁଣଂ ଶୋଥଂ — ( ଔଷଧ ପ୍ରସ୍ତୁତ କରିବା ସକାଶେ ) ସୁନା ଏବଂ ତାହାର ଆଠଗୁଣ ପୁରୁଣିଶାଗ ନେବ । ଶୋଥର ଦୁଇଟି ଅର୍ଥ ଅଛି — (୧) ପୁରୁଣିଶାଗ ଓ (୨) ଦେହଫୁଲା ରୋଗ ।

କସ୍ତୁରୀ ତିଳକଂ — ମୃଗନାଭି ମସ୍ତକରେ ତିଳକ-ସ୍ୱରୂପ ବ୍ୟବହାର କରିବା ।

ମାଢ଼ — ୪ ଧାନ = ୧ ରତି ।

୪ ରତି = ୧ ଚନା ।

୨ ଚନା = ୧ ମସା ।

୪ ମସା = ୧ ମାଢ଼ ।

୨ ମାଢ଼ = ୧ ତୋଳା ।

ଅନୁପାନ — ଔଷଧ ସହିତ ବା ପରେ ସେବନୀୟ ନିର୍ଦ୍ଦିଷ୍ଟ ପାନୀୟ ।

ମୁସ୍ତକଂ — ମୁଥା, ଘାସର ମୂଳ ।

କଟୁକୀ — ଶାକଲତା ବିଶେଷର ମୂଳ, ଏହା ଔଷଧରେ ବ୍ୟବହୃତ ହୁଏ ।

ରଜନି — ହରିଦ୍ରା, ହଳଦୀ । ଏହାର ଅନ୍ୟ ଅର୍ଥ ରଜନୀ ।

ଶୁଣ୍ଠି — ଶୁଖିଲା ଅଦା ।

ଏବ ଚ — ଆହୁରି ମଧ୍ୟ ।

ବଚ — କଚୁ ଆଦି ବର୍ଗର ଶାକବିଶେଷ । ଏଥିର ମୂଳ ଔଷଧରେ ବ୍ୟବହୃତ ହୁଏ ।

ମୁଥ — ଆଘାତୋଦ୍ୟତ ଆବଦ୍ଧ ମୁଷ୍ଟି ।

ଅନୁପାନ ବିଶେଷଣ ଇତ୍ୟାଦି — ଏକ ଔଷଧ ଭିନ୍ନ ଭିନ୍ନ ଅନୁପାନରେ ସେବନ କଲେ ଭିନ୍ନ ଭିନ୍ନ ଗୁଣ କରେ ।

ଘୁଇନିଦ — ସାମାନ୍ୟ ନିଦ୍ରା, ତନ୍ଦ୍ରା ।

ଲହି ଲହି କରି — ଇତସ୍ତତଃ ସଞ୍ଚାରିତ କରି ।

ନଟି — ନଟେଇ, ସୂତା ଗୁଡ଼େଇବାରେ ବ୍ୟବହୃତ ତନ୍ତ୍ରୀର ଯନ୍ତ୍ରବିଶେଷ ।

# ମାମୁ

-୧-

## ଦାଶରଥି ଦାସଙ୍କ ପରିବାର

ବୈକୁଣ୍ଠ ସମାନ ଆହା ଅଟେ ସେହି ଘର,
ପରସ୍ପର ସ୍ନେହ ଯହିଁ ଥାଏ ନିରନ୍ତର ।

(ଗୁଚ୍ଛମାଳା)

ବାବୁ ଦାଶରଥି ଦାସ କଟକ କଲେକ୍ଟରୀ ମୁନ୍‌ସିଖାନାର ମୋହରିର । ଦରମା ଅଳ୍ପ—ଯେ କର୍ମରେ ଥିଲେ, ସେଥିଲେ ଉପରି ରୋଜଗାରର ଖୁବ୍ ଗୋଟାଏ ବାଟ ନ ଥିଲା । ହେଲେ କଣ ହେବ, କରଣଘର ପିଲା—ସମୁଦ୍ର ଢେଉ ଗଣି ରୋଜଗାରିଆ ଜାତି, ଅକାଳେ ସକାଳେ ଟଙ୍କାଏ ମିଷାଏ ହାତଫେଡ଼ ନ ହୁଏ, ଏମନ୍ତ ନୁହେଁ । ନୋହିଲେ ମାନ ମହତ୍ତ୍ୱକୁ ଜଗି ସଂସାରଟା ଚଳିବ କିଆଁ ? କଟକ ସାବଜାଦା ବଜାରରେ ବସା—ନିଜ ଘର ସୁମଡ଼ା ପରଗଣା ଜଗତ୍‌ସିଂହପୁର ନିକଟ ରୁକୁଣାଦେଈପୁର । ଗୋଟିଏ ଚାକର ନ ହେଲେ ଅଚଳ, ଚାକର ମୁନିବ ଦୁଇଜଣ ବସାରେ ଥାଆନ୍ତି । ଚାକରଟି ସ୍ୱଜାତି—ରୋଷେଇବାସ, ବସାର ଆଉ ଆଉ ସବୁ କାମ ପାଇଟି ସୁରଖୁରରେ ଚାଲିଯାଏ । ଦିନକୁ ଦିନ ବଜାର ସଉଦା ବଳି ପଡ଼ିଲା । ଚାକରଟି ଏଣିକି ହୁସିଆର ହେଲାଣି, ତାହାର ପେଟପାଟଣା ଅଛି ତ ? ସାନଠାରୁ ବଡ଼ ଯାଏ ପେଟପାଟଣା କାହାର ନ ଥାଏ ? ଦାସେ ଦେଖିଲେ ଅଳ୍ପ ରୋଜଗାରରେ ଦୁଇ ଜାଗା ଘର ଚଳାଇବା ଏଣିକି ହେଟକାଟ । ଚାକର ଯେତେ ବିଶ୍ୱାସୀ ହେଉ ପଛକେ ଯେତେ ହେଲେ ସେ ଚାକର । ବିଶେଷରେ ପିଲା ଦିଓଟି ବଡ଼ି ଗଲେଣି, ଦୁଇ ଅକ୍ଷର ଇଂରେଜୀ ନ ପଢ଼ାଇ ଦେଲେ ନୁହେ । ଚାକିରିଆ ଜାତି, ଏଣିକି ଇଂରେଜୀ ନ ଜାଣିଲେ ଚାକିରି ଘଟିବା ମୁସ୍କିଲ । ଏହିପରି ନ'ଛ ଭାବି ଚିନ୍ତି ପରିବାର ଚଳିବା ଭଳି ଟିକିଏ ବଡ଼ ରକମ ଗୋଟିଏ ବସାଘର କଟକ ଦରଘା ବଜାରରେ ଠିକ୍ କଲେ । ଗ୍ରାମରୁ ପରିବାରମାନେ ଆସିଗଲେ । ପରିବାର ମଧ୍ୟରେ ସ୍ତ୍ରୀ ମେନକା ଦେଈ, ବଡ଼ ପୁଅ ବାନାବର, ସାନ ନଟବର ଆଉ ସରସ୍ୱତୀ ଦେଈ । ମେନକା ଦେଈଟା ରୋଗିଣୀ—ଛ'ଦିନରେ ନ' ରୋଗ । ଆଜି ପେଟବଥା, କାଲି ବାଡ଼ିକି, ସଞ୍ଜବାଜିଲା ତ ମୁଣ୍ଡ ବିନ୍ଧିଲା; ବେରାମଗୁଡ଼ାକ ସାଙ୍ଗେ ସାଙ୍ଗେ ଲାଗି ରହିଛି । ସରସ୍ୱତୀ ଦେଈ ଘର ଚଳାନ୍ତି । ରନ୍ଧାବଢ଼ା ଦର ବାହାର ପାଇଟି ତାଙ୍କ ଜିମା । ଅଳ୍ପ ଆୟ, ଆପଣା ମଗଦୂରକୁ ଚାହିଁ ଚଳିବାକୁ ହେବ ତ—ତମ କରି ଚାକରଟାଏ ରଖିଦେଲେ ସବୁ କଥାକୁ ଟାଣଟୁଣ । ଦାସେ ତ ମାସ ପହିଲା ତାରିଖରେ ଦରମାଟି ଆଣି ସରସ୍ୱତୀ ଦେଈ ଆଗରେ ଥୋଇ ଦେଇ ଖଲାସ । ସରସ୍ୱତୀ ଦେଈ ଇମିତି ସୁନ୍ଦର ହିସାବରେ ଘରଟା ଚଳେଇ ନିଅନ୍ତି ଯେ, କାହାରିକୁ ଉଁ—ଚୁଁ କରିବାକୁ ବାଟ ନ ଥାଏ ।

-୨-

## ଉତ୍ତରରାୟ ବଂଶ

ବାବୁ ଦାଶରଥି ଦାସଙ୍କ ଘର ଚଳାଚଳ ପ୍ରସଙ୍ଗ ପୂର୍ବେ ବୋଲିଅଛୁଁ । ଦାସଙ୍କ ଦୁଆରୁ ଖଟ ଭିକାରୀଟା ନିରାଶ ହୋଇ କେବେ ବାହୁଡ଼ିବାର ଦେଖାଯାଏ ନାହିଁ । କେହି ଝଗଡ଼ୁଆ ଭିକାରୀଟା ଦୁଆରେ ଜଞ୍ଜାଳ ଲଗାଇଲେ ସରସ୍ୱତୀ ତାକୁ 'ବୋପା ଲୋ, ଧନ ଲୋ' ସୁଆଗିଆ ମିଠା କଥା କହି ଚାଉଳ ମୁଠାକରେ ବିଦା କରିବେ ପଛକେ, ତା ଉପରେ ହକଦାର ହେବାର ଦେଖାଯାଏ ନାହିଁ । ସବୁଦିନେ ଦି' ଜଣ ନାହିଁ, ଚାରିଜଣ ନାହିଁ, କୁଣିଆ ଲଗିଛନ୍ତି । ଅଳ୍ପରେ ମର୍ଯ୍ୟାଦାରେ ଏମନ୍ତ କରି ଚଳାଇ ନିଅନ୍ତି ଯେ, ସମସ୍ତଙ୍କ ମନ ଖୁସି । କଟକରେ ବଡ଼ ବଡ଼ ଧନବନ୍ତ ବନ୍ଧୁ ଅନେକ ଅଛନ୍ତି, ହେଲେ କଣ, କୁଣିଆମାନେ ଆଗେ ଦାସଙ୍କ ଦୁଆରେ ହାଜର । ସରସ୍ୱତୀ ଦେଈ ସକାଳୁ ଅଧରାତି ଯାଏ ଚକିପରି ଘୂରୁଥିବେ, ନାକ ପୋଛିବାକୁ ତର ନାହିଁ । ହେଲେ କଣ, ହକଦାରୀ ଭାବ ଦେଖିବ ନାହିଁ—ସବୁବେଳେ ହାସ୍ୟମୁଖୀ । ସମସ୍ତଙ୍କ ପଛରେ ଶୋଇବେ, ଉଠିବାକୁ ସମସ୍ତଙ୍କ ଆଗ । ଦାସଙ୍କ ବସାର ଆଡ଼ମ୍ବର ଦେଖି ଲୋକେ କହନ୍ତି, ଏତେ ଅଳ୍ପ ଆୟରେ ଏଡ଼େ ଆଡ଼ମ୍ବର କପରି ? ଆମ୍ଭେମାନେ ଯେତେବେଳେ ଦାସଙ୍କ ହାଲଚାଲ ଲେଖିବାକୁ ବସିଛୁ ଅନ୍ଧସନ୍ଧ ସବୁ କଥା ଫିଟାଇ ଲେଖିବା ଭଲ । ଦାସଙ୍କର ପୂର୍ବ ତିନ ପୁରୁଷଠାରୁ ତାଙ୍କ ପିତା ଗୋବିନ୍ଦରାମ ଦାସଙ୍କ ପର୍ଯ୍ୟନ୍ତ କଲେ ନଡ଼ପୁର ଗୁଡ଼ପଣିଆ କସମତ୍ତ ସାମନ୍ତ ଶ୍ରେଷ୍ଠରାୟଙ୍କ ଘରେ ମୁକ୍ତାରକରଣ ଥିଲେ, ବିଶ୍ୱସ୍ତରୂପେ ଜମିଦାରୀ କାର୍ଯ୍ୟ ସୁନ୍ଦର ଚଳାଇ ପଞ୍ଚାଶ ମାଣ ଭୂମି ଇନାମ ସ୍ୱରୂପ ଲାଭ କରିଅଛନ୍ତି । ସେହି ଭୂମିରୁ ଭାଗଧାନ ଆସେ । ଜମିଗୁଡ଼ିକ ବାହେଲ—କେବଳ ସୁନିଆ ଦିନ ବଂଶ ମଧ୍ୟରୁ କେହି ହେଲେ ଜଣେ ଯାଇ ସୁନିଆବନ୍ଦିରେ ବଳେ ଶ୍ରେଷ୍ଠରାୟ ସାନ୍ତଙ୍କ ଶ୍ରୀମୁଖରେ ଗୋଟିଏ ନୂଆ ଲେଖନ ଆଉ ଗୋଟିଏ ତାଳପତ୍ର ଭେଟି ଦେଇ ଆସନ୍ତି । ତାହା ମଧ୍ୟ ଆଜକୁ ପାଞ୍ଚବର୍ଷ ହେଲା ଦେବାକୁ ପଡ଼ୁନାହିଁ । ସେଥିର କାରଣ—ହେଲେ କାରଣଟା କହିବାକୁ ଗଲେ ଅନେକଗୁଡ଼ିଏ କଥା ବୋଲିବାର ପ୍ରୟୋଜନ—କଥାଗୁଡ଼ାକ ପାଠକ ମହାଶୟଙ୍କ ମନକୁ ନ ରୁଚି ପାରେ । ଇଚ୍ଛା କଲେ ଦୁଇ ଚାରି ପୃଷ୍ଠା ଓଲଟାଇ ଦେଇ ଯାଇପାରନ୍ତି; ମାତ୍ର ଆମ୍ଭମାନଙ୍କ ପରାମର୍ଶ, ଅଧୈର୍ଯ୍ୟ ହେବା ଭଲ ନୁହେ । ମନରେ କରନ୍ତୁ ଗୋଟିଏ ଅଟ୍ଟାଳିକା ଛିଡ଼ା କରାଇବାକୁ ହେବ, ମୂଳଦୁଆରେ ଗୁଡ଼ାଏ ଇଟା ପଥର ପୋତି ପକାଇବା ଦରକାର, ଅବଶ୍ୟ ସେଗୁଡ଼ିକ ସୌଧର ଶୋଭାବର୍ଦ୍ଧକ ନୁହେଁ—ହେଲେ ତାହା ଉପରେ ଅଟ୍ଟାଳିକା ଅବସ୍ଥିତ । ଏହା ମଧ୍ୟ ବୋଲିବା ଉଚିତ, ଏଇଟା ସାହିତ୍ୟର ଅଟ୍ଟାଳିକା ନୁହେ, ଅତି ସାମାନ୍ୟ ପଲଟିଏ, ତଥାପି ମୂଳଦୁଆ ଦରକାର ।

ମୋଗଲ ସମ୍ରାଟଙ୍କ ଭୟରେ ଯେତେବେଳେ ପଠାଣମାନେ କତଲୁ ଖାଁକୁ ସେନାପତି କରି ଉତ୍କଳକୁ ଆସିବାପାଇଁ ପ୍ରଥମେ ସୁବର୍ଣ୍ଣରେଖା ପାରିହେଲେ, ସେମାନଙ୍କ ଗତିରୋଧ ନିମନ୍ତେ ସେତେବେଳେ ଉତ୍କଳର ସ୍ୱାଧୀନ ମହାରାଜାଙ୍କୁ କେତେଗୁଡ଼ିଏ ଉପାୟ ଅବଲମ୍ବନ କରିବାକୁ ହୋଇଥିଲା । ଗୋଟିଏ ପ୍ରଧାନ ଉପାୟ ରାଜ୍ୟ ମଧ୍ୟରେ ସ୍ଥାନେ ସ୍ଥାନେ ଘାଟି ବସାଇବା । ସେହି ଘାଟି ସମସ୍ତର ନାମ ଥିଲା ଚୌପାଢ଼ୀ । ଅଦ୍ୟାବଧି ସେହି ଘାଟିର ଚିହ୍ନ ନାନା ସ୍ଥାନରେ ବିଦ୍ୟମାନ ଅଛି; ମାତ୍ର କାଳକ୍ରମରେ ସେହି ଚୌପାଢ଼ୀ ନାମ ବଦଳିରେ କିଲ୍ଲା ଅଥବା ଗଡ଼ ନାମ ଧାରଣ କଲାଣି । ପ୍ରତ୍ୟେକ ଚୌପାଢ଼ୀରେ ଜଣେ ଜଣେ ସେନାପତି ଏବଂ ତାହାଙ୍କ ଅଧୀନରେ ସ୍ଥାନର ଅବସ୍ଥା ବୁଝି ପାଞ୍ଚଶତଠାରୁ ପାଞ୍ଚହଜାର ପର୍ଯ୍ୟନ୍ତ ଖଣ୍ଡାଏତ ପାଇକ ନିଯୁକ୍ତ ଥିଲେ । ସେମାନଙ୍କର ମାସିକ ବେତନ ନଗଦ ଟଙ୍କା ନ ଥିଲା, ପଦମର୍ଯ୍ୟାଦା ଅନୁସାରେ ଜାଗିର ଭୂମି ଭୋଗ କରୁଥିଲେ । କାଳକ୍ରମରେ ସେ ସମସ୍ତ ଭୂମି ପୁରୁଷାନୁକ୍ରମିକ ଦଖଲ ହୋଇଯାଇଥିଲା । ପଠାଣମାନେ ଯେପରି

ଦେଶ ମଧ୍ୟରେ ପଣି ଉତ୍ପାତ କରିବାକୁ ସୁଯୋଗ ନ ପାନ୍ତି, ସେଥିପ୍ରତି ଦୃଷ୍ଟି ରଖିବା ସେନାପତିମାନଙ୍କର କାର୍ଯ୍ୟ ଥିଲା । ଗଡ଼ ନରିପୁର ଉକ୍ତବିଧ ଚୌପାଢ଼ୀ ମଧ୍ୟରୁ ଅନ୍ୟତମ ଅଟେ । ମହାରାଜାଙ୍କ ନିଯୁକ୍ତ ପ୍ରଥମ ସେନାପତିଙ୍କ ନାମ ବୀରବର ମଲ୍ଲ ମର୍ଦ୍ଦରାଜଉତ୍ତରରାୟ । ଏଥିପାଇଁ ନରିପୁର ବୃତ୍ତୀଶ୍ୱର ବଂଶ ଉତ୍ତରରାୟ ନାମରେ କଥିତ ହୁଅନ୍ତି । ବୀରବର ମଲ୍ଲ ମର୍ଦ୍ଦରାଜ ଉତ୍ତରରାୟଙ୍କ କେତେ ପୁରୁଷ ତଳେ ନବଘନ ଉତ୍ତରରାୟଙ୍କର ଚାରି ପୁତ୍ର ଥିଲେ । ପ୍ରଥମ—ପାର୍ଥସାରଥି ବାଘସିଂହ; ଦ୍ୱିତୀୟ-ଭୀମସେନ ହରିଚନ୍ଦନ; ତୃତୀୟ—ଶତ୍ରୁଘ୍ନ ଭ୍ରମରବର; ଚତୁର୍ଥ—ସନାତନ ଅରିଦମନ । ପୂର୍ବକାଳରେ ଉଦ୍ଦଣ୍ଡ ଖଣ୍ଡାଏତମାନେ ଅତି ତୁଚ୍ଛ କଥାରେ ମଧ୍ୟ ପରିଖଣ୍ଡା କାଢ଼ି ପଦାକୁ ବାହାରି ପଡ଼ୁଥିଲେ । ବଂଶର ମଙ୍ଗଳ କାମନା ପୁଣି ଭାତୃବିରୋଧ ନିବାରଣ ନିମନ୍ତେ ନବଘନ ମଲ୍ଲ ଉତ୍ତରରାୟ ସମସ୍ତ ଜାୟଗିରିଭୂମି ଚାରି ପୁତ୍ରଙ୍କୁ ସମାନ ଭାବରେ ବାଣ୍ଟି ଦେଇଥିଲେ । ମାତ୍ର ଏହି ବଣ୍ଟନ ନ୍ୟାୟସଙ୍ଗତ ହୋଇ ନ ଥିଲା; ଯେହେତୁ ଜାୟଗିରର ସ୍ୱାମିତ୍ୱ ରାଜକୀୟ ବିଧାନ ଅନୁସାରେ କେବଳ ଜ୍ୟେଷ୍ଠ-ପୁତ୍ର ପ୍ରତି ବର୍ତ୍ତିବାର କଥା । ହେଲେ ପୁତ୍ରମାନେ ପିତୃଭକ୍ତ ଏବଂ ବଂଶର ମଙ୍ଗଳକାମୀ ଥିବାଯୋଗୁଁ ବଣ୍ଟନକାର୍ଯ୍ୟ ସହଜରେ ସମାହିତ ହୋଇଥିଲା । ନବଘନ ଉତ୍ତରରାୟଙ୍କ ଚରମପତ୍ରରେ ଏହା ମଧ୍ୟ ଉଲ୍ଲିଖିତ ଥିଲା କି, କେହି ଭ୍ରାତା ନିଃସନ୍ତାନ ଅବସ୍ଥାରେ ପରଲୋକ ଗମନ କଲେ ତାହାଙ୍କ ପରିତ୍ୟକ୍ତ ସ୍ଥାବର ସମ୍ପତ୍ତିରେ ଜ୍ୟେଷ୍ଠ ଅଂଶ ଅଧିକାରୀ ହେବ । ପୁତ୍ରମାନଙ୍କୁ ଭୂସମ୍ପତ୍ତି ବିଭାଗ କରିଦେଇ ନବଘନ ଉତ୍ତରରାୟ ଶ୍ରୀକ୍ଷେତ୍ର ଧାମରେ ଶେଷ ଜୀବନ ଅତିବାହିତ କରିଥିଲେ ।

ପ୍ରଥମରେ ଚାରି ସହୋଦର ବିଭକ୍ତ ସମ୍ପତ୍ତି ଇଜମାଲରେ ରଖି ନିଜଗଡ଼ ନରିପୁରରେ ବାସ କରୁଥିଲେ । ଘଟନାସୂତ୍ରରେ ଭାଇମାନଙ୍କ ମଧ୍ୟରେ ମନୋମାଳିନ୍ୟ ଉପସ୍ଥିତ ହେବାରୁ ସର୍ବକନିଷ୍ଠ ସନାତନ ଅରିଦମନ ଭ୍ରାତାମାନଙ୍କଠାରୁ ପୃଥକ ହୋଇ ନିଜଗଡ଼ଠାରୁ ଦେଢ଼ କୋଶ ଦୂର ମଫସଲ କଚେରି ଘର ଗଡ଼ ଫତେପୁରରେ ବାସ କରିବାକୁ ଲାଗିଲେ । କାଳ୍ପା ମଧ୍ୟରେ ତାହାଙ୍କ ଉତ୍ତରାଧିକାରୀମାନେ ଗ୍ଲେଷ୍ଟରାୟ ଉପାଧିରେ ପରିଚିତ । ଦ୍ୱିତୀୟ ଏବଂ ତୃତୀୟ ପୁତ୍ର ନିଃସନ୍ତାନ ଅବସ୍ଥାରେ ଲୋକାନ୍ତର ଗମନ କରିବାରୁ ସେମାନଙ୍କ ସମସ୍ତ ସମ୍ପତ୍ତି ପ୍ରଥମ ପୁତ୍ର ପାର୍ଥସାରଥି ପ୍ରାପ୍ତ ହୋଇଥିଲେ । ଏଥିକୁ ସେ ବାରପଣି କିସମତିର ଅଧିକାରୀ ଅଟନ୍ତି ।

ଏହି ଆଖ୍ୟାୟିକାର ଆରମ୍ଭ ସମୟରେ ବାରପଣି କିସମତର ଅଧିକାରୀ ପ୍ରଥମ ପୁତ୍ର ପାର୍ଥ ସାରଥି ଉତ୍ତରରାୟ ଲୋକାନ୍ତର ଗମନ କରିବାର କାଳ୍ପା କୋର୍ଟ ଅଫ୍ ଓ୍ୱାର୍ଡ଼ ଅଧୀନ ହୋଇଥିଲା । ନାବାଳକ ପୁତ୍ର ପ୍ରତାପ ଉଦ୍ଦିତମଲ୍ଲ ଉତ୍ତରରାୟ କଟକରେ ରହି ସରକାରଙ୍କ ତତ୍ତ୍ୱାବଧାନରେ ବିଦ୍ୟାଧ୍ୟୟନ କରୁଥିଲେ । ତାହାଙ୍କ ସହିତ ରହି ଇଂରାଜୀ ଅଧ୍ୟୟନ କରିବା ନିମନ୍ତେ ଗ୍ଲେଷ୍ଟରାୟ ସନାତନ ଅରିଦମନ ଆପଣାର ପୁତ୍ର ପୀତାମ୍ବର ଗ୍ଲେଷ୍ଟରାୟଙ୍କୁ କଟକରେ ରଖାଇ ଦେଇଥିଲେ । ପ୍ରତାପଉଦ୍ଦିତ ଏବଂ ପୀତାମ୍ବର ଦୁଇଜଣ ଏକବୟସୀ—ଦୁଇଜଣଙ୍କ ମଧ୍ୟରେ ଅଭେଦ ପ୍ରୀତି । ଏକତ୍ର ଶୟନ, ଅଧ୍ୟୟନ, ଭୋଜନ, ଭ୍ରମଣ ସମସ୍ତ କାର୍ଯ୍ୟ—ଦଣ୍ଡିକ ନିମନ୍ତେ ଛାଡ଼ବାଡ଼ ନାହିଁ । ଯେବେହେଁ ବଂଶ ସମ୍ପର୍କରେ ଦୁଇଜଣଙ୍କର ଭାଇଲେଖା—ହେଲେ, ସ୍ନେହରେ ଦୁଇଜଣ ପରସ୍ପରକୁ ସଙ୍ଗାତ ସମ୍ବୋଧନ କରିଥାନ୍ତି । ଦୁଇବଂଶ ମଧ୍ୟରେ କଦାଚିତ୍ ଅପ୍ରୀତି ଘଟି ନ ଥିଲା । କେବଳ ପାଞ୍ଚ ସାତବର୍ଷ ତଳେ ନୂଆ ଭେଟି ଯୋଗ ଉଭୟ ବଂଶ ମଧ୍ୟରେ କିଞ୍ଚିତ୍ ମନୋମାଳିନ୍ୟ ଉପସ୍ଥିତ ହେବାରୁ ସୁଯୋଗ ପାଇ ଅନେକ ଲୋକ ଭେଟି ବନ୍ଦ କରି ଦେଇଥିଲେ । ସେହିଦିନାବଧି ଦାଶରଥି ଦାସେ ଲେଖକ ତାଳପତ୍ର ଆଉ ଭେଟି ଦେଉ ନାହାନ୍ତି ।

———

-ତୀ-

## ଚନ୍ଦ୍ରମଣି

ପ୍ରସନ୍ନ ଦିକ୍‌ପାଂଶୁବିବିକ୍ତବାତଃ
ଶଙ୍ଖସ୍ୱନାନନ୍ତରପୁଷ୍ପବୃଷ୍ଟିଃ ।
ଶରୀରିଣାଂ ସ୍ଥାବରଜଙ୍ଗମାନାଂ
ସୁଖାୟ ତଜ୍ଜନ୍ମଦିନଂ ବଭୂବ ।
( କୁମାରସମ୍ଭବ )

ପରିବାର କଟକ ଆସିବାର ବର୍ଷେକ ଉତ୍ତାରେ ଦାଶରଥି ଦାସଙ୍କର ଗୋଟିଏ କନ୍ୟା ଜାତ ହେଲା । ମାଘ ପୂର୍ଣ୍ଣିମା ତିଥି ଠିକ୍ ଚନ୍ଦ୍ରୋଦୟ ସମୟରେ ଜନ୍ମ । ପିଲା ଜନ୍ମ ସମୟରେ କୁଆଁ କୁଆଁ ରଡ଼ି ଛାଡ଼ନ୍ତି—ହେଲେ ନବଜାତା କନ୍ୟାର ରଡ଼ି ଠିକ୍ ବୀଣାଝଙ୍କାର ପରି ଲୋକେ ଶୁଣିଲେ । ପୁତ୍ର ଜାତ ହେବା ବେଳେ ଶଙ୍ଖ ବାଜେ, କନ୍ୟା ଜନ୍ମ ସମୟରେ ବାଜେ ନାହିଁ । ମାତ୍ର ସରସ୍ୱତୀ ଦେଈ ତ ଝିଅଟିକୁ ଦେଖି ଅଜ୍ଞାନ, ଗୋଡ଼ ତଳେ ପଡ଼ୁ ନାହିଁ, ମୁଣ୍ଡିଏ ମୁକୁଳା, ଶଙ୍ଖଟାଏ ଧରି ଭେଁ ଭେଁ କରି ତାନେ ଖୁବ୍ ବଜାଇ ଦେଲେ; ଯେମନ୍ତ ଭଲ କାରିଗର ହାତରେ ଗଢ଼ା ସୁନ୍ଦର ସୁନାର ପ୍ରତିମାଟିଏ ତଳେ ପଡ଼ି ହାତ ଗୋଡ଼ ହଲଉଛି । ମସ୍ତକରେ ସରୁ ରେଶମ ସୂତା ପରି ଘନ ନିବିଡ଼ ଲଲାଟବ୍ୟାପୀ ଅନତିଦୀର୍ଘ କଜ୍ଜଳକୃଷ୍ଣ କେଶରାଶି, ସମ୍ମୁଖରେ ମୁଖାରବିନ୍ଦ । ଲଲାଟଟି ମାର୍ଜିତ ଦର୍ପଣ ପରି ମସୃଣ, ଲାବଣ୍ୟମୟ, ସୁଗୋଲ । କ୍ଷୁଦ୍ର ମୁଖଟିକୁ ମନାଣ ମାପିକେ ଖଣ୍ଡାଧାର ପରି ଉନ୍ନତ ଦୋଷବର୍ଜିତ କ୍ଷୁଦ୍ର ନାସିକାଟିଏ । ସୁନିପୁଣ ଚିତ୍ରକର ହସ୍ତ ତୂଳି ଟାଣିଲା ପରି ଉଭୟ ପାର୍ଶ୍ୱରେ ବିସ୍ତୃତ ଅପାଙ୍ଗସ୍ପର୍ଶୀ ଭ୍ରୂଲତାଯୁଗଳ । ନିମ୍ନରେ ଏଣୀ ଶିଶୁନୟନନିଭ ଅପାଙ୍ଗ ବିସ୍ତୃତ ସ୍ୱଚ୍ଛ ସଲିଳରେ ଭାସମାନ ନୀଳେନ୍ଦୀବର ନେତ୍ରଯୁଗଳ । ଅଧର ଶୋଭାମୟ, ସେଥିରୁ ହର୍ଷିତ ହାସ୍ୟଟୁଲ ଥୋପି ପଡ଼ୁଛି । ସୁଠାମ ସୁଗୋଲ ପଦଦ୍ୱୟ ଓ କରଯୁଗଳର ପ୍ରାନ୍ତଭାଗ ପାଟୁଳି ଘନ ଅଲକ୍ତଲିପ୍ତବତ୍ ଲୋହିତ ବର୍ଣ୍ଣ । ନଖାବଳୀ ରସାଣ କ୍ଷୁଦ୍ର ରଜତଖଣ୍ଡବତ୍ ଶୁକ୍ଲାଭ, କଣ୍ଠଦେଶ ଈଷତ୍ ଦୀର୍ଘ ଚମ୍ପକବର୍ଣ୍ଣ ଶଙ୍ଖବତ୍ ଶୋଭାମୟ ।

ସରସ୍ୱତୀ ଦେଈ ସର୍ବଗୁଣରେ ସୁନିପୁଣା । ଧାଈ ଅଭାବ ଅନୁଭବ କରିବାକୁ ହେଲା ନାହିଁ । ପୁଆତିକୁ ସାଂଷ୍ଟାମ କରାଇ ଶିଶୁ ସକାଶେ ଗୋଟିଏ କ୍ଷୁଦ୍ର ଶେଯ ରଚନା କରିଦେଲେ ।

ଦୟାମୟ ଭଗବାନ୍ ପ୍ରାଣୀଶ୍ରେଣୀର ରକ୍ଷଣ, ବର୍ଦ୍ଧନ, ସାଧନ ସକାଶେ ସ୍ତ୍ରୀଜାତି ହୃଦୟରେ କେମନ୍ତ ଗୋଟିଏ ଅନିର୍ବାର୍ଯ୍ୟ ଅପତ୍ୟ ସ୍ନେହ ପ୍ରଦାନ କରିଅଛନ୍ତି । ଅନେକ ଅପତ୍ୟବିହୀନା ରମଣୀ ଅନ୍ୟର ସନ୍ତାନ ସନ୍ତତିଙ୍କୁ ଲାଳନ ପାଳନ କରି ଅନ୍ତର୍ନିହିତ ନିସର୍ଗଦତ୍ତ ବୃତ୍ତିକୁ ଚରିତାର୍ଥ କରିଥାନ୍ତି । ନିତାନ୍ତ ଅଭାବ ପକ୍ଷରେ ତାଦୃଶୀ ରମଣୀମାନେ ଶୁଆଟିଏ ବା ମାର୍ଜାରଶିଶୁ ଗୋଟିଏ ପ୍ରତିପାଳନପୂର୍ବକ ଆନନ୍ଦ ଅନୁଭବ କରୁଥିବାର ଦେଖାଯାଏ । ସରସ୍ୱତୀ ଦେଈଙ୍କ ହୃଦୟ ସହଜରେ ସ୍ନେହପ୍ରବଣ, ଅପୂର୍ବ ଶ୍ରୀମଣ୍ଡିତ କନ୍ୟାଟିର ରୂପଲାବଣ୍ୟ ଦେଖି ତାଙ୍କର ହୃଦୟନିହିତ ସମସ୍ତ ପ୍ରେମ, ସମସ୍ତ ସ୍ନେହ ଯେମନ୍ତ ଉଚ୍ଛୁଳି ପଡ଼ୁଅଛି ।

ପାଞ୍ଚ ଦିନରେ ପଞ୍ଚୁଆତି । ମାମୁଁ ସିନା ପଞ୍ଚୁଆତି ବଳନ୍ତେ, ବଳୁଛି କିଏ ? ପାଞ୍ଚ ଲେଖାରେ ଲେଖା ଜଣେ କରଣ ସାନ୍ତ ଆବିର୍ଭୂତ ହୋଇ ହେଁସୁଆତିରେ ପଞ୍ଚୁଆତି ବଳି ଦେଲେ । ଗୋଟାଏ କିଁ୍ୟା—ଲୋଡ଼ିଥିଲେ ପଞ୍ଚାଏ କନ୍ୟାମାତୁଳ ମିଳିଥାନ୍ତେ—ପାଇଟି ଭିତରେ ମୁହୂର୍ତ୍ତକ ମଧ୍ୟରେ ପଞ୍ଚୁଆତି ବଳା—ଏଣେ ସରୁଚୂଡ଼ିଲ ଅନ୍ନ, ପାଞ୍ଚ ତିଅଣ, ଲୁଗା ଯୋଡ଼ାଏ, ମାତୁଳ ହେବାକୁ କିଏ ନ ମଙ୍ଗିବ ? ଛ'ଦିନରେ ଷଠୀଘର । ସରସ୍ୱତୀ ଦେଈ

ଦିନବେଳରୁ କାନ୍ଥରେ କାଦୁଅ ଥାପି ଗୋଟିଏ ଷଠୀଘର ବନାଇଲେ । ସେଥିରେ ମଣ୍ଡାଇବାକୁ ଅଡ଼ାଇ ପଣ କଉଡ଼ି ବଜାରରୁ କିଣିବାକୁ ପଡ଼ିଲା । ଷଠୀମା'ଙ୍କ ଭୋଗ ସକାଶେ ସାତପଡ଼ା ଚକଉ ପିଠା, ଚାଉଳ ବସା ଏକାସଙ୍ଗରେ ଭଜା, କଞ୍ଚା ଗୁଡ଼, ସାତଟା ମିଠାଇ ଷଠୀଘର ଆଗରେ ବଢ଼ାଗଲା । ସ୍ୱୟଂ ଷଠୀବୁଢ଼ୀ ମା ଅର୍ଥାତ୍ ଗୋଟିଏ ଶିଳପୁଆ ଖଣ୍ଡିଏ ହଳଦିଆ କନା ପିନ୍ଧି ଷଠୀଘର ତଳେ କାନ୍ଥକୁ ଆଉଜି ବସିଲେ । ଦେବୀଙ୍କ ମସ୍ତକ ଉପରେ ଦୂବ ବରକୋଳି ପତ୍ର ଓ ଗୋଟାକେତେ ଫୁଲ ଦେଇ ସରସ୍ୱତୀ ଦେଈ ରାତି ଘଡ଼ିକ ସମୟରେ ପୂଜା ଆରମ୍ଭ କଲେ । ପୁଆଣ୍ଡି ପିଲାଟିକୁ କୋଳରେ ଧରି ଷଠୀବୁଢ଼ୀମାଙ୍କ ଆଗରେ ବସିଲେ । ଏମାନଙ୍କ ମୁଣ୍ଡରେ ଧାନ ଦୂବ ପକାଇବା ସକାଶେ ସାତଜଣ ଅହିଅ ସ୍ତ୍ରୀ ଦରକାର । ଗ୍ରାମ ତ ନୁହେଁ, ଚାହିଁଲା ମଣିଷ କେଉଁଠି ବାହାରିବ । ଦାସେ ଆଗ ଦିନକଠାରୁ ଖୋଜ ଲୋଡ଼ି ସାତଜଣ ଅହିଅ ସ୍ତ୍ରୀ ଠିକଣା କରି ରଖିଥିଲେ—ଠିକ୍ ପୂଜା ସମୟରେ ସେମାନେ ଉପସ୍ଥିତ । ପୂଜା ବଢ଼ାଇ ପ୍ରତି ଜଣ ପଡ଼ାଏ ଚକଉ, କଞ୍ଚା ବସା ଚାଉଳ ଭଜା, ଗୋଟାଏ ଲେଖାଏଁ ମିଠାଇ ଧରି ଆପଣା ଆପଣା ଘରକୁ ଚାଲିଗଲେ । ହଳଦୀ ପାଣିରେ ଗୋଳା ଗୋଟାଏ ତାଳପତ୍ର ଆଉ ଗୋଟିଏ ଲେଖନ ଷଠୀବୁଢ଼ୀ ମାଙ୍କ ପାଖରେ ଥୋଇଦେଇ କବାଟ ବାହାରୁ କିଳାଗଲା । ରାତିଯାକ କବାଟ ଫିଟିବ ନାହିଁ । ଯେଉଁ ତାଳପତ୍ରଟି ଥୁଆ ଯାଇଛି, ସେଥିରେ ଷଠୀବୁଢ଼ୀ ମା ପିଲାଟିର ସମସ୍ତ ଜୀବନର ଭଲ ମନ୍ଦ ସବୁ କଥା ଲେଖିବେ । ସେହି ତାଳପତ୍ରରେ କୋଷ୍ଠୀ ଲେଖାଯିବ ।

ନବମ ଦିନ ଓପର ଓଳି ଅବଧାନ ସଦାଶିବ ଖଡ଼ିରତ୍ନେ ଡେବିରି କାଖରେ ତାଳପତ୍ର ପାଞ୍ଜି ବିଡ଼ାଟି ଯାକି, ଖାଇଲି ହାତରେ ଖଣ୍ଡିଏ ବାଉଁଶ ବାଡ଼ି ଧରି ଉପସ୍ଥିତ । ସରସ୍ୱତୀ ଦେଈ ପିଣ୍ଡା ଉପରେ ଖଣ୍ଡିଏ କମ୍ବଳାସନ ଚଉଁଳ ପାରିଦେଇ ଆଳଟିରେ ଅରୁଆ ଚାଉଳ ସେରେ, ଗୁଆଟିଏ, ଦୂବ, ବରକୋଳିପତ୍ର, ଷଠୀବୁଢ଼ୀ ମାଙ୍କ ନିକଟରୁ ତାଳପତ୍ର ଲେଖନ ଆଣି ଜ୍ୟୋତିଷଙ୍କ ଆଗରେ ଥୋଇଦେଲେ । ଖଡ଼ିରତ୍ନେ କୋଣରେ ବାଉଁଶଖଣ୍ଡିକ ଥୋଇଦେଇ ଆସନରେ ବସିଲେ । କାଖରୁ ପାଞ୍ଜି ବିଡ଼ାଟି ବାହାର କରି ତହିଁରେ ବନ୍ଧାଥିବା ବାପାଙ୍କ ଅମଳର କାଠ ଖୋଳରେ ଥିବା ପ୍ରତିଚକ୍ଷୁଟି ବାହାର କଲେ—କୁଞ୍ଚ କାନ କୋଣରେ ପ୍ରତିଚକ୍ଷୁଟି ଉତ୍ତମରୂପେ ପରିଷ୍କାର କରି ନାସିକାରେ ସଂଲଗ୍ନ କରିଦେଲେ । ତହିଁ ଉତ୍ତାରେ ଦୁଇ ହସ୍ତରେ ପାଞ୍ଜିବିଡ଼ାଟି ଧରି—

ମଙ୍ଗଳଂ ଭଗବାନ୍ ବିଷ୍ଣୁଃ
ମଙ୍ଗଳଂ ଗରୁଡ଼ଧ୍ୱଜଃ ।
ମଙ୍ଗଳଂ ପୁଣ୍ଡରୀକାକ୍ଷଃ
ମଙ୍ଗଳଂ ମଧୁସୂଦନଃ ।

ଶ୍ଳୋକଟି ପାଠ ଉତ୍ତାରେ ପାଞ୍ଜିକୁ ଚାହିଁ ମାସ, ଦିନ, ବାର, ତିଥି, ଚନ୍ଦ୍ର, ନକ୍ଷତ୍ର, ଯୋଗିନୀର ଅବସ୍ଥିତି, କରଣ ଇତ୍ୟାଦି ଶୁଣାଇ ଦେଇ ଧୀରେ ଧୀରେ ପାଞ୍ଜିଟି ତଳେ ଥୋଇଦେଲେ । ଅଣ୍ଟାରୁ ଖଡ଼ି ଗୋଟାଳିଟି ବାହାର କରି ପୁନର୍ବାର "ମଙ୍ଗଳଂ ଭଗବାନ୍ ବିଷ୍ଣୁଃ" ଇତ୍ୟାଦି ପାଠପୂର୍ବକ ଭୂମିରେ ଗୋଟିଏ ଶ୍ରୀ ଲେଖି ନମାଇ ଦେଲେ । ମୁଣ୍ଡରେ ଗୋଟାଳିଟି ଲଗାଇ ଭୂମିରେ ରାଶିଚକ୍ର କାଟି ତହିଁରେ ଗ୍ରହନକ୍ଷତ୍ରାଦିର ଅବସ୍ଥାନ ଲେଖିଲେ । ଯଥା —



ରାଣିଚନ୍ଦ ଚଳେ ଯାଇ ଛନ୍ଦଣୀ ଲେଖି ତାହା ଉପରେ ଖଡ଼ି ଗୋଟାଳାଟି ଥୋଇ ଦେଲେ ।

ରାଶିଚକ୍ରକୁ ଉତ୍ତମରୂପେ ନିରୀକ୍ଷଣ କରି କେତେକ ସ୍ଥାନରେ ଅଙ୍ଗୁଳି ସ୍ପର୍ଶପୂର୍ବକ ଗୁଣୁଗୁଣୁ ସ୍ୱରରେ କେତେକକ୍ଷଣ ଆଲୋଚନା କଲା ଉତ୍ତାରେ ଅନେକଗୁଡ଼ିଏ ଶ୍ଳୋକ ପାଠକଲେ । ଦାସେ ନିକଟରେ, ସରସ୍ୱତୀ ଦେଈ କିଛି ଦୂରରେ ବସିଥିଲେ, ଆଉ ମେନକା ଦେଈ କବାଟ ଉହାଡ଼ରୁ ନାକଟି 'କାଢ଼ି' ଦେଇ ଶ୍ଳୋକ ଶୁଣୁଥାନ୍ତି । ଖଡ଼ିରନ୍ଧ୍ରେ କହିଲେ—ବୁଝିବା ହେଲେଟିକି ଦାସେ, କନ୍ୟା ତ ନୁହେ, ଏଇଟି ଦେବକନ୍ୟା—ଲକ୍ଷେ ଦଶ ହଜାର ମଧ୍ୟରେ ଗୋଟାଏ କୋଷ୍ଠୀ ଦେଖିଲି ଏକା । କକଡ଼ା ଲଗ୍ନରେ ଜନ୍ମ—ଲଗ୍ନରେ ବୃହସ୍ପତି ଉଚ୍ଚ । ଧନ ସ୍ଥାନରେ ଚନ୍ଦ୍ର । ଚତୁର୍ଥ ସୁଖାଧିପତି ଶୁକ୍ର ନବମ ସ୍ଥାନରେ—ସେ ପୁଣି ତୁଙ୍ଗୀ । ରବି ଧର୍ମ ସ୍ଥାନରେ ଉଚ୍ଚ । ଆଉ କଣ ଶୁଣିବେ ?

"ଜାତାଙ୍ଗନା ଭବତି ପୂର୍ଣ୍ଣବିଭୂତିଯୁକ୍ତା
ସାଧ୍ୱୀ ସପୁତ୍ରଜନନୀ ସୁଖିନୀ ଧନାଢ଼୍ୟା" ।

ସରସ୍ୱତୀ ଦେଈ ପଚାରିଲେ, କଣ ବୋଇଲେ ଅବଧାନେ, କଣ ବୋଇଲେ ?

ଖଡ଼ିରନ୍ଧ୍ରେ—ପାଠ ଡାକୁଛି, ଏ କନ୍ୟାଟି ରାଣୀ ହେବ—ଆଉ ଏହାର ସୁନ୍ଦର ସୁନ୍ଦର ପୁଅ ହେବ । ଆଉ ଦେଖୁଛନ୍ତି ଧନ ସ୍ଥାନ ଯେ ଦ୍ୱିତୀୟକୁ ବୋଲି, ସ୍ଥାନରେ ରହିଗଲେ ଚନ୍ଦ୍ର—ଧନର ସୀମା ନାହିଁ । ତନ, ଧନ—ସହଜ ଯେ ତୃତୀୟ ସ୍ଥାନ, ସେଠି ରହିଗଲା କେତୁ—ଭ୍ରାତୃଯୋଗେ କଷ୍ଟ । ଆଉ ଗୋଟିଏ କଥା—ପାଠରେ ଦିଶୁଛି, କମିତି ଲୁଚାଇବି ? ସ୍ତ୍ରୀ କୋଷ୍ଠୀରେ ଅଷ୍ଟମ ସ୍ଥାନରେ ମଙ୍ଗଳ ଖରାପ—ପତିଯୋଗେ କଷ୍ଟ ।

ସରସ୍ୱତୀ—ଆଛା ସେ କଥାଟା କୋଷ୍ଠୀରେ ନ ଲେଖିଦେଲେ ତ ହେଲା । ଖଡ଼ିରନ୍ଧ୍ରେ—ଉଁ—ହୁଁ ! ସେଇଟା ହାତକଥା ନୁହେ, ଅଷ୍ଟମ ଘରକୁ ମାଡ଼ି ବସିଲାଣି । ହେଲେ କଣ, ସେଥିର ପ୍ରତିକାର ଅଛି—କିଞ୍ଚିତ୍ ପ୍ରାୟଶ୍ଚିତ୍ତ କରିଦେଲେ ସବୁ ଦୋଷ ଠିକ୍ କରି କଟିଯିବ । କେତେ କେତେ ଦୋଷ ପ୍ରାୟଶ୍ଚିତ୍ତରେ କଟି-ଯାଇଛି, ଏଇଟା ବା କଣ ?

ସରସ୍ୱତୀ ଦେଈ—କଣ କରାଯିବ ? କଣ ପ୍ରାୟଶ୍ଚିତ୍ତ ଲୋଡ଼ା ?

ଖଡ଼ିରନ୍ଧ୍ରେ—ଗୋଟିଏ କୃଷ୍ଣବର୍ଣ୍ଣ ମେଷ—କି କଳା ଗାରଡ଼ି, ପାଞ୍ଚ ପା ଅରୁଆ ଚାଉଳ, ପାଞ୍ଚ ପା ବିରି, ପାଞ୍ଚ ପା ପଞ୍ଚବର୍ଣ୍ଣ ଖେଚେଇ, ପାଞ୍ଚ ରଙ୍ଗର ପୁଷ୍ପ, ପାଞ୍ଚଟା ଦୂବ ବରକୋଳି ପତ୍ର, ଦେଡ଼ ମସା ଶୁଦ୍ଧ ସୁବର୍ଣ୍ଣ, ଗୋଟିଏ ମାଣିଆବନ୍ଧୀ ଜଠା—ସେଥିରେ ନାଲି କମ୍ବା ହଳଦିଆ ରଙ୍ଗ ମୁସଲମ ନ ଥିବ—ଏ ସମସ୍ତ ପଦାର୍ଥ ଏକବିଂଶତି ବୋଇଲା କି ଏକୋଶିଆ ଦିନ ନିଶା-ରାତ୍ରରେ ଏକମୁହାଁ ହୋଇ ଗ୍ରହାଚାର୍ଯ୍ୟ ହାତକୁ ଟେକି ଦେଇ ଚଞ୍ଚଳ ପଛ କରି ଚାଲିଯିବ, ଏକୋଇଶ ଦିନଯାଏ ସେ ଗ୍ରହାଚାର୍ଯ୍ୟର ମୁହଁ ଚାହିଁବ ନାହିଁ । ମଙ୍ଗଳଗ୍ରହ ଅଶ୍ଳେଷା ନକ୍ଷତ୍ରକୁ ଯିମିତି ଚାଲିଯିବ ଠିକ୍ ସେହି ମୁହୂର୍ତ୍ତରେ ଦାନ କରିବା ଦରକାର । ଲଗ୍ନୟାଏ ଟଳିଗଲେ ଯୋଗ ବାହାରିଯିବ, ମୁଁ ପାଞ୍ଜି ଧରି ବସିଥିବି । ହଁ, ଗୋଟାଏ କଥା ବୋଲିବାକୁ ଭୁଲିଛି, ପାଞ୍ଚ ସୁକା ଦକ୍ଷିଣା ଦେବାକୁ ହେବ । ଏ ଉତ୍ତାରେ ଖଡ଼ିରନ୍ଧ୍ରେ—"ମାଧବୋ ମାଧବୋ ବାକ୍ୟଂ ମାଧବୋ ମାଧବୋ ହରିଃ । ସ୍ମରନ୍ତି ସାଧବୋ ନିତ୍ୟଂ ସର୍ବକାର୍ଯ୍ୟେଷୁ ମାଧବଃ ।।"

ଏହି ଶ୍ଳୋକ ପାଠ କରୁଁ କରୁଁ ହଳଦୀ ପାଣିରେ ରାଶିଚକ୍ର ଲିଭାଇ ଦେଲେ । ଥାଳିରେ ଥିବା ଚାଉଳ-ଗୁଡ଼ିକ କାନିରେ ବାନ୍ଧି ଟଙ୍କାଟିଏ ଦକ୍ଷିଣା ଧରି ଚାଲିଗଲେ ।

ଆଜି ପିଲାଟିର ନାମ ଥୋଇବାର ଦିନ । ଅବଧାନେ କହି ଯାଇଛନ୍ତି, ଏହାର ରାଶିନାମ ତ ଅକ୍ଷରରୁ ହେବ । ଦାସେ କହିଲେ, ପିଲାଟିର ଜନ୍ମଦିନ ମୋହର ନାଜରାତ କର୍ମ ହେଲା—ପିଲାଟି ଲକ୍ଷ୍ମୀବନ୍ତ—ଏହାର ନାମ ଲକ୍ଷ୍ମୀ ହେଉ । ମା କହିଲେ, ନା—ନା ଏହାର ନାମ ଅନ୍ନପୂର୍ଣ୍ଣା । ସରସ୍ୱତୀ ଦେଈ କହିଲେ, ତୁମେ ସବୁ ଯେ ଯାହା କହ, ସ୍ୱର୍ଗରୁ ଚନ୍ଦ ଓହ୍ଲାଇ ଆସିଛି, ମୋ ଝିଅର ନାମ ଚନ୍ଦ୍ରମଣି ।

---

-୪-

## ନାଜରଙ୍କ ବସାର ହାଲଚାଲ

ଆଉ ପାଞ୍ଚ ଘର ବସନ୍ତଆଙ୍କ ପରି ନାଜରଙ୍କ ଘର ମଧ୍ୟ ସୁଖରେ ଚଳୁଛି । ହେଲେ, ଏହାଙ୍କ ଘରର ସୁଖ ଶାନ୍ତି ଆନନ୍ଦ ଉପଭୋଗ ଭିନ୍ନପ୍ରକାର । ବାସ୍ତବରେ ଗୃହିଣୀ ସଚ୍ଚରିତ୍ରା, ଧାର୍ମିକା, ନିଃସ୍ୱାର୍ଥଭାବାପନ୍ନା ହେଲେ ପ୍ରକୃତ ସୁଖ ଶାନ୍ତି ମଧ୍ୟବିତ୍ତ ଲୋକଘରେ ଚିରବିରାଜିତ ଥାଏ । ଧନୀ ଲୋକର ବାହ୍ୟାଡ଼ମ୍ବର ସାରହୀନ ଶୋଭାସୌଭାଗ୍ୟ, ସହଜଲଭ୍ୟ ଧନରତ୍ନର ପ୍ରାଚୁର୍ଯ୍ୟ ସାଧାରଣ ଲୋକେ ଈର୍ଷାକଳୁଷନେତ୍ରରେ ଦେଖିଥାନ୍ତି ସତ୍ୟ; ହେଲେ, ପ୍ରକୃତ ଅନାବିଲ ସୁଖସମ୍ଭୋଗ କଦାଚିତ୍ ଧନୀ ଲୋକ ଭାଗ୍ୟରେ ଘଟିଥାଏ । ଧନୀ ଲୋକେ ଅର୍ଥୋପାର୍ଜନ ଏବଂ ତଦ୍‌ବର୍ଦ୍ଧନ ବିଷୟରେ ଏତେଦୂର ବିଳିପ୍ତ ଥାନ୍ତି ଯେ, ଉପାର୍ଜନ ମାର୍ଗ ପରିଷ୍କାର କରିବା ନିମନ୍ତେ ପ୍ରତିନିୟତ ବ୍ୟସ୍ତ ଥିବା ଯୋଗୁଁ ଆତ୍ମୋନ୍ନତି ସକାଶେ ଅବସର ପ୍ରାପ୍ତ ହୋଇ ପାରନ୍ତି ନାହିଁ । ପୁଣି ଆତ୍ମକାର୍ଯ୍ୟ ସାଧନ ସମୟରେ ଅନ୍ୟର କ୍ଷତି ବୃଦ୍ଧି ପ୍ରତି ଦୃଷ୍ଟି ରଖିବା ଯେ ନିତାନ୍ତ କର୍ତ୍ତବ୍ୟ, ଏ ଜ୍ଞାନ ସେମାନଙ୍କଠାରେ ବିରଳ ଦୃଷ୍ଟ ହୁଏ । ସେମାନେ ଜୀବନରେ ଯାହା ସୁଖକର ବୋଲି ଜ୍ଞାନ କରନ୍ତି, ସେଥିର ପରିଣାମ ନିରବଚ୍ଛିନ୍ନ ଗରଳମୟ । ପୁଣି ସେମାନେ ଗରମକାଳରେ କଳୁଷ-କଳଙ୍କିତ ସ୍ୱୋପାର୍ଜିତ ଧନରାଶି ପ୍ରତି ଆତ୍ୟନ୍ତିକ ମମତାପ୍ରଯୁକ୍ତ କାତର ନୟନରେ ଦୃଷ୍ଟିପାତପୂର୍ବକ ନିତାନ୍ତ ଅନିଚ୍ଛାରେ ପୃଥିବୀ ତ୍ୟାଗ କରିଥାନ୍ତି ।

ଧନ ଦୁଃଖୀମାନଙ୍କ ଜୀବନ ମଧ୍ୟ ଅନ୍ୟ ଭାବରେ ଶୋଚନୀୟ ଅଟେ । ଅର୍ଥାଭାବବନ୍ଧନ ସଂସାରଯାତ୍ରା ନିର୍ବାହ ନିମନ୍ତେ ସେମାନଙ୍କୁ ଦାରୁଣ ଯନ୍ତ୍ରଣା ଭୋଗ କରିବାକୁ ହୁଏ । କଦାଚିତ୍ ସେମାନେ ସେହି ଅଭାବ ମୋଚନ ସକାଶେ ଗର୍ହିତ ଉପାୟରେ ଅର୍ଥୋପାର୍ଜନ କରିବାକୁ ଯାଇ ଇହ ପରକାଳରେ ଯନ୍ତ୍ରଣା ଭୋଗର କାରଣ ଆପେ ହୋଇ ପଡ଼ନ୍ତି । ସ୍ୱଭାବର ଉତ୍ତେଜନାରେ ଗର୍ହିତ ଉପାୟଦ୍ୱାରା ଅର୍ଥ ଉପାର୍ଜନକାରୀ ଲୋକ ଜଗତରେ ବିରଳ ନାହାନ୍ତି ସତ୍ୟ; ମାତ୍ର ଅଭାବ ଅନେକ ଲୋକଙ୍କ ପକ୍ଷରେ ଦୁଷ୍କାର୍ଯ୍ୟର ନେତା ଅଟେ । ସାଧୁ, ସଚ୍ଚରିତ୍ର, ଧର୍ମପରାୟଣ ମଧ୍ୟବିତ୍ତ ଲୋକମାନଙ୍କୁ ଏ ସମସ୍ତ ବିଡ଼ମ୍ବନା ଭୋଗ କରିବାକୁ ହୁଏ ନାହିଁ ।

ଦାସଙ୍କ ପିଲା ତିଓଟି ସ୍କୁଲରେ ପଢ଼ୁଛନ୍ତି । ପୁଅଟି ଦୁଇବର୍ଷ କାଳ ବିଛଣା ଛାଡ଼ିବାକୁ ନାହିଁ । ତାଙ୍କ ସକାଶେ ଡାକ୍ତର କବିରାଜମାନେ ସର୍ବଦା ଯାତାୟାତ କରିଥାନ୍ତି । ପିଲା ଝିଅଟି ମା ଥନବେଣ୍ଟ ଧରି ନାହିଁ—ଟେକା ପାଣିରେ ତାହାର ଜୀବନ । ଗଉଡ଼ ଯେ ଜାତି-ନିୟମ ଦରମାନ କରିବାକୁ ଆଗ, ପଇସା ନେବାକୁ ବାଘ—ଦୁଧରେ ପାଣି ନ ମିଶାଇଲେ ଯେମନ୍ତ ସେମାନଙ୍କର ସାତପୁରୁଷ ନରକାନ୍ତ ହେବେ । ଖୁବ୍ ଯଦି ବିଶ୍ୱାସୀ ହୁଏ, ଝିକ୍ ଦାମ ଉପରେ ଦଶ କିଛି ବେଶି ପଇସା ଦେବ—ଟୋପାଏ ହେଲେ ପାଣି ମିଶାଇବେ—ସେଇଟା ଯେ ତାଙ୍କର ସାତ ପୁରୁଷ ବେଉସା । ସରସ୍ୱତୀ ଦେଈଙ୍କୁ ସବୁ ଜଣା—କଣ ବେଭାରଟାଏ କରିବାପାଇଁ ଛୁଆଟିକୁ ସେଇ ପାଣିମିଶା ଦୁଧ ଦେବେ ? ପାଣି ତ ପାଣି—କୂଅ ବୋଇଲେ

ନାହିଁ—ପୋଖରୀ ବୋଇଲେ ନାହିଁ—ମଇଲା ପାଣି ହେଲା ତ ହେଉ, ଯେ ପାଣି ପାଖରେ ଅଛି, ସେହି ପାଣି ମିଶାଇ ଦେବେ । କିଏ ଜାଣି ଶୁଣି ଦୁଧପିଆ ଛୁଆକୁ ସେହି ଦୁଧ ଦେବ ? ଦାସଙ୍କ ବସାରେ ଗୋଟିଏ ଦୁହାଁଳୀ ଗାଈ ବନ୍ଧା । ଏଥି ସକାଶେ ମାମୁଲି ଖରଚ ଉପରେ ଆଉ କିଛି ବଢ଼ି ପଡ଼ୁଛି । ଦୟାମୟ ଭଗବାନ ଯେମନ୍ତ ଏହି କଥା ବୁଝି ଦାସଙ୍କ ଆୟ ପୂର୍ବଠାରୁ କିଛି ବେଶି କରି ଦେଇଛନ୍ତି । ତଥାପି ସରସ୍ୱତୀ ଦେଈ ଆୟକୁ ନଜର ରଖି ଏପରିଭାବରେ ବ୍ୟୟ କରନ୍ତି ଯେ, ଘର ଖରଚ ବାଦ ଛୁଆ ଆଉ ପୁଆଙ୍କର ମଙ୍ଗଳ କାମନାରେ ଧର୍ମାର୍ଥ ବ୍ୟୟ ନିମନ୍ତେ ଅର୍ଥର ଅଭାବ ହୁଏ ନାହିଁ । ଏଣେ ପୂର୍ବଠାରୁ ବସାରେ ଅନେକ କାମ ବଳିପଡ଼ିଲାଣି—କାଉ—କା—ଠାରୁ ଅଧ ରାତିଯାଏ ସରସ୍ୱତୀ ଦେଈ କାମରେ ଲାଗିଛନ୍ତି ନାକ ପୋଛିବାକୁ ତର ନାହିଁ । ଥକି ପଡ଼ିବାର ନାହିଁ—ବିକ୍‌ଦାର ହେବାକୁ ନାହିଁ । ଆହୁରି ଯେମନ୍ତ କାମ ନ ଥିଲେ ହାତଟା ଖଜବଜ ହେଉଥାଏ । କାମ କରିବାଟା ତାଙ୍କର ସୁଖ ଆଉ ଜୀବନର କର୍ତ୍ତବ୍ୟ ବୋଲି ଜ୍ଞାନ କରନ୍ତି । ତାଙ୍କ ମତରେ ଏହାହିଁ ପୁଣ୍ୟ । ଗୋଟିଏ ରୋଷେଇଆ ଆଉ ଗୋଟିଏ ଚାକରାଣୀ ରଖିବା ସକାଶେ ଦାସେ ତେର ଥର କହିଲେଣି—ଅପା ମେନକା ଦେଈ କହି କହି ଥକି ଗଲେଣି, ସରସ୍ୱତୀ ଦେଈ କଥାଟା କାନରେ ପକାନ୍ତି ନାହିଁ । ଦିନେ ଅପା ଖପା ହୋଇ କହିଲେ, "ଆଲୋ ସରି ! ତୁ କାମ କରି କରି ମରି ଯା ପଛକେ, ମୁଁ ଯଦି ତୁଣ୍ଡ ଫିଟାଏଁ ମୋ ନାକ କାଟି ପକାଇବୁ ।" ସରସ୍ୱତୀ ଦେଈ କହିଲେ, "ଆଚ୍ଛା ଅପା ! ତୁମେ ତ ମୋ ମରଣ ବାଞ୍ଛୁଛ, ତୁମକୁ ଧୁଆଧୋଇ କରି ଦେବ କିଏ, ନିତି ପରତି ଔଷଧ ବାଟି ପିଆଇ ଦେବ କିଏ ?" ଦାସେ ପାଖରେ ବସି ସବୁ ଶୁଣୁଥିଲେ, କହିଲେ, "ଏ ସରସ୍ୱତୀ ଭଗବତୀ-ଦେବି ନମସ୍ତେ—ତୁମେ ଅପା କଥାରେ ପଡ଼ ମରିଯିବ ନାହିଁଟି ! ଠିକ୍ କରେଇ ବେଳକୁ ମତେ ଭାତ ପରଷି ଦେବ କିଏ ?"

ମେନକା ଦେଈ—"କିଁଆ ମୁଁ ତୁମକୁ ଗୋଟାଏ ବାହା କରାଇ ଆଣିବି, ସେହି ସଉତୁଣୀ ଆସି ଭାତ ରାନ୍ଧି ଦେବ ।" ସରସ୍ୱତୀ ଦେଈ କହିଲେ, "ଏ ଭଉଣୋଇ ସାନ୍ତ ! ପିଠିରେ ଟିକିଏ ତେଲ ହାତ ମାରିଦେଇ ଥିବେଟି ।" ଦାସେ କହିଲେ—"ତେଲ ଲଗାଇବ କିଁଆ ?" ସରସ୍ୱତୀ ଦେଈ କହିଲେ, "କୁଆଡ଼ୁ ହେଲେ ଗ୍ରୀଷ୍ମ ଋଣୀ ଅଗଣ୍ଠା ଲାଗି ପୋଡ଼ି ଉଠିବ ପରା !" ତିନ ଜଣ ମିଶି ଖୁବ୍ ଗୋଟାଏ ହସିଲେ । ଲେଖକ ପକ୍ଷରେ, ଏହି ହସ ମଧ୍ୟରେ ଗୋଟାଏ ଯେଉଁ ହୃଦୟୋଲ୍ଲାସକାରୀ ଆନନ୍ଦ ପ୍ରଚ୍ଛନ୍ନଭାବରେ ରହିଅଛି, ବଡ଼ଲୋକ ଘରେ ସବୁବେଳେ ଯେଉଁ ଶୁଖିଲା ହସର ତୋଫାନ ଉଠୁଥାଏ, ସେଥି ମଧ୍ୟରେ ଏହା ଖୋଜି ପାଇବ କି ?

କାମ ପାଇଟିରେ ଲାଗିଥିବାବେଳେ ଚୂଡ଼ାମଣି ଧାଈମାର ପଣତକାନଟା ଧରି ଦିନସାରା ପଛେ ପଛେ ବୁଲୁଥାଏ । ମା ଡାକିଲେ ପାଖ ପଶେ ନାହିଁ । ମା ମନ ମାରି କହନ୍ତି, "ହଁ ରେ ଚୂଡ଼ା, ତୋ ଧାଈମା କି ସବୁ ହେଲା, ମୁଁ କେହି ନୁହେଁ ?" ଚୂଡ଼ା କୁରୁକୁରୁ ହସି ପଳାଇ ଯାଏ । ସରସ୍ୱତୀ ଦେଈ ପିଲାମାନଙ୍କର ଲେଖାରେ ମାଉସୀ; କିନ୍ତୁ ସେମାନେ ଧାଈମା ବୋଲି ଡାକନ୍ତି । ଧାଈମା କୋଳରେ ତ ସମସ୍ତେ ବଢ଼ିଛନ୍ତି, ମା'କୁ ଚହ୍ନେ କିଏ ? ପିଲାମାନଙ୍କର ଡାକ ଶୁଣାଶୁଣିରେ ଚାକରବାକର ଗଲି ଅଇଲି ସାଈ ପଡ଼ିଶା ସମସ୍ତେ ଡାକନ୍ତି, 'ଧାଈମା' । ଦାସେ କହନ୍ତି, ଇଜମାଲି ଧାଈମା ।

---

-୫-

## ପିଲାମାନଙ୍କ ଶିକ୍ଷା

ବିତରତି ଗୁରୁଃ ପ୍ରାଜ୍ଞେ ବିଦ୍ୟାଂ ଯଥୈବ ତଥାଜଡ଼େ ।
ନ ତୁ ଖଳୁ ତୟୋର୍ଜ୍ଞାନେ ଶକ୍ତିଂ କରୋତ୍ୟପହନ୍ତି ବା ।
(ଭବଭୂତି)

ଦାଶରଥି ଦାସଙ୍କର ଦୁଇ ପୁତ୍ର ବାନାବର ଆଉ ନଟବର । ଦୁଇ ଜଣ ଇଂରେଜୀ ସ୍କୁଲରେ ପଢ଼ନ୍ତି । ଗୃହମଣି କରଣଘର ଝିଅ, ସେ କଣ ଦାଣ୍ଡରେ ଚାଲି ଚାଲି ଆଉ ଜାଗାକୁ ପଢ଼ିବାକୁ ଯିବ ? ହେଲେ ଧାଈମାଙ୍କର ମନ, ତାହାକୁ ଦି'ଅକ୍ଷର ପଢ଼ାଇବାକୁ ହେବ । ମାସକୁ ମାସ ଦରମା ଦେଇ ଗୃହକୁ ପଢ଼ାଇବାପାଇଁ ଗୋଟିଏ ଖ୍ରୀଷ୍ଟାନ ପାଠମା ନିଯୁକ୍ତ କଲେ । ଗୃହ ତାଙ୍କ ପାଖରୁ କିତାପ ପଢ଼ା, କାର୍ପେଟ ଆଉ ମୋଜା ବୁଣା, ସିଲାଇ, କିଛି କିଛି ଚିତ୍ର ଅଙ୍କା ଶିଖେ । ଭାଇ ଭଉଣୀମାନେ ଏକା ମା ବାପର ପୁଅ ଝିଅ, ହେଲେ ସେମାନଙ୍କ ସ୍ୱଭାବ ଚରିତ୍ର ଭିନ୍ନ ଭିନ୍ନ । ବୈଜ୍ଞାନିକ ତତ୍ତ୍ୱବିତ୍ ପଣ୍ଡିତମାନଙ୍କ ମତ ଯାହା ହେଉ, ହେଲେ ଅନେକ ସ୍ଥାନରେ ଦେଖାଯାଏ, ମାନବର ହୃଦୟ ଅଭ୍ୟନ୍ତରସ୍ଥ ପ୍ରଚ୍ଛନ୍ନ ସ୍ୱାଭାବିକ ଗୁଣାଗୁଣକୁ କି ନୀତିଶିକ୍ଷା, ସାଧୁସହବାସ, ଅଥବା ପାରିପାର୍ଶ୍ୱିକ ଘଟଣାବଳୀ କିମ୍ବା ମାତା ପିତାଙ୍କ ହୃଦୟ ନିହିତ ପ୍ରବୃତ୍ତି ନିଚୟର ଉତ୍ତରାଧିକାରୀତ୍ୱ ସମ୍ବନ୍ଧ ସାମୟିକ-ରୂପେ ଦମନ କରି ରଖି ପଛକେ, ଏକାବେଳକେ ବିନାଶସାଧନ କରିବାକୁ ସମର୍ଥ ହୁଏ ନାହିଁ । ସାଧାରଣରୂପେ ବୋଲିବାକୁ ଗଲେ ପୈତୃକ ବା ବଂଶଗତ ଅଥବା ସାମାଜିକ ଦୋଷ ଗୁଣ ମାନବ ଜୀବନରେ ଅଧିକାର ସ୍ଥାପନ କରିଥାଏ ସତ୍ୟ; ହେଲେ ନିୟମର ବ୍ୟତିକ୍ରମର ଦୃଷ୍ଟାନ୍ତ ପୃଥିବୀରେ ଅଭାବ ନାହିଁ । ଦାସଙ୍କର ପିଲାଗୁଡ଼ିକର ଆକାର ସୁଗଠିତ, ଲୋକଚିତ୍ତରଞ୍ଜକ ଲାବଣ୍ୟବିଶିଷ୍ଟ । ରୂପ ସହିତ ସମସ୍ତଙ୍କ ସ୍ୱଭାବ ଚରିତ୍ରର ସାମଞ୍ଜସ୍ୟ ଥିଲେ ବଡ଼ ସୁଖକର ହୋଇଥାନ୍ତା । ଜ୍ୟେଷ୍ଠ ବାନାବର ସୁରୂପ, ସୁଶୀଳ, ସଚ୍ଚରିତ୍ର, ଶୀତଳ ପ୍ରକୃତିର ପିଲା; କିନ୍ତୁ ଶିକ୍ଷା ବିଷୟରେ ଅନାବିଷ୍ଟ । କନିଷ୍ଠ ନଟବର ମେଧାବୀ, ଶିକ୍ଷା ବିଷୟରେ ତତ୍ପର, ଧୂର୍ତ୍ତ, ବିଳାସୀ— ଏହି ପିଲାକାଳରେ ମଧ୍ୟ କୃପଣ ସ୍ୱଭାବର ପରିଚୟ ମିଳିଲାଣି । ଗୃହମଣି ରୂପରେ ଆନନ୍ଦମୟୀ ପ୍ରତିମା, ଗୁଣରେ ଦେବକନ୍ୟା, ଶିକ୍ଷାରେ ବାଗ୍‌ଦେବୀଙ୍କ ଅନୁଗୃହୀତା । ପିଲାମାନଙ୍କୁ ଶିକ୍ଷା ଦେବା ବିଷୟରେ ଦାଶରଥି ଦାସଙ୍କର ସର୍ବସ୍ୱ ପଣ । ହେଲେ ପିଲାମାନଙ୍କ ପଢ଼ାଶୁଣା ଦେଖିବା ବିଷୟରେ ତାଙ୍କର ସମୟ ନିତାନ୍ତ ଅଭାବ । ନାଜରାତି କାର୍ଯ୍ୟ ଏଡ଼େ ଭିଡ଼ ଯେ, ଖିଆପିଆରେ ମଧ୍ୟ ତର ନ ଥାଏ—ପିଲାମାନେ ଯେପରି ପଢ଼ୁଛନ୍ତି, ପଢ଼ୁଥାନ୍ତୁ ।

ଦିନେ ରାତିରେ ନାଜର ଠା'ରେ ବସିଛନ୍ତି, ସରସ୍ୱତୀ ଦେଈ ବଡ଼ାବଡ଼ି କରିଦେଇ ତାଳପତ୍ର ପଙ୍ଖାଟାଏ ଧରି ବିଞ୍ଚୁଛନ୍ତି, ଗୃହମଣି ବାପା ସାଙ୍ଗରେ ଖାଇବାକୁ ବସିଛି । ସେ ରାତି ଓଳିଟା ସାଙ୍ଗରେ ଖାଏ । ଗୃହ ଖାଉଛି; କେତେ ଭାତ ଗୁଣ୍ଡିଆଡ଼େ ବୁଣୁଛି, ଖାଉ ଖାଉ ଦଶଥର ଉଠିଯାଇ ଏଣେ ତେଣେ ଧାଉଁଛି, ଧାଈମା ଧମକାଇ ଦେଲେ ଧାଇଁ ଆସି ବସି ପଡ଼ୁଛି, ବେଳେ ବେଳେ ସଙ୍ଗୁଡ଼ି ହାତଟାରେ ବିରାଡ଼ିଟାର ଲାଞ୍ଜ ଟାଣୁଛି । ଧାଈମା କହିଲେ, "ଛି ଗୃହ ! ତୁମଗୁଡ଼ାକ ହାତରେ ଲାଗିଯିବ ।" ଏହି ସମୟରେ ସରସ୍ୱତୀ ଦେଈ ପଚାରିଲେ, 'ହଁ ହୋ ଭାଇ ସାନ୍ତ ! ଆଜି ଓପର ଓଳି ଆମ ଦୁଆରକୁ ଯେଉଁ ପିଲା ଦିଓଟି ଆସିଥିଲେ, ସେମାନେ କିଏ ? ତୁମେ ତ ପିଣ୍ଡାରେ ବସିଥିଲ, ଦେଖିନ ?" ଦାସେ କହିଲେ, 'କେଉଁ ପିଲା ? ଓ—ହୋ—ସେହି ପିଲାମାନଙ୍କ କଥା ପଚାରୁଛ ପରା ? ସେମାନେ ଉତ୍ତରବିସ୍ତୁ ବଂଶର ଦୁଇ ପିଲା ।'

ସରସ୍ୱତୀ ଦେଈ ପଚାରିଲେ, "ସେହି ଯେ ଛୁଟି ଅଟାଟି ଲଗାଇ ଥିଲା, ସେଇଟି କିଏ ?" ଦାସେ 'ଉତ୍ତରରାୟ ବଂଶର, ତାହାର ନାମ ପ୍ରତାପ ଉଦିତମଲ୍ଲ ଉତ୍ତରରାୟ । ଆଉଟି ଶ୍ରେଷ୍ଠରାୟ ବଂଶର, ଯାହାର ନାମ ପୀତାମ୍ବର ମଲ୍ଲ ଶ୍ରେଷ୍ଠରାୟ । ଆଜି ପଡ଼ିଆରେ ଫୁଟବଲ ଖେଳ ହେଉଥିଲା, ଦେଖିବାକୁ ଯିବା ସକାଶେ ବାନା ଆଉ ନଟିକୁ ଡାକିବାକୁ ଆସିଥିଲେ ।'

ସ୍ୱରସ୍ୱତୀ ଦେଈ ଆଉଦିନେ ଆମ ଦୁଆରକୁ ଆସିବେ ନାହିଁ ?

ଦାସେ—ବାନା ଆଉ ନଟିକୁ କହିବ, ଖେଳ ଦେଖିବାକୁ ଯିବା ବାହାନା କରି ଡାକି ଆଣିବେ ।

---

-୭-

## ପାଠଶେଷ

ଏଣ୍ଟ୍ରାନ୍‌ସ ପାସ ତାଲିକାରେ ଏକା ବର୍ଷ ଗେଜେଟରେ ପ୍ରତାପଉଦିତ, ପୀତାମ୍ବର ଆଉ ନଟବର ଏହି ତିନି ଜଣଙ୍କ ନାମ ବାହାରିଲା । ବାନାବର ଥାର୍ଡ୍‌କ୍ଲାସ ଟପି ପାରିନାହିଁ, ଏଣେ ବୟସଟା ମଧ୍ୟ ବଳି ପଡ଼ିଲାଣି । ଦିନେ ପାଠମା ଆସି କହିଲେ, 'ସେ ଯାହା ଯାହା ଯେତେ ଜାଣିଥିଲେ, ବୃନ୍ଦମଣିକୁ ସବୁ ଶିଖାଇ ଦେଇଛନ୍ତି, ଆଉ କିଛି ଶିଖାଇ ପାରିବେ ନାହିଁ । ବୃନ୍ଦମଣି ସବୁ ସବୁଥିରୁ କିଛି ଶିଖି ପକାଇଲଣି—ହାତ ଅକ୍ଷରଗୁଡ଼ିକ ମୁକ୍ତାମାଳା ।' ପାଠମା କହିଲେ, "ସେ ଯେତେ ବାଳିକାଙ୍କୁ ସିଲେଇ ଶିଖାଇଛନ୍ତି, ବୃନ୍ଦମଣି ପରି କେହି ବଳିଆ ସିଲାଇ କରି ଜାଣେ ନାହିଁ । କୁକୁରଟା ବିରାଡ଼ିଟାର ଛବି 'ଚଳନ୍ତି ରକମ ଆଙ୍କି ଦେଇପାରେ ।" ଦାସେ ଦେଖିଲେ, ବାନାବର ଚାକିରି କରିବାକୁ ଏକାବେଳକେ ନାରାଜ, ସ୍ୱାଧୀନଭାବରେ କିଛି କାମ କରିବାକୁ ତାହାର ଇଚ୍ଛା । ପୂର୍ବରୁ ଇନାମ ମହତ୍ରାଣ ଭୂମି ଚାରିଶ ମାଣ ଥିଲା ଦାସେ ବହିକଟରେ ଦୁଇ ଗୃହସ୍ଥଙ୍କ ଜମାଇ ଆଉ କୋଡ଼ିଏ ମାଣ ସଙ୍କେ ଲାଖରାଜ ବ୍ୟାଜ୍ୟାପ୍ତି ଆଉ ଚାଷ ଜମି କିଣିଥିଲେ । ସେ ସମସ୍ତ ବାନାବର ଜମା କରାଇ ଦେଲେ । ସେ ଆନନ୍ଦପୂର୍ବକ ଚାଷ କରିବା ସକାଶେ ଗ୍ରାମକୁ ଚାଲିଗଲେ । ଏହି ସମୟରେ କଟକରେ ଥାଉଁ ଥାଉଁ କାକଟପୁର ମୌଜା ବିଶ୍ୱ ମହାନ୍ତିଙ୍କ ବଡ଼ ଝିଅ ଲଳିତା ସଙ୍ଗରେ ବାନାବରର ବିବାହ ପ୍ରସଙ୍ଗ ସ୍ଥିର ହୋଇଗଲା । କୋଷ୍ଠୀ ମିଳା, ଧାଇ ବେହେରା ଦେଖାଦେଖି ପାଇଛି ଛୁଟଛୁଟ । ଆସନ୍ତା ମେଷ ଶୁକ୍ଳ ପଞ୍ଚମୀକୁ ବିବାହ ଦିନ ସ୍ଥିର ।

---

-୭-

## ଭୂସ୍ୱାମୀ ଯୁବକଯୁଗଳ

ଏଣ୍ଟ୍ରାନ୍‌ସ ପାସ ସମୟକୁ ପ୍ରତାପ ଉଦିତସିଂହ ମଲ୍ଲ ଉତ୍ତରାୟଙ୍କର ନାବାଳକ ଫିଟିଥିଲା । ତାଙ୍କୁ ଚାଲିଯାଇ କଲ୍ଲାର କାର୍ଯ୍ୟମାନ ବୁଝାବୁଝି କରିବାକୁ ଲାଗିଲେ । ପୀତାମ୍ବର ପିତା ସନାତନ ଅଦ୍ୟମନ କଲ୍ଲାର ବିଷୟମାନ ବୁଝାବୁଝି କରନ୍ତି । ତାଙ୍କର ଇଚ୍ଛା, ପୁଅ ଯୁବକ ଓ ବିଦ୍ୟାବନ୍ତ; ମୁଲୁକ ତାଲୁକ ବୁଝାବୁଝି କରୁ—ବୁଢ଼ା ଘରେ ମାଳ ଧରି ବସିବେ । ହେଲେ କଣ, ପୀତାମ୍ବରଙ୍କ ଇଚ୍ଛା ଅନ୍ୟରୂପ—ପିତାଙ୍କ ବର୍ତ୍ତମାନତାରେ ବିଷୟରେ କର୍ତ୍ତୃପଣ କରିବାକୁ ସେ ଅନିଚ୍ଛୁକ । ଡେପୁଟି କର୍ମରେ ନିଯୁକ୍ତ ହୋଇ କଟକରେ ରହିଲେ । ରଜାପୁଅ ପରି ଯୁବାଟା, ଏପରି ଶ୍ରେଷ୍ଠକୁଳିଆ କର୍ମରେ ନିଯୁକ୍ତ ହେବା ବଡ଼ ଅଗୌରବର କଥା । ଚାକିରି ହେଲା ତ କଣ ହେଲା - ହୋଇଥାନ୍ତା ଗୋଟିଏ ହାକିମ ହୁକୁମା ଭଲିଆ ଚାକିରି – ମନା ନ ଥିଲା, ଏଇଟା କଣ ନା— ଅମଲା । ପୀତାମ୍ବରଙ୍କ ଅଭିପ୍ରାୟ ହେଲା ଅନ୍ୟ ରକମ ।

ଟଙ୍କା ଅର୍ଜିବାପାଇଁ ଚାକିରି ନୁହେ—ଗୋଟାଏ ବନ୍ଧାବନ୍ଧି କାର୍ଯ୍ୟ ନ ଥିଲେ ଆଳସ୍ୟ ଆସି ମାଡ଼ିବସିବ । ଆଉ ଗୋଟାଏ କଥା, ମାଲି ମକଦମା ଉପଲକ୍ଷରେ ନାନା ଶ୍ରେଣୀର ଲୋକ କଚେରିକୁ ଯିବା ଆସିବା କରିବା ଯୋଗୁଁ ଦେଶର ଆଭ୍ୟନ୍ତରିକ ଅବସ୍ଥା ବିଶେଷରୂପେ ଜାଣି ପାରିବେ । ଲୋକମାନଙ୍କ ରୀତି ଚରିତ୍ର ଜାଣିବାକୁ ତାଙ୍କର ଇଚ୍ଛା । ତୃତୀୟ କଥା, ହାକିମହୁକୁମାଙ୍କ ସମ୍ମୁଖରେ ସବୁବେଳେ ଥିଲେ ଆପଣା କଲ୍ଲାର ଏବଂ ଆଉ ଲୋକଙ୍କର କିଛି କିଛି ଉପକାର କରିବାକୁ ସମର୍ଥ ହେବେ । ଯାହାହେଉ, ପିତାମ୍ବର ଶ୍ରେଷ୍ଠରାୟଙ୍କ ମତ ସମ୍ଭବତ ଆମ୍ଭମାନଙ୍କ ମତ ମିଳୁନାହିଁ । ଅନ୍ୟ ଉପାୟରେ ସେ ଇଚ୍ଛା ସାଧନ କରି ପାରନ୍ତେ, ଗୋଲାମିଟା କ୍ୟାଁ ? ଏଇଟା ଯେ ଅମର୍ଯ୍ୟାଦାର କଥା, ତାହା ତ ସେ ବୁଝିଲେ ନାହିଁ । ସେ ଜ୍ଞାନୀ, ବୁଦ୍ଧିମାନ୍, ଆମ୍ଭମାନଙ୍କଠାରୁ କଣ ଊଣା ବୁଝନ୍ତି ? କଥା କଣ ଜାଣନ୍ତି – ଯାହାର ମନ ଯହିଁକି ପାଏ, ପଲଉ ଫିଙ୍ଗି ପଖାଳ ଖାଏ । ଆମ୍ଭମାନଙ୍କର ଏଥିରେ କଣ ଅଛି—ତେବେ ହକ୍ କଥାଟା ନ କହି ରହି ପାରିଲୁ ନାହିଁ । ଚାକିରିଟାଏ ହେଲେ କଣ ହେଲା, କଟକରେ ନାମ ଡାକ, ଆପଣା ମାନ ମହତ୍ତ୍ୱକୁ ତ ଜଗି ଚାଲିବାକୁ ହେବ ? ସେହିପରି କୋଠାଘର, ଚାକରବାକର ବନ୍ଦୋବସ୍ତ ଭଲ କରି ନ କଲେ ନୁହେ । ଅଧିକ ଟଙ୍କା ଖରଚ ଦରକାର, ଦରମା କେତେଟା ଟଙ୍କା କି ସେଥିକି ପାଏ ? ପିତା ସନାତନ ଅରିଦମନ ଶ୍ରେଷ୍ଠରାୟ ମାସକୁ ମାସ ଉପଯୁକ୍ତ ଟଙ୍କା ପଠାଇ ଦିଅନ୍ତି । ଠା' ସକାଶେ ଭଲ ଓଚିଆ ମୁଗଜାଇ ଘିଅ ପ୍ରଭୃତି କଲ୍ଲାରୁ ଆସେ ।

ବସା ଖରଚ ଛଡ଼ା ତାଙ୍କର ନିଜର ଗୋଟିଏ କ୍ଷୁଦ୍ର ପୁସ୍ତକାଳୟ ଅଛି । ଅନେକ ପ୍ରକାର ପୁସ୍ତକ ପତ୍ରିକାଦି କିଣିବାକୁ ହୁଏ, ସେଥି ସକାଶେ ଅନେକ ଟଙ୍କା ପ୍ରୟୋଜନ, ସବୁ ପିତା ଦେଉଥାନ୍ତି ।

---

-୮-

## ଚନ୍ଦ୍ରମଣିର ବିବାହ ପ୍ରସ୍ତାବ

'ଅଭ୍ୟର୍ଥନାଭଙ୍ଗଭୟେନ ସାଧ-
ର୍ମାଧ୍ୟସ୍ଥ୍ୟମିଷ୍ଟୋଽପ୍ୟବଲମ୍ବତେଽର୍ଥେ ।'

(କୁମାରସମ୍ଭବ)

ଜ୍ୟେଷ୍ଠପୁତ୍ର ବାନାବରର ମଙ୍ଗଳକୃତ୍ୟ । ବହୁଦିନ ଯାବତ୍ କର୍ମରୁ କେବେ ଛୁଟି ନେଇ ନାହାନ୍ତି, କର୍ମକ୍ଳାନ୍ତ ଶରୀରର ବଳାଧାନ ନିମନ୍ତେ ଦାସେ ଦଶ ମାସର ଛୁଟି ନେଇ ନିଜ ଗ୍ରାମ ରୁକୁଣାଦେଈପୁରରେ ରହିଛନ୍ତି ।

ବାନାବରର ମଙ୍ଗଳକୃତ୍ୟ ସୁରୁଖୁରୁରେ ବଢ଼ିଗଲା । ଲୋକେ ବୋଲନ୍ତି, ବାହା ବିବାଦ—ବିବାହ ସମୟରେ କୌଣସି ପକ୍ଷରୁ ହେଲେ କିଛି ବଖେଡ଼ା ବାହାରେ । ବାନାବର ବିଭାରେ ତାହା କିଛି ଶୁଣା ଗଲାନାହିଁ । କିଆଁ ଶୁଣାଯିବ ? ଦୁଇ ପକ୍ଷ ଦୁଇ କୁଳର ମାନ ମହତ୍ତ୍ୱକୁ ଜଗି ଚାଲିଲେ ବଖେଡ଼ାବଗଡ଼ର ବାଟ ଥାଏ ନାହିଁ । ଉତ୍ତୁଣି ବଡ଼ ବୋହୂଟି ଘରେ—ମହତ ଘର ଝିଅର ମହତପଣିଆ ସବୁଠାରେ—ରୂପରେ ଗୁଣରେ କେହି ବାଛିବାକୁ ନାହିଁ । ଲୋକ କହନ୍ତି, କପାଳକୁ କନ୍ୟା ମିଳେ ।

ହାତରେ କିଛି କର୍ମ ନାହିଁ, କୌଣସି ବିଷୟରେ ଭାବନା ନାହିଁ, ଦାସେ ନିଶ୍ଚିନ୍ତ ମନରେ ଘରେ ବସି ଆରାମ କରୁଛନ୍ତି । ଦିନେ ଉପର ଓଳି ମେଲରେ ଗୋଟାଏ ସଉପ ପାରି ବସିଛନ୍ତି—ମେନକା ଦେଈ ଆଉ ସରସ୍ୱତୀ ଦେଈ ଦୁଇଜଣ ପାଖରେ । ଏଣୁ ତେଣୁ ନାନା କଥା ଚାଲିଛି । ସରସ୍ୱତୀ ଦେଈ କଥା ପଡ଼ୁ ପଡ଼ୁ କହି ବସିଲେ, 'ହଁ—ହେ—ଭାଇସାନ୍ତ ! ତୁମେ ତ ଉତ୍ତୁଣି ଛୁଟିଟାରେ ଘରେ ବସିଛ;—ଏତିକିବେଳେ ଚନ୍ଦ୍ରର ମଙ୍ଗଳକୃତ୍ୟ ବିଷୟରେ କିଛି ବୁଝାବୁଝି କଲେ ଭଲ ହୁଅନ୍ତା ନାହିଁ ?" ଦାସେ କହିଲେ, "ସେଥିଲାଗି

ଏତେ ତରବର କାହିଁ ? ଗୃହ ଏପରି କଣ ଅବୁଢ଼ୀ ଝିଅ ଘରେ ବସିଛି ଯେ, ଚଞ୍ଚଳ ହୋଇ ପଡ଼ିବା ? ଏହି ଗଣି ପକାଅ ନା—ବୃନ୍ଦ ଜନ୍ମଦିନରେ ମୋହର ନାଚଗୀତ ଗୃହକରି—ହାତଗଣନ୍ତା ହେଲା ଚଉଦ ବର୍ଷ ଛ ମାସ ସାତ ଦିନ । ଆମ କରଣ କୁଳରେ କୋଡ଼ିଏ ବାଇଶି ବର୍ଷର ଅଭିଆଡ଼ୀ ଝିଅ ବସିଛନ୍ତି, ଦେଖୁନାହିଁ କି ?''

ସରସ୍ୱତୀ ଦେଈ—''କୋଡ଼ି କୋଡ଼ି ବର୍ଷରେ ଅଭିଆଡ଼ୀ ଝିଅ ଅଛନ୍ତି ସତ କଥା, ହେଲେ ମୋ ମନକୁ ସେ କଥାଟା ପାଏନାହିଁ । 'ଝିଅ ଘରେ ରହିଲେ ଅଡ଼ୁଆ, ଘିଅ ଘରେ ରହିଲେ କଡ଼ୁଆ ।' ସେ ହେଲା ପରଦିଗ—ଦେଲା ନାଶ ହେଲା ପାର ।' ବୋଲ ହେଲା, ବିଭା କରିଦେଲା, ପାଇଟି ଛୁଡ଼ିଲା । କରଣ କୁଳରେ ଅଛି ଏଇଟା କଣ ଶାସ୍ତ୍ର କଥା ନା ଭଲ କଥା ? ପାଞ୍ଚଜଣ କରୁଛନ୍ତି ବୋଲି ଧରପଗଡ଼ କେହି କରେନାହିଁ—ସେଇଟା ଯିମିତି ସହି ଗଲାଣି । ହେଉ ହେଲା—ତୁମେ ତ ଭଲ ଆଖି ଫେରାଅ, ଖୋଜାଖୋଜିରେ କେତେଦିନ ଯିବ, କିଏ ଜାଣେ ?''

ଦାସେ—''ଜାଣିଲ, ଏଇଟା ହେଲା ପ୍ରଜାପତି ଘଟସୃଷ୍ଟି କଥା—ବିଭା ରାତି ପାହିଲେ ବଳେ ବାରହେବ—''ହିବାହଜନ୍ମ ଯଦ୍‌ଯଚନ୍ତତ ଯେନ ଚ ।''

ସରସ୍ୱତୀ ଦେଈ ହସି ହସି କହିଲେ, ''ଓ—ହୋ, ତୁମ ପାଠ ବାନ୍ଧି ରଖ । ପ୍ରଜାପତି କଣ ଗାଁ ଗାଁ ବୁଲି କନ୍ୟା ବର ଖୋଜୁଥାନ୍ତି ? ତୁମେ ଖୋଜାଖୋଜି କରିବ, ପ୍ରଜାପତି ଘଟାଇ ଦେବେ ସିନା ? ନା—ତୁମେ ଘରେ ତୁନି ହୋଇ ଶୋଇଥିବ, ପ୍ରଜାପତି ଆସି ତୁମକୁ ଡାକିବେ ?''

ମେନକା ଦେଈ କହିଲେ, ''ତୁମେମାନେ ଯାହା ଇଚ୍ଛା ତାହା କର, ହେଲେ—ମୋ ରକମ ପାତ୍ର ନ ହେଲେ, ମୋର ରାଜି ନାହିଁ । ମୋ ଗୃହ କି ବଡ଼ି-ପାଣିରେ ଭସି ଆସିଛି—ଟାଉ ଟାଉ ଯେମିତି ଗୋଟାଏ କରି ପକାଇବ ?''

ଦାସେ—''ତୁମେ କ'ଣ ମନରେ କରିଛ, ମୁଁ ତୁନି ହୋଇ ବସିଛି ? ଆଖି ଫେରାଇ ଦେଖିଲଣି, ଉଚ୍ଚୁଣି କରଣ କୁଳରେ ସିମିତିକା ପିଲା କାହିଁ ?''

ସରସ୍ୱତୀ—''ମୁଁ ବି ମନେ ମନେ ଖୋଜୁଛି । ଆଚ୍ଛା ଭାଇ ସାନ୍ତ ! ଖଣ୍ଡାଇତ ମହାନାୟକ କୁଳରେ ତ ଚଳେ ? ଏ ଦେଖ ନାହିଁ, ଏ ଅଞ୍ଚଳରେ କେତେ ହୋଇ ଗଲାଣି ।''

ଦାସେ—''ହଁ, କାହିଁ ନ ହେବ ?''

ମେନକା ଦେଈ ଯାହା କହିଥିଲେ ତେତିକି—ଏଣିକି ମୁଣ୍ଡ ପୋତି ସବୁ ଶୁଣି ଯାଉଛନ୍ତି—ମଲ୍ଲୀ କି ଚମ୍ପା, ପାଟି ଫିଟାଇବାକୁ ନାହିଁ ।

ଠିକ୍ ତେତିକବେଳେ ଗୃହମଣି ଅଳ୍ପଦୂରରେ ବସିଥିଲା, ବିଭା କଥା ଶୁଣି ମୁହଁ ଲାଜରେ ରଙ୍ଗା ପଡ଼ିଗଲାଣି, ପଳାଇ ଯିବାକୁ ବାଟ ନାହିଁ ମା ବାପ ଆଗଦେଇ ବାଟ, ତୁଚ୍ଛାଟାରେ ତା ପୋଷା ବିରାଡ଼ିର ଲାଞ୍ଜ କାନ ଧରି ଭିଡ଼ୁଛି, ମିଛଟାରେ ଘାରି ରାଗିଯାଇ ବିରାଡ଼ିଟା ପିଠିରେ ମୁଣ୍ଡରେ ସେହି ପଦ୍ମଫୁଲରୁ ବଳି ସୁନ୍ଦର କୋମଳ ହାତରେ ଧୀରେ ଧୀରେ ଗୃପୁଡ଼ା ମାରୁଛି । ବହୁକାଳ ପୂର୍ବକୃତ ଉମାଦ ଅପରାଧର ଅଭିଯୋଗ ତତ୍‌ପ୍ରତି ଉପସ୍ଥିତ । କେଉଁ ଦିନ ସେ ଗୋବୋଇଘର ଭିତରେ ଅନଧିକାର ପ୍ରବେଶ କରି ଧାଈମାଙ୍କ ଦୁଧ ହାଣ୍ଡି ଗଡ଼ାଇ ଦେଇଥିଲା--ଅଭିଯୋଗ ଶୁଣାଇ ଦୁଇ ଗୃପୁଡ଼ା । ତୁ ସେ ଦିନ ମାଛ ଖାଇ ଯାଇଥିଲୁ ପରା ? ପିଠିରେ ଦୁଇ ଗୃପୁଡ଼ା । ଗୁରୁବାର-ଓଷାଦିନ ଛିଞ୍ଚି ଭୋଗ ଖାଇନାହୁଁ ? ଦୁଇ ଗୃପୁଡ଼ା ଓ କର୍ଣ୍ଣମର୍ଦନ । ବିରାଡ଼ିର ପ୍ରତ୍ୟେକ ଅଭିଯୋଗର ଜବାବରେ ଉତ୍ତର—ମିଆଉଁ । ପଳାଇ ଯିବା ସକାଶେ

ଯଥାସାଧ୍ୟ ଚେଷ୍ଟା କରି ମଧ୍ୟ ଅକୃତକାର୍ଯ୍ୟ ହେଉଛୁ ଏବଂ ବାରମ୍ବାର ତାହାର ଉତ୍ତର—ମିଆଉଁ, ଅର୍ଥାତ୍ ସେ ନିରପରାଧ । ଚାପୁଡ଼ାମାଡ଼ ଲଞ୍ଜ କାନ ଟଣାଟଣିରେ ମାର୍ଜାରପୁତ୍ରୀ ଘର ହକ୍‌ଦାର ହୋଇ ଗଲାଣି । ଦୂର ପଶୁ ! ତୁ ଏହି କୈତବକୋପସମ୍ବଳିତ ପ୍ରେମପୂର୍ଣ୍ଣ ପ୍ରହାରର ମର୍ଯ୍ୟାଦା-ମାଧୁରୀ କାହୁଁ ବୁଝିବୁ ? ନିତାନ୍ତ ସୁକୃତିମାନ୍ ସୌଭାଗ୍ୟଶାଳୀ ଯୁବକ ଉପରେ ଏହି ପ୍ରୀତିପ୍ରହାର ବାଞ୍ଛନୀୟ—ସେ ତପସ୍ୟା ତୋହର କାହିଁ ?

ଧାଈମା କେବଳ କଥାରେ ଲାଗି ନାହାନ୍ତି—ଚାନ୍ଦମଣିର ତାତ୍କାଳୀକ କ୍ରିୟାକଳାପପ୍ରଭୃତି କୌଶଳରେ ଦୃଷ୍ଟି ରଖିଛନ୍ତି । ଉପସ୍ଥିତ ପ୍ରସ୍ତାବ ସମ୍ବନ୍ଧରେ ଚାନ୍ଦର ମଧ୍ୟ ଅଭିପ୍ରାୟ ଜାଣିବା ପ୍ରୟୋଜନ । ଧାଈମା କିଞ୍ଚିତ୍ ବିଶେଷ ମନୋଯୋଗପୂର୍ବକ କୌଶଳରେ ଦେଖିଲେ ଚାନ୍ଦମଣିର ମୁଖ ଏବଂ ହସ୍ତ ଯଦିଚ ମାର୍ଜାର ଶାସନରେ ବ୍ୟସ୍ତ; କିନ୍ତୁ କର୍ଣ୍ଣ ଯେମନ୍ତ କଥୋପକଥନ ଶୁଣିବାପାଇଁ ପ୍ରସ୍ତୁତ । ଧାଈମା କଣ ବୁଝିଲେ, ତାଙ୍କ ମୁଖରେ ଆନନ୍ଦର ଚିହ୍ନ ଦେଖାଗଲା । ଜାଡ଼ୀ କଥା ଜାଡ଼ୀ ମା ବୁଝେ, ଅନ୍ୟ ଲୋକ ପକ୍ଷରେ ବୁଝିବାକୁ ଚେଷ୍ଟା କରିବା ବିଡ଼ମ୍ବନା ମାତ୍ର ।

ଠିକ୍ ଏହି ସମୟରେ ଚାକର ମୁକୁନ୍ଦା ଆସି ଖବର ଦେଲା, ଗଡ଼ ନରପୁର ଉଆସରୁ ପୁରୋହିତ ଆସିଛନ୍ତି । ପୁଣି ଧାଈମାଙ୍କୁ ଅନାଇ କହିଲା, "ଯେଉଁ ବ୍ରାହ୍ମଣ ଆସି କଟକରେ ଢେର ଥର ଦେଖା କରୁଥିଲା, ସେ ବ୍ରାହ୍ମଣ ମଧ୍ୟ ସାଙ୍ଗରେ ଆସିଛି ।" ଧାଈମା ଚାକରକୁ ଆଖି ଟିପିଦେଲେ—ଅର୍ଥାତ୍ ସେ କଥା କହନା । କ'ଣ ମନକୁ ଆସିଲା, ଧାଈମା ଧଡ଼କରି ଉଠିପଡ଼ି ଭୌଁ ଭୌଁ ଶଙ୍ଖଟା ବଜାଇବାକୁ ଲାଗିଲେ । ଇତ୍ୟବସରରେ ବିରାଡ଼ିଟାକୁ ଫୋପାଡ଼ିଦେଇ ଚାନ୍ଦମଣି କବାଟ କଣରେ ଲୁଚି ଗଲାଣି । ମାର୍ଜାରକନ୍ୟା ଊର୍ଦ୍ଧ୍ୱପୁଚ୍ଛା ହୋଇ ଗୃହର ପଶ୍ଚାଦ୍‌ଭାଗକୁ ପଳାୟନପୂର୍ବକ ସଜନାଗଛ ମୂଳରେ ଚଢ଼ିଯାଇ ଜିହ୍ୱା ଯୋଗେ ଅଙ୍ଗପ୍ରସାଧନରେ ନିଯୁକ୍ତା । ତହିଁ ଉପରେ ଦେହଟା ଖାଡ଼ ଝୁଡ଼ ହୋଇ ଚତୁର୍ଦ୍ଦିଗକୁ ନିରୀକ୍ଷଣ କଲା-ଅଭିପ୍ରାୟ, ଦୁଷ୍ଟା ଚାନ୍ଦମଣି ଆଉଥରେ ଧରିବାକୁ ଆସୁଛି କି ନାହିଁ । ଅଦ୍ୟକାର ଉପସ୍ଥିତ ବିପଦରୁ ଉଦ୍ଧାର ପାଇବା ତାହାର ବୁଦ୍ଧି କୌଶଳର ଫଳ ମନେ କରି ଖୁବ୍ ଗୋଟାଏ ଆତ୍ମପ୍ରସାଦ ଅନୁଭବ କଲା ।

ଦାସେ ଦାଣ୍ଡ ମେଲାରେ ଗୋଟାଏ ସତରଞ୍ଜି ପାରି ଦେଇ ଅଭ୍ୟାଗତମାନଙ୍କୁ ଖୁବ୍ ବିନୟରେ ଆଦର ଅଭ୍ୟର୍ଥନା କଲେ । ପୁଣି କରଣ୍ଡର ମର୍ଯ୍ୟାଦାସୂଚକ ଖଣ୍ଡିଏ ପରିଷ୍କୃତ ଥାଳୀରେ ତାମ୍ବୂଳ ଏବଂ ଉପଯୋଗୀ ମସଲା ଆଣି ଆଗରେ ଥୋଇ ଦେଲେ । କଥୋପକଥନ ଆରମ୍ଭ ହେଲା । ଦାସଙ୍କର ଇଚ୍ଛା, ପରାମର୍ଶଟା ଆପାତତଃ ଗୋପନରେ ଚଳୁ । ପାଖରେ ଅନ୍ୟ ଚତୁର୍ଥ ଲୋକ କେହି ନ ଥିଲା, କେବଳ ଦୁଆରବନ୍ଧ ଉହାଡ଼ରେ ଗୋଟିଏ ସୁନ୍ଦର ନାସିକା ଦୃଶ୍ୟ ହେଉଥାଏ । କଥୋପକଥନ ଉପରେ ଦାସେ ହରିଦ୍ରାଜଳଲିପ୍ତ ଅର୍ଦ୍ଧହସ୍ତ ପରିମିତ ଖଣ୍ଡିଏ ଲେଖା ତାଳ[illegible] ଅଭ୍ୟାଗତଙ୍କ ମଧ୍ୟରୁ ଶୁକ୍ଳାମ୍ବରଧାରୀ ବିପ୍ରଙ୍କ ହସ୍ତକୁ ବଢ଼ାଇ ଦେଲେ । ସେମାନେ ମେଲାଣି ହେବା ଉପରେ ପୂର୍ବୋକ୍ତା ନାସିକାଧାରିଣୀ ହସି ହସି ଦାସଙ୍କ ସାକ୍ଷାତରେ ଉପସ୍ଥିତ । ଦାସେ କହିଲେ, "ଦେଖ ସରସ୍ୱତୀ, କଥାଟା ଯେମନ୍ତ ଉଛୁଣି ଫୁଟିଆର ନ ହୁଏ ।"

ତହିଁ ଆରଦିନ ରାତି ନ ପାହୁଣୁ ଗାଁଯାକ ଚହଳ ପଡ଼ିଗଲା, ନରପୁର ଗଡ଼ର ଉତ୍ତରରାୟ ଯାନ୍ତ୍ରଙ୍କ ସଙ୍ଗରେ ଚାନ୍ଦମଣିର ବିବାହ ପ୍ରସଙ୍ଗ ଚାଲିଛି । କଥାଟା ଏ ଗାଁରୁ ସେ ଗାଁ ଢେର ଦୂରକୁ ଚାଲିଗଲା । କେହି କହିଲେ, ବିବାହ ହେବାର ସ୍ଥିର । "ଖାମା-ମା କହିଲା, ନିବନ୍ଧ ଦିନ ଦାସଙ୍କ ଘରେ ଢେର ଲୋକ ଜଳପାନ କଲେ । ଖାମା ପଛରେ ଯାଇ ପହଞ୍ଚିଲା, ଖଜା ପିଠା ପଣା ଢେର

ହୋଇଥିଲା, ଦେଢ଼ଶ ଲୋକରୁ ଊଣା ନୁହେ ।" ଆଉ ଗାଁରେ କଥା ଉଠିଲା, ମକର ସତର ଦିନକୁ ଲଗ୍ନ ସ୍ଥିର। ଗାଁ ଟୋକାଗୁଡ଼ାଙ୍କ ଉପରେ ବୃନ୍ଦାମଣି ଦିନଯାକ ଘରୁ ବାହାର ନାହିଁ ।

ତହିଁ ଉତ୍ତାରେ ଲୋକେ ବରକନ୍ୟାଙ୍କ ରୂପ ଗୁଣ ବିଷୟ ଆଲୋଚନା କରିବାକୁ ଲାଗିଲେ । କେହି କହିଲା, ଦାସଙ୍କ ଜେମାପରି ସୁନ୍ଦରୀ ଖଣ୍ଡମଣ୍ଡଳରେ ନାହିଁ । ରୂପ-ବିଜ୍ଞାନବିଦ୍ ବୃଦ୍ଧ ହରି ପଣ୍ଡାଏ ଆପଣାର ଅଭିଜ୍ଞତା ଜଣାଇବା ସକାଶେ ହାତ ହଲାଇ କହିଲେ, "ଆରେ ରଖି ଦେ, ମୁଁ ତ ନରସୁର ଧାନ୍ତଙ୍କୁ ଦେଖିଛି, ଠିକ୍ ଯେମନ୍ତ କାର୍ତ୍ତିକଟିଏ—ତୁମ ଦାସଙ୍କ ଜେମା ତାଙ୍କୁ କେଉଁଠି ଲାଗେ ! ହେଲେ—ସର୍ବବାଦସମ୍ମତିରେ ସ୍ଥିର—ପ୍ରଜାପତି ଯେମନ୍ତ ଦୁହିଙ୍କୁ ଗୋଟିଏ ଚକରେ ଗଢ଼ିଛି ।

ପଣ୍ଡିତ ଗୋପାଳ ରଥେ ନାସ ସୁଙ୍ଗ୍ ସୁଙ୍ଗ୍ କହିଲେ—
'ରତ୍ନଂ ସମାଗଚ୍ଛତୁ କାଞ୍ଚନେନ ।'

—୯—

## ଗେଟେହଉ

ହେ ପାଠକ ମହାଶୟ ! ନାମଟା ଶୁଣି କଣ ମୁହଁ ବିଚକୁଟୁଛନ୍ତି ? ଏଇଟା, କପରି ଅପରିଚ୍ଛନ୍ନଆ ନାମ ହେଲା । ଉପନ୍ୟାସ ନାୟିକାର ନାମ କମଳା, ପଦ୍ମମା, ରାଧିକା, ରୁକ୍ମିଣୀ ଏହିପରି କିଛି ସୁନ୍ଦର ନାମ ହେବାର ଉଚିତ ଥିଲା, ଏଇଟା କଣ ହେଲା ନା ଗେଟେହଉ ! ହେଲେ ପାଠକେ ! ଟିକିଏ ସ୍ବରଆଡ଼କୁ ନଜର ରଖି କଥାକହନ୍ତୁ, ଲେଖକର ଅବସ୍ଥା ତ ହାଟରେ ପଡ଼ି ଦାଣ୍ଡରେ ଗଡ଼ ଗଡ଼ ଯାଉଛି, ସେ ପୁଣି ଲେଖିବାକୁ ବସିଛି କେତେଜଣ ଗାଉଁଲି ଲୋକଙ୍କ କଥା—ବଡ଼ଲୋକଆ ନାମ ବା କାହୁଁ ପାଇବ ? ଆଚ୍ଛା ହେଲା ବା ଅପରିଚ୍ଛନ୍ନଆ ନାମ, ଗୁଣ ତ ଥିବା ଉଚିତ ? ଆରେ ରାମ ବୋଲ ! ମଫସଲର ଗୋଟାଏ କ୍ଷୁଦ୍ର ଗ୍ରାମର ଚୋଟାଏ ଅଶିକ୍ଷିତା ଅଳ୍ପବୟସ୍କା ସ୍ତ୍ରୀଟାଠାରୁ କି ଗୁଣ ପ୍ରତ୍ୟାଶା କରନ୍ତି ? ତେବେ ତା ବିଷୟ ଚର୍ଚ୍ଚା କିଆଁ ? ସେଥି ବିଷୟରେ ଗୋଟାଏ କୈଫିୟତ୍ତ କାଟି ରଖିବା· ଲେଖକ ନିରାପଦ ବିବେଚନା ବୋଲି ଜ୍ଞାନ କରେ ।

ପ୍ରଥମ କଥା—ଯେତେ ତୁଚ୍ଛ ହେଉ ପଛକେ, ଗେଟେହଉ ଏହି ଉପନ୍ୟାସର ଗୋଟିଏ ନାୟିକା । ସମସ୍ତ ନାୟକ ନାୟିକାଙ୍କ ରୂପ ଗୁଣ ବିଷୟ ଯେ ସ୍ଥଳରେ ଲେଖିବାକୁ ବସିଛୁ—ଅତି ସାମାନ୍ୟ ବୋଲି ଜଣକୁ ହେଣ୍ଟିଦେଇ ଯିବା ନିହାତ ତରଫଦାନ କଥା । ତଥାପି ତାକୁ ଛାଡ଼ି ଦିଅନ୍ତୁ—ହେଲେ ପାଠକ ମହାଶୟଙ୍କ ସହିତ ତାହାର ଅନେକ ଥର ଭେଟ ହେବ, ଭଲ କରି ଚହ୍ନାଇ ନ ଦେଇଥିଲେ ଆପଣମାନଙ୍କ ପକ୍ଷରେ ଭାରି ଅସୁବିଧାର କଥା ।

ଦ୍ୱିତୀୟ—ଗ୍ରାମରେ ଗେଟେହଉ ସମସ୍ତଙ୍କର ଚହ୍ନା, କେହି ତାକୁ ଭଲପାଏ, କେହି ସ୍ନେହ କରେ, ତାହାର ପ୍ରଶଂସା ଢେର ଲୋକଙ୍କଠାରୁ ଶୁଣାଯାଏ, ଭକ୍ତି ମଧ କେହି କେହି କରଥାନ୍ତି—ତାକୁ ଡରିମରି ରହିବା ଲୋକର ବି ଅଭାବ ନାହିଁ । ପିଲା, ଭେଣ୍ଡିଆ ଅବା ବୁଢ଼ା ହେଉ, ମା ଝିଅ ଜେଜୀ ବୁଢ଼ୀ ଭଳିଆ ହେଉ, କାହାରି ମିଛ ଅମିଛ କଥା ଦେଖିଲେ ସେ ଏପରି ଗୋଟାଏ ଛଟା ମେଲ ଦିଏ ଯେ, ଲୋକ ମରଣସନ୍ତୋଷ ହୋଇଯାଏ, ମାଡ଼ଠାରୁ ବଳି ପଡ଼େ, ଲୋକଟା ଗାଁରେ ମୁଣ୍ଡ ଟେକି ପାରେ ନାହିଁ । ଏସବୁ ଦେଖି ଶୁଣି ଲେଖକ ତା ବିଷୟରେ ସାବଧାନ ହୋଇ ଚଳିବାକୁ ବିବେଚନା କରେ ।

ଗଲା ଏଗାର ଅଙ୍କ ଗ୍ରାମ ମଧ୍ୟରେ ଯେଉଁ ଭାରି ଡାକୁଣୀ ଗୋଳଟା ପଡ଼ିଥିଲା, ଆଜଯାଏ ସେ କଥାଟା

ମନରେ ପଡ଼ିଗଲେ ଲୋମ ଟାଙ୍କୁରି ଉଠେ । ଲୋକ ଦଶପଣ ଛପଣ ହୋଇ ଯାଇଥିଲେ—ବେଶି ଭାଗଟା ଉଜାଡ଼ି । ସେଇ ବାଡ଼ିରେ ଗେନ୍ଦ୍ଳେଇର ଗେରସ୍ତ ଘନ ବିଶ୍ୱାଳ, ଶାଶୁବୁଢ଼ୀ ଟେମୀ ଆଉ ଦେଢ଼ବର୍ଷର ଗୋଟିଏ ପୁଅ ଲଗ ଲଗ ତିନି ଦିନରେ ଚାଲିଗଲେ । ଗାଁ ଭିତରେ ସେତେବେଳେ ଇମିତି ଗୋଟାଏ ହାଉଳି ପଶିଯାଇଥିଲା ଯେ, ସଞ୍ଜ ହେଲା ତ ସମସ୍ତଙ୍କ ଦୁଆରେ ତାଟି କବାଟ ବନ୍ଦ । କାହାରି କାହାରି ଘରେ ଦୁଇ ତିନି ଦିନର ମୁରଦାର ପଡ଼ି ପଚୁଛି, କେହି କାହାରି ଦୁଆରକୁ ଯିବାକୁ ନାହିଁ, ଉଠାଉଛି କିଏ ? ସେତେବେଳକୁ ଗେନ୍ଦ୍ଳେଇର ବୟସ କୋଡ଼ିକରୁ ଊଣା । ବିଧବାଟା ଘରୁ ବାହାରି ନାହିଁ—କାହାକୁ ବା ଡାକିବ, କାହାକୁ ଡାକିବାକୁ ଯିବ – ଆସୁଛି ବା କିଏ ? ଗେନ୍ଦ୍ଳେଇ ସେତେବେଳେ ଦେଖିଲା ଯେ ଚାରିଆଡ଼ ଅନ୍ଧାର—କଣ କରିବ ? ବୃନ୍ଦାବତୀ ଚଉରାଟି ମଝିବାହାରେ – ଶାଶୁଘରେ ଗୋଡ଼ଦେବା ଦିନରୁ ସେ ବୃନ୍ଦାବତୀଙ୍କୁ ବଡ଼ ଭକ୍ତି କରେ । ରୋଜ ଗୋବର-ପାଣିରେ ଲିପାପୋଛା କରିଦିଏ, ବଳିତାଟିଏ ଜାଳି ସଞ୍ଜ ଦିଏ, ବେଳରେ ପଟକା ପକାଇ ଢେର ବେଳଯାଏ ଜୁହାର ହୁଏ । ବୃନ୍ଦାବତୀ ଉପରେ ତାର ଭାରି ଭକ୍ତି— ତା ଜାଣିବାରେ ବୃନ୍ଦାବତୀ ସଂସାର ଆତଯାତ କରୁଛନ୍ତି — ସମସ୍ତଙ୍କ ଦୁଃଖ ଗୁହାରି ଶୁଣନ୍ତି । ବୃନ୍ଦାବତୀଙ୍କୁ ଚାହିଁ ଢେର କାନ୍ଦିଲା ଢେର ମୁଣ୍ଡିଆ ମାରିଲା—ଢେର ପ୍ରାର୍ଥନା କଲା । ସେତିକିବେଳେ ଭାରି ଗୋଟାଏ ହେମନ୍ତ ବାନ୍ଧିଲା—ପଣତ କାନିଟା ଅଣ୍ଟାରେ ଭିଡ଼ି ଦେଲା — ଗୋଟି ଗୋଟି କରି ମୁରଦାରକୁ ଘୋଷାରି ଘୋଷାରି ମଶାଣିରେ ଫୋପାଡ଼ି ଦେଇ ଆସିଲା । କେତେବେଳେ ମନ ଟିକିଏ ଢାବରି ଗଲେ ବୃନ୍ଦାବତୀ, ବୃନ୍ଦାବତୀ ମା; ମା — ମା — ମା – ବୃନ୍ଦାବତୀ ବୋଲି ପାଟିକରେ— ହେମନ୍ତ ବାନ୍ଧିଯାଏ ।

ସେତେବେଳେ ଗେନ୍ଦ୍ଳେଇ ଘରକୁ ଏକୁଟିଆ, ମଝିଗାଁରେ ଘର । ଘର ଏକଦାଣ୍ଡିରେ ଦୁଇ ବଖରା, ଘର ଲଗାଉ ଆଗକୁ ପେରିଛତ, ପେରିଛତରେ ଅଗ ପଦାକୁ ବାହାରିବାର ଦୁଆର । ଘର ଦୁଇ ବଖରାରୁ ସାନବଖରାଟିରେ ରନ୍ଧାବଢ଼ା, ଖିଆପିଆ କରେ, ବଡ଼ ବଖରାଟି ଶୋଇବା ଘର—ସେହିଘରେ ସାନ କଳରାଟିରେ ଧାନ ଆଉ ମାଲମତା ବୋଇଲେ— ପାଛିଆ କୁଣ୍ଡେଇ କଂସା ବାସନ ଦିଟଣ୍ଡ ରଖେ । ଗୋଟିଏ ପାଖ ପେରିଛତଲଗା ଚାଳିଆରେ ଢିଙ୍କିଟିଏ ପଡ଼ିଛି, ତାହା ଆଗପାଖ ଚାଳିଆରେ ଗାଈ ବାଛୁରୀ ତିନିଟା ବନ୍ଧା ।

ବାଡ଼ ଛାଡ଼ିଗଲା—ଲୋକେ ଆପଣା ଆପଣା ଦୁଃଖ ଧନ୍ଦାରେ ଲାଗିଲେଣି । ଗେନ୍ଦ୍ଳେଇ ଘରର ଆଗ ଦୁଆର କବାଟଟି କିଳି ଦେଇ ଘର ମଧ୍ୟରେ ଆପଣା ଧନ୍ଦାରେ ଲାଗିଥାଏ । ବେଳ ବୁଡ଼ିଲେ ଧାଇଁ ପଡ଼ିଶାଙ୍କ ଦୁଆରକୁ ଯାଇ ବହୂଝିଅଙ୍କ ସାଙ୍ଗରେ ଦୁଇଟା କଥାଭାଷା ହୋଇ ଆସେ । ସଞ୍ଜ ବାଜିଲେ ବୃନ୍ଦାବତୀ ଚଉରା ଆଗରେ ସଞ୍ଜଦୀପଟି ଜାଳି ଦେଇ, ମା ବୃନ୍ଦାବତୀ କହି ଘଡ଼ିଏଯାଏଁ ଜୁହାର ହୁଏ, ଆପଣାର ଦୁଃଖ ସୁଖ କଥା ଜଣାଣ କରେ, ବୃନ୍ଦାବତୀଙ୍କଠାରୁ ବର ମାଗେ । ବାଧିକା ପଡ଼ିଲେ ବୈଦ୍ୟ ପାଖରୁ ଔଷଧ ଖାଇବାର କେହି ଦେଖିନାହିଁ, ସେତେବେଳେ ଚଉରା ଆଗରେ କଚରା ଖଣ୍ଡେ ମେଲିଦେଇ ଅଧା ପଡ଼ିଥାଏ—ମନଦୁଃଖ କଥା ଜଣାଉଥାଏ, ତାହାର ନିଶ୍ଚୟ ବିଶ୍ୱାସ, ବୃନ୍ଦାବତୀ ସଂସାରର କର୍ତ୍ତା । ଆଉ ଧର୍ମ କଥା କେଉଁଠାରୁ କିଛି ସେ ଶୁଣି ନାହିଁ । ଗେରସ୍ତ ଶାଶୁ ମରିବା ବେଳେ ଶୁଦ୍ଧି କ୍ରିୟାରେ ସବୁ ଲାଗି ଯାଇଛି— ଘରେ ଆଉ କିଛି ନଥିଲା —ହେଲେ ସେ ଦିନକ ପାଇଁ କାହାରି ଦୁଆରେ ଆଦୁର୍ଯ୍ୟା ହୋଇ ନାହିଁ । ଘରେ ତିନୋଟି ଗାଈ, ପଡ଼ିଆ ଉଠିଆ ବରଷ ଲଗାଣି ଦୁଧ । ଦୁଧସବୁ ବିକିଦିଏ, ପାଏ ଅଧସେରରେ ଦହି ବସାଏ । ଚଲ୍ହା ପାଣିମନ୍ଦାକ ତରକାରି କରେ, ଘିଅ ଟିକିଏ ଟିକିଏ ଜମାଇ ସେରେ ଅଧସେରରେ ହେଲେ ବିକିଦିଏ । ଶଶୁର

ଗୃହଜମି ଦୁଇମାଣ ବଖରାରେ ଲଗାଇ ଦେଇଛି । ବାଡ଼ରେ ମଞ୍ଜି ବାହାର କୋଠାବାଡ଼ରେ ଦୁଇଟା କଖାରୁ ମଞ୍ଜି, ଦୁଇଟା ପୋଇମଞ୍ଜି ବେଳ ଜାଣି ପୋତି ଦିଏ-- ଫଳ କହଳ ଘର ତିଅଣ ବାହାରେ ବିକାବିକି କରି ଦୁଇ ଚାରି ଅଣା ହାତପେଠ କରେ । ଧାନ ଏକା ଉଷୁଆଏ— ଶୁଖାଏ, ନଡ଼ି ଖଣ୍ଡିକରେ ଝୁଣ୍ଟାଇ ଏକା ଧପଡ଼ ଧପଡ଼ କରି କୁଟି ପକାଏ, ଆଉ କାହାରିକୁ ଡାକେ ନାହିଁ । ସବୁବେଳେ କବାଟକିଳା--ଇଚ୍ଛା ତା ଦୁଆରକୁ କେହି ନ ଆସୁ । କେହି ବନ୍ଧୁ ଭୂଆସୁଣୀ ହେଲେ କେବେ ତା ଦୁଆର ମାଡ଼ନ୍ତି ତାହା ବି ଖୁବ୍ ଦରକାର ପଡ଼ିଲେ । ଭୁଲ ଭଟକାରେ କେହି ମିଣିପଲୋକ ଦୁଆରକୁ ଆସିଲେ ଭିତରେ ଥାଇ କଥା କହେ, କବାଟ ଫିଟାଏ ନାହିଁ । ଘର ଦୁଆର ଗୁଞ୍ଜୁଣିଟା ଧରି ଦିନକୁ ତିନଥର ଓଳାଉଥାଏ—ଅଳିଆ ବୋଲି ଦେଖିବ ନାହିଁ । ଛିଟକି କରି ଦେହରେ ଗହଣା ଗାଣ୍ଠି ହଳଖଣ୍ଡ ଲଗାଇବା—ମୁଣ୍ଡ କୁଣ୍ଡାଇବା କେହି ଦେଖିନାହିଁ—ହେଲେ ଦେହର ଲୁଗାଖଣ୍ଡିକ ସବୁବେଳେ ସଫାସୁତରା । ଭାତ ତିଅଣ ତ ଘରେ---ଜାଳରୁ ଖସି ବଳିପଡ଼େ, ତେଲକରେ ଲୁଣ ତେଲ ଚଳିଯାଏ । ଏକାବେଳକେ ହାଟରୁ ଥରେ କିଣି ପକାଇ ଥାଏ, ମାସେ ଦି ମାସ ଚଳିଯାଏ । କଥା ଚଳିଲେ, ଗେନ୍ଥେଇ ହାତରେ ଦୁଇ ଚାରିଶ ଟଙ୍କା ଅଛି ବୋଲି ଗାଁ ଲୋକେ କହି ପକାନ୍ତି--କେହି ହଜାର ହାଙ୍କିଦିଏ ।

ଗେନ୍ଥେଇ ସୁନ୍ଦରୀ, ପୂର୍ଣ୍ଣ ଯୁବତୀ—ଯିମିତି ସେମିତି ସୁନ୍ଦରୀ ନୁହେ—ଶହ ଚାରିଶରେ ଗୋଟାଏ । ଦେହ ଗଠଣଟା ଏମନ୍ତ ନିଖୁଣ ଯେ, ଅସହଣୀ ମାଇକିନିଆଟାଏ ଖୁଣ୍ଟ ଦାରିବ ନାହିଁ । ତେଡ଼େ ଚମ୍ପ ଫୁଲିଆ ଚହଟଗୋରୀ ନ ହେଉ—ହେଲେ ତାକୁ ଗୋରୀ ବୋଲିବାକୁ ହେବ । ଘରେ ଥାଏ ଏକୁଟିଆ । ଭଲମନ୍ଦ ଲୋକେ ସବୁ ଗାଁରେ ଥାନ୍ତି—ଏ ଗାଁରେ କଣ ନାହାନ୍ତି ? କେହି ଦୁଷ୍ଟ ଭେଣ୍ଡିଆ ତା ଆଡ଼କୁ ଅନାଇଲେ କମ୍ପା ଆଙ୍କୁ ତାକୁ ଲଗେଇପଗେଇ ଟାପୁରାଟୁପୁରି କଥାଟାଏ କହିଦେଲେ ଗେନ୍ଥେଇ ପାଟି ଫିଟାଇ କାହାରିକୁ କିଛି ରାଗିମାଗି ଗାଳିଗୁଲଜ କରେ ନାହିଁ ସତ; ହେଲେ—ତା ଆଡ଼କୁ ଏମନ୍ତ ଗୋଟାଏ କଟମଟିଆ ଚାହାଣି ଚାହେଁ ଯେ, ତାହାର ଆତ୍ମାପୁରୁଷ ଚମକିଯାଏ—ଡରରେ ଚାଲିଯିବାକୁ ବାଟ ଦିଶେ ନାହିଁ । ସତୀମାନଙ୍କର ନେତ୍ରଦୃଷ୍ଟିରେ ଏମନ୍ତ ଗୋଟାଏ ତେଜ ଥାଏ ଯେ, ଯେପରି ପୁରୁଷ ହେଉ ପଛକେ କଳୁଷିତ ନେତ୍ରରେ ସେମାନଙ୍କୁ ଚାହିଁବାକୁ ସାହସ କରନ୍ତି ନାହିଁ । ଗେନ୍ଥେଇ ସାଇପଡ଼ିଶା ସମସ୍ତଙ୍କ ଦୁଆରକୁ ଯାଏ । ମାଇକିନିଆ ଦଳରେ କେଉଁଠି କଳିଗୋଳ ହେଲେ ଧାଇଁଯାଇ ଭାଙ୍ଗି ଦେଇ ଆସେ । ସେ ତ ନିଜେ କାହାରି ସାଙ୍ଗରେ କଳି କରେନାହିଁ— ଆଉ କେହି କଳିଗୋଳ କରୁ, ଏଇଟା ତାହାର ଇଚ୍ଛା ନୁହେଁ । ଶାଶୁ ବୋହୂ କଳି— ଦୁଇଜଣଯାକ ଗେନ୍ଥେଇ ପାଖରେ ଫେରାଦ । ସେ ସବୁ ଜାଗାରେ ନୁଆଁଣିଆ ପଟ ଧରି ଚାଲେ । ଗେନ୍ଥେଇ କଥା ନ ଶୁଣିଲେ ରକ୍ଷା ଅଛି-- ଛଟା ମେଲି ମୁଣ୍ଡ ହିକଡ଼ା କରି ଦେବ ପରା ! ଗେନ୍ଥେଇକୁ ଡରିବାକୁ ଗ୍ରାମରେ ଲୋକ ଅଛନ୍ତି, ହେଲେ, ସେ କାହାରିକୁ ଡରେ ନାହିଁ—ସବୁଥିରେ ସେ ଅଭୟା—ସବୁବେଳେ କହେ—'ଡର କାହାକୁ, ଭୟ କାହାକୁ—ଠାକୁର ଅଛନ୍ତି ଚାରି ବାହାକୁ' । ଗେନ୍ଥେଇ ମାଇକିନିଆ ଦଳରେ ରସିକା—ପୁରୁଷ ମହଲରେ ପାଷାଣୀ—ଦୁଷ୍ଟ ଲୋକମାନଙ୍କ ସାକ୍ଷାତରେ ସର୍ପିଣୀ ।

ଗେନ୍ଥେଇ ଗୋଟାଏ ଭଲ ଗୁଣ ଶିଖିଛି--ଧଇଚଣ ଜାଣେ । କେହି ଡାକିଲା ଭଲ--ନ ଡାକିଲା ଚିନ୍ତା ନାହିଁ । ଗ୍ରାମରେ କାହାରି ଘର କଥା କାନରେ ଚଳିଲା ତ ହାଜର—ପଇସା କଉଡ଼ିକ ଲୋଭ ନାହିଁ, ସେପରି ନ ଥିଲା ଜାଗାରେ ହାତରୁ ଦି'ପଇସା ପଡ଼

ପଛକେ, ପୁଆଣ୍ଟି ସାଷ୍ଟମ ହେବାଯାଏ ଦିନକୁ ଦଶଥର ଦୁଆରକୁ ଧାଇଁଥିବ । ହେଲେ ଭଲ ଭଲ ଲୋକ ଘରେ ମାଉସୀ ଭଳଆ ମୁରବୀ ସ୍ତ୍ରୀମାନେ, ମା ଲୋ, ଝିଅ ଲୋ—ସୁଆଗିଆ କଥା କହି ନୂଆ ଲୁଗା ଖଣ୍ଡେ ତାକୁ ପିନ୍ଧାଇ ଦିଅନ୍ତି । ଘରକୁ ଆସି ଲୁଗା ପାଲଟିବା ବେଳେ ଦେଖେ, ପଣନ୍ତ କାନରେ କେତେଟା ଟଙ୍କା ବନ୍ଧା । ଘରେ ବେତପେଡ଼ିରେ ମାଇକିନିଆ-ବେଢ଼ଣ ନୂଆଲୁଗା ଭର୍ତ୍ତି । ଗାଁରେ କେହି ମାଇକିନିଆ ବାଧିକ ପଡ଼ିଲେ ତାହାର ଯଦି କେହି ନ ଥାଏ, ରାତିଯାକ ଜଗି ବସିବ । ଠଣ୍ଡକା ଠଣ୍ଡକ କେତେଟା ଔଷଧ ବି ଜାଣେ, ଏଥିଲାଗି ଗାଆଁରେ ତାକୁ ସମସ୍ତେ ମାନନ୍ତି । ସେ କାହାର ଅପା, ଧର୍ମଝିଅ, ଝିଆରୀ, ପିଉସୀ—କାହାର ବଉଳ, ଆମ୍ବକଷି, କାହାର ବା ସଙ୍ଗାତ । କାହାରି କାହାରିକୁ ଟାପରାରେ ସଉତୁଣୀ ବୋଲି ଡାକେ । ସେ ଡାକଡ଼ିକରେ ଲେଖାଯୋଖା ଲଗାଏ ତାହା ନୁହେ, ସେ ଯାହାକୁ ଯାହା ଡାକେ, ତାକୁ ସେହିପରି ମଣେ । ଗାଁଯାକ ତାହାର ଆପଣା ଲୋକ । ତାର ଗୋଟିଏ ସଙ୍ଗୀ ବିରାଡ଼ି ଅଛି—ଦିନଯାକ ଘର ଭିତରେ ତା ସାଙ୍ଗରେ କଥା ଭାଷା ହୁଏ, ତାକୁ ସବୁ କଥା ଚର୍ଚ୍ଚରେ—ଦିନେ ଦିନେ ହାତରେ ପାଇଟି ନ ଥିଲେ ତା ସାଙ୍ଗରେ ବସି ମିଛରେ କଳିଟାଏ ଲଗାଇଥାଏ । ବିରାଡ଼ିଟା ବି ଦିନଯାକ ପଛେ ପଛେ ଗୋଡ଼ାଇଥାଏ, ସାଙ୍ଗରେ ଖାଏ, ପାଖରେ ଶୁଏ । ଗେନ୍ଦେଇର ଗୋଟାଏ ଭାରି ଦୋଷ, କାହାରି ମିଛ ବଡ଼ିମା ସହି ପାରେନାହିଁ ।

---

## -୧୦-

## ବୃନ୍ଦମଣିର ମଙ୍ଗଳ କୃତ୍ୟ

ଯାସ୍ୟତ୍ୟଦ୍ୟ ଶକୁନ୍ତଳେତି ହୃଦୟଂ ସଂସ୍ପୃଷ୍ଟମୁତ୍କଣ୍ଠୟା
ଅନ୍ତର୍ବାଷ୍ପଭରୋପରୋଧି ଗଦିତଂ ଚିନ୍ତାଜଡ଼ଂ ଦର୍ଶନଂ ।
ବୈକ୍ଳବ୍ୟଂ ମମତାବଦୀଦୃଶମହୋ ସ୍ନେହାଦରଣ୍ୟୌକସଃ
ପୀଡ୍ୟନ୍ତେ ଗୃହିଣଃକଥଂ ନ ତନୟାବିଶ୍ଳେଷଦୁଃଖୈର୍ନବୈଃ ।
(ଅଭିଜ୍ଞାନଶକୁନ୍ତଳା) ।

ଶ୍ରୀ ଶ୍ରୀ ଶ୍ରୀ ପ୍ରତାପଉଦିତ ମଲ୍ଲ ଉତ୍ତରରାୟଙ୍କ ସହିତ ବୃନ୍ଦମଣିର ମଙ୍ଗଳକୃତ୍ୟ ବତିଗଲାଣି । ଅଶୀ ନବେ ବର୍ଷର ପୁରୁଣା ପୁରୁଣା ବୁଢ଼ାମାନେ କହନ୍ତି, ଏପରି ବିବାହ ଉତ୍ସବ ଭୂମଣ୍ଡଳରେ କେବେ ଦେଖା ନ ଥିଲା । ବିବାହ ଉତ୍ତାରେ ଦଶ ପନ୍ଦର କୋଶ ଗ୍ରାମର ଲୋକେ ସେହି କଥା ଗାଇ ହେଉଥିଲେ । କେହି କଲିକତା ଓ କଟକରୁ ଆସିଥିବା ବାଣ କଥା, କେହି ନାଟରଙ୍ଗ କଥା, କେହି ବିଲେଇତି ଆଲୁଅ କଥା କହି ହେଉଥାଏ । ଅନେକ ଲୋକ ବର-କନ୍ୟା ପ୍ରସଙ୍ଗରେ ଲାଗିଥାନ୍ତି--ଏପରି ରୂପ, ଏପରି ଗୁଣ ମାନବ ଲୋକରେ ହୁଏ ନାହିଁ । ଏମାନେ ସ୍ୱର୍ଗର ଦେବ ଦେବୀ । ବର ଗହଣରେ ଗୋଟି ଗଣନ୍ତା ଶହେ ଖଣ୍ଡ ସବାରି ଆସିଥିଲା । ହାତୀ, ଘୋଡ଼ା, ଓଟ ଢେର ଥିଲେ, ପାଇକ ପଇଦଳ ବେଠିଆ କୋଠିଆ ପ୍ରଜାପାଟକ ଅଗଣନ୍ତା, ଦେଖଣାହାରୀ ଗଣେ କିଏ ? ବିଭା ଆଠଦିନ ଆଗରୁ ସାନ୍ତ ଦାଶରଥି ଦାସେ ଗ୍ରାମରେ ଘର ଘର ବୁଲି ନିମନ୍ତ୍ରଣ କରି ଆସିଥିଲେ । ସରସ୍ୱତୀ ଦେଈ ସ୍ତ୍ରୀମାନଙ୍କ ହାତ ଓଠ ଧରି ମା ଲୋ--ଅପା ଲୋ--ଝିଅ ଲୋ, ଯାହାକୁ ଯେ ରକମ, ସୁଆଗିଆ କଥାରେ କହିଲେ, ବୃନ୍ଦ ତୁମମାନଙ୍କ ଝିଅ, ତୁମେମାନେ ଯାଇ ତାହାର ମଙ୍ଗଳକୃତ୍ୟ ବଢ଼ାଇବ । ଗେନ୍ଦେଇ ଦୁଆରେ ଆଠଦିନ ଆଗରୁ କୋଳପ ପଡ଼ିଛି । ସରସ୍ୱତୀ ଦେଈ ତାକୁ କାନ ଗଣ୍ଡୁଲା କରି ଧରିଛନ୍ତି । ସେ ବି ଖିଆ ପିଆ ପାସୋରି ଗଲାଣି । ପାଇଟି ତୁଲେଇବାକୁ ତା ସମକକ୍ଷ କିଏ ? ସମସ୍ତେ କହନ୍ତି, ସରସ୍ୱତୀ ଆଉ ଗେନ୍ଦେଇ ଯୋଗେ କାମ ନିଭିଲା । ଦାସେ ତ ଭକୁଆ ହୋଇ ବସିଥାନ୍ତି । ଅଭଡ଼ା ମଙ୍ଗଳନ ହଳଦୀପକା ଦିନରୁ ଗାଁର କି ମରଦ, କି ମାଇକିନିଆ ସମସ୍ତେ ଦାସଙ୍କ ଦୁଆରେ ଦାଖଲ । ପଚରା ନାହିଁ

ଓଟର ନାହିଁ, ଯାହା ଆଗରେ ଯେଉଁ ପାଇଟିଟା ପଡ଼ୁଛି ସେ ତାକୁ ଠେଲି ନେଉଚି । ସମସ୍ତେ ମଣିଛନ୍ତି ଆପଣାର କାମ । ବୋଇଲ, 'ନ ଦେବୁ ଧନ, କହିବୁ ଦିବ୍ୟ ବଚନ ।' ସରସ୍ୱତୀ ଦେଈଙ୍କ ମଧୁର ବଚନରେ ସମସ୍ତେ କିଣା ।

ଦାସଙ୍କ ଘରର ଚଳାଚଳ କଥା ଉତ୍ତରବସ୍ତୁ ଉଆସକୁ ଅଜଣା ନ ଥିଲା । ସଦର ଗୁମୁକରଣରେ ରଙ୍ଗାଧର ପଟ୍ଟନାୟକେ ଦିନେ ରୁକୁଣାଦେଈପୁରକୁ ଆସି ଦାସଙ୍କ ସହିତ ବିଭା ପ୍ରସଙ୍ଗରେ କଥାଭାଷା ହୋଇଥିଲେ । ପଟ୍ଟନାୟକେ ଯେ ସବୁକଥା ପକାଇଥିଲେ, ସେଥିର ସାର ମର୍ମ ଏହି --ବରଙ୍କ ଗହଣରେ ତ ଢେର ଢେର ଲୋକ ଆସିବେ—ସେମାନଙ୍କ ଚଳାଚଳ ଭଲଆ ଉତ୍ତରବସ୍ତୁଙ୍କ ଉଆସରୁ କିଛି ଆସିଲେ ଭଲ ହୁଅନ୍ତା ନାହିଁ ? ପଟ୍ଟନାୟକେ କରଣ ପିଲା,ଜାଣିବା ଶୁଣିବାରେ ଗୋଟାଏ ପୁରୁଣା ଲୋକ—ସବୁ କୁଳ ମହନ୍ତଙ୍କୁ ଜଗି କଥା କହିବା ତାଙ୍କଠାରୁ ଆଉ ଅଧିକ କାହାକୁ ଜଣା ? ସେ କିଣ ଟାଉ କରି ଗୋଟାଏ କଥା କହି ବସନ୍ତେ ଯେ, ଉତ୍ତରବସ୍ତୁ ସାନ୍ତ ତୁମ୍ଭଙ୍କୁ ସାହାଯ୍ୟ କରିବେ ? ଦାସେ ଆପଣା ବଳକୁ କଷି ଧସପସ ହେଉଥିଲେ, ଏଣେ ସରସ୍ୱତୀ ଦେଈଙ୍କ କାନରେ ଯିମିତି କଥାଟା ବାଜିଗଲା, ଧାଇଁଆସି କହିଲେ, "ନାହିଁ--ନାହିଁ--ନାହିଁ--ନାହିଁ--ସେ କଥାଟା କେବେ ହେବାର ନୁହେଁ ।" ସରସ୍ୱତୀ ଦେଈଙ୍କ ବାପ ଅମଳରୁ ଆଉ ଶ୍ୱଶୁର ଅମଳରୁ କିଛି ଜମି ଜମା ଥିଲା -ରୁକୁଣାଦେଈପୁରକୁ ଆସି ଦାସଙ୍କ ଜରଆରେ ସେ ସବୁ ବିକବାକ ପକାଇ ଟଙ୍କାଟା ପେଡ଼ିରେ ବାନ୍ଧି ଆପଣା ପାଖରେ ରଖିଥିଲେ, ସବୁ ବାହାର କରି ପକାଇଲେ । ଦାସେ ଢେର ଓଜର ହାଲ କଲେ; ମାତ୍ର ସରସ୍ୱତୀ ଦେଈ କହିଲେ, "ଆଉ କେଉଁ ଦିନକୁ କାହାପାଇଁ ? ଯାହା ଲାଗି ରଖିଥିଲି ତା ପିଛେ ଯାଉ ।"

ଦେଶ ବେଶର ବା ଆପଣା କୁଳମାନଙ୍କୁ ନ ଅନାଇ ସବାରି ଖଣ୍ଡିକରେ ବସି ସରସ୍ୱତୀ ଦେଈ ଚୂଡ଼ାମଣି ଗହଣରେ ଗଡ଼ ନନ୍ଦପୁରକୁ ଚାଲିଗଲେ । ଚୂଡ଼ାମଣି ମେଲାଣିବେଳେ ଗାଁ ଗୋଟାକଯାକ ଉଚ୍ଛୁଳି ପଡ଼ିଲା, ସ୍ତ୍ରୀ ପୁରୁଷ ସମସ୍ତେ ଡକା ପକାଇଲେ, ଚୂଡ଼ାମଣି ଯେମନ୍ତ ସମସ୍ତଙ୍କର ଝିଅ । ପିତା ମାତାଙ୍କ ଆକୁଳ କ୍ରନ୍ଦନ କଥା ଆଉ କଣ କହିବୁଁ ? ବର୍ଷକଯାକ ଦାସଙ୍କ ଘରର ଦାଣ୍ଡ କବାଟ ଉଦୁଆଁ ହୋଇଥିବାର କେହି ଦେଖିନାହିଁ ।

---

-୧୧-

## ନଟବରର ବିବାହ

ଛୁଟିର ମିଆଦ ସରିଗଲା । ନାଜର ଦାଶରଥି ଦାସେ ଘରର ଚଳାଚଳ ଭାର ବଡ଼ପୁଅ ବାନାବର ହାତରେ ଦେଇ କଟକ ଚାଲି ଆସିଲେ । ସାଙ୍ଗରେ ଆଇଲେ କେବଳ ସାନପୁଅ ନଟବର ।

ନଟବର ବର୍ତ୍ତମାନ କଟକ କଲଟରୀ ମୁନ୍ସୀଖାନାର ତୌଜିନବିସ କାମ ଶିଖୁଛନ୍ତି । ଦୁଇ ତିନିବର୍ଷ ବିତିଗଲାଣି, ନଟବର ବର୍ତ୍ତମାନ ପିଲାଟିଏ ନୁହନ୍ତି, ମୁଣ୍ଡକୁ ହାତ ପାଇଲାଣି । ସଞ୍ଜ ବଜିଲା ତ ସେ ବଜାର ବୁଲି ବାହାରିଲେ—ଦିନେ ଦିନେ ବସାକୁ ଫେରିବାକୁ ରାତି ଢେର ହୋଇଯାଏ—ଦାସେ ବିକଦାର ହୋଇ କିଛି କଥା କହିଲେ, ମୁହେଁ ମୁହେଁ ଠୋ ଠୋ ଜବାବ ଦେଇ ବସନ୍ତି । ବାପର ନିତାନ୍ତ ଅବାଧ, କାମ ପାଇଟି ଭଲ ମନରେ କିଛି କଥା କହିଲେ ମୁହଁ ମୋଡ଼ିଦେଇ ଚାଲିଯାନ୍ତି । ଦାସେ ପୁଅ ଚରିତ୍ରରେ ଏମନ୍ତ କିଛି କଥା ଦେଖିଲେଣି, ତାହାକୁ ଅବିବାହିତ ଅବସ୍ଥାରେ ରଖିବା ଏଣିକ ନିରାପଦ କଥା ନୁହେଁ । ବନ୍ଧୁବାନ୍ଧବ ପାଞ୍ଚ ଜଣ ବି ଆସି କହି ଗଲେଣି, ଭେଣ୍ଡିଆ ପୁଅ,

କଁଠକ ପତ୍ର ଜାଗା, ସେମାନେ କ ମୁହଁ କଥାରେ ସମ୍ଭଳା ପଡ଼ନ୍ତ ? ଦାସେ ବୁଝିଲେ କଥାଟା ମିଛ ନୁହେ। କନ୍ୟା ଖୋଜା ଲଗିଲ—ସେଇଟା କଣ ପଦାରେ ପଡ଼ିଛି, ଧାଇଁଯାଇ ଗୋଟାଇ ଆଣିଲେ ହେଲ । ଦଶ ଜାଗାରେ ଦଶ କଥା ଚଳିଲ—ଘର ଭଲ ତ କନ୍ୟା ଭଲ ନୁହେ—କେଉଁଠି କନ୍ୟାଟି ଖୁବ୍ ବଡ଼, କେଉଁଠି ଖୁବ୍ ସାନ । ହେଲ ତ କୋଷ୍ଠୀ ଅମେଳ । ଦାସେ ଲଗି ଲଗି ନାକେଦମ ହୋଇ ଗଲେଣି । ବର୍ଷେକାଳ ବିତି ଗଲଣି—କଥା କିନାରା ଲଗୁନାହିଁ । ଶେଷରେ ଦାସେ ଖାରି ଗୋଟାଏ ହକଦାର ହୋଇକହିଲେ, "ଦୂରକର ! ଆଉ ଏତେ ବୁଝାବୁଝି କରିବ ନାହିଁ । ଏଇଥର ଯେଉଁଠୁ କଥା ଆସିବ, ସେଇଠି କରିବ ।" ଶେଷରେ ଜବାବ ଅଇଲ, କଟଲ ହରିଶପୁର ଅସୁରଗଡ଼ିଆ ମୌଜା ଛକଡ଼ି ପଟ୍ଟନାୟକଙ୍କ ଘରୁ । କନ୍ୟାଟି ଘରଯୋଗ୍ୟା—ବୟସ କୋଡ଼ିଏ, କୋଷ୍ଠୀ ଅଣାଇ ବୁଝାବୁଝି ହେଲ । ଶ୍ରୀ ନାୟକେ ଦୁଇ ଜଣଙ୍କ ଟିପଣା ଭୂଇଁରେ କାଟି ବୁଝାବୁଝି କଲେ । ଶ୍ଳୋକ ପଢ଼ାପଢ଼ି କଲେ, ଶେଷରେ ଖଡ଼ି-ଗୋଟାଳଟି ତଳେ ଥୋଇଦେଇ କହିଲେ, ବୁଝିବା ହେଲେ ଦାସେ, "ଶହ ପରିଶରେ ମେଳକଟାଏ ଦେଖିଲ । ନଅଟା ମେଳକରୁ ଆଠଟା ଏକାବେଳକେ ଠିକ୍—ଦୁଇ ଜଣଙ୍କର ଗଣ ବି ମିଳି ଯାଇଛି—ବୋଇଲ ଦୁହିଙ୍କର ଅସୁରଗଣ । ଦାଶରଥି ଦାସେ କଞ୍ଚ ଚଞ୍ଚଳ ହୋଇ ପଚାରିଲେ, "ଅସୁରଗଣ କଣ ଶ୍ରୀନାୟକେ ?" "ନାହି" ନାହିଁ, ଏଇଟା ହେଲ ଜ୍ୟୋତିଷ ଶାସ୍ତ୍ରର ମେଳକ କଥା । ଦୁଇ ଜଣଙ୍କର ଏକା ଗଣ ହେଲେ ବଡ଼ ଭଲ ମେଳରେ ରହିବେ—କଳକଜିଆ ଲଗିବ ନାହିଁ । ଆଉ ଦେଖୁଛି କନ୍ୟାଟିର ମେଷଲଗ୍ନ, ଧନସ୍ଥାନରେ ବୃଷ ଚନ୍ଦ୍ର ଏକାବେଳକେ ସେ ଘରକୁ ମାଡ଼ିବସିଛି—ବୃଷରେ ଚନ୍ଦ୍ର ତୁଙ୍ଗୀ । ଧନ ଦନେ ଗୁଡ଼ି ହେବନାହିଁ—ଚନ୍ଦ୍ର ମହାଦଶା ଚଢ଼ିଲ ବୋଲି ଜାଣ, ଏଇ ଦଶା ଚଢ଼ିଲେ ସେ ଗୋଟାଏ ରାଣୀ ହୋଇ ପଡ଼ିବ । ଏ ଦଶା ପଡ଼ିବାକୁ ବାକି ରହିଲ ଦୁଇମାସ ଅଠର ଦିନ । ବର୍ତ୍ତମାନ ଭୋଗ କରୁଛି ବୁଧ ଦଶା । ହେଲେ—ଏ କୋଷ୍ଠୀରେ ଗୋଟାଏ ବଡ଼ ଦୋଷ ରହିଛି । ଜାତକର ଫଳାଫଳ ଲୁଚାଇବାକୁ ପ'ଠରେ ମନା—ନ ବୋଲିବ କିପରି ? ପଞ୍ଚମ ସ୍ଥାନରେ ରହିଛି ମଙ୍ଗଳ, ପୁଣି ତାକୁ ଦେଖୁଛି ଶନି । ହେଲେ କଣ ହେଲ ଏକପାଦ ମାତ୍ର ଦୃଷ୍ଟି ।

"ପାଦେକ ଦୃଷ୍ଟି ଦଶମ ତୃତୀୟେ
ଦ୍ୱିପାଦ ଦୃଷ୍ଟି ନବପଞ୍ଚକେଷୁ ।
ତ୍ରିପାଦ ଦୃଷ୍ଟି ଚତୁରଷ୍ଟକେଷୁ
ସମ୍ପୂର୍ଣ୍ଣ ଦୃଷ୍ଟି ସମସପ୍ତକେଷୁ ।

ଏପରି ହେଲେ ସନ୍ତାନ ପକ୍ଷରେ କଷ୍ଟ ।"

ଦାସେ—ଦୋଷ ମେଣ୍ଟିବାର କି କିଛି ବାଟ ନାହିଁ ?

ଜ୍ୟୋତିଷେ—କିଆଁ ନ ଥିବ ? ଋଷିମାନେ କଣ କିଛି ଛାଡ଼ିଛନ୍ତି ? ଦାନେ ଦୁର୍ଗତି କ୍ଷୟ—ବନ୍ଧାପନା ଘରରେ କିଛି ପ୍ରାୟଶ୍ଚିତ୍ତ ଦରକାର । ସେଥିର ଭାବ ମୁଁ ପଛକେ ଦେବି ।

ସବୁ ହେଲ, ଘରଟି ବି ଭଲ, ଶ୍ରେଷ୍ଠ କରଣ, ହେଲେ ଦାସେ ଯେତେବେଳେ ଶୁଣିଲେ କନ୍ୟାଟିର ବାପ ଛକଡ଼ି ପଟ୍ଟନାୟକେ ଗୋଟାଏ ଜମିଦାର ଘରେ ପିଆଦା ଥିଲେ—ଗତବର୍ଷ ହେଲ ମରିଛନ୍ତି—ବିଧବା ମା ଦରିଦ୍ରା—ଅଠର ବର୍ଷର ଭେଣ୍ଡିଆ ପୁଅ ଘରେ—ତାଙ୍କ ମନଟା କମିତିକା ପଛପଛହେଲ । ଏଣେ ନଟବର ସବୁକଥା ଶୁଣି ଗୋଟାଏ ହଠ ଧରିଲ, ସେହି କନ୍ୟାକୁ ବିଭା ହେବ । ଦରିଦ୍ରାର କନ୍ୟା ହେଲେ କଣ ହେଲ—ସୁଲକ୍ଷଣା ତ—ରାଜରାଣୀ ହେବ, ଆଉ କଣ ଲୋଡ଼ା ? ନଟବରର ମତଲବ ଏଣିକି ଆଉ ରକମ—ବାପେ ଯାହା କହିବେ, ସେ ତାହାର ଓଲଟା କାମ କରିବ । ବାପ ଯେ ଇଂରାଜୀ ଜାଣେ ନାହିଁ—ସେ ଏଣ୍ଟ୍ରେନ୍ସ ପାସ

କରିଛୁ, କେତେ କିତାପ ପଢ଼ିଲିଣି, ସବୁ କଥା ବୁଝି ସମଜି ପାରେ । ମା ଆଉ ଧାଈମା ଧାଈ ବେହେରା ପଠାଇ କନ୍ୟାକୁ ଦେଖି ଆସିବାକୁ କହିଲେ—ନଟବର ତାହା ମଧ୍ୟ ଖଣ୍ଡିଦେଲା—କେଜାଣି ସେଥିରୁ ଗୋଟାଏ କିଛି ବଖେଡ଼ ବାହାରିବ । ମେଷ କୃଷ୍ଣ ପଞ୍ଚମୀ ରବି ଛ ଦଣ୍ଡ ଉତ୍ତରେ ମଘା ନକ୍ଷତ୍ର ସ୍ପର୍ଶ ବେଳେ ବିବାହଲଗ୍ନ ସ୍ଥିର ହେଲା ।

ବାନାବର ଆଉ ବୃନ୍ଦମଣିର ବିବାହର ଖରଚରେ ଦାସେ ଏପାଏଁ ସଳଖି ବସି ପାରି ନାହାନ୍ତି । ଏଣେ ନଟର ବିବାହ ଟାଳ ହେଉ ନାହିଁ । ଗାଁରେ ବିବାହ କରାଇଲେ ଖରଚ ବେଶି, ବନ୍ଧୁ ବାନ୍ଧବ ପାଞ୍ଚ ଜଣଙ୍କୁ ସନ୍ତୋଳିବାକୁ ହେବ । ଗାଁ ପାଞ୍ଚଘର ପ୍ରିୟା ପ୍ରୀତି ନ ଲୋଡ଼ିଲେ ନୁହେଁ । ବିଦେଶରେ କିଏ ପଚାରେ—ତୁଲାଣ ଭଳି କାର୍ଯ୍ୟଟାଏ କରିଦେଲେ ହେଲା । କଟକ ତୁଳସୀପୁରରେ ମାସକପାଇଁ ଗୋଟାଏ ବଙ୍ଗଳା ଭଡ଼ା କଲେ । ଗାଁରୁ ସ୍ତ୍ରୀ ମେନକା ଦେଈ, ବଡ଼ ପୁଅ ବାନାବର, ବଡ଼ବୋହୂ ଆସିଲେ—ଆଉ ଗଡ଼ ନରିପୁରରୁ ଅଇଲେ ଧାଈ ମା ସରସ୍ୱତୀ ଦେଈ । ବର ଯଦି ଅସୁରଗଡ଼ିଆ ଗ୍ରାମକୁ ବିଭା ହେବାକୁ ଯାନ୍ତି, ବରପଟୁଆର ଖରଚ ତୁଲାଇବ କିଏ ? କନ୍ୟାର ଜନନୀ "ଅଦ୍ୟାନ୍ନ—ନିବର୍ଜିତା," ହେଲେ କଣ ହେଲା, କରଣଘର, କନ୍ୟାସୁନା ବୋଲି କି ଟଙ୍କାଗୁଡ଼ିଏ ଗଣି ନେବେ ? ସେ କେବଳ ବିଭା ସକାଶେ ଘର ଲିପାପୋଛା ଆଉ ହଣାଣ ହାଣ୍ଡି ପିଂଗ ବଦଳାଇବା ପାଇଁ ନଗଦ ପଞ୍ଚାଶଟି ଟଙ୍କା ରୋକ ଠୋକ ଗଣିନେଇ କନ୍ୟା ବିଦା କରିଦେଲେ ।

ଠିକ୍ ଲଗ୍ନରେ କଟକରେ ବିଭା ହୋଇଗଲା । ବର କନ୍ୟା ଜଉକଉଡ଼ି ଖେଳବେଳେ ଶାଶୁ ଶଶୁର ବୋହୂ ମୁହଁ ଦେଖି କିଛି ଟଙ୍କା ହେଉ ବା ଅଳଙ୍କାର ହେଉ ମୁହଁ ଦେଖା ଦିଅନ୍ତି । ଶଶୁର ନଗଦ ପାଞ୍ଚଟି ଟଙ୍କା ଆଉ ଶାଶୁ ଗୋଟିଏ ସୁନା ମାଳିଧରି ମୁହଁ ଦେଖି ଅସିଲେ ।

———

-୧୨-

## ଶ୍ରୀ ଶ୍ରୀ ଶ୍ରୀ ପତାପଉଦିତ ମଲ୍ଲ ଉତ୍ତରରାୟ

ନୂତନ ଉତ୍ତରରାୟ ଶ୍ରୀ ଶ୍ରୀ ଶ୍ରୀ ପ୍ରତାପ ଉଦିତ ମଲ୍ଲଙ୍କ ବୁଝାମଣାରେ ପ୍ରଜାପାଠକଙ୍କ ଆନନ୍ଦ କହିଲେ ନ ସରେ । ସେମାନେ କହନ୍ତି, ଏତେ ଦିନରେ କପାଳ ଫିଟିଲା—ରାମ ରାଜ୍ୟ ପାଇଲେ । ପଛ ପଛ ଉତ୍ତରରାୟମାନେ ପ୍ରଜାକଣ୍ଟକ ନ ଥିଲେ ସତ୍ୟ—ହେଲେ, ଚଉପଟ ଖେଳ, ବେଣ୍ଟବୁଲା, ବାଘ ଗାଉଣା ଶୁଣା ଇତ୍ୟାଦିରେ ସେମାନଙ୍କୁ ବେଳ ନଅଣ୍ଟ - ପ୍ରଜାଗୁହାରି ଶୁଣିବାକୁ ସେମାନଙ୍କର ବେଳ କାହିଁ ? ନୂଆ ଉତ୍ତରରାୟ ସବୁ ମାମଲା ବୁଝି ସମଜି ଆପଣା ଆଖିରେ ସବୁ ଦେଖି ଶୁଣି ନିକାଶ କରନ୍ତି । ପାଞ୍ଜିଆ ପଟୁଆରମାନଙ୍କ ଉପରେ ଅବିଶ୍ୱାସ ନାହିଁ—ହେଲେ, ସବୁ କାମ ଆପେ ନ ଦେଖିଲେ ତାଙ୍କ ମନ ମାନେନାହିଁ । ପାଞ୍ଜିଆମାନଙ୍କର ଆଗେ ଯେ ସବୁ ରେସମ, ଦସ୍ତୁରି, ଖରଡ଼ାପଣି, ବିଶୋଧନୀ, ମଫସଲ ଗହ୍ନର ପ୍ରଭୃତି ଆୟ ଥିଲା, ସେ ସବୁ ଉଠାଇ ଦେଇ କର୍ମଲହାଜରେ ଦରମା ବେଶି କରି ଦେଇଛନ୍ତି । ଏଥିକୁ ପ୍ରଜା ଆଉ ପାଞ୍ଜିଆମାନଙ୍କ ମନରେ ଭାରି ଆନନ୍ଦ । ଉତ୍ତରରାୟ ମଫସଲ ଗାଁକୁ ଗାଁ ବୁଲି ଦେଖିଲେ, ରାଜ୍ୟଟି ବଡ଼ ସୁନ୍ଦର । ମହାନଦୀରୁ ଯୋଡ଼ାଏ ନାଳ ବାହାରି କଚ୍ଛା ମଧ୍ୟରେ ପଶିବାରୁ ବର୍ଷକୁ ବର୍ଷ ବଢ଼ିପାଣି ମାଡ଼ ଭୂମିରେ ପଟୁ ଅଜାଡ଼ ଦିଏ । ଏଥିକୁ ଜମିଗୁଡ଼ାକ ବଡ଼ କଳନ୍ଦି--ବାରଫସଲି । ସେ ଆଉ ଆଉ ଦେଶର ଜମିର ହାଲ ଇଂରେଜୀ ପୁସ୍ତକମାନଙ୍କରେ ପଢ଼ିଥିଲେ । ଜାପାନ,

ଇଂଲଣ୍ଡ, ଆମେରିକା ପ୍ରଭୃତି ଦେଶମାନଙ୍କର ଜମି ସହିତ ତୁଳନା କରି ବୁଝିଲେ, ଏ ଦେଶର ଜମି ଆଉ ଆଉ ଦେଶ ଜମିଠାରୁ ଫଳବନ୍ତ । ଜମିର ଉର୍ବରା ଶକ୍ତି ବଢ଼ାଇବାପାଇଁ ପ୍ରଜାମାନଙ୍କୁ ପ୍ରଚୁର ବ୍ୟୟ ବା ବୈଜ୍ଞାନିକ ଉପାୟ ଅବଲମ୍ବନ କରିବାକୁ ପଡ଼େ ନାହିଁ, ମଧ୍ୟ ଅନେକ ସ୍ଥଳରେ ଅନାବଶ୍ୟକ । ହେଲେ କ'ଣ ସେ ସମସ୍ତ ଦେଶର ପ୍ରଜାଙ୍କଠାରୁ ଉତ୍କଳର ପ୍ରଜାମାନେ ଦରିଦ୍ର ଧନହୀନ । ଅନେକ ପ୍ରଜାଙ୍କର ଦୁଇ ଓଳି ଚୁଲିଲେ ହାଣ୍ଡି ବସେ ନାହିଁ । ଉତ୍ତରରାୟୁ ସେଥିର କାରଣ ଏହିପରି ବୁଝିଲେ ।

ପ୍ରଥମ— ପ୍ରଜାମାନଙ୍କର ମୂର୍ଖତା ଏବଂ ଦରିଦ୍ରତା । ଦ୍ୱିତୀୟ—ଭୂସ୍ୱାମୀ ଅଥବା ଶକ୍ତିଶାଳୀ ଲୋକମାନଙ୍କର ସହାନୁଭୂତିର ଅଭାବ । ତୃତୀୟ—କୃଷକଶ୍ରେଣୀ ଯେ ଦେଶର ସର୍ବସ୍ୱ, ଧନବୃଦ୍ଧିର କାରଣ, ଏ ଦେଶର ଶିକ୍ଷିତ ଲୋକେ ଏପର୍ଯ୍ୟନ୍ତ ବୁଝି ନାହାନ୍ତି । ଚତୁର୍ଥ— ଆମେରିକା ଦେଶ ପରି କୃଷି ଯେ ନିତାନ୍ତ ଗୌରବର କାର୍ଯ୍ୟ, ଲୋକଙ୍କର ଏ ଜ୍ଞାନ ଜାତ ହୋଇ ନାହିଁ । ଯେବେ ସଭ୍ୟଦେଶମାନଙ୍କରେ ନବ ନବ ଉଦ୍ଭାବିତ କୃଷିପ୍ରଣାଳୀ ଲାଭକର ଶସ୍ୟ ଉତ୍ପାଦନ ବିଷୟ ଶିକ୍ଷା ଦିଆଯାଏ, ତେବେ ପ୍ରଜା ଏବଂ ଭୂସ୍ୱାମୀ ଉଭୟଙ୍କ ପକ୍ଷରେ ମଙ୍ଗଳ । ଦାରିଦ୍ର୍ୟ ମଧ୍ୟ ପ୍ରଜାଙ୍କ ମଙ୍ଗଳ ଓ ଉନ୍ନତିର ଗୋଟିଏ ବିଶେଷ ଅନ୍ତରାୟ । ଜମିରେ ଉପଯୁକ୍ତ ରୂପେ ଖତ ଲଗାଇବା ବା ଭଲରୂପେ ଜମିକୁ କର୍ଷଣ କରିବା ଯେ ବିଶେଷ ଶସ୍ୟଲାଭର ଉପାୟ, ପ୍ରଜାମାନେ ଏକଥା ଜାଣି ମଧ୍ୟ ଅର୍ଥାଭାବ ହେତୁରୁ ତାହା କରିପାରନ୍ତି ନାହିଁ । ଏହି ସମସ୍ତ ଅନ୍ତରାୟ ଅତିକ୍ରମ କରି ପ୍ରଜା ଯାହା କିଛି ଲାଭ କରେ, ମହାଜନ ସୁଧରେ ସମସ୍ତ ଚାଲିଯାଏ । ଯଦି ଶକ୍ତିଶାଳୀ ଜ୍ଞାନବନ୍ତ ଲୋକେ ସଚେଷ୍ଟ ନ ହୁଅନ୍ତି, ତେବେ ନିମ୍ନ ଶ୍ରେଣୀ ମଧ୍ୟରେ ଅର୍ଥାତ୍ ସମାଜର ମୂଳ ପ୍ରଦେଶରେ ଦୁଃଖଦାରିଦ୍ର୍ୟ ଚିରକାଳ ବିରାଜିତ ଥିବ ।

ଉତ୍ତରରାୟୁ ଗାଁଏ ଗାଁଏ ବୁଲି ପ୍ରଜାମାନଙ୍କ ଅବସ୍ଥା ଆପେ ଦେଖନ୍ତି, ସେମାନଙ୍କ ଗୁହାରି ଶୁଣନ୍ତି ଏବଂ ସେମାନଙ୍କ ଅବସ୍ଥାର ଉନ୍ନତି ସକାଶେ ନାନାପ୍ରକାର ଉପଦେଶ ଦିଅନ୍ତି । ଅଳ୍ପ ସୁଧରେ ଟଙ୍କା କରଜ ଦେବାରୁ ପ୍ରଜାମାନଙ୍କୁ ଆଉ ସାହୁର ଦାଉ ସହିବାକୁ ପଡ଼େ ନାହିଁ । ପୁଣି ଉପଯୁକ୍ତ ସମୟରେ ସହଜରେ କରଜ ପାଇବାରୁ ଜମିରେ ଲଙ୍ଗଳ କରିବାକୁ ସେମାନଙ୍କ ପକ୍ଷରେ ବଡ଼ ସୁବିଧା ହୁଏ ।

ଆଗେ ମାଲିମକଦ୍ଦମାରେ ପ୍ରଜାମାନେ କଟକକୁ ଧାଡ଼ ଛୁଟିଥିଲେ, ଏବେ ସମସ୍ତେ ଉତ୍ତରରାୟୁଙ୍କ ସଦର କଚେରିରେ ହାଜର । ବିନା ଖର୍ଚ୍ଚାରେ ଅଳ୍ପ ଦିନ ମଧ୍ୟରେ ନ୍ୟାୟବିଚାର ପାଇବେ—ଘରୁ ଟଙ୍କା ସାରି ବିଦେଶରେ ପଡ଼ି ହଇରାଣ ହେବାର ପ୍ରୟୋଜନ ? ଓକିଲ ମୁକ୍ତାର ନାହିଁ, ମିଛ ଗୁହା ଗୁଜାରିବାର ବାଟ ନାହିଁ, ଠିକ୍ ଠିକ୍ ମାମଲାଟା ଦାଣ୍ଡରେ ପଡ଼ଯାଏ । ସେପରି ନ ଥିଲେ ଲୋକେ ଯୁଗଳକିଶୋର ମନ୍ଦିରରେ ପ୍ରସାଦ ସେବା କରି ମାମଲା ହାସଲ କରି ଚାଲିଯାନ୍ତି ।

ନୂଆ ଉତ୍ତରରାୟୁଙ୍କ ଅମଳଦାରିରେ ଉଆସ ଭିତରେ ଅବସ୍ଥା ମଧ୍ୟ ପାଲଟି ଗଲାଣି । ଉଆସ ଭିତରଟା ଯୋଡ଼ାଏ ଖଞ୍ଜା । ପ୍ରଥମ ଖଞ୍ଜା ବଡ଼ ବଡ଼ କୋଠାରେ ଆପେ ଉତ୍ତରରାୟୁ ଆଉ ମଣିମାଙ୍କର କାରବାର । ଖଦାଘର, ଗନ୍ଧାଘର, ସରଘର, ଦେବାର୍ଚ୍ଚନା ଘର, ଭିତର ଦିଜେ ଘର, ପହଡ଼ ଘର, ଭେଟଘର, ମର୍ଦ୍ଦନ ଘର, ସବୁ ଏଥି ଭିତରେ । ନୂଆ ଉତ୍ତରରାୟୁ ଏବଂ ମଣିମାଙ୍କର ଆଉ ଦୁଇଟା ଘର ବଢ଼ିଛି—ଏଇଟାକୁ ପାଠଘର ବୋଲନ୍ତି । ଧାଈମାଙ୍କ ପାଇଁ ଯୋଡ଼ାଏ ବଡ଼ ବଡ଼ କୋଠା ଏହି ଖଞ୍ଜାରେ । ଦ୍ୱିତୀୟ ଖଞ୍ଜାରେ ପରିଚ୍ଛିତଲଗା ସାନ ସାନ ପାରିଭାଡ଼ିପରି ଢେର କୋଠରି ଅଛି । ଜଣେ ଜଣେ ପରିଜନ ସକାଶେ ଗୋଟିଏ ଗୋଟିଏ କୋଠରି । ଉତ୍ତରରାୟୁଙ୍କ ତିନି ପୁରୁଷର ପୋଇଲି ବୁଢ଼ୀ, ଭେଣ୍ଡୀ, ଟୋକୀ ତ ଢେର ଅଛନ୍ତି – ତାଙ୍କୁ ଛାଡ଼ ନୂଆ ଉତ୍ତରରାୟୁଙ୍କ ଖଟଣି ପୋଇଲି ଅଲଗା ।

ପୋଇଲିମାନଙ୍କ ପରେ ବ୍ରାହ୍ମଣ, କରଣ, ଖଣ୍ଡାଏତ ଭଲ ଭଲ ଲୋକଙ୍କ ଘରର ନିରାଶ୍ରୟା ବିଧବା – ଯେଉଁମାନେ ଘରେ ପଡ଼ି ମରିବେ ପଛକେ ଦାଣ୍ଡକୁ ବାହାରିବେ ନାହିଁ—ସାନ୍ତମାନେ ଖୋଜି ଲୋଡ଼ି ସେମାନଙ୍କୁ ଉଆସରେ ଆଶ୍ରୟ ଦେଇଛନ୍ତି । ସେ ପ୍ରସ୍ତ ନିକଜଆଆଉ ଅଳିଆରେ ପୂରିଥିଲା - ଘରର ଖରକଣା ଆଉ ଆଉ ଅଳିଆ ଗଦା । ସମସ୍ତଙ୍କ କୋଠରି ଆଗରେ ଗୋଟିଏ ଗୋଟିଏ ଅଳିଆଗଦା । ଯୋଡ଼ାଏ ମାଇକିନିଆ କଳି ଲାଗିଛନ୍ତି । ଆଉ ଗୁଡ଼ାଏ ମାଇକିନିଆ ଦୁଇପଟରେ ଆସି ମିଳିଗଲେଣି - କିଏ କଳି ଲଗାଉଛି ତ କିଏ ଭାଙ୍ଗୁଛି । କଳିଝୁ ଯେଉଁଠାକୁ ହାଳିଆ ହୋଇ ପଡ଼ିବାଯାଏ କଳି ଲାଗିଥାଏ । ତୁମ ଘରେ କଳି ଆଉ ଅଳିଆ ଯେବେ ଲୋଡ଼ା ଥାଏ, ଗୋଟାକେତେ ପୋଇଲି ରଖିଦିଅ, ସବୁ ଠିକ୍ ହୋଇଯିବ । ଏଣିକି ଧାଈମାଙ୍କ ଡରରେ କାହାରି ପାଟିକରି କଳି କରିବାର ବାଟ ନାହିଁ । ପ୍ରତିଦିନ ଝଞ୍ଜା ଝାଡ଼ୁଝୁଡ଼ୁ—ଅଳିଆଗୁଡ଼ାକ ଏକାବେଳକେ ବାଡ଼ି ଦୁଆରେ ଦାଖଲ । ତେବେ କଣ ଜାଣନ୍ତି, ନିଷ୍କର୍ମା ପୋଇଲି ପଲରେ ବଜର ବଜର ପାଟି ଆଉ ଚାଲିବାଇ ବସାରେ ଖଚର ମଚର ଶବ୍ଦ ଯେମନ୍ତ ପ୍ରଜାପତିଙ୍କ ସର୍ଜନା—ତେଣୁ ଅନନ୍ତକାଳ ଏହା ଚଳୁଥିବ । ଏକାବେଳକେ ବନ୍ଦ କରିବାର କାହାରି ଆୟତ୍ତ ନାହିଁ ।

ନୂତନ ବନ୍ଦୋବସ୍ତରେ ଠିକ୍ ସଂକ୍ରାନ୍ତି ବାସିଦିନ ଧାନଢିଆ ଆସି ଜଣ ଜଣକେ ପଡ଼ି ଧାନ ଅଲଗା ଅଲଗା ମାପି ଦେଇଯାଏ । ତାହାଛଡ଼ା ପ୍ରତିଜଣ ସଦର କଚେରୀରୁ ନଗଦ କିଛି କିଛି ପାନ ଖର୍ଚ୍ଚ ପାନ୍ତି— ତାହା ବି ସଂକ୍ରାନ୍ତି ବାସି ଟପିବ ନାହିଁ । ଆଗରୁ ଏହି ବନ୍ଦୋବସ୍ତ ଅଛି—ହେଲେ, କିଏ ପାଇଲା, କିଏ ନ ପାଇଲା, ହେଲା ତ ତିନି ଚାରି ମାସରେ କେହି ଥରେ ପାଇଲା, ଏ କଥା ବୁଝିବାକୁ କେହି ନ ଥିଲା । ସେଥିଲାଗି ଭାରି ଗୋଳ ଉଠୁଥିଲା, ଏବେ କାହାରି ପାଟି ଫିଟିବାକୁ ନାହିଁ ।

ବେଳ ଦୁଇଘଡ଼ି ଥାଉଁ ଉତ୍ତରରାୟ ସ୍ତ୍ରୀମୁଙ୍କୁ କେହି ବାହାର ବିଜେ ଦେଖେ ନାହିଁ । ମଣିମା ଆଗେ ଲେଖି ପଢ଼ି ଜାଣୁଥିଲେ—ଏଣିକି ରୋଜ ରୋଜ ଚର୍ଚ୍ଚାରେ ତେର ଶିଖିଗଲେଣି । ଶ୍ରୀମୁ ଆଉ ମଣିମା ସ୍ତ୍ରୀମୁ ଦୁଇଘଣ୍ଟା କାଳ ପଢ଼ାପଢ଼ି କରି ଉଆସ ପଛ ପଞ୍ଚବଟୀ ତୋଟାକୁ ବୁଲି ବିଜେ କରନ୍ତି । ଏ ତୋଟାର ନାମ ପଞ୍ଚବଟୀ କିଆଁ ହେଲା, ସେ ପ୍ରସଙ୍ଗ ପାଞ୍ଜିରେ କିଛି ଲେଖା ନାହିଁ । ଲୋକେ ବୋଲନ୍ତି, ଏହାର ଜଗିବ ସରବଶ ପାଞ୍ଚ ବାଟୀ, ଏଥିରେ ଏହାର ନାମ ପଞ୍ଚବଟୀ ତୋଟା ।

ଉତ୍ତରରାୟ ଦମ୍ପତି ବର୍ତ୍ତମାନ ସ୍ୱର୍ଗୀୟ ସୁଖ ଅନୁଭବ କରୁଛନ୍ତି । ମଣିମା ଗୃହମଣିଙ୍କ ସୁଖ ସୌଭାଗ୍ୟ ଦେଖି ଆମ୍ଭମାନଙ୍କର କୌଣସି କୌଣସି ପାଠିକାଙ୍କ ମନରେ ଈର୍ଷା ଜାତହେବା ନିତାନ୍ତ ଅସ୍ୱାଭାବିକ ନୁହେଁ । ହେଲେ ତାଙ୍କର ମନେ ରଖିବା ଉଚିତ, ବିଶାଳ ଭୂଖଣ୍ଡର ଆଧିପତ୍ୟ ବା ଐଶ୍ୱର୍ଯ୍ୟର ପ୍ରାଚୁର୍ଯ୍ୟ ପ୍ରକୃତ ସୁଖଭୋଗର କାରଣ ନୁହେଁ । ସନ୍ତାପସଙ୍କୁଳ ସଂସାରରେ ଯେବେ କି ସୌଭାଗ୍ୟର ସମ୍ଭାବନା ଥାଏ, ତାହା କେବଳ ଦାମ୍ପତ୍ୟ ପ୍ରେମ । ଧନ—ମାନ—ବିଦ୍ୟା – ଖ୍ୟାତି ମାନବର ସୁଖ ସୌଭାଗ୍ୟର ବହୁବିଧ ହେତୁ ବିଦ୍ୟମାନ ଅଛି ସତ୍ୟ —-ହେଲେ, ଦୋଷ-ସମ୍ପର୍କ ରହିତ ଦାମ୍ପତ୍ୟ ପ୍ରେମ ତୁଳନାରେ ସେ ସମସ୍ତ ନିତାନ୍ତ ଅକିଞ୍ଚିତ୍କର ପଦାର୍ଥ । ଅନ୍ୟବିଧ ସୁଖପ୍ରଦ ପଦାର୍ଥମାନ ସୌଭାଗ୍ୟବଶରେ ଶ୍ରେଣୀ ବିଶେଷର ପ୍ରାପ୍ୟ – ହେଲେ, ଦାମ୍ପତ୍ୟ-ପ୍ରେମରୂପ ସ୍ୱର୍ଗୀୟ ନିଧି କୁଟୀରବାସୀଠାରୁ ରାଜରାଜେଶ୍ୱର ପର୍ଯ୍ୟନ୍ତ ସମସ୍ତଙ୍କ ପକ୍ଷରେ ସୁଖଲଭ୍ୟ ଅଟେ । ଦୁଃଖଭାରାକ୍ରାନ୍ତ ମାନବ ଜୀବନ ଯେମନ୍ତ ବହୁ ତପସ୍ୟା ବଳରେ ବିଧାତାଙ୍କ ଠାରୁ ଏହି ମହା ବର ଲାଭ କରିଅଛି ।

ଦାମ୍ପତ୍ୟ ପ୍ରେମ ନ ଥିଲେ ଜଗତରେ ମାନବଜୀବନ ଗୋଟିଏ ଦେବଭୋଗ୍ୟ ସୁଖକର ପଦାର୍ଥରୁ ବଞ୍ଚିତ ରହିଥାନ୍ତା । ସଂସାରଟା ପ୍ରକୃତି ପୁରୁଷ ମିଳନରେ ଉତ୍ପତ୍ତି — ସ୍ଥିତି ଲାଭ କରିଅଛି । ଆମ୍ଭେମାନେ ରୂପଜ, କାମଜ, ଅର୍ଥସମ୍ପର୍କ ସୂତ୍ରବଦ୍ଧ ବହୁବିଧ ସ୍ତ୍ରୀ ପୁରୁଷ ମିଳନ ଦେଖିପାରୁଁ । ହେଲେ, ପ୍ରକୃତ ପକ୍ଷରେ ତାହା ଦାମ୍ପତ୍ୟ ପ୍ରେମ ନାମରେ ଅଭିହିତ ହେବାର ଉପଯୋଗୀ ନୁହେ । ତାଦୃଶ ସ୍ତ୍ରୀ ପୁରୁଷ ମିଳନ ସ୍ୱାର୍ଥ ଜଡ଼ିତ ଅଟେ । ନିଃସ୍ୱାର୍ଥ ଦାମ୍ପତ୍ୟପ୍ରେମ ସ୍ୱତନ୍ତ୍ର ପଦାର୍ଥ; ତାହା ଚିରସ୍ଥାୟୀ । ଏକପକ୍ଷର ମୃତ୍ୟୁ ସଂଘଟିତ ହେଲେ ଅନ୍ୟ ପକ୍ଷ ହୃଦୟରେ ମରଣ କାଳବ୍ୟାପୀ ଜାଗରୂକ ରହିଥାଏ । ବୟସ ଧର୍ମରେ ଚିତ୍ତଚାଞ୍ଚଲ୍ୟଜନିତ ରୂପଜ ମୋହ ବିକାରଗ୍ରସ୍ତ ସ୍ତ୍ରୀ ପୁରୁଷ ସମ୍ମିଳନ ମଧ୍ୟ ଦାମ୍ପତ୍ୟପ୍ରେମ ନାମରେ କଥିତ ହୋଇ ନ ପାରେ । ଏକର ହୃଦୟନିହିତ ଗୁଣାବଳୀ ଅପରର ହୃଦୟରେ ଚିତ୍ରିତ ହେଲେ, ସେଥି ସକାଶେ ଯେଉଁ ସ୍ୱାର୍ଥ-ବିସର୍ଜନ - ଏକର ସ୍ୱାର୍ଥସଂରକ୍ଷଣ ସକାଶେ ଅନ୍ୟର ସ୍ୱାର୍ଥତ୍ୟାଗ—ପରସ୍ପରର ସୁଖକାମନାରେ ଆତ୍ମସୁଖର ଯେଉଁ ବଳିଦାନ, ତାହାହିଁ ଦାମ୍ପତ୍ୟପ୍ରେମ ନାମରେ ବାଚ୍ୟ । ଏହି ଦାମ୍ପତ୍ୟପ୍ରେମର ଆନନ୍ଦ ଉତ୍ସବ ସୀମାବଦ୍ଧ ନୁହେ, ପୁଣି ଅବିନାଶୀ । ଦାମ୍ପତ୍ୟପ୍ରେମ-ଶୃଙ୍ଖଳାବଦ୍ଧ, ପୁରୁଷ ସ୍ତ୍ରୀ ଭଲ ପାଇବାକୁ ହେବ, ସେଥି ସକାଶେ ଭଲପାଏ । ସ୍ତ୍ରୀ ତାହାର ନୟନର ପ୍ରୀତିଦାୟିନୀ ଜ୍ୟୋତି—ସ୍ତ୍ରୀ ତାହାର ଭେଦରହିତା ଛାୟାରୂପିଣୀ; ଅଉ ସ୍ତ୍ରୀ ପକ୍ଷରେ ସ୍ୱାମୀ ତାହାର ଉପାସ୍ୟ ଦେବତା, ସ୍ୱାମୀ ଅନ୍ତଃସ୍ଥଳ, ସମସ୍ତ ସୌଭାଗ୍ୟର ଆଦିମ ଉତ୍ସ । ଅଥଚ ଫଳଲାଭ ପ୍ରତ୍ୟାଶାରେ ଉଭୟ ମନରେ ପ୍ରେମସଞ୍ଚାର ନୁହେ, କିନ୍ତୁ ଉଭୟ ପକ୍ଷରେ ତାହା ସହଜପ୍ରାପ୍ୟ । ସତୀ ସ୍ତ୍ରୀ କର୍ତ୍ତବ୍ୟାକର୍ତ୍ତବ୍ୟ ପ୍ରତି ଦୃଷ୍ଟି ନ ରଖି ସମସ୍ତ ମନପ୍ରାଣ ସମର୍ପଣପୂର୍ବକ ସ୍ୱାମୀକୁ ଭକ୍ତି କରିଥାଏ । ସେ ଏତିକିମାତ୍ର ବୁଝିଛି, ସ୍ୱାମୀ ତାହାର ଉପାସ୍ୟ । ସ୍ୱାମୀର ଧାରଣା, ସ୍ତ୍ରୀ ତାହାର ଶୋଣିତପ୍ରବାହିନୀ ଶିରା ଉପଶିରା । ଉତ୍ତରସିଂହ ଦମ୍ପତି ପ୍ରକୃତ ପ୍ରେମସୂତ୍ରରେ ଆବଦ୍ଧ । ଏଥିକୁ ସେମାନେ ବିପୁଳ ବିମଳାନନ୍ଦ ଭୋଗୀ ।

ଦିବାବସାନ ସମୟରେ ସାମନ୍ତ ଉତ୍ତରସିଂହ ଆଉ ମଣିମା ଗୃହିଣୀ ଦେଈ ପ୍ରତିଦିନ ଘଣ୍ଟାଏକାଳ ବଡ଼ ମାଳଣା ପକ୍କାଘାଟ ଉପରେ ବସି କଥାବାର୍ତ୍ତା କରନ୍ତି । ଦିନେ ବସି କପୋପକଥନ ହେଉଛନ୍ତି, ଗୋଟାଏ ପୋଇଲି ଆସି ହାତଯୋଡ଼ି ଜଣାଇଲା— 'ଧାଈମା ପଚାରୁଛନ୍ତି, ପଲଙ୍କ ଉପରେ ଯେଉଁ ସୁନା ମାଳଟା ପଡ଼ିଥିଲା, ଛାମୁ ଚୋଳ ରଖିବାକୁ ଆଜ୍ଞା ହୋଇଛନ୍ତି କି ?' ମଣିମା 'ହୁଁ' କହିବାରୁ ପୋଇଲି ଚାଲିଗଲା । ଉତ୍ତରସିଂହ କହିଲେ, "ହୋଇ ହେ ! ଭଲ ଗୋଟାଏ କଥା ମନେ ପଡ଼ିଗଲା । ପଚାରିବି ପଚାରିବି ବୋଲି ଭୁଲିଯାଏ । ଏହି ଯେ ଧାଈମା ଯାହାଙ୍କୁ ବୋଲୁଛ, ସେ କିଏ ? ଏହାଙ୍କର ଯେ ପ୍ରକାର ରୂପ, କଥାଭାଷା ଚାଲିଚଳନ ଦେଖିଲେ ଜଣାଯାଏ, କୌଣସି ଭଲଲୋକ ଘର ବୋହୂ ଝିଅ ହେବେ । ପରିଜନ ଭିତରେ କି ଏ ପ୍ରକାର ରୂପ ହୋଇପାରେ ? ଏପରି ମର୍ଯ୍ୟାଦାରେ, ବୁଦ୍ଧିରେ, ନ୍ୟାୟରେ କଥା କହିବାର ଯେ ସେ ଲୋକ ଘର ବୋହୂ ଝିଅଠାରେ ଦେଖାଯାଏ ନାହିଁ । ମୁଁ ସବୁବେଳେ ଦେଖେଁ, ଧାଈମା ଆତ୍ମକର୍ମରେ ଉଦାସୀନା— ଗୃହ-କାର୍ଯ୍ୟରେ ଉନ୍ମାଦିନୀ — ମନ୍ତ୍ରଣାରେ ମନ୍ତ୍ରିଣୀ । ସତ କହୁଛି, ଏହାଙ୍କୁ ଦେଖିଲେ ମୋ ମା'ଙ୍କ କଥା ମନରେ ପଡ଼ିଯାଏ ।"

ମଣିମା କହିଲେ, "ତୁମେ ଠିକ୍ କଥା ବୁଝିଛ, ଧାଈମା ଜଣେ ପରିଜନ ନୁହନ୍ତି, ମୋ ମା'ଙ୍କ ଖୁଡ଼ି ତା-ଝିଅ ଭଉଣୀ — ମୋ ମାଉସୀ । ମୋତେ ପାଳିଥିବାରୁ ଧାଈମା ବୋଲି ଡାକେ । ମଉସା କଲିକତାରେ କ କାମ କରୁଥିଲେ, ଅନେକ ବର୍ଷ ହେଲା ତାଙ୍କର ଖବର

ନାହିଁ । ଘରେ ଆଉ କେହି କୁଟୁମ୍ବ ନ ଥିବାରୁ ଜମି ଜମା ବନ୍ଦ ଦେଇ ଆସି ରୁକୁଣାଦେଈପୁରରେ ଥିଲେ । ତାଙ୍କ ହାତରେ ଢେର ଟଙ୍କା ଥିଲା; ମୋ ମଙ୍ଗଳ-କୃତ୍ୟରେ ସବୁ ଲଗାଇ ଦେଲେ । କରଣକୁଳରେ ମାଉସୀ ପିଉସୀ ଭଳିଆ କେହି ଝିଅର ଶାଶୂଘରକୁ ଯାଏ ନାହିଁ, ତାଙ୍କର ଏଠାକୁ ଆସିବାବେଳେ ଢେର କଥା କହିଲେ ଧାଈମା କହିଲେ, ମୋ ଗୃହ ସେଇଟି, ମୋ ଜୀବନ ସେଇଠି । କାହାରି କଥା ନ ଶୁଣି ଚାଲି ଆସିଲେ ।''

ସେହି ଦିନଠାରୁ ଉତ୍ତରସପୁ ସରସ୍ୱତୀ ଦେଈଙ୍କୁ ମା ବୋଲି ଡାକନ୍ତି, ସେହିପରି ମର୍ଯ୍ୟାଦା କରନ୍ତି—ଭିଆସର ସବୁ ଭାର ତାଙ୍କ ହାତରେ । ବାହାର ମୁଲକର ମାଲିମାମଲାରେ ମଧ୍ୟ ମା'ଙ୍କୁ ନ ପଚାରି ଉତ୍ତରସପୁ କିଛି କରନ୍ତି ନାହିଁ । ଧାଈମା ବଡ଼ ବଡ଼ ମାମଲାରେ ଠିକ ପରାମର୍ଶ ଦେଇଥାନ୍ତି । କେବଳ ଭିଆସ ମଧ୍ୟରେ ନୁହେଁ, ବାହାର କଚେରି ପାଞ୍ଜିଆ ପଟୁଆରିମାନଙ୍କ ହାତ ମଧ୍ୟ ଧାଈମାଙ୍କଠାରେ ବନ୍ଧା ।

---

-୧୩-

## ନଟବରର ନାଜରୀ

ନାଜର ଦାଶରଥି ଦାସ ଜଣେ ପୁରୁଣା ଅମଲା—ପେନ୍‌ସନ୍ ନେବାର ସମୟ ଉପସ୍ଥିତ । ହେଲେ ପୁତ୍ରକନ୍ୟାମାନଙ୍କ ମଙ୍ଗଳକୃତ୍ୟରେ କିଛି ଦେଣା ହୋଇ ଯାଇଛି, ଏ ଯାଏ ଶୁଝିଟି ହୋଇ ପାରି ନାହିଁ, ଆଉ ବର୍ଷେ ଦୁଇ ବର୍ଷ ଚାକିରିରେ ରହିବାକୁ ଇଚ୍ଛା । ହେଲେ, ମନୁଷ୍ୟର ଆଶା ଆଉ ବିଧାତାଙ୍କ ଦାନ ସବୁ ଜାଗାରେ ଠିକ ଥାଏ ନାହିଁ । ନଟବରର ବିଭାଘରର ଦୁଇ ମାସ ବାଦେ ଦାସଙ୍କୁ ଖୁଁ ଖୁଁ ଯାଁ କାଶ ଧରିଲା ପରି ଜଣା ଗଲାଣି । ଡାକ୍ତର ଆଉ ବୈଦ୍ୟରାଜମାନେ ଶରୀର ପରୀକ୍ଷା କରି ବ୍ୟବସ୍ଥା କଲେ, ଆଉ ମେହନତ ଚଳିବ ନାହିଁ । ଜଳବାୟୁ ବଦଳାଇବା ପାଇଁ ଅନ୍ୟ ଜାଗାକୁ ଯିବାର ଦରକାର । ଦାସେ ଆପଣାର ହାଲହବାଲ ସାହେବଙ୍କୁ ଜଣାଇ ନଟବରକୁ ନାଜରୀ କର୍ମରେ ରଖାଇ ଦେଲେ । ପୁରୁଣା ବିଶ୍ୱାସୀ ଅମଲାର ଦୁଃଖ କଥା ଶୁଣି ହାକିମ କିଛି ଦୁଃଖିତ ହେଲେ । ପ୍ରକୃତ ହାକିମମାନଙ୍କ ମଧ୍ୟରେ ଆମ୍ଭେମାନେ ଅନେକ ଦୟାଳୁ ଇଂରେଜ ହାକିମ ଦେଖିପାରୁ । ସେମାନେ ଅନୁଗତ ଲୋକ-ମାନଙ୍କ ପ୍ରତି ଅତ୍ୟନ୍ତ ଦୟାଳୁ । ନଟବର ଦାସଙ୍କର ଏକାବେଳକେ ଏଡ଼େ ବଡ଼ ଚାକିରିଟା ପାଇବାର ଆଶା ନ ଥିଲା । କେବଳ ଦାସଙ୍କର ଦେଣା କଥା ଶୁଣି ହାକିମ କର୍ମରେ ବାହାଲ କଲେ । ଦାସେ ଚାକିରିରୁ ଖଲାସ ପାଇ ଏକାବେଳକେ ଗାଁକୁ ଚାଲିଗଲେ କଟକ ବସାରେ ରହିଲେ ଏକା ନଟବର ଦାସେ । ନଟବର ମନେ କଲେ, ସେ ଗୋଟିଏ ଛୋଟିଆ ଭଳିଆ ହାକିମ ହୋଇ ଗଲେଣି--ହୁକୁମହାକିମ ଶୁଣିବାପାଇଁ କେତେଗୁଡ଼ିଏ ପିଆଦା ପଇଦଲ ପାଖରେ ହାଜର । ଦରମା ତ ଅଛି, ତାକୁ ଛାଡ଼ି ରୋଜ ରୋଜ କଞ୍ଚା ପଇସା କିଛି କିଛି ଘରେ ପଡେ । ଅର୍ଥ ଆଉ ଆଧିପତ୍ୟ ଯୋଡ଼ାକଯାକ ତେଜ ଜିନିଷ ଲାଗି ମିଜାଜ କିଛି ଚଢ଼ିଲା ଗଲାଣି । ମନରେ ଠିକ୍ କରି ନେଲେ, ଏହା ବଧୂର ପଦଗର ଲକ୍ଷଣ । ଶ୍ରୀନାୟକେ ଜାତକ ଦେଖି ସତ କହିଥିଲେ, ମୋ ବଧୂ ଗୋଟିଏ ରାଜରାଣୀ ହେବ । ସେ ଘରେ ଗୋଡ଼ ପକାଇଛି କି ନାହିଁ, ଏକାବେଳକେ ଏତେ ଟଙ୍କା ରୋଜଗାର । ଜ୍ୟୋତିଷ ଶାସ୍ତ୍ରଟା ଭାରି ଠିକ୍, ଶ୍ରୀନାୟକେ ପାଠରୁ ଜାଣି ଆଗୁଁ ଡାକ ଫୁକାରି କରି କହି ଦେଇଥିଲେ ।

ନଟବର ଦାସଙ୍କର ଧ୍ରୁବ ଧାରଣା, ଅର୍ଥ ଉପାର୍ଜନ ଅର୍ଥ ସଂରକ୍ଷଣ ମାନବଜୀବନର ସାର ଉଦ୍ଦେଶ୍ୟ ଅଟେ ।

ବୁଦ୍ଧିମାନ୍ ଲୋକଙ୍କୁ ଅର୍ଥ ମିଳେ । ସେହିମାନେ ଏକା ଲୋକରେ ପୂଜା ପାଇଥାନ୍ତି । ଆଉ ଅର୍ଥ ଜଳ ପରି ବୃଷ୍ଟି ହୁଏ ନାହିଁ, ବୁଦ୍ଧିବଳରେ କୌଶଳ କରି ଅନ୍ୟଠାରୁ ଆଣିବାକୁ ହେବ । ଧର୍ମ ବୋଲି ଯେ ଗୋଟାଏ ବାଛ ବିଚାର, ସେଇଟା କେବଳ ଅଳସୁଆ ନିର୍ବୁଦ୍ଧିଆଙ୍କ କଥା । ସଚରାଚର ଦେଖାଯାଏ, ଯାହା ଯୋଗେ ଅର୍ଥ ଲାଭ ହୁଏ, ଅର୍ଥପିପାସୁମାନଙ୍କର ତାହା ପ୍ରତି ଅସୀମ ପ୍ରୀତି । ନଟବର ଦାସେ ସ୍ଥିର କଲେଣି, ବହୂ ପଦଗୁରୁ ଏତେ ଅର୍ଥଲାଭ—ବହୂଟି ବଡ଼ ସୁଲକ୍ଷଣୀ । ସୁତରାଂ ସ୍ତ୍ରୀ ପ୍ରତି ଅସୀମ ପ୍ରୀତି ।

---

-୧୪-

## ଦାଶରଥି ଦାସଙ୍କର ଶେଷ

ଜାତସ୍ୟ ହି ଧ୍ରୁବୋମୃତ୍ୟୁ
ଧ୍ରୁବଂ ଜନ୍ମ ମୃତସ୍ୟ ଚ । ଗୀତା ।

ବର୍ତ୍ତମାନ ଦାଶରଥି ଦାସେ ସ୍ୱ ଗ୍ରାମ ରୁକୁଣା-ଦେଈପୁରରେ ଅଛନ୍ତି । ଦିନକୁ ଦିନ ବ୍ୟାଧିଟା ବଳି ପଡ଼ୁଛି । ଦୁଇଜଣ ପୁରୁଣା ବୈଦ୍ୟ ଶାସ୍ତ୍ର ଧରି ଚିକିତ୍ସାରେ ଲାଗି ସୁଦ୍ଧା ହାରି ଗଲେଣି । ଜୁଆଇଁ ଉତ୍ତରରାମ ଆଉ କନ୍ୟା ଶ୍ୟାମମଣି ସବୁବେଳେ ଖବର ନେଉଥାନ୍ତି । ତାଙ୍କ ଉଆସର ରାଜବୈଦ୍ୟ ବିଦ୍ୟାଧର କବିଶିରୋମଣି ଧନ୍ୱନ୍ତରୀଙ୍କୁ ରୁକୁଣାଦେଈପୁରରେ ବସାଇ ରଖିଛନ୍ତି । ସେ ଯାହା ବୋଇଲେ, କଲିକତା ଅବା ଯେଉଁଠାରେ ମିଳୁଛି କଉଡ଼ିଆ କଉଡ଼ିଆ ମହୌଷଧି ମାନ ଆସି ପହଞ୍ଚି ଯାଉଛି—ଶେଷରେ ରାଜବୈଦ୍ୟ ଧନ୍ୱନ୍ତରୀ ଆଉ କଥା ଲୁଚିଛପା ନ କରି ସାଫ ଫିଟାଇ ହାଙ୍କିଦେଲେ—ଏହି ବ୍ୟାଧି ଚିକିତ୍ସକର ଅସାଧ୍ୟ । ରାଜଯକ୍ଷ୍ମା ରୋଗର ସ୍ଥିତିକାଳ ହଜାରେ ଦିନ । ଚନ୍ଦ୍ରଙ୍କର ଏହି ବ୍ୟାଧି ହୋଇଥିଲା, ଦେବବୈଦ୍ୟ ଅଶ୍ୱିନୀକୁମାର ଭଲ କରି ପାରି ନାହାନ୍ତି, ମାନବ ବୈଦ୍ୟ କି ଛାର !

ମେନକା ଦେଈ ଆଉ ବଡ଼ବହୂ ଦୁଇଜଣ ପାଳି କରି ରୋଗୀକୁ ଜଗି ବସିଥାନ୍ତି—ଖାଇବା ପିଇବା ପାଚୋରି ରୋଗୀ ଦେହରେ ଆଉ ଗୋଡ଼ରେ ହାତ ନ ବୁଲାଇଲେ ବଡ଼ କଷ୍ଟ ହୁଏ । ସଞ୍ଜ ପିମ୍ପିଡି ବାଜିଲା କି ନ ବାଜିଲା, ସାନ ବହୂର ମୁଣ୍ଡ ବଥେଇଲା—ଶୋଇ ପଡ଼ନ୍ତି । ଶାଶୁ ରଡ଼ାବଡ଼ା କରି ବହୁତ ଡକାଡକି କରି ଉଠାଇଲେ ପଥି ଗୁଡ଼ିଏ ପେଟରେ ପଡ଼େ । ଗୋଟିଏ କୁଳର କଥା, ଏତେ ବେଗରେ ବି ତାଙ୍କୁ ଅରୁଚି ଧରି ନାହିଁ । ଅଇଁଠା କଂସାଖଣ୍ଡ ଠା'ରେ ପଡ଼ିଥାଏ, ଆଉ ଦିନ ସକାଳେ ଶାଶୁ ଅବା ବଡ଼ ଯା ବିଛଳ ପକାନ୍ତି । ଶାଶୁ କହନ୍ତି, "ହେଉ ହେଉ, ପିଲାଟା ଜ୍ଞାନ ହେଲେ ନ କରି କାହିଁଯିବ ?"

ଦାସଙ୍କ ବ୍ୟାଧି ଘୋର ବଳି ପଡ଼ିଲାଣି – ଝଲକା ଝଲକା ରକ୍ତ ଉଠା ହୋଇପଡ଼େ, ଆଉ ଭରସା କଣ ? ନନ୍ଦପୁର ଗଡ଼ରୁ ସରସ୍ୱତୀ ଦେଈ ଧାଇଁ ଆଇଲେ । ଦାସଙ୍କ କଥା ଶେଷ ।

ପିତୃଶ୍ରାଦ୍ଧ କରିବା ସକାଶେ ନଟବର ଦାସେ ଛୁଟି ନେଇ କଟକରୁ ଘରକୁ ଆଇଲେ । ବାନାବରି ଗୃହ ବାସରେ ଥାଏ, ନଗଦ ଟଙ୍କା ହାତରେ ପଡ଼େ ନାହିଁ । ମଗଦୁରଭରି ଭୋଜ୍ୟ ସରଞ୍ଜାମ ଆଉ ଆଉ ସରଞ୍ଜାମମାନ ଯାହା ଏଥିକି ଲୋଡ଼ା ଆୟୋଜନ କରି ଦେଲେ । ଉପଯୁକ୍ତକାଳରେ ମାନ ମହତ୍ତ୍ୱଙ୍କୁ ଜଗି ଶ୍ରାଦ୍ଧକ୍ରିୟା ବଢ଼ିଲା । ନଟବର ଦାସେ ବୋଲନ୍ତି, ପିତୃଶ୍ରାଦ୍ଧରେ ତାଙ୍କୁ ଋଣୀ ହେବାକୁ ପଡ଼ିଲା । ହେଲେ, ଖରଚୁଆ ଆଉ ଅସହଣୀ ଲୋକ ସବୁଅଡ଼େ--ଗ୍ରାମରେ ସେଭଳିଆ ଲୋକଗୁଡ଼ାକ ଫୁସୁରୁଫାସର ହୁଅନ୍ତି--ବଡ଼ ପୁଅ ତ ସବୁ ସରଞ୍ଜାମ ଯୋଗାଡ଼ କରି ରଖିଥିଲେ, ଧୂପ

ଗଡ଼ନରପୁରରୁ ଯେତେ ପଦାର୍ଥ ଆଉ ବ୍ରାହ୍ମଣ ବଦାଙ୍କ ସକାଶେ ନଗଦ ଯାହା ଆସିଥିଲା, ସେଥିରୁ ବଳ ପଡ଼ିଥିବ—ନଟବରର ଦାସେ ଋଣୀ ହେଲେ କିଁଆ ? ଏଥି ମଧ୍ୟରେ ବହୂର ଅଳଙ୍କାର ଗୁଡ଼ାଏ ଗଢ଼ିପକାଇଲେ କଣ ?

---

-୧୪-

## ନାଜର ଦମ୍ପତିଙ୍କ କଟକ ଯାତ୍ରା

ପିତାଙ୍କ ଅନ୍ତ୍ୟେଷ୍ଟି କ୍ରିୟାକଳାପ ସମାପ୍ତ—ନାଜରଙ୍କ ଛୁଟି ମିଆଦ ଶେଷହେଲା ବୋଲି କଟକ ଯାତ୍ରାର ଅନୁଷ୍ଠାନ ଆରମ୍ଭ ହେଲା । ଏଣେ ଦେଖିଲେ, ସେ କଟକରୁ ଆସିବା ଦିନଠାରୁ ବହୂଟି ମନରେ ସୁଖ ନାହିଁ, ସବୁବେଳେ ମୁହଁଟି ଶୁଖାଇ ବସିଥାଏ । ବାହାରର ନାନା କାର୍ଯ୍ୟରେ ଲଗିଥିବାରୁ ନାଜର ବାବୁ ସେଥିର କାରଣ ବୁଝାବୁଝି କରିବାକୁ ବେଳ ପାଇ ନ ଥିଲେ । ବର୍ତ୍ତମାନ କଟକ ଯିବା ସକାଶେ ମେଲାଣି ଦେବାକୁ ଯିବାରୁ ବହୂ ପ୍ରଥମେ ରୁଷାରୁଷି, ତାହାବାଦ ଉଚ୍ଚା ପକାଇ ବାହୁନି ବାହୁନି କାନ୍ଦିବାକୁ ଲାଗିଲେ । ହଠ ଧରି ବସିଲେ, କଟକ ଯିବେ, ସାଙ୍ଗରେ ଘେନି ନ ଗଲେ ବେକରେ ଦଉଡ଼ି ଦେବେ । ଘରେ ତାଙ୍କର ଯେତେ ଦୁଃଖ ଗୋଟି ଗୋଟି କରି ସ୍ୱାମୀଙ୍କୁ ବୁଝାଇ କହିଲେ । ଶାଶୁ ଭଲ ପାନ୍ତି ନାହିଁ—ଭୁଚ୍ଛାଟାରେ ଗାଳି ଫଜିତ ଗଞ୍ଜମାନ ଲଗିଛି—ଭାଇ ବୋଲି ଯାହାଙ୍କୁ ବୋଲ, ଭଗିନୀଙ୍କର ଗୋଟାଏ କଥା, କହିବେ ନା ? ଝିଅାଁ ଯା'ଟା ପାଖ ପଶିବ ନାହିଁ—ଗାଁର କାହାରିକୁ ପାଖ ଚୂରାଇ ଦେବ ନାହିଁ । ଆଉ ଖାଇବା ପିଇବା ଦୁଃଖ କଥା କଣ କହିବି ଏ ଓଳକୁ ସେ ଓଳ ଭୁଞ୍ଜ ବରଗଡ଼ା ଭାତ—ତିଅଣ ବୋଲି—ନା । ତୁମେ ମୋ ଖାଇବା ପିଇବାପାଇଁ ମାସକୁ ମାସ ମୁଠା ମୁଠା ଟଙ୍କା ପଠାଅ, ସଚେ ଲୁଟୁଛନ୍ତି; ଲୋକମାନଙ୍କ ଆଗରେ କହି ବୁଲନ୍ତି, ତୁମେ ପଇସାଟାଏ ଦିଅ ନାହିଁ । କଣ କରିବି, କାହା ପାଖରେ ଗୁହାରି କରିବି, ଓପାସ ଭୋକେ ପଡ଼ିଥାଏଁ । ମୋ କଥ ଚୂଲ୍ଲୀକି ଯାଉ, ତୁମ ମୁହଁଟି ଶୁଖି ଗଲାଣି, କେଡ଼େ ସୁନ୍ଦର ଦେହଟି କଳାକାଠ । କଟକରେ କିଏ ଅଛି, ଖାଇଲ ନ ଖାଇଲ କିଏ ବୁଝୁଛି । ମୁଁ ଗଲେ ପାଞ୍ଚ ତିଅଣ କରି ପରଷିବି । ମୁଁ ପାଖରେ ନ ଥିଲେ ବାଧିକାବେଳେ ସେବା କରିବ କିଏ ? ତୁମେ ମୋ ଠାକୁର, ତୁମେ ମୋ ଦେବତା, ତୁମ ମୁଣ୍ଡ ଛୁଉଁଛି; କଟକ ସଙ୍ଗରେ ନ ନେଲେ ବେକରେ ଦଉଡ଼ି ଦେଇ ମରିବି ।

ନାଜର ବଡ଼ ବ୍ୟାକୁଳ ହେଲେ, ମନରେ ବିଚାର କଲେ, ସତ, ମୋର ଆଉ କିଏ ଅଛି ? ନେବାକୁ, ଖାଇବାକୁ ଢେର । ଆଉ କଟକରେ ଯିଏ ଯେତେ ଥାଉ, ଭାର୍ଯ୍ୟା ସାଙ୍ଗରେ କିଏ ହେବ ? ମୋତେ ଯେତେ ବୋଲବାଲ, ଧନ ଦୌଲତ ସବୁ ଏହି ଭାର୍ଯ୍ୟା ସକାଶେ । ସେ ଘରେ ଗୋଡ଼ ଲଗାଇଛି ତ, ଟଙ୍କା ସୁନା ପେଲି ଆସୁଛି । ତାହା ହାତ ଧରିବା ଦିନୁଁ କପାଳ ଫିଟିଗଲାଣି । ବୋହୂ ମୋ ମୁଣ୍ଡ ଛୁଇଁଲାଣି, ସାଙ୍ଗରେ ନ ନେଲେ ଦଉଡ଼ା ଦେଇ ମରିବ । ରାମ ! ରାମ ! ରାମ ! ମୋର ଯେ ଭେକ ବୁଡ଼ିବ । ସ୍ଥିର କଲେ, ସାଙ୍ଗରେ ନେବେ । ଘରେ ସମସ୍ତଙ୍କ ଆଗରେ ମନ କଥା କହିଲେ । ମା ଶୁଣି ଗୁମ୍ ମାରି ବସିଗଲେଣି । ଭାଇ ତ ପାଟି ଫିଟାଇବେ ନାହିଁ, ଏ ଯେ ଭାଇବୋହୂ ପ୍ରସଙ୍ଗ । ଧାଈମା ଧାଇଁ ଆସି କହିଲେ, "ଏ କଣରେ ନଟ ? ବୋହୂଟାକୁ କଟକ କୁଆଡ଼େ ଘେନିଯିବୁ । ପିଲାଟା କିଛି ଜାଣେ ନା, କଟକ ପରି ସହର, ଚଳିବ କେମିତି ରେ ?"

ନାଜର କହିଲେ, "ହିଁ ହିଁ ଥାଉ ଥାଉ, ବୋହୂ ଉପରେ ଯେ ମାୟାଟା ନା—ଖାଇଲା ନ ଖାଇଲା କେହି ଥରେ ପଚାରିବାକୁ ନାହିଁ, ଦିନ ରାତି କାମରେ

ଲଗିଥିବ; ବେଶ୍ରମ ଆଶ୍ରମ ହେଲେ କେହି ଥରେ ହାତ ବୁଲାଇବାକୁ ନାହିଁ ।”

ବୋହୂ ଚାଲିଚଳନ ଦେଖି ଧାଉମା ଆଗରୁ ଖପା ହୋଇଥିଲେ, କହିଲେ, “କଣ କହୁଛୁରେ ନଟ ! ଘର କାମଗୁଡ଼ାକ ତ ଅଗ୍ରୀ ଆଉ ବଡ଼ବୋହୂ ଦୁହେଁ କରନ୍ତି— କୁଟାଖଣ୍ଡ ଦିଖଣ୍ଡ କରିବାକୁ ନାହିଁ । ମା ଇମିତି ଢଙ୍ଗ ଶିଖେଇଛି ଯେ, ଖାଇବା କଂସା ଖଣ୍ଡ ଏସଞ୍ଜାକୁ ସେ ସଞ୍ଜ ପଡ଼ିଥିବ । ଆଉ କଣ କହିଲୁ ରେ ? ଶାଶୁ ବଡ଼ ଯା’ ତା ଗୋଡ଼ରେ ହାତ ବୁଲେଇବେ ? ବଡ଼ ସୁଖୀ ସାନ୍ତାଣୀ ଝିଅ—ନା ! ବାପ, ତା ମା ପାଖରେ ପାଞ୍ଚଟା ପୋଇଲୀ ରଖି ଦେଇଥିଲା···ନା ! ତା ମା ଦିନ ରାତି ସୁପାତି ଶେଯରେ ପଡ଼ିଥାଏ –ନା !” ନାଜରାଣୀ ଖିବ୍ ଡାକପାଡ଼ ବାହୁନି ବାହୁନି କହିଲେ, “ଶୁଣ--ଶୁଣ-- ତୁମ ଆଗରେ- ପାଞ୍ଚ ଲୋକ ଆଗରେ ମେ ମା ବାପଙ୍କୁ ଗାଳି ଦେଉଛନ୍ତି--ଶୁଣ-- ଶୁଣ । ମୁଁ କ ବୋଲିଣା କଲି ? ଆଚ୍ଛା ମୋତେ ଗୁଞ୍ଜୁଣି ମାର--ମାରିପକାଅ-- ଉଁ—ଉଁ –ଉଁ- ମୁଁ ଏ ଜୀବନ ରଖିବି ନାହିଁ--ଉଁ--ଉଁ- ଉଁ--ଆଜି ରାତିରେ ବେକରେ ଦଉଡ଼ି ଲଗାଇବି--ଉଁ ଉଁ--ଉଁ । ତୁମେ ମୋତେ ଗୁଡ଼ିଏ କଟକ ଗଲେ ମୁଁ ବେକରେ ଦଉଡ଼ି ଦେବି--ଉଁ--ଉଁ – ଉଁ !” ନଟବର କହିଲେ, “ମଲା, ସତ ତ--ମୋ ଆଗରେ ତ ବୋହୂ- ଟାକୁ ଏତେ ଗାଳିଗୁଲଜ ପଛରେ କଣ ନ କରୁଥିବେ ? ମୋ ଲକ୍ଷ୍ମୀକି ଗାଳିଦେବୁ କି ଏ ଲେ ତୁ ? ପର ଘରେ ପଶିଛୁ, ତାର ଫେର ଏଡ଼େ ବଡ଼ପ !” ଧାଉମାର ମୁଣ୍ଡ ବୁଲାଇଲାଣି, ଗୁମ୍ ମାରି ବସିଗଲେ । ଅପା ମେନକା ଦେଈ ଧାଇଁ ଆସି ହାତ ଧରି—“ଆ ସରସ୍ୱତି, ଆ— ତା’ର ଯା ଇଚ୍ଛା କରୁ, ଆମର ସେଥିରେ କଣ ଅଛି ?” ବାନା ଆଉ ବଡ଼ ବୋହୂ କାନ୍ଦ ପକାଇଲେ । ଦାସଙ୍କ ଘରେ ଗୋଳ ଶୁଣି ଗାଁରୁ କେତେ ଜଣ ମାଇକିନିଆ ଧାଇଁ ଆସି ଲୁଙ୍ଗ୍ ପୁଙ୍ଗ୍ ହୋଇ ଶୁଣୁଥିଲେ ।

ତହିଁ ଆରଦିନ ସକାଳ ରାଜ୍ଜୀ ଗାଧୁଆବେଳେ ଗାଁ ମଝି ପୋଖରୀ ତୁଠରେ ଗୁମୁକରଣ ଘର ବଡ଼ବୋହୂ, ମହାମା, ଚମ୍ପୀଅପା, ଶାଧୁଆ, ଗେହ୍ଲେଇ, ଚେମୀ ନଣନ୍ଦ, କଉଶୁଲ୍ୟା, ପାଶ୍ୱ—ପାଞ୍ଚ ଘରର ସାତ ବୋହୂ ଝିଅ ଆଉ ଆଉ ଗାଁ ମାଇପେ ରୁଣ୍ଡ ହୋଇ କଥାରେ ଲଗିଛନ୍ତି । ଗୁମୁକରଣ ଘର ବଡ଼ ବୋହୂ···କଣ କହିବ, ଚମ୍ପୀ ଅପା’, ଏଣିକି ଆଉ ମାନ ମହତ ରହିବ ନାହିଁ— କଳିକାଳ ମାଡ଼ି ଆସିଲାଣି । ମୁଁ ଦି’ଟାର ମା ହେବାଯାଏ ଶାଶୁ ଆଗରେ ପାଟି ଫିଟାଇ ନାହିଁ—ଚୂ -ଚୂ କରୁଥାଏଁ । ଘରେ ଗୃହଲ ନ ଥିଲେ ଖାଲି ପାଚଆଟା ଧରି ଧାନ କୁଟିଲି ପରି ଶାଶୁ ଆଗରେ ଗୋଡ଼ କଚୁଡ଼େଁ । ଲୁଗା ଧୋବା ଘରକୁ ଯିବ ତ, ଲୁଗାଟା ଧରି ଧୋବା ଲୁଗା କାଚିଲା ପରି ଇସ୍ ଇସ୍ କରି ଭୂଇଁରେ କଚୁଡ଼େ । ରାତି ଅଧରେ ସମସ୍ତେ ସବୁଆଡ଼େ ଶୋଇବେ, ବଲେଇଟି ବି ଶୋଇଲାଣି, ଧୀରେ ଧୀରେ ଗୋଡ଼ ପକାଇ ତାଙ୍କ ଶୋଇଲାଘର ବିଛଣାକୁ ଯାଏଁ । ଏ କଣ ନା, ଶାଶୁ ଯା’ ସାଙ୍ଗରେ କଥା ତ କଥା – କଲି ? ଦିନ ଆଲୁଅଟାରେ ଯୋଡ଼ାକଯାକ ଘରେ ବସି କଥାଭାଷା, କବାଟ ମେଲି ଅଛି ତ ଥାଉ ।

ଚମ୍ପୀଅପା—କଳା ପରି କଳି—ଗାଁ ଗୋଟାକ ଉଚ୍ଛୁଳା ପଡ଼ୁଥିବ । ସରଲା—ସରଳା, କରଣକୁଳ ମହତ ବୁଡ଼ିଲା । ସେ ଯେ ପଟ୍ଟନାୟକ ଘରେ କଥାଟାଏ ହୋଇଥିଲା, ଆଜଯାଏ ଲୋକେ କହନ୍ତି—ସ୍ତ୍ରୀ ଲେଖାରେ ସେଟା କ’ଣ ?

ମହାମା—କ’ଣ ଚମ୍ପୀଅପା, କଣ ପଟ୍ଟନାୟକ ଘର କଥାଟା କ’ଣ ?

ଚମ୍ପୀଅପା—କଥା କଣ କି, ପଟ୍ଟନାୟକ ଘର ନୂଆବୋହୂ ଦିନେ ଶୋଇଥିଲା, ଶାଶୁ ଭାତ ଖାଇବାକୁ

ଡାକଲେ । ବୋହୂଟା କଣ କଲା - ନା ନଦଅଲସଟା ଚ ଲଗିଥିଲା—ଶାଶୁ ହାତଟା ଛୁଆଁଡ଼ ଦେଇ କହିଲା—'ନା, ମୁଁ ଭାତ ଖାଇବ ନାହିଁ' । ଆଉ ଯାଏ କାହିଁ—ଶାଶୁ ତ କଥା କଲେଣି ଖଣ୍ଡେ ! ଘରର ଆଉ ଆଉ ବୋହୂ, ଝିଅ ସବୁ ଉଜୁଡ଼ ପଡଲେ । ବୋହୂଟା ଶୋଇବ ଖାଇବ କଣ, କବାଟକୋଣଟାରେ ବସି ଭୋ, ଭୋ ଡକା ପାଡ଼ୁଛି । ପେଡ଼ଶାଶୁ ଧାଇଁ ଅଇଲେ —ଶାଶୁକୁ ଖୁବ୍ ଦ'ପଦ ଝାଡ଼ଦେଲେ - ମଲା—ମଲା —ଆପଣା କଥା ଭୁଲି ଗଲୁଣି ପରା ! ପିଲାଟା ନଦ ବାଉଳାରେ କଣ କହି ପକାଇଲା, ସେଇଟାକୁ କାନଗଣ୍ଠିଲା କରି ବସିଛୁ—ମଲା— ମଲା—ଆପଣା କଥାଟା ଭୁଲି ଗଲୁଣି ପରା ?

"ଡାହାଣୀ ହୋଇ ଗୁଣିଆ ହେଲେ
ଗାରଡ଼ମନ୍ତ୍ରର ଡାକେ,
ଚୋରଟା ଯେବେ ସୁଝିଆ ହେଲା
ଡାକ ବୁଲେ ଗାଁସାକେ ।"

ଶାଶୁ ତା କଥା ଶୁଣି ସନ୍ତୋଷ—ପଳାଇ ଗଲେ । ଗେହ୍ଲେଇ କହିଲା—ମଲା ଯା—

"କରଣ ବୋହୂ ଢମ,
ପିଠି ଗୋଟାଯାକ ଉଦୁଆ ପଡ଼ୁଛି ଓଢ଼ଣା ହାତେ ଲମ୍ବ ।"

କଉଶୁଲ୍ୟା- ହଁ ଚମ୍ପୀଅପା, ତା ଶାଶୁ କ ଦୋଷ କରିଥିଲା ?

ଚମ୍ପୀ ଅପା—କଥା କଣ କି, ଭୋକ ଲଗିଲେ ବୋହୂମାନେ ଶାଶୁ ଆଗରେ ପାଟି ପାକୁ ପାକୁ କରିବେ —ହେଲେ ଓଢ଼ଣାଟାଏ ଟଙ୍କା ଥିବ । ସେହି ଯେ ବୋହୂ ଦିନେ ଶାଶୁ ଆଗରେ ପାଟି ପାକୁ ପାକୁ କରିଥିଲା, ନାକଟି ଦିଶୁଥାଏ । ସେଇ କଥାଟା ବଡ଼ ଯା' ଦାଇକା ଦେଲେ । ଆଉ ଆମର ଯେ ନୂଆ ରାଜରାଣୀ—ଶାଶୁ ଯେବେ ପଖାଳ ପରଷିବାକୁ ମନାଟେ ମଠ କଲେ, ଶାଶୁକୁ ଝାଡ଼ ପକାଇବେ ନା !

ଗୁମୁକରଣବୋହୂ, ଜଭଟା କାମୁଡ଼ ପକାଇ କହିଲେ, ଆଁ—କଣ କହୁଛୁ ! ଏଇଟା କରଣ କୁଳରେ ବଢ଼ିଥିଲା ନା କେଳା କୁଳରେ ? ଆମ-ଘରୁ ଭଲ ମନ୍ଦ କିଛି ଆସିଲେ ଲୁଚେଇ ବାଡ଼ଆଡ଼େ ଖାଇବ ପଛକେ, କଣ ଶାଶୁ ଆଗରେ ଖାଇବ ? ଶାଶୁ ଯାଚଲେ ମୁଣ୍ଡ ହଲାଉଥାଏ । ଏଇଟା ହେଲା ଜାଣୁ, କରଣ କୁଳର ମହତ ।

ଗେହ୍ଲେଇ ଅଣ୍ଟାଏ ପାଣିରେ ବସି ସବୁ ଶୁଣୁଥାଏ, 'ଦାନ୍ତ ଘସୁଥାଏ । ଜଭଟା ଛେଲ କୁଚୁକୁଆ କରି ପକାଇ କହିଲା—

"ବଡ଼ଘର ଝିଅ କିଛି ଖାଏ ନାହିଁ
ବୋହୂଟି ମୋ ଚନ୍ଦ୍ରମୁଖୀ,
ଛନଓଳ ଛନକଂସା ପଖାଳରେ ମୁହଁଟି ଯାଉଛି ଶୁଖି ।"

ପାଣ୍ଡି—ଗୁଣ ତ ଶୁଣୁଛ, ଆଉ ରୂପଟା ? ଗାରମା କେତେ ? ଆ ବଡ଼ପଣିଆ ଦେଖାଇବା ଲାଗି ଦୁଆରକୁ କେହି ଗଲା ତ, ଚଞ୍ଚଳ ପାଟ ଶାଢ଼ୀ ଖଣ୍ଡେ ପିନ୍ଧି ପକାନ୍ତ ।

ଗେହ୍ଲେଇ—

"ପେଟଟି ଜଣିଛୁ ଧାନଉଁଷା ହାଣ୍ଡି,
ପାଟଶାଢ଼ୀ ଫରଫର,
ଦେହରୁ କଜଳ କାଳି ପୋଛୁପଡ଼େ
ବାସଚେଲ ଜରଜର ।"

କଉଶୁଲ୍ୟା କହିଲା—ଆହୁରି ଦେଖିଛ ନା ରୂପା ପାହୁଡ଼ ଯିମିତ ମୁଲକରେ କେହି ଦେଖି ନାହିଁ—ପାହୁଡ଼ ଲଗାଇ ଗୃଲି ଠଣକଟା କମିତ ?

ଗେଣ୍ଡେଇ—

"ଝମର ଝମର ଝମକଝୁଣ୍ଟିଆ
କେଡେ ନବରଙ୍ଗେ ଗୁଳୁ,
ଉଇଦୁଙ୍କା ହୁଁଣି ଲସରପସର
ଧାଇଁ ଯାଉଥାଏ ଭଲୁ।"

କାଉଁଶୁଳୀ ହସି ହସି କହିଲା ନାକବସଣିଟା ଦେଖିନ୍ତୁ ନା?

"ପେଗୁ ନାକଟାରେ ମୁକୁତାବସଣି
ଟିଆନାକ ବସି କାନ୍ଦେ,
ଲେଟି ଚଢ଼ୁଥାଏ ଗୁମର କେଶର
ଛୁଣ୍ଡ୍ରାବଳୀ ଜୁଡ଼ା ବାନ୍ଧେ।"

ପାଗି—ଆଲେ ଗେଣ୍ଡେଇ ନାନି, ସେ ବୋହୂଟା ସବୁବେଳେ ଡେବରି ହାତଟା ଯୋଡ଼ାଇଥାଏ କାହିଁକି?

ଗେଣ୍ଡେଇ ଭାରି ଗୋଟାଏ ହସି କହିଲା—ଅଲୋ ପାଗି! ଶୁଣି ନାହୁଁ? ଧାଇଁ ଆଗରେ ପୁଣି ପେଟଛପା। ମୁଁ କାଲି ସଞ୍ଜବେଳେ ତ ଦାସଙ୍କ ଦୁଆରକୁ ଯାଇଥିଲି। ଯାଇଥିଲି ତ ଯାଇଥିଲି—ମନରେ କଲି, ଆସିଛି ତ ବୋହୂଟା ସାଙ୍ଗରେ ଦି'ଟା କଥା କହି ଯାଏଁ। ପାଖରେ ତ ଗୁମ୍ ମାରି ବସିଗଲି। ଆଲୋ ଭଉଣୀ, କଣ କହିବି, କଥା ତ ଥାଉ, ମୁହଁଟା ଇମିତି ଭୁରୁକୁଣ୍ଡା କରି ବସିଲା, ଯିମିତି କେଡ଼େ ବଡ଼! ମୁଁ ମନରେ ପାଞ୍ଚିଲି, ହଉ ନ କହିଲା ନାହିଁ, ଆସି ଯାଉଛି, ଟିକିଏ ପାଖରେ ବସିଯାଏଁ। ଦେଖିଲି ଯେ ସବୁବେଳେ ଡେବରି ହାତଟା ଢଙ୍କା। ମନରେ କଲି—ଭଲ ରେ ଭଲ—ଏ କଣ—ହାତଟା ଢାଙ୍କିଛି କାହିଁକି? ଆଚ୍ଛା ଢାଙ୍କୁ। ଗୋଟାଏ ବୁଦ୍ଧି କାଢ଼ିଲି—ଆଉ ଟିକିଏ ପାଖେଇ ଗଲି, ଧଡ଼କିନା ଟିଆଡୋଇ—ବୋହୂ ସାନ୍ତାଣି ବସ୍ତୁଟା—ବସ୍ତୁଟା—କହି ଝାଡ଼ ପକାଇଲା ପରି ଢଙ୍କାକାନରେ ଗୁପୁଡ଼ାଏ ମାରିଦେଲି, ହାତରୁ ତ ଲୁଗା ବାହାରି ଗଲା। ଟିକିଏ କଣେଇ ଅନାଇଦେଇ ବାହାରକୁ ଧାଇଁଗଲି, ବସ୍ତୁ ମାରିଲା ପରି ଭୂଇଁରେ ଯୋଡ଼ାଏ ଗୋଇଠା ମାଇଲି। ବାନାବା'ବୁ ବାହାରେ ଥିଲେ, ସେ ଆସି ପାରିଲେ ନାହିଁ। ଆଲୋ ପାଗି! କଣ କହିବି—

"ଥୋବଡ଼ା ନାକରେ ନାଟେଣୀ ନସୁର
ଯୋଡ଼ାଏ ବେହେଡ଼ା ଦାନ୍ତ
ଆଖି ଦୁଇଗୋଟି ମିଟିରି ମିଟିରି
କେମିତି ଡେବରି ହାତ।"

ପଟ୍ଟନାୟକ ବୋହୂ—ଦାନ୍ତ ବୋଲି ନାହିଁ, ଗାଲ ବୋଲି ନାହିଁ, ବୁଢ଼ୀ ପାନ ଛେଚା ପାଟି ବୁଲୁଥିବ! କରଣ ଘରେ ଏଇଟା କଣ ଲୋ?

ଗେଣ୍ଡେଇ—

"ଛେଚା ପାଟି ପରି ସବୁବେଳେ ବୁଲେ
ଗାଲରେ ଦେଖିଲି ପାନ,
ପଚର ପଚରେ ପିକ ପଡ଼ୁଥାଏ
ଦାନ୍ତଗୁଡ଼ା ବଡ଼ ସାନ।"

ଆଉ ଗୋଟାଏ ଢଗ ଶୁଣିବୁ—

"ବସନ୍ତବାହାର ମୁଖଚନ୍ଦ୍ର ତାର ଥାଳପଟ ପରି ଚକା,
ପାଟି ମେଲି କଥା ଗୁଡ଼ା ବୋଲବାର
ଭଲୁଆ ପାଉଛୁ ଡକା।"

ଖିମାମା ଗୁରିଆଉକୁ ଅନାଇ ହରିମା କାନରେ କ'ଣ ଫୁସୁର ଫୁସୁର କଥା କହିଲା।

ଗେଣ୍ଡେଇ—

"ଭୁନ ଭୁନ କମ୍ପା କାନ ଫୁସାଫୁସି ଗାଁରେ ବସିଛି ହାଟ,
ପୋଝଖି ଗୋଟାକ ଦାନ୍ତ ବଲବଲ
ଗୋବର ଗଡ଼ଆ ଘାଟ।"

ଶଙ୍କର ଜେନା ନାଭୁଣୀଟିକ କାଖେଇ ଦାନ୍ତକାଠିଖଣ୍ଡ ଚୋବାଇ ଚୋବାଇ ଘାଟରେ ପହଞ୍ଚିଗଲା । ବୁଢ଼ୀକୁ ଗାଁ ମାଇକିନିଆଁ ମାନେ ମାନନା କରନ୍ତି । ସମସ୍ତେ ଚୁପ ହୋଇଗଲେ । ବୁଢ଼ୀ ପଚାରିଲା, "କଣ ବୋଲୁ ଥିଲେ – କଣ କୁହାକୁହି ହେଉଥିଲ ?"

ଟାଣ ବାଆଁରେ ଦେଇ କହିଲା – ଏ – ଆଉ ଗୋଟିଏ ଗାଁର – ଆଉ ଗୋଟାଏ ବୋହୂକଥା କହୁଚୁ ।

ଶଙ୍କର ଜେନା – ନା ଲୋ ନା – ସାନ୍ତଘର ଶୁଣିଲେ କ'ଣ କହିବେ ?

ଗେଟିହୁଇ –

"ସାଆନ୍ତାଣୀ ପର ଧାଇଁ ଆସୁଚନ୍ତି
କରନା କରନା ପାଟି,
ଖପା ହୋଇ ପର ଖଟଣକାଡରେ
ନାକ ପକାଇବେ କାଟି ।"

ସମସ୍ତେ ହସି ହସି ଆପଣା ଆପଣା ଘରକୁ ଚାଲି ଗଲେ ।

---

-୧୭-

## ଚନ୍ଦ୍ରକଳା

ନାଜରାଣୀ କଟକ ଆସିବା ଆଗରୁ ବସାରେ ଥିଲେ ଗୋଟିଏ ବୋଡେଇଆ ପିଲା, ଆଉ ଗୋଟାଏ ଗୃହିଣୀ — ନାମ ଚନ୍ଦ୍ରକଳା । ଜାଣିଲା ଶୁଣିଲା ଲୋକେ ତାକୁ ଗୃହିଣୀ ବୋଲି ଜାଣନ୍ତି । ହେଲେ, ନୂଆଲୋକ କେହି ଆସିଲେ ସାନ୍ତାଣୀ ବୋଲି ଡାକି ପକାଏ । ସତ କଥା, ଚନ୍ଦ୍ରକଳାର ଯେପରି ରୂପ—ଲୁଗାପଟା, ଗହଣା ଗଣ୍ଠିର ଢଙ୍ଗଢାଙ୍ଗ —ଚାଲିଚଳନର ଛଟକ— କଥାଭାଷାର ଧମକ, କିଏ କହିବ ଗୃହିଣୀ ? ନାଜର ନଟବର ଦାସେ ବନ୍ଧୁବାନ୍ଧବମାନଙ୍କୁ ବୁଝାଇ ଦେଇଛନ୍ତି — ପାଇଟିପଖ କରିବାଲାଗି ଏ ମାଇକିନିଆଟି ବସାରେ ଥାଏ । ତାଙ୍କର କଥା ଶୁଣି ଲେଖକ ବୁଝିଛି ଏଟି ଗୃହିଣୀ । ଯେଉଁ ସମୟରେ କଥା ହେଉଛି, ବୋଇଲେ ଚନ୍ଦ୍ରକଳା ଅମଲଦାର ସମୟରେ ଏ କଥାରେ ଗୋଟାଏ ଧରପକଡ଼ ନ ଥିଲା – ଡାକଫୁକାରରେ କରଣ ଖଣ୍ଡାଇତ ମହାନାୟକମାନଙ୍କ ଘରେ ଅନେକ ଗୃହିଣୀ ଦାନାପାଣି ପାଉଥିଲେ । ଏଣିକି ପାଠୁଆମାନଙ୍କ ଭିତରେ ଚରିତ୍ର ବୋଲି ଗୋଟିଏ ବଧି ବାହାରିବା ଦିନରୁ ଢେର ଢେର ଗୃହିଣୀଙ୍କର ଭଲ ଭଲ ଲୋକଙ୍କ ଘରୁ ଅନ୍ନରେ ଧୂଳି ପଡ଼ିଲାଣି । ସେ କଥା ଯାଉ— ଖୋଦ ନାଜରଙ୍କ ମୁହଁରୁ ନ ଶୁଣିଥିଲେ ଲେଖକର ଚନ୍ଦ୍ରକଳାକୁ ଗୃହିଣୀ ବୋଲି ଡାକିବାକୁ ସାହସ ଅଣ୍ଟନ୍ତା ନାହିଁ । ହେଉ ପଛେ ଗୃହିଣୀ, ହେଲେ ରୂପଟା ସୁନ୍ଦର । ହେଲେ ଚମ୍ପାଫୁଲ ପରି ଚହଟଗୋରି ନୁହେ, ଦେହର ରଙ୍ଗଟା ଶ୍ୟାମଳ, ମୁଖଟିର ଗଢ଼ଣ ସୁନ୍ଦର, ତାହା ଉପରେ ପୁଣି ଓଳକେ ଛ ଥର ଘଷା ମଜାରେ ସୁନ୍ଦରପଣ ( ଯାହାକୁ ସାଧୁଭାଷାରେ ଲାବଣ୍ୟ କହନ୍ତି ) ଫୁଟି ବସେ । ବଡ଼ ଆର୍ଶିଟାଏ ଧରି ଭଲକରି ମାଙ୍ଗଟାଏ ପାରିଦେଲା ଉତ୍ତାରେ ଚଞ୍ଚଳ ଢଳ ଢଳ କଜ୍ୱଳାକ୍ଷ ନେତ୍ରରେ କଣେଇ କଣେଇ ଚାହିଁଲେ ତାକୁ ଥରେ ଅନାଇ ଦେବାକୁ ଢେର ଢେର ଲୋକ ଅଛନ୍ତି । ଆଉ ଗୋଟିଏ କଥା ଉପନ୍ୟାସର ନାୟିକାମାନଙ୍କ ରୂପବର୍ଣ୍ଣନ ବିଷୟରେ ଗ୍ରନ୍ଥକାରମାନେ ଯେ ପ୍ରକାର ପଦ୍ଧତିର ଅନୁସରଣ କରିଥାନ୍ତି, ଲେଖକର ଦୁର୍ଭାଗ୍ୟ ଯେ ।

"ରୂପଯୌବନସମ୍ପନ୍ନା ଅଜ୍ଞାତକୁଳସମ୍ଭବା
ଅପାଙ୍ଗାବଲୋକନେତ୍ରାଲୋକଚିତ୍ତାନୁରଞ୍ଜନୀ ।"

ସନାତନ ପଦ୍ଧତି ଅନୁସାରେ ଉଦ୍ଭିନ୍ନ ଯୁବତୀମାନଙ୍କ ରୂପବର୍ଣ୍ଣନାରେ ସେ ଅକ୍ଷମ । ହେଲେ କଣ ହେଲା, ଏହିପରି ହିର୍ଦ୍ଦୟ ପାଠକ ବାହାରିବାର ଖୁବ୍ ସମ୍ଭବ ଯେ

ଲେଖକ ବିଚାରି ଯେ କିପରି ବିଷମ ସଙ୍କଟରେ ପଡ଼ିଛି, ତାହାଁ ପ୍ରତି ଟିକିଏ ହେଲେ ସମବେଦନା ପ୍ରକାଶ ନ କରି କହି ବସିବେ, ଏଇଟା ମୂର୍ଖ—ଉପନ୍ୟାସ ମଧ୍ୟଗତା ନାୟିକାର ରୂପ ବର୍ଣ୍ଣନା କରି ଜାଣେ ନାହିଁ । କଥାଟା କଣ ଜାଣନ୍ତି, ପ୍ରକୃତି ଅନୁସାରେ ପ୍ରତ୍ୟେକ ଲୋକ ଆପଣାର ଜ୍ଞାନବନ୍ତି ପ୍ରତି ଆସ୍ଥାବାନ୍, ଅର୍ଥାତ୍ ଆପଣାକୁ ଜ୍ଞାନବାନ୍ ବୋଲି ସମସ୍ତେ ବିଶ୍ୱାସ କରନ୍ତି । ଅନ୍ୟ ପ୍ରକାର ଗାଳି ଧଇ ହୁଏ - ହେଲେ 'ମୂର୍ଖ' ଏଇ ଗାଳିଟା ସମସ୍ତଙ୍କ ମନକୁ ଯେମନ୍ତେ ଟିକିଏ ଚେଁ କରି ଲଗିଯାଏ । ଏ ସମସ୍ତ କଥା ପ୍ରତି ନଜର ରଖି ଲେଖକ ସ୍ଥିର କଲା—ସନାତନ ରୀତି ଆଉ ଆତ୍ମରକ୍ଷା ନିମନ୍ତେ ଅତି ସଂକ୍ଷେପରେ ଆଉ ସାଧୁଭାଷାରେ ଶଶିକଳାର ରୂପ ଗୁଣ ବର୍ଣ୍ଣନା କରି ଦେଲେ କାହାରି ପାଟି ଫିଟାଇବାର ବାଟ ରହିବ ନାହିଁ । ହେ ପାଠକବର୍ଗ, ଅୟି ପାଠିକା ମହାଶୟା ! ଆପଣମାନେ ଅବଧାନ କରନ୍ତୁ, ଶଶିକଳାର ରୂପ ବର୍ଣ୍ଣନା କରାଯିବ । ଅର୍ଥାତ୍ ବୋଇଲି କି—

"ଅତସୀକୁସୁମଶ୍ୟାମା ଗନ୍ଧତୈଳାନୁରଞ୍ଜିତା
ବସ୍ତ୍ରାଳଙ୍କାରସଂଯୁକ୍ତା ବିପଣି ବର୍ତ୍ମବର୍ତ୍ତିନୀ ।"

---

-୧୭-

## ନାଜରଙ୍କ ଦାମ୍ପତ୍ୟ ପ୍ରେମ

ନାଜରଦମ୍ପତି କଟକରେ ପରମ ସୁଖରେ ବାସ କରୁଛନ୍ତି । ଉଭୟଙ୍କ ମଧ୍ୟରେ ବିଶେଷ ପ୍ରଣୟ ଭୋଗ୍ୟ ପଦାର୍ଥର ଅଭାବ ନାହିଁ । ସ୍ୱାଧୀନ ଭାବରେ ସୁଖ ସମ୍ଭୋଗ କରିବାର ଅନ୍ତରାୟ ହିନ୍ଦୁ ଗୃହରେ ଗୁରୁଜନ ଶାସନ - ତାହା ତ ଦୂରବର୍ତ୍ତୀ । ଏମାନଙ୍କର ପରସ୍ପର ସମ୍ପ୍ରୀତିକୁ ଇଚ୍ଛା କଲେ ଦାମ୍ପତ୍ୟ ପ୍ରଣୟ ବୋଲି ପାରି । କେବଳ ସ୍ତ୍ରୀ ପୁରୁଷ କାହିଁକି, ଦୁଇ ଜଣ ପୁରୁଷ ବା ସ୍ତ୍ରୀଯୁଗଳ ମଧ୍ୟରେ ଅଚ୍ଛେଦ୍ୟ ପ୍ରୀତି ଥିବାର ଦେଖାଯାଏ । ଆମ୍ଭମାନଙ୍କର ଶତ୍ରୁ ବା ମିତ୍ରରୂପେ ଜଗତରେ କେହି ଜନ୍ମଗ୍ରହଣ କରି ନାହାନ୍ତି । ପ୍ରୟୋଜନ ସାଧନ ମାର୍ଗରେ ଯେ ସହାୟ ସେହି ବନ୍ଧୁ, ଆଉ ବିଘ୍ନକାରୀ ବୈରୀ ନାମରେ ଅଭିହିତ । ନିତାନ୍ତ ଅଜ୍ଞାନ କଦର୍ଯ୍ୟ ପରିବାର ବିନା ସଚରାଚର ପରିବାର ମଧ୍ୟରେ ବିଶେଷ ପ୍ରଣୟ ଥିବାର ଦୃଷ୍ଟି ଗୋଚର ହୁଏ । ସେଥିର କାରଣ, ସଂସାରୀ ମାନବସମାଜରେ ଏପରି ଅନେକ ଗୁଡ଼ିଏ ପଦାର୍ଥର ପ୍ରୟୋଜନ, ଯାହାର ସାଧନ ସ୍ତ୍ରୀ ପୁରୁଷର ସହାୟତା ବିନା ଅନ୍ୟ ଯୋଗେ ହୋଇ ନ ପାରେ । ପୁଣି ସେହି ସମସ୍ତ ପ୍ରୟୋଜନ ଅପରିହାର୍ଯ୍ୟ । ଏହାହିଁ ପ୍ରୟୋଜନସାଧିକା ପ୍ରୀତିର କାରଣ ଅଟେ । ଲେଖକ ବିବିଧ ପରିବାରଗତ ବିବିଧପ୍ରକାର ସ୍ତ୍ରୀ ପୁରୁଷ ମଧ୍ୟସ୍ଥ ପ୍ରଣୟର ଅବସ୍ଥା ଭୂୟୋଦର୍ଶନ ଯୋଗେ ଅନୁଭବ କରି ଏହି କଥା ଲେଖିବାକୁ ସାହସ କଲା ।

ମାନବ ମାତ୍ରକେ ସୁଖାଭିଳାଷୀ—ପୁଣି ସେହି ସୁଖପ୍ରଦ ବସ୍ତୁ ରୁଚି, ଜ୍ଞାନ ଏବଂ ଇଚ୍ଛାର ଭେଦରେ ଧନ—ଧର୍ମ ବିଦ୍ୟା ଯଶ ସୁନାମ ପ୍ରଭୃତି ପ୍ରଭୃତି ବିବିଧ ପ୍ରକାର । ଏ ଭଳି ଲୋକଦଳର ମଧ୍ୟ ଅଭାବ ନାହିଁ, ଯେଉଁମାନେ ମାଦକ ସେବନ ବା କଦର୍ଯ୍ୟ ଇନ୍ଦ୍ରିୟ ବିଳାସକୁ ସୁଖଲାଭର ପରାକାଷ୍ଠା ବୋଲି ଜ୍ଞାନ କରିଥାନ୍ତି । ସେହି ସୁଖପ୍ରଦ ପଦାର୍ଥଲାଭର ସହକାରୀ ଲୋକ ହିଁ ବନ୍ଧୁ ।

ନଟବର ବାବୁଙ୍କର ବିଶ୍ୱାସ, ଅର୍ଥ ଉପାର୍ଜନ ହିଁ ମାନବ ଜୀବନର ଏକମାତ୍ର ଲକ୍ଷ୍ୟ । ଅର୍ଥ ଯୋଗେ ଜଗତର ପ୍ରୟୋଜନ ସାଧିତ ହୁଏ । ଅର୍ଥହିଁ ସୁଖଲାଭର ଏକମାତ୍ର ଉପାୟ । ଶ୍ରୀନାୟକଙ୍କ ଗଣନା ପ୍ରତି ତାଙ୍କର ଧ୍ରୁବ ବିଶ୍ୱାସ । ପ୍ରତ୍ୟକ୍ଷବସ୍ତୁ ପ୍ରତି କାହାର ବା ଅପ୍ରତ୍ୟୟ ଜାତ ହେବ ? ବୋହୂଟି ସୁଲକ୍ଷଣା—ତାହାର ପହରା ପଡ଼ିବା ମାତ୍ରକେ ଅର୍ଥାଗମ, ଉଚ୍ଚପଦ, ସୁଖ

ସୌଭାଗ୍ୟ ଅବିଶ୍ରାନ୍ତ ରୂପେ ଲାଭ ହେଉଛି । ଏଥିକି ସ୍ତ୍ରୀ ପ୍ରତି ନାଜର ବାବୁଙ୍କର ବିଶେଷ ସମ୍ପ୍ରୀତି । ପକ୍ଷାନ୍ତରେ ନାଜରାଣୀ ନିତାନ୍ତ ଦରିଦ୍ରାର କନ୍ୟା—ସୁଖ ସମ୍ଭୋଗର ନିତାନ୍ତ ଅପରିଚିତା—ଭଗ୍ନକୁଟୀର-ବାସିନୀ । ସହସା ଆଶାତୀତ ସୌଭାଗ୍ୟ ଆଧିପତ୍ୟ-ଲାଭରେ ଆତ୍ମବିସ୍ମୃତା ହୋଇ ତାଙ୍କ ମସ୍ତିଷ୍କ ବିଚଳିତ ହୋଇଗଲାଣି । ମନରେ କଲେ, କାହାଣୀରେ ଯେଉଁ ରାଜା ରାଣୀ କଥା ଶୁଣିଥିଲେ, ବର୍ତ୍ତମାନ ସେ ଆପେ ସେହି ରାଣୀ ହୋଇଗଲେଣି । ଏହି ଯେ ରାଣୀଭିଲାଭ—କେବଳ ସ୍ୱାମୀ ସକାଶେ । ସୁତରାଂ ସ୍ୱାମୀଙ୍କୁ ଭଲ ପାଇବାକୁ ହେବ । ଏହା କି ପବିତ୍ର ଦାମ୍ପତ୍ୟ ପ୍ରଣୟ ? ସ୍ତ୍ରୀ ପୁରୁଷ ମଧ୍ୟରେ ଯେଉଁ ପ୍ରଣୟ ପ୍ରୟୋଜନାପେକ୍ଷିତ, ଯେଉଁ ପ୍ରଣୟର ଅନ୍ତରାଳରେ କଦର୍ଯ୍ୟ ବୃତ୍ତିମାନ ପ୍ରଚ୍ଛନ୍ନ, ଯେଉଁ ପ୍ରଣୟ କୃତ୍ରିମ, ପ୍ରକୃତ ବିଶ୍ୱାସ ଯାହାର ଭିତ୍ତିଭୂମି ନୁହେ, ତାହା ପ୍ରକୃତ ପବିତ୍ର ଦାମ୍ପତ୍ୟ ପ୍ରେମ ନାମରେ ଅଭିହିତ ହୋଇ ନ ପାରେ ।

———

-୧୮-

## ପ୍ରତିଯୋଗିନୀ—ପ୍ରତିଯୋଗିତା

"ପ୍ରାୟେଣ ସାମଗ୍ର୍ୟବିଧୌ ଗୁଣାନାଂ
ପରାଙ୍ମୁଖୀ ବିଶ୍ୱସୃଜଃ ପ୍ରବୃତ୍ତିଃ ।" (କୁମାର)

ମାନବଜାତି ପୃଥିବୀରେ ଅନାବିଲ ସୁଖ-ସୌଭାଗ୍ୟ ସମ୍ଭୋଗରେ ସମର୍ଥ ହେଉନ୍ତୁ, ଏଇଟା ବୋଧ କରୁଁ ବିଧି ବିଧାନର ବିରୋଧୀ ବିଷୟ ଅଟେ । ଆପାତଦୃଷ୍ଟିରେ ତୁମ୍ଭେ ଯାହାକୁ ସମ୍ପୂର୍ଣ୍ଣ ସୁଖୀ ବୋଲି ଜ୍ଞାନ କର, ଅନୁସନ୍ଧାନ କରି ଜାଣିବ, ତାହାର ସୁଖ-ସୌଭାଗ୍ୟାକାଶ ନିରବଚ୍ଛିନ୍ନ ମଳିନତା ବିହୀନ ନୁହେ—କୌଣସି ନିଭୃତ କୋଣରେ ହେଲେ ଖଣ୍ଡିଏ ଯାତନାଜଳଦ ଭାସମାନ ହେଉଥାଏ । ଆମ୍ଭମାନଙ୍କର ନାଜରଗୃହିଣୀ ସମ୍ପୂର୍ଣ୍ଣରୂପେ ସୁଖିନୀ । ସହସା ଗୋଟିଏ ମନଃକଷ୍ଟର କାରଣ ଉପସ୍ଥିତ । ବସାରେ ଅପ୍ରତ୍ୟାଶିତରୂପେ ଚମ୍ପକଳାର ପୁନଃ ପୁନଃ ଆବିର୍ଭାବ ଦେଖି ତାଙ୍କ ମନରେ କେମନ୍ତ ଗୋଟାଏ ଈର୍ଷାବିଜଡ଼ିତ କଷ୍ଟର ସ୍ପୃହା ପଡ଼ିଲାଣି । କୌଣସି କବି ନାଜର-ଗୃହିଣୀଙ୍କ ତାତ୍କାଳିକ ଅବସ୍ଥା ଦେଖିଲେ ବୋଧ କରୁଁ ଏହିପରି ଗୋଟାଏ କବିତା ଲେଖି ବସନ୍ତେ—

"ହୃଦରେ ଘୋଟିଲା ଅନ୍ଧାର,
ବଦନ ବର୍ଣ୍ଣେ ଯେ ପ୍ରକାର ।"

ଚମ୍ପକଳା ସୁନ୍ଦରୀ—ଭଲ ଧୋବଲୁଗା ପିନ୍ଧେ—ଗହଣାଗାଣ୍ଠି ଗୁଡ଼ିକ ସୁନ୍ଦର—ଅନବରତ ଦଷା ମଜାରେ ଚକ ଚକ ଦିଶୁଛି । ପ୍ରତ୍ୟେକ ସୁନ୍ଦରୀ ଅନ୍ୟର ସୌନ୍ଦର୍ଯ୍ୟ ଦର୍ଶନ ବା ଶ୍ରବଣରେ ଅସହିଷ୍ଣୁ । ଏଥିର ସତ୍ୟତା ସମ୍ବନ୍ଧରେ ପ୍ରମାଣ ପ୍ରୟୋଗ କରିବାକୁ ଲେଖକ ଅକ୍ଷମ । ହେଲେ, କେତୋଟି ବଡ଼ ଘରର ବଡ଼ କଥା ଶୁଣି ତାହାର ମନରେ ଏହିପରି ଗୋଟାଏ ଧାରଣା ବଦ୍ଧମୂଳ ହୋଇ ଯାଇଛି । ଶୁଣା ଅଛି, ଇଂଲଣ୍ଡର ସୁବିଖ୍ୟାତା ରାଣୀ ଏଲିଜାବେଥ ବଡ଼ ସୌନ୍ଦର୍ଯ୍ୟା-ଭିମାନିନୀ ଥିଲେ । ସେହି ସମୟରେ ଅନ୍ୟ ଗୋଟିଏ ଯୁବତୀର ସୌନ୍ଦର୍ଯ୍ୟ ବିଷୟ ସର୍ବତ୍ର ଘୋଷିତ ହେବାରୁ ଈର୍ଷାପରବଶ ରାଣୀ ତାହାକୁ କୌଶଳରେ ବଧ କରାଇଥିଲେ । ପ୍ରାତଃସ୍ମରଣୀୟା ଦେବୀ ଅହଲ୍ୟାବାଈଙ୍କ ସୌନ୍ଦର୍ଯ୍ୟାଖ୍ୟାତି ଶ୍ରବଣରେ ତାଙ୍କର ପ୍ରତିଯୋଗିନୀ ମହାରାଷ୍ଟ୍ରଦେଶୀୟ ଈର୍ଷା ପରବଶା ଗୋଟିଏ ରାଣୀ ଘୋର ଆନନ୍ଦିତା ହୋଇଥିଲେ । ନାଜରପତ୍ନୀ ସୁନ୍ଦରୀ, ଯେହେତୁ ସେ ଗୋଟାଏ ବଡ଼ ଦର୍ପଣ ଧରି ଦିନରେ ଦଶଥର ମୁଖ ଦର୍ଶନ କରିଥାନ୍ତି । ପୁଣି ଅନତିଦୀର୍ଘ କୁନ୍ତଳ ବିନ୍ୟାସ ସକାଶେ ଶିଙ୍ଗ ପାନିଆଟାଏ ତାଙ୍କ ହାତରେ ଥିବାର ଦେଖାଯାଏ । ପୁଣି ଈଷତ୍ ନମ୍ର ସ୍ଥୂଳତର ଓଷ୍ଠରେ ପାନବୋଳ ବସି କେମନ୍ତ ରଙ୍ଗ ହୋଇଛି, ସେଇଟା ପୁନଃ ପୁନଃ ଦେଖିବାକୁ ଭୁଲନ୍ତି

ନାହିଁ । ଏପରି ସ୍ଥଳରେ ଚମ୍ପକଳାର ସୌନ୍ଦର୍ଯ୍ୟ ତାଙ୍କ ପକ୍ଷରେ ଅପ୍ରୀତିକର ହେବା ବିଚିତ୍ର କଥା ନୁହେ । ସେ ବାହାରେ ପୁଣି ହସି ହସି ତାଙ୍କ ନିଜ ସ୍ୱାମୀ ସଙ୍ଗତ କଥାଭାଷା ହେବ । ନିଶ୍ଚୟ ଏଇଟା ଦେହ ସହିବାର କଥା ନୁହେ । ନିଜ ସ୍ୱାମୀ ( ଏପରି ଗୋଟାଏ କଁ୍ୟା ବୋଇଲ୍ କି ) ନାଜରଙ୍କ ସଙ୍ଗତ ହସି ହସି କଥା କହିବାର ତାଙ୍କର କେବଳ ଅଧିକାର — ବାହାରର ଅନ୍ୟ କୌଣସି ଯୁବତୀ ସ୍ତ୍ରୀର ସେ ଅଧିକାର ନାହିଁ । ଯେପରି ସ୍ତ୍ରୀ ହେଉ ପଛକେ, ସ୍ୱାମୀକୁ ଭଲ ପାଉ ବା ନ ପାଉ ତଥାପି ଅନ୍ୟ ଯୁବତୀ ସୁନ୍ଦରୀ ସ୍ତ୍ରୀ ସେ ଅଧିକାରରୁ ବଞ୍ଚିତା । ନାଜରାଣୀଙ୍କ ମନରେ ସୁଖ ନାହିଁ, ସବୁବେଳେ ମୁହଁଟି ଶୁଖାଇ ବସିଥାନ୍ତି । ଆଗପରି ଭୁଛାଟାରେ ହେଲେ ଚାକରଙ୍କ ଉପରେ ଦଶ ଥର ହୁକୁମ ଜାରି କରିବାକୁ ନାହିଁ । ଆଉ କାହିଁରେ ମନ ଲାଗୁନାହିଁ, ପୋଡ଼ାମୁହିଁ ଚମ୍ପାର ରୂପଟା ଯେମିତି ସବୁବେଳେ ଆଖିରେ ନାଚୁଛି । ଚ୍ୟାଇଁଥିଲେ ଚମ୍ପାର ଚିନ୍ତା--ଶୋଇଲେ ଚମ୍ପାକୁ ସ୍ୱପ୍ନରେ ଦେଖନ୍ତି । ଠୋ ଠୋ ହସି ହସି ସ୍ୱାମୀ ସଙ୍ଗରେ ପ୍ରେମାଳାପ ଏକାବେଳକେ ବନ୍ଦ । କଣ କରିବେ ? ଭାଳ ଭାଳ କଣ ବାୟାଣୀ ହୋଇଯିବେ ? ପାଟି ଫିଟାଇ କିଛି ବୋଲି ପାରୁ ନାହାନ୍ତି — ଏଣେ ଅସଲ କଥାଟା କଣ ଜଣା ପାଉ ନାହିଁ । କଣ ବୋଇଲେ କଣ ହୋଇଯିବ ପରା, ଏ କଥାଟାରେ ବି ଡର ଅଛି । ସନ୍ଦେହଟା ବେଳେ ବେଳେ ଅନ୍ୟପ୍ରକାର ବିଶ୍ୱାସକୁ ଠେଲି ପକଉଛି । ତାଙ୍କ ବୁଦ୍ଧି ଗନ୍ତାଘରେ ଯେତେ ପୁଞ୍ଜି ପଟା ଥିଲା, ସବୁଗୁଡ଼ାକ ବାହାର କରି କାମରେ ଲଗାଇଲେ, ଆପଣାକୁ କିଛି ସମ୍ଭାଳି ନେଇ ଚିନ୍ତାକଲେ ।

ପ୍ରଥମ ଚିନ୍ତା — ଏଇଟା କିଏ ? କାହିଁକି ଆମ ଦୁଆରକୁ ଲାଗି ଲାଗି ଏତେ ଆସେ ? ଏ ଦେଶରେ ଏଇ ରକମ କି ଆସନ୍ତି ? ଆମର ହେଲା ହାକମ ଘର, ଏହିପରି କି ସବୁ ଆସିବେ ? କଥାଟା କଣ ! କାହାକୁ ପଚାରିବ ? ବାବୁଙ୍କୁ ତ ପଚାରି ପାରିବ ନାହିଁ—କଥାଟା ଯେ ତାଙ୍କୁ ଲାଗିଯିବ ? ସେ କଣ କହିବେ ? ଗୁରୁଆଉକୁ ଜଗି ବାଟ କାଟିବାକୁ ହେବ ।

ଏଣେ ଚମ୍ପକଳା ସାଆନ୍ତାଣୀଙ୍କ ମନଭାବ ଏକରକମ ସମଜି ଗଲଣି । ଯାହା ବୁଦ୍ଧି ପାଖରେ ନାଜର ବାବୁଙ୍କ ବୁଦ୍ଧି ହଟିଯାଏ ଏ ବା କେତେ କଡ଼ାରେ ଗଣ୍ଡାଏ ! ଚମ୍ପା ଠିକ୍ ବୁଝି ଗଲଣି, ଏଟାକୁ ଛ ଥର ହାଟରେ କିଣି ବିକି ଆଣିବା ମୁଷ୍କିଲ ହେବନାହିଁ । ଏ କଥାଟା ବି ଠିକ୍ କଲା, ମର୍କଟୀଟାକୁ ବାନ୍ଧି ନ ରଖିଲେ କେତେ-ବେଳେ କେଜାଣି ଆମ୍ଭୁଡ଼ି ଧାମ୍ଭୁଡ଼ି ପକାଇବ, ବାନ୍ଧି ରଖିବାର ଦରକାର । ଚମ୍ପାକୁ ଗୀତ ପେଟେ— ଗୋଟାଏ ମନରେ ପଡ଼ିଗଲା ।

"ଧନ କାର୍ପଣ୍ୟ ସେବାଫଳେ
କିବା ଅସାଧ୍ୟ ମହୀତଳେ ?"

ଚମ୍ପା ଭୁଗୁଟାରେ ହେଲେ ଆଜ୍ଞା ସାନ୍ତାଣି ! ଆଜ୍ଞା ମଣିମା, ବୋଲି ସାନ୍ତାଣୀଙ୍କୁ ଦଶଥର ଡାକେ । ସଞ୍ଜବେଳେ ବସିଥିଲେ, 'ଆଜ୍ଞା ମଣିମା ଶ୍ରୀପଦକୁ ପୀଡ଼ା ହୋଇଥିବ ପରା' କହି ସାନ୍ତାଣୀଙ୍କ ପଦଯୁଗଳ ଆପଣାର ସୁକୋମଳ ସୁନ୍ଦର ଜାନୁ ଉପରେ ପକାଇ ମର୍ଦ୍ଦନ କରି ବସେ । ସାନ୍ତାଣୀ ଖୁବ୍ ଖୁସି ହୋଇ ଗଲେଣି । ହେଲେ, ମନ ଭିତରେ ଯେ ଗୋଟାଏ କମିତିକା ବିଚକଟିଆ କଥାଟାଏ ପଶିଛି, ସହଜରେ ଛୁଉନାହିଁ ।

ଦିନେ ସକାଳଓଳି ନାଜରଖାନାର ଗୋଟାଏ ପିଆଦା ବସାଖରଚ ପାଇଁ ବଜାରରୁ ଚାରି ଅଣାର ପନପରିବା କିଣି ଆଣିଲା । ଚମ୍ପକଳା ସେଠି ଠିଆ ହୋଇଥିଲା, ପାଟିକରି କହିଲା, "ଆଜ୍ଞା ସାଆନ୍ତାଣି !

ଏ କଣ ଗ୍ୱର ଅଣାର ସଉଦା ? ମୋତେ ଗ୍ୱରଟା ପଇସା ଦେଅନ୍ତୁ ତ ମୁଁ ସଉଦା କଣି ଆଣେ ।'' ନାଜରାଣୀ କଥାଟା ବଢ଼ିବା ଲଗି ସେଇଲଗେ ଗ୍ୱରଟା ପଇସା ଚମ୍ପା ହାତକୁ ବଢ଼ାଇ ଦେଲେ । ଚମ୍ପା ଯେଉଁ ସଉଦା ଆଣିଲା, ପିଆଦା କଣା ସଉଦାଠାରୁ ତେର ଭଲ, ଆଉ ବେଶି । ସାନ୍ତାଣୀ ତା' ଦେଖି ଜଭ କାମୁଡ଼ ପକାଇଲେ । ଆପଣାବୁଦ୍ଧି ବଳରେ ଠିକ କଲେ, ଚମ୍ପା ବିଶ୍ୱାସୀ ଆଉ ବୁଦ୍ଧିମନ୍ତ । ଆଉ ପିଆଦାଟା ହେଲା ଚୋର, ନୋହିଲେ ହୁଣ୍ଡା ନବୁଦ୍ଧିଆ । ସେହି ଦିନରୁ ବସାର ସମସ୍ତ ଜନସ କଣା କଣି କଥା ଚମ୍ପା ଜମା । ସାନ୍ତାଣୀଙ୍କ ଆଉ ଆଉ ଗୁଣ କଥା ଯାହା ହେଉ, ଖୁବ୍ ଘରଣୀ । ଗୋଟିଏ ଗୋଟିଏ ପଇସା ଦେହର ରକ୍ତ । ମାମଲତକାରମାନେ ପନ ପରିବା, ମାଛ, ଦହି ଦୁଧ ନାଜରଙ୍କ ବସାକୁ ତେର ତେର ଦେଇଥାନ୍ତି । ବଳପଡ଼ ଖରାପ ହୋଇଗଲେ ବାଡ଼ ଆଡ଼େ ଖତ ଗଦାରେ ତାଳ ଦେବେ ପଛକେ, ପଚା ପୋକରା ବାଇଗଣ କଷିଟାଏ ହାତ ଟେକ କାହାରିକୁ ଦେବେ ନାହିଁ । ନାଜରଙ୍କ ଇଚ୍ଛା ତାହି—ଦୁହିଙ୍କ ମନ ଖୁବ୍ ମିଳ ଯାଇଛି ।

ସବୁ ତ ହେଲା—ହିଁ, ଅସଲ କଥାଟା ରହିଗଲା—ଚମ୍ପା ଯେତେବେଳେ ହସି ହସି ବାବୁଙ୍କ ଘାଙ୍ଗରେ କଥାଟା କହେ, ମନରେ ପିମ୍ପିଡ଼ିକା ଚେଁ ଚେଁ କର ଲାଗିଯାଏ । ବିଶ୍ୱାସରେ ଅବିଶ୍ୱାସ—ଆନନ୍ଦରେ ଦୁଃଖ—କେତେଦିନ କଟିଗଲା । ଚମ୍ପା ଭଲକର ନଜର ରଖିଥାଏ । ଅପ୍ରୀତ ଆଉ ବେଗ ଅଳ୍ପ ବୋଲ ହେଲି ଦେବ ନାହିଁ—କେତେବେଳେ କେଜାଣି ଟିକିଏ ଅବସର ପାଇଲେ ବଢ଼ିପଡ଼ିବ । ଦିନେ କଣ ହେଲା ନା—ସଞ୍ଜବେଳଆ ସାନ୍ତ କଚେରି ବାହୁଡ଼ା ଶୀତଳ ଠା' ବଟେଇଲେଣି, ଚମ୍ପା ଚଞ୍ଚଳ ଯାଇ କୋଠା ଉପରେ ସଉଟାଏ ମେଲାଦେଲା—ସାନ୍ତ ବଜେ ହୋଇ ଭଡ଼ର ଭଡ଼ର କର ହୁକାଟା ଉଡ଼ୁଛନ୍ତି, ସାନ୍ତାଣୀଙ୍କ ମୁଖରୁ ପଚର ପଚର କର ପାନପକ ଗୁଡ଼ାକ ସଉପ ପାଖରେ ତାଳପଡ଼ୁଛି । ଚମ୍ପକଳା ପାନ ଗୁଡ଼ାଖୁ ଦୁହିଙ୍କୁ ଭଲ କର ସଜାଇ କର ଦେଇ ଆପଣା ଘରକୁ ଗ୍ୱଲଗଲା । ଏ କଥା ସେ କଥା ଗ୍ୱରକଥା ବାଦେ ସାନ୍ତେ ଗଳା ଖଙ୍କାରି ଦେଇ କହିଲେ, ''ଏ ଚମ୍ପକଳା କିଏ, ଜାଣ ? ଏ ଗୋଟାଏ ଖୁବ୍ ବଡ଼ଲୋକ ଘରର ବୋହୂ—ଘରର ସମସ୍ତେ ମରିଗଲେଣି, ତାହାର ଆଉ କେହି ଆଶ୍ରା ନାହିଁ, ଆମ ଆଶ୍ରା ଧରିଛି । ତା ହାତରେ ଟଙ୍କା ସୁନା ତେର, ଘର ଗୋଟାଏ କୋଠାଘର, ବଗିଗ୍ୱରେ ଦୁଇ ଜଣ ବାଗୁଆ—ସେ ସବୁ ଆମକୁ ଲେଖିଦେବ, ଠିକ ହୋଇଗଲାଣି । ତୁମକୁ ବଗିରେ ବସାଇ ଦିନେ ଦେଖାଇନିବ, କୋଠାଘର, ବଗିଗ୍ୱ ସବୁ ଦେଖାଇ ଆଣିବ । ସେ ସବୁ ତ ତୁମରି ହେବ । ଏ ଲଗି ତାକୁ ବସାକୁ ଆସିବାକୁ ଦିଏଁ—ତା ମନ ମିଳାଇ ରଖିଛି । ନୋହିଲେ ଆଉ କାହାରିକୁ କାଳେ ଦେଇ ପକାଇବ, ସେଥିଲଗି ଏଇପରି କରେଁ ।''

ଧନ ଦଉଲତ, କୋଠାଘର କଥା ଶୁଣି ସାଆନ୍ତାଣୀଙ୍କ ମନ କଣ ହୋଇ ଗଲାଣି । ମନ ଭିତରେ ଯେ ଟିକିଏ ଅନ୍ଧାରିଆ ରକମ ଗୋଲମାଲ ଥିଲା, ଏକାବେଳକେ ସାଫ । ଏରଣ୍ଡତେଲ—ମେଘ ଲେମବତ୍ତି ଘର ମେଳ—ଚମ୍ପାର ବସାକୁ ଆସିବା ନିମିତ୍ତେ ତେର ହେଲେ ପିଆଦା ଡାକିବାକୁ ଧାଏଁ । ଆଉ ଭିନ୍ନହିବ ନାହିଁ, ଦୁହେଁ ଏକ ଆତ୍ମା । ପ୍ରଣୟର କାରଣ—ସାନ୍ତାଣୀ ପକ୍ଷରେ କଳ୍ପିତ ଆକାଶ କୁସୁମର ସୌରଭସମ୍ଭୋଗର ପ୍ରତ୍ୟାଶା, ଆଉ ଚମ୍ପକଳା ପକ୍ଷରେ ସଦ୍ୟ ସୌଭାଗ୍ୟସମ୍ଭୋଗ ଉଦ୍ଗତ ପ୍ରଣୟର ପରିଣାମ ଫଳ କଣ ହୋଇପାରେ ? ମାନବଜାତି ଭବିଷ୍ୟତ ଦର୍ଶନରେ ଘୋର ଅନ୍ଧ ।

---

-୧୯-

## ନାକଫୋଡ଼ିଆ ମା

କୋଡ଼ିଏ ବର୍ଷର ପୋଷଣାହାଣ୍ଡି ଭେଣ୍ଡିଆ ପୁଅ ନାକ ଫୋଡ଼ିଆଟା ବାଡ଼ ବେମାରରେ ଗୁଲଗଲା ଦିନରୁ ତା ମା ବୁଢ଼ୀଟା ଢେର ଦିନଯାଏ ଦୁଆରଟି ଆଉଜାଇ ଦେଇ କୁଟିଆ ଘରେ ପଡ଼ି ରହିଥିଲା । ଦିନ ରାତି କାନ୍ଦି କାନ୍ଦି ଆଖିଯୋଡ଼ାକୁ ଜଳଜାଲୁଆ ଦିଶିଲାଣି । ଯେତେ ଦୁଃଖ ହେଉ ଲୋକେ ପେଟକି ସେ କଥା ନ ଶୁଣେ, ଏଣେ ଘରେ ଦେଇସାଏ ନାହିଁ — ପୁଅ ବାଧିକା ପଡ଼ିବା ବେଳେ ବଇଦ, ଓଷଧ ପଥିରେ ସବୁ ସାରିଥିଲା । ଆଉ ଯାହା ଦରକରଣା ଜିନିସ ଥିଲା, ଖଣ୍ଡେ ପଟେ କରି ସବୁ ବିକାବିକି କରି ସାରିଲାଣି । ବସି ଖାଇଲେ ଦରିଆ ବାଲି ସରେ — ଘରେ ଆଉ କିଛି ନାହିଁ । ଶେଷରେ ଘର ଭିଡ଼ିଖଣ୍ଡ ବିକି ଦେଇ ସାବଜାଦା ବଜାର ନନ୍ଦକିଶୋର ବାବୁଙ୍କ ବଗିଚା ଗୁହାଳ କଣରୁ ପଞ୍ଚ ହାତ ଜାଗା ଖଣ୍ଡେ ମାଗି ନେଇ ଟିଙ୍ଗିଟାଏ ମାରିଲା । ଏଣିକି ପଦାକୁ ନ ବାହାରିଲେ ନୂହେ — ଦୁଆରେ ବା କିଏ ଆଣି ଥୋଇ ଦେଇଯିବ ? ବୁଢ଼ୀର ଆଛା ଗୋଟିଏ ଗୁଣ ଥିଲା — ସେ ଭଲକରି ଜୁଡ଼ା ବାନ୍ଧି ଜାଣେ । ସେପରି ମୁଣ୍ଡକୁଣ୍ଡା ଆଉ କାହାରିକି ଜଣା ନାହିଁ । ହାତରେ ବାଡ଼ି ଖଣ୍ଡେ ଧରି ନଇଁ ନଇଁ ଯାଇ ବାବୁମାନଙ୍କ ଘରେ ବୋହୂ ଝିଅମାନଙ୍କ ଜୁଡ଼ା ବାନ୍ଧି ଦେଇ ଆସେ । କାହାଠାରୁ ଚାଉଳ ସେରେ, ଡାଲି ମୁଠାଏ ନୋହିଲେ ପଇସା ଯୋଡ଼ାଏ ପାଏ । ଆଉ ଗୋଟାଏ ତାର ଗୁଣ ଥିଲା, ବୋହୂ ଝିଅଙ୍କୁ ସାକୁଲି-ସାକୁଲି କରି କଥା କହି ଜାଣେ । କେହି ଦୟା କରି ଖଣ୍ଡେ ପୁରୁଣା ଲୁଗା ଫୋପାଡ଼ି ଦେଲେ ତାହାର ବେଢ଼ଣ ବାଡ଼ଟା ଚଳିଯାଏ । ଏମିତି ସଟାବଟା କରି ଦିନ କାଟେ ।

ଦିନେ ଶୁଣିଲା, ନାଜର ବାବୁଙ୍କ ବୋହୂ ଦେଶରୁ ଆସିଛନ୍ତି । ବୁଢ଼ୀର ଆଉ ତର ସହିଲା ନାହିଁ — ବାଡ଼ିଖଣ୍ଡ ଠୁକୁ ଠୁକୁ କରି ଦାଣ୍ଡ ଦୁଆର ପାଖରୁ ସାନ୍ତାଣୀ — ସାନ୍ତାଣୀ — ଏ ସାନ୍ତାଣୀ ମଣିମା' ଡାକ ଡାକ ଏକାବେଳକେ ନାଜରଙ୍କ ଭିତର ଉଆସରେ ହାଜର । ସାଆନ୍ତାଣୀଙ୍କ ପାଖରେ ବସି ପଡ଼ି ଆପଣା ଗୁଣଟା ବନେଇ ବଟେଇ ଜାହିର କଲା । ସେଥିର ସାର ମର୍ମ — ତା ପରି କଟକରେ କେହି ମୁଣ୍ଡ କୁଣ୍ଡେଇ ଜାଣେ ନାହିଁ, ସେ ଜୁଡ଼ା ବାନ୍ଧିଦେଲେ ମୁଖଟି ଚନ୍ଦ୍ରଉଦିଆ ପରି ଦିଶେ । କଟକରେ ସବୁ ବୋହୂ ଝିଅଙ୍କର ସେ ଜୁଡ଼ା ବାନ୍ଧିଦିଏ — ଆଉ କାହାର ମୁଣ୍ଡକୁଣ୍ଡା ସେମାନଙ୍କ ମନକୁ ପେନେ ନାହିଁ । ତାକୁ ଦିନ ରାତି ଦଣ୍ଡେ ଫୁରସତ୍ ନାହିଁ — ଗାଁ ଗାଁ ବୁଲି ଜୁଡ଼ା ବାନ୍ଧୁ ଥାଏ । ଏହିପରି ଢେର ଢେର ଆପଣାର ଗୁଣ ବାଢ଼ିନ ଗଲା । ନାକଫୋଡ଼ିଆ ମା କଥା ଶୁଣି ସାନ୍ତାଣୀଙ୍କ ମନ ସକ୍ ସକ୍ ହେଲାଣି — ଯାଇଁ ଯାଇ ମୁଣ୍ଡକୁଣ୍ଡା ପେଡ଼ିଟି ଆଣି ବୁଢ଼ୀ ଆଗରେ ଥୋଇଦେଲେ । ସେଥିରେ ସାନ ବଡ଼ ଯୋଡ଼ାଏ ଶିଙ୍ଗ ପାନିଆ, ଗୋଟାଏ ଚକା ଦର୍ପଣ, ଗୋଟାଏ ସିନ୍ଦୂର ଫରୁଆ, ତେଲ ଚକଟା ଥୋପ ଗୋଛାଏ, ଚଉଁରିମୁଣ୍ଡୀ ଖଣ୍ଡେ, ମହମ ଓ ଗନ୍ଧ ମଶଲାମିଶା ତେଲ ଶିଶିଏ ଥିଲା । ସାନ୍ତାଣୀ ସଉପଟାଏ ପାରି ମୁଣ୍ଡ ମୁକୁଳା କରି ବସିଗଲେ । ନାକଫୋଡ଼ିଆ ମା ପିଠିଆଡ଼େ ବସି ଚକଣ କରି ଗୋଟାଏ କଟକୀ ରକମ ଜୁଡ଼ା ପାରି ଦେଲା । ସାଆନ୍ତାଣୀ ଚକା ଦର୍ପଣଟାରେ ଏପାଖ ସେପାଖ କରି ଘଡ଼ିଏ ଯାଏ ମୁହଁଟି ଦେଖିଲେ । ମୁଖ ଭଙ୍ଗୀରୁ ବୁଢ଼ୀ ବୁଝିଗଲା — ସାନ୍ତାଣି ବଡ଼ ଖୁସି ହୋଇଗଲେଣି — ମନରେ ଯେମନ୍ତ କରୁଛନ୍ତି ସତକୁସତ ନାକଫୋଡ଼ିଆ ମା ବଡ଼ ସୁନ୍ଦର ଜୁଡ଼ା ବାନ୍ଧି ଜାଣେ । ସବୁଦିନେ ଆସି ଜୁଡ଼ା ପାରି ଦେଇ ଯିବାକୁ ଫରମାସ କଲେ ।

ନାକଫୋଡ଼ିଆ ମା ଦୁଇ ତିନଥର ଆସି ମୁଣ୍ଡ କୁଣ୍ଡେଇ ଦେଲାଣି । ଜୁଡ଼ା ବାନ୍ଧି ଦେଇ ସାରି ଘଡ଼ିଏଯାଏ ଏଣୁତେଣୁ କଥା ଗୁଡ଼ାଏ କହେ — ଇଚ୍ଛା

ସାନ୍ତାଣୀ କିଛୁ ଜାଣିକରି ଦେବେ । ପାଞ୍ଚ ଭଲଲୋକ ଘରକୁ ଯିବା ଆସିବା ଅଛି, ଟାଉ କରି ଚୋଟାଏ ମାଗି ବସିବ, ସାନ୍ତାଣୀ କଣ ମନରେ ଭାବିବେ, ମାନ ମହତକୁ ଜଗି ବାଟ ଚାଲିବାକୁ ହେବ ତ ?

ନାକଫୋଡ଼ିଆ ମା ବୁଝିଗଲାଣି, ଜାଗାଟା ପଥୁରିଆ ରକମ, ମୁହଁ ନ ଫିଟାଇଲେ ଚଳିବ ନାହିଁ । ଦିନେ ଜୁଡ଼ା ବାନ୍ଧି ଦେଇ ପାଖେଇ ପାଖେଇ କଥା ପକେଇଲା—ଶେଷକୁ ଧପଚପ ହୋଇ କହି ବସିଲା, "ଏ ସାନ୍ତାଣୀଏ, ଆଜି ଘରେ କିଛି ଖାଇବାକୁ ନ ଥିଲା, ସେରେ ଖଣ୍ଡେ ଚାଉଳ ଦେଲେ ଭଲ ହୁଅନ୍ତା ।"

ଏଇଟା କଣ ରେ ? ଆମର ହେଲା ହାକମ ଘର, ପାଞ୍ଚ ଜଣ ପାଞ୍ଚ ପଦାର୍ଥ ଦେବେ, ପାଞ୍ଚ ଜଣ ଆସି ପାଞ୍ଚ ପାଇଟି କରି ଦେଇ ଯିବେ; ଏଇଟା କଣ କହୁଛି ନା ଚାଉଳ ଦିଅ ! ଚାଉଳ କଣରେ ?' ସାନ୍ତାଣୀ ମୁହଁ ମୋଡ଼ି ଦେଇ ଚାଲିଗଲେ । ସେ ନାକଫୋଡ଼ିଆମା କଟକିଆଣୀ; ପଥର ଚିପୁଡ଼ି ରସ କାଢ଼ିବା ବୁଢ଼ୀ—ମନରେ କଲା, ଆଚ୍ଛା ଦେଖାଯିବ । ସାନ୍ତାଣୀ ଯେ କି ପଦାର୍ଥ, ବୁଝିଗଲାଣି । ବୋହୂ ଝିଅ ନାଡ଼ି ଚିପି ପେଟ କଥା ଜାଣିବା ଲୋକ, ତାକୁ ନାଜରାଣୀ ବଳେଇ ଯିବେ ?

ତହିଁ ଆରଦିନ କ'ଣ କଲା ନା ଟିକିଏ ବେଳସୁଁ ବେଳସୁଁ ଆସି ହସି ହସି ମୁଣ୍ଡ କୁଣ୍ଡେଇବାକୁ ବସିଗଲା । ଆଜି ମୁଣ୍ଡକୁଣ୍ଡାରେ ଭାରି ଯତ୍ନ—ମୁଣ୍ଡକୁଣ୍ଡା ସାଙ୍ଗେ ସାଙ୍ଗେ ପ୍ରଶଂସା ଗୁଡ଼ାଏ ଚାଲି ପକାଉଥାଏ—ଆଜ୍ଞା ଏଇ କାମରେ ମୋ ମୁଣ୍ଡବାଳ ଧୋଉ—କଟକରେ ଖୁବ୍ ବଡ଼ ବଡ଼ ଘରେ କେଡ଼େ କେଡ଼େ ବଡ଼ଲୋକ ଘର ବୋହୂ ଝିଅଙ୍କ ମୁଣ୍ଡ କୁଣ୍ଡେଇଲି—ଜୁଡ଼ା ବାନ୍ଧି ଦେଲେ ଆପଣଙ୍କ ଶ୍ରୀମୁଖ ଯେମନ୍ତ ସୁନ୍ଦର ଦିଶେ, ଇମିତି କାହାରି ନୁହେ ପରା ! ଆପଣଙ୍କ ବଦନଚନ୍ଦ୍ର ଯେମନ୍ତ ଆକାଶରୁ ଖସି ଆସିଲା, କେଶ ଗୁଡ଼ିକ ଯିମିତି କି ରେଶମ ଗୁଙ୍ଗୁଖମୁଣ୍ଡୀ, ଆପଣଙ୍କ ଜୁଡ଼ାକୁ ଚଉଁରୀ ଯିମିତି ମାନେ କି ଠାକୁରାଣୀ ମୁଣ୍ଡରେ ମାଳଗଳିଚ । ଲେଖକ ଆପଣାର ପରିଶ୍ରମ ଲାଘବ ନିମନ୍ତେ ସଂକ୍ଷେପରେ କେତୋଟି କଥା ଲେଖିଲା । ହେଲେ, ନାକଫୋଡ଼ିଆ ମା ଅନେକ ଦେଶର ଅନେକ ଘରର ଢେର ଢେର ବୋହୂ ଝିଅଙ୍କ ପ୍ରସଙ୍ଗ ବ୍ୟାଖ୍ୟାନ କରି ସାବ୍ୟସ୍ତ କରାଇଦେଲା ଯେ, ସାନ୍ତାଣୀଙ୍କ ମୁଖର ସୌନ୍ଦର୍ଯ୍ୟ ଜୁଡ଼ାର ମନୋହାରିତ୍ୱ ସମକକ୍ଷ ଲକ୍ଷକରେ ମିଳିବା କଠିନ । "ଆପଣ ହଜାର ହଜାର ବୋହୂଙ୍କ ଭିତରେ ଛିଡ଼ା ହେଉନ୍ତୁ ପଛକେ, ଜୁଡ଼ା ବନ୍ଧା ଥିଲେ ଝଟ ବାଛି ହୋଇ ପଡ଼ିବେ ପରା ।" ସାନ୍ତାଣୀ ଭାରି ଖୁସିଟାଏ ହୋଇ କହିଲେ, "ସତ ନା, ସତ ନା, ନାକଫୋଡ଼ିଆ ମା ?ନା ପରା—ନା ପରା ।" ନାକଫୋଡ଼ିଆମା କହିଲା, "ଆଜ୍ଞା ଏତେ କଥା କିଁଆ, ସତ କି ମିଛ ଦର୍ପଣଟି ଧରି ମୁଖଚନ୍ଦ୍ରମାଟି ଦେଖି ଆଜ୍ଞା ହେଉନ୍ତୁ ନା ।" ସାନ୍ତାଣୀ ଏଣିକି କେଜାଣି ଆନନ୍ଦରେ ଢଳି ପଡ଼ିବେ—ପାଟିଟା ଆଁ କରି ଦେଇ ଅଚ୍ଛା ଆଚ୍ଛା କହି ଦର୍ପଣ ହାତରେ ଧରିଲେ । ନାଜରଗୃହିଣୀଙ୍କ ଦର୍ପଣ ଦର୍ଶନ ଏବଂ ଆନନ୍ଦବ୍ୟାପାର ଦେଖି ବୋଧ କରୁଁ କୌଣସି ନବୀନା ପାଠିକା ହସି ପକାଇଲେଣି । ହେଲେ, ଏଥିକୁ ଗ୍ରନ୍ଥକାର ସେମାନଙ୍କୁ କିଛି କଥା ଭରସି ବୋଲିବାକୁ ଅକ୍ଷମ । ଯେଣୁ କି ସେ ନବୀନା—ବୋଲେ ତ ସୁନ୍ଦରୀ ହେବେ,ତେଣୁ ନିଶ୍ଚୟ ଲାବଣ୍ୟମୟୀ; ତାଙ୍କ ଜାଣିବାରେ ଭାରି ବୁଦ୍ଧିମତୀ, ନୋହିଲେ ଏଡ଼େ ଚଞ୍ଚଳ ବାଛି ପକାଇ ହସି ଉଠିଲେ କିପରି ? ଏପରି ଲାବଣ୍ୟମୟୀ ବିଦ୍ୟାବତୀଙ୍କୁ ସାମାନ୍ୟ ଲେଖକଟାର କି କିଛି ବୋଲିବାକୁ ଭରସା କୁଳେଇବ ? ତେବେ ଗୋଟାଏ ନ କହିଲେ ନ ଚଳେ । କଣ କି—

ଆଉ ଗୋଟାଏ ଦେଶରେ ଗୋଟାଏ ଭାରି ବୁଢ଼ା—କାଳେ ଭାରି ଅସୁନ୍ଦର ଲୋକ ଥିଲା—ଲୋକେ ତାକୁ କବି ବୋଲନ୍ତି । ସେ ଦିନେ କଣ କଲା କି—

ତା ମନ୍ତ୍ର-ଫରୁଆରେ ଯେଉଁ ଜ୍ଞାନ ଟିକିଏ ଥିଲା, ପୋଟ୍ଟାରୁ ଖଣ୍ଡିଏ ଉପନ୍ୟାସ ଲେଖି ବସିଲା । ହେଲେ ଯେପରି ଲୋକ ହାତରେ ଖୁବ୍ ସୁନ୍ଦରୀ ନାୟିକା ଉତ୍ତୁରିବେ କିଁଆ ? ସେହି ଉପନ୍ୟାସର ପ୍ରଧାନ ନାୟିକା ଆପଣାକୁ ସୁନ୍ଦରୀ ମଣି ଦଶ ଥର ଦର୍ପଣରେ ମୁଖଟି ଦେଖି ବସେ । ଆପଣଙ୍କ ପରି କେହି ସୁନ୍ଦରୀ ନବୀନା ସେହି ଦର୍ପଣ ଦେଖାକୁ ଅନାଇ ଯେବେ ହସି ଉଠନ୍ତି, ତେବେ ତାହାର ମହତ୍ତ୍ୱ ସରଳା ନା ରହିଲା ? ଏପରି ଚକିଲେ ବା ଚାପରା କରି କଥାଟା କହି ଦେଲେ କବି ମନରେ ତ ନିଶ୍ଚୟ ଦୁଃଖ ହେବାର କଥା । ତେତେବେଳେ କବି ମନୋଦୁଃଖରେ ବା କୋପରେ କଣ କହିବାକୁ ଉଠିବ — "ହେ ସୁନ୍ଦରି ! ଉପରେ ଓଳ ପାଇଟିପଟ ପାରି ନରୋଲାରେ ବସି କେଶବିନ୍ୟାସରେ ନିଯୁକ୍ତ ହୁଅନ୍ତି କି ନା ବୋଲନ୍ତୁ ତ ? ବିନ୍ୟସ ଉପ୍ତରେ ଖଣ୍ଡେ ଓଦା କନାରେ ମୁଖଚନ୍ଦ୍ର ରଗଡ଼ି ରଗଡ଼ି ରକ୍ତମାଭ ହୋଇଯାଏ । ତେତେବେଳେ ଆପଣ ଦର୍ପଣଟା ଧରି ମୁଖ, ଓଷ୍ଠ, ନାସିକା ଭଲକରି ଦେଖିବା ସମୟରେ ଆପଣଙ୍କ ମୁଖରେ ଯେଉଁ ଗୋଟିଏ ପ୍ରଫୁଲ୍ଲ ଛଟା ଚହଟି ଯାଏ, ସେଇଟା କଣ ? ବୋଇଲା, ପ୍ରତ୍ୟେକ ନବୀନା ଆପଣା ସୌନ୍ଦର୍ଯ୍ୟରେ ବିମୋହିତା ।" ତେବେ ଲେଖକ ପଚାରି ପାରେ, ନାଜରଗୃହିଣୀଙ୍କ ଅପରାଧ କଣ ?

ବୁଢ଼ୀ ଦେଖିଲା ମନ୍ତ୍ରଟି କାଟୁ କରୁଛି । କହିଲା, "କଟକ ଯାକ ହାଟ ବସିଚ୍ଛି ଆପଣଙ୍କ ପରି ହାକିମ— ଆପଣଙ୍କ ପରି ସୁନ୍ଦରୀ ଆଉ କେହି ନାହିଁ—ଦେବା ନେବା ଚଳରେ ଆପଣ ହାତ ଝାଡ଼ିଦେଲେ ଲକ୍ଷେ ଲୋକର ପେଟ ପୂରିଯାଏ ପରା । ଆଉ ମାଇକିନିଆଁଙ୍କୁ ମୁଁ କି କହିବି, ତୁମ ଦୁଆରକୁ ଅଇଲେ କେତେ, ନ ଅଇଲେ କେତେ ? ଏକା ସାନ୍ତାଣୀ କଡ଼ରୁ ଯା ପାଇବି, ମୋର କିଏ ଖାଏ ?"

ଆମ୍ଭେମାନେ ପରେ ସମ୍ବାଦ ପାଇଲୁଁ, ନାକ-ଫୋଡ଼ିଆ ମାକୁ ଗୃହର ସକାଶେ ଦୁଇଟଙ୍କା ହରକତ ହେବାକୁ ପଡ଼ି ନାହିଁ । ଆଉ ସେ ଯେଉଁ ଟଙ୍କି ପୋକରି ପରିବା ଗୁଡ଼ାଏ ପାଇଥିଲା, ସେଥିରେ ତିନିଓଳ ତାହାର ତିଅଣ ବାଡ଼ି ଚଳି ଯାଇଥିଲା ।

---

## -୨୦-

## ସମରଭିନୟ

ନାଜରବାବୁଙ୍କ ବସାକୁ ନାକଫୋଡ଼ିଆ ମାଟାର ପୌନଃପୁନିକ ଗତାୟାତଟା ଆଶଙ୍କାର କାରଣ ବୋଲି ଚମ୍ପକଳା ମନେ କଲାଣି । ତାଦୃଶୀ ଅନର୍ଗଳବଚନା ଦ୍ୱାରି ଦ୍ୱାରି ବିହାରଣୀ ବୃଦ୍ଧା ପ୍ରତି ଉପେକ୍ଷା ପ୍ରଦର୍ଶନ ନିରାପଦ ନୁହେ ବୋଲି ଚମ୍ପକଳା ମନ ମଧ୍ୟରେ ସ୍ଥିର କରି ସାରିଲାଣି । ଆପେ ଚାହା ନ ଚଢ଼ି କୌଣସି କୌଶଳରେ ବୁଢ଼ୀଟାକୁ ଦୂର କରାଯିବ, ସେଥିର ଉପାୟ ସନ୍ଧାନରେ ଥାଏ । ଯଦସା କିଛି ଗୋଟାଏ କରି ବସିଲେ କଣ ବୋଲି କଣ ହୋଇଯିବ, ବୁଦ୍ଧିମତ୍ତୀ ଚମ୍ପକଳା ଏହା ମଧ୍ୟ ସ୍ଥିର କରିଅଛି ।

ସନ୍ଧ୍ୟା ସମୟ, ମାତ୍ର ଅନ୍ଧାରିଆ ହୋଇ ଗଲାଣି । ବାବୁଙ୍କ ବସାରେ ସଞ୍ଜ ବଇଠା ଲାଗିନାହିଁ, ଚମ୍ପକଳା ବଜାରରୁ ସଉଦା ନେଇ ଉପସ୍ଥିତ । ସାନ୍ତାଣୀ ବାରଣ୍ଡା ଉପରେ ବସି ସଉଦାପତ୍ର ବୁଝି ନେଉଛନ୍ତି— ଚମ୍ପକଳା ସଉଦା ସାଙ୍ଗେ ସାଙ୍ଗେ ହିସାବ ବୁଝାଇ ଦେଉଛି — ଏଇ ମାଛ ସେରକୁ ଅଢ଼େଇ ପଇସା, ଲୁଣ ପଇସାକୁ ସେରେ, ମୁଁ ତେର କଷାକଷି କଲି, କଲି ଲଗଇଲି, ତେଲ ସେରଟା ଛ ପଇସାରୁ କଡ଼ାଏ ଊଣା କଲାନାହିଁ —ଇତ୍ୟାଦି, ଇତ୍ୟାଦି । ଇତ୍ୟବସରେ ନାକଫୋଡ଼ିଆ ମା ଧୀରେ ଧୀରେ ଆସି ପଛଆଡ଼େ ଠିଆ ହୋଇ ଗଲାଣି ।

ଏମାନେ ବୁଝାବୁଝିରେ ଲଗିଛନ୍ତି, ତା ଉପରେ ନଜର ନାହିଁ । ବୁଢ଼ୀ ବଜାର ସଉଦା କଥା କହୁ କହୁ ଆଗେ ଶୁଣିଲା । ଆଜି ଆଖିରେ ଦେଖି ମନ ମଧ୍ୟରେ ବଡ଼ ହସିଲା । ଆଉ ସବୁ କଥା ଶୁଣିବା ଲଗି ଧୀରେ ଧୀରେ ପଛଘୁଞ୍ଚା ଦେଇ ପାଖ ଉହାଡ଼ରେ ଠିଆ ହେଲାଣି । ଚମ୍ପକଳା—ଏଇ ଗୁଜରାତି ଦେଢ଼ପଣକୁ ପଇସାଏ—ପାନ ଦେଢ଼ ପଇସାରେ ଶହେ । (ନାକଫୋଡ଼ିଆ ମା ମନ ମଧ୍ୟରେ କହୁଥାଏ—ତୋ ଚଉଦ ପୁରୁଷ ତେର ପାନ ଖାଇଥିଲେ ଏକା ।) ସାନ୍ତାଣୀ କହିଲେ, "ଅଚ୍ଛା ଚମ୍ପକଳା ! ତୁ ତ ଦେଢ଼ ପଇସାକୁ ଏତେ ଗୁଡ଼ାଏ ପାନ ଆଣିଲୁ, କାଲି ଉପରଓଳି ମୁଁ ନାକଫୋଡ଼ିଆ ମା ହାତରେ ଯୋଡ଼ାଏ ପଇସା ଦେଇଥିଲି, ସେ ତେର କମ ଆଣିଥିଲା—କହୁଥିଲା, ପଇସାକୁ ପାଞ୍ଚଟା ନା ଛ'ଟା ପାନ—ଦୁଇ ପଇସାରେ କୋଡ଼ିଏ ।" ଚମ୍ପକଳା ଟିକିଏ ଗୁମ୍ ମାରି ବସିଲା—ମନ ମଧ୍ୟରେ ବିଚାର କଲା—ଏଇ ତ ବେଶ ବେଳ ପଡ଼ିଛି । କହିଲା, "ଏ ମଣିମା ! ଦେଖନ୍ତୁ ଦେଖନ୍ତୁ, ବୁଝନ୍ତୁ ! ସେ ବୁଢ଼ୀଟା ଅସଲ ସ୍ୱୈରିଣୀ, ଅଧିଲାକର ପାନ ଆଣି ଦେଢ଼ ପଇସା ରେସା କାଟିଲାଣି । ମୁଁ ତା କଥା ଭଲକରି ଜାଣେ—କଟକ ସହରରେ କାହାକୁ ଅଛପା ? ଆପଣ ପଛକେ ତ ସବୁ ଶୁଣିବେ, ମୁଁ ଉଚ୍ଛୁଣି ନ କହିଲେ ଆପଣ କହିବେ, ଚମ୍ପକଳା ସବୁ ଜାଣିଥିଲା, କହିଲା ନାହିଁ—ମତେ ଦୋଷ ଦେବେ ।" ନାକଫୋଡ଼ିଆ ମା ହସି ହସି ସବୁ କଥା ଶୁଣୁଥିଲା, ତାହା ନିଜ କଥା ଏହିପରି ଶୁଣି ଦେହଯାକ ନିଆଁ ପରି ଜଳିଲାଣି—ହେଉ ହେଉ ଆଉ କଣ କହୁଛି କହିଯାଉ । ସାଳୁଣୀ ଯିମିତି ବେଙ୍ଗୁଲି ଉପରକୁ ଝାମ୍ପି ପଡ଼ିବା ଆଗେ ଆପଣା ଦେହଟା ଗୋଟାଇ ପଛଘୁଞ୍ଚା ଦିଏ, ନାକଫୋଡ଼ିଆ ମା ସେମିତି ପାଖ ଉହାଡ଼କୁ ଅପସରିଗଲା ।

ଚମ୍ପକଳା—ଏ ମଣିମା ! ଭୁଚ୍ଚା ସେଇଟା ସ୍ୱୈରିଣୀ ! ସେଇଟା ଯେ ଟୁଣିଆଣୀ ! କଟକ ସହରରେ ତାକୁ କେହି ଦୁଆର ମଡ଼େଇ ଦିଅନ୍ତି ନାହିଁ । ସମସ୍ତେ ଛୁଅଁଣି ମାରି ତଡ଼ି ଦିଅନ୍ତି ପରା । ଟୁଣା କରି ଲୋକଙ୍କ ଘରୁ ଟଙ୍କା ପଇସା ଉଡ଼ାଇ ଆଣେ, ଆପଣଙ୍କ ଘରେ ତ ଗୁରୁଆଡ଼େ ଟଙ୍କା ପଇସା ବିଞ୍ଚାଡ଼ି ପଡ଼ିଛି—ସେଟା କେତେବେଳେ ନେଇଯିବ, କିଛି ବୁଝିସମଝି ପାରିବେ ନାହିଁ । ଏତିକିବେଳେ ହୁସିଆର ହୋଇଯାନ୍ତୁ, ମତେ ପଛକେ ଦୋଷ ଦେବେ ନାହିଁ । ଆଉ ସେଟା ଡାଆଣୀ, କଅଁଳା ପିଲା, ବୋହୂ ଝିଅ"—ଆଉ ନାକଫୋଡ଼ିଆ ମା ସମ୍ଭାଳି ହୋଇ ପାରିଲା ନାହିଁ । ହେଁ ଲୋ—ଅଣ୍ଟିଠା-ଖାଇ—ବାଉଳି—ପୋଇଲି ! ମୁଁ ଟୁଣିଆଣୀ—ମୁଁ ସ୍ୱୈରିଣୀ ମୁଁ ଡାଆଣୀ—ଏହିପରି ଗର୍ଜନ କରୁ କରୁ ବାହାରକୁ ଡେଇଁ ପଡ଼ିଲା; ପାକୁଆ ପାଟିଟାରୁ ପାଣିସୁଅ ପରି କଥା ଲହରୀ ଛୁଟିଥାଏ । ଚମ୍ପକଳା ପ୍ରଥମେ ଚମକି ପଡ଼ି ସଟପଟି ଗଲା । ହେଲେ, ସେ କଣ ସମ୍ଭାଳି ହେବାର ମାଇକିନିଆ ! ଗର୍ଜନ କରି ବୁଢ଼ୀକି ଆକ୍ରମଣ କଲା । ନାକଫୋଡ଼ିଆ ମାର କୁଜ ଦେହର ଉପର ଅଧିକ ଢେଙ୍କି ପରି ଉଠ ପଡ଼ ହେଉଥାଏ । ଡେଙ୍ଗର ହାତରେ ବାଡ଼ି, ଖାଇଲା ହାତ ସଞ୍ଚାଳନଟା କୁଲି ପାଛୁଡ଼ା ସଙ୍ଗରେ ଉପମା ଦିଆ ଯାଇପାରେ । ମଙ୍ଗଳା ରାଉଳ ରଣପା ଗୋଡ଼ରେ ବାନ୍ଧି ନାଚିଲା ପରି ବାହାର ଗୋଟାକଯାକରେ ଧାଇଁ ବୁଲୁଥାଏ । ଏଣେ ଚମ୍ପକଳା କଜଳପାତି କାଉ ଉପରେ ପଡ଼ିଲା ପରି ବୁଢ଼ୀ ଉପରେ ଝାମ୍ପି ପଡ଼ୁଥାଏ । ଷ୍ଟାର୍ଲିଂ ସାହେବ ଉତ୍କଳ ଦେଶୀୟ ନିମ୍ନଶ୍ରେଣୀର ସ୍ତ୍ରୀ ଯୁଗଳ ମଧ୍ୟରେ ଦ୍ୱନ୍ଦ୍ୱଯୁଦ୍ଧର ଆକାର ପ୍ରକାର କିଞ୍ଚିତ୍ ବର୍ଣ୍ଣନ କରିଅଛନ୍ତି । ପାଠକ ମହାଶୟ ଇଚ୍ଛା କଲେ ତତ୍‌କୃତ ଉତ୍କଳ ଇତିହାସ ପାଠ କରିବେ । ଦୁଇଜଣଙ୍କ ଗର୍ଜନ ଶବ୍ଦ ସମ୍ମିଶ୍ରଣରେ ପକ୍କା କୋଠାମାନ ପ୍ରତିଧ୍ୱନିତ ହେବା ଯୋଗୁଁ ମେଘଗର୍ଜ୍ଜନ ପରି ଜଣାଗଲା । ଦୁହିଙ୍କ ମଧ୍ୟରେ ଏକକୁ ଆରେକ ଯେ କେବଳ ଗାଳି ଫେରାଫେରି ହଉଥାଏ ତାହା ନୁହେ, ସେମାନଙ୍କ ଉପର ଚଉଦ ପୁରୁଷ ପ୍ରତି ଅତି ମନ୍ଦ ଖାଦ୍ୟ ଏବଂ ଅତି କଦର୍ଯ୍ୟ କଷ୍ଟକର ସ୍ଥାନକୁ ଯିବାର ବ୍ୟବସ୍ଥା

ହେଉଥାଏ । ଦୁଃଖର ବିଷୟ, ତତ୍କାଳପ୍ରଯୁକ୍ତ ବାକ୍ୟାବଳୀର ମଞ୍ଜା ଲିପିବଦ୍ଧ କରିବା ବିଷୟରେ ଅଧମ ଲେଖକ ନିହାତି ଅକ୍ଷମ । ଉତ୍କଳ ଭାଷାର ଏହି ଉତ୍କଟ ଉନ୍ନତି ଦିନରେ ପ୍ରିଣ୍ଟର ମହାଶୟମାନେ ନଷ୍ଟଗୈଷ୍ଣ, ଭୂତକେଳି, ଆଉ ନାଗୁଣୀ ରହସ୍ୟ ପ୍ରଭୃତି ମହାଗ୍ରନ୍ଥ ଛପାଇ ଦେଲେଣି, ସେଥିରୁ ଗୋଟାକେତେ ଅଣାଯାଇ ପାରେ । ହେଲେ ପୂରାପୂରି ନୁହେଁ । ଆଶା ଅଛି, ଏ ବାଟେ ସବୁ ବାହାରି ପଡ଼ିବ । ପୁଣି ଇସ୍ତକ୍ ଅମରସିଂହ ଠାରୁ ମଧୁ ରାଓଙ୍କ ସୁଖବୋଧ ଅଭିଧାନ ପର୍ଯ୍ୟନ୍ତ କାହିଁରୁ ଏହି ଶବ୍ଦମାନ ଖୋଜି ପାଉନାହୁଁ । ନିହାତି ନାଚାରି ହାଲତରେ ଭୁନି ହେଲୁଁ ।

ଏତେବେଳଯାଏ ଭୁଞ୍ଚା ମୁହଁ କଥାରେ ଯୁଦ୍ଧ ଚଳୁଥିଲା । ଦୁଇଜଣ ଟିକିଏ ଲଗାଲଗି ଭିଡ଼ାଭିଡ଼ି ହୋଇଗଲେ । ତାହା ବାଦ ପେଲପେଲ—ଏବେ ଚଳିଲା ହାତ । ବାହାରଟାରେ ଅନ୍ଧାର ମାଡ଼ିଗଲାଣି, ମଣିଷର ଆକାରଟା ଭଲ ଦିଶୁନାହିଁ । ଦୁଇଜଣଙ୍କ ଚିତ୍କାର ମିଶି କେବଳ ହାଉ ହାଉ ଶବ୍ଦ ଚଟ୍ ଚଟ୍ ଚାପୁଡ଼ା—ଗୁମ୍ ଗୁମ୍ ବିଧା—ଦୁମ୍ ଦୁମ୍ ଠେଙ୍ଗା ଏତିକି ଶବ୍ଦ ମାତ୍ର ଶୁଭୁଛି । କେତେ ମଣିଷ ଉପରେ, କେତେ ହୁଡ଼ିକି ଯାଇ ପାଚୁରେ ବାଜୁଛି । ସୁନାରି ଠକୁର ଠକୁର—କମାରି ପାହାରେ—ଚିତାର ଘର ଚାପୁଡ଼ାରେ ବୁଢ଼ୀରେ ପାହାରେ ଦୁମ୍ । ହେଲେ, ଚିତକଳା ସାଙ୍ଗରେ ବୁଢ଼ୀଟା ବଳରେ ପାରିବ କିଁଆ ? ଦୁଇଟାଯାକ ଲହୁଲୁହାଣ ହୋଇ ଗଲେଣି । ବୁଢ଼ୀଟା ଭାରି ହାଲିଆ ହୋଇ ପଡ଼ିଗଲା ପରି ଆଉ ସମ୍ଭାଳି ପାରିଲା ନାହିଁ । ଅସଲ କଥା ତାକୁ ଜଣା—ହେଲେ ସାନ୍ତ ସାଙ୍ଗରେ କଥାଟା ଲଗା—ଶୁଣିଲେ ଖପା ହୋଇ ଦୁଆର ମନା କରିଦେବେ ପରା । ଦେଉଳୁ ପଛକେ, କଥାଟା ଫିଟେଇ ହାଙ୍କିଦେଲା – 'ହଁ ଲେ ଅଇଁଠାଖାଇ ଗୋଇଲି—ହାତ ଗୋଡ଼ ଖାଇ—ରାଣ୍ଡୀ—ଏତେ ଯେ ଗହଣା ଦିହରେ ଲଗେଇଛୁ, ତତେ କିଏ ଦେଇଛି ? ନାଚର ବାବୁ ଦେଇଚନ୍ତି । ସାନ୍ତଙ୍କ ସାଙ୍ଗରେ ପୀରତି—ଆଉ ସାନ୍ତ ଭୁନି ଭୁନି ତତେ ପଇସା ଦିଅନ୍ତି, ସେଇ ପଇସା ନେଇ ସଉଦା କିଣୁ—ଶସ୍ତାରେ ସଉଦା ଆଣିଛୁ ବୋଲି ସାନ୍ତାଣୀଙ୍କ ପାଖରେ ଭଲେଇ ହେଉ ପରା !"

ସାନ୍ତାଣୀ ବାରନ୍ଦାରେ ଗୋଡ଼ ଯୋଡ଼ାକ ଲମ୍ବେଇ ଦେଇ ବସି ମାଇକିନିଆ ଯୋଡ଼ାକର ମାଡ଼ଗୋଳ ଦେଖି ଭାରି ଖୁସିଟାଏ ହେଉଥିଲେ । ନାକଫୋଡ଼ିଆ ମା କଥାଗୁଡ଼ାକ ଯେମନ୍ତ କିଏ ତାଙ୍କ ଦେହରେ ଜଳନ୍ତା ନିଆଁ ଗୁଡ଼ାକ ଢାଳିଦେଲା । ଯେତେ ଭାର୍ଯ୍ୟା ହେଉ ପଛକେ, ସ୍ୱାମୀ ଅନ୍ୟ ସ୍ତ୍ରୀ ସହିତ ପ୍ରଣୟ କରିବ, ତାକୁ ଅଳଙ୍କାର ଗଢ଼ିଦେବ, ଏ କଥା ସେ କେତେବେଳେ ହେଲେ ସହି ପାରିବ ନାହିଁ—ନ ସହିବାର କଥା ଏକା ।

'ହଇଲେ ପୋଇଲି ଅଇଣ୍ଠାଖାଇ' କହି ସାନ୍ତାଣୀ ବାରନ୍ଦା ଉପରୁ ତଳକୁ ଖପ କରି ଡେଇଁ ପଡ଼ିଲେ । ତାଙ୍କ ମୁଣ୍ଡରେ ଲୁଗା ନ ଥିଲା । ଲୁଗା ପିନ୍ଧାରେ ସାନ୍ତାଣୀ ସବୁଦିନେ ଟିକିଏ ହେଙ୍ଗଲୀ—ପଣତକାନିଟା ଭୂଇଁରେ ଲୋଟି ଯାଉଥାଏ । ଚଞ୍ଚଳ ଡେଇଁ ପଡ଼ିବା ବେଳେ ଅଣ୍ଟିଟା ଫିଟିଗଲା, ଅଣ୍ଟି ମାରିବାକୁ ବେଳ କାହିଁ ? ଡେରିରି ହାତରେ ମୁଠେଇ ଧରିଥାନ୍ତି । ସାନ୍ତାଣୀ ଆସି ଦୁଇ ଜଣଙ୍କ ମଝିରେ ଏକାବେଳକେ ଛୁଟା ହୋଇ ଗଲେଣି । ସେ ମାଇକିନିଆ ଯୋଡ଼ାକ ତ ରଡ଼ି ଗୁଡ଼ ମାଡ଼ ଗୋଳରେ ଲାଗିଛନ୍ତି, ସାନ୍ତାଣୀ ମଝିରେ ବଜେ ହୋଇ ଗଲେଣି ଦେଖୁଛି କିଏ ? ଦୁଇ ଆଡ଼କ ମାଡ଼ ତାଙ୍କ ଉପରେ ବସିବାକୁ ଲାଗିଲା—ଚଟ୍ ଚଟ୍ ଚାପୁଡ଼ା—ଗୁମ୍ ଗୁମ୍ ବିଧା—ଦୁମ୍ ଦୁମ୍ ଠେଙ୍ଗା ସବୁଗୁଡ଼ାକ ଉପରେ ବସୁଛି । ସାନ୍ତାଣୀ ଖପା ହେବେ କଣ; ଏକା ବେଳକେ ଲିନ ଲୋଟ, କାବା ହୋଇ ଗଲେଣି । ଘର ଆଡ଼ରୁ ମାଡ଼, ଅନ୍ଧାରରେ ବାଟ ଦିଶୁନାହିଁ । କେଉଁଆଡ଼େ ପଳାଇବେ ? ଠିଆ ହୋଇ

ଗଧ ରଡ଼ ଗୁଡ଼ାଇଲା ପରି ବାପା ଲୋ, ମା ଲୋ, ପୋଇଲା ଯୋଡ଼ାକ ମାରି ପକାଇଲେ ଲୋ—ଧାଇଁପଡ଼ ଲୋ କହି ଘୋର ରଡ଼ିଟାଏ ଗୁଡ଼ାଇଲେ । ତାଙ୍କ ରଡ଼ ସେ ଦୁଇଟାଙ୍କ ରଡ଼ରୁ ବଳି ପଡ଼ିଲା । ତେତେବେଳେ ମାଇକିନିଆ ଯୋଡ଼ାକ ଏକାବେଳକେ ଥକା ହୋଇ ଛୁଡ଼ା ହୋଇଗଲେ । ମଲି···ମଲି · ସାନ୍ତାଣୀଟାକୁ ବାଡ଼େଇ ପକାଇଲୁ···କହି ଦୁଇଆଡ଼କୁ ଦୁଇଜଣ ପଳାଇଗଲେ । ତେତିକିବେଳେ ପଳାଇବା ଲାଗି ସାଆନ୍ତାଣୀଙ୍କୁ ଟିକିଏ ବାଟ ମିଳିଗଲା । ଧଡ଼କରି ଶୋଇଲା ଘର କବାଟଟା କିଳି ଦେଇ ଦୁମ୍ କରି ପଲଙ୍କରେ ପଡ଼ିଗଲେ । ଦେହ ଗୋଟାଯାକ ପୋଡ଼ୁଛି··· ରଡ଼ ଗୁଡ଼ ଆଉଁସି ହେଉଛନ୍ତି । ଗମାଗମ ଝାଳ ବହି ଶେଯ ପାଛୁଡ଼ାଟା ତିନ୍ତି ଗଲାଣି ଢଉଏପାଏ ଧକେଇ ଧକେଇ ଭୁନି ହେଲେ । ଆଁ, କଣ, ପୋଇଲା ଗୁଡ଼ାକ ବାଡ଼େଇ ପକେଇଲେ ! ରାଗରେ— ଅପମାନରେ ଦେହ ପରି ମନ ପୋଡ଼ୁଛି—ଧାଇଁ ଯାଇ ଘୁଷୁରି ମୁଣ୍ଡିରେ ବାଡ଼େଇବାକୁ ମନ – କାମୁଡ଼ି ଚୂକୁଲା ଚୂକୁଲା କରି ଦେବାକୁ ମନ ! ଏଣେ ପ୍ରାଣରେ ଡର । କେଜାଣି ଆହୁରି ଗୁଡ଼ାଏ ବାଡ଼େଇ ପକେଇବେ, ପାଖ ପଶୁଛି କିଏ । ଜଳା ପୋଡ଼ା ଟିକିଏ ଊଣା ହେଲାରୁ ଟିକିଏ ଚିନ୍ତା କରିବାର ସମୟ ଉପସ୍ଥିତ ହେଲା ।

ପ୍ରଥମଚିନ୍ତା   ବାବୁ ସାଙ୍ଗରେ ଚମ୍ପାର ଭାବ ଅଛି ? ଭାବ ତ ଅଛି—ତା ମୁଁ କଣ ନ ଜାଣେ ? ବାବୁ ତ ମତେ କହିଛନ୍ତି, ଢେର ଧନ ଦୌଲତ, ତା'ର କେହି ନାହିଁ, ସବୁ ଆମକୁ ଦେଇ ପକାଇବ । ସେହି ତ ଭାବ—ବୁଢ଼ୀଟା କହିଲା, ପୀରତି ଅଛି ପୀରତି ଆଉ କଣ ? ମୁଁ ତ ଆଉ କିଛି ଦେଖେ ନାହିଁ । ସେ ସବୁ କଥା ଯାଉ, ଯେତେ ହେଲେ ତ ପୋଇଲୀଟା, ମତେ କଣ ବାଡ଼େଇବ ? ଘୁଷୁରି ପିଠି ଦୂର କରି ଦେବ ।

ଦ୍ୱିତୀୟ ଚିନ୍ତା—ବାବୁ କଣ ଘରୁ ଟଙ୍କା ଗଣି ଦେଇ ଚମ୍ପାକୁ ଏତେ ଗୁଡ଼ାଏ ଅଳଙ୍କାର ଗଢ଼େଇ ଦେଲେ ? ତା ଘରେ ତ ଏତେ ଟଙ୍କା, ସବୁ ତ ଆମକୁ ଦେବାକୁ ବସିଛି, ବାବୁ ପାଖରୁ କ୍ୟାଁ ନେବ ? ଚମ୍ପା ବାବୁ ହାତରେ ତା ନିଜ ଟଙ୍କା ଦେଇଥିଲା ସେହି ଟଙ୍କାରେ ବନାଇ ଆଣି ଦେଇଛନ୍ତି ପରା ? ଚମ୍ପା ଏତେ ପାଇଟି କରେ, କେବେ ତ କିଛି ମାଗେ ନାହିଁ । ବୁଢ଼ୀଟା ଟିକିଏ ଜୁଡ଼ାବାନ୍ଧି ଦେବ ତ, ଗୁଡ଼ଲ ଦିଅ, ଡାଲି ଦିଅ, ବାଇଗଣ ଦିଅ, କେତେ କଥା ମାଗିବ । ଚମ୍ପା ଆହୁରି ତା ଭାଇ ଦୋକାନରୁ ରୋଜ ସଞ୍ଜବେଳେ ଲେଣ୍ଡିକାନି—ସନ୍ଦେଶ ଆହୁରି ଆହୁରି କେତେ ରକମ ଖଜା ଆଣିଦିଏ, ବାବୁ କଚେରୀରୁ ଆସିବା ଆଗରୁ ମୁଁ ଖାଇ ବସିଥାଏଁ । ଚମ୍ପାକୁ ତଡ଼ି ଦେଲେ ତ ଆଉ ସେ ଖଜା ମିଳିବ ନାହିଁ । ଓହୋ—ଭାରି ଖଜା, ନାହିଁ ନାହିଁ - ତାକୁ ଦୂର କରି ଦେବି ? ଆଉ ଥରେ ଦେହରେ ଭଲ କରି ହାତ ବୁଲାଇ ଉ—ହୁ କଲେ ।

ଶେଷ ଚିନ୍ତା—ସେ କଥାଟା କଣ ହେବ—ମୁଁ ହାତଗଣନ୍ତା ଦି ପୁଞ୍ଜା ବରଷ ହେଲା ଅଇଲି—ପିଲାଟିଏ ମୁହଁ ଦେଖିଲି ନାହିଁ—ଏତେ ଧନ ଦୌଲତ କିଏ ଖାଇବ ? ଚମ୍ପା କହୁଛି, କଟକରେ ଢେର ଢେର ବାଞ୍ଝଙ୍କର ପୁଞ୍ଜା ପୁଞ୍ଜା ପୁଅ କରି ଦେଲାଣି ଆସନ୍ତା ଉଆଁସ ଦିନ କାକଟପୁର ମଙ୍ଗଳା ପାଖକୁ ଯିବ । ନିଶାଭାଗ ରାତିରେ ଦେଉଳୀ ପୂଜା କରିବ, କଳା ଛେଳି, କଳା କୁକୁଡ଼ା, କଳା ବିରାଡ଼ି, କଳା ଡାକୁଣୀ-ଫଳ ବଳି ଦେଲେ ତିନି ମାସ ତିନି ପକ୍ଷ ତିନି ଦିନ ତିନି ଘଡ଼ିରେ ଗର୍ଭ ହେବ । ଚମ୍ପାକୁ ତଡ଼ି ଦେଲେ ଏ କଥାଟା କିଏ କରିବ ? ତା ଛଡ଼ା ମୁଲକରେ ତ ଆଉ କାହାରିକୁ ଜଣାନାହିଁ । ଆଚ୍ଛା ବାବୁ ଆସନ୍ତୁ । ଉଃ ! ଏଡ଼େ ମଠ କ୍ୟାଁ ?

ନାଜର ବାବୁଙ୍କର ବସାରେ ପହଞ୍ଚିବାକୁ ବଡ଼ ଅନ୍ଧାର ଦଶ ଘଣ୍ଟା । କଚେରୀଶେଷ ପାଞ୍ଚଟା ବେଳରେ ଦୁଇଜଣ ପିଆଦା ମଫସଲରୁ ରୋଡ଼ସେସ ଅସୁଲ ଟଙ୍କା ଧରି ହାଜର । ଟ୍ରେଜରୀ ବନ୍ଦ ହୋଇ ଗଲାଣି—ପିଆଦାମାନଙ୍କ ପାଖରେ ଅଧିକ ଟଙ୍କା ରଖାଯିବାର ମନା । ପରବାନା ହିସାବ ସଙ୍ଗରେ ମିଳାଇ ସେମାନଙ୍କ ପାଖରୁ ଟଙ୍କା ଗଣାଗଣି କରି ନେବାକୁ ଏତେ ଡେରି ହୋଇଗଲା । ବସାରେ ପହଞ୍ଚି ଦେଖିଲେ, କେହି କୁଆଡ଼େ ନାହିଁ, ସବୁ ଅନ୍ଧକାର, ବଜାର ସଉଦା-ଗୁଡ଼ାକ ଚାରିଆଡ଼େ ବୁଣି ପଡ଼ିଛି । ଡକାଡକି କଲେ, ଶୁଣୁଛି କିଏ ? ପଦାଘରର କବାଟରେ ହାତ ଠୁକିଲେ, ଭିତରୁ ବନ୍ଦ । ଏତିକିବେଳେ ବାଡ଼ି ଦୁଆରୁ ଚି—ଚି କରି କିଏ ଡାକିବାର ଇଷାରା ଶୁଭିଲା । ଏଣେ ବୁଢ଼ୀଟା ପାମ୍ପା ମୂଳରେ ଅଚେତା ହୋଇ ପଡ଼ିଛି । ନାଜର ବାବୁ ବାଡ଼ିଦୁଆର ପାଖକୁ ଚାଲି ଯିବାରୁ ଅନ୍ଧକାରରେ କିଏ ଗୋଟାଏ ତାଙ୍କ ହାତ ଧରି ବାଡ଼ିକୁ ଭିଡ଼ି ନେଇଗଲା । ଅନ୍ଧକାରରେ ଦୁଇଟା ଲୋକ ବସି ଡେରି ବେଳଯାଏ ଗୁନ ଗୁନ କଥାଭାଷା ହେଲେ । ତାହା ବାଦ ବାବୁ ପଦାଘରର ଦୁଆରକୁ ଆସି ହାତରେ ଥିବା ଟଙ୍କା ଥଳିଟା ଝମ ଝମ କଲେ । କହୁଥାନ୍ତି, "ଆଜି କଚେରିରୁ ଏତେଟଙ୍କା ମିଳିଲା, ଟଙ୍କା ସବୁ ଗଣି ଆଣିବାକୁ ଏତେ ଡେରି ହୋଇଗଲା । ଏହି ଟଙ୍କାରେ ଗୋଟାଏ ସୁନା ଚମ୍ପାକଳି ବନାଇ ଦେବାକୁ ମନରେ କରିଥିଲି—ବକ୍‌ସିବଜାର ରାମ ପୃଷ୍ଟି ଆସି ଦୁଆରେ ବସିଛି—ବେକରୁ ମାପ ନିଅନ୍ତା, ଦୁଆର ତ ବନ୍ଦ—ବଣିଆଟା ଚାଲିଯାଉ ।"

ସାନ୍ତାଣୀ ବାହାରିବା ପାଇଁ ଆଗରୁ ସଜ ହେଉଥିଲେ, ନାଜର ବାବୁଙ୍କ କଥା ଶୁଣି ଧଡ଼ କରି କବାଟଟା ମେଲାଇ ବାରଦାକୁ ବାହାରି ପଡ଼ିଲେ । ବସିପଡ଼ି ଆଗପରି ଭୋ ଭୋ ରଡ଼ି—ଧକେଇ ହେବାରେ ଘଡ଼ିଏ ଖଣ୍ଡେ ବିତିଗଲା । ତହିଁ ଉତ୍ତାରେ ସନ୍ନେଇ ସ୍ୱାମୀଙ୍କ ପାଖରେ ଗୁହାରି କଲେ—"ଦେଖ ତ, ପୋଇଲି ଯୋଡ଼ାକ ମତେ କେତେ ବାଡ଼େଇ ପକାଇଛନ୍ତି ।" ନାଜର ବାବୁଙ୍କ ହାତଟା ଭିଡ଼ି ନେଇ ଆପଣା ପିଠି, ବାହୁ—ଆଉ ଜାଗା ସବୁ ଦେଖାଇଲେ । ନାଜର ବାବୁ ଅନ୍ଧାରି ଅନ୍ଧାରି ଦେଖିଲେ, ଲମ୍ବ ଲମ୍ବ ରୁଳା—ଉଆଉ ଫଡ଼ା ପରି ଗେବା ଗେବା ଫୁଲିଛି । ମୁହଁରେ ହାତ ବୁଲାଇବାରୁ ସାନ୍ତାଣୀ ଉହୁ—ଉହୁ କରି ଘୁଞ୍ଚି ଗଲେ । ଆଖି ପତାଟା ଉପରେ ଗେବା ପରି ଫୁଲିଛି । ବାବୁଙ୍କ ହାତକୁ ଚଟ୍ ଚଟ୍ ଲଗିଲା । "ଏ—ଏ କଣ ରକ୍ତ ? ଏଁ କିଏ ବାଡ଼େଇଲା ?" ସାନ୍ତାଣୀ କହିଲେ—"ପୋଇଲି ଯୋଡ଼ାକ—ପୋଇଲି ଯୋଡ଼ାକ ।" ଏଁ—ପୋଇଲିଯୋଡ଼ାକ ତୁମକୁ ବାଡ଼େଇଲେ ? ଭାରି ରାଗିମାଗି ଗର୍ଜନ କରି ଡାକିଲେ—ଶ—ହା ।" ଶହା ଆସି ପାଖରେ ଛିଡ଼ା ହୋଇଥିଲା—ଭୋ କରି ଡକାଟାଏ ପାଡ଼ିଲା—ସେ ଆକୁଳ କାନ୍ଦଣା ଶୁଣେ କିଏ ? ଦୁଇ ଜଣଙ୍କ ଗୋଡ଼ ଅଣ୍ଡାଳି—ସେଇ ଗୋଡ଼ ଉପରେ ତପ ତପ ମୁଣ୍ଡ ବାଡ଼େଇ ହେଉଥାଏ । ଆଲୁଅ ଥିଲେ ଦିଶନ୍ତା, ଭୂଇଁରେ ଗୁମ୍ ଗୁମ୍ ବିଧା ମାରି ମୁଣ୍ଡକୋଡ଼ା ବାହାନା କରୁଛି । ନୋହିଲେ ସେ ଯେତେ ମୁଣ୍ଡକୋଡ଼ ହେଲା, ଗୋଟାଏ କଁ୍ୟା ଯୋଡ଼ାଏ ମୁଣ୍ଡ ଫାଟି ଯାନ୍ତାଣି । ଶହା କାନ୍ଦି କାନ୍ଦି ବୋଲୁଥାଏ "ଆଜ୍ଞା ଆପଣ ତୁମେ ମୋ ସାନ୍ତାଣୀ—ମୋ ଠାକୁରାଣୀ, —ମୋ ଦେବତାଣୀ, ତୁମ ଆପଣ ଶ୍ରୀଅଙ୍ଗକୁ ହାତ ଉଞ୍ଚାଇବି ? ମୋ ହାତ ଛିଡ଼ି ପଡ଼ିବ । ମୋ ହାତରେ କୁଢ଼ୀ କୁଷ୍ଠୀ ବାହାରିବ, ମୋ ହାତରେ ପୋକ ପଡ଼ିଯିବ—ଭାତ ଖାତ ଖାଇ ପାରିବ ନାହିଁ—ଓପାସରେ ମରିଯିବି । ମୁଁ ଠାକୁର ଆଡ଼କୁ ହାତ ବଢ଼ାଇ କହୁଛି—ଜଗନ୍ନାଥ ଦୋହି ପକାଉଛି—ଆଖି ଛୁଉଁଛି ମୋ ଆଖି କଣା ହୋଇଯିବ—ତୁମ ଦୁହିଁଙ୍କ ପାଦ ଛୁଉଁଛି—ମୁଁ ମାରିନାହିଁ—ସେହି ଟୁଣିଆଣୀ ଚୈରଣୀ ବୁଢ଼ୀଟା ମାରିଛି ।" ନାଜର ବାବୁଙ୍କର ଶହାଠାରୁ କିଛି କ୍ରୋଧ ଊଣା ହୋଇ ଗଲାଣି । ପଚାରିଲେ, "ହୋଇ ହେ,

ଚମ୍ପା ଯେ କହୁଛି ମାରିନାହିଁ ?'' ନାଜରାଣୀ ଟିକିଏ ଗୁମ୍ ମାରି କହିଲେ, "ଅନ୍ଧାରରେ ଠିକ୍ ଦେଖିନାହିଁ— ଦୁଇ ଜଣଯାକ ମୋ ପାଖରେ ଛିଡ଼ା ହୋଇ ମାରିଲା ପରି ଜଣା ଯାଉଥାଏ ।'' ସେପରି ସେପରି ସ୍ବଗୃହପତିଙ୍କ ପକ୍ଷପାତିତ୍ୱ ପ୍ରିୟପାତ୍ର ପ୍ରତି କଞ୍ଚିତ୍ ଢଳପଡ଼ିବାର କଥା । ଚମ୍ପାର ନିର୍ଦ୍ଦୋଷିତା ପ୍ରତି ବାବୁଙ୍କର କଞ୍ଚିତ୍ ବିଶ୍ୱାସ ଜାତ ହେଲାଣି । ଏଥିର ଆଭାଷ ପାଇ ବୁଦ୍ଧିମତୀ ଚମ୍ପା ଚାଉକିରି କହି ପକାଇଲା, "ଆଜ୍ଞା ହଁ, ଆଜ୍ଞା ହଁ ସେଇକଥା, ଠିକ୍ ସେଇକଥା । ମୁଁ ଦେଖିଲି—ଡାକୁଣୀ ଅଇଁଠାଖାଇଟା ସାନ୍ତାଣୀଙ୍କୁ ବାଡ଼େଇ ପକାଇଲା— ପାଖକୁ ଧାଇଁଗଲି—ସେଟା ବାଡ଼େଇବା ବେଳେ ମୁଁ ମୁଣ୍ଡ ପିଠି ଦେଖାଇଦେଉଥାଏଁ । ମୁଁ କହିଲି ହାୟରେ ହାୟ ! କଣ ହେଲା ! ମତେ ମାରୁ, ମୋ ପିଠି ଭାଙ୍ଗି ଯାଉ, ମୁଁ କାଣୀ ହୋଇଯାଏଁ, ହାଡ଼ ଭାଙ୍ଗି ଯାଉ ପଛକେ, ସାନ୍ତାଣୀ ଶ୍ରୀଅଙ୍ଗକୁ ଆଞ୍ଚ ନ ଲାଗୁ । ଦେଖନ୍ତୁ, ଦେଖନ୍ତୁ—ସାନ୍ତାଣୀଙ୍କ ଲାଗି ମୋର କି ହାଲ ।'' ନାଜର ବାବୁଙ୍କ ହାତଟା ଟାଣି ନେଇ ତାହା ଦେହର ସବୁ ଜାଗାରେ ବୁଲେଇଲା । ସତକୁ ସତ ଚମ୍ପା ଦେହ ଗୋଟାକରେ ଜାଗା ଜାଗା ଫୁଲା ବସିଛି, ଗେବାପରି ଗୋଟାକୁ ଗୋଟା ଫୁଲିଛି । ଚମ୍ପାର ସାନ୍ତାଣୀ ଭକ୍ତି, ସ୍ୱାର୍ଥ-ତ୍ୟାଗ, ପରାର୍ଥକଷ୍ଟସ୍ୱୀକାର ପ୍ରଭୃତି ସୁମହତ୍ ଗୁଣମାନ ଦେଖି ନାଜର ବାବୁ ତ ପାଣି ହୋଇ ଗଲେଣି—ସମସ୍ତ ରାଗ ନାକଫୋଡ଼ିଆ ମା ଉପରେ ଢଳି ପଡ଼ିଲା—ସ୍ଥିର କଲେ, ବୁଢ଼ୀଟା ଦୁଇ ଜଣଙ୍କୁ ବାଡ଼େଇ ପକେଇଛି— ସେଇଟା ବଡ଼ ବଦମାଶ ପାଜି ତ ! ଚମ୍ପା କହିଲା, "ଆଜ୍ଞା ପାଜି ବୋଲି, ସେ ସବୁବେଳେ ବାଡ଼ିଖଣ୍ଡେ ଧରି କାଁ ବୁଲୁଥାଏ, ଆପଣ ଜାଣନ୍ତି ନାହିଁ ? କିମିତି ଜାଣିବେ ? ସବୁବେଳେ ତ କଚେରି ଦରବାରରେ । କେତେକରେ କେତେ ଥାଅନ୍ତାଣୀଙ୍କ, ଝିଅ ବୋଲି ନାହିଁ, ବୋହୂ ବୋଲି ନାହିଁ, ବାଡ଼େଇ ପକାଇଲାଣି ମରି ! ସମସ୍ତଙ୍କ ଦୁଆର ମନା, ଆପଣମାନେ ହେଲେ ଭୋଳା ମହାଦେବ, ଦୟା ଶଙ୍କର, ଦୁଃଖୀଟା ବୋଲି ଦୟାକରି ଦୁଆର ମଡ଼େଇଲେ । ଟିକିଏ କିଛି ଖଞ୍ଜ ଅଖଞ୍ଜ ପାଇଲା, କଥା ନାହିଁ ବାର୍ତ୍ତା ନାହିଁ, ଚଳେଇଲା ଠେଙ୍ଗା ! ଏଉଟା କଣ ଲୋ ! ମାଇକିନିଆ ଝିଅ ଫେର କାହାକୁ ହାତ ଉଠାଇବ ? ମତେ କେହି ହେଲେ ମାରିପକାଉ ପଛକେ ହାତ ଉଠାଇବ ? ରାମ ରାମ !' ସାନ୍ତାଣୀ କଣ କହିବାକୁ ଯାଉଥିଲେ, ଚମ୍ପା ଚଞ୍ଚଳ ଧାଇଁ ଯାଇ ତାଙ୍କ ଗୋଡ଼ ଧରି ବାହୁନି ବସିଲା—"ମୋ ସାନ୍ତାଣୀ ଗୋ – ଆପଣଙ୍କୁ ଏତେ ମାଡ଼ ମାରିଲା ! ମୋ ଠାକୁରାଣୀ ଗୋ—ଶ୍ରୀଅଙ୍ଗକୁ କେଡ଼େ ବାଧୁଥିବ ! ମୋ ମୁଣ୍ଡର ମଣି ଗୋ !'' ଚମ୍ପା ଆହୁରି ଢେର ବେଳଯାଏ କାନ୍ଦି କାନ୍ଦି ବାହୁନିଥାନ୍ତା, ଏତିକିବେଳେ ନାଜର ବାବୁ ଭାରି ଗର୍ଜନ କରି କହିଲେ, 'ସେ ବଦମାସ କୁଜୀ ବୁଢ଼ୀଟା କାହିଁ ?' ଚମ୍ପା ସାନ୍ତାଣୀଙ୍କ ପାଦପଦ୍ମ ଛାଡ଼ି ଛିଡ଼ା ହୋଇ ବୁଢ଼ୀକୁ ଖୋଜିବାକୁ ଧାଇଁଲା । ତେତେବେଳକୁ ନାକଫୋଡ଼ିଆ ମା ଆପଣା ଘରରେ କଣା ଲୋଟାଟାରେ ଲୋଟାଏ ପାଣି ପିଇ କନ୍ଥା ଖଣ୍ଡ ପାରି ଶୋଇ ପଡ଼ିଲାଣି । ଏମାନଙ୍କ କଥାଭାଷା ବେଳେ ବୁଢ଼ୀଟା ପାଖ ଉହାଡ଼ରେ ଥାଇ ସବୁ ଶୁଣୁଥାଏ – କେତେଥର ମନେ କଲା, ବାହାରି ପଡ଼ି ଆପଣାର ନିର୍ଦ୍ଦୋଷିତା ବିଷୟରେ ସାନ୍ତଙ୍କୁ ଦୁଇ ଚାରି ପଦ କିଛି କହିବ । ହେଲେ ସେ ତ ବାଡ଼େଇଛି, ଠେଙ୍ଗା ଦାଗ ଦେଖା ଗଲାଣି, କଣ କହିବ ? ହେଉ ହେଉ, କୁଆଡ଼କା ପାଣି କୁଆଡ଼େ ଯାଉଛି, ଦେଖାଯାଉ । ଯେତେବେଳେ ଦେଖିଲା ତିନିଟାଯାକ ଦୁଷମନ— ସବୁ ଗୁଡ଼ାକ ବନୁଆ—ଆହୁରି ଜାଗାଟା ବେଜାଗା— ହୋଇଥାନ୍ତା ବିଚବଜାର ସଡ଼କ ଦାଣ୍ଡ—ଖଣ୍ଡେ ପଟେ ନ ଦେଖି କଣ ଛାଡ଼ନ୍ତି—ଆଉ ନା । ଧୀରେ ଧୀରେ ଅଣ୍ଟାଳ ଅଣ୍ଟାଳ ଠେଙ୍ଗାଟା ହାତ କଲା, ଧୀରେ ଧୀରେ ଉଠି ଚୌକାଠରି ଟପି ମାରି ଦୌଡ଼ । ଅନ୍ଧାରରେ ଚାରି ଜାଗାରେ ପଡ଼ି ଗଲାଣି – ଉଠି ପଡ଼ି ପଛକୁ ଥରେ ଥରେ ଚାହିଁ ଦେଇ ଦେ ଦୌଡ଼ । ଚମ୍ପା ମାଡ଼ ଖାଲି ଅଣ୍ଟା କଟିରୁ ଉପରେ ବାଜିଥିଲା – ପଡ଼ା ଉଠାରେ

ଆଣ୍ଠୁ ଗଣ୍ଠି ଛିଡ଼ ଲହୁଲୁହାଣ ହୋଇଗଲାଣି । ଏକ ଦମରେ ଘରେ ଦାଖଲ ।

ଅନ୍ଧାରରେ ଖୋଜ ଖୋଜ ନ ପାଇ ଚମ୍ପା ଝଟକରି ନିଆଁ କାଠିଟାକୁ ଘଷିଦେଲା । ବଇଠାଟାଏ ଧରି ଅନ୍ଧସନ୍ଧ ଘର ସବୁ ଜାଗାରେ ଖୋଜ ପକାଇଲାଣି । କାହାରିକୁ ନ ପାଇ କହିଲା, "ହେଉ ହେଉ ଯା ଯା, ତୋ' ମା ଠାକୁରାଣୀଙ୍କ ମୁଣ୍ଡରେ ଚମ୍ପା ଚଢ଼େଇ ଥିଲା — ମୋ ହାତରୁ ବର୍ତ୍ତିଗଲୁ । ମୁଁ ସାନ୍ତାଣୀଙ୍କୁ ଆଗୁଳ ଅକଳରେ ପଡ଼ିଗଲା, ନୋହିଲେ କ ସେ ମୋ ହାତରୁ ବର୍ତ୍ତି ଯାଇ ଥାନ୍ତା । ମୋ ସାନ୍ତାଣୀକୁ ମାରିବୁ – ମୋ ଠାକୁରାଣୀକୁ ମାରିବୁ, ଆଉ ସମସ୍ତଙ୍କୁ ପିମ୍ପିଡ ମାରୁ, ସେହି କଥା ପାଇଛୁ ପରା ? ମୋ ସାନ୍ତାଣୀ ଯେ ହାକମାଣୀ— ମୋ ସାନ୍ତାଣୀ ଯେ ଠାକୁରାଣୀ । ହେଉ ହେଉ— ରାତି ଆଗେ ପାହୁ – ସାଇବ ମତେ ଫାଶି ନଟକାଉ ପଛକେ ତା ବେକ କାମୁଡ଼ ଲହୁ ପିଇ ତ, ତେବେ ଜଳ ଛୁଇଁବ ।"

ନାଜରାଣୀ ଆପଣା ଦେହକୁ ଅନାଇ ଦେଖିଲେ, ଶେଯ ପାଚ୍ଛୁଡ଼ାଟା ଦେହରେ ଭିଡ଼ ହୋଇଛନ୍ତି । କିଛି ନ କହି ଚଞ୍ଚଳ ଘର ଭିତରକୁ ଚାଲିଗଲେ । ବାବୁ କିଛି କଥା ବୁଝି ପାରିଲେ ନାହିଁ ।

ନାଜର ବାବୁ କଚେରି ପୋଷାକ ପାଲଟିଲେ, ଜଳଖିଆ କରି ସ୍ଥିର ହୋଇ ବସିଲେ । ଚମ୍ପା ଗୁଡ଼ାଖୁ ସାଜ ଆଣି ଦେଲା – ଭଡ଼ର ଭଡ଼ର କରି ହୁକା ଟାଣୁଥାନ୍ତି । ଚମ୍ପା ଧାଇଁ ଯାଇ ଗୁଡ଼ାଏ ମିଠେଇ ଖଜା ନେଇ ଆସିଲା—ଗୋଡ଼ ହାତ ଧରି ସାନ୍ତାଣୀଙ୍କୁ ପାଖରେ ବସାଇଲା । ଅନାଇଁ ଅନାଇଁ ଅଧା ଖାଇବା ଅଧାଗିଲା କରି ସାନ୍ତାଣୀ ଢେକଣ ମାରି ଦେଇ ଟଁ—ଟଁ କରି ଲୋଟାଏ ପାଣି ପିଇ କିଞ୍ଚିତ୍ ସୁସ୍ଥ ହେଲେ ।

ଚମ୍ପା ଉପରେ ସାନ୍ତାଣୀ ଖୁସି ହୋଇ ଗଲେଣି । ଚମ୍ପା ନାଜର ବାବୁଙ୍କୁ ଆଉ ଚିଲମେ ଗୁଡ଼ାଖୁ ସାଜ ଦେଇ ସାନ୍ତାଣୀଙ୍କ ପାଇଁ ଗୋଟାଏ ଶେଯ ପାରି ଦେଲା । ଆହା ଏ ଅଙ୍ଗକୁ କେତେ ବାଧୁଥିବ କହି ପଦ ସେବାରେ ଲଗିଗଲା ।

ନାଜର ବାବୁ ଭଡ଼ର ଭଡ଼ର ଗୁଡ଼ାଖୁ ଟାଣୁ ଟାଣୁ ପଚାରିଲେ, "ହୋଇ ହେ, ସେ ବୁଡ଼ୀଟା ତୁମକୁ କିଁଆ ବାଡ଼େଇଲା ?" ସାନ୍ତାଣୀ କଣ କହିବାକୁ ଯାଉଥିଲେ, ଚମ୍ପା ଚଞ୍ଚଳ କହିଲା, "ଆଜ୍ଞା ବୁଝି ନାହାନ୍ତି କଣ, ସାନ୍ତାଣୀ ଅସଲ କଥା ଭେଦ ପାଇ ନାହାନ୍ତି । ମୁଁ ତେର ଦିନୁଁ ଜାଣେ । ତାହାର ମତଲବ, ଏ ଘରେ ସେ ବଜାର ସଉଦା କରିବ । ସାନ୍ତାଣୀ ବୁଦ୍ଧିକୁ କ ପଟାନ୍ତିର, ସବୁ ବୁଝିଗଲେ—ତାକୁ ପଇସା ନ ଦେଇ ମୋ ହାତରେ ସଉଦା କଣିଲେ । ତାର ● ଘରି ରାଗ ଥିଲା—ଆଜ ମୁଁ ସଉଦା ଆଣି ସାନ୍ତାଣୀଙ୍କୁ ବୁଝେଇ ଦେଉଛି, ପହଞ୍ଚିଗଲା । ଆଉ କ ସେ କୋପ ସମ୍ଭାଳ ପାରେ – ଚଳେଇଛି ତ ଠେଙ୍ଗା ଆଉ କଣ !" ସାନ୍ତାଣୀ କହିଲେ "ହଁ – ହଁ ସେଦିନ ଯୋଡ଼ାଏ ପଇସାର ପାନ କଣିବାକୁ ଦେଇଥିଲି, ଅଧଲକର ଆଣି ଦେଢ଼ ପଇସା ଚୋରି କଲା ।"

ଚମ୍ପା—"ଆଜ୍ଞା ସାନ୍ତ ! ଶୁଣି ଆଜ୍ଞା ହେଉ—ଶୁଣି ଆଜ୍ଞା ହେଉ । ମୁଁ ଜାଣି ମିଛେଇ – ମୋ କଥା ସବୁ ପୋଡ଼ ଯାଉ—ନିଆଁ ଲାଗି ଯାଉ ! ସାନ୍ତାଣୀ କଣ ଆଜ୍ଞା କରୁଛନ୍ତି, ଶୁଣନ୍ତୁ—ଶୁଣନ୍ତୁ । ତୁମ ପରି ହାକମ —ତୁମ ପରି ବୁଦ୍ଧିଆ ପଣ୍ଡିତ ମୂଲକରେ କିଏ ଅଛି ? ସାନ୍ତାଣୀଙ୍କ ପଦକରୁ ବୁଝନ୍ତୁ, ଭାତହାଣ୍ଡିରୁ ସିଝା ଗୋଟାଏ ଚିପିବେ ?"

ନାଜର ବାବୁ କହିଲେ, "ସେଇଟା ବଡ଼ ଚୋରଣୀ ତ ।"

ଶଶା—"ଶ୍ରେଣୀ ବୋଲି, କଟକ ସହର ଯାକ ପାଞ୍ଚ ବରଷିଆ ପିଲାକୁ ପଚାରନ୍ତୁ, ସେ କହିଦେବ । କେତେ ଜାଗାରୁ ବାଡ଼ିଆ ଖାଇଲାଣି । ଆପଣ ଦୁଇଜଣ ହେଲେ ଦୟାଣସାର, କିଏ ଖାଇଗଲା ଖାଇ ଯାଉ, ଯେବେ ଗଲା ଯେବେ ଯାଉ । ନୋହିଲେ ସେଇ ପାନକଣା ଦିନେ କଣ ସେ ବର୍ତ୍ତି ଯାଇଥାନ୍ତା ?"

ଇତ୍ୟବସରେ ଶଶା ତିନଗିନା ମାଲପା ସାନ୍ତାଣୀଙ୍କ ଶ୍ରୀଅଙ୍ଗରେ ମଖେଇ ଦେଇ ସାରିଲାଣି । ଅଧାଅଧି ତେଲ କମିତି ତା ମାଡ଼ଜାଗାମାନରେ ଲାଗି ଜରଜର ହୋଇଛି ।

ଶଶା ଧାଇଁ ଯାଇଁ ଆଉ ଚିଲମେ ଗୁଡ଼ାଖୁ ସଜ କରି ଆଣିଲା । ଦେଖିଲା ଗୁଡ଼ାଖୁ ଭଲ ଲାଗିଛି— ନାଜରଙ୍କ ମୁହଁରୁ ଭକ୍ ଭକ୍ ଧୂଆଁ ବାହାରୁଛି । ଶଶା କହିଲା, 'ଆଜ୍ଞା ସାନ୍ତେ ଶୁଣିଚନ୍ତି, ସେ ଶ୍ରେଣୀଟା ସାନ୍ତାଣୀଙ୍କ ଆଗରେ କହୁଥିଲା, ଆପଣ କମିତି ହାତରୁ ଟଙ୍କା ଦେଇ ମତେ ଗହଣା ଗଢ଼େଇ ଦେଇଚନ୍ତି ? ଗହଣା ଟଙ୍କା ଯେ ମୁଁ ଦେଇଥିଲି, କ'ଣ କିଏ ନ ଜାଣେ ? ଦଶ ଜଣ ଆଗରେ କଥା । ଦୁର୍ତ୍ତୀଟା ବି ତେତେବେଳେ ପାଖରେ ଛିଡ଼ା ହୋଇ ଦେଖୁଥିଲା— ସେଇ କଥା ଆଜି ସାନ୍ତାଣୀ ଆଗରେ କହିଲା ।"

କଥାଟା ଶୁଣି ତିନିଜଣ ଯାକ ଖୁସି—

ନାଜରାଣୀ ଖୁସି—ତାଙ୍କ ଅନୁମାନ ଠିକ୍—ତାଙ୍କର ଖୁବ୍ ବୁଦ୍ଧି ।

ଶଶା ଖୁସି—ତା କଥାଟା ଭଲ ଲାଗିଗଲା ।

ନାଜର ଖୁସି—ସହଜରେ ଖଲାସ ପାଇଗଲେ ।

———

## -୨୧-

## ଉତ୍ତରରାୟଙ୍କ ଅବସାନ

"ପ୍ରାଣୀର ଭଲ ମନ୍ଦ ବାଣୀ,
ମରଣକାଳେ ତାହା ଜାଣି ।" (ଭାଗବତ)

ଶ୍ରୀ ଶ୍ରୀ ଶ୍ରୀ ଉତ୍ତରରାୟଙ୍କ ପୀଡ଼ା ଆରମ୍ଭଠାରୁ ରାଜ୍ୟର ପ୍ରଜାପାଟକ—ଭଲ ଲୋକ ଉଆସକୁ ଧାଡ଼ ଛୁଟିଛନ୍ତି । ଜ୍ୱରଟା ଦିନରୁ ଦିନ ବଳି ପଡ଼ୁଛି । ଶାସ୍ତ୍ରଚଢ଼ୁଆ ପୁରୁଣା ଟାଣୁଆ ଟାଣୁଆ ଚାରିଜଣ କବିରାଜ ଥକିଗଲେଣି । କଟକରୁ ଯେଉଁ ଡାକ୍ତରଟା ଆସିଥିଲା, ନଗଦ ଦେଢ଼ଶ ଟଙ୍କା ବିଦାୟି ବାନ୍ଧି ଜବାବ ଦେଇ ଚାଲିଗଲେ । ଜ୍ୱରର ଆଜି ତେର ଦିନ—ନିହାତି ବଳି ପଡ଼ୁଛି । ଉତ୍ତରରାୟଙ୍କୁ ଉଆସ ମଧ୍ୟରୁ ଯେନି ଆସି କୁଳଦେବତା ଯୁଗଳକିଶୋର ଜୀଉଙ୍କ ନାଟମନ୍ଦିର ଆଗ ମେଲା ପକା ତୁଳସୀଚଉରା ମୂଳରେ ଦେବତାଙ୍କ ଆଡ଼କୁ ମୁଣ୍ଡ କରାଇ ଗୋଟିଏ ସଫାସୁତୁରା ଧୋବ ଶେଯରେ ଶୁଆଇ ଦେଇଛନ୍ତି । ଉପରେ ଖଣ୍ଡିଏ ଭଲ ଶାଲ ଢଙ୍କା । ନାସାଗ୍ରରୁ କେଶ ପର୍ଯ୍ୟନ୍ତ ହରିମନ୍ଦିର ଚିତା—ବେକରୁ ଛନ୍ଦିଯାଏ ପ୍ରସାଦୀ ତୁଳସୀ ଧଣ୍ଡା ଲମ୍ବାଇ ଦେଇଛନ୍ତି । କୋଡ଼ିଏ ହାତ ଦୂରରେ ବୃଦ୍ଧ କବିରାଜ ପୁରୁଣା ତାଳପତ୍ର ଲେଖା ଶାସ୍ତ୍ରର ଖେଦାଏ ପାଠ ଧରି ଚୁନି ଚୁନି ବିଚାରରେ ମନ ଦେଇଛନ୍ତି । ଆଜି ସବୁ ଔଷଧ ବନ୍ଦ—ପାଠରୁ ବାହାରିଛି, ତ୍ରୟୋଦଶ ଦିବସ ରାତି ଶେଷ ପର୍ଯ୍ୟନ୍ତ ଜ୍ୱରର ପ୍ରକୋପ ବଢ଼ିବ । ମଣିମା ଉତ୍ତରରାୟଙ୍କ ପାଦ ଦିଓଟି ଧରି ମୁଖକୁ ବକ ବକ କରି ଚାହିଁଛନ୍ତି, ଆଖିରେ ପଲକ ପଡ଼ୁ ନାହିଁ । କାଠ ପିତୁଳାଟି ପରି ସ୍ଥିର ହୋଇ ବସିଛନ୍ତି । ଧାଈମା ସରସ୍ୱତୀ ଦେଈ ଉଙ୍କିଟିଏ ଧରି ଟିକିଏ ଟିକିଏ ପାଦୁକା ରୋଗୀଙ୍କ ମୁଖରେ ଦେଉଛନ୍ତି—ସେ କେତେ ବା ଢୋକୁଛନ୍ତି, ବେଶି ଭାଗ ଦୁଇ କଳ ଦେଇ ବହି ପଡ଼ୁଛି । ବଡ଼ପୁଅ ଟୀକାଏତ ନରହରି ସବୁକଥା ବୁଝିଲାଣି—ବାପ ମାଙ୍କ ମୁହଁକୁ ଜେଜୀମା ମୁହଁକୁ ନିହାତି ଆକୁଳ ହୋଇ ବାରମ୍ବାର ଚାହୁଁଛି । ଆଖି ଯୋଡ଼ାକ ଲୋତକରେ ଛଳଛଳ । ସାନପୁଅ ଶ୍ରୀହରି ବୟସ ଅଟେଇବର୍ଷ, କିଛି ବୁଝୁ ନାହିଁ । 'ମା, ବାପା କିମିତି ହେଲେ—ବାପା କିମିତି ହେଲେ' କହି ମା ବେକ ଧରି ପିଠିରେ ଝୁଲି ପଡ଼ୁଛି । ସରସ୍ୱତୀ ଦେଈ ଠାରି ଦେବାରୁ ଯୋଡ଼ାଏ ପୋଇଲି ଧାଇଁ ଆସି

ଶ୍ରୀହରିକୁ ମନ୍ଦିର ପ୍ରଚ୍ଛକୁ କାଢ଼ିନେଇ ନେଇଗଲେ । ଶ୍ରୀହରି ଯିବାକୁ ନାରାଜ—ଘର ପାଖିଠାଏ କଲା । ପୋଇଲାଟା କଣ୍ଠେଇ ଯୋଡ଼ାଏ ଦେଇ ବହଲିଉଥାଏ ।

ବାହାରେ ଲୋକରେ ଲୋକାରଣ୍ୟ ସୋରିଷ ମୁଠାଏ ବିଞ୍ଚୁଡ଼ି ଦେଲେ ତଳେ ପଡ଼ିବ ନାହିଁ । ହେଲେ ତୁଣ୍ଡ ନାହିଁ—ଗୋଳ ନାହିଁ—ତୁନିତାନି—ଆକୁ ଟାକୁ ପଚରା ପଚରି—କଣ ହେଲା ? କିଏ ଜବାବ ଦେଉଛି, କିଏ ବା ଜାଣୁଛି ? ସିଂହ ଦ୍ୱାରରେ କଳଣୀ—କବି-ରାଜଙ୍କର ମନା, ରୋଗୀଙ୍କ ପାଖକୁ କେହି ଯିବନାହିଁ—ଏଣେ ଉଆସ ବନ୍ଦ ହୋଇଥିବାରୁ କାହାରି ଯିବାର ଆଦ୍ୟୃତ୍ତ ନାହିଁ । ହରିବୋଲ ବାରିକ, ମନ୍ଦିର ସମ୍ମୁଖସ୍ଥ ବଉଳ ମୂଳରେ ମୁଣ୍ଡଟି ପୋତି ବସିଛି । ଧନ ରାଉତ ପାଖରେ ବସିଟିଏ ତୁନି ତୁନି ପଚାରିଲା, "ହୋଇଏ ବାରିକ ପୁଅ, କେମନ୍ତ ବୁଝୁଛ ? ଭିତର ହାଲ ତ କିଛି ଜଣା ପଡୁନାହିଁ, କଥା କଣ ?" ବାରିକେ ଫଁ କରି ନିଶ୍ୱାସଟାଏ ପକାଇ କହିଲେ, "ଏଁ—ହରିବୋଲ—ବାପା ଧନ ! କଣ ପଚାରୁଛ, କଣ କହିବ —କଥାଟା ଭାବିଲେ ହୃଦ ଫାଟି ଯାଉଛି । ତୁ ତ କାଲିକା ପିଲା, କଣ ବୁଝିବୁ ? ମୁଁ ଦେଖି ଦେଖି ମୁଣ୍ଡ ବାଳ ଝୋଟ । ସ୍ବାଙ୍କ ତିନି ପୁରୁଷ ଦେଖିଲି, ଏଇ ବାତକପି ବେମାରି । ଆଜି ରାତି କାଟିଲେ ତେବେ ଯାଇ କଥାବାର୍ତ୍ତା ।" ଧନ ରାଉତ କହିଲା, "ବୁଝିଲି ବାରିକ ପୁଅ ! ବାପା ଉତ୍ତର ଯେ ଥିଲେ, ଶୁଣିଛି ବୟସ ହୋଇ-ଥିଲା—ପନ୍ଦର କି ସତର ଗଣ୍ଡା, ତାଙ୍କ ଯିବାର ବେଳ ହୋଇଥିଲା । ଆଉ ଆମ ଉତ୍ତର ତ କାଲିକା ପିଲା ବୋଲି କୁହ । କାଲି ରାତିରେ ମା କହୁଥିଲା, ଆମ ଶଙ୍କରା ଆଉ ଉତ୍ତରଙ୍କର ଏକା ବୟସ । ମାଘ ମାସରେ ଜନ୍ମ । ଶଙ୍କରର ଗଣ୍ଡି ହେଲା - କୋଡ଼ିଏ ଏଟାର ମାଘ ମାସରେ ପୂରିଗଲା ।"

ଠିକ୍ ସନ୍ଧ୍ୟା, ଠାକୁରଙ୍କ ଆଳତି ଘଣ୍ଟା ଢଂ ଢଂ କରି ଯିମିତି ବାଜୁଛି, ମନ୍ଦିର ଭିତରୁ ସ୍ୱର ଗୋଟିଏ ଆକୁଳ କ୍ରନ୍ଦନ ଉଠିଲା । ସେହି ରଡ଼ ଶବ୍ଦଟା ସାଙ୍ଗେ ସାଙ୍ଗେ ଗାଁ ଗୋଟାକଯାକ ବୁଲିଗଲା । ସ୍ତ୍ରୀ ପୁରୁଷ, ବୁଢ଼ା, ଟେଣ୍ଡିଆ, ପିଲା—ଠାଁ ଜାଗାରେ ରଡ଼ ଗୁଡ଼ୁଛନ୍ତି । ପିଲାଗୁଡ଼ାକ କିଛି ନ ବୁଝି ନ ସୁଝି କାନ୍ଦି ଲେଟି ଯାଉଛନ୍ତି । ଏଣେ ଗୃହମଣି ମଣିମା ପାଟିକରି କାନ୍ଦି-ବାକୁ ନାହାନ୍ତି—ଥରକୁ ଥର ପଡ଼ି ଝାମ ଯାଉଛନ୍ତି । ପିଲା ଯୋଡ଼ାକ ବାପା ବାପା କହି କାନ୍ଦି କାନ୍ଦି ଧକେଇ ଗଲେଣି । ସ୍ୱରସ୍ୱତୀ ଦେଈ କାହାକୁ ସମ୍ଭାଳିବେ, ଏଣେ ନଜର ତ ଠିକଣା ନାହିଁ । ପିଲା ଯୋଡ଼ାକୁ କୋଳରେ ଯାକି ଧରିଛନ୍ତି, ମଣିମା ମୁହଁରେ ପାଣି ଗୁଣ୍ଡ ମାରି ଚେତା କରାଉଛନ୍ତି । ଜେଜୀମା ଯେପରି ବୁଦ୍ଧିମନ୍ତୀ, ସେହିପରି ଧୈର୍ଯ୍ୟଶୀଳା । ସେହି ଘୋର ଦୁର୍ଯୋଗ ସମୟରେ କହିଲେ, ଯାହା ହେବାର ତ ହୋଇଗଲାଣି – ଏବେ ପ୍ରାଣୀ ତିନିଟାକୁ କିମିତି ବଞ୍ଚାଏଁ । ଉଆସ ମଧ୍ୟରୁ ଦଣ ବାରଟା ପୋଇଲା ପରିଜନ ଧାଇଁ ଆସି ସେହି ତିନି ଜଣଙ୍କୁ କୋଳରେ ଧରି ଶୂନ୍ୟେ ଶୂନ୍ୟେ ଟେକି ନେଇଗଲେ ।

ରାତି ଅନୁମାନରେ ଛ ଘଡ଼ି—ଗ୍ରାମଗୋଟାକଯାକ ଅନ୍ଧାର—ସଞ୍ଜଦୀପ ଲାଗିନାହିଁ । କାହାର ଗୋଡ଼ ହାତ ଚଳୁଛି ଯେ କାମରେ ମନ ଦେବେ – କାନ୍ଦି କାନ୍ଦି ସମସ୍ତେ ଥକି ଗଲେଣି । ମଣିମା ଉଆସକୁ ବାଜେ ହୋଇ ଯିବାରୁ ଭଙ୍ଗା ବନ୍ଧରେ ପାଣି ସୁଅ ପରି ଲୋକେ ମନ୍ଦିର ଭିତରକୁ ପଶିଗଲେ । ଉତ୍ତରରାୟଙ୍କୁ ଦର୍ଶନ-କରିବା ଲାଗି ଗୋଟାକ ଉପରେ ଗୋଟାଏ ପଡ଼ୁଛନ୍ତି । ସଦର ମଫସଲ ଅମଲା, ଆଉ ଆଉ ଭଲ ଲୋକେ ଏକ ସ୍ଥାନରେ ରୁଣ୍ଡ ହୋଇ ବସିଥିଲେ । ସଦର ମୁକ୍ତାରକରଣ ଗଙ୍ଗାଧର ମହାନ୍ତିଏ କହିଲେ, "ପେଷ୍କାରେ ! ଅଧରାତି ଯେ ହେଲା ଆସି, ଆଉ ଏ ରକମ ବାବୁରି ବସି ରହିଲେ କ'ଣ ଚଳିବ !" ସମସ୍ତଙ୍କର ଯେମନ୍ତ ଗୋଟାଏ ଚେତା ପଶିଗଲା—ଆୟୋଜନରେ ଲାଗିଲେ । ଗୋଟାଏ ସୁନ୍ଦରମଣ୍ଡିତ ପଲଙ୍କରେ ଶ୍ମଶାନଯାବାର ଆୟୋଜନ

ହେଲା । ବାଜାବାଇଁର, ନିଶାଣ ଶଙ୍ଖଡ଼ା ମଶାଲ ଆଲୁଅ, ବୃଶଚାକି କୀର୍ତ୍ତନରେ ଯାତ୍ରା ଆରମ୍ଭ ହେଲା । ଆଗ ପଛ ଚଉଆଡ଼େ ଦେଖଣାହାରୀ ଭିଡ଼—ସମସ୍ତଙ୍କ ମୁଖରେ ଚିତ୍କାର ହରିବୋଲ—ଆକାଶଟା ଯେମନ୍ତ ଭାଙ୍ଗି ପଡ଼ୁଛି । ଗ୍ରାମର ବୋହୂଝିଅ ଗୁଡ଼ାକ ଲାଜ ସରମ ଛାଡ଼ି ଦାଣ୍ଡ ଦୁଇ ପାଖରେ କାତର ହୋଇ ଶଙ୍ଖ ହୁଳହୁଳି ଶବ୍ଦ କରୁଛନ୍ତି । ଜଣା ଯାଉଛି, ଯେମନ୍ତେ ଦେବଦୂତମାନେ ଦେବତାଙ୍କୁ ବହେ । ଶ୍ମଶାନଯାଏ ବାହୁଡ଼ିବା ସଙ୍ଗେ ରାତି ପାହାଁପାହାଁ । ହରିଧ୍ୱନି କୀର୍ତ୍ତନ ଶଙ୍ଖ ହୁଳହୁଳି ଶବ୍ଦ ରାତିରେ ଚାରି ପାଞ୍ଚ କୋଶ ପର୍ଯ୍ୟନ୍ତ ଶୁଭୁଥିଲା । ବୋଲନ୍ତି ଢୋଲବାଇଦ କୋଶେ, ଭୁଣ୍ଡବାଇଦ ସହସ୍ରେ କୋଶ । ରାତି ପାହାନ୍ତାଠାରୁ ବେଳ ଛ ଦଣ୍ଡ ମଧ୍ୟରେ ଗୋଟା କଳ୍ପାର ଲୋକ ଉଆସଠାରେ ଜୁଟିଲେ ।

ଆଜ ଗାଁ ଲୋକଙ୍କ ଚୁଲିରେ ଲୁଣ୍ଠା ପଡ଼ିବାକୁ ନାହିଁ । କାହାର ମୁହଁରେ ଆଉ କିଛି କଥା ନାହିଁ, କେବଳ ଉତ୍ତରରାୟଙ୍କ କଥା—ପୋଖରୀ ତୁଠ ମାଇକିନିଆ ଦଳରେ କେବଳ ଉତ୍ତରରାୟଙ୍କର ଗାନ୍ଥଣି, ଆଉ ବାହୁନା କାନ୍ଦିବା ।

ଉତ୍ତରରାୟ ଧାର୍ମିକ, ପ୍ରଜାପାଳକ, ପରୋପକାରୀ ଥିଲେ । ତାଙ୍କ ସୁମଧୁର କଥୋପକଥନ ଯେଉଁ ଲୋକ ଶୁଣିଛି, ସେ ଜୀବନଯାକ ଭୁଲି ପାରିବ ନାହିଁ । ମାଗୁଣିଆ ତାଙ୍କଠାରୁ ନିରାଶ ହୋଇ ବାହୁଡ଼ିବା କେହି କହି ପାରିବ ନାହିଁ । ପ୍ରଜାଙ୍କ ବିପଦ ଆପଦ ବେଳେ ଉତ୍ତରରାୟ ଏକା ସାହା । ଲୋକେ କଥାରେ କହନ୍ତି—"ଯାହାକୁ ନ ହେବେ ଠାକୁରେ ସାହା, ତାହାକୁ ରଖିବେ ଉତ୍ତରରା ।" ନହେଲା, ସେ ଜଣେ ବଡ଼ ଭଲ ଲୋକ, ପରୋପକାରୀ ଥିଲେ । ହେଲେ କଣ ସେ ସବୁ ଲୋକଙ୍କର ଉପକାର କରିଛନ୍ତି ? ତେବେ କାହିଁକି ଦେଶଯାକ ଲୋକ ତାଙ୍କ ଲାଗି ଝୁରୁଛନ୍ତି ? କଳ୍ପା ଗୋଷ୍ଠୀକଯାକ ଯେଉଁଠାରୁ ଶୁଣ ତାଙ୍କପାଇଁ ହାୟ ହାୟ ! କଥା କଣ କି; ସେ ମାନବ ମାତ୍ରକର ହିତୈଷୀ ଥିଲେ—ତେଣୁ ସମସ୍ତେ ତାଙ୍କ ବିଚ୍ଛେଦରେ ବ୍ୟାକୁଳ । ସେ ଗୋଟିଏ ଦେବପ୍ରକୃତିର ଲୋକ ଥିଲେ—ଦେବତା ଗୋଟିଏ ସାଙ୍ଗ ଛାଡ଼ିଗଲେ କିଏ ଦୁଃଖିତ ନ ହେବ ?

ଗୋଟିଏ ପ୍ରଚଳିତ ସାଧାରଣ କଥା ଅଛି, ସେ କଥାଟି ପ୍ରକାଶ କରିବାର ଲୋଭ ସମ୍ଭାଳି ହେଉନାହିଁ । ବଜାରରେ ସାମାନ୍ୟ ବୁଢ଼ୀ ସ୍ତ୍ରୀ ଘର କରି ରହୁଥାଏ । ଦିନେ ଜଣେ ବାଟୋଇ ପଣ୍ଡିତ ଆଉ ଆଡ଼େ ଜାଗା ନ ପାଇ ତାହା ଘରେ ବସା କରି ରହିଥିଲେ । ଏମନ୍ତ ସମୟରେ ଗୋଟିଏ ଶବକୁ ଶ୍ମଶାନକୁ ନେଇଯିବାର ହରିବୋଲ ଶବ୍ଦ ଶୁଭିଲା । ଘରବାଲୀ ବୁଢ଼ୀ ତାହାର ପୋଇଲୀକୁ ଡାକି କହିଲା, "ଯା ତ ଲୋ ! ବୁଝିଆ ତ, ଲୋକଟା ସ୍ୱର୍ଗକୁ କି ନରକକୁ ଗଲା ?" ପଣ୍ଡିତେ ଶୁଣି ତ କାବା । ଏ କଣ, ଲୋକ ମଲେ କିଏ ସ୍ୱର୍ଗକୁ ଗଲା, କିଏ ନରକକୁ ଗଲା—ଏତେ ଶାସ୍ତ୍ର ପଢ଼ିଛୁଁ, କାହିଁରୁ ଜଣାଗଲା ନାହିଁ—ଅଶିକ୍ଷିତା ବୁଢ଼ୀଟାକୁ ଜଣା ! ସେ ପୁଣି ବୁଝି ଆସିବା ସକାଶେ ପଠାଉଛି ପୋଇଲୀଟାକୁ ? ଆଉ ସମ୍ଭାଳି ହୋଇ ପାରିଲେ ନାହିଁ—ଭେଦଟା ଜାଣିବାପାଇଁ ବୁଢ଼ୀକୁ ଯାଇ ପଚାରିଲେ । ବୁଢ଼ୀ ଉତ୍ତର ଦେଲା, "ପଣ୍ଡିତେ ! ଏତିକି କଥା କଣ ବୁଝିଲ ନାହିଁ ? ଯେଉଁ ଲୋକ ମରିଗଲେ ଲୋକମାନେ ହାହାକାର କରନ୍ତି, ଜାଣିବେ, ସେ ଲୋକଟି ଗଲା ସ୍ୱର୍ଗକୁ ; ପୁଣି ଯେଉଁ ଲୋକଟା ମଲେ ଆଉ ସମସ୍ତେ କହନ୍ତି, ଜଞ୍ଜାଳଆଟା ମଲା ଭଲ ହେଲା, ଜାଣିବେ ସେଟା ଗଲା ନରକକୁ ।"

---

-୨୧-

## ଚନ୍ଦ୍ରମଣିର ବୈଧବ୍ୟ

"ବିଧିନା ପ୍ରତିପାଦୟିଷ୍ୟତା,
ନବବୈଧବ୍ୟମସହ୍ୟବେଦନଂ ।" (କୁମାରସମ୍ଭବ)

ସ୍ୱାମୀ ସୁନ୍ଦର ବା କୁତ୍ସିତ ହେଉନ୍ତୁ, ଧନୀ ବା ଦରିଦ୍ର—ଧାର୍ମିକ ବା ପାପ ପରାୟଣ ହେଉନ୍ତୁ, ହିନ୍ଦୁ ସ୍ତ୍ରୀ ପକ୍ଷରେ ସ୍ୱାମୀ ପରମ ଦେବତା, ସ୍ୱାମୀ ଜୀବନ-ସର୍ବସ୍ୱ । କେବଳ ଇହକାଳ ବୋଲି ନୁହେ, ପରକାଳରେ ମଧ୍ୟ ସଙ୍ଗୀ ଆଉ ସହାୟ । ସ୍ୱାମୀ ଜୀବନଯାତ୍ରା ନିର୍ବାହର ଅବଲମ୍ବନ, ସୁଖ ସୌଭାଗ୍ୟ-ଲାଭର ଉପାୟ । ସ୍ୱାମୀର ଗୌରବରେ ସ୍ତ୍ରୀ ଗୌରବିଣୀ—ଧନରେ ଧନବତୀ—ସ୍ୱାମୀର ପଦମର୍ଯ୍ୟାଦାର ଅଂଶ-ଭାଗିନୀ—ଯଶରେ ଯଶସ୍ୱିନୀ—ସ୍ୱାମୀର ଅର୍ଜିତ ସମ୍ପତ୍ତିର ସମ୍ଭୋଗକାରିଣୀ । ସେହି ସ୍ୱାମୀ ସ୍ତ୍ରୀର ଜୀବନସର୍ବସ୍ୱ ବିନା ଆଉ କଣ ଅଭିହିତ ହୋଇପାରେ ? ବିବାହ ବେଦି ଉପରେ ପୁରୋହିତ ଦଶଦିଗପାଳଙ୍କୁ ସାକ୍ଷୀ କରି ଉଭୟଙ୍କ କରଯୁଗଳରେ ଯେଉଁ ପୁଷ୍ପମାଳାର ଗ୍ରନ୍ଥି ଦେଇଥିଲେ, ତାହା ଜୀବନବ୍ୟାପୀ ଅଚ୍ଛେଦ୍ୟଗ୍ରନ୍ଥି । ହିନ୍ଦୁ ସ୍ତ୍ରୀର କୌଣସି ଗୋଟାଏ ସ୍ୱାତନ୍ତ୍ର୍ୟବୋଧ ନାହିଁ—ସ୍ୱାମୀ ମାତ୍ର ସର୍ବସ୍ୱ । ସ୍ୱାମୀ ସ୍ତ୍ରୀ ମଧ୍ୟରେ ପ୍ରକୃତ ଦାମ୍ପତ୍ୟପ୍ରେମର ଅଭାବ ଥିଲେ ମଧ୍ୟ ପାର୍ଥିବ ପାରତ୍ରିକ ସମସ୍ତ ବିଷୟରେ ପରସ୍ପର ଆବଦ୍ଧ । ସ୍ୱାମିହୀନା ସ୍ତ୍ରୀ ଅସହାୟା, ଧନହୀନା, ମଳିନା, ଅଶୁଭ-କାରିଣୀ, ମାଙ୍ଗଳ୍ୟକାର୍ଯ୍ୟରେ ଅମଙ୍ଗଳା । ଦାକ୍ଷିଣାତ୍ୟ ବାସିନୀ ବିଧବା ମୁଣ୍ଡିତା ଏବଂ ଆବୃତମସ୍ତକା, ସଧବା ସ୍ତ୍ରୀ ଅନାବୃତାଶିରା ଏବଂ ମୁକ୍ତକୁନ୍ତଳା । ଯେହେତୁ ସ୍ୱାମୀ ତାହାର ମସ୍ତକର ଆବରଣ । ଉତ୍ତମ ପ୍ରଥା । ଯେତେ ନୀଚ ଅସୁନ୍ଦର ଧନହୀନ ହେଉ ପଛକେ, ସ୍ୱାମୀ ବିଚ୍ଛେଦ ସ୍ତ୍ରୀ ପକ୍ଷରେ ଅସହନୀୟ, ଧ୍ୱଂସାତ୍ମକ ଯନ୍ତ୍ରଣାଦାୟକ । ଆଜି ଆମ୍ଭମାନଙ୍କ ମହିମା ଚନ୍ଦ୍ରମଣି ଦେଈଙ୍କ ପକ୍ଷରେ ? ଅତୁଳନୀୟରୂପ, ବ୍ୟାୟାମଚର୍ଚ୍ଚା-ଜନିତ ସୁଗଠିତ ଅଙ୍ଗ, ଦୋଷସମ୍ପର୍କରହିତ ନିର୍ମଳ ଚରିତ୍ର, ଦେଶବ୍ୟାପୀ ଖ୍ୟାତି, ନରପତିସୁଲଭ ବିଭବ, ଦାତା, ଧର୍ମବୀର, ନିପୁଣ ଅଧ୍ୟୟନନିରତ, ଲୋକହିତୈଷୀ ପ୍ରଜାବତ୍ସଳ, ଏକପତ୍ନୀବ୍ରତ—ଏପରି ସ୍ୱାମୀ ବିଚ୍ଛେଦରେ ଅନପଗତଯୌବନା ସ୍ତ୍ରୀ ପ୍ରାଣରେ କିପରି ଯାତନା ଉପସ୍ଥିତ ହୋଇପାରେ । କେବଳ ତାହା ନୁହେଁ, ଚନ୍ଦ୍ରମଣୀ ଦେଈଙ୍କର ପ୍ରକୃତରେ ସ୍ୱାମୀ ଥିଲେ ଜୀବନ-ସର୍ବସ୍ୱ—ସ୍ୱାମୀ ପ୍ରତ୍ୟକ୍ଷ ଉପାସ୍ୟ ଦେବତା । ତାଙ୍କର ଯାହା କିଛି ବାରବ୍ରତ, ଧର୍ମକାର୍ଯ୍ୟ ସାଧନ କେବଳ ସ୍ୱାମୀଙ୍କ ମଙ୍ଗଳକାମନାରେ । ସ୍ୱାମୀଙ୍କ ପ୍ରୀତିପଦ କାର୍ଯ୍ୟ ବିନା ସେ ଆଉ କିଛି କାର୍ଯ୍ୟ ଜାଣୁ ନ ଥିଲେ । ଉଆସ ମଧ୍ୟରେ ଯେତେ ଲୁକ୍କ ହେଉ ପଛକେ ସ୍ୱାମୀଙ୍କର କୌଣସି କାର୍ଯ୍ୟ ଅନ୍ୟ ଦାସ ଦାସୀ କରି ଦେବ, ଏଇଟା ତାଙ୍କର ଅଭିପ୍ରେତ ନୁହେ । ସବୁବେଳେ ଯେମନ୍ତ ସ୍ୱାମୀଙ୍କ ଆଦେଶକୁ କାନ ଡେରି ରହିଥାନ୍ତି । ତାଙ୍କର ନିଜସ୍ୱ ବୋଲି ଗୋଟାଏ କିଛି ନ ଥିଲା । ତାଙ୍କ ହୃଦୟ ତଳଦେଶ ପର୍ଯ୍ୟନ୍ତ ସ୍ୱାମୀପ୍ରେମରେ ପରିପୂର୍ଣ୍ଣ ଥିଲା । ତାଙ୍କର ହୃଦୟର ପ୍ରତ୍ୟେକ ତନ୍ତ୍ରୀ ଯେମନ୍ତ ସ୍ୱାମୀ ନାମ ଶ୍ରବଣରେ ଝଙ୍କାରିତ ହୋଇ ଉଠେ । ନିଜର ମୂଲ୍ୟବାନ୍ ଅଳଙ୍କାର ବା ଟଙ୍କା ସୁନା ପ୍ରତି ଅନାଦର ଭାବ ଦେଖି ଧାଈ ମା ବିରକ୍ତ ହେଲେ ସେ ଯେମନ୍ତ ଅତି ତାଚ୍ଛଲ୍ୟଭାବରେ ହସି ହସି ବୁଲି ଯାନ୍ତି । ବୋଧ-କରୁଁ ତାଙ୍କ ମନରେ ଭାବ ଏହି—ସ୍ପର୍ଶମଣି ଯାହାର କରଗତ, ତାହାର ଟଙ୍କା ସୁନାର ପ୍ରୟୋଜନ କଣ ? ବର୍ତ୍ତମାନ ସ୍ୱାମୀଙ୍କୁ ହରାଇ ଚନ୍ଦ୍ରମଣି ଦେଈଙ୍କର ସମସ୍ତ ଆଶା ଭରସା, ସମସ୍ତ ଆନନ୍ଦ ଉତ୍ସବ ଅନନ୍ତ ଅନ୍ଧକାରରେ ବିଲୀନ ହୋଇଅଛି । ପ୍ରଖର ଆଲୋକ ଉପରେ ସହସା ଘୋର ଅନ୍ଧକାର ଉପସ୍ଥିତ ହେଲେ ସେହି ଅନ୍ଧକାରଟା ନିତାନ୍ତ ପ୍ରବଳରୂପେ ଜଣାଯାଏ । ଚନ୍ଦ୍ରମଣି ଦେଈ ଆବାଲ୍ୟ ଦୁଃଖ ଯନ୍ତ୍ରଣା ସହିତ ଅପରି-ଚିତା, ସ୍ୱଭାବବଶରେ ନିରୋଗଶରୀରା, ପିତାମାତାଙ୍କ

ଆଦର ଏବଂ ସ୍ନେହରେ ପ୍ରତିପାଳିତା—ଧାତ୍ରୀମାର ଲୀଳାମୟୀ ଆନନ୍ଦପ୍ରତିମା ଥିଲେ । ଏଣେ ଶ୍ୱଶୁର ଗୃହରେ ରାଜଲକ୍ଷ୍ମୀ—ସ୍ୱାମୀର ନୟନାନନ୍ଦକାରିଣୀ ଜୀବନମୟୀ ପ୍ରେମପ୍ରତିମା । ଏବେ ସେ ସ୍ୱାମୀଙ୍କୁ ହରାଇ ଚନ୍ଦ୍ରମଣି ଦେଈଙ୍କ ହୃଦୟରେ କିରୂପ ଭାବ ଜାତ ହୋଇଥିବ—ସ୍ୱଭାବ-ବର୍ଣ୍ଣନ-ଅକ୍ଷମ; ଭାଷା ଏବଂ ଭାବ ସୁଶୃଙ୍ଖଳରୂପେ ପ୍ରକାଶ କରିବା ବିଷୟରେ ଅପଟୁ ଏହି କ୍ଷୁଦ୍ର ଲେଖକ ଠାରୁ ତାହା ଜାଣିବାକୁ ପ୍ରତ୍ୟାଶା କରିବା ବିଡ଼ମ୍ବନା ମାତ୍ର । ଯଦି କେହି ଯୁବତୀ ପାଠିକା ଜନ୍ମାନ୍ତର—ଅର୍ଜିତ ଦୁଷ୍କୃତ ଯୋଗେ ଦେବୀତୁଲ୍ୟ ସ୍ୱାମୀରତ୍ନ ହରାଇଥାନ୍ତି, ସେହି କେବଳ ହୃଦୟରେ ଅନୁଭବ କରିବାକୁ ସମର୍ଥ ହେବ । ସର୍ପଦ୍ରଂଷ୍ଟ ଲୋକହିଁ ବିଷର ଯନ୍ତ୍ରଣା ଅନୁଭବ କରିଥାଏ । ଚନ୍ଦ୍ରମଣି ଦେଈଙ୍କ ଜୀବନଗ୍ରନ୍ଥି ସମସ୍ତ ଯେମନ୍ତ ଛିନ୍ନଭିନ୍ନ ହୋଇ ଯାଇଅଛି । ଇନ୍ଦ୍ରିୟ ସମସ୍ତ ଅନାୟତ୍ତ ଏବଂ କର୍ମାକ୍ଷମ । ପୃଥିବୀ ସହିତ ପଦଯୁଗଳର ସମ୍ପର୍କ ରହିତ ହେବା ପରି ଜଣାଯାଏ । ନେତ୍ରଯୁଗଳ ଦୃଷ୍ଟିଶକ୍ତି ରହିତ । ନିଷ୍ପନ୍ଦ-ଭାବରେ ଭୂମିତଳେ ପଡ଼ି ରହିଛନ୍ତି—ନିଶ୍ୱାସ ପ୍ରଶ୍ୱାସ ମାତ୍ର ଜୀବନସଞ୍ଚାର ପରିଚାୟକ ।

---

-୨୩-

## ନାଜର ବାବୁଙ୍କ ସଙ୍ଗୁଲା

"କିଛି ହେଉଥାଉ ପିନା,
ଲୁହାଇ ଲୁହାଇ ପୁଟ ଦେଉଥିଲେ
ଲୁହାଟା କି ହେବ ସୁନା ।"
(କବିସୂର୍ଯ୍ୟ ବ୍ରହ୍ମା ।)

ଅନନ୍ତ ଶକ୍ତିମାନ୍ ବିଧାତାଙ୍କ ବିଧାନରେ ଚନ୍ଦ୍ର ସୂର୍ଯ୍ୟ ସ୍ୱ ସ୍ୱ କକ୍ଷରେ ଭ୍ରାମ୍ୟମାନ ଥାଇ ଜଗତରେ ସମାନ ଭାବରେ ଦିବା ନିଶି ବିଧାନ କରିଅଛନ୍ତି । ଦୁର୍ଦ୍ଦିନ ସୁଦିନ ବୋଲି ଯାହା ବୋଲୁଁ, ସେଇଟା ଆମ୍ଭମାନଙ୍କ ସକାଶେ । ନଶିପୁର ଗଡ଼ର ଏହି ଘୋର ଦୁର୍ଯୋଗ ସମୟରେ ମଧ୍ୟ ଦିନ ସମାନ ଭାବରେ ଚାଲିଅଛି ।

ସାମନ୍ତ ଉତ୍ତରବିସ୍ୱଙ୍କର ବିୟୋଗର ଆଜି ଚତୁର୍ଥ ଦିବସ । କୌଳିକ ପ୍ରଥା ଅନୁସାରେ ସାତଦିନ ଠାରୁ ସପିଣ୍ଡିକ୍ରିୟା ଆରମ୍ଭ ହେବ । ସଦର ମଫସଲର ସମସ୍ତ ଅମଲା, ଗଡ଼ର ମୁଖ୍ୟା ମୁଖ୍ୟା ଲୋକମାନେ ଏବଂ ସ୍ୱୟଂ ଅରିଦମନ ଶ୍ରେଷ୍ଠବିସ୍ୱ ଓ ତାଙ୍କ ପୁତ୍ର ପୀତାମ୍ବର ଶ୍ରେଷ୍ଠବିସ୍ୱ ଉପସ୍ଥିତ । ଯୁଗଳ କିଶୋର ଜିଉଙ୍କ ମନ୍ଦିର ସିଂହଦ୍ୱାର ପାଖ କଚେରି ମେଲାରେ ସଭାର ଅଧିବେଶନ —କ୍ରିୟା ସରଞ୍ଜାମ ତାଲିକା ବିଷୟରେ ଆଲୋଚନା ଲାଗିଛି । ହରିବୋଲ ବାରିକ ଠିଆହୋଇ ହାତଯୋଡ଼ି କହିଲା, "ଏ—ହରିବୋଲ୍—ଆଜ୍ଞା ଦଗଧ ଆଟିକାର ଡାବ ମୋ ପାଖରୁ ନେଉନ୍ତୁ—ତିନି ପୁରୁଷର ଡାବ ମୋତେ ଜଣା ।" ଠିକ୍ ତେତିକବେଳେ ଦୂରରୁ ସବାରି ଡାକ ଶୁଭିଲା । ଦୁଇ ଜଣ ପାଇକ ଧାଇଁଯାଇଁ ବୁଝିଆଇଲେ ନାଜର ବାବୁ କଟକରୁ ଆଇଲେ । ଶ୍ରେଷ୍ଠବିସ୍ୱ ଆଜ୍ଞା କଲେ, "ଭଲ ହେଲା, ସମସ୍ତେ ମିଳିମିଶି ବିଚାର କରି ତାଲିକା ଠିକ୍ କରିବା ।" ହରିବୋଲ ବାରିକ କହିଲା, "ଏଁ—ହରିବୋଲ—ହୁଁ, ଆଜ୍ଞା ଗୁମୁରୁ କଣ ଆଜ୍ଞା ହେଲା—କଣ ହେଲା ?" ଆପଟମାନେ ଉଆସ ସିଂହ-ଦୁଆର ଆଗରେ ସବାରିଟା ଦୁମ୍ କରି ଥୋଇଦେଲେ । ନାଜର ନଟବର ଦାସେ ସବାରିରୁ ବାହାରି ସଲଖେ ସଲଖେ ଉଆସ ଭିତରକୁ ଚାଲିଛନ୍ତି । ଅମଲା ଫଏଲା-ମାନେ ଧାଇଁ ଯାଇ ନାଜରବାବୁଙ୍କୁ ମଜୁରା କଲେ । ସେ ତଳକୁ ଅନାଇ କାହାରିକୁ ନ ଦେଖିଲା ପରି ଉଆସ ଭିତରକୁ ଚାଲିଗଲେ । ସେହି ସମୟରେ ଉଆସ ଭିତରୁ ଗୋଟିଏ ପ୍ରବଳ ଭୁଣ୍ଡ ଶୁଭିଲା—ବାହାର ଲୋକେ ଶୁଣୁଛନ୍ତି, କେବଳ ଗୋଟାଏ ପୁରୁଷର ପାଟି । ମୋ ଗୃହରେ—ମୋ ନଚ୍ଛୁ ରେ—ମୋ ଶିରୁ ରେ—ଏ

ଧାଈମା—ଏପରି ବାରମ୍ବାର କହି ନାଜରବାବୁ ଭୂଇଁରେ ଲୋଟି ଯାଉଛନ୍ତି । ରୁମାଲରେ ବାରମ୍ବାର ପୋଛି ପକାଇବାରୁ ଚକ୍ଷୁରେ ଜଳ ଦେଖା ଯାଉ ନାହିଁ । ଚୂଡ଼ାମଣି ଦେଈ ବାଡ଼କୁ ଆଉଜି ପ୍ରତିମାଟି ପରି ବସିଛନ୍ତି—ଭାଇଙ୍କ ଆକୁଳ କ୍ରନ୍ଦନ ଶୁଣୁଛନ୍ତି କି ନାହିଁ ସେ ଜାଣନ୍ତି । ଘଡ଼ିକ ଉତ୍ତାରେ ନାଜର ବାବୁ ଆପେ ଆପେ ସାବ୍ଧାନ ହୋଇ ମଣିମାଙ୍କୁ ଶୁଣାଇ ଶୁଣାଇ ସରସ୍ୱତୀ ଦେଈଙ୍କୁ କହିଲେ, "ଧାଈମା ! ମୁଁ ମାସକ ଆଗରୁ ଆସିଥାନ୍ତି ହେଲେ – କଟକରେ ଇମିତକା ଦୁଷମନ ଲଗିଛନ୍ତି ଯେ, ହାକମଙ୍କୁ କହି ମୋ ଆସିବା ବନ୍ଦ କରି ଦେଲେ । ମୁଁ ଆସିଥିଲେ କଣ ଏତେ କଥାଟା ହୋଇଥାନ୍ତା ? ସେହି ଯେ ଡାକ୍ତରଟା ଆସିଥିଲା, କଟକରେ ତା କଥା ସମସ୍ତଙ୍କୁ ଭଲରୂପେ ଜଣା, ଏଠିକା ଲୋକେ ବା ଜାଣିବେ କିପରି ? ଠିକ ବେଳ ପାଇ ଗଲେ । ଅର୍ଥାତ୍ ନାଜରବାବୁ ପ୍ରକାରାନ୍ତରେ ଧାଈମାଙ୍କୁ ବୁଝାଇ ଦେଲେ, କୌଣସି ଦୁଷ୍ମନ୍ ସେହି ଡାକ୍ତର ହାତରେ ଉତ୍ତରବସୁଙ୍କୁ ମରାଇ ଦେଲା—ନୋହିଲେ ସେ କଣ ମରିଥାନ୍ତେ ? ମଣିମା ତ କିଛି ବୁଝୁ ନାହାନ୍ତି" ଧାଈମାଙ୍କୁ କଥାଟା କଣ ସ୍ୱପ୍ନ ପରି ଜଣା ଯାଉଛି – ବଲ ବଲ କରି ନାଜରଙ୍କ ମୁହଁକୁ ଚାହୁଁଛନ୍ତି । ଚନ୍ଦ୍ରକଳା ନାଜରବାବୁଙ୍କ ସଙ୍ଗେ ସଙ୍ଗେ କଟକରୁ ଆସିଛି, ସକ୍ ସକ୍ କରି କାନ୍ଦି କାନ୍ଦି ମଣିମାଙ୍କ ପିଠିରେ ଗୋଡ଼ରେ ହାତ ବୁଲାଉଥାଏ । ଧାଈମା ବାରମ୍ବାର ଚନ୍ଦ୍ରକଳାକୁ ଅନାଇବାରୁ ନାଜର ବାବୁ ବୁଝି ପାରି କହିଲେ, ଏଇଟି ମାଙ୍କ ପାଖରେ ଅଛି—ମାଙ୍କର ଧର୍ମଝିଅ । ତୁମ୍ଭମାନଙ୍କ ସେବା କରିବା ଲାଗି ମା ପଠାଇଛନ୍ତି—ଏହାର ନାମ ଲଳିତା ।" ଚନ୍ଦ୍ରକଳା (ଲଳିତା) କହିଲା, "ଧାଈମା ! ସବୁ କଥା ଶୁଣିଲେଣି, କଟକଯାକ – ଦେଶଯାକ ହାଟ ବସି ଗଲାଣି, ଏକା ମା କଥା କଣ ପଚାରୁଛନ୍ତି ? ମା ମୋ ହାତରେ କହି ପଠାଇଛନ୍ତି, ଆପଣ ଏଠି କାହାରିକୁ ହେଲେ ପରତେ ଯିବେ ନାହିଁ । ଭିତରେ ଭିତରେ କଣ କଥା ଚାଲିଛି, ଆପଣ ଉଆସ ଭିତରେ ଥାଇ କଣ ବୁଝିବେ ? ବାଘ ମଲେ ବିଲୁଆ ରଜା । ଏବେ ସମସ୍ତେ ଏକଯୋଟ ବାନ୍ଧିଲେଣି, ପିଲା ଦିଓଟିଙ୍କର ସର୍ବନାଶ କରି ଲୁଟିପୁଟି ଖାଇବାକୁ ଇଚ୍ଛା । କଟକ ହାକମ ସବୁ କଥା ଶୁଣି ଭାଇସ୍‌ରୟଙ୍କୁ ପଠାଇଛନ୍ତି । ସେତେବେଳେ ରକ୍ଷାଟାଣ କାହିଁଯିବ ? "ମଲଁଷି ଶିଙ୍ଗ ଫଟା, ଯୁଝିବାବେଳକୁ ଗୋଟା ।" ସରସ୍ୱତୀ ଦେଈ ଯାହା କିଛି ଧୈର୍ଯ୍ୟ ଧରି ରହିଥିଲେ, ତାଙ୍କର ସମସ୍ତ ଜ୍ଞାନ ହଜିଲାଣି । କାନ ଭେଁ ଭେଁ – ମୁଣ୍ଡ ବୁଲାଉଛି । ସତକୁ ସତ ଉତ୍ତରବସୁଙ୍କ ବିଯୋଗ ଦିନରୁ ବାହାରର କିଛି ଖବର ଜାଣନ୍ତି ନାହିଁ । କଚେରି ଅମଲାମାନେ ଅତି ସାନ ସାନ କଥା ଗୁଡ଼ାକ ତାଙ୍କୁ ନ ପଚାରି କାହିଁରେ ହାତଦେଉ ନ ଥିଲେ, ଏବେ ସେମାନଙ୍କ ପାଖରୁ କିଛି କଥା ଶୁଣା ଯାଉ ନାହିଁ । ଦୁର୍ଯ୍ୟୋଗ ଦେଖି ଅମଲା ଫଏଲା ବା ଷ୍ଟେଟବସ୍ତୁ ସାନ୍ତ ଇଚ୍ଛା କରି ଉଆସ ଭିତରକୁ କିଛି ଖବର ପଠାଉ ନାହାନ୍ତି । ସେଥିର ମର୍ମ, ଉଆସ ଭିତରେ ତ ସମସ୍ତେ ଅଚେତ ହୋଇ ପଡ଼ିଛନ୍ତି, ତାହା ଉପରେ ଆଉ କଣ ଖବରଦେବେ ? ବାହାରର କାର୍ଯ୍ୟଗୁଡ଼ାକ ସମସ୍ତେ ଏକଯୋଟ ହୋଇ ତୁଲେଇ ନେଉଛନ୍ତି । ଏବେ ବଳେ ବଳେ ସେ କଥାର ଅର୍ଥ ବିପରୀତ ହେଉଛି । ଦୁର୍ଯ୍ୟୋଗ ଉପସ୍ଥିତ ହେବାବେଳେ ସବୁଥିରେ ଏହିପରି ଅଖଞ୍ଜ ହୋଇଥାଏ ଟି ! ଧାଈମା କହିଲେ, "କଣ କହୁଛୁ ରେ ନଟ ?" ଧାଈମା ନଟକୁ ଭଲକରି ଚିହ୍ନନ୍ତି । ହେଲେ ପଚରାପଚରି କରି କଥାଟା କଣ ବୁଝିବେ, ବଳ ନାହିଁ-- ବେଳ କାହିଁ ? ସହଜ ବୁଦ୍ଧିଟା ବର୍ତ୍ତମାନ ଯେ ବଣା । ନଟବର ବାବୁ ମନ ମଧ୍ୟରେ କିଛି ଖୁସି ହେଲେଣି । କହିଲେ, "ମୁଁ କଣ କହିବି ଧାଈମା, ପଛନ୍ତେ ବଳେ ବଳେ ସବୁକଥା ପଦାରେ ପଡ଼ିବ—ତେତେବେଳେ ସହଜରେ ବୁଝିପାରିବ । ସେ ସବୁ କଥା ପଛକୁ ଥାଉ, କଟକ ହାକମ ତୁମ ପାଖକୁ ଖବର ଦେଇଛନ୍ତି, ମା ବି ଏଇ ଲଳିତାକୁ ପଠାଇ ଦେଲେ । ତୁମକୁ କିଛି କରିବାକୁ ହେବ ନାହିଁ; ଖାଲି ପିଲା ଦିଓଟିଙ୍କୁ ସମ୍ଭାଳ

ରଖିବ, ବାହାରକୁ ଘୁଡ଼ିବ ନାହିଁ । ହାକିମ ନିଜେ ଆସି ସବୁ କଥା ସଜଲ କରି ଦେବେ । ଉକ୍ତୁଣି ଜିଆସରେ ପହରାଦେବା ସକାଶେ ମୋ ସାଙ୍ଗରେ ସିପାହୀ ପଠାଇଛନ୍ତି । ଏତିକି କଥା ବୁଝୁନାହାନ୍ତି, ସାହେବ ସରକାରୀ ସିପାହୀ କିଆଁ ପଠାଇଲେ ? ସେହିପରି ଅଖଞ୍ଜିଆ କଥା ଶୁଣିଛନ୍ତି ବୋଲି ସିନା ! ଥାଉ ସେ ସବୁକଥା ପଛେ ହେବ — ଖାଲି ତୁମ ହୁସିଆର ଲାଗି ବିପଦ ଠାରି ଦେଲି । ଉକ୍ତୁଣି ରାତି ପାହିଲେ ନିସ୍ପା, ଯିମିତି ସିମିତି ଲୋକର ନୁହେଁ, ମୁଲକର ରଜା, କୋଡ଼ିଏ ରାଇଜରେ ନାମ ଡାକ-ଯଶ ଅପଯଶକୁ କିଏ ପଚାରେ ? ନିସ୍ପା ବଖତ ହେଲେ ସେ ତାଙ୍କ ଆତ୍ମାର ଗତି ନାହିଁ — ବୈତରଣୀରେ ବଳେ ବାଧା ପଡ଼ିଯିବ । ଏକାବେଳକେ ନରକାନ୍ତ । ଖାଲି କଣ ତାହିଁ, ବଂଶର—ପିଲାମାନଙ୍କ ଅମଙ୍ଗଳ । ତୁମ ପରି ବୁଦ୍ଧିମନ୍ତୀ ଥାଉଁ ଥାଉଁ କି ଇମିତି କଥାଟାଏ ଘଟିବ ? ମୁଁ ତା କେବେଁ କରେଇ ଦେବନାହିଁ ।" ସରସ୍ୱତୀ ଦେଈ ତ ଏକାବେଳେ କାଠମୂର୍ତ୍ତି । ତାଙ୍କର ସବୁ ବୁଦ୍ଧି ଲୋପ । କହିଲେ. "ନଟ, କଣ କରିବାକୁ ହେବ କହ ।" "ଧାଈ ମା ! ହାକିମ ମତେ ରାତାରାତି ଆଉ କିଆଁ ପଠାଇଲେ । ଉକ୍ତୁଣି ଖାଲି ଘର କଥା ନୁହେଁ, ହାକିମଠାରେ ଜବାବ ଦେବି, କାମର ଟିକିଏ ବଖଡ଼ା ହେଲେ ମୋର ଚାକିରି ଯିବାର କଥା । ମୁଁ ମନରେ କରିଥିଲି, ଧାଈ ମା, ଏତେ ଚାକର ବାକର—ଏତେ ପାଞ୍ଜିଆ ପଟୁଆରି, ସବୁ ସଜଲି ରଖିଥିବେ । କେହି କୁଆଡ଼େ ନାହିଁ—ଯେ ଯାର ଆପଣା ଆପଣା ଘରେ । ମେଇ ମେ ମଉସା ମଉସା ଡାକ ପାଡ଼ୁଥାଏ, ଏତେ ନାଟ ଗୋବର୍ଦ୍ଧନ ଦାସ, କିଏ ? କଚେରି ତହବିଲରେ ଯେତେ ନଗଦ ଥିଲା, ସବୁ ବାଣ୍ଟି କୁଣ୍ଢେଇ ନେଇ ମୁହଁ ପୋଛି ଭୁନଭାନ ହୋଇ ବସିଛନ୍ତି । ଚିନ୍ତା କର ନା, ଧାଈମା ! ମୁଁ କଣ ଛୁଞ୍ଚା ହାତରେ ଆସିଛି ? ହାକିମ ଟଙ୍କା ଦେଇ ପଠାଇଛନ୍ତି । ଦଶ ହଜାର ପଡ଼ୁ କୋଡ଼ିଏ ହଜାର ପଡ଼ୁ, ତୁଲେଇ ନେବି । ତେବେ କଣ ଜାଣନ୍ତି, କଟକ ହେଲା ପନ୍ଦର କୋଶ ଦୂର । ଆଉ କାମ ତ ନୁହେଁ — କାମ ଅଟକିଲା ସାଙ୍ଗେ ସାଙ୍ଗେ ଚଳେଇବାକୁ ହେବ — ଆଉ କାମ ନୁହେଁ ଯେ ଦିନେ ଓଳିଏ ମଠ ହେଲେ ଚଳିବ । ଦୁଇ ଚାରି ହଜାର ନିଅଣ୍ଟ ପଡ଼ିଲେ ତୁମେ ଚଳେଇ ଦେଇଥିବ, "ମୁଁ କଟକରେ ଗୋଡ଼ି ଦେବ, ଆଉ ପଠାଇ ଦେବ ।" ସରସ୍ୱତୀ ଦେଈ କହିଲେ, "ନା ରେ ନଟ ! ଏତେ ଟଙ୍କା ହେବନାହିଁ ପରା— ଚାନ୍ଦ ତହବିଲରେ ଦୁଇ ହଜାର ଅନ୍ଦାଜ ଟଙ୍କା ଅଛି, ନେବୁ ତ ନେଇ ଯା ।" ନଟବରବାବୁ ଦୁଇ କାନରେ ହାତ ଦେଇ କହିଲେ, "ରାମ ! ରାମ ! କଣ କହୁଛ ଧାଈ ମା ? ସେ ଟଙ୍କା ଯେ ମୋ ପକ୍ଷରେ କାଳିଆ ଗରଳ—ମୋ ପକ୍ଷରେ ଗୋ-ରକ୍ତ, ସେ ଟଙ୍କା କି ଛୁଇଁବି । ହେଲେ ନିହାତି କାମ ଅଚଳ ହେଲେ ଲଳିତା ହାତରେ ଖବର ଦେବି, ଦୁଇ ଦିନପାଇଁ ପଠାଇ ଦେବ । ମୁଁ କାମରେ ଛନ୍ଦି ହେବି, ଆସି ପାରିବ ନାହିଁ ।" ଘୋର ଅନ୍ଧାର ସମୟରେ ଟିକେ କ୍ଷୀଣ ଆଲୁଅ ଦେଖିଲେ ଲୋକ ତାକୁ ଅନାଏ । କଟକ ହାକିମ ପଠେଇଛନ୍ତି, ଲଳିତା ଅପାଙ୍କ ପାଖରୁ ଆସିଛି, ନଟବରର ଆକୁଳ କ୍ରନ୍ଦନ, ଦୁଃଖରେ ସାନ୍ତ୍ୱନା, ବିଶେଷରେ ନିସ୍ପା ସମ୍ବନ୍ଧରେ କର୍ମଚାରୀମାନଙ୍କର ଔଦାସ୍ୟ, କର୍ମ ସମାଧାନ ବିଷୟରେ ନଟବରର ବ୍ୟଗ୍ରତା ଦେଖି ବୁଦ୍ଧିମନ୍ତୀ ସରସ୍ୱତୀ ଦେଈ ସବୁ ଭୁଲି ଘୋର ବିପଦ ସମୟରେ ନଟବର ଏକମାତ୍ର ସାହା ବୋଲି ସ୍ଥିର କଲେଣି । ଆଉ କିଛି ଭାବି ପାରିଲେ ନାହିଁ—ଭାବିବାର ଶକ୍ତି ବି ଲୋପ ।

ବିଦା ବେଳେ ନାଜରବାବୁ ପିଲା ଦିଓଟିଙ୍କ ମୁଣ୍ଡରେ ହାତ ବୁଲାଇ ଚୁମା ଖାଇ କହିଲେ, "ବୁଝିଲ ଧାଈ ମା ! ମୋର ଆଉ କିଏ ଅଛି, ଏଇ ଦିଓଟି ମୋର ସବୁ— ଯାହା କିଛି ରୋଜଗାର ଏମାନଙ୍କ ସକାଶେ । ଏମାନେ ଦୁଇ କୁଳକୁ ପାଣି ଦେବେ—ଦୁଇ କୁଳ ଉଦ୍ଧାର କରିବେ ।"

ଧାଣ୍ଡି ମା ପାଖରୁ ମେଲାଣି ନେଇ ନାଜର ବାବୁ ଠାକୁର ମନ୍ଦିରକୁ ଆଇଲେ । ମନ୍ଦିର କଚେରି ମେଲାରେ ଆଗରୁ ପାଲିଙ୍କଟି ଥୁଆ ହୋଇଥିଲା । ରାତି ହେବାରୁ ସମସ୍ତେ ସବୁଆଡ଼େ ଗଲେଣି, କେବଳ ବୁଢ଼ା ଗୁମ୍ଫୁଁ-କରଣ ନାଜର ବାବୁଙ୍କ ଚର୍ଚ୍ଚା ବୁଝିବା ସକାଶେ ଅଛନ୍ତି । ଗୁମ୍ଫୁକରଣ ପଚାରିଲେ, "ଆଜିରାତିରେ ଆପଣଙ୍କର କଣ ଠା ହେବ ? ପ୍ରସାଦ ପ୍ରସ୍ତୁତ ଅଛି ।" ନାଜରବାବୁ ଉପହାସ କରି କହିଲେ, "ଆମକୁ ବଡ଼ ଭୋକ ଲାଗୁଛି ହଁ—ପ୍ରସାଦ ସେବା କରିବୁଁ । ଯା ଯା, ତୁମେ ପ୍ରସାଦ ସେବାକରି ଶୋଇପଡ଼ ।" ନାଜର ବାବୁ ସବାରି ଭିତରେ ବୋଧ କରୁଁ ଅଧଘଣ୍ଟାଏ ସନ୍ଧ୍ୟା କଲେ । ବେହେରା ଗଡୁଡ଼ ଆଗରୁ ଭଲ ପାଣି ଟୁକୁଣାଏ ଗୁଣି ରଖିଦେଇ ଥିଲେ । ସନ୍ଧ୍ୟା ଉତ୍ତାରେ ଦୁଇ ଅଞ୍ଜୁଳି ଜଳ ଢକ ଢକ କରି ପିଇ ଦେଲେ । ପାନ ଗୁଡ଼ାଖୁ ପ୍ରସ୍ତୁତ ଥିଲା । ସବାରି ଭିତରେ ଢେର ବେଳଯାଏ ଭଡ଼ର ଭଡ଼ର ହୁକା ଶବ୍ଦ ଶୁଭୁଥିଲା ।

———

-୨୪-

## ନାଜର ବାବୁଙ୍କ ବନ୍ଦୋବସ୍ତ

ଭୋର, କଚେରି ମେଲାରେ ବାରିକ ଗାଲିଚାଟାଏ ପାଟ ବଡ଼ ମାଣ୍ଡିଟାଏ ଥୋଇ ଦେଲା । ନାଜରବାବୁ ବସି ଭଡ଼ର ଭଡ଼ର କରି ହୁକା ଟାଣୁଥାନ୍ତି । ସଦର ମଫସଲ ସମସ୍ତ ଅମଲାଙ୍କୁ ତଲବ କରି ପଠାଇଲେ । ନାଜରବାବୁ କ୍ରିୟାର ବନ୍ଦୋବସ୍ତ କରିବେ, ମନରେ କରି ସମସ୍ତେ ତରବର ହୋଇ ଧାଇଁଲେ । କ୍ରିୟା ବିଷୟର ନାମ ଚର୍ଚ୍ଚା ନାହିଁ, କଡ଼ା ହୁକୁମ ଜାରି, ପାଞ୍ଜି ଆଉ ତହବିଲ ଦାଖଲ କର । କଲଟର ସାହେବଙ୍କ ହୁକୁମ, ଚାରି ଘଣ୍ଟା ମଧ୍ୟରେ ଦାଖଲ କରିବାକୁ ହେବ । ଜଣପିଛେ କଲଟରୀ ପିଆଦା ମଉଜିଲା—ପିଆଦାମାନେ ବାବୁଙ୍କ ସଙ୍ଗରେ କଟକରୁ ଆସିଥିଲେ । ଉଆସର ସଦର ଆଉ ବେଣ୍ଟ ଦୁଆରେ କେତେଜଣ ପିଆଦା ବସିଗଲେ—କି ସ୍ତ୍ରୀ କି ପୁରୁଷ କେହି ଲୋକ ଉଆସ ମଧ୍ୟକୁ ଯାଇ ପାରିବ ନାହିଁ—ଭିତରୁ ମଧ୍ୟ ଲୋକ ବାହାରିବାର ବନ୍ଦ । ନାଜରବାବୁ ସମସ୍ତଙ୍କୁ ବିଶେଷ କରି ବୁଝାଇ ଦେଲେ, କଟକ କଲଟର ସା'ହେବଙ୍କ ହୁକୁମରେ ସମସ୍ତ କାର୍ଯ୍ୟ ହେଉଛି । ପାଞ୍ଜିଆ କରଣ ଅସ୍ତବ୍ୟସ୍ତ, ସମସ୍ତେ ବ୍ୟାକୁଳ । କ୍ରିୟାଟି କପରି ସୁରୁଖୁରୁରେ ମେଣ୍ଟି ଯିବ । ସେଥିପାଇଁ ସମସ୍ତ ଲାଗି ପଡ଼ିଛନ୍ତି—ନାଜରବାବୁଙ୍କ ହୁକୁମ ତାମିଲ କରୁଛି କିଏ ? କ୍ରିୟା ପ୍ରସଙ୍ଗ କେହି ପାଞ୍ଜିଆ ଉଠାଇଲେ ନାଜରବାବୁ ତାହା ଉପରେ ଭାରି ଖପା । କଣ କରିବେ ଯେ ସେ ଲୋକ ନୁହନ୍ତି, ମଣିମାଙ୍କର ସହୋଦର ଭାଇ, ପୁଣି ହାକମ ତରଫ ଲୋକ, ସମସ୍ତେ ହାତ ବାନ୍ଧି ରହିଛନ୍ତି । ଏଣେ ନାଜର ବାବୁଙ୍କର ଇଚ୍ଛା ନୁହେ ଯେ, କ୍ରିୟାଟି ଆଡ଼ମ୍ବରରେ ହେଉ, ଅଳ୍ପ ଖରଚ, ଅଧା ମାଗଣା ଅଧା କାଳି, ର—ଠ କରି ଚଳେଇବେ । କୌଣସିରୂପେ ଟଙ୍କା ବଞ୍ଚାଇବାକୁ ହେବ । ପାଞ୍ଜିଆ ଆଉ ଆଉ କର୍ମଚାରୀମାନେ ଦେଖିଲେ, ଘୋର ବିପଦ ତ ଉପସ୍ଥିତ—ବିପଦ ଉପରେ ବିପଦ ବଳିପଡ଼ିଲାଣି । ନାଜରଙ୍କ ଆଗସରିକ ହେବାକୁ କେହି ଭରସି ପାରୁ ନାହିଁ । ସମସ୍ତେ ଯାଇ ଶ୍ରେଷ୍ଠରାୟଙ୍କୁ ଧରି ପଡ଼ିଲେ । ଶ୍ରେଷ୍ଠରାୟ ସାମନ୍ତ ନାଜରଙ୍କ ପାଖକୁ ଯାଇ କହିଲେ, "ନଟବର ବାବୁ, କାଗଜ ବୁଝାବୁଝି ପଛକେ ହେବ, ବର୍ତ୍ତମାନ କ୍ରିୟାଟା ଚଳିଯାଉ ।" ଶ୍ରେଷ୍ଠରାୟ ଜଣେ ଭାଇ ରଜା, ଏଣେ ବୟସରେ ପିତୃସମାନ - ଗୋଟାଏ ମାନ୍ୟ ଧର୍ମ ନାହିଁ, ଦଣ୍ଡବତ୍ ମଜୁରା ନାହିଁ, ନାଜରବାବୁ ହାରି ଗୋଟାଏ ଖପା ହୋଇ କହିଲେ, "ହିଁ – ହିଁ, ଆପଣ ତୁନି ହେଉନ୍ତୁ । ସବୁ କଥା ଜଣା ପଡ଼ିଲାଣି, ଆଉ କିଛି କରିବାକୁ ହେବ ନାହିଁ । ଆଉ କିଛି କଥା

କହିଲେ ସରକାରୀ କାର୍ଯ୍ୟରେ ବାଧାଦେଉଛନ୍ତି ବୋଲି ସାହେବଙ୍କୁ ଲେଖିବାକୁ ପଡ଼ିବ ।'' ଗ୍ଲେଟରାୟଙ୍କ ମୁଣ୍ଡରେ ଯେମନ୍ତ କିଏ ଗୁଡ଼ାଏ ନିଆଁ ଅଜାଡ଼ି ପକେଇଲା । ତମ୍ଭ ସାତ ଲଞ୍ଜ ମୋଡ଼ଦେଲା ପରି ଫଁ— ଫଁ ହେଉଛନ୍ତି । ଅନ୍ୟ ସମୟ ଅନ୍ୟସ୍ଥାନ ହୋଇଥିଲେ ଆଜି ରକ୍ତଗଙ୍ଗାଟାଏ ବହି ଯାଉଥାନ୍ତା । ହାତ ବାନ୍ଧି ଜିଭ କାମୁଡ଼ି ଛିଡ଼ା ହୋଇଛନ୍ତି—ଦେହ ଗୋଟାକ ଥରୁଛି । ଖଣ୍ଡାୟତମାନଙ୍କ ଗୋଟା ଜାତିଗତ ପ୍ରକୃତି —ସବୁ ଧନ ଦେବେ, ଜୀବନ ଦେବେ, ଅପମାନ ସହି ପାରିବେ ନାହିଁ । ସେମାନଙ୍କର ଗୋଟାଏ ବୀଜମନ୍ତ୍ର, ''ସବୁ ଯାଉ ମହତ ଥାଉ, ମହତ ଗଲେ ନ ଆସେ ଆଉ ।'' ଆଗେ ସେମାନଙ୍କ ମଧ୍ୟରେ ଥିଲା—କଥା ପଦକେ ମାଡ଼ଗୋଳ—କଥା ପଦକେ ଝିଣିଖରାପ । ଆଇନ ଆକବରି ସମୟରେ ସମସ୍ତ ଉତ୍କଳ ଜମିଦାରୀଟା ଖଣ୍ଡାୟତମାନଙ୍କ କରଗତ ଥିଲା, ଏହି ଉଦଣ୍ଡତଣିଆରେ ସବୁ ହରାଇ ବସିଛନ୍ତି । ପେଷ୍କାରବାବୁ ପାଖରେ ଛିଡ଼ା ହୋଇଥିଲେ, ଅବସ୍ଥା ବୁଝି ବାପାଙ୍କ ବାହୁ ଧରି ଭିଡ଼ ନେଇଗଲେ । ତାଙ୍କର ଅଭିପ୍ରାୟ, ଏଇଟା କଣ କରୁଛ କରିଯାଉ, କାଲିଟା ତ ବଳେ କୋର୍ଟ ଅବ୍ ୱାର୍ଡ୍‌ରେ ରହିବ, ତେତେବେଳେ ସବୁ ମାମଲା ବଳେ ଠିକ୍ ହୋଇଯିବ । ଗ୍ଲେଟରାୟ ରାଗ ସମ୍ଭାଳି ପାରିଲେ ନାହିଁ, ସବାରି କାଟିଦେଲେ । ହରିବୋଲ ବାରିକ ପଛରେ ଧାଇଁଛି, ଗମ୍ଭୀର ଘର ମଝିରେ ସବାରି ଆଗ ଦଣ୍ଡାଟା ଧରି ଭିଡ଼ ବସାଇ ଦେଲା । ଆପଟମାନେ ସବାରି ଥୋଇଦେଇ ଅଡ଼େଇ ଗଲେ । ପୁରୁଣା ସଦର କରଣ ଗଙ୍ଗାଧର ମହାନ୍ତିଏ ନସରପସର ହୋଇ ପଛରେ ଧାଇଁଛନ୍ତି—ନିଶ୍ୱାସ ବଳି ପଡ଼ିଲାଣି । ହରିବୋଲ ବାରିକ କହିଲା, ''ଏ-ହରିବୋଲ ଆଜ୍ଞା ମଣିମା, କଣ ହେଉଛି ! ସବୁ ସରିଲା ଯେ, କାହାକୁ ମାନ ମାରୁଛନ୍ତି ? ଏ କାର୍ଯ୍ୟ କାହାର ? ମାନ ଅପମାନ କାହାର ? ଲୋକେ କଣ ଏ ସବୁ କଥା ବୁଝିବେ ? ଅପଯଶଟା ମୁଣ୍ଡେଇବ କିଏ ? ସବୁ ପଛକୁ ଫୋପାଡ଼ି ଦେଅନ୍ତୁ; ବାହୁଡ଼ା ବିଜେ କରନ୍ତୁ ।'' ଭଣ୍ଡାରି ବାପୁଡ଼ା ହେଲେ କଣ ହେଲା, କଥାଟା କହିଲା ଏକା । ଗ୍ଲେଟରାୟ ତ ଏକାବେଳକେ ପାଣି । ଏଇଟା ମଧ୍ୟ ଖଣ୍ଡାୟତ ଜାତିର ସ୍ୱଭାବ—ତାଙ୍କୁ ସାଙ୍କୁଳେଇ ସାଙ୍କୁଳେଇ ନ୍ୟାୟ ଅନ୍ୟାୟ ବୁଝାଇ ଦେଲେ କଥାଟା ବୁଝନ୍ତି । ଗ୍ଲେଟରାୟ ଗଙ୍ଗାଧର ପଟ୍ଟନାୟକ ମୁହଁକୁ ଚାହିଁଲେ । ବୁଢ଼ା ପଟ୍ଟନାୟକ ଅଭିପ୍ରାୟ ବୁଝି କହିଲେ, 'ସତ, ସତ ନୁହେ ତ କଣ ?' ଏଥି ଉତ୍ତାରେ ସେହି ଗହୀର ଘର ମଧ୍ୟରେ ପହରେଯାଏଁ ତିନି ଜଣଙ୍କ ମଧ୍ୟରେ କଥାଭାଷା ଚାଲିଲା । ଗ୍ଲେଟରାୟ ଉଆସକୁ ବିଜେ ହୋଇ ଗଲେ । ପାଞ୍ଜିଆ ଆଉ କରଣମାନେ କ୍ରିୟାଦ୍ରବ୍ୟ ଆୟୋଜନରେ ଲାଗିଗଲେ, ସମସ୍ତେ ଆପଣା ଆପଣା କର୍ମରେ ବ୍ୟସ୍ତ, କେହି କାହାରିକୁ କିଛି ବୋଲିବାକୁ ନାହିଁ । ସାତ ଦିନଠାରୁ ସଜକ୍ରିୟା ଆରମ୍ଭ । ଦହି ଜଳପାନ ଖଜା ଗୁଡ଼ ପର୍ବତ ପ୍ରମାଣ ଜମା ହେଉଛି, ପ୍ରତିଦିନ ହଜାର ହଜାର ବ୍ରାହ୍ମଣ, ବୈଷ୍ଣବ, କଙ୍ଗାଳି ଭୋଜନ କରୁଛନ୍ତି—ପଦାର୍ଥ ସରିବାକୁ ନାହିଁ । ଚାକର ବାକର, ପଧାନ ମକଦମ, ଗାଁଲୋକ ସାନଠାରୁ ବଡ଼ଯାଏଁ କାମରେ ଲାଗିଯାଇଛନ୍ତି—ସମସ୍ତେ ମନରେ କରୁଛନ୍ତି ଯେମନ୍ତ ଆପଣାର କର୍ମ । ଏକା ଗ୍ଲେଟରାୟଙ୍କ ଉଆସରୁ ଢେର ଢେର ସରଞ୍ଜାମ ଆସିଗଲାଣି । ଗ୍ଲେଟରାୟ ଉଆସରେ ଆପଣା ଜାଗାରେ ବସି ସବୁ କାମ ବରାଦ କରୁଛନ୍ତି । କାମର ଖଞ୍ଜ ଅଖଞ୍ଜ ପଡ଼ିଲେ ଲୋକ ଧାଇଁ ଯାଇ ପରାମର୍ଶ ପଚାରି ଆସୁଛି । ଦ୍ରବ୍ୟମାନ କାହୁଁ ଆସୁଛି, ଟଙ୍କା କିଏ ଦେଉଛି, ନାଜରବାବୁ କିଛି ଜାଣି ପାରୁ ନାହାନ୍ତି । ଡାକିଲେ ପାଖ ପଶିବାକୁ କେହି ନାହିଁ । ସମସ୍ତଙ୍କ ଉପରେ ରାଗ ହେଲେ କାହାର କଣ କରିବେ ? ଲୋକଟା ସିଆଣା ବଗୁଲିଆ କି ନା ସେ କଣ ବୁଝୁ ନାହିଁ, ତାର ବଳ କ୍ଷମତା କେତେ ? ଦେଖିଲା କାମଟା ତ ଇଜ୍ଜାମ ହେବାକୁ ବସିଲା, ଭୁଚ୍ଛାଟାରେ

ହୋ ହୋ କରି ଗୃହଅଡ଼େ ଧାଉଁଛି, ତା କଥା ଶୁଣୁଛି ବା କିଏ ? ଏଣେ କଳଂଚା ( ଓରଫେ ଚିତକଳା ) ଉଆସ ଭିତରେ ଧାଈମାଙ୍କ ପାଖରେ, ମଣିମାଙ୍କ ପାଖରେ, ପରିଜନ ମହଲରେ ହାକୁଥାଏ, ନାଜର ବାବୁ ସବୁକାମ ଭୁଲିଉଛନ୍ତି—ଏଠିତ ସବୁ ଜିନିସ ମିଳୁନାହିଁ, ଜିନିସାତ ଲଗି କଟକକୁ ଶଗଡ଼ ଲାଗିଛି । ଉଆସ ମଧ୍ୟରେ ଲୋକମାନଙ୍କର ବି ସେଇ କଥା ବିଶ୍ୱାସ—ବାହାରୁ କିଛି ଖବର ମିଳିବାକୁ ନାହିଁ । କର୍ମଚାରୀମାନେ ଖାଲି କର୍ମ ଇନ୍ତଜାମରେ ଲାଗିଛନ୍ତି, ଖବର କାହାକୁ ଦେବେ, ଶୁଣୁଛି ବା କିଏ ? ଯେଉଁମାନଙ୍କୁ ସମ୍ବାଦ ଦେବାର କଥା ସେମାନଙ୍କର କଣ ଚେତନା ଅଛି । ବ୍ରାହ୍ମଣ ବିଦାୟ ସମୟରେ ନାଜରବାବୁ ବଳେ ବଳେ ଆପଣା ତରଫରୁ କିଛି ଟଙ୍କା ଦେବାର ଦେଖାଗଲା । ଗଡ଼ର ସଦର ଦ୍ୱାରୀ ଲୋକଙ୍କଠାରେ ପ୍ରକାଶ କରେ, ଅଧିକ ରାତରେ ଗଡ଼ ମଧ୍ୟରୁ ଗୋଟିଏ ସ୍ତ୍ରୀ ଭାରି ପଦାର୍ଥପୂର୍ଣ୍ଣ ଦୁଇଟା ଥଳୀ ଆଣି ନାଜରଙ୍କ ହାତରେ ଦେଇଗଲା । ଏଥିରୁ କେହି କେହି ଅନୁମାନ କଲେ ବ୍ରାହ୍ମଣ ବିଦାୟ ସକାଶେ ଭିତର ପ୍ରସ୍ତରୁ କିଛି ଆସିଥିବ । ହେଲେ ବିଦାୟଟା ଅତି ସାମାନ୍ୟ ଦୁଇଥଳୀ ତ ନୁହେ ।

ଉତ୍ତରରାୟଙ୍କର ପେପରି କ୍ରିୟା ହେବାର ଉଚିତ ସମସ୍ତେ କହନ୍ତି ସେଥିରୁ ଢେର ବଳିଗଲଣି । ବ୍ରାହ୍ମଣ ବୈଷ୍ଣବ କଙ୍ଗାଳ ପୂର୍ଣ୍ଣ ଭୋଜନ, ଉପଯୁକ୍ତ ଦକ୍ଷିଣା ପାଇ ମହା ଆନନ୍ଦରେ ଆଶୀର୍ବାଦ କରୁ କରୁ ବାହୁଡ଼ି ଯାଉଛନ୍ତି ।

———

—୨୫—

## ପଣ୍ଡିତ ସଭା

ସାମନ୍ତ ପ୍ରତାପଚନ୍ଦ୍ର ମଲ୍ଲ ଉତ୍ତରରାୟଙ୍କ ଅନ୍ତ୍ୟେଷ୍ଟିକ୍ରିୟା ଉପଲକ୍ଷରେ ଗଙ୍ଗାକୂଳଠାରୁ ଗୋଦାବରୀକୂଳ ପର୍ଯ୍ୟନ୍ତ ପ୍ରାଚୀନ ଉତ୍କଳସ୍ଥ ପ୍ରଧାନ ପ୍ରଧାନ ବିପ୍ର ପଣ୍ଡିତମଣ୍ଡଳୀ ଆହୂତ ହୋଇଥିଲେ । ନବଦ୍ୱୀପ ଏବଂ କାଶୀ ଦୁଇ ସୁବିଖ୍ୟାତ ସ୍ଥାନର ଥୋକାଏ ବିଖ୍ୟାତ ପଣ୍ଡିତ ମଧ୍ୟ ଉପସ୍ଥିତ । ଯୁଗଳକିଶୋର ମନ୍ଦିରର ସମ୍ମୁଖସ୍ଥ ପ୍ରାଙ୍ଗଣରେ ଗୋଟିଏ ବୃହତ୍ କାରୁକାର୍ଯ୍ୟ-ବିଶିଷ୍ଟ ସତରଞ୍ଜି ବିସ୍ତୃତ । ବିଜ୍ଞମଣ୍ଡଳୀ ସମାବେଶରେ ସଭାମଣ୍ଡପ ଅପୂର୍ବ ଶୋଭା ଧାରଣ କରିଅଛି । ପଣ୍ଡିତ ମହୋଦୟଗଣ ନସ୍ୟ ଆଦାନ ନସ୍ୟ ପ୍ରଦାନ ପରସ୍ପର ଦୈହିକ ସାଂସାରିକ କୁଶଳ ପ୍ରଶ୍ନ ଉତ୍ତର ଦାନରେ ନିଯୁକ୍ତ । ଇତ୍ୟବସରରେ ସାମନ୍ତ ବଂଶର ସଭାପଣ୍ଡିତ ପୁରୁଷୋତ୍ତମ ରଥ ବିଦ୍ୟାବାଗୀଶେ ସଭାରେ ଦଣ୍ଡାୟମାନ ହୋଇ କୃତାଞ୍ଜଳିପୂର୍ବକ ନିବେଦନ କଲେ, "ଭୋ ଭୋ ବିଜ୍ଞ ମହୋଦୟଗଣ ! ଆପଣମାନଙ୍କ ଶୁଭାଗମନ ପଦରେଣୁ ସ୍ପର୍ଶରେ ଏହି ଦେଶ ରାଜବଂଶ ନିଜ ନିଜକୁ ଧନ୍ୟ ଜ୍ଞାନ କରୁଅଛନ୍ତି । ଆପଣମାନଙ୍କର ଉପଯୁକ୍ତ ସେବା ଯେ କରନ୍ତେ ସେହି ସାମନ୍ତ ବର୍ତ୍ତମାନ ସ୍ୱର୍ଗଗତ । ଶୋକସନ୍ତପ୍ତା ବିଳାପବିଧୁରା ଅନ୍ତଃପୁର-ବାସିନୀ ଶିଶୁ ଭୂମ୍ୟଧିକାରୀମାନଙ୍କର ମାତା ଏବଂ ମାତାମହୀଙ୍କ ପକ୍ଷରୁ ମୁଁ ଅଭିବାଦନ ନିବେଦନପୂର୍ବକ ପ୍ରାର୍ଥନା କରୁଅଛି, ଅନୁଗ୍ରହ ପୂର୍ବକ ଶୁଭାଶୀର୍ବାଦ କରିବାକୁ ଆଜ୍ଞା ହେଉ ।" ପଣ୍ଡିତବର୍ଗ ଦଣ୍ଡାୟମାନ ହୋଇ ଆଶୀର୍ବାଦ କଲେ—

"ଜୟୋଽସ୍ତୁ ଜୟୋଽସ୍ତୁ ସପୁତ୍ରା ସୁଖିନୀ ଭବ ।
ଆୟୁର୍ବଳୋଶ୍ୱର୍ଯ୍ୟାଣାଂ ବିବୃଦ୍ଧୟଃ ସନ୍ତୁ ।
ପୁତ୍ରୌ ତେ ଯଶସ୍ୱିନୌ ଭବତାମ୍ ।
ତବ ପ୍ରଜାନାଂ ସଗୋବାଣାଂ ଶିବମସ୍ତୁ ।"

ପଣ୍ଡିତବର୍ଗ ଉପବେଶନ କଲା ଉତ୍ତାରେ ବାଲେଶ୍ୱର ଟୋଲର ପଣ୍ଡିତ ଆତ୍ରେୟାଣ କବି ଶିରୋମଣି ଦଣ୍ଡାୟମାନ ହୋଇ ଜଣାଇଲେ, "ସମ୍ପ୍ରତି ଏହି ମାନନୀୟ ସମିତିରେ

ପୁଣ୍ୟଧାମ ଶ୍ରୀକ୍ଷେତ୍ରସ୍ଥ ମୁକ୍ତିମଣ୍ଡପରେ ସଭାପଣ୍ଡିତ ଶ୍ରୀଯୁକ୍ତ ସଦାଶିବ ବିଦ୍ୟାସାଗର ମହୋଦୟଙ୍କୁ ସଭାପତି ପଦରେ ବରଣ କରାଯିବା ନିମନ୍ତେ ଆମ୍ଭେ ଆପଣମାନଙ୍କ ସମୀପରେ ପ୍ରସ୍ତାବ ଉପସ୍ଥାପିତ କରୁଅଛୁଁ ।'' ସମସ୍ତ ପଣ୍ଡିତେ ହସ୍ତୋତ୍ତୋଳନପୂର୍ବକ ଉଚ୍ଚୈସ୍ୱରେ କହିଲେ—

''ଭବତୁ—ଭବତୁ—ତଥାସ୍ତୁ—ତଥାସ୍ତୁ ।''

ଢେଙ୍କାନାଳ ରାଜସଭାର ପଣ୍ଡିତ କେଳେଇ ମିଶ୍ର ବିଦ୍ୟାରତ୍ନେ ପ୍ରସ୍ତାବ କଲେ ସଭାପତି ମହୋଦୟଙ୍କ ଶ୍ରୀମୁଖରୁ କଞ୍ଚିତ୍ ଶାସ୍ତ୍ରୀୟ ବ୍ୟାଖ୍ୟା ଶ୍ରବଣାର୍ଥୀ ଆମ୍ଭେମାନେ ଉପସ୍ଥିତ ଅଛୁଁ ।

ଇତ୍ୟବସରେ ସଭାପତି ମହୋଦୟ ଉପର୍ଯ୍ୟୁପରି ଦୁଇ ତିନି ଟିପ ନସ୍ୟ ଗ୍ରହଣ ଓ ଗାତ୍ରମାର୍ଜନୀରେ ପୁଣି ନାସିକାଟି ପରିମାର୍ଜନ ପୂର୍ବକ ଦୁଇ ତିନି ଥର କଣ୍ଠଧ୍ୱନି କରଣାନନ୍ତର ଆରମ୍ଭ କଲେ—

''ଯଂ ଶୈବାଃ ସମୁପାସତେ ଶିବ ଇତି ବ୍ରହ୍ମେତିବେଦାନ୍ତିନଃ
ବୌଦ୍ଧା ବୁଦ୍ଧ ଇତି ପ୍ରମାଣପଟବଃ କର୍ତ୍ତେତି ନୈୟାୟିକାଃ ।
ଅର୍ହନ୍ନିତ୍ୟଥ ଜୈନଶାସନରତାଃ କର୍ମେତି ମୀମାଂସକାଃ ।
ସୋଽୟଂ ବୋ ବିଦଧାତୁ ବାଞ୍ଛିତଫଳଂ
ତ୍ରୈଲୋକ୍ୟନାଥ ହରି ।''

ବାଲାବେଡ଼ା ପ୍ରହରାଜଙ୍କ ସଭାପଣ୍ଡିତ ଗଦାଧର ନନ୍ଦେ ପ୍ରଶ୍ନ କଲେ, ''ସଭାପତି ମହୋଦୟ ବ୍ରହ୍ମାଙ୍କର ଯେଉଁ ଭିନ୍ନ ଭିନ୍ନ ନାମାବଳୀ ଉଲ୍ଲେଖ କଲେ, କେଉଁ ନାମ ମୁକ୍ତିପ୍ରଦ ଏବଂ କେଉଁ ମତ ସର୍ବଶ୍ରେଷ୍ଠ ?''

ସଭାପତି ମହାଶୟଙ୍କର ଉତ୍ତର—ଯଦି ଭକ୍ତିପୂର୍ବକ ଅନୁଷ୍ଠାନ କର ଏବଂ ଏକାଗ୍ରଚିତ୍ତ ସହିତ ନାମ ହୃଦୟରେ ଧାରଣ କର, ତେବେ ସମସ୍ତ ମତ ଉତ୍ତମ ଏବଂ ସମସ୍ତ ନାମ ମୁକ୍ତିପ୍ରଦ । ମନରେ କରନ୍ତୁ, ଗୋଟିଏ ପୁଷ୍କରଣୀ କୂଳରେ ତୃଷାର୍ତ୍ତ ବିଭିନ୍ନ ଜାତୀୟ ଲୋକ ଉପସ୍ଥିତ ହେଲେ । ମୁସଲମାନ କହିଲେ ପାନି, ଉତ୍କଳୀ କହିଲେ ଜଳ, ତେଲୁଗୁ କହିଲେ ମାଳୁ—କିନ୍ତୁ ନାମ ମାତ୍ର ଉଚ୍ଚାରଣରେ କାହାରି ତୃଷ୍ଣା ଦୂର ହେବ ନାହିଁ, ଆକଣ୍ଠ ପାନ କରିବାର ପ୍ରୟୋଜନ । ତଦ୍ରୂପ କେବଳ ବାକ୍ୟ ମାତ୍ର ବ୍ରହ୍ମା ବା ଶିବ ବା କୃଷ୍ଣ ନାମ ଉଚ୍ଚାରଣରେ କେହି ମୁକ୍ତି ଲାଭ କରି ନ ପାରେ । ଭକ୍ତିପୂର୍ବକ ହୃଦୟରେ ଧାରଣ କରିବାକୁ ହେବ ।

ବାଙ୍କୀନିବାସୀ ପୁରୁଷୋତ୍ତମ ବିଦ୍ୟାରତ୍ନ ପ୍ରକାଶ କଲେ—

''ତସ୍ୟ ବ୍ରହ୍ମଣୋ ଲକ୍ଷଣଂ କିମ୍ ?''

ସଭାପତି ପ୍ରକାଶକଲେ—ସର୍ବଶ୍ରେଷ୍ଠ ଉପନିଷଦ୍ ଗ୍ରନ୍ଥରେ ଉଲ୍ଲେଖ—

''ସତ୍ୟଂ ଜ୍ଞାନମନନ୍ତଂ ବ୍ରହ୍ମ
ଆନନ୍ଦରୂପମମୃତଂ ଯଦ୍ ବିଭାତି
ଶାନ୍ତଂ ଶିବମଦ୍ୱୈତଂ
ଶୁଦ୍ଧ ମପାପବିଦ୍ଧଂ ।''

ଅଦ୍ୱୈତବାଦପ୍ରକାଶକ ବେଦାନ୍ତୀ ଶଙ୍କରାଚାର୍ଯ୍ୟ ପରଂବ୍ରହ୍ମଙ୍କର ଏହି ଲକ୍ଷଣ ଅନୁମୋଦନ କରି ଯାଇଅଛନ୍ତି । ତାହାଙ୍କ ମତରେ ବ୍ରହ୍ମ ନିର୍ଗୁଣ ପଦାର୍ଥ । ପରିଦୃଶ୍ୟମାନ ଜଗତ୍‌ସଂସାର ମାୟା ବା ପ୍ରକୃତିଜନିତ ବିକାର ମାତ୍ର । ସମସ୍ତ ବିଶ୍ୱବ୍ରହ୍ମାଣ୍ଡ ବ୍ରହ୍ମସତ୍ତାରୁ ଉତ୍ପନ୍ନ, ବ୍ରହ୍ମରେ ଅବସ୍ଥିତ ପୁଣି ସେହି ବ୍ରହ୍ମରେ ବିଲୀନ ହୋଇଯିବ ।

ବିଶିଷ୍ଟାଦ୍ୱୈତବାଦଙ୍କ ମତରେ—

ବ୍ରହ୍ମ, ଚିତ୍ ( ପ୍ରାଣ ) ଅଚିତ୍ ( ଜଡ଼ ) ଏହି ତିନି ନିତ୍ୟ ସନାତନ ।

ବିଶ୍ୱବ୍ରହ୍ମାଣ୍ଡ ବ୍ରହ୍ମରୁ ଉତ୍ପନ୍ନ ସତ୍ୟ, ମାତ୍ର ବ୍ରହ୍ମରୁ ସ୍ୱତନ୍ତ୍ର । ସେମାନଙ୍କ ମତ ସମର୍ଥନ ନିମନ୍ତେ ଏହିପରି ଦୃଷ୍ଟାନ୍ତ ପ୍ରୟୋଗ କରିଥାନ୍ତି – କୁମ୍ଭକାର ଘଟ ନିର୍ମାଣ-କାରୀ ସତ୍ୟ—ହେଲେହେଁ ଘଟରୁ ସମ୍ପର୍କ ବିଚ୍ଛିନ୍ନ । ଘଟ ପ୍ରତି କୁମ୍ଭକାର ନିମିତ୍ତ କାରଣ; ମାତ୍ର ମୃତ୍ତିକାହିଁ ସମବାୟୀ ଉପାଦାନ କାରଣ ଅଟେ । ପୁଣି ଚକ୍ର, ଦଣ୍ଡ, ବସ୍ତ୍ରଖଣ୍ଡ ପ୍ରଭୃତି ଅସମବାୟୀ ଉପାଦାନ କାରଣ ।

ବିଶିଷ୍ଟାଦ୍ୱୈତବାଦୀମାନଙ୍କ ମତରେ—

"ଯତୋ ବା ଇମାନି ଭୂତାନି ଜାୟନ୍ତେ—
ଯେନ ଜାତାନି ଜୀବନ୍ତି ତଦ୍‌ବିଜିଜ୍ଞାସସ୍ୱ ତଦ୍‌ବ୍ରହ୍ମ ।"

ଏହା ବ୍ରହ୍ମାଙ୍କ ଲକ୍ଷଣ ଅଟେ । ମାତ୍ର ଏହାକୁ ତଟସ୍ଥ ଲକ୍ଷଣ ବୋଲି ସ୍ୱୀକାର କରିବାକୁ ହେବ । ରାମାନୁଜାଚାର୍ଯ୍ୟ ବିଶିଷ୍ଟାଦ୍ୱୈତବାଦ ପ୍ରଚାରକ ଅଟନ୍ତି । ପୂର୍ବେ ବୋଲି ଯାଇଅଛି, ଅଦ୍ୱୈତବାଦୀମାନଙ୍କ ମତରେ ବିଶ୍ୱସଂସାର ପ୍ରତି ବ୍ରହ୍ମ ଉପାଦାନ, ନିମିତ୍ତ ସମସ୍ତ କାରଣ ଅଟନ୍ତି ।

ନବଦ୍ୱୀପର ବିଖ୍ୟାତ ନୈୟାୟିକ ତାରକନାଥ ନ୍ୟାୟରତ୍ନ ପ୍ରକାଶ କଲେ, "ପରଂବ୍ରହ୍ମ ବୋଲି ଯାହାଙ୍କୁ ବୋଲ, ତାହାଙ୍କ ଅସ୍ତିତ୍ୱର ପ୍ରମାଣ କାହିଁ ? ସାମାନ୍ୟ ଶାସ୍ତ୍ରମାନଙ୍କରେ ବ୍ରହ୍ମଙ୍କର ନାମ ଉଲ୍ଲେଖ ଅଛି ସତ୍ୟ, ମାତ୍ର ସର୍ବଶ୍ରେଷ୍ଠ ଯେଉଁ ଦର୍ଶନ ଶାସ୍ତ୍ରମାନ, ସେଥିରେ ବ୍ରହ୍ମ ବା ଈଶ୍ୱରଙ୍କ ଅସ୍ତିତ୍ୱ ବିଷୟରେ ପ୍ରମାଣାଭାବ । ଦର୍ଶନଶାସ୍ତ୍ର, ଦୁଃଖବାଦପୂର୍ଣ୍ଣ – ମାନବ ଜୀବନ ଆଜନ୍ମମରଣାନ୍ତକ ଦୁଃଖରେ ହାହାକାର କରୁଥାଏ । ସେହି ଦୁଃଖର ଅବସାନର ଉପାୟ ନିର୍ଦ୍ଧାରଣ ଦର୍ଶନ-ଶାସ୍ତ୍ରର ଉଦ୍ଦେଶ୍ୟ । ମହର୍ଷି କପିଳ ସାଂଖ୍ୟଦର୍ଶନରେ ଜୀବନ୍ମୁକ୍ତିର ଉପାୟ ନିର୍ଦ୍ଧାରଣ କରିଅଛନ୍ତି ।

ପଞ୍ଚବିଂଶତିତତ୍ତ୍ୱଜ୍ଞୋ ଯତ୍ର ତତ୍ରାଶ୍ରମେ ବସେତ ।
... ... ... ମୁଚ୍ୟତେ ନାତ୍ର ସଂଶୟଃ ।

ସେହି ପଞ୍ଚବିଂଶତି ତତ୍ତ୍ୱ କଣ, ସେହିକଥା ବୋଲୁଅଛି—

ସତ୍ତ୍ୱରଜସ୍ତମସାଂ ସାମ୍ୟାବସ୍ଥା ପ୍ରକୃତିଃ
ପ୍ରକୃତେର୍ମହାନ୍ ମହତୋଽହଂକାରଃ
ଅହଙ୍କାରାତ୍ ପଞ୍ଚତନ୍ମାତ୍ରାଣ୍ୟୁଭୟମିନ୍ଦ୍ରିୟଂ
ତନ୍ମାତ୍ରେଭ୍ୟଃ ସ୍ଥୂଳଭୂତାନି ପୁରୁଷଃ ।
ଇତି ପଞ୍ଚବିଂଶତି ଗଣଃ ॥

ଦେଖିବା ହେଉନ୍ତୁ, ମାନବାତ୍ମାର ମୁକ୍ତିଲାଭ ନିମନ୍ତେ ଦର୍ଶନକାର ପଞ୍ଚବିଂଶତି ତତ୍ତ୍ୱର ନାମ ଉଲ୍ଲେଖ କଲେ, ସେଥିରେ ଈଶ୍ୱରଙ୍କ ପ୍ରସଙ୍ଗ ଉଲ୍ଲେଖ ନାହିଁ, ବରଞ୍ଚ ଦର୍ଶନକାର ସୁସ୍ପଷ୍ଟରୂପେ ପ୍ରକାଶ କରୁଅଛନ୍ତି—

"ଈଶ୍ୱରାସିଦ୍ଧେଃ"

ଦେଖିବା ହେଉନ୍ତୁ, ମହର୍ଷି କପିଳ ଈଶ୍ୱରଙ୍କ ଅସ୍ତିତ୍ୱ ଏକାବେଳକେ ଅସ୍ୱୀକାର କରି ଯାଇଛନ୍ତି । ଅନ୍ୟାନ୍ୟ ଦର୍ଶନ ସମାନ ବୈଶେଷିକ ଦର୍ଶନ ମଧ୍ୟ ଦୁଃଖବାଦପୂର୍ଣ୍ଣ —ସେହି । ଦୁଃଖରୁ ବିମୁକ୍ତ ହୋଇ ନିଃଶ୍ରେୟସ ଲାଭ ନିମନ୍ତେ ମହର୍ଷି କଣାଦ ଯେଉଁ ଉପାୟ ନିର୍ଦ୍ଧାରଣ କରି ଯାଇଅଛନ୍ତି, ସେଥିର ସାରମର୍ମ—

"ଦ୍ରବ୍ୟଗୁଣକର୍ମସାମାନ୍ୟବିଶେଷସମବାୟାନାଂ
ପଦାର୍ଥାନାଂ ସାଧର୍ମ୍ୟବୈଧର୍ମ୍ୟାଭ୍ୟାଂ ତତ୍ତ୍ୱଜ୍ଞାନାତ୍
ନିଃଶ୍ରେୟସମ୍"

ଅର୍ଥାତ୍—ଆତ୍ମସାକ୍ଷାତ୍କାରର ଉପାୟ ଦ୍ରବ୍ୟ କର୍ମ ସାମାନ୍ୟ ବିଶେଷ ସମବାୟର ସାଧର୍ମ୍ୟ ବୈଧର୍ମ୍ୟ ତତ୍ତ୍ୱଜ୍ଞାନରୁ ନିଃଶ୍ରେୟସ ଲାଭ ହୁଏ ।

ବୈଶେଷିକର ନିଃଶ୍ରେୟସ, ବେଦାନ୍ତର ମୁକ୍ତି, ନ୍ୟାୟର ଅପବର୍ଗ, ପାତଞ୍ଜଳର କୈବଲ୍ୟ, ବୌଦ୍ଧର ନିର୍ବାଣ ସାମାର୍ଥପ୍ରତି-ପାଦକ । ମୀମାଂସା ଦର୍ଶନକାର ଜୈମିନି ବେଦର ସତ୍ୟତା ସ୍ୱୀକାର କରନ୍ତି ସତ୍ୟ,

ମାତ୍ର ତାହାଙ୍କ ମତରେ କର୍ମକାଣ୍ଡହିଁ ସାର ପଦାର୍ଥ । ଜ୍ଞାନକାଣ୍ଡ ଅର୍ଥାତ୍ ପରଂବ୍ରହ୍ମ ନାମପ୍ରତିପାଦକ ଜ୍ଞାନକାଣ୍ଡ ନିରର୍ଥକ ମାତ୍ର । ଜୈମିନିଙ୍କର ଉପଦେଶ, ଆତ୍ମାର ଉପକାର ନିମନ୍ତେ ଯଜ୍ଞାନୁଷ୍ଠାନ କର୍ମ କର "ଈଶ୍ୱର-ଆରାଧନାର ପ୍ରୟୋଜନାଭାବ ।

ମୀମାଂସା ଦର୍ଶନର ସାର ମତ

ଆମ୍ନାୟସ୍ୟ କ୍ରିୟାର୍ଥତ୍ୱାତ୍ ଆନର୍ଥକ୍ୟମତଦର୍ଥାନାମ୍ ।"

ଅର୍ଥ କର୍ମହିଁ ବେଦର ପ୍ରତିପାଦ୍ୟ—ଅନ୍ୟ ବିଷୟ ନିରର୍ଥକ । ଏହି ବଚନାନୁସାରେ ଉପନିଷଦର ସମସ୍ତ ସାର ସତ୍ୟର ଉପଦେଶ ଅର୍ଥବାଦ ମାତ୍ର । ଅର୍ଥାତ୍ ତତ୍ତ୍ୱମସି "ସତ୍ୟଂ ଜ୍ଞାନଂ ଅନନ୍ତଂ ବ୍ରହ୍ମ" "ଅୟମାତ୍ମା ବ୍ରହ୍ମ" ଇତ୍ୟାଦି ବାକ୍ୟମାନ ନିରର୍ଥକ । ଆତ୍ମାର ମୁକ୍ତିସାଧନ ସକାଶେ କେବଳ ଯଜ୍ଞାଦି କର୍ମ ପ୍ରୟୋଜନ ।

ନ୍ୟାୟଦର୍ଶନ ମତରେ ମଧ୍ୟ ସଂସାର ଦୁଃଖମୟ—ଦୁଃଖର କାରଣ ଜନ୍ମ – ଜୀବ ପ୍ରବୃତ୍ତିବଶରେ କର୍ମ କରେ—କର୍ମର ଫଳ ଭୋଗ ନିମନ୍ତେ ପ୍ରବୃତ୍ତି ହେତୁ ରାଗ, ଦ୍ୱେଷ, ମୋହ ଏ ସମସ୍ତଙ୍କୁ ଦୋଷ ବୋଲାଯାଏ । ଦୋଷ ମିଥ୍ୟା ଜ୍ଞାନରୁ ଉତ୍ପନ୍ନ—ଏହି ମିଥ୍ୟାଜ୍ଞାନର ଉଚ୍ଛେଦ ସାଧନହିଁ ମୁକ୍ତିର କାରଣ ।

ନ୍ୟାୟସୂତ୍ର ଯଥା

"ଦୁଃଖ-ଜନ୍ମ-ପ୍ରବୃତ୍ତି-ଦୋଷ-ମିଥ୍ୟାଜ୍ଞାନାନାଂ ଉତ୍ତରୋତ୍ତରାପାୟେ ତଦନନ୍ତରାପାୟାତ୍ ଅପବର୍ଗ ।"

ଅର୍ଥାତ୍ ନ୍ୟାୟଦର୍ଶନ ମତରେ ତତ୍ତ୍ୱଜ୍ଞାନଲାଭହିଁ ଅପବର୍ଗ ; ଅର୍ଥାତ୍ ଆତ୍ୟନ୍ତିକ ଦୁଃଖନାଶର କାରଣ । ସେହି ତତ୍ତ୍ୱଜ୍ଞାନ କେଉଁ ବିଷୟର ? ୧ । ପ୍ରମାଣ । ୨ । ପ୍ରମେୟ । ୩ । ସଂଶୟ । ୪ । ପ୍ରୟୋଜନ । ୫ । ଦୃଷ୍ଟାନ୍ତ ।୬ । ସିଦ୍ଧାନ୍ତ । ୭। ଅବୟବ । ୮। ତର୍କ । ୯ । ନିର୍ଣ୍ଣୟ । ୧୦ । ବାଦ । ୧୧ । ଜଳ୍ପ । ୧୨ । ବିତଣ୍ଡା ୧୩ । ହେତ୍ୱାଭାସ । ୧୪ । ଛଳ । ୧୫ । ଜାତି । ୧୬ । ନିଗ୍ରହସ୍ଥାନ । ଏହି ଷୋଳଟି ବିଷୟରେ ତତ୍ତ୍ୱଜ୍ଞାନ ଅପବର୍ଗ ଲାଭର ଉପାୟ । ଏଥିରୁ ଜଣାଯାଏ ଅପବର୍ଗ ଲାଭ ନିମନ୍ତେ ଈଶ୍ୱରାରାଧନା ପ୍ରସଙ୍ଗ ଆଦୌ ଉଲ୍ଲେଖ କରି ନାହାନ୍ତି ।

ମହର୍ଷି ପାତଞ୍ଜଳକୃତ ଦର୍ଶନକୁ ପାତଞ୍ଜଳ ଦର୍ଶନ ବୋଲାଯାଏ । ମହର୍ଷି କପିଳ ଜୀବନ୍ମୁକ୍ତି ଲାଭର ଯେଉଁ ପଚିଶ ଗୋଟି ତତ୍ତ୍ୱ ନିର୍ଦ୍ଦେଶ କରିଅଛନ୍ତି, ପାତଞ୍ଜଳ ସେ ସମସ୍ତ ସ୍ୱୀକାରପୂର୍ବକ ଅଧିକନ୍ତୁ ଗୋଟିଏ ତତ୍ତ୍ୱ ପ୍ରକାଶ କରିଅଛନ୍ତି—ସେହି ତତ୍ତ୍ୱଟି ଈଶ୍ୱରଜ୍ଞାନ । ପାତଞ୍ଜଳ ଈଶ୍ୱରଙ୍କ ଲକ୍ଷଣ ଏହିରୂପେ ନିର୍ଦ୍ଦେଶ କରିଅଛନ୍ତି—

"କ୍ଳେଶକର୍ମବିପାକାଶୟୈରପରାମୃଷ୍ଟଃ ପୁରୁଷବିଶେଷ ଈଶ୍ୱରଃ ତତ୍ର ନିରତିଶୟସର୍ବଜ୍ଞବୀଜମ୍ ।"

ମହର୍ଷି ଈଶ୍ୱରଙ୍କ ଅସ୍ତିତ୍ୱ ସ୍ୱୀକାର କଲେ ମଧ୍ୟ ତାହାଙ୍କ ମତରେ ଯୋଗସାଧନହିଁ କୈବଲ୍ୟ-ଲାଭର ଏକମାତ୍ର ଉପାୟ, ଯୋଗ କଣ ? ଚିତ୍ତବୃତ୍ତିରୋଧ । ଧ୍ୟେୟ ବସ୍ତୁରେ ଆତ୍ମସଂଯୋଗହିଁ ଯୋଗ ।"ଅର୍ଥ ଆସାଂ ନିରୋଧକ ଉପାୟ ।" ଚିତ୍ତବୃତ୍ତି ନିରୋଧର ଉପାୟ କଣ ?

"ଅଭ୍ୟାସବୈରାଗ୍ୟାଭ୍ୟାଂ ତନ୍ନିରୋଧଃ"

ଆମ୍ଭେ ଆପଣଙ୍କ ସମୀପରେ ଦର୍ଶନ ଶାସ୍ତ୍ର ସମ୍ବନ୍ଧରେ ଅତି ସଂକ୍ଷେପତଃ କେତୋଟି କଥାମାତ୍ର ପ୍ରକାଶ କଲୁଁ । ଏଥିରୁ ଗୋଟିଏ ଗୋଟିଏ କଥା ମୀମାଂସା କରିବାକୁ ହେଲେ ବହୁକାଳ ପ୍ରୟୋଜନ । ସହସ୍ର ସହସ୍ର ମହାଜ୍ଞାନୀ ସହସ୍ର ସହସ୍ର ବର୍ଷବ୍ୟାପୀ କାଳ ଆଲୋଚନା ନିଯୁକ୍ତ ଥିବାର ଦେଖାଯାଏ । ସହସ୍ର ସହସ୍ର ଗ୍ରନ୍ଥ ମଧ୍ୟ ରଚିତ ହୋଇ ଯାଇଅଛି । ଯାହା ହେଉ, ଏହା ଧ୍ରୁବ ସତ୍ୟ ଯେ ତତ୍ତ୍ୱଜ୍ଞାନ ଲାଭ ନିମନ୍ତେ ଦର୍ଶନ ଶାସ୍ତ୍ର ଆଲୋଚନାହିଁ ମୁଖ୍ୟ ଉପାୟ ।

ପଣ୍ଡିତ ମୃତ୍ୟୁଞ୍ଜୟ ବାଣୀଭୂଷଣ ବେଦାନ୍ତବାଗୀଶ ନିରୀଶ୍ୱରପକ୍ଷ ମତ ଖଣ୍ଡନ ସକାଶେ ଉତ୍ତର କଲେ—

ନ୍ୟାୟରତ୍ନ ମହୋଦୟ 'ଅଜ୍ଞ ଏବଂ ବହୁଦର୍ଶୀ ସଂଶୟ ନାସ୍ତି । ମାତ୍ର ସେ ଦର୍ଶନ ଶାସ୍ତ୍ରର ସୂତ୍ର ମାନ ପ୍ରତି ନିର୍ଭର କରି ଆପଣାର ମନ୍ତବ୍ୟ ପ୍ରକାଶ କରିଅଛନ୍ତି । ପରବର୍ତ୍ତୀ ମହାପ୍ରାଜ୍ଞ ଟୀକାକାରମାନେ ଯେଉଁ ବ୍ୟାଖ୍ୟା ପ୍ରକାଶ କରି ଯାଇଅଛନ୍ତି, ସେଥିପ୍ରତି ଦୃଷ୍ଟିକ୍ଷେପ ପର୍ଯ୍ୟନ୍ତ କରିଥିବାର ଜଣା ଯାଉ ନାହିଁ । ପରମେଶ୍ୱରଙ୍କ ଅସ୍ତିତ୍ୱ ସମ୍ବନ୍ଧରେ ଯେଉଁ ମତ, ଅତି ସଂକ୍ଷେପରେ କିଛି କଥା ବୋଲିବାକୁ ଇଚ୍ଛାକରୁଁ ।

ସାଂଖ୍ୟର ଟୀକାକାର ବିଜ୍ଞାନଭିକ୍ଷୁ "ଈଶ୍ୱରାସିଦ୍ଧେ" ଏହି ସୂତ୍ର ଟୀକାରେ ଉଲ୍ଲେଖ କରିଅଛନ୍ତି—ଈଶ୍ୱର ଇନ୍ଦ୍ରିୟଗୋଚର ବା ପ୍ରମାଣଗମ୍ୟ ନୁହନ୍ତି । ଏ କ୍ଷେତ୍ରରେ ତାହାଙ୍କ ସମ୍ବନ୍ଧରେ କୌଣସି ବିଷୟ ଆଲୋଚନା କରିବା ଅନାବଶ୍ୟକ । କପିଳ ନିରୀଶ୍ୱରବାଦୀ ଥିଲେ । "ଈଶ୍ୱରାଭାବାତ୍" ଏହିପରି ସୂତ୍ର ଲେଖିଥାନ୍ତେ ।

ନିଶ୍ଚିତ ବୈଶେଷିକ ଦର୍ଶନରେ ମହର୍ଷି କଣାଦ ନିଃଶ୍ରେୟସ ଲାଭର କାରଣ ଈଶ୍ୱରଙ୍କ ନାମ ତଦ୍‌ବଂଶତି ସ୍ଥାନରେ ଉଲ୍ଲେଖ କରିଅଛନ୍ତି । ଏ କ୍ଷେତ୍ରରେ ତାହାଙ୍କୁ ନିରୀଶ୍ୱରବାଦୀ ବୋଲିଯାଇ ନ ପାରେ । ତାହାଙ୍କ ଦର୍ଶନର ଗୋଟିଏ ଟୀକା ଏହି—

"ଅବଶ୍ୟମେବ ଭୋକ୍ତବ୍ୟଂ କୃତଂ କର୍ମ ଶୁଭାଶୁଭମ୍ ।
ନାଭୁକ୍ତଂ କ୍ଷୀୟତେ କର୍ମ କଳ୍ପକୋଟିଶତୈରପି ।"

ଶୁଭ ବା ଅଶୁଭ ହେଉ ଯେଉଁ କର୍ମ କରିବ, ସେଥିର ଫଳ ଅବଶ୍ୟ ଭୋଗ କରିବାକୁ ହେବ, କୋଟି କଳ୍ପରେ ମଧ୍ୟ କ୍ଷୟ ହେବ ନାହିଁ । ଏ କ୍ଷେତ୍ରରେ ମହର୍ଷି କଣାଦଙ୍କର ଉପଦେଶ ଶୁଭକର୍ମ ଅନୁଷ୍ଠାନ ବିଷୟରେ ସଚେଷ୍ଟ ହୁଅ—ଈଶ୍ୱରାରାଧନାର ପ୍ରୟୋଜନ କଣ ? ତେବେ ଏଥି ସକାଶେ ତାହାଙ୍କୁ ନିରୀଶ୍ୱରବାଦୀ ବୋଲିଯାଇ ନ ପାରେ ।

ପାତଞ୍ଜଳଦର୍ଶନୋକ୍ତ ଗୋଟିଏ ସୂତ୍ର—
"ତତଃ ପ୍ରତ୍ୟକ୍‌ଚେତନାଧିଗମୋଽପ୍ୟନ୍ତରାୟାଭାବଶ୍ଚ ।"

ଅର୍ଥାତ୍ ଈଶ୍ୱରପ୍ରଣିଧାନରେ ବ୍ୟାଧି ପ୍ରଭୃତି ବିଘ୍ନମାନ ଦୂର ହୋଇଥାଏ ଏବଂ ଆତ୍ମସାକ୍ଷାତ୍କାର ଲାଭ ହୋଇଥାଏ ।

ଆମ୍ଭେ ଗୋଟିଏ ମାତ୍ର ସୂତ୍ର ଏ ସ୍ଥାନରେ ଉଲ୍ଲେଖ କଲୁଁ । ମାତ୍ର ପାତଞ୍ଜଳ ଦର୍ଶନରେ ଈଶ୍ୱରଙ୍କ ପ୍ରତି ଆତ୍ମସମର୍ପଣ କରିବା ଯୋଗର ମୂଳସୂତ୍ର ବୋଲି ଅନେକ ସ୍ଥଳରେ ଉଲ୍ଲେଖ ଅଛି ।

ଆଉ ମୀମାଂସାକାର ଜୈମିନି ମଧ୍ୟ ନାସ୍ତିକ ନ ଥିଲେ । ଯେହେତୁ ସେ ବେଦର ପ୍ରାମାଣ୍ୟ ଅସ୍ୱୀକାର କରି ନାହାନ୍ତି । କେବଳ ଏତିକି କଥା କହୁଅଛନ୍ତି ଯେ, 'ଜୀବର ମୁକ୍ତିଲାଭ ସକାଶେ ବେଦର କର୍ମକାଣ୍ଡହିଁ ଅନୁଷ୍ଠେୟ, ଜ୍ଞାନକାଣ୍ଡ ଅନାବଶ୍ୟକ ।' ଏସ୍ଥଳେ ତାହାଙ୍କୁ ନିରୀଶ୍ୱରବାଦୀ ବୋଲିଯାଇ ନ ପାରେ ।

କରୁଣାନିଧାନ ବୁଦ୍ଧଦେବଙ୍କ ସମ୍ବନ୍ଧରେ କଥିତ ହୁଏ, ସେ ନିରୀଶ୍ୱରବାଦୀ ଥିଲେ, କିନ୍ତୁ ଜୀବନର ଶେଷ ମୁହୂର୍ତ୍ତରେ ତାହାଙ୍କ ପ୍ରଧାନ ଶିଷ୍ୟ ଆନନ୍ଦଙ୍କୁ ଯେଉଁ ଉପଦେଶ ଦେଇ ଯାଇଅଛନ୍ତି, ସେଥିର ସାରମର୍ମ ଏହି "ଈଶ୍ୱର ଅଛନ୍ତି ବା ନାହାନ୍ତି, ସେ ବିଷୟରେ ଆନ୍ଦୋଳନ କରିବାର ପ୍ରୟୋଜନ କଣ ? ମାନବର ଏମନ୍ତ କିଛି ଇନ୍ଦ୍ରିୟ ନାହିଁ, ଯହିଁରେ ସେ ଈଶ୍ୱରସତ୍ତା ଅନୁଭବ କରିବାକୁ ସମର୍ଥ ହେବ, ତେବେ ଅନ୍ଧକାର ଆଲୋଡ଼ନର ପ୍ରୟୋଜନ କଣ ? ତୁମ୍ଭେ କେବଳ ଆତ୍ମୋନ୍ନତି ବିଷୟରେ ସଯତ୍ନ ହୁଅ—କର୍ମଫଳ

ଯୋଗରେ ତୁମ୍ଭେ ଉଚ୍ଚତମ ସ୍ଥାନ ଲାଭରେ ସମର୍ଥ ହେବ । ତାହାଙ୍କ ମତର ଏମନ୍ତ ଗୋଟାଏ ଶକ୍ତି ଅଛି, ଯଦ୍ଦ୍ବାରେ ଅଦ୍ୟାବଧି ପୃଥିବୀର ଏକ ତୃତୀୟାଂଶ ସ୍ଥାନରେ ତାହାଙ୍କ ମତ ବ୍ୟାପ୍ତ । ସେହି ଅନନ୍ତଜ୍ଞାନୀ ମହାପୁରୁଷଙ୍କର ଏମନ୍ତ ଗୋଟାଏ ଭବିଷ୍ୟତ୍ ଦୃଷ୍ଟି ଥିଲା ଯେ, ତାହା ବଳରେ ସେ ଦେଖିଥିଲେ, ଈଶ୍ୱର ନାମ ଘେନି ପୃଥିବୀରେ ଭୟଙ୍କର ରକ୍ତପାତ ଘଟିବାର ସମ୍ଭବ । ବାସ୍ତବିକ ଦେଖନ୍ତୁ, ତାହାଙ୍କ ପରବର୍ତ୍ତୀ କାଳରେ ମୁସଲମାନ ଖ୍ରୀଷ୍ଟାନ, ହିନ୍ଦୁ—ମୁସଲମାନ, ବୌଦ୍ଧ—ହିନ୍ଦୁ, ପ୍ରୋଟେଷ୍ଟାଣ୍ଟ—କ୍ୟାଥଲିକ ମଧ୍ୟରେ କେବଳ ଈଶ୍ୱର ନାମ ଘେନି ରକ୍ତପାତ ଯୋଗେ କୋଟି କୋଟି ଲୋକଙ୍କର ରକ୍ତପାତରେ ପୃଥିବୀ ପ୍ଲାବିତ ହୋଇଅଛି । ବର୍ତ୍ତମାନ ଜ୍ଞାନ—ବିଜ୍ଞାନର ବହୁଳ ପ୍ରଚାର ସମୟରେ ମଧ୍ୟ ପରସ୍ପର ବିଦ୍ୱେଷରେ ବିରାମ ନାହିଁ ।

ବଡ଼ଗଡ଼ ରାଜସଭା ପଣ୍ଡିତ ରଙ୍ଗାଭଟ୍ଟଲ୍ ଭେଙ୍କଟାଚାଲୁଲୁ କହିଲେ, 'ଦର୍ଶନଶାସ୍ତ୍ର ବଡ଼ କଠିନ ଶାସ୍ତ୍ର ଥାଉଥିବାର—ହେଲେ—ଅତି ଭଲ ଜ୍ଞାନପ୍ରଦ ଥାଉଛି । ଯେମନ୍ତ ମିରପିକାଇଲୁ ବୋଇଲେ ଲଙ୍କାମରିଚ୍ଚ ଖାଦ୍ୟ ଥାଉଛି; ମାତ୍ର ପୃଥିବୀରେ ସର୍ବଶ୍ରେଷ୍ଠ ଖାଦ୍ୟ ଥାଉଛି—ଲଙ୍କାମିରିଚ୍ଚ ଆଉ ଦର୍ଶନଶାସ୍ତ୍ର ନ ଥିଲେ ମାନବାଲୁ ରକ୍ଷା ପାଇବାର ନାହିଁ ଏକ୍‌କା—

"ମିରପକାଇଲୁ ଚନ୍ଦ୍ର ପାଣ୍ଡୁ ପେରୁଗୁମିଶ୍ରିତମ୍
ବେଦା ଦର୍ଶନଶାସ୍ତ୍ରାଣି ଚ ସମ୍ଭବନ୍ତୁ ମମ ଜନ୍ମଜନ୍ମନ ।"

ପଣ୍ଡିତେ ଶ୍ଳୋକର ବ୍ୟାଖ୍ୟା କରିବାକୁ ଯାଉଥିଲେ, ମାତ୍ର ପଣ୍ଡିତ ବିଦ୍ୟାସାଗର ମହାଶୟ କିଞ୍ଚିତ୍ ହସି ଦେଇ ଆରମ୍ଭ କଲେ, "ଦର୍ଶନଶାସ୍ତ୍ର ଆଲୋଚନାଦ୍ୱାରା ସୁସ୍ପଷ୍ଟ ପ୍ରତୀୟମାନ ହୁଏ—ମହର୍ଷିମାନେ ଯେମନ୍ତ ଆତ୍ମତତ୍ତ୍ୱ ବିଷୟର ତଳ ସ୍ପର୍ଶ କରିବାକୁ ଯଥାସାଧ୍ୟ ଚେଷ୍ଟା କରିଥିଲେ, କିନ୍ତୁ କୃତକାର୍ଯ୍ୟ ହୋଇ ପାରିନାହାନ୍ତି, ଏ ପ୍ରକାର ବିଶ୍ୱାସ କରାଯାଇ ନ ପାରେ । ଆଉ ଦେଖାଯାଏ ଅସ୍ମଦ୍ଦେଶୀୟ ଦାର୍ଶନିକମାନେ ପ୍ରକୃତ ପକ୍ଷରେ ନାସ୍ତିକ ନ ଥିଲେ । ଜାଗତିକ ପରିଦୃଶ୍ୟମାନ ଘଟନାବଳୀର ଅନ୍ତରାଳରେ ଯେଉଁ ଏକ ଅନନ୍ତ ଶକ୍ତି ବା ଅନନ୍ତ ଜ୍ଞାନ ବିଦ୍ୟମାନ—ଯାହାଙ୍କ ଅଟମ ନିୟମରେ ସମସ୍ତ କାର୍ଯ୍ୟ ସାଧିତ ହେଉଅଛି, ଆତ୍ମାର ସଦ୍‌ଗତି ନିମନ୍ତେ ତାହାଙ୍କ ପ୍ରତି ଯେ ସମ୍ପୂର୍ଣ୍ଣ ନିର୍ଭରତା ଆବଶ୍ୟକ, ଏ ବିଷୟ ସ୍ୱୀକାର ନ କରିବା ହେତୁ ସମ୍ପୂର୍ଣ୍ଣ ମାୟାବାଦ ବା ଶୂନ୍ୟବାଦରେ ଉପସ୍ଥିତ ହୋଇ ଅଛନ୍ତି । ଏହାହିଁ ନୈସ୍ପୃହିକ ନାସ୍ତିକତା । ପ୍ରକୃତ ପକ୍ଷରେ ନାସ୍ତିକ ଥିଲେ ଋଷି ଚାର୍ବାକ—କିନ୍ତୁ ତାହାଙ୍କର ନ୍ୟାୟଧର୍ମ ବିରୁଦ୍ଧ ଦର୍ଶନଶାସ୍ତ୍ର ଏକାବେଳକେ ବିଲୁପ୍ତ ହୋଇଅଛି ।

ଦେଖାଯାଏ, ଯେଉଁଠାରେ ଦର୍ଶନ ଶାସ୍ତ୍ରରେ ଶେଷ, ସେହି ସ୍ଥାନରୁ ଗୀତାଶାସ୍ତ୍ରର ଆରମ୍ଭ—ଗୀତାହିଁ ପ୍ରକୃତ ଧର୍ମଶାସ୍ତ୍ର । ମନରେ କରନ୍ତୁ, ଜଣେ ସୁପାଚକ ଉତ୍ତମ ଉତ୍ତମ ମସଲା ଦେଇ ଅତି ଉତ୍କୃଷ୍ଟ ପଦାର୍ଥରେ ବ୍ୟଞ୍ଜନ ପ୍ରସ୍ତୁତ କଲା, କିନ୍ତୁ ଏକମାତ୍ର ଲବଣାଭାବ ; ସୁତରାଂ ସେହି ବ୍ୟଞ୍ଜନ ବୃଥା । ସେହିପରି ଦର୍ଶନକାରମାନେ ଜ୍ଞାନ ସମ୍ବନ୍ଧରେ ଆଲୋଚନାର ପରାକାଷ୍ଠା ଦେଖାଇ ଯାଇଥିଲେ ମଧ୍ୟ ଏକମାତ୍ର ଈଶ୍ୱରାରାଧନା ସମ୍ବନ୍ଧରେ ବ୍ୟବସ୍ଥା କରି ଯାଇ ନ ଥିବାରୁ ସମସ୍ତ ଅସମ୍ପୂର୍ଣ୍ଣ ହୋଇଅଛି । ମାନବାତ୍ମା ସ୍ୱଭାବରେ ଲୋଡ଼େ ଗୋଟିଏ ଉଚ୍ଚ ଆଦର୍ଶ—ଲୋଡ଼େ ଗୋଟିଏ ଅବଲମ୍ବନ । ଦର୍ଶନଶାସ୍ତ୍ରରେ ସେଇଟିର ଅଭାବ ।

ମାନବ ଶୈଶବ ଅବସ୍ଥାରେ ଈଶ୍ୱର ସମ୍ବନ୍ଧରେ ଗୋଟାଏ ଅନ୍ଧ ବିଶ୍ୱାସ କରି ରହେ । ତଦନନ୍ତର ଜ୍ଞାନାର୍ଜନରେ ସମର୍ଥ ହେଲେ 'ନେତି' 'ନେତି' ଅର୍ଥାତ୍ ଏହା ଈଶ୍ୱର ନୁହେ, ଏହା ଈଶ୍ୱର ନୁହେ, ଏହିପରି ଘୋର ସଂଶୟରେ ତାହାର ମନ ଦୋଳାୟମାନ ହେଉଥାଏ । ସେହି ସଂଶୟ ଅବଶେଷରେ ଯେଉଁ ବିଶ୍ୱାସରେ ପରିଣତ ହୁଏ, ତାହାହିଁ ପ୍ରକୃତ ବିଶ୍ୱାସ ।

ଗୀତା ଶାସ୍ତ୍ରଜ୍ଞାନ ଆଉ ଈଶ୍ୱରବିଶ୍ୱାସ ଉଭୟ ବିଷୟରେ ପରିଷ୍କାର ଉପଦେଶ ଦେଇ ଯାଇଅଛନ୍ତି । ଅତଏବ ଗୀତାହିଁ ସର୍ବଶ୍ରେଷ୍ଠ ଧର୍ମଶାସ୍ତ୍ର—ସର୍ବବାଦି-ସମ୍ମତ—ତେଣୁ ପୃଥିବୀସ୍ଥ ସର୍ବଦେଶୀୟ ଜ୍ଞାନୀଗଣଙ୍କ-ଠାରେ ଏହାର ସମ୍ମାନ । ବିଶେଷରେ ଦର୍ଶନଶାସ୍ତ୍ରର ଅତି ନିଗୂଢ଼ ତତ୍ତ୍ୱମାନ ସର୍ବସାଧାରଣର ବୋଧଗମ୍ୟ ନୁହେଁ । ଏଥିପାଇଁ ଭଗବାନ୍ ବାସୁଦେବ ଯେମନ୍ତ ପୃଥିବୀସ୍ଥ ଲୋକସାଧାରଣର ଜୀବନ୍ମୁକ୍ତି ନିମନ୍ତେ ସାର ସାର ଉପଦେଶମାନ ସଂକ୍ଷେପରେ ସାଧାରଣରେ ବୋଧଗମ୍ୟରୂପେ ପ୍ରକାଶ କରି ଯାଇଅଛନ୍ତି । ଏଥିକୁ "ଗୀତା ସୁଗୀତା କର୍ତ୍ତବ୍ୟା କିମନ୍ୟୈଃ ଶାସ୍ତ୍ରବିସ୍ତରୈଃ ।" ପୁଣି ପୃଥିବୀର ସର୍ବପ୍ରଥମ ସର୍ବଶ୍ରେଷ୍ଠ ଭ୍ରମପ୍ରମାଦଶୂନ୍ୟ ଶାସ୍ତ୍ର ଯେ ବେଦ, ସେଥିର ସାରାଂଶ ଅର୍ଥାତ୍ ଉପନିଷଦ ଶାସ୍ତ୍ର ଗାଭୀସ୍ୱରୂପ, ଗୀତା ତାହାର ଦୁଗ୍ଧ ।

"ସର୍ବୋପନିଷଦୋ ଗାବୋ ଦୋଗ୍ଧା ଗୋପାଲନନ୍ଦନଃ
ପାର୍ଥୋ ବତ୍ସଃ ସୁଧୀର୍ଭୋକ୍ତା ଦୁଗ୍ଧଂ ଗୀତାମୃତଂ ମହାନ୍ ।"

ଅନ୍ୟାନ୍ୟ ଶାସ୍ତ୍ର ସମାନ ଗୀତାର ମତ ମଧ୍ୟ ପୃଥିବୀ ଦୁଃଖ ପୂର୍ଣ୍ଣ —

"ଦୁଃଖାଳୟମଶାଶ୍ୱତଂ ।"

ଜୀବନ୍ମୁକ୍ତ ସକାଶେ ଗୀତାଶାସ୍ତ୍ର ଯେଉଁ ସହଜସାଧ୍ୟ ସାରଗର୍ଭ ଉପଦେଶମାନ ଦେଇଅଛନ୍ତି, ତାହାହିଁ ଧର୍ମାର୍ଜନର ସର୍ବଶ୍ରେଷ୍ଠ ଉପାୟ । ଆମ୍ଭେ ବର୍ତ୍ତମାନ ସେଥିରୁ ଦୁଇଗୋଟି ଶ୍ଳୋକ ବୋଲିବାକୁ ଇଚ୍ଛା କରୁ—

"ରାଗଦ୍ୱେଷବିମୁକ୍ତୈସ୍ତୁ ବିଷୟାନିନ୍ଦ୍ରିୟୈଶ୍ଚରନ୍ ।
ଆତ୍ମବଶ୍ୟୈର୍ବିଧେୟାତ୍ମା ପ୍ରସାଦମଧିଗଚ୍ଛତି ।"

× × ×

"ସର୍ବଧର୍ମାନ୍ ପରିତ୍ୟଜ୍ୟ ମାମେକଂ ଶରଣଂ ବ୍ରଜ ।
ଅହଂ ତ୍ୱାଂ ସର୍ବପାପେଭ୍ୟୋ ମୋକ୍ଷୟିଷ୍ୟାମି ମା ଶୁଚଃ ।"

ଅନ୍ୱୟାର୍ଥଃ—ରାଗଦ୍ୱେଷଶୂନ୍ୟ ଆତ୍ମବଶୀଭୂତ ଇନ୍ଦ୍ରିୟ-ମାନଙ୍କ ଯୋଗେ ବିଷୟ ଭୋଗ କଲେ ମଧ୍ୟ ଜିତେନ୍ଦ୍ରିୟ ଲୋକ ଚିତ୍ତପ୍ରସାଦ ଲାଭ କରେ । ଅନ୍ୟାନ୍ୟ ସର୍ବପ୍ରକାର ଧର୍ମ ପରିତ୍ୟାଗ କରି କେବଳ ଈଶ୍ୱରଙ୍କ ଆଶ୍ରୟ ଗ୍ରହଣ କର, ସେହି ଈଶ୍ୱର ତୁମ୍ଭଙ୍କୁ ସର୍ବପ୍ରକାର ପାପରୁ ଉଦ୍ଧାର କରିବେ, ଶୋଚନା କର ନାହିଁ ।

ଦେଖନ୍ତୁ, ଗୀତାକଥିତ ଉପଦେଶ ସର୍ବସାଧାରଣ ଲୋକଙ୍କ ପକ୍ଷରେ କେଡ଼େ ସହଜଲଭ୍ୟ ବିଷୟ ଅଟେ । ନିତାନ୍ତ ଶୁଷ୍କ, ନିତାନ୍ତ ଜଟିଳ, ନିତାନ୍ତ ତର୍କମୟ ଦର୍ଶନ ଶାସ୍ତ୍ର କେତେଜଣ ଲୋକଙ୍କର ବୋଧଗମ୍ୟ ହୋଇପାରେ ? ଶାସ୍ତ୍ରରେ ଉକ୍ତ ଅଛି—

"ଅଚିନ୍ତ୍ୟାଃ ଖଳୁ ଯେ ଭାବାଃ ନ ତାନ୍ ତର୍କେଷୁ
ଯୋଜୟେତ୍ ।"

ଆତ୍ମା, ପରକାଳ, ଈଶ୍ୱର ଏ ସମସ୍ତ ଅଚିନ୍ତ୍ୟ ବିଷୟରେ ମୁକ୍ତିକାମୀ ଲୋକ ତର୍କ ଉପସ୍ଥିତ କରିବେ ନାହିଁ । ବୁଦ୍ଧଦେବ ଦୃଢ଼ରୂପେ ନିଷେଧ କରି ଯାଇଛନ୍ତି ।

ଚୈତନ୍ୟ ଦେବଙ୍କର ମଧ୍ୟ ଉପଦେଶ—

"ବିଶ୍ୱାସେ ପାଇବ କୃଷ୍ଣ ତର୍କେ ବହୁ ଦୂର ।"

ଏଥିକୁ ଆମ୍ଭର ମତ ଏହି—ବୁଦ୍ଧିବୃତ୍ତିର ତୀକ୍ଷ୍ଣତା ସମ୍ପାଦନ ନିମନ୍ତେ ଦର୍ଶନଶାସ୍ତ୍ର ଅଧ୍ୟୟନ କରିବାରେ ଆପତ୍ତି ନାହିଁ; ମାତ୍ର ଧର୍ମଶାସ୍ତ୍ରରୂପେ ତାହାକୁ ଗ୍ରହଣ କରିବା ଉଚିତ ବୋଲି ବୋଧ କରୁ ନାହୁଁ । ବସ୍ତୁତଃ କି ଭାରତବର୍ଷ କି ପୃଥିବୀସ୍ଥ ଅନ୍ୟ ଉନ୍ନତ ଦେଶମାନ କୌଣସି ସ୍ଥାନରେ ଦର୍ଶନଶାସ୍ତ୍ର ଧର୍ମଶାସ୍ତ୍ରରୂପେ ଗୃହୀତ ହୋଇଥିବାର ଦେଖାଯାଏ ନାହିଁ । କପିଳ, କଣାଦ, ଜୈମିନି ବା ପାଶ୍ଚାତ୍ୟ ମିଲ୍, ସ୍ପେନ୍ସାର ପ୍ରଭୃତି ଦାର୍ଶନିକମାନେ ଯୁକ୍ତି ତର୍କବଳରେ ଈଶ୍ୱରସତ୍ତା ପ୍ରତିପାଦନ କରିବାକୁ ଯାଇ ମାନବ ଜାତିର ସ୍ୱାଭାବିକ

ବୁଦ୍ଧିର ସସୀମତା ଯୋଗୁଁ କୃତକାର୍ଯ୍ୟ ହୋଇ ନ ପାରି ସଂଶୟବାଦୀ ହୋଇ ପଡ଼ି ଅଛନ୍ତି । ଏଣେ ଅଭ୍ରାନ୍ତ ବେଦବାକ୍ୟ—

"ନ ତତ୍ର ଚକ୍ଷୁର୍ଗଚ୍ଛତି ନ ମନୋ ନ ବାକ୍ ।"

ଏ କ୍ଷେତ୍ରରେ ସେମାନଙ୍କ ଚେଷ୍ଟା ଯେ ବ୍ୟର୍ଥ ହୋଇଯିବ, ଆଦୈ ସେ କଥାଟା ବୁଝିବା ସେମାନଙ୍କ ପକ୍ଷରେ ଉଚିତ ଥିଲା । ଆଉ ଗୋଟିଏ କଥା ପ୍ରତି ମଧ୍ୟ ଦୃଷ୍ଟି ରଖିବା ଉଚିତ ବୋଲି ସେମାନେ ବୋଧ କରି ନାହାନ୍ତି । ଆମ୍ଭମାନଙ୍କର ପଦତଳସ୍ଥ ଗୋଟିଏ ଅତି ତୁଚ୍ଛ ଦୂର୍ବାଦଳ ସୃଷ୍ଟିର ଉଦ୍ଦେଶ୍ୟ ତାହାର ଗୁଣ ବା ଧର୍ମମାନ ଆୟତ୍ତ କରିବା କ୍ଷୁଦ୍ର ମାନବ ବୁଦ୍ଧିର ଅସାଧ୍ୟ । ଏ କ୍ଷେତ୍ରରେ ଅନନ୍ତ ବିଶ୍ୱବ୍ରହ୍ମାଣ୍ଡର ଅଧିପତି ଜଗଦୀଶ୍ୱରଙ୍କ ସ୍ୱରୂପ ନିରୂପଣ କରିବାକୁ ଚେଷ୍ଟା କରିବା ପରିମିତଜ୍ଞାନୀ ମାନବ ପକ୍ଷରେ ନିତାନ୍ତ ଦାମ୍ଭିକତାର କାର୍ଯ୍ୟ । ପୁଣି ସର୍ବବ୍ୟାପି ଜଗତସ୍ରଷ୍ଟା ବିଶ୍ୱପିତା ଜଗଦୀଶ୍ୱରଙ୍କ ଅସ୍ତିତ୍ୱ ପ୍ରତି ସନ୍ଦିହାନ ହେବା ନିଶ୍ଚୟ ବୁଦ୍ଧିର ବିଡ଼ମ୍ବନା ବିଷୟ ଅଟେ । ଉପନିଷଦ ବାକ୍ୟ—

"ଈଶାବାସ୍ୟମିଦଂ ସର୍ବଂ ଯତ୍କିଞ୍ଚ ଜଗତ୍ୟାଂ ଜଗତ୍ ।"

ଜଗତର ପ୍ରତ୍ୟେକ ଅଣୁ ପରମାଣୁ ପର୍ଯ୍ୟନ୍ତ ଈଶ୍ୱରସତ୍ତାରେ ବ୍ୟାପ୍ତ । ବାୟୁ ସାଗରରେ ନିମଗ୍ନ,ଅଥଚ ତାହାର ଅସ୍ତିତ୍ୱ ପ୍ରତି ସନ୍ଦିହାନ ମାନବ ଆଉ ଜନନୀ କ୍ରୋଡ଼ରେ ଶାୟିତ ଜନନୀକୁ ଅନ୍ୱେଷଣକାରୀ ଶିଶୁ ସମାନ ସେହି ଲୋକର ଚେଷ୍ଟା ଅଦୂରଦର୍ଶିତାର କାର୍ଯ୍ୟ ଅଟେ । ସାଧାରଣତଃ ଆମ୍ଭେମାନେ ଧର୍ମକ୍ଷେତ୍ରରେ ଚତୁର୍ବିଧ ଲୋକ ଦେଖିବାକୁ ପାଉଁ । ୧ । ପ୍ରକୃତ ଈଶ୍ୱର ବିଶ୍ୱାସୀ । ୨ । ସଂଶୟବାଦୀ । ୩ । ଅନ୍ଧବିଶ୍ୱାସୀ । ୪ । ନାସ୍ତିକ । ପ୍ରକୃତ ଧର୍ମଶାସ୍ତ୍ର ଅଧ୍ୟୟନ ବା ସଦ୍‌ଗୁରୁ ଉପଦେଶ ପ୍ରଭାବରେ ଈଶ୍ୱରସତ୍ତା ପ୍ରାଣରେ ଅନୁଭବକାରୀ ଈଶ୍ୱରୋପାସକମାନେହିଁ ଧର୍ମମାର୍ଗରେ ଶ୍ରେଷ୍ଠ ଯାତ୍ରୀ । ଯେଉଁମାନେ କୌଣସି ରୂପ ଅନୁସନ୍ଧାନ ନ କରି କୁସଂସର୍ଗ ବା ଭ୍ରାନ୍ତ ଉପଦେଶ ପ୍ରଭାବରେ କୌଣସି ପ୍ରକାର ପଦାର୍ଥକୁ ଈଶ୍ୱର ଜ୍ଞାନରେ ଉପାସନା କରିଥାନ୍ତି, ସେହିମାନେ ହିଁ ଅବିଶ୍ୱାସୀ । ସୌଭାଗ୍ୟ-ପ୍ରଯୁକ୍ତ କେହି କେହି ଅନ୍ଧବିଶ୍ୱାସୀ ପ୍ରକୃତ ଈଶ୍ୱର ଆରାଧନାରେ ନିଯୁକ୍ତ ଅଛନ୍ତି ସତ୍ୟ, ମାତ୍ର ସର୍ପ ମାର୍ଜାର, କୁମ୍ଭୀର ବା ଅନ୍ୟ କୌଣସି ତୁଚ୍ଛ ପଶୁ, ବୃକ୍ଷ ବା ତୁଚ୍ଛ ଜଡ଼ ପଦାର୍ଥକୁ ଈଶ୍ୱରଜ୍ଞାନରେ ଅନ୍ଧଭାବରେ ଉପାସନା କରୁଥିବା ଲୋକର ପୃଥିବୀରେ ଅଭାବ ନାହିଁ । ତୁଳନାରେ ଅନ୍ଧବିଶ୍ୱାସୀଠାରୁ ଜିଜ୍ଞାସୁ ସଂଶୟବାଦୀ ବହୁ ଗୁଣରେ ଶ୍ରେଷ୍ଠପଦବାଚ୍ୟ ହେବାର ଯୋଗ୍ୟ । ଯେହେତୁ ସେମାନେ ଈଶ୍ୱରସତ୍ତା ଅନ୍ୱେଷଣରେ ନିଯୁକ୍ତ—କେତେବେଳେ ହେଲେ ସେମାନଙ୍କର ସଂଶୟାକୁଳିତ ଅନ୍ଧାକାରାଚ୍ଛନ୍ନ ହୃଦୟରେ ଈଶ୍ୱରଜ୍ୟୋତି ପ୍ରତିଫଳିତ ହେବ ବୋଲି ଆଶା କରାଯାଇ ପାରେ । କାରଣ ସଂଶୟବାଦୀମାନେ ସଚରାଚର ଜ୍ଞାନୀ, ବିଶେଷରେ ଦାର୍ଶନିକ । ସଂଶୟ ଉପସ୍ଥିତ ହେବା କାଳରେ ସେମାନେ ଅଧୀନ ଦର୍ଶନଶାସ୍ତ୍ରର ଆଶ୍ରୟ ଗ୍ରହଣ ନ କରି ସ୍ୱାଧୀନଭାବରେ ପ୍ରତ୍ୟକ୍ଷ ପରିଦୃଶ୍ୟମାନ ବିଶ୍ୱବ୍ରହ୍ମାଣ୍ଡର କାର୍ଯ୍ୟାବଳୀର ମୂଳତତ୍ତ୍ୱ ଅନୁଶୀଳନ କଲେ ଅତି ସହଜରେ ସର୍ବମୂଳାଧାର ସ୍ୱରୂପ ଅନନ୍ତ ଶକ୍ତିମାନ୍, ଅନନ୍ତ ଜ୍ଞାନୀ, ଅନନ୍ତ ଦୟାମୟ, ମହାମହିମ ଈଶ୍ୱରଙ୍କର ହସ୍ତ ଦେଖିବାକୁ ସମର୍ଥ ହୁଅନ୍ତେ । ସଂସାରାବର୍ତ୍ତରେ ପୁନଃ ପୁନଃ ଆଘାତ ପ୍ରାପ୍ତହୋଇ ନିତାନ୍ତ ଆକୁଳଭାବରେ ଦୟାମୟ ଈଶ୍ୱରଙ୍କ ଶରଣାପନ୍ନ ହୋଇ ପରିଣତ ବୟସରେ ଜୀବନରେ ଶାନ୍ତିଲାଭ କରୁଥିବାର ଅନେକ ସଂଶୟବାଦୀ ସଚରାଚର ଦୃଷ୍ଟିଗୋଚର ହୁଅନ୍ତି । ଅବଶ୍ୟ ସଂଶୟବାଦୀ କୌଣସିରୂପେ ପ୍ରଶଂସ୍ୟ ନୁହନ୍ତି । ଗୀତାଶାସ୍ତ୍ରରେ

ଉଲ୍ଲେଖ ଅଛି । "ସଂଶୟାତ୍ମା ବିନଶ୍ୟତି"; ତଥାପି ଆମ୍ଭେ ବୋଲୁଛୁ, ଅନ୍ଧବିଶ୍ୱାସୀଠାରୁ ସଂଶୟବାଦୀ ଅନେକ ଗୁଣରେ ଉତ୍ତମ ଅଟନ୍ତି । ଯେହେତୁ ସଂଶୟବାଦୀ କେବଳ ନିଜ ଆତ୍ମାର ଅନିଷ୍ଟକାରୀ, ମାତ୍ର ଅନ୍ଧବିଶ୍ୱାସୀଗଣ ପୃଥିବୀର ଭୟଙ୍କର ଶତ୍ରୁ, ଘୋରତର ଅମଙ୍ଗଳକାରୀ । ଏମାନଙ୍କ ଯୋଗରେ ଲକ୍ଷ ଲକ୍ଷ ମହାପ୍ରାଣୀଙ୍କ ଶୋଣିତସ୍ରୋତରେ ପୃଥିବୀ ପୁନଃ ପୁନଃ ପ୍ଳାବିତ ହୋଇଅଛି । ଆପଣାର ମଙ୍ଗଳ କାମନାରେ ଏମାନେ ନରବଳି ଦେବାକୁ କିଛିମାତ୍ର କୁଣ୍ଠିତ ନୁହନ୍ତି, ପ୍ରତ୍ୟୁତ ସ୍ୱର୍ଗପ୍ରଦ ବୋଲି ବିଶ୍ୱାସ କରିଥାନ୍ତି । ଦେଖାଯାଏ, ଅନ୍ଧବିଶ୍ୱାସୀମାନେ କୁସଂସ୍କାରାଚ୍ଛନ୍ନ କୃପାପାତ୍ର । ନାସ୍ତିକମାନେ ମାନବ ନାମରେ ଉକ୍ତ ହେବାର ଅଯୋଗ୍ୟ । ସର୍ପ ବ୍ୟାଘ୍ର ତସ୍କର ସମାନ ସେମାନଙ୍କୁ ବିଶ୍ୱାସ କରିଯାଇ ନ ପାରେ । ଏଭଳି ବହୁଳ ଲୋକ ଦୃଷ୍ଟ ହୁଅନ୍ତି, ଆତ୍ମସୁଖ ସାଧନ ନିମନ୍ତେ ଲୋକବିଶେଷ ବା ଲୋକସମାଜର ଅନିଷ୍ଟ ସାଧନ ନିମନ୍ତେ କେତେମାତ୍ର ହେଲେ କୁଣ୍ଠିତ ନୁହନ୍ତି । ରାଜଦଣ୍ଡ ଆଉ ଈଶ୍ୱର ଭୟରେ ଲୋକ ଦୁଷ୍କର୍ମରୁ ନିବୃତ୍ତ ହୁଏ । ଦୁଷ୍କୃତର ପ୍ରମାଣ ପ୍ରାପ୍ତ ହେଲେ ରାଜବିଧି ଦଣ୍ଡବିଧାନ କରିଥାଏ, ଏ କ୍ଷେତ୍ରରେ ଅତି ସଂଗୋପନ ଅତି ସାବଧାନତା ସହିତ ଦୁଷ୍କାର୍ଯ୍ୟ ସାଧନ କରିବା ଧୂର୍ତ୍ତଲୋକ ପକ୍ଷରେ ଅସମ୍ଭବ ନୁହେ । ଆଉ ସେ ଲୋକର ଯଦି ବିଶ୍ୱାସ ଥାଏ, ସର୍ବଦର୍ଶୀ ଜାଗ୍ରତ ଦେବତା ପରମେଶ୍ୱର ଆମ୍ଭମାନଙ୍କ ପ୍ରତ୍ୟେକ କାର୍ଯ୍ୟ ପ୍ରତ୍ୟେକ ଚିନ୍ତା ହୃଦୟର ଗଭୀରତମ ସ୍ଥାନରେ ଅବସ୍ଥିତ ଥାଇ ଦେଖୁଛନ୍ତି, ଆଉ ସେହି ମହାପ୍ରଭୁ ସମସ୍ତ ଶୁଭାଶୁଭ କାର୍ଯ୍ୟର ଦଣ୍ଡ ପୁରସ୍କାରଦାତା ଅଟନ୍ତି, ତେତେବେଳେ ଦୁଷ୍କାର୍ଯ୍ୟ ସାଧନ ସକାଶେ ଭୀତ ହେବା ତାହା ପକ୍ଷରେ ଖୁବ୍ ସମ୍ଭବ । ମାତ୍ର ନାସ୍ତିକ ପକ୍ଷରେ ସେ ଭୟର ନିତାନ୍ତ ଅଭାବ । "ଋଣଂ କୃତ୍ୱା ଘୃତଂ ପିବେତ୍"—ଏହି ମତ ଅବଲମ୍ବନପୂର୍ବକ କହି ପାରିବେ—"ଚୌର୍ଯ୍ୟଂ କୃତ୍ୱା ସୁଖୀ ଭବେତ୍—ଧର୍ମାଧର୍ମଫଳଃ କୁତଃ ?"

× × × ×

ପଣ୍ଡିତମାନଙ୍କ ଚର୍ଚ୍ଚା କରିବାର ଭାର ହରିବୋଲ ବାରିକ ଉପରେ ଅଛି । ବାରିକେ ଦେଖିଲେ, ବ୍ରାହ୍ମଣ ଗୋସାଇଁ ଗୁଡ଼ାକ ଯେପରି ବକାବକିରେ ଲାଗିଛନ୍ତି, ସଞ୍ଜ ବଜାଇ ଦେବେ । ସଭାର କିଛି ଦୂରରେ ଛିଡ଼ା ହୋଇ ପଣ୍ଡିତମାନଙ୍କୁ ଶୁଣାଇ ଶୁଣାଇ ଖୁବ୍ ଗୋଟାଏ ପାଟି କରି କହିଲା, "ଏଁ—ହରିବୋଲ ! ଆରେ ଗୋସାଇଁ ମହାପ୍ରଭୁଙ୍କ ପାଠ ଛିଡ଼ନାହିଁ—ଏତେ ଚଞ୍ଚଳ ପତର କିଏ ଲଗାଇ ଦେଲା ? ଆରେ ଅମୃତରସାବଳୀ କାକର ହାଣ୍ଡି ଟୋକା ନେଇ ଯାରେ—ବିଲେଇ ଗୁଡ଼ାକ ପଲ ପଲ ବୁଲୁଛନ୍ତି । ମଲା ଯା ! ଦହି ସରଗୁଡ଼ାକ ଖାଇଗଲେ, ଦହିହାଣ୍ଡି ମାରୁ ଗଲା ନା ରହିଲା ?" ଏଣେ ଦିନ ତିନି ପହର ଗଡ଼ିଲା ପରି ହେଲାଣି । ସମସ୍ତଙ୍କ ପେଟ ଜଳୁଛି । ଯେଉଁମାନେ ପାଠରେ ଲାଗିଛନ୍ତି, ଲାଗିଥାନ୍ତୁ; ଆଉ ସମସ୍ତେ ହକ୍‌ଦାର ହୋଇଗଲେଣି । ଏତେ ସଭାଟାରେ ପାଟି ଫିଟିବାକୁ ନାହିଁ, ମନରେ ଲାଜ, କଷ୍ଟ ଏଣେ ପୁଣି ଭୋକ ! ବାରିକ କଥା ଶୁଣି ଗୋଳମାଳ କରି ସମସ୍ତେ ଉଠି ପଡ଼ିଲେ । ପତରପାଣି ସକାଶେ ହୁରି ଡକା ପଡ଼ିଗଲା ।

———

-୨୭-

## ରିପୋର୍ଟ ଲେଖାଇ

ରାତି ଅନୁମାନ ପହରକ ଭିତରେ ନଅର ଭିତର ବେହରଣ ପିଣ୍ଡାରେ ମଣିମା ଗୃହମଣି ଦେଈ ପିଣ୍ଡା ବାଡ଼କୁ ଆଉଜି ବସିଛନ୍ତି । ଲଳିତା (ଓରଫ ଚିନ୍ତକଳା) ଡେବିରି ହାତଟା ତାଙ୍କ ପିଠିରେ ବୁଲାଉଛି, ଖାଇବା

ହାତରେ ପଙ୍ଖାଟାଏ ଧରି ବିଞ୍ଚୁଛି । ନାଜର ଆଉ ଧାଈ ମା ଦୁଇ ଜଣ ପାଖରେ ବସିଛନ୍ତି । ଗୋଟାଏ ପିତଳ ଥାଳିରେ ଲଳିତା ଆଳୁଅଟାଏ ମିଞ୍ଜି ମିଞ୍ଜି ହୋଇ ଜଳୁଛି । ନଟବର ବାବୁ କଥା ପକାଇଲେ, "ଏ ଧାଈ ମା ! ଦେଖିଲ ତ, ଗୋଟିଏ ଛପା ନାହିଁ – ସବୁ କଥା ଦାଣ୍ଡରେ ପଡ଼ି ହାଟରେ ଗଡ଼ୁଛି । ମୁଁ ନ ଆସିଥିଲେ କଣ ନିସ୍ତାର ହୋଇଥାନ୍ତା ?" ଲଳିତା କହିଲା, "ସେଥିଲାଗି ତ ମା ତରବର ହୋଇ ବାବୁଙ୍କୁ ପଠାଇ ଦେଲେ । ତୁମକୁ ସିନା ଡରରେ କେହି କିଛି କହୁ ନାହାନ୍ତି । ମା ସବୁ କଥା ଶୁଣିଲେଣି, ମୁଲକ ଲୋକ ତ ଶୁଣିଲେଣି, ମା କଣ ନ ଶୁଣିବେ, ମା ମୋ ହାତରେ ଆପଣଙ୍କୁ ଖବର ଦେଇଛନ୍ତି, ଖାଲି ବାବୁଙ୍କ କଥା ଶୁଣିବେ, ଆଉ କାହାରିକୁ ପଚାରିବେ ନାହିଁ ।" ନଟବର ବାବୁ କହିଲେ, "ସବୁ ତ ହେଲା, ମୁଲକ କିପରି ସମ୍ଭଳା ଯାଏ ? ଏ ଥାଳି ଖଣ୍ଡିକ ଯେ ପିଲା ଦିଓଟିଙ୍କର ସର୍ବସ୍ୱ ।" ଧାଈ ମା କହିଲେ, "ମୁଁ କଣ କରିବି—କଣ ଜାଣେ ? ମଉସାଙ୍କୁ ଆଉ ପୁରୁଣା ପାଞ୍ଜିଆମାନଙ୍କୁ ଡକା, ସମସ୍ତେ ବସି ବିଚାର କର, ଯାହା ଭଲ ହୁଏ କର ।"

ନାଜର କହିଲେ, "ଏ ଧାଈ ମା ! ତୋର ମୁଁ, ନା ତୋର ଗୋସେଁଇଁର ମୁଁ ? ମୁଁ ତ ଛ ଥର ଡାକିଲଣି, କାହାରି ସୋର ଶବଦ ନାହିଁ । ଆଉ କ ସେ ମଉସା ପଞ୍ଜିଆ ଅଛନ୍ତି ? ସମସ୍ତେ ମେଳା ମେଳା ହୋଇ କଣ ଫୁସର ଫାସର ହେଉଛନ୍ତି, ଡାକିଲେ ପାଖ ପଶୁନାହାନ୍ତି । ମୋ ଡରରେ କଥାଟା ଫୁଟିଆସି ହେଉ ନାହିଁ, ମୁଁ ଉଠିଗଲେ ଶୁଣିବ ଯେ । କେତେକ ହାକିମଙ୍କର ସେମାନଙ୍କ ଉପରେ ତିଳେ ହେଲେ ବିଶ୍ୱାସ ନାହିଁ । କେତେକ ହାକିମ କହୁଛନ୍ତି, ବୃନ୍ଦମଣି ନାମରେ ମୁଲକ ରହିବ – ତୁମେ ଟଙ୍କା ପଇସାଗୁଡ଼ାକ ସମ୍ଭାଳି ରଖିବ । ହାକିମ ତ ସବୁ କାମ କରିବେ, ମୁଁ ତୁମ କଥା ହାକିମଙ୍କୁ ଆଉ ହାକିମଙ୍କ କଥା ତୁମକୁ ଶୁଣାଉ-ଥିବି । ମୋର ଆଉ କଣ କାମ— ଆଉ କିଏ ଅଛି ? ପିଲା ଦିଓଟି ହୃଦୟର ନିଧି— ନୟନର ପିତୁଳା । ଦୁଇ କୂଳରେ ଜଳ ଦିଆଏ ଟେକିବାକୁ ଆଉ କିଏ ? ବଞ୍ଚି ବର୍ତ୍ତି ପଡ଼ିଥିଲେ ମଣିଷ ହେଲେ ତ ଚଉଦ ପୁରୁଷରେ ରାଜପଣ ସମ୍ଭାଳିବେ, ଆଉ ପ୍ରଜାପାଟକ ପାଳିବେ । ଆଉ ସାହେବ ହେଲେ ମୁଲକର ବାଦସା; ତାଙ୍କ କଥା ନ ରଖିଲେ କଣ ବାକି ରଖିବେ ?"

ଲଳିତା କହିଲା, "ସାହେବ କଥା ନ ମାନିଲେ ଘର ଖପା ହୋଇଯିବେ ପରା ! କଣ ବୋଲି କଣଟାଏ କରି ପକାଇବେ ! ଜଗି କାମ କରିବା ଉଚିତ ।" ଧାଈମା କହିଲେ, "ଆଉ ସବୁ କଥା ଯାହାହେଉ—ପିଲା ଦିଓଟି କିପରି ରକ୍ଷା ପାଆନ୍ତି, ଏତିକ ବିଚାର କର ।"

ନାଜର ବାବୁ—"ମୋର ତ ସେଇ କଥା, ମୁଁ କଣ ଟଙ୍କା ସୁନାର ସାଇତିଆ ହୋଇଛି ? ପିଲା ଦିଓଟି ଉପରେ ଅମୃତ ବରଷୁ, କାଲିକ କାଲି ଛତି ଧରି ରଜା ହୋଇ ବସିବେ । ମୁଁ ଯେ ଏତେ ଧନ ସମ୍ଭାଳୁଛି କାହା ଲାଗି ? କଥାଟା ଶୁଣିଲା ବେଳୁଁ ମୋ ମୁଣ୍ଡରେ ଚଡ଼କ ପଡ଼ିଲାଣି ! ଏବେ ସମସ୍ତଙ୍କର ଇଚ୍ଛା, ଦୁଇ ରାଜଗୀକୁ ଏକ କରିବେ, ପିଲା ଯୋଡ଼ିକ ସେମାନଙ୍କ ଆଖିର ବାଲି ହୋଇଛନ୍ତି ।"

ସଇସ୍ୱର୍ଣ୍ଣ ଦେଈ କଥାଟା ଶୁଣି ଚମକି ପଡ଼ିଲେ— ତାଙ୍କ ବୁଦ୍ଧି ଶୁଦ୍ଧି ଯାହା ଟିକିଏ ଥିଲା, ଲୋପ ପାଇଲାଣି । ମୁଣ୍ଡ ବୁଲାଉଛି – ଦଣ୍ଡିକ ବାଦ ଟିକିଏ ସମ୍ଭାଳା ହୋଇ କହିଲେ, "କଣ କହୁଛୁରେ ନଟ - କଣ କହୁଛୁ ? ନା—ନା ତୁ ବୁଝି ନାହୁଁ ପରା, ଏଡ଼େ କଥାଟା ସେମାନେ ମନରେ ପାଞ୍ଚୁଥିବେ ନା ?"

ନାଜର – "ଧାଈ ମା ! ମୁଁ କିଛି କହିବି ନାହିଁ, କହିବାବେଳକୁ ଛାତି ଫାଟି ଯାଉଛି । ତୁମେ ଲୋକାତରେ ସବୁ କଥା ଶୁଣିବ ଯେ, ତୁମ ଆଖିରେ କଣ ସେମାନେ

ଧୂଳି ପକାଇ ପାରିବେ ? ସେମାନଙ୍କର ଏକା ଡର ତୁମକୁ । ଆଚ୍ଛା ଏତିକ କଥା ତୁମେ ବୁଝୁ ନାହଁ, ଆଜକ ହାତ ଗଣନ୍ତା ଚଉଦ ଦିନ ବିତ ଗଲାଣି—ତୁମକୁ ପଦେ କଥା କେହି ପଚାରୁଛୁ ନା ? ଉଆସ ଭିତରେ କଣ ହେଲ, କଣ ନ ହେଲ, ଥରେ ବୁଝାବୁଝି କରିବାର ଉଚିତ ଥିଲ ତ ! ବିପଦବେଳେ ଯେ ପାଖ ଘୁଞ୍ଚ ପଡ଼େ, ସେ କିପରି ଲୋକ, ମନକୁ ବୁଝ ତ ! ଭଲ ମନ୍ଦ ଯେମନ୍ତ କିଛି ନ ବୁଝିଲେ ନାହଁ, ଉଆସ କତେଇକୁ ତ ଯିବା ଆସିବା କରୁଥାନ୍ତେ ?"

ଲଳିତା—ମୁଁ ଉଆସ ଗୃହଆଡ଼େ ତିନଥର ବୁଲ ଆସିଲଣି, ପାଞ୍ଚବରଷଆ ପିଲାଟିର ବି ଦେଖା ନାହିଁ । ତୁମେ ଆପଣା ଦାଣ୍ଡଦୁଆର କଥା ଶୁଣି ପାର ନାହିଁ— ମାଙ୍କ କାନରେ ସବୁ କଥା ବାଜଗଲାଣି ।

ସରସ୍ୱତୀ ଦେଈ—ଅପା କଣ କହୁଛନ୍ତି ?

ଏହି କଥାଟା ଶୁଣି ନାଜର ବାବୁଙ୍କ ମୁହଁ ଶୁଖି ଗଲାଣି । ଚଉଦ ପୁରୁଷରେ କେହି ଆମ ଗ୍ରାମର ନାମ ଶୁଣି ନାହାନ୍ତି—ସେ ତ ମୋ ସାଙ୍ଗରେ କଟକରୁ ଦାଣ୍ଡେ ଦାଣ୍ଡେ ଆସିଲ, କଣଟା ବୋଲ କଣଟା କହି ପକାଇବ—ସବୁ କଥା ଭଣ୍ଡୁର ହୋଇଯିବ ।

ଚମ୍ପକଲତା ନାଜରଙ୍କ ମୁହଁ ଦେଖି ଅଭିପ୍ରାୟ ବୁଝିଗଲାଣି । କହିଲ, "ମା ବାବୁଙ୍କୁ ମାଲ ମାମଲ କଥା କେତେ କହିଲେ, ମୁଁ ମାଇକନିଆ ଲୋକ କଣ ବୁଝିଛି, କଣ କହିବ ? ଆପଣ ବାବୁଙ୍କୁ ପଚାରନ୍ତୁ, ସବୁ ଶୁଣିବେ । ଖାଲ ମୋ ହାତରେ ଏତିକ କହିଛନ୍ତି; ଆପଣ ବାବୁଙ୍କ କଥାରେ ଚାଲିବେ; ଆଉ କାହାରିକୁ ପଚାରିବେ ନାହିଁ ।" ନାଜର ବାବୁ କଥାଟା ଶୁଣି ଭାରି ଖୁସି । ମନରେ କଲେ; ମୋର ଗୋଟିଏ ଲକ୍ଷ୍ମୀ; ଆଉ ଗୋଟିଏ ସରସ୍ୱତୀ । ପ୍ରକାଶ କରି କହିଲେ, "ଏ ଧାନ୍ଦିମା ! ଏତେ କଥାରେ କଣ ଅଛି; ସେ ଯାହା କରୁଛି କରୁ; ଆମର ଧର୍ମ ଅଛି । ଆପେ ସାବଧାନ ହେଲେ ଯେତେ ଦୁସ୍‌ମନ ଆସନ୍ତୁ; କିଛି କରି ପାରିବେ ନାହିଁ । ଆଉ ଗୋଟିଏ କଥା, ହାକିମ ତ ମୁରବି ବସିଛନ୍ତି—ସିଂହ ଉପରେ ବିଲୁଆଗୁଡ଼ାକ କାହିଁ ବିଲରେ ପଶିବେ । ଗୋଟାଏ କଥା ହେଉଛି; ହାକିମ ହୁକୁମ ନ ମାନଲେ ସର୍ବନାଶ ।"

ସରସ୍ୱତୀ ଦେଈ ବୁଦ୍ଧିମତୀ; ସଂସାରର ଅନେକ କଥା ବୁଝନ୍ତି । ରୂପ ଦେଖି ଲୋକର ଦୁଇ ଚାରିଟା କଥା ଶୁଣି ଲୋକ ଚିହ୍ନିବାର ଶକ୍ତି ତାଙ୍କର ଖୁବ୍ ଅଛି । ଏଣେ ବଡ଼ ନମ୍ର; ସେହିପରି ସରଳ— ହେଲେ କଣ; ତାଙ୍କୁ କେହି ଠକାଇ ପାରିବ ନାହିଁ । ମାତ୍ର ଆଜ ନାଜର ନଟବର ଦାସଙ୍କ ବୁଦ୍ଧିଠାରେ ତାଙ୍କର ସବୁ ବୁଦ୍ଧି ପରାସ୍ତ । ସେଥିର କାରଣ, ବର୍ତ୍ତମାନ ସରସ୍ୱତୀ ଦେଈଙ୍କ ସମସ୍ତ ବୁଦ୍ଧି କେବଳ ପିଲାମାନଙ୍କ ରକ୍ଷା ବିଷୟରେ କେନ୍ଦ୍ରୀଭୂତ । ଆଉ ବିଷୟ ବୁଝିବାକୁ ଇଚ୍ଛା ନାହିଁ, ଶକ୍ତିର ମଧ୍ୟ ଅଭାବ । କେବଳ ଲକ୍ଷ୍ୟ, ତିନୋଟି ପ୍ରାଣୀ କିପରି ରକ୍ଷା ପାଇବେ । ଆଉ ଗୋଟିଏ କଥା, ନଟବର ଯେତେ ବଡ଼ ହେଉ ପଛକେ ସରସ୍ୱତୀ ଦେଈଙ୍କ ଆଖିରେ ସେ ପିଲା । କାଲ ତାକୁ କୋଳରେ ବସାଇ ମଣିଷ କରିଛନ୍ତି, ତାହା ବିଷୟରେ ସାବଧାନ ହେବେ କଣ ? ଏ କି କଥା ! ପିଲାଙ୍କ ଅମଙ୍ଗଳ କାମନାରେ ଷଡ଼ଯନ୍ତ୍ର ! ତାଙ୍କର ଆଉ ଯେତିକ ଟିକିଏ ବୁଦ୍ଧି ଥିଲ ହଜି ଗଲାଣି । ସରସ୍ୱତୀ ଦେଈ ଜ୍ୟେଷ୍ଠଭ୍ରାତୃ ଆଉ ପାଞ୍ଜିଆ କାର୍ଯ୍ୟମାନଙ୍କୁ ଭଲରୂପେ ଚିହ୍ନନ୍ତି, ନଟବର ଯେ ଗୋଟିଏ ଭଲ ବଗୁଲିଆ ଟୋକା, ତାହାମଧ୍ୟ ତାଙ୍କୁ ଅଜଣା ନ ଥିଲ । ହେଲେ କଣ ? ବର୍ତ୍ତମାନ ବୁଦ୍ଧି ବାମ—ବିପଦରେ ଉଦ୍‌ବେଗ ହେଲେ ବା ବିପଦାଗମ ପୂର୍ବରେ ମନୁଷ୍ୟର ବୁଦ୍ଧିର ଶୃଙ୍ଖଳା ଦେଖାଯାଏ; ଆପଣା କୃତକାର୍ଯ୍ୟର ଭବିଷ୍ୟତ ଫଳାଫଳ ତେତେବେଳେ ବୁଝିପାରେ ନାହିଁ । ସୀତାଦେବୀ ଭଲରୂପେ ଜାଣିଥିଲେ ଲକ୍ଷ୍ମଣ ତାଙ୍କ

ହକାଶେ ସର୍ବତ୍ୟାଗୀ—ଘଟଣା ସ୍ଥଳରେ ଖାଲି ତୁଚ୍ଛା କଥାଟାରେ ତାଙ୍କ ପ୍ରତି ଘୋର ଅବିଶ୍ୱାସ ! ଧର୍ମରାଜ ଯୁଧିଷ୍ଠିର ପରି ଲୋକ ଧର୍ମପତ୍ନୀ ଦ୍ରୌପଦୀଙ୍କୁ ହରାଇ ବସିଲେ । ଦେଖା ଯାଉଛି, ମାନବ ଘଟଣାର ଦାସ, ସହଜ ବୁଦ୍ଧିଟା ମଧ୍ୟ ସମୟରେ ହରାଇ ବସେ ।

ସରସ୍ୱତୀ ଦେଈ ଆଉ କିଛି ଭାବି ପାରିଲେ ନାହିଁ । ଅପା କହୁଛନ୍ତି, ପୁଣି ହାକିମଙ୍କ ହୁକୁମ । କାନ୍ଦୁଣୁମାନ୍ଦୁଣୁ ହୋଇ କହିଲେ, "ନଟ ! ସାହେବ ଯାହା କହୁଛନ୍ତି କର । ଧର୍ମ ଜାଣେ, ତାଙ୍କର ଯାହା ଇଚ୍ଛା କରନ୍ତୁ । ହାକିମଙ୍କୁ କହିବୁ, ଖାଲି ପିଲା ଦିଓଟିଙ୍କ ଉପରେ ଦୟା ରଖିଥିବେ ।" ସରସ୍ୱତୀ ଦେଈଙ୍କ ଆକୁଳତା ଦେଖି ନଟବରବାବୁ ମନ ମଧ୍ୟରେ ଭାରି ଗୋଟାଏ ଖୁସି ହୋଇ ଗଲେଣି—ତେଣୁ ସେ ବର୍ତ୍ତମାନ କୃତକାର୍ଯ୍ୟ । ଆତ୍ମବୁଦ୍ଧିର ସଫଳତା ଦେଖି କିଏ ଆନନ୍ଦିତ ନ ହୁଏ ? କ୍ଷତବିକ୍ଷତା ହରିଣୀର ଜୀବନ-ଯାତନା ବ୍ୟାଧ ହୃଦୟରେ ଆନନ୍ଦର କାରଣ ହୋଇଥାଏ । ନଟବର ଆଉ ଟିକା ଦୁଇଜଣ ମୁହଁ ଗୁହାଁଗୁହିଁ ହେଲେ - ଏ ଗୁହାଁଗୁହିଁଟା କାର୍ଯ୍ୟସାଫଲ୍ୟଜନିତ ଆନନ୍ଦର ଚିହ୍ନ ଅଟେ । ନଟବର ଦାସେ ଖଣ୍ଡିଏ ରିପୋର୍ଟ ଲେଖି ଆଣିଥିଲେ । ସେଥିରେ ମଣିମାଙ୍କର ଦସ୍ତଖତ ଦରକାର । ସରସ୍ୱତୀ ଦେଈଙ୍କ ଅନୁରୋଧ, ଚିଟକଲାର ସମସ୍ତ ଆୟୋଜନ ବ୍ୟର୍ଥ ହୋଇଗଲା । ଯେଣୁ କି ମଣିମାଙ୍କର ବୁଦ୍ଧି ବିଲୋପ—ଇନ୍ଦ୍ରିୟ ସମସ୍ତ ଅବଶ । କେବଳ ରିପୋର୍ଟରେ ମଣିମାଙ୍କ ମୋହରଟା ଚପାଇ ଦିଆଗଲା । ନାଜର ବାବୁଙ୍କ ନିତାନ୍ତ ଧରା-ଧରିରେ ସରସ୍ୱତୀ ଦେଈ ମୋଡ଼ି ମୋଡ଼ି ହୋଇ ସେଥିରେ ମଣିମାଙ୍କ ନାମଟା ଲେଖି ଦେଲେ ।

ବାସନା ପୂର୍ଣ୍ଣ, ହୃଦୟ ଆନନ୍ଦରେ ପୂର୍ଣ୍ଣ । ନାଜର-ବାବୁ ମେଲାଣି ଘେନିବା ବେଳେ ମଳିନ ମୁଖରେ କହିଲେ, "ଧାଈମା ! ଖବରଦାର ! ପିଲା ଦିଓଟିଙ୍କ ପଦାକୁ ଛାଡ଼ିବ ନାହିଁ । ସେମାନଙ୍କୁ କେହି ପଦେ କଥା କହିଲେ ମୁଁ ଜୀବନ ହରାଇ ଦେବି । ଜାଣିଲ ଧାଈ ମା—ପିଲାଯୋଡ଼ିକ ମୋ ଜୀବନର ଜୀବନ—ଦେହର ରକ୍ତ ।"

---

## -୨୨-

## ଅଳଙ୍କାର ପୋଟଳା

ଗଲା ରାତିପରି ଆଜି ମଧ୍ୟ ଠିକ୍ ସେହି ବେଳରେ ବେହରଣ ପିଣ୍ଡାରେ ସମସ୍ତେ ଯେ ଯାହା ଜାଗାରେ ବସିଛନ୍ତି । ନଟବର ଦାସେ ଏକଥା ସେ କଥା ପାଞ୍ଚ-କଥା ଉତ୍ତାରେ କହି ବସିଲେ, "ଧାଈମା ! ସବୁ ତ ହେଲା—ହିଁ—ମୁଁ କଟକ ଯାଉଛି - ତୁମେ ତ ଜାଣ, ସରକାରୀ କର୍ମରେ ପା ବନ୍ଧା—ସବୁବେଳେ ଆସି ଯାଇ ପାରିବି ନାହିଁ । ଗୋଟିଏ କଥା ମନରେ ପଡ଼ିଗଲା, କହିବାକୁ ଅଇଲି । ତୁମେ ତ ବାମ୍ଭଣୀ ପରି ହେଉଛ, ବୃନ୍ଦ ତ ଏକୋଟିବେଳକେ ଅଜ୍ଞାନ; ମୁଁ କହୁଥିଲି, ଅଳଙ୍କାର ଦିଖଣ୍ଡ ସାଇତି ସୁଇତି ରଖିଦେଇ ଗଲେ ଭଲ ହୁଅନ୍ତା । ପୋଇଲୀ ପରିବାରଙ୍କୁ ଯେତେ ଆପଣାର ବୋଲ, ସୁନା ରୂପାକୁ କାହାର ଲୋଭ ନାହିଁ ? ସେ ଅଳଙ୍କାର ଦିଖଣ୍ଡରେ ତୁମର କଣ ଅଛି, ନା ମୁଁ ଲଗାଇବି ? ବେଳରେ ପିଲାମାନଙ୍କର ଲୋଡ଼ା ହେବ । ସାଇତି ସୁଇତି ନ ରଖିଲେ ଆମ୍ଭମାନଙ୍କର ଅଧର୍ମ । ପିଲାମାନେ କଣ ଜାଣୁଛନ୍ତି ? ଏଇଟା ହେଲା ଆମ୍ଭ-ମାନଙ୍କର ଧର୍ମ ।"

ସ୍ତ୍ରୀମାନେ ଯେତେ ବିପଦରେ ପଡ଼ନ୍ତୁ, ଅଳଙ୍କାରରୁ ସେମାନଙ୍କର କେମନ୍ତ ଗୋଟାଏ ମାୟା ଛାଡ଼େନାହିଁ । ବିଶେଷରେ ଉଆସରେ ସେହି ମହାମୂଲ୍ୟ ସମ୍ପତ୍ତି ଗୁଡ଼ାକ ନଟବରକୁ ଦେଖାଇବାକୁ ଧାଈମାଙ୍କର ଇଚ୍ଛା ବିଲ୍କୁ-ନାହିଁ । କହିଲେ, "ସେ ଗୁଡ଼ାକ କେଉଁଠି ପଡ଼ିଛି—

ସେହି ଅମଙ୍ଗଳିଆ ଧନ ଗୃହ ଦେବ ଅଳଙ୍କାର ପହଡ଼ ପଲଙ୍କ ତଳକୁ ଫୋପାଡ଼ ଦେଇଥିଲି, କଣ ହେଲା ଜାଣେ ନା ।" ନଟବର କହିଲେ, "ସେହି କଥା ମୁଁ କହୁଛି ପରା—ଉଚ୍ଛୁଣି ନ ସାଇତିଲେ ସେ ସବୁ ଗୁଡ଼ାକ କୁଆଡ଼େ ଲଣ୍ଡଭଣ୍ଡ ହୋଇଯିବ । ତୁମେ ଧୈର୍ଯ୍ୟ ଧର, ସମ୍ଭାଳ ହୁଅ—ନା ନା ଉଚ୍ଛୁଣି ସବୁ ଦେଖି ରଖ । ମୁଁ ଚାଲି ଯାଇଥାନ୍ତି, ହାକିମ ବାରି ବାରି କରି କହିଛନ୍ତି, ସାଇତି ସୁଇତି ଦେଇ ନ ଗଲେ ମୋ ଉପରେ ଭାରି ଖପା ହେବେ ।" ଲଳିତା କହିଲା, "ହଁ—ହଁ, ହାକିମ ତ ସେ କଥା କହିଛନ୍ତି । ପଦାରେ ମାଲଗୁଡ଼ାକ ପଡ଼ିଛି, ମୁଁ ଦେଖିଛି, ପୋଇଲା ପରିବାଣ ଯେ ସେ ଲୋକ ପହଡ଼ ଘରକୁ ଧାଡ଼ ଛୁଟିଛନ୍ତି । କଏ କେତେବେଳେ ଜଗି ବସିଛି ବୋଲି ତ ! ସାଇତା ସୁଇତା ନ ହେଉଁ ଖାଲି ଥରେ ଆଖି ବୁଲାଇ ଯାଅ—ନୋହିଲେ ହାକିମ ପଚାରିଲେ କଣ କହିବ ?"

ଲଳିତା (ଚଞ୍ଚଳା) କଥାଗୁଡ଼ାକ ଶୁଣି ନାଜର ବାବୁ ଭାରି ଖୁସି—ଆପଣାକୁ ଭାରି ଭାଗ୍ୟବାନ୍ ବୋଲି ମନେ କଲେ । ସେହି ସମୟରେ ଯେମନ୍ତ ଆଶାଟା ତାଙ୍କ ହୃଦୟରେ ବସି କହିଲା, 'ଲାଗି ଥା—ସମୟରେ ଲକ୍ଷପତି ହୋଇଯିବୁ ।'

ସରସ୍ୱତୀ ଦେଈଙ୍କ ବୁଦ୍ଧି ଆଉ ଥରେ ପରାସ୍ତ ହେଲା । ସରସ୍ୱତୀ ଆଉ ଚଞ୍ଚଳା ଦୁହେଁ ବୁଦ୍ଧିମତୀ । ଜଣକର ବୁଦ୍ଧି କଳଙ୍କ ସମ୍ପର୍କ ମାତ୍ର ଶୂନ୍ୟା ଏବଂ ଜନ ହିତସାଧିନୀ; ଚଞ୍ଚଳାର ବୁଦ୍ଧି ବୈଚିତ୍ର୍ୟମୟୀ, ସ୍ୱାର୍ଥସାଧନପ୍ରବଳା ଏବଂ ଉଚ୍ଛୃଙ୍ଖଳା । ପୁଣି ବର୍ତ୍ତମାନ ସମୟରେ ସରସ୍ୱତୀ ଦେଈଙ୍କ ବୁଦ୍ଧି ବିପଦବାହୁଲ୍ୟବିଭ୍ରାନ୍ତା, ସୁତରାଂ ପରିଣାମ-ଫଳ-ଚିନ୍ତନରେ ଶକ୍ତିଶୂନ୍ୟା । ଚଞ୍ଚଳାର ବୁଦ୍ଧି କାର୍ଯ୍ୟ-ସାଧନତତ୍ପର । ଏମନ୍ତ ଅବସ୍ଥାରେ ବିଜୟ ଚଞ୍ଚଳା ବୁଦ୍ଧି ପକ୍ଷରେ ସହଜଲଭ୍ୟ । ନାଜର ବାବୁ ପୁନର୍ବାର କହିଲେ, "ଧାଈ ମା ! ମୁଁ ଆସିବାବେଳେ ହାକିମ ବାରି ବାରି କରି କହିଛନ୍ତି, ସବୁ ଅଳଙ୍କାର ଏକ ଜାଗାରେ ପୁଟୁଳା କରି ବନ୍ଧାଯିବ, ସେହି ପୁଟୁଳା ସିନ୍ଦୁକରେ ରହିବ; ସେଥିରେ ଯୋଡ଼ାଏ ତାଲା ପଡ଼ିବ । ଗୋଟିଏ କଞ୍ଚିକାଠି ରହିବ ତୁମ ହାତରେ; ଆଉ ଗୋଟାଏ କଞ୍ଚିକାଠି କଟକ ଖଜଣାଖାନା ଲୁହା ସିନ୍ଦୁକରେ ରହିବ, ସେଠି ଚାରି ଜଣ ସିପାହୀ ବନ୍ଧୁକ କାନ୍ଧରେ ପକାଇ ଦିନ ରାତି ଖାଡ଼ା ପହରା—ମାଛିଟିଏ ଗଳିବାକୁ ବାଟ ନାହିଁ ।" ସରସ୍ୱତୀ ଦେଈ ଦଣ୍ଡେ ଗୁମ୍ ମାରି ରହିଲେ; କଣ ଗୋଟାଏ କଥା ମନରେ ପାଞ୍ଚିଲେ, କିଛି କଥା ନ ବୋଲି ଝପଟାଏ ଧରି ଛିଡ଼ା ହୋଇଗଲେ, "ଆ ନଟ ଆ, କହି ସାମନ୍ତଙ୍କ ପହଡ଼ ଘର ଭିତରକୁ ଯାଇ କହିଲେ—"ଯା ନଟ, ପଲଙ୍କ ତଳେ ଯେ ଗୁଡ଼ାକ ପଡ଼ିଛି, ଗୋଟେଇ ଗାଟେଇ ଆଣ ।" ନାଜର ବାବୁ ଅଳଙ୍କାର ଗୋଟେଇବା ବେଳେ ପ୍ରତ୍ୟେକଟା ଭଲକରି ଦେଖି ଯାଉଥାନ୍ତି - ଜଡ଼ିଉ ଅଳଙ୍କାରର ହୀରା ନୀଳା ମୁକ୍ତାଗୁଡ଼ାକ ଦୀପ ଆଲୁଅରେ ଜୁଳୁଜୁଳିଆ ପୋକ ପରି ଜକ୍‌ଜକ୍ ଦିଶୁଥାଏ । ସେହି ଆଲୁଅ ଗୁଡ଼ାକ ଯେମନ୍ତ ନାଜର ବାବୁ ହୃଦୟରେ ପଶି ଯାଉଛି । କହିଲେ, "ଧାଈମା ! ଆଉ ଯେଉଁଠି ଯାହାଅଛି ଦେ; ଏକା ସଙ୍ଗରେ ବାନ୍ଧି ଦିଏଁ ।" ଧାଈ ମା ଆଉ ଗୋଟିଏ ବଡ଼ ବାକ୍ସ ଫିଟାଇ ଗୁଡ଼ାଏ ଅଳଙ୍କାର ବାହାର କରିଦେଲେ । ନାଜର ବାବୁ ଖଣ୍ଡେ ଶାଗ ପାଟ କନାରେ ଭଲ କରି ବାନ୍ଧୁଥାନ୍ତି । ଧାଈ ମା ଅଳଙ୍କାରକୁ ଅନାଇ ପାରୁ ନାହାନ୍ତି । କେବଳ ବେଳେ ବେଳେ ନାଜର ବାବୁଙ୍କ ହାତର କାର୍ଯ୍ୟଟାକୁ ଅନାଇ ଦେଉଥାନ୍ତି । ଗୋଟାଏ ବଡ଼ ସିନ୍ଦୁକରେ ଯୋଡ଼ାଏ କୋଳପ ପଡ଼ିଲା । ନାଜର ବାବୁ ଧାଈମାଙ୍କୁ ଦେଖାଇ ଦେଖାଇ ଦୁଇ ତିନି ଥର କୋଳପ ଯୋଡ଼ାକ ଭିଡ଼ ଭିଡ଼ ଦେଖିଲେ । ଗୋଟାଏ କଞ୍ଚିକାଠି ଧାଈମାଙ୍କ ହାତକୁ ବଢ଼ାଇ ଦେଇ ଚଞ୍ଚଳ ଘରୁ ବାହାରି ଆଇଲେ । ନଟ ଅନ୍ଧାରରେ ଯାଉଛି, ମନରେ କରି ଧାଈ ମା କଞ୍ଚିକାଠିଟା ସାମନ୍ତଙ୍କ

ଫଡ଼ଫଡ଼ ପଲଙ୍କ ମାଣ୍ଡିଚଳକୁ ଗୁଞ୍ଜିଦେଇ ଆଲୁଅ ଦେଖାଇବାପାଇଁ ଘରୁ ବାହାରି ଗଲେ । ସରସ୍ୱତୀ ଦେଈ କଞ୍ଚକାଠି ରଖିବା ଜଳାକବାଟି ଫାଙ୍କ ବାଟେ ଯୋଡ଼ାଏ ଆଖି ଦେଖୁଥାଏ ।

ନାଜର ବାବୁ ଝଦା ହୋଇ ବସାକୁ ଅଇଲେ । ଲଳିତା ଥାପ ଦେଖାଇ ଦେହୁଡ଼ି ଦୁଆରଯାଏ ଅଇଲା । ଦୁଇଜଣ ମୁହଁ ଚୁହାଁଚୁହିଁ ହୋଇ ମୁରକି ମୁରକି ହସୁଥାନ୍ତି—ଯେମନ୍ତ ଆଖିରେ ଆଖିରେ କିଛି କଥା ହୋଇଗଲା ।

---

## -୨୮-

## ନାଜର ବାବୁଙ୍କ କଟକ ଯାତ୍ରା

ଅଳଙ୍କାର ହେପାଜାତରେ ରଖାଯିବା ତିଆସିଦିନ ଗଡ଼ ନରପୁରରେ ପ୍ରଚାର ହେଲା, କଟକ କଲଟର ସାହେବଙ୍କଠାରୁ ଜରୁରି ଚିଠି ପାଇ ନାଜର ବାବୁ ରାତକାରାତି କଟକ ରମାନା ହୋଇଗଲେ । ତାଙ୍କ ସାଙ୍ଗରେ ଆସିଥିବା ପୋଇଲୀ ଲଳିତା ମଧ୍ୟ ଚାଲି ଯାଇଛି । କଟକ ସାହେବଙ୍କଠାରୁ ଚିଠି ଆସିଥିବା ପ୍ରସଙ୍ଗ ତାଙ୍କ ନିଯୁକ୍ତ ପିଆଦାଠାରୁ ଶୁଣାଗଲା । ବାବୁଙ୍କ ଯାତ୍ରା ପୂର୍ବ ମୁହୂର୍ତ୍ତ ପର୍ଯ୍ୟନ୍ତ ଏ କଥା କାହାରିକୁ ଜଣା ନ ଥିଲା । ଗଡ଼ର ସଦର ଦ୍ୱାରୀ ପାଇକମାନଙ୍କୁ କହିବାରୁ ଜଣାଗଲା, ନାଜର ବାବୁଙ୍କ ରମାନା ପୂର୍ବ ରାତି ସଞ୍ଜଠାରୁ ଅଧରାତିଯାଏଁ ସେ ଗଡ଼ଦ୍ୱାରଠାକୁ ତିନି ଚାରି ଥର ଯିବା ଆସିବା କରିଥିଲେ । ସର୍ବଦା ଜାଗ୍ରତ ହୋଇ ପହରା ଦେବା, ଗଡ଼ଭିତରକୁ କାହାରିକୁ ଛାଡ଼ି ନ ଦେବା କଥା ଥରକୁ ଥର ପାଇକମାନଙ୍କୁ ବୁଝାଇ ଦେଉଥାନ୍ତି । ପାଇକମାନେ ଏହା ପ୍ରକାଶ କରନ୍ତି ଯେ, ବାବୁ ଯେମନ୍ତ ଗଡ଼ ଭିତରୁ କାହାର ଆସିବା ଅପେକ୍ଷା କରୁଥିଲେ । ରାତି ଛ ଘଡ଼ି ସରିକି ଗୋଟିଏ ସ୍ତ୍ରୀ ଗଡ଼ ମଧ୍ୟରୁ ବାହାରି ଅଇଲା । ତାହା କାଖରେ ଗୋଟିଏ ପୁଟଳି ଯେମନ୍ତ ଜଣା ଥିଲା—ନାଜର ବାବୁ ତାହାକୁ ଧରି ଅଳ୍ପକ୍ଷଣ ଉତ୍ତାରେ କଟକ ଚାଲିଗଲେ । କଟକ ଯିବାବେଳେ ସବାରି ଡାକ କେହି ଶୁଣି ନାହିଁ ବା ମସାଲର ଆଲୁଅ ନ ଥିଲା ।

— —

## -୨୯-

## ରିପୋର୍ଟ ପେଶ

ବର୍ତ୍ତମାନ କଟକ ଜିଲାର କଲଟର ସାହେବଙ୍କ ନାମ ମିଷ୍ଟର ଡାଉସନ । ଅନେକ ଇଂରେଜ ହାକିମ ଅମଲା ଆଉ ପ୍ରଜାଙ୍କ ପକ୍ଷରେ ପ୍ରକୃତ ଧର୍ମଅବତାର । ଆମ୍ଭମାନଙ୍କ ଡାଉସନ ସାହେବ ସେଥି ମଧ୍ୟରୁ ଜଣେ । ସେ ଜଣେ ପୁରୁଣା ବହୁଦର୍ଶୀ ହାକିମ ହେଲେ ମଧ୍ୟ ଅମଲାମାନଙ୍କ ଠକପଣିଆ ବୁଝିବାକୁ ଅକ୍ଷମ, ଅଥବା ବୁଝିବାପାଇଁ ଚେଷ୍ଟା ବି ନ ଥାଏ । ସାହେବଙ୍କ ଅଭିପ୍ରାୟ —ଚାକରଗୁଡ଼ାକ ଗରିବ, ସେମାନଙ୍କ ଦୋଷ ଖୋଜି ଖୋଜି ଧରିଲେ ଚାଲିବ କିପରି ? ସାହେବଙ୍କ ଜାଣିବାରେ ନାଜର ନଟବର ଦାସ ଜଣେ ଖୁବ୍ ବିଶ୍ୱାସୀ, ଚାଲାଖ ଆଉ କାମିକା ଲୋକ । ସାହେବଙ୍କର ମେମସାହେବ, ଗୋଟିଏ ବଡ଼ ମିସ୍‌ବାବା, ଆଉ ସାନ ସାନ ଯୋଡ଼ିଏ ବାବା ଅଛନ୍ତି । କୋଠିରେ କାର୍ଯ୍ୟ ଢେର, ମେମ ସାହେବ ଏକଲା ପାରି ଉଠନ୍ତି ନାହିଁ । ହେଲେ କଣ ହେଲା, ନଟବର ବାବୁଙ୍କ ସକାଶେ ତାଙ୍କୁ କିଛି ବାଧେ ନାହିଁ । ଏଥି ସକାଶେ ବାବୁଙ୍କ ଉପରେ ମେମ ସାହେବଙ୍କର ବି ଖୁବ୍ ଅନୁଗ୍ରହ । କିଛି ଗୋଟାଏ କାମ ପଡ଼ିଲେ 'ବ୍ୟାବୁ ବ୍ୟାବୁ' ଡାକ ପକାନ୍ତି । ନାଜର ବାବୁ ପ୍ରତିଦିନ ବଡ଼ି ସକାଳୁ ଦଶଟା ବେଳଯାଏ କୋଠିରେ ହାଜର ଥାଇ ସବୁ କାର୍ଯ୍ୟ ତୁଲେଇ ଦିଅନ୍ତି । ଆଫିସ୍ ମଧ୍ୟ ମେମ ସାହେବ ଢେର ଥର ପରଖି

ଦେଖିଲେଣି —ଖାନସାମା ବା ଚପରାଶିଙ୍କଠାରୁ ନାଜର ବାବୁ କୁକୁଡ଼ା, ଛେଳି, ଅଣ୍ଡା, ଘୋଡ଼ାଦାନା ପ୍ରଭୃତି ଖୁବ୍ ଶସ୍ତାରେ କିଣି ପାରନ୍ତି । ଏଥି ସକାଶେ ମେମ ସାହେବ ଜାଣିବାରେ ନାଜର ଖୁବ୍ ଚଲାଖ ଆଉ ବିଶ୍ୱାସୀ ଲୋକ । ମୂଳ କଥାଟା ଏହି,ସାହେବଙ୍କ କୋଠି ଖରଚ ଜିନିଷପତ୍ର ଅଧା ଦାମ ବା ବିନା ଦାମରେ ମଫସଲ ଜମିଦାରମାନଙ୍କଠାରୁ ଅଣାଯାଏ । ଏଥିରେ ସାହେବ ଆଉ ଜମିଦାର ଦୁଇଜଣଙ୍କର ଲାଭ । ମଝିରେ ନାଜର ବାବୁ ତ ବିନା ଲାଭରେ କାହିଁରେ ହାତ ଦେବାର ଲୋକ ନୁହନ୍ତି । ସାହେବଙ୍କଠାରେ ସୁପାରିସ କରି ମାମଲାଟାଏ, କଥାଟାଏ ସଫଳ କରାଇ ଦେଲେ ଜମିଦାରଙ୍କୁ ବିନା ଦାମରେ ବା ଅଧା ଦାମରେ ଜିନିଷ ଦେବାଟା ବାଧେ ନାହିଁ । ହେଲେ ସାହେବଙ୍କୁ ଏ କଥା ହସ୍ତପୃଷ୍ଠ ଅଗୋଚର । ଏଣେ ଖାନସାମା ଚପରାସି-ଠାରୁ ଅମଲା ଯାଏ ସମସ୍ତେ ନାଜର ବାବୁଙ୍କର ବିପକ୍ଷ । ଭଆଖିଆ ବାଟରେ ହରକତ ହେଲେ କାହାର ବା ରାଗ ନ ହେବ ? ହେଲେ କଣ ହେଲା, ଖୋଦ ହାକିମଙ୍କର ଯାହା ଉପରେ ଅନୁଗ୍ରହ, ତା ବିପକ୍ଷରେ ଭରସି କଥା କହୁଛି ବା କିଏ ?

ନାଜର ବାବୁ ଗଡ଼ ନରପୁର ବାହୁଡ଼ା ବାସି ଦିନ ଖୁବ ସକାଳେ ସାହେବଙ୍କ କୋଠିରେ ହାଜର । ଏହିପରି ସବୁଦିନେ ହାଜର ହୋଇଥାନ୍ତି । ହେଲେ କଣ, ଆଜି ଚେହେରାଟା ଅନ୍ୟରୂପ—ମୁହଁ ଶୁଖିଲା — ମୁଣ୍ଡ ବାଳଗୁଡ଼ାକ ରୁଖୁରା—ଲୁଗାଗୁଡ଼ାକ ମଇଳା । ମୁହଁ ଦେଖିଲେ ଜଣାଯାଏ, କେତେଦିନ ହେଲା ଖାଇ ନାହାନ୍ତି, କାନ୍ଦି କାନ୍ଦି ଆଖି ଯୋଡ଼ାକ ଫୁଲି ଯାଇଛି । ପାସ୍ୱା ଉହାଡ଼ରେ ଯାଇ ଦୁଇ ତିନିଥର ଉଙ୍କିଲେଣି— ବୋଲ ଉଣ୍ଡୁଛନ୍ତି । ନାଜରବାବୁଙ୍କ ଉପରେ ମେଲା ହୁକୁମ ଯେତେବେଳେ ଇଚ୍ଛା ଯେଉଁଠାରେ ହେଉ ଏତଲା ନ ଦେଇ ସାହେବଙ୍କ ପାଖକୁ ଚାଲିଯାଇ ମୁଲାକାତ କରିବେ, ଯାହା କହିବାର ଥିବ କହିବେ । ହେଲେ କଣ ନାଜର ବାବୁ ହୁସିଆର ଲୋକ, ମାମଲା ଭଲ ବୁଝନ୍ତି—ସାହେବ ଭଲ ପାନ୍ତି ବୋଲି ଯେ ଫୁଲିଯାଇ ଯେତେବେଳେ ସେତେବେଳେ ପାଖକୁ ପଶିଯିବା—ଯାହା ମନକୁ ଆସିବ କହି ପକାଇବା ଏ କଥାଟା ଭଲ ନୁହେ । ହାକିମ ମନ ଉଣ୍ଡି ଜଗିଜାଗି ବାଟ ଚାଲିବା ଉଚିତ । ଆଉ ହାକିମଙ୍କୁ ପଟାପଟି କରିବା ମାମଲା ମଧ୍ୟ ତାଙ୍କୁ ଭଲ ଜଣା ।

ସଖାଳୁ ଚା ଖିଆ ସରିଲାଣି । ମେମସାହେବ ବାରନ୍ଦାରେ ଗୋଟାଏ ଝୁଲଣା ଚଉକିରେ ବସି ଧୀରେ ଧୀରେ ଝୁଲୁଛନ୍ତି; ହାତରେ ବୁଣା ସୂତା ଆଉ ଖଣ୍ଡେ କନା । ମେମମାନଙ୍କ ଅଙ୍ଗୁଳିଗୁଡ଼ାକ ଯେମନ୍ତ ସଡ଼ସଡ଼ କରୁଥାଏ—ସିଲାଇଟା ଲେଖାଟା କିଛି ଗୋଟାକରେ ନ ଲାଗି ଥପି ହୋଇପାରେ ନାହିଁ ।

ସାହେବ ଗୋଟାଏ ଆରାମ ଚଉକିରେ ପଡ଼ି ଖବରକାଗଜଟାଏ ପଢ଼ୁଛନ୍ତି – ଦୁଇଜଣଙ୍କ ମଧ୍ୟରେ ବେଶ ହସ କୌତୁକ କଥା ଚାଲିଛି । ଏଇଟା ତ ଠିକ ବେଳ, ନାଜର ବାବୁ ଇଷ୍ଟଦେବ ନାମ ମନରେ କରି ଧୀରେ ଧୀରେ ପାସ୍ୱା ଉହାଡ଼ରୁ ବାହାରିଲେ । ଧୀରେ ଅତି ସାବଧାନରେ ସାହେବଙ୍କ ଆଗରେ ହାଜର ହୋଇ ମୁଣ୍ଡ ନୁଆଁଇ ଦୁଇଜଣଙ୍କୁ ଗୋଟା ଚାରି ଛ ସଲାମ କଲେ । ସଲାମ ବେଳେ ଡାହାଣ ହାତ ଅଙ୍ଗୁଳିମୁଣ୍ଡ-ଗୁଡ଼ାକ ପ୍ରାୟ ଭୂଇଁରେ ଲାଗି ଯାଉଥାଏ । ସାହେବ ପଚାରିଲେ, "What's the matter, Nazir Babu ?" ଉଭୟଙ୍କ ମଧ୍ୟରେ ଯେତେବେଳେ ଇଂରାଜୀରେ ସବୁ କଥା ହୋଇଥିଲା । ପାଠକମାନେ ସହଜରେ ବୁଝିବା ଲାଗି ଆମ୍ଭେମାନେ ଓଡ଼ିଆରେ ତରଜମା କରି ଦେଉଅଛୁ । ନାଜର ବାବୁ ଆଉଥରେ ପୂର୍ବ ପରି ସଲାମ କରି ଅତି କଷ୍ଟରେ ଯେମନ୍ତ କହିଲେ, "ମୋ ଭଗିନୀପତି ନରପୁର ଗଡ଼ର ଜମିଦାର ସାମନ୍ତ ପ୍ରତାପ ଉଦିତ ମଲ୍ଲି ଉତ୍ତରବୟସ ମରି ଯାଇଛନ୍ତି, ମୋ

ଭଗିନୀ ଗୃହମଣି ଦେଈ ବର୍ତ୍ତମାନ ବିଧବା—କଥା କହିବାବେଳେ ତାଙ୍କ ଦୁଇ ଆଖିରୁ ଝର ଝର ଲୁହ ବହି ପଡ଼ୁଥାଏ; ବାବୁ ଥରକୁଥର ରୁମାଲରେ ପୋଛି ପକାଉଥାନ୍ତି—ଅଉ କିଛି କହି ପାରିଲେ ନାହିଁ, ଧକେଇ ଗଲେ । ସାହେବ କୋମଳ ଭାବରେ ଆଶ୍ୱାସ ଦେଇ କହିଲେ, "That I know already, Nazir Babu. ବର୍ତ୍ତମାନ ମୁଁ ଇଷ୍ଟେଟଟା କୋର୍ଟ ଅବ ୱାର୍ଡ଼ସକୁ ଆଣି ଭଲରୂପେ ବନ୍ଦୋବସ୍ତ କରଇ ଦେବି । ତୁମ୍ଭ ଭଉଣୀର କିଛି ମାତ୍ର କଷ୍ଟ ହେବ ନାହିଁ ।"

ନାଜର ବାବୁ ଆଉଥରେ ଦୁଇଜଣଙ୍କୁ ସଲାମ କରି କହିଲେ, "ମୋ ଭଉଣୀ ଗୃହମଣି ଦେଈ ହଜୁରଙ୍କୁ ଆଉ ମେମ ସାହେବଙ୍କୁ ସଲାମ ଦେଇ କହିଛନ୍ତି, 'ଆପଣମାନେ ବର୍ତ୍ତମାନ ତାର ମା ବାପ, ଆଉ ଯେ କହିଛନ୍ତି—ତାଙ୍କ ଇଷ୍ଟେଟର ଆୟ ଖୁବ୍ କମ, ଉଆସରେ ଖାଇବାକୁ ଲୋକ ଢେର, ଖରଚ ବେଶି । ଆଉ ସାନ୍ତଙ୍କ କ୍ରିୟାରେ କିଛି ଦେଣା ହୋଇ ଯାଇଛି । ଇଷ୍ଟେଟ ୱାର୍ଡ଼ରେ ରହିଲେ ମେନେଜର ଆଉ ଦପ୍ତର ଖରଚ ଢେର ପଡ଼ିଯିବ—ଦେଣା ସୁଝିଟ ହୋଇ ପାରିବ ନାହିଁ । ଗୃହମଣିର ଇଚ୍ଛା ସେ ନାବାଳକ ପିଲାମାନଙ୍କପକ୍ଷରୁ ମତା ମାହାଫିଜ ହୋଇ ଇଷ୍ଟେଟ ଚଳାଇବ ।"

ସାହେବ କହିଲେ, "ସେ ଯେ ହିନ୍ଦୁ ଜନାନା—ତାହାର କାମ କପରି ଚଳାଇବେ ? ସେ ଲେଖି ପଢ଼ି ଜାଣନ୍ତି କି ?"

ନାଜର ବାବୁ କହିଲେ, "ହଜୁର ! ଗୃହମଣି ଆଉ ହିନ୍ଦୁ ଜନାନା ପରି ନୁହନ୍ତି; ଇଷ୍ଟେଟ କାମ ସବୁ ତାଙ୍କୁ ଜଣା; ଆଉ ମୋର ଯେଉଁ ଭଗିନୀପତି ଜମିଦାର ଥିଲେ, ସେ କିଛି ବୁଝୁ ନ ଥିଲେ; ପଶା ଖେଳ ବାଘପାଲ ଶୁଣି ଶୋଇ ଶୋଇ ଦିନ କଟାଉଥିଲେ । ଆଜକୁ ଆଠ ବର୍ଷ ହେଲା ଇଷ୍ଟେଟର କାର୍ଯ୍ୟ ଭଲରୂପେ ଚଳୁଛି, ସେଇଟା କେବଳ ଗୃହମଣି ସକାଶେ । ସେହି ତ ସବୁ କର୍ମ କରେ—ଇଷ୍ଟେଟର ଅମଲାମାନଙ୍କର ହିସାବପତ୍ର ବୁଝାସମଝା କରେ—କେହି ଅମଲା ପ୍ରଜା ଉପରେ ଜୁଲମ କଲେ ଗୃହମଣି ପ୍ରଜା ମୁହଁରୁ ସବୁ କଥା ଶୁଣି ସବୁ ମାମଲା ଫଏସଲ କରିଦିଏ । ଆଉ ଇଷ୍ଟେଟର ଉନ୍ନତି କରାଇବାକୁ ତାହାର ଭାରି ଇଚ୍ଛା । ଗଡ଼ରେ ଗୋଟାଏ ମାଇନରସ୍କୁଲ ବସାଇଛି; ଆହୁରି ଯୋଡ଼ାଏ ବସାଇବାକୁ ତାହାର ଇଚ୍ଛା—ଏହି ଗୋଳମାଳ ନ ହୋଇଥିଲେ ଏତେଦିନକୁ ସ୍କୁଲ ବସି ଯାଇ-ସାରନ୍ତାଣି । ଗଡ଼ରେ ଗୋଟାଏ ଡାକ୍ତରଖାନା ବସାଇବାର ସବୁ ଠିକଠାକ ହୋଇଥିଲା; ହଠାତ୍ ବନ୍ଦ ହୋଇଯାଇଛି । ଗୃହମଣି ଭଲ ଲେଖି ପଢ଼ିପାରେ, ଏହି ଦେଖନ୍ତୁ ତାହାର ରିପୋର୍ଟ ।" ନାଜର ପକେଟରୁ ରିପୋର୍ଟ ଖଣ୍ଡ ବାହାର କରି ସାହେବଙ୍କ ହାତକୁ ବଢ଼ାଇ ଦେଲେ । ସାହେବ ରିପୋର୍ଟ ଖଣ୍ଡିକ ଥରେ ଆଖି ବୁଲାଇ ଦେଇ କହିଲେ, "ଏହା କି ଗୃହମଣିର୍ ଲେଖା ? ଅକ୍ଷର ଗୁଡ଼ିକ ଗୋଟି ଗୋଟି ସୁନ୍ଦର ଦିଶୁଛି ।" ନାଜର ବାବୁ କହିଲେ, "ଏହି ରିପୋର୍ଟଖଣ୍ଡ ଗୃହମଣି ନିଜେ ଲେଖିଛି । ଏହି ଦେଖନ୍ତୁ, ତାହାର ଦସ୍ତଖତ୍ । ଇଷ୍ଟେଟର ହିସାବପତ୍ର ଆପେ ହାତରେ ଲେଖେ; ଟଙ୍କା କଉଡ଼ି ଆପେ ଗଣି ନିଏ, ତହବିଲ ଆପଣା ହାତରେ ରଖିଛି, କାହାର ଉପରେ ସେ ନିର୍ଭର କରେ ନାହିଁ । ଆଉ ମୁଁ ମଧ୍ୟ ସରକାରୀ କାର୍ଯ୍ୟରୁ ଫୁରସତ୍ ପାଇବା ବେଳେ ତାହାଙ୍କୁ ସାହାଯ୍ୟ କରିବି । ସେଥିସକାଶେ କିଛି ଦରମା ନେବି ନାହିଁ । ମୋ ଭଣଜା ଦିଓଟି ପିଲା, ତାଙ୍କ ପଇସା କି ନେଇପାରିବି ?"

ମେମ ସାହେବ ସବୁ କଥା ଶୁଣୁଥିଲେ, ଏତେବେଳେ କହିଲେ, "You seeDawsan, I know the Hindus are very cruel to

women; they confine them in dark rooms like beasts, You better give some power to Chandmoni in order that she may be enlightened"—ଆଉ ଲେଡ଼ା କଣ ? ଚୂଡ଼ାନ୍ତ ହୋଇଗଲା । ନାଜର ବାବୁଙ୍କ କାତର ପ୍ରାର୍ଥନା --ଚୂନ୍ଦମଣି ଦେଈଙ୍କ ଵଦ୍ୟାଵତ୍ତ୍ୱ—ଇଷ୍ଟେଟ କାର୍ଯ୍ୟ ଚଳାଇବା ବିଷୟରେ ଦକ୍ଷତା, ସାହେବଙ୍କ ମନକୁ ଢେର ଟଳାଇ ରଖିଥିଲା – ତହିଁ ଉପରେ ମେମ ସାହେବ ସୁପାରସ କମ୍ବା ହୁକୁମ ବୋଲି ପାର –ଯେଉଁ ପଦପଲ୍ଲବମୁଦାରଂ ଆମ୍ଭମାନଙ୍କ ହିନ୍ଦୁ ଦେବତାଙ୍କର ଶିରସି ମଣ୍ଡନଂ ତାହାଙ୍କର ଆଦେଶ ଆଉ କଣ ଲେଡ଼ା ? ସାହେବ ଏକାବେଳକେ ହୁକୁମ କଲେ—"Better submit this report in the office" ନାଜର ବାବୁ ପ୍ରଗାଢ଼ ଭକ୍ତିପୂର୍ବକ ପଛଘୁଞ୍ଚା ଦେଲେ । ସେତେବେଳେ କେହି ଲୋକ ବାବୁଙ୍କ ରୂପ ନିରୀକ୍ଷଣ କରି ଦେଖିଥିଲେ କଳା ମେଘରେ ହଠାତ୍ ଚନ୍ଦ୍ରଜ୍ୟୋତ୍ସ୍ନା ଚହଟି ଗଲେ କପରି ଦିଶେ, ସେଥିର ଉପମା ପାଇଥାନ୍ତେ ।

---

**–୩୦–**

## ରିପୋର୍ଟ ମଞ୍ଜୁର

ଦିନ ବାରଟା ମଧ୍ୟରେ ପହିଲା କଚେରି ମିସଲ ଆଗ ବେଞ୍ଚ ଉପରେ ମୁନ୍‌ସି ପେସ୍କାର ବସି ନଥି ସଜଡ଼ା-ସଜଡ଼ି କରିବାରେ ବ୍ୟସ୍ତ, ଚପରାଶି ଦୁଇଜଣ ଶ୍ଲେପ--ଶ୍ଲେପ୍ କହି ଆପଣା ଆପଣା କର୍ମଚାରୀର ପରିଚୟ ଦେଉଛନ୍ତି । ହାକିମ ଉପସ୍ଥିତ—ପେସ୍କାରକୁ ଅନାଇ ହୁକୁମ କଲେ, ନଥି ପେଶ କର । ନାଜର ବାବୁ ମିସଲ ଆଗରେ ଛିଡ଼ା ହୋଇଥିଲେ—ସଲାମ କରି ରିପୋର୍ଟଖଣ୍ଡ ବଢ଼ାଇ ଦେଲେ । ପେସ୍କାର ବାବୁ ରିପୋର୍ଟ ଖଣ୍ଡିର ଗୁଡ଼ଧାଡ଼ ପଢ଼ିଛନ୍ତି ସାହେବ ହୁକୁମ କଲେ, "ଓଃ – ଜମିଦାର ଚୂନ୍ଦମଣି ଦେଈର ରିପୋର୍ଟ, ହୁକୁମ ଲେଖ—ଚୂନ୍ଦମଣି ଦେଈ ନାବାଳକମାନଙ୍କ ପକ୍ଷରୁ ମାତା ମହାଫିଜ ନିଯୁକ୍ତ ହେଲେ—ସମସ୍ତ ଜମିଦାରୀର ଭାର ତାଙ୍କ ହାତରେ ରହିବ—ସରକାର ତରଫରୁ ସମସ୍ତ କାର୍ଯ୍ୟ ତଦାରଖ ଓ କର୍ମଚାରୀମାନଙ୍କ ସିରସ୍ତା ମାଇନା ସକାଶେ ନାଜର ନଟବର ଦାସ ନିଯୁକ୍ତ ହେଲେ; କିନ୍ତୁ ସେଥିସକାଶେ କିଛି ଦରମା ପାଇବେ ନାହିଁ ।" ହୁକୁମ ଶୁଣି ପେସ୍କାର ବାବୁଙ୍କ ମସ୍ତକରେ ବଜ୍ରାଘାତ ହେଲାଣି । ତାଙ୍କୁ ବା କେଉଁ କଥା ଅଜଣା ? ଚୂନ୍ଦମଣି ଦେଈ ନାମମାତ୍ର—ଏଣିକି ନଟବର ଦାସେ ହେଲେ କିଲ୍ଲାର ମାଲିକ । ସାହେବଙ୍କୁ କଣ କହିବାକୁ ଯାଉଥିଲେ, ସାହେବ ହୁକୁମ କଲେ, "ବସ୍ ବସ୍, ହୁକୁମ ହୋ ଚୁକା, ଦୋସରା ନଥି ନିକାଲୋ ।" ପେସ୍କାରେ ହୁକୁମ ଲେଖିବେ କଣ, ତାଙ୍କର ହାତ ବୋଲି ମାନୁନାହିଁ । ଚୂନ୍ଦମଣି ଦେଈଙ୍କର ଭୁଚ୍ଛା ନାମ ଡାକ ହେଲା –ଅସଲ ମାଲିକ ହେଲେ ନଟବର ଦାସେ । ଏଥିର ଶେଷ ଫଳ କଣ ହେବ, ପେସ୍କାର ବାବୁଙ୍କୁ ସବୁ ଦିଶିଗଲା । କେବଳ ପିଲା ପୋଡ଼ାକର ନୁହେ, ଏଡ଼େ ବଡ଼ ବଂଶଟା ଲଣ୍ଡଭଣ୍ଡ ହୋଇଯିବ । ଅନ୍ୟରୁ ବେ.ଲି ନୁହେ, ନିଜ ବଂଶର କଥା । ପେସ୍କାର ବାବୁଙ୍କର ସମ୍ପୂର୍ଣ୍ଣ ଆଶା ଥିଲା କିଲ୍ଲାଟା କୋର୍ଟ ଅବ୍ ୱାର୍ଡ୍‌ରେ ରହିବ – ରହିବାର ଏକା ବିଧି । କିଛି ନ ବୁଝି ନ ସୁଝି ସାହେବ ଏକାବେଳକେ କିଁଆ ଏପରି ଗୋଟାଏ ଅଖାଡ଼ୁଆ ହୁକୁମ ଦେଇ ବସିଲେ, ଏଥିରେ ମୂଳକଥା କଣ; କିଛି ବୁଝି ପାରୁ ନାହାନ୍ତି । ମୂଳରୁ ନାଜରଙ୍କ କର୍ମରେ ବାଧା ଦେଇଥିଲେ, ସାହେବଙ୍କୁ ସବୁ ହାଲ-ହବାଲ ଜଣାଇଥିଲେ, ଏମନ୍ତ ଗୋଟାଏ ଦୁର୍ଯୋଗ ଘଟି ନ ଥାନ୍ତା । ପେସ୍କାର ବାବୁ ଏତେବେଳେ ମନରେ କରୁଛନ୍ତି, ତାଙ୍କ ଢିଲାପଣିଆରୁ ଏପରି ଘଟିଲା—ସେ ଆପଣାକୁ ଦୋଷୀ ମଣି ସଢ଼ ପଡ଼ୁଛନ୍ତି । କିଲ୍ଲାରେ

ନାଜର ଗୋଳମାଳ ଲଗାଇବାବେଳେ ସେ ସମସ୍ତଙ୍କୁ କହିଲେ, "ଏଇଟା କଣ କରୁଛୁ କରୁ, କେହି କିଛି ବୋଲ ନାହିଁ, ସାହେବ କଚ୍ଛାକୁ କୋର୍ଟ ଅବ୍ ୱାର୍ଡ଼ରେ ରଖିବେ ।" ଏବେ କଚ୍ଛାର ଲୋକମାନଙ୍କୁ କଣ କହିବେ, ଲାଜରେ ମରି ଯାଉଛନ୍ତି । ସାହେବଙ୍କୁ ଏ ପ୍ରସଙ୍ଗରେ ପଦେ କଥା ମଧ୍ୟ କହିପାରିଲେ ନାହିଁ । ଏ ମନ ଦୁଃଖଟା ବଳେଇ ପଡ଼ିଲାଣି । ନିହାତି ନାଗୃର ହୋଇ ସାହେବଙ୍କ ହୁକୁମଟା ଲେଖିଲେ । ନ ଲେଖି ବା କଣ କରିବେ ? ରିପୋର୍ଟ ପିଠିରେ ହୁକୁମଟା ଲେଖିବାବେଳେ ହିଜରୀ ନାଜର କଣେଇ କଣେଇ ଅନାଇ ମନେ ମନେ ଖୁସିଟାଏ ହେଉଥାନ୍ତି ।

ଗୋଟିଏ ପକ୍ଷ ପରଦୁଃଖକାତର, ପରମଙ୍ଗଳକାମୀ, ଜନହିତୈଷୀ, ଅନ୍ୟ ପକ୍ଷ—ସ୍ୱାର୍ଥସର୍ବସ୍ୱ—ନିଜର ମଙ୍ଗଳକାମନାରେ ଅନ୍ୟର ସମସ୍ତ ସୁଖସୌଭାଗ୍ୟ ବଳିଦାନ କରିବାକୁ ଅକୁଣ୍ଠିତ—ଅନ୍ୟାୟ ସ୍ୱାର୍ଥ-ସାଧନମାର୍ଗ ଉନ୍ମୁକ୍ତ ଦେଖି ଉଲ୍ଲସିତ । ଅଦ୍ୟ ତଥାକଥିତ ଧର୍ମାସନ ସମ୍ମୁଖରେ ପ୍ରଥମ ପକ୍ଷ ପରାସ୍ତ—ଲଜ୍ଜିତ—ମୃତବତ୍ ନିଶ୍ଚେଷ୍ଟ । ବିଚାରାଳୟରେ ବିଶେଷ ଅବସ୍ଥା ଅବଗତ ଥିବା ଉପସ୍ଥିତ ଦର୍ଶକମଣ୍ଡଳୀ ଓ ଅମଲାମାନେ ଚକିତ, ନିସ୍ତବ୍ଧ । ଭ୍ରମସଙ୍କୁଳ ପାର୍ଥିବ ବିଚାରାଳୟ ସମ୍ମୁଖରେ ଏହା କିଛି ଗୋଟାଏ ନୂତନ ଦୃଶ୍ୟ ନୁହେ ।

---

-୩୧-

## ମଣିମାଙ୍କ ହାଲ

ଚନ୍ଦ୍ରମଣି ଦେଈଙ୍କ ଯୋଗ୍ୟତା, କର୍ମଠତା, ଆଉ ଆଉ ସୁଖ୍ୟାତିମାନ ଶୁଣି କଲେକ୍ଟର ସାହେବ କଚ୍ଛାର କାର୍ଯ୍ୟ ଚଳାଇବା ଭାର ତାଙ୍କ ହାତରେ ଦେଲେଣି । ହେଲେ ଏଣେ ମଣିମାଙ୍କ କଥା କହିଲେ ନ ସରେ । ସାନ୍ତ ଉତ୍ତରରାୟଙ୍କ ବିୟୋଗ ଦିନରୁ ତାଙ୍କୁ କେମିତି ଗୋଟାଏ ଭକୁଆ ମାରି ଯାଇଥିଲା । ଜଳ ଜଳ କରି ଚାହିଁଥାନ୍ତି । ହେଲେ ଆଖିରେ ଜ୍ୟୋତି ନାହିଁ-ପିଛୁଡ଼ା ପଡ଼ୁନାହିଁ—ଦୃଷ୍ଟିଜ୍ଞାନ ଅଛି କି ନାହିଁ ଜଣା ଯାଉନାହିଁ—ମୁଖରେ କଥା ନାହିଁ, ସମସ୍ତ ଅଙ୍ଗ ଯେମନ୍ତ ଅବଶ । ମଣିମା ଦହିକୁ ସବୁବେଳେ ଭଲ ପାନ୍ତି, ଠା' ବେଳେ ସବୁଦିନେ ବସାଦହି ଟିକିଏ ଯୋଗାଣ ଥାଏ । ଏଣିକି ସେହି ଟିକକ ବି ରୁଚୁନାହିଁ । ଧାଈମା ଚଢ଼ୁଆପାଣି ମନ୍ଦାକରେ ଅନ୍ନ ମୁଠାଏ ଭଲ କରି ଚକଟି ଚକଟି ଢେର ବେଳଯାଏଁ ଲାଗି ଲାଗି ବଡ଼ କଷ୍ଟରେ ପିଆଇ ଦିଅନ୍ତି—ତଣ୍ଟି ଭିତରକୁ ସହଜରେ ଯାଏ ନାହିଁ । ଧାଈମା ଲାଗି ପଡ଼ି ନ ଥିଲେ ତାଙ୍କ ଜୀବନ ରହିବାର କଥା ନ ଥିଲା । ମଣିମ ଗୋଟାଏ ଜାଗାରେ ଥୁନ ହୋଇ ପଡ଼ିଥାନ୍ତି; ନଡ଼ବଡ଼ ହେବାକୁ ନାହିଁ । ଏବେ ବର୍ଷକ ଉତ୍ତାରେ ଆଉ ଗୋଟାଏ ଜଞ୍ଜାଳ ଉପସ୍ଥିତ । ସମୟ ସମୟରେ ଗଁ – ଗଁ – ଗର୍ଜନ କରି ପଡ଼ିଯାନ୍ତି । ପ୍ରଥମେ ଗୋଡ଼ ହାତ ଥରେ, ତହିଁ ଉତ୍ତାରେ ଚେତା ବୁଡ଼ିଯାଏ । ଆଖ ପାଖ ଦଶ ପନ୍ଦର କୋଶ ମଧ୍ୟରେ ଜଣାଶୁଣା ସମସ୍ତ ବୈଦ୍ୟ-ରାଜ ଲାଗି ପଡ଼ିଛନ୍ତି । ଠିକ ରୋଗଟା କଣ, ଏ ଯାଏଁ ଜଣା ପଡ଼ିଲା ନାହିଁ । କେହି କହେ ଅପସ୍ମାର, କେହି କହେ ଭେକଲ ବାତ, ଝିମିଝିମିଆ ବାତ ବୋଲି ମଧ୍ୟ କେତେଜଣ ବୈଦ୍ୟରାଜ ସ୍ଥିର କଲେ । ଛାଗଳାଦି ଘୃତ—ଶିବା ଘୃତ—ମଧ୍ୟନାରାୟଣ ତେଲ—ମାଷତେଲ—କୁବ୍ଜପ୍ରସାରଣୀ ତେଲ—ଢେର ଢେର ତେଲ ଘୃତ ବସିଲା, କାହିଁରେ କିଛି ହେଲା ନାହିଁ, ଆହୁରି ତେଲ ପ୍ରୟୋଗରେ ରୋଗଟା ବୋଇଲେ ବଢ଼ି ପଡ଼ୁଛି । ଧାଈମା ଚାରି ଛ ଥର ଭାଷା ଲେଖି ନାଜର ବାବୁ ପାଖକୁ ଲୋକ ଦୌଡ଼ାଇ ଦୌଡ଼ାଇ ଥକଲେଣି । ଶେଷରେ କଟକରୁ ଗୋଟାଏ ବୈଦ୍ୟ ଆଇଲା—ରୋଗିଣୀଙ୍କ ବାଁ ହାତ ନାଡ଼ିକା ଚିପି ରୋଗର ଅବସ୍ଥା ଶୁଣି ଠିକ କଲା, ଏହା ଘୁମୁରିଆ ବାତ । ତିନଟା କଳା ରଙ୍ଗର ବଟିକା ଦେଇ କହିଲା, ଅଦାରସ ଓ ମହୁ

ଅନୁପାତରେ ଏହି ବଟିକା ଘୋଟି ପିଆଇ ଦେବ— ସାଙ୍ଗେ ସାଙ୍ଗେ ରୋଗୀକୁ ପାଣିରେ ବୁଡ଼ାଇବ, ଆଉ କଂସାଏ ଦହି ପଖାଳ ପଥ୍ୟ ଦେବ । ଧାଈମା ଅନେକ ରୋଗୀର ସେବା କରିଛନ୍ତି, ଢେର ଢେର ବୈଦ୍ୟରାଜଙ୍କ କଥା ଶୁଣିଛନ୍ତି; କାହିଁକି କେଜାଣି ଏ ଔଷଧଟା ତାଙ୍କ ମନକୁ ମାନିଲା ନାହିଁ । ବୈଦ୍ୟ କଟକକୁ ବାହୁଡ଼ି ଗଲା ।

ପେସ୍କାର ବାବୁ ସବୁଦିନେ ମଣିମାଙ୍କ ଖବର ନେଉଥାନ୍ତି । କଣ କରିବେ ? ସରକାରି ଲଗା – ପୁଣି ଦୁଷ୍ଟ ଲୋକଟାଏ ମଝିରେ—ଭରସି କିଛି କରିପାରୁ ନ ଥିଲେ ! ଶେଷରେ ବୁଝିଲେ, ଦେଖି ଦେଖି ସେ ମହା-ପ୍ରାଣୀଟା ଭାସିଗଲା । ଯାହା ଥାଉ କପାଳରେ—ଦିନେ କଟକରୁ ଗୋଟିଏ ପ୍ରବୀଣ ସାହେବ ସାର୍ଜନ ଆଉଜଣେ ଆସିଷ୍ଟାଣ୍ଟ ସାର୍ଜନକୁ ଧରି ଗଡ଼ନଗରପୁରରେ ଉପସ୍ଥିତ ହେଲେ । ଡାକ୍ତରମାନେ ରୋଗିଣୀକୁ ପରୀକ୍ଷା କରି ବୁଝିଲେ—ରୋଗଟା ମେଲିଙ୍କଲିଆ । ଇଂରେଜୀମତେ ଚିକିତ୍ସା ଚାଲିଲା, ଦୁଇ ତିନି ମାସ ଉତ୍ତାରେ ମଣିମା ଟିକିଏ ସହଜରେ ବସି ପାରିଲେ । ଧାଈମାଙ୍କ ଧରାଧରିରେ ହାତରେ ଖାଇବାକୁ ଚେଷ୍ଟା କରନ୍ତି, ହେଲେ ଚଞ୍ଚିରେ ସହଜରେ ଗଲେ ନାହିଁ । ଏବେ କିଛି କିଛି ବୁଝି ଛନ୍ତି । ଧାଈମା କଥା କହିଲେ ହୁଁ—ହଁ କରି ଉତ୍ତର ଦିଅନ୍ତି ।

ଡାକ୍ତରୀ ଚିକିତ୍ସା କଥା ନାଜର ବାବୁଙ୍କ କାନରେ ପଡ଼ିଲା । ସେ ପେସ୍କାର ବାବୁଙ୍କୁ ଶୁଣାଇ ଶୁଣାଇ ଲୋକ-ମାନଙ୍କ ଠାରେ କହି ବୁଲୁଥାନ୍ତି, 'ଥରେ ତ ଡାକ୍ତରଙ୍କୁ ଦେଖି ଯାଇଥିଲେ, ହାଲଟା ସମସ୍ତଙ୍କୁ ଜଣା—ପୁଣି ସେହି ଡାକ୍ତର—ବୁଝାବୁଝିଟାଏ ହେବା ଯେ !' ନାଜର ବାବୁ ମିଆଣା ଲୋକ, ସେ କଣ ଜାଣୁ ନାହାନ୍ତି ଯେ ଡାକ୍ତର ସାହେବ ଚିକିତ୍ସାରେ ଉଁ—ଚୁଁ କରିବାର ବାଟ ନାହିଁ । ସେ କଣ ସତେ ସତେ କିଛି କରୁଥିଲେ ? ଆଜ୍ଞା ଖୋଜୁ ଖୋଜୁ କେଜାଣି ମହାଦେବ କାହାର ପଡ଼ିବେ ? ଭୁଞ୍ଚାଟାରେ ପେସ୍କାରଙ୍କୁ ଉରାଇବା ଲାଗି ଲୋକ ଦେଖାଣି ମୁହଁ ଭୁରୁଡ଼ି ।

ଡାକ୍ତରମାନଙ୍କ ପଛେ କେତେ ଟଙ୍କା ଖରଚ ହେଲା, କିଏ ଟଙ୍କା ଦେଲା କାହାରିକୁ ଜଣାନାହିଁ । ହେଲେ ନାଜର ବାବୁ ଯେଉଁ ବୈଦ୍ୟରାଜ ପଠାଇଲେ, ତା ପାଇଁ ହଜାର ଟଙ୍କା କିଲ୍ଲା ତହବିଲରୁ ଖରଚ ପଡ଼ିଥିବାର ପଛକେ ଶୁଣାଗଲା ।

———

—୩୨—

## ଧାଈମାଙ୍କ କର୍ତ୍ତବ୍ୟ ଜ୍ଞାନ

ଧୈର୍ଯ୍ୟ, ସହିଷ୍ଣୁତା, ପ୍ରୀତି ଏବଂ ବାତ୍ସଲ୍ୟ ପ୍ରଭୃତି ସଦ୍‌ଗୁଣ ପୁରୁଷମାନଙ୍କଠାରୁ ସ୍ତ୍ରୀମାନଙ୍କଠାରେ ଅଧିକ ପରିମାଣରେ ଥିବାର ଦେଖାଯାଏ । ଅଧିକନ୍ତୁ ଅବସ୍ଥା ବିଶେଷରେ ପଡ଼ିବା ଯୋଗୁଁ ସ୍ୱଭାବରେ ହୃଦୟନିହିତ ସଦ୍‌ଗୁଣମାନ ପ୍ରବଳରୂପେ ପ୍ରସ୍ଫୁଟିତ ହୋଇଥାଏ । ସରସ୍ୱତୀ ଦେଈ ଆବାଲ୍ୟ ମାତୃହୀନା । ବିବାହର ଅଳ୍ପକାଳ ଉତ୍ତାରେ ସ୍ୱାମୀ ନିରୁଦ୍ଦିଷ୍ଟ । ଏଥିକୁ କଷ୍ଟ ସହିବାରେ ଅଭ୍ୟସ୍ତ । ଏମନ୍ତ କି ସେ କଷ୍ଟକୁ କଷ୍ଟ ବୋଲି ମଣନ୍ତି ନାହିଁ, ପରସେବା ଅବା ରୋଗୀ-ଶୁଶ୍ରୂଷାକୁ ଜୀବନର କର୍ତ୍ତବ୍ୟ ବୋଲି ଜ୍ଞାନ କରନ୍ତି, ମଧ୍ୟ ସେଥି ସକାଶେ ଆନନ୍ଦିତା । ତାଙ୍କର ନିଜର ବୋଲି ଗୋଟାଏ କିଛି ନ ଥିଲା, ପର ସୁଖ ଦୁଃଖ ତାଙ୍କର ନିଜସ୍ୱ । ରୋଗୀ ସେବାବେଳେ ସେ ଯେମନ୍ତ ଆପଣାକୁ ଭୁଲି ପକାନ୍ତି—ଆହୁରି ଯେମନ୍ତ ସେଥିରୁ ତାଙ୍କର କେମନ୍ତ ଗୋଟାଏ ଶାନ୍ତି ଲାଭ ହୁଏ । ଯାହାର ସ୍ୱାର୍ଥ ସହିତ ସମ୍ପର୍କ ନାହିଁ, ଏହିଭଳି ସ୍ତ୍ରୀର ଅଭାବ କଣ ? ବାସ୍ତବରେ ସେ ସଦା ପ୍ରଫୁଲ୍ଲମୟୀ ଥିଲେ । ଦୁଃଖ

ବା ଦୈନ୍ୟର ଶଙ୍କା ତାଙ୍କ ମୁଖରେ ଲକ୍ଷିତ ହୁଏନାହିଁ । ବିଶେଷରେ ଚନ୍ଦ୍ରମଣି ଯେମନ୍ତ ତାଙ୍କ ଚକ୍ଷୁରେ ସ୍ୱର୍ଗୀୟ କୋହିନୂର । ତାଙ୍କର ସମସ୍ତ ପ୍ରୀତି-ସ୍ନେହ, ସମସ୍ତ ବାତ୍ସଲ୍ୟ ଯେମନ୍ତ ଚନ୍ଦ୍ରମଣିଠାରେ କେନ୍ଦ୍ରୀଭୂତ ହୋଇ ଯାଇଥିଲା । ଚନ୍ଦ୍ରମଣିର ସୌଭାଗ୍ୟରେ ଅପାର ଆନନ୍ଦ ଉପଭୋଗ କରୁଥିଲେ । ଚନ୍ଦ୍ରମଣି ମଧ୍ୟ ମାତୃସ୍ନେହ କଦାଚିତ୍ ଅନୁଭବ କରିଅଛନ୍ତି—ଧାଈମା ତାଙ୍କର ସବୁ । ଚନ୍ଦ୍ରମଣି ଦେଈଙ୍କର ସମସ୍ତ ଶିକ୍ଷା ଦୀକ୍ଷା ଧାଈମାଙ୍କ ଯୋଗୁ । ଆଉ ମଧ୍ୟ ସମସ୍ତ ବିଷୟରେ ସେ ଧାଈମାଙ୍କ ଅନୁଗତା ଏବଂ ଆଜ୍ଞାନୁବର୍ତ୍ତିନୀ । କେବଳ ଦୁଇଗୋଟି ବିଷୟରେ ଅବାଧ୍ୟ ବା ଶିକ୍ଷା ବିଷୟରେ ଅନିପୁଣା । ଅନେକ ସମୟରେ ଅନେକ କ୍ଷେତ୍ରରେ ଶିକ୍ଷା ସ୍ୱଭାବଠାରେ ପରାଜିତ । ଧାଈମା ସେଥି ସକାଶେ ଅନେକଥର ବିରକ୍ତି ପ୍ରକାଶ କରିଥାନ୍ତି । ଧାଈମାଙ୍କର ଇଚ୍ଛା, ଚନ୍ଦ୍ରମଣି ରାଣୀ, ସେହିପରି ଯୋଇନ୍ଥି ପରିବାରମାନଙ୍କ ସଙ୍ଗରେ ବେଭାର କରୁ—ସମସ୍ତ ଦାସଦାସୀ ସଭୟରେ ତାଠାରେ ହାତ ଯୋଡ଼ି ରହନ୍ତୁ । ହେଲେ, ଏଣେ ଚନ୍ଦ୍ରମଣି କିନ୍ତୁ ସମସ୍ତ ପରିଜନଙ୍କୁ ମା—ମାଉସୀ—ଭଉଣୀ ପରି ମଣନ୍ତି—ଧାଈମାଙ୍କୁ ଲୁଚାଇ ସମବୟସ୍କା ଦାସୀମାନଙ୍କ ସାଙ୍ଗରେ ଖେଳି ବସନ୍ତି—ହସି ହସି ସମସ୍ତଙ୍କ ସହିତ କଥା କହନ୍ତି । ସହଜରେ ବି ଚନ୍ଦ୍ରମଣି ଦେଈ କଥା କହିଲା-ବେଳେ ତାଙ୍କ ମୁଖରୁ ହସଟା ଫୁଟି ପଡ଼ୁଥିବା ଭଳି ଜଣାଯାଏ । ଆପଣାର କିଛି କଥା ବୁଝିବାକୁ ନାହିଁ, ଏଣେ କେହି ପରିଜନ ବାଧିକା ପଡ଼ିଲେ ଦିନ ନାହିଁ, ରାତି ନାହିଁ, ଦିନକୁ ଦଶଥର ତା ପାଖକୁ ଧାଁ ଦଉଡ଼ କରୁଥିବେ । କେହି ଦାସୀ ତାଙ୍କ ହୁକୁମ ଅମାନ୍ୟ କଲେ ବା କଥା ବେଖାତର କରି ହେଲି ଦେଲେ ତାକୁ ସଜା ଦେବା ତ ଥାଉ, ଅପେ ହସି ହସି ଚାଲିଯାଆନ୍ତି । ହେଲେ ଧାଈମାଙ୍କୁ ଏ କଥାଗୁଡ଼ାକ ଭଲ ଲାଗେନାହିଁ ।

ତେଲହଳଦି ବୋଲି ଗୋଟାଏ ବଡ଼ ମୌଜା କଛବର ଖଞ୍ଜା ଅଛି—ସେଥିର ଖଜଣା ଆଉ ଫାଉ ଫୌତିର ଟଙ୍କା ମଣିମାଙ୍କ ଭିତର ତହବିଲକୁ ଆସେ । ଏହାଛଡ଼ା ମଣିମା-ଭେଟି ବୋଲି ଅନେକ ଟଙ୍କା ସଦର କଚେରିରୁ ପାନ୍ତି । କେହି ଦାସୀ ସେହି ଟଙ୍କା ଆଣି ମଣିମାଙ୍କ ହାତରେ ଦେଲେ ସେ ଧାଈମାଙ୍କ ଆଗକୁ ହସି ହସି ଫୋପାଡ଼ି ଦେଇ ଆଉଆଡେ ଚାଲିଯାନ୍ତି । ଧାଈମା ଭାରି ଗୋଟାଏ ହକ୍‌ଦାର ହୋଇ କହନ୍ତି, "ତୁ ଏହିପରି ଉଆସ ସମ୍ଭାଳିବୁ ପରା ! ତୋର ଯେ ବୁଦ୍ଧି, ଦିନେ ହେଲେ କେହି ଜଣେ ଦୁଷ୍ଟଲୋକ ଆସି ତୋ ଗହଣାଗାଣ୍ଠି ଟଙ୍କା ସୁନାଗୁଡ଼ାକ ଠକାଇ ନେଇଯିବ—ମୁଁ ମୁଣ୍ଡ ବାନ୍ଧୁଛି, ସବୁଦିନେ ତୋର ସାଇତି ରଖିଥିବି ?" "ଚନ୍ଦ୍ରମଣିଙ୍କର ସେହି ହସ—ତେବେବେ ତେତେବେଳେ ଠିକଏ ବଳପଡ଼େ ।

ଚନ୍ଦ୍ରମଣିଙ୍କ ବିପଦରେ ଧାଈମା ଏକାବେଳକେ ଭାଙ୍ଗି ପଡ଼ିଥିଲେ । ପ୍ରଖର ଆଲୋକ ଉପରେ ହଠାତ୍ ଅନ୍ଧାରଟାଏ ଘୋଟିଗଲେ ସେହି ଅନ୍ଧାର ଭାରି ପ୍ରବଳ ଜଣାଯାଏ । ସମସ୍ତ ବିଷୟର ସୀମା ଥାଏ—ଧାଈମାଙ୍କ ସମସ୍ତ ଧୈର୍ଯ୍ୟ ଯେମନ୍ତ ବୁଡ଼ି ଯାଇଥିଲା । କେବଳ ଦୃଢ଼ ବିଶ୍ୱାସ ଥିବାରୁ ଈଶ୍ୱରଙ୍କ ପ୍ରତି ନିର୍ଭର କରି ସମ୍ଭାଳି ହୋଇ ରହିଥିଲେ । ବର୍ତ୍ତମାନ ସେ ଯେମନ୍ତ ନିଶ୍ୱାସଟା ପକାଇବାକୁ ବେଳ ପାଇଛନ୍ତି । ବିପଦ ଆରମ୍ଭ ଦିନରୁ ଦୁଇଗୋଟି ବିଷୟ ଦୃଢ଼ରୂପେ ଧରି ବସିଛନ୍ତି—ତିନି-ଗୋଟି ପ୍ରାଣୀଙ୍କର ରକ୍ଷା ବିଷୟରେ ଯତ୍ନ, ଆଉ ନିୟମିତରୂପେ ଈଶ୍ୱର ଆରାଧନା । ଏହା ଛାଡ଼ି ଆଉ କୌଣସି ବିଷୟ ତାଙ୍କୁ ଏବେ ଦିଶୁନାହିଁ ।

---

-୩୩-

## ଗୋକୁଳ ପଟ୍ଟନାୟକଙ୍କର ବିନୋଦ

ଶ୍ରୀ ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ଶ୍ରୀଚରଣେ ଶରଣ

ଶ୍ରୀ ଶ୍ରୀ ଗୁରୁଦେବ ଉଦ୍ଧାର କରିବେ ।

ମହାମହିମ ମହିମାସାଗର ଗୋବ୍ରାହ୍ମଣ ରକ୍ଷାପାଳକ ଦାନେ କର୍ଣ୍ଣ, ମାନେ ଦୁର୍ଯ୍ୟୋଧନ ଶ୍ରୀ ଶ୍ରୀ ସାମନ୍ତବାବୁ

ନଟବର ଦାସ ନାଜରଙ୍କ ହଜୁରକୁ—ଗୋକୁଳ ପଟ୍ଟନାୟକ, କାର୍ଯ୍ୟୀ, ଚକଲେ ନଜଗଡ଼, କିଲ୍ଲେ ନରପୁର, ଜିଲ୍ଲେ କଟକର ବିନୋଦ ଆରଜ ନିବେଦନ ଏହି କି ଶ୍ରୀହୁଜୁରଙ୍କ ଶ୍ରୀହୁକୁମରେ ଅଧୀନ କାର୍ଯ୍ୟିଗିରିରେ ନିଯୁକ୍ତ ଥାଇ ଉତ୍ତମରୂପେ କର୍ମ ଅଞ୍ଜାମ କରୁଥିଲା । ଏଣିକି କାର୍ଯ୍ୟ ଚଳାଇବା ହେଟକାର ହୋଇ ପଡ଼ିଲାଣି, ସରକାରୀ ଫାଉ ଫଉରାତ ଆୟ ଏକାବେଳକେ ବନ୍ଦ । ପୂର୍ବେ ସାହେବଙ୍କ ଅମଲଦାରୀ ସମୟରେ ଚକଲା କାର୍ଯ୍ୟ ଦରମା ମାସକୁ କୋଡ଼ିଏ ଟଙ୍କା ଥିଲା—ଶ୍ରୀହଜୁର ଅଧୀନକୁ ମାସକୁ ଦରମା ତିରିଶ ଟଙ୍କାରେ ବାହାଲ କରି ଏହିପରି ହୁକୁମ କରିଥିଲେ କି ଆଉ କାର୍ଯ୍ୟୀ ପରି ହଜୁରଙ୍କଠାରୁ ମାସକୁ ପାଞ୍ଚ ଟଙ୍କା ନଗଦ ନେଇ ଅଧୀନ ତିରିଶ ଟଙ୍କାର ରସିଦ ଲେଖି ଦେବ । ବାକି ପଚିଶ ଟଙ୍କା ପ୍ରଜାମାନଙ୍କ ନିକଟରୁ ବାଜେ ଆୟରୁ ନେବା ସକାଶେ ହୁକୁମ ଥିଲା । ସେହି ହୁକୁମ ମାଫିକେ ଦୁଇ ବର୍ଷ କାଳ ଉତ୍ତମରୂପେ କାର୍ଯ୍ୟ ଚଳି ଆସୁଥିଲା--ବର୍ତ୍ତମାନ କର୍ମ ଅଞ୍ଜାମ କରିବା ଭାରି ମୁସ୍କିଲ ହୋଇ ପଡ଼ିଲାଣି । ପୂର୍ବେ ଯେଉଁ ଯେଉଁ ବିଷୟରୁ ଆୟ ହେଉଥିଲା, ସେଥି ମଧ୍ୟରୁ କେତେଟି ବିଷୟ ଉଲ୍ଲେଖ କରୁଅଛି ।

୧ । ପ୍ରଜାମାନଙ୍କ ମଧ୍ୟରେ ଦଙ୍ଗାଫିସାଦ ମାରପିଟ ହେଲେ ଦୁଇ ପକ୍ଷରୁ ଆୟ ହେଉଥିଲା ।

୨ । ଭାଇ ଭାଗ କରଜା ତମସୁକ ମାମଲାରେ ଦୁଇ ପକ୍ଷରୁ ଆୟ ହେଉଥିଲା ।

୩ । ପାଉତି— ବିଶୋଧନୀ - ଖରଡ଼ାପଣି— ଅମଲା ତହରୀ ଖର୍ଚ୍ଚା - ହଜୁରଙ୍କ ସଦର କଚେରି ସିରସ୍ତା ଖର୍ଚ୍ଚ ଇତ୍ୟାଦି ଅନେକ ଟଙ୍କା ଆୟ ହେଉଥିଲା ।

ଗଲା ଦୁଇ ବରଷ ସାଲତମାମୀ ହିସାବରୁ ଦେଖିବାକୁ ଆଜ୍ଞା ହେବ । ଏଣିକି ସବୁ ବିଷୟରୁ ଆୟ ବନ୍ଦ । ଅଧୀନର ଚଳାଚଳ ପକ୍ଷରେ ମୁସ୍କିଲ ହୋଇ ପଡ଼ିଲାଣି । କେବଳ ଗୋଟାଏ ଲୋକର ମନ୍ଦ ଆଚରଣ ହେତୁରୁ ଏହିପରି ବେହାଲ ଘଟିଅଛି । ଏଠାରେ ହରିବୋଲ ବାରିକ ନାମରେ ଗୋଟାଏ ଭଣ୍ଡାରି ଅଛି—ସେଇଟାର ଅସଲ ନାମ ଚକ୍ରଧର ବାରିକ—ସେ ପ୍ରତି କଥାରେ 'ହରିବୋଲ' ଏତକ କଥା କହିବାରୁ ତାକୁ ଲୋକେ ହରିବୋଲ ବାରିକ ବୋଲି ଡାକନ୍ତି । ଲୋକଟା ନଜଗଡ଼ର ବାସିନ୍ଦା । ହେଲେ, ସେ ଗ୍ରାମ ଖଣ୍ଡେ ନାହିଁ, ତାହାର ଭାଇ ସନ୍ତୁରୀ ବାରିକ ଗ୍ରାମ କର୍ମ ଅଞ୍ଜାମ କରେ । ହରିବୋଲିଆ ଡାକ୍ତରି କରେ—ଆଖ ପାଖ କୋଡ଼ିଏ ଖଣ୍ଡ ଗ୍ରାମରେ ତାହାର ନାମ ଡାକ । ସେ ତୁଚ୍ଛ ଭଣ୍ଡାରିଟାଏ ହେଲେ କଣ ହେବ, ଲୋକେ ତାକୁ ମାନନ୍ତି—ତା କଥା ଶୁଣନ୍ତି । ଗ୍ରାମରେ ନ୍ୟାୟନିଶାପ ହେଲେ ଆଗେ ତାକୁ ଡାକନ୍ତି । କାହାରି ଘରେ କିଛି କଥା ଅଖାଡ଼ୁଆ ହେଲେ ସେ ହରିବୋଲିଆ ପାଖକୁ ଆସେ । ଏହିଟା ବଡ଼ ମେଳିଆ ସବୁ ଲୋକଙ୍କୁ ପଟାଇଟି କରି ରଖିଥାଏ । ଏଣିକି କଲ୍ଲା ମଧ୍ୟରେ କେଉଁଠି ଦଙ୍ଗା ଫିସାଦ ଭାଇ କଳି—ମାଲି ମାମଲା ହେଲେ ବଳେ ବଳେ ଧାଇଁଯାଇ ଫେରାକରି ଦେଇ ଆସୁଛି । ସେମାନଙ୍କୁ ଧରି ଧେନି ଆସିବା ସକାଶେ ଅଧୀନ ପାଇକ ପଠାଇଲେ କେହି ଆସିବାକୁ ନାହିଁ । ଅଧୀନର ପିଆଦା ପାଇଦଳକୁ ଏଣିକି କେହି ମାନୁ ନାହାନ୍ତି । ହଜୁର ଗୋଖେତ୍ତ ଆଇନ ଜାରୀ କରିଥିଲେ, ଗଲା ବରଷମାନଙ୍କରେ ସେଥିରୁ ବେଶ ଦଶ ଟଙ୍କା ଆୟ ହେଉଥିଲା । ଏଣିକି ଫନ୍ଦାଖିଆ ଗୋରୁଙ୍କୁ ଅଧୀନ ନିକଟକୁ କେହି ଆଣୁ ନାହାନ୍ତି । ଟାଣୁଆ ଟାଣୁଆ ଆଉ ବଦମାସ ପ୍ରଜାଙ୍କଠାରୁ ଖଜଣା ନେଇ ସେମାନଙ୍କୁ ପାଉତି ନ ଦେବା ସକାଶେ ହଜୁରରୁ ଅଧୀନ ପ୍ରତି ହୁକୁମ ଥିଲା । ଅଧୀନ ଗଲା ବରଷମାନଙ୍କରେ ଠିକ ସେହିପରି କରିଆସିଛି । ଏଣିକି ହରିବୋଲିଆର କୁପରାମର୍ଶରେ ଦଡ଼ ପାଉତି ନ ଧରିଲେ କେହି ଖଜଣା ଦେଉ ନାହାନ୍ତି । ମଧ୍ୟ ସେହି ବଦମାସ ଭଣ୍ଡାରିର କୁଶିକ୍ଷାରେ ହେ

ଅଧୀନକୁ କେହି ମାନବାକୁ ନାହିଁ । ହଜୁରକୁ ଜଣା କରିବାକୁ ଭୟ ଜାତ ହେଉଛି—ହିନେ ଏହି ନଜଗଡ଼ ଗ୍ରାମ ହାଟ୍ ବାଜାରରେ ଅନେକ ଲୋକ ସାକ୍ଷାତରେ ହଜୁରଙ୍କ ନାମରେ ଯେଉଁ ବଦ୍ କଥାମାନ କହିଲା— କଣ ଲେଖିବ !

ସେହି ବଦମାସକୁ ଜବଦ ନ କଲେ ଏଣିକି କୌଣସିରୂପେ କର୍ମ ଚଳିବ ନାହିଁ । ଏହି ଗ୍ରାମର ସେହି ମୁଖଣ୍ଡ ଲୋକ ହରି ସାଉ ତେଲି ମହାଜନ ହଜୁରଙ୍କ ଅମାନ୍ୟ କରିବାରୁ ତାହା ନାମରେ ମାମଲା ଦାଏର କରି ଉଆରଣ୍ଟ ଦ୍ୱାରା ବନ୍ଧା ହୋଇ ହଜୁରଙ୍କୁ ଯେପରି ଦୁଇଶ ଟଙ୍କା ଜରିମାନା ଦେଇଥିଲା, ସେହିପରି ଏ ଭଣ୍ଡାରି ନାମରେ ଏଣ୍ଡ ତେଣୁ ଗୋଟାଏ ମାମଲା ଦାଏର କରି ଦେବାକୁ ଆଜ୍ଞା ହେଉ । ସରକାରୀ ପିଆଦା ହଜୁରଙ୍କ ଅକ୍ତିଆର, ତାହା ନାମରେ ସମନ ନ ଦେଇ ଏକାବେଳକେ ଉଆରଣ୍ଟରେ ବାନ୍ଧି ଗାଁ ଗାଁକେ ବୁଲାଇଲେ ସବୁ କଥା ସଫଳ ହୋଇଯିବ । ଏ ଦେଶ ଲୋକେ ଉଆରଣ୍ଟକୁ କଏଦ ବୁଝନ୍ତି—ପାଠକମାନଙ୍କର ଜାତି ଯାଏ । ହରି ସାଉ ଜାତିରେ ଉଠିବାକୁ ତିନି ହଜାର ଟଙ୍କା ଚାନ୍ଦାଖରଚରେ ପଡ଼ିଲା । ସେ ଭଣ୍ଡାରିଟା ଭଲ ଚଳେ—ଦଶ ହଳ ବୃଷ ତା ଅଣ୍ଟି କେତେବେଳେ ଛୁଞ୍ଚା ଥାଏ ନାହିଁ । ତା ନାମରେ ମାମଲା ଦାଏର କଲେ ଟେକାକରେ ଯୋଡ଼ାଏ ଆମ୍ବ ଝଡ଼ିବ । ତାହାଠାରୁ ଜରି ନା ଅସୁଲ ହେବ, ଆଉ ପ୍ରଜାମାନେ ଅକ୍ତିଆର ହୋଇ ଯିବେ । ଶୀଘ୍ର ମାମଲା ଦାଏର କରିବାକୁ ଆଜ୍ଞା ହେବ—ଅଧିକ କଣ ଜଣାଣ କରିବ । ଲେଖିବା ଦୋଷ କ୍ଷମା ହେବ । ଇତି ।

ସନ ୧୨୮୦ ସାଲ ମକର ସାତ ଦିନ } ଅଧୀନ ହୁକୁମ ଦରବାର
ଗୋକୁଳ ପଟ୍ଟନାୟକ
କାର୍ଯ୍ୟୀ ଚକଲେ ନଜଗଡ଼
। କ । ନରପୁର ।

ପୁନଶ୍ଚ—ପ୍ରକାଶ ଥାଉ କି ମଫସଲ ହାଲ ଦରିଆପ୍ତ କରି ଅଧୀନର ଦରମାହା ପ୍ରତି ସୁନଜର ହେବ । ବର୍ତ୍ତମାନ ଅଧୀନ ମାସକୁ ପନ୍ଦର ଟଙ୍କା ହିସାବ ନେଇ ତିରିଶ ଟଙ୍କାର ରସିଦ ଦେବାକୁ ରାଜି ଅଛି । ଅନ୍ୟାନ୍ୟ କାର୍ଯ୍ୟୀମାନେ ଭିତର ମଫସଲରେ ଥିବା ଯୋଗୁଁ ସେମାନଙ୍କ ପକ୍ଷରେ କିଛି ହରକତ ହେଉ ନାହିଁ । ଶ୍ରୀଗୁରୁଙ୍କ ଶ୍ରୀଗୋଚରରେ ନିମନ୍ତେ ନିବେଦନ କଲି । ଇତି । ତାରିଖ ସନ ସଦର

---

-୩୪-

## ଉଆସର ଅବସ୍ଥା

ଉତ୍ତରରାୟଙ୍କ ବିୟୋଗ ଦିନଠାରୁ ଧାଈମା ମଣିମାଙ୍କୁ କୋଳରେ ଧରି ବସିଥିଲେ । ବଡ଼ ପିଲାଟି ସ୍କୁଲକୁ ଯାଏ । ଧାଈମାଙ୍କର ବିଶେଷ ତାଗିଦ, ବିଶ୍ୱାସୀ ପଡ଼ିହାରୀ ମଦନ ମହାକୁଡ଼ ସାଙ୍ଗେ ସାଙ୍ଗେ ଥିବ । ପିଲାଟିର ପଢ଼ିବାରେ ଭାରି ମନ—ପୋଥି ଖଣ୍ଡିଏ କେତେବେଳେ ହେଲେ ହାତରୁ ଛୁଟିଣ ନ ଥାଏ । ଏତେ ସାନ ପିଲା—ହେଲେ କଣ ହେଲା, ଆପଣାର ଅବସ୍ଥା, ମାଙ୍କର ହାଲ ସବୁ ବୁଝିଲାଣି—ସ୍କୁଲରୁ ଆସି ସବୁବେଳେ ମାଙ୍କ ପାଖରେ ଅବା ଜେଜୀମାଙ୍କ ପାଖରେ ବସିଥାଏ—ପୋଥି ଖଣ୍ଡ ଧରି ଏ ପୃଷ୍ଠା ସେ ପୃଷ୍ଠା ଉଲଟାଉ ଥାଏ କିମ୍ବା ଗୁନ ଗୁନ ପଢ଼ୁଥାଏ । ଧାଈମାଙ୍କ କଥାରୁ କେତେବେଳେ ବାହାର ହୁଏ ନାହିଁ । ଆଗ ବଡ଼ ଅଝଟିଆ ଥିଲା—ଯେଉଁଟା ଧରି ବସିଲା ନ ହେଲେ ନୁହେଁ । ଏବେ ସେ ଅଳି ଦଳି କିଛି ନାହିଁ । ମାଙ୍କୁ ଅନାଇ ଅନାଇ ତେର ଥର କାନ୍ଦିପକାଏ । ସାନ ପିଲାଟି କିଛି ବୁଝେ ନାହିଁ—ସବୁବେଳେ ଖେଳରେ ମନ ।

ସରସ୍ୱତୀ ଦେଈ ଏବେ ନିଶ୍ୱାସଟାଏ ପକାଇବାକୁ ବେଳ ପାଇଲେଣି । ମଣିମା ଏବେ ଧାଈମା କଥା

ବୁଝୁଛନ୍ତି, କଥାରେ ଉତ୍ତର ଦେଉଛନ୍ତି । ହେଲେ ଆଗେ ଯେମନ୍ତ ମା ଝିଅ କଥାଭାଷା ହେବାବେଳେ ଦୁହିଙ୍କ ମୁହଁରୁ ଆନନ୍ଦ ଉଛୁଳି ପଡ଼ୁଥାଏ—ହସଟା ଯେମନ୍ତ ଦୁହିଙ୍କ ମୁହଁରେ ଲେପି ହୋଇ ରହିଥାଏ ଆଜି କାଲି ସେଥିର ଚିହ୍ନବର୍ଣ୍ଣ ନାହିଁ । ଆଜି କାଲି ଦୁହିଁଙ୍କ ମୁଖମଣ୍ଡଳ ବିଷାଦ କାଳିମାରେ ଆଚ୍ଛନ୍ନ । ଚନ୍ଦ୍ରମଣ୍ଡଳ ଯେମନ୍ତ କଳା ମେଘରେ ଢଙ୍କା । ମାନବ ହୃଦୟର ଭାବ ବଦନ-ମଣ୍ଡଳରେ ପ୍ରତିଫଳିତ ହୁଏ—ଆଉ ବାକ୍ୟାବଳୀ ହୃଦୟତାର-ଝଙ୍କାରର ପ୍ରତିଧ୍ୱନି ମାତ୍ର । ସାନ୍ତଙ୍କ ଅତି ପ୍ରିୟ ପୋଥି ଗୁଡ଼ିକ ପ୍ରତିଦିନ ଝାଡ଼ାଝୁଡ଼ା କରିବା, ଖରାରେ ଶୁଖାଇ ସଜାଇ ରଖିବା, ମଣିମାଙ୍କର ବର୍ତ୍ତମାନ ପ୍ରଧାନ କାର୍ଯ୍ୟ । ସାନ୍ତଙ୍କ ଜୋତାଗୁଡ଼ାକ ହାତୀଦାନ୍ତ ବଉଳା-ବସା କଠଉ ଯୋଡ଼ାକ ପଣନ୍ତକାନିରେ ପୋଛି ମୁଣ୍ଡରେ ଲଗାଇ ଖଣ୍ଡିଏ ପଟା ଉପରେ ଠାକୁରଙ୍କୁ ଖଟୁଲିରେ ବସାଇଲା ପରି ସଜାଇ ରଖନ୍ତି ।

ସରସ୍ୱତୀ ଦେଈ ବେହେରଣ ଅଗଣା ଆଉ ଉଆସ ପଛପଟ ବେଣ୍ଟପୋଖରୀ ଘାଟ ଛାଡ଼ି ଆଉ ଜାଗା ମାଡ଼ୁଁ ନ ଥିଲେ । ଦିନେ ଉଦରେଇଳି ଏଣେତେଣେ ବୁଲୁଁ ବୁଲୁଁ ବାହାର ପ୍ରଶସ୍ତ ସଦର କଚେରୀକୁ ଯାଇ ଦେଖିଲେ ସିଂହଦ୍ୱାରର ସେହି ଆଠ ହାତ ଉଚ୍ଚ ପିତଳ ଗୁବାବସା କାଠ ଛକ ମଧ୍ୟରେ ପଦ୍ମଫୁଲକଟା ଯାଉଁଳି କବାଟ ବନ୍ଦ । ଯୋଡ଼ାଏ ଦ୍ୱାରୀ ପାଇକ କଚେରି ମେଲାର ଗୋଟିଏ କୋଣରେ—ଜଣେ ଆପଣା ବାହୁଟାରେ ମାଣ୍ଡିପରି ମୁଣ୍ଡ ଲଗାଇ ଶୋଇ ପଡ଼ିଛି, ଆଉ ଜଣେ ତା ପାଖରେ ବସି ଢୋଳାଉଛି । ପାଖରେ ଗୋଟିଏ ମୋଟା ନିଆଁ ବଡ଼ିଆରୁ ଅଳ୍ପ ଅଳ୍ପ ଧୂଆଁ ବାହାରୁଛି-- ଅଧ ଶଗଡ଼େ ଭଳି ବଡ଼ିଆ ପାଉଁଶ ଆଉ ଅଧ ଟୋକେଇଏ ଖଣ୍ଡିଆ ପିକା ଗଦା । ଯେଉଁ କଚେରି ଘରେ ଦିନ ବୋଲି ନାହିଁ, ରାତି ବୋଲି ନାହିଁ, ମଣିଷ ଗିଜଗିଜ କରୁଥିଲେ—ସବୁବେଳେ ଚହଳ ପଡ଼ିଥାଏ, ସେ ଜାଗା ନିଛାଟିଆ । ଘରର କୋଣମାନ ବୁଢ଼ିଆଣୀ ଜାଲ ଆଉ ଅଳନ୍ଧୂରେ ଛନ୍ଦି ଗଲଣି । ଦରଚଳାଟା ଅଳିଆ—ପାରାଗୁହ ଚମଚଟାଲଣ୍ଡି ଧୂଳି ମାଟିରେ ପୂରି ରହିଛି । କଡ଼ିକାଠ ଖଟାଳି ଫାଙ୍କରେ ବୁଲି ପାରାଗୁଡ଼ାକ କୁଟା କାଠି ଶୁଖିଲା ପତରରେ ବସା ବାନ୍ଧି ନିଶ୍ଚିନ୍ତ ମନରେ ବଂଶ ବଢ଼ାଉଛନ୍ତି । ଗୁଡ଼ାଏ ପାରା ଅଗଣାରେ ବୁଲି ବୁଲି ବକ୍‌ବକମ୍ ଶବ୍ଦ କରୁଛନ୍ତି । କାନ୍ଥରୁ ବାଲିଚିକୁ ବାଲିତି ଚୂନ ଖସି ପଡ଼ୁଛି; କେଉଁଠି ବା ଫୁଲି ଯାଇ ଫାଟି ଗଲଣି, ଖସି ପଡ଼ିବ । ବାହାର ଅଗଣାରେ ଆଣ୍ଠୁଏବହଳ ଅଳିଆ, ଶୁଖିଲା ପତରଗୁଡ଼ାଏ ପବନରେ କାହୁଁ ଉଡ଼ିଆସି ଜମା ହୋଇଛି । କଚେରି ମେଲା ଲଗାଉ ଏକ ପାଖିଆ ଗୋଟାଏ ଲମ୍ବ ପାଞ୍ଜି ଘର । କଡ଼ି କାଠ ଲଗେ ଲଗେ ତିନି ଚାରି ଗୋଟା । ଖୋଲା ଆଲମାରିରେ ( ସେ ଆଲମାରିରେ କବାଟ ଲାଗି ନାହିଁ ) ତାଳପତ୍ର ପାଞ୍ଜି ପରିପୂର୍ଣ୍ଣ । କେତେ ପୁରୁଷର ତାଲୁକର ପାଞ୍ଜି ଥୁଆ ହୋଇଛି । ସେଥିରେ ଉଈ ଲାଗି ହୁଙ୍କା ପାଲଟି ଗଲଣି । ଧାଈମା ତାକୁ ଅନାଇ ଦେଇ ନିଶ୍ୱାସଟାଏ ପକାଇଲେ । ପାଇକ ଦୁଇ ଜଣଙ୍କର ଧାଈମା ଉପରେ ନଜର ପଡ଼ି-ଗଲା ଧାଇଁ ଆସି ଭୂଇଁଲଗା ମୁଣ୍ଡରେ ଦୁଇ ଜଣଯାକ ଏକ ସଙ୍ଗରେ ମଜରା କଲେ । ଏମାନେ ଜାଗିରଖିଆ । ଦରମାଖିଆ ନୌକରମାନେ ଛାଡ଼ି ପଳେଇଲେଣି ।

ଧାଈମା ଚଞ୍ଚଳ ମୁହଁ ଫେରାଇ ଅନ୍ୟ ଆଡ଼କୁ ଚାଲିଗଲେ । ବୁଲି ବୁଲି ଦେଖିଲେ, ସବୁଆଡ଼େ ଏକା ରାହା । ହାତୀଶାଳ ପରି ବଡ଼ ବଡ଼ ଘରଗୁଡ଼ାକ ଛାଡ଼ି ଖାଁ—ଖାଁ ଗୋଡ଼ାଉଛି । ଦିନ ଦିପହରେ ମଧ୍ୟ ଏକୁଟିଆ ବୁଲିବାକୁ ଡରମାଡ଼ିବ । ଯହିଁ ଯାଅ—ପୃଥିବୀଯାକ ବୁଲି ପାରା—ବାଇଚଢ଼େଇ—ଚମଚଟା-ଗୁହ ଆଉ ବସାଭଙ୍ଗା ଅଳିଆ - ସବୁଯାକ ଯେମନ୍ତ ଏଇଠାରେ ରୁଣ୍ଡ—ଦିନ ରାତି ପାଳି କରି ଚେଁ--ଚୁଁ—ବକ୍‌ବକମ୍ ଲଗାଇଛନ୍ତି ।

ଉଆସ ଭିତରେ ପରିଜନ ପ୍ରସ୍ତରେ ବୁଢ଼ୀ ଯୁବତୀ ଟୋକୀ ଦଶ ବାର ବୋଉ ମାଇକିନିଆ ଜମା । ଥୋକେ ତିନିପୁରୁଷର ପୋଇଲି—ଥୋକେ ଭଲ ଭଲ ଘରର ନିରାଶ୍ରୟା ଅରକ୍ଷିତା ବୋହୂଝିଅ । ଥୋକେ ବନ୍ଧୁ ଲଗାପଗା ବନ୍ଧୁର ବନ୍ଧୁ, ତାର ବନ୍ଧୁ ଘରର ତିନି । ଉତ୍ତରରାୟ ଘରେ କେତେ ପୁରୁଷରୁ ଏହିପରି ବିଧି ଚଳି ଆସୁଛି । କଲ୍ପା ମଧ୍ୟରେ କେହି ମହତ ଘରର ବୋହୂ ଝିଅର କେହି ଆଶ୍ରା ନ ଥିଲେ ଉଆସ ମଧ୍ୟକୁ ଆସି ଘରଝିଅ ପରି ଖୋରାକ ପୋଷାକ ପାଇ ରହିବ । ପରିଜନ ପ୍ରସ୍ତରୁ ଦିନ ରାତି ବଜର ବଜର ଶବ୍ଦ ଉଠୁଥାଏ । ଦୂର ଦୂରାନ୍ତର ଅଜଣା ଲୋକେ ମନରେ କରିବେ ଗୋଟାଏ ବଡ଼ ହାଟ ବସିଛି । ପୋଇଲି ମହଲର ବକର ବକର ତାଳବାଇ ବସାର କଚରମିଚର ଯେମନ୍ତ ବିଧାତାର ସୃଷ୍ଟି । ହେଲେ ସାନ୍ତଙ୍କ ବିୟୋଗ-ଦିନଠାରୁ ପରିଜନମହଲରେ ଯେମନ୍ତ ମାଛିଟି ମରି ଯାଇଛି । ପଡ଼ିଦାତାଙ୍କ ବିୟୋଗ ମଣିମାଙ୍କର ଦୁର୍ଯୋଗ—ସରସ୍ୱତୀ ଦେଈଙ୍କର ଆତୁରତା ସବୁ ବିପଦ ଯେମନ୍ତ ଏକାବେଳକେ ଉପସ୍ଥିତ—ପାଟି କରିବେ କିଏ, ପେଟରେ ଦାନା ପଶିବାକୁ ନାହିଁ—ଶୁଖି ଶୁଖି ଆପଣା ଆପଣା କୋଠରୀମାନଙ୍କରେ ଦରମଲା ହୋଇ ପଡ଼ିଲେଣି । ଖାପୋଲଇରେ ଜିଅନ୍ତା ମାଛ ପରି ଛଟପଟ ହେଉଛନ୍ତି । ସବୁଆଡ଼େ କବାଟ ବନ୍ଦ ତୋଟା ଦୁଆର ଅଡ଼ ମଣିମାଙ୍କ ପ୍ରସ୍ତକୁ ଯିବାକୁ ବି ବାସନ୍ଦ । ଯାଉଛନ୍ତି କୁଆଡ଼େ ? କାହିଁ ବା ଯିବେ ? ଟିକିଏ ଛିଡ଼ା ହେବାକୁ ବି ଜଗତରେ ଏମାନଙ୍କର ଜାଗା ନାହିଁ । ବୁଢ଼ୀଏ ପିଲାକାଳରୁ ଉଆସରେ ବନ୍ଦ ଥିବା ଯୋଗୁଁ ବାହାରେ ଯେ ଗୋଟାଏ ମୂଲକ ଅଛି, ସେମାନଙ୍କୁ ଅଜଣା—ଆଉ ଆଉ ରଜାରାଜୁଡ଼ା ପୋଇଲି ପରିଜନଙ୍କ ପରି ନୁହନ୍ତି—ସାନ୍ତଙ୍କ ଉଆସରେ ଉତ୍ତମ ବନ୍ଦୋବସ୍ତ ଥିଲା—ପରମ ସୁଖରେ ବାସ କରୁଥିଲେ—ସବୁ ସୁଖ ସରପଇଛି । ସନ୍ଧ୍ୟାନ୍ତ ବାସି ଦିନ ଧାନ ଘରିଆ ଆସି ସମସ୍ତଙ୍କୁ କଣ୍ଢ ମାପିକେ ଧାନ ଜଣ ଜଣକେ ମାପି ଦେଇ ଯାଉଥିଲା । ପ୍ରତି ଜଣ ତେଲ ହଳଦୀ ଖର୍ଚ୍ଚା ବୋଲି ମାସକୁ ମାସ ନଗଦ କିଛି କିଛି ପାଉଥିଲେ—ତିନି ମାସକୁ ତିନି ମାସ ନୂଆ ଲୁଗା ପାଇବାର ବନ୍ଦୋବସ୍ତ । ପରିଜନପ୍ରସ୍ତରେ ଗୋଟିଏ ସାନ ପକ୍କା ମନ୍ଦିରରେ ସୀତାରାମ ଠାକୁର ବିଜେ । ପୂଜା ବଢ଼ାଇବାପାଇଁ ଦୁଇଜଣ ନାମୀ ଖଞ୍ଜା । ପ୍ରତିଦିନ ସଞ୍ଜବେଳେ ଗୋଟିଏ ବୁଢ଼ୀ ନାମୀ ମନ୍ଦିରରେ ବସି ଦୁଇ ଅଧ୍ୟାୟ ଭାଗବତ ପଢ଼େ । ହେଲେ କେତେଟା ବୁଢ଼ୀ ବିନା ଆଉ କେହି ଶୁଣିବାକୁ ଯାଏ ନାହିଁ । ପୂର୍ବ ତିନି ପୁରୁଷରୁ ଉତ୍ତରରାୟମାନେ ଧାର୍ମିକ, ସଚ୍ଚରିତ୍ର ଥିବାରୁ ଅପବିତ୍ରତା ଉଆସ ମଧ୍ୟକୁ ପଶି ପାରି ନ ଥିଲା । ପରିଜନମାନେ ତ ସବୁଦିନେ ସୁଖରେ ଥାନ୍ତି, ବିଶେଷରେ ନୂଆ ମଣିମା ବିଜେ ଦିନରୁ ସେମାନଙ୍କର ସୁଖ ଯେମନ୍ତ ଆହୁରି ବଳି ପଡ଼ିଥିଲା । ମଣିମା ନିଜର ସମସ୍ତ ବିଷୟରେ ଅମନୋଯୋଗିନୀ—ଏମନ୍ତ କି ନିଜର ପାଲଟା ବେଢ଼ଣି ଖଣ୍ଡି କିମ୍ବା ଅଳଙ୍କାରଟା ସାଇତିବାକୁ ନାହିଁ । ହେଲେ ପରିଜନ ମହଲରେ କାହାର କଣ ଅଭାବ—ସୁଖ ଦୁଃଖ ସମସ୍ତ ବିଷୟ ପ୍ରତିଦିନ ତନଖି ନ କଲେ ନୁହେଁ । କେତେଥର ତାଙ୍କ ଶ୍ରୀମୁଖରୁ ଶୁଣା ଯାଇଛି, ଏତେ ଗୁଡ଼ାଏ ମହାପ୍ରାଣୀ ବେକରେ ବନ୍ଧା, ସେମାନଙ୍କ ସୁଖ ଦୁଃଖ ନ ବୁଝିବା ଅଧର୍ମର କଥା । ଆହୁରି ମଧ୍ୟ କାର୍ଯ୍ୟରେ ଦେଖାଯାଏ, ମଣିମା ଆପଣା ବିଷୟରେ ପିଲା ପରି ହେଲେ ପରିଜନମାନଙ୍କ କଥା ବୁଝାବୁଝି ସମୟରେ ପକ୍କା ସାନ୍ତାଣୀ । ଏବେ ପରିଜନମାନଙ୍କ ହାଲ କେହି ବୁଝିବାକୁ ନାହିଁ । ଜଣକେତେ ଗୋଟିଏ ଗୋଟିଏ ସାନ ସାନ ଡୋଲି ଆପଣା ଆପଣା କୋଠରୀରେ ବସାଇ ପଡ଼ି ଧାନରୁ କିଛି କିଛି ଛଞ୍ଚି ରଖିଥିଲେ । ଝିହାତି ହେଙ୍ଗୁଳିଛଡ଼ା ଆଉ ସମସ୍ତଙ୍କ ହାତରେ କିଛି କିଛି ଟଙ୍କା ଜମା ଥିଲା । ଆଉ ପୁରୁଣା ଧୋରଣା ବେଢ଼ଣି ଖଦଗୁଡ଼ାକ ସାଇତିବା ପାଇଁ ବି ସମସ୍ତଙ୍କ ଘରେ ଗୋଟିଏ ଗୋଟିଏ ବେତପେଡ଼ି ଉଳୁଗୁ ଅଛି । ସେଥିରେ ଟାଣିଟୁଣି ତିନି ବର୍ଷ କାଳ ଚଳେଇ ନେଲେ

ଏଣିକି ଏକାବେଳକେ ଅଚଳ । ସମସ୍ତଙ୍କର ପାଞ୍ଚ ଜାଗା ସିଆଁ ଦଶଗଣ୍ଠିଳିଆ ଲୁଗା । ଅଧାଅଧି ଦିନ ଉପାସ । ଚମ ଧୂଡ଼ୁଧୂଡ଼ୁ – ଗୁଡିକର ହାଡ଼ ଗଣିହେଉଛି-- ମୁଣ୍ଡେ ମୁଣ୍ଡେ ଲୁଖୁରା ଜଟାଳିଆ ବାଳ ଫର ଫର ଉଡୁଛି – ଦେହରେ ଖଡ଼ଗାର ପଡ଼ିଯିବ । କିହାକି କପାଳ ଭାଙ୍ଗିବ ରୁ ମୁଣ୍ଡ ଗୁଞ୍ଜିବାର ଆଉ ଜାଗା ନ ପାଇ ସାନ୍ତଙ୍କ ଉଆସରେ ପଶିଛନ୍ତି ସତ, ହେଲ ଅନେକ ଗୁଡ଼ଏ ଭଲଲୋକ ଘର ବୋହୁଝିଅ । ସଙ୍ଗଗୁଣ ଆଉ ଆକଟରେ ରହିଥିବା ଯୋଗୁଁ କାହାର ଆଚରଣରେ ଦାଗ ଲାଗି ପାରିନାହିଁ । ଦିନେ ଓପରଓଳିଆ ବୁଢ଼ୀ ଭଳିଆ କେତେଜଣ ମାଇକିନିଆ ସମସ୍ତଙ୍କୁ ଭାଗବତ ଗାଦି ଆଗରେ ଜମା କରାଇ କହିଲେ, "ତୁମ୍ଭେମାନେ ଶୁଣ, ଯାହାଙ୍କ ଅନ୍ନରେ ଆମ୍ଭମାନଙ୍କ ଜୀବନ, ସେ ଘରର ଅବସ୍ଥା ଦେଖୁଛ । ଯେ ମଣିମା ଆପଣା ମା ପରି ଦୁଇଓଳି ଆସି ଆମ ଖାଇବା ନ ଖାଇବା ବୁଝୁଥିଲେ ସେ ତ ଅଚେତା ହୋଇ ପଡ଼ିଛନ୍ତି । ଯେବେ ଭାଗବତ ଗାଦି ଅନାଇବେ, ମଣିମାଙ୍କୁ ଦାଣ୍ଡରେ ଚଲାଇବେ, ଦିନକେ ଆମର ସବୁ କଷ୍ଟ ମେଣ୍ଟିଯିବ । ନୋହିଲେ ଆସ ସମସ୍ତେ ଏକା ଘରେ ପଡ଼ି ରହିବା—ଏ ବଂଶରେ କାଳି ଲଗାଇବା ନାହିଁ—ଆପଣା ଆପଣା ବଂଶକୁ ନରକରେ ପକାଇବା ନାହିଁ—ଉଆସରୁ ଗୋଡ଼ କାଢ଼ିବା ନାହିଁ । ସମସ୍ତେ ମଣିମାଙ୍କ ପାଇଁ ଠାକୁରଙ୍କ ନିକଟରେ ଜଣାଣ କର । ଟିକାଇତ ବାବୁ ଆଉ ଶ୍ରେଷ୍ଠ ବାବୁଙ୍କ ଶ୍ରୀଅଙ୍ଗରେ ମଙ୍ଗଳ ବର୍ଷୁ । ସମସ୍ତେ ଭାଗବତ ଗୋସାଇଁଙ୍କ ଗାଦିକୁ ଅନାଇ ନିୟମ କର ।" ଗାଦିକୁ ଅନାଇ ସମସ୍ତେ କାନ୍ଦି କାନ୍ଦି ନିୟମକଲେ । ଏ ଉତ୍ତାରେ ସିଠ ଗନ୍ତାଘରଣୀ ଚୋଟା ଦୁଆରେ ଗୋଟାଏ ବଡ଼ କୋଲପ ପକାଇ ଦେଲେ, ବାହାରକୁ କାହାର ଯିବାର ବାସନ୍ଦ ।

ପରିଜନ ପ୍ରସ୍ତରୁ ସାନ୍ତଙ୍କ ବେହରଣ ଅଗଣାକୁ ଆସିବାର ଗୋଟିଏ ଦୁଆର, ସେ ଦୁଆର ବନ୍ଦ; ଲୋକେ ଏପାରି ସେପାରି ହେବାକୁ ମନା । ମଣିମାଙ୍କ ଘରମୁଖକୁ କେହି ଆସିବାକୁ ନାହିଁ । କବିରାଜମାନେ କହିଛନ୍ତି, ଗୋଳମାଳ ହେଲେ ମଣିମାଙ୍କ ପୀଡ଼ା ବଢ଼ିଯାଇ ପାରେ । ଆଜି ସକାଳେ ଧାଈ ମା ମଝି ଦୁଆର କବାଟ ଫିଟାଇ ପରିଜନ ପ୍ରସ୍ତକୁ ଗଲେ । ଯିମିତି ତାଙ୍କ ଉପରେ ନଜର ପଡ଼ୁଛି ବୁଢ଼ୀଠୁ ପିଲାଯାଏ ଧାଇଁଲେ—ଧାଈମାଙ୍କୁ ବେଢ଼ି ଡାକ ପାରୁଛନ୍ତି । କେହି ଗୋଡ଼ ଧରି ଭିଡୁଛି—କେହି କୁଣ୍ଢେଇ ପକାଇ ଜାପଟି ଧରିଛି—ଗୋଟାକେତେ ମାଇକିନିଆ ଯୋଡ଼ାକଯାକ ହାତ ଧରି ଭିଡୁଛନ୍ତି । ହେ ହେ କରି ସମସ୍ତେ ଡାକ ପାରୁଛନ୍ତି । ଦେହରେ ତ ବଳ ନାହିଁ, ହେ ହେ କରି ଡାକ ପାରିବାରୁ କେତେଟାକୁ ଝାମ ମାରିଗଲାଣି । ବଡ଼ଏଯାଏ ରଡ଼ ଗୁଡ଼ ଗୁଡ଼ ଗୁଡ଼ାଏ ତଳେ ବସିପଡ଼ି ଧକେଇ ହେଉଛନ୍ତି । ସାନ୍ତଙ୍କ ବିଯୋଗ ଦିନ ଯେପରି ବିକଳ କାନ୍ଦଣା ଉଠିଥିଲା, ଆଜି ପୁଣି ଠିକ୍ ସେହିପରି ଶୁଣିବାରେ ଆସିଲା । ସମସ୍ତେ ତ ମହାଦୁଃଖରେ ଚିଡ଼ି ମନ ମଧ୍ୟରେ କାନ୍ଦୁଥିଲେ, ଆଜି ଯେମନ୍ତ ଉଚ୍ଛୁଳି ଉଠୁଛି । ଧାଈମା ସେମାନଙ୍କ ବେକ, ଦେହର ଅବସ୍ଥା ଦେଖି ପିଚୁଳାଟି ପରି ଛୁଡ଼ା ହୋଇଛନ୍ତି । ଆଖି ଯୋଡ଼ାକରୁ ଲୋତକ-ଧାରା ବହି ଯାଉଛି । ଧାଈମାଙ୍କ ଆଖିରେ ଜଳ ଆଗେ ଦେଖା ଯାଉ ନ ଥିଲା । ଏବେ ଦିନେ ଦିନେ କିଛି କଥାରେ ଆଖିରୁ ଲୋତକ ବହିଯାଏ—ହେଲେ ତାଙ୍କୁ ଡାକ ପାରି କାନ୍ଦିବାର କେହି କେବେ ଦେଖିନାହିଁ । ଘଡ଼ିକ ଉତ୍ତାରେ ଧାଈମାଙ୍କର ଯେମନ୍ତ ଚେତା ବସିଲା । ରୂପ ଆଉ ବେକ ଦେଖି ସମସ୍ତଙ୍କର ଚଳାଚଳର ହାଲ ବୁଝି ପାରିଲେଣି । ପ୍ରତି ଜଣକୁ ଥରେ ଥରେ ଅନାଇ ଗଲେ । ହାତ ଠାରି ଠାରି ସମସ୍ତଙ୍କୁ ତୁନି ହେବାକୁ କହିଲେ । କେହି କେହି ପରିଜନ ଆପଣା ଆପଣା ଦୁଃଖ ହାଲ କହିବା ସକାଶେ ଧାଈମାଙ୍କ ଆଗକୁ ଆସୁଥିଲେ । ସିଠ ଗନ୍ତାଘରଆଣୀ ଆଖିଠାରି ମନା କରି ଦେଲେ, କାହାର କାହାର କାନରେ ତୁନି ତୁନି କହିଲେ—କିଛି ବୋଲନା ।

---

—୩୫—

## ସାଧୁ ସାହୁ ମହାଜନ

ସରସ୍ୱତୀ ଦେଈ ପରିଜନପ୍ରସ୍ତରୁ ବାହୁଡ଼ି ଆସି ଗନ୍ଦାଘରେ କବାଟଟି ଆଉଜାଇ ଦେଇ ପଡ଼ିଏପାଏ ଗୁମମାରି ବସିଲେ । ସେ ଆପଣା କଷ୍ଟ ଖୁବ୍ ସହିପାରନ୍ତି, ହେଲେ ପରକଷ୍ଟ ତାଙ୍କ ପକ୍ଷରେ ଅସହ୍ୟ । ତାଙ୍କ ହୃଦୟଟା ଶୁଖି ନୀରସ କାଠ ପାଲଟି ଯାଇଥିଲା; ସେଥିଲାଗି ହେଉ ଅବା ସେ କାନ୍ଦିଲେ ପିଲା ଗୁଡ଼ାକ ଅଧୈର୍ଯ୍ୟ ହୋଇ ପଡ଼ିବେ, ଏଥିପାଇଁ ପୂର୍ବେ ତାଙ୍କ ଆଖିରେ ଜଳ ଦେଖା ନ ଥିଲା । ଆଜି ତୁନି ତାନି ବସିଛନ୍ତି, ଦୁଇ ଆଖିରୁ ଧାର ବହି ଯାଉଛି । ସରସ୍ୱତୀ ଦେଈ ସମସ୍ତଙ୍କୁ ସାନ୍ତ୍ୱନା ଦିଅନ୍ତି, ତାଙ୍କୁ ସାନ୍ତ୍ୱନା ଦେଉଛି କିଏ ? ଘଡ଼ିକ ବାଦ ଆପେ ଆପେ ସମ୍ଭାଳି ହେଲେ । ହାତ ସିନ୍ଦୁକ ଆଡ଼କୁ ଚାହିଁଲେ, ସେଟା ଭୁଙ୍କା ପଡ଼ିଛି । ମନ ମଧ୍ୟରେ କଲେ, ଏଥିରେ ଯେତେ ଟଙ୍କା ଥିଲା ଗୃହ ଛ ଦିନେ କଟକରୁ ପଠାଇ ଦେବାକୁ କହି ନଷ୍ଟ ତ ଯେଉଁଗଲା, ଆଜଯାଏ ଦେଲା ନାହିଁ—ଆଉ କିଏ ସେ ଦେବ ? ଯେତେଥର ସେ ଟଙ୍କା ସକାଶେ ତାକୁ ଲେଖିଲି, ତାର ସେଇ ଗୋଟାଏ ଉତ୍ତର—ସାନ୍ତଙ୍କ ନିଜ ଦେଣା ଶୁଝି ନାହିଁ, ପ୍ରଜାମାନେ ମେଳକରି ଟଙ୍କା ଦେଉ ନାହାନ୍ତି । ହାୟ ରେ ଦଇବ ! ଏ ଘରେ ପୁଣି ଦେଣା ! ଆଉ କଣ ବାକି ଅଛି ଯେ ଦେଣାପାଇଁ ଦୁଃଖ ! ଏଣେ ଦେଖୁଁ ଦେଖୁଁ ଯେ ପରିଜନ ଗୁଡ଼ାକ ମଲେ ଆସି—ଏ ଅଧର୍ମର ସ୍ୱର୍ଗ କିଏ ହେବ ? ଭୁଙ୍କା ମୋହପାଇଁ ସମସ୍ତଙ୍କର ଏହି ହାଲ । କି ଦୁର୍ବୁଦ୍ଧି ଘଟିଲା, ନଷ୍ଟ କଥାରେ କିଆଁ ଭୁଲିଗଲି ? ପରିଜନ-ଗୁଡ଼ାଙ୍କର ରୂପ ଯେମନ୍ତ ତାଙ୍କ ଆଖିରେ ଘୁଞ୍ଚ ଯାଇଛି —ଆଉ କିଛି ତାଙ୍କ ଦିଶୁନାହିଁ । କେବଳ ଅଧା ଲଙ୍ଗଳା ହାଡ଼ୁଆ ଛବି । ବେକ ଅଣ୍ଡାଳିଲେ, ପିଣ୍ଡା ସୁନାର ଗୋଟିଏ ମାଳି ଥିଲା, ବାହାର କରି ଖାଇବା ହାତରେ ଟେକିଧରି ଦଣ୍ଡେ ଅନାଇଲେ । ପୁଣି ଆଖିରୁ କେତେ-ଟୋପା ଜଳ ପଡ଼ିଗଲା, ଚନ୍ଦ୍ରମଣି ଜନ୍ମ ସମୟରେ ଅପା ବାଧିକା ପଡ଼ିଥିଲେ, ବଞ୍ଚିବାର ଠିକଣା ନ ଥିଲା—ମୁଁ ଟିକିଏ ସେବା କରିଥିଲି, ଅପା ଭଲ ହୋଇ ଆପଣା ବେକରୁ ଏହି ମାଳଟା କାଢ଼ି ବେକରେ ଲଗାଇ ଦେଲେ । ମୁଁ 'ନାହିଁ' 'ନାହିଁ' କରି ମାଳଟା କାଢ଼ି ଫେରାଇ ଦେଉଥିଲି, ଭଣୋଇ ସାନ୍ତ ପାଖରେ ଛିଡ଼ା ହୋଇ ମୁରୁକି ମୁରୁକି ହସୁଥାନ୍ତି, କହିଲେ—"ଏ ସରସ୍ୱତୀ ଭଗବତୀ ଦେବି ନମସ୍ତେ—ନିଅ – ନିଅ, ମାଳଟା ନେଇ ବେକରେ ଲଗାଅ, ତୁମ ଅଧୁନ୍ଦର ବେକଟାକୁ ସୁନ୍ଦର ଦିଶିବ—ମତେ କେହି ଯାଚୁ ନାହିଁ, ମତେ ଦେଲେ ଲଗାନ୍ତି ।" ମୁଁ କହିଲି, "ନିଅ ନିଅ ଭଣୋଇ ସାନ୍ତ, ଚପକନ ଉପରେ ଲଗାଇ କଚେରିକୁ ଯିବ— ସାହେବ ଦେଖି ଖୁସି ହେବେ । ହା ! ଭଣୋଇ ସାନ୍ତ ! କାହିଁ ସ୍ୱର୍ଗରେ ଅଛ, ମୁଁ ନରକରେ ପଡ଼ି ଘାଣ୍ଟି ହେଉଛି ।" ପୁଣି ତାଙ୍କ ଅଜାଣତରେ ଆଖିରୁ କେତେ ଟୋପା ପାଣି ଗଡ଼ିଲା । ସେହି ହାରଟା ତଳେ ଥୋଇ ଟିକିଏ କାଗଜରେ କଣ ଗୃହ ଧାଡ଼ି ଲେଖି ସେହି ସୁନା ମାଳ ଆଉ ଘିଷାଖଣ୍ଡ ସାଧୁ ସାହୁ ମହାଜନ ପାଖକୁ ପଠାଇ ଦେଲେ ।

ସାଧୁ ସାହୁ ନରପୁର କିଲ୍ଲା ମଧ୍ୟରେ ଗୋଟାଏ ଟାଣୁଆ ତେଲି ମହାଜନ । ନଗଦ ଟଙ୍କା ଆଉ ଧାନର କାରବାର । ଗୃଳିଶ ପଞ୍ଚାଶ ଖଣ୍ଡ ଗ୍ରାମର ଲୋକ ତାହାର ଖାତକ । ଲୋକେ କହନ୍ତି; ସାଧୁ ସାହୁ ରାତି ଅଧରେ ଲକ୍ଷେ ଟଙ୍କା ଗଣିଦେବା ଲୋକ । ଦଶଟା ଗାଁରେ ତାହାର ଧାନକୋଠି । ମାଗିବାକ୍ଷଣି ହଜାର ଭରଣ ଧାନ ମାପି ଦେବା ତା ପକ୍ଷରେ ବଡ଼ କଥା ନୁହେଁ । ସମସ୍ତେ କହନ୍ତି, ସାଧୁ ସାହୁ ମହାଜନର କଳନ୍ତର ପରି କୋହଳ ଆଉ କାହିଁ ଦେଖିବାର ନାହିଁ । ଧାନ ବର୍ଷକୁ ସୋଇ ବଢ଼ନ୍ତିରୁ ବେଶି ନୁହେଁ । ସେପରେ ନ ଥିଲା ଖାତକ ଗୋଡ଼ତଳେ ପଡ଼ିଗଲେ କଳନ୍ତର ବାଡ଼ଟା

ଧରୋଟ ଥାଏ ନାହିଁ। ଖାତକ ଯେତେବେଳେ ଆସୁ ତାଳପତ୍ର ଡେମ୍ଫକେରେ ଗୁଡ଼ା ଖଣ୍ଡେ ଲେଖିଦେଲେ ଟଙ୍କା ହେଉ, ଧାନ ହେଉ ପାଇଲା। ଗୁଡ଼ାରେ ମଣିଷ ସାକ୍ଷୀ ଥାଏ ନାହିଁ—ଚନ୍ଦ୍ର ସୂର୍ଯ୍ୟ ଦଶଦିଗପାଳ ଧର୍ମ ସାକ୍ଷୀ। ତୁଚ୍ଛା ହାତରେ କେହି ବାହୁଡ଼େ ନାହିଁ। ସବୁ ଖାତକ ସାଙ୍ଗରେ ହସି ହସି କଥା—ଟାଣ କରି ପଦେ କହିବାର କେହି ଶୁଣି ନାହିଁ। କେହି ଖାତକକୁ ତୁଟି ପକାଇବାକୁ ଅସୁଲ କୁଲି ବା ପିଆଦା ପଇଦଲଙ୍କୁ ମନା। ସାଧୁ ସାହୁର ହଜାର ହଜାର ଖାତକ, ହେଲେ କେହି ଖାତକ ନାମରେ ନାଲିସ ହୋଇଛି, ଏ କଥା କେହି ଭରସି ବୋଲି ପାରିବ ନାହିଁ। ଏଣେ କେହି ଖାତକ ଧାନ ବା ଟଙ୍କା ଖାଇ ବୁଡ଼ାଇ ଦେଲା, ଏ ଯାଏ ଶୁଣିବାରେ ଆସି ନାହିଁ। ଏଥିର ଦୁଇଗୋଟି କାରଣ ଶୁଣାଯାଏ। ପ୍ରଥମ କାରଣ—ସାଧୁ ସାହୁ ମହାଜନଠାରୁ କରଜ ଖାଇ ବେମାନ କଲେ ବଂଶବୁଡ଼ ଯାଏ ଏ କଥାଟାରେ ସାଧାରଣ ଲୋକଙ୍କର ଦୃଢ଼ ବିଶ୍ୱାସ। ଗୋପାଳପୁର ଶାସନର ରାମ ପଣ୍ଡା ନାତି ବ୍ରଜହରିକୁ କୋଡ଼ିଏ ଧଙ୍କା କରଜ ଖାଇ ବେମାନ କରିବାରୁ ତା ବଂଶ ଯାକ ଠାକୁରାଣୀରେ ମରିଗଲେ। ଢେର ବର୍ଷ ତଳର କଥା ହେଲେ କଣ ହେଲା, ଆଖିରେ ଦେଖିବାର ଲୋକ ଅଛନ୍ତି ପରା! ଦ୍ୱିତୀୟ କାରଣ—ବୁଢା ସାନ୍ତ ଭାରି ସାହାଖର୍ଚ୍ଚୀ ଥିଲେ, ସବୁବେଳେ ଟଙ୍କା ଲୋଡ଼ା—ସାନ୍ତ ଅଙ୍କାଟାଏ ପଠାଇ ଦେଲେ ସାହୁଏ ସାଙ୍ଗେ ସାଙ୍ଗେ ଟଙ୍କା ଗଣି ଦିଅନ୍ତି। ଏଥିଲୁ ସାମନ୍ତଙ୍କର ଭାରି କୃପା, ମହାଜନ ଟଙ୍କା କିଏ ଦେଲା କିଏ ନ ଦେଲା ଆପେ ଆପେ ବୁଝୁଥାନ୍ତି—ଅଦିଆ ଖାତକ ଉପରେ ଦଗବାର ମଉପିଲ ଦେଇ ଟଙ୍କା ଅସୁଲ କରାଇ ଦିଅନ୍ତି। ଏଲାଗି ସମସ୍ତଙ୍କ ମନରେ ଡରଟାଏ ଥାଏ। ସାଉଙ୍କ ଘର ଲଗାଲଗି ଆଗ ଗ୍ରାମକୁ ଗୋଟାଏ ମେଲା-ଚଉପାଢ଼ୀ ଭଲିଆ ଗୋଟାଏ ଉଚ୍ଚଘର। ସେଇଟା ହେଲା ମହାଜନଙ୍କ ବେଉପାର ଘର। ଦଶ ବାରଟା ପାଞ୍ଚିଆ ଅଧବଳଦେ ଲେଖାଏଁ ତାଳପତ୍ରର ପାଞ୍ଜି ପାଖରେ ଥୋଇ କେହି ଛୁଣ୍ଡା ଅଖା ଖଣ୍ଡକରେ, କେହି ବା ଭୁଇଁରେ ବସି ସକାଳୁ ସଞ୍ଜଯାଏ ଦୁଇକଲମ ଲେଖନଟାଏ ଧରି ଚର୍ ଚର୍ କରି ଲେଖୁଥାନ୍ତି। କିଛି ଦୂରରେ ମହାଜନ ନିଜେ ବାଡ଼କୁ ଆଉଜି ଭୁଇଁରେ ବସିଥାନ୍ତି—ମୁଖରେ ସବୁ-ବେଳେ କୃଷ୍ଣ କୃଷ୍ଣ ଭଜନ। ସାଧୁସାହୁଏ ଡେଙ୍ଗା ଭଲିଆ ଲୋକ—ଶ୍ୟାମଳବର୍ଣ୍ଣ, ମୁଖଟି ଡୌଲ- ଠିଆ ନାକ—ଆଖି ଦିଓଟି କିଛି ବଡ଼ ବଡ଼-ଟିକିଏ ରଙ୍ଗା ରଙ୍ଗା ହିଣେ! ମୁଣ୍ଡରେ ସାନ ତେଲଚିକଣ ପେଣ୍ଡାଟିଏ ପଛକୁ ଝୁଲି ପଡ଼ିଥାଏ। ବେକଟି ଲମ୍ବା—ବେକ ମଝି ଆଗକୁ ଗୋଟାଏ ଗେବ ପରି ବାହାରିଛି। ଦୁଇ ବାହୁ ବଳିଲା ପରି—କିଛି ଲମ୍ବ। ଗ୍ରୀବା ଗୋଟାକ ଆଉ ଦୁଇ କାନ ଲୋମ ବଲ୍ ବଲ୍। ବାଲିବଣି ବୁଣା ହଳଦିଆ ରଙ୍ଗର ନ ହାତି ଖଦି ଖଣ୍ଡିଏ ଆଉ ତେଲ ଚଟ୍ ଚଟ୍ ମଳିଆ ଛହାତି ଖଣ୍ଡେ ଗାମୁଛା—ଏହି ପହରଣଟା ସବୁ ଦିନେ। ଦୁଇମାସେ ତିନି ମାସେ ପିନ୍ଧା ଖଦି ଖଣ୍ଡ ନହାତି ମଳି ଚିକଟା ହୋଇ ଗଲେ ଉଜୁଳା ଘରକୁ ଯାଏ। ହେଲେ ଗାମୁଛା କରି ହେବ ନାହିଁ—ଯେ ଖଣ୍ଡ ସେ ଗାମୁଛା—ପବିତ୍ର ଲୁଗା—ଧୋବା ହୋଇ ଆସିଲେ ଛୁଆଁ ଛୁତ ହୋଇଯିବ। ସାହୁଙ୍କର ଦୁଇ ପୁଅ। ବଡ଼ ପୁଅ ଗୋବିନ୍ଦା, ବୟସ କୋଡ଼ିଏ, ପାଞ୍ଚ ବର୍ଷ ହେଲା ବିଭା ହେଲାଣି—ପନ୍ଦର ବର୍ଷର ପାରିଲା ବୋହୂଟି ଘରେ। ସାନ ପୁଅର ବୟସ ବାର—ଗାଁ ଇସ୍କୁଲରେ ପଢ଼େ। ଏହି ବରଷ ଆସନ୍ତା ମେ ମାସରେ ତାହାର ବିଭା ହେବାର ପ୍ରସଙ୍ଗ ଚାଲିଛି। ବଡ଼ ପୁଅ ଗୋବିନ୍ଦା ଗାଁ ସ୍କୁଲ ମାଇନର କ୍ଲାସ ପର୍ଯ୍ୟନ୍ତ ପଢ଼ିଛି। ହେଲେ କଣ ହେଲା, ସାହୁର ଜାଣିବାରେ ସେଇଟା ନିକ୍ଢିଆ—କାମ ପାଇଟିରେ ମନ ନାହିଁ, କବୁତର ପୋଷେ, ଗୁଡ଼ାଏ ଗୋବର ଚଢ଼େଇ ପିଞ୍ଜରାରେ ପୂରେଇଛି। ପାତଳ ଦଶହାତି ବାସି ଧୋବ ଲୁଗା ପିନ୍ଧେ, ଅଙ୍ଗା ଲଗାଏ, ବାସତେଲ ମୁଣ୍ଡରେ ଲଗାଏ, ଜୋତା ମାଡ଼େ। ସାହୁଙ୍କୁ ଏ ଗୁଡ଼ାକ ଭଲ ଲାଗେ ନାହିଁ, ମନମଧ୍ୟରେ ଖପା ହୁଅନ୍ତି, ସାହୁଆଣୀ ଉପରେ କିଛି

କହି ପାରନ୍ତି ନାହିଁ । ପଦେ କଥା କହିଲେ ସାହୁଆଣୀ ବାଘୁଣୀ ପରି ଗର୍ଜିବେ । ମଝିଆଁ ପୁଅଟି ବାହୁଡ଼ିବା ଦିନୁ ପୁଅମାନଙ୍କୁ ପଦେ କଥା କହିବାକୁ ଗେରସ୍ତକୁ ଦିଅନ୍ତି ନାହିଁ । ପୁଅମାନେ ଯାହା ଇଚ୍ଛା କରନ୍ତୁ, ଆପେ ମଧ୍ୟ କିଛି ବୋଲନ୍ତି ନାହିଁ । ସାହୁଆଣୀ ଶ୍ରୀମତୀ ବି କିଛି ଢେଙ୍ଗୀ—ଦେହ ରଙ୍ଗଟି ସୁନ୍ଦର । ନେତ୍ର—ନାସିକା ମୁଖଟି ଏମନ୍ତ ଢୌଲ ଯେ, ଦେଖିଲେ ଗୋଟିଏ ଦେବୀ ପ୍ରତିମା ପରି ଜଣାଯାଏ । ଶ୍ରୀମତୀ ଗାଁ ଯାକର ସାହୁଆଣୀ ମା, ବାପର ମା, ପୁଅର ବି ମା, ଶାଶୁର ମା, ବୋହୂର ବି ମା । ସମସ୍ତେ ତାଙ୍କୁ ସାହୁଆଣୀ-ମା ବୋଲି ଡାକନ୍ତି । ସତକୁ ସତ ସେ ଗାଁଯାକ ଲୋକଙ୍କୁ ପୁଅ ଝିଅ ପରି ମଣନ୍ତି । କେହି ବାଧିକ ପଡ଼ିଲେ ତା ପାଖକୁ ଛ ଥର ଧାଇଁ ଯାଉଥିବେ । ଗାଁରେ କିଏ ଖାଇଲା ନ ଖାଇଲା ତନଖି କରନ୍ତି । ଗାଁରେ କାହାର ବାହା ପୁଆଣିରେ ଥିଲା ନ ଥିଲା ଚଳାଇ ନିଅନ୍ତି । ସାହୁଙ୍କ ଦୁଆରୁ ଅତିଥି ବାହୁଡ଼େ ନାହିଁ । ଘରେ ପଟେ ଚୂଡ଼ା, ମାଠିଆଏ ଗୁଡ଼—ହାଣ୍ଡିଏ ପଖାଳ ସବୁବେଳେ ଥିଆ; କେତେବେଳେ କିଏ ଭୋକିଲା ଶୋଷିଲା ପହଞ୍ଚି ଯିବ ପରା । ସେହିପରି ବି ପହଞ୍ଚନ୍ତି । ଗାଁଲୋକେ କହନ୍ତି, ସାହୁଆଣୀଙ୍କର ଲକ୍ଷ୍ମୀ ପହର - ସେ ଗୋଡ଼ ଦେବାଦିନୁ ଗାଁରେ କାହାର ଦୁଃଖ ନାହିଁ । ସାହୁଙ୍କ ଏଡ଼େ ବଡ଼ନ୍ତି ସାହୁଆଣୀଙ୍କ ଧର୍ମବଳରୁ । ସାହୁଆଣୀଙ୍କର ବି ଖୋଲ ହାତ ଲମ୍ବ ହଳଦିଆ କସ୍ତା ବାଲିବଣି ବୁଣା ଶାଢ଼ୀ ଖଣ୍ଡେ ପହରଣ, ଦୁଇ ହାତରେ ଦୁଇ ଦୁଇ ବଣା ଚୂର ବଣା ଓଜନ ପିତ୍ତଳ ବାହୁବଳା, ହାତଗଣ୍ଠି କଡ଼ରୁ କହୁଣୀ ଯାଏ ଲାଗିଛି । ଆଙ୍ଗୁଳିରେ ଯୋଡ଼ାଏ ରୂପାର ଗୁପ ମୁଦି । ବେକରେ ମାଳେ ସୁନା ଦାନା, ଆଉ ମାଳେ ଗୋଡ଼ଲଗା ଟଙ୍କାମାଳି । ଦୁଇ କାନରେ ଦୁଇ ତୋଳା ଓଜନ ପିଟା ଗୁଣ୍ଡିଖଣ୍ଡିଆ ସୁନା କାନଚମ ଟାଣି ଆଣିଲାଣି ।

ବାହାଘରବେଳେ ଗୋବିନ୍ଦା ଘର ଗୋଟାଏ ଗୋଳମାଳ କଲା, ବୋହୂ ହାତରେ କଙ୍ଗା ରୂପା-ଗହଣା, ବେକରେ କାନରେ ସୁନାଗହଣା ନ ଲଗା-ଇଲେ ବାହା ହେବ ନାହିଁ । ମା ବାପ ଆଉ ଗାଁ ଲୋକେ ଢେର ବୁଝାଇଲେ, ଜାତିରେ ନାହିଁ—ସାତପୁରୁଷରୁ କୁଳରେ ନାହିଁ, ସେ କଥାଟା କମିତି ହେବ କଥାଟା ସାନ୍ତଙ୍କ କାନରେ ବାଜିଲା, ଏକା-ବେଳକେ ହୁକୁମ ସାଙ୍ଗେ ସାଙ୍ଗେ ବୋହୂ ଅଳଙ୍କାରର ଡାବ ଆସିଲା—ବୋହୂ ସକାଶେ ହଜାରେ ଟଙ୍କାର ଅଳଙ୍କାର କଟକରୁ ତିଆରି ହୋଇ ଆସିବ । ସାଆନ୍ତଙ୍କ ଆଜ୍ଞା ମେଣ୍ଟନ କରୁଛି କିଏ ? ଶ୍ରୀମତୀ ଉଆସକୁ ଯାଇ ଢେର କାନ୍ଦିଲା, ଗଡ଼ିଲା । ମଣିମା ବି ଆଜ୍ଞା କଲେ, ଏଥିରେ କିଛି ଦୋଷ ନାହିଁ । ଦୋଷ ମେଣ୍ଟିବା ପାଇଁ ଯୁଗଳକିଶୋର ମନ୍ଦିରରେ ଶଏ ଆଠ ମୂର୍ତ୍ତି ବ୍ରାହ୍ମଣ ଭୋଜନ ହେଲା । ଜାତିମାନେ ଅଡ଼ିବସିଲେ, ଶାକାନ୍ନ-ମିଷ୍ଟାନ୍ନ ଦୁଇବେଳା ଖାଇଲେ । ବୋହୂର ଅଳଙ୍କାର ସବୁ କଟକ ତିଆରି—ସାନ୍ତ ଆପେ ବରାଦ କରି ବନାଇ ଆଣିଥିଲେ । ବୋହୂଟି ବି ସୁନ୍ଦର ଦେଖିବାକୁ । ଶ୍ରୀମତୀ କହିବାରେ, ଗୁଣ ଢେର—ଶାଶୁର ସବୁକଥା ମାନେ ।

ସାହୁ ଆଉ ସାହୁଆଣୀ ମଧ୍ୟରେ ଯେପରି ପ୍ରେମ, ଅଶିକ୍ଷିତ ସାଧାରଣ ଲୋକ ଘରେ ସେପରି ଅଳ୍ପ ଦେଖାଯାଏ । ସକାଳୁ ଉଠି ମୁହଁ ଧୋଇଲା ପାଣି ଲୋଟାଏ ଥୋଇଦେବା ଠାରୁ ପାଲଟା ଲୁଗାଖଣ୍ଡି କାଟିବାଯାଏ ସ୍ୱାମୀର ସମସ୍ତ କାର୍ଯ୍ୟ ଶ୍ରୀମତୀ ଆପେ କରିବେ । ଚାକର ଚାକରାଣୀ ଅଛନ୍ତି, ହେଲେ ସେ ସବୁ କାମରେ ହାତ ଦେବେ ନାହିଁ । ସ୍ୱାମୀ ଭୋଜନ କରି ଉଠିଗଲେ ଯେତିକି ପ୍ରସାଦ ଛାଡ଼ିଥିବେ ସେତିକି ସେବା । ସଞ୍ଜଠାରୁ ରାତି ଛ ଘଡ଼ିଯାଏ ସ୍ୱାମୀ ଗୋଡ଼ରେ ତେଲ ମର୍ଦ୍ଦନ କରୁଥିବେ । ସ୍ୱାମୀର ଉଚ୍ଛିଷ୍ଟ ବିନା କୌଣସି ପଦାର୍ଥ ହେଉ ପଛକେ ସାହୁଆଣୀ ଛୁଇଁବେ ନାହିଁ । ଏତେ ହେଲେ କଣ ହେଲା, ଦୁଇ ଜଣଙ୍କ ମଧ୍ୟରେ ନିତି କଳି । ସାହୁଙ୍କର ଗୋଟାଏ ସ୍ୱଭାବ ଅଛି ବୁଢ଼ା ବସି ସବୁବେଳେ ତୁଣ୍ଡ ତୁଣ୍ଡ କହୁଥିବେ । ଦିନ

ଦୁଇ ପହର ଗଡ଼ଗଲାଣି, ପାଞ୍ଜିଆମାନେ ପାଞ୍ଜିରେ ଡୋର ଦେଇ ଯେ ଯାହା ଘରକୁ ଗଲେଣି, ସାହେବ ଆଖି ବୁଜି ବସି କୃଷ୍ଣ କୃଷ୍ଣ କରୁଛନ୍ତି । ଶୁକରଆ ଗୁରୁବାରଆ ଦୁଇଥର ଡାକି ଗଲାଣି, ଶେଷରେ ସାହେବାଣୀ ଘର ଭିତରୁ ଗର୍ଜି ଆସିବେ—ଚକଟାଟା ଠକସାଟା—ଆଜି ଖାଇବ ନାହିଁ, ଘରେ ସମସ୍ତଙ୍କୁ ଭୋକରେ ମାରିବ । ପାଖକୁ ଆସି ନ ଗର୍ଜିଲେ ସାହେବଙ୍କର ଚେତା ପଡ଼େ ନାହିଁ । ସାହେବ ଖପାଟା ହୋଇ କହନ୍ତି,"ଆଃ ! କୃଷ୍ଣ କୃଷ୍ଣ ! ଭୁନ ଭୁନ କହନ୍ତି—ଗୋବନ୍ଦାମାନେ ବଡ଼ କଳହୁଡ଼ି ! ରୋଜ ଏହି କଳି !"

ଚଉଦଦଣ୍ଡିଆ ବେଳ—ସାହେବ ତାଙ୍କ ବେଉସା ଘର ପିଣ୍ଡାରେ ବସି ଆଖିବୁଜି କୃଷ୍ଣ କୃଷ୍ଣ କରୁଛନ୍ତି । ପାଞ୍ଜିଆମାନେ ଆପଣା ଆପଣା କର୍ମରେ ବ୍ୟସ୍ତ—ଦଶ ପନ୍ଦରଟା ଖାତକ ସେମାନଙ୍କୁ ବେଢ଼ି ବସିଛନ୍ତି । ଉଆସ ଭିତରଆ ପଡ଼ିଆରୀ ମଦନ ମହାକୁଡ଼ ବାଉଁଶ ବାଡ଼ଟାଏ ଠୁକୁରୁ ଠୁକୁରୁ କରି ନଇଁ ନଇଁ ସାହେବଙ୍କ ପାଖରେ ପହଞ୍ଚିଲା । ଧାଈମା ଏହି ସୁନା ମାଳି ଆଉ ଚିଠି ଦେଇଛନ୍ତି କହି ସାହେବଙ୍କ ହାତକୁ ବଢ଼ାଇ ଦେଲା । ଭିତରଆ ପଡ଼ିଆରୀ ଧାଈମାଙ୍କ ଚିଠି ଆଣିଛି ଦେଖି ସାହେବ ଧଡ଼ମଡ଼ ହୋଇ ଠିଆ ହୋଇଗଲେ—ଚିଠି ଆଉ ସୁନା ମାଳଟା ତିନିଥର ମୁଣ୍ଡରେ ଲଗାଇଲେ । ସେ ପଢ଼ି ଜାଣନ୍ତି ନାହିଁ, ଜଣେ ପାଞ୍ଜିଆ ଚିଠି ପଢ଼ି ଶୁଣାଇ ଦେଲା—ଧାଈମା ଲେଖିଛନ୍ତି, "ସୁନା ମାଳଟା ରଖି ତିନିଶ ଟଙ୍କା ଆଉ ତିନିଶ ଭରଣ ଧାନ କରଜ ଦେବ । ଆସନ୍ତା ମକର ମାସରେ ଖଞ୍ଜା ମୌଜାରୁ ଖଜଣା ଆଉ ଧାନ ଆସିଲେ ମୂଳ କଲନ୍ତର ଶୁଝିଦେଇ ଦିଆଯିବ ।" ସାହେବ କାନ୍ଧ ପକାଇଲା ପରି ହୋଇ କହିଲେ "କୃଷ୍ଣ କୃଷ୍ଣ ! ଧାଈମାଙ୍କୁ ମୋର ଲକ୍ଷଲକ୍ଷ ମଜୁରା କହିବ । ଏହି ମାଳ ଆଉ ତିନିଶ ଟଙ୍କା ନେଇଯା —କପ୍ତାନ ଅଇଲେ ପଛକେ ଧାନ ମପାଇ ପଠାଇ ଦେବ । ଧାଈମାଙ୍କୁ କହିବ, ମୁଁ କଣ ଏଡ଼େ ନିମକ-ହାରାମ ହେଲି ମାଳ ରଖି ଟଙ୍କା ଦେବି, ପୁଣି କଲ-ନ୍ତର ନେବି ? ଏସବୁ ବିଷୟ କାହାର ? ଯେତେବେଳେ ଯେତେ ଟଙ୍କା ଲୋଡ଼ା ହେବ ନେଇଯାଉଥିବ । ଅନ୍ନଦାତା ହାକିମ—ଅବୋଧ ପିଲା, ମୋ ବିଷୟ ସବୁ ଆଉ କେଉଁ ଦିନ ଲାଗି ?"

ହେ ପାଠୁଆ ନଟବର ଦାସେ ! ବେଳେ ଆସି ମୂର୍ଖ ସାଧୁସାହେବର ବେଭାରଟା ଦେଖି ଯାଆନ୍ତୁ !

—————

—୩୭—

## ଟିକାଏତ ବାବୁଙ୍କର ମାଇନର ପାସ

ସାମନ୍ତ ପ୍ରତାପ ଉଦିତ ମଲ୍ଲ ଉତ୍ତରରାୟ ନିଜ ଗଡ଼ରେ ଯେଉଁ ମାଇନର ସ୍କୁଲ ଗୋଟାଏ ବସାଇ ଥିଲେ, କେବଳ ଟିକାଏତ ବାବୁଙ୍କ ଲାଗି ଆଜିଯାଏ ସେ ସ୍କୁଲଟି ଚଳୁଛି । ତାଙ୍କ ଦେଖା ଦେଖି ଆଉ ତାଙ୍କ ମନ ବହଲେଇବା ପାଇଁ ନିଜଗଡ଼ନିବାସୀ ଲୋକମାନେ ଆପଣା ଆପଣା ପିଲାଙ୍କୁ ସ୍କୁଲକୁ ପଠାଇଥାନ୍ତି । ମାଷ୍ଟର ଦରମା ସ୍କୁଲର ଆଉ ଆଉ ଖର୍ଚ୍ଚ ସବୁ ସାମନ୍ତଙ୍କ ତହବିଲରେ ଖର୍ଚ୍ଚ ପଡ଼େ । ସାମନ୍ତଙ୍କ ବିୟୋଗ ଦିନଠାରୁ ତାହା ବନ୍ଦ—ବର୍ତ୍ତମାନ ମଣିମାଙ୍କ ଖଞ୍ଜା ମୌଜାରୁ ଅଧେ ଦିଆଯାଏ, ବାକି ଅଧେ ପିଲାମାନଙ୍କ ଦରମାରୁ ଉଠେ । ଦୁଇମାସ ତଳେ ଟିକାଏତ ବାବୁ ମାଇନର ପରୀକ୍ଷା ଦେଇଥିଲେ । ସେ ପ୍ରଥମ ଶ୍ରେଣୀରେ ପାସ କରିଥିବାର ଇନସ୍ପେକଟର ସାହେବଙ୍କ ଅଫିସରୁ ମାଷ୍ଟରଙ୍କ ନାମରେ ଚିଠି ଆସିଲା, ମାସକୁ ଚାରି ଟଙ୍କା କରି ଜଳପାନି ପାଇ କଟକ ବଡ଼ ସ୍କୁଲରେ ପଢ଼ିବେ । ଚିଠି ପହଞ୍ଚିଲାକ୍ଷଣି ଗାଁ ସାକରେ ଆନନ୍ଦର ଚହଲ ପଡ଼ିଗଲା । ଥୋକେ ଲୋକ କଥାଟା ବୁଝି—ଢେର ଲୋକ କିଛି ନ ବୁଝି ଖୁସିଟାଏ ହୋଇଗଲେ । ଆଜି ପାଞ୍ଚ ବର୍ଷ ଉତ୍ତାରେ

ଉଆସରେ ଆନନ୍ଦର ଚିହ୍ନ ଦେଖା ଗଲା—ପରିଜନ ପ୍ରସ୍ତରେ ଶଙ୍ଖହୁଳହୁଳି ଶବ୍ଦ ଉଛୁଳି ପଡ଼ୁଛି । ଜଳନ୍ତା ନିଆଁରେ ପାଣି ପଡ଼ିଲେ ଗୋଟାଏ ବାମ୍ଫ ବାହାରେ—ନେଙ୍ଗମାଙ୍କ ଆଖିରୁ ଝର ଝର କରି ପାଣି ବହି ପଡ଼ିଲା । ମଣିମା ଆରୋଗ୍ୟ ଲାଭ କରିଅଛନ୍ତି ସତ; ହେଲେ ବଡ଼ପୁ ଧାରଣା ମନ ମଧ୍ୟରେ ଏ ଯାଏଁ ଜାତ ହୋଇନାହିଁ; ଭଲ ମନ୍ଦ କିଛି ବୁଝି ପାରୁ ନାହାନ୍ତି । ନରୁର ପାଶ ଖବର ଶୁଣି ବଡ଼ିଏ କାଳ ଗୁମ ମାରି ବସିଲେ—ଦୁଇ ଆଖି କୋଣରେ ଦୁଇ ଟୋପା ପାଣି ଯେମନ୍ତ ଢଳ ଢଳ ହେଲା । ମଣିମାଙ୍କ ମୁଖର ଏପରି ଭାବ କେବେ ଦେଖା ନ ଥିଲା ।

ଘୋର ଆନନ୍ଦ ବେଳେ ଭୟଙ୍କର ବିପଦ ଉପସ୍ଥିତ । ନରୁ ବାବୁ ଧରି ବସିଲେଣି ଇଂରେଜୀ ପଢ଼ିବାକୁ କଟକ ଯିବେ । ଉଆସରେ ଚଡ଼କଟାଏ ଯେମନ୍ତ ପଡ଼ିଗଲା । ନେଙ୍ଗମା ତ କାନ୍ଦି କାନ୍ଦି ଅଜ୍ଞାନ—ନାତିକୁ କୁଣ୍ଢାଇ ଧରି କହିଲେ, "କଟକ କଣରେ ନରୁ—ଇଂରାଜୀ ପାଠ ପଢ଼ିବୁ, ଏଇ ଉଆସରେ ବସି ପଢ଼, ଯେତେ ଟଙ୍କା ଲାଗୁ ମୁଁ ଦେବି । କଟକରୁ ଭଲ ଭଲ ମାଷ୍ଟର ଆଣି ଦେବି—ତୁ କଟକ ଯା ନା ।" ନରୁ ବାବୁର ଏକା—ରା—ସେଇ ହଟ । ପାଞ୍ଜିଆ ପଢ଼ିଆରୀ ବୁଝାଇଲେ, ସିଂଗଡ଼ାଦେଈଆଣୀ ଆଉ ଆଉ ସମସ୍ତେ ବୁଝାଇଲେ । କିଏ ଶୁଣେ—ସେଇ ଗୋଟାଏ କଥା—କଟକ ଯିବେ । ଧାଈମା ମଣିମାଙ୍କୁ କିଛି କହି ନାହାନ୍ତି, ସେ ଆଗେ ଆଗେ କହିଲେ, "ଧାଈମା ! ନରୁ କହୁଛି ତ କଟକ ଯାଉ । ଯାଙ୍କ ବଂଶରେ ସେଇ ଗୋଟାଏ ଜିଦ୍, ଯେଉଁଟା ଧରିବେ, କରିବେ । ଏଇପରି ତାଙ୍କର"—କଣ କହିବାକୁ ଯାଉଥିଲେ, ପାଟି ଫିଟିଲା ନାହିଁ । ଧାଈମା କଣ ବୁଝି ଚଞ୍ଚଳ ଆଉ ଆଡ଼କୁ ଚାଲିଗଲେ ।

ରାଜଜ୍ୟୋତିଷ ଗଣେଶ୍ୱର ଖଡ଼ଗରତ୍ନେ ଆସି ଦିନଟାଏ ଧରି ଦେଇ ଗଲେ । ମେଷ ଶୁକ୍ଳ ପଞ୍ଚମୀ ବୁଧବାର ପୁଷ୍ୟଯୋଗିନୀ—ଅମୃତଯୋଗ—ବୃଷରାଶିକୁ ପଶ୍ଚିମ ଯାତ୍ରା ଶୁଭ ବ୍ରାହ୍ମମୁହୂର୍ତ୍ତରେ ଯାତ୍ରା—ଯୁଗଳ କିଶୋର ମନ୍ଦିରରେ ବିଷ୍ଣୁ ସହସ୍ର ନାମ ପାଠ ଓ ପ୍ରଭୁଙ୍କ ପାଦପଦ୍ମରେ ଲକ୍ଷେ ତୁଳସୀ ଚଢ଼ାଇବା ସକାଶେ ଦୁଇଜଣ ବ୍ରାହ୍ମଣ ବରଣି ହେଲେ—ଧାଈମା ନରୁ ମୁଣ୍ଡରେ ଛୁଆଇଁ ବ୍ରାହ୍ମଣ ହାତରେ ଗୁଆ ଟେକି ଦେଲେ । ଉଆସରେ ପ୍ରତିଦିନ ଶଏଆଠ ମୂର୍ତ୍ତି ବ୍ରାହ୍ମଣ ଭୋଜନର ବନ୍ଦୋବସ୍ତ ହେଲା ।

ଧାଈମା ବୁଢ଼ା ଗୁମାସ୍ତକରଣଙ୍କୁ ଡକାଇଲେ । ଦୁଇଜଣଙ୍କ ମଧ୍ୟରେ ପରାମର୍ଶ ଚାଲିଲା—ନରୁ କଟକ ଯାଇ କେଉଁଠି ରହିବ । ପାଞ୍ଜିଆ କହିଲେ, ଦୁଇଟା ଯାଗା ଅଛି—ହେଲେ, ମାମୁ ବସାରେ ବଡ଼ ଗୋଳମାଳ, ସେଠାରେ ରହିବାର ସୁବିଧା ହେବ ନାହିଁ । (ପାଞ୍ଜିଆ ସାଫ ଫିଟାଇ କହିବାକୁ ଭରସିଲେ ନାହିଁ ସତ, ହେଲେ ମାମୁ ବସାରେ ରଖାଇବାକୁ ତାଙ୍କର ବିଶ୍ୱାସ ଖଟୁ ନାହିଁ ।) ଧାଈମା ପାଞ୍ଜିଆଙ୍କ ମନକଥା ବୁଝିଗଲେ—କହିଲେ, "ତୁମେ ଯେ କଥା କହିଲ, ସେ କଥାଟି ଏକା ସତ, ହେଲେ ମୁଁ କେତୋଟି ଦୋଷ ଦେଖୁଛି । ମଉସା ବସାରେ ରହିଲେ ନଟ ଖର୍ଚ୍ଚ ଦେବନାହିଁ, ଏଣେ ମଉସା ବି ଖର୍ଚ୍ଚ ମାଗିବେ ନାହିଁ । ଯେତେ ହେଲେ ତ ବନ୍ଧୁ, ଖର୍ଚ୍ଚ ନ ନେଇ ତାଙ୍କ ଘରେ ରଖାଇବାଟା ମୁଁ ପସନ୍ଦ କରୁ ନାହିଁ । ଆଉ ଗୋଟାଏ କଥା, ନଟ ଯେପରି ମଣିଷ, ନରୁ ମଉସା ଘରେ ରହିଲେ ଜାଣିଶୁଣି ଅନିଷ୍ଟ କରିବ, ଲୋକରେ ବି ଅସୁନ୍ଦର ଦିଶିବ—ଆପଣା ମାନ ମହତକୁ ଜଗି ତ ବାଟ କାଢ଼ିବାକୁ ହେବ । କରୁଣା ବାରିକ ତ ସାଙ୍ଗରେ ଯାଉଛି—ଲୋକଟା ଯେପରି ବୁଦ୍ଧିଆ, ସେହିପରି ବିଶ୍ୱାସୀ—ପୁଣି ନରୁକୁ ପ୍ରାଣରୁ ଅଧିକ ମଣେ—ସେପରି ଯେବେ ଦେଖିବ, ମଉସା ବସାକୁ ଉଠିଯିବା କେତେବେଳ ?" ପାଞ୍ଜିଆ ଆଉ କିଛି ନ ବୋଲି ତୁନି ହେଲେ ।

———

-୩୬-

## ନରୁ ବାବୁଙ୍କ କଟକ ଯାତ୍ରା

ସବାରରେ ଗୃହଯୋଡ଼ା କାନ୍ଧଆ ଆପଟ ଲଟିଛନ୍ତି, ଆଗ ପଛରେ ଦୁଇଟା ପାଇକ, ଗୃହଟା ଘର—ଡେଢବର ହାତରେ ଗୋଟାଏ ପିତ୍ତଳ ତେଲଦାମ୍ନା ଆଉ ମଶାଲ, ଖାଇବା ହାତରେ ଖଣ୍ଡେ ବାଡ଼, ପିଠିରେ ଗୋଟିଏ ସାନ ବୋକଚ୍ଛ ପକାଇ କରୁଣା ବାରିକ ଧାଇଁଛି । କାଳେ ବାଟରେ ରାତି ହୋଇ ପଡ଼ିବ, ମଶାଲଟି ସଜିଲ କରି ଧରିଥାଏ । ସଞ୍ଜଦୀପ ଲଗେ ଲଗେ ସବାରି କଟକ ବାଖରବାଦ ନାଜରଙ୍କ ବସାରେ ଭିଡ଼ିଲା, ଆପଟମାନେ ସବାରିଟା ଦୁମ କରି ଥୋଇଦେଇ ଅଣ୍ଟାରୁ ଗାମୁଛା କାଢ଼ି ହଇଁ ହେବାକୁ ଲଗିଲେ । ନାଜରବାବୁ ମାଳାଝୁଲିଟିଏ ଧରି ବାହାରକୁ ବାହାରୁଥିଲେ । ସଞ୍ଜ ସକାଳ ନାଜର ବାବୁଙ୍କ ହାତରୁ ମାଳା ଝୁଲିଟା ଛୁଡ଼ ନ ଥାଏ । ଦୁଷ୍ଟ ଲୋକ ବୋଲନ୍ତି, ଏଇଟା ଲୋକ ପତିଆରା । ନାଜର ବାବୁ ସବାରି କବାଟଟା ଭିଡ଼ିଦେଇ ଆସ ବୋଲି କହି ନରୁ ବାବୁଙ୍କୁ ଓହ୍ଲାଇ ନେଲେ । ବାରିକ ସବାରିରୁ ଶେଯଟା କାଢ଼ି ନେଇ ନାଜର ବାବୁଙ୍କ କୋଠରି ମେଲାରେ ପାରିଦେଲା । ବାବୁ ସେହି ଶେଯରେ ନରୁ ବାବୁଙ୍କୁ ବସାଇ ଭିତର ପ୍ରସ୍ତକୁ ଗଲେ । ଭିତର ମଝି ଅଗଣାରେ ଖଣ୍ଡେ ସାନ ସରଣ୍ଡି ବିଛାଇ ଗୋଟାଏ ବଡ଼ ମାଣ୍ଡିକୁ ଆଉଜି ନାଜରାଣୀ ବସିଥିଲେ । ଗୋଷ୍ଠେୟୁ ବ୍ରାହ୍ମଣ ରାତିଓଳି ଖଦାର ଉପଦେଶ ଶୁଣି ଯାଉଥାଏ । ବାବୁଙ୍କୁ ଦେଖି ସାନ୍ତାଣୀ ଟିକିଏ ସଜାଡ଼ି ସୁଜଡ଼ି ବସି ମୁହଁଟେକି କହିଲେ, "ଏ ପୁଣି କଣ ଗୋଟାଏ ପ୍ରେମ ! ସେଇଲାଗି ଗାଁରୁ କେହି ଆସିଲେ ମୁଁ ତାକୁ ବସିବାକୁ ଠାଁ ଦିଏ ନାହିଁ । ସେମାନଙ୍କର କଣ ଉଣା ଜଞ୍ଜାଳ !" ନାଜର ବାବୁ କହିଲେ, 'ତୁନି ପଡ଼, ତୁନି ପଡ଼— ଭଲ ହେଲା—ଭଲ ହେଲା--ଖୁବ୍ ଭଲ ଅଛି । ଗଡ଼ ଉଆସ ଭିତରୁ ଢେର ଢେର ପିଠା ଖଜା ଆଉ ଆଉ ଭଲ ଭଲ ଜିନିଷ ଆସିବ, ପିଲାଟା କେତେ ଖାଇବ ? ଆଉ ତା ପଛେ ମାସକୁ ଦଶଟଙ୍କା ଖର୍ଚ୍ଚ କରି ତେଶ ଟଙ୍କା ଲେଖିବା ।"ନାଜରାଣୀ କହିଲେ, "ନା ନା, ତୁମେ ତ ବୁଝି ନାହଁ, ପିଲାଗୁଡ଼ାକ ପିଛେ ଖରଚ ଢେର, ମାସକୁ ପାଞ୍ଚକୋଡ଼ି ଟଙ୍କାରୁ ପଇସାଏ ଊଣା ନୁହେଁ,ତୁମେ ପଛକେ ବୁଝିବ ।" ନାଜର କହିଲେ "ମୁଁ କଣ ତା ଛାଡ଼ିବ, ଆହୁରି ବେଶି ଲେଖିବ ।" ମାମୁଁ ମାଈଁ ଦୁଇଜଣ ହସି ହସି ମୁହଁ ଚୁହାଁଚୁହିଁ ହେଲେ । ନାଜର ବାବୁ ନରୁ ବାବୁଙ୍କୁ ଡାକି ଆଣି ମାଈଁ ସାଙ୍ଗରେ ଭେଟ କରାଇଦେଲେ । ନରୁ ବାବୁ ଭୂଇଁରେ ମୁଣ୍ଡ ଲଗାଇ ଦଣ୍ଡବତଟା କରି ଛିଡ଼ା ହୋଇଥାନ୍ତି, ମାଈଁ ବକ ବକ କରି ମୁହଁକୁ ଅନାଇଛନ୍ତି, ପଦେ ପାଟି ଫିଟାଇବାକୁ ନାହିଁ ଅବା କଥା ପଇଟୁଛି କି ନାହିଁ, କିଏ ଜାଣେ ? ମାଈଁଙ୍କ ଆଚରଣ ଦେଖି ନରୁ ବାବୁଙ୍କ ମନକୁ କମିତିକା ଲଗିଲା । ତୁନି ହୋଇ ମୁଣ୍ଡ ପୋତି ଛିଡ଼ା ହୋଇଥାନ୍ତି । ନାଜର ବାବୁ ଚଞ୍ଚଳ ନରୁ ବାବୁଙ୍କ ହାତ ଧରି ବୈଠକଖାନାକୁ ନେଇ ଗଲେ । ବୈଠକ-ଖାନା ଏକପାଖରେ ଗୋଟାଏ ଲମ୍ବ ଗମ୍ଭୀର, ପୁରୁଣା ମରହଟ୍ଟୀ ଛଆରି, ଦୁଆରଟା ନୁଆଣ, ଡେଙ୍ଗା ମଣିଷ ସଳଖେ ଛିଡ଼ା ହୋଇ ଭିତରକୁ ପଶି ପାରିବ ନାହିଁ, ମୁଣ୍ଡ ନଇଁ ଯିବାକୁ ହୁଏ । ଉତ୍ତରରେ ହାତପଦୁଏ ଉପରକୁ ଗୋଟିଏ ସାନ ଜଳାକବାଟି । ବାହାର ଲୋକ ଘରଭିତରକୁ ଅନାଇ ଦେଲେ ମହାଦୋଷ ତ ଗଲା, ଏଥିଲାଗି ଆଗକାଳକା ସିଆଣା ଲୋକେ ଜଳାକବାଟି ଉପରକୁ ରଖୁଥିଲେ । ଜଳାକବାଟି ଆଉ ଦୁଆର ବନ୍ଦ କରିଦେଲେ ଦିନବେଳେ ବି ଘରଟା ଅନ୍ଧାରିଆ ହୋଇଯାଏ, ପବନ ପଶିବାର ତ ମୂସଲମ ବାଟ ନାହିଁ । ନରୁବାବୁଙ୍କ ଚିଜବସ୍ତୁ ସବୁ ସେହି ଘରେ ରହିଲା । ଗୋଡ଼ ଟଳଟଳିଆ ପୁରୁଣା ଚକ୍ରପୋଷ ଖଣ୍ଡେ ପଡ଼ିଛି, ସେଥିରେ ବାବୁ ଶୋଇବେ । କରୁଣା ଗୁଞ୍ଜୁଣିଟା ଧରି ଘର ଓଳେଇ ପକାଇଲା, ଚକ୍ରପୋଷରେ ବିଛଣା ପାରିଦେଲା । କରୁଣାଟା ଖାଲି ନାକ ସିଟକାଉଛି, ଘରଟା ମନକୁ ମାନୁନାହିଁ କି ?

ରାତି ଅନୁମାନ ୯ ଘଡ଼ି ଚଢ଼ି ଯାଇଛି—ନାଜର ବାବୁଙ୍କ ବସାରେ ସମସ୍ତେ ଖିଆ ପିଆ କରି ଶୋଇ-ଲେଣି । ଆପଟ ଆଉ ପାଇକ ଗୁଡ଼ାକ ଦିନଯାକ ଧାଇଁ ଥକି ପଡ଼ିଥିଲେ, ଦିନବେଳେ ବାଟରେ ମୁଠାଏ ମୁଠାଏ ଚୂଡ଼ା ଖାଇଛନ୍ତି । ବାଟଚଲା ଥକା ବାଧିଗଲା, ଲୁଗାକାନିଟାମାନ ପାରି ସମସ୍ତେ ଶୋଇ ପଡ଼ିଥିଲେ । ସେମାନଙ୍କ କଥା କେହି ବୁଝିବାକୁ ନାହିଁ । ଏତେବେଳେ ନିଦ ଭାଙ୍ଗିଲା, ଶ୍ରେକରେ କାଉଳି ହେଉଛନ୍ତି । କହିବେ କାହାକୁ—ଶୁଣୁଛି ବା କିଏ ? ମଫସଲିଆ ଲୋକ, ଏଣେ ହାକିମ ଘର, ପାଟି କରିବାକୁ ଡର । ଗଡ଼ରୁ ଆସିବାବେଳେ ଜେଜିମା ଗୋଟାଏ ବଟୁଆରେ ଗୁଡ଼ାଏ ଟଙ୍କା ଆଉ ରେଜକି ପୂରାଇ ପେଟ-ରାରେ ଥୋଇ ଦେଇଥିଲେ । କରୁଣାକୁ ବୁଝାଇ ଦେଇଥିଲେ, ଦରକାର ପଡ଼ିଲେ ନିଜକୁ ନ ପଚାରି ଖରଚ କରିବ । ପେଟରା କଞ୍ଚିକାଠି ହାତରେ ଥିଲା, କରୁଣା ସେଥିରୁ ଯୋଡ଼ାଏ ଟଙ୍କା କାଢ଼ି ପାଇକ-ମାନଙ୍କ ହାତରେ ଦେଲା । ବଜାର ବନ୍ଦ ହୋଇନାହିଁ, ଚୂଡ଼ା ଗୁଡ଼ କିଣି ପେଟେ ପେଟେ ଖାଇ ଶୋଇ ପଡ଼ିଲେ । ମାଛୁଆ ଅନ୍ଧାର ଥାଉଁ ଥାଉଁ ସେଗୁଡ଼ାକ ଉଠି ଗାଁକୁ ପଳାଇ ଗଲେଣି । ପାହାନ୍ତା ବେଳକୁ ଦେଖାଗଲା – କେହି କୁଆଡ଼େ ନାହିଁ ।

—————

-୩୮-

## ମେନକା ଦେଈଙ୍କ ଘରଭଡ଼ା

କଟକରେ ଥିବାବେଳେ ମେନକା ଦେଈ ମାସକୁ ଟଙ୍କାଏ ଆଠଅଣା କରି ଚାରି ବର୍ଷରେ କିଛି ଟଙ୍କା ଛଞ୍ଚିଥିଲେ । ତାଙ୍କ ବସା ଲଗାଟ ଦରଘା ବଜାରରେ ପାଞ୍ଚଗୁଣ୍ଠ ଜମି, ତା ଉପରେ ଚାରି ବଖରା କାଇ ଘର ଅଦାଲତ ଡିକ୍ରୀଜାରିରେ ନିଲାମ ହେଉଥିବା କଥା ଦିନେ ଶୁଣିଲେ । ଦୁଇ ଭଉଣୀ ବସି ବିଚାର କଲେ, ଟଙ୍କା ତ ହାତରେ ରହିବ ନାହିଁ—କଟକ ସହରରେ ଘର କେତେ ବଖରା କିଣି ରଖିଥିଲେ କେତେବେଳେ ହେଲେ ପିଲାମାନଙ୍କ କାମକୁ ଆସିବ । ଦାଶରଥି ଦାସେ ତ ସରକାରି ଚାକରିଆ, ତାଙ୍କ ନାମରେ କିଛି ଭୂସମ୍ପତ୍ତି କିଣା ଯାଇ ପାରିବନାହିଁ, ମେନକା ଦେଈ ଆପଣା ନାମରେ ନିଲାମରୁ କିଣିନେଲେ । ଏତେବେଳେ ତାଙ୍କର ନିଜର ବଡ଼ ଉପକାରକୁ ଆସିଲା । ବୟସ ତ ଟଳି ଗଲାଣି—ଏଣେ ବେମାରି ଗୁଡ଼ାକ ଲାଗି ରହିଛି । ଏଣିକି କାମ ପାଇଁ ତ ଥାଉ, ଚାଲବୁଲ ହେବାକୁ ବି କଷ୍ଟ ହେଲାଣି । ସଞ୍ଜବେଳକୁ ଯୋଡ଼ାଏ ପଇସାର ଆଫୁ ଗିଳି ପକାଇଲେ ଦେହଟା କିଛି ଚଞ୍ଚଳ ଥାଏ । ଆଉ ଗୋଟାଏ କଥା, ଆଫୁଲିମାନେ ଆଫୁଟା ଗିଳି ପକାଇଲାକ୍ଷଣି ଟିକିଏ ମିଠା ପିଠା ପାଟିରେ ପକାଇବାକୁ ତାଙ୍କ ମନଟା କେମନ୍ତ ଟକ ଟକ କରେ, ପାନ ଟିକିଏ କଲରେ ନ ଯାକିଦେଲେ ନୁହେ । ଭଡ଼ା ଚାରି ଟଙ୍କାରେ ସବୁ ଖର୍ଚ୍ଚ ଚଳିଥାଏ । ବଡ଼ପୁଅ ବାନାବରକୁ ସେଥି-ଲାଗି କିଛି ବୋଲନ୍ତି ନାହିଁ । ତେବେ ବି ବାନାବର ମାଆଙ୍କର ଆଫୁ ଖିଆ କଥା ଛ ଥର ବୁଝାବୁଝି କରନ୍ତି । ମା ତ ଦେଖୁଛନ୍ତି ପୁଅଟା ଚାଷ ବାସରେ ଲାଗିଛି, ନଗଦ ପଇସା କଉଡ଼ି ହାତରେ ତେତେ ଥାଏ ନାହିଁ, ତାକୁ ଆଉ କଣ କହିବେ ? ତେତେ ଲୋଡ଼ା ବି ନାହିଁ—ଖାଇଲା ପିନ୍ଧିଲା ବାଡ଼ଟାରେ ତ ହରକତ ନାହିଁ । ବାନାବରେ ମା'ଠାରେ ବଡ଼ ଭକ୍ତ । ସଞ୍ଜବେଳେ କାମଧନ୍ଦା ସାରି ମା ପାଖରେ ଘଡ଼ିଏ ବସେ, ଦେହପା କଥା ପଚାରେ । ବୁଢ଼ୀ ବାଧିକ ପଡ଼ିଲେ ବଡ଼ବୋହୂ ଜଗି ଦେହପାରେ ହାତ ବୁଲାଉଥାଏ । ଶାଶୁର କଣ ଲୋଡ଼ା ତିନିଥର ପଚାରୁଥାଏ । ଦିନେ ମେନକା ଦେଈ ଶୁଣିଲେ, ନରପୁର ପ୍ରଜା ପାଟକ ମାଳି ମାମଲା ପାଇଁ କଟକକୁ ଆସି ରହିବା ସକାଶେ ନଟବର ବାବୁ ତାଙ୍କ କଟକ ବସାଟା ହାତରେ ରଖିଲେ । ବୁଢ଼ୀ ତାଙ୍କ ଘରଭଡ଼ା ଆଉ ପାଇଲେ ନାହିଁ ।

—————

-୩୯-

## ଶାମ ସାମଲ ଓ ହରବୋଲ ବାରିକ

ଦିନ ଦିପହର ଗଡ଼ି ଗଲାଣି, ଗାଁପାକର ଖିଆପିଆ ବେଳ, ଚନ୍ଦନ ପୋଖରୀ କୂଳରେ କେହି ନାହାଁନ୍ତି, ଏକା ହରବୋଲ ବାରିକ ଗଳାଏ ଜଳରେ ଛିଡ଼ା ହୋଇ ତେଲଚକଟା କୁଣ୍ଡା ଗାମୁଛା ଖଣ୍ଡିକରେ ଦେହ ରଗଡ଼ୁଛନ୍ତି । ସୂର୍ଯ୍ୟଙ୍କର ଏଇଟା ହେଲା ଗାଧିଆ ବେଳ, ସଖାଳୁ ଗାଁ ବୁଲି ଯାଇଥାନ୍ତି, ବାହୁଡ଼ିବାକୁ ମଠ ହୁଏ ।

ଶାମ ସାମଲ ଜଙ୍ଘ ଅଧରୁ ଅଣ୍ଟାଯାଏ ମୋଟା କରିଆଖଣ୍ଡେ ଆଣ୍ଠୁ କରି ଭିଡ଼ ଦେଇଛି, ମୁଣ୍ଡରେ ଝାମ୍ପିଟାଏ, ଦେହ ଗୋଟାଯାକ କାଦୁଅ ଲଟପଟ, ଖାଇବା ହାତରେ ପାଞ୍ଚଣ ଖଣ୍ଡେ, ଜିଭରେ ଟକ୍ ଟକ୍ କରି ଟାକରା ଫୁଟାଇ ଫୁଟାଇ ବଳଦ ହଳଟା ଧରି ବାହାରି ଆସି ତୋଠରେ ହଳଆ କାନ୍ଧରୁ ଜୁଆଳୀ ଲଙ୍ଗଳ ଫିଟାଇ ରଖି ଗୋରୁ ଯୋଡ଼ାକୁ ଚରିବାପାଇଁ ଏକ୍ଲପାଖିଆ ଅଡ଼ାଇ ଦେଲା, ମୁହଁରେ ମୋଟା ଗବ ଦାନ୍ତକାଠି ଖଣ୍ଡ କାମୁଡ଼ ଧରିଥିଲା, ଦାନ୍ତ ଘଷି ପକାଇ ଭୁସ ଭୁସ ହୋଇ ପାଣି ଭିତରକୁ ପଶିଗଲା । ବାରିକେ କହିଲେ "ଏଁ – ହରିବୋଲ, କରେ ବାପ ସାମଲ-ଦରପୁଅ, ବହୁତ୍ତା ବେଶ ଯେ ଦେଖୁଛୁ । ଆଜ କକଡ଼ା ଅଧାଅଧି ଗଡ଼ିବାକୁ ବସିଲାଣି, ଗାଁଯାକର ହଳ ଲଙ୍ଗଳ ଓଳରେ ଟଙ୍ଗା, ତୋର କଣ ପାଇଛି ଛାଡ଼ନାହିଁ ? ଘର ଗୃହିଁଟା ତ ରେ ତୋର କେତେ ବାଟି ବଲ କରେ ?" ସାମଲ କହିଲା, "ବାଭେ, ଯାହା କହିଥିଲେ, ସେଇକଥା ଏକା ଠିକ ହେଲା । ଶସ୍ତା ପାଇ କଣି ପକାଇଥିଲି, ଶସ୍ତାର ଅବସ୍ଥା, କାନ୍ଦ କାନ୍ଦ ବକବାକୁ ତର ସହିଲା ନାହିଁ । ମୁଁ କହୁଥିଲି, ଏ ବରଷଟା ପେଲ ପାଲ ଭିଡ଼ନେବି, ଗୋସାଇଁଖିଆଟା କଣ କଟରେଇ ଦେଲା, ଜୁଆଳି କାନ୍ଧ ଛୁଇଁଲା ତ ଲଠ କରି ଶୋଇବ ।" ବାରିକେ ବୋଇଲେ, "ଏ—ହରିବୋଲ ! ଏଇଲାଗି ବଳଦ ଗୋରୁ କଣା ବକାବେଳେ ପଞ୍ଚୁଆତ ବସେ । ତୁ ଅତି ବୁଧିଆଟା ପରା—ମୁରବି ଲୋକ ବ ଲୋଡ଼ିବୁ ନାହିଁ, ଫଳ ଭୋଗ ! ଜାଣୁ ବଳଦ କଣାର ବ ପଦଟିଏ ଅଛି ।"

"ଜାଣ ନ ଜାଣ, ଖାଡ଼ଆଶିଙ୍ଗା ସବୁଠାରୁ ଟାଣ,
ମୂଳା ଶିଙ୍ଗା କଣିବୁ ରସି, କାନ୍ଦିଥିବୁ ହିଡ଼ମୂଳରେ ବସି ?"

"ମୁଣ୍ଡ ଚେପଟା ଲାଞ୍ଜଟା ମୋଟା,
ମାହାଳିଆ ଦେଲେ ନ ନେବ୍ ସେଟା ।
ଗାଈ ପଗୁଡ଼ ବଳଦ ଆଗ,
ଦେଖି କଣିବ୍ ପାଇଲେ ବାଗ ।"

କଣ ବୋଇଲା ଜାଣୁ – ଗାଈ ପଛ ଟେିଡ଼ା ହେଲେ ଦୁହାଁଳୀ ହୁଏ । ଆଗଭାରିଆ ବଳଦ ଟାଣୁଆ ପଡ଼ନ୍ତି ।

ଶ୍ୟାମ ସାମଲ —ମୋ ଗୋସେଇଁଖିଆଟା ମୂଳାଶିଙ୍ଗା ଥିଲା । ଏକା ସତକୁ ସତ ସେ । ଯେମିତିକା ଠାପୁଆ ସିମିତିକା ଅଲସୁଆ । ଏଇ ଯେ କସରା ବାଆଁଟାକୁ ଦେଖୁଛ, ବଳଦଟାଏ ଏକା । ହଳବେଳେ ସଳଖ କରି ମୁଠିଟାକୁ ମାଡ଼ ବସିଥିଲେ ହେଲା—ଲାଞ୍ଜ ଛୁଇଁ ଦିଅ ତ ନାଆଁ ।

ବାରିକେ—ଏଁ – ହରିବୋଲ ! କେତେ ଦାମ ପଡ଼ିଲା ରେ ବାପା ?

ସାମଲ—ମୋଟା ବଳଦ ଆଉ ଛଅଟ ଚଢ଼ିଲା ଦଶ ଟଙ୍କା । ଘରେ ପଇସାଏ ନ ଥିଲା—ଷାଠିଏ ନଉତି ଧାନ ବକବାକୁ ହେଲା । ଘରେ ଖାଇବାକୁ ଚେତକ ଥିଲା, ସବୁ ହେଲା ଝାଡ଼ଝୁଡ଼ । ବଳଦ ତ କଣା ଗଲା, ହଁ ଘରେ ଖାଇବାକୁ ନାହିଁ । ସାଉଙ୍କ ନୂଆଗାଁ ଖମାରରୁ

ସ୍ବଳଣ ନଉନ୍ତ କରଜ ଆଣି ରଖିଲ । ମତେ ଯେ ଦୋଷ ଦେଲ, ଏଇଲାଗି ବଡ଼ୁଡ଼ା ମଠ ।

ବାରିକେ —ଏଁ—ହରିବୋଲ ! କଁ୍ୟାରେ ବାପା ଏତେ ବାଟ ଧାଇଁଲୁ ? ଠାକୁର ଗାଁ ଖମାରକୁ ଯାଇ ସାନ୍ତଙ୍କ ପାଞ୍ଜିଆକୁ କହିଥିଲେ ତ ସାଙ୍ଗେ ସାଙ୍ଗେ ମାପୁଣି ଧାନ ମାପି ଦେଇଥାନ୍ତା ।

ସାମଲ—ଏ—ବାବୁ ! ଆପଣ ଯେ ଉଦାରିଆ ପରି କଥା କହୁଛନ୍ତି ? ଗାଁରେ କଣ ଥିଲେ ନାହିଁ କି ? ସେ କାଳ ଚଖାଳକୁ ବାଘ ଖାଇଲାଣି ରେ ବାପା ! ମାଲ କାହିଁ ଯେ କରଜ ଆଣିବୁଁ ? ଟାଙ୍ଗଶାଳ ପରି ପୁଞ୍ଜାଏ ଅମାର ପାଟି ପଡ଼ୁ ଥାଏ—ସାନ୍ତଙ୍କର ଟାଣ ଆଜ୍ଞା—ପ୍ରଜାପୁଅ ଟୋକେଇ ଧରି ଗଲେ ତୁମ୍ଭ ବାହୁଡ଼ିବ ନାହିଁ । ଏବେ ଦେଖ ଯାଇ ସବୁ ଝାଡ଼ଝୁଡ଼—ଲକ୍ଷ୍ମୀ-ଭଣ୍ଡାର—ଶୂନଶାନ ! କଣ ନା—ସାତପୁରୁଷର ପାଞ୍ଜିଆ ଗୁଡ଼ାକ ଘର ଚୋର, ପ୍ରଜା ଗୁଡ଼ାକ ବେମାନ-ଧାନ କରଜ ଖାଇ ବୁଡ଼ାଇ ଦେବେ । ପ୍ରତ୍ୟକ୍ଷ ଗୋଟା-ଯାକ ମାମୁ ପରି, ହୁକୁମ କଲେ—ଭଣଜାମାନେ ପିଲା; ତାଙ୍କ ଟଙ୍କା ଭଲ କରି ସାଇତି ରଖାଯିବ । କଟକରୁ ବିଶ୍ୱାସୀ ପାଞ୍ଜିଆ ଆସିଲେ, ପୁରୁଣା ପାଞ୍ଜିଆ ଆଡ଼େଇ ଯାଅ । ଧାନ ସବୁ ବିକା ହେଲା, ଟଙ୍କାସବୁ ଥଳିରେ ଭର୍ତ୍ତି, ସବୁ କଟକରେ ଦାଖଲ ! ନୂଆ ଧାନ ବି ଖମାର ଛୁଇଁବ ନାହିଁ ଖଳାମୁଣ୍ଡରେ ବିକା - ଟଙ୍କା କଟକରେ ପେଠ ! ଭଲ ବାବୁ, ଆମେ ପ୍ରଜା ଗୁଡ଼ାକ ତ କାଉ—ସବୁ କଥାରେ ହେଉଁ ହାଉ ହାଉ—ଗୋଟାଏ ମାଚୁଛି ଦାଉ, ଶୁଣିଛୁ ଆପଣ ବେଳେ ବେଳେ ହୁଅନ୍ତି ଘାଉ ଘାଉ—ମୁଟଣ୍ଡିଏ କଣ କରୁଛନ୍ତି ଆଉ ।

ବାରିକେ ନିଶ୍ୱାସଟାଏ ନେଇ କହିଲେ—ଏଁ—'ହରିବୋଲ ! ବାପ ଶାମ, ତୁ ତ କବଟାଏ ପାଲଟି ଗଲୁଣି । ତୋ ଟାରେ କଥାଟା ସତ ଏକା, ଯୋଗାଟାଏ ଲୁଟି ପୁଟି ଖାଉଛୁ, ସମସ୍ତେ ଅନାଇ ବସିଛୁଁ, ତୁ ଆଜ ଜ୍ଞାନଟାଏ ଦେଲୁ । ଏଇ ସୂର୍ଯ୍ୟନାରାୟଣ ଠାକୁରେ ମୁଣ୍ଡ ଉପରେ, ଏଇ ଦେବତା ସାକ୍ଷୀ, ଆଜ କତିରୁ ଲାଗିଲ ଜାଣ ।

ସାମଲ—ବାବୁ, କଣ କହୁଛ, ଜୋକ ମୁଁହରେ ଲୁଣ ଦେଲା ପରି ରହିଲୁଣି, ଅମମାନଙ୍କର କି ଆଉ ପିଣ୍ଡରେ ପ୍ରାଣ ଅଛି ? ଲକ୍ଷ ପ୍ରଜାର ନିଶ୍ୱାସ ପଡ଼ୁଛି, ଧର୍ମ ଦେବତା ବି କାଲେଇ ଗଲେଣି । କଥା ପଦେ କହିବାକୁ ବି ଛୁଟି ପଡ଼ଉ ନାହିଁ । ଉଆସ ପରିଜନ ଗୁଡ଼ାକର ଠିଆ ଉପାସ, ଆମମାନଙ୍କୁ ଚିହ୍ନରେ କିଏ ? କାର୍ତ୍ତିକ ପହିଲା କିସ୍ତି ଟଙ୍କା ଯୁଗଳ କିଶୋର ମନ୍ଦିରରେ ଅସୁଲ ହୁଏ, ସେଥିରୁ ଗୃହପଣି ପ୍ରଭୁଙ୍କ ଗନ୍ଧାଘରକୁ ଯାଏ । ସାନ୍ତଙ୍କ ବିଯୋଗ ଦିନୁ ଠାକୁରେ ପଇସା କିସିଟାଏ ଦେଖିଲେଣି ନା ? ଲୋକେ ଆଉ ଠାକୁର ଦେବତା ମାନିବେ କିଁଆ ?

ଶାମ ସାମଲେ ତ କଥାରେ ଲାଗିଛନ୍ତି, ଆପଣା କଥା ମନରେ ନାହିଁ । ହରିବୋଲ ବାରିକଙ୍କର କଣ, କଥା ପଡ଼ୁଛି ତ ପାଣି ତଣ୍ଟିକରେ ହେଉ ଛୁଡ଼ାହୋଇ କଥାରେ ଲାଗିଥିବେ । ଶାମଙ୍କର ଏବେ ପେଟ ଘର ପେଡ଼ିଲାଣି, ଖଲସର ବାଟ ଖୋଜୁଛନ୍ତି ! ଗୋଟାଏ ମତଲବ ବାନ୍ଧିଲେ—'ଆରେ ଗୋସେଇଁଖିଆ । ନେ ଫନ୍ଦାରେ ପଡ଼ିଲେଣି ରେ ! ଖୁବ ପାଟିଟାଏ କରି ଡାକଟାଏ ଦେଲେ—ରହ ରହ ଗୋସେଇଁଖିଆ, ଆଜ ଦଶା ଘାଟରେ ବ୍ରାହ୍ମଣ ହାତରେ ତୁମ ଦାନ୍ତଙ୍କୁ ଟେକିଦେବ କହି ପାଣି ସଡ଼ ସଡ଼ ବହି ପଡ଼ୁଛି, ପାଞ୍ଚଣ ଖଣ୍ଡ ଧରି ଧାଇଁଲେ । ଗୋସେଇଁଖିଆକୁ ଦେଖୁଛୁ କିଏ, ଏକାବେଳକେ ଘାତଖିଆ ଜାଗାରେ ହାଜର ।

---

-୪୦-

## ଜଏଣ୍ଟ ମାଜିଷ୍ଟ୍ରେଟ ମିଷ୍ଟର ଜୋନ୍‌ସ୍ ସାହେବ

ବିଲାତ ଫେରନ୍ତା ଅନେକ ଲୋକଙ୍କ ମୁଖରୁ ଶୁଣାଯାଏ, ଇଂଲଣ୍ଡର ଶିକ୍ଷିତ ସମ୍ଭ୍ରାନ୍ତବଂଶୀୟ ଲୋକେ ଗୋଟିଏ ଗୋଟିଏ ଦେବତା । ଆମ୍ଭେମାନେ ମଧ୍ୟ ଏ ପ୍ରକାର ଅନେକ ଦେବଧର୍ମୀ ସିଭିଲିଆନ ଦେଖିଛୁ, ଅନେକଙ୍କର କୀର୍ତ୍ତି କାହାଣୀ ମଧ୍ୟ ସଚରାଚର ଶ୍ରୁତିଗୋଚର ହୋଇଥାଏ । ତେବେ ଭଲ ମନ୍ଦ ସବୁଆଡ଼େ । ଲୋକସ୍ୱଭାବାନଭିଜ୍ଞ ଶୀତଳ ଦେଶୀୟ ଗୋଟିଏ ନବଯୁବକ କଠିନ ପରୀକ୍ଷାରୁ ଉତ୍ତୀର୍ଣ୍ଣ ହୋଇ, ଉନ୍ନତିର ଆଶା ଭରସା ମନ ମଧ୍ୟରେ ପୋଷଣ ପୂର୍ବକ ବିଶାଳ ବାରିଧି ଅତିକ୍ରମ କରି ଜାହାଜରୁ ଅବତୀର୍ଣ୍ଣ ହେଲେ । ଭାରତର ଶୁଷ୍କ ଝଞ୍ଜା ବାୟୁରେ ଶରୀର ଉତ୍ତପ୍ତ, ପ୍ରବଳ ଆଧିପତ୍ୟ ପ୍ରଭାବରେ ଚିତ୍ତଶୃଙ୍ଖଳା ଉଚ୍ଛିନ୍ନ । ଠିକ ସେହି ସମୟରେ କୋଠିରେ ଏତଦ୍ଦେଶୀୟ ନିମ୍ନ ଶ୍ରେଣୀ ବବୁର୍ଚ୍ଚି ଖାନସମା ବେହେରାଙ୍କ ସହିତ ସର୍ବଦା ସହବାସ, ନିତ୍ୟ ପ୍ରୟୋଜନୀୟ ଦ୍ରବ୍ୟାଦି କ୍ରୟ ସମ୍ବନ୍ଧରେ ସେମାନଙ୍କ ସହାୟତା ପ୍ରୟୋଜନ, ପୁନଃ ପୁନଃ ପ୍ରତାରିତ ହେବା ଅସମ୍ଭବ ନୁହେ । ସେହି ଖାନସମାଦଳର ବ୍ୟବହାର ଗୁଣରେ ସାହେବଙ୍କ ତରଳ ମନ ତାଳ ହୋଇ ଗୋଟାଏ ରୂପ ପାଲଟିଯାଏ । ସେହି ରୂପଟାର ସହାୟତାରେ ଦୀର୍ଘକାଳ ପର୍ଯ୍ୟନ୍ତ ଭାରତୀୟ ସର୍ବସାଧାରଣ ଲୋକ ଚରିତ୍ର ପରିମାଣ କରି ବସନ୍ତି; ସେହି ସମୟରେ ଏ ଦେଶୀ ଲୋକମାନଙ୍କ ପ୍ରତି ସହାନୁଭୂତିର ବିରଳତା ଦୃଷ୍ଟ ହୁଏ । ମଧ୍ୟ ସେମାନଙ୍କ ସହିତ ତୀବ୍ର ବ୍ୟବହାର କରିବା ଉପଯୁକ୍ତ ବୋଲି ସ୍ଥିର କରି ବସନ୍ତି । ଆମ୍ଭମାନଙ୍କ ଜଏଣ୍ଟ ମାଜିଷ୍ଟ୍ରେଟ୍ ଡବଲିଉ ଜୋନସ୍ ସେହିପରି ଶ୍ରେଣୀର ଜଣେ ଲୋକ ବୋଲି ଅମଲାଲୋକେ କଳ୍ପନା କରିଥାନ୍ତି ।

ଡବଲିଉ ଜୋନସ୍ କଟକ ଜିଲ୍ଲାର ଜଏଣ୍ଟ ମାଜିଷ୍ଟ୍ରେଟ । ବୟସ ଅନୁମାନରେ ତିରିଶ ଅଧିକ ତିରିଶ ହେବ । ସାହେବଟି ମୁଫଲସ—ବୋଇଲେ ଅନ୍ତିଆଡ଼ା, କଡ଼ା ମିଜାଜର ହାକମ ବୋଲି ଅମଲା ଆଉ ଚପରାସିମାନେ ତାଙ୍କ ପାଖରେ ଶଙ୍କି ରହିଥାନ୍ତି । ମଇ ମାସ, ଦିପହରିଆ ବେଳ, ଭାରି ଗରମ । ସାହେବ କଚେରି କରୁଛନ୍ତି । ଲୋକ ଗହଳରେ ମିଜାଜ ଆହୁରି କିଛି ଗରମ ହୋଇଗଲା; ହଜୁରରୁ ହୁକୁମ ହେଲା--ଜୋରସେ ପଙ୍ଖା ଖେଁଚୋ । ଖୋଦା ବକ୍‌ସ ଚପରାସି ହୁକୁମଟା ଭଲ କରି ତାମିଲ କରିବା ପାଇଁ ଧାଇଁଗଲା, ଗଙ୍ଗା ବେହେରାକୁ ଧକାଟାଏ ମାରି ଅପେ ପଙ୍ଖା ରସି ଧରି କାମଟା ଶିଖାଇ ବସିଲା । ଦୁଇଥର ବଳରେ ଭିଡ଼ି ଦେଇଛି, ପଟ୍‌କରି ରସିଟା ଛିଡ଼ିଗଲା । ସାହେବ ଭାରି ଗୋସ୍‌ସା ହୋଇଗଲେ; ପେସ୍କାରକୁ ଅନାଇଁ "କସ୍‌ବାସ୍ତେ ରସିଭି ଟା ?" ପେସ୍କାର ଚଞ୍ଚଳ କହିଦେଲେ ହଜୁର ! ରସି ପୁରୁଣା । "ସାହେବ, ନନ୍‌ସେନ୍‌ସ୍, ସୋ ହାମ ଡେକ୍‌ଟାହେ—ବହୁତ୍ କସବାସ୍ତେ ପୁରୁଣା ?"

ପେସ୍କାର—ହଜୁର ନୟା ରସି ଦେନା ନାଜରକା କାମ—ଫି ବରଷମେ ମହିନାମେ ନୟା ହୋତା ହେ— ସବ୍ ମିସଲମେ ହୋଗେୟା, ଇହାଁ ବି ହୋଯାଗା ।

ସାହେବ - ବୋଲାଓ ବୋଲାଓ ନାଜରକୁ । ଚପରାସି ଧାଇଁଲା, କିନ୍ତୁ ନାଜର ବାବୁ ତେତେବେଳେ କଲ୍‌ଟର ସାହେବଙ୍କ କୋଠିରେ ଅଛନ୍ତି । ଚପରାସି ଫେରି ଆସି ଖବର ଦେଲା । ଇତ୍ୟବସରରେ ଖ୍ରୀସ୍ତିଆନ ଖୋଦାବକସ୍ ରସି ଗଣ୍ଠି ଗଳିଣ୍ଠି କରି କାମ ଚଳାଇ ଦେଲାଣି । ନାଜର ଉପରେ ସାହେବଙ୍କ ରୋଷ ଦେଖି ପେସ୍କାର ବାବୁ ଟିକିଏ ସନ୍ତୋଷ ଗଲେଣି । ଦୁଇଜଣଙ୍କ ଭିତରେ ବନିବନା ନାହିଁ ସତ, ହେଲେ ଜାତିଭାଇ, ଟାଙ୍କୁ ଗୁଣକରିଆ, ତାଙ୍କ ନାମଟା ସାହେବଙ୍କ ପାଖରେ କହିବା ଭଲ ହେଲା ନାହିଁ । ଅବଶ୍ୟ ସେ ହିଂସାରେ କହି ନାହାନ୍ତି, ସାହେବଙ୍କ ରାଗ ଦେଖି ଚଞ୍ଚଳ ସତ କଥା କହି ପକାଇଲେ ।

ଖୋଦା ବକସ୍ ଭାଇ ରହିମବକସ୍ ନାଜରଖାନାର ପିଆଦା—ନାନା କାରଣରୁ ନାଜର ବାବୁ ଉପରେ ରାଗ । ଭାଇ ପାଖରୁ କଚେରି ହାଲ ଶୁଣି ଭାରି ଖୁସିଟାଏ ହେଲା । ତହିଁଆର ଦିନ କଚେରି ବେଳ ଅଧଘଣ୍ଟା ଆଗରୁ କଚେରିକୁ ଆସିଲା । କଲମକଟା ଛୁରିଟାଏ ଧରି ସାହେବଙ୍କ ମିସଲ ପଞ୍ଝା ରସିଟା କାଟି ସଜଳ ସାଜଲ କରି ଦେଲା । ହଜୁର ଆସି ମିସଲରେ ବସିଛନ୍ତି, ଦୁଇ ତିନି ଥର ପଞ୍ଝା ଭିଡ଼ା ହୋଇଛି କି ନାହିଁ, ପୁନର୍ବାର ରସିର ଗତ କାଲିକାର ହାଲ ଉପସ୍ଥିତ । ନାଜରକୁ ଧରି ଆଣିବା ସକାଶେ ପିଆଦା ଧାଇଁଲେ; କିନ୍ତୁ ହେଲେ ସେ ଆସି ନାହାନ୍ତି । ସକାଳେ କଲଟରି ସାହେବ କୋଠିକୁ ଯିବାକୁ ମନେ, ବଳେ କଚେରିକୁ ଆସିବା ବେଳଟା କିଛି ମଠ ହୋଇଯାଏ । ସାହେବ କିଁଏ ଏତେ କଥା ତନଖି କରିବାକୁ ଯିବେ, ଠିକ କରି ନେଲେ, ଏଇଟା ନାଜରର ଗୋସ୍ତାକ । ଆପଣା ବାକ୍ସରୁ ଟଙ୍କାଟାଏ ପେସ୍କାର ବାବୁ ଉପରକୁ ଫୋପାଡ଼ ଦେଇ ତେଜରେ ହୁକୁମ କଲେ, "ଜଲଦି ରସି ଲଗାଓ ।" ଖୋଦାବକସ୍‌କୁ ରସି ହାଲ ଜଣା, ସରକାରି ଟଙ୍କାରେ ରସି କିଣା ହୋଇ ଆସି ନାଜର ଖାନାରେ ଜମା, ସବୁଆଡ଼େ ଲାଗୁଛି, କେଜାଣି ଏ ମିସଲରେ ଆଜି ଲାଗିଥାନ୍ତା, ଖୋଦାବକସ୍ ଚଟ୍ ଧାଇଁଯାଇ ପାଞ୍ଚ ମିନିଟ ମଧ୍ୟରେ ରସି କାମ ଠିକ କରି ଦେଲା—ସାହେବ ତାକୁ ଟିକିଏ ଚାହିଁଦେବାରୁ ଖୁବ୍ ମୁଣ୍ଡ ନୁଆଁଇ ସଲାମଟାଏ କଲା । ନାଜରର ଚଫଲତି ଆଉ ଖୋଦାବକସ୍‌ର ଚାଲାକି ଏକାବେଳକେ ହଜୁରରେ ପ୍ରକାଶ ପାଇଗଲା । ଅମଲାମାନେ ଅନ୍ତର୍ଯ୍ୟେ କଥାର ଅର୍ଥ ବୁଝିଗଲେ ।

---

-୪୧-

## ଶାଶୁଙ୍କ ଆଗମନ

ଆଜି ରବିବାର, କଚେରି ବନ୍ଦ । ହେଲେ କଣ ହେବ, ନାଜର ବାବୁଙ୍କ ହାତରେ କାମର ଭିଡ଼ ସବୁଦିନେ । ସାହେବ ମଫସଲ ଗସ୍ତରେ ଅଛନ୍ତି, ତାଙ୍କ ପାଖକୁ ଡାକ ପଠାଇବାକୁ ହେବ । ମହାଫିସଖାନାରେ ଆଠ ଗୋଟା ଆଲମାରି ଲୋଡ଼ା, ଗୁରିଜଣ ବଢ଼େଇ ହାଜର । ଆଲମାରି ଦାମ ତ ସରକାରି ବନ୍ଧା, କେବଳ ନାଜର ବାବୁଙ୍କ ରେଷମ ସକାଶେ ତିନିଘଣ୍ଟା କାଳ କଷାକଷି । ଶେଷରେ ବକ୍‌ସିବଜାରର ମଦନ ମହାରଣା ଟଙ୍କାରେ ସୋଳ ରେଷମ କବୁଲ କରି ବଇନା ଟଙ୍କା ରସିଦ ଦେଇ ଗୁଲିଗଲା । ଏ ସବୁ କାମ ଅଞ୍ଜାମ କରି ବସାକୁ ବାହୁଡ଼ିବାକୁ ରୋଜକାପରି ସଞ୍ଜ । ଜଳଖିଆ କରି ଭିତର ଅଗଣାରେ ଗୋଟିଏ ମାଞ୍ଚିଆ ଉପରେ ବସିଛନ୍ତି—ନାଜରାଣୀ ତଳେ ବସି ପାନଖିଲ ଭାଙ୍ଗିବାରେ ବ୍ୟସ୍ତ । ଚମ୍ପକଲା ଗୁଡ଼ାଖୁ ସାଜ ଆଣିଲା, ଭଲକରି ଚିଲମଟା ଫୁଙ୍କି ଦେଇ ବାବୁଙ୍କ ହାତକୁ ବଢ଼ାଇ ଦେଲା । ଆଜିକା କଚେରି ରୋଜଗାର ଆଲମାରି ବାବଦ ଦଶ ଟଙ୍କା ନାଜରାଣୀ ଏପାଏ ବାକ୍ସରେ ରଖିନାହାନ୍ତି, ଥାକ ହୋଇ ଆଗରେ ଥୁଆ ଅଛି— ସେହି ଟଙ୍କାରେ ନଜର ପଡ଼ିବାରୁ ଦୁଇଜଣଙ୍କ ମନରେ ଭାରି ଆନନ୍ଦ । ଚମ୍ପକଲା ଭୁହାକୁ ଭୁହା ଚିଲମଟା ବଦଳାଇ ପକାଉଛି । କିଛିକ୍ଷଣ ଉତ୍ତାରେ ନାଜର ବାବୁ ମାଳଝୁଲିଟା ତଲବ କଲେ, ଏଇଟା ବାହାରକୁ ବାହାରିବା ପୂର୍ବ ସଙ୍କେତ । ଝୁଲିଟା କାନ୍ଥରେ ବାଉଁଆ ଗୋଟାଏ ଲୁହାକଣ୍ଟାରେ ଟଙ୍ଗା ହୋଇଥାଏ - ବାହାରକୁ ବାହାରିବା ବେଳେ ହାତରେ ପୂରାଇ ବାହାରନ୍ତି । ନାଜରାଣୀ କହିଲେ, "ତୁମେ ତ ମନ୍ଦିରକୁ ବାହାରିଲ, ଦିନ ଓଳିଟା ସଅଟ ବଟାରେ ଚାଲିଗଲା, ରାତି ଓଳିଟା କଣ କରାଯିବ ? ଆଗ କଥା ତ ନୁହେଁ, ଭଣଜା ବାବୁ ଅଛି, ତାହାର ବୁଢ଼ିକରିଟା ବି ଅଛି, ସେମାନଙ୍କର ଚିନ୍ତା କଣ ଊଣା ଚିନ୍ତା ?" ନାଜର ବାବୁ କହିଲେ, "ସତ – ସତ, ଆଚ୍ଛା --ଆଚ୍ଛା ମୁଁ ଯାଉଛି, ପିଆଦା ପଠାଇ ଜଣେ

ବେଂଷଯ୍ୟା ବ୍ରାହ୍ମଣ ଖୋଜାଇବ, ନୋହିଲେ ରାମ ପାଣ୍ଡେ ପିଆଦା ଗଡ ଓଳଟା ଚଳାଇ ନେବ, କାଲକା କଥା ତ ଅଛି ।"

ନାଜରାଣୀ କହିଲେ, "ଦେଖ, ବ୍ରାହ୍ମଣଗୁଡ଼ାଙ୍କୁ ଆଉ ପାରିବ ନାହିଁ, ତିନ ଓଳି ତିନି ପେଟ ଖାଇବେ, ତାହା ଉପରେ ଚୋରି । ପୁଣି ମାସ ପୂରିଲା କି ନାହିଁ— ଦିଅ ଦରମା । ଦରମା ଦେବାକୁ ଦଶ ପନ୍ଦର ଦିନ ମଠ ହୋଇଗଲା ତ ପଳାଇ ଯିବେ । ଦେଖୁ ନାହିଁ, ଦୁଇ ମାସରୁ ଅଧିକ କେହି ଗୋଟାଏ ରହିବାକୁ ନାହିଁ । ମୁଁ ବି ସେମାନଙ୍କ ଗୁଣ ଜାଣି ଦରମା ଦିଏ ନାହିଁ ।" ଚମ୍ପା କହିଲା "ହଁ—ହଁ, ସତ ସତ, ବ୍ରାହ୍ମଣଗୁଡ଼ାକ ଡେର ଖାନ୍ତି—ଓଳିକେ ଦି ସେର ଚାଉଳ କାହିଁ ଫୁଙ୍କି ଦେବେ । ଆଉ ମୁଁ କଟକରେ ଯେତେ ବେଷେଯ୍ୟା ବ୍ରାହ୍ମଣ ଦେଖିଲି, ସବୁଗୁଡ଼ାକ ଚୋର, ସେଇଗୁଡ଼ାକ ତ ଡାକୁ, ମଣିଷ ମାରନ୍ତି । ସେମାନେ ଦରମା ମାଗିଲେ ସାନ୍ତାଣୀ ତାଙ୍କୁ ଚଡ଼ ଦିଅନ୍ତି, ଆଜ୍ଞା କରନ୍ତି—ଲୁହା ଜାଣି ପାଣିଦିଅନ୍ତି । ଖାଇଲ ପିଇଲ, ଫେର ଦରମା କଣରେ ବ୍ରାହ୍ମଣ ? ନାହିଁ ନାହିଁ ସେମାନଙ୍କୁ ଦରମା କେଭେ ଦେବେ ନାହିଁ ।"

ନାଜରାଣୀ—ଯାହା ବୋଲ, ବ୍ରାହ୍ମଣଗୁଡ଼ାଙ୍କୁ ମୁଁ ଆଉ ପାରିବ ନାହିଁ, ସେମାନେ ମତେ ବଡ଼ ହଇରାଣ କଲେଣି ।

ଚମ୍ପା—ରାମ ରାମ—ରାମ ! ହଇରାଣ ବୋଲି ହଇରାଣ—ସାନ୍ତାଣୀ ତ ସେଇ ହଇରାଣ ସହି ନ ପାରି କାନ୍ଦ ପକାନ୍ତି—ତାଙ୍କ କାନ୍ଦଣା ଦେଖି ମୋ ପ୍ରାଣକୁ ବଡ଼ ବାଧେ, ସହି ପାରେ ନାହିଁ, ଘରରୁ ପଳାଇ ଯାଇ ଘଡ଼ିଏ ବସି କାନ୍ଦେ ।

ନାଜରାଣୀ—ମୁଁ କହୁଥିଲି, ବୋଉକୁ ଆଣିଲେ ଭଲ ହୁଅନ୍ତା ନାହିଁ ?

ଚମ୍ପା—ଖୁବ୍ ଭଲ ହେବ—ଆଜ୍ଞା ହେବ । ଆଜକୁ ଆଠ ଦିନ ହେଲା ସେଇ କଥାଟା କହିବ କହିବ ପାଞ୍ଚୁଲଣି, ଭୁଲି ଯାଇଥିଲି !

ନାଜରାଣୀ—ବୋଉ ଆଉ ମୁଁ ଦୁଇଜଣ ମିଳିମିଶି ରାନ୍ଧିବା, କିଛି ଦରକାର ହେବ ନାହିଁ । ଆଉ ଖର୍ଚ୍ଚ କେତେ ଊଣା, ସେ କଥାଟା ବି ବୁଝ । ବୋଉ ସିନା ମୁଠାଏ ଖାଇବ, ଖଣ୍ଡେ ପିନ୍ଧିବ, ଦରମା ତ ଦେବାକୁ ପଡ଼ିବ ନାହିଁ ।

ଚମ୍ପା—ମା ବୁଢ଼ୀଟା ଖାଇବେ କଣ ମ ? ମୁଠାଏ ଖାଇ ଦେଲେ ତ ଗଲା ଗୃହଦିନ ବାହାର । ଆଉ ଲୁଗା କଣ, ଖଣ୍ଡେ ଲୁଗା ଦେଲେ ଗୃହ ପାଞ୍ଚ ବରଷ କଥା ଛିଡ଼ିଲା । ଏଣେ ଦରମା ବଡ଼ଟା ଧର ନା । ମାସକୁ ମାସ ମୁଠାକୁ ମୁଠା ଟଙ୍କା ରହିଯିବ ।

ନାଜରାଣୀ—ବୋଉ ମନ ଦେଇ ପାଞ୍ଚ ଚଜ ରାନ୍ଧିବ । ପୁଅ ସାରବେ—ଦରବ ବସିବ । ଗୃହକର-ବାକର କଥା ବୋଲ, ଯିମିତି ସିମିତି ଗୃହଟା ସିଝାସିଝି କରିଦେଇ ଦରମାଟା ନେଲେ ତାଙ୍କର ପାଇଟି ଛିଡ଼ିଲା ।

ଚମ୍ପା—ମା ଯିମିତିକା ରାନ୍ଧିବେ, କଟକ ସହରରେ ଯେତେ ବ୍ରାହ୍ମଣ ଅଛନ୍ତି, ତାଙ୍କ ଆଗରେ ଆଗେ ମୁହଁ ଦେଇ ପାରିବେ ? ତାଙ୍କ ପରି ପରଷି ଜାଣିବ କିଏ ? ଉହୁଁ, ସେ ରାନ୍ଧ ବାଢ଼ି ବୁଢ଼ୀ—ସେ ଜଣେ, ପୁଣି ତାଙ୍କ ପାଖକୁ ଆଉ ଜଣେ ?

ନାଜର ବାବୁ ବସି ବସି ସବୁ କଥା ଶୁଣି ଯାଉଥିଲେ—ଏବେ ମନରେ ଠିକ କରିନେଲେ, ହେଉ ବୋବେ ଆସନ୍ତୁ । ଆଜି ଭାତ ନାହିଁ, କାଲି ଲୁଗା ନାହିଁ, ଖଜଣା ଲାଗି ଜମିଦାର ପାଇକ ଦୁଆରେ ବସିଛି, ସବୁ ତ ଚଳାଇବାକୁ ହେଉଛି । ଏ ବି ଲୁଗ୍ଣ ବେଗରେ କିଛି କିଛି ଚଳାଚଳ କରନ୍ତି । ହେଉ ଆସନ୍ତୁ, ଏକା

ଖରଚରେ ଯିବ । ହେଲେ ରାଘବାଟା ନ ଆସୁ, ଅସୁର ପରି ମଣିଷଟାଏ, ଦିନକେ ଦୁଇ ସେର ଠୁଙ୍କିବ, ତୁଙ୍କାଟାରେ ଏ ଖର୍ଚ୍ଚ କ୍ୟାଁ ଦେବୁଁ ? ପ୍ରକାଶ୍ୟରେ କହିଲେ, "ହେଉ ବୋଉ ଆସନ୍ତୁ, ରାଘବ ମାହାଲିଆଟା କ୍ୟାଁ ଆସିବ ?"

ଚମ୍ପା—ହିଁ—ହିଁ, ମା ଅବଶ୍ୟ ଆସିବେ । ନାହିଁ, ନାହିଁ, ରାଘୋ ଭାଇ ସାନ୍ତ ଆସିବେ ନାହିଁ—ସେଠି ସମ୍ଭାଳିବ କିଏ ? ଘରର ଟିହ୍ନର ସବୁ ଧେନ ପଳାଇବେ । ପିଁଡ଼ାରେ ହନୁ ଡେଇଁ ଚାଳ ଭାଙ୍ଗି ପକାଇବେ, ଦଉଡ଼ିବ କିଏ ?

ନାଜରାଣୀ—ନାହିଁ ନାହିଁ, ବୋଉ ଆସିଲେ ସେ ପିଲାଟା ଏକୁଟିଆ କିମିତି ରହିବ ? ତାକୁ ଭାତ ତିଅଣଟା ରାନ୍ଧିଦେବ କିଏ ?

ଚମ୍ପା—ହିଁ—ହିଁ, ସତ—ସତ, ଭାଇସାନ୍ତେ ନ ଆସିବେ ? ପିଲାଲୋକ, ଏକୁଟିଆ ଡରିବେ । ଆଜି ସବୁ ବାଡ଼େ, ଭାତ ତିଅଣଟା ରାନ୍ଧି ଦେଉଛି କିଏ ?

ନାଜର ବିଚାର କଲେ - ନ ଆଣିଲେ ତ ନୁହେଁ, କଣ ସେଟା ବସି ବସି ଖାଇବ ? କିଛି ଗୋଟାଏ କାମରେ ଲଗାଇ ଦେବି । ପ୍ରକାଶ କରି କହିଲେ, "ହେଉ ତେବେ ଆସନ୍ତୁ, ଦୁହେଁ ଆସନ୍ତୁ ।"

ଚମ୍ପା—ସାନ୍ତ, ମୁଁ କହୁଛି, ଚଞ୍ଚଳ ଲୋକ ପଠାଉନ୍ତୁ —ଆଜି ରାତିବିରାତି ଧାଉଡ଼ିଆ ଯାଉନ୍ତୁ ।

ନାଜର ବାବୁ ଟିକିଏ ହସି ତୁନି ହେଲେ । ଆସନ୍ତା ବୁଧବାରେ ସେମାନଙ୍କୁ ଆଣିବା ସକାଶେ ଲୋକ ଯିବାର ସ୍ଥିର ହେଲା ।

———

-୪୨-

## ମାତା ପୁତ୍ରଙ୍କ ଆଗମନ

ବୋଉଙ୍କୁ ଆଣିଯିବା ପ୍ରସ୍ତାବର ଚତୁର୍ଥ ଦିନ ସଞ୍ଜବେଳେ ଖଣ୍ଡିଏ ତାଳପାଟି ଛପର ଶଗଡ଼ ଖଣ୍ଡେ କନା ଆଗ ମୁହଁରେ ପର୍ଦା ପରି ଝୁଲୁଛି, ନାଜର ବାବୁଙ୍କ ବାହାରବାଦ ବସା ଦୁଆର ଆଗରେ ଆସି ଛିଡ଼ା ହେଲା । ନାଜରଖାନାର ଜଣେ ପିଆଦା ଶଗଡ଼ର ଆଗେ ଆଗେ ଚାଲିଆସୁଥିଲା, କହିଲା "ଫିଟା, ଏଇଠି ଫିଟା ।" ଶଗଡ଼ିଆ ଜୁଆଳିରୁ ବଳଦ ଯୋଡ଼ାକ ଫିଟାଇ ନେଇ ଶଗଡ଼ର ଲଙ୍ଗି ଦଣ୍ଡାରେ ବାନ୍ଧିଦେଲା—ଶଗଡ଼ ଜୁଆଳିଟା ଦୁଆର ଚୌକାଠକୁ ଭିଡ଼ାଇ ଦେଇ ବଳଦ ପାଖକୁ ଚାଲିଗଲା । ପିଆଦା ଆଉ ଆଉ ଯେଉଁ ଲୋକମାନେ ଥିଲେ, ବାହାରକୁ ଆଡ଼େଇ ଗଲେ । ଚମ୍ପା ଦୀପଟିଏ ଧରି ଆଗେ ଆଗେ ଚାଲିଥାଏ; ନାଜରାଣୀ ପଛେ ପଛେ ଚାଲୁଛନ୍ତି, ଶଗଡ଼ ପାଖରେ ପହଞ୍ଚି ପରଦା କନାଟିକୁ ଭିଡ଼ ଦେଲେ, ଆ—ବୋ'ଉ—ଆ—କହି ବୁଢ଼ୀଟିର ହାତ ଧରି ଧରି ଶଗଡ଼ ଭିତରୁ ଓହ୍ଲାଇ ନେଲେ । ଚମ୍ପା ଦୀପଟି ଧରି ଆଗେ ଆଗେ ଚାଲିଲା । ବାରନ୍ଦାଏ ବାରନ୍ଦାଏ ସମସ୍ତେ ଭିତରକୁ ଗଲେ । ଆଣ୍ଠୁ ଲୁଚୁ ଲୁଗା ଖଣ୍ଡେ ପିନ୍ଧା, ମୁଣ୍ଡରେ ଖଣ୍ଡିଏ ମଳିଆ ଗାମୁଛା ଗୁଡ଼ିଆ—ହାତରେ ଗଜିଏ ଲମ୍ବ ବାଉଁଶ ବାଡ଼ି ଖଣ୍ଡେ ଧରି ଗୋଟାଏ ଡେଙ୍ଗା ଡେଣ୍ଡିଆ ଅନ୍ଧକାରରେ ମିଶି ଶଗଡ଼ ପାଖ କିଛି ଦୂରରେ ଛିଡ଼ା ହୋଇଥିଲା । ମାଇକିନିଆ ଦଳ ଭିତରକୁ ପଶିଗଲା ବାଦେ ସେହି ଛିଡ଼ା ହୋଇଥିବା ପୁରୁଷଟି ଧୀରେ ଧୀରେ ଆସି ଅନ୍ଧାରିଆ ଶଗଡ଼ ଭିତରୁ ଅଣ୍ଡାଳି ଗୋଟାଏ ଟୋକେଇ ବାହାର କଲା । ସେ ଟୋକେଇଟି କେତେ ରକମ ଜିନିଷରେ ପୂର୍ଣ୍ଣ । ବାଁ କାନ୍ଧରେ ସେହି ଟୋକେଇଟା କାନ୍ଧେଇ ଡାହାଣ ହାତରେ ବାଡ଼ିଖଣ୍ଡ ଧରି ଘର ଭିତରକୁ ଚାଲିଲା । ଭିତରକୁ ବାରନ୍ଦାଏ ବାରନ୍ଦାଏ ବୁଲି ଯିବାର ବାଟ । ନୂଆ ଲୋକଟିକୁ ତ

ତାହା ଅଜଣା । ବାହାର ଅଗଣାରେ ଘିଟି ଘିଟିଆ ଅନ୍ଧାର—ଶଶୀ ଆଲୁଅଟା ଧରି ଚାଲିଗଲଣି । ନୂଆଲୋକଟି ଦୁଆରବନ୍ଧ ଡେଇଁ ସଳଖେ ସଳଖେ ଚାଲିଛି । ମନରେ ଭାରି ଆନନ୍ଦ, ଏଇଟା ଅପାଘର, କେଡ଼େ କୋଠା ଘରଟାଏ । ଏହି କୋଠାରେ ରହିବାକୁ ମିଳିବ । ତଳ ବାଟକୁ ନଜର ନାହିଁ—ଉପରକୁ ଅନାଇ କୋଠାଘର ଦେଖୁଛି ଆଉ ଚାଲୁଛି । ଏଣେ ଘରର ଚାରିପାଖେ ବାରଣ୍ଡା, ମଝିରେ ଅଗଣା । ସେହି ଅଗଣାଟା ବାରଣ୍ଡାଠାରୁ ହାତେ ଗଭୀର । ଲୋକଟି ଯେମିତି ଗୋଡ଼ ପକାଇଛି—ମୂଳକଟା ତଳେ ଲଗିଛି ପରି ଏକାବେଳକେ ଦୁଲ କରି ପଡ଼ିଗଲା । ଠଣ୍—ଠଣ୍—ଠଣ୍—ଝଣ୍—ଝଣ୍—ଝଣ୍— ଶବ୍ଦ କରି ଟୋକେଇ ଭିତରୁ ଜିନିସଗୁଡ଼ାକ ଅଗଣାଗୋଟା-ଯାକ ବୁଣି ହେଲା । ଲୋକଟିର ସେତେବେଳକର ଅବସ୍ଥା କହିଲେ ନ ସରେ । ଚଞ୍ଚଳ ଉଠିବସି ଦୁଇ ଜଙ୍ଘ ଅଣ୍ଟୁ ଅଉଁସି ହେଉଛି । ବନ୍ଧୁ ବାସ ଘର-ଯେତେହେଲେ ହାକିମ ଘର, ନୂଆ ମଣିଷ, ଲାଜରେ—ବେଶି ଭାଗ ଉପରେ ପାଟିକରି କାନ୍ଦି ପାରୁ ନାହିଁ । ହାୟ ହାୟ ମନୁଷ୍ୟର ଜୀବନ କି ଶୋଚମୟ—ଦୁଃଖ ଗୁଡ଼ାକ ଯେମିତି ତା ପଛେ ପଛେ ଲାଗି ରହିଛି । ମନ ମଧ୍ୟରେ କେତେ ଆଶାଭରସା ପୋଷିଥିଲା - କେଡ଼େ ଆନନ୍ଦ—ଆଖି ପିଛୁଡ଼ାରେ ସବୁ କାହିଁ ଗଲା—ପୁଣି ଦାରୁଣ ଦୁଃଖ ଉପସ୍ଥିତ । ଦୁଃଖ ଗୁଡ଼ାକ ଯେମିତି ମନୁଷ୍ୟ ପଛେ ପଛେ ସବୁବେଳେ ଗୋଡ଼ାଇଛନ୍ତି । ଟିକିଏ ବେଳ ପାଇଲେ ବାଘ ଶିକାର ଉପରେ ଝାମ୍ପି ପଡ଼ିଲା ପରି ମାଡ଼ି ବସିବେ । କର୍ମବାଦୀ କହିବେ, ସେ ଲୋକଟା ବାରଣ୍ଡା ବାଟେ ବୁଲିଲେ ନାହିଁ କିଆଁ ? ଏଇଟା କର୍ମଫଳ । ହେଲେ, ଆମ୍ଭମାନଙ୍କର ବିଶ୍ୱାସ-କୃତକର୍ମ ଛାଡ଼ି ମନୁଷ୍ୟମାନଙ୍କର ଶୁଭାଶୁଭଦାତା ଆଉ ଗୋଟିଏ ହସ୍ତ ସେମାନଙ୍କ ଭାଗ୍ୟର ଅନ୍ତରାଳରେ ନିୟତ ବିଦ୍ୟମାନ ଅଛି । ସହଜ କଥାରେ ତାହାକୁ ଅଦୃଷ୍ଟ ବୋଲିଯାଏ । ଅର୍ଥ କଣ କି, ଲୋକେ ତାକୁ ଦେଖି ପାରନ୍ତି ନାହିଁ । ବୁଝନ୍ତୁ ନଳ ବା ଯୁଧିଷ୍ଠିର ଜାଣୁ ଜାଣୁ ପଶା ଖେଳି ବନକୁ ଗଲେ । ଶ୍ରୀ ରାମଚନ୍ଦ୍ର କି ନିଜେ କୌଣସି ଦୋଷ କରି ନାହାନ୍ତି । ଏଥିକୁ ଜାଣ, ଏକ ଅଲକ୍ଷ୍ୟ ବିଧାତା ପୁରୁଷଙ୍କ ପ୍ରେରଣାରେ ଅଲକ୍ଷ୍ୟ ସୂତ୍ରଧର ଏମନ୍ତ ଅନେକ ସୁଖ ଦୁଃଖ ଆସେ, ଯାହା ନିବାରଣ କରିବା ମାନବ ପକ୍ଷରେ ସାଧ୍ୟାତୀତ ବିଷୟ ଅଟେ ।

ଠଣ୍—ଠଣ୍—ଝଣ୍—ଝଣ୍ ଶବ୍ଦଟା ଭିତରୁ ଶୁଣିଲା ଶଶିକଳା । ଆହା ! ଭାଇସାନ୍ତ ପଡ଼ିଗଲେ ପରି, କହି ଘିପଟା ଧରି ଧାଇଁଲା । ଆସି ଦେଖିଲା କଣ ନା—ଜିନିସ ଗୁଡ଼ାକ ଅଗଣା ଯାକ ବୁଣିପଡ଼ିଛି—ଲୋକଟାଏ କାଳିଆ ଉଇହୁଙ୍କାଟା ପରି ବସି ଦୁଇ ଆଣ୍ଠୁରେ ହାତ ବୁଲାଉଛି । ବୁଦ୍ଧିମତୀ ଶଶିକଳା ଅନାଇ ଦେଇ କଥାଟା ବୁଝିଗଲା । ମନ ମଧ୍ୟରେ ଖୁବ୍ ଗୋଟାଏ ହସ ହସି କହିଲା, 'ଏଇଟା ଅଛି ନା କଣ ।' ପ୍ରକାଶ୍ୟରେ ଗୁହନିଆ ହୋଇଗଲା ପରି ଆକୁଳ ହୋଇ କହିଲା, "ଆହା ! ଆହା ! ଭାଇସାନ୍ତ, କମିତି ପଡ଼ିଗଲ ? ମୁଁ ତ ଆଲୁଅ ଧରି ଧାଇଁଛି— ଟିକିଏ ଅପେକ୍ଷା ଧଇଲ ନାହିଁ ।" ଭାଇ ସାନ୍ତଙ୍କ ହାତ ଧରି ଛିଡ଼ା କରାଇ ଦେଲା । ଲଜ୍ଜାରେ ଦୁଃଖରେ ଦେହଯନ୍ତ୍ରଣାରେ ଭାଇସାନ୍ତ ଗୋଟା ଝାଳରେ ଗାଧୋଇ ଗଲେଣି । ଶଶୀ ହାତକୁ ଚଟ ଚଟ ଲାଗିବାରୁ ଘୃଣାରେ ହାତଟା କାଢ଼ି ନେଇ ଅଗଣାରେ ବୁଣି ପଡ଼ିଥିବା ଜିନିସଗୁଡ଼ାକ ଗୋଟାଇ ବସିଲା । ଦୁଷ୍ଟାଟା ପରଖି ଯାଉଥାଏ, ଜିନିସ ଗୁଡ଼ାକ କଣ । ଏଇଟା ତ ଲୁଗା ପୁଟୁଳା—ଖଣ୍ଡେ ଦୁଇ ଲୁଗା ହେବ । ଏଇଟା ଚାଉଳ ପୁଡ଼ିଆ—କଣ୍ଠି ଦେଖିଲା ଓଜନରେ ଅନ୍ଦାଜ ଦୁଇ ସେର ହେବ । ସାନ ପୁଡ଼ିଆଟା ବିରି କି ମୁଗ—ଚିପି ଚିପି ଠିକ କରି ପାରିଲା ନାହିଁ । ଓହୋ ! ଏ ସାନପୁଟୁଳା ତ ଦୁଇ ମୁଠା ଅନ୍ଦାଜ ସୋରିଷ । ଶଶୀ ମନ ମଧ୍ୟରେ ଖୁବ ଗୋଟାଏ ହସି ହସି କହିଲା, "ହୁଁ—ହୁଁ, ଘରକରଣା ସବୁ ଜିନିସଗୁଡ଼ାକ ଧରି ବାହାର

ଆସିଲେ, କିଛି ଗୁଡ଼ ଅସି ନାହାନ୍ତି । ଗଡ଼ ଗଡ଼ ଯାଇ ପାଞ୍ଚହାତ ଦୂରରେ କୋଣଟା ପଡ଼ିଥିଲା—ଚମ୍ପା ଉଠାଇ ଦେଖିଲା, ସେଥିରେ ଝୁଣାର ଗୋଟାଏ ଗେବ ବସିଛି । ଚମ୍ପା ଠିକ୍ କରି ନେଲା, ଏଇଟା କଣ ବୁଝିବା ଉପାୟ ? ପକ୍କା ଭୂଇଁରେ ଦେଢ଼ ଭରି ଗୋଟାଏ ଟୋଲ ହୋଇ ଗଲାଣି । ଏଇଟା କଣ ? ଚୋରାଣି ପିଆ କଂସା ହେବ—ହାତକୁ ଚଟର ଚଟର ଲାଗୁଛି—କଂସା କଣ ଏଡ଼େ ପାତଳ, ଏଡ଼େ ବିଶ୍ୱାସ ହୁଏ ? ମଲା ଯା ! ଏ ଖଣ୍ଡି ଯେ ପକାରେ ଗୁରି ଗୁଙ୍ଗୁଲା ହୋଇ ଫାଟି ଗଲାଣି ! ହେ ଚମ୍ପକଲେ ! ଟିକିଏ ତୁନି ହୁଅ, ଭାଇ ସାନ୍ତେ ଦେହ ଯନ୍ତ୍ରଣାରେ ଅସ୍ଥିର, ତହିଁଉପରେ ସର୍ବସ୍ୱନାଶର ସମ୍ବାଦ ଶୁଣାଇଲେ ତାଙ୍କର ଦଶା କଣ ଘଟିବ ? ଚମ୍ପକଲା ଜିନିଷଗୁଡ଼ାକ ପାଚିଆରେ ପୂରାଇ ପାପଟା ଧରି ଆଗେ ଆଗେ ଚାଲିଲା, ଭାଇ ସାନ୍ତ ପଛେ ପଛେ ଚାଲିଛନ୍ତି । ବାହାରରେ ଯେ ଏତେ କାଣ୍ଡ, ମା ଝିଅଙ୍କୁ କିଛି ଜଣା ପଡ଼ୁନାହିଁ, କନ୍ଦାକଟାରେ ଲାଗିଛନ୍ତି । ଝିଅ ଭିତର ଅଗଣା ମଝିରେ ଖୁମ୍ବଟି ଧରି ଛିଡ଼ା ହୋଇ ହେ—ହେ ଡାକ ପାରୁଛନ୍ତି । ଦୀର୍ଘ ବିଚ୍ଛେଦ ଉତ୍ତାରେ ମିଳନ ସମୟରେ ହୃଦୟରେ କେମନ୍ତ ଗୋଟାଏ ଆନନ୍ଦ ଉଚ୍ଛୁଳି ଉଠେ—ବିଚ୍ଛେଦ ଅନଳରେ ମିଳନ ଜଳପାତ ଯୋଗେ ହୃଦୟରୁ ଯେଉଁ ଗୋଟାଏ ବାଷ୍ପ ବାହାରେ, ସେଇଟା ଜଳରୂପେ ପରିଣତ ହୋଇ ନେତ୍ର ଯୁଗଳ ମାର୍ଗରେ ଅଶ୍ରୁ ରୂପରେ ବହିପଡ଼େ । ବୋଉ ତ ଝିଅକୁ କୁଣ୍ଢାଇ ପକାଇ ଭୁହାକୁ ଭୁହା ବାହୁନି ଯାଉଛନ୍ତି । ଆରେ ମୋ ବୋହୂ ରେ ! ତୋ ଚନ୍ଦ୍ରମୁଖ ନ ଦେଖି ମୁଁ ଅନ୍ଧୁଣୀ ହୋଇ ଯାଇଥିଲି—ଆରେ ମୋ କଳାମାଣିକରେ ଚନ୍ଦ୍ରବଦନ—ଆନ୍ଧାର ଆଲୁଅ—ଦୁଃଖପଶୋରି—ଏହିପରି ଢେର ଢେର ବିଶେଷଣ ଦେଇ ଢେର ବେଳଯାଏଁ ବାହୁନିଲେ । ପାଠକ ମହାଶୟ ଅନୁମାନରେ ବୁଝି ଯାଉନ୍ତୁ, ସବୁ-ଗୁଡ଼ାକ ଲେଖିବାର ଦରକାର ନାହିଁ । ଗୋଟାଏ କଥା ଏତେଦିନ ଉତ୍ତାରେ ଜଣା ପଡ଼ିଲା । ନାଜର ଗୃହିଣୀଙ୍କ ନାମ ବିଷ୍ଣୀ କଣ କି ବୋଉ ସିନା ଗେହ୍ଲାରେ ବିଷ୍ଣୀ ବୋଲି ଡାକନ୍ତି, ସନ୍ଧାନଦ୍ୱାରା ଜଣା ପଡ଼ିଲା, ଅସଲ ନାମ ହେଉଛି ବିଶାଖା । ଆମ୍ଭେମାନେ ଏତେ ଦିନଯାଏଁ ନାଜରାଣୀ - ସାଆନ୍ତାଣୀ ବାରମ୍ବାର ଲେଖି ପାଠକ ମହାଶୟଙ୍କୁ ବିରକ୍ତ କରିଅଛୁଁ—ଜଣା ନ ଥିଲା, କଣ କରିବୁ ? ଏଡ଼େ ଘର ସାନ୍ତାଣୀ ନାମ କଣ ଦାଣ୍ଡରେ ପଡ଼ିଛି ଯେ ଲେଖି ପକାଇଲେ ହେଲା ? ଏହି ଯେ ବୋଉଙ୍କ ଶୁଭାଗମନ ଲେଖକ ପକ୍ଷରେ ଗୋଟିଏ ସୌଭାଗ୍ୟର ବିଷୟ ଅଟେ ।

ବୋଉଙ୍କ ଗୋଡ଼ଧୁଆ ନିମନ୍ତେ ଚମ୍ପକଲା ଲୋଟାଏ ଜଳ ଧରି ଛିଡ଼ା ହୋଇଛି । ମା ଝିଅ ତ କାନ୍ଦିବାରେ ଲାଗିଛନ୍ତି । ଚମ୍ପକଲା ମନମଧ୍ୟରେ ଭାରି ବିକଳ ହେଲାଣି । ମାଇକିନିଆ ଗୁଡ଼ାକ କଣ ରାତିଯାକ ଛିଡ଼ା ହୋଇ କାନ୍ଦୁଥିବେ । କହିଲା, "ଆସନ୍ତୁ ଆସନ୍ତୁ, ବୋଉ ସାନ୍ତାଣି ! ଦିନଯାକ ଶଗଡ଼ରେ ବସି ବସି ଶ୍ରୀଅଙ୍ଗକୁ ବାଧୁଥିବ । ଆସନ୍ତୁ, ପଦ ପଖାଳ କରନ୍ତୁ" କହି ହାତ ଧରି କାଢ଼ି ନେଇ ନଳାମୁହଁ ପାଖରେ ବସାଇ ଦେଲା, ପାଣି ଢାଳି ଗୋଡ଼ ଧୋଇ ଦେଲା—ଅବଡ଼ା ଖାବଡ଼ା ଗୋଡ଼ ତଳିଟା ହାତକୁ ଝାମ୍ପାପରି ବାଜିବାରୁ ନାକଟା କମିଡ଼ିକା ମାରୁଥାଏ । ବୋଉ ସାନ୍ତାଣୀଙ୍କ ଉତ୍ତାରେ ଭାଇ ସାନ୍ତ ଉପସ୍ଥିତ—ଚମ୍ପା ଥରେ ତାଙ୍କ ପଦରେ ହାତ ବୁଲାଇ ନାକପୁଡ଼ା ଯୋଡ଼ାକ ଫୁଲାଇ ଦେଲା । ହାତଟା କାଢ଼ିନେଇ ପାଦରେ ପାଣି ଢାଳୁଥାଏ । ଦେଖିଲା, ଗୋଡ଼ ପାପୁଲିଟା ଭାରି ଚଉଡ଼ା ବୁଢେଇ ଦଉଡ଼ା ପରି ଶିରଗୁଡ଼ାକ ଛିଡ଼ା ହୋଇଛି, ଆଙ୍ଗୁଳି ଗୁଡ଼ାକ ଫାଙ୍ଗୁଲା ଫାଙ୍ଗୁଲା । ଅଗଗୁଡ଼ାକ ଚେପଟା ଚେପଟା, କେଉଁ କାଳରୁ ନହୁଣି ଛୁଇଁ ନାହିଁ—ଅଗଗୁଡ଼ାକ ଦା ଦାନ୍ତ ପରି; ଗୋଇଠି ଫାଟରେ ଆଙ୍ଗୁଳି ପଶିଯିବ ।

ପଦ ଧୌତ ହେଲା ଉତ୍ତାରେ ମା ଝିଅ ପୁଅ ଏକ ଜାଗାରେ ବସି ଜଳଖିଆ ଖାଇଲେ । ଚମ୍ପା ସବୁ ଜିନିଷ

ଠିକଣା କରି ବଢ଼େଇ ଦେଉଥାଏ । ବୋଉ ପଚାରିଲେ, "ହୋଇ ରେ ମା ବସି, ଏ ଝିଅଟି କିଏ ?" ବିଶାଖା ଦେଖି କହିଲେ, "ମୋ ପୋଇଲି ।" ଶଶୀ ତା ଶୁଣି ମନ ମଧ୍ୟରେ ଭାରି ଖପା—ହଁ, ତୋ ଚଉଦ ପୁରୁଷ ତେର ଏ ପୋଇଲି ରଖିଥିଲେ ! କଣ କରିବ – ପେଟପାଇଁ ପିଠି ସହେ, ଭୂମି ହେଲି । ବୋଉ ସାମ୍ନାଣୀ ତେର ବେଳଯାଏ ଶଶୀକୁ ଅନାଇ ରହିଲେ । ଏଁ—ମୋ ବିଶୀର ପୋଇଲି ଏତେ ସୁନ୍ଦରୀ ? ତା ଦେହରେ ଏତେ ଅଳଙ୍କାର ? ସତେ ! ସେ ରାଣୀ ହୋଇ ଗଲାଣି ।

———

—୪—

## ନରୁବାବୁର ଅସୁବିଧା

ନରୁବାବୁ କଟକ ପହଞ୍ଚିବା ଦିନଠାରୁ ଯାବନ୍ତ ଅସୁବିଧା ଭୋଗ କରୁଅଛନ୍ତି । ପ୍ରଥମ ପୁଣି ବିଶେଷ ଅସୁବିଧା ଆହାର ବିଷୟରେ । ପ୍ରଥମଦିନ ଭୋଜନ କରିବାକୁ ଯାଇ ନିତାନ୍ତ ଅକୁଳ ହୋଇ ପଡ଼ିଲେ । ରାତି ପହରେ ନ ହଉଣୁ ନାଜର ବାବୁଙ୍କ ରୋଷେୟା ବ୍ରାହ୍ମଣ ଭିତରେ ପ୍ରସ୍ତୁତ ଡାକି ନେଇଗଲା । ଖଣ୍ଡିଏ କମଳାସନ ପରି—ଆଗରେ ଗୋଟିଏ ପିତଳ ଦୀପରୁଖାରେ ଆଳୁଅଟାଏ ମିଞ୍ଜି ମିଞ୍ଜି ହୋଇ ଜଳୁଛି । 'ବସିବା ହେଉ ବୋଲି' କେହି ବୋଲିବାକୁ ନାହିଁ । ଛିଡ଼ା ହୋଇ ସ୍ଥାନ ଆସନ ଆଉ ଆଳୁଅ ଦେଖୁଛନ୍ତି । ମନଟା କମିଉକା ହୋଇଗଲା । କେହି ଭଲକରି ଅନାଇଥିଲେ ତାଙ୍କ ମୁଖ କେମନ୍ତ ଶୁଖି ଯାଇଛି ଦେଖିଥାନ୍ତା । ରୋଷେୟା ଅନ୍ନ ବ୍ୟଞ୍ଜନ ଆଉ ଅବଖୋରା-ଟାରେ ଜଳ ଥୋଇ ଦେଇ—"ଆସିବା ହେଉ, ଠାରେ ବିଜେ ହେଉ," କହି ଚାଲିଗଲା । ଯନ୍ତ୍ର-ଚାଳିତ ପରି ନରୁ ବାବୁ ଯାଇ ଆସନରେ ବସିଲେ । ତାଙ୍କ ପକ୍ଷରେ ଆଜି ଏଇଟା ନିତାନ୍ତ ଅଭିନବ ଏବଂ ଅସ୍ୱାଭାବିକ ଦୃଶ୍ୟ । ଗୋଟାଏ ସୁନ୍ଦର ରୁପା ଥାଳିରେ ମଲ୍ଲି ଫୁଲ ପରି ଧଳା ଅନ୍ନ—ସୁନ୍ଦର ରୂପେ ଅତି ଯତ୍ନରେ ବଢ଼ା—ତା ଉପରେ ରୁପା ଗିନାରେ ଗୁଆଘିଅ—ଆଠଦଶଟା ରୁପା ଗିନାରେ ନାନା ପ୍ରକାର ବ୍ୟଞ୍ଜନ ବଢ଼ା ନାହିଁ । ଶୁକ୍ଳବସନା ସୁଗଠନା ଦୁଇଜଣ ନାରୀ ଆଗରେ ଛିଡ଼ା ହୋଇ ନାହାନ୍ତି । ଲଙ୍ଗଳା ଶିରୁ ଦୁଇ ହାତରେ ଭାତ ଛଅଣ ଧାଣ୍ଡୁ ନାହିଁ ଜେଜେମା ତାଙ୍କୁ ଉଭାଇ ଗାଲ ଦେଇ ବହଲାଇ ଖୁଆଇ ଦେଉ ନାହାନ୍ତି । ନରୁ ! ଏଇଟା ଖା, ସେଇଟା ଖା—କହି ଭଜା ମାଛ ଖଣ୍ଡରୁ କଣ୍ଟା କାଢ଼ି ବଢ଼ାଇ ଦେଉ ନାହାନ୍ତି । ବାପା ସାଆନ୍ତ କଟକରୁ ଯେଉଁ କାବୁଲି ଧଳ ବିରାଡ଼ିଟା କିଣି ନେଇ ଯାଇଥିଲେ, ସେଇଟା ଆଗରେ ବସି ମିଆଉଁ—ମିଆଉଁ କରୁ ନାହିଁ । ଆମ୍ଭମାନଙ୍କୁ ଲେଖିବାକୁ ଏତେ ବିଳମ୍ବ ହେଲା, ମାତ୍ର ମୁହୂର୍ତ୍ତ ମଧ୍ୟରେ ନରୁ ବାବୁଙ୍କ ମନରେ ସବୁ କଥାଗୁଡ଼ାକ ଖେଳିଗଲା । ବାବୁ ନିତାନ୍ତ କାତର ହୋଇ ପଡ଼ିଲେ । ଆଗେ ବଡ଼ ଚଞ୍ଚଳିଆ ଆଉ ଅଝଟିଆ ପିଲା ଥିଲେ । ବାପା ସାଆନ୍ତଙ୍କ ବିୟୋଗ ଦିନଠାରୁ କଣ ବୁଝି ଭାରି ଗମ୍ଭୀର ଆଉ ଧୀର ହୋଇ ପଡ଼ିଛନ୍ତି, ଖୁବ କଷ୍ଟ ସହି ପାରିଲେଣି । ଦିନବେଳେ ଠା ହୋଇ ନାହିଁ, ବଡ଼ ଭୋକ ଲାଗୁଛି—ଆଖି କାନ ବୁଜି ଗ୍ରାସଟା ଖାଇ ଦେଲେ । ମନରେ କଲେ, ଦୁଧ ଟିକିକ ପିଇ ଦେଇ ଉଠି ଯିବେ ପାଟିକୁ କପର ଲାଗିଲା, ଛାଟିଆଟା ଆଳୁଅରେ ଧରି ଦେଖିଲେ, ଦୁଧ ପରି ଧଳା ଦିଶୁଛି—ପିଇଲେ ନାହିଁ—ଛାଟିଆଟା ଥୋଇ ଦେଇ ଉଠିଗଲେ । କାହାକୁ କିଛି ନ କହି ହାତ ଧୋଇ ଶେଯରେ ପଡ଼ିବାମାତ୍ର ନିଦେଇ ଗଲେ । କରୁଣା ଠା ଗୋଟାଇବାକୁ ଯାଇ ଚମକି ପଡ଼ିଲା, ବିଚାର କଲା, ଦିନେ ଓଳିଏ କଥା ନୁହେଁ, ସବୁଦିନେ ଚଳିବ କିପରି ? ଜେଜେମା କାନେ କାନେ କରୁଣାକୁ କହି ଦେଇଛନ୍ତି, ସେ ପ୍ରତିଦିନ ମଉସାଙ୍କ ପାଖକୁ ଯାଇ ନରୁର ହାଲ ହବାବ ଜଣାଇ

ସେ ଯାହା କହିବେ, ସେହିପରି କରିବ । କରୁଣା ସଖୀଙ୍କୁ ନରୁ ବାବୁଙ୍କ ପଇଟି ସାରି ସଳଖେ ସଳଖେ ମଉସାଙ୍କୁ ଯାଇ ସମସ୍ତ କଥା ଜଣାଇଲା । ମଉସା ବନ୍ଦୋବସ୍ତ କରିଦେଲେ ବାଲୁବଜାରରେ ଜଣେ ବ୍ରାହ୍ମଣର ଗୋଟାଏ ହୋଟେଲ ଅଛି, ଆଜି ଆଜି, ବଜାର ହୋଟେଲ ପରି ନୁହେ—ଭଲ ଭଲ ରୋଷେୟା, ଭଲ ଭଲ ଚାକର ଅନେକ ନିଯୁକ୍ତ ଅଛନ୍ତି । ଭଲ ଭଲ ଜଳପାନ ତିଆରି ହୁଏ, କଟକର ବଡ଼ ବଡ଼ ବାବୁମାନେ ତାହାର ଗରାକ । ହୋଟେଲର ଜଣେ ରୋଷେୟା ଭଲ ଭଲ ଖାଦ୍ୟ ନାନାପ୍ରକାର ବ୍ୟଞ୍ଜନ ବାସନରେ ପୂରାଇ ନରୁବାବୁଙ୍କ ବସାରେ ଦେଇଯିବ । ଜେଜିମା ନରୁର ଖାଦ୍ୟ ବିଷୟରେ ନଟବର ବାବୁଙ୍କୁ ବିଶେଷ କରି ଲେଖିଥିଲେ । ସେଥିରେ ଗୋଟିଏ କଥା ଥିଲା, ନରୁ ରାତି ଓଳିଟା ଅନ୍ନ ଠା-ରେ ବସି ନାହିଁ, ପୁରି ତରକାରି ବନ୍ଦୋବସ୍ତ କରିଦେବ । ପ୍ରଥମ ଦୁଇତିନି ରାତି ଭୋଜନ ବିଷୟରେ ବଡ଼ କଷ୍ଟ ହୋଇଥିଲା । ମାମୁଙ୍କ ବସା ଭିତରରୁ ଯେଉଁ ଶୁଖିଲା ପୁରି ଆଉ ସାମାନ୍ୟ ତରକାରି ଆସୁଥିଲା ତାହା ନରୁ ବାବୁ ପକ୍ଷରେ ଅଖାଦ୍ୟ । ପରେ ତାହା କରୁଣାର ଭୋଗରେ ଆସିଲା—ହୋଟେଲ ଖାଦ୍ୟରେ ନରୁ ବାବୁଙ୍କର ସୁନ୍ଦର ଚଳେ । ନରୁ ବାବୁଙ୍କ ରାତି ଓଳିକା ଠା ବିଷୟ ମାମୁଁ ମାଇଁ ଗନ୍ଧ ବାସନା ପାନ୍ତି ନାହିଁ—କିଛି ତତ୍ତ୍ୱ ନେବାର ନାହିଁ—କିପରି ବା ଜାଣିବେ ? କଚେରି କାମ ଆଉ ସନ୍ଧ୍ୟା ଉତ୍ତାରେ ଦେବତା ଦର୍ଶନ କାମରେ ମାମୁଙ୍କର ସକାଳୁ ରାତିଅଧ ହୋଇଯାଏ । ରାତିରେ ମନ୍ଦିରରୁ ବାହୁଡ଼ି ଆସିବା ବେଳକୁ ନରୁ ବାବୁ ଆହାରାଦି କରି ଶୋଇ ପଡ଼ିଥାନ୍ତି । ଆହାର ବିଷୟରେ ତ ଏହି ଅବସ୍ଥା, ରହିବା ଘରରେ ମଧ୍ୟ ଭାରି ଅସୁବିଧା । କୋଠରି ଦୁଆରଟା ବନ୍ଦ କରି ଦେଲେ ଭିତରଟା ରାତି ପରି ଅନ୍ଧାରିଆ ହୋଇଯାଏ । ରବିବାର କିମ୍ବା ଆଉ ଆଉ ଦିନରେ ମାମୁଙ୍କ କଚେରି ଘରେ ଏତେ ଗୋଳମାଳ ହୁଏ ଯେ, ନରୁ ବାବୁ ଦୁଆର ମେଲା ରଖି ପାରନ୍ତି ନାହିଁ । କରୁଣା ଦୁଆରଟା ଖୋଲି ଦେଇ ବାବୁଙ୍କ ପଢ଼ିବା ସକାଶେ ମେଜ ଉପରେ ବତିଟାଏ ଜାଳିଦିଏ । ନରୁ ବାବୁ ବିଦେଶୀ ସାଙ୍ଗ ପଢ଼ୁଆଙ୍କ ଠାରୁ ଶୁଣିଲେ, ସମସ୍ତଙ୍କୁ ନାନା ପ୍ରକାର ଅସୁବିଧା ଭୋଗିବାକୁ ହୁଏ । ସେ ତ ଲୋକର ଅବସ୍ଥା ବୁଝନ୍ତି ନାହିଁ । ସ୍ଥିର କଲେ, କଟକରେ ପଢ଼ିବାକୁ ହେଲେ କଷ୍ଟ ସହିବାକୁ ହେବ—ସ୍ଥିର କଲେ, ଯେତେ କଷ୍ଟ ହେଉ ପଛକେ ସବୁ ସହି କଟକରେ ପାଠ ପଢ଼ିବେ । ଉତ୍ତରଗସ୍ତୁ କୁଳଚନ୍ଦ୍ରମା—ଜେଜିମାର ନୟନ ପ୍ରତିମା ଦୁଃଖ କାହାକୁ ବୋଲନ୍ତି ଜାଣି ନ ଥିଲେ, ବର୍ତ୍ତମାନ ସମସ୍ତ ଦୁଃଖ ଏକାବେଳକେ ଉପସ୍ଥିତ । ମନରେ ଦୃଢ଼ ପ୍ରତିଜ୍ଞା ସବୁ କଷ୍ଟ ସହି-ଇଂରେଜୀ ପଢ଼ିବେ । ଦୁଃଖ ସହିବାକୁ ଶିଖିଲେଣି ବିପଦ ମଣିଷ-ପଣିଆ ଶିଖାଏ ।

ସବୁ ବିଷୟରେ ଗୋଟିଏ ସୀମା ଥାଏ । ନରୁବାବୁଙ୍କ କଷ୍ଟ ଏବେ ସୀମାରୁ ବଳି ପଡ଼ିଲାଣି । ବର୍ତ୍ତମାନ ଉପସ୍ଥିତ ଦୁଃଖଟା କୌଣସି ଲୋକ ପକ୍ଷରେ ହେଲେ ମଧ୍ୟ ଅସହ୍ୟ । ରାଘବ ପଟ୍ଟନାୟକେ ନରୁବାବୁଙ୍କ ସହିତ ଏକ ଘରେ ରହିଛନ୍ତି । ମାଇଁ କହିଲେ, "ଏଡ଼େ ଘରଟା, ଦଶ ଜଣ ମଣିଷ ରହି ପାରିବେ; ପିଲାଟା କେତେ ଜାଗାରେ ଶୋଇବ କି ? ନୋହିଲେ ଭଣ୍ଡାରଟା ବାହାରେ ରହିବ ।" ରାଘବମାମୁଙ୍କର ଆକାର ଆଚରଣ ଦେଖି ବାଘ ମାମୁଙ୍କୁ ଦେଖିଲା ଭଳି ନରୁବାବୁଙ୍କ ମନରେ ଗୋଟାଏ ଭାରି ଆତଙ୍କ ଜାତ ହେଲାଣି । କାନ୍ଧ ପକାଇବେ ପରା । ସାଙ୍ଗେ ବାଳକେ ଦୁଇ ଜଣ ବସି ବିଚାର କଲେ—ଶେଷରେ ସ୍ଥିର ହେଲା, 'ଦେଖା ଯାଉ କଣ ହେବ ।' ହେଲେ କଣ, ନରୁ ବାବୁଙ୍କ ମନ ସ୍ଥିର ହେଉ ନାହିଁ, କିପରି ମାମୁ ହାତରୁ ରକ୍ଷା ପାଇବେ, ସବୁବେଳେ ମନରେ ଏହି ବିଚାର ।

ରାଘବମାମୁ ପ୍ରଥମ ପ୍ରଥମ ଦୁଇ ଚାରିଦିନ ଘରେ ଗୋଟାଏ କୋଣରେ ଭୁନଭାନ ହୋଇ ପଡ଼ିଥାନ୍ତି ।

କେବଳ ଶୋଇବା ବେଳଟାରେ ଘର ମଧ୍ୟରେ—ଆଉ ଆଉ ସମୟରେ ପିଆଦା ବା ଚାକରମାନଙ୍କ ସଙ୍ଗେ ବସି ଦିନ କଟାନ୍ତି । ଭରମି ନରୁବାବୁଙ୍କ ପାଖ ପଶନ୍ତି ନାହିଁ—'ଆଲୋ ବାପ ଲୋ—ବଡ଼ ଲୋକ ପୁଅ, କଣ କହିବ ପରା !' ଦୁଇ ଚାରିଦିନ ଗଲା, ଆଠଦିନ ବି ଗଲା, ସବୁବେଳେ ପାଖରେ ରହିଲେ ଭୟ ଭାଙ୍ଗିଯାଏ । ଆଉ ଅପା କହି ଦେଇଛନ୍ତି, 'ନରୁ ତୁମ ଭଣଜା, ଭଣଜା ବାବୁ ବୋଲି ଡାକିବାକୁ ହେବ ।' ଦିନେ ସକାଳେ ନରୁବାବୁ ଖଟିଆଟି ଉପରେ ବସି ସ୍କୁଲର ପାଠ ଅଭ୍ୟାସ କରୁଅଛନ୍ତି, ରାଘବମାମୁଁ ପାଖ ପାଖ ହୋଇ ଯାଇ ଏକାବେଳକେ କଡରେ ଦେହକୁ ଲଗିଲା ପରି ବସି ପଡ଼ିଲେ । ତହୁଁ ଆରଦିନଠାରୁ କିତାପ ଗୁଡ଼ାକ ଓଲଟ ପାଲଟ କରିବା ଆରମ୍ଭ ହେଲା । ଦିନେ ଖଣ୍ଡେ କିତାପ ମେଲାଇ କହିଲେ, "ମଲା—ମଲା, ଏଇଟା ଗୋଟାଏ ବଳଦ ପରି ଦିଶୁଛି ।" ଆଉ ଦୁଇ ପୃଷ୍ଠା ଓଲଟାଇ କହିଲେ, "ହୋ—ହୋ—ହୋ ! ଏଇଟା ବରଗଡ଼, ଏଇଟା ଗୋଟାଏ ଗଛ, ପୋଥି ଉପର ପଟାଗୁଡ଼ାକ କମିତିକା ରଙ୍ଗ ଦିଶୁଛି; ଭଣଜା ବାବୁ ! ଏ ଖଣ୍ଡି କି ପୋଥି ? ମୁଁ କିଏ ପଢ଼ନ୍ତି ? ମତେ ଦିନେ କହି ଦେବ ।" କରୁଣା ପାଖରେ ବସି ଥିଲା, ବୁଝି ପାରିଲା, ପଢ଼ାରେ ବାଧା ପଡ଼ିବାରୁ ଟିକାଏତ ବାବୁ ବଡ଼ ବିକଦାର ହେଲେଣି । ଆଉ ସହି ପାରିଲା ନାହିଁ—କହିଲା, "ଏ ମାମୁ ସାନ୍ତ, ଟିକାୟତ ବାବୁ ଉଚ୍ଚଣି ପାଠ ପଢ଼ନ୍ତୁ, ତାଙ୍କୁ କିଛି ବୋଲ ନା—ଆଉବେଳେ ତାଙ୍କ ସାଙ୍ଗରେ କଥା କହିବ, ପୋଥି କଥା ପଚାରିବ ।" କରୁଣା କଥା ଶୁଣି ରାଘବମାମୁ ମନ ମଧ୍ୟରେ ଭାରି ଖୁସି କରୁଣା ତାଙ୍କୁ ସାନ୍ତ ବୋଲି ଡାକିଲା । ଆଜଯାଏ ତାଙ୍କୁ ସାନ୍ତ ବୋଲି କେହି ଡାକି ନାହିଁ—ଏଇଟା ହେଲା ପ୍ରଥମ ସମ୍ବୋଧନ । ଗାଁରେ ତ ତାଙ୍କୁ ରଘୁଆ ମହାନ୍ତି ବୋଲି ସମସ୍ତେ ଡାକନ୍ତି । ଅପା ରାଣୀ—ମୁଁ ସାନ୍ତ କଥାଟା ମନରେ କରି ହସି ହସି ଉଠିଗଲେ ।

ରାଘବ ମହାନ୍ତି ସଙ୍ଗରେ ଏକତ୍ର ବାସ ଟିକାଏତ ବାବୁଙ୍କ ପକ୍ଷରେ ଦିନକୁଦିନ ନିହାତି କଷ୍ଟକର ହୋଇ ପଡ଼ିଲଣି । ସ୍କୁଲ ବାହୁଡ଼ା ନରୁ ବାବୁ ଟିକିଏ ଶୀତଳଠାରେ ବସନ୍ତି; ରାଘବ ମହାନ୍ତି କଟମଟ କରି ଖାଇବାକୁ ଅନାଇଥାଏ । ନିପଟ ମୂର୍ଖ, ଦରିଦ୍ର, ମଫସଲ ଗାଉଁଲିଆ ଲୋକ, ଭଦ୍ର ବ୍ୟବହାର କାହୁଁ ଜାଣିବ ? ନରୁ ବାବୁଙ୍କୁ ବଡ଼ ଲାଜ ମାଡ଼େ—ଦରକିଆ ହୋଇ ଉଠିଯାନ୍ତି । କରୁଣାକୁ ଭଲ ଲାଗେ ନାହିଁ, ବିକଦାର ହୋଇ ଗଲାଣି, ଠା ବେଳେ କରୁଣା ପିଠି ଉହାଡ଼ କରି ବସେ । ଗୋଟାଏ କଥା ରକ୍ଷା ଥିଲା ନରୁ ବାବୁଙ୍କ ରାତି ଠା ବେଳେ ରାଘବମାମୁ ପିଆଦାମାନଙ୍କ ସାଙ୍ଗରେ ବଜାର ବୁଲି ବାହାରିଥାନ୍ତି । କରୁଣା କବାଟଟା କିଳି ଦେଇ ମାମୁ ଘର-ବାହୁଡ଼ା ଆଗରୁ ସେ ପାଇଟି ସବୁ ନିବାଡ଼ି ରଖେ । ମାମୁ ଦିନେ ହେଲେ ସେ କଥାର ଗନ୍ଧ ପାଇ ନାହାନ୍ତି ।

———

-୪୪-

## ତୁ ବେଠିଆ ଗଡ଼ିଡ଼ ପରା ?

କଟକ ଆସିବା ପରଦିନ ସକାଳେ ରାଘବ ମହାନ୍ତି ନାଜର ବାବୁଙ୍କ ସଦର ଦରଜା ପାଖରେ ଛିଡ଼ା ହୋଇ ସଡ଼କରେ ଯିବା ଆସିବା ଲୋକମାନଙ୍କୁ ଦେଖୁଛନ୍ତି । 'ଇଃ ! କଟକଟାରେ କେତେଗୁଡ଼ାଏ ମଣିଷ ମ ! ବାବୁଗୁଡ଼ାକ କେତେ—ଏଇଟା କଣ ଘୋଡ଼ା ଗାଡ଼ି ?' ମନ ମଧ୍ୟରେ ବଡ଼ ଗୋଟାଏ ହସ ମାଡ଼ିଲା ଘୋଡ଼ା ଯୋଡ଼ାକ ଶଗଡ଼ରେ କମିତି ଯୋଡ଼ା ହୋଇଛନ୍ତି । ଘୋଡ଼ା ଗାଡ଼ି ନାମ ତାଙ୍କୁ ଶୁଣା ଥିଲା—ମନରେ କରିଥିଲେ, ଘୋଡ଼ାମାନଙ୍କ କାନ୍ଧ ଉପରେ ଜୁଆଳି ପଡ଼େ । କାନ୍ଧରେ ହିଦା ଦେଉଛି, ଦୁଇଜଣ ପିଅଦା ବାବୁଙ୍କ ବସାରେ ଆସି ପହଞ୍ଚିଲେ । ଗୋଟିଏ ପିଆଦା

ରାଘବ ମହାନ୍ତିଙ୍କୁ ପଚାରିଲା, "କରେ ବେହେରା ! ତୁ କାଲି ରାତିରେ ଆସିଛୁ ପରା ?" ରାଘବ ମହାନ୍ତିଏ ତାଙ୍କୁ ବକ୍ ବକ୍ କରି ଅନାଇଛନ୍ତି । ମନରେ କଲେ ଏ ତ ଜମାଦାର, କିଏ ରେ ବୋଲି ତ କହିବ, ହେଲେ ବେହେରା କହିଲା କି ? କଟକରେ କଣ ଏହିପରି କହନ୍ତି ? ଉତ୍ତର ଦେଲେ "ହଁ ।" ପିଆଦା ପୁଣି ପଚାରିଲା, "କଣ ଆଣିଥିଲୁ, ଦୁଧ ନା ଦହି ?" ମହାନ୍ତିଏ ଉତ୍ତର ଦେଲେ, "ଦୁଧ ଦହି କାହିଁ ଆଣିବି ?" ପିଆଦା କହିଲା, "ତୁ ମଇଁଷାଳ ବେଠିଆ ଗଉଡ଼ ପରା ?" ମହାନ୍ତିଏ ଆଉ ସମ୍ଭାଳି ହୋଇ ପାରିଲେ ନାହିଁ—ମୁହଁଟା ଥମ ଥମ କରି ଭିତରକୁ ଚାଲିଗଲେ । ଏ କଥା ନିଶ୍ଚୟ ସତ୍ୟ, ଚଉନାୟକଙ୍କୁ ଅପମାନ କରିବା ପାଇଁ ପିଆଦା ତାଙ୍କୁ ମଇଁଷାଳ ବେଠିଆ ଗଉଡ଼ ବୋଲି କହିନାହିଁ । ଗଡ଼ ନଈପୁରରୁ କେବେ କେବେ ମଇଁଷାଳ ଗଉଡ଼ମାନେ ଦହି ଦୁଧ ବେଠି ଭାର ଘେନି ଆସିଥାନ୍ତି । ରାଘବ ମହାନ୍ତିଙ୍କ ଆକାର ପୁଣି ବେଶ ଦେଖିଲେ ଗଉଡ଼ ପରି ଜଣାଯାଏ—ଏଥିରେ ପିଆଦାର ଅପରାଧ କଣ ? ରାଘବ ମହାନ୍ତି କିଛି ଢେଙ୍ଗାଢଙ୍କିଆ ଲୋକ, ମଇଁଷାଳ ପରି ଖୁବ ବଳୁଆ ପରି ଜଣାଯାଏ, ଦେହର ରଙ୍ଗଟା କାଳିଆ. ହେଲେ ନବଘନକାଳିଆ ପରି ସୁନ୍ଦର ନୁହେ, ଠିକଏ ପାଉଁଶିଆ ରଙ୍ଗ ମିଶା—ତାହା ବି କିଛି ଚିକଣ-ଚାକଣ ନୁହେ, ହାଉଁଶିଆ ଆଉ ଖସଖସିଆ । ମୁଣ୍ଡ ବାଳଗୁଡ଼ାକ କେରା କେରା ଆଉ ସାନ ସାନ । ତେଲ ବା ପାଣିଆ ନ ଲଗିଲେ ଯେପରି ଜଟାଳିଆ ଆଉ ମେଞ୍ଚାଳିଆ ମୋଡ଼ା ହୋଇଯାଏ, ସେହିପରି । ମୁହଁଟି ଥାଳିପଟ ପରି ଚକା, ଲଲାଟ ଆଉ ନାକ କିଛି ଚେପ୍ଟା, ପୁଣି ନାକଟି ଠିକଏ ସାନ ଆଉ ମୋଟା, ଗାଲ ଯୋଡ଼ିକ ଫୁଲ୍କା ଫୁଲ୍କା, ଓଠଟି ମୋଟା ଆଉ ତଳକୁ ଠିକଏ ଝୁଲା ହୋଇଛି । ଦୁଇ କଳ ଶାଗୁ କଳ ପରି ଧଳା ଧଳା, ଦାନ୍ତ ଗୁଡ଼ିଏ ବଡ଼ ବଡ଼, ଫାଙ୍କ ଫାଙ୍କ । ଗ୍ରନ୍ଥକାରମାନେ ଡାଳିମ୍ବବୀଜ ସହିତ ଦନ୍ତର ତୁଳନା ଦେଇଥାନ୍ତି—ହେଲେ ଏଡ଼େ ବଡ଼ ଲୋକର ଶ୍ୟାଳକର ଦନ୍ତ ଏଡ଼େ କ୍ଷୁଦ୍ର ବୀଜ ସହିତ ତୁଳନା ଦେବାକୁ ମନ ବଳୁ ନାହିଁ । ଆମ୍ଭମାନଙ୍କ ବିବେଚନାରେ ପୁଣି ନିଶ୍ଚୟ ସାଦୃଶ୍ୟରେ ଲାଉ ଫଳ ବୀଜ ସହିତ ତୁଳନା ଦିଆ ଯାଇପାରେ । ଆଖି ଯୋଡ଼ିକ ଶୂକର ନେତ୍ର ପରି ଗୋଲ ଗୋଲ, ସାନସାନ, ଆଉ ଉଞ୍ଚା ଉଞ୍ଚା ଭ୍ରୂବିରଳ-ପକ୍ଷ୍ମ-ଯୁକ୍ତ, ବେକଟି ସାନ ଆଉ ମୋଟା—ଗ୍ରୀବାଟା କିଛି କମ ଚଉଡ଼ା—ପେଟଟି ଦୁଇ ନଉତିଆ ଦୂମପରି ବିଶାଳ, ଏଥିକୁ ହରଦରରେ ଗ୍ରୀବା ପେଟ ସମାନ । ଦୁଇ ଚେପ୍ଟା ବାହୁରେ ଖୁବ୍ ବଳ ଥିବାର ଜଣାଯାଏ, କହୁଣିଠାରୁ ହାତ ପାପୁଲି ଯାଏ କିଛି ଖଟ, ବାଁ ହାତ କବଜାଟା ଠିକଏ କେମ୍ପା ଭଳିଆ । ପିଲାକାଳରୁ ଗାଁ ଗୋରୁ ଗୋଠ ରକ୍ଷାରେ ନିଯୁକ୍ତ ଥିବା ଯୋଗୁଁ କାଷ୍ଠ ପରି ଅସୁନ୍ଦର ହେଲେ କଣ ହେବ, ଗୋଡ଼ ଯୋଡ଼ିକ ଖୁବ୍ ବଳୁଆ ଆଉ ଚିକ୍କଣିଆ । ସବୁଦିନ ଖରାରେ, ପାଣିରେ, ବନଯାକ ପଡ଼ିଆରେ ବୁଲିବାରୁ ଦେହ ଚର୍ମ ଟାଣୁଆ ଆଉ ଖସଖସିଆ ହେବାର ତ ସମ୍ଭବ । ପହରଣ ଆଣ୍ଠୁ ଲମ୍ବ ଖଣ୍ଡିଏ ମଇଳା ଲୁଗା, କାନ୍ଧ ଉପରେ ସେହିପରି ଖଣ୍ଡେ ଗାମୁଛା ।

ପିଆଦା କଥାରେ ଅପମାନ ବୋଧକରି କାନ୍ଦୁଣୁ ମାନ୍ଦୁଣୁ ହୋଇ ଅପାଙ୍କ ଆଗରେ ଗୁହାରି କଲେ । ମାତା ମଙ୍ଗଳା ଦେଈ ଧାଇଁ ଆସି ରାଗରେ କହିବସିଲେ, "ମା ବିସ୍ତି ! ଶୁଣ୍ ତ, ସେତ ଅଲଚାଇସିଆ, ଡାକୁଣୀଖିଆ, ଅଧାବଇସିଆ ମଣିଷଟା ବନ୍ଧୁବାସ ଦୁଆରେ ପିଲାଟାକୁ କଣ ନ କହିଲା ! ଯା' ତ ମା, ଜୁଆଇଁ ବାବୁଙ୍କ ପାଖରେ କହି ତାକୁ ଫଜିତ କରା ତ ।" ବିନ୍ଧୀ ଦେଈ ବି ଭାରି ଖପାଟା ହୋଇ ସ୍ୱାମୀଙ୍କ ପାଖରେ ସବୁ କଥା ଜଣାଇଲେ । ତାଙ୍କର ଆଶା ଥିଲା, ବାବୁ ଧାଇଁ ଯାଇ ପିଆଦାଟାକୁ ଗାଳି ଫଜିତ କରିବେ । ହେଲେ ନାଜର ବାବୁ ରାଘବ-ବାବୁଙ୍କୁ ଠିକଏ ଅନାଇ ଦେଇ କହିଲେ, "ଯେପରି ବେଶ ଦେଖୁଛି, ଲୋକେ ସେହିପରି କଥା ବୋଲିବେ ତ ! ସଫାସୁତରା ହୋଇ ବାହାରକୁ ବାହାରିବ ସିନା ।"

ମଙ୍ଗଳା ଦେଈ କହିଲେ, "ମା ବସନ୍ତୀ ! କାଲି ଦିନଯାକ ବାଟ ଚାଲିବାରେ ଧୂଳି ଉଡ଼ି ପଡ଼ି ଦେହଟି କଣ୍ଢ ମଇଳା ହୋଇ ଯାଇଛି, ନୋହିଲେ ମୋ ପୁଅଟୋଟି ଅସୁନ୍ଦର ! ଧୋବାଘରେ ଲୁଗା ସବୁ କାଚିବାକୁ ଦେଇଥିଲି, ଆମେମାନେ ଚାଲିଲୁ ବାହାରି ଆସିଲୁ, ସବୁ ଲୁଗା ରହିଗଲା । ଗୋଟାଏ ସଫା ଲୁଗା ଦେ ତ ମା, ତେଲ ଟୋପାଏ ଦେହରେ ମାରି ଦେଇ ପୁଅଟା ଗାଧୋଇ ପାଧୋଇ ଆସୁ ।" ହେଲେ ମଙ୍ଗଳା ଦେଈଙ୍କ କହିବା ଆଗରୁ ଯୋଡ଼ାଏ ପାଞ୍ଚଗଜ ଖଦି କିଣି ଆଣିବାପାଇଁ ନାଜର ବାବୁ ଜଣେ ପିଆଦା ହାତରେ ବଜାରକୁ ଟଙ୍କା ପଠାଇ ଦେଲେଣି । ମାତ୍ର ମନ ମଧ୍ୟରେ ବିକଳ୍ପ ହୋଇ କହୁଥାନ୍ତି, 'ଗ୍ରହଟାଏ ପହଞ୍ଚିଲା, ଆଜି କଣ—ଏହି ତ, ହେଲା ଖରଚ ଆରମ୍ଭ ।' ବଣାଖା ଦେଈ କହିଲେ, "ଶିବା ! ଯା ତ, ଗୋଟାଏ ବାରିକ ଡାକି ଆଣ, ପୁଅଟୋକୁ କ୍ଷୌର କରି ଦେଉ । ମାଲିପା ମାଖି ଗାଧୋଇ ଆସୁ । ସେ ବାଟ ଦେଖି ନାହାଁ, ତୁ ନଈକି ବାଟ କଢ଼େଇ ନେଇଯିବୁ । ଖବରଦାର, ସାଙ୍ଗରେ ପିଆଦା ଦେବୁ ନାହିଁ, ଆପେ ସାଙ୍ଗରେ ଯିବୁ ।" ଶିବା କହିଲା, "ହଁ — ହଁ, ସାନ୍ତାଣି ମୁଁ ତ ସେଇ କଥା ଆଗରୁ ମନରେ କରିଥିଲି । ସାଙ୍ଗରେ ନ ଗଲେ ସେ ନୂଆ ମଣିଷ ବାଟ ବଣା ହୋଇଯିବେ । ନଆଁଲଗା କଣ୍ଟକ ବାଟ ଗୁଡ଼ାକରେ ନୂଆ ମଣିଷକୁ ଭୂଆଁ ବୁଲାଏ ।" ଭଣ୍ଡାରିଟାଏ ଆସି ଭାଇ ସାନ୍ତଙ୍କୁ କ୍ଷୌର କରି ବସିଲା, ଚଉକେ ଚଉକେ ଲୁହ ସାଙ୍ଗରେ କାନ୍ଦୁଅ ପରି ମେଞ୍ଚାକୁ ମେଞ୍ଚା ମଇଳା କ୍ଷୁର ଦାଢ଼ରେ ଲାଗି ଆସୁଥାଏ, ଭଣ୍ଡାରିଟା ଶିବା ମୁହଁକୁ ଟିକିଏ ଟିକିଏ ଅନାଇ ଦେଉଥାଏ, ଦୁଇଜଣ ଯାକ ମୁରକି ହସା ହସି ହେଉଥାନ୍ତି । ନଖ ଗୁଡ଼ାକ ଭାଲୁ ନଖପରି ଲମ୍ବ ଆଉ ମୋଟା ଟାଣୁଆ, କାଟିବାବେଳେ ନହୁରୁଣିଟା ଠିକରି ପଡ଼ୁଥାଏ । ଶିବା ଅଙ୍ଗୁଳି ଦେଇ ଦେଖାଇ ଦେଲା, "ଦେଖ ତ ବାରିକ, ଭାଇ ସାନ୍ତ କାଲି ବାଟ ଚାଲି ଆସିଲେ, ଗୋଇଠି ଆଉ ତଳଟା ଚମ ଫାଟି ଯାଇଛି, ନହୁରୁଣିରେ ମଲା ଚମଗୁଡ଼ାକ ଛେଲିପକା ତ ।" ଭଣ୍ଡାରି ତ ଚମ ଛେଲୁଛି - ଫଡ଼ାକୁ ଫଡ଼ା ମଲା ଚମ ଜମା ହେଲାଣି । ଚମ ଛେଲିବାବେଳେ ଗୃହବ ବାବୁଙ୍କୁ କାତୁର କୁତୁର ଲାଗୁଥାଏ, କଣ କରିବେ, ଆଖି ବୁଜି, ଓଠ କାମୁଡ଼ି ବସିଥାନ୍ତି । ବାରିକ କହିଲା, "ଦେଖନ୍ତୁ ଗୃହିଟା ନହୁରୁଣୀ କୁନ୍ଥା—ଗୃହ ପଇସାରୁ ଊଣା ନୁହେ ।" ଶିବା କହିଲା, "ହେଉ ହେଉ, ଭଲକରି ପାଇବି ସାର, ସାନ୍ତାଣୀଙ୍କୁ କହି ପଇସା ଆଣି ଦେବି ।"

ବଣାଖା ଦେଈ ଗିନାଏ ସୋରିଷ ମାଲିପା ଆଣି ଥୋଇ ଦେଲେ, କହିଲେ, "ଶିବା ! ପିଲାଟା ଦେହରେ ଭଲକରି ମାଖି ଦେ ତ ।" ଶିବା କହିଲା, "ହଁ ହଁ, ମୁଁ ମାଖି ଦେବି ।" ମନରେ କରୁଥାଏ ମୋର ତ ସବୁ ଗରଜ ପଡ଼ିଛି ! ସତ କଥା, ଶିବାର କୋମଳ ହସ୍ତ ସେହି ଗଣ୍ଡା ଚର୍ମ ପରି ଦେହରେ ଲାଗିଲେ ଫାଳ ଫାଳ ହୋଇ ଖସି ଯାଇପାରେ । ଶିବା ଅଙ୍ଗୁଳିରେ ଦେଖାଇ ଦେଉଥାଏ—'ଏଠି ଭଲକରି ତେଲ ଲଗାଅ, ଏଠି ଭଲକରି ଘଷି ଦିଅ, ସେହି ଗିନାକ ତେଲ ଚାଁ ଚାଁ କରି ସାନ୍ତଙ୍କ ଲୁଖୁରା ଦେହଟା କାହିଁ ପିଇଗଲା । ଶିବା ସାନ୍ତାଣୀଙ୍କ ପାଖରୁ ଆଉ ଅଧ ଗିନାଏ ତେଲ ମାଗି ଆଣିଲା, ତେତେବେଳେ ଯାଇ ଦେହଟା ଟିକିଏ ତେଲ ଜକଜକ ହେଲା । ନଈରୁ ଗାଧୋଇ ପାଧୋଇ ଆସିବା-ବେଳକୁ ବଜାରରୁ ନୂଆ ଲୁଗା କିଣା ହୋଇ ଆଇଲାଣି । ମା ପୁଅ ଦୁଇ ଜଣଙ୍କ ମନ ଆନନ୍ଦରେ ଉଚ୍ଛୁଳି ଉଠୁଛି । ଗୃହବ ମହାନ୍ତ ଏ ନୂଆ ଲୁଗା ଖଣ୍ଡ ପିନ୍ଧି ଦେହର ଗୃହଆଡ଼କୁ ଅନାଉଛନ୍ତି । ମଙ୍ଗଳା ଦେଈ ପଚାରିଲେ, "ହୋଇଲେ ମା ଚନ୍ଦ୍ରକଳା ! ମୋ ପୁଅ ଗୃହ ଦେହଟି କଣ ସୁନ୍ଦର ନୁହେଁ ?' ଚନ୍ଦ୍ରକଳା କହିଲା, "ଏ ବୋଉ ସାନ୍ତାଣି ! ସେ ପିଆଦା ବାପୁଡ଼ାଟା ଅନ୍ଧ ବୋଲି କଣ ଆଉ କାହାର ଆଖି ନାହିଁ ? ଗାଁଟାଯାକ ବୁଲି ଆସନ୍ତୁ ତ, ସୁନ୍ଦରପଣ କଏ ବାଛୁବ, ଦେଖିବା ଭଲ ।" ହେଲେ ମନ ମଧ୍ୟରେ ହସି ହସି କହୁଥାଏ, ସଞ୍ଜ ବେଳେ

ଏକା ଗାଁଦାଣ୍ଡରେ ବୁଲିଲେ ଭୂତ ବୋଲି କହି ପିଲା-ଗୁଡ଼ାକ ଡର ମର ପଳାଇବେ ।' ବଶାଖା ଦେଇ ନାଜର ବାବୁଙ୍କ ଅଜଣା ଚହକଲା ହାତରେ ଯୋଡ଼ାଏ କୁରୁତା ଆଉ ଯୋଡ଼ାଏ ଚଦର କିଣି ଅଣାଇ ଦେଲେ । କେତେ ଦିନଯାଏ ଗରିବ ମହାନ୍ତିଏ ଭଲକରି ବାଟ ଚାଲି ପାରିଲେ ନାହିଁ, ଲମ୍ବ ଆଉ ଓସାରିଆ ଲୁଗାଗୁଡ଼ାକ ଛନ୍ଦି ହେଉଥାଏ । ହେଲେ କଣ, ପୋଷାକ ପିନ୍ଧିଲେ ମହାନ୍ତିଏ ଘରେ ଲୁଚି ହୋଇ ବସି ପାରନ୍ତି ନାହିଁ । ମିଛଟାରେ ହେଲେ ସଡ଼କରେ ପିଆଦାମାନଙ୍କ ପାଖରେ ଚାରି ଥର ବୁଲି ଆସନ୍ତି । ଦାଣ୍ଡ ଗଲା ଲୋକେ ତାଙ୍କ ପୋଷାକକୁ ଚାହିଁ ଦେଖୁଛନ୍ତି କି ନା, ସମସ୍ତଙ୍କ ମୁହଁକୁ ଅନାଉଥାନ୍ତି । କେତେଥର ମନରେ କଲେଣି, ଗାଁର ସାଙ୍ଗ ଟୋକା ଭିକା, ମଧା, ଖିମା, ବେଙ୍ଗା ଏମାନେ ଆସି ପିନ୍ଧା ଲୁଗା ଦେଖିଯାନ୍ତେ କି ?

———

–୪୫–

## ପ୍ରଭୁଦୟାଲ ଭଗତ

ରାମଦୟାଲ ଭଗତ ବିହାର ଦେଶର ଲୋକ, ଗୋଟିଏ ଶୁଣ୍ଢି ମହାଜନ । ଜଣେ ବଡ଼ ବେପାରୀର ନୌକର ଟୋକା ହୋଇ କଟକ ଆସିଥିଲା । ବାଣିଜ୍ୟରେ ଲୋକେ ଲକ୍ଷ୍ମୀବନ୍ତ ହୁଅନ୍ତି । ରାମଦୟାଲ ଆପଣର ଦରମା ଟଙ୍କା କେତୋଟି ପାଣ୍ଠିକରି ମସଲା କାରବାର ଆରମ୍ଭ କରିଥିଲା । ସେହି କାରବାର ବଢ଼ି ବଢ଼ି ପାଣ୍ଠି ଲକ୍ଷକରୁ ଟପିଲାଣି । ବାଣିଜ୍ୟ ଛାଡ଼ି ମହାଜନୀରେ କୋଡ଼ିଏ ପଚାଶ ହଜାର ଟଙ୍କା ଖେଳେ । ସେଥିରୁ କଲନ୍ତର ଛାଡ଼ି ତୋଡ଼ା ସଲାମି—ମିଠେଇଖିଆ ବୋଲି ଆଚ୍ଛା ଦଶ ଟଙ୍କା ଲାଭ ହୁଏ । ଖର୍ଚ୍ଚ ଖୁବ୍ କମ, ଚାକର ବାକର ବୋଲି ଘରେ କେହି ନାହିଁ, ସବୁ କାମ ହାତେ ହାତେ । ଅଡ଼େଇ ଗଜ ମୋଟି ମାରକିନରେ ପାଞ୍ଚହାତି ଯୋଡ଼ାଏ ଧୋତି, ଏକ ଗଜ ମାରକିନରେ ଯୋଡ଼ାଏ ମିରଜାଇରେ ବର୍ଷକ କାଟେ । ଲାଲ ସାଲୁ ଲୁଗାର ପଗଡ଼ି ଖଣ୍ଡେ ଦଶବର୍ଷ ତଳେ କିଣା ହୋଇଥିଲା, ଆହୁରି ବି ଦଶ ବର୍ଷ ସେଥିରେ କାମ ଚଳି ପାରେ । ଖଣ୍ଡିଏ ମୋଟା ଲେଫରେ ଶୀତ ଚାରି ମାସ କଟିଯାଏ—ଗରମ ପଡ଼ିଲେ ତାକୁ ଝାଡ଼ଝୁଡ଼ି ବାନ୍ଧି ରଖିଦିଏ । ସେହି ଲେଫ ଖଣ୍ଡ ଛାଡ଼ି ଶୀତଲୁଗା ତା ଦେହରେ କେବେ କେହି ଦେଖି ନାହିଁ । ବନ୍ଧୁ ବାନ୍ଧବ ଲୋଡ଼ିବା ଡେଣିକି ଥାଉ, କଙ୍ଗାଳୀ ଘାଟଭିଖାରୀକୁ ମୁଠାଏ ଚାଉଳ ଦେବାକୁ ସେ ବେଜାଏ ଖରଚ ବୋଲି ମଣେ । ଅନେକ ଜାଗାରେ ଦେଖାଯାଏ ଠାକୁରେ ଗୋଟାଏ ଲୋକକୁ ସବୁ ଦିଅନ୍ତି ନାହିଁ । ଏତେ ଯେ ସମ୍ପତ୍ତି, ଭୋଗ କରିବ କିଏ ? ଭଗତେ ଆଣ୍ଠୁକୁଡ଼ା, ସେଥିଲାଗି ତାଙ୍କର କିଛି ଚିନ୍ତା ନ ଥାଏ । ତାଙ୍କ ଜାଣିବାରେ ଟଙ୍କା ଥିଲେ ସବୁ ହେଲା । ହେଲେ ଭଗତଆଣୀଙ୍କର ସେଥିଲାଗି ଭାରି ମନଦୁଃଖ—ସନ୍ତାନଟିଏ ଲାଗି ବାର ବ୍ରତ ଦେବ ଦେବୀଙ୍କୁ ପୂଜା ମାନସିକରେ ଲାଗିଥାନ୍ତି । ଠାକୁରେ କୃପା କଲେ, ବୁଢ଼ାକାଳରେ ଗୋଟିଏ ପୁଅ ହେଲା । ବୁଢ଼ା ବୁଢ଼ୀ ତ ଭାରି ଖୁସି – ବୁଢ଼ୀ ସବୁ କାମ ଛାଡ଼ି ଛୁଆଟିକୁ ଦିନରାତି କୋଳରେ ଧରି ବସିଥାନ୍ତି । ପ୍ରଭୁଙ୍କ ଦୟାରୁ ପିଲାଟିଏ ପାଇଲେ ସେଥିଲାଗି ପୁଅର ନାମ ଦେଲେ ପ୍ରଭୁଦୟାଲ । ପିଲାଟି ବଢ଼ିଲାଣି, ପାଠ ପଢ଼ିବ, ଜଣେ ବିହାରୀ ଲାଲା ଦିନାଏ ଘଣ୍ଟାଏ କାଏଥି ଅକ୍ଷର ପଢ଼ାଇ ଦେଇଯାଏ । ଅନେକ କସାକସିରେ ଲାଲାଙ୍କର ଦରମା ଠିକ୍ ହେଲା ମାସକୁ ଟଙ୍କାଏ ।

ଗୋଟାଏ ମାମଲାରେ ସାକ୍ଷ୍ୟ ଦେବା ସକାଶେ ବୁଢ଼ା ରାମ ଦୟାଲ ଭଗତ ଦିନେ କଚେରିକୁ ଯାଇଥିଲେ । ତାଙ୍କ ଜୀବନରେ କଚେରି ମାଡ଼ିବା ଏଇ ପ୍ରଥମ ଆଉ ଶେଷ । ଭଗତ ଦେଖିଲେ, ହାକିମ ସିଂହାସନରେ ବସିଛନ୍ତି । ଶହ ଶହ ଲୋକ ତାଙ୍କୁ ବନ୍ଦଗୀ କରିବା ପାଇଁ ହାଜର । ଭଗତେ ବି ବନ୍ଦଗୀ କଲେ । ଆଉ କଣ

ଦେଖିଲେ କ ଗୋଟାଏ ଓକିଲ ଆସି ହାକିମଙ୍କୁ କେତେଟା କଥା କହିଲା । ଜଣେ ଲୋକ ପାଖରୁ ମୁଠାଏ ଟଙ୍କା ନେଇ ପକେଟରେ ଗଳାଇ ପକାଇଲା । ସେ କଥାରେ ଭାରି ମନ ଲାଗିଛି । ଲୋକଙ୍କଠାରୁ ବୁଝାବୁଝି କରି ଜାଣିଲେ, ଏମାନେ ଇଂରେଜୀ ପଢ଼ି ହାକିମ ଆଉ ଓକିଲ ହୋଇଛନ୍ତି । ପ୍ରଭୁଦୟାଳକୁ ଇଂରେଜୀ ପାଠ ପଢ଼ାଇଲେ ସେ ଗୋଟିଏ ହାକିମ ନହେଲେ ଓକିଲଟାଏ ହୋଇଯିବ । ବୁଢ଼ୀ ସବୁ କଥା ଶୁଣିଲେ, ତାଙ୍କର ତ ଆନନ୍ଦରେ ଗୋଡ଼ ଭୂଇଁ ଛୁଉଁ ନାହିଁ । ପ୍ରଭୁଦୟାଳର ଇଂରେଜୀ ପଢ଼ାର ବନ୍ଦୋବସ୍ତ ହୋଇଗଲା । ଆଉ ଆଉ ଖରଚବେଳେ ଟଙ୍କାଟିଏ ରାମଦୟାଳଙ୍କର ଟୋପାଏ ରକ୍ତ, ପ୍ରଭୁଦୟାଳର ଇଂରେଜୀ ପଢ଼ା ଖରଚ ବେଳେ ଏକାବେଳକେ ବାଳସଟା ଉଦୁଆଁ । ଟଙ୍କା ଛନ୍ଦିବ ଆଉ କାହାପାଇଁ ? ବୁଢ଼ାର କେମନ୍ତ ଗୋଟାଏ ଝୁଙ୍କ ଧରିଛି, ସବୁ ଟଙ୍କା ଯାଉ, ମୋ ପ୍ରଭୁ ହାକିମଟାଏ ହେଉ । ବୁଢ଼ୀ କଥା ଅଧିକ ବା କଣ ବୋଲିବୁ—ସେ ବୁଢ଼ାଠାରୁ ବଳି ଗଲାଣି । ଜାତି ଭାଇମାନେ ଶୁଣି ଗାଳି ଦେଲେ—"ଏ କଣ ରେ ରାମଦୟାଳ ? ଆମ ସାତ ପୁରୁଷର ଜାତି କାମ ମହାଜନୀ କାରବାର । ତୁ କ'ଣ ପୁଅଟାକୁ ପରର ଗୋଲାମୀ କରାଇବାକୁ ବାହାରିଛୁ ? ଇଂରେଜୀ ପାଠ ପଢ଼େଇବୁ, ପଢ଼ା –ହେଲେ ତାକୁ ଜାତି ବେବସାରେ ଲଗା ।" ଜାତି ଭାଇମାନେ ତ ସବୁ କଥା ବୁଝନ୍ତି ନାହିଁ । ବୁଢ଼ା ଭଗତ ସବୁବେଳେ କହି ବୁଲଲା, ପ୍ରଭୁଦୟାଳ ଚାକିରି କରିବ, ସେଥିସକାଶେ ସେମାନେ ଏପରି କଥା କହନ୍ତି, ଶୁଣୁଛ କିଏ ? ଇଂରେଜୀ ବିଦ୍ୟାର ଫଳ ମଧ ପ୍ରଭୁ ଦୟାଳଠାରେ ଦେଖା ଗଲାଣି । ରାମଦୟାଳ ଖଣ୍ଡେ ପଡ଼ପରେ ବସି ସବୁ କାରବାର କରେ—ପ୍ରଭୁଦୟାଳ ଘରେ ଚୌକି ମେଜ ପୂରି ଗଲାଣି । ସେ ଯେ ହାକିମ ହେବ, ସେହିପରି ତୟାରି ହେଉଛି ।

ମଣିଷ ମରନ୍ତି—ରାମଦୟାଳ ବୁଢ଼ା ହୋଇଥିଲା, ମରିଗଲା । ଅତ୍ୟ ସୁଲକ୍ଷଣୀ ସତୀ ବୁଢ଼ୀ ହାତରେ ଚୁଡ଼ି, ମୁଣ୍ଡରେ ମୁଣ୍ଡେ ସିନ୍ଦୂର—ଅହିଅ ଡେଙ୍ଗୁରି ବଜାଇ ମାଙ୍କ ଆଗରୁ ଚାଲିଯାଇଥିଲେ । ପ୍ରଭୁଦୟାଳ ସ୍ୱାଧୀନ—ବିଷୟର ଅଧିକାରୀ ଆଠ ଦଶ ବର୍ଷକାଳ ସ୍କୁଲକୁ ଯା ଆସ କରି ଥାର୍ଡ଼ କ୍ଳାସରୁ ସେକେଣ୍ଡ କ୍ଳାସକୁ ପ୍ରମୋଶନ ପାଇଥିଲେ—ବିଷୟ ସମ୍ଭାଳିବାକୁ ହେବ, ସ୍କୁଲରୁ ନାମ କଟାଇ ଆଣିଲେ । ତାଙ୍କ ସହିତ ଇଂରେଜୀ ପଢ଼ୁଆ ଦଶ ଜଣ ବଡ଼ଲୋକ ପୁଅସହିତ ସଭ୍ୟ ବାବୁଙ୍କର ଆଳାପ ପରିଚୟ । ଭଲ ପୋଷାକ ପିନ୍ଧି ଦଶଟା ସଭାସମିତିକୁ ଯିବା ଆସିବା ଅଛି । ଦୁଇ ଚାରିଟା ସଭାରେ—ହେ ସଭ୍ୟଗଣ ! ସଭାପତି ମହାଶୟ ! ସମ୍ବୋଧନ କରି ବକ୍ତୃତା ମୁଖସ୍ଥ କରି ସାରିଲେଣି । ସେ କଣ ଅଶିକ୍ଷିତ ଜାତି ଭାଇଙ୍କ ସାଙ୍ଗରେ କାରବାର କରି ଧୂଳି ଘାଣ୍ଟିବେ ? ସବୁ ଜାତି ଭାଇ ଗୁଡ଼ାକ ଯେ ତଳେ ବସି ଦଣ୍ଡ ଧରନ୍ତି—ଏତେ ବର୍ଷ ମେହନତ, ଏତେ ଟଙ୍କା ଖରଚ କରି ଯେବେ ସେହିପରି କଲେ, ତେବେ ଇଂରେଜୀ ପାଠର ମର୍ଯ୍ୟାଦା କାହିଁ ରହିଲା ? କାହିଁକି ବା ସେ ସେପରି ଛୋଟକାମ କରିବେ, ଅଭାବ କଣ ? ଆଗେ ପ୍ରଭୁଦୟାଳ ବାବୁ ସଞ୍ଜବେଳେ ବୁଲିବାକୁ ଯାଇ ଗାଉଣା ବାଜଣାର କିଛି କିଛି ଚର୍ଚ୍ଚା କରୁଥିଲେ । ସଙ୍ଗୀ ମାନଙ୍କ କଥାରୁ ଜଣାଯାଏ, ସେ ଭଲ ଗାଇ ପାରନ୍ତି, କଣ୍ଠ ସ୍ୱରଟି ବଡ଼ ସୁନ୍ଦର । ସଞ୍ଜଠାରୁ ଅଧରାତିଯାଏ ଘରଠାରେ ମଜଲିସ ଜାରି । ମାସରୁ ଅଧେ ଦିନ ବାବୁମାନଙ୍କ ମର୍ଯ୍ୟାଦା ନିମନ୍ତେ ଘରଠାରେ ଭୋଜୀ ହୁଏ । ଖାଦ୍ୟ ଆଉ ପେୟ ବାବୁମାନଙ୍କ ମନମାଫିକ ହୁଏ, କଥା ବୋଲିବା ଅନାବଶ୍ୟକ ।

ଜାତି ଭାଇମାନେ ପ୍ରତ୍ୟହ ପ୍ରତ୍ୟକ୍ଷ ପ୍ରଭୁଦୟାଳର ଆଚରଣ ଦେଖୁ ଅଛନ୍ତି, ପୁଣି ସେ କୌଣସି ବନ୍ଧୁ ବାନ୍ଧବ କଥା ଶୁଣେ ନାହିଁ । ଆଉ ପ୍ରଭୁଦୟାଳ ବଜାରର ଗୋଟିଏ ନୀଚ ସ୍ତ୍ରୀଲୋକ ହାତରୁ ଖାଏ । ଏ କଥା ଜାତି ମଜଲିସରେ ଜଣା ପଡ଼ିବାରୁ ତାକୁ ଏକାବେଳକେ ଜାତିସଭା ବାସନ୍ଦ କରିଦେଲେ ।

ଦେଖୁଁ ଦେଖୁଁ ବର୍ଷ ଦୁଇ ତିନଟା ଭିତରେ ସମ୍ପତ୍ତିଗୁଡ଼ାକ କାହିଁ ଉଡ଼ିଗଲା—ଲୋକେ କୁହାକୁହି ହେଲେ, ଦେଖିବାକୁ ପ୍ରଭୁଦୟାଳର ସମ୍ପତ୍ତି ନାହିଁ । ସତକୁ ସତ, କଳିକତାରେ ଗୋଟାକ ପରେ ଗୋଟାଏ କରି ସବୁ ସମ୍ପତ୍ତି ନିଲାମ ହୋଇଗଲା, ଶେଷକୁ ଘରଖଣ୍ଡ ମଧ୍ୟ ଗଲା । ନିଜେ ଅଚେତ ଅବସ୍ଥାରେ ସବୁବେଳେ ପଡ଼ିଥାଏ, କିଛି ଦେଖେ ନାହିଁ, ପାଣିସୁଅ ପରି ଖରଚ ଚାଲିଛି, ଘର ଭୂତ ପଡ଼ି ଖାଇଗଲେ, ସେ ସମ୍ପତ୍ତି କେତେଦିନ ରହିପାରେ ?

ପ୍ରଭୁଦୟାଳ ଖଣ୍ଡେ ଇଂରେଜୀ ବହିରେ ପଢ଼ିଥିଲା ରୁଷିଆ ଦେଶରେ ଜଣେ ବଡ଼ ଜମିଦାର ପୁଅ ଗରିବ ହୋଇ ଯାଇ ପଛକୁ ପିଆଦା ପଣ କଲା ପଛକେ କୌଣସି ବନ୍ଧୁଘରେ ଆଦୁର୍ଯ୍ୟା ହେଲା ନାହିଁ । ଲୋକଟା ଭାରି ମହତ୍ତ୍ୱଦାର, ଏତେ ଦୁର୍ଦ୍ଦଶାରେ ମଧ୍ୟ କିଛି ଚିନ୍ତା ନାହିଁ । ସଞ୍ଜକୁ ସଞ୍ଜ ନିଶା ବାଡ଼ଟା ଚଳିଗଲେ ହେଲା । ଇଚ୍ଛା ଗଲା ଗୋଟିଏ ପିଆଦା ହେବ, ପିଆଦାମାନଙ୍କର ଦରମା ଛାଡ଼ି ଉପୁରି ରୋଜଗାର ଢେର । ବଜାରର ଗୋଟିଏ ସ୍ତ୍ରୀ ପାଖରୁ ଖବର ପାଇ ନାଜର ନଟବର ବାବୁଙ୍କ ସାଙ୍ଗରେ ଭେଟ ହେଲା । ସୁନ୍ଦର ଚେହେରା—କଥାବାର୍ତ୍ତାର ଢଙ୍ଗଢାଙ୍ଗ ଦେଖି ନାଜର ବାବୁ ବଡ଼ ଖୁସି, ପୁଣି ସେ ଇଂରେଜୀ ଜାଣେ । ସ୍ଥିର କଲେ, ଖୁବ୍ କାମଦାର ଲୋକ ହେବ । ନାଜର ବାବୁ ତାକୁ ଗୋଟାଏ ପିଆଦାଗିରି କାମରେ ବାହେଲ କରାଇବା ପାଇଁ ମନ ମଧ୍ୟରେ ସ୍ଥିର କଲେ । ସ୍ଥିର ହେଲା, ପ୍ରଭୁଦୟାଳ ଶହେ ଟଙ୍କା ନଜରାନା ଦାଖଲ କଲେ ଗୋଟାଏ କାମ ପାଇବ । ଟଙ୍କା ଦାଖଲ ହୋଇ ନାହିଁ, କାମ ପାଇ ନାହିଁ, ଉମେଦ୍‌ବାର ନାଜର ବାବୁଙ୍କ ବସାକୁ ଯିବା ଆସିବା କରୁଥାଏ । ରାଘବକୁ ଦୁଇ ଚାରି ଥର ଦେଖି ତାହାର ଅସ୍ଥିତ୍ୱ ବିଷୟ ଅଟକଳ କଲା । ଲୋକଟା ଭାରି ସନ୍ଧାନୀ । ଦିନେ ସକାଳେ ପ୍ରଭୁଦୟାଳ ପାଖକୁ ଚାଲି ଯାଇ ହସି ହସି କହିଲା, "ରାମ—ରାମ, ରାଘବ ବାବୁ, ରାମ—ରାମ ।" ରାଘବଙ୍କ ମନ ଆନନ୍ଦରେ ଉଚ୍ଛୁଳି ଉଠିଲା । ଗାଁରେ ଡାକନାମ ଥିଲା ରଘୁଆ ମହାନ୍ତି, ଏକାବେଳକେ ବାବୁ ପାଲଟିଗଲେଣି । ମାତ୍ର 'ରାମ, ରାମ' କଣ କହିଲା, ବୁଝି ପାରିଲେ ନାହିଁ । କଣ ଉତ୍ତର ଦେବାକୁ ହେବ ଜଣା ନାହିଁ, ଲୁଚ୍ଚା ଛୁଡ଼ା ହୋଇ ମୁରକି ମୁରକି ହସୁଥାନ୍ତି । ଚଲାଖ ପ୍ରଭୁଦୟାଳ ବାବୁଙ୍କ ହାତଧରି ଇଂରାଜୀ ଧରଣରେ ଦୁଇଥର ଝିଙ୍କାଝିଙ୍କି କଲେ । ଅଳ୍ପ ସମୟରେ ଦୁଇ ଜଣଙ୍କ ମଧ୍ୟରେ ଭାରି ବନ୍ଧୁପଣ ହୋଇଗଲା । ପ୍ରସ୍ତାବ ବିସ୍ତାର ସମ୍ବନ୍ଧରେ ବିସ୍ତୃତ ବିବରଣ ଲେଖି ପାଠକ ମହାଶୟଙ୍କୁ ବିରକ୍ତ କରିବାର ଦରକାର ନାହିଁ । ସାର କଥା—ଦୁଇ ଦୋସ୍ତ ମିଳାମିଶି ସହରର ସବୁସ୍ଥାନରେ ଭ୍ରମଣ, ଭଦ୍ରଲୋକର ଅଗମ୍ୟ ସ୍ଥାନମାନଙ୍କୁ ଗମନ, ସଙ୍ଗୀତ ଶ୍ରବଣ, ନୃତ୍ୟ ଦର୍ଶନ ପ୍ରଭୃତି ଅଳ୍ପ ସମୟ ମଧ୍ୟରେ ହୋଇ ଗଲାଣି । ରାଘବ ବାବୁଙ୍କ ପକ୍ଷରେ ଏ ସମସ୍ତ ନୂତନ ଆଶ୍ଚର୍ଯ୍ୟ ଦର୍ଶନ । ତାଙ୍କର ଯେଉଁ ଗ୍ରାମରେ ଘର, ଯେଉଁ କାର୍ଯ୍ୟରେ କାଳକ୍ଷେପଣ, ଏ ସମସ୍ତ ସମ୍ବାଦ ସେଠାରେ ପହଞ୍ଚିବା କଦାଚ ସମ୍ଭବ ନୁହେଁ । ଯେଉଁ ଦିନ ଇଂରେଜୀ ରଙ୍ଗପାଣିରୁ କିଛି ପେଟରେ ପଡ଼ିଗଲା, ସେହିକବେଳେ ମନରେ କଲେ, ପାଠରେ ଶୁଣା ଅଛି, ସ୍ୱର୍ଗରେ ଦେବତାମାନେ ଅମୃତ ଖାଆନ୍ତି—ଏ ସେହି ଅମୃତ । ପ୍ରଭୁଦୟାଳ ସେହି ଦେବତା ମଧ୍ୟରେ ଜଣେ, ସେ ନିଜେ ବି ଗୋଟିଏ ଦେବତା ପାଲଟି ଗଲେଣି । ଏପରି ଆନନ୍ଦଟା ଜୀବନରେ କେବେ ଜାଣି ନ ଥିଲେ । ଏଣେ ପ୍ରଭୁଦୟାଳ ମନରେ କରୁଥାଏ, ତାହାକ ମାଉଁଶ ଖାଇବା ଲାଗି ଶିକାରୀ ଗୋଟିଏ ତାହାକ ପୋଷେ । ଭଲ ଚଢ଼େଇଟିଏ ମିଳିଛି, ପୋଷ ମନାଇ ନେଇ ପାରିଲେ କାମ ଫତେ । ନାଜର ବାବୁଙ୍କ ବସାରେ ଟଙ୍କାର ପ୍ରାଚୁର୍ଯ୍ୟ । ଗୋଟିଏ ଗର୍ଦ୍ଦାଣ୍ଟି ରକ୍ଷିକା—କଥାଟା ବିଶେଷ ରୂପେ ଜଣା । ହେଲେ ହାତ ଚଢ଼ାଇବାର ଉପାୟ ନ ଥିଲା, ଏବେ ମନରେ କଲେ କାମ ଫତେ ।

ଦିନେ ପ୍ରଭୁଦୟାଲ କହି ବସିଲେ, "ଦୋସ୍ତ! ( ଦୁଇଜଣ ଦୋସ୍ତ ବୋଲି ଡକାଡକି ହୁଅନ୍ତି ), ଜାଣ ଛ ରୋଜ ରୋଜ ରାତିରେ ଟଙ୍କା ଖରଚ, ମୋ ହାତଟା ଉତ୍ତୁଣିକା ଟିକିଏ ଖେଞ୍ଚ ଅଛି, ମୋହର କଲିକତାରୁ ହୁଣ୍ଡି ଆସିବାକୁ ଡେରି ତୁମେ ଦିନାକେତେ ଖରଚ ଚଳାଇ ନିଅ; ମୋ ଟଙ୍କା ପହଞ୍ଚିଲେ ଆଉ ପରବା କଣ ?"

ରାଘବ ବାବୁ—"ଦୋସ୍ତ ! ମୁଁ କାହୁଁ ପାଇବି ? ମୋ ହାତରେ ଟଙ୍କା କାହିଁ ?" ଭଗତ ମନରେ କଲି, 'ହୁଁ, ତୋ ବୋପାର ପରି ଗଣ୍ଠିରି ଜମା ଅଛି, ରୋଜ ରୋଜ ମାରି ଖାଇବୁ ।' ପ୍ରକାଶ୍ୟରେ କହିଲି, "ସେ କଣ ଦୋସ୍ତ ! ତୁମ ଅପା ରାଣୀ, ତମାମ କଟକ ଜାଣିଲେଣି, ତୁମେ ଗୋଟାଏ ବାବୁ—ଟଙ୍କା ନାହିଁ କଣ ? ଦେଖ ଦୋସ୍ତ—ନାଜର ବାବୁ କଚେରି ବାହୁଡ଼ା ଟଙ୍କାଗୁଡ଼ାକ ତୁମ ଅପା ହାତରେ ଦିଅନ୍ତି । ସେ ଟଙ୍କାଗୁଡ଼ାକ କୁଲଙ୍ଗିରେ, ବିଛଣା ମାଣ୍ଡି ତଳେ ଦୁଇ ତିନିଦିନ ପଡ଼ି ରହେ; ତା ବାଦେ ସାନ୍ତାଣୀ ବାକ୍ସରେ ରଖନ୍ତି । ସେଥିରୁ କିଛି କିଛି ଟଙ୍କା ଆଣିବ । ଖବରଦାର ! ଏକାବେଳକେ ସବୁ ଆଣିବ ନାହିଁ ।" ମହାନ୍ତିଏ ଟିକିଏ ଗୁମ୍ ମାରି ବସିଲେ, ଦେହଟା ଯେମନ୍ତ ଥରି ଉଠିଲା । ଭଗତ ବୁଝିପାରିଲେ, ପିଠିରେ ହାତମାରି କହିଲେ, "ଚିନ୍ତା ନାହିଁ, ଦୋସ୍ତ ! ଡର ନା, ମୁଁ ଜାଣେ, ତୁମେ ନେଇଆସ !" ରାଘବ ବାବୁ ଦେଖିଲେ ଟଙ୍କା ନ ଆଣିଲେ ନୁହେ, ଦୋସ୍ତ କଣ ମନରେ କରିବ ! ମଜାଟା ବି ବନ୍ଦ ହୋଇଯିବ । ଦିନାକେତେ ଖରଚ ବେଶ ଚଳିଲା । ମହାନ୍ତିଏ ପ୍ରଥମ ପ୍ରଥମ ଡରୁଥିଲେ, ଏବେ ଚିନ୍ତା ନାହିଁ । କେଜାଣି କିପାଁ ଅପା ଏବେ ଟଙ୍କା ବାହାରେ ପକାନ୍ତି ନାହିଁ, ସାଙ୍ଗେ ସାଙ୍ଗେ ସିନ୍ଦୁକରେ ରଖି କୋଲପ ଦିଅନ୍ତି । ଭଗତ କଣ ହଟିବାର ଲୋକ ! ସଙ୍ଗେ ସଙ୍ଗେ ମହଣର ଛାପ ଅଣାଗଲା, ସବୁ ବାକ୍ସ ସିନ୍ଦୁକର କଞ୍ଚିକାଠି ତିଆରି କରି ପକାଇଲେ । ଏଣିକି ଆଉ ଚିନ୍ତା କ'ଣ ?

ଏତ ସେ କାଣ୍ଡ—ନାଜରଙ୍କୁ ସବୁ ଅଜ୍ଞାତ । ସକାଳୁ ଅର୍ଦ୍ଧରାତି ପର୍ଯ୍ୟନ୍ତ କାର୍ଯ୍ୟରେ ଲାଗିଥାନ୍ତି । ଏଣେ ମଙ୍ଗଳା ଦେଈ ସର୍ବଦା ବୋଲନ୍ତି. "ମୋ ବପ୍ପୀ ! ତୁ ତ ଲକ୍ଷ୍ମୀଭଣ୍ଡାର, ଏ ନେଉଣ୍ଡପିଲ ତୋ ଛୁଆ ଭାଇଟି ଆଶ୍ରା ଧରି ପଡ଼ିଛି, ଟିକିଏ ଦୟା ରଖିଥିବୁ ।" ବିଶାଖା ଦେଈଙ୍କର ବି ସାନ ଭାଇ ଉପରେ ଭାରି ଦୟା, ଖୁବ୍ ବିଶ୍ୱାସ ।

— — —

-୪୭-

## ନରପୁର କିଲ୍ଲାର କାର୍ଯ୍ୟ

ରବିବାର କଚେରି ବନ୍ଦ । ସକାଳ ଓଳିଟାରେ ନାଜର ବାବୁ ସାହେବଙ୍କ କୋଠିରୁ କାମ ପାଇଟି ସାରି ଆସନ୍ତି । ଉପରଓଳି ବସା କଚେରି ଘରେ ବସି ନରପୁର କିଲ୍ଲାର ପାଞ୍ଜିଆ ମକଦ୍ଦମ ପଧାନମାନଙ୍କ କାଗଜ ହିସାବପତ୍ର ବୁଝାବୁଝି କରନ୍ତି । ଗୁହାରିଆ ରଇତମାନଙ୍କ ମାମଲା ବି ଫଇସଲ ହୁଏ । ଆଜିକା କଚେରିଟା ଭାରି ଭିଡ଼ । ଦଶ ବାରଜଣ ଗୁହାରି କରିବାକୁ ହାଜର । ମଫସଲ ଅମଲାମାନେ ଅନ୍ୟାୟ କରିବାରୁ ସେମାନଙ୍କ ନାମରେ ଫେରାଦ କରିବାକୁ ଆସିଛନ୍ତି । ଚାରିଜଣ ପାଇକ ଅମଲାମାନଙ୍କ ଶଠି ଧରି ଉପସ୍ଥିତ । ନାଜର ବାବୁ ମହାମପୁର ମକଦ୍ଦମ ମଦନ ମହାନ୍ତିର ରିପୋର୍ଟ ଖଣ୍ଡ ଭୁନ ଭୁନ ପାଠ କରି ପଚାରିଲେ—ଖିମା ସାମଲ ହାଜର ? ଖିମା ସାମଲ ହାଜର । ପିଆଦା ଡାକ ଦେବାରୁ ଗୋଟାଏ ଲୋକ ବେକରେ ପଟକା ପକାଇ ଲମ୍ବ ହୋଇ ଗୋଡ଼ ତଳେ ପଡ଼ିଗଲା ।

ନାଜର ବାବୁ ହୁକୁମ କଲେ—"ବେ ! ତୋର କଥା କଣ ଅଛି କହ, ଶୋଇ ପଡ଼ିଲୁ ଯେ !" ସାମଲ ସେହିପରି ପଡ଼ି ରହି କହିଲା—"ଆଜ୍ଞା ଗୁହାରି ଶୁଣନ୍ତୁ । ମୋର ଛ ପରାଣୀ କୁଟୁମ୍ବ ଭାସିଗଲେ ଆପଣ ମୋ ବେକରେ ଛୁରି ମାରନ୍ତୁ, ନଚେତ କଣିକାଏ ବିଷ ଦେଉନ୍ତୁ, ଖାଇ ଏଇଠି ମରିବି ।"

ନାଜର ବାବୁ ବେ ! ମରିବାକୁ ମନ ଥିଲେ ପଦାକୁ ଯାଇ ମର ଯା । ତୋ କଥା କଣ କହ ।

ସାମଲ—ଆଜ୍ଞା ଧର୍ମ ଅବତାର ! ବିଚାର କରନ୍ତୁ, ଗାଁତଳ କଆଗଡ଼ିଆର ଚକରେ ମୋର ସାତମାଣ ଜମି, ସାତ ପୁରୁଷରୁ ଦଖଲ । ମକଦମ ଗାଁର ଶାମ ସାଉ ମହାଜନ ପାଖରୁ ଶହେ ଟଙ୍କା ଲାଞ୍ଚ ଖାଇ ମୋ ଜମି ତାକୁ ଦେଉଛନ୍ତି । ଧର୍ମ ଅବତାର ! ମୁଁ ବେକରେ ଦଉଡ଼ି ଦେବି ।

ନାଜର—କାହିଁ, ମକଦମ ତ ଲେଖିଛି, ଅଶୀ ଟଙ୍କା, ଶଳା ମିଛୁଆ !

ସାମଲ—ଆଜ୍ଞା ମୁଁ ଯୁଗଲକିଶୋର ଧଣ୍ଡା ଧରି କହିବି, ଶହେ ଟଙ୍କା !

ନାଜର—ଆଚ୍ଛା, ସେ କଥା ବୁଝାଯିବ । ପିଆଦା ! ଏ ଲୋକଟାକୁ ବାହାର କରି ଦିଅ । ସାମଲ କାନ୍ଦି କାନ୍ଦି ଉଠିଗଲା ।

ପିଆଦା ଡାକିଲା—ଗୁହାରିଆ ହାଜର ! ଏକା-ବେଳକେ ପାଞ୍ଚ ଛ'ଟା ଲୋକ ଗୋଡ଼ତଳେ ପଡ଼ିଗଲେ । ନାଜରବାବୁ ଭାରି ଖପାଟାଏ ହୋଇ କହିଲେ— 'ଶଳାଙ୍କର ସବୁଥିରେ ମେଳ, ଏକ ବିଚାର !' ଗୋଟାଏ ପିଆଦା ବୁଝାଇ ଦେଲା, "ଅରେ; ଯାହା ଜଣାଇବାର ଅଛି, ଜଣ ଜଣ କରି କହ ।"

ବାଉରି ବାରିକ ଆଜ୍ଞା, ମୋ ଖଜଣା କଳାଜଳ ମିଶି ବରଷକୁ ଛଟଙ୍କା ନ ଅଣା ଦି ପଇସା, ସାନ୍ତ ଅମଲରୁ ଏତିକି ଦେଇ ଆସୁଥିଲି । ହାଲକୁ ଆପଣଙ୍କ ପାଞ୍ଜିଆ କେତେ ରକମ ଖର୍ଚ୍ଚା ଭିଡ଼ି ଦେଇ ଆଠ ଟଙ୍କା ଆଠଅଣା କଲେ, ତାହା ବି ଦେଲି । ଆହୁରି କହୁଛନ୍ତି—ଦି ଟଙ୍କା ଛ' ଅଣା ବାକି । ପ୍ରଭୁ ! ମୋ ପିଲା ବାଳକ ଲଗିଲେ, ମୁଁ ଦେଶରୁ ଯାଉଛି, ଟଙ୍କା କାହୁଁ ପାଇବି ?

ନାଜର ବାବୁ—ହଁ, ତୋ କୁଟୁମ୍ବ ପୋଷିବୁ ନାହିଁ ତ ଆଉ କଣ ! ଆଚ୍ଛା କେତେ ଟଙ୍କା ଦେଇଛୁ ପାଉତି ଦେଖା ।

ବାରିକ—ଆଜ୍ଞା ୯ଜଣା ନେଇ ମତେ ପାଉତି ଦେଲେ ନାହିଁ । ସେ ହାକିମ, ଯେତେ ମାଗିଲି ଦେଲେ ନାହିଁ, ମୁଁ କ'ଣ କରିବି ?

ନାଜର ବାବୁ - ସେ ମେଳିଆ ରଙ୍ଗାଧରିଆ ବୁଢ଼ା ତତେ ପଠାଇଛି ପରା, ଆଚ୍ଛା ଆଚ୍ଛା, ତୁ ଯା, ମଫସଲ ଗସ୍ତକୁ ଗଲେ ତୋ କଥା ବୁଝାଯିବ । ସେ ପାଖ ଲୋକଟା କିଏ ବେ ! ତୋର କି ନାଲିଶ ?

ମଦନା ସାହୁ—ଆଜ୍ଞା, ମୁଁ ସବୁଦିନେ ସରକାରୀ ଖମାରରୁ ଧାନ କରଜ ଖାଏଁ, ମୋ ଉପରେ ପଚିଶି ଗଉଣି ବାକି ନାହିଁ, ମୂଳ କଳନ୍ତର ସବୁ ଶୁଝିଛି । ଏ ବରଷ ଧାନଘରିଆ କରଜ ଦେଉନାହିଁ—କହିଲା, ସବୁ ଧାନ ବିକା ସରିଲାଣି । ଧର୍ମାବତାର ! ମତେ ଭରଣେ ଧାନ କରଜ ନ ଦେଲେ ପାଞ୍ଚ ପରାଣୀ ଠୋ ଠୋ ମରିଯିବେ ।

ନାଜର ବାବୁ – ପୁରୁଣା ଅମଲ ରଇତ ସମସ୍ତଙ୍କର ଏକ ବିଚାର ! ସରକାରୀ ଧାନ ସବୁ କରଜ ବାହାନାରେ ନେଇ ତୋସରପ କରି ଦେଲେଣି । ତୋ ସାନ୍ତ ପରି ମୋତେ—ନରୁ ବାବୁ କୋଠଘରକୁ ନଜର ପଡ଼ିବାରୁ ତୁନି ହୋଇ ଗଲେ । କହିଲେ, ମୋ ଭଣଜାମାନେ ପିଲା, ମୁଁ ଜଗି କାମ କରାଇବି ନାହିଁ ପରା ?

ଆହୁରି ବି ଦଶ ବାର ଜଣ ଗୁହାରିଆ ପ୍ରଜା ଥିଲେ ନାଜର ବାବୁଙ୍କ ବଗୁରର ହାଲ ଦେଖି ଡରରେ ଛୁନ୍-ଛୁଟ୍ ପଳାଇ ଗଲେଣି ।

କରୁଣା କହିବାରୁ ଜଣାଗଲା, ନାଜର ବାବୁଙ୍କ ବଗୁର ହାଲ ଶୁଣି ନରୁ ବାବୁଙ୍କ ମୁହଁ ଶୁଖିଗଲା, ଦୁଇ ଆଖି ଲୁହରେ ଛଳଛଳ ହେଉଥାଏ ।

ନାଜର ବାବୁଙ୍କ ମିଜାଜଟା ସବୁଦିନେ କଡ଼ା, ପୁଣି ନାଜରିଗିରି କର୍ମରେ ନାନାପ୍ରକାର ବିରକ୍ତିଜନକ କର୍ମ କରିବା ଯୋଗୁଁ ଆହୁରି ବି ବେଶି କଡ଼ା ହୋଇ ଗଲେଣି । ତଥାପି ସେ ପ୍ରଜାମାନଙ୍କ ସଙ୍ଗରେ ଆଗେ ମଧୁର କଥା କହୁଥିଲେ । ବୁଢିଆ ନାଜର ଭଲ ଜାଣନ୍ତି, ପ୍ରଜା କାଉପଲ – ଉଚ୍ଛୁଳିଲେ ମୁଠାକୁ ଆସିବା ମୁସ୍କିଲ । ହେଲେ ଆଜକୁ ପାଞ୍ଚ ଛ' ମାସ ହେଲା ମଫସଲ କର୍ମଚାରୀମାନଙ୍କୁ ପୁଲନ୍ଦା ଚିଠିରେ ବାରମ୍ବାର ଲେଖୁଛନ୍ତି, କୌଣସି କଥାକୁ ନ ଅନାଇ ଯେ ଉପାୟରେ ହେଉ ଟଙ୍କା ଅସୁଲ କରି, ଟଙ୍କା ଭାରି ଜରୁର ଦରକାର । ଅମଲାମାନେ ବାବୁଙ୍କୁ ଖୁସି କରିବା ପାଇଁ କାମରେ ଲାଗିଛନ୍ତି ।

———

-୪୭-

## ମୁଁ ତୁମକୁ ରାଣୀ ବନାଇବି

ଦିନଯାକ କାମ କରି କରି ନାଜର ବାବୁ ଥକି ପଡ଼ିଥାନ୍ତି । କଚେରିବାହୁଡ଼ା ଗୋଡ଼ହାତ ଧୋଇ ଜଳଖିଆ କରିବା ଆଗରୁ ବିଶାଖା ଦେଈ ଗୋଟାଏ ସାନ କାଚ ଗ୍ଲାସରେ ଗୋଟାଏ ଇଂରେଜୀ ଲାଲ ରଙ୍ଗ ଔଷଧ ଆଣି ହାତକୁ ବଢ଼ାଇ ଦିଅନ୍ତି । ନାଜରବାବୁ ସେ ଔଷଧର ନାମ ଦେଇଥିଲେ ଦିଲଖୋସ୍ । ଡାକି ଦିଅନ୍ତି—ଦିଲଖୋସ୍ ଆଣ ତ ଗୋ । ସେହି ଔଷଧଟି ସେବା କରିଦେଲେ ସବୁ କଥା ମେଣ୍ଟିଯାଏ, ବାବୁଙ୍କର ଏଇଟା ଖୁସି ମିଜାଜର ବେଳ, ବଜାର ବୁଲି ବାହାରିବା ଆଗୁଁ ସାଆନ୍ତାଣୀ ସଙ୍ଗରେ ଘଣ୍ଟାଏ ଖଣ୍ଡେ ପ୍ରେମାଳାପ କରିଥାନ୍ତି । ଏଇଟା ହେଉଛି ଘର କଥା, ସୁଖ ଦୁଃଖ କଥା କହିବାର ବେଳ । ଦିନେ କଚେରିରୁ କିଛି ବେଶି ରୋଜଗାର ହୋଇଥିଲା—ସଞ୍ଜବେଳେ ଔଷଧଟା ବି ଭଲ ଧରିଛି । ଆଜି ବାବୁଙ୍କ ମନ ଭାରି ଖୁସି, କାହିଁ କିଛି କଥା ନାହିଁ, ଟାଉ କରି କହି ବସିଲେ—ଦେଖ ମୁଁ ତୁମକୁ ରାଣୀ ବନାଇ ଦେବି ।

ବିଶାଖା ଦେଈ—ମୁଁ ତ ରାଣୀ ହୋଇଛି ।

ନାଜର ବାବୁ ଠୋ ଠୋ କରି ହସି ପକାଇ କହିଲେ, "ମଲା ମଲା ! ତୁମେ ପୁଣି କେବେ ରାଣୀ ହୋଇଗଲ ?"

ବିଶାଖା—କିଆଁ, ବୋଉ ଆଉ ଚିହ୍ନା ଦୁହେଁ ମତେ ରାଣୀ ବୋଲି ଡାକନ୍ତି । ଆଉ ସେଇ ଯେ ବୁଢ଼ୀଟା ସକାଳେ ଗୁଡ଼ଲ ମାଗିବାକୁ ଆସେ, ସେ ବି ରାଣୀ ବୋଲି ଡାକେ—ଆଉ କଣ ?

ନାଜର ବାବୁ ନାହିଁ ନାହିଁ, ସେଟା କିଛି କଥା ନୁହେ, ମୁଁ ତୁମକୁ ଠିକ ରାଣୀ ବନାଇ ଦେବି ।

ବିଶାଖା - ତେବେ ବନାଇ ଦିଅ, ଜଲଦି ବନାଇ ଦିଅ, ଆଜି ବନାଇ ଦିଅ ।

ନାଜର ବାବୁ - ସେ କଣ ସହଜ କଥା, ଢେର ଫିକର ଅଛି, ଢେର ଟଙ୍କା ଦରକାର, ମୁଁ ଯାହା କହୁଛି ଶୁଣ । ଖବରଦାର ! କଥା ପେଟରେ ରଖିବ, ଫାସିଆଗଲେ ସବୁ କଥା ଭଣ୍ଡୁର ହୋଇଯିବ । ଦେଖ, ନରିପୁର କିଲ୍ଲାଟା ହାତରେ ନ ପଡ଼ିଲେ ତୁମେ ରାଣୀ ହୋଇପାରିବ ନାହିଁ ।

ବିଶାଖା—କିଆଁ, ନରିପୁର ତ ଆମର, ଆମର ଖଜଣା ଟଙ୍କା ଘରକୁ ଆସୁଛି, କେତେ ଜିନିଷ ପତ୍ର ଆସୁଛି, ଆଉ କଣ ?

ନାଜର ବାବୁ—ନାହିଁ ନାହିଁ, ଆମେ ମାଲିକ ନୋହୁଁ, ମାଲିକ ନରୁ ବାବୁ—ଆମ ଜିମାରେ ଅଛି ।

ଢଣାଖା ମ, ମ ! ତୁମେ ହାକିମ, ତୁମେ ମାଲିକ ହେବ ନାହିଁ, ଏ ପିଲା ଖଣ୍ଡ ମାଲିକ ହେବ ପରା ?

ନାଜର - ନାହିଁ ନାହିଁ, ଉଚ୍ଚୁଣି ସେ ମାଲିକ ସତ, ତାର ଗୋଟାଏ ଫିକର ଅଛି, ଆମେ ମାଲିକ ହେବା । ଏଥର ନାଟବନ୍ଦୀରେ ଟଙ୍କା ସରକାରକୁ ଦେବାନାହିଁ । କିଲ୍ଲା ନିଲାମ ହୋଇଯିବ । ବେନାମିରେ ବଇସୁଲତାନ କିଣି ପକାଇବା ! ଢେର ଟଙ୍କା ଲୋଡ଼ା, ଗୋଟାଏ କୁଣ୍ଡି ମହାଜନ ଘଟଣା କରିଛି । ଏଇଥର ସବୁ ଠିକ୍ ହୋଇଯିବ ।

ଢଣାଖା ଦେଈ କଥାର ଅର୍ଥକିଛି ବୁଝି ପାରିଲେ ନାହିଁ, ବକ ବକ କରି ମୁହଁକୁ ଅନାଇଥାନ୍ତି । କହିଲେ, "ନାହିଁ ନାହିଁ, ତୁମେ ମାଲିକ ହେବ, ଏ ମାଙ୍କଡ଼ ପିଲାଖଣ୍ଡ କଣ ହେବ ? ମୋ ପାଖରେ ପାଞ୍ଚ କୋଡ଼ି ଦଶ କୋଡ଼ି ଟଙ୍କା ଅଛି,ସବୁ ଦେବି, ତୁମେ ସାଇବଙ୍କୁ ଦେଇ ମାଲିକ ହୋଇଆସ—ମତେ ରାଣୀ ବନାଇ ଦିଅ ।"

ନାଜର ବାବୁ ହସିଲେ—ଆଉ କିଛି କହିଲେ ନାହିଁ । ବୁଲି ବାହାରିବାକୁ ମାଲାଝୁଲି ହାତରେ ଧରିଲେ ।

— ——

-୪୮-

## ନରୁବାବୁର ସ୍ଥାନ ତ୍ୟାଗ

ରାତି ଦଶ ବାଜେ ବାଜେ—ରାଘବ ମହାନ୍ତିଏ ବଜାରରୁ ବୁଲି ଆସି ଗୁମକରି ନରୁ ବାବୁ ପାଖରେ ଖଟ ଉପରେ ବସିଲେ । "ଜଣେଜା ବାବୁ" ଡାକଟାଏ ଦେଇ ଏଣୁ ତେଣୁ କଣ ଗୁଡ଼ାଏ କହୁଥାନ୍ତି । କିତାପ ଗୁଡ଼ାକ ଟାଣି ଓଟାରି ବୁଣି ପକାଇଲେ । ତାଙ୍କ ଦେହର ମୁଖରୁ ଗୋଟାଏ ଖରା ଦୁର୍ଗନ୍ଧ ବାହାରୁଥାଏ । ନରୁ-ବାବୁ କୁଞ୍ଚ କାନିର ମେଞ୍ଚାଏ ଲୁଗା ନାକରେ ଜାକି ଧରିଲେ, ନୋହିଲେ କେଜାଣି ବାନ୍ତି କରି ପକାଇ-ଥାନ୍ତେ । ପଢ଼ୁଥିଲେ—କିତାପ ଖଣ୍ଡେ ଏକପାଖିଆ ଫୋପାଡ଼ି ଦେଲେ । ସେ ଏହିପରି ଅନେକ ଥର ସହି-ଲେଣି—ହେଲେ ଆଜିକା କଥାଟା ବଳି ପଡ଼ିଲାଣି । କହିଲେ,"ତୁମେ ରୋଜ ରୋଜ ବଜାରରୁ କଣ ଗୁଡ଼ାଏ ଖାଇ ଆସ, ମୁହଁରୁ ଦୁର୍ଗନ୍ଧ ବାହାରୁଛି, ବାପ୍ଲା ପରି କଥା କହ—କାଲି ସକାଳେ ମୁଁ ମାମୁଙ୍କୁ ଏହି ସବୁ କଥା କହିବି ।" ରାଘବ ମହାନ୍ତି ନରୁବାବୁ ପାଖରୁ ଉଠିଯାଇ ଲଠ କରି ଆପଣା ବିଛଣାରେ ଶୋଇ ପଡ଼ିଲେ । ମନ ମଧ୍ୟରେ କେମନ୍ତ ଗୋଟାଏ ଡର ପଶିଗଲା । ମହୁଆଲି-ମନଙ୍କ ମନରେ ଡର ପଶିଲେ ଖରି ଗୁନିଆ ହୋଇ ପଡ଼ନ୍ତି,ଖାଲି ସେହି କଥାଟା ମନରେ ଘାଣ୍ଟି ହେଉଥାଏ । ଉପରେ ନିଦ ମାଡ଼ୁନାହିଁ, ମଲାଟା ପରି ପଡ଼ିଛନ୍ତି । କେବଳ ଏହି ଚିନ୍ତା—ନରୁ ନିଶ୍ଚେ କାଲି ସକାଳେ ଭଣେଇ ସାନ୍ତଙ୍କ ଆଗରେ କହିବ । ସେ କଣ ବାକି ରଖିବେ—ନିଶ୍ଚୟ ଘରୁ କାଢି ଦେବେ, ଗାଁକୁ ବାହୁଡ଼ି ଯିବି ସିନା, କଟକ ମଜା ତ ଆଉ ମିଳିବ ନାହିଁ । ଏହିପରି ଚିନ୍ତା କରୁ କରୁ କେତେବେଳେ ନିଦ ମାଡ଼ି-ଗଲାଣି । ନିଦ ଭାଙ୍ଗିବାକୁ ଦିନ ଘଡ଼ିଏ । ପ୍ରଭୁଦୟାଲ ସକାଳୁ ଆସି ଦୋସ୍ତକୁ ଅପେକ୍ଷା କରୁଛି—ଡାକି ପାରୁ ନାହିଁ, ବାହାରୁ ତୁଣ୍ଡି ଶୁଣାଉଛି । ରାଘବଙ୍କ ନିଦ ଭାଙ୍ଗିବା ମାତ୍ରକେ ଦୋସ୍ତଙ୍କ ତୁଣ୍ଡି ଶୁଣିଲେ । ମୁଣ୍ଡଟା ବଡ଼ ଭାରି—ଦେହଟା ଉଠୁନାହିଁ । ପୁଣି ସେହି ଚିନ୍ତା, ଉଠିବାକୁ ମନ, ଉଠି ପାରୁ ନାହାନ୍ତି । ପୁଣି ପ୍ରଭୁ ଦୟାଲଙ୍କ ତୁଣ୍ଡି ଶୁଭିଲା, ହଠାତ୍ ମନରେ ପଡ଼ିଗଲା—ଦୋସ୍ତ ଗୋଟାଏ ଭାରି ବୁଦ୍ଧିଆ ଲୋକ, ସେ କିଛି ଉପାୟ କାଢିବ । ମନରେ ଭାରି ଗୋଟାଏ ବଳ ଆସି-ଗଲା । ବିଛଣାରୁ ଉଠି ସଳଖେ ସଳଖେ ଦୋସ୍ତପାଖକୁ ଚାଲିଗଲେ । ନିରୋଳାରେ ବସି ଦୁଇ ଜଣଙ୍କ ଭିତରେ ଢେର ପରାମର୍ଶ ଚାଲିଲା । ରାଘବ ମହାନ୍ତିଙ୍କ ମନ ଭାରି

ଖୁସି । ପ୍ରଭୁ ଦୟାଲ୍ କହିଲେ, "ଯାଅ, ମୁଁ ଯେତେକଥା କହିଲି, ସବୁ କଥା ଠିକ ସେହି ରକମ କାନ୍ଦି କାନ୍ଦି କହିବ, କିଛି କଥା ଛାଡ଼ିବ ନାହିଁ ।"

ରାଘବ ମହାନ୍ତି ସକେଇ କାନ୍ଦୁଛନ୍ତି, ଭିତରେ ଏକାବେଳକେ ଉପସ୍ଥିତ । "ଉଁ—ଉଁ—ଉଁ, ଅପା ଶୁଣ! ନରୁ ମତେ ଢେର ଗାଳି ଦେଲା ।" ଅପା ପଚାରିଲେ—"କଣ ଗାଳି ଦେଲା ରେ ? ମତେ କହ -ବୁଝିବି, ତୁ କାନ୍ଦ ନା, କାନ୍ଦ ନା ।"

ରାଘବ ମହାନ୍ତି କହିଲେ—ନରୁ ମତେ କହିଲା, ଶଳା ଅଇଣ୍ଠାଖିଆ ପୋଇଲା । ମୋ ମାମୁଘରେ ପଶିଛୁ, ଆଜି ମାମୁ ପାଖରେ କହି ଘରୁ ଦୂର କରାଇବି ।

ବିଶାଖା ଦେଈ ଭାରି ଗୋଟାଏ ଗର୍ଜନ କରି ପଚାରିଲେ, "ତତେ କାଁ ଗାଳି ଦେଲା ରେ ? ସେଟା ଗାଳି ଦେବାକୁ କିଏ ? କାନ୍ଦ ନା, କାନ୍ଦ ନା ।"

ରାଘବ ସକେଇ ସକେଇ କହିଲେ, "ନରୁ ସଞ୍ଜରୁ ଅଧ ରାତିଯାଏ ରୋଜରୋଜ ବଜାର ବୁଲି ଯାଏ—ତୁମେ ତ ଉଆସ ଭିତରେ, କିମିତି ଜାଣିବ ? ବଜାରରୁ କଣ ନିଶା ଗୁଡ଼ାଏ ଖାଇ ଆସେ, ତା ମୁହଁ ଗନ୍ଧାଉଥାଏ । ମୁଁ କହିଲି 'ନରୁ ବାବୁ, କଟକ ଆସିଛ, ପାଠ ପଢ଼ - ବଜାର ବୁଲ କ'ଣ ?' ଆଉ ଗୋଟାଏ କଥା ଶୁଣିଛ, ତୁମେ ଯେ ରୋଜ ରୋଜ ଏତେ ସଜ କରି ପୁରି ତରକାରି ପଠାଅ, ସେ ସବୁ ଭଣ୍ଡାରି ଖାଏ, ନରୁ ଖାଲି ବଜାରରୁ ନିଶା ଖାଇ ଆସି ଶୋଇ ପଡ଼େ । ଗୁରୁବାର ଓଷା ଦିନ ରାତିରେ ତୁମେ କେତେ ମେହନତ କରି ପୁରି ପିଠା ବନାଇ ପଠାଇଲ, ସେଗୁଡ଼ିକ କେଡ଼େ ସୁନ୍ଦର ଲାଗୁଥିଲା, ମୁଁ ପୋଛିପାଛି ଖାଇଲି—ନରୁ ଗୋଡ଼ରେ ଫୋପାଡ଼ି ଦେଲା, କହିଲା, ତାଙ୍କ ଘରେ ମୋଗଲମାନେ ତା'ଠାରୁ ଭଲ ରାନ୍ଧି ଜାଣନ୍ତି ।" ଏହି କଥାଟା କହି ରାଘବ ମନ ମଧ୍ୟରେ ଭାରି ଖୁସିଟାଏ ହେଲେ । କାରଣ, ଏ କଥା ଦୋସ୍ତ ଶିଖାଇ ନାହାନ୍ତି, ଆପେ ବୁଦ୍ଧିବଳରେ କହିଲେ ।

ମଙ୍ଗଳା ଦେଈ ଶୁଣି ଧାଇଁ ଆଇଲେ, କାନ୍ଦି କାନ୍ଦି ପଣନ୍ତ କାନରେ ପୁଅ ମୁହଁଟି ପୋଛି କହିଲେ, "ଶୁଣ ତ ମା ବଡ଼ି, ଶୁଣ ତ ! ମାଙ୍କର ଖଣ୍ଡକୁ ଗୁପୁଡ଼ାଏ ମାଇଲେ କେଉଁଠି ଚଢ଼ିବ, ତୋ ଭାଇ ପିଲାଟାକୁ କେତେ ଗାଳିଦେଲା ! ସକାଳେ ଗାଳି ଦେଉଥାଏ, ମୁଁ ଦୁଆରବନ୍ଧ ପାଖରେ ଛିଡ଼ା ହୋଇ ଶୁଣୁଥାଏଁ, ମନରେ କଲି ଆଉ କାହାକୁ ଗାଳି ଦେଉଛି । ରାଘୋକୁ ଗାଳି ଦେଉଛି ଜାଣିଥିଲେ ଧାଇଁ ଆସି ତତେ ଡାକି ନେଇ ଶୁଣାଇଥାନ୍ତି ।"

ରାଘବ କହିଲେ—ନାହିଁ ନାହିଁ, ଆଜି ସକାଳେ ଗାଳି ଦେଇ ନାହିଁ, କାଲି ରାତିରେ ।

ମଙ୍ଗଳା ଦେଈ—ହଁ ହଁ, କାଲି ରାତିରେ କବାଟ କିଳି ଦେବାକୁ ଯାଇଥିଲି, ଶୁଣିଲି ।

ବିଶାଖା ଦେଈ ରାଗରେ କମ୍ପୁଛନ୍ତି, ଡାକିବାପାଇଁ କାହାକୁ ପଠାଇବାକୁ ତର ସହିଲା ନାହିଁ, ଆପେ ଧାଇଁଲେ । ଭିତର ପ୍ରସ୍ତରୁ ବାହାରିବା ଦୁଆରବନ୍ଧଟା ଠିକଏ ନୁଆଣ ଥାଇକରି ମୁଣ୍ଡରେ ବାଜିଲା, ଓଲଟି ପଡ଼ୁ ପଡ଼ୁ ବସିଗଲେ—ମୁଣ୍ଡଟା ବେଙ୍ଗପରି ଫୁଲିଗଲା । ଡେବିରି ହାତରେ ଅଇଁସି ହେଉଥାନ୍ତି, ମୁଣ୍ଡଟା ଭାରି ପୋଡ଼ୁଛି, ଏଣେ ପୋଡ଼ୁଛି ମନ । ଦଣ୍ଡକ ବାଦ ଛିଡ଼ା ହେଲେ, ଦୁଆରବନ୍ଧରେ ଗୋଟାଏ ଗୋଡ଼—ଦୁଇ ହାତରେ ଦୁଆରବନ୍ଧ ଉପରଟା ଧରି ଗର୍ଜନ କରି ଡାକିଲେ, "ନରୁ, ନରୁ, ଏ ନରୁ !" ସେ ଭୟଙ୍କର ଶବ୍ଦ ଶୁଣି ନରୁ ବାବୁଙ୍କର ହଁସା ଉଡ଼ିଗଲାଣି । ଚଟଶାଳୀ ପିଲା ବେତହାତିଆ ଅବଧାନ ଆଗରେ ଛିଡ଼ାହୋଇ ଯେମନ୍ତ ଥରୁଥାଏ, ମାଈଁଙ୍କ ଆଗରେ ଛିଡ଼ା ହୋଇ ନରୁ ବାବୁ ସେହିପରି ଥରୁଛନ୍ତି । ଭୟରେ, ଅପମାନରେ ତାଙ୍କ ତଣ୍ଟି ଶୁଖିଗଲାଣି ।

ମାଉଁ ଗର୍ଜନ କରି କହିଲେ—"ହଁ ରେ ନରୁ ! ବାପା କଏ, ମାମୁଁ କଏ, ତୁ ପିଲାଖଣ୍ଡ ମାମୁଁକୁ ଗାଳି ଦେବୁ – ଶଳା,ଅଇଁଠାଖିଆ ? ଅଇଁଠାଖିଆ କଏ ରେ ? କଏ କାହାର ଘରେ ପଶିଛୁ ରେ ? ସଇଜଣା ମମୁଁ ଦୟାକରି ରଖି ନ ଥିଲେ କୁଆଡେ ଉଡ଼ି ପୋଡ଼ି ଯା'ନ୍ତାଣି !"

ମଙ୍ଗଳା ଦେଈ କହିଲେ—ଏ କଳିକାଳ ପରା, ଏ କାଳରେ ପରର ଉପକାର କରିବାକୁ ନାହିଁ !

ମାଉଁ ଆଜ ଗାଳି ଦେଇ ଚାଲି ଗଲେଣି । ନରୁ-ବାବୁ କାଠପିତୁଳାଟି ପରି ଛିଡ଼ା ହୋଇଛନ୍ତି, ଚାରି-ଆଡ଼ ଅନ୍ଧାର ଦିଶୁଛି, ଦୁଇ ଆଖିରୁ ଝରଝର କରି ଦୁଇଟା ଧାର ବହି ଯାଉଛି । ସରି ଟି ଦେଈ ! ଶୋକସନ୍ତପ୍ତା ମା ମଣିମା ! ଆସ ଥରେ ଦେଖିଯାଅ, ତୁମ୍ଭମାନଙ୍କ ନେହପିତୁଳି, ହୃଦପୁର ଧନ, ଆଶା ଭରସାର ସ୍ଥଳ; ନରୁ କପରି ଅବସ୍ଥାରେ ବର୍ତ୍ତମାନ ଛିଡ଼ା ହୋଇଛି !

ନରୁବାବୁ କେତେ ବେଳଯାଏ ଏହିପରି ଛିଡ଼ା ହୋଇ ରହନ୍ତେ କେଜାଣି, ଟିକିଏ ପେଲିଦେଲେ ପଡ଼ିଯିବେ ପରା । ତାଙ୍କର ଯେ ଜ୍ଞାନ ଅଛି, ଏପରି ଜଣା ଯାଉନାହିଁ । ଠିକ ସେତିକିବେଳେ ଚମ୍ପକଳା ପହଞ୍ଚିଗଲା, ନରୁବାବୁଙ୍କୁ ଦେଖିଲା, ସବୁ କଥା ଶୁଣିଲା । ଚମ୍ପକଳା ସବୁଦିନେ ନରୁବାବୁଙ୍କୁ ମନ ମଧ୍ୟରେ ବଡ଼ ଭଲପାଏ, ସ୍ନେହ କରେ । ହେଲେ ସାନ୍ତାଣୀ ଉପରେ ପାଟି ପଶିପାରେ ନାହିଁ । ଥରେ ଦି'ଥର ବଡ଼ ଦେଖିଛି, ସେ ନରୁବାବୁଙ୍କୁ ଭଲ ପାଇବା କଥା କହିଲେ ସାନ୍ତାଣୀ ଗର ଗର ହୁଅନ୍ତି । ଆଜ ସେ ରାଘବ ମହାନ୍ତିକୁ ଗୋଟିଏ ଗାଞ୍ଜିଲାଭୂତ ବୋଲି ମଣେ, କେବଳ ସାନ୍ତାଣୀ ଉପରେ 'ଭଇସାନ୍ତ' ଏହିପରି ମନଭେଳା କଥାଗୁଡ଼ାଏ କହେ । ନରୁ ବାବୁଙ୍କ ବାହୁ ଧରି ଟାଣି କହିଲା, "ନାହିଁ ବାବୁ ! ନାହିଁ ବାବୁ ? ମାଉଁ ଖପା ହୋଇ କଣ କଥାଟାଏ କହି ପକାଇଲେ, ସେ କିଛି ନୁହେଁ । ଉଛୁଣି ମାଉଁ ସାନ୍ତାଣୀ ଫେର ଭଲ ପାଇବେ ଯେ ।" ମନ ମଧ୍ୟରେ କହୁଥାଏ, ଦୁଷ୍ଟ ଆଣୀଟା କଣ ଦେବତା ପୁଅକୁ ଚହ୍ନିବ । ବାହୁ ଧରି ଟେକି-ଯାଇ ତାଙ୍କ ବସା ଭିତରେ ଛାଡ଼ିଦେଇ ଆସିଲା । ଦୈବଯୋଗରେ କରୁଣା ସେତେବେଳେ ବଜାରକୁ ଯାଇଛି । ଘରେ ବସିବେ କଣ, ବାହାରକୁ ବାହାରି ପଡ଼ିଲେ । ସଦର ଦୁଆର ପାଖରେ ରାଘବ ଆଉ ଭଗତ ଦୁଇ ଜଣ ଛିଡ଼ା ହୋଇ ଖୁବ୍ ହସାହସି କରୁଛନ୍ତି; ଉଛୁଣି ଯେ ତାଙ୍କର ଜିତାପଟ । ନରୁବାବୁ ଆଉ ରାଘବ ଦୁଇ ଜଣଙ୍କର ଚାରିଚକ୍ଷୁ ହୋଇଗଲା । ମହାନ୍ତିଏ ତ ପ୍ରେମରେ ଗଦଗଦ । ନରୁବାବୁ ବାଡଟା ପାଖରୁ ଉପରେ ଚଳାଇ ଆସିଲା ପରି ଏକାବେଳକେ ଚଞ୍ଚଳ ଚାଲିଆସି ସଡ଼କରେ ଦାଖଲ । ମୁଣ୍ଡପୋତି ସଡ଼କରେ ଚାଲିଛନ୍ତି, କାହାରି ମୁହଁକୁ ଲାଜରେ ଅନାଇ ପାରୁ ନାହାନ୍ତି, ମନରେ କରୁଛନ୍ତି ମାଉଁଙ୍କ ଗାଳିଦେବାଟା ସମସ୍ତେ ଶୁଣିଛନ୍ତି ପରା ! ମୁଣ୍ଡପୋତି ଚାଲିଛନ୍ତି ତ ଚାଲିଛନ୍ତି । ଲୋକଟାଏ ତେଲ ମାଖି ନଈ ବନ୍ଧ ଉପରେ ବସି ଦାନ୍ତ ଘଷୁଛି, ନଈକୁ ଗାଧୋଇ ଯିବ ପରା – ନରୁ ବାବୁ ତ ପାଖ ଦେଇ ଚାଲିଛନ୍ତି—ବାଟକୁ ନଜର ନାହିଁ, ସଳଖେ ସଳଖେ ଚାଲିଛନ୍ତି । ସେ ଲୋକ ଦେଖିଲା— ଆଉ ଦୁଇ ପାହୁଣ୍ଡ ଆଗକୁ ଗୋଡ଼ ବଢ଼ାଇଲେ କାଠ-ଯୋଡ଼ ନଈ ପଥରବନ୍ଧ ତଳେ କଚାଡ଼ି ହୋଇ ପଡ଼ିବେ । ଖୁବ୍ ପାଟିଟାଏ କରି ଡାକ ଦେଲା - ଏ ପିଲା ବାବୁ ! ଡାକ ଶୁଣି ନରୁବାବୁ ଗୁମ କରି ଛିଡ଼ା ହୋଇଗଲେ, ଦେଖିଲେ, ଆଗରେ ବନ୍ଧତଳ, ଯିବାର ବାଟ ନାହିଁ - ଟିକିଏ ଛିଡ଼ା ହୋଇ ପଛକୁ ଫେରିଲେ, ନଈକୂଳ ଗୋଟାଏ ବଡ଼ ବରଗଛ ମୂଳରେ ବସିଲେ । ଦୁଇ ଆଣ୍ଠୁ ଉପରେ ମୁହଁଟି ଲଦି ଦେଇ ଧକେଇ ହେଉଛନ୍ତି । ଗୋଟା ଝାଳରେ ଦେହଟା ସରପଟ ହୋଇ ଯାଇଥିଲା । ନଈର ଶୀତଳ ପବନ ଲାଗି ଟିକିଏ ଟିକିଏ ଝାଳ ଶୁଖିଲାଣି । ଜଣେ ବାବୁ ତେଲ ମାଖି ଚାରି ପଟେ ଚଉତା

ଗାମୁଛାଟାଏ କାନ୍ଧରେ ପକାଇ ନଈକୁ ଗାଧୋଇବାକୁ ଚାଲିଛନ୍ତି । ଖଣ୍ଡିଏ ଧୋବ ତଉଲିଆରେ ଗୁଡ଼ିଆ ଗୋଟିଏ ପାଠ ପଥି ଆଉ ଗୋଟିଏ ରେଶମୀକନା ଛତା ତେଉବର କାଖରେ ଯାକି, ଆଉ ଯୋତା ଯୋଡ଼ିଏ ଖାଇଲି ହାତରେ ଧରି ପଛରେ ଗୋଟାଏ ଭଣ୍ଡାରି ଚାଲିଛି । ବାବୁଟି ପଥରବନ୍ଧ ଉପରେ ଛିଡ଼ାହୋଇ ଦେଖିଲେ ପାଖ ବରଗଛ ମୂଳରେ ଗୋଟିଏ ପିଲା ମୁଣ୍ଡ ପୋତି ବସିଛି, କାନ୍ଦୁଥିବା ପରି ଜଣାଯାଏ । ପିଲାଟା ଚହଲା ଚହଲା ପରି ଜଣା ପଡ଼ିଲା । ଧୀରେ ଧୀରେ ପାଖେଇ ପାଖେଇ ଆସିଲେ, ଦଣ୍ଡେଯାଏଁ ଛିଡ଼ା ହୋଇ ଭଲ କରି ଅନାଇଲେ । ପଚାରିଲେ, "ନରୁବାବୁ ନା କିଏ ରେ ?" ନରୁବାବୁ ମୁଣ୍ଡ ଟେକି ଦେଖିଲେ ଆଗରେ ମଉସା ଛିଡ଼ା ହୋଇଛନ୍ତି । ଧଡ଼ଚଡ଼ ହୋଇ ଛିଡ଼ା ହୋଇଗଲେ । ସମ୍ଭାଳି ନ ପାରି ଭୋ କରି ରଡ଼ିଟାଏ କରି ପକାଇଲେ । ମଉସା ଗୋଡ଼ରୁ ମୁଣ୍ଡଯାଏ . ଦଣ୍ଡେ ପର୍ଯ୍ୟନ୍ତ ଦୁଇ ତିନି ଥର ଅନାଇଲେ—କିଛି ପଦେ ବି କଥା କହିଲେ ନାହିଁ । ଆଉ ଗାଧୋଇ ଯିବେ କଣ, ନରୁବାବୁଙ୍କ ହାତ ଧରି ବସାକୁ ବାହୁଡ଼ିଲେ । ନରୁବାବୁଙ୍କ ଦେହରୁ ସେତେବେଳ ଯାଏଁ ଝାଳଟା ମରି ନାହିଁ । ମଉସାଙ୍କ ନିଜ ଗାମୁଛାରେ ନରୁ ବାବୁଙ୍କ ଦେହ ପୋଛାପୋଛି ଆଉ ପଙ୍ଖା କରିବାକୁ ଯୋଡ଼ାଏ ଭଣ୍ଡାରି ଲାଗିଗଲେ । ଆଉ ଗୋଟାଏ ଚାକର ବାସତେଲ ଆଣି ମର୍ଦ୍ଦନ କରି ବସିଲା । ଏଣେ ମଉସା ଦୁଇ ଜଣ ପାଇକ ସାଙ୍ଗରେ ଚାରି ଜଣ ମୂଲିଆ ଆଉ ଆପଣା ଚାକର ଦୁଇ ଜଣ ଦେଇ ବିଶେଷ କରି ବୁଝାଇ ଦେଇ ହୁକୁମ କଲେ, "ନଟବର ଦାସ ବସାରେ ନରୁବାବୁର ଯେତେ କିଛି ଜିନିସ ଅଛି, ଧରି ବାହାରି ଆସ—କରୁଣାକୁ ସାଙ୍ଗରେ ଡାକି ଆଣିବ । ଖବରଦାର ! କାହାରି କଥା ଶୁଣିବ ନାହିଁ, କିଛି ଜିନିସ ଛାଡ଼ିବ ନାହିଁ ।"

———

-୪୯-

## ମାଈଙ୍କ ଅନୁତାପ

ମନୁଷ୍ୟ ରାଗ ମୁଣ୍ଡରେ ଗୋଟାଏ ଖରାପ କାମ କରି ପକାଏ, ରାଗଟା ମେଣ୍ଟି ଗଲେ ସେଥିଲାଗି ସନ୍ତାପି ହୁଏ । ନରୁ ବାବୁ ଚାଲିଯିବାରୁ ବିଶାଖା ଦେଈଙ୍କ ମନରେ ଗୋଟାଏ ଡର ପଶିଲାଣି - କାଁଏ ସେ ପିଲାଟାକୁ ଗାଳି ଦେଲି, ସାନ୍ତ ଆସିଲେ କଣ କହିବେ, ମୋ ଉପରେ ଖପା ହେବେ ପରା ? ମଙ୍ଗଳା ଦେଈ କହିଲେ "କାଁଏ ଏତେ ସନ୍ତାପି ହେଉଛି, କାଁଏ ଏତେ ଡର, ଜୁଆଁଇ ବାବୁ ଆସିଲେ କହିବା, ଆମ୍ଭେମାନେ କିଛି କହିନାହୁଁ, ତୁଚ୍ଛାଟାରେ ନରୁ ଆପେ ଚାଲିଗଲା— ଆହୁରି ଯିବାବେଳେ ମାମୁଁ ମାଈଙ୍କୁ ଦାଣ୍ଡେ ଦାଣ୍ଡେ କେତେ ଗାଳି ଦେଇ ଗଲା ।" ଚନ୍ଦ୍ରକଳା କହିଲା, "ନାହିଁ, ନାହିଁ, ସେପରି କଥା ନୁହେଁ, ତୁମେମାନେ ତୁନି ପଡ଼ିଥାଅ, ସାନ୍ତ ଆସିଲେ ମୁଁ ସବୁକଥା ବୁଝାଇ କହିବି ।"

ରୋଜ ରୋଜ ଯେପରି ଯାନ୍ତି, ସକାଳୁ ଉଠି ନାଜର ବାବୁ ସାହେବଙ୍କ କୋଠିକୁ ଚାଲିଯାଇଛନ୍ତି । ବସାରେ ଯେ ଏତେ କାଣ୍ଡ, ତାଙ୍କୁ କିଛି ଜଣାନାହିଁ । ବେଳ ଦଶ ବାଜିବା ସରିକି ବସାକୁ ବାହୁଡ଼ିଲେ । ଚନ୍ଦ୍ରକଳା ଜଗି ବସିଥିଲା, ସା'ନ୍ତ ଭିତର ଚୌକାଠ ଡେଇଁଛନ୍ତି କି ନାହିଁ, ପାଖକୁ ଧାଇଁଗଲା । ଗୋଟାଏ ଯେମନ୍ତ ଦାରୁଣ ବିପଦ ଉପସ୍ଥିତ । ଭାରି ଗୋଟାଏ ଛୁନିଆ ହେଲା ପରି କହିଲା, "ଶୁଣି ନାହାନ୍ତି ସା'ନ୍ତ ! ସକାଳେ ଆପଣ ଯିମିତି ସାହେବଙ୍କ ପାଖକୁ ବାହାରି ଯାଇଛନ୍ତି, ସେଇ ଯେ ପୋଡ଼ାମୁହାଁ ପେସ୍କାର, ନରୁ ବାବୁ ଯାହାକୁ ମଉସା ବୋଲି କହନ୍ତି, ଦି କୋଡ଼ି କି ଚାରି କୋଡ଼ି ଲୋକ ସାଙ୍ଗରେ ନେଇ ଆସିଲା । ନରୁବାବୁର ଯେତେ ଜିନିସ ଥିଲା, ସବୁ ନେଇ ଗଲା । ନରୁବାବୁ ତା

ସାଙ୍ଗରେ ଚାଲିଗଲେ । ମୁଁ ଆଉ ଆଉ ସାନ୍ତ ଦୁଇ ଜଣ ତାଙ୍କୁ ପେଛେ ନେହୁରା କଲି, କହିଲୁ ଟିକିଏ ମଠ କର, ସା'ନ୍ତ ଆସିଯାଉନ୍ତୁ—ଶୁଣୁଛୁ କିଏ ? ଭାଇ ସା'ନ୍ତ ଆଉ ମୁଁ ଦୁଇଜଣ ଯିମିତି ଚାରିଥିଲୁ ;ଆସିଥାନ୍ତେ କି ଆଠ ଦଶଜଣ, ଗାଲ କାମୁଡ଼ି ପକାଇ ନ ଥାନ୍ତୁ ? ପଣକୁ ପଣ ଲୋକ, କଣ କରିବୁ ? ଦେଖନ୍ତୁ, ସାନ୍ତାଣୀ ଚେତକ-ବେଳୁ ଠାଁ ବସି କାନ୍ଦୁଛନ୍ତି ।'' ମଙ୍ଗଳା ଆଉ ବିଶାଖା ଦେଈ ଦୁଇଜଣ ଚଟା ଉପରେ ଭାରି ଖୁସି । ତାଙ୍କ ଜାଣିବାରେ ଚଟା ପରି ସିଆଣୀ ଆଉ ଭଲ ମଣିଷ ପୃଥିବୀରେ ନାହିଁ ।

ନାଜର ବାବୁ ସବୁ କଥା ଶୁଣି ପ୍ରଥମେ ଭାରି ଖପାଟାଏ ହେଲେ । ତହିଁଉତ୍ତାରେ ମନରେ ଦୁଃଖ । ଦୁଃଖର କାରଣ—ନରୁ ପିଛେ ସବୁ ସବୁ ଚେକମରେ ମାସକୁ ତିରିଶ ଟଙ୍କାରୁ ବଳି ଖରଚ ନୁହେ, ମୁଁ ମାସକୁ ଅଢ଼େଇଶ ଟଙ୍କା ଖରଚ ପଡ଼ୁଥିଲା । ଏତେ-ଗୁଡ଼ାଏ ଟଙ୍କା ଏକା ବେଳକେ ଲୋକସାନ । ସାନ୍ତାଣୀଙ୍କର ମନରେ ଦୁଃଖ—କେତେ ରକମ ଖଜା, କାକରା, ଏଣ୍ଡୁରି, ସରୁଚକୁଳି, ମଣ୍ଡାପିଠା ଜେଜମା ପଠାଉଥିଲେ—ଗଡ଼ ଉଆସରୁ କେତେ ଭଲ ଘିଅ, ଛେନା ସରୁଚାଉଳ, ମୁଗଜାଇ ଆସୁଥିଲା । ଏବେ ଆଉ ଆସିବ ନାହିଁ । ମଙ୍ଗଳା ଦେଈ ଆଉ ରାଘବ ମାମୁ ଭାରି ଖୁସି, ଚୋଟାଏ କଣ୍ଢା ଗଲା । ନାଜର ବାବୁ କଚେରିକୁ ଯାଇ ପେସ୍କାରକୁ ଧମକାଇଲେ—ସାହେବ ପାଖରେ ରିପୋର୍ଟ କରିବେ ବୋଲି କହିଲେ । ପେସ୍କାର ବାବୁ କେବଳ ଏତିକି କହିଲେ—''ସାବଧାନ ! ଆଳୁ ଖୋଳୁ ଖୋଳୁ ମହାଦେବ ବାହାରିବେଟି ।''

—୫୦—

## ଧର୍ମଭାଇ

''ତସ୍ୟା ବସ୍ତାତ୍ତୋ ବୁଦ୍ଧିଃ ତୈଳବିନ୍ଦୁରିବାମ୍ଭସି ।''

ଚଟାଟା ଗୃହିଣୀ ପଦ—ବସାରେ କିଛି ଅଟକିଲେ ନାଜର ବାବୁ ତାକୁ ଡାକି ପାନ୍ତି, ତାଙ୍କ କହିବାରୁ ଏକଥା ଜାଣିଛୁ । ସତ କଥା, ନୋହିଲେ ତାଙ୍କ ପରି ବଡ଼ ଲୋକଟା ଗୃହିଣୀଟା ଦୁଆରକୁ କାହିଁକି ଯିବେ ? ବାବୁଙ୍କ ଡାକ ଯିବାବେଳ ପ୍ରତିଦିନ ରାତି ଆଠ ବାଜିବା ଉତ୍ତାରେ । କାହିଁକି କେଜାଣେ, ଆଜି ସଞ୍ଜକୁ ଉପସ୍ଥିତ । ଚଟା ଶୋଇବା ଘରେ ସଉପ ମଶିଣାଟା । ଉପରେ ଗୋଟାଏ ଭେଣ୍ଡିଆ ଭଲଆ ଲୋକ ବସିଛି, ଚଟା ବଟାଟା ଆଗରେ ଥୋଇ ପାନ ଭାଙ୍ଗୁଛି—ଦୁଇ ଜଣଯାକ ହସି ହସି କଥାବାର୍ତ୍ତା କରୁଛନ୍ତି । ନାଜର ବାବୁ ଯାଇ ଥକା ହୋଇ ଛିଡ଼ା ହୋଇଗଲେ, ରାଗରେ ବଜ୍ରଲିଟା ଯେମନ୍ତ ତାଙ୍କ ଦେହଯାକ ଖେଳିଗଲା । ଏହି ଲୋକଟିକୁ ବାବୁ ଚଟାଘର ଆଗ ସଡ଼କରେ କେତେଥର ଦେଖିଛନ୍ତି, ହେଲେ ଲୋକବିଶେଷକୁ ସ୍ଥାନ ବିଶେଷରେ ଦେଖିଲେ ମନରେ ଭାବବିଶେଷର ଉଦୟ ହେବା ସହଜ କଥା । ନାଜର ବାବୁ ଚିହ୍ନି ଗଲେଣି, ଏଇଟା ତ ସେହି ଉମେଦବାର । ଭାରି ଖପା ହୋଇ ପଚାରିଲେ, ''ଚଟା ! ଏ ଲୋକଟା କିଏ ?'' ଲୋକଟା ଖପ କରି ଉଠିପଡ଼ି ଗୋଟାଏ କୋଣ କାନ୍ଥରେ ମିଶି ଗଲାଣି । ଚଟା ଦେଖିଲା, ଦୁଇ ଜଣଯାକ ପବନରେ ବରଡ଼ାପତ୍ର ପରି ଥରୁଛନ୍ତି—ଜଣେ ଭୟରେ ଆଉ ଜଣେ ଭୟଙ୍କର କ୍ରୋଧରେ । ''ହି ହି-ହି'' ଚଟା ଭାରି ଗୋଟାଏ ହସି କହିଲା, ''ଆରେ ପ୍ରଭୁ ! ତୋ କପାଳ ବଡ଼ ଭଲ, ଆଜି ସକାଳୁ ତୁ ଶଙ୍ଖଚିଲ ମୁହଁ ଦେଖିଥିଲୁ, ଆଜି ଜାଣ ତୋର ସବୁ ଦୁଃଖ ମେଣ୍ଟିଲା । ମୁଁ କହୁଥିଲି, ସା'ନ୍ତଙ୍କ ଆସିବା ଡେରି ଡେରି, ତୁ କେତେବେଳ ଯାଏ ବସିବୁ, ତୋ କପାଳ ଯୋଗ ଦେଖ, ସାନ୍ତ ଗୃମ କରି ବିଜେ ହୋଇଗଲେ । ଆଜ୍ଞା ସା'ନ୍ତେ ! ଟିକିଏ ଦୟା କର, ଆପଣ ଶହେ ଟଙ୍କା ହୁକୁମ କରିଥିଲେ, ମାସେ ହେଲା ଧାଇଁଛି, ରୁଣ୍ଡେଇ ପୁଣ୍ଡେଇ ଦି'କୋଡ଼ି ନ ଟଙ୍କା ଆଠଅଣା କଲା, ଆଉ ପାରିଲା ନାହିଁ । ମୁଁ ଯୋଡ଼ାଏ ସୁନା ମିଶାଇ ଦି କୋଡ଼ି ଦଶ ପୂରା କରିଦେଲି । ଏ ମୋ ଧର୍ମଭାଇ ଆପଣ ଏହାକୁ ଟିକିଏ ଦୟା କର—ସା'ନ୍ତଙ୍କ ଗୋଡ଼ତଳେ ପଡ଼

ରେ, ଗୋଡ଼ତଳେ ପଡ଼ଯା ।’’ ନାଆଁରେ ପାଣି ପକାଇଲା ପରେ ଦୁହିଙ୍କ ରାଗ ଆଉ ଡର ଊଣା ହୋଇଗଲାଣି । ‘ଟିକିଏ ରହନ୍ତୁ ସାଆନ୍ତ, ପ୍ରଭୁ ଯେ ଟଙ୍କା ରଖିଛୁ ଯେଉଁ ଆଡ଼େ’ କହି ଚବା ଚଟ୍ କରି ବାକ୍ସଟା ମିଟାଇ ପକାଇଲା । ମଲା ଯା’ ସର୍ବନାଶ, କଥା କହିସାରେ ସିନା କହି ପକାଇଛୁ, ବାକ୍ସ ଅଣ୍ଡାଳି ଦେଖେ ଯେ ନଅଟା ଟଙ୍କା ଆଉ କେତେ ଅଣା ପଇସା ପଡ଼ିଛି, ଦଶ ଟଙ୍କା ବି ପୂରାପୂରି ନୁହେଁ । ସେଇ ଟଙ୍କା-ଗୁଡ଼ାକ ଥରକୁ ଥର ଝମ ଝମ କରୁଛି, ମତଲବ ପାଞ୍ଚୁଛି କଣ କରିବ, ନାଜର ବାବୁ ଡାକ ଦେଲେ, “ଆଉ ଥାଉ, ଉଣ୍ଟୁଣିକା ଟଙ୍କା ଥାଉ ।’’ ଚବା ତ ଧଡ଼ କରି ବାକ୍ସ ପକାଇ ଫଁ କରି ନିଶ୍ୱାସଟାଏ ମାରିଲା । “ଆଜ୍ଞା, ଆଜ୍ଞା, ଯେତେବେଳେ କହିବେ, ବସାରେ ଦେଇ ଆସିବ । ଏ ଟଙ୍କା ଆଉ ଛୁଇଁବି ନାହିଁ, ତୁଳସୀ ପତ୍ରଟାଏ ପକାଇ ରଖିଲି । ଦେ ରେ ପ୍ରଭୁ ! ସାନ୍ତଙ୍କୁ ଗୁଡ଼ାଖୁ ଚିଲମେ ସଜାଡ଼ ଦେ ।’’ ପ୍ରଭୁ ଦୟାଲ ଚଟ କରି ଲୁହା ଶିକରେ ହୁକା ନାଳଗୁଟା ସଫା କରି ପକାଇଲା । ଚିଲମରେ ଚିକ୍କଣ ଦେଇ ଗୁଡ଼ାଖୁ ସାଜ ଭଲ କରି ଫୁଙ୍କି ସାନ୍ତଙ୍କ ହାତକୁ ହୁକାଟା ବଢ଼ାଇ ଦେଲା । ଘଣ୍ଟାଏ ହେଲା ଗୁଡ଼ାଖୁ ଖାଇ ନ ଥିଲେ, ଦୁଇ ଗୁଡ଼ିଟା ଦମ୍ ଟାଣି ସାନ୍ତଙ୍କ ଆତ୍ମାପୁରୁଷଟା ଶୀତଳ ହୋଇଗଲା । ଏଣେ ତ ଚବାର କଥାର କହିରି ଛୁଟିଛି । କହିଲା—‘‘ଜାଣିବା ହେଲେ ସାନ୍ତ, ମୋର ଯେ ଧର୍ମମା, ଏଇ ପ୍ରଭୁର ନିଜ ମା, ତାଙ୍କରି ଦୟାରୁ ମୁଁ ଅଣ୍ଡାଟି କଡ଼ରୁ ଭେଣ୍ଡିଟିଏ । ସେ ଯେ ଥିଲେ ସାନ୍ତ, ମୁଁ କଣ କହିବି, ତାଙ୍କୁ ଦେ ଦେ କହି ତୁଣ୍ଡ ଛିଡ଼ିଲେ ନା ଦେବି ବୋଲି ନ ଥିଲା—କଣ କହିବି ସାନ୍ତ ! ସେ ଥିଲେ ଗୋଟାଏ ଲକ୍ଷ୍ମୀ ଠାକୁରାଣୀ—ତା’ପରା ଦେବୀ ଚାଲିଗଲେ, ମୁଁ ପଡ଼ିଛି ଉଁ-ଉଁ-ଉଁ ! ଦାନ୍ତେ କାନ୍ଦି ମୁହଁଟା ପଣତ କାନିରେ ପୋଛି ଦେଲା । ମା ସ୍ୱର୍ଗକୁ ଗଲାଦିନୁ ମୋର ସେ ଦୁଆରେ କଣ । ଏ ଯେ ସାନ ଭାଇଟା ନାଆଁ ଖାଇ ଭଉଣୀଟା ମଲା ନା ଗଲା ଥରେ ଭଲି ଆସି ଦୁଆରେ ଉଙ୍କି ଯା-ନା, ସେ କଥା ଭାଇଙ୍କ ପାଖରେ ଦେଖିବ ନାହିଁ । ଆଜ କାମ ଅଟକିଲା ବୋଲି ଧାଇଁ ଆସିଛୁ । ନୋହିଲେ କି କାହାକୁ ଅନାଏ ? ଦେଖ ପ୍ରଭୁ, ତୁ ଯଦି ଥରେ ଥରେ ଆସି ଦେଖାଦେଇ ନ ଯିବୁ, ତୋ ଲାଗି ସାନ୍ତଙ୍କୁ କହୁ କେବେ କହିବି ନାହିଁ । କହ, ଆସିବୁ କି ନା କହ ।’’ ପ୍ରଭୁଦୟାଲ କହିଲା, “ହଁ ନାନିଜୀ ଆସିବି ।’’ ଏଥି ମଧ୍ୟରେ ପ୍ରଭୁଦୟାଲ ଦୁଇ ତିନି ଚିଲମ ଗୁଡ଼ାଖୁ ସାଜ ସାରିଲାଣି ସେ ଖାଲି ସାନ୍ତଙ୍କ ହାତକୁ ଅନାଇ ବସିଛି । ନାଜର ବାବୁ ମନ ମଧ୍ୟରେ ଭାରି ଖୁସି, ଏଟା ଖୁବ୍ କାମକା ଲୋକ ହେବ ।

ଚବା କହିଲା—ରେ ପ୍ରଭୁ ! ତୁ ଟୋକାଳିଆ ଚରିଲା ବୁଦ୍ଧି ସବୁ ଛାଡ଼ । ସାଆନ୍ତଙ୍କ ପିଛୁ ଧରି ରହ, ତୋ କପାଳ ଫିଟିଲା ଜାଣ ।

— ——

-୪୧-

## ମଧୁବନ ତୋଟା

ନବ ପଲାଶ ପଲାଶ ବନଂ ପୁରଃ ସ୍ଫୁଟପରାଗ-
ପରାଗତପଙ୍କଜଂ
ମୃଦୁଲତାନ୍ତ ଲତାନ୍ତମଲୋକୟତ୍ ସସୁରଭିଂ
ସୁରଭିଂ ସୁମନୋହରୈଃ ।

ଆଜ କାଲି ମଣିମା ଗୃହମଣି ଦେଇ ଟିକିଏ ବୁଲା-ଚଲା କରି ପାରିଲେଣି । ସଞ୍ଜ ସକାଳ ଉଆସ ଭିତରେ ଏଣେ ତେଣେ ଚାଲିବୁଲି କଲେଣି । ଦିନେ ଉପରଓଳି ଖରା ଗଡ଼ି ଗଲାଣି, ଏକୁଟିଆ ଏଣେ ତେଣେ ବୁଲିବୁଲି କରୁ କରୁ ମଧୁବନ ତୋଟା ବେଣ୍ଟପୋଖରୀ ଘାଟକୁ ଚାଲିଗଲେ । ଚାରିବର୍ଷ ବାଦେ ଆଜ ପ୍ରଥମ ଥିବାର ।

ଉଆସକୁ ଲାଗି ପଛପଟକୁ ମଧୁବନ ତୋଟା, ତାହା ମଝିରେ ବେଣ୍ଟ ପୋଖରୀ । ପୋଖରୀ ତୁଚ୍ଛା

ଜଳପୃଷ୍ଠଠା ପାଞ୍ଚ ମାଣରୁ ଉଚ୍ଚା ହେବ ନାହିଁ, ବଗଚର ମିଶିଲେ ଛ ସାତ ମାଣକୁ ବଳ ପଡ଼ି ପାରେ । ତା ନାମ ବେଣ୍ଟସର । ସରର ଚାରି ପଟରେ ମାଙ୍କଡ଼ା ପଥରରେ ବନ୍ଧା ଚାରିଟା ଘାଟ । ଉଆସ ପାଖ ମାଜଣା ଘାଟଟା ସବୁଠାରୁ ବଡ଼ । ଉଆସ ବେଣ୍ଟଦୁଆର ଚୌକାଠ ମୂଳକୁ ଲଗି ଘାଟଯାଏଁ ଗୋଟାଏ ସଳଖ ସଡ଼କ । ସଡ଼କ ଓସାର ଦୁଆର ଓସାର ମାପରେ, ଇଟା ପାଖପଟ ପୋତା ଚାରି ଅଙ୍ଗୁଳ ଉଚ୍ଚରେ ସଡ଼କ ଦୁଇ ପାଖ ବନ୍ଧା, ମଝିରେ ଗୋଡ଼ି ବାଡ଼ଆ ହୋଇଥାଏ । ସଡ଼କ ଦୁଇପାଖରେ ଡାଳକୁ ଡାଳ ଲଗାଲଗି ମନାଣ ସହିରେ କଟୁରି ମଲ୍ଲୀଗଛ ଲଗା ହୋଇଛି । ବସନ୍ତ ଆଉ ଗ୍ରୀଷ୍ମ କାଳରେ କୋମଳ ପତ୍ର ଆଉ ପୁଷ୍ପ ପୂର୍ଣ୍ଣ ହେଲେ ବଡ଼ ଶୋଭା ଦିଶେ । କୌଣସି ପ୍ରକାର ଫୁଲ ଗଛରୁ ଛିଣ୍ଡାଇବାକୁ ସାନ୍ତ ଆଉ ଠାକୁରାଣୀମାନଙ୍କର ବିଶେଷ ରୂପେ ମନା । ରାତିରେ ଫୁଲ ଫୁଟିଲେ ଗନ୍ଧରେ ଉଆସଟା ପୂରିଯାଏ । ସେହି ସଡ଼କଟିକୁ ବ୍ୟାସ କରି ଗୋଟିଏ ବଡ଼ ବୃତ୍ତ ଗଣିକା । ଆଉ ବ୍ୟାସ ଚୌଡ଼ା ମାପରେ ଗୋଟିଏ ସଡ଼କ ପରିଧି ଚାରିପଟେ ବୁଲି ଯାଇଛି । ସେହି ସଡ଼କ ଦୁଇ ପାଖରେ ମଧ୍ୟ ମଲ୍ଲିଗଛ ରୁଆ । ବୃତ୍ତ କେନ୍ଦ୍ର ସ୍ପର୍ଶ କରି ପଶୋପାଲି ଛକ ପରି ଆଉ ଗୋଟିଏ ସଡ଼କ ପରିଧି ଅତିକ୍ରମପୂର୍ବକ ବଗିଚା ମଧ୍ୟକୁ ଚାଲି ଯାଇଛି । ପୁଣି ସରର ଚାରି ପାଖ ଦୁଇ ମୁଣ୍ଡ ମିଳି ଯିବାରୁ ଗୋଟିଏ ସଡ଼କ ପରି ଜଣାଯାଏ । ସବୁ ସଡ଼କ ଦୁଇଧାର ଇଟାରେ ବନ୍ଧା ଅଉ ଧାରେ ଧାରେ ଜାଇ, ଯୂଇ, ମଲ୍ଲୀ, ନଆଳୀ, କୁନ୍ଦ, କାମୋଦ, ରଙ୍ଗଣୀ ଆଦିର କେତେ ଜାତି ଫୁଲ ଗଛ ରୁଆ ହୋଇଛି । ସାନନ୍ତ କଲକତା ଫୁଲବାଗ ଦୋକାନମାନଙ୍କରୁ ପଲନରନ, ମଣ୍ଟହିଷ୍ଟ, ଇମୋସନ, ବ୍ଲାକ୍ପ୍ରିନ୍ସ, ମାର୍ସେଲ, କିଲି ପ୍ରଭୃତି ଭଲ ଭଲ ଜାତି ଗୋଲାପ ଫୁଲ ଗଛମାନ ଅଣାଇ ଘାଟ ପାଖମାନଙ୍କରେ ଲଗାଇଥିଲେ । ଆମ୍ବ, ପଣସ, ପେଡ଼ା, ଜାମରୋଳ, ଗୋଲପଜାମ, ଜାମ୍ବୁ, ସପେଟା, ଜଳଖାଇ, ଲିଚୁ, ପିଚୁ, ମଙ୍ଗୋଷ୍ଟିନ, ତାଳ ପ୍ରଭୃତି ଦେଶୀ ବିଦେଶୀ ଗଛମାନଙ୍କରେ ତୋଟା ପୂର୍ଣ୍ଣ ଥାଏ । ସର ଚାରି ପାଖରେ ନଡ଼ିଆ, ଗୁଆ ଧାଡ଼ି-ଧାଡ଼ି ଲଗା ହୋଇଛି । ସେହି ଗଛ ଫାଙ୍କମାନଙ୍କରେ ପଦ୍ମ, କରବୀର ଫୁଲ ଫୁଟି ପବନରେ ଦୋହଲିବା ବେଳେ ବଡ଼ ସୁନ୍ଦର ଦିଶେ । ନଡ଼ିଆ ବାହୁଙ୍ଗାରେ ଅସଂଖ୍ୟ ତାଳବାଇ ବସା ଦୋହଲୁ ଥାଏ—ସାନ ସାନ ପକ୍ଷୀଗୁଡ଼ାକ ସବୁବେଳେ କିଚିରି ମିଚିରି କରୁଥାନ୍ତି । ତୋଟାରେ ହେତାଖିଆ ଦଶ ପନ୍ଦର ଜଣ ତୋଟାଳିଆ ନିଯୁକ୍ତ ଥିଲେ । କୌଣସି ଗଛ ମୂଳ ଶୁଖିଲା ପଡ଼ୁ ନ ଥିଲା । ସବୁବେଳେ ଜଳ ଢଳା ସଫା ସୁତୁରା । ଶୁଖିଲା ପତ୍ରଟିଏ ପଡ଼ିଲେ ସାଙ୍ଗେ ସାଙ୍ଗେ ପହଁରିଯାଏ— ସଡ଼କମାନଙ୍କରେ ଦିନକୁ ଦୁଇ ଥର ପହଁରା ଡାଙ୍ଗ ବାଜୁଥାଏ ।

ସାନ୍ତଙ୍କ ବିଯୋଗ ଦିନଠାରୁ ତୋଟା ସମ୍ଭାଳିବାକୁ କେହି ନାହିଁ । ନାଜରବାବୁ ହେତା ଜମି ଉପରେ କର ଭଡ଼ି ଦେବାରୁ ତୋଟାଳିଆଗୁଡ଼ାକ ଛାଡ଼ି ପଳାଇ-ଲେଣି । ପୃଥିବୀର ସମସ୍ତ ମାଙ୍କଡ଼ ଯେମନ୍ତ ତୋଟାରେ ରୁଣ୍ଡ, 'ଧୋ ବୋଲି କହି ଟେକାଟାଏ ଫୋପାଡ଼ି ଦେବାକୁ କେହି ନାହିଁ । ତୋଟା ଚାରିପଟ ମେଲା । ଅଧସରିକି ଗଛ ମରିଗଲାଣି । ଗାଁ ଲୋକେ ଶୁଖିଲା ଗଛ ବୋଲି କଞ୍ଚା ଗଛ କେତେ ହାଣି ନେଇଗଲେଣି । ଘାଟ ଦୁଇ ପାଖ ହଁାସିଆ ଉପରଠାରୁ ପାଣି ଲଗାଯାଏଁ ଦୁଇ ଧାଡ଼ି କୁଣ୍ଡ ବସାଇ ସେଥିରେ ଗୋଲାପ ଆଉ କ୍ରୋଟନ ଗଛ ଲଗା ଥିଲା । କେତେଟା କୁଣ୍ଡରେ ମଲା ଗଛର ଡାଙ୍ଗ-ଗୁଡ଼ାଏ ଛିଡ଼ା । ଢେର କୁଣ୍ଡ ଘାଟ ତଳକୁ ପଡ଼ି ଯାଇ ଭାଙ୍ଗି ଗଲାଣି । ଖପରା ଆଉ ଡାଙ୍ଗଗୁଡ଼ାକ ବୁଣି ପଡ଼ିଛି । ଘାଟରେ ବି ଗୁଡ଼ାଏ ଖପରା, ମାଟିଢେଲା ଜମା ହୋଇଛି । ସାନ୍ତଙ୍କ ଅମଳରେ ଗାଁର ବିଲେଇ ପିଲାଟିଏ ବି ତୋଟାରେ ପଶି ପାରୁ ନ ଥିଲେ, ଏବେ ଗାଁ ଗୋରୁ ଗୋଠର ଚରାଭୂଇଁ । ଗୋରୁମଣା ପିଲାଗୁଡ଼ାକ ଗୋରୁ-ପଲ ଛାଡ଼ି ଦେଇ ଡାଳମାଙ୍କୁଡ଼ି ଖେଳ କେତେ ଡାଳ

ଭାଙ୍ଗି ପକାଇଲେଣି । ତୋଟାର ଫଳ ଫୁଲ ସବୁ ତାଙ୍କ ଜିମା—ଗ୍ରେର ବୋଲେ ମୁହିଁ । ଆଗେ ତୋଟାରେ ଲୋକେ ଘାତ ବାଡ଼ି ଖାନ୍ତେ, ଏବେ ଭଇଞ୍ଚ, ଆଙ୍କୁ, ବଣିଆଘଣ୍ଟା, କୁକୁରଗୁଲିଆ, ଗୁକୁଣ୍ଡା ବଣରେ ପୂରି ଗଲଣି । ସଡ଼କ ବାଟର ଚିହ୍ନ ନାହିଁ । ଠେକୁଆପଲରେ ବିଲୁଆପଲ ନିର୍ଭୟରେ ଖେଳୁଛନ୍ତି । ହୁଣ୍ଡାଳିଆ ଉପରେ ଉଆସର ପରିଜନମାନେ ଖରା ଥାଉଁ ଥାଉଁ ପୋଖରୀ ତୋଠ ପାଇଁଟି ସାଉଁନେଇଯାନ୍ତି—କେବେ କେମିତି ରାତିରେ ଆସିବାକୁ ହେଲେ ବଇଠାଟାଏ ହାତରେ ଧରି ବୁଲି ପାଞ୍ଚଟା ମାଇକିନିଆ ଗୁଣ୍ଡ ନ ହେଲେ ଭରସି ଆସିପାରନ୍ତି ନାହିଁ । ପୋଖରୀଟା ବୋରଝାଞ୍ଜି ବଉଳମାଳା ଦୋଡ଼ାଦଳରେ ପୂରି ଗଲଣି । କେତେଟା ଦଳପିଁପି ସରଳ, ଲମ୍ବ ଲମ୍ବ ଗୋଡ଼ ପକାଇ ଜଳ ଉପରେ ବୁଲୁଛନ୍ତି; ଗୁଡିଏ ପାଣିପାଏ ଘାଟଟି ମାତ୍ର ସଫା । ଦଣ୍ଡେଇ ଗରିମରା ସାନ ମାଛ ପଲ ଝକଝକ କରି ଖେଳୁଛନ୍ତି ।

ମଣିମା କେତେବେଳୁ ଆସି ପୋଖରୀଟାକୁ, କେବେ ବା ତୋଟା ଭିତରକୁ ବକବକ କରି ଅନାଇ ଦେଖୁଛନ୍ତି—କିଛି ବୁଝି ପାରୁ ନାହାନ୍ତି । ସ୍ୱପ୍ନ ପରି ତୋଟାର ପୂର୍ବ ଚିତ୍ର ଗୁଡ଼ାକଟା ସେମନ୍ତ ମନରେ ପଡ଼ି ଯାଉଛି । ସବୁ ଦେଖୁଛନ୍ତି, କେତେ କଥା ମନରେ ବି ପଡ଼ି ଯାଉଛି, ହେଲେ ମନରେ ଧାରଣା ଶକ୍ତି ନାହିଁ । କଣ ଥିଲି, କଣ ଦେଖୁଛନ୍ତି, କିଆ ହେଲା, ଏ ସବୁ କଥା ମିଳାଇ ବୁଝି ପାରୁ ନାହାନ୍ତି । ଧାଈମା ପରିଜନ ପ୍ରସ୍ତରେ ଥିଲେ, ମଣିମାଙ୍କ ତୋଠକୁ ଆସିବା କଥା ଜଣା ନାହିଁ । ବେହରଣ ପ୍ରସ୍ତକୁ ଆସି ଛୁଟିଆ ହେଲା ପରି ଗୁରିଆଡ଼େ ଅଣ୍ଡାଳି ପକାଇଲେ । ମାଜଣା ତୋଠକୁ ଧାଇଁଲେ, ପାଞ୍ଚଛ'ଟା ମୋଇଲା ପଛରେ ଗୋଡ଼ାଇଛନ୍ତି । ଦେଖିଲେ, କାଠପିତୁଳାଟି ପରି ମଣିମା ଘାଟରେ ଉଭା ହୋଇଛନ୍ତି । ଧାଇଁ ଆସି କୁଣ୍ଢାଇ ପକାଇଲେ—'ଆସ ଆସ, ଭିତରକୁ ଆସ' କହି ହାତ ଧରି ଘେନିଗଲେ !

---

-୪୨-

# ନରୁବାବୁର ଚିଠି

"ସପ୍ରଶ୍ରିତବନ୍ଧଂ କାର୍ଯ୍ୟଂ ପ୍ରଭୁ ରଧିଗନ୍ତୁଂ
ସହାୟବଦାନେନ !"

( ମାଳବିକାଗ୍ନିମିତ୍ର )

ପରମପୂଜନୀୟା ଶ୍ରୀ ଶ୍ରୀମତୀ ଜେଜୀମା ଠାକୁରାଣୀଙ୍କ ଶ୍ରୀଚରଣକୁ ଅଧୀନ ଦାସ ନରହରିର ଶତ ଶତ ଦଣ୍ଡବତ ଓଳଗି । ଆଗେ ଏ ନମନ୍ତେ କଟକ ମୁକାମ ବସାଘରଠାରେ ଥାଇ ଲେଖିଲି କି ଏଠାରେ ମୋ ଦେହରା ସମସ୍ତ ମଙ୍ଗଳ, ଆପଣମାନଙ୍କ ଖେମକୁଶଳକୁ ଶ୍ରୀ ଶ୍ରୀ ଯୁଗଳକିଶୋର ଦେଉ ବଡ଼ୁରୁ ଅଛନ୍ତି । ମାତା ଠାକୁରାଣୀଙ୍କ ଶ୍ରୀ ଚରଣରେ ମୋହର ଲକ୍ଷ ଲକ୍ଷ ଜୁହାର ଜଣାଇବ । ଶିରୁକୁ କହିବ, ମାଇନର ପରୀକ୍ଷାର ଫଳ ବାହାରିଲେ ଦେଖାଯିବ । ସେ ଯଦି ପାଶ କରିଥାଏ, କଟକକୁ ଆସି ଇଂରେଜୀ ପଢ଼ିବ, ମଉସା ଏ କଥା କହୁଛନ୍ତି । ମୁଁ ଏଣ୍ଟ୍ରେନ୍ସ ପରୀକ୍ଷାରେ ପ୍ରଥମ ବିଭାଗରେ ପାଶ କରିଥିବା ବିଷୟ ପୂର୍ବ ଚିଠିରେ ଜଣାଇଥିଲି । ମାସିକ ପନ୍ଦର ଟଙ୍କା ଜଳପାନି ପାଏଁ । ଗଲା କାଲି କଲେଜ ପ୍ରିନ୍ସିପାଲ ସାହେବ ତିନି ମାସର ବୃତ୍ତି ପଇଁଚାଳିଶ ଟଙ୍କା ଏକସଙ୍ଗରେ ମୋତେ ଦେଲେ । ମୁଁ ସେ ଟଙ୍କା ନେଇ ମଉସାଙ୍କୁ ଦେବାରେ ସେ ନେଲେ ନାହିଁ-- ଖରଚ କରିବା ସକାଶେ ମୋତେ କହିଲେ । ଏଠିକା ଖରଚ ତ ମଉସା ସବୁ ଦେଉଛନ୍ତି, ମୁଁ ଆଉ କଣ ଖରଚ କରିବି, ସେହିଥିରୁ ୫୯ ଗ୍ରାମମଣି ହମରା ପଠାଇଲି । ଶୁଣାଶୁଣିରେ ଆପଣ ଉଦୁଣୀ ଖରଚପତ୍ରରେ ଟାଣଟଣି ଅଛନ୍ତି । କି ସକାଶେ ଟାଣଟଣି—ମାମୁ କି ସବୁ ଖରଚ ଦେଉ ନାହାନ୍ତି ।

ମୁଁ ଏଠାରେ ପରମସୁଖରେ ଅଛି । ବାରଲୋକଙ୍କ ଯିବା ଆସିବା ଯୋଗୁଁ ମଉସାଙ୍କ ବସାରେ ଗୋଳମାଳ

ହୁଏ । ମୋ ଚଢ଼ାରେ ହରକତ ହେବା ଭୟରେ ମତେ ଗୋଟାଏ ଅଲଗା ବଡ଼ ଦୋତାଲା ଘର ଠିକ୍ କରି ଦେଇଛନ୍ତି । ଚାରି ଜଣ ଚାକର ତଳେ କାମ ପାଇଛି କରନ୍ତି, ଦୁଇ ଜଣ ପାଇକ ଦୁଆରେ ପହରା, ଅକାରଣ ସେମାନଙ୍କର ମୋ ପାଖକୁ ଆସିବାକୁ ମଉସାଙ୍କର ମନା, କେବଳ କରୁଣା ସବୁବେଳେ ପାଖରେ ହାଜର ଥାଇ ଡାକହାକ ଶୁଣେ । ମଉସା ରୋଜ ରୋଜ ବସାକୁ ଆସି ସବୁ ବିଷୟ ଦେଖିଯାନ୍ତି, ଦେହଟା ହେଲେ ଦିନଯାକ ମୋ ପାଖରେ ଛୁଟାଣ ହୁଅନ୍ତି ନାହିଁ । ଏଠାକୁ ଆସିବା ଦିନରୁ ମାମୁଙ୍କୁ ଦେଖି ନାହିଁ । ଦିନେ କଚେରି ଦାଣ୍ଡରେ ଭେଟ ହୋଇଥିଲା । ମୁଁ ଦଣ୍ଡବତ କଲି, କଥାବାର୍ତ୍ତା କିଛି ହୋଇ ନାହିଁ । ଉଆସକୁ ଯିବା ସକାଶେ ମୋତେ ବାରମ୍ବାର ଲେଖୁଛ; ମାତ୍ର ମୁଁ ପ୍ରତିଜ୍ଞା କରିଛି, ଏଫ୍. ଏ. ପାସ୍ ନ କଲେ ଗଡ଼କୁ ଯିବି ନାହିଁ । ମୁଁ ଏଠି ଭଲ ଅଛି । ଲେଖିବା ଦୋଷ ମାଫ କରିବ । ଇତି ।

ମେଷ ମାସ ସାତ ଦିନ, ୧୨୭୦ ସାଲ ।

ଚିଠିଖଣ୍ଡ ପୁଳନ୍ଦାରେ ଉତ୍ତମରୂପେ ବନ୍ଦକରି ଟଙ୍କା ସହିତ ପାଇକ ହମରାରେ ପଠାଇଦେଲେ । ଠିକ୍ ବେଳରେ ଚିଠି ଗଡ଼ରେ ପହଞ୍ଚିଲା, "ନରୁ ଚିଠି—ନରୁ ଚିଠି" କହି ଜେଜେମା ଉଆସ ଭିତରୁ ଧାଇଁଛନ୍ତି । ପାଇକ ହାତରୁ ଚିଠି ଆଉ ଟଙ୍କା ପୁଟୁଳା ନେଇ ବାରମ୍ବାର ଚୁମା ଖାଉଥାନ୍ତି ଆଉ ଛାତିରେ ଲଗାଉଥାନ୍ତି । ପହଡ଼ ଘର ମଧ୍ୟରେ ଜରେଲାରେ ବସି ଚିଠି ପଢ଼ା ପଢ଼ି ହେଲା । ଧାଈମା ପଢ଼ି ଯାଉଛନ୍ତି—ମଣିମା ଆଁ ଟା କରି ଏକଧ୍ୟାନରେ ଶୁଣୁଥାନ୍ତି । ଦୁହିଙ୍କ ନେତ୍ରରୁ ଝର ଝର କରି ଲୋତକ ବହି ଯାଉଥାଏ । ସାତବର୍ଷ ଭିତରେ ଆଜି ମଣିମାଙ୍କ ନେତ୍ରରେ ଲୋତକ ଆଉ ମୁଖରେ ପ୍ରସନ୍ନ ଭାବ ଦେଖାଗଲା । ପରିଜନ ମହଲରୁ ଶଙ୍ଖ ହୁଳହୁଳି ଉଚ୍ଛୁଳି ପଡ଼ୁଛି । ଗ୍ରାମଯାକ ହାଟ ହୋଇଗଲା, କଟକ ହାକିମ ଖୁସି ହୋଇ ଟିକାପୁତ ବାବୁଙ୍କ ପାଞ୍ଚ ଶ' ଟଙ୍କା ଖଳାଖିଆ ଦେଇଛନ୍ତି । କେହି କହେ ହଜାରେ, ଆଉ ଜଣେ କହିଲା, "ନାହିଁ ନାହିଁ ଦି ହଜାର ।" ସବୁ କଥାର ହାଲ ଆଉ ଟଙ୍କାର ସଂଖ୍ୟା ଜାଣିବା ପାଇଁ ଜଣକେତେ ହରିବୋଲ ବାରିକଙ୍କ ପାଖକୁ ଧାଇଁଲେ । ବାରିକଙ୍କୁ ମୂଳକରି ସବୁ କଥା ଜଣା । କାହାରି କିଛି କଥା ଅଟକିଲେ ବାରିକଙ୍କ ପାଖକୁ ଧାଇଁ ଆସେ । ଯେ ଯେଉଁ କଥା ପଚାରୁ, ବାରିକଙ୍କ ପାଖରୁ ସାଙ୍ଗେ ସାଙ୍ଗେ ଉତ୍ତର ପାଏ । କାମ ଚଳାଇବା ଅଥଚ ଆପଣା ଗୌରବ ବଢ଼ାଇବା ପାଇଁ ମିଛ କଥାରେ ଯେ ଅଧର୍ମ ଅଛି, ବାରିକେ ଏ କଥା ବୁଝନ୍ତି ନାହିଁ । ହେଲେ ଯହିଁରେ ଲୋକର ଅନିଷ୍ଟ ହେବ, ଏ ସବୁ ଜାଗାରେ ବାରିକେ ଧର୍ମ-ଯୁଧିଷ୍ଠିର । ପ୍ରଶ୍ନ ଶୁଣି ବାରିକେ ଉତ୍ତର କଲେ, "ଏ—ହରିବୋଲ ! ଜେଜେମା ଡକାଇଥିଲେ, ମୁଁ ଏଇଲାଗେ ଉଆସରୁ ଆସି ବସିଅଛି ପରା ! ଜେଜେ ଟଙ୍କା ଗଣି ଥଳିରେ ପୂରାଇ ମୁହଁ ବାନ୍ଧି ଦେଲି । ଯୋଡ଼ାଏ ଥଳିରେ ହଜାରେ ହଜାରେ ଦୁଇ ହଜାର, ଆଉ ଗୋଟାଏ ଥଳିରେ ହଜାର ଏକ ଟଙ୍କା । ହାକିମମାନେ ଶୂନ ଟଙ୍କା ଦିଅନ୍ତି ନାହିଁ, ସେଥି ଲାଗି ଟଙ୍କାଟାଏ ବଳକା ଦେଇଛନ୍ତି ।"

ରାମ ଚରେଡ଼ା ପଚାରିଲା, "ଶୂନ ଟଙ୍କା କଣ ?"

ବାରିକେ—ଏଁ—ହରିବୋଲ ! ଅରେ ବାପା ! ଏତିକି ବୁଝି ପାରିଲୁ ନାହିଁ ? ହଜାରେ ଲେଖିଲେ ଶେଷ ଅକ୍ଷରଟା ଶୂନ ହୋଇଯାଏ, ଏଥିଲାଗି ଏକ ବସାଇ ଦିଅନ୍ତି । ଖଣ୍ଡେ ଅଙ୍ଗାରରେ ଭୂଇଁରେ ଲେଖିଲେ ଏହି ଦେଖ ହେଲା ୧୦୦୦, ଶେଷ ଅକ୍ଷରଟା ହେଲା ଶୂନ । ଏଥିଲାଗି ଗୋଟାଏ ୧ ଚଢ଼ାଇ ଦେଲେ ହେବ ୧୦୦୧ ।

ସମସ୍ତେ ଶୁଣି ଭାରି ଖୁସି । ବୁଝିଗଲେ, ହିସାବ କିତାବରେ ବି ବାରିକେ ବଡ଼ ଟାଣୁଆ । ବାରିକେ ଆଉ

ଗୋଟିଏ ଗୁପ୍ତକଥା ଭୁନ ଭୁନ ସମସ୍ତଙ୍କୁ ଜଣାଇ ଦେଲେ — କଟକ କମିଶ୍ନର ସାହେବ ପରଗଣାରେ ହୁକୁମ ଲେଖି ଦେଲେଣି, ଏଇ ଆସନ୍ତା ଦଶହରା ପୂଜା ବେଳକୁ ଟିକାଇତ ବାବୁ ମାଲିକ ମାଟହରା ଉଡ଼ାଇ ବାଜା ବଜାଇ ଆସି ଗାଦିରେ ବସିବେ । ବାରିକେ ଭୁଙ୍କାଟାରେ ଏ କଥା କହି ନାହାନ୍ତି, ଏଥିରୁ ଢେର ମତଲବ ହାସଲ ହେବ ।

ଜେଜିମା ଆଉ ମା ମଣିମା ସ୍ଥିର କଲେ, ନଗ୍ରର ଏହି ପ୍ରଥମ ଟଙ୍କାରେ ଯୁଗଳକିଶୋର ମନ୍ଦିରରେ ହରିଲୁଟ ହେବ । ବୁଢ଼ା ରଙ୍ଗାଧର ମହାନ୍ତିଙ୍କୁ ଚଢ଼ିଆଣି ଡାକି ଆଣିଲା । ଗୁମୂ ଦୁଇବନ୍ଧ ଦୁଇପାଖରେ ଜେଜିମା ଆଉ ବୁ । ଗୁମୂଚରଣ ଦୁଇଜଣ ବସି କଥାବାର୍ତ୍ତା ହେଲେ । ଗୁମୂଚରଣ ଭାରି ଖୁସିଟାଏ ହେଲେ, 'ଯୁଗଳ କିଶୋର' କହି ହାତଯୋଡ଼ି ଦୁଇ ତିନି ଥର ଦଣ୍ଡବତ କଲେ । ଯୁଗଳକିଶୋର ମନ୍ଦିରରେ ହରିଲୁଟ ହେବ; ଆସନ୍ତା ସ୍ନାନପୂର୍ଣ୍ଣିମାକୁ ଦିନ ସ୍ଥିର ହେଲା । ମୂଲକର ବାଇଶି କୀର୍ତ୍ତନ ସମ୍ପ୍ରଦାୟଙ୍କୁ ଗୁଆ ଦିଆଯିବ, ମୂଲକର ସାନ ବଡ଼ ସମସ୍ତ ପ୍ରଜା ହାଜର ହୋଇ ପ୍ରସାଦ ସେବା ନିମନ୍ତେ ପ୍ରଭୁଙ୍କ ଧଣ୍ଡା ଗାଁ ଗାଁକେ ବାଜେ ହେବେ । ଜେଜିମା ପଇଁତ୍ରିଶଟି ଟଙ୍କା ଥାକ କରି ପଟ୍ଟନାୟକଙ୍କ ପାଖରେ ଥୋଇଦେଲେ । ପଟ୍ଟନାୟକେ ଟଙ୍କା ଉଠାଇ ଅଳ୍ପ ଟିକିଏ ବସି ଜେଜିମାଙ୍କ ମୁହଁକୁ ଚାହିଁଲେ । ଜେଜିମା ସେଥିର ଅର୍ଥ ବୁଝି ପାରି କହିଲେ, "ହେଉ, ତୁମେ ତ ଆରମ୍ଭ କରି ଦିଅ, ଅଣ୍ଟ ନିଅଣ୍ଟକୁ ଦେଖାଯିବ ।"

ସ୍ନାନ ପୂର୍ଣ୍ଣିମାକୁ ଆଉ ଗୁରିଦିନ ବାକି — ମଫସଲରୁ ସରଞ୍ଜାମମାନ ଆସୁଛି । ଭରିଆ, ମୁଣ୍ଡବୋହିଆ ଧାଡ଼ି ଲାଗିଛି । କାହା ପିଢ଼ାରେ କଖାରୁ, କାହା ବାଡ଼ରେ କଦଳୀ, ଆପେ ଧରି ଗୁଲିଛି । ଟିକାଇତ ବାବୁଙ୍କ ମଙ୍ଗଳ ମନାସି, ଯୁଗଳ କିଶୋର ମନ୍ଦିରରେ ହରିଲୁଟ — ଏଡ଼େ ପୁଣ୍ୟ ଯୋଗ କି ଘଟିବ ? ସାନ ବଡ଼ ସମସ୍ତ ପ୍ରଜା ଧାଇଁଛନ୍ତି । ନାନା ପ୍ରକାର ସରଞ୍ଜାମ ପର୍ବତ ପ୍ରମାଣ ମନ୍ଦିରରେ ଜମା ହୋଇଗଲାଣି । ମୂଲ୍ୟ ପଚାରିଲେ 'ରାମ୍, ରାମ୍' କହି ଟଙ୍କା ଫେରାଇ ଦେଉଛନ୍ତି । ଟଙ୍କା କେତୋଟିରେ ପଟ୍ଟନାୟକେ ଆଉ ହାତ ଲଗାଇ ନାହାନ୍ତି । ସିଠ ସବୁ ଗୋଟିଆ ଗଉଡ଼ଙ୍କୁ ଏକଠାଁ କରି ଡାକଦେଲା, "ସମସ୍ତେ ଶୁଣ, ଅନ୍ନଦାତା ହାକିମ ପିଲା, ବିଦେଶରେ ଅଛନ୍ତି, ତାଙ୍କର ଶୁଭକାର୍ଯ୍ୟ, ଯୁଗଳକିଶୋରଙ୍କ ଅମଣିଆ, ପାଞ୍ଚ ମୁଖରେ ପଡ଼ିବ ବୃଷ୍ଟି ଖବରଦାର — କୁଳ ବୁଡ଼ିଯିବାର କଥା ।" ଦୁଧ ଦହି ଘିଅ ଛେନାରେ ମନ୍ଦିର ସରଘର ପୂରିଗଲାଣି ।

ଚତୁର୍ଦ୍ଦଶୀ ପିଛିଲା ପହରର ରାତି ଥାଉଁ ମନ୍ଦିର ଖଦା ଚାଲିରେ ନିଆଁ ଲୁଣ୍ଡା ପଡ଼ିଗଲା । ଦୁଲିକୋଡ଼ି ସରିକି ଗୁଡ଼ିଆ ପିଠା ଖଜା ତିଆରିରେ ଲାଗିଗଲେ । ଦିନ ପହରକ ସରିକି ଗୃରିଆଡ଼ୁ କୀର୍ତ୍ତନ ଶବ୍ଦ ଶୁଭିଲା — କୀର୍ତ୍ତନିଆ ଦଳ ଆସୁ ଆସୁ ଅଧକୋଶ ଦୂରରୁ କୀର୍ତ୍ତନ ଆରମ୍ଭ କରି ଦେଉଛନ୍ତି । କ୍ରମେ ସମସ୍ତ ଦଳ ପହଞ୍ଚିଗଲେ । ସେମାନଙ୍କର ଉନ୍ମାଦ ନୃତ୍ୟ ଝଙ୍କାର ସଙ୍ଗୀତରେ ଝାଞ୍ଜ ମୃଦଙ୍ଗ କାହାଳି ଶବ୍ଦ ମିଶି ଦୂରକୁ ସମୁଦ୍ର ଗର୍ଜନ ପରି ଶୁଭୁଛି । ଶଙ୍ଖ ହୁଳହୁଳି ଶବ୍ଦରେ ମାଇକିନିଆମାନେ ଗାଁ କମ୍ପାଉଛନ୍ତି । କି ସ୍ତ୍ରୀ, କି ପୁରୁଷ ଆଜି କାହାରି ହାତରେ କିଛି କାମ ପାଇଟି ନାହିଁ । ସମସ୍ତଙ୍କ ମନରେ ଆନନ୍ଦ, ସମସ୍ତେ ହରିଲୁଟରେ ଲାଗିଛନ୍ତି । ସବୁ କୀର୍ତ୍ତନିଆ ଦଳ ମିଶି ଗୋଟିଏ ସଙ୍ଗୀତ ଆରମ୍ଭ କଲେ—

"ଭଜରେ ମନ ହରିନାମ
ହରିନାମ ହରିନାମ ହରିନାମ
ଯେ ନାମ ଜପିଲେ ପୂର୍ଣ୍ଣ ହୁଏ ମନସ୍କାମ ।
(ସେହି) ସୁଧାମୟ ନାମ ଜପି ଲଭ ସ୍ୱର୍ଗଧାମ (ଘୋଷା)
ସଂସାରର ଧନ ଜନ ସବୁ ହେବ ଅକାରଣ
ଯେବେ ତେଜିବୁ ଭବଧାମ ।

ଭୁଛ ଚିନ୍ତା ପରିହରି       ଭଜ ମନ ହରି ହରି
ଜୀବନେ ମରଣେ ସାହା ମାନ ସେହି ନାମ ।
ହରି ପିତା ହରି ମାତା     ହରି ଗୁରୁ ଜ୍ଞାନ-ଦାତା
ହରି ଜଗତର ପାତା ହରି ପୁଣ୍ୟଧାମ ।''

ଦିନ ଦିପହରଯାଏ କୀର୍ତ୍ତନ ଗାଇ ଗାଇ ବାଆଣିଆ ଗାଆଣିଆମାନେ ଥକି ପଡ଼ିଲେଣି । ଥକା ମେଣ୍ଟିବା ପାଇଁ କୀର୍ତ୍ତନ ବନ୍ଦ କରି ସମସ୍ତେ କିଛିକ୍ଷଣ ବସିଲେ । ବାଳଭୋଗପାଇଁ ଜେଜିମା ଦଶ ଭରଣ ଧାନ ଆଉ ଗୁଡ଼ର ବରାଦ କରି ଦେଇଥିଲେ । ମଫସଲମାନଙ୍କରୁ ଉଖୁଡ଼ା ଚିଅଁରି ହୋଇ ଆସିଥିଲା । ସେହି ବାଳଭୋଗ କୀର୍ତ୍ତନିଆ ଆଦି ଆଉ ଲୋକେ ସେବାକରି ଜଳ ପାନ କଲେ । ପ୍ରସାଦ ହେବାକୁ ଡେରି ବିଳମ୍ବ ଅଛି ।

କୀର୍ତ୍ତନିଆମାନଙ୍କ ମଧ୍ୟରେ ସଙ୍ଗୀତ ବିଦ୍ୟାର ଆଲୋଚନା ଆରମ୍ଭ ହେଲା । ଦେଶ ମଧ୍ୟରେ କେଉଁ ବାଆଣିଆର କିପରି ହାତ, କାହାର କିପରି କଣ୍ଠସ୍ୱର ଇତ୍ୟାଦି ବିଷୟ ଚର୍ଚ୍ଚା ଲାଗିଲା । ମୁକୁନ୍ଦପୁର ସମ୍ପ୍ରଦାୟ ଶ୍ରୀ ବାଆଣିଆଙ୍କର ଭାରି ନାମ ଡାକ—ସେ ମନ ମଧ୍ୟରେ ବିଚାର କଲେ, ସମସ୍ତଙ୍କ ଆଗରେ ଆପଣା ଗୁଣ ଜାହିର କରିବାର ତ ଏହି ବେଳ । ଆପଣା ହାତର ସଫାଇଟା ସମସ୍ତଙ୍କୁ ଦେଖାଇବା ପାଇଁ ମୃଦଙ୍ଗଟା କାନ୍ଧରେ ପକାଇ ଖପ୍ କରି ଛିଡ଼ା ହୋଇ ଏକତାଲର ବୋଲଟା ଝାଡ଼ିବାକୁ ଲାଗିଲେ—

ଧିକତା—ତାଧିନା—ତାକତି—ତାଧିନା !

ନାଚି ନାଚି କେବେ ଚକାକାର, କେତେବେଳେ ଗାଈଛନ୍ଦ ପରି ଘୂରି ଯାଉଥାନ୍ତି—ତାଳ ଛିଡ଼ିବାବେଳେ ମୁଣ୍ଡଟାକୁ ବେଜାଏ ଝୁଲାଇ ବାଆଣିଆମାନଙ୍କ ଆଡ଼କୁ ଡାହାଣ ହାତଟା ଲମ୍ବାଇ ଦେଉଛନ୍ତି । ଶ୍ୟାମନଗର ସମ୍ପ୍ରଦାୟର ବାଆଣିଆ ରାମ ଦାସେ ଆଉ ସମ୍ଭାଳି ପାରିଲେ ନାହିଁ, ଛିଡ଼ା ହୋଇଯାଇ ଲୋଫା ତାଳରେ ବୋଲଟା ଆରମ୍ଭ କରିଦେଲେ—

ଧାକତି—ତିଧାକତି ।

ଦୁଇ ସୁରି ହାତ ଦେଖାଇଛନ୍ତି, ବାଆଣିଆ ଗ୍ରାମ ଅଧିକାରୀଏ ଖୁବ ପାଟିଟାଏ କରି କହିଲେ, "ହେଁ—ହେ—ହେଁ ! ଏକତାଲା—କବାଲ—ତେଓଟ କାହାକୁ ଅଜଣା ? ଦେଖା ତ ଭଲା ହାତେ ରୁଦ୍ରତାଳ ।" ରାଧା ଦାସ ବାଆଣିଆ ଜବାବଦେଲେ—"ହୋଇ ହେ ବାଆଣିଆ ଭାଇ ! ଆପଣଙ୍କ କଥାଟି ଠିକ ହେଲା ଜାଣେ ମୋ ମୁଣ୍ଡ ଉପରେ । ବୋଇଲ ଭଲା—ରୁଦ୍ରତାଳ ବଡ଼ ନା ବ୍ରହ୍ମତାଳ ବଡ଼ ? ଏହି ଦେଖନ୍ତୁ ବ୍ରହ୍ମତାଳ ।" ତାଙ୍କ ହାତ ନ ସୁଲୁଣୁ—ଆଉ କଣ ସମ୍ଭଳା ପଡ଼େ—ଆଉ ଆଉ ସମ୍ପ୍ରଦାୟର ବାଆଣିଆମାନେ କମ୍ପିଗଲେଣି । ଆପଣା ସମ୍ପ୍ରଦାୟ ଆଗରେ ସମସ୍ତେ ଏକାବେଳକେ ମୃଦଙ୍ଗ କାନ୍ଧରେ ପକାଇ ଛିଡ଼ା ହୋଇଗଲେ । ଯେଉଁ ବାଆଣିଆଟା ଗଲା-ଶ୍ରୀପଞ୍ଚମୀ ଦିନ ପୂଜା ଦେଇ ମୃଦଙ୍ଗ ଛୁଇଁଛି, ତାହାର ଉଆଁ ତେଲି ବଢ଼ି ପଡ଼ୁଛି । କିଏ ଚେଷ୍ଟରେ ତାଳ ମାନ, ଘୂରି ଘୂରି ହାତ ଚଳା ମାରି ଛୁଞ୍ଚା ମୃଦଙ୍ଗ ବାଉଛନ୍ତି । ହଜାର ହଜାର ଲୋକଙ୍କ ହରିବୋଲ ଆଉ ଗାଁର ମାଇକିନିଆମାନଙ୍କ ଶଙ୍ଖ ହୁଳହୁଳିରେ ଯେମନ୍ତ ଭୂମିକମ୍ପ ଉପୁଜିଛି । ବାଆଣିଆ-ମାନଙ୍କର ଚେତା ଥିଲା ପରି ଜଣା ଯାଉ ନାହିଁ । ମୃଦଙ୍ଗକୁ ମୃଦଙ୍ଗ ଠକାଠକି ହୋଇ ଦଶ ବାରଟା ଭାଙ୍ଗିଗଲାଣି—ଖପରା—ଗୁଡ଼ାକ ଖସି ପଡ଼ି ଛୁଞ୍ଚା କାକେରିଗୁଡ଼ାକ ବେକରେ ଝୁଲୁଛି; ହେଲେ ହାତ ବନ୍ଦ ନାହିଁ । କାହାରି ଗାମୁଛା କାହାର ବା ପାଟେଉଡ଼-ଖଣ୍ଡମାନ ମୁଣ୍ଡରେ ପାଗ ବନ୍ଧା ଥିଲା, ବେଜାଏ ମୁଣ୍ଡଝୁଙ୍କାରେ ତଳେ ଖସି ପଡ଼ିଲାଣି, ଲୋକେ ମାଡ଼ି ଦଳିଦେଇ ଯାଉଛନ୍ତି । ଥୋକେ ବାଆଣିଆଙ୍କର କଣ୍ଠ ମୁକୁଳା । କୀର୍ତ୍ତନିଆମାନେ ଦେଖିଲେ, ଆଉ ସମ୍ଭଳା ପଡ଼ିବ ନାହିଁ—ଆପଣା ଆପଣା ପକ୍ଷର ବାଆଣିଆ-ମାନଙ୍କ ହାତ ଧରି ଭିଡ଼ି ନେଇ ବସାଇ ଦେଲେ । ସମସ୍ତେ ଗୋଟା ଝାଳରେ ସରପଟ । ଲୁଗା କାନିଟାମାନ ଧରି ବିଞ୍ଚି ହେଉଛନ୍ତି । ଫଁ ଫଁ କରି ନିଶ୍ୱାସ ପଡ଼ୁଛି ।

ବେଳ ତିନ ପହରର ସରକ ଧୂପ ଘଣ୍ଟା ବାଜିଲା । ଭୋଗମଣ୍ଡପରେ ଏତେ ଜାଗା କାହିଁ ? ଆଗ ଅଗଣାଟା ଧୋଇ ଧାଇ ଗଚ୍ଛପ୍ରମାଣ ଅମଣିଆ ଗଦା । ପୂଜାହାରୀ ଚଳୁ ଧରି ତୁଳସୀପତ୍ରଟାଏ ପକାଇ ଘଣ୍ଟା ବଜାଇ ଭୋଗ ଲଗାଇ ଦେଲେ ।

ଧୂପ ଉତ୍ତାରେ ପ୍ରସାଦସେବାର ଆୟୋଜନ ହେଲା । ପ୍ରଥମେ ହେଲା ବ୍ରାହ୍ମଣ ଭୋଜନ ନିସଙ୍ଖୁଡ଼ି । ବୈଷ୍ଣବ ପଙ୍ଗତ ଉତ୍ତାରେ ବାବୁଙ୍କର ପ୍ରସାଦ ସେବା ହେବ । ହଜାରକୁ ହଜାର ବୈଷ୍ଣବ ଗୋସାଇଁ ଧାଡ଼ି ଧାଡ଼ି ବସିଗଲେ । ଊଣା ଅଧିକ ତିନକୋଡ଼ି ସରକ ପରଷୁଣିଆ ଅସ୍ଥାନରେ ଗାମୁଛା ଭିଡ଼ି ପରଷି ଯାଉଛନ୍ତି । ଅନ୍ନ ବ୍ୟଞ୍ଜନ ଲଗିଗଲା, ଅଧିକାରୀଏ ଆଗରେ ଛିଡ଼ା ହୋଇ ଜୟ ଫେରାଇଲେ—

ଅଧିକାରୀ—ଶ୍ରୀ ଯୁଗଳକିଶୋରଙ୍କ—
ସମସ୍ତେ ବୈଷ୍ଣବ—ଜେ !
ଅଧିକାରୀ—ଶ୍ରୀ ବୃନ୍ଦାବନବିହାରୀଙ୍କ—
ସମସ୍ତେ—ଜେ !
ଅଧିକାରୀ—ଶ୍ରୀ ରାଧାରାଣୀଙ୍କ—
ସମସ୍ତେ—ଜେ !
ଅଧିକାରୀ—ଗିରିଗୋବର୍ଦ୍ଧନଙ୍କ—
ସମସ୍ତେ—ଜେ !
ଅଧିକାରୀ—ବାଳଗୋପାଳଙ୍କ—
ସମସ୍ତେ—ଜେ !
ଅଧିକାରୀ—ଦାତା ଭକ୍ତଙ୍କ—
ସମସ୍ତେ—ଜେ !
ଅଧିକାରୀ—ସବୁ ବୈଷ୍ଣବଗୋସେଇଁଙ୍କ—
ସମସ୍ତେ—ଜେ !
ଅଧିକାରୀ—ଠିକାଦାର ବାବୁଙ୍କ—
ସମସ୍ତେ—ଜେ !
ଅଧିକାରୀ—ମା ମଣିମାଙ୍କ—
ସମସ୍ତେ—ଜେ !
ଅଧିକାରୀ—ଜେଜୀ ମଣିମାଙ୍କ—
ସମସ୍ତେ—ଜେ !
ଅଧିକାରୀ—ପ୍ରେମସେ କହ—

ସମସ୍ତେ କହି ଉଠିଲେ—ନାହିଁ ନାହିଁ, ପୁଝାରୀ ଟହଲିଆ ରହିଗଲେ ।

ଅଧିକାରୀ—ପୁଝାରୀ ଟହଲିଆଙ୍କ
ସମସ୍ତେ—ଜେ ।
ଅଧିକାରୀ ସହିତ ସମସ୍ତେ—ପ୍ରେମସେ କହ ରାଧେ—

ବାକ୍ୟ ସମାପ୍ତ ନ ହେଉଣୁ ସପ୍ ସପ୍ ଗପ୍ ଗପ୍ ସଡ଼୍-ସଡ଼୍ ମଡ଼୍-ମଡ଼୍ ଶବ୍ଦ ଶୁଭିଲାଣି । ଚହଲ ପଡ଼ିଛି, ଆହେ ଡାଲି ଦିଅ ହେ—ଏ ଧାଡ଼ିରେ ଶୁକୁତାନି ନାହିଁ—ଆମ୍ବିଳ—ଆମ୍ବିଳ—ଅନ୍ନ ଆଣ ଅନ୍ନ ଆଣ ! ଯେତେ ଦିଅ, ବୈଷ୍ଣବ ଗୋସାଇଁମାନଙ୍କ ପତ୍ର ଭୁକ୍ଷା ମୋଟ୍ଟାପାଡ଼ୁ । ଖାଇଲା ପତ୍ର ଦୁଇ ପାଖରେ ଆଉ ଦୁଇ ଖଣ୍ଡ ପତ୍ର ପଡ଼ିଛି, ବୈଷ୍ଣବ ଗୋସାଇଁମାନେ ସେହି ଦୁଇ ପତ୍ରକୁ ବାହି ପକାଉଛନ୍ତି । ଏ ଦୁଇ ଖଣ୍ଡ ପତ୍ର କଣ ? ନା ଗୋସେଇଁଆଣୀଙ୍କ ପାଇଁ । ପାଣି ପିଇ ଦେଇ ଟୁକୁଣା ଭିତରେ ତସମୀ ଭର୍ତ୍ତି କରି ନେଲେ । ବୈଷ୍ଣବ ଗୋସାଇଁମାନଙ୍କର ପ୍ରସାଦସେବା ବଢ଼ିଲା—ଅଧିକାରୀଏ ସମସ୍ତଙ୍କ ପତ୍ରରୁ କଣିକାଏ କଣିକାଏ ଅଧରାମୃତ ନେଇ ଗୋଟିଏ ପଥର ଗିନାରେ ପୂରାଇ କଦଳୀପତ୍ର ଖଣ୍ଡେ ଘୋଡ଼ାଇଦେଲେ । ଜେଜୀ ମା, ମା ମଣିମା ଆଉ ଉଆସର ସମସ୍ତେ ସେବା କରିବେ ।

ତହିଁ ଉତ୍ତାରେ ବାବୁମାନେ ବସିଗଲେ । ଛତିଶ ପାଟକର ଏକ ଧାଡ଼ି—ଆଜି କି ଜାତି ବିଚାର ? ଏ ଯେ ହରିଲୁଟ । ଖାଲି ଚହଲ ପଡ଼ିଛି, ଆଣ ଅନ୍ନ । ପରଷୁଣିଆମାନେ ଧାଇଁଛନ୍ତି; ଗମ ଗମ ଖାଲି ଗୋଡ଼ବାଟେ ବହି ଯାଉଛି । ପ୍ରସାଦ ସେବା ବଢ଼ିବାରୁ

ରାତ୍ର ପ୍ରାୟ ଶେଷ । ପୂଜାହାରୀ ମଙ୍ଗଳ ଆରତି ପାଇଁ ସ୍ନାନ କରିବାକୁ ବାହାରିଛନ୍ତି, ଧାଈମା ସକାଳୁ ଠା ବସିଛନ୍ତି, ସ୍ନାନଟା ଯେ ବଢ଼େଇ ଆସିଥିଲେ ଚେତକ — ମହାଉଦ ବି ସେବା ହୋଇ ନାହିଁ । ଚମକ ପଡ଼ିଲେ, ରାତ୍ର ଯେ ପାହିଲା ଆସି, ପୂର୍ବଦିଗରେ ସୁନ୍ଦର ଫାଟିଲାଣି । ୫ଧାନାରୁ ଦେଇଥିବା ଅଧରାମୃତ ପଥରଗିନାଟା ଧରି ଉଆସକୁ ବାହାରିଲେ । ଯୋଡ଼ାଏ ପେଇଲା ପଛରେ ଧାଇଁଛନ୍ତି । ଏ କଣ ? ଧାଈମା ଯେଉଁ ଜାଗାରେ ବସାଇ ଦେଇ ଆସିଥିଲେ, ମଣିମା ଠିକ ସେଇ ଜାଗାରେ ବେଙ୍ଗୁଲିଟି ପରି ତୁନି ହୋଇ ବସିଛନ୍ତି । ଧାଈମା ଚଞ୍ଚଳ ଆପଣା ମୁହଁ ହାତ ଧୋଇ ପକାଇ ମଣିମାଙ୍କ ମୁହଁରେ ଓଦା ହାତଟା ବୁଲାଇ ଦେଲେ, ଆପେ କଣିକାଏ ଅଧରାମୃତ ମୁହଁରେ ଦେଇ ମଣିମାଙ୍କ ମୁଖରେ କଣିକାଏ ଗୁଞ୍ଜି ଦେଲେ । ଆଉ କଣିକାଏ ଦେବାବେଳେ ମଣିମା ମୁହଁ ବୁଲାଇ ନେଲେ ।

———

-୪୩-

## ମନ୍ତ୍ରଣା

ଉପର ଓଳିଆ — ବେଳ ଚଉଦଣ୍ଡ ସମୟ — ଯୁଗଳକିଶୋରଙ୍କ ନାଟମନ୍ଦିର ମଧ୍ୟରେ ଖଣ୍ଡିଏ ଗାଲିଚା ଆସନରେ ଶ୍ରେଷ୍ଠରାୟ ବିଜେ । ତାଙ୍କ ଆଗ ପାଞ୍ଚ ହାତ ସରିକି ଦୂରରେ ବୁଢ଼ା ଗ୍ରାମ୍ୟକରଣ ପଟା ଉପରେ ବସିଛନ୍ତି । ସାନ୍ତଙ୍କ ଡାହାଣହାତ ଦୁଆରବନ୍ଧ ଲଗାଲଗି ହରିବୋଲ ବାରିକେ । ଠିକ୍ ତାହାର ଆଗ ଗ୍ରାମୁଆ ବଜେମନ୍ଦିର ଭିତରେ କବାଟ ଉହାଡ଼ରେ କେବେ ପଣ୍ଡନ୍ତାନ, କେତେବେଳେ ବା ଓଢ଼ଣାର ଧଡ଼ି ଦିଶୁଛି । ନବେଲା କରି ଯାଇଛି, କେହି କାଳେ ପାଖକୁ ଚାଲି ଆସି କଥା ଶୁଣି ପକାଇବ — ସେଥିଲାଗି ଅଗଣାରେ ଯୋଡ଼ାଏ ପାଇକ ଟହଲ ଟହଲ ପହରାରେ ଥାନ୍ତି । ସମସ୍ତେ ତୁନି ତାନି — ତୁଚ୍ଛା ମୁହଁଚୁହାଁଚୁହିଁ ହେଉଛନ୍ତି — କେହି କିଛି ବୋଲିବାକୁ ନାହିଁ, ବୋଲିବେ ବା କଣ, କାହିଁକି ଆସିଛନ୍ତି କାହାରିକୁ କିଛି ଜଣା ନାହିଁ । ତୁଚ୍ଛା ହରିବୋଲ ବାରିକଟା ବସି ବସି ଗୋଟାଏ ମଚଲିବ ପାଞ୍ଚୁଛି । ସାଆନ୍ତ ଦୁଇ ତିନିଥର ମନ୍ଦିରଭିତରକୁ ଅନାଇଲେଣି — "ଆଚ୍ଛା, କାହିଁକି ଡକରା ହେଲ, କହିବା ହେଉ ।" କବାଟ ଉହାଡ଼ରୁ ବି ଦୁଇ ତିନି ଥର ଓଢ଼ଣା ଭିତରୁ ନାସିକାଟିଏ ଦିଶି ଗଲାଣି । ପଟ୍ଟନାୟକେ ଦୁହିଙ୍କ ମୁହଁକୁ ଚାହୁଁଛନ୍ତି । ଶ୍ରେଷ୍ଠରାୟ ସାନ୍ତେ ଆଉ ତୁନି ହୋଇ ବସି ରହି ପାରିଲେ ନାହିଁ, ପଟ୍ଟନାୟକଙ୍କ ମୁହଁକୁ ଅନାଇ ପଚାରିଲେ, "କଥା କଣ ପଟ୍ଟନାୟକେ ?" ଧାଈମା ଡାକିଛନ୍ତି, ସତ, ହେଲେ — ହଠାତ୍ ତାଙ୍କୁ ପଚାରିଦେବାଟା ମର୍ଯ୍ୟାଦାର କଥା ନୁହେ, ଏହା ମଧ୍ୟ ଜାଣନ୍ତେ । ଅନୁମାନ କରିନେଲେ, ପଟ୍ଟନାୟକେ ତ ପାଖରେ ଅଛନ୍ତି, ଧାଈମାଙ୍କ କଥା ଜଣା ଥିବ । ହରିବୋଲ ବାରିକ ସଟପଟିଗଲାଣି — ଯା ମଲା ! କଥାଟା ଯେ ଫାସିଆରି ହେବାକୁ ବସିଲା ! କଥା କଣ କି କେହି କାହାରିକୁ ଡାକି ନାହାନ୍ତି, ହେଲେ କଣ ହେଲା ସମସ୍ତେ ଡାକରାରେ ଆସିଛନ୍ତି । ସକାଳ ଓଳି ଗୋଟାଏ ଧାଉଡ଼ିଆ ଯାଇ ସାନ୍ତଙ୍କ ପାଖରେ ଜଣାଇଲା ଧାଈମାଙ୍କ ଇଚ୍ଛା, ଆଜି ଚଉଦଣ୍ଡିଆ ବେଳେ ଯୁଗଳକିଶୋରଙ୍କ ଦର୍ଶନକୁ ବିଜେ ହେବେ । ଧାଈମାଙ୍କ ପାଖରେ ସମ୍ବାଦ ପହଞ୍ଚିଲା ଶ୍ରେଷ୍ଠରାୟ ସାନ୍ତ ମନ୍ଦିରରେ ବିଜେ ହେବେ, ତାଙ୍କର କିଛି ଜଣାଇବାର ଅଛି । ପଟ୍ଟନାୟକେ ସମ୍ବାଦ ପାଇଲେ — ସାନ୍ତ ଆଉ ସାନ୍ତାଣୀଙ୍କ ଆଜ୍ଞା, ମନ୍ଦିରରେ ହାଜର ହେବେ । ହେଲେ କେହି କାହାରିକୁ ଡାକି ନାହାନ୍ତି । ଏ ସବୁ ହରିବୋଲ ବାରିକର ଚକ୍ର । ହରିବୋଲିଆ ବିନା ସ୍ୱାର୍ଥରେ ହାଟକୁ ଯିବାର ଲୋକ ନୁହେ — ଏଠି କାଣ୍ଡ କଣ ମାହାଳିଆ କରି ପକାଇଛି ? ନାହିଁ, ନାହିଁ, ତାହାର ମତଲବଟା ଆମ୍ଭମାନଙ୍କୁ ଜଣା । ହରିବୋଲ ବାରିକର ଗୋଟାଏ ସ୍ୱଭାବ, ତୁଚ୍ଛାଟାରେ ଗୋଟାଏ

ନିରୀଶିଆ ଲୋକକୁ କେହି ଲୁଟି ପକାଇବ, ଏ କଥାଟା ତାକୁ ଅସହଣି । ଆଜି ସକାଳେ ନଜରଡ଼େରେ ହରି ମହାକୁଡ଼କୁ ନଟବର ବାବୁଙ୍କର ଗୋଟାଏ ଗୁମାସ୍ତା ଖଜଣା କଥାରେ ଦୁଇଟା ଗୁମୁଡ଼ା ଲଗାଇ ଦେଲା । ହରିବୋଲ ବାରିକ ସେଠି ଠିଆ ହୋଇଥିଲା, ତା ଦେହ ସହିଲା ନାହିଁ । ସେ ଗୁମାସ୍ତା ସାଙ୍ଗରେ ଲଗାଇଲା ଭଟ୍‌ଭଟ୍ । ଗୁମାସ୍ତା ହାକିମ ହୁକୁମ ଧରା ଲୋକ, ସେ ଭଣ୍ଡାରି ବାପୁଡ଼ା କଥା ଶୁଣି କଣ ଚପିଯିବ ? ସେ ମଧ୍ୟ ଆଜ୍ଞା କରି ଗୁହ୍ୟକଥା ବକେଇ ଦେଲା । ବାରିକେ ଖତ୍ରି ଖଗ୍ରାଟା ହୋଇ କହିଲେ, "ଦେଖ, ତୁମେ ଆପଣ ତ ହାକିମପ୍ରସ୍ତ ଲୋକ, ଆଉ କଣ କହିବ ? ତେବେ ମୋ କଥା ଶୁଣ, ଆଜିଁ ପାଞ୍ଚଦିନ ଭିତରେ ତୁମକୁ ତଣ୍ଟିଆ ଦେଇ ଯେବେ ଦେଶରୁ ନ ତଡ଼େ, ମୁଁ ଭଣ୍ଡାରି ପିଲା ନୁହେଁ ।" ରାଗ ମୁଣ୍ଡରେ ବଡ଼ପଣଟାଏ କରି କଥାଟା ପାଞ୍ଚ ଜଣଙ୍କ ଆଗରେ କହି ପକାଇଲା, ଏବେ ମାନ ମହତ ରହେ କପରି ? କପରି ଗୋଟାଏ ବାହାର କରିବା ପାଇଁ ଫିକର କରି ସମସ୍ତଙ୍କୁ ରୁଣ୍ଡ କରିଛି । ହେଲେ କଥାଟା ବାହାରିଗଲାଣି ଆଉ ଆଡ଼େ ।

ବାରିକ ଆପଣା ଗାମୁଛା ବେକରେ ପଟା ପକାଇ "ଆଜ୍ଞା—ଆଜ୍ଞା—ଆଜ୍ଞା" ତିନିଥର କହି ତିନିଜଣଙ୍କୁ ଡାପ୍ ଡାପ୍ କରି ଭୂଇଁରେ ମୁଣ୍ଡ ଲଗାଇ ତିନିଟା ଜୁହାର କରି କହିଲା, "ଆଜ୍ଞା—ଏଁ ହରିବୋଲ ! ଆପଣମାନେ କିଛି କଥା ଆଜ୍ଞା କରିବା ଆଗରୁ ମୁଁ ଦିଟା କଥା ଜଣାଇବି । ମୁଲକର ହାକିମ ହେଲେ ପିଲା, ସେ ପୁଣି କାହିଁ ପରବାସରେ ପଡ଼ିଛନ୍ତି । ଓନ୍ଲୁଣି ନ ଛି କଣ ବା ବୁଝନ୍ତି ! ଆପଣମାନେ ହେଲେ ପୁରୁଣା ହାକିମ— ଭଲମନ୍ଦ କାହାକୁ ଲାଗେ ? ନିନ୍ଦା ପରଶଂସା କାହାକୁ ? ଉଆସ ପରିଜନଙ୍କ ଦୁଃଖକଥା ଶୁଣି ମୁଲକ ଲୋକଙ୍କ ଆଖିରୁ ଥପ୍-ଥପ୍ ପାଣି ପଡ଼ୁଛି । ଆଜି ଦେଖନ୍ତୁ ସାତ ପୁରୁଷର ଦାନାଖିଆ ଲୋକର ପାଞ୍ଜିଆ-ପଟୁଆର-ମାନଙ୍କ ଘାଞ୍ଚୁଣି କହଣ ଅସରନ୍ତା । କେଉଁଣ ପିଲାଗୁଡ଼ାକ କରି ମୂଲ ଲାଗିବାକୁ ଯିବେ ? ମରନ୍ତୁ ବଞ୍ଚନ୍ତୁ ମୁହିଁ ମାଡ଼ି ମାଟି କାମୁଡ଼ି ଘରେ ପଡ଼ିଛନ୍ତି । ଏଣିକି ଆଉ ରକ୍ଷା ନାହିଁ । ପ୍ରଜାଙ୍କ ଦରୁ ଲୁଟି କରିବାଟା ସରିଲାଣି, ପୁଣି କଥା କଥାକେ କଚ୍ଛେରୀ ବସୁଛି । ପ୍ରଜା ଲୁଚୁ ହେଲେ କାଉପଲ, ଅସହଣ ହେଲେ ଗଦା ହୋଇ ତ ରାଉ ରାଉ କରିବେ ! ଗଲା ଗୁରୁବାର ହାଟପାଳି ଦିନ ନୂଆପୁରର ହାଟ ମୁଣ୍ଡରେ ପାଞ୍ଚ କି ଦଶହଜାର ପ୍ରଜା ରୁଣ୍ଡ ହୋଇ ବିଗୁର କରୁଥିଲେ, କଟକ ଯାଇ ହାକିମଙ୍କୁ ଦୁଃଖ ହାଲ ଜଣାଇବେ । ମୁଁ ପହଞ୍ଚିଗଲା—ବିଗୁର କଲି, କଥା ସରିଲା ଆସି ଦେଶ ନିନ୍ଦା, କୁଳ ନିନ୍ଦା, ଦାନାଦାର ହାକିମମାନଙ୍କ ନିନ୍ଦା । ହାତ ୫୦ ଧରି ଅଟକାଇ ଦେଲି—କହିଲି, ଆରେ ଦରି ହାକିମମାନଙ୍କୁ ଜଣାଇବା, ସେମାନେ ନ ବୁଝିଲେ କଟକ ଯିବା । ସେମାନେ ଆପଣମାନଙ୍କ ଚରଣ ଗୁମୁରେ ଦୁଃଖ ହାଲ ଜଣାଇବାକୁ ପଠାଇଲେ । କଣ ଆଜ୍ଞା ହେଉଛି ?"

ସବୁ କଥା ଶୁଣି ତିନି ଜଣଯାକ ମୁଣ୍ଡ ତଳକୁ କରି ବସିଲେଣି । ସମସ୍ତେ ଆପଣା ଆପଣାକୁ ଦୋଷୀ ମଣି ଲାଜରେ ସଢ଼ି ଯାଉଛନ୍ତି । ଧାଙ୍କିମା ମନରେ କଲେ; 'ମୁଁ ରିପୋର୍ଟରେ ଗୁନ୍ଦର ମୋହରଟା ଚପାଇ ଦେବାରୁ ସିନା ନଟ ହାତରେ ଅଧିକାର ପଡ଼ିଲା ।' ସାନ୍ତ ମନରେ କଲେ, 'ମୁଁ ପ୍ରଥମରେ ବାଧା ଦେଇ ତଦ୍‌ବିର କରିବା ଲାଗି କଟକ ଗଲି ଯାଇଥିଲେ ନଟିଆ ଟୋକାଟା କଣ ଏତେ ଲଟଘଟ କରି ପାରନ୍ତା ?' ପାଞ୍ଜିଆ ବସି ବସି ମନରେ ଭାବୁଛନ୍ତି, 'ପାଞ୍ଜି ଗୁଡ଼ାକ ବଢ଼ାଇ ଦେଇ ସର୍ବନାଶ କରିଛି । ପାଞ୍ଜି ପାଇ ନ ଥିଲେ ସେ କଣ କରନ୍ତା ?'

ଦଣ୍ଡିକ ଉତ୍ତାରେ ଫଁ କରି ନିଶ୍ୱାସଟାଏ ପକାଇ ଗୁମୁକରଣେ କହିଲେ, "ଯା ହେବାର ତ ହୋଇଛି, ଏବେ ଉପାୟ କଣ ?" ବାରିକେ ଟୁଡ଼ା ହୋଇପଡ଼ି କହିଲେ, "ଏଁ—ହରିବୋଲ ! ଆଜ୍ଞା ଉପାୟ ସହଜ—

ମତେ ଆଜ୍ଞା ହେଉ, ଦିନକ ଭିତରେ ଠିକ କରିଦେଇ ଦେବ । ମୁଁ କହୁଛି, କଟଣା ପାଞ୍ଜିଆମାନଙ୍କୁ ଥାନେ ଥାନେ ଚଢ଼େଇ ପାଞ୍ଜି ଛଡ଼ାଇ ନେବା, ଆମର ତ ସମସ୍ତେ, ଗୁହା କାହିଁ ପାଇବେ ଯେ ନାଲିଶ କରିବେ ? ଆମ ପୁରୁଣା ପାଞ୍ଜିଆମାନେ ଟଙ୍କା ଅସୁଲ କରି ସରକାର ଘରେ ଖଜଣା ଦାଖଲ କରିବେ । ହାକିମ ସିନା ଟଙ୍କାରେ ମାଲିକ, ଟଙ୍କା ପାଇଲେ କଣ କରିବେ ?’ ସମସ୍ତେ ହସି ଉଠିଲେ । ସାନ୍ତେ କହିଲେ, “ସରକାରି ଲଗା—ଗୋଟିଏ ଗୋଳମାଳ ଉଠିବ ।”

ପାଞ୍ଜିଆ କହିଲେ, “ତେବେ ସେମାନଙ୍କଠାରୁ ହିସାବ ବୁଝିବା, ସବୁ ଧରା ପଡ଼ିଯିବ ।”

ସାନ୍ତେ—ତାହା ବି ହାକିମଙ୍କର ହୁକୁମ ଦରକାର । ହେଉ, କଳ୍ହାର ଆଉ ଉଆପର ହାଲ ହବାଲ ଲେଖି ରିପୋର୍ଟ କରି ଟଙ୍କା ଜମା ଖରଚ ବୁଝିବା ସକାଶେ ସରକାରରୁ ହୁକୁମ ଅଣାଯାଉ । ଧାନ୍ଧମା କଣ ଆଜ୍ଞା କରୁ ଅଛନ୍ତି ?

ଧାନ୍ଧମା—ମୁଁ ଡରିଲା ଲୋକ, କଣ ଜାଣେ, କଣ କହିବି ? ହେଉ, ସାନ୍ତ ଯାହା ଆଜ୍ଞା କରୁଛନ୍ତି, ତାହି ହେଉ । ପୀତାମ୍ବର ବାବୁଙ୍କୁ ଲେଖନ୍ତୁ ସେ କଟକରେ ଉତ୍କଳ ମୁକ୍ତାର ମାମଲତକାରଙ୍କୁ କଥା ସବୁ କହିବେ, ସେମାନେ ଯେପରି ପରାମର୍ଶ ଦେବେ, ସେହିପରି କରାଯିବ ।

ହରିବୋଲ ବାରିକ ମନକୁ ଏ କଥାଟା ପାଇଲା ନାହିଁ । ତାହାର ବଡ଼ ଇଚ୍ଛା ଥିଲା, ହାକିମମାନେ ହୁକୁମ ଦେବେ, ସେ ଧାଇଁ ଯାଇଁ ସେହି ପାଞ୍ଜିଆଟା ପାଖରୁ ପାଞ୍ଜି ବଡ଼ା ଛଡ଼ାଇ ଆଣିବ । ପଛରେ ଆପଣା ମନକୁ ବୁଝାଇଲା, ହେଉ ହେଉ—

“ବୁଦ୍ଧି ସମ୍ପତ୍ତି କାମ କଲେ,
ପ୍ରମାଦ ନ ପଡ଼ଇ ଭଲେ ।”

---

-୫୪-

## ସାବଧାନତା

ସାପର ଆଖି ଚାରିଆଡ଼େ ଖେଳେ । ମଧରର ମନ୍ତ୍ରଣାଟା ଠିକ୍ କରି ନାଜର ବାବୁଙ୍କ କାନରେ ବାଜିଗଲା । ଟିକିଏ ଚମକି ଗଲେ । ଦଣ୍ଡେ ବସି ବିଚାରିଲେ—ଆଉରି ଅଛି ଚାରି ମାସ ଡେରି । ଏହି କେତେଟା ମାସ ଟିକିଏ ହୁରୁକ୍ଷୁରୁରେ ଗଡ଼େଇ ନେବାକୁ ହେବ । ସତ କଥା, ପ୍ରଜା ଗୁଡ଼ାକ ତ କାଉ—ଉଛୁଳିଲେ ସମ୍ଭାଳା ପଡ଼ିବେ ନାହିଁ । ରିପୋର୍ଟଟା ପଢ଼ାଯିବା ବି ହରକତ ମାମଲା । ଆପେ ବାହାରି ପଡ଼ିବାକୁ ହେବ, ଆଉ କାହାରି ହାତରେ ହେବାର କଥା ନୁହେ, ଖୁବ ସାଧାନତା ଦରକାର । ଚାଦରଟା କାନ୍ଧରେ ପକାଇ ବାହାରି ପଡ଼ିଲେ—ଏକା ବେଳକେ ନରୁ ବାବୁ ଦୁଆରେ ହାଜର । “ନରୁ ବାବୁ ରେ ! ମୋ ନରୁବାବୁ ରେ !” ଡାକୁ ଡାକୁ ଦୁମ୍ ଦୁମ୍ କରି ‘ଦୋତାଲା ଉପରକୁ ଉଠି ଗଲେ । ନରୁବାବୁଙ୍କର ପଢ଼ା ଚାଲିଛି—ଆଗରେ ପଣ୍ଡିତ ମୃତ୍ୟୁଞ୍ଜୟ କବିଭୂଷଣେ ଚୌକିଟାରେ ବସି ‘ସୋଽହମାଜନ୍ମଶୁଦ୍ଧାନାମାଫଳୋଦୟକର୍ମଣାଂ’ ଶ୍ଲୋକଟାର ଅର୍ଥ ବୁଝାଉଛନ୍ତି । ଦଣ୍ଡେଇ ପିଲାକୁ ବଗ ଚାହିଁଲା ପରି ବାବୁ ପିଲା ରଘୁବଂଶ କତାପଟା ଫିଟାଇ ଏକଧ୍ୟାନରେ ଚାହିଁଛନ୍ତି । ମାମୁଙ୍କୁ ଦେଖି ନରୁବାବୁ ଛିଡ଼ା ହୋଇଗଲେ । ‘ବସ ବାପ ବସ’ ବୋଲି ମାମୁ ଖଣ୍ଡେ ଚୌକି ଟାଣିନେଇ ଦୁମ୍‌କରି ବସି ପଡ଼ିଲେ । “ପଣ୍ଡିତେ, ଭଣଜା ବାବୁଙ୍କ ସଙ୍ଗରେ କିଛି ନିରୋଳା କଥା ଭାଷା ଅଛି ।” କଥାଟା ଯିମିତି ମାମୁଙ୍କ ମୁହଁରୁ ବାହାରିଛି, ପଣ୍ଡିତ ବଡ଼ ଭଲ ଲୋକଟି ପରି ତଳକୁ ଓହ୍ଲାଇଗଲେ । ଦୁଷ୍ଟ କରୁଣାଟା କେଉଁଠି ଥିଲା, ଚୁନ ଚୁନ ଆସି ଟିକେଇତ ବାବୁଙ୍କ ପଛପଟ କବାଟ ଉହାଡ଼ରେ ଲୁଚିକରି ବସି ପଡ଼ିଲାଣି । ସେ ଏମନ୍ତ ଜାଗା ଧରି ବସିଛି, ଯେମନ୍ତ ନାଜରଙ୍କ କଥାସବୁ ଶୁଭିବ, ଆଉ

ସେ କଣ କରୁଛନ୍ତି ଦେଖିବ, ମାତ୍ର ନାଜରଙ୍କୁ ତାଙ୍କୁ ଦେଖି ପାରିବେ ନାହିଁ । କରୁଣା ନାଜରଙ୍କୁ ଭଲ କରି ଚିହ୍ନେ ।

"ଆରେ ନରୁ ବାବୁ ! ତୁମେ କଣ ମୋ ଭଣଜା ରେ ! ତୁମେ ମୋ କୁଳନନ୍ଦନ ! କୁଳଚନ୍ଦ୍ରମା ! ତୁମେ ମୋ ହୃଦୟ ରକ୍ତ । ତୁମେ ଦୁଇ ପିଲା ସେ ମୋ ଦୁଇ ନୟନର ପିତୁଳା । ମୁଁ ଦୁଇ ଓଳି ତୁମର ଖବର ନେଉଥାଏଁ—ପଢ଼ା କେତେଦୂର ହେଲା ବୁଝୁଥାଏ । ତୁମର ଯେ ପାସ୍ ହେଲା ଏକ୍‌ଜାମିନରମାନଙ୍କୁ ଉଣା ଖୋଷାମଦ କରିଛି ? ସେମାନେ ସାଫ କାଗଜ ଦେଖାଇଲେ, ଏଗ୍ରିଗେଟକୁ ପୂରା ତିରି ନମ୍ବର ଉଣା—ମୋ ମୁଣ୍ଡରେ ତ ବଜ୍ରଟାଏ ପଡ଼ିଗଲା । ( ଖୁବ ତୁନି ତୁନି କହିଲେ ) କାହାରି ପାଖରେ କହିବ ନାହିଁ, ସେ ଲାଗି ଢେର ଟଙ୍କା ଖରଚ । ମୁଁ ବରାବର ଏଠିକି ଆସେଁ ଘର ଗୁରୁପଠ ବୁଲି ଯାଏଁ, ଖାଇବା ପିଇବା କଥା, ପଢ଼ା ଶୁଣା କଥା ପରବାରେ ସବୁ ବୁଝିଯାଏଁ । ପାଖକୁ ଆସେ ନାହିଁ ଖାଲି ତୁମର ପଢ଼ା କ୍ଷତି ହେବ ବୋଲି । ମନରେ କରେଁ, ଦେଖାରେ କଣ ଅଛି, ନରୁ ପଢ଼ା କରୁ । ପଢ଼ାରେ ସବୁ—ପାଠ ପଢ଼ିଲେ ଖୁବ ଜ୍ଞାନ ହୁଏ । ଖୁବ ମନ ଦେଇ ପଢ଼ିବ । ସଞ୍ଜ ସକାଳେ ବଜାରକୁ ବୁଲି ଯିବ ନାହିଁ । ଦେହରେ ଗୁଣ ଥିଲେ ସମସ୍ତେ ମାନିବେ । ତୁମେ କଣ ଗୁରୁକଟାଏ କରିବ ? ରଜାପୁଅ ରଜା ହେବ । ଆଜି କାହିଁ ଆଇଲି ଜାଣ ? ତୁମେ ଯେ ମୋ ବସାରେ ଥିଲ, ଆରେ ଛି ! ସେଟା କ'ଣ ତୁମ ଭଳି ରଜା ପୁଅଙ୍କ ରହିବାର ଘର ? ହଠାତ୍ ଘର ମିଳି ନ ଥିଲା ବୋଲି ସିନା ! ଯେଉଁ ଦିନ ଘର ଠିକ ହେଲା ମୁଁ ଯାଇଛି ଘରଟା ସଫା କରାଇବାକୁ – ମେଜ ଚୌକି ସଜାଇ ଦେବାକୁ—ତୁମକୁ ତ ଜଣା ନାହିଁ, ଚାଲି ଆସିଲ । ହେଉ ହେଉ, ମଉସା କଣ ପର ? ମୁଁ ତ ତାଙ୍କୁ ହୃଦୟବନ୍ଧୁ ବୋଲି ଜାଣେ, ସେ ମନରେ ଯାହା କରନ୍ତୁ । ଆଜି କାହିଁ ଆଇଲି ଜାଣ ? ଉଁ—ହୁଁ ! ଏଇଟା ଜାଣ ତୁମଲାଗି ଘର ? ଗୋଟାଏ ସୁନ୍ଦର ତେତାଲା ନୂଆ ଘର ଭଡ଼ା କରି ସଜାଇ ଦେଇଛି । ଘରର ତଳଟା ଶତରଞ୍ଜି ବିଛଣା, ତା' ଉପରେ ଚୌକି ମେଜ ଖଟ ଆଲମାରି ନୂଆ, ସ୍କୁଲକୁ ଖୁବ୍ ପାଖ, ତୁମେ ଯାଇ ସେଇ ଘରେ ରହିବ । ଗୋଟାଏ ବଗି ଗାଡ଼ି ଖୁବ ଶସ୍ତାରେ କିଣିଛି । ସେକେଣ୍ଡ ହେଣ୍ଡ ହେଲେ କଣ ହେଲା, ଅରଖ ନୂଆ ପରି ଚକ୍‌ଚକିଆ । ସେଇ ଗାଡ଼ିରେ ଚଢ଼ି ସହରସାରା ବୁଲିବ । ପାଞ୍ଜି ଦେଖିଲି—ଆସନ୍ତା ଶୁକ୍ଳଦଶମୀ ବେଳ ଛ'ଘଡ଼ି ଦୁ'ଦଣ୍ଡ ତିନି ଲିତ୍ୟା ଉତ୍ତାରେ ଗୃହ ପ୍ରବେଶ ଶୁଭ । ତୁମେ ପ୍ରସ୍ତୁତ ଥିବ—ବଗି ଧରି, ମାଲମତା ନେବା ପିବାକୁ ଶଗଡ଼ ଦୁଇଖଣ୍ଡ ଆସିବ । କି ବାବୁ—ଏଣ୍ଟୁ କଥା ହେଲା ତ ?"

ନରୁ ବାବୁ—ମଉସାଙ୍କୁ ପଚାରି ଖବର ଦେବି ।

ମାମୁ—ଅବଶ୍ୟ ! ଅବଶ୍ୟ ! ସେ ହେଲେ ଜଣେ ମୁରବି—ତାଙ୍କୁ ନ ପଚାରିବ କିପରି ? ବଡ଼ ଖୁସି ହେଲି । ଯେପରି ଲୋକର ପୁଅ, ସେହିପରି କଥା । ଆଚ୍ଛା ଆଚ୍ଛା, ମୁଁ ବି ଧାଇମାକୁ କହିବି । ସେ କଣ ମୋ କଥାରୁ ବାହାର ହେବେ ? ରୋଜ ରୋଜ କଟି ଯିବା ଆସିବା ହେଉଛି । ମୋତେ ନ ପଚାରି କିଛି କଥା କରନ୍ତି ନାହିଁ । ନା—ନା, ମୁଁ ନିଜେ ଯିବି, କଟି ପଥ କଥା ନୁହେ । ଗୁନ୍ଦକୁ ବି ଢେର ଦିନ ହେଲା ଦେଖି ନାହିଁ – ମନଟା କମିତି ଛଟପଟ ହେଉଛି । ସରକାରୀ କାମ କିଛି ହରକତ ହେବ, ହେଉ ପଛକେ—ତୁମ କାମ ବଡ଼, ନା ସରକାରୀ କାମ ବଡ଼ ? ମୋ ଯିବା ଆସିବାରେ ବୃକଶ ପଞ୍ଚାଶ ଟଙ୍କା ଖରଚ, ଏସବୁ ଖରଚ ନିଜ ହାତରୁ କରେଁ, କାହା ଠାରୁବାଲରୁ ପଇସାଏ ନିଏ ନାହିଁ । ପ୍ରତ୍ୟକ୍ଷ ଦେଖୁଛି, ମୋ ଭଣଜା ଯୋଡ଼କ ପିଲା, ତୁମମାନଙ୍କ ଟଙ୍କା ମୋ ପକ୍ଷରେ ବିଷ—ଠାକୁର ଅମଣିଆ । ଗୃହଆଡ଼କୁ ଆଉଥରେ ଅନାଇ କହିଲେ, ସେଇ ସେ ଭଣ୍ଡାରୀ କରୁଣାଟାକୁ

ଯେତେବେଳେ ତେତେବେଳେ ସାଙ୍ଗରେ ଧରି ନନ୍ଦ-କୂଳରେ ବୁଲ, ସେଇଟା ମୋତେ ଭଲ ଦିଶେ ନାହିଁ। କଟକର ଲୋକେ ଘରି ନିନ୍ଦା କରନ୍ତି। ଛି—ଛି! ମୋତେ ବଡ଼ ବାଧେ। ମୁଁ ଜଣେ ଭଲ ଚାକର ପଠାଇବି, ତାକୁ ସବୁବେଳେ ପାଖରେ ରଖିବ, ତାକୁ ଧରି ବୁଲି ଯିବ।

ନାଜର ବାବୁ ଉଠି ଛିଡ଼ା ହେଲେ, ପକେଟରୁ ଗୋଟା ପଞ୍ଚାଶ ହେବ ଟଙ୍କା କାଢ଼ି ନରୁବାବୁଙ୍କ ଆଗରେ ଥାକ କରି ଥୋଇଦେଲେ। ନରୁବାବୁ ପଚାରିଲେ, "ଏ କି ଟଙ୍କା ?"

ନଟବର ବାବୁ—ରଖିଥାଅ ରଖିଥାଅ ବାପା ପାଖରେ ରଖିଥାଅ, ଏଇଟା ତୁମର ପକେଟ ମନି। ରଜାପୁଅ, ରଜା, କେତେ ଖରଚ ଅଛି— ଏଣିକି ମାସକୁ ମାସ ଶହେ ଟଙ୍କା କରି ପକେଟ ମନି ପାଇବ। କାଲ୍ଲା ହିସାବ ମୁଣ୍ଡରେ ତେଲ ଦେଣା ଥିଲା, ଦେଇ ପାରୁ ନ ଥିଲି।

ନରୁବାବୁ ଏତେବେଳଯାଏ ମୂଷାଟି ପରି ତୁନି ହୋଇ ବସି ସବୁ କଥା ଶୁଣି ଯାଉଥିଲେ। ଏତେବେଳେ ପାଟି ଫିଟାଇ କହିଲେ, "ମଉସା ତ ସବୁ ଖର୍ଚ୍ଚ ଦେଉ-ଛନ୍ତି, ଆଉ ଟଙ୍କା କଣ ହେବ ?" ମାମୁ—"ଆରେ ବାପା! ଏଇଟା କଣ ମୋ ବାପା ଘରୁ ଧନ! ତୁମ ଟଙ୍କା ତୁମେ ଖରଚ କରିବ। ନାହିଁ ନାହିଁ ପଡ଼ିଗଲା ଦଶଟଙ୍କା ଖରଚ, କିଁଆ ବନ୍ଧୁ ଲୋକଙ୍କୁ ମୁହଁ ଦେଖାଇବ ?" ନାଜର ବାବୁ ଝଟ୍ କରି ସେ କଥାଟା ଛାଡ଼ିଦେଲେ—ବହୁତ ଆଦର କରି—ବହୁତ ଗେହ୍ଲା କରି ନରୁ ବାବୁଙ୍କ ମୁଣ୍ଡରେ ପିଠିରେ ହାତ ବୁଲାଉ ଥାନ୍ତି। ହେଲେ ନରୁ ବାବୁଙ୍କୁ ଯେପରି କଣ୍ଟାଗଛ ପରି ଜଣା ଯାଉଥାଏ।

ମାମୁ—ମୁଁ ଆଜି ନରିପୁର ଯିବି, ମାଙ୍କୁ ଜେଜୀମାଙ୍କୁ କଣ କହିବି ? ତୁମେ ଆଉ କଣ କହିବ ? ସବୁ ତ ଦେଖି ଶୁଣି ଗଲି, କହିବି। ବସ, ବସ, ବାପା ବସ—ପଢ଼—ପଢ଼ ବୃଥା ସମୟ ନଷ୍ଟ କରିବ ନାହିଁ, ପଢ଼ାରେ ଖୁବ୍ ମନ ଦେବ। ଏତିକି କଥା କହି ଧପ୍ ଧପ୍ କରି ଉପରୁ ଚଞ୍ଚଳ ଓହ୍ଲାଇ ପଡ଼ି ବାହାରିଗଲେ। ଦୁଷ୍ଟ କରୁଣାଟା ଲୁଚିବା ଜାଗାରୁ ବାହାରି ପଡ଼ିଲା— ଦୁଇଜଣ ଟିକିଏ ହସାହସି ହେଲେ।

ନାଜର ବାବୁ ସାହେବଙ୍କଠାରୁ ଗୃହଦାନର ଛୁଟି ନେଇ ବାରଟା ଆପଟରେ ସବାରି କସି ଦେଲେ। ଝଟପଟ କାଉ କା କରିବା ବେଳେ ନରିପୁର ଉଆସ ସିଂହଦ୍ୱାରଠାରେ ହାଜର। ବାବୁ ପାଲିକିରୁ ବାହାରି ପଡ଼ି ସଳଖେ ସଳଖେ ଉଆସ ଭିତରକୁ ଧଡ଼୍ ଧଡ଼୍ କରି ବାହାରିଲେ। ଯୋଡ଼ାଏ ଜଗୁଆଳ ପାଇକ ସିଂହଦରଜାରେ ବସିଥାନ୍ତି—ଝଟ ରୋକି ଦେଲେ —କିଏ ହେ ବାବୁ! ଛିଡ଼ା ହୁଅ, ଭିତରକୁ ଯାଅ ନାହିଁ, ଯିବାକୁ ବାରଣ। ବାବୁ ମନରେ ବିଚାରିଲେ, କଣ! ଆମେ ହାକିମ—ଆମେ ମାଲିକ, ଏ ଅଦାନା ପାଇକ ଯୋଡ଼ାକ ଆମ ବାଟ ରୋକିବେ ? କହିଲେ, "ଆରେ ତଫାତ୍ ହୁଅ, ଆମେ ଉଆସ ଭିତରକୁ ଯିବୁଁ।" ପାଇକ—ଆରେ ବାନ୍ଧି ରଖ ତୁମ ତଫାତୁ, ଛିଡ଼ା ହୁଅ। ନାଜର ବାବୁଙ୍କ ମିଜାଜଟା ଟିକେ ପିତଳ ତଳି ଭଳିଆ। ଅଳ୍ପରେ ତାତି ଯାଏ। ଆଉ ତୁଚ୍ଛ ଚାକରଟା ମୁହଁରୁ ଟାଣ କଥା ଶୁଣିଲେ କିଏ ବା ନ ରାଗିଯିବ, ତୁମେ ଆମେ କଣ ରାଗିଯିବୁଁ ନାହିଁ ? ଏଣେ ଖଣ୍ଡାଇତ ପାଇକ ପିଲା—କଟିବେ ପଛକେ ହଟିବେ ନାହିଁ। ଲାଗିଲା ଦୁଇକୂଳରୁ ତୋଖଡ଼୍ ମୋଖଡ଼୍, ଦଣ୍ଡେ ଦ' ଦଣ୍ଡ କାଳ ବିତିଗଲା। ବାବୁ ଆପଣାକୁ ଆପେ ଟିକିଏ ସମ୍ଭାଳି ହୋଇଗଲେ। ବିଚାର କଲେ, ଆଦାନା ଚାକର ଗୁଡ଼ାକ ସାଙ୍ଗରେ ଲାଗିଛୁଁ, ଲୋକେ ଶୁଣିଲେ କଣ କହିବେ ? ପେଟରେ ନିଆଁ ଭର୍ତ୍ତି, ମିଛଟାରେ ଟିକିଏ ହସି ଦେଇ କହିଲେ, "ବେଶ କଥା ବେଶ କଥା, ମୁଁ ଟିକିଏ ପରଖୁଥିଲି, ତୁମ୍ଭେମାନେ ଠିକ କାମ ଅଞ୍ଜାମ

କରୁଛ କି ନା । ଖୁସି ହେଲ, ବଡ଼ ଖୁସିହେଲ—ଯା, ଧାଈମାଙ୍କୁ ଆଉ ଚୂଡ଼ାମଣିଙ୍କୁ ଖବର ଦିଅ, ଆମେ ଆସିଛୁ ।" ହାକିମ କଣ ଚାକରମାନଙ୍କ ଆଗରେ ଆପଣାର ନାମ କହିବେ—ଚରବାରେ ଚହଲା ଦେଲେ । ମନରେ କଲେ, ଏବେ ପାଇକଗୁଡ଼ାକ ଦଣ୍ଡବତ କରି ଆଡ଼େଇ ଯିବେ । "ତୁ ଯେତେ ମାଠିବୁ ମାଠ, ମୁଁ ସେହି ଦରପୋଡ଼ା କାଠ !" ହେଲେ କଣ, ନରମକୁ ନରମ ଗରମକୁ ଗରମ । ପାଇକମାନେ ଦଣ୍ଡବତଟାଏ କଲେ; ମାତ୍ର ବାଟ ଛାଡ଼ିଲେ ନାହିଁ । କହିଲେ, "ଆମେ ହେଲୁ ହୁକୁମର ଚାକର, ମୂର୍ଖ ଲୋକ, ତୁମ୍ଭଙ୍କୁ କିପରି ଛାଡ଼ିବୁ ? ବିଜେ ହେଉନ୍ତୁ—ବିଜେ ହେଉନ୍ତୁ—ଏଇଠାରେ ବିଜେ ହେଉନ୍ତୁ । ପଡ଼ିଆରୀ ଆଇଲେ ଭିତରକୁ ଖବର ଦେବୁଁ ।" ବିଜେ ହେଉନ୍ତୁ ବୋଇଲେ ସିନା, ହେଲେ ବିଜେ ହେଉଛନ୍ତି କାହିଁ ? ସେହି ଠାଁ ଉଭା । ନାଜର ବାବୁ ବୁଝିଲେ, ତେବେ ବି ବାଟ ଛାଡ଼ିଲେ ନାହିଁ—ଆଚ୍ଛା ଆଚ୍ଛା ଆଉ ଚାରିଟା ମାସ ବାଦେ ତୁମର ଆମର ବୁଝାମଣା—ତୁମ ସବଂଶକୁ ଯଦି ଦେଶରୁ ଦୂର ନ କରେଁ, ମୁଁ ନଟବର ଦାସ ନୁହେଁ ! ଏଣେ ପାଇକଗୁଡ଼ାକ ମନରେ କରୁଛନ୍ତି—ଏଇଟା କଣ ସେହି ସବାଗିଲା ରାହୁ ? ହାୟ ଆମ ଅନ୍ନଦାତା ଖାଉନ୍ଦ କେବେ ବିଜେ ହେବେ ?

ଉଆସ ଭିତରୁ ପଡ଼ିହାରୀ ଆସି ବାବୁଙ୍କୁ ଭିତରକୁ ଡାକି ନେଇ ଯିବାକୁ ବେଳ ଚମାର୍ଦ୍ଧେ ପହରେ । ତୁଚ୍ଛ ପାଇକ ହାତରେ ଅପମାନ ପାଇ ବାବୁ ଚାଟି ରହିଛନ୍ତି । ମାମଲତକାର କି ନା, ଓଠ କାମୁଡ଼ି ସମ୍ଭାଳି ହୋଇଗଲେ । ସବୁର୍ ଗଛରେ ମେବା ଫଳେ । ହେଉ ହେଉ ! ଆଉ କେତେଟା ଦିନ ଯାଉ, ସବୁ କଥା ଏଇ ପେଟ ଭିତରେ ରହିଲା । ବାବୁ ଘୁଞ୍ଚି ଦୁଆରବନ୍ଧ ପାଖରୁ ପାଟି କରି ଡାକ ପକାଇ ପକାଇ ଚାଲିଛନ୍ତି । "ଧାଈମା—ଧାଈମା, ଆରେ ଚୂଡ଼ାମଣି !" ଧାଈମାଙ୍କ ମନ ତ ଆଗରୁ ଜଳି ପୋଡ଼ି ପାଉଁଶ ହୋଇଛି, ମନରେ ବିଚାରିଲେ, 'ଓହୋ, ନଟର ଯେ ଆଜି ଭାଗ୍ୟଟା ବଳ ପଡ଼ିଛି !' ଧାଈମା ଆଉ ମଣିମା ଦୁହେଁ ବେହରଣ ପିଣ୍ଡାରେ ବସିଥିଲେ । ଧାଈମା—"ଆରେ ନଟ ! ଆସ—ଆସ, କେତେବେଳେ ଆଇଲୁ ରେ ?" ବାବୁ ସେ କଥାଟା ନ ବୁଝିଲା ପରି ଧାଈମାଙ୍କ ଦୁଇ ପାଦରେ ହାତ ଦେଇ ଲଠ କରି ଦଣ୍ଡବତଟାଏ ହେଲେ । ଡେବିରି ହାତରେ ଟଙ୍କା ଥଳିଟା ଧରିଥିଲେ, ଦୁଇ ଜଣଙ୍କ ମଝିରେ ଝମ୍ କରି କଚାଡ଼ି ଦେଲେ । "ଓହୋ ! ଧାଈମା ! କଣ କହିବି, ଆଜି ସାତ ସାତ ବରଷ ବାଦେ ଟିକିଏ ନିଶ୍ୱାସ ପକାଇବାକୁ ତର ମିଳିଲା । ସରକାରୀ କାମଟା କୌଣସିରୂପେ ଥାପଡ଼ା ଥାପଡ଼ି କରି ଦେଇ ଖାଲି କଲ୍ଲା କାମରେ ଲାଗିଛି—ଦିନ ନାହିଁ, ରାତି ନାହିଁ, ଏହି କାମ । ଦିନେ ଦିନେ ରାତି ଓଳିଟା ଖାଇବା ପିଇବା କଥା ଛାଡ଼ । କେତେ ଥର ଡାକ ପଠାଇଥିଲ, ମୋର କଣ ନାକ ପୋଛିବାକୁ ତର ଥିଲା ? ମନରେ କଲି, ମା କୁଆଡ଼େ ପାଉଛନ୍ତି କି ? ମା ପୁଅ ଭେଟାଭେଟି ତ ହେବା, ଆଗେ କାମ ଛାଡ଼୍ । ଓହୋ ! ରାମ—ରାମ—ରାମ ! କଣ କହିବି ଧାଈମା ! କଲ୍ଲାର ହିସାବପତ୍ର ବୁଝାବୁଝି କରିବାକୁ ଯାଇ ଦେଖେଁ ଯେ ପାଞ୍ଜି ବିଡ଼ା, ନା ପୋଆଲ ବିଡ଼ା ସବୁ ଚୋର ଏକା ଜାଗାରେ ରୁଣ୍ଡ ହୋଇଥିଲେ । ( ଧାଈମା ଧୀରେ ହୋଇ କଥାଗୁଡ଼ାକ ଶୁଣି ଯାଉଥିଲେ, ଏତିକବେଳେ ମୁହଁଟା କିଛି ବିଚକିଟି ଗଲା । ) ସେହି ଚୋରଗୁଡ଼ାକୁ ବାହାର କଲି । ମୋର ଇଚ୍ଛା ନ ଥିଲା—ହେଲେ ତାଙ୍କୁ ଅନାଇବି, ନା ପିଲାମାନଙ୍କ କାମକୁ ଚାହିଁବି ? ସେ ଚୋରଗୁଡ଼ାକୁ କାଢ଼ି ଦେଇ ବିଶ୍ୱାସୀ, ହିସାବ କିତାବରେ ମଜବୁତ ଲୋକ ଆଣିବାରେ ତେବେ କାମ ଚଳିଲା । ପୁରୁଣା ପାଞ୍ଜି ଗୁଡ଼ାକ ଫିଟାଇ ଦେଖେଁ ଯେ, ପ୍ରଜାଙ୍କ ପାଖରୁ ଟଙ୍କା ନେଇଛନ୍ତି ତ ସିହା କରି ନାହାନ୍ତି—ପାଉତି ବିଶୋଧନ ନାହିଁ । କେତେ ପ୍ରଜାଙ୍କୁ ପାଉତି ବିଶୋଧନ ଦେଇଛନ୍ତି, ଟଙ୍କା ନେଇଥିବେ, ପାଞ୍ଜିରେ ଜମା ଦିଆ ଯାଇ ନାହିଁ ।" ଧାଈମା ଆଉ

ସମ୍ମାନ ପାଉଲେ ନାହିଁ—ଟିକିଏ ହସିଉଠି କହିଲେ, "ଆଚ୍ଛା ପାଞ୍ଜିଆ ତ !"

ନଟବର ବାବୁ—ମୁଁ ଆଉ କଣ କହୁଛି, ଧାନ୍ଦମା । ସବୁ ପାଞ୍ଜିପତ୍ର ବଡ଼ା ବାନ୍ଧି ରଖିଛି, ଗୋଟିକୁ ଗୋଟି ଗୁମ୍ପକୁ ମିଶାଇ ଦେଖାଇବ ପରା ! ଏହି ସବୁ ଗୋଳ-ମାଳରେ ସରକାରର ସରକାରର କଣ—ପିଲ ଗୁଡ଼ଙ୍କର କଣ ଉଣା ଅଛି ? ସବୁ ପଦ ଗାଏ କରି ନାହିଁ । ମୁଁ ତ ଅନୁମାନ କରୁଛି ପନ୍ଦର କୋଡ଼ିଏ ହଜାର ଟଙ୍କାରୁ ଉଣା ନୁହେଁ, ମାହାଳଆ ଛୁଡ଼ ଦେଲି । ସବୁଗୁଡ଼ାକ ତମାଦି ।

( ଧାନ୍ଦମା ନିଃଶ୍ୱାସଟାଏ ପକାଇ ମନମଧ୍ୟରେ କଲେ—ହାୟ ! ଏତେଗୁଡ଼ାଏ ଟଙ୍କା କଣ ସତ ସତ ନେଲ୍ ରେ ନଟ ? ) ପ୍ରକାଶ କରି କହିଲେ, "ଜୁଆଇଁ ବାବୁ ତ ସାତ ଆଠ ବରଷର ସାଲତମାମି କାଗଜ ଗୋଟି ଗୋଟି କରି ମୋତେ ଦେଖାଇନନ୍ତି । ଦୁଇ ଜଣ ଉଆସ ଭିତରେ ବସି ବରଷକର ଜମାଖର୍ଚ୍ଚ ବାନ୍ଧୁ, ଏତେ ଟଙ୍କା କେଉଁଠି ବାକ ପଡ଼ିଲ ରେ !"

ନଟବର—ଦେଖିବ ଦେଖିବ ଧାନ୍ଦମା ! ମୁହଁ କଥା ନୁହେଁ, କାଗଜପତ୍ରରେ ପ୍ରମାଣ କରାଇ ଦେବ । ଆଉ ଗୋଟାଏ କଥା ଶୁଣି ନାହିଁ ଧାନ୍ଦମା ? ହୁଟକୁଟିଆ ହାତ ଉଧାର କରଜା ଏତେ ଥିଲ ! ସାନ୍ତ ଥରେ କଟକ ଯିବେ ତ ଦିହଜାର ତିନିହଜାର ଟଙ୍କା କରଜ କରି ଆସିବେ । ରେଜେଷ୍ଟ୍ରୀ ତମସୁକ ଖଣ୍ଡେ ବି ନାହିଁ, ହୁଣ୍ଡା ହେଣ୍ଡନୋଟ୍ ।

ଧାନ୍ଦମା ମନ ମଧ୍ୟରେ ଟିକିଏ ହକ୍‌ଦାର ହୋଇ ଗଲେଣି —କହିଲେ, "ନା ପରାରେ ନଟ ? ଜୁଆଇଁବାବୁ ତ କଟକ ଯିବାବେଳେ ଖର୍ଚ୍ଚକୁ ମୁହିଁ ମୁଁ ଉଆସ ତହବିଲରୁ ଟଙ୍କା କାଢ଼ି ଦିଏଁ । କାହିଁ ଟଙ୍କା କରଜ କରି ଆସି ଦିନେ ବି ତ ମୋତେ କହିନ୍ତି ନାହିଁ ? ଆଉ ବାହୁଡ଼ା ଦିନେ କରି ଖରଚର ହିସାବ ତ ମତେ ବୁଝାଇ ଦିଅନ୍ତି ! ସବୁ ହିସାବ ତ ମୋ ହାତରେ, କର୍ଜା ଟଙ୍କା ଜମା ତ କାହିଁ ଦେଖେଁ ନାହିଁ ।"

ଏହିଠାରେ ଗୋଟାଏ କଥା ଫିଟାଇ କହିବା ଦରକାର । କେବଳ ମଣିମା ଚୂଡ଼ାମଣିଙ୍କୁ ଶିଖାଇବା ଲାଗି ଭିତର ତହବିଲ ଆଉ ହିସାବ ଧାନ୍ଦମା ହାତରେ ରଖିଥିଲେ । ସାନ୍ତଙ୍କର ମଧ୍ୟ ତାହି ଇଚ୍ଛା, ହେଲେ ପାଞ୍ଚ ଛ ବର୍ଷ କାଳ ବିଶେଷ ଚେଷ୍ଟା କରି ମଧ୍ୟ ଅଯୋଗ୍ୟା ଗୃହିଣୀକୁ କିଛି ହେଲେ ଶିଖାଇ ପାରି ନାହାନ୍ତି । ଚୂଡ଼ାମଣି ଦେଈ ସବୁ କଥା ଭଲ ବୁଝିପାରନ୍ତି ପାଟୀଗଣିତର ସବୁ ଅଙ୍କଗୁଡ଼ିକ କଷାକଷ କରି ଶିଖିଥିଲେ, ଲେଖି ପଢ଼ି ଭଲ ଜାଣନ୍ତି, ହାତ ଅକ୍ଷରଗୁଡ଼ାକ ମୁକ୍ତାମାଳ ପରି—ଏତେ ହେଲେ କଣ ହେବ, ଟଙ୍କାକଉଡ଼ି ହିସାବପତ୍ରର ପାଖ ପଶିବେ ନାହିଁ । ମା ଝିଅ ଦୁଇ ଜଣ ବସି ହସଟୁସି କଥାବାର୍ତ୍ତା କରୁଥିବେ, ନୋହିଲେ ଦୁହେଁ ବସି ବହି ପଡ଼ାପଢ଼ି କରୁଥିବେ । ମା ଯିମିତି ଟଙ୍କା କଉଡ଼ି ବା ହିସାବ କଥା ପକାଇବେ, ମଣିମାଙ୍କର ମୁଣ୍ଡବଥା ବେମାରଟା ବାହାରି ପଡ଼େ— ଝଟ୍ ଧାଇଁ ଯାଇ ପଲଙ୍କରେ ଲଟ୍ କରି ଶୋଇପଡ଼ନ୍ତି, ନୋହିଲେ କବାଟ କିଲ ଦେଇ ପେନସିଲ ଖଣ୍ଡେ ଧରି ବିରାଡ଼ିଟାଏ ବା କୁକୁରଟାଏ ଚିତ୍ର କରି ବସନ୍ତି । ଧାନ୍ଦମା ବୁଝି ପାରି ବିରକ୍ତ ହୋଇ ମୁରୁକି ମୁରୁକି ହସି ଆଉ ଆଡ଼େ ଚାଲିଯାନ୍ତି । ସେ ଆଉ ଢେର ଢେର ଥର କହିଁଲରେ ବୁଝାଇ ହକଦାହିରେ ବଳାବଳ କରି ଥକାଲେଣି—ଗୃହିଣୀଙ୍କ ଶିକ୍ଷା କିଛି ମାତ୍ର ଉନ୍ନତି ଲାଭ କରି ପାରିଲା ନାହିଁ । ନଟବର ବାବୁଙ୍କୁ ଭିତର କଥା ସବୁ ଜଣା ଥିଲେ, ସେ ଏତେ ଗୁଡ଼ାଏ ହଗେଲ ମିଛକଥା ବୋଲିବାକୁ ସାହସ କରନ୍ତେ ନାହିଁ ।

ନଟବର ବାବୁ—ଏ ଧାନ୍ଦମା ! ମୁଁ କୋଡ଼ିଏ ଖଣ୍ଡ ହେଣ୍ଡନୋଟ୍ ଗଣି କଚେରି ଘିଡାରେ ବାନ୍ଧି ରଖିଛି ।

ମହାଜନମାନେ ଟଙ୍କା ଅସୁଲି ଲେଖି ହେଣ୍ଡନୋଟ୍ ପିଠିରେ ଦସ୍ତଖତ କରି ଦେଇଛନ୍ତି । ସାହେବଙ୍କୁ ବୁଝାଇବାକୁ ହେବ, ପୁଣି ତୁମେ ସବୁ ବୁଝିବ ଶୁଝିବ ଦେଖିବ ଏ କଣ ଖେଳଘର ମାମଲା ? ରସିଦ ଭଉଚର-ଗୁଡ଼ାକ ନ ଦେଖାଇଲେ ହିସାବ ମଞ୍ଜୁର ହେବ କିଆଁ ?

ନାଜର ବାବୁ ଚାହିଁ ଦେଖିଲେ, ଗୁଡ଼ାଏ ଦାସୀ କବାଟ ଫାଙ୍କ ଆଉ ଜଳାକବାଟି ବାଟେ ଚାହିଁଛନ୍ତି । ସେମାନଙ୍କୁ ଶୁଣାଇ ଶୁଣାଇ କହିଲେ, "ଓହୋ ! ଟଙ୍କା ଲାଗି ଉଆସ ଲୋକଗୁଡ଼ିଙ୍କର ବଡ଼ କଷ୍ଟ ହେଉଥିବ । ଆଉ ସେପରି ଏଣିକି ହେବ ନାହିଁ । ବାଜେ ଖରଚ ସକାଶେ ମାସିକ ହଜାର ଲେଖାଏଁ ଟଙ୍କା ପଠାଇବି । ଫହାନ୍ତ ବାସି ଟପିବ ନାହିଁ ।"

ଧାଈମା କଥା ଗୁଡ଼ାକ ଶୁଣି ଭାରି ହକ୍‌ଦାର ହେଲେଣି—କହିଲେ, "ଆରେ ବାବୁ ନଟ ! କାଲି ରାତିରେ ତ ଖାଇ ନ ଥିବୁ, ଯାଆ—ଯାଆ, ଜଲଦି ଜଲଦି ଗାଧୋଇ ଆସ । କାଲି ନିଦ ବି ହୋଇ ନ ଥିବ—ହେବ କୁଆଡ଼ୁ ? ଆପଟଗୁଡ଼ାକ ଯେ ହୁଁ ହାଁ କରନ୍ତି, ସେଥିରେ କଣ ନିଦ ମାଡ଼େ ? ଏ ସିଠ-ଘରିଆଣି ! ବାବୁ ସଙ୍ଗରେ ଯେଉଁ ଚାକର ବାକର ଆସିଛନ୍ତି, ସେମାନଙ୍କ କଥା ବୁଝାବୁଝି କର । ଜଲଦି ଯାଅ । ଏ ପଡ଼ିଆଣି, ବାବୁଙ୍କୁ ତେଲ ମଖାଇ ଦେଇ ବେଣ୍ଟ ପୋଖରୀକୁ ସାଙ୍ଗରେ ନେଇ ଯା ତ ।"

— — —

—୪୪—

## ନାଜର ବାବୁଙ୍କ କଚେରି

ସନ୍ଧ୍ୟା ସମୟ, ନାଜର ବାବୁ ଯୁଗଳକିଶୋରଙ୍କ ବାହାର ମେଲରେ କଚେରି କରି ବସିଛନ୍ତି । ବାରିକ ତା ପଛକୁ ତା ପଛ ଚିଲମ ବଦଳାଇ ଦେଉଛି —ବାବୁ ଭଡ଼ର୍ ଭଡ଼ର କରି ହୁକା ଟାଣି ଭକ୍ ଭକ୍ କରି ଧୂଆଁ ଛାଡ଼ି ଦେଉଛନ୍ତି, ସବାଟିରେ ବିଛଣା ହୋଇ ଆସିଥିବା ଗାଲିଚି ଖଣ୍ଡିକରେ ଗୋଟାଏ ବଡ଼ ମସ୍ତିକୁ ଆଉଜି ବସିଛନ୍ତି । ଆଉ ସମସ୍ତେ ତଳେ—ଏଠେ ବିଛଣା କାହିଁ ? ବାବୁ ସମସ୍ତଙ୍କ ମୁହଁକୁ ଅନାଇ ଗଲେ - ତାଙ୍କ ନିଜର ପାଞ୍ଜିଆ ପାଇକ ଛଡ଼ା ଆଉ ବାହାର ଲୋକ କେହି ନାହାଁନ୍ତି । ବାବୁଙ୍କର ଇଚ୍ଛା, ନିରୋଳାରେ ଆପଣା ଲୋକଗୁଡ଼ାଙ୍କୁ କିଛି ଉପଦେଶ ଦେବେ, ତା ଠିକ୍ ଅଛି । ବାବୁ ଟିକିଏ ତୁନି ତୁନି ସମସ୍ତଙ୍କୁ ଉପଦେଶ ଦେଲେ, "ବର୍ତ୍ତମାନ ମାସ କେତେ ଖୁବ ସାବଧାନରେ କର୍ମ କରିବ । ପ୍ରଜାଗୁଡ଼ାଙ୍କୁ ବିଗାଡ଼ିବ ନାହିଁ, କାହାରି ଉପରେ ଜୁଲମ ଜାଲମ କରିବ ନାହିଁ ।" କାଳେ ଚାକରଗୁଡ଼ାକ ଘାବରେଇ ଯିବେ, ସେଥି ଲାଗି ଇଷାରା ଦେଖାଇ କହିଲେ, ଅଳ୍ପ ଦିନ ବାଦେ ସେ ସମ୍ପୂର୍ଣ୍ଣ ଅଧିକାର ପାଇବେ ।

ନାଜର ବାବୁଙ୍କ କଚେରି ଦୁଇ ଦିନ ଜାରି ଥିଲା । ସେ ମନରେ ବିଚାରିଥିଲେ, ପୁରୁଣା ପାଞ୍ଜିଆ, ମକଦମ, ଗ୍ରାମର ମୁଖିଆ ଲୋକେ, ପ୍ରଜାପାଟକ ହାଜର ହୋଇ ଭେଟିବେ—କେତେ ପ୍ରଜା ଗୋଡ଼ତଳେ ପଡ଼ିଯିବେ, କେତେ ହାରିଗୁହାରି କରିବେ, କେତେ ସଲାମି ଦାଖଲ ହୋଇଯିବ, ମାତ୍ର ଦୁଇଦିନ ପୂରା କଚେରିରେ ଗୋଟିଏ ହେଲେ ଲୋକର ମୁହଁ ଦିଶୁ ନାହିଁ । ଗୁଡ଼ାଖୁ ଧୂଆଁରେ କଚେରିଟା ପୂରି ରହିଛି । କଳ୍ପାଟାଯାକ ଲୋକ ଜଳି ପୋଡ଼ି ମଲେଣି, କାହାର ଭକ୍ତି ଗଦଗଦ ହେଉଛି ଯେ, ଧାଇଁ ଆସି ଗୁହାରିଟା ଜଣାଇବ, ଆଉ ସଲାମୀ ଟଙ୍କାଟାଏ ଠଣ କରି ଫୋପାଡ଼ି ଦେଇଯିବ ! କେହି କେହି ଓଳି ହେଣ୍ଡା ଅଜଣା ଲୋକ ବା ବୁଲି ଆସନ୍ତେ, ମାତ୍ର ହରିବୋଲ ବାରିକେ ଗାଁକୁ ଗାଁ । ଘରକୁ ଘର ବୁଲି ବୁଲି ମନା କରି ଦେଇ ଆସିଛନ୍ତି । କେବଳ ଏତିକି ନୁହେଁ, ସବୁ ଦୁଃଖ ଧନ୍ଦା ଛାଡ଼ି ଆଖ ପାଖ ବୁଲି କିଏ ଗଲା କିଏ ଅଇଲା ଦେଖୁଛନ୍ତି ।

ବାବୁ ଧାଈମାଙ୍କ ପାଖରେ ବସି ଆଦ୍ଦର ତେର ମାମଲା କଥା ଜଣ ଇଲେଣି—ହେଲେ ମନରେ ବେଶ ବୁଝି ଗଲେଣି, ମା ମନ ଦେଇ କିଛି କଥା ଶୁଣିବାକୁ ନାହିଁ । ଗୋଟିଏ ମାମଲାର କଥା ଚେଡ଼ିଲେ ମା ବାଆଁ ରେଇ ଦେଇ ଆଉ ଗୋଟାଏ ଏଣ୍ଣୁ ତେଣୁ କଥା କହି ବସନ୍ତି—ନିହାତି ଜିଦ୍ କରି ଧରି ବସିଲେ କହନ୍ତି, 'ମୁଁ ମାଇପି ଲୋକ କଣ ଜାଣେ ?'

ବାବୁ ଦୁଇ ଦିନ ଚିନ୍ତାରେ ଥିଲେ, କିଁବା କେଜାଣି ତାଙ୍କୁ କିଛି କଥା ସୁଖ ଲାଗୁନାହିଁ—ହେଲେ ଆଶା ପିଶାଚୀଟା ଯେମନ୍ତ ଆସି କାନରେ କହି ଦେଉଛି, ଚିନ୍ତା କଣ, ଲାଗି ପଡ଼, ମାଲିକ ହେବୁ ।

———

-୧୭-

## ଗୁଡ଼୍ ଫ୍ରାଇଡେ଼ ଛୁଟି

ଗୁଡ୍ ଫ୍ରାଇଡେ଼ ସକାଶେ ଶୁକ୍ର, ଶନି, ରବି, ସୋମ ଚାରି ଦିନ କଚେରି ବନ୍ଦ । ଡାଉସନ ସାହେବ ବିଲାତରେ ପିଲାମାନଙ୍କୁ ଛାଡ଼ି ଆସିବା ସକାଶେ ବର୍ଷକ-ଲାଗି ଫର୍ଲୋ ନେଇ ଚାଲି ଯାଇଛନ୍ତି । ସକାଳ ଓଳିଟା କୋଠିକୁ ଯିବା ଆସିବା କାମ ନାହିଁ । ହେଲେ କଣ ଆଉ ଗୋଟିଏ କି କାମରେ ନାଜର ବାବୁ ଦିନ ରାତି ଲାଗିଛନ୍ତି । ଧେଉଁ କଲି ଭଗତ ଶୁଣ୍ଢୀ ମହାଜନ ସଙ୍ଗରେ ସବୁବେଳେ ପରାମର୍ଶ । ଦିନ ବୋଲି ନାହିଁ, ରାତି ବୋଲି ନାହିଁ, ଦୁଇ ଜଣ ନିରୋଳାରେ ବସି କଣ ଫୁସୁରଫାସର ହେଉଥାନ୍ତି । ବାବୁ ଆଉ ଗୋଟିଏ କାମରେ ବି ଲାଗିଛନ୍ତି । କଟକରେ ଟଙ୍କା କରଜଦିଆ ଯେତେ ମହାଜନ, ସମସ୍ତଙ୍କ ନିକଟକୁ ଯିବା ଆସିବା—କାହାରିକୁ କାହାରିକୁ କଥା ନ ବୋଲି, କାହାଠାରୁ ହାତ ଉଧାରି, କାହାକୁ ବା ହେଣ୍ଡନୋଟ୍ ଲେଖି ଦେଇ, କେତେ ଜଣଙ୍କୁ ରେଜିଷ୍ଟରି ତମସୁକ ଲେଖି ଦେଇ ଟଙ୍କା କରଜ କରିବାର ବନ୍ଦୋବସ୍ତ କରୁଛନ୍ତି । ସମସ୍ତଙ୍କୁ କହି ରଖିଛନ୍ତି, ଏବେଗେ ଟଙ୍କା ଲୋଡ଼ା ନାହିଁ—ଚାରି ମାସ ବାଦେ ଦରକାର, କେବଳ କଥାଟା ଠିକ ହୋଇ ଥାଉ । ସିଆଣା ମଣିଷ କଣ ବାହାବେଳେ ବାଇଗଣ ରୁଏ ? ଆଗରୁ ଠିକଠାକ କରି ରଖେ । ବର୍ତ୍ତମାନ ବାବୁଙ୍କର ଆଉ କିଛି କଥା ନାହିଁ, କେବଳ, ଟଙ୍କା—ଟଙ୍କା—ଟଙ୍କା । ଯେଉଁଠାଏ ଟଙ୍କା ହେଉ ପଛକେ ହାତ ପେଠ ହେଲେ ସିନ୍ଦୁକରେ ପଡ଼ୁଛି ।

କଚେରିରେ ଲୋଡ଼ା ସକାଶେ ବଜାର ଦୋକାନୀ-ମାନଙ୍କ ପାଖରୁ ଅନେକ ଜିନିଷ କାଲରେ ଆସେ । ପଛନ୍ତି ବିଲ୍ ହେଲେ ଦୋକାନୀମାନେ ରସିଦ ଲେଖି ଦେଇ ଟଙ୍କା ନେଇଯାନ୍ତି । ନାଜର ବାବୁଙ୍କ ହାତ ବାଟେ ଏସବୁ କାମ ଚଲେ, ଏଥିରେ ବି ଭିତରିଆ ତାଙ୍କର କିଛି ଫାଏଦା ରହିଯାଏ । ଆଜକୁ ଦେଢ଼ମାସ ହେଲା ଦୋକାନୀମାନଙ୍କୁ ଟଙ୍କା ମିଳୁନାହିଁ ଦୋକାନୀ-ମାନଙ୍କ ତାଗିଦାରେ ବାବୁଙ୍କର ଏକ ଜବାବ, ବିଲ୍ ହୋଇନାହିଁ । କେତେଜଣ ଛୁଟ୍‌କୁରିଆ ଦୋକାନୀ ବାଟ ଚାଲି ଚାଲି ହକ୍‌ଦାର ହୋଇ ଗଲେଣି । କେତେଜଣ କଚେରିରୁ ବୁଝି ଆସିଲେ, ବାବୁଙ୍କୁ ଭରସି କହୁଛି କିଏ ? ସାନ ଅମଲାଟିଏ ହେଲେ କଣ ହେବ, ସରକାରି ହାକିମ ତ, ସବୁଦିନର ଭରସା—ଟାଣ କରି ପଦେ କହୁଛି କିଏ ? ବାରମ୍ବାର ମାଗିବାରୁ ବାବୁ କେତେଜଣଙ୍କ ଉପରେ ରାଗି ବି ଗଲେଣି । ଏ କଣ ରେ ବାପା, 'ବଡ଼ ଲୋକକୁ ଦିଅ ଧାର, ଯାଉଣୁ ଆସୁଣୁ ନମସ୍କାର ।' ଆଉ କଣ ନା—'ଦିଅ କାଳି—ଖାଅ ଗାଳି ।'

ଆଜ ଶନିବାର, ବାବୁଙ୍କ ବସା କଚେରି ଘର ଜାରି । ଦଶ ବାର ଜଣ ପିଆଦା ହାଜର, ଜାରି

ହେବାପାଇଁ ପରବାନା ବଣ୍ଟାବଣ୍ଟି ଲଗିଛି । ଏଥିରେ ବି କିଛି ମାର ପେଞ୍ଚ ଅଛି । କେହି ପାଇଲା ପାଞ୍ଚ ଖଣ୍ଡ କଉଡ଼ିଆ ପରବାନା ତ କେହି ପାଇଲା ଶୁଖିଲା ଖଣ୍ଡେ । ଯେ ଭଲ ପରବାନା ପାଇ ନାହିଁ, ବଳେ ତ ସେ ହକ୍‌ଦାର ହେବ । ବାହାରକୁ ଆସି ପିଆଦା ଗୁଡ଼ାକ ଆପଣା ମଧ୍ୟରେ କଥା ଭାଷା ହେଉନ୍ତନ୍ତି,"ଆରେ ଭାଇ ! ତୁ ରୋଜଗାରରୁ ଅଧେ ଦେଲୁ ବୋଲି ସିନା ଭଲ ମାଲ ପାଇଲୁ, ଆମକୁ ପଚ୍ଚରୁଛି କିଏ ?" ଯେ ଭଲ ପରବାନା ପାଇଛି, ସେ ବି ହକଦାର—କହିଲା, "ରାତି ନାହିଁ, ଦିନ ନାହିଁ, ସାପ ନାହିଁ, ବେଙ୍ଗ ନାହିଁ, ଖିଆ ପିଆ କଥା ଛାଡ଼ି—ଏ ଘରେ ବସି ମାରି ନେବେ ଅଧେ । ତାହା ବି ହେଲା, ରୋଜଗାର ପଇସାଟା ଭଲ ହାତ ଛୁଇଁ—ନା, ତୁ ଘରୁ ଆଣି ଆଗେ ଦେଇଯା ! ଏ ସବୁ କପାଳ କଥା ରେ ଭାଇ ! କାହାକୁ କଣ କହିବୁଁ ?" ଠିକ ଏତିକିବେଳେ ମଫସଲ ଅସୁଲି ରେଭ଼ିନେସ ଟଙ୍କା ଧରି ଚାରିଜଣ ପିଆଦା ହାଜର । ନାଜର ବାବୁ ସେମାନଙ୍କୁ ଦେଖିଲକ୍ଷଣି ତାତି ଗଲେଣି—କହି ବସିଲେ,' ମୁଁ କାହା ବୋପାର ଚାକର ଏପରି କାମ କରୁଥିବି !" ନାଜର ବାବୁଙ୍କ ମୁହଁଟି କିଛି ଅସବୁର—ରାଗ ବେଳେ କଣ ବୋଲି କଣ କହି ବସନ୍ତି । ପ୍ରଭୁଦୟାଲ ଭଗତ ଆଗରେ ଛିଡ଼ା ହୋଇଥିଲା, ତା ଉପରେ ନଜର ପଡ଼ିଯିବାରୁ ବାବୁ ମନରେ ପାଞ୍ଚିଲେ, 'ବେଶ୍ ବେଳ ହୋଇଛି, ଲୋକଟା ଖୁବ୍ ବିଶ୍ବାସୀ କାମଦାର, ଦୁଇ ତିନି ମାସ ହେଲା ବେଠି ଖଟୁଛି, ତାହା ପାଖରେ ବି ଟଙ୍କାଗୁଡ଼ାକ ଅଟକି ରହିଲା । କାହାରିକୁ ହେଲେ ଜଣକୁ ତଡ଼ି ଦେଲେ ହେଲା ।' ବାବୁ ଅସୁଲି ପିଆଦାମାନଙ୍କ ମୁହଁକୁ ଅନାଇ ଗଲେ—ଦୁଇ ଥର ଅନାଇଲେ, କଣ ଗୋଟିଏ କଥା ଠିକ କରି ନେଲେ । ପିଆଦାମାନଙ୍କୁ ଅନାଇ କହିଲେ "ଆଣ ଆଣ, ଟଙ୍କା ଆଣ । ପିଆଦାମାନେ ଗଜ୍ ଗଜ୍ କରି ବାବୁଙ୍କ ଆଗରେ ଆପଣା ଆପଣା ଟଙ୍କାଗୁଡ଼ାକ ଅଜାଡ଼ି ପକାଇଲେ । ବାବୁ ଜଣ ଜଣକର ଟଙ୍କା ଗଣି ଏକସଙ୍ଗରେ ମିଶାଇ ଦେଉଥାନ୍ତି । ଶେଷକୁ ଥିଲା ଖୋଦାବକ୍‌ସ, ବାବୁ ତା ମୁହଁକୁ ଆଉ ଥରେ ଅନାଇ ଦେଇ ଟଙ୍କା ଗଣି ବସିଲେ —ଗଣାଗଣି ବେଳେ ଖୋଦାବକ୍‌ସ ଏକଧ୍ୟାନରେ ବାବୁଙ୍କ ହାତକୁ ଅନାଇଥାଏ । ମନରେ କଳୁଛି ବାବୁଙ୍କର ଏଟା କି ରକମ ଟଙ୍କାଗଣା—ଦୁଇ ତିନିଟା ଟଙ୍କା ଗୋଟାଏ ବୋଲି ଗଣି ଯାଉଛନ୍ତି ଆଉ ସମସ୍ତଙ୍କର ତ ଏପରି ଗଣି ନାହାନ୍ତି, ତା ମନଟା କମିତିକା ଛଟକେଇଲାଣି, କିଛି ନ କହି ଚୁପଚାପ ବସିଛି । ବାବୁ ଗଣି ସାରି ସାଙ୍ଗ ସାଙ୍ଗ ଆଉ ଟଙ୍କା ସାଙ୍ଗରେ ମିଶାଇ ଦେଲେ—ଖାଲି ଦେଢ଼ଟା ଟଙ୍କା ପଡ଼ିଥାଏ । ବାବୁ ପଚାରିଲେ, "ଖୋଦାବକ୍‌ସ ! ତୁ କେତେ ଟଙ୍କା ଆଣିଥିଲୁ ?"ଖୋଦାବକ୍‌ସ "ହଜୁର ! ଶଏ ଏକୋଇଶ ଟଙ୍କା ଆଠଅଣା ।" ବାବୁ—"ଏହି ତ ଶଏ ଟଙ୍କା ଗଣି ନେଲି, ଦେଢ଼ ଟଙ୍କା ପଡ଼ିଛି, ଆଉ କୋଡ଼ିଏ ଟଙ୍କା କାହିଁ ?" ଖୋଦାବକ୍‌ସ ଛାତି ଦୁଲୁକିଲାଣି, ଡାକ ପକାଇଥାଏ,"ବାବୁ ! ହଜୁର ! ଆଉ ଥରେ ସବୁ ଟଙ୍କା ଗଣନ୍ତୁ ।" ବାବୁ ଭାରି ଖପାଟାଏ ହୋଇ କହିଲେ, "କଣ ! ରୋଜ ହଜାର ହଜାର ଟଙ୍କା ଗଣୁଛୁ", ଦିନେ ଗୋଟାଏ ଭୁଲ ହୋଇନାହିଁ । ତୋର କୋଡ଼ିଏ ଟଙ୍କା ଭୁଲ କଲୁଁ ? ଆମର ଆଉ କିଛି କାମ ନାହିଁ, ତୋହର ଟଙ୍କା ଦୁଇଶ ଥର ବସି ଗଣୁଥିବୁଁ ?' ପିଆଦା ଯେତେ ବିକଳରେ ରଡ଼ି ଛାଡ଼ୁଥାଏ, ବାବୁ ତେତିକି ରାଗୁ ଥାନ୍ତି । "ହଜୁର ଦାନାଦାର ! ଧର୍ମାବତାର ! ମା ବାପା ! ଗରିବପରବର !" ଯେତେ ପ୍ରକାର ଖୋସାମଦ କଥା ଥିଲା, ଖୋଦାବକ୍‌ସ ସବୁ ଝାଡ଼ିଲାଣି—ଶୁଣୁଛି କିଏ ? ବାବୁ ଆହୁରି ଖପା ହୋଇ କହିଲେ, "ତୁ ସରକାରି ଟଙ୍କା ତୋସରଫ କରିଛୁ, ବରଖାସ୍ତ ତ ହେବୁ, ପୁଣି ସଜା ପାଇବୁ— ତୋର ଭଲ ଲୋଡ଼ୁ ତ କୋଡ଼ିଏ ଟଙ୍କା ଦାଖଲ କର । ନାହିଁ ନାହିଁ, ତୋ ନାମରେ ରିପୋର୍ଟ ହେବ, ସାହେବ ସେ କଥା ବୁଝିବେ, ଆମର କିଛି ଅକତିଆର ନାହିଁ ।"

ସଦାଶିବ ଶନିଶ୍ଚରଗ୍ରହ ଖଡ଼ରତ୍ନେ ନାଜର ବାବୁଙ୍କ ଗ୍ରହଚେଷ୍ଟ ଶାନ୍ତି ସକାଶେ ଆଦିତ୍ୟ ନବଗ୍ରହଙ୍କୁ ଶ୍ଲୋକରେ ଜଣାଇ ଅଧଘଣ୍ଟାଏ ହେଲା ପାଖରେ ବସି ଥିଲେ । ଲୋକଟି ନିହାତି ସାଧାସିଧା ଭଲ । ସମ୍ଭାଳି ନ ପାରି କହିଲେ—"ବାବୁ ! ଶନିବାର, ବର୍ତ୍ତମାନ ବାରବେଳା, ଆପଣଙ୍କ ସିଂହରାଶିକୁ ଚନ୍ଦ୍ର ଅଷ୍ଟମ ଘାତଚନ୍ଦ୍ର—ବର୍ତ୍ତମାନ ସବୁ ମାମଲା ବନ୍ଦ ରଖନ୍ତୁ ।" ଲୋକମାନଙ୍କର ଏମନ୍ତ ଗୋଟାଏ ବେଳ ପଡ଼େ ଯେ, ହିତକାରୀ ବନ୍ଧୁଙ୍କ କଥାଗୁଡ଼ାକ ବି ପିତା ଲାଗେ । ନାଜର ବାବୁ ଭାରି ଖପାଟାଏ ହୋଇ କହିଲେ—"ହଁ ହଁ ଭୁନପଣ୍ଡ଼, ଏଇଟା ହେଲା ସରକାରୀ ମାମଲା, ଘିକମଗା କଥା ନୁହେଁ ।" ଅବଧାନଙ୍କୁ ତ ମରଣ ତୁଲ୍ୟ ବାଧିଲାଣି—ସେ ଜଣେ ଜଣାଶୁଣା ଲୋକ, ଚାରି ବଡ଼ଲୋକଙ୍କୁ ପାଖକୁ ଯିବା ଆସିବା ଅଛି, କଥାଟା ତାଙ୍କ ମର୍ମକୁ ବାଧିଗଲା । ପାଖରେ ଥିବା ଆଉ ଆଉ ଲୋକେ ମୁଣ୍ଡ ତଳକୁ କଲେଣି ।

ଅସୁଲ୍‌ଟଙ୍କା ଉଣା ପୂରା ପାଞ୍ଚହଜାର ହେବ, ତିନିଟା ଥଳୀରେ ପୂରାଇ ସୂତୁଲି ଦଉଡ଼ିରେ ମୁହଁ ବାନ୍ଧିଦେଲେ । ଟିକିଏ ଉପରକୁ ଅନାଇ ଦାଅନ୍ତେ ଚଲାଖ ପ୍ରଭୁଦୟାଲ 'ହଜୁର, ହଜୁର' କହି ହାତ ଯୋଡ଼ି ପାଖରେ ଠିଆ ହୋଇଗଲା । ହୁକୁମ ପାଇ ଏକାବେଳକେ ଦୁଇଟା ଥଳୀ ତେବରି କାଖରେ ଆଉ ଗୋଟାଏ ଥଳୀ ଖାଇବା ହାତରେ ଧରି ବାବୁଙ୍କ ପଛେ ପଛେ ଚାଲିଲା । ବାବୁଙ୍କ ପଢ଼ାଘର ଦୁଆରେ ଝନ୍‌କାରି ତିନି ଥଳୀ ଥୋଇ ଦେଇ ରେନ୍ତି ଥାପୁଡ଼ିଲା ପରି ଦୁଇ ହାତ ଝାଡ଼ିଦେଇ ଝଟ ବାହାରକୁ ବାହାରି ଆଇଲା । ତାହା ତେତେବେଳେ ବାହାରେ ପାଇକି କରୁଥିଲା । ନାଜର ବାବୁଙ୍କ ଟଙ୍କାରଖାଟା ଟେରେଇ ଟେରେଇ ଚାହିଁ ଦେଇ ଦେଖୁଥାଏ । ଆଉ ତ କେବେ ଦେଖେ ନାହିଁ, ଆଜି ଏତେ ମନ ଦେଇ କ'ଣ ଦେଖୁଛି ?

ସମସ୍ତେ ସବୁଆଡ଼େ ଆପଣା ଆପଣା ଘରକୁ ଚାଲିଗଲେ । ଖୋଦାବକ୍‌ସ ଘରକୁ ଗଲା ନାହିଁ— ସଳଖେ ସଳଖେ ଜୁମା ମସ୍‌ଜିଦକୁ ଗଲା । ଉଜୁକଲା । 'ଲା ଇଲାହା—ଇଲ୍ଲାଲ୍ଲା—ମହମଦ ରସୁଲ ଇଲ୍ଲାଲ୍ଲା' ପଢ଼ି ପଶ୍ଚିମ ଦିଗକୁ ଅନାଇ ନମାଜ ପଢ଼ିଲା ।

ଏହି ସମସ୍ତ କାର୍ଯ୍ୟ ସମାପ୍ତ କରିବାକୁ ଦିନ ଶେଷ ପ୍ରାପ୍ତ ହୋଇ ଆସିଲାଣି । ଟିକିଏ ବସି ପୁନର୍ବାର ଉଜୁ କଲା—ନମାଜ ପଢ଼ିଲା । ତହିଁ ଉତ୍ତାରେ ହାତ ଯୋଡ଼ି ପଶ୍ଚିମ ଦିଗକୁ ଅନାଇ କହିଲା—"ୟା ଆଲ୍ଲା— କୋରାଣ୍ ସରଫ୍ ହୁକୁମ ମାଫକେ ମୁଁ ରୋଜ ପାଞ୍ଚଥର ନମାଜ ପଢ଼େ—ବରାବର ରୋଜା ରଖେଁ—ମୁଁ ବେକସୁର, ମୋପାଇଁ ଯେବେ ହକ୍ ଇନ୍‌ସାଫ ନ ହୁଏ, ଜାଣିବି କୋରାଣ ସରଫ୍ ଝୁଠା—ନବୀ—ପୟଗମ୍ବର ସବୁ ଝୁଠା ।" ଖୋଦା ବକ୍‌ସର ଧର୍ମ ପ୍ରତି ବିଶ୍ୱାସ ନାହିଁ, ଏମନ୍ତ ନୁହେ, ବଡ଼ ମନଃକଷ୍ଟରେ—ବଡ଼ ଅଭିମାନରେ ଖୋଦାଙ୍କୁ ଏହି କଥା ଜଣାଇଲା । ଖୋଦା ବକ୍‌ସଟି ବଡ଼ ସରଳ ଲୋକ, ନ—ଛ ରେ ଥାଏ ନାହିଁ, ଆପଣା ଦୁଃଖ ଧନ୍ଦାରେ ଲାଗିଥାଏ । ଘରେ ଖାଇବାକୁ ପାଞ୍ଚ ପ୍ରାଣୀ—କଷ୍ଟରେ ଚଳେ—ସେଥିପାଇଁ ତାହାର ପରବା ନ ଥାଏ । ବଡ଼ କଷ୍ଟ ପଡ଼ିଲେ ବସି ବସି ନମାଜ କରେ । ଆଉ ଆଉ ପିଆଦା ଜବରଦସ୍ତ ବୋଲି ନାଜର ବାବୁ ତାଙ୍କ ପାଖ ପଶିଲେ ନାହିଁ – ପଠାଣଟିକି ବଡ଼ ଭଲଲୋକ ଦେଖି ତାହାର ସର୍ବନାଶ କରିବାକୁ ବସିଛନ୍ତି । କୋହଲ ମାଟିକୁ ଆମ୍ବଡ଼ ବିରାଡ଼ି × × ହିଂସା କରେ ।

— — —

-୫୭-

## ବଙ୍ଗଳା ଝରଦ

କଟକ ତୁଳସୀପୁର ପଶ୍ଚିମପଟ ପଡ଼ିଆ ଲାଗାଲାଗି ଗୋଟାଏ ଛପରଛାଉଣି ବଙ୍ଗଳା ଅଛି । ବକ୍‌ସିବଜାର ଶୁଣ୍ଡି ମହାଜନ ଶିଉଶରଣ ଭଗତର ଯେଉଁ ଚାରି ପାଞ୍ଚଟା ବଙ୍ଗଳା ଅଛି, ଏଇଟା ସେଥିମଧ୍ୟରୁ ଗୋଟାଏ । ସହରର

ଏକକୋଣିଆ ନଗୁଣ୍ଠିଆ ଆଉ କଚେରି ବଜାରଠାରୁ ଦୂର ଥିବାରୁ ବେଶି ଲୋକେ ତା ପାଖ ପଶନ୍ତି ନାହିଁ, ଭଲ ଭଲ ସାହେବ ରହିବା ଭଳିଆ ବି ନୁହେଁ । ଭୁଲ ଭଟକାରେ କେବେ କେବେ ହେଲେ ଆଉ ଜାଗାକେ ଶସ୍ତାରେ ବଙ୍ଗଳା ନ ମିଳିଲେ ଅଧା ସାହେବ ଭଳିଆ ମାଟିଆପୁରୁଷ ଫିରିଙ୍ଗି ରହିଯାନ୍ତି—ତାହା ବି ସବୁଦିନ ସକାଶେ ନୁହେ । ଭଗତ ହିସାବୀ ଲୋକ—ମରାମତି, ତଳଜମି ଖଜଣା ମିଳାଇ ଭଡ଼ା ଟଙ୍କା କଷିଦେଲେ ମୂଳରୁ ଲୋକସାନ । ଭାରି ଖପାଟାଏ ହୋଇ କହିଲେ, 'ଯାନେ ଦେଓ ଏସା ବଙ୍ଗଲାକା ମୁହଁମେ ପୟୂଜାର ।'' ସେ ଦିନରୁ ବଙ୍ଗଳାଟା ଛୁଛା ପଡ଼ି ପଡ଼ି ଧୀରେ ଧୀରେ ଭାଙ୍ଗିଯିବାକୁ ଲାଗିଛି । ପ୍ରଭୁଦୟାଲ ଭଗତଙ୍କୁ ଏ କଥା ଜଣା । ଦିନେ ସକାଳଓଳିଆ ସେହି ନଗୁଣ୍ଠିଆ ବଙ୍ଗଳାଟା ଭାରି ଜାଗି, ଦଶପନ୍ଦର ଜଣ ମୂଳିଆ କାମରେ ଲାଗିଛନ୍ତି । କି ଦିନ କି ରାତି ବୁଲା ଗୋରୁଗୁଡ଼ାକ ସେହି ବଙ୍ଗଳା ବାରନ୍ଦାରେ ଶୁଅନ୍ତି—ଶୁଖିଲା ଗୁଣ୍ଡା କଞ୍ଚା ଗୋବର ଗଦାକୁଗଦା ପଡ଼ିଛି । ମୂଳିଆମାନେ ଝୋଟେଇ ଧରି ବୋଝକୁ ବୋଝ ସେଗୁଡ଼ାକ କାଢ଼ି ପକାଉଛନ୍ତି । ଯୋଡ଼ାଏ ମୂଳିଆ ବତା ଖଣ୍ଡିକ ମୁଣ୍ଡରେ ଗୋଟିଏ ଗୋଟିଏ ଖେଜୁରିପଞ୍ଝି ବାନ୍ଧି ଚାଳରୁ ଚେମେଣି ଝାଡ଼ୁଛନ୍ତି । ସେମାନଙ୍କ ଉତ୍ପାତରେ ଢେର ଗୁଡ଼ାଏ ଚେମେଣି ଚାଳକୁ ଚାଳ ଉଡ଼ି ପଳାଇଗଲେଣି; ଗୁଡ଼ାଏ ନିର୍ଲଜ୍ଜ ଚେମେଣି ଫର ଫର ଉଡ଼ି ଏ ଘର ସେ ଘର ହେଉଛନ୍ତି । କେତେଟା କବାଟ ଖିଡ଼କି ଢଳି ପଡ଼ି ଯାଇଥିଲା, ଗୋଟାଏ ବଢ଼େଇ ସେଗୁଡ଼ାକୁ ଛିଡ଼ା କରାଇବାକୁ ଲାଗିଛି । ବାବୁ ଡାକଦେଲେ, "ଆରେ ମହାରଣା ! ଭୁରପଣ କରୁଛୁ କଣ, ପେଞ୍ଚ କଷିବୁ ପରା ? ଆରେ ହାତୁଡ଼ିଟା ଧରି ଛୁଞ୍ଚା କଣ୍ଟା ବାଡ଼େଇ ଦେ ମ—ଯିମିତି ସେମିତି କବାଟ ଗୁଡ଼ାକ ଖାଲି ଛିଡ଼ା ହୋଇ ରହିଯାଉ । ଆରେ ରାଜମିସ୍ତ୍ରି ! ଖାଲି ମଝି କାମରାଟାରେ ଭଲ କରି କଳି ଦେ, ଆଗ ଦୁଆରଟାରେ ଟିକିଏ ଲଗା, ଆଉ ସବୁଆଡ଼େ ପାଣି ପୋଚରାଟା ବୁଲେଇ ଆଣ ।'' ଏତିକିବେଳେ ଗୋଟାଏ ଶଗଡ଼ରେ ଲଦା କୁଣ୍ଡ ସହିତ ଦଶ ବାର ରକମ କ୍ରୋଟନ ଗଛ, ଫୁଲ ଫୁଟିଥିବା ଚାରିଟା ଗୋଲାପ ଗଛ ପହଞ୍ଚିଗଲା । ବାବୁ ସେ ସବୁଗୁଡ଼ାକ ଆଗ ବାରନ୍ଦାରେ ସଜାଇ ରଖାଇ ଦେଲେ । "ଆରେ ! ଦୁଇ ଜଣ ମୂଳିଆ ଯାଇ ବବର୍ଚ୍ଚିଖାନାଟା ସଫା କରି ପକାଅ ।'' ସଞ୍ଜସରିକି ସବୁ କାମ ଛିଡ଼ିଲା—ଘର ସଜାସଜି ଆରମ୍ଭ ହେଲା । ମଝି କାମରା ତଳେ ଖଣ୍ଡେ ପୁରୁଣା ଛିଣ୍ଡା ଶତରଞ୍ଜି ବିଛଣା—ଉପରେ ଗୋଟାଏ ପାଞ୍ଚଡାଳିଆ ଭଙ୍ଗା ଝାଡ଼, ଆଉ କେତେଟା ବିଲୋରି ହାଣ୍ଡି ଟଙ୍ଗା ଗଲା । ବାବୁ ଡାକ ଦେଲେ, "ସାବଧାନ ! ସାବଧାନ ! ସବୁ ଭଡ଼ା ଜିନିଷ, ଭାଙ୍ଗି ନଷ୍ଟ ହେଲେ ଦାମ ଦେବାକୁ ପଡ଼ିବ ।'' ଚାରିଟା ଚୌକି ଗୋଟାଏ ମେଜ ଆଗରୁ ଶତରଞ୍ଜି ଉପରେ ଥୁଆ ହୋଇଛି—ମେଜ ଉପରେ ଗୋଟାଏ କେରାସିନ ଲାମ୍ପ । ସେକ୍ ରହିମ ବକସ୍ ବବର୍ଚ୍ଚିକୁ ବାବୁ ଡାକି ଦେଇ କହିଲେ, "ଦେଖ ବକସ୍ ! ସେ ଗଧଟା ତ କିଛି ବୁଝେ ନାହିଁ, କାଲେ ଜାଣି ପକାଇବ, ନେ ଗୋଟିଏ ସୂତା କାନ୍ଧରେ ପକା - କହିବୁ, ତୋ ନାମ ରାମପଣ୍ଡା । ଖାଲି ମାଉଁସ ସୁରୁଆ ଆଉ ପଲଉ ରାନ୍ଧ । ଆରେ ଆପୁଡ଼—(ଗୋଟାଏ ତେଲଙ୍ଗା ଧୋବା ଟୋକା) ଟଙ୍କା ଧର—ମାଲ, ଆଳୁ ଚପ୍ କଚୁରି, କିଛି ମିଠା କିଣି ଆଣିବୁ । ମାଲ ଦୁଇ ରକମ ଆଣିବୁ, ବିଲାତି ବ୍ରାଣ୍ଡି ଆଉ ବୋତଲେ ଦେଶୀ ଦୋବାରା । ଗଞ୍ଜେଇ ଚାରିଅଣାରୁ ବେଶି ନୁହେଁ—ମାଲ ଢେର ହେଲାଣି । କାଦୁ ! ( କାଦର ଖାଁ କାଂପେଇ ଟୋକା ) ଯା, ସମସ୍ତଙ୍କୁ ଡାକଡାକି କରି ଆଣ ମୋର ଆଉ ବେଳ ନାହିଁ, ସମସ୍ତେ ଭଲ ପୋଷାକ ପିନ୍ଧି ଆସିବ ନ ଥିଲେ ଧୋବାଘରୁ ଭଡ଼ା ଆଣିବ । ଆରେ ମୂଳିଆମାନେ ! ଯା, ଆଜି ମଜୁରି ମିଳିବ ନାହିଁ । ନା—ନା—ଓଜର କର ନାହିଁ । ଆଚ୍ଛା, ବକସିସ୍ ପାଇବ—ବାବୁଙ୍କୁ କହି ଦେଢ଼ ଦିନର ମଜୁରି ଦିଆଇ ଦେବି, ନୋଟ ଭଙ୍ଗା ହୋଇ ନାହିଁ, ଉଠୁଣି ଏ ପଦାଟାରେ ଟଙ୍କା କାହୁଁ ପାଇବ ?''

ରାତି ପହରକ ସମୟରେ ଦୁଇ ଦୋସ୍ତ ଖଣ୍ଡେ ଥାର୍ଡ଼ କ୍ଲାସ ଗାଡ଼ିରେ ଚଢ଼ି ପହଞ୍ଚିଗଲେ । ସମସ୍ତେ ଚଞ୍ଚଳ ଛିଡ଼ା ହୋଇ ପଡ଼ି ଦଣ୍ଡବତ ରକମ ସଲାମ କରି ଆପଣା ଆପଣା ଜାଗାରେ ବସିଗଲେ । ଦୁଇ ଦୋସ୍ତଙ୍କ ବସିବା ସକାଶେ ଯୋଡ଼ାଏ ଚୌକି ଏକ ଜାଗାରେ ଥୁଆ ହୋଇଥିଲା । ବାବୁ ବସି ପଡ଼ି ଉପରକୁ ଅନାଇ ଆଲୁଅ ଗୁଡ଼ାକ ଦେଖୁଛନ୍ତି । ଗୋଟାଏ ଘରେ ଏକ, ଦୁଇ, ତିନି, ଚାରି, ପାଞ୍ଚ, ଦଶଟା ଆଲୁଅ, ଦିନ ପରି ହୋଇ ଯାଇଛି । ଝାଡ଼ଟା ଦେଖି ଦେଖି ମୋହିତ ହୋଇଗଲେଣି -- 'ଏଁ—ଏଇଟା କେମନ୍ତ ଦୀପ—ଜକ ଜକ ଦିଶୁଛି ।' ନାଚୁଣୀ ଗୁଡ଼ାଙ୍କୁ ବକ ବକ କରି ଅନାଇ ରହିଛନ୍ତି - ଏମାନେ କିମିତିକା ଲୁଗା ପିନ୍ଧିଛନ୍ତି— ଏଗୁଡ଼ାକ କଣ ସୁନା ରୁପାର ଲୁଗା ? ଆମ ଅପା ରାଣୀ, ସେ ତ ଇମିତିକା ଲୁଗା ପିନ୍ଧି ନାହିଁ ଏମାନେ ଅପାଠାରୁ ବି ବଡ଼ ରାଣୀ ହେବେ । ତଳକୁ ଅନାଇ ଦେଲେ—ବିଛଣା ବିସ୍ତି, ତା ଉପରେ ମାଞ୍ଜିଆ, ତା ଉପରେ କୋଚା ମାଡ଼ି ବସିଛନ୍ତି । ଏତିକବେଳେ ଆଖି ଥରେ ଆପଣା ପୋଷାକପିନ୍ଧା ଦେହକୁ ଅନାଇଲେ, ମନରେ କଲେ ଅପା ହେଲେ ରାଣୀ—ସେ ବି ଜଣେ ବଡ଼ଲୋକ ହୋଇ ଗଲେଣି । ମନ ମଧ୍ୟରେ ଭାରି ଗୋଟାଏ ଖୁସି ହୋଇ ଗଲେ । ଏହି ସମୟରେ ଦୋସ୍ତ ବିଲାତି ପାଣି ଗ୍ଲାସ ଦୁଇଥର ପହଞ୍ଚାଇ ଦେଲେଣି । ଲାଲ ପାଣିଟା ତକ ତକ କରି ପିଇଦେଇ ବାବୁ ଆଖି ବୁଜି ଦାନ୍ତ ନିସିଡ଼ି ଦେଇ ଆଁ କରି ଉପରକୁ ଟିକିଏ ଅନାଇ ଫୁଁ କରି ନିଶ୍ୱାସଟା ପକାଇବାବେଳେ ଆଉ ଲୋକମାନେ ମୁହଁ ବୁଲାଇ ଟିକିଏ ହସି ଉଠିଲେ । ବାବୁଙ୍କ କଣ୍ଠରୁ ଢେକୁଟାଏ ହାଉ କରି ଫୋଡ଼ି ଉଠିଲା । ଆଲୁଅଗୁଡ଼ାକ ଦାଉ ଦାଉ କରି ଦଶ ଗୁଣ ତେଜରେ ଜଳି ଉଠିଲା ପରି ବାବୁଙ୍କ ଆଖିକୁ ଦିଶିଲା । ବାବୁ ସବୁ ଭୁଲି ଗଲେଣି—ଆପଣାକୁ ବି ଭୁଲି ପକାଇଲେଣି— ତାଙ୍କୁ ଜଣା ଯାଉଛି ଜଗତ ସଂସାରଟା ଆଲୋକମୟ, ଆନନ୍ଦମୟ । ମନରେ କଲେ, ସେ ଆସି ସ୍ୱର୍ଗ ସିଂହାସନରେ ଅମୃତ ଖାଉଛନ୍ତି । ଗୀତରେ ଶୁଣିଥିଲେ, ସ୍ୱର୍ଗରେ ବିଦ୍ୟାଧରୀମାନେ ନାଚନ୍ତି, ଏମାନେ କଣ ବିଦ୍ୟାଧରୀ ? ଏତିକ ବେଳେ ଅଧଶିଶି ଲେଭେଣ୍ଡର ଜଳ ଦୋସ୍ତ ବାବୁଙ୍କ ମୁଣ୍ଡରେ ଢାଳି ଦେଲେ, ଦେହ ଗୋଟିକ ଭିଜି ଗୋଡ଼ଯାଏ ବହି ପଡ଼ିଲା । ଢେର ଗୋଟାକ ମହକ ଗଲା, ବାବୁଙ୍କ ବଡ଼ ବାସିଲା ବଳଦ ଯେମନ୍ତ ନାକପୁଡ଼ା ଫୁଲେଇ ଉପରକୁ ଅନାଇ କିଛି ଜିନିସ ସୁଙ୍ଘେ, ବାବୁ ଲେଭେଣ୍ଡର ଭିଜା କନା ନାକରେ ଦେଇ ସେହିପରି ସୁଙ୍ଘା ଲଗାଇଛନ୍ତି । ଏତିକବେଳେ ସାରଙ୍ଗି ତବଲା ବାଜି ଉଠିଲା । ନାଚୁଣୀ ଯୋଡ଼ିକ ଏକ ଜାଗାରେ ଠିଆ ହୋଇ—ପଛୁଦୁଞ୍ଚା ଦେଇ—ଆଗ ପଛ ହୋଇ—ଦୁଇ ହାତରେ ଫୁଟକି ମାରି—ଦାନ୍ତ ନିସିଡ଼ି—ମୁହଁଟା ବିଚିକେଇ—ଝମର ଝମର କରି ଢେରଗୁଡ଼ାଏ ନାଚିଲେ । ଟିକିଏ ଛିଡ଼ା ହେବାରୁ ବାବୁ ହୁକୁମ କଲେ, ଆହୁରି ନାଚ ଆହୁରି ନାଚ । ପୁଣି ନାଚୁଣୀମାନେ ଧୂରି ଚକରି ଦେଇ ଟେରେଇ ଟେରେଇ ଅନାଇ ଆଁ କରି ଦାନ୍ତ ନିସିଡ଼ି ବାଘୁଣୀ ପରି ମୁଣ୍ଡ ହଲାଇ ଗୁଡ଼ାଏ ନାଚିଲେ । ତହିଁ ଉତ୍ତାରେ ଗୀତ ଆରମ୍ଭ —

ଆଁ—ଆଁ—ଆଁ—ଇଁ—ଇଁ ଇଁ—ଉଁ—ଉଁ—
ଉଁ—ଆଁ

ସାୟାଁରେ ବୟାଁ···ତେରି କ୍ୟେସେ ଛୋଡ଼ୁଁ ଜାନ୍ । ମେରି କ୍ୟେସେ ଗୁଜରି ଗୁଜରାନ୍ ।

ବାବୁ ହୁକୁମ କଲେ ଗୀତ ଗାଅ ଗୀତ ଗାଅ । ନାଚୁଣୀ ଆଉ ବାଜଣାଦାରମାନେ ମୁହଁ ଚାହାଁଚାହିଁ ହେଲେ—ଗୀତ ଆଉ କଣ ? ସମଜଦାର ଦୋସ୍ତ ପ୍ରଭୁଦୟାଲ ଭଗତ ହୁକୁମ କଲେ, ଆରେ ଓଡ଼ିଆ-ଚୌପଦୀ ଗା । ତବଲା ସାରଙ୍ଗି ପୁଣି ବାଜିଲା, ପୁଣି ଗୀତ ଆରମ୍ଭ ହେଲା ।

ଚୌପଦୀ

ସୁଖସାଗରେ ଭାସି ଗଲଣିରେ କପର ଦେବ ବନ୍ଧୁ
ମେଲଣି ରେ ।
ରତନଦୀପାବଳୀ ଚନ୍ଦ୍ର ଜ୍ୟୋତିରୁ ବଳି ଜଳୁଛି ତାର
ଜ୍ୟୋତି କ ଜାଣିରେ ( ଘୋଷା )

ସଙ୍ଗୀତ ସୁଧା ଜଣି ମଧୁର ରଙ୍ଗ ପାଣି ରଖିଛି ସ୍ୱର୍ଗୁ
ସୁଧା କ ଆଣି ରେ ।
ନଶି ଦିନ ବିଳାସ ଜୀବନେ ଯେ ଉଲ୍ଲାସ ନ ଥିବ
ତ୍ରିଭୁବନେ କ ଜାଣି ରେ ।
ଶମ୍ପା କମ୍ପନ ପ୍ରାଏ କାନ୍ତି ଚହଟି ଯାଏ ନାଚନ୍ତି
ଅପସରୀ ଇନ୍ଦ୍ରାଣୀ ରେ ।

ପାଖ ଘରେ ଗୋଟାଏ ଭଙ୍ଗା ମେଜ ଉପରେ ଚିନା ବାସନରେ ଖାନା ସଜଡ଼ା ହୋଇଥିଲା । ପ୍ରଭୁଦୟାଲ ବାବୁ ବହୁତ ମର୍ଯ୍ୟାଦାରେ ଦୋସ୍ତଙ୍କ ହାତ ଧରି ନେଇଗଲେ । ବାବୁଙ୍କ କେଉଁ ପୁରୁଷରେ କେହି ପଲଉ ନାମ ଶୁଣି ନ ଥିବେ - ତା ପାଖରେ ଥାଳଏ ମାଉଁସ ତିଅଣ, ପୁରି ନେନାବଡ଼ା ସଜା । ରଙ୍ଗପାଣି ଚଢ଼ି ବାବୁଙ୍କ ପେଟ ଜଳୁଥିଲା— ଆଉ ଖାଇବା ଜନିସଗୁଡ଼ାକ ମିଠା ମିଠା —ସ୍ୱର୍ଗରୁ ଅମୃତ ଆସିଛି ସବୁଗୁଡ଼ାକ ଚାଖିଗଲେ, ଏବେ କେଉଁଟା ଖାଇବେ ? ସବୁ ଜନିସ ମିଶା ସଜା କରି କୁକୁର ପରି ଗାବୁଲୁ ଗାବୁଲୁ ହୁହୁଁ ଗୁହୁଁ ହାଣ୍ଡିଏ ଠେକଦେଲେ । ଖାଇବାବେଳେ ଦୋସ୍ତ ରଙ୍ଗପାଣି ଗ୍ଲାସେ ଗ୍ଲାସେ ହାତକୁ ବଢ଼େଇ ଦେଉଥାନ୍ତି । ଖାଇ ସାରି ଯେତେବେଳେ ଚଉକୀରେ ଆସି ବସିଲେ, ଭାରି ଆରାମ - ଭାରି ଫୁର୍ତ୍ତି ! ନାଚ ଗୀତ ଚାଲିଛି - ଜଣେ ଡାକ ଦେଲା, ବାହାବା ବାହାବା—ସାବାସ୍ ! ସବୁଗୁଡ଼ାକ ତ ନିଶାରେ ଚୁର୍ ବନିଛନ୍ତି । ଗୋଟାଏ ଶିଲୁଆ ଯେମନ୍ତ ହୁକେ ହୁ ଡାକିଲେ ପଲ ଯାକ ହୁକେ ହୁ କରନ୍ତି, ସେହିପରି ସବୁ ଲୋକଗୁଡ଼ାକ ବାହାବା--ବାହାବା - ସାବାସ୍ ସାବାସ୍ ! ବୋଲି ରଡ଼ି ଛାଡ଼ିଲେ । ବାବୁ କ ସମ୍ଭାଳି ପାରନ୍ତି ? ଖୁବ୍ ଗୋଟାଏ ପାଟି କଲେ, ବାବା—ବାବା—ସାବୁସ—ସାବୁସ ! ବାବୁଙ୍କ କଥା ଶୁଣି ସମସ୍ତେ ହିଁ - ହିଁ— କରି ହସିଲେ, ବାବୁଙ୍କ ହସ ବି ଘୋଡ଼ା ହସରୁ ବଳି ପଡ଼ିଲା । ଆଉ ବାବୁ ବସି ପାରିଲେ ନାହିଁ, ଠିଆହୋଇ ନାଚିବାକୁ ଲାଗିଲେ, ଆଉ ସମସ୍ତେ ତ ନାଚ ଆରମ୍ଭ କରିଦେଲେ । ବାବୁଙ୍କ ପିନ୍ଧିବା ଲୁଗାର ଠିକଣା ନାହିଁ— ନାଚୁଣୀ ଯୋଡ଼ାକ ଲାଜରେ ପଳାଇ ଗଲେଣି । ଏମାନଙ୍କ ବିକଟ ଚିତ୍କାର ଓ ତାଣ୍ଡବ ନୃତ୍ୟରେ ଘରଟା କମ୍ପୁଛି । ସହର ମଧ୍ୟରେ ହୋଇଥିଲେ ଘର ପୋଡ଼ିଗଲା ବୋଲି ଗାଁ ଲୋକ ଅଜାଡ଼ି ପଡ଼ନ୍ତେଣି । ନାଚୁ ନାଚୁ ବାବୁ ଢଳଢାଳ କରି ହାଣ୍ଡିଏ ବାନ୍ତିକରି ଢୁଲ୍ କରି ପଡ଼ିଯାଇ ବେହୋସ । ଆଯୁଢ଼ୁ ଆଉ ଗୋଟା୍ ଲୋକ ବାବୁ ଉପରେ ବାନ୍ତି କରି ପଡ଼ି ଯାଇଛନ୍ତି । ଘରଟା ଏକାବେଳକେ ଶୁନ୍‌ଶାନ - ଭୟଙ୍କର ଦୁର୍ଗନ୍ଧ—ଯେମନ୍ତ ନରକ କୁଣ୍ଡରେ କେତେଟା ଭୂତ ପ୍ରେତ ଗଡ଼ାଗଡ଼ି ହେଉଛନ୍ତି । ଦୋସ୍ତ ପ୍ରଭୁଦୟାଲ ଭଗତ ଜନ୍ତୁ ଠିକ୍ ଅଛନ୍ତି - ସେ ଖୁବ୍ ହଜମ କରିଯିବା ଲୋକ—ପୁଣି ରୋଜ ରୋଜ ସେହି କାମ—ଅଭ୍ୟାସ ହୋଇଗଲାଣି । ପାଞ୍ଚ ରକମ ଟାଣି ଦେଇ ଠିକଏ ଠଳିବା ଲୋକ ନୁହନ୍ତି । ପାଠ ଡାକୁଛି, ବିପଦ ବନ୍ଧୁ—ଏତେବେଳେ ଆଉ ସାହା କିଏ ? ଆଉ ଲୋକଗୁଡ଼ାକ ନିଶା ଘୋରରେ କିଏ କେଉଁଠି ପଡ଼ିଗଲେଣି, ହିତୈଷୀ ବନ୍ଧୁ ଏକା ପ୍ରଭୁଦୟାଲ ମେହେନ୍ତର ମଡ଼ା ଢୋଷାରିଲା ପରି ବାବୁଙ୍କୁ କୌଣସିରୂପେ ସେହି ବାନ୍ତି ଦହଲରୁ ଘୋଷରି ଘୋଷରି କରି ଗୋଟାଏ ଭଙ୍ଗା ତକ୍ତପୋଷରେ ପକାଇଲା ।

ରାତି ପାହା ଆଠଟା ବାଜି ଗଲାଣି—ଏ ଅଞ୍ଚଳକୁ ସହରର କେହି ଲୋକ ଆସନ୍ତି ନାହିଁ । ଗୋଟାକେତେ ଗାଈଚରା ଟୋକା ଛେଳି ଗୋରୁ ପଲ ନେଇ ଚଉଆରେ ବୁଲୁଥିବାର ଦେଖା ଗଲେ । ଦୁଇ ତିନିଟା ଘାସିଆଣୀ କାଖରୁ ଥଳି ତଳେ ପକାଇ ଖୁରୁପିରେ ଘାସ ଛେଲି-

ବାକୁ ଆରମ୍ଭ କରିଛନ୍ତି—ତାହା ବି ବଙ୍ଗଳା କନ୍ଥରୁ ଦୂରରେ । ବଙ୍ଗଳା ଭିତରେ ଚେଚେଁବେଳର ହାଲ ଲେଖିବାକୁ ବା ପଢ଼ିବାକୁ ନିଷ୍ଟୟ କେହ୍ନି ସମ୍ମତ ହେବେ ନାହିଁ । ପ୍ରଭୁଦୟାଲ ଗୋଟାଏ ମେହେନ୍ତର ଭଲଆ ଲୋକ ଡକାଇ ଚଟ୍ ପଟ୍ ଘରଟା ସଫାସୁତରା ଧୁଆଧୋଇ କରାଇ ପକାଇଲେ । ଏବେ ବାବୁଙ୍କୁ ଉଠାଇବା ବେଳ—ତାଙ୍କ ଦେହ ଉପରେ ଖଣ୍ଡେ ଲୁଗା ଘୋଡ଼ଆ ହୋଇଛି—ପଣ ପଣ ମାଛି ଭଣ ଭଣ ମୁହଁରେ ବସୁଛନ୍ତି । ପ୍ରଭୁଦୟାଲ ଡାକଲେ, ‘ଦୋସ୍ତ ! ଦୋସ୍ତ ! ଦୋସ୍ତ !’ ଅନେକ ଡାକହାକରେ ଶବ୍ଦ ମିଳିଲା—‘ହୁଁ’ ଥରେ ହୁଁ କରି ପୁଣି ଘୁଙ୍ଗୁଡ଼ି ମାରିବାକୁ ଲାଗିଲେ । ଘୁଙ୍ଗୁଡ଼ି ପରି ଘୁଙ୍ଗୁଡ଼ି ! ଯେମନ୍ତ ବୁଡ଼ା ଭାଲୁଟାଏ ଦପଦପିଆ ଜରରେ କମ୍ପୁଛି । ଭଗତ ଦେଖିଲେ, ମୁହଁର କଥା ନୁହେଁ, ହାତ ଧରି ଟଣାଟଣି କରି ବସାଇଲେ । ବାବୁଙ୍କ ନିଦ ଭାଙ୍ଗିଲାଣି, ମିଟିଆଡ଼କୁ ଅନାଇଲେ—ମୁଣ୍ଡଟା ଘୂରାଉଛି—ବଡ଼ ଭାରି, ଉଠି ଛିଡ଼ା ହେବାକୁ ମନ ବଳୁନାହିଁ; ଦେହଟା କେମନ୍ତ ଘେଟ ଘେଟ କରି ବାନ୍ତି ମାଡ଼ୁଛି । ଭଗତ ଜାଣିବା ଶୁଣିବା ଲୋକ । ବାବୁଙ୍କ ହାଲ ବୁଝିଗଲେ, ଏଟା ଖୋଉରି । ଇଷାରା ପାଇ ଆଯୁଡ଼ୁ ଗିନାଏ ରାଶି ମାଳପା ଆଣି ବାବୁଙ୍କ ମୁଣ୍ଡରେ ଦେହରେ ଘଷିବାକୁ ଲାଗିଲା । ବଡ଼ ଆରାମ ଲାଗୁଥାଏ, ବାବୁ ମିଞ୍ଜି ମିଞ୍ଜି କରି ଆଖି ବୁଜୁଥାନ୍ତି ଖୋଲୁଥାନ୍ତି । ବଙ୍ଗଳା ହତା ମଧ୍ୟରେ ପକ୍କା ଘାଟ-ବନ୍ଧା ଗୋଟାଏ ପୋଖରୀ ଅଛି । ପ୍ରଭୁଦୟାଲ କୌଣସିରୂପେ ଧରାଧରି କରି ବାବୁଙ୍କୁ ଘାଟରେ ବସାଇଲା । ଆଯୁଡ଼ୁ ଦୁଇ ଗରା କଳସୀ ପାଣି ମୁଣ୍ଡରେ ଢାଳିବାରୁ ବାବୁ ଆପେ ପୋଖରୀରେ ପଶି ଭଲ କରି ଗାଧୁଆ କରି ଆଇଲେ । ପ୍ରଭୁଦୟାଲ ଏତିକି ବେଳେ ରଙ୍ଗପାଣି ଗ୍ଲାସେ ଦେଖାଇ ଦେବାରୁ ବାବୁଙ୍କର ସବୁ ଖୋଉରି ଏକା-ବେଳକେ ଭାଙ୍ଗିଗଲା । ବର୍ତ୍ତମାନ ଭାରି ଭୋକ, ଗଲା ରାତିର ବାସି ଯେତିକି ଶୁଖିଲା ପୁରି, ବାସି ପଲାଉ, ମାଉଁସ ଥିଲା, ଅଧ ହାଣ୍ଡିଏ ଅନ୍ଦାଜ ଟେକି ଦେଇ ଢକ ଢକ କରି ଟୁକୁଣାଏ ପାଣି ପିଇଗଲେ । ଏତେ-ବେଳେ ବାବୁଙ୍କ ଆନନ୍ଦ ଫୁର୍ତ୍ତି ଦେଖେ କିଏ ? ଆଯୁଡ଼ୁ ଯୋଡ଼ାଏ ଚୌକି ବାରନ୍ଦାରେ ଥୋଇଦେଲା, ଦୁଇ ବନ୍ଧୁ ବସି ଖୁସି କଥା ବୋଲାବୋଲି ହେଉଛନ୍ତି । ଚୂଆଗୁଣ୍ଡିପକା ବଡ଼ ବଡ଼ ଗୁଡ଼ାଏ ପାନବଡ଼ିଆ ଆଗରେ ଥିଆ, ଛଅ ପାଞ୍ଚ ପରି ବାବୁ ସେଗୁଡ଼ାକ ଗେଞ୍ଜିଦେଇ ଯାଉଛନ୍ତି । ଆଯୁଡ଼ୁ ଗୋଟିଏ ଗୁଡ଼ୁଗୁଡ଼ିରେ ଗୁଡ଼ାଖୁ ସଜାଇ ଥୋଇ ଦେଇଗଲା । ଦୁଇ ବନ୍ଧୁ ହାତକୁ ହାତ ନଳ ବଢ଼ାଇ ଦେଇ ଗୁଡ଼ାଖୁ ଧୂମ ପାନ କରୁଛନ୍ତି । ବାବୁଙ୍କର ଗୁଡ଼ାଖୁଟା ବି ଅଭ୍ୟାସ ହୋଇ ଗଲାଣି । ବାବୁ କହିଲେ, “ହଁ ହେ, ଦୋସ୍ତ ! ଭଣୋଇ ସାନ୍ତ ଯେ ଗୁଡ଼ାଖୁ ଖାନ୍ତି ତା ଧୂଆଁ ତ ଏଡ଼େ ବାସନା ନୁହେ ?”

ପ୍ରଭୁଦୟାଲ—ହା-ହା—ହା, କଟକରେ ତ ଏତେ ବାବୁ ଗୁଡ଼ାଖୁ ଖାଉଛନ୍ତି, ଆପଣ ଦେଖୁଛନ୍ତି, କେଉଁ ଶଳା ବାବୁ ଏ ଗୁଡ଼ାଖୁ ପାଇବ ? କଲିକତାରେ ଆମର ଯେ ବଡ଼ ଅଢ଼ତ ଘର ଅଛି, ସେଠି ଲେଖି ଡାକ ଯୁଲିଆରେ ଆପଣଙ୍କପାଇଁ ଏହି ଗୁଡ଼ାଖୁ ଅଣାଇଛି ।

ରାଘବ ବାବୁ ପଚାରିଲେ, “କଲିକତାରେ ଏହି କୋଠାଘର ପରି ବଡ଼ ବଡ଼ ଘର ଆହୁରି ବାବୁ କଣ ଅଛନ୍ତି ?”

ପ୍ରଭୁଦୟାଲ—ହଁ-ହଁ, ଆପଣଙ୍କ ପରି ବାବୁ ଢେର ଅଛନ୍ତି, ବଡ଼ ମୌଜ କରନ୍ତି, ବଡ଼ ବଡ଼ ଘର ବି ଅଛି । ଚହଲୁ, ରହନ୍ତୁ - ଆପଣଙ୍କୁ କଲିକତା ଘେନି ଯିବି, ସେଠି କିମିତିକା ମୌଜ ହୁଏ, ଦେଖିବେ । ସେଠି ଢେର ନାଚୁଣୀ ବି ଅଛନ୍ତି ।

ରାଘବବାବୁଙ୍କ ଘର ଯେଉଁ ଗାଁରେ, ସବୁ ପଲାଘର, କୋଠାଘର ଜନ୍ମସାକ କେବେ

ଦେଖି ନ ଥିଲେ । କଟକକୁ ଆସି ଉଞ୍ଚା ଉଞ୍ଚା ବଡ଼ ବଡ଼ କୋଠାଘର ଢେର ଦେଖିଲେଣି । ହେଲେ ଘର ଭିତରଟାରେ ସିକାରେ ଟଙ୍ଗା ହୋଇ ଏତେ ଆଲୁଅ ଜଳେ, ଏତେ ସୁନ୍ଦର ସଜା ହୋଇଥାଏ, ତାଙ୍କୁ ଜଣା ନ ଥିଲା । ବିଛଣାରେ ସିନା ଲୋକ ଶୁଅନ୍ତି—ବିଛଣା, ତା ଉପରେ ଚୌକି, ତା ଉପରେ ଜୋତା ମାଡ଼ ବସିବା—ବାଃ ! ବାଃ ! ବାବୁମାନଙ୍କର କମିତି କପାଳ ! ଆମେ କେମିତିକା ବାବୁ ହୋଇଗଲୁଣି । ଗାଁର ମଙ୍ଗା, ଶଙ୍କ୍ରା ଉଗ୍ରା, ଗୁରୁବାରିଆ ସାଙ୍ଗ ଗୋରୁମଣା ଟୋକାଗୁଡ଼ାକ ଆସି ଆମକୁ ଦେଖିଯାନ୍ତେ କି ! ବାବୁ ପଚାରିଲେ, "ଦୋସ୍ତ ! ଏ ପକାଘର କାହାର ?"

ପ୍ରଦ୍ୟୁମ୍ନ—ଏଇ ଆମର ଜଣେ ଦୋସ୍ତର ଘର । ତାଙ୍କର ଢେର ଘର ଅଛି, କହୁଥିଲେ ଏ ଘରଟା ବିକିଦେବ । ମୁଁ କହୁଥିଲି ଦୋସ୍ତ । ଏ ଘରଟା ଆପଣ କିଣି ରଖନ୍ତୁ । ନଗ୍ରେଲା ଜାଗା, ରୋଜ ରୋଜ ମୌଜ କରିବା, କେହି ଜାଣି ପାରିବେ ନାହିଁ ।

ରାଘବ ବାବୁ ଘର ଭିତର ଚାରିପାଖ ହତା ପୋଖରୀକୁ ଅନାଇଲେ । ଏଃ ! କେଡ଼େ ବାଡ଼ଟାଏ, ପୋଖରୀ ଘାଟଟା ପୁଣି ପକା, ଏଇଟା ତ ଇନ୍ଦ୍ର-ଭୁବନ । କପାଳରେ ଥିଲେ ଏ ଘର ଆମର ହେବ । ଏତିକିବେଳେ ଆପୁଉ୍ଁ ଲଗ ଲଗ ଦୁଇ ଗ୍ଲାସ ଦେଇ-ଗଲାଣି । ବାବୁ ମନରେ କଲେ ଏ ଘରଟା ତାଙ୍କର ନଜର । ପ୍ରକାଶ କରି କହିଲେ, "ଏ ଘରର ଦାମ କେତେ ହେବ ?"

ଭଗତ - କଟକରେ ଏହାର ଉଆଜବ ଦାମ କୋଡ଼ିଏ ହଜାର ଟଙ୍କା; ମାତ୍ର ମୁଁ ଖୁବ୍ ଶସ୍ତାରେ କିଣାଇ ଦେବି ।

ବାବୁ କହିଲେ, "ବାପ୍‌ରେ ! ମୁଁ ଏତେଗୁଡ଼ାଏ ଟଙ୍କା କାହୁଁ ପାଇବି ?"

ପ୍ରଦ୍ୟୁମ୍ନ—ହୋ-ହୋ ! ଆପଣଙ୍କର ପୁଣି ଟଙ୍କାର ଅଭାବ ? ଆପଣଙ୍କ ଅପା ଯେ ରାଣୀ । ମୁଁ ଟଙ୍କା ସଜିଲ କରିଦେବି, ଚିନ୍ତା ନାହିଁ ।

ବାବୁଙ୍କ ମନ ମାଡ଼ ହେଲାଣି । ଏକାବେଳକେ ହୁକୁମ କଲେ, "ହଁ, ଆମେ ଘର କିଣିବୁ, ଆଜ କିଣନ୍ତୁ ।" ବାବୁ ଆଉ ଆପଣାକୁ ସମ୍ଭାଳି ପାରୁ ନାହାନ୍ତି; ମନରେ କଲେ, ଏ ବଡ଼ କୋଠା ଘରଟା ତାଙ୍କର ହୋଇ ଗଲାଣି—ହୋ ହୋ-ହୋ ! ଘରେ ମୌଜ ହେବ ! ସେ ଶଳା ଭଣେଇ ସାନ୍ତକୁ ଉରି ଉରି ପ୍ରାଣ ଗଲାଣି । ଏବେ ବସ୍‌ରେ ବସ୍ । ଖାସା ନଗ୍ରେଲା, କେହି ଶଳା ଜାଣି ପାରିବ ନାହିଁ । "ଡାକ ଡାକ ଦୋସ୍ତ ! ଘରବାଲାକୁ ଡାକ, ବିକିଦେଇ ଯାଉ, ଦଣ୍ଡେ ମଠ କରନା ଦୋସ୍ତ ! ସେ ନାଟୁଣୀ କାଲି କଣ ଗୀତ ଗାଉଥିଲା ? ଆଁ—ଆଁ—ହୁଁ—ହୁଁ—କପରି ସେ ମରିଗଲାଣି ରେ ।"

ପ୍ରଦ୍ୟୁମ୍ନ—ନା ନା, ଦୋସ୍ତ ! ଘରକୁ ଯିବା ଚାଲ, ବୋଉ—ଅପା ଖୋଜୁଥିବେ । କାଲି ଘର କିଣିବା ।

ରାଘବ ବାବୁ—ନେଇଁ—ନେଇଁ—ନେଇଁ, କେଉଁ ଶଳାକୁ ହାମେ ଡରଙ୍ଗା ! ବୋଉକୁ କହି ଆସିଛି, ଅପା ବି ଜାଣିଛି, ଦୋସ୍ତ ସାଙ୍ଗରେ ତୁଳସୀପୁରକୁ ବାଘ ପାଲା ଦେଖି ଯାଉଛି । ଦ'ଦିନ ଲାଗିବ—ଚାରି ଦିନ ଲାଗିବ, ଛଅଦିନ ଲାଗିବ, କିଏ ଶଳା ଶାଳୀ ଖୋଜିବ ? ଆଁ-ଆଁ—ଉଁ-ଉଁ—"କପରି ମରି-ଗଲାଣିରେ"—ଖୁବ୍ ଟାଣିକରି ଗୀତ ଆରମ୍ଭ କରି-ଦେଲେ ।

ଚଲାଖ ପ୍ରଦ୍ୟୁମ୍ନ ଭଗତ ସବୁ କଥା ବୁଝି-ଗଲାଣି—ମନରେ କଲା, ଏଇଟା ଠିକ୍ ବେଳ ।

ଆପୁଡ଼୍‌କୁ ଏକୁଟିଆ ଡାକ ନେଇ ଗୁନ ଗୁନ ଢେର ବେଳଯାଏଁ ଢେର ଉପଦେଶ ଦେଲା । ବିଶେଷ କରି କହିଦେଲା, ଧୋବାଘରୁ ଭଲ ପୋଷାକ ଭଡ଼ା ଆଣିବ ।

ଇତିହାସର କଥା—କୋମ୍ପାନୀ ବାହାଦୁର ଦିଲ୍ଲୀ ବାଦଶାଙ୍କ ନିକଟରୁ ବଙ୍ଗ ବେହାର ଓଡ଼ିଶାର ଦେବାନୀ ସନନ୍ଦ ନେବାକୁ ଗୋଟାଏ ମଧ୍ୟ କଣ୍ଡା ବିକାର ସମୟ ଲଗିଥିଲା, କିନ୍ତୁ ବଙ୍ଗଳା ବିକା କିଣା କଥା ଖୁବ୍ ଚଞ୍ଚଳରେ ଲାଗି ପଡ଼ି ମଧ୍ୟ ପାଞ୍ଚ ଛ ଘଣ୍ଟା ସମୟରୁ ଊଣା ହେଲା ନାହିଁ ।

ଉପରଓଳି ଗୁଟାଏ ବାଜି ଯାଇଛି, ବଙ୍ଗଳା-ମାଲିକ ବାବୁ ଆଉ ଜଣେ ଓକିଲ ଦୁଆତ କଲମ ଧରି ଉପସ୍ଥିତ ହେଲେ । ବାବୁ ଆଉ ଓକିଲଙ୍କର ଏକରକମ ପୋଷାକ, ଖରି ଲମ୍ବ ଲମ୍ବ ଚପକନ ଗୋଡ଼ ଗୋଇଠି ଯାଏ ଲଗିଛି । ଦେହରେ ବଡ଼ ଢିଲା ହାତ ଯୋଡ଼ାକ ଆଙ୍ଗୁଳି ତେଇଁ ଗୁରି ଗୁରି ଆଙ୍ଗୁଳି ଝୁଲି ପଡ଼ୁଛି । ବାବୁଙ୍କ ମୁଣ୍ଡରେ ଗୋଟାଏ ପାଞ୍ଚ ଗଜିଆ ଗୋଷ୍ଟମାର୍କା ଧୋତି ପାଗ ଗୁଡ଼ଆ, ଓକିଲଙ୍କ ମୁଣ୍ଡରେ ଗୋଟାଏ ମଇଳା ଭଙ୍ଗା ପୋଲ ପଗଡ଼ି । ଦୁଇ ଜଣଙ୍କ ଦେହରୁ ଭୁରୁ ଭୁରୁ କରି ଅତର ଗନ୍ଧ ବାହାରୁଛି । ରାଘବ ବାବୁଙ୍କର ଚେତନା ଥିଲେ ନିଶ୍ଚୟ ଚିହ୍ନନ୍ତେ । ଏହି ଓକିଲ ବାବୁଟି ନିଶ୍ଚୟ ଗଲା କାଲି ରାତିର ଖୋଦା ବକ୍‌ସ ଖାନସମା—ଆଉ କୋଠିବାଲା ବାବୁଟି ସେଇ ଡବଲଚି ଭଡ଼ୁଆ ଟେନା । ଏମାନଙ୍କୁ ଦେଖି ରାଘବ ବାବୁଙ୍କ ମନରେ ଭାରି ଆନନ୍ଦ । ଆନନ୍ଦରେ ସମସ୍ତେ ଗୋଟାଏ ଖଟ କୁଣ୍ଡିଆ କୁଣ୍ଡେଇ ହେଲେ । ମଜଲିସ ବସିଲା—ଆପୁଡ଼୍ ବୋତଲ ଗ୍ଲାସ ଧରି ହାଜର ଅଛି ।

ବଙ୍ଗଳା କିଣାବିକା କଥା ପଡ଼ିଲା । ଦରଦାମ ଢେର କଥାକଥି ହେଲା ! ଦୋସ୍ତ ପ୍ରଭୁଦୟାଲ ବାବୁଙ୍କ ପଟ ଧରି ଖୁବ୍ ଲଢ଼ାଲଢ଼ି କରି ଦାମ କମାଇଲେ; ଅର୍ଥାତ୍ ଖୁବ୍ ଶସ୍ତାରେ କିଣିବା ବନ୍ଦୋବସ୍ତ କଲେ । ପୂର୍ବ ପହରେ କାଲ କଥାକଥି ଢେର୍ ଢେର୍ କଥା ଉତ୍ତରରେ ଦର ଛିଡ଼ିଲା । ସେଥିର ସାର କଥା ଏହି—

ବଙ୍ଗଳାର ମହାଜନ ବାବୁ ରାମ ରାମ ଭକତ ( ନାମାନ୍ତର ଖୋଦାବକ୍‌ସ ) ବଙ୍ଗଳାର ଦାମ ପ୍ରଥମେ କୋଡ଼ିଏ ହଜାର ଟଙ୍କା ହାଙ୍କିଥିଲେ । ରାଘବ ବାବୁ ଦୋସ୍ତଦାର ଲୋକ, ସମସ୍ତେ ମିଳିମିଶି ମୌଜ କରିବେ, ଶେଷରେ ପାଞ୍ଚ ହଜାର ଟଙ୍କା ଦାମ ଛିଡ଼ିଲା । ବାବୁଙ୍କ ମନରେ ବଡ଼ ଆନନ୍ଦ । କୋଡ଼ିଏ ହଜାର ଟଙ୍କାର ମାଲ ପାଞ୍ଚ ହଜାରରେ ପାଇଗଲେ । ଦୋସ୍ତଙ୍କ ପିଠିରେ ହାତ ମାରି କହିଲେ, "ସାବାସ ଦୋସ୍ତ, ସାବସ ! ଜଲଦି କାମ ଛିଡ଼ାଇ ପକାଅ ।" ଓକିଲ କବାଲା ଲେଖାଟାଡ଼ା କରି ପକାଇଲେ । ଓକିଲ କବାଲା ଲେଖିଲା ବେଳେ ଗୋଟାଏ ପବନ ଆସି ତାଙ୍କ ଚପକନରୁ ଫାଳେ ଉଡ଼ାଇ ପକାଇଲା—ଦିଶିଗଲା, ଭିତରେ ଖଣ୍ଡେ ଚିରା ମଇଳା ଆଠହାତି ଲୁଗା ପିନ୍ଧିଛନ୍ତି, ଗୋଡ଼ରେ ପୋଛା ତ ନାହିଁ, ଚପକନଟା ଗୋଡ଼ତଳ ପର୍ଯ୍ୟନ୍ତ ଲମ୍ବି ପଡ଼ିଥିବାରୁ ଜଣା ଯାଉ ନାହିଁ । ଓକିଲ ଆପେ ଚଞ୍ଚଳ ଚପକନଟା ଟାଣି ନେଇ ଗୋଡ଼ଟା ଢାଙ୍କି ପକାଇଲେ । କବାଲା ଲେଖା ବାଦ ଦୋସ୍ତ ପ୍ରଭୁଦୟାଲ ଭଗତ କହିଲେ, "ଏତେ ଟଙ୍କାର ମାମଲା, କବାଲା ରେଜେଷ୍ଟରୀ ନ ହେଲେ ଚଳିବ ନାହିଁ ।" ଓକିଲ ସେହି ଦଲିଲ ଧରି ରେଜେଷ୍ଟରୀ କରିବାକୁ ଧାଇଁଲେ । ବାବୁଙ୍କର ତର ସହୁ ନାହିଁ, ହୁକୁମ କଲେ, "ଜଲଦି ଆସ, ଖୁବ୍ ଜଲଦି ଆସ ।" ଘଣ୍ଟାକ ଉତ୍ତାରେ ଓକିଲ ବାବୁ ରେଜେଷ୍ଟରୀ ଅଫିସରୁ ଫେରି ଆସି ଦଲିଲ ଖଣ୍ଡି ବାବୁଙ୍କ ହାତକୁ ବଢ଼ାଇ ଦେଲେ । ବାବୁ ଏ ପିଠ ସେ ପିଠ ତିନି ଥର ଓଲଟ ପାଲଟ କରି ଦେଖି ମନମଧ୍ୟରେ ଭାରି ଖୁସିଟାଏ ହେଲେ ! ମନରେ କଲେ, କାମଟା ଠିକ୍

ହୋଇଛି । ତାଙ୍କ ଡ୍ରାମରେ ରାମ ଚଇଡ଼ା ଶ୍ୟାମଚଣ୍ଡୀଙ୍କୁ ଯେ ଦୁଇମାଣ ଜମି ବନ୍ଧକଥିଲା, ଏହାଟର ଟାସ କାଗଜରେ ଲେଖା ହୋଇଥିଲା, ଏପରି ଷ୍ଟାମ୍ପ ମରାଯାଇଥିଲା, ଏହାପରି ଲାଲ ରଙ୍ଗରେ ଗାରଗାରକା ପାଠ ଲେଖା ଯାଇଥିଲା । ଦୋସ୍ତଙ୍କ ମୁହଁକୁ ଚାହିଁ ଖବ୍ ଗୋଟାଏ ଖୁସି ହେଲେ । ସେଥିର ଅର୍ଥ—ଦୋସ୍ତ ବଡ଼ ବୁଦ୍ଧିଆ, ଠିକ୍ ଠିକ୍ କାମ କରନ୍ତି; ଅର୍ଥାତ୍ ଦଲିଲ ଲେଖାଟାଡ଼ା ଠିକ୍ ହୋଇଛି । ବଙ୍ଗଳାର ମାଲିକ ବାବୁ ରାମ ରାମ ନଗଦ ଜରସମନ ବାବଦ୍ ଟଙ୍କା ମାଗିଲେ । ତାଙ୍କର ଆଜି ଟଙ୍କାର ବଡ଼ ଦରକାର । ସବୁ ଟଙ୍କା ନ ଘଟିଲେ ଦୁଇ ତିନି ହଜାର ଟଙ୍କା ଦିଅ । ରାଘବ ବାବୁ ଦୋସ୍ତ ମୁହଁକୁ ଅନାଇଲେ । ଦୋସ୍ତ ପ୍ରଦ୍ୟୁମ୍ନ ଦୟାଳ ଚଞ୍ଚଳ କହି ପକାଇଲେ—"ଟଙ୍କାଲାଗି କଣ ପରବା ହେ, ବାବୁ କାଲି ଟଙ୍କା ଫୋପାଡ଼ି ଦେବେ । ଟଙ୍କା ପାଞ୍ଚ ହଜାର ନା ଆଉ କଣ ? ନ ହେଲା, ଦୋସ୍ତଙ୍କ ଲାଗି ମୁଁ ହାତଉଧାର ପାଞ୍ଚ ହଜାର ଟଙ୍କା ଚଳେଇଦେବି !"

ବଗି ହାଜର ଥିଲା—ଦୁଇ ଦୋସ୍ତ ସେଥିରେ ଚଢ଼ି ଘରକୁ ବାହାରିଗଲେ ।

---

-୪୮-

## ଗୁଡ଼୍ ଫେରାଇଦେ—ଯାତ୍ରା

କଚେରି ବନ୍ଦ—ନାଜର ବାବୁ ବସାରେ ଅଛନ୍ତି । ଦିନଯାକ ଟଙ୍କା ଗଣାଗଣିରେ ଲାଗିଥିଲେ । ସଞ୍ଜବଇଠା ଜଳିବା ଟିକିଏ ଆଗରୁ ମାଲ କୁଲିଟାରେ ହାତ ପୂରାଇ—କିଛି ଆଙ୍ଗୁଳିଟା ବାହାରି ପଡ଼ୁଛି, ଘରୁ ବାହାରି ପଡ଼ିଲେ । ପ୍ରଦ୍ୟୁମ୍ନଦୟାଳ ଭଗତ ବାବୁଙ୍କ ଅନୁସରଣରେ ଅଛି । ବାବୁ ଭିତରେ ଥିବାରୁ ରାଘବାନନ୍ଦ ବାବୁଙ୍କ ଗମ୍ଭୀରରେ ବସିଥିଲା । ଦୁଇ ଜଣଙ୍କ ମଧ୍ୟରେ କିଛି କଥାବାର୍ତ୍ତା ହେଉଛି କି ନା, ଠିକ୍ ବୋଲି ଯାଇ ନ ପାରେ । କାରଣ ବାହାରକୁ କିଛି ଶୁଭୁ ନ ଥିଲା । ବାବୁ ବାହାରିବାବେଳେ ପ୍ରଦ୍ୟୁମ୍ନଦୟାଳ ସଦର ଦୁଆର ପାଖରେ ଜଣାଇଲା—"ହଜୁର ! ମୋ ମାଈଁର ଟିକି ବେମାର—ଦଣ୍ଡକ୍ଷଣିକା ହେଲାଣି । ମୋତେ ଦେଖିବା ଲାଗି ଲୋକ ଡାକ ଆସିଛି । ତୁଳସୀପୁରକୁ ଧାଇଁଯିବି, ଧାଇଁ ଆସିବି, ତିନି ଚାରି ଘଣ୍ଟାରୁ ବେଶି ଡେରି ହେବ ନାହିଁ ।" ବାବୁ ହୁକୁମ କଲେ, "ଆଚ୍ଛା ଯା, ବୁଝି ଖବରଦାର ! ଏଗାରଟା ଆଗରୁ ଆସିବାକୁ ହେବ ।" ଚୂଡ଼ାଆଡ଼କୁ ଅନାଇ ଦେଇ କହିଲେ, "ରାତି ଏଗାରଟା ହେଲେ ସେଇଠି ଥିବୁ । ଘରକୁ ଫେରିବାକୁ ଡେରି ରାତି ହେବ ଆସିବାବେଳେ ଲଣ୍ଠନ ଧରି ଆସିବୁ ।"

ପ୍ରଦ୍ୟୁମ୍ନଦୟାଳ—ହଜୁର !

ଉଆସ ମଧ୍ୟରେ ମା ଝିଅ ବସି କଥାଭାଷା ହେଉଛନ୍ତି, ଚମ୍ପା ପଛଆଡ଼େ ବସି ମଙ୍ଗଳା ଦେଈଙ୍କ ପିଠିରେ ହାତ ବୁଲାଉଛି, କାହାରି ହାତରେ କିଛି ଚାଇଁଟି ନାହିଁ । ଚମ୍ପା କହି ବସିଲା, "ଆଜି ସାହେବ ଘରେ ଗୁଡ଼୍ ଫେରାଇଦେ ଯାତ୍ରା ହେବ । କେହି କିଛି କାମ ପାଇଁଟି କରିବେ ନାହିଁ, ଚୁଲ୍ଲା ଘରେ ବସିଥିବେ । ଆଜି ମନ୍ଦିରରେ ଢେର ପିଠା ପଣା ହେବ; ସାନ୍ତ ଆଜ୍ଞା କରି ଗଲେ ପରା, ଘରେ କିଛି ସାରିବେ ନାହିଁ ।"

ମଙ୍ଗଳା ଦେଈ ଜୁଆଇଁବାବୁ ରାଘୋଟିକୁ ସାଙ୍ଗରେ ନେଇ ଗଲେ ନାହିଁ ଭଲ ମନ୍ଦ ଟିକିଏ ଚାଖି ଆସିଥାନ୍ତା ।

ଚମ୍ପା—ନାହିଁ ନାହିଁ, ମୁଁ ସାଈସାନ୍ତଙ୍କୁ ଢେର୍ ନେହୁରା ହୋଇ କହିଲି ମନ୍ଦିରକୁ ଗଲେ ନାହିଁ । ପେଟ ଟାଣୁଛି, ରାତିରେ କିଛି ଠା ବସିବେ ନାହିଁ, ଶୋଇଛନ୍ତି । ମଙ୍ଗଳା ଦେଈ ଧଡ଼ପଡ଼ ହୋଇ ଉଠି ବସିଲେ—କହିଲେ, "କଣ କହୁଛୁ ରେ ମା ଚମ୍ପି ? ରାଘୋ ଶୋଇଛି ? ଚାଲ ଚାଲ, ଦେଖିଆସେଁ ।"

ଚମ୍ପା—ନାହିଁ ନାହିଁ, ବେଲବୁଡ଼େ ପେଟ ଟାଣୁଥିଲ, ଉଚ୍ଛୁଣିକା ଖୁବ୍ ଭଲ ଅଛନ୍ତି, ଦାଣ୍ଡରେ ଧାଇଁ ଧାଇଁ ବୁଲୁଛନ୍ତି ।

ମଙ୍ଗଳା ଦେଈ ବଡ଼ ଉତ୍କଣ୍ଠାରେ ଚୌରାଣି ମଧାଏ ଢୋକ ଦଅନ୍ତି, ସବୁ ଦିନେ ପେଇଟା ଅଭ୍ୟାସ, ବୁଢ଼ୀ ଲୋକ କ'ଣ ସାରିବେ ? ବଶାଖା ଦେଈ ବି ବାସି ପଖାଳରେ ଚନ୍ଦା ମଧାଏ ପିଆଜ ଲଙ୍କାମରିଚକୁ ଭଲ ପାନ୍ତି । ମା ଝିଅ ଦୁଇ ଜଣଙ୍କର ଗୋଟାଏ କଂସାରେ ଏକ ସାଙ୍ଗରେ ଚଳେ ।

ଚମ୍ପା କହିଲା ଆଜି ସାହେବ ଘରେ ଗୁଡ଼ୁ୍ ଫୋଟାଇବେ ଯାହା ହେବ, ବଜାରରେ ଖବର ଚହଲ ପଡ଼ିଛି—ବାବୁମାନେ କେହି ଘର ଦିନ କଚେରୀକୁ ଯାଇ ନାହାନ୍ତି । ସାହେବ ଘରେ ଯେ ରୋଶନି ହେବ; ଆକାଶରେ ଉଡ଼ିବ ।

ବଶାଖା ଦେଈ—ଏ ବୋଉ ! କଟକରେ ଢେର ରୋଶନି ହୁଏ, ଭଲ ରୋଶନି ହୁଏ, ଦୁମ୍-ଦୁମ୍ ଶୁଭେ —ମୁଁ ଚମକି ପଡ଼େ, ଡର ମାଡ଼େ ।

ମଙ୍ଗଳା ଦେଈ—କମିତି ରୋଶନି ହୁଏ ମୁଁ ଦେଖନ୍ତି ! ଦାଣ୍ଡ ଦୁଆରକୁ ଦିଶିବ ନାହିଁ ?

ଚମ୍ପା ନା ନା, ସେ ରୋଶନି ଏଠିକି ଦିଶିବ ନାହିଁ, ଆକାଶରେ ଶୂନେ ଶୂନେ ଉଡ଼ିବ, କୋଠା ଉପରକୁ ଦିଶେ ।

ମଙ୍ଗଳା ଦେଈ—ଆଛା ଏଠି ଯା ବସିବେଁ, ଚାଲ କୋଠା ଉପରେ ବସିବା, ରୋଶନି ଦେଖିବା, କଥା କହିବା ।

ଚମ୍ପା—ନା ନା, ବୁଢ଼ୀଲୋକ, କୋଠା ଉପରକୁ କୁଆଡ଼େ ଯିବ ? ଜାଡ଼ର ପଡ଼ିବ । କଟକରେ ବାବୁମାନଙ୍କ ଘର ମାଇକିନିଆ ଗୁଡ଼ାକ କମିତି, କେହି ଜାଡ଼ର ମାନିବାକୁ ନାହିଁ, ସବୁ ବୁଢ଼ୀ ବୋହୂ ଝିଅ ରୋଶନି ଦେଖିବା ଲାଗି କୋଠା ଉପରେ ହାଜର ।

ମଙ୍ଗଳା ଦେଈ—"ନା ନା ଚମ୍ପି ! ଚାଲ ଚାଲ, କୋଠା ଉପରକୁ ଚାଲ, ସେଇଠି ବସିବା, କଥାଭାଷା ହେବା ।" ହେଉ ବୋଲି କହି ଚମ୍ପା ସପଟା କାଖେଇ ଆଗେ ଆଗେ ବାହାରିଲା । ତିନି ଜଣ ଏକ ଜାଗାରେ ବସିଛନ୍ତି । ମା ଝିଅ—ଏଇ ରୋଶନି ଅଇଲା ଏଇ ରୋଶନି ଅଇଲା କହି ଏକଧ୍ୟାନରେ ଆକାଶକୁ ଚାହିଁଛନ୍ତି । ଏଣେ ଚମ୍ପାଟା କ'ଣ ଚଙ୍ଗ ଚଙ୍ଗ ହେଉଛି, ଆଉ କଥାରେ ମନ ନାହିଁ, ଘରଆଡ଼କୁ ଅନାଉଛି, ଛେପ ପକାଇବା ବାହାନାରେ ଛାତ କାନସ ଧାରକୁ ଆସି ତିନି ଥର ତଳକୁ ଅନାଇ ଗଲାଣି । ଘଣ୍ଟାକ ଉତ୍ତାରେ ତଳ ମଝି ଅଗଣାରୁ ଛପ୍ କରି କଣ ଶବ୍ଦଟାଏ ଶୁଭିଲା । ସାନ୍ତାଣୀ କହିଲେ, "ଆରେ ନଆଁ ଲଗା ବରଡ଼ଟା ହାଣ୍ଡି ଗଡ଼ାଇଲାଣି ପରା ।" ଚମ୍ପା କୋଠା ଧାରକୁ ଧାଇଁ ଆସି ଭଲ କରି ତଳକୁ ଅନାଇ କହିଲା, "ନା ସାନ୍ତାଣି ! କେହି କାହିଁ ନାହିଁ ତ !" ଦଣ୍ଡକ ବାଦେ ଚମ୍ପା କହିଲା, "ଆଜ୍ଞା, ମୁଁ ଘରଆଡ଼କୁ ଅନାଇ ଦେଖିଲିଣି, କାହିଁ ବାବୁମାନଙ୍କ କୋଠା ଉପରେ ଆଉ ଗୋଳମାଳ ନାହିଁ । ସମସ୍ତେ ତଳକୁ ଗଲେଣି ପରା, ଆଜି କଣ ରୋଶନି ହେବ ନାହିଁ ? ହଁ ହଁ ସତ ସତ, ମନରେ ପଡ଼ିଗଲା — ବଜାରରେ ଜଣେ କହୁଥିଲା, ରାତି ପାହାନ୍ତା ରୋଶନି ହେବ । ଆଛା ଆଛା—ଆପଣମାନେ ତଳକୁ ଚାଲନ୍ତୁ ତ, ମୁଁ ଧାଇଁ ଯାଇ ବଜାରରୁ ବୁଝି ଆସେଁ । ଖଡ଼େ ଖଡ଼େ ଏହିଲାଗେ ଫେରି ଆସିବି ।" ସମସ୍ତେ ତଳକୁ ଓହ୍ଲାଇ ଗଲେ ।

———

-୫୯-

## ପାପର ପରିଣାମ

ଆଜି ମଙ୍ଗଳବାର—ବୃନ୍ଦାବନ ବାବେ କଚେରି ଫିଟିଛି । କଚେରିରେ ଢେର୍ କାମ ମୁଲତବି । ଅମଲାମାନେ ବଡ଼ାବଡ଼ା କାଗଜ ଧରି ମିସଲରେ ଉପସ୍ଥିତ । ହାକିମ ଆସି ନାହାନ୍ତି, ପେସ୍କାରଗୁଡ଼ାଏ ନଥି ନମ୍ବରବାରି କରି ମିସଲ ମେଜ ଉପରେ ସଜାଇ ରଖିଛନ୍ତି । ବାରଟା ବାଜିବା ସାଙ୍ଗେ ସାଙ୍ଗେ ମେଜେଷ୍ଟର ସାହେବ ମିସଲରେ ପହଞ୍ଚିଗଲେ । ସମସ୍ତ ଅମଲା ମାମଲତକାରମାନେ ମୁଣ୍ଡ ନୁଆଁଇ ସଲାମ କଲେ । କେତେ ଜଣ ଅମଲା ଗୋଟାଏ ଗୋଟାଏ କାଗଜ ଧରି ମିସଲ ପାଖକୁ ଭିଡ଼ ଯାଉଛନ୍ତି—ଇଚ୍ଛା, ଆପଣା ଆପଣା କାଗଜ ଆଗେ ଦସ୍ତଖତ କରାଇ ଆପଣା କାମରେ ଲାଗିଯିବେ । ଠିକ୍ ସେହି ସମୟରେ ମୁତଫ୍ରିକ ଚପରାଶି ପୋଷ୍ଟ ଅଫିସରୁ ଡାକ ଆଣି ମେଜ ଉପରେ ଥୋଇଦେଲା । ସାହେବ ଆଗେ ବଲାଞ୍ଜି ଚିଠିଗୁଡ଼ାକ ପଢ଼ି ପକାଇ ଏକପାଖିଆ ଥୋଇଦେଲେ । ତହୁଁ ଉତ୍ତାରେ ସରକାରୀ, ଚିଠିଗୁଡ଼ାକ ଏକଜାଗା କରି ଖଣ୍ଡିଏ ଖଣ୍ଡିଏ କରି ଲଫାଫା ଚିରି ତହିଁ ଭିତରୁ ଚିଠି କାଢ଼ି ପଢ଼ୁଥାନ୍ତି । ହାକିମମାନଙ୍କର ଦସ୍ତୁର ଆଗେ ଗଭର୍ଣ୍ଣମେଣ୍ଟଙ୍କ ଚିଠିଗୁଡ଼ିକ ପଢ଼ି ସାରି ତେବେ ଆଉ ଚିଠିରେ ହାତ ଦେବେ । ଖଣ୍ଡିଏ ଚିଠି ପଢ଼ି ସାହେବ ଏକାବେଳକେ ନିଆଁ ବାଣ, ଭାରି ତେଜରେ ହୁକୁମ କଲେ, "ଚପରାସି ! ଜଲଦିସେ ଖାଜାନ୍‌ଚିକୁ ପକଡ଼ ଲାଓ ।" ତେଜ ହୁକୁମ ଶୁଣି ଅମଲାମାନେ ଶଙ୍କିଗଲେଣି—କାଗଜ ଦସ୍ତଖତ କରାଇବେ କଣ, ଧୀରେ ଧୀରେ ପଛଘୁଞ୍ଚା ଦେବାକୁ ଲାଗିଲେ । ଡାକ କାମ ଛାଡ଼ିବାକୁ ଅଧ ଘଣ୍ଟାଏ ଡେରିରୁ ଊଣା ନୁହେଁ । ଭୁକ୍କାଟାରେ ଛାଡ଼ା ହେଲେ କଣ ହେବ, ଆପଣା ଆପଣା ସିରସ୍ତାକୁ ଚାଲିଗଲେ ।

ଗଭର୍ଣ୍ଣମେଣ୍ଟ ଚିଠିଖଣ୍ଡ ଥାର୍ଡ ରିମାଇଣ୍ଡର । କଟକ ଖଜଣାଖାନାରୁ ଅଶୀ ହଜାର ଟଙ୍କା କଲିକତା ଖଜଣାଖାନାକୁ ଚୋଟିବାର ହୁକୁମ ଥିଲା, ଏଯାଏଁ ନ ପଠାଯାଇ ନାହିଁ । ଅସଲ କଲେକ୍ଟର ମିଷ୍ଟର ଡାଇସନ ବଦଳିରେ ଅଛନ୍ତି । ମିଷ୍ଟର ଜୋନସ୍ ଅଫିସିଏଟିଂ କଲେକ୍ଟର । ଚଞ୍ଚଳ ଚଞ୍ଚଳ ଭଲ କାମ ଚଳେଇଲେ ଗଭର୍ଣ୍ଣମେଣ୍ଟ ଖୁସି ହେବେ । କର୍ମରେ ବାହାଲ ହେବାକୁ ସାହେବଙ୍କ ଭାରି ଇଚ୍ଛା ଏବଂ ଆଶା ! ଏଇଟା କଣନା ଗଭର୍ଣ୍ଣମେଣ୍ଟ ହୁକୁମ ତାମିଲ କରିବାକୁ ବେଜାଏ ଡେରି, ଥାର୍ଡ ରିମାଇଣ୍ଡର ପର୍ଯ୍ୟନ୍ତ ଗଲାଣି ! ଅବଶ୍ୟ ସାଫ ଗଫଲତି ପ୍ରକାଶ । ଖାଜାନ୍‌ଚି ସଲାମ କରି ଛିଡ଼ା ହେବା ମାତ୍ରେ ସାହେବ ଭୟଙ୍କର ତେଜରେ ହୁକୁମ କଲେ—"କିସ୍‌ବାସ୍ତେ ଟେଲ୍‌କେଟା ରୁପେୟା ନେହିଁ ଗେୟା ?"

ଖାଜାଞ୍ଚି—ଥଳି ନ ଥିବାରୁ ଟଙ୍କା ପଠାଯାଇ ନାହିଁ । ଥଳି ଯୋଗାଇବା ନାଜରର କାମ ।

ସାହେବ—ବୋଲାଓ ରାସ୍କେଲ ନାଜରକୁ ।

ଚପରାଶି କହିଲା—ନାଜର କଚେରିକୁ ଆସି ନାହାନ୍ତି ।

ସାହେବ—ପେସ୍କାର ! କିସ୍‌ବାସ୍ତେ ନାଜର ନେହିଁ ଆୟା ?

ପେସ୍କାର ତ ସାହେବଙ୍କ ରାଗ ଦେଖି ଶଙ୍କିଗଲେଣି । ଚଞ୍ଚଳ କହି ପକାଇଲେ—"ନାଜରଙ୍କ ଆସିବା ବେଳ ହୋଇ ନାହିଁ ।" (ପେସ୍କାର ହିଂସାରେ ଏ କଥା ଚୁଗୁଲି କରି କହି ନାହାନ୍ତି । କଥାଟା ହେଲେ ସତ, ଆଜକୁ ମାସ ଦୁଇ ହେଲା ବାବୁଙ୍କର ସରକାରୀ କାର୍ଯ୍ୟରେ ମନ ନାହିଁ—ଆଉ କାମରେ ଲାଗି ଥିବାରୁ ଫୁରସତ ଊଣା । ଶୁଣାଶୁଣିରେ ବାବୁ ଦିନେ ବଣାଖା ଦେଇ ଆଉ ଜଣେ ଆତ୍ମୀୟଙ୍କ ପାଖରେ କହୁଥିଲେ, କୌଣସି ରକମ ସଟାବଟା କରି କେତେଟା ମାସ ଚଳାଇବାକୁ ହେବ । ତାହା ବାଦ୍ ନୌକରି ଛାଡ଼ିଦେବେ । ତାଙ୍କର ନଜର

କେତେ ଜଣ ନାଜର ଗୃଜଗ୍ରଆ ଦରକାର ହେବେ । ଅବଶ୍ୟ ଲେଖକ ଆପଣା କାନରେ ଏକଥା ଶୁଣି ନାହିଁ- ହେଲେ ସରକାରୀ କାମରେ ଢିଲପଣିଆ ଦେଖି କଥାଟା ସତ ବୋଲି ସେ ବିଶ୍ୱାସ କରେ । )

ସାହେବ ଗର୍ଜନ କରି କହିଲେ—କ୍ୟା, ଡାଇସନ୍ ସାହେବ ନେହିଁ ହେ—ଇସ୍‌ବାସ୍ତେ ? ଜଲଦି ଯାଓ ଦୋଠୋ ଚପରାସି, କାହାଁ ହେ, ବଂସ୍କଲକା କାନସେ ଖେଞ୍ଚ ଲଓ ।

ଏଣେ କଣ ହୋଇଛି ନା, ନାଜର ବାବୁ ଚଞ୍ଚଳ ଚଞ୍ଚଳ ଦଶଘଣ୍ଟା ବାଜିବା ଆଗରୁ ଝିଆପିଆ ସାରି ପୋଷାକ ପିନ୍ଧି କଚେରିକୁ ଯିବାପାଇଁ ସଜ ହେଲେ । ଢେର ଗୁଡ଼ାଏ ସରକାରୀ ଟଙ୍କା ହାତରେ ଅଛି । ଚଲଣ ଲେଖି ଖଜଣାଖାନାରେ ଦାଖଲ କରିବାକୁ ହେବ । କଚେରିକୁ ଟଙ୍କା ଘେନିଯିବା ଲାଗି ଦୁଇ ଜଣ ପିଆଦା ଡକାଇ ଦୁଆର ପାଖରେ ଛିଡ଼ା କରାଇଲେ, ବାବୁ ଘର ଭିତରକୁ ଯାଇ ଅଣ୍ଟାରୁ କଞ୍ଚିକାଠିଟା କାଢ଼ି ସିନ୍ଦୁକ ଫିଟାଇଲେ । ସିନ୍ଦୁକ ଡାଲି ବାଁ ହାତରେ ଟେକି ଧରି ଭିତରକୁ ଅନାଇଲେ । ଯାହା ଦେଖିଲେ - ଦାଉଁ କରି ଛାତି ଦୁଲ୍‌କିଗଲା, ପାଟିରୁ କଥା ବାହାରୁ ନାହିଁ ।

ଢେର ଥର ସିନ୍ଦୁକକୁ ଚୁହାଁଲେଣି, ଆଖିକୁ ଆଉ କିଛି ଦିଶୁନାହିଁ । ଭୁଙ୍କାଟାରେ ସିନ୍ଦୁକ ଡାଲିଟା ଖାଇବା ହାତରେ ଅଣ୍ଡାଳି ଗୋଟାଏ ଭୟରେ ଚିତ୍କାର କଲେ—'ଆଁ ଟଙ୍କା କାହିଁ ?' ବିଶାଖା ଦେଈ ଧାଇଁ ଆଇଲେ । କିଛି ବୁଝି ନାହାନ୍ତି, ହେଲେ ଭୟରେ ଦେହଟାଯାକ ବରଡ଼ାପତ୍ର ପରି ଥରୁଛି, ଜିଭରେ ମୋଟ ଓଠଟି ବାରମ୍ବାର ଭିଜାଉଛନ୍ତି । କଥାଟା ବୁଝି ନ ପାରି ମଙ୍ଗଳା ଦେଈ ମାଟି ପିତୁଳାଟି ପରି ଛିଡ଼ା । ଝିଅ କାନ୍ଦି ପକାଉଛି ଟେଁଆ, ବାରମ୍ବାର ଆଖି ବୁଜି ପକାଉଛି 'ଆଲୋ ମୋ ମାଲୋ, ଆଲୋ ମୋ ବାପାଲୋ ହାପୁ ହାପୁ ! ଘର କଥା କିଛି ନୁହେଁ, ସରକାରୀ ମାମଲା ।' ଛିଡ଼ା ହୋଇପାରିଲା ନାହିଁ, ପାସୁ ମୂଳରେ ବସିପଡ଼ି ସକେଇ ସକେଇ କାନ୍ଦୁଥାଏ । ସିନ୍ଦୁକରେ ଗୁବ-- ଟଙ୍କା ଗଲା କୁଆଡ଼େ ? ସିନ୍ଧି ନାହିଁ, କବାଟ ଭଙ୍ଗା ନାହିଁ, ଟଙ୍କା କଣ ସିନ୍ଦୁକଭିତରେ ଉଭେଇଗଲା ? ବାବୁ ପଚାରିଲେ, "କାଲି ଦିନରେ ବା ରାତିରେ ଘରଭିତରକୁ କିଏ ଆସିଥିଲା ?" ଚସା ଚଞ୍ଚଳ କହି ପକାଇଲେ, "କାଲି ସଞ୍ଜବେଳୁ ରାତି ପହରେ ଯାଏଁ ଆମେ ତିନି ଜଣ ଏହି ଘର ଦୁଆରରେ ବସିଛୁଁ, କାହିଁ ଯାଇ ନାହୁଁ, କେହି ହେଲେ ଭିତର ଅଗଣା ମାଡ଼ି ନାହିଁ ।" ବିଶାଖା ଦେଈ ବି ଭୟରେ କୋଠାଉପରକୁ ଯିବା କଥା କହିଲେ ନାହିଁ । ଚସା କଥାରେ ମା ଝିଅ ସଇ ଦେଇଗଲେ । ସମସ୍ତେ ଅଛନ୍ତି, ରାଘବ କାହିଁ ? ସବୁ କଥା ଛାଡ଼ି ଖୋଜା ଲାଗିଛି—ରାଘବ କାହିଁ ? ମଙ୍ଗଳା ଦେଈ ତୁନି ହୋଇ ଛିଡ଼ା ହୋଇଥିଲେ, ରାଘବକୁ ଖୋଜା ଲାଗିବାରୁ ଭୟରେ ଥରୁଛନ୍ତି । ପାଟି ଖନ ବାଜିଗଲାଣି—କହି ପକାଇଲେ, "ସକାଳୁ ତ ବରାବର ଏଇଠି ବସିଥିଲା, ଟୋପାଏ ମାଲପା ଦେଲି, ଦେହରେ ମାରିଦେଇ ନଈକୁ ଗାଧୋଇ ଗଲା ।" ଯୋଡ଼ାଏ ତିନିଟା ପିଆଦା ଧାଇଁଲେ, କାଠଯୋଡ଼ୀ ସବୁ ଘାଟ ତଲସିଲେ, ଯେତେ ଲୋକ ପାଣିରେ ପଶି ଗାଧୋଉଥିଲେ ସମସ୍ତଙ୍କ ମୁହଁକୁ ଅନାଇଲେ, ବାବୁ ରାଘବ ମହାନ୍ତିଏ ନାହାନ୍ତି । ନାଜର ବାବୁ କଳାକାଠ ପଡ଼ିଗଲେଣି; ଦେହଗୋଟା ଝାଳରେ ବୁଡ଼ିଯାଉଛି, ବିଚାରୁଛନ୍ତି ପୋଲିସକୁ ଯାଇ ଖବର ଦେବେ । ତଡ଼େଦମ୍ ଯୋଡ଼ାଏ ହଜ୍‌ସ ଚପରାସି ଦୁଆରେ ପହଞ୍ଚିଲେଣି । ଘର ପାଟି କରି ଡାକ ପକାଇଛନ୍ତି—'ନାଜରବାବୁ ! ଜଲଦି ଆଓ, ଜଲଦି ଦରସେଁ ନିକଲ ଆଓ, ହଜୁରକା ହୁକୁମ, ଜରୁର ଆଓ ।' ଟଙ୍କା ଖୋଜା, ରାଘବ ବାବୁକୁ ତଲସି, ସବୁ ବନ୍ଦ । ନାଜର ବାବୁ ସବୁ ଛାଡ଼ି କଚେରି ଧାଇଁଛନ୍ତି—ଚପରାସି ଯୋଡ଼ାକ ଧାଇଁ ଧାଇଁ ପଛରୁ ଡାକ ଦେଉଛନ୍ତି—'ବାବୁ, ଜଲଦି—ଜଲଦି !'

ହରିକାଠରେ ବୋଦା ବେକ ଗଳାଇଲା ପରି ନାଜର ବାବୁ ସଲାମ କରି ମିସଲ ଆଗରେ ଛିଡ଼ା ହୋଇ ଥିବୁଛନ୍ତି ।

ସାହେବ ପଚାରିଲେ—କ୍ୟା ହେ ?

ଅତିକଷ୍ଟରେ ବାବୁ ବୋଇଲେ—ହଜୁର, ସରକାରୀ ପାଞ୍ଚ ହଜାର ଟଙ୍କା ମୋ ପାଖରେ ଥିଲା । ଗଲା କାଲି ରାତିରେ ମୋ ଘରୁ ଚୋରି ଯାଇଛି ।

ସାହେବ ଗର୍ଜନ କରି କହିଲେ କ୍ୟା, ସରକାରୀ ପାଞ୍ଚ ହଜାର ରୁପେୟା ଚୋରିସେ ହୁଆ ?

ସାହେବ ଆହୁରି ଦୁଇ ଥର ପଚାରିଲେ—ଉତ୍ତର ନାହିଁ । "ଚପରାସି ! ପୋଲିସ ସୁପରିଣ୍ଟେଣ୍ଡେଣ୍ଟ ସାହେବକୁ ସଲାମ ଦୋ ।" ଏତିକି କଥା କହି ସାହେବ ଖାସ କାମରାକୁ ଉଠିଗଲେ ।

ବେଳବୁଡ଼ିଯାଏ ଦୁଇ ସାହେବ ଖାସ କାମରାରେ — ଭିତରେ କଣ କଥାଭାଷା ହେଉଛି କିପରି ଜଣାଯିବ ? ଦୁଆରେ ଚପରାସି ଛିଡ଼ା, ଅମଲାମାନଙ୍କୁ ଭିତରକୁ ଯିବାକୁ ମନା । ଉପରଓଳି ତିନି ବାଜେ ପୋଲିସ ସୁପରିଣ୍ଟେଣ୍ଡେଣ୍ଟ ସାହେବ କୋର୍ଟ ଇନ୍‌ସ୍ପେକ୍ଟରକୁ ଡାକି ହୁକୁମ କଲେ, "ନାଜରକୁ ନଜରବନ୍ଦମେ ରଖୋ, କଚେରୀସେ ଯେସା ଯାନେ ନେହିଁ ପାଏ ।" ଏଡ଼େ ବଡ଼ କଚେରି - ହଜାରହାଁ ଲୋକରୁଣ୍ଡ, ସମସ୍ତେ ତୁନି—ଭୟଙ୍କର ତୋଫାନ ଉଠିବା ଆଗେ ଆକାଶଟା ନିସ୍ତବ୍ଧ ଥାଏ, ସେହିପରି । ଅମଲାମାନଙ୍କର କାମରେ ମନ ଲାଗୁ ନାହିଁ । ଆପଣା ଆପଣା ଜାଗାରେ ମୁଣ୍ଡ ପୋତି ବସି ତୁଚ୍ଛାଟାରେ କାଗଜ ଓଲଟପାଲଟ କରୁଛନ୍ତି । କଚେରି ଆଗ ବରଗଛ ମୂଳରେ ମୁକ୍ତାର-ମାନେ ରୁଣ୍ଡ, ଫୁସୁରଫାସର କଥା ଚାଲିଛି । ବଡ଼ ବଡ଼ ଡାଳିଆ ଡାଳିଆ ପାଗ ମୁଣ୍ଡେଇ ତିନି ଜଣ ଓକିଲ କଚେରି ବାରଣ୍ଡାରେ ଘେରି ଗମ୍ଭୀରଭାବରେ ଟହଲ ହେଉଛନ୍ତି । ଅଳକା ଫିସ୍‌ଟା ତ ବାକ୍ସରେ ପଡ଼ି-ଯାଇଛି. ଚିନ୍ତା କଣ ? ମକ୍‌କେଲଗୁଡ଼ାକ ମୁଣ୍ଡ ବାଡ଼େଇ ହେଉଛନ୍ତି—'ହାୟ ହାୟ ! କାଲି ତ ଓକିଲ ଟଙ୍କା ନ ଧରିଲେ କଚେରିକୁ ଆସିବ ନାହିଁ, କଣ କରିବା, ହାତରେ ଟଙ୍କା ନାହିଁ ।'

ବେଳ ରତିରତି, ସାହେବ ମିସଲରେ ଆସି ବସିଲେ । ଫୁଲସକେପ କାଗଜ ପୂରା ଗୋଟାକରେ ରାୟ ଲେଖି ହୁକୁମ କଲେ—"ନାଜର ନଟବର ଦାସକୁ ହାଜତକୁ ଲେ ଯାଓ ।" ଜଣେ ସବ୍‌ଇନ୍‌ସ୍ପେକ୍ଟର ଚାରି ଜଣ କନଷ୍ଟେବଲକୁ ଧରି ଛିଡ଼ା ହୋଇଥିଲେ । ସାହେବଙ୍କ ମୁଖରୁ ହୁକୁମ ବାହାରିବା ଆଉ ନାଜର ହାତରେ ହାତକଡ଼ି ପଡ଼ିବା ଏକସଙ୍ଗରେ ହୋଇଗଲା ! ନାଜରଙ୍କୁ ହାଜତକୁ ନେଇ ଯିବାବେଳେ ହଜାର ହଜାର ଆଖି ଚାହିଁଛି । ହାୟ ! ଏଡ଼େ ବଡ଼ ମର୍ଯ୍ୟାଦାବନ୍ତ ଲୋକ ସକାଶେ କି ଯୋଡ଼ାଏ ଆଖି ବି ଭିଜିଲା ନାହିଁ ? ସ୍ୱୀକାର କଲୁଁ, ନାଜର ଦୁଷ୍ଟ ଲୋକ, ପରର ଅନିଷ୍ଟକାରୀ, ହେଲେ ସେ କଣ ସମସ୍ତ ଲୋକର ଅନିଷ୍ଟ କରିଛନ୍ତି ? କଥା କଣ କି, ମନରେ କରନ୍ତୁ, ଗାରେ ଗୋଟାଏ ଚୋର ଧରା ପଡ଼ିଛି । ଗାଁଯାକ ଲୋକ ଧାଇଁ ଆସି କହୁଛନ୍ତି—ମାର ଶଳାକୁ । ସେ ତ ସମସ୍ତଙ୍କ ଘରୁ ଚୋରି କରି ନାହିଁ—ମାନେ, ବେଳ ପାଇଲେ ସମସ୍ତଙ୍କ ଘରୁ ଚୋରି କରିପାରେ । କେଉଁ ପିଆଦା କେତେ ଟଙ୍କା ଦାଖଲ କରିଅଛି, ସେମାନଙ୍କଠାରୁ ଜବାନବନ୍ଦୀ ନିଆଯାଇଥିଲା । ଖୋଦାବକ୍‌ସ ଜବାନବନ୍ଦୀ ଦେଇ ବାହାରକୁ ଅଇଲା, ହାତ ଟେକି ଉପରକୁ ଅନାଇ କହିଲା - "ଆଲ୍ଲା ହୋ ଅକବର ! ହାମ୍ ବୋଲ୍‌ଥା କୋରାନସରିଫ ଝୁଠା, ବଡ଼ା ଗୁନା ହୁଆ ।"

ଏଣେ ରାତି ପହରେ ବିତିଗଲାଣି, ନାଜରଙ୍କ ବସାରେ ସଞ୍ଜ ବଇଠା ଲାଗି ନାହିଁ । ମାଇକିନିଆ ଯୋଡ଼ାକ କାନ୍ଦ କାନ୍ଦ ହାଲିଆ ହୋଇ ପଡ଼ିଲେଣି ।

ପାଖରେ କେହି ନାହାଁନ୍ତି, କେବଳ ପରୋପକାରିଣୀ ଚମ୍ପକଳା ସେମାନଙ୍କୁ ସାନ୍ତ୍ୱନା ଦେଇ ବୁଝାଉଛନ୍ତି—'ଚିନ୍ତା କର ନା, ବାବୁ ଘରକୁ ନେଉଟି ଆସିବେ ।' ବଜାରରୁ କିଛି ଜଳଖିଆ ଆଣି ସେମାନଙ୍କୁ ଖୁଆଇ ଲୋଟାଏ ଲୋଟାଏ ପାଣି ପିଆଇଲା । ମଙ୍ଗଳା ଦେଈ କିଛି ସାସ୍ଥମ ହୋଇ ଚମ୍ପକଳାର ହାତ ଓଠ ଧରି କହିଲେ—"ମା ଚମ୍ପି ! ସାହେବଙ୍କ ଯୋଡ଼ାଏ ସିପେଇ ଆସି ଜୁଆଇଁ ବାବୁଙ୍କୁ ଧରି ନେଇଗଲେ, ରାଘୋକୁ ଖୋଜୁଛନ୍ତି । ମା ଚମ୍ପି ! ସାହେବଙ୍କ ଲୋକଙ୍କୁ ବୁଝାଇ କହିବୁ, ରାଘୋଟି ବଡ଼ ଭଲ ପିଲା, ହଳାଳ ପାଣିରେ ଗୋଡ଼ ଦିଏ ନାହିଁ, ସେ କିଛି ଜାଣେ ନାହିଁ, ଧନଯାକ ମୋ ପାଖରେ ଥିଲା; ତଳରେ ପକାଇଛି । ଉଁ—ଉଁ ଉଁ—ପିଲାଟା କେଉଁଠି ଦେଉଛି ? କିଛି ଖାଇ ନାହିଁ, ତାକୁ ଦିଟା ମୁଢ଼ି ଗୁଣ୍ଡି ଦେଇ ଆ, ମା ଚମ୍ପି ! ରାଘୋ ତୋ ଜୁଆଁ ଭାଇ—ତାକୁ ବଞ୍ଚା । ମୁଁ ଚେତକବେଳେ କହୁଥିଲି—ରାଘୋ ରେ ! ବନ୍ଧୁ ଓଳକୁ ଯିବା ନାହିଁ, ଶାଗ ପିତା ପାଣି ଯାହା ମିଳୁ, ଘରେ ପଡ଼ିଥିବା । ଅବୁଝା ପିଲାଟା ବୁଝିଲା ନାହିଁ, ମା ଚମ୍ପି ! ତୋ ସାନ ଭାଇକୁ ତୋତେ ସଁପିଦେଲି ।" ବୁଢ଼ୀ ଆସ୍ଥ କରି କୁନ୍ଥେଇବାରେ ଚମ୍ପକଳା ବେଦମ ହୋଇ ପଡ଼ିଲାଣି । ବହୁତ ସାନ୍ତ୍ୱନା ଦେଇ କହିଲା—"ମା ସାନ୍ତାଣି ! କିଛି ଚିନ୍ତା କର ନାହିଁ, ଭାଇ ସାନ୍ତଙ୍କର କିଛି ହେବ ନାହିଁ, ସେ କଣ କରିଛନ୍ତି କି ?"

ମଙ୍ଗଳା ଦେଈ—ସେଇ କଥା ସେଇ କଥା, ମା ଚମ୍ପି ! ତୋ ମୁହଁରେ ଅମୃତ ବର୍ଷୁ । ଅହିଅ ସୁଲକ୍ଷଣୀ ହୋଇଥା, ପାକଲା ବାଳରେ ସୁନ୍ଦର ନା ।

———

## —୭୦—

## ଖାନତଲାସି

ଖୁବ୍ ଭୋର—ବଜାରର ସବୁ ଦୋକାନ କବାଟ ଫିଟି ନାହିଁ । କେଉଁଠି ବା ଗୋଟାଏ ଦୋକାନୀ ଦୋକାନ ମେଲା ଝାଡ଼ଝୁଡ଼ ଦେଇ ପବନ ପାଣିଛିଞ୍ଚୁଛି । ଗୋଟାଏ ବେପାରୀ ଦୋକାନ ଆଗ ମେଲାଟା ଖରକ-ଦେଇ ଗୋଟାଏ ଖପରାରେ ଦୁଇଟା ଟିକିଆ ନିଆଁ କରି ଟୁଣା ଗୋକୁଳ ଜାଳିଦେଇଛି । ସେଥିରୁ ଧୂଆଁ ବାହାରି ଗୃହଆଡ଼ ମହକ ଯାଉଛି । ଗୋଟାଏ ବୁଢ଼ା ଠାକୁରନାମ ମୁହଁରେ ଗୁଣାଗୁଣି କରୁଛି, ଗୁଞ୍ଜିଣିଟାଏ ଧରି ନଳି ଦେଇ ଦୋକାନ ପିଣ୍ଡା ଝାଡ଼ିବାରେ ଲାଗିଛି । ଗୋଟାଏ ସାହେବ ଘୋଡ଼ା ଉପରେ—ତରବାରିଟାଏ ଅଣ୍ଟାରେ ବନ୍ଧା—ସେଇଟା ଏପାଖ ସେପାଖ ଦୋହଲି ଘୋଡ଼ା ପେଟରେ ବାଜି ଝମଝମ କରୁଛି । ସାହେବ ଆଗ ପଛ ଗୁଡ଼ାଏ ଲାଲପଗିଆ କନଷ୍ଟବଲ ଠେଙ୍ଗେଣି ଗୋଟାଏ ଗୋଟାଏ ଧରି ମଚ୍ମଚ୍କରି ଧାଇଁଛନ୍ତି । ସମସ୍ତଙ୍କ ପଛରେ ଶତାଏ ଶତାଏ ବାଉଁଶ ବାଡ଼, କାନ୍ଧରେ ମୁଣ୍ଡିରେ ଲାଲ କଳା ଧଳା ନାନା ରଙ୍ଗର ପାଗ ଗୁଡ଼ିଆ, ଅଣ୍ଟାରେ ଚଦର ଭିଡ଼ା, ଜଣ ପନ୍ଦର ଚୌକିଦାର । ସଡ଼କ ଦୁଇ ପାଖରେ କେତେଜଣ ଲୋକ ଠାଟଙ୍ଗା ହୋଇ ଅନାଇ ରହିଛନ୍ତି । ସାହେବଙ୍କ ଦଳ ଥାନାରୁ ବାହାରି ସଲଖେ ସଲଖେ ଯାଇ ନାଜର ନଟବର ଦାସଙ୍କ ଘର ବେଢ଼ିଗଲେ । ଏମାନଙ୍କ ପହଞ୍ଚିବା ଆଗୁଁ ଟିକିଏ ମାଝି-ଅନ୍ଧାରିଆ ଥାଉଁଥୁ ଥାନା ଦାରୋଗା କେତେଜଣ କନଷ୍ଟବଲ ଧରି ସେଠାରେ ହାଜର ଥିଲେ । ଭିତରକୁ ଖବର ଗଲା, 'ମାଇକିନିଆମାନେ ତୟାର୍ ହୋଇ ଯାଉନ୍ତୁ, ଘର ତଲାସି ହେବ ।' ଘର ଭିତରେ ଖବର ପାଇ ଖାଲି ଯୋଡ଼ାକ ଅଚେତ ହୋଇ ପଡ଼ିଲେଣି । ଚମ୍ପା ଧରାଧରି କରି ବସାଇଛି । ମାଇକିନିଆ ହେଲେ କଣ ହେଲା, ଚମ୍ପାର ଧୈର୍ଯ୍ୟ ଖୁବ । ଆସ୍ଥରେ ମର୍ଦ୍ଦ ଯୋଡ଼ାଏ ପାରିବେ ନାହିଁ । କହିଲା, "ସାହେବଘର ସିପେଇ ଗୁଡ଼ାଏ ଅଇଲେଣି—ଘରର ସବୁ ମାଲମତା ନେଇଯିବେ । ହାୟ ! ହାୟ ! ଆପଣଙ୍କର ଗହଣାଗୁଡ଼ାକ ସବୁ ନେଇଯିବେ ସିନା ! ଦେହରେ ଲଗାଇ ପକାନ୍ତୁ, ରହିଯିବ, ନୋହିଲେ ଗଲା ।" ଚମ୍ପାର ଘରେ ଥରେ ପୋଲିସ ଖାନତଲାସ କରିଥିଲା । ତା ଦେହରେ ଯେଉଁ

ଅଳଙ୍କାରଗୁଡ଼ାକ ଥିଲା, ସେଥିରେ ପୋଲିସ ହାତ ଲଗାଇ ନାହିଁ । ଦେହରେ ଗହଣା ଥିଲେ ପୋଲିସ ନିଏ ନାହିଁ ଏ କଥା ତାକୁ ଜଣା । ସାନ୍ତାଣୀ ତ ଆଁ କରି ଭକୁଆ ପରି ଅନାଇଛନ୍ତି, କିଛି ବୁଝିପାରୁନାହାନ୍ତି । ଚମ୍ପା ଦେଖିଲା, ଆଉ ବେଳ ନାହିଁ—ବାହାରୁ ଦାରୋଗା ଥରକୁଥର ଡାକ ଦେଉଛନ୍ତି—'ଚ୍ଛର୍ଲୋକେ ଉଫାଡ୍ର' । ବୁଦ୍ଧିମତୀ ଚମ୍ପା ଚଞ୍ଚଳ ସାନ୍ତାଣୀଙ୍କ ଅଣ୍ଟାଡୋର ରୁପା ଶିକୁଳିର କଞ୍ଚିକାଠି ଗୋଛା ଫିଟାଇ ନେଇ ହାତ ବାକ୍ସଟା ଫିଟାଇ ପକାଇଲା । ଏ କଣ ବିଶ୍ବାସଅବିଶ୍ବାସ ବୁଝିବାର ବେଳ ? ଆଉ ଚମ୍ପାକୁ ଉଚ୍ଛୁଣିକା ଅବିଶ୍ବାସ କରିବେ, ଜଗତରେ ଆଉବିଶ୍ବାସୀ ବନ୍ଧୁକିଏ ? କାଠଗର ପ୍ରତିମା ଦେହରେ ଡାକ ସାଜ ପିନ୍ଧାଇଲା ପରି ଚମ୍ପା ସାନ୍ତାଣୀଙ୍କ ଦେହରେ ଗହଣାଗୁଡ଼ାକ ପିନ୍ଧାଇ ଦେଉଛି । ଚଞ୍ଚଳ କେଉଁ ଗହଣାଟା କେଉଁଠାରେ ପିନ୍ଧାଉଛି, ଠିକ ଠିକଣା ନାହିଁ । କେଜାଣି ବଦେଟା ମୁଣ୍ଡ ଚଉଁରରେ ବାନ୍ଧି ପକାଇଲାଣି, ହାତ ମୁଦି ଗୋଡ଼ ଅଙ୍ଗୁଳିରେ, ଗୋଡ଼ ଝୁଣ୍ଟିଆ ହାତ ଆଙ୍ଗୁଳିରେ ପୂରାଇ ଦେଇଛି । ଦାରୋଗା ଆଉ ସମ୍ଭାଳି ପାରିଲେ ନାହିଁ, ଯୋଡ଼ାମିଶା ଗୋଇଠା କବାଟରେ ଧଡ଼ ଧଡ଼ ମାରୁଛନ୍ତି । ମାଇକିନିଆମାନେ ବାଡ଼ପଟକୁ ଆଡ଼େଇଗଲେ । ଦାରୋଗା ଘର ଭିତରକୁ ପଶିଯାଇ ମାଲ ସବୁ କୋରଖ ଆଉ ତାଲିକା କରିବାକୁ ଲଗିଲେ । ପୋଲିସ ସାହେବ ଏହିପରି ହୁକୁମ ଦେଇ ଚାଲିଗଲେ । କୋରଖି ମାଲ ଶଗଡ଼ରେ ଲଦନ କରି ଥାନାକୁ ଚଲାଣ ଦେବାକୁ ସଞ୍ଜ ବାଜିଗଲା । ମାଇକିନିଆଗୁଡ଼ାକ ବାଡ଼ରେ ଚଢ଼ିଛନ୍ତି, ପଚାରୁଛି କିଏ ? ତିନିଟାଯାକ ମୁହଁରେ ଟୋପାଏ ପାଣି ଲଗିବାକୁ ନାହିଁ । ଚମ୍ପାର ବି ସେହିପରି ଖାଡ଼ା ଉପାସ, ସାନ୍ତାଣୀ କିଛି ସାରନାହାନ୍ତି, ସେ କଣ ଖାଇ ବସିବ ? ଖାଲି ଆପଣା ଘରର କୋଲପ ଦେଖି ଆସିବା ଲାଗି ସେମାନଙ୍କ ନିକଟରୁ ଯାହା ଦୁଇ ତିନି ଥର ଦିନ ଯାକରେ ଉଠି ଯାଇଥିଲା, ତେତିକି, ନୋହିଲେ ସାନ୍ତାଣୀଙ୍କ ପରି ତାହାର ହାଲ । ଆଜି କଟକରେ ହରି ଗୋଲମାଲ, ହାକିମ ଘରେ ତ ରକ୍ଷା ପଡ଼ୁ ନାହିଁ, ତାହାର ନିଜ ଘର ଦେଖି ନ ଆସିଲେ ଆଉ କଣ ଗତି ରହିବ ?

ମାଲ ନୋକ ଚଲାଣ ଉତ୍ତାରେ ଟଙ୍କା ଖୋଜିବାର ତଦାରଖି ଆରମ୍ଭ ହେଲା । କୌଣସିରୂପେ ଖୋଜିବାର ଟଙ୍କାଟାର କନାସ୍ତ ମିଳୁ ନାହିଁ । ଏହିଟା ଅଶ୍ଚର୍ଯ୍ୟ ରକମର ଖୋଜିବା । ଦାରୋଗାଙ୍କ ବୁଦ୍ଧି ବି କୁଳାଉ ନାହିଁ । ସେ କହନ୍ତି, ଏପରି ଖୋଜିବା ସେ କେବେ ତଦାରଖ କରି ନାହାନ୍ତି, ଶୁଣା ବି ନାହିଁ । ଦାରୋଗା ପଚାରିଲେ—"ଆଚ୍ଛା, ଏ ଘରେ କେଉଁ କେଉଁ ଲୋକ ଥାନ୍ତି ?" ଏ ଥାଏ—ସେ ଥାଏ—ଆଉ ରାଘବାନନ୍ଦ ମହାନ୍ତି ଥାନ୍ତି ? କାହିଁ ସେ ରାଘବ ମହାନ୍ତି ? ସବୁ କଥା ରହିଲା, ଏବେ ଖାଲି ଖୋଜା ଲାଗିଛି, ରାଘବ ମହାନ୍ତିଙ୍କୁ । ରାତିରେ ଆସାମୀର ଠିକଣା ଲାଗିଲା ନାହିଁ । ପୋଲିସଗୁଡ଼ାକର ବି ଦିନଯାକ ଖାଡ଼ା ଉପାସ । ଖିଆପିଆ ଲାଗି ଆପଣା ଘରକୁ ଚାଲି ଗଲେଣି । ମାଇକିନିଆ ତିନିଟା ବାଡ଼ଆଡ଼ୁ ଘର ଭିତରକୁ ଆସିଲେ । ସବୁଆଡ଼େ ଅନ୍ଧାର, ଶୂନଶାନ । ହାୟ ! ହାୟ ! ପାରି ଶୋଇବାକୁ ଛିଣ୍ଡା ସପ ଖଣ୍ଡେ ବି ନାହିଁ । ମା ଝିଅ ଯୋଡ଼ାକ ଶୋକରେ ଖୋଲା ମାଟିଗଲାଣି । ଆଁ କରି ଭୂଇଁରେ ପଡ଼ିଗଲେ । ହେଲେ, ଚମ୍ପାର ଧୈର୍ଯ୍ୟ ଏତେ ବିପଦରେ ବି ଟଳିବାକୁ ନାହିଁ । ବଜାରକୁ ଧାଇଁଲା, କିଛି ମୁଢ଼ି ଉଖୁଡ଼ା କିଣି ଆଣି ଦୁଇ ଜଣଙ୍କୁ ଖୁଆଇଲା, ପାଣି ପିଉଛନ୍ତି କାହିଁରେ ? ଆଞ୍ଜୁଳା ଆଞ୍ଜୁଳା କରି ପାଣି ପିଇଲେ । ମଙ୍ଗଳା ଦେଈ ଚମ୍ପାକୁ ମୁଠାଏ ଭୁଜା ଖାଇବା ପାଇଁ କହିଲେ । ଚମ୍ପା—ସୁଁ—ସୁଁ କରି କାନ୍ଦିଲା ପରି ହୋଇ କହିଲା—"ମା ସାନ୍ତାଣି ! ତୁମମାନଙ୍କର ଏ ଦଶା ଦେଖି ମୋ ପେଟକୁ ଦାନା ଯିବ ? ମୁଁ ଏଇଠି ଛାତିରି ନ ମଲି କିଆଁ ?" ସାଙ୍ଗେ ସାଙ୍ଗେ ଆଖି ପୋଛି ପକାଇ କହିଲା, "ସାନ୍ତାଣି ! ଆଉ ଗୋଟାଏ କଥା ମୋ ମନରେ ପଡ଼ିଗଲା । ନିଆଁ ଖିଆ

ଚୋରଗୁଡ଼ାଙ୍କ ଜଞ୍ଜାଳତ ଦେଖୁଛନ୍ତି, ଆପଣଙ୍କ ଦେହରେ ଗହଣା ଦେଖିଲେ କଣ ବାକି ରଖିବେ ? ଏବେ ନାହାନ୍ତି କେହି ମିଶିପେ, ରାତି ଅନ୍ଧାରରେ ସେ ଚୋରଗୁଡ଼ାକ ଆସି ଆପଣଙ୍କ ଗଣ୍ଠି କାଟି କୋଇ ଗହଣାଗୁଡ଼ାକ ନେଇଯିବେ । କାଢ଼ି ଦିଅନ୍ତୁ, ଆଜ ରାତିରେ ଲୁଚାଇ ରଖିବା । ରାତି ପାହି ଖରା ପଡ଼ିଲେ ପୁଣି ଦେହରେ ନେବେ । ରାତିରେ ଚୋର ଆସି ଦେଖିବ କିଛି ନାହିଁ, ଅନାଇ ଦେଇ ଫେରିଯିବ; ମନରେ କରିବ, ପୁଲିସ ସବୁ ନେଇ ଯାଇଛି ।" ସାନ୍ତାଣୀ ତ ବଡ଼ ଆଁ ଟା କରି ଚପକଳା କଥା ଶୁଣୁଥିଲେ । ଭାରି ଡରରେ ଥୁନଆ ହୋଇଯାଇ ଚପାକୁ କୁଣ୍ଢାଇ ପକାଇଲେ । ଆଉ କଥା ନାହିଁ ବାର୍ତ୍ତା ନାହିଁ. ଚପା ଚଞ୍ଚଳ ସାନ୍ତାଣୀଙ୍କ ଦେହରୁ ଅଳଙ୍କାରଗୁଡ଼ାକ ବାହାର କରି ପକାଇଲା, ଖଣ୍ଡେ ଛିଣ୍ଡା କନାରେ ଗୁଡ଼େଇପୁଡ଼େଇ ସାନ୍ତାଣୀଙ୍କ ହାତକୁ ବଢ଼ାଇ ଦେଲା ।

ସାନ୍ତାଣୀ—ମୁଁ କେଉଁଠି ରଖିବି, ସିନ୍ଦୁକ ବାକସ ନାହିଁ, ତୁ ରଖିଦେ !

ଚପକଳା—ମୋ ବାପା ଲୋ ! ଏତେ ଗୁଡ଼ାକ ଅଳଙ୍କାର ଛୁଇଁବାକୁ ମୋ ହାତ ଯାଉ ନାହିଁ, ଦୁଃଖରେ ଛାତି ଫାଟି ଯାଉଛି--ଆପଣ ରଖନ୍ତୁ ।

ସାନ୍ତାଣୀ ଘର ଚାରିଆଡ଼କୁ ଅନାଇଲେ, ଗୋଟାଏ କଣରେ ଭଙ୍ଗା ଖୋଳେଇ କୁଣ୍ଡେଇ ଗୁଡ଼ାଏ ଜମା ହୋଇଥିଲା । ତା ଭିତରେ ପୋଟଲାଟା ଲୁଚାଇ ଦେଲେ । କହିଲେ, "ଚପା ! ମୋ ପାଖରେ ଶୋ— ମୋତେ ବଡ଼ ଡର ମାଡ଼ୁଛି ।"

ଚପକଳା—ମୁଁ ଆପଣଙ୍କୁ ଅନାଇ ଜଗି ବସିଛି, ଚୋର ତସ୍କର ଜଗିଛି, ଆପଣମାନେ ଶୁଅ । ଟିକକ ମଧ୍ୟରେ ମା ଝିଅ ଦୁଇ ଜଣଙ୍କ ଘୁଙ୍ଗୁଡ଼ି ଶୁଭିଲା ।

---

-୭୧-

## ଟଙ୍କା ବରାମଦ

ଚୋର ଚୋର ଦଶଜଣ କନଷ୍ଟବଲ ଦଶଜଣ ଚଉକିଆ ଧରି ଦାରୋଗା ନାଜରଙ୍କ ବସାରେ ପହଞ୍ଚି ଗଲେ । ଆଉ କିଛି କଥା ନାହିଁ, କାହିଁ ରାଘବ ମହାନ୍ତି । ଚାରିଆଡ଼କୁ କନଷ୍ଟବଲ ଚୌକିଆ ବିଞ୍ଚୁଡ଼ି-ଗଲେ । ବେଳ ୯ଟା ବେଳେ ଖବର ମିଳିଲା, ଆସାମୀ ତୁଳସୀପୁର ଗୋଟାଏ ଭଙ୍ଗା ଦଦରା ବଙ୍ଗଳାରେ ରହିଛି । ମଠ ମଠ କରି ପୋଲିସ ଧାଇଁଛନ୍ତି, ଗୋଇନ୍ଦା ଠିକ୍ ବଙ୍ଗଳା ଦୁଆରେ ଦେଖାଇ ଦେଲା । କବାଟ ସବୁ ଉଦୁଆଁ, ବିଛଣା ଚଉକିଆ ଲେପ ମଜଲିସର ଆଉ ଆଉ ସରଞ୍ଜାମ ଗୁଡ଼ାକ ଘର ମଧ୍ୟରେ ବୁଣି ପଡ଼ିଛି, ଘରେ ଆଉ କେହିନାହିଁ । ଗୋଟାଏ ଗୋରୁମଣା ଠୋକା ହତା ପାଖରେ ଗୋରୁ ଚରାଉ ଥିଲା, ଚାରିଟା ମଣିଷ ଥିଲେ, ପୋଲିସକୁ ଦୂରରୁ ଦେଖି ପଳାଇଗଲେ । କାଳିଆ ଭୂତ ପରି ଗୋଟାଏ ମଣିଷ ଲଙ୍ଗଳା ହୋଇ ପଡ଼ିଛି, ଘଡ଼ ଘଡ଼ କରି ଘୁଙ୍ଗୁଡ଼ି ମାରୁଛି । ଘର ଭିତରେ ଏଣେ ତେଣେ ମଦ ବୋତଲ, ପୋଡ଼ା ଗଞ୍ଜେଇ, ଗୁଡ଼ାଖୁ ଗୁଲି, ମାଉଁସ ପଲଉ ରନ୍ଧା ହାଣ୍ଡି ଗଡ଼ ଗଡ଼ୁଛି । ବୁଢ଼ିଆ ଦାରୋଗା ବାବୁ ଝଟ ବୁଝିଗଲେ କାଲି ରାତିରେ ଭାରି ଗୋଟାଏ ମୌଜ ହୋଇ ଯାଇଛି । ଲୋକଟାକୁ ତେର ଡକାଡକି ହେଲା, ଜବାବ ନାହିଁ । ସେକ୍‌କାଦର କନଷ୍ଟବଲ ଠେଙ୍ଗେଣିରେ ଦୁଇ ଚାରି ପାହାର ଚଢ଼ାଇ ଦେଲା—ନିରୁତ୍ତର । ଆଉ ଦୁଇଟା ବାଜ ଯିବାରୁ ଝନେଇ ଝନେଇ କହିଲା, "ଦୋସ୍ତ ! ଆଣ ମାଲ— ଗୀତ ଗା ଗୀତ ଲଗା ।" ଲୋକଟାର କଥା ଶୁଣି ସମସ୍ତେ ହସି ଉଠିଲେ । ଦାରୋଗା ହୁକୁମ କଲେ, ନେଇଚାଲ ପୋଖରୀ ଘାଟକୁ । ଚାରିଜଣ ପାଣ ଚୌକିଆ ଗୋଡ଼ ହାତ, ଜଣେ ମୁଣ୍ଡ ଧରି ମୁର୍ଦ୍ଦାର ପରି ଝୁଲାଇ ଝୁଲାଇ ପୋଖରୀ ଘାଟକୁ ନେଇଗଲେ । ଲୋକଟା

ଗଁ ଗଁ ଗର୍ଜୁଥାଏ । ଦେ ତାଳ ମୁଣ୍ଡରେ ପାଣି । ଦଶ କଳସୀ ଗଲା, ପନ୍ଦର କଳସୀ ବାଦ ଲୋକଟାର ଲୋମମୂଳ ଟାଙ୍କୁଶି ଉଠିଲା, ଠକ ଠକ କରି ଥରୁଥାଏ । ଲୋକଟା ଉଠି ବସି ପ୍ରତ୍ୟେକ ଜଣଙ୍କ ମୁହଁକୁ ଅନାଇ ବଲବଲ କରି ଦେଖୁଥାଏ, କିଛି କଥା ବୁଝି ପାରୁନାହିଁ । ଏ କଣ ହେଲା ? ଆହୁରି ଢେର ଥର ସବୁ ଆଡ଼କୁ ଅନାଇଲା । ଜଣାଯାଏ, ଦୋସ୍ତ ଆଉ ଅଉ ସଙ୍ଗୀମାନଙ୍କୁ ଖୋଜୁଛି । ଚାରିଆଡ଼େ ଲାଲ ପଗଡ଼ିଆ ରୂପ ଦେଖି ଏବେ ମନରେ ବଡ ଡରଟାଏ ପଶି ଗଲାଣି । କେଜାଣି ଅଚେତ ହୋଇ ପଡ଼ିଯିବ ପରା !

ଦାରୋଗା ପଚାରିଲେ—ଆରେ ! ତୋ ନାମ କଣ ?

କିଛି ଉତ୍ତର ନାହିଁ ! ତିନି ଚାରିଥର ପଚାରିଲେ, ସେହିପରି ନିରୁତ୍ତର ।

ଦାରୋଗା ଆରେ ! ତୁ ଯେ, ନାଜର ବସାରୁ ଟଙ୍କା ଚୋରି କରି ଆଣିଲୁ, କଣ କଲୁ ?

ଲୋକଟା ବକବକ କରି ଦାରୋଗାଙ୍କ ଆଡ଼କୁ ଅନାଇ ରହିଛି, ପାଟିରେ କଥା ନାହିଁ ।

ଭୀମ ସିଂହ କନଷ୍ଟବଲ ଦାରୋଗାଙ୍କୁ ଚାହିଁ କହିଲା, "ହଜୁର ଆପଣ ଟିକିଏ ବାରଣ୍ଡା ଆଡ଼କୁ ଯାଉନ୍ତୁ' ସେ କଥା କହିବ । ଆପଣଙ୍କୁ ଟିକିଏ ସରମ କରୁଛି ।" ଦାରୋଗା ବାବୁ ଟିକିଏ ମୁରୁକି ହସି ଦେଇ ଆଉ ଆଡ଼କୁ ମନ ଦେଲା ପରି ବାରଣ୍ଡା ପଟକୁ ଚାଲିଗଲେ । ଭୀମ ସିଂହ ତରଛି ମରଛି କହିଲା, "ବେ ଶଳା ! ତୋ ନାମ କଣ ?" ନିରୁତ୍ତର । ଦୁମ କରି ପିଠିରେ ଗୋଟାଏ ଠେଙ୍ଗେଣି ବସିଲା । ଭୀମସିଂହ "ଆବେ ତୋ ନାମ କହିବୁ କି ନାହିଁ ?" ଲୋକଟା ସେହିପରି ବକବକ କରି ଅନାଇଛି । ଲାଗ ଲାଗ ଦୁମ୍ ଦୁମ୍ ତିନି ଠେଙ୍ଗେଣି । କେତେବେଳେ ନିହାତି ଡରି ମରି ଜବାବ ଦେଲା 'ରାଘବ ମହାନ୍ତି ।' ଭୀମସିଂହ ଦାରୋଗା ବାବୁଙ୍କୁ ଡାକି ଦେବାରୁ ପାଖକୁ ଚାଲି ଆସିଲେ । ବହୁତ ପଚରା-ପଚରିରେ ଏଣୁ ତେଣୁ ଆସାମୀ ଗୁଡ଼ାଏ କଥା କହିଲା ।

ଲୋକଟା ଡରରେ ଏତେ ଦୂର ଚାନିଆ ହୋଇଗଲାଣି ଯେ, କଥାର ଠିକ୍ ଉତ୍ତର ଦେଇ ପାରୁନାହିଁ । କେତେ ପ୍ରଶ୍ନ ବୁଝି ପାରୁ ନାହିଁ, କେଉଁଟା ବା ବୁଝି ଠିକ୍ ଉତ୍ତର ଦେଇ ପାରୁନାହିଁ । କେତେବେଳେ ବା ଏଣୁ ତେଣୁ ଗୁଡ଼ାଏ ବକୁଛି, ସେଥିର ଅର୍ଥ କିଛି ନାହିଁ । ଭୀମ ସିଂହ ଠେଙ୍ଗେଣି ଧରି ପିଠିଆଡ଼େ ବସିଥାଏ । ଅଦା ଭଳିଆ ପଦାର୍ଥକୁ ଛେଚି ରସ କାଢ଼ିଲା ପରି ଲୋକଟା ମୁହଁରୁ କଥା ବାହାର କରା ଯାଉଥାଏ । ସେ ଯେତେ କଥା କହିଲା, ଦାରୋଗା ବାବୁ ସେଥିରୁ ସାର ସାର ବାଛି ତାହାର ଜବାନବନ୍ଦୀ ଏହିପରି ଲେଖିଲେ ।

'ମୋ ନାମ ରାଘବ ମହାନ୍ତି । ମୁଁ ନାଜର ବାବୁର ଶଳା । ତାଙ୍କର ବସାରେ ଥାଏଁ । ଦୋସ୍ତ ପ୍ରଭୁଦୟାଲ ଭଗତ ଆଉ ଚମ୍ପା ଏହି ଦୁଇ ଜଣ କହିବାରୁ ମୁଁ ନାଜର ବସାରୁ ଟଙ୍କା ଚୋରାଇ ଆଣିଛି । ସିନ୍ଦୁକ ମୁହଁରୁ ମହଣରେ ଛାପ ଆଣି ଦେଲି । ଦୋସ୍ତ କଞ୍ଚିକାଠି ବନାଇ ଆଣି ଦେଲେ, ସେହି କାଠିରେ ସିନ୍ଦୁକ ଫିଟାଇଲି । ତିନି ଥଳି ଟଙ୍କାରେ ବଙ୍ଗଳା କଣାଗଲା । ତିନି ଅଞ୍ଜୁଳା ଟଙ୍କା ନେଲା ଚମ୍ପା, କେତେଗୁଡ଼ିଏ ଟଙ୍କାର ଜିନିସ କଣା ହୋଇ ଆସିଲା, ବାକି ଟଙ୍କା ମୋ ବାଛଣା ତଳେ ଅଛି । ଇତ୍ୟାଦି ।'

ଆସାମୀର ବାଛଣା ଖୋଳିବାରେ ତାହା ତଳୁ ଟ ୬୨୫/୬ ବାହାରିଲା । ପୁରୁଣା ଦୁଇଅଣିଆ ଷ୍ଟାମ୍ପ କାଗଜରେ ଲେଖା ଖଣ୍ଡିଏ କାଗଜ ମଧ୍ୟ ମିଳିଲା । ଲେଖାର ଅର୍ଥ କିଛି ବୁଝାଗଲା ନାହିଁ । ସବାଲରେ ଆସାମୀ ଜବାବ ଦେଲା, ମୁଁ ବଙ୍ଗଳା କିଣିଛି, ସେଇ କଥା ଏଥିରେ ଲେଖା ଅଛି । ଦାରୋଗା ହସି ହସି କହିଲେ—'ଓହୋ ! ଏଇଟା କବାଲା ପରା, ମୁଁ ବୁଝି

ପାରି ନ ଥିଲା । ଦାରୋଗା କଥାବାର୍ତ୍ତାରୁ ବୁଝିଲେଣି, ଏ ଲୋକଟା ଘୋର ମୂର୍ଖ ।

ଚଷା ଘର ଖାନତଲସି ହେଲା । ତା ଘର ଭିତରୁ କିଛି ମାଲ ବରାମଦ ହେଲା ନାହିଁ । ଘର ପଛ ପାଉଁଶ-ଗଦାରୁ ପାଞ୍ଚଶ ଟଙ୍କା ଆଉ କନାରେ ଗୁଡ଼ାଇ ହୋଇ-ଥିବା ଗୋଟାଏ ଅଳଙ୍କାର ପୁଟୁଳା ବାହାରିଲା । ଦାରୋଗାଙ୍କ ସବାଲରେ ଚଷା ଜବାବ ଦେଲା, ସେ ନିର୍ଦୋଷ, ଟଙ୍କା ଆଉ ଅଳଙ୍କାର କଥା କିଛି ଜାଣେ ନାହିଁ । କେହି ଦୁଷମନ୍ ଟଙ୍କା ପୋତି ପକାଇ ଯାଇଛି । ଏ ଅଳଙ୍କାରଗୁଡ଼ିକ କାହାର ସନାକ୍ତ କରାଇବାପାଇଁ ଦାରୋଗା ନାଜର ଭାର୍ଯ୍ୟାଙ୍କ ନିକଟକୁ ଦୁଇ ଜଣ ଭଦ୍ର-ସ୍ତ୍ରୀଲୋକ ହାତରେ ପଠାଇ ଦେଲେ ।

ଗଲା କାଲି ରାତିରେ ତିନୋଟି ସ୍ତ୍ରୀ ନାଜରଙ୍କ ବସାରେ ଏକସାଙ୍ଗରେ ଶୋଇଥିଲେ । ଭୋର ହେଲା, ମା ଝିଅ ଦୁଇଜଣ ଉଠିଲେ । ଚମ୍ପକଳା କାହିଁ ? ବାଡ଼ ପଟକୁ ଯାଇଥିବ, ଅବା ଘରକୁ ଯାଇଥିବ, ଉଚ୍ଛୁଣି ଆସିବ । ଏଇ ଆଇଲା ପରି, ଠିକଏ ଖୁଡ଼କରି ଶବ୍ଦ ହେଲକ୍ଷଣି ଏଇ ଚମ୍ପକଳା ଆଇଲା, ଦୁଇଟା ସ୍ତ୍ରୀ କଣ୍ଠାମପରି ଗୃହିଁ ବସିଛନ୍ତି । ଦିନ ବାରଟା ବେଳେ ଦୁଇଜଣ ସ୍ତ୍ରୀ ନାଜର ଭାର୍ଯ୍ୟାଙ୍କ ନିକଟରେ ଉପସ୍ଥିତ ହୋଇ ଅଳଙ୍କାର ପୁଟୁଳା ଦେଖାଇଲେ । ପଚାରିଲେ, "ଏ କାହାର ଅଳଙ୍କାର ?" ବଣାଖାଦେଈ ଅଳଙ୍କାର ପୁଟୁଳା ଦେଖି ଗତ ରାତିରେ ଯେଉଁଠାରେ ଆପଣା-ଅଳଙ୍କାର ଲୁଚାଇ ରଖିଥିଲେ, ଦେଖିବାପାଇଁ ଧାଇଁ ଗଲେ, କିଛି ନାହିଁ ! ମା ଝିଅ ଦୁଇଜଣ ଡାକ ପକାଇ ଝାମ ପଡ଼ିଗଲେ ।

———

## -୭୨-

## ଡେପୁଟୀରଙ୍କ ସଙ୍ଗୁଲା

ଦିନଆଜ ଗଲା ରାତି ଦଣ୍ଡେ ହୋଇଗଲାଣି, ସମସ୍ତଙ୍କ ଘରେ ଆଲୁଅ । ନାଜର ବାବୁଙ୍କ ଘରଟା ଘୋର ଅନ୍ଧାର । ସଞ୍ଜ ଦୀପ ଜାଳୁଛି କିଏ ? ଦୁଇଟା ମାଇକିନିଆ ଅଚେତ ହୋଇ ପଡ଼ିଛନ୍ତି, ତୃତୀୟ ପ୍ରାଣୀ ପାଖରେ ନାହିଁ । ଗୋଟିଏ ସ୍ତ୍ରୀ ପାଚିଆଟିରେ ଜଳଖିଆ, ପାନ, ଦୁଇଖଣ୍ଡ ଲୁଗା ଧରିଛି, ଆଉ ଜଣେ ଭଣ୍ଡାରୀ ବିଛଣାଗୁଡ଼ାଏ କାଖରେ ଯାକିଛି, ନାଜରବାବୁଙ୍କ ବସାରେ ପହଞ୍ଚିଗଲେ । ସବୁ ଦୁଆର ଉଦୁଆଁ, ଏକାବେଳକେ ମାଟିରେ ଅଧମଲା ପରି ପଡ଼ିଥିବା ଦୁଇଟି ସ୍ତ୍ରୀଙ୍କ ପାଖରେ ଉପସ୍ଥିତ । ହାତରେ ଲଣ୍ଠନ ଥିଲା । ସ୍ତ୍ରୀଟି ବୁଦ୍ଧିମତୀ, କାହାରକୁ କିଛି କଥା ନ କହି ସେଇ ମାଇକିନିଆ ଦୁହିଁଙ୍କ ହାତଧରି ଉଠାଇ ବସାଇଲା । ଗୋଡ଼ହାତ ମୁହଁ ଧୋଇ ଦେଲା । ବାରିକ କୂଅରୁ ପାଣି କାଢ଼ି ଦେଉ ଥାଏ । ଲୁଗା ଦୁଇଖଣ୍ଡ ପାଲଟାଇ ଦେଲେ । ତହିଁ ଉତ୍ତାରେ ବଳାଇ ବଳାଇ ଜଳଖିଆ ଗୁଡ଼ିକ ଖୁଆଇ ଦୁଇ ଟୁକୁଣା ପାଣି ପିଆଇଲେ, ଖଣ୍ଡେ ଖଣ୍ଡେ ବିଡ଼ିଆ ବଢ଼ାଇଦେଲେ । ମା ଝିଅ କଳରେ ଯାକ ବିଛଣାରେ ଲଠକରି ଶୋଇ ପଡ଼ିଲେ । ଭଣ୍ଡାରୀ ଆଗରୁ ବିଛଣା ପାରି ରଖିଥିଲା । ତେତେବେଳେ ଯାଇ ମଙ୍ଗଳାଦେଈଙ୍କ ପାଟି ଫିଟିଲା— ପଚାରିଲେ, "ତୁ ମା କିଏ ?" ଆଗନ୍ତୁକା ସ୍ତ୍ରୀଟି କହିଲା, "ଆମ ଦୁଇ ଜଣଙ୍କୁ ଡେପୁଟୀର ବାବୁ ଆଉ ଠିକାଇତ ବାବୁ ପଠାଇଛନ୍ତି, ଡର ନାହିଁ, କିଛି ଚିନ୍ତା କର ନା, ଆମେ ଦୁହେଁ ବରାବର ତୁମ୍ଭମାନଙ୍କ ପାଖେ ପାଖେ ଅଛୁଁ, ଶୋଇପଡ଼ । ଅମେ ପାଖରେ ବସିଥିବୁଁ, ଡର ନାହିଁ, ଦୁଃଖ କର ନା, ଶୋଇପଡ଼ ।" ମଙ୍ଗଳା ଦେଈ ପଚାରିଲେ—"ରାଘୋ କାହିଁ ? ଆଜ କଣ ଖାଇଲା ?" ଉତ୍ତର, "ଭଲଅଛନ୍ତି, ଆଉ କିଛି ପଚାର ନା ଶୋଇପଡ଼ ।"

ବୋଇଲା—ଢୋଲ ବାଇଦ କୋଶେ, ଢୁଣ୍ଡି ବାଇଦ ସହସ୍ରେ କୋଶ । କଥାଟା ରୁକୁଣାଦେଈପୁରରେ ଠୁଳ କରି ପହଞ୍ଚିଗଲା । ଘର ବୋଧ୍—ଯା ତା ଘରେ ନୁହେ, କରଣ ଘର ମାମଲା, ମାନ ମହତ୍ତ୍ୱକୁ ଜଗିବା

ଲୋଡ଼ା । ବାନାବର ବାବୁ ଧାଇଁ ଆସି ଶଗଡ଼ ଖଣ୍ଡକରେ ବସାଇ ସାନ ବୋହୂକୁ ଘରକୁ ଘେନିଗଲେ । ମା ଝିଅ କୁଣ୍ଢା କୁଣ୍ଢି ହୋଇ କନ୍ଦାକଟା କଲେ । ବାନାବର ବାବୁ ବୁଢ଼ୀକୁ ସାଙ୍ଗରେ ନେଲେ ନାହିଁ । କଟକରେ ଛାଡ଼ିଦେଇ ଚାଲିଗଲେ । ଶଗଡ଼ ଭିତରୁ ବଣାଖା ଦେଈଙ୍କ କାନ୍ଦଣା ଦୁଇ କୋଶଯାଏ ଶୁଭୁଥାଏ । ଶୁଣୁଛ କିଏ ?

———

-୨୩-

## ପୋଲିସ ରିପୋର୍ଟ

କଟକ ଥାନାର ଦାରୋଗା 'ଏ' ଫାରମ କାଟି ଏହି ମାମଲା ସମ୍ବନ୍ଧରେ ଶ୍ରୀଯୁକ୍ତ ମେଜେଷ୍ଟ୍ରର ସାହେବଙ୍କ ନିକଟକୁ ଇଂରେଜୀରେ ଯେଉଁ ରିପୋର୍ଟ ପଠାଇଥିଲେ, ସେଥିର ସାରାଂଶ ଓଡ଼ିଆ ଭାଷାରେ ଏହିପରି—

ଧର୍ମାବତାର !

ହଜୁରଙ୍କ ହୁକୁମ ଅନୁସାରେ ନାଜର ନଟବର ଦାସ ଘର ମାଲ କ୍ରୋକ ଏବଂ ଟଙ୍କା ଚୋରି ମାମଲା ତଦନ୍ତ କରି କ୍ରୋକ ମାଲର ଏକ ପ୍ରସ୍ତ ନକଲ ରିପୋର୍ଟ ସହିତ ପଠାଇଲି ।

ଟଙ୍କା ଚୋରି ମାମଲା ହାଲ ଏହିକି, ଖୋଦା ବକ୍‌ସ, ରାମରାମ ସିଂହ, ଭୀମ ସିଂହ ନାଜରଖାନାର ପିଆଦାମାନଙ୍କ ଜମାନବନ୍ଦିରୁ ସାଫ ସାବୁତ, ସେମାନେ ମଫସଲରୁ ରୋଡ଼ସେସ ଓଗେରେ ବାବଦ ଟ ୪୭୨୯୫ ଅସୁଲ କରି ଆଣିଥିଲେ । କଚେରି ବନ୍ଦ ଥିବା ଯୋଗୁଁ ନାଜର ଜିମାରେ ସେ ଟଙ୍କା ସବୁ ରଖା ଯାଇଥିଲା । ଚଳିତ ମଇ ମାସ ୨୨ ତାରିଖ ରୋଜ ଶନିବାର ରାତ୍ରରେ ଟଙ୍କା ଚୋରି ଯାଇଥିବାର ଅନୁମାନ କରାଯାଏ । ନଂ ୧ ଆସାମୀ ରାଘବ ମହାନ୍ତି, ନଂ ୨ ଆସାମୀ ପ୍ରଭୁଦୟାଲ ଭଗତ, ନଂ ୩ ଆସାମୀ ଚମ୍ପକଳା । ଏହି ତିନିଜଣଙ୍କ ଯୋଗସାଜସରେ ଟଙ୍କା ଚୋରି ହୋଇଥିବାର ଜଣାଯାଏ । ନଂ ୧ ଆସାମୀ ରାଘବ ମହାନ୍ତି ନାଜର ମଜକୁରର ଶଳା, ଗୋଟାଏ ନିହାତ ବେକୁବ, ମନ୍ଦ ଲୋକ ଅଟେ । ନଂ ୨ ଆସାମୀ ଗୋଟାଏ ଜାହେର ବଦ୍‌ମାସ୍ । ଏଥିପୂର୍ବେ ପୋଲିସ ପ୍ରତାରଣା କରିଥିବା ଅପରାଧରେ ଉକ୍ତ ଆସାମୀ ଦୁଇ ଦଫା ଚଲଣ ଦେଇଥିଲେ, ପ୍ରମାଣ ଅଭାବରୁ ଖଲାସ ପାଇଅଛି । ନଂ ୩ ଆସାମୀ ଗୋଟାଏ ଦୁଶ୍ଚରିତା, ବଜାରର ସାମାନ୍ୟା ସ୍ତ୍ରୀ ଅଟେ ଏବଂ ନାଜର ନଟବର ଦାସର ଅନୁଗ୍ରହପାତ୍ରୀ । ଆଉ ନଂ ୨ ଆସାମୀ ପ୍ରଭୁଦୟାଲର ମଧ୍ୟ ପ୍ରିୟପକ୍ଷୀ ଥିଲି । ମାତ୍ର ନାଜରଙ୍କୁ ଏ ବିଷୟ ଅଗୋଚର । ବୁଦ୍ଧିମନ୍ତୀ ଚମ୍ପକଳା ପ୍ରଭୁଦୟାଲ ଭଗତ ତାହାର ଧର୍ମଭାଇ । ଏହିପରି ଚରିତ୍ର ଦେଇ ତାହାକୁ ଭୁଲାଇ ରଖିଥିଲା । ମଧ୍ୟ ଚମ୍ପକଳା ଦାସୀ ଭାବରେ ନାଜର ବସାକୁ ଟହଲୁଥିବାରୁ ବସାର ସମସ୍ତ ସନ୍ଧାନ ଅନ୍ୟ ଆସାମୀମାନଙ୍କୁ ଦେଇଥିଲା ।

ଚୋରିର ହାଲ ଏହିପରି ପ୍ରକାଶ ଯେ – ନଂ ୨ ଓ ନଂ ୩ ଆସାମୀମାନଙ୍କ ପରାମର୍ଶ ଅନୁସାରେ ନଂ ୧ ଆସାମୀ ନାଜର ଘର ମଧ୍ୟରେ ଥିବା ସମସ୍ତ ସିନ୍ଦୁକର ଚାବି ମୁହଁ ମହଣରେ ଛାପି ଆଣି ଦେବାରୁ ନଂ ୨ ଆସାମୀ ଚାବିକାଠି ବନାଇ ଆଣିଦେଲା – ନଂ ୧ ଆସାମୀ ରାଘବ ମହାନ୍ତି ଅନ୍ୟ ଦୁଇଜଣ ଆସାମୀଙ୍କ ସହାୟତାରେ ନାଜରର ସିନ୍ଦୁକ ଫିଟାଇ ଟଙ୍କା ଚୋରି କରିଥିବାର ସାଫସାବୁତ ।

ଅତ୍ର କଟକ ସହରନିବାସୀ ମହାଜନ ଶିଉଶରଣ ଭଗତର ତୁଳସୀପୁର ମୁକାମରେ ଗୋଟାଏ ପୁରୁଣା ବଙ୍ଗଳା ଅଛି । ସେହି ବଙ୍ଗଳାଟା ନଂ ୧ ଆସାମୀଙ୍କୁ କିଣାଇ ଦେବାକୁ କହି ଚୋରି ଟଙ୍କା ମଧ୍ୟରୁ ୩୦୦୦

ଟଙ୍କା ନଂ ୨ ଆସାମୀ ଜୁଆଚ୍ଚୋରି କରି ନେଇଅଛି । ଖଣ୍ଡେ ଦୁଇଅଣିଆ ଷ୍ଟାମ୍ପ କାଗଜରେ ଅମଙ୍ଗତ କେତେଗୁଡ଼ାଏ ବାଜେ କଥା ଲେଖାଇ କବାଲା ବୋଲି ନଂ ୧ ଆସାମୀକୁ ଦେଇଥିଲା । ନଂ ୧ ଆସାମୀ ନିତାନ୍ତ ମୂର୍ଖ ବେକୁବ ଥିବାରୁ କିଛି ବୁଝିପାରି ନାହିଁ । ସେହି କବାଲା ଅର୍ଥାତ୍ ମିଥ୍ୟା ଜୁଆଚ୍ଚୋରି କାଗଜ ଖଣ୍ଡ ନଂ ୧ ଆସାମୀ ବନ୍ଧଣା ଠାରୁ ବରାମଦ ହୋଇଥିବାରୁ ହଜୁରଙ୍କ ମାଇନା ସକାଶେ ପଠାଇଲି । ଏହି ବଙ୍ଗଳା ମଧ୍ୟରେ ଆସାମୀ ରାଘବ ମହାନ୍ତି ମଢ଼ୁଆଲି ଅବସ୍ଥାରେ ପଡ଼ିଥିବା ହାଲତରେ ଗ୍ରେପ୍ତାର ହୋଇଅଛି । ନଂ ୩ ଆସାମୀ ଚୋରି ଟଙ୍କାରୁ ଟ ୫୦୦୯ ଭାଗସ୍ୱରୂପ ପାଇଥିଲା । ସେହି ଟଙ୍କା ଏବଂ ନାଜରର ଅନୁପସ୍ଥିତ ସମୟରେ ତାହା ସ୍ତ୍ରୀଠାରୁ କେତେକ ଅଳଙ୍କାର ଚୋରି କରି ନେଇ ଥିଲା । ଏ ସମସ୍ତ ଦ୍ରବ୍ୟ ତାହା ଘର ପଛ ପାଉଁଶ-ଗଦାରୁ ବରାମଦ ହୋଇଥିବାରୁ ସ୍ୱତନ୍ତ୍ର ତାଲିକା ମାଫିକେ ହଜୁରରେ ଦାଖଲ କଲି ।

ଏପରି ନଗଦ ଟ ୩୭୨୫।୬ ନଂ ୧ ଆସାମୀ ରାଘବ ମହାନ୍ତି ବନ୍ଧଣା ତଳେ ପଡ଼ିଥିଲା । ଅବଶିଷ୍ଟ ଟଙ୍କାରେ ଆସାମୀ ଦୁଇ ଜଣ ଏବଂ ଆଉ କେତେଜଣ ବଦ୍‌ମାସ୍ ଲୋକ ନାନା ପ୍ରକାର ମାଦକ ଏବଂ ଖାଦ୍ୟ ଦ୍ରବ୍ୟ କିଣି ଆମୋଦ ପ୍ରମୋଦ କରିଥିବାର ଜଣାଯାଏ । ନଂ ୧ ରାଘବ ମହାନ୍ତି ନଂ ୩ ଚମ୍ପକଲା ଆସାମୀମାନଙ୍କୁ ଚାଲାଣ ଦେଲି । ନଂ ୨ ଫେରାରି ଆସାମୀ ପ୍ରଭୁଦୟାଲ ଭଗତକୁ ଗ୍ରେପ୍ତାର କରିବା ସକାଶେ ହୁଲିଆ ଜାରି ପ୍ରାର୍ଥନା କରେଁ ।

| | |
|---|---|
| ୪ ତାରିଖ ମାହେ ଜୁନ, ସନ ୧୮୬୯ ମସିହା । | ମାଳମଣି ବଳବନ୍ତରା ଛ,ଇ, ସଦର ଥାନା, କଟକ |

—————

-୨୪-

## ପ୍ରାୟଶ୍ଚିତ୍ତ ଆରମ୍ଭ

ସାଧାରଣରେ ଦୃଷ୍କୃତକାରୀ ଲୋକ ନିଜକୃତ ପାପର ପ୍ରତିଫଳ ଭୋଗ ସମୟରେ ଆପଣା ଭାଗ୍ୟକୁ ନିନ୍ଦା କରିଥାଏ । ମନରେ କରେ, ନିର୍ଦ୍ଦୟ ବିଧାତା ତାହା ପ୍ରତି ବିମୁଖ । ହୃଦୟରେ ଅନୁତାପ ନାହିଁ, କେବଳ ଉଦ୍ଧାର ପାଇବାର ଚେଷ୍ଟା । ଉପସ୍ଥିତ ବିପଦରୁ ମୁକ୍ତ ହୋଇବା ନିମନ୍ତେ ଆତୁରି ମଧ୍ୟ କିଛି ପାପକାର୍ଯ୍ୟ ଅନୁଷ୍ଠାନ କରିବାର ଆବଶ୍ୟକ ହେଲେ ତାହା କରିବାକୁ ସେ କୁଣ୍ଠିତ ନୁହେ । କଦାଚିତ୍ ଉପାସ୍ୟ ଦେବତାଠାରେ ମୁକ୍ତିପ୍ରାର୍ଥୀ ହୋଇ ଥାଏ—କ୍ଷମାପ୍ରାର୍ଥୀ ନୁହେ । ଅଜ୍ଞାନ ପଶୁବତ୍ ଦୁରାଗ୍ରସ୍ତ ଲୋକ ଏହି ଶ୍ରେଣୀଭୁକ୍ତ । ବିଦ୍ୟାବାନ୍, ସାଧୁସମାଜରେ ବର୍ଦ୍ଧିତ, ସ୍ୱଭାବ ବା ମନ୍ଦସଂସର୍ଗ ହେତୁ ବିବେକ ଅବଜ୍ଞାକାରୀ, ସୁଖ ବିଳାସୀ ଦାମ୍ଭିକ ଲୋକ ନିଜକୃତ ପାପର ଦଣ୍ଡ ଉପସ୍ଥିତ ସମୟରେ ଅନୁତାପାନଳରେ ଦଗ୍ଧ ହେଉ-ଥାଏ, ଈଶ୍ୱରଙ୍କ ମହା ମହିମ ପବିତ୍ରମୟ ନାମ ସ୍ମରଣ କରିବାକୁ ତାହା ମନରେ ଆତଙ୍କ ଜାତ ହୁଏ । ପ୍ରତିକାରର ଅନ୍ୟ କୌଣସି ଉପାୟ ନାହିଁ । ଅତ୍ୟନ୍ତ ଭୟ ଏବଂ ଦୃଢ଼ ଭକ୍ତି ସହିତ ପ୍ରଭୁଙ୍କ ପଦରେ ଅବଶେଷରେ ଆତ୍ମସମର୍ପଣ କରେ ।

କଟକ ଜେଲଖାନା ମଧ୍ୟରେ ଗୋଟାଏ ହାଜତ ଘର, କୋଠାଘରଟା ନିହାତି ବଡ଼ ବା ସାନ ନୁହେ, ମଧ୍ୟଭଳି । କାନ୍ଥ ଉପରେ କଡ଼ କାଠର ହାତେ ଅନ୍ଦାଜ ତଳକୁ ବୃତ୍ତପଟରେ ଆଠଗୋଟା ଗୋଲାକାର କଣା । ( ସାଧୁ ଭାଷାରେ ଯାହାକୁ ଗବାକ୍ଷ ବୋଲଯାଏ) । ଏହି କଣା ବାଟେ ତା ମାଫିକେ ଆଲୁଅ ଓ ପବନ ଘର ମଧ୍ୟକୁ ଆସିଥାଏ । ଗୋଟାଏ ବଡ଼ ଦ୍ୱାର, ଜାଉଁଳି କବାଟ ଲଗା । କବାଟ କାଠ ପଟାଭଡ଼ା

ଲୁହେ, ମୋଟା ମୋଟା ଲୁହା ଗୁଲଟିନ ଲୁହା ବଡା ମଧ୍ୟରେ ଗଳାଯାଇ ପ୍ରସ୍ତୁତ । ମୋଟା ଲୁହା ଶିକୁଳରେ ଦୁଇ କବାଟ ଛନ୍ଦା ଯାଇ ଗୋଟିଏ ବଡ଼ ପିତଳ ତାଲା ପଡ଼ୁଛି । ଗୋଟିଏ ମାତ୍ର ଉପରେ ମିଞ୍ଜି ମିଞ୍ଜି ହୋଇ ଆଲୁଅ ଜଳୁ ଥିବାରୁ ଭିତରର ହାଲ ବାହାର ଲୋକ ପକ୍ଷରେ ଦେଖିବାର ଅସୁବିଧା ହୁଏ ନାହିଁ । ବାହାର ଜଗତ୍ ସଙ୍ଗେ ଘରର ମଧ୍ୟଭାଗ ସମ୍ପୂର୍ଣ୍ଣରୂପେ ସମ୍ପର୍କ-ଶୂନ୍ୟ, ଏକାବେଳକେ ନିସ୍ତବ୍ଧ ।

ଜେଲଖାନାର ଘଣ୍ଟାରେ ବାରଟା ବାଜିବା ସାଙ୍ଗେ ସାଙ୍ଗେ ସେ ସ୍ଥାନର ନିସ୍ତବ୍ଧତାଭଙ୍ଗକରି ଗୋଟିଏ ଶବ୍ଦ ଶୁଭିଲା "ହୁକୁମଧର !" ମଚ୍ ମଚ୍ ଶବ୍ଦ କରି ପାଞ୍ଚ ଜଣ ସିପାହି ଉପସ୍ଥିତ । ଆଗର ପହରାବାଲା ବଦଳରେ ଆଉ ଜଣେ ସିପାହି ବନ୍ଧୁକ କାନ୍ଧରେ ପକାଇ ଛିଡ଼ା ହୋଇଗଲା । ଘର ମଧ୍ୟକୁ ଅନାଇ ଏକ—ଦୁଇ—ତିନି—ଚାରି ଜଣ ବନ୍ଦୀଙ୍କୁ ଗଣିନେଲା । ଆଗନ୍ତୁକ ସିପାହିମାନେ ଚାଲିଗଲେ । ନୂତନ ପ୍ରହରୀ ମଚ୍ ମଚ୍ କରି ଧୀରେ ଧୀରେ ଟହଲୁଥାଏ । ଘର ମଧ୍ୟରେ ଚାରିଖଣ୍ଡ କମ୍ବଳ ବିଛଣାରେ ଚାରିଜଣ ଆସାମୀ ପଡ଼ିଛନ୍ତି । ସେଥି ମଧ୍ୟରେ ଜଣେ ପାଣ, ଚୋରି ମାମଲାରେ ହାଜତରେ ବନ୍ଦୀ—ଫଁ—ଫଁ ନିଶ୍ୱାସ ପକାଇ ଘୋର ନିଦ୍ରାରେ ଶୋଇ ଯାଇଛି । ଦ୍ୱିତୀୟ ବନ୍ଦୀ ଭୁଙ୍କା ଏକଡ଼ ସେକଡ଼ ହେଉଛି । ବେଳେ ବେଳେ ଉଠ ପଡ଼ ହୋଇ ଦେହଯାକ ହାତ ବୁଲାଇ ପୁଣି ଶୋଇପଡ଼ୁଛି । ଏହି ଲୋକ ଜଣେ ଜମିଦାର, ଆଉ ଜଣେ ଜମିଦାର ସହିତ ଦଙ୍ଗା କରିଥିବା ଅପରାଧରେ ବନ୍ଦୀ । ତୃତୀୟ ବନ୍ଦୀ ଗୋଟାଏ ବଡ଼ଲୋକର ପୁଅ — ପୈତୃକ ସମ୍ପତ୍ତି ଅପବ୍ୟୟ କରି ଅବଶେଷରେ ଖଣ୍ଡିଏ ଜାଲ ହେଣ୍ଡନୋଟ୍ ପ୍ରସ୍ତୁତ କରିଥିବା ଅପରାଧରେ ଫୌଜଦାରୀ ସମ୍ପୃକ୍ତ ହୋଇଅଛି । ଶୋଇବା କମ୍ବଳ ଖଣ୍ଡରେ ଛାରପୋକ ଥିବାରୁ ଦୂରକୁ ଫୋପାଡ଼ି ଦେଲାଣି । ପଟାପ୍ ପଟାପ୍ କରି ଦେହରେ ଚାପୁଡ଼ା ବାଡ଼େଇ ହେଉଛି ଏବଂ ନିତାନ୍ତ ଅସ୍ଥିର ଭାବରେ ଉଠ ବସ ହେଉଛି । କେତେଥର ମଧ୍ୟ କାନ୍ଦି ପକାଇଲାଣି । ଚତୁର୍ଥ ଆସାମୀ ନିଶ୍ଚଳ ଭାବରେ ଦୁଇ ହାତ ଯୋଡ଼ି ଧ୍ୟାନମଗ୍ନ ପରି ବସିଛି, ବେଳେ ବେଳେ ଉପରକୁ ଅନାଇ ଭକ୍ତିଭାବରେ ନମସ୍କାର କରୁଛି । ମନରେ ଦୁଃଖ ନାହିଁ, ସନ୍ତାପ ନାହିଁ—ଗଭୀର ତଡ଼ାଗବତ୍ ସ୍ଥିର ଗମ୍ଭୀର ହୃଦୟ ।

ଗୋଟିଏ ଉପ୍ତ ବୀଜ ଉପରେ ଖଣ୍ଡିଏ ପାଷାଣ ଚାପା ପଡ଼ିଥିଲା, ଆଲୁଅ ଜଳ ବା ପବନ ନ ଲାଗିବାରୁ ଗଜା ବାହାରି ପାରି ନାହିଁ । ହେଲେ ବୀଜଟି ନଷ୍ଟ ହୋଇନାହିଁ, ଠିକ ସେହିପରି ଅଛି । ଦୀର୍ଘକାଳ ଉତ୍ତାରେ ପ୍ରସ୍ତର ଖଣ୍ଡ ଦୂରେଇ ଯିବାରୁ ବାହାର ଆଲୋକ ପାଇ ବୀଜରୁ ଗଜା ବାହାରି ପଲ୍ଲବିତ ହେଲା । ନଟବର ଦାସ ନିର୍ମଳବଂଶଜ, ଦୈବକ ପବିତ୍ରତା କିଛିମାତ୍ର ହେଲେ ହୃଦୟ ମଧ୍ୟରେ ନିହିତ ରହିବାର କଥା । ବାଲ୍ୟକାଳଟା ମଧ୍ୟ ସାଧୁ ସହବାସରେ ଅତିବାହିତ ହୋଇଅଛି । ବୃଦ୍ଧ ବିଷ୍ଣୁଶର୍ମାଙ୍କ ଉକ୍ତି— ଯୌବନ, ଧନ, ସମ୍ପତ୍ତି, ପ୍ରଭୁତ୍ୱ, ଅବିବେକତା ଗୋଟିଏ ଗୋଟିଏ ଅନର୍ଥର କାରଣ ଅଟେ—ନଟବର ଦାସଙ୍କଠାରେ ସହସା ସମ୍ପୂର୍ଣ୍ଣ ରୂପେ ଏକାବେଳକେ ସମସ୍ତ ଉପସ୍ଥିତ । ପୁଣି ନୀତିବେତ୍ତାମାନେ ବୋଲିଛନ୍ତି, ଯୌବନକାଳଟା ପାପ ଏବଂ ପୁଣ୍ୟର ଜନ୍ମଭୂମି । ପଥପ୍ରଦର୍ଶକ ଆହ୍ୱାନରେ ମାନବ ପାପମାର୍ଗ ବା ପୁଣ୍ୟମାର୍ଗ ଅନୁସରଣ କରିଥାଏ ।

ପ୍ରଥମ ସଂସାର କାର୍ଯ୍ୟ କ୍ଷେତ୍ରରେ ପ୍ରବେଶ ସମୟରେ ନଟବର ଦାସଙ୍କ ଠାରେ ସମସ୍ତ ଉତ୍ପାତର କାରଣ ଏକାବେଳକେ ଉପସ୍ଥିତ, ପୁଣି ସେ ନିରଙ୍କୁଶ । ଭଗବାନ୍ ବାସୁଦେବ କହିଛନ୍ତି, 'କାମ କ୍ରୋଧ ଲୋଭ ଏହି ତିନିଗୋଟି ନରକର ଦ୍ୱାର ।' ନଟବର ଦାସଙ୍କ ହୃଦୟରେ ଯେତେ ସଦ୍‌ଗୁଣ ପ୍ରଚ୍ଛନ୍ନଭାବରେ ନିହିତ ଥାଉ ପଛକେ ସ୍ୱଭାବରେ ତାହାଙ୍କ ସମ୍ମୁଖରେ ଏହି

ଷନ ଦ୍ୱାର ଉନ୍ମୁକ୍ତ । ବର୍ତ୍ତମାନ ପାପକାର୍ଯ୍ୟର ପରିଣାମ ଫଳ ଉପସ୍ଥିତ । ବିଚାରର ସମସ୍ତ କାରଣ ଅପସାରିତ ହୋଇଅଛି । ନଟବରଙ୍କ ହୃଦୟନିହିତ ଧର୍ମବୀଜଟି ଯେମନ୍ତ ସହସା ଅଙ୍କୁରିତ ପଲ୍ଲବିତ ହୋଇ ଉଠିଲା ।

ଆମ୍ଭେମାନେ ଜ୍ଞାନ-ନେତ୍ର ଉନ୍ମୀଳନ କରି ଦେଖିଲେ ପ୍ରତ୍ୟକ୍ଷକରି ଦେଖୁଁ, ବିପଥଗାମୀ ମାନବାତ୍ମାକୁ ସୁମାର୍ଗକୁ ଫେରାଇ ଆଣିବା ନିମନ୍ତେ ଭଗବାନ୍ ଯେମନ୍ତ ବିପଦରୂପ ପ୍ରବଳ ପଥପ୍ରଦର୍ଶକ ପ୍ରେରଣ କରିଥାନ୍ତି ।

ମୁଦ୍ରିତ ନେତ୍ର ନଟବର ହାସେ ଧ୍ୟାନନିମଗ୍ନବତ୍ ଉପବିଷ୍ଟ । ମନ ମଧ୍ୟରେ ଚିନ୍ତା କରୁଛନ୍ତି—ହାୟ ! ଏତେବେଳେ ମଧ୍ୟ ମିଥ୍ୟା କଥା ! ମେଜେଷ୍ଟର ସାହେବଙ୍କ ପ୍ରଶ୍ନରେ ଉତ୍ତର ଦେଲି, ମୁଁ ନିର୍ଦ୍ଦୋଷ ! ମୁଁ ନିର୍ଦ୍ଦୋଷ ? ଜଗତରେ ଆଉ ଦୋଷୀ କିଏ ? କେଉଁ ପାପ ବାକି ? ସମସ୍ତପ୍ରକାର ପାପ ସମ୍ପୂର୍ଣ୍ଣରୂପେ ଅନୁଷ୍ଠାନ କରିଛି । ମୁଁ କଣ ସରକାରି ତହବିଲ ତସରୁଫ କରିଛି ? ସେଥି ସକାଶେ ଏହି ଦଣ୍ଡ ? ନିଶ୍ଚୟ ନୁହେ । ମୋହର ଅନୁଷ୍ଠିତ ପାପ ସକାଶେ ଘୋର ଦଣ୍ଡ ଆବଶ୍ୟକ । ନିଶ୍ଚୟ ଏହି ଦଣ୍ଡ ପର୍ଯ୍ୟାପ୍ତ ନୁହେଁ । ବୋଧ କରେ, ଏହା ଆରମ୍ଭ ମାତ୍ର । ମୁଁ ଯେଉଁ ନରକକୁ ଯିବି, ତାହା ପ୍ରସ୍ତୁତ ହେଉଛି । ମୋହର ପ୍ରତ୍ୟେକ ପାପ ଅମାର୍ଜନୀୟ । ମା—ମା - ମା—ଚିରରୋଗିଣୀ ମା ! ତୁମ୍ଭ ପ୍ରତି ମୋହର କର୍ତ୍ତବ୍ୟ ପାଳନ କରି ନାହିଁ । ତୁମ୍ଭର ସ୍ନେହ, ତୁମ୍ଭର ମାୟା ଦିନେ ମାତ୍ର ହେଲେ ସ୍ମରଣ କରି ନାହିଁ । ମା-ମା-ମା ! ତୁମ୍ଭର ଚିରଜୀବନ-ସଞ୍ଚିତ କେତୋଟି ଟଙ୍କାର ଉପସ୍ୱତ୍ୱ । ବ୍ୟାଧିଗ୍ରସ୍ତ ଶରୀରର ଚେତକ ମାତ୍ର ଅବଲମ୍ବନ, ଅଫିମ ଟିକିଏ ଖାଇ ବଞ୍ଚିଅଛ । ତୁମ୍ଭର ନ୍ୟାଯ୍ୟ ପ୍ରାପ୍ୟ ଯୋଡ଼ାଏ ଟଙ୍କା ଦେଲି ନାହିଁ । କର୍କଶ ଭାଷାରେ ଚିଠି ଲେଖିଲି, 'ତୁମ୍ଭର ପ୍ରାପ୍ୟ ନାହିଁ, ଯାହା ଦେଉଛି ମୋର ଅନୁଗ୍ରହ ।' ମା ! ଚିଠି ପଢ଼ି ତୁମ୍ଭ ଅନ୍ତର ଆତ୍ମାକୁ କେତେ ବାଧିଥିବ । ତେତିକବେଳେ ଅଭିଶାପ ଦେଇ ମୋତେ ବିନାଶ କରିଥିଲେ ଅନ୍ତତଃ ଅନେକ କ୍ଷୁଦ୍ର ପ୍ରାଣୀ ରକ୍ଷା ପାଇଥାନ୍ତେ । ମା ! ଦୟାବତୀ ଜନନୀ ! ଶୁଣିଛି ମୋହର ଅମଙ୍ଗଳ ହେବ ବୋଲି ଦୀର୍ଘନିଃଶ୍ୱାସଟିଏ ମଧ୍ୟ ପକାଇ ନାହିଁ । ଧାଈମା ! ଧାଈମା ! କେତେ ଯତ୍ନରେ କେତେ ପରିଶ୍ରମରେ ମୋ ମଳ ମୂତ୍ର କାଢ଼ି ମୋତେ ବଢ଼ାଇଥିଲ । ମନରେ ପଡ଼ୁଛି, ଟିକିଏ ମାତ୍ର ଜ୍ୱର ହେଲେ ଆହାର ନିଦ୍ରା ତ୍ୟାଗ କରି ରାତିଯାକ ମୋତେ କୋଳରେ ଧରି ବସିଥାଅ । ଦିନେ ହେଲେ ତୁମକୁ ଭକ୍ତି କରି ନାହିଁ । ଉପକାର ଥାଉ, କର୍କଶ କଥା କହି ତୁମ୍ଭ ମନରେ ଦାରୁଣ କଷ୍ଟ ଦେଇଛି । ଅନେକ ଥର ତୁମ୍ଭ ହିତକଥା, ସଦୁପଦେଶ ଅଗ୍ରାହ୍ୟ କରିଛି । ନିତାନ୍ତ ପ୍ରତାରଣା କରି ତୁମ୍ଭଠାରୁ ରିପୋର୍ଟ ଲେଖାଇ ନେଇଛି । ତୁମ୍ଭ ନୟନପ୍ରତିମା କନ୍ୟାର ସର୍ବସ୍ୱ ଅପହରଣକାରୀ ମୁଁ । ଘୋର ବିପଦ ସମୟରେ କେତେ ଲୁଚୁଲୁଚି କରି ତୁମ୍ଭର ସର୍ବସ୍ୱ ଅପହରଣ କଲି । ଅନ୍ନବସ୍ତ୍ରରେ ପର୍ଯ୍ୟନ୍ତ କଷ୍ଟ ଦେଇଛି । କେତେ ନିରାଶ୍ରୟା, କେତେ ବିଧବା, ଦାରୁଣ ଯନ୍ତ୍ରଣା ଭୋଗକରି ହାହାକାର କରିଛନ୍ତି । ଦୟାବତୀ ଧାଈମା ! ଆସି ଦେଖ, ସେମାନଙ୍କ କ୍ରନ୍ଦନ-ଧ୍ୱନି ତୁମ୍ଭର ପାପିଷ୍ଠ ପ୍ରିୟପୁତ୍ରର ଅନ୍ତରାତ୍ମାକୁ କିପରି ଜାଳି ପୋଡ଼ି ଦେଉଛି ! ଧାଈମା ! ଦୟାବତୀ ପୁଣ୍ୟ-ଶୀଳା ଧାଈମା ! ମୁଁ ତୁମ୍ଭର ସର୍ବନାଶକାରୀ । ହେଲେ ମଧ୍ୟ ଦିନେ ହେଲେ ମୋତେ କଟୁକଥା କହି ନାହିଁ, ମୋହର ଅମଙ୍ଗଳ କାମନା କରି ନାହିଁ । ଧାଈମା ! ତୁମ୍ଭେ କ୍ଷମା କରିଛ—ଧର୍ମ, କିଁଏ କ୍ଷମା କରିବ ? ତାହାହେଲେ ଯେ ପୃଥିବୀରୁ ନ୍ୟାୟବିଚାର ଉଠିଯାଇ ଲଣ୍ଡ ଭଣ୍ଡ ହୋଇଯିବ, ପୃଥିବୀ ପାପମୟ ହୋଇଯିବ, ଜନସମାଜ ଉଚ୍ଛନ୍ନ ହୋଇଯିବ । ଗୃହମଣି ! ରାଣୀ ଗୃହମଣି ! ଧାର୍ମିକା, ସରଳା ପୁଣ୍ୟବତୀ ଗୃହ ! ମୋତେ କେତେ ଭଲ ପାଅ, କେତେ ଭକ୍ତି କର ! ତୁମ୍ଭର ଦାରୁଣ କଷ୍ଟ ସମୟରେ ତୁମ୍ଭର କେତେ ଅନିଷ୍ଟ

କରିଛି, ନିତାନ୍ତ ପ୍ରତାରଣାପୂର୍ବକ ତୁମ୍ଭର ସର୍ବସ୍ୱ ହରଣ କରିଛି ! ଜଗତରେ କେହି ମହାପାପୀ ହେଲେ ଏହି ପୈଶାଚିକ କାର୍ଯ୍ୟ କରିବାକୁ ଲଜ୍ଜିତ ହୁଅନ୍ତା । ନିତାନ୍ତ କପଟ ସାନ୍ତ୍ୱନା ଦେଇ ତୁମ୍ଭ ଶିଶୁପୁତ୍ର ମାନଙ୍କର ଯେଉଁ ଧନ ହରଣ କରିଛି, ତାହା ଯଦି ଭୋଗ କରେ, ଜଗତରେ ଧର୍ମାଧର୍ମ, ନ୍ୟାୟାନ୍ୟାୟ ସର୍ବୈବମିଥ୍ୟା । ଜଗତରେ ସର୍ବଦର୍ଶୀ ସର୍ବନିୟନ୍ତା ପରମେଶ୍ୱର ନାହାନ୍ତି ।

ଦୁର୍ଭାଗା ନରିପୁର ପ୍ରଜାଗଣ ! ଧାର୍ମିକ, ପରୋପକାରୀ ତୁମ୍ଭମାନଙ୍କର ରକ୍ଷକଙ୍କୁ ହରାଇ ଆଠବର୍ଷ କାଳ ଗୋଟାଏ ରକ୍ତପିପାସୁ ରାକ୍ଷସ ହାତରେ ପଡ଼ିଥିଲ । ଭୟ ନାହିଁ, ଦୟାମୟ ପ୍ରଭୁ ତୁମ୍ଭମାନଙ୍କ କ୍ରନ୍ଦନଧ୍ୱନି ଶୁଣିଲେଣି । ଶତ ଶତ ପ୍ରକାର ସମ୍ପତ୍ତି ଲୁଟି ନେଇଛି, ଜୀବନର ଏକ ମାତ୍ର ଅବଲମ୍ବନ ଚାଷ ଜମିଖଣ୍ଡମାନ ହରାଇ ଶତ ଶତ ପ୍ରଜା କୁଆଡ଼େ ଭିକ ମାଗି ବୁଲୁଛନ୍ତି ! ଆହା ! ପିତୃହୀନ ମୋହର ଭଣଜା ପିଲା ଦିଓଟି ! ଛଳରେ କହୁଥିଲି— ତୁମ୍ଭମାନଙ୍କ ସର୍ବସ୍ୱ ଚୋରି କରିବା ପାଇଁ, କପଟରେ କହୁଥିଲି, ତୁମ୍ଭେମାନେ ମୋ ନୟନର ତାରା । ସତ୍ୟ ସତ୍ୟ ତୁମ୍ଭେମାନେ ମୋ ଜୀବନର ଅବଲମ୍ବନ । ମୁଁ ଆଣ୍ଟୁକୁଡ଼ା, ନାରକୀ ତୁମ୍ଭମାନଙ୍କ ଆଶ୍ରୟରେ ଉଦ୍ଧାର ପାଇଥାନ୍ତି । ଆଠ ବର୍ଷ କାଳ ଦିନ ରାତି ତୁମ୍ଭମାନଙ୍କ ଅମଙ୍ଗଳ କାମନା କରିଛି, ତୁମ୍ଭେମାନେ କିଛି କଥା ଜାଣ ନାହିଁ । ହେଲେ, ସର୍ବଦର୍ଶୀ ଭଗବାନଙ୍କୁ କିଏ କଣ ଲୁଚାଇବ ? ହାୟ ହାୟ ! ଏହି ଘୋର ବିପଦ କାଳରେ ସାନ୍ତ୍ୱନା ଦେଇ ପଦେ କଥା କହିବାକୁ ପାଖରେ କାହାକୁ ଦେଖୁନାହିଁ । କିଏ କାହିଁକି ପାଖକୁ ଆସିବ ? କାହାର ମର୍ଯ୍ୟାଦା ରଖିଛି ? କାହାର କି ଉପକାର କରିଛି ଯେ ପ୍ରତ୍ୟୁପକାର ପ୍ରତ୍ୟାଶା କରିବି ? ଗ୍ରାମରୁ କେହି ଜଣେ ଲୋକ ବସାକୁ ଆସିଲେ ଭାତ ମୁଠାଏ ଦେବାକୁ ହେବ ବୋଲି କର୍କଶ କଥା କହି ତଡ଼ି ଦିଏଁ । ଲକ୍ଷାବଧି ଟଙ୍କା ଉପାର୍ଜନ କରି, ଦିନେ ହେଲେ ପଇସାଟାଏ କ୍ଷୁଧାର୍ତ୍ତ କାଙ୍ଗାଳୀଙ୍କୁ ଦେଇ ନାହିଁ । ଦେହର ରକ୍ତ ପରି ଟଙ୍କା ସଞ୍ଚୟ କରିଥିଲି, ଏହି ଘୋର ବିପଦ ସମୟରେ ତ ପଇସାଏ ଉପକାରକୁ ଆସିଲା ନାହିଁ । ପାପଧନ କି ବିପଦରୁ ଉଦ୍ଧାର କରିପାରେ ? ତାଇ ସନ ସାହେବ ! ମୋହର ସମସ୍ତ ଉନ୍ନତିର ମୂଳାଧାର ତୁମ୍ଭେ ! ମୋହର ଯେତେ ଗୌରବ ଓ ସମ୍ମାନ, ସବୁ ତୁମ୍ଭ ସକାଶେ । ମୋତେ ପୁତ୍ର ପରି ସ୍ନେହ କରୁଥିଲ, ହେଲେ ମୁଁ ତୁମ୍ଭର କେତେ ଟଙ୍କା ଚୋରେଇ ନେଇଛି, କେତେ ଥର ଠକାଇଛି । କେଡ଼େ ଦୟାଳୁ ତୁମ୍ଭେ । ଗୃହମଣି ବିଧବା ହେଲେ ତାହାର ଜାଲ ରିପୋର୍ଟ ତୁମ୍ଭଠାରେ କୋଠିରେ ତୁମ୍ଭ ହାତରେ ଦେଇ ଆଖିରେ ଗୋଲମରିଚ ଗୁଣ୍ଡ ଦେଇ ମିଛରେ କେତେ କାନ୍ଦିଲି ! ଦେଖିଛି ମୋ କ୍ରନ୍ଦନରେ ତୁମ୍ଭେ କାତର ହୋଇ ପଡ଼ିଲ, ମୋ ଠକପଣ କିଛି ମାତ୍ର ବୁଝି ପାରିଲ ନାହିଁ । ରିପୋର୍ଟ ମଞ୍ଜୁର କରିଦେଲ । ତୁମ୍ଭେ ଥିଲେ କି ମୁଁ ଜେଲକୁ ଆସିଥାନ୍ତି ? କିଏ ରହିବ ? ଏତିକବେଳେ ପରମେଶ୍ୱର କି ତୁମ୍ଭଙ୍କୁ ବିଲାତ ପଠାଇ ଦେଇଛନ୍ତି ? ପ୍ରଭୋ ! ପ୍ରଭୋ ! ମୁଁ ଦେଖୁଛି, ମୋ କଳଙ୍କିତ ଜୀବନ ଶୋଧନ ନିମନ୍ତେ ଏହି ବିପଦ ପ୍ରେରଣ କରିଛ । ପ୍ରଭୋ ! ତୁମ୍ଭ ଇଚ୍ଛା ମୋ ଜୀବନରେ ସଫଳ ହେଉ, ଆଉ କିଛି ଭରସା ନାହିଁ । ହା ପ୍ରଭୁ ଦୟାମୟ ! ଏବେ ତୁମ୍ଭେ ଏକମାତ୍ର ସାହା । ଚିତ୍ରକଳା ! ପ୍ରଭୁଦୟାଲ ! ତୁମ୍ଭେମାନେ ମୋହର ନରକମାର୍ଗର ସଙ୍ଗୀ ଥିଲ, ଏତେବେଳେ ପ୍ରକୃତ ବନ୍ଧୁପଣର କାର୍ଯ୍ୟ କରିଛ । ଆଉ ଯେମନ୍ତ ନରକ ମାର୍ଗକୁ ଅଗ୍ରସର ହୋଇ ନ ପାରେ, ସେଥିର ଉପାୟ କରିଦେଇ ପ୍ରକୃତ ବନ୍ଧୁର କାର୍ଯ୍ୟ କରିଛ । ତୁମ୍ଭମାନଙ୍କୁ ନମସ୍କାର । ଏତେବେଳେ ତୁମ୍ଭେମାନେ ମୋହର ଭବିଷ୍ୟତ ଜୀବନର ହିତକାରୀ । ତୁମ୍ଭମାନଙ୍କ ସକାଶେ ମୁଁ ଏଠାରେ ଉପସ୍ଥିତ । ଭଲ କରିଛ । ଆହୁରି କେତେ ପାପାନୁଷ୍ଠାନ କରିଥାନ୍ତି, ଅବୋଧ, ସରଳ ଶିଶୁ ଦିଓଟିଙ୍କର ସର୍ବନାଶ ସାଧନ କରି ଅନନ୍ତ ନରକ ଭୋଗ

କରଥାନ୍ତ । ମୋ ଗମ୍ୟ ମାର୍ଗରେ କଣ୍ଟକ ପକାଇଲ, ଆଉ ଅଗ୍ରସର ହୋଇ ପାରବ ନାହିଁ । ତୁମ୍ଭମାନଙ୍କୁ ଅନ୍ତରରେ ନମସ୍କାର କରୁଛୁ ।

ବଶାଖା ଦେଈ ! ତୁମ୍ଭେ ମୋର ଧର୍ମପତ୍ନୀ । ତୁମ୍ଭେ ଯାହା ହୁଅ, ପଞ୍ଚାଗ୍ନି ସାକ୍ଷାତରେ ଦଶଦଗ-ପାଳଙ୍କୁ ସାକ୍ଷୀ କର ପ୍ରତଜ୍ଞା କରଥିଲ, ପବତ୍ର ଭାବରେ ତୁମ୍ଭଙ୍କୁ ପ୍ରେମ କରବ । ଚରକାଳ ତୁମ୍ଭ ସହତ ପ୍ରତାରଣା କର ପଶୁତୁଲ୍ୟ ଜଘନ୍ୟ କାର୍ଯ୍ୟ କରଛୁ । ମୋ କପଟ କଥାରେ ଭୁଲ ମୋତେ ଦେବତାତୁଲ୍ୟ ସମ୍ମାନ କରୁଥିଲ । ତୁମ୍ଭଠାରେ ଆଉ କଛୁ ଗୁଣ ଥାଉ ବା ନ ଥାଉ, ତୁମ୍ଭେ ପରମସତୀ, ପତପରାୟଣା । କଳୁଷିତ ହସ୍ତରେ ତୁମ୍ଭର ପବତ୍ର ଅଙ୍ଗ ସ୍ପର୍ଶ କରଛୁ । ତୁମ୍ଭେ ବର୍ତ୍ତମାନ ନତାନ୍ତ ଅସହାୟା, ତୁମ୍ଭ ଧର୍ମ ତୁମ୍ଭଙ୍କୁ ରକ୍ଷା କରବ । ଭାଇ ବାନାବର ! ତୁମ୍ଭ ପାଦପଦ୍ମରେ କୋଟି କୋଟି ନମସ୍କାର । ତୁମ୍ଭ ପରଶ୍ରମ-ଜାତ ଧାନ ମୁଠାକରୁ ପୈତୃକ ଭାଗ ବୋଲ ଅଧେ କାଢ଼ି ନେଇଛୁ । ତୁମ୍ଭ ହୋଇ ଧାନ ମାପି ଦେଇଛ, ଦନେ ହେଲେ କଛି କଥା କହ ନାହଁ ।

"ପିତା ଧର୍ମଃ ପିତା ସ୍ୱର୍ଗଃ ପିତାହ୍ଷ ପରମଂ ତପଃ—" ହେ ସ୍ୱର୍ଗସ୍ଥ ପିତୃଦେବ ! ଏହ୍ୱ ଅଧମ ପାପିଷ୍ଠ ଦୁରାତ୍ମର କୁଳାଙ୍ଗାର ବଂଶର ସର୍ବନାଶକାରୀ ସ୍ୱାର୍ଥପର ଅଧମ ସନ୍ତାନ ତୁମ୍ଭ ପବତ୍ର ନାମ ଉଚ୍ଚାରଣ କରବାର ଅଯୋଗ୍ୟ, କ୍ଷମା କର ।

ହେ ଦୟାମୟ ପରମେଶ୍ୱର ! ହେ ପରମପିତା ! ଦନେ ହେଲେ ଭକ୍ତି କର ତୁମ୍ଭ ନାମ ଉଚ୍ଚାରଣ କର ନାହିଁ । ବର୍ତ୍ତମାନ ତୁମ୍ଭର ମହା ପବତ୍ର ନାମ ସ୍ମରଣ କରବାକୁ ପ୍ରାଣରେ ଆତଙ୍କ ଉପସ୍ଥିତ ହେଉଛୁ । ଲୋକଙ୍କୁ ଭୁଲାଇବା ପାଇଁ ତୁଚ୍ଛାଟାରେ ତୁଳସୀ ମାଳଟାଏ ହାତରେ ଧରଥାଏଁ । ପ୍ରଭୋ ! ପ୍ରଭୋ ! ତୁମ୍ଭ ନାମରେ ମଧ୍ୟ ପ୍ରତାରଣା ! ହେ ପତତପାବନ ! ଅଶରଣର ଶରଣ ! ହେ ଦୀନଦୟାମୟ ! ରକ୍ଷା କର, ରକ୍ଷା କର । ପ୍ରଭୁ ! ମୁଁ ପାପୀ – ମୋ'ଠୁଁ ବଳ ଜଗତରେ ପାପୀ ନାହାଁ । ମୁଁ ଯେଡ଼େ ପାପୀ ହୁଏଁ ପଛକେ, ମୋ ପାପର ସୀମା ଅଛୁ, ତୁମ୍ଭର କରୁଣା ଅନନ୍ତ, ଅବଶ୍ୟ ରକ୍ଷା ପାଇବ । ଯେଉଁ ଦଣ୍ଡ ଇଚ୍ଛା ଦଅ- ତୁମ୍ଭକୁ ନମସ୍କାର, ନମସ୍କାର ।

ଏହ୍ୱ ସମୟରେ ନଟବର ଦାସ ପ୍ରାଣରେ କେମନ୍ତ ଗୋଟାଏ ବଳ – କେମନ୍ତ ଗୋଟାଏ ଶାନ୍ତ ଆସିଲ । ସବୁ କଥା ଭୁଲ ଚତ୍କାର କର ହାତ ଯୋଡ଼ ଡାକଲେ, 'ପ୍ରଭୋ ! ପ୍ରଭୋ ! ରକ୍ଷାକର, ରକ୍ଷାକର ।' ସଙ୍ଗେ ସଙ୍ଗେ ଭୟଙ୍କର ଚତ୍କାର କର ଗୀତ ଗାଇବାକୁ ଆରମ୍ଭ କଲେ —

ଭାସିଲ ଦୁଃଖ-ସିନ୍ଧୁ ଜଳେ,
ରଖ ରଖ ମହାପ୍ରଭୁ ଅଭୟ ପଦକମଳେ । (ଘୋଷା)
ମୋ ଜୀବନ ଖଣ୍ଡ ଖଣ୍ଡ ହେଉ ପ୍ରଭୁ ଦଅ ଦଣ୍ଡ,
ଜୀବନ ଶୋଧନ ହେଉ ତୁମ୍ଭ ହସ୍ତରେ,
ଭରସା ତ ଦେଖେଁ ନାହିଁ ଆନ ନେତ୍ରରେ,
ନଶି ଦନ ପୋଡ଼େ ପ୍ରାଣ ଦାରୁଣ ପାପ-ଅନଳେ ।

ନଟବର ଦାସଙ୍କ ସଙ୍ଗୀତ ଶୁଣି ଅନ୍ୟ ଛନଜଣ ବନ୍ଦୀ ଉଠି ବସିଲେଣି । ସେମାନଙ୍କ ହୃଦୟରେ ଯେମନ୍ତ କଏ ଅମୃତ ଢାଳ ଦେଉଛୁ । ହାତ ଯୋଡ଼ ସ୍ଥିରଭାବରେ ବସି ସଙ୍ଗୀତ ଶୁଣୁଛନ୍ତ, ଆପଣା ଆପଣା ବପଦ କଥା ଯେମନ୍ତ କ୍ଷଣକ ପାଇଁ ଭୁଲ ଗଲେଣି । ପ୍ରହରୀ ସିପାହୀ ଆପଣା କର୍ତ୍ତବ୍ୟ ଭୁଲ ଯାଇଛୁ । ବନ୍ଧୁକଟା କାନ୍ଧରେ ପକାଇ ପିତୁଳାଟି ପର ଗୀତ ଶୁଣୁଥିଲା । ତା ମନରେ ମଧ୍ୟ ଯେମନ୍ତ କଏ ଶାନ୍ତ-ସୁଧା ଢାଳ ଦେଉଛୁ ! ଭୋର ହୋଇ ଗଲାଣି, ପ୍ରହରୀ ଚମକ ପଡ଼ ଡାକ ଦେଲା, ଏ

କଏହି ! ଚୁପ କର, ଏଠାରେ ପାଟି କରିବାକୁ ମନା । ଦୁଇ ଚାରି ଥର ଡକାଡକିରେ କଏଦି ଶୁଣି ହେଲା, କିନ୍ତୁ ପୂର୍ବବତ୍ ହାତଯୋଡ଼ ଧ୍ୟାନମଗ୍ନ ।

———

-୨୫-

## ବିଚାର

ଖରା ଦିନଆଁ ସକାଳକରେଇ—ଜେଲଖାନା ଦୁଆର କଡ଼ରୁ ସେସନ ଜଜ ଅଦାଲତ ଦୁଆରପାଏ ଦେଖଣାହାରୀ ଥାଟ ବାନ୍ଧି ଛିଡ଼ା । ଗୋଟା ବଜାର ଲୋକ ଅଜାଡ଼ି ପଡ଼ିଛନ୍ତି—ମୁଣ୍ଡ ଉପରେ ଥାଳି ବୁଲି ଆସିବ । ଆଜି ନାଜର ନଟବର ଦାସର ମାମଲା । ମେଜିଷ୍ଟ୍ରେଟରୁ ସେସନ ସପୁର୍ଦ ହୋଇ ଆସିଛି । ଷୋଳ ୨୦ଟା ସମୟରେ ସଙ୍ଗୀନଲଗା ବନ୍ଧୁକ କାନ୍ଧରେ ପକାଇ ଆଠଜଣ ପ୍ରହରୀ ଚାରିପାଖେ ବେଢ଼ିଛନ୍ତି, ମଧ୍ୟରେ ତିନିଜଣ ଆସାମୀ । ଆସାମୀଙ୍କ ମଧ୍ୟରୁ ଦୁଇଜଣ ପୁରୁଷ, ଗୋଟାଏ ମାଇକିନିଆ । ପୁରୁଷ ଦୁଇଟାଙ୍କର ଜଣଙ୍କର ଖାଇବା ହାତ, ଆଉ ଜଣକର ଡେବରି ହାତ ଗୋଟାଏ ହାତକଡ଼ିରେ ଛନ୍ଦା । ବାଁ ପାଖ ମଣିଷଟା ସିପଣ୍ଡି କାଳିଆ, ରାକ୍ଷସ ପରି । ଗୋଟାଏ ବଣୁଆ ଷଣ୍ଢକୁ ଛନ୍ଦି ପଦାକୁ ଆଣିଲେ ସେ ଯେମନ୍ତ ଭୟରେ ଚଙ୍ଗ ଚଙ୍ଗ ହେଉଥାଏ, ଲୋକଟା ସେହିପରି ହେଉଛି । ଡାହାଣ ପାଖ ପୁରୁଷଟି ସୁନ୍ଦରକାନ୍ତି—ଧୀର ଗମ୍ଭୀର ଭାବରେ ଆକାଶକୁ ଅନାଇ ଚାଲିଛି । ମୁଖରେ ଦୁଃଖ ବା ଦୈନ୍ୟ ଭାବର ଚିହ୍ନମାତ୍ର ନାହିଁ । ଲୋକେ ଦେଖି ଆଶ୍ଚର୍ଯ୍ୟ ହେଲେ, ସେ ଲୋକଟା ଯେମନ୍ତ ବେଳେ ବେଳେ ମୁରୁକି ମୁରୁକି ହସି ଦେଉଛି । ତାହାର ଅବସ୍ଥା ଦେଖି କେତେଜଣ ଭଦ୍ର ଦେଖଣାହାରୀ ନିଃଶ୍ୱାସ ପକାଇଲେ । ପଛ ମାଇକିନିଆଟା ଅଳପ ଟିକିଏ ଓଢ଼ଣା ଟାଣି ଦେଇ ଚାଲିଛି । ଜଜସାହେବଙ୍କ ମିସଲ ଆଗରେ ଧାଡ଼ି କରି ତିନିଜଣ ଆସାମୀଙ୍କୁ ଛିଡ଼ା କରାଗଲା । ପେସ୍କାର ହାକିମଙ୍କୁ ଶୁଣାଇ ଦେଲେ—'ହଜୁର ! ସରକାର ବାହାଦୁର ମୁଦେଇ, ନଂ ୧ ଆସାମୀ ନାଜର ନଟବର ଦାସ, ନଂ ୨ ରାଘବାନନ୍ଦ ମହାନ୍ତି ଓରଫ୍ ରାଘୋ ବଣ୍ଡାଳ, ନଂ ୩ ଚମ୍ପକଳା । ଦଣ୍ଡବିଧି ଆଇନର ୪୦୯ ଓ ୩୭୯ଦଫାର ମାମଲା । ଆସାମୀମାନେ ହାଜର ।' ପ୍ରଥମ ସାକ୍ଷୀ ଦାରୋଗା ମାଲମଣି ବାବୁ ସାକ୍ଷ୍ୟ ଦେବାଲାଗି ସାହେବଙ୍କୁ ଡାହାଣ ବାହୁଟା ଟେକି ଖୋଲା ହାତ ପାପୁଲିର ତର୍ଜନୀ ଆଙ୍ଗୁଳିଟା କପାଳରେ ଲଗାଇ ଚଟ୍ କରି ହାତଟା ମେଲାଇ ଦେଇ ପୋଲିସ ସଲାମ କଲେ । ମାମଲାରେ ପ୍ରଥମ ସାକ୍ଷୀ ଥିବାରୁ ସାକ୍ଷ୍ୟ ଦେବା ଲାଗି ହାକିମଙ୍କ ମେଜ ଆଗ କାଠ ଅର୍ଗଲା ମଧ୍ୟକୁ ପ୍ରବେଶ କରିବା ମାତ୍ରକେ ନାଜର ନଟବର ଦାସ ଖୁବ୍ ପାଟିଟାଏ କରି କହିଲା, "ହଜୁର ! ହଜୁର ! ସାକ୍ଷୀ ପଛକୁ ଥାଉନ୍ତୁ, ଆଗେ ମୋ ଜବାନବନ୍ଦି ନିଅ ।" ସିପାହୀ ବାରମ୍ବାର ଶୁନି କରାଇଲେ ମଧ୍ୟ ସେ ଏ ପ୍ରକାର ଚିତ୍କାର କଲା ଯେ, ସାହେବ ତାହାର ଜବାନବନ୍ଦି ଗ୍ରହଣ ନ କରି ଆଉ କିଛି କର୍ମ କରିପାରିଲେ ନାହିଁ । ହାତକଡ଼ି ଫିଟା ଯାଇ ଦୋସରା ଆସାମୀଠାରୁ ନଟବର ଦାସକୁ ଅଲଗା କରାଗଲା । ସେ କାଠର ଅର୍ଗଲୀ ମଧ୍ୟରେ ଛିଡ଼ା ହୋଇ ସଙ୍ଗତ ଅସଙ୍ଗତ ଅନେକଗୁଡ଼ାଏ କଥା ଲହରି ଛୁଟିଲା ପରି ବକି ଚାଲିଗଲା । ସେ ସମସ୍ତ କଥାରୁ ବାଛି ବାଛି ସାର କେତେଟା କଥା ସଂଗ୍ରହ କରାଯାଉଛି ।

ନାଜର ନଟବର ଦାସର ଜବାନବନ୍ଦି—'ମୁଁ ସରକାରୀ ଟଙ୍କା ଚୋରି କରି ନାହିଁ—ସେ ମାମଲାରେ ନିର୍ଦ୍ଦୋଷ; ମାତ୍ର ମୋ ଭଉଣୀ ଚୂଡ଼ାମଣି ବିଧବା ହୋଇ ଅଚେତନ ଅବସ୍ଥାରେ ଥିବା ସମୟରେ ତାହାର ନାମ ଜାଲ କରି ସରକାରକୁ ରିପୋର୍ଟ କରିଛି । ସେହି ରିପୋର୍ଟ ବଳରେ ମୁଁ ନରପୁର ତାଲୁକର ସର୍ବାଧିକାରୀ ହୋଇଛି । ବିଧବା ଚୂଡ଼ାମଣିର ଚାଳିଶ ପଞ୍ଚାଶ ହଜାର ଟଙ୍କାର ଅଳଙ୍କାର ଚୋରି କରି ଆଣିଛି । ଶତ ଶତ

ପ୍ରଜାଙ୍କର ଜମି ଛଡ଼ାଇ ନେଇ ସେମାନଙ୍କୁ ଉଚ୍ଛନ୍ନ କରିଛି । ଶିଶୁ ପିଲାମାନଙ୍କ ତହବିଲରୁ ଅନେକ ଟଙ୍କା ଚୋରି କରିଛି । ସେମାନଙ୍କର ପ୍ରାୟ ତିନିଶ ହଜାର ଟଙ୍କାର ଧାନ ବିକି କରି ଆତ୍ମସାତ୍ କରିଛି । ଆହୁରି ଢେର ଢେର ପ୍ରକାରେ ଟଙ୍କା ଆତ୍ମସାତ୍ କରିଥିବାର ପ୍ରକାଶ କଲା । ଶେଷରେ କହିଲା ନରପୁର ତାଲୁକାର ପେଶକସ୍ ଦାଖଲ ନ କରି ତାଲୁକଟା ବାକି-ଖଜଣାରେ କିଣି ନେବାକୁ ଇଚ୍ଛା ଥିଲା । ସେଥିପାଇଁ ନାନା ଅସତ୍ ଉପାୟରେ ସଂଗ୍ରହ କରି ଲକ୍ଷାବଧି ଟଙ୍କା ଓ ରତ୍ନମଣିର ଅଲଙ୍କାର ସବୁ ମୋ ଘରେ ଲୁହା ସିନ୍ଦୁକରେ ରଖିଛି । ସେ ସମସ୍ତ ଟଙ୍କା ଆଉ ମାଲ ନାବାଳକ ଅବୋଧ ଦୁଇଗୋଟି ପିଲାଙ୍କର, ସେମାନଙ୍କୁ ଦିଆଯାଉ । ନରପୁରର ରାଜା ହେବାକୁ ବଡ଼ ଇଚ୍ଛା ଥିଲା । ହୋ ହୋ—ହୋ ! ମୁଁ ନରପୁର ତାଲୁକାର ରାଜା ! ଜଜ୍ ସାହେବ ! ତୁମକୁ ସଲାମ କରେ । ହୋ—ହୋ'—ହସି ଆସାମୀ ତଳକୁ ଡେଇଁ ପଡ଼ିଲା । ଭୟଙ୍କର ଚିତ୍କାର କରି ଉଚ୍ଚୈଃସ୍ୱରେ ହସି ହସି ଜଜ୍ ସାହେବଙ୍କର ଆଗରେ ଗୀତ ଗାଇବାକୁ ଲାଗିଲା—

ରାଜା ଚଳେ ଉଜିର ଚଳେ
ଚଢ଼େ ମତ୍ତଗଜ ହାତୀ ।
ଆଲଟ ଚାମର ବୈରଖ ଡୋଲେ
ଶିରପର ସୋନେ ଛତି ।

ହୋ—ହୋ—ହୋ ! ହାମ ରାଜା ହେ । ସାହେବ ! ସାହେବ ତୁମ ହାମକୁ ସଲାମ କରେ । ଭୟଙ୍କର ଚିତ୍କାର, ନାଚ କୁଦା—ମିସଲଟା ଭାଙ୍ଗି ପକାଇବ ପରି । ଯୋଡ଼ାଏ ସିପାହୀ ଧରି କଣ ସମ୍ଭାଳି ପାରନ୍ତି—ଭୟଙ୍କର ବଳ । ଲୋକେ କହୁଛନ୍ତି, ଏଇଟା ଶୟତାନର ବଳ । ଚାରି ଛ'ଜଣ ସିପାହୀ ମାଡ଼ି ବସି ଡବଲ ହାତକଡ଼ି ଲଗାଇ ଦେଲେ । ଅଣ୍ଟାରେ ଡୋରି ବାନ୍ଧି ଚାରି ଜଣ ଭିଡ଼ି ଧରିଥାନ୍ତି । ସିଭିଲସର୍ଜନଙ୍କୁ ଚିଠି ଲେଖା ଯାଇ ଆସାମୀକୁ ପାଗଳା ଗାରଦକୁ ପଠାଗଲା ।

ଦୋସର ଆସାମୀ ରାଘବ ମହାନ୍ତିର ଜବାବ—ଆସାମୀଟା ସବୁ ସବାଲ ବୁଝି ପାରୁ ନାହିଁ, ବୁଝିଛି ତ ଚିକିଟା କଥା ଯୋଡ଼ ଯୋଡ଼ କହିପାରୁ ନାହିଁ—ବେଳେ ବେଳେ ଗପ ପରି ଭେ ଭେ ଡକାପାଡ଼ୁଛି । ଅନେକ ପଚରାପଚରି କରି ଆସାମୀର ଜବାନବନ୍ଦୀ ଶେଷ କରାଗଲା । ଆସାମୀର ବିକଳ ଦେଖି ସାହେବ ଆଉ ମିସଲରେ ଉପସ୍ଥିତ ସମସ୍ତ ଲୋକଙ୍କର ତାହା ପ୍ରତି ଦୟା ଜାତ ହେଲା ।

ଚମ୍ପକଳା ଜବାବ ଦେଲା—

ମୁଁ ଟଙ୍କା ଚୋରି କରିଛି, କିଏ ଦେଖିଛି ? ମୋ ଘରୁ କିଛି ମାଲ ବାହାରି ନାହିଁ—କେହି ଲୋକ ଦୁଷ୍ଟାମି କରି ମୋ ଘର ପଛରେ ବାଡ଼ିରେ ରଖିଦେଇ ଯାଇଛି—ମୁଁ ଶୋଇଥିଲି, କିମିତି ଜାଣିବି ? ପ୍ରଭୁଦୟାଳ ଭଗତ ଆଉ ରାଘବ ମହାନ୍ତି କିଏ, ମୁଁ ଜାଣେ ନାହିଁ । ମୁଁ ଟଙ୍କା ଚୋରି କରିଛି, ଆଚ୍ଛା ନାଜର ଭାର୍ଯ୍ୟା ଚମ୍ପା ତୁଳସୀ ଧରି ମିସଲ ପଟା ଉପରେ ଠିଆ ହୋଇ କହୁ ତ ! ମୁଁ ନିର୍ଦ୍ଦୋଷ, ଖଲାସ ପାଇବି । ମାଲ ଘରୁ ନ ବାହାରିଲେ କେହି ସଜା ପାଏ ନାହିଁ ।

ଚମ୍ପକଳା ଖୁବ୍ ତେଜରେ କଥା କହି ଯାଉଥାଏ, ହାକିମ ହସି ହସି ଜବାନବନ୍ଦ ଲେଖି ଯାଉଥାନ୍ତି । ଜଜ ସାହେବଙ୍କ ହସ ଦେଖି ଚମ୍ପକଳା ସାହସ ପାଇ ଢେର କଥା କହିଗଲା ।

———

-୭୭-

## ମାମଲା ଫଇସଲ

ସରକାର ତରଫରୁ ସାକ୍ଷୀ ଏବଂ ଆସାମୀମାନଙ୍କର ଜବାନବନ୍ଦ ଶେଷ ହୋଇଛି । ସରକାରୀ ଓକିଲ ଖୁବ୍ ତେଜରେ ବକ୍ତୃତା କରି ପ୍ରମାଣ କରାଇଲେ, ଆସାମୀ-ମାନେ ଦୋଷୀ ।

ଆସାମୀମାନଙ୍କ ମଧ୍ୟରୁ କେବଳ ଚନ୍ଦ୍ରକଳା ପକ୍ଷରୁ ଜଣେ ଅଳ୍ପଦାମିଆ ଜୁନିଅର ଓକିଲ ନିଯୁକ୍ତ ଥିଲେ । ସେ ହାତ ମୁଣ୍ଡ ବୁଲାଇ ଢେର ଗୁଡ଼ାଏ ବକାବକି କଲେ । ଆହୁରି ମଧ୍ୟ ଢେର କଥା କହିଥାନ୍ତେ, ଜଜ ସାହେବଙ୍କଠାରୁ ଧମକ ଖାଇ ସଂକ୍ଷେପରେ ବକ୍ତୃତା ଶେଷ କରିପକାଇ ପ୍ରମାଣ କରାଇବା ଚେଷ୍ଟାକଲେ—ତାଙ୍କ ମକ୍‌କେଲ୍ ଗୋଟିଏ ନିତାନ୍ତ ସରଳା ଅବଳା, ନାଯ୍ୟରୂପେ ପରିଶ୍ରମ କରି ପେଟ ପୋଷେ, ଅତି ପବିତ୍ର ସାଧୁଭାବରେ ଜୀବନ ଯାପନ କରେ, ତାହା ବିପକ୍ଷରେ ସୁସ୍ପଷ୍ଟ ପ୍ରମାଣାଭାବ, ମଧ୍ୟ ତା ଘର ମଧ୍ୟରୁ ମାଲ ବରାମଦ ହୋଇ ନାହିଁ । ସୁତରାଂ ସେ ନିର୍ଦ୍ଦୋଷ, ଖଲାସ ପାଇବାର ଯୋଗ୍ୟ ।

———

-୭୨-

## ସେସନ ଜଜ୍ ସାହେବଙ୍କ ରାୟ

ମାମଲାର ଶେଷ ହୁକୁମ ଶୁଣିବା ପାଇଁ ଆଜି ମଧ୍ୟ କଚେରିରେ ଦେଖଣାହାରିଙ୍କର ଭାରି ଭିଡ଼ । ସକାଳ-ବେଳା ସାତ ଘଣ୍ଟା ସମୟରେ ହାକିମ କଚେରିରେ ଉପସ୍ଥିତ ହୋଇ ରାୟ ପଢ଼ି ଶୁଣାଇଲେ । ଆସାମୀ ଦୁଇଜଣ ଆଗରୁ ଛାଡ଼ା ହୋଇଛନ୍ତି ।

ଅଧ ଦିସ୍ତାଏ ଫୁଲସ୍କେପ କାଗଜ ଗୁଡ଼ିଏ ପୃଷ୍ଠାରେ ମାମଲାର ହାଲ ବିସ୍ତାରିତରୂପେ ଲେଖା, ଆମ୍ଭେମାନେ ସେଥିର ସାରାଂଶ ମାତ୍ର ଉଲ୍ଲେଖ କରିବୁଁ । ଆସାମୀମାନଙ୍କ ସମ୍ବନ୍ଧରେ ହାକିମ ଲେଖିଅଛନ୍ତି :—

ନଂ ୧ ଆସାମୀ ନାଜର ନଟବର ଦାସ ଉପସ୍ଥିତ ଦଃ ଆଃ ୪୦୯ ଦଫା ମାମଲାରେ ନିର୍ଦ୍ଦୋଷ । ସେ ନିଜେ ସରକାରୀ ଟଙ୍କା ଆତ୍ମସାତ୍ କରିନାହିଁ, ତେବେ ତାହାର ଗଫଲତିରେ ଅବଶ୍ୟ ଟଙ୍କା ନଷ୍ଟ ହୋଇଅଛି । ଏ କ୍ଷେତ୍ରରେ ସେ ନିର୍ଦ୍ଦୋଷରେ ଖଲାସ, ମାତ୍ର ସରକାରୀ ସମସ୍ତ ଟଙ୍କା ତାହାଠାରୁ କିମ୍ବା ତାହାର ସମ୍ପତ୍ତିରୁ ଆଦାୟ କରିବା ଉଚିତ ।

ନଂ ୨ ଆସାମୀ ପ୍ରଭୁଦୟାଲ ଭଗତ ଗୋଟାଏ ଭୟଙ୍କର ବଦମାସ୍ ଲୋକ, ମାତ୍ର ସେ ଯେ ସ୍ଥଳେ ଫେରାର ହୋଇଅଛି, ତାହା ସମ୍ବନ୍ଧରେ କୌଣସି ହୁକୁମ ହୋଇ ନ ପାରେ ।

ନଂ ୩ ଆସାମୀ ରାଘବ ମହାନ୍ତି ଗୋଟାଏ ନିତାନ୍ତ ନିର୍ବୋଧ ଲୋକ, ତାହା କୃତକର୍ମର ଦାୟିତ୍ୱ କିଛି ବୁଝିବାକୁ ତାହାର ଜ୍ଞାନ ନ ଥିଲା, କେବଳ ବଦମାଶ୍-ମାନଙ୍କ ପରାମର୍ଶରେ ପଡ଼ି ଟଙ୍କା ଚୋରି କରିଅଛି । ଅତଏବ ଆମ୍ଭେ ଅନୁଗ୍ରହ କରି ତାହାକୁ ଅଳ୍ପ ଦଣ୍ଡ ଦେବାକୁ ଇଚ୍ଛା କରୁଁ । କଠିଣ ପରିଶ୍ରମ ସହିତ ଏକ ବର୍ଷ ଜେଲଖାନାରେ ଆବଦ୍ଧ ରଖାଯାଉ ।

ନଂ ୪ ଆସାମୀ ଚନ୍ଦ୍ରକଳା ବୈଷ୍ଣବୀ—

ଏହି ଆସାମୀ ଗୋଟାଏ ଭୟଙ୍କର ବୁଦ୍ଧିମତୀ, ଭୟଙ୍କର ଦୁଶ୍ଚରିତ୍ରା ବଜାରୀ ସ୍ତ୍ରୀ ଅଟେ । ଚତୁରତାରେ ନାଜର ନଟବର ଦାସକୁ ଭୁଲାଇ ରଖିଥିଲା । ଏହି ଦୁଷ୍ଟା ସ୍ତ୍ରୀର ପରାମର୍ଶ କୌଶଳ ସହାୟତା ସନ୍ଧାନରେ ଅନ୍ୟାନ୍ୟ ଆସାମୀମାନେ ଚୋରି କରିବାକୁ କ୍ଷମ ହୋଇଛନ୍ତି । ଅତି କୌଶଳ ଓ ବିଶ୍ୱାସଘାତକତା ପୂର୍ବକ ନାଜର ବସାରୁ ଅଳଙ୍କାର ଚୋରାଇ ଆଣିଛି । ପୁଣି ଚୋରି ଅପରାଧରୁ ମୁକ୍ତ ପାଇବା ନିମନ୍ତେ ନାନାପ୍ରକାର କୌଶଳ ଅବଲମ୍ବନ କରିବାକୁ ତ୍ରୁଟି କରିନାହିଁ । ଅତଏବ ହୁକୁମ କରୁଅଛୁଁ କି, ଦଣ୍ଡବିଧି ଆଇନର ୩୭୯ ଓ ୧୦୯ ଦଫା ଅନୁସାରେ କଠିଣ ପରିଶ୍ରମ ସହିତ ପାଞ୍ଚ ବର୍ଷ ମିଆଦ ଏବଂ ଦୁଇ ଶତ ଟଙ୍କା ଜରିମାନା କରାଯାଉ । ଜରିମାନା ଅସୁଲ ନ ହେଲେ ଅତିରିକ୍ତ ଏକ ବର୍ଷ ଜେଲରେ ଆବଦ୍ଧ ରଖାଯାଉ । ଇତି ।

ଜିଃ ଏଃ ମେକ୍ ଫର୍ସନ
ସେସନ ଜଜ—କଟକ ।

———

# ଲଛମା

## ( ଐତିହାସିକ ଉପନ୍ୟାସ )

---

-୧-

### ରାହାଜାନୀ

ପୁଷମାସିଆ ଦିନ, ବେଳବୁଡ଼ିଆ ସମୟ । ବଡ଼ ଗୋଟିଏ ଜଳନ୍ତା ସୁନା ପେଣ୍ଡୁଳା ପରି ସୂର୍ଯ୍ୟଦେବ ପଶ୍ଚିମ ଆକାଶରେ କରଣମାଳା ବୁଡ଼ି ବୁଡ଼ି ତଳକୁ ଖସି ପଡ଼ୁଛନ୍ତି । ନାଲ, ଲାଲ, କଳା, ଧଳା, ବଇଗଣିଆ, ପାଉଁଶିଆ ନାନାରଙ୍ଗର ନାନା ଆକାରର ମେଘରେ ପଶ୍ଚିମ ଆକାଶ ଅଧାଅଧି ଅପୂର୍ବ ଶ୍ରୀ ଧାରଣ କରିଛି । ପଲକୁ ପଲ କାଉ କା କା ରଡ଼ି ଛାଡ଼ି ବସାମୁହାଁ ଧାଇଁଛନ୍ତି । କାହିଁ ବା ଗୋଠଛଡ଼ା ଗୋଟାଏ କାଉ ରେଲ ଛାଡ଼ିବା ଘଣ୍ଟାଧ୍ୱନି ଶୁଣି ଥାର୍ଡ଼କ୍ଲାସ୍ ପାସେଞ୍ଜର ପରି ଲଣ୍ଡ ଭଣ୍ଡ ହୋଇ ଧାଇଁଛି । ଅନ୍ଧାର ସାଙ୍ଗରେ ଶୀତ ମାଡ଼ିଆସୁଛି । ଠିକ୍ ଏହିପରି ଗୋରୁ ବାହୁଡ଼ା ସମୟରେ ଗୋଡ଼ଖାଲ ଘାଟି ପାଖ ଲାଗେ ଲାଗେ ବଡ଼ ଦାଣ୍ଡରେ ପଞ୍ଝାଏ ଯାତ୍ରୀ ଦେଖାଗଲେ । ଜଣାଯାଏ ଜଗନ୍ନାଥ ଯାତ୍ରୀ । ସୁବର୍ଣ୍ଣରେଖା ପାର ହୋଇ ଦକ୍ଷିଣ ମୁହାଁ ଚାଲଛନ୍ତି । ଆଲୁଅ ଥାଉଣୁ ଘାଟି ଧରିବା ଆଶାରେ ଚାଲଟା କିଛି ଚଞ୍ଚଳ । ଦିନଯାକ ଚାଲିଚାଲି ଥକି ପଡ଼ିଛନ୍ତି, କାହାରି ମୁହଁରେ କଥା ନାହିଁ, ଏକ ମନରେ ଚାଲଛନ୍ତି । ବେଶ ଭୂଷଣରୁ ଜଣାଯାଏ, ପଶ୍ଚିମାଯାତ୍ରୀ ହେବେ । ଆଗେ ଆଜିକାଲିକା ପରି ଭଲ ବନ୍ଧା ଶଗଡ଼ଦାଣ୍ଡ ନ ଥିଲା । ମଧ୍ୟବିତ୍ତ ଲୋକେ ଟାଟୁରେ, ବଡ଼ ଲୋକେ ଘୋଡ଼ା, ଉଟ ସବାରିରେ ଯିବା ଆସିବା କରୁଥିଲେ । ଯାତ୍ରୀ ପଞ୍ଝାରେ ସ୍ତ୍ରୀ ତିନି ଜଣ ଆଉ ପୁରୁଷ ପାଞ୍ଚଜଣ । ସମସ୍ତେ ଟାଟୁରେ ସବାର । ଏହି ଆଠଟା ଟାଟୁ ଛଡ଼ା ଆଉ ଛଅଟା ମାଲ ଲଦନ ଟାଟୁକୁ ଚାରିଜଣ ପଯ୍ୟଦଲ ଲୋକ ହେଟ୍ ହେଟ୍ କରି ଅଡ଼ାଇ ନେଉଛନ୍ତି । ପଞ୍ଚ ହତିଆରବନ୍ଧ ଆଠ ଦଶ ଜଣ ଭେଣ୍ଡିଆ ଆଗପଛ ହୋଇ ଚାଲୁଛନ୍ତି । ଏମାନେ ଯାତ୍ରୀ ଦଳର ରକ୍ଷକ ହେବେ । ଯାତ୍ରୀଦଳର ପଛ ମଠରେ ହଠାତ୍ ଦୁଇ ଜଣ ଘୋଡ଼ସବାର ଦେଖାଗଲେ । କ୍ରମେ ତିନି ଜଣ—ଚାରି ଜଣ—ଛଅ ଜଣ; ସଂଖ୍ୟା ବଢ଼ିଯାଉଛି । ଅଭ୍ୟାଗତ ଘୋଡ଼ସବାରମାନେ ଖୁବ୍ ବଳୁଆ ଏବଂ ପଞ୍ଚହତିଆରି । ଘୋଡ଼ାଗୁଡ଼ିକ ସୁନ୍ଦର, ବଳବାନ୍, ଚଞ୍ଚଳଗତି—କଷାଘାତ-ଅସହିଷ୍ଣୁ । ନବାଗତ ସବାରମାନଙ୍କର କାହାରି ପ୍ରତି ନଜର ନାହିଁ ଏକ ମନରେ ଚାଲିଛନ୍ତି । ହେଲେ କେହି ସନ୍ଧାନୀ ଲୋକ ଥିଲେ ଦେଖିଥାନ୍ତା, ସେମାନେ ଯେମନ୍ତ ଟେରେଇ ଟେରେଇ ଯାତ୍ରୀଦଳଙ୍କୁ ଭଲକରି ଦେଖୁଛନ୍ତି । ଅଭ୍ୟାଗତ ଘୋଡ଼ସବାରମାନେ ପ୍ରଥମେ ଛାଡ଼ଛାଡ଼ ହୋଇ ଚାଲୁଥିଲେ—ତହିଁ ଉତ୍ତାରେ

ଧୀରେ ଧୀରେ ଭିଡ଼ ଭିଡ଼ ଯାତ୍ରୀଦଳରେ ମିଶିଲେ—ଏମନ୍ତ କି, ସ୍ତ୍ରୀମାନଙ୍କ ଛଟ ସହିତ ସେମାନଙ୍କ ଘୋଡ଼ାଦେହ ଲଗାଲଗି ହୋଇଗଲାଣି । ଯାତ୍ରୀଦଳରୁ ଜଣେ ଭେଣ୍ଡିଆ ଡାକଦେଲା—ତଫାତ୍ । ମାତ୍ର ନବାଗତ ଘୋଡ଼ସବାରମାନେ ନ ଶୁଣିଲାପରି ଆହୁରି ଭିଡ଼ଭିଡ଼ ଗ୍ଲଲେ । ଜଣେ ରକ୍ଷକ ଟିକିଏ ଖପ୍ପା ହୋଇଯାଇ ଗୋଟାଏ ଘୋଡ଼ାର ଲଗାମ ଧରି ଭିଡ଼ ଦେଲାରୁ ସବାରଟା ଗୋଟାଏ ଶିଙ୍ଗା ଧରି ଭେଁ-ଭେଁ-କରି ଫୁଙ୍କିଲା । ଶିଙ୍ଗା ଶବ୍ଦ ଶୁଣିବାମାତ୍ରେ ଯାତ୍ରୀମାନେ ଅନାଇ ଦେଇ ଦେଖିଲେ, ଶତାବଧି ହତ୍ୟାରବନ୍ଧ ଘୋଡ଼ସବାର ଚଞ୍ଚଳ ଭାବରେ ବମ୍ ବମ୍ ଉଲ୍ଲାସ ରଡ଼ଗୁଡ଼ ଚ୍ଚରିଆଡ଼ୁ ମାଡ଼ ଚଢ଼ୁଛନ୍ତି । ଯାତ୍ରୀଦଳ ବିପଦର ଗୁରୁତ୍ୱ ଅନୁଭବ କଲେ; ମାତ୍ର ହଠାତ୍ କିଛି ସ୍ଥିର କରି ନ ପାରି ଭକୁଆ ମାଲେ ପରି ଦଣ୍ଡକପାଇଁ ଛିଡ଼ା ହୋଇଗଲେ । ବାଘଟଲ ଭିତରେ ହରିଣ ଭଳି ସ୍ତ୍ରୀଗୁଡ଼ିକ ଥରଥର ହୋଇ ଥରୁଛନ୍ତି । ଯାତ୍ରୀମାନେ ସମ୍ପତ୍ତିର ଆଶା ତ୍ୟାଗ କରି ନବାଗତ ଘୋଡ଼ସବାରମାନଙ୍କଠାରେ ଶରଣ ପଶି ଯାଇଥିଲେ କେଜାଣେ ବା କେତେଗୁଡ଼ିଏ ମହାପ୍ରାଣୀ ରକ୍ଷା ପାଇ ପାରିଥାନ୍ତେ—ହେଲେ କ୍ଷତ୍ରିୟମାନଙ୍କ ସ୍ୱଭାବରେ ବିଧାତା ସେପରି ପାଠ ଲେଖି ନାହାନ୍ତି । ସାମର୍ଥ୍ୟ ଥାଉଁ ଥାଉଁ ଶତ୍ରୁ ଆଗରେ ନୁଆଁଣ ହେବା ସେମାନେ ନିନ୍ଦାର କଥା ବୋଲି ବିଚାର କରନ୍ତି । ସେମାନଙ୍କ ହିସାବରେ ସ୍ତ୍ରୀମାନଙ୍କ ମର୍ଯ୍ୟାଦା ରକ୍ଷାପାଇଁ ଯେ ପ୍ରାଣ ଦେବାକୁ ପ୍ରସ୍ତୁତ ନୁହେ, ତାହାର ଜୀବନ-ଧାରଣ ବୃଥା । ଏପରି ପ୍ରାଣୀ ଲୋକସମାଜରେ କଳଙ୍କସ୍ୱରୂପ ଅଟନ୍ତି । ଯାତ୍ରୀଦଳପତି ଡାକି ଦେଲେ "ହୁସିଆର—ଆପ୍‌ନା ଆପ୍‌ନା କାମପର ହାଜର ହୋଯାଓ ।"

ଆଦେଶ ପ୍ରାପ୍ତିମାତ୍ର ରକ୍ଷକମାନେ ଖାପରୁ ତରବାରି କାଢ଼ି ଢାଲ ଧରି ଯୁଦ୍ଧପାଇଁ ଛିଡ଼ା ହୋଇଗଲେ । ଯୁଦ୍ଧାରମ୍ଭ ହେଲା—କୋଡ଼ିଏ ଘଣ୍ଟା ବ୍ୟୂହ ଶତ୍ରୁ ସଙ୍ଗରେ ଯାତ୍ରୀମାନେ ଅବା କେତେବେଳଯାଏ ଯୁଦ୍ଧରେ ଠିଆରହନ୍ତେ ? ମାତ୍ର କପାଳ ଗୁଣରେ ସେମାନଙ୍କୁ ଟିକିଏ ସୁଯୋଗ ମିଳିଗଲା । ସୈନ୍ୟଗଣର ସଂଖ୍ୟା, ଶିକ୍ଷାପଦ୍ଧତି ପୁଣି ସ୍ଥାନର ଗୁଣାଗୁଣ ଉପରେ ଜୟ ପରାଜୟ ଢେର ନିର୍ଭର କରେ । ସେନାପତିମାନେ କୋଃପ୍ଲାଟର ବ୍ରାସ ସ୍ଥାନ ଅଧିକାର କରି ପାରିଥିଲେ ଫେଆଟରିଲ୍ସୁ ଯୁଦ୍ଧର ପରିଣାମ କପରି ଘଟିଥାନ୍ତା, କିଏ ବୋଲିପାରେ ? ପଲଶିର ଆମ୍ବତୋଟା କ୍ଲାଇବଙ୍କ ବିଜୟ ପକ୍ଷରେ ନିଶ୍ଚୟ ଯଥେଷ୍ଟ ସହାୟ ହୋଇଥିଲା । ଯାତ୍ରୀମାନେ ଟିକିଏ ପଛଘୁଞ୍ଚା ଦେଇ ଗୋଡ଼ଖାଲି ନାଳଆଡ଼ ଗୋଟିଏ ଉଚ୍ଚ ଟିପ ଉପରକୁ ଉଠିଯାଇ ବ୍ୟୂହ ରଚନା କରି ଛିଡ଼ା ହେଲେ । ସେ ଜାଗାର ବାଁ ଓ ପିଠିପଟରେ ନାଳ ଏବଂ ଜଙ୍ଗଲ, ଏଥିକୁ ସେ ଦୁଇ ଆଡ଼ୁ ଶତ୍ରୁ ଆକ୍ରମଣର ସମ୍ଭାବନା ନ ଥିଲା । ଆଗ ଆଉ ଦକ୍ଷିଣପଟ ମେଲା—ଶତ୍ରୁମାନଙ୍କର ଯେତେ ଦୁଇ ଦିଗରୁ ଜୁଲମ । ଯାତ୍ରୀମାନେ ସ୍ତ୍ରୀମାନଙ୍କୁ ବଣ ଜଙ୍ଗଲ ଭିତରେ ତଳେ ଛିଡ଼ା କରାଇ ଦେଇ ଛଟ ଗୁଡ଼ିକୁ ପାଚେରି ପରି ଆଗରେ ଛିଡ଼ା କରାଇ ଦେଲେ । ପୁରୁଷମାନେ ସେହି ଅଶ୍ୱପ୍ରାଚୀର ସମ୍ମୁଖରେ ଅର୍ଦ୍ଧବୃତ୍ତାକାର ଭାବରେ ଛିଡ଼ା ହୋଇ ଯୁଦ୍ଧାରମ୍ଭ କଲେ । ହେଲେ ଏହାକୁ ଯୁଦ୍ଧ ବୋଲିଯାଇ ନ ପାରେ । ଏକ ପକ୍ଷରୁ ଭୟଙ୍କର ଆକ୍ରମଣ, ଅନ୍ୟ ପକ୍ଷରୁ ଆତ୍ମରକ୍ଷା ମାତ୍ର । ତଥାପି ଅନେକ ଗୁଡ଼ିଏ ଶତ୍ରୁ ଏକାବେଳକେ ଆକ୍ରମଣ କରିବାକୁ ସୁଯୋଗ ନ ପାଇବାରୁ ଯାତ୍ରୀମାନେ ଦୀର୍ଘ କାଳଯାଏ ଆତ୍ମରକ୍ଷା କରିବାକୁ ସମର୍ଥ ହୋଇଥିଲେ । ବିନାଶକାଳରେ ବିପଦଟା ସୂର୍ଯ୍ୟ ଉଦିଲେ ଅନ୍ଧାର ପରି ଚ୍ଚରିଆଡ଼ୁ ଏକାବେଳକେ ଯେମନ୍ତ ମାଡ଼ ଆସେ ! ଅସ୍ତ୍ରାଘାତ ଆଉ ଗୋଳମାଳରେ ଯାତ୍ରୀମାନଙ୍କର ଛଟ ଗୁଡ଼ାକ ଚମକି ଯାଇ ଏମନ୍ତ ଧାଁ-ଦଉଡ଼ ଲଗାଇଲେ ଯେ, ସେମାନଙ୍କୁ ସମ୍ଭାଳି ରଖିବା ଭାରି ମୁସ୍କିଲ ହୋଇ ପଡ଼ିଲା । ଏହି ସୁଯୋଗରେ ଶତ୍ରୁମାନେ ଏକାବେଳକେ

ଚୁପି ପଡ଼ିଲେ । ଏଣେ ପୁଣି ଅନ୍ଧାର ମାଡ଼ି ଆସିବାରୁ ଉଭୟବର୍ତ୍ତଳ ପକ୍ଷମାନେ ଆଉ ପରସ୍ପର ଚିହ୍ନି ପାରିଲେ ନାହିଁ । ସତକୁ ସତ ଗୋଟାଏ ଜାଗାରେ ଆପଣା ଭିତରେ ହଣାହଣି ହୋଇଗଲେ । ଏଣେ ତସ୍କରମାନଙ୍କ ପକ୍ଷରୁ ବର୍ଷାପାଣି ପରି ଶର ଆଉ ବର୍ଚ୍ଛା ଛୁହାକୁ ଛୁହା ପଡ଼ୁଛି । ଏ ଉତ୍ତାରେ ଯୁଦ୍ଧର ଶେଷ ଫଳ ଲେଖିବା ଅନାବଶ୍ୟକ ।

ତସ୍କରମାନେ ଦେଖିଲେ, ବାଟୋଇମାନେ ତଳେ ପଡ଼ି ଯାଇଛନ୍ତି । ଢେର ଗୁଡ଼ାଏ ମରିଗଲେଣି—ଜଣକେତେ ମୃତ୍ୟୁଯନ୍ତ୍ରଣାରେ ଆର୍ତ୍ତନାଦ କରୁଅଛନ୍ତି । କେହି ବା ପାଣି ପାଣି ବୋଲି ରଡ଼ି ଛାଡ଼ୁଛି ।

ଦରମଲା ମଇଁଷି ପଣ୍ଡା ତଳେ ପଡ଼ି ଛଟପଟ ହେଉଥିବା ଦେଖି କେନ୍ଦୁଆ ଯେମନ୍ତ ଖୁସିଟାଏ ହୁଏ, ତସ୍କରମାନେ ସେହିପରି ଆନନ୍ଦରେ ଯାତ୍ରୀମାନଙ୍କ ମାଲମତା ସବୁ ଗୋଟାଇବାକୁ ଲାଗିଲେ । ଦୁଇଗୋଟି ଦରବୁଢ଼ୀ ଜଙ୍ଗଲ ମଧ୍ୟରେ ମଲା ପରି ପଡ଼ିଛନ୍ତି । ହେଲେ ସେମାନଙ୍କ ଦେହରେ ଅସ୍ତ୍ରାଘାତ ହୋଇନାହିଁ । ଯୁବତୀ ସ୍ତ୍ରୀଟିକୁ ତସ୍କରମାନେ ଆଖପାଖ ଜଙ୍ଗଲ ମଧ୍ୟରେ ଢେର ଖୋଜତଲାସ କଲେ; ମାତ୍ର ଅନ୍ଧକାର ହେତୁରୁ ଠିକଣା କରି ପାରିଲେ ନାହିଁ । ଯାଉ ସେଇଟା, ତାକୁ ବାଘ ଖାଉ—ଏହି କଥା କହି ତସ୍କରମାନେ ଆପଣା ଆପଣା ଗନ୍ତବ୍ୟ ସ୍ଥାନକୁ ଚାଲିଗଲେ ।

———

## -୨-

## ଉତ୍କଳର ପତନ ସମୟ

ପ୍ରଥମ ପରିଚ୍ଛେଦରେ ଯେଉଁ ରାହାଜାନି ବିଷୟ ବର୍ଣ୍ଣନା କରାଯାଇଅଛି, ତାହା ଊଣା ଅଧିକ ଦୁଇଶ ବର୍ଷ ତଳର କଥା, ଉତ୍କଳ ପତନର ଚରମ ସମୟ । ପ୍ରାଚୀନ ଗ୍ରୀସ୍ ଯାଇଅଛି, ରୋମ ନାହିଁ, ଭୁବନବିଖ୍ୟାତ ମିଶରର ସୌଭାଗ୍ୟ ବିଷୟ ବର୍ତ୍ତମାନ ଇତିହାସରୁ ଜଣାଯାଏ । ଅଧିକ କଣ—"ଯଦୁପତେଃ କ୍ୱଗତା ମଥୁରାପୁରୀ, ରଘୁପତେଃ କ୍ୱଗତୋତ୍ତର କୋଶଳଃ ।" ଆଉ କଣ ଉତ୍କଳ ସବୁ ଦିନେ ରହିଥାନ୍ତା ? ସେ ଯାହା ହେଉ ଆମ୍ଭମାନଙ୍କ ଉପନ୍ୟାସ ସହିତ ତାତ୍କାଳିକ ଉତ୍କଳର ଆଭ୍ୟନ୍ତରିକ ଏବଂ ରାଜନୈତିକ ଅବସ୍ଥାର ଯେତିକି ମାତ୍ର ସମ୍ପର୍କ, ଅତି ସଂକ୍ଷେପରେ ସେତିକି ମାତ୍ର ବର୍ଣ୍ଣନ କରିବା ଆବଶ୍ୟକ ବୋଲି ବିବେଚନା କରୁଁ ।

ଆଜିକାଲି ଯେଉଁ ବନ୍ଧା ବଡ଼ ସଡ଼କ ଭାରତର ଉତ୍ତର ଭାଗରେ ପଞ୍ଜାବଠାରୁ ଶ୍ରୀକ୍ଷେତ୍ର ପର୍ଯ୍ୟନ୍ତ ଦକ୍ଷିଣକୁ ସମୁଦ୍ର ଉପକୂଳବ୍ୟାପୀ ମାନ୍ଦ୍ରାଜ ରାମେଶ୍ୱର ଏବଂ ପଶ୍ଚିମ ସୀମା ପୁନା, ବୋମ୍ବେ ସ୍ପର୍ଶ କରି ଭାରତର ଆକଣ୍ଠପାଦପର୍ଯ୍ୟନ୍ତ ଯଜ୍ଞୋପବୀତ ପରି ବିସ୍ତୃତ ରହିଅଛି, ବର୍ତ୍ତ୍ୟମାନ ସମୟରେ ସେଥିର ଚିହ୍ନ ମାତ୍ର ନ ଥିଲା । ଭାରତର ଅଧିକାଂଶ ସ୍ଥାନ ଜଙ୍ଗଲାବୃତ, ଏଥିକି ମାର୍ଗ ନିତାନ୍ତ ଦୁର୍ଗମ । ନଦୀ ନାଳ ତ ସବୁଦିନେ ଅଛି, ବନ୍ଧା ବାଟ ନ ଥିଲା, ପୋଲ କାହୁଁ ଆସିବ ? ବର୍ଷାକାଳରେ ବାଟୋଇମାନଙ୍କର ସଳଖ ବାଟରେ ଚାଲିବାର ଉପାୟ ନ ଥିଲା, ବନ ପର୍ବତ ମଧ୍ୟରେ ବୁଲି ବୁଲି ଚାଲୁଥିଲେ । କାଶୀଧାମରୁ ଶ୍ରୀକ୍ଷେତ୍ରକୁ ଆସିବାକୁ ଦୁଇ ତିନ ବର୍ଷକାଳ ଲାଗୁଥିଲା । ମାର୍ଗ ହିଂସ୍ର ଶ୍ୱାପଦ—ତହିଁରୁ ମଧ୍ୟ ଅଧିକତର ହିଂସ୍ର, ଅଧିକତର ଭୀଷଣ ପ୍ରାଣୀ ଚୋର ଡକାଇତରେ ପୂର୍ଣ୍ଣ । ଏହି ସମୟରେ ପୁଣି ବଙ୍ଗ, ବେହାର, ଉତ୍କଳ ପ୍ରଦେଶର ମାର୍ଗରେ ଅଧିକତର ନିଷ୍ଠୁର, ଅଧିକତର ଭୀଷଣ ଏକଜାତୀୟ ପ୍ରାଣୀ ବିଚରଣ କରୁଥିଲେ । ଏମାନେ ମରହଟ୍ଟା ତସ୍କର । ଚଳିତ ପ୍ରବାଦ ଅନୁସାରେ ଆମ୍ଭେ-ମାନେ ମରହଟ୍ଟାମାନଙ୍କୁ ତସ୍କର ବୋଲି କହିଲୁଁ, ମାତ୍ର କଥାଟା ଠିକ୍ ହେଲା ନାହିଁ । ଯେଉଁ କଙ୍ଗାଳ

ଲକ୍ଷ୍ମୀଛଡ଼ା ଲୋକ ଗୁଡ଼ାକ ଖାଇବାକୁ ନ ପାଇ ପେଟଜ୍ୱାଳାରେ ଲୋକମାନଙ୍କ ଗୃହରୁ ଲାଉ ନିଏ, କଖାରୁ ନିଏ, ଘର ମଧ୍ୟରୁ ଚାଳ ନିଏ, କଂସା ଖଣ୍ଡେ କିମ୍ବା କନାପଟା ଦୁଇ ଖଣ୍ଡ ନେଇ ପଳାନ୍ତି, ସେମାନଙ୍କୁ ଚୋର ବୋଲ, ତସ୍କର ବୋଲ, ଯାହା ବୋଲ, ଠିକ୍ ହେବ । ଆଉ ଯେଉଁମାନେ ଗ୍ରାମକୁ ଗ୍ରାମ, ଦେଶକୁ ଦେଶ ପୋଡ଼ି ଜାଳି ଛାରଖାର କରି ଦେଇ ନିରୀହ ନିର୍ଦୋଷ ଶାନ୍ତ ଶିଷ୍ଟ ପ୍ରାଣୀମାନଙ୍କ ରକ୍ତରେ ଭୂମିକୁ କର୍ଦମମୟ କରି ସେମାନଙ୍କ ନ୍ୟାଯ୍ୟୋପାର୍ଜିତ ପରିବାର ପ୍ରାଣ-ରକ୍ଷାର ଏକମାତ୍ର ଅବଲମ୍ବନସ୍ୱରୂପ ସର୍ବସ୍ୱ ଲୁଣ୍ଠନ କରି ନେଇ ଯାନ୍ତି; ଯେଉଁମାନଙ୍କ ଶୁଭାଗମନରେ ଦେଶର ଶାନ୍ତି ସୁଖ ସମ୍ପତ୍ତି ବିଦୂରିତ ହୋଇ ସୁଦୀର୍ଘକାଳ ପର୍ଯ୍ୟନ୍ତ ହୃଦୟଭେଦୀ ହାହାକାର ପଡ଼ିଯାଏ, ସେମାନେ କି ତସ୍କର ? ସେମାନେ ଲୋକ-ପୂଜ୍ୟ ମହାବୀର ! ଇତିହାସ ସେମାନଙ୍କ ଯଶ ଗାନ କରି ଧନ୍ୟ ହେଉଅଛି । ନେପୋଲିୟନ୍ ମହାବୀର, ଆଲେକ୍-ଜାଣ୍ଡାର ମହାବୀର, ବାବର୍ ମହାବୀର, ଗଜନିର ମାମୁଦ ତ ମହା ମହାବୀର ! ଆଉ 'ଦିଲ୍ଲୀଶ୍ୱରୋ ବା ଜଗଦୀଶ୍ୱରୋ ବା' ଆଉରଙ୍ଗଜେବଙ୍କୁ ମଧ୍ୟ ମହାବୀର ବୋଲଯିବ । କାରଣ ଜିଜିଆ ଅର୍ଥାତ୍ ବିଧର୍ମୀ କର ନ ଦେବାରୁ ସେ ଅନେକ ହିନ୍ଦୁ ଗ୍ରାମକୁ ପୋଡ଼ି ଜାଳି ଦେଇଥିଲେ, ଅନେକ ହିନ୍ଦୁଙ୍କୁ ହତ୍ୟା କରିଥିଲେ । ଏ ହିସାବରେ ମରହଟ୍ଟାମାନେ ମହାବୀର ବୋଲି ଅଭିଧାନର ବାଚ୍ୟ; କାରଣ ଗ୍ରାମଦାହ, ଲୋକହତ୍ୟା, ପରସ୍ୱଲୁଣ୍ଠନ ମହାବୀରମାନଙ୍କର ଯାହା କିଛି ନିତ୍ୟ କର୍ତ୍ତବ୍ୟ, ସେଗୁଡ଼ିକ ସେମାନେ ଅକ୍ଷରେ ଅକ୍ଷରେ ପାଳନ କରିଥିଲେ । ମୂଳ ଦଳଭ୍ରଷ୍ଟ କିମ୍ବା କାର୍ଯ୍ୟାନ୍ତରେ ନିଯୁକ୍ତ ଖଣ୍ଡଦଳ ମରହଟ୍ଟା ଘୋଡ଼ସବାର ପାଇକମାନଙ୍କର ବାହାଜାମା ଏବଂ ଗ୍ରାମଲୁଣ୍ଠନ ଯୋଗେ ଅର୍ଥ ସଂଗ୍ରହ କରିବା ପ୍ରଧାନ କର୍ତ୍ତବ୍ୟ କର୍ମ ଥିଲା । ଗୋଡ଼ଖାଲ ନିକଟସ୍ଥ ବାହାଜାମା ଗୋଟିଏ କ୍ଷୁଦ୍ରଦଳ ମରହଟ୍ଟାମାନଙ୍କ କୀର୍ତ୍ତି ଅଟେ ।

---

-ଗ-

## ସୁବାଦାର ଆଲବର୍ଦି ଖାଁ

ନବାବ ଆଲବର୍ଦି ଖାଁଙ୍କ ସମୟରେ ସୁବେ ବଙ୍ଗଳା ମରହଟ୍ଟାମାନଙ୍କ ଯୋଗେ କି ପ୍ରକାର ଲଣ୍ଡଭଣ୍ଡ ହୋଇ ପଡ଼ିଥିଲା, ଏ କଥା ଇତିହାସପାଠକମାନଙ୍କୁ ବିଶେଷ ଜଣା ।

ନବାବ ଦେଖିଲେ, ରାଜ୍ୟରକ୍ଷାର ଆଉ ଉପାୟ ନାହିଁ, ବିପଦ ରାଶି ଯେମନ୍ତ ତାଙ୍କୁ ଗିଳି ପକାଇବା ପାଇଁ ଚାରିଆଡ଼ୁ ବେଢ଼ି ଆସୁଛି । ଗଲା ଦୁଇ ସନର ଖଜଣା ଦିଲ୍ଲୀ ଦରବାରରେ ପେଠ ହୋଇ ନାହିଁ । ମହମ୍ମଦସା ବାଦସାଙ୍କ ସହିମୋହର ଚଲିତ ପରୁଆନା ଧରି ମୁନସବଦାର ମୁରାଦ ଖାଁ ମୁରଶିଦାବାଦ କଚେରି ଦୁଆରେ ଧାରଣା ଦେଇ ବସିଛି । ମରହଟ୍ଟା ପେଶବା ବାଲାଜୀ ରାଓ ଲେଖି ପଠାଇଛନ୍ତି କି, ତାଙ୍କ ଚୌଥ ପାଉଣା ବାବଦ ଟଙ୍କା ଶୀଘ୍ର ପରିଶୋଧ ନ କଲେ ସେ ଆପେ ଆସି ଅସୁଲ କରିବା ନିମନ୍ତେ ଚେଷ୍ଟା କରିବେ । ଏଥିକୁ ତାଙ୍କ ସଙ୍ଗରେ ଯୁଦ୍ଧ ହେଲା ବୋଲି ଜାଣ । ଏଣେ ନିଜ ପାଇକଗୁଡ଼ାକ ବେଳମାଫିକେ ଦରମା ନ ପାଇ ନିତାନ୍ତ ଅବାଧ ହୋଇପଡ଼ିଲେଣି । ବିଦେଶୀ ପାଇକମାନେ ଚାକିରିରେ ଇସ୍ତଫା ଦେଇ କହି ବୋଲି, ଥୋକେ କିଛି ନ ବୋଲି ଚାଲିଗଲେଣି—ଯାଉଛନ୍ତି । ସେନାପତି ମୀର ହବିବ୍ ମରହଟ୍ଟାମାନଙ୍କୁ ବାଟ ଓଗାଳିବାପାଇଁ ମେଦିନୀପୁରଠାରେ ଘାଟି ଜଗି-ଥିଲେ । ଅଣ୍ଟାକୁ ଗୋଟାକମର କାଟିବାକୁ ବସିଲାଣି, ସେ ଏବେ ପାଇକମାନଙ୍କୁ ଧରି ମରହଟ୍ଟା ସହିତ ମିଳନ୍ତି । ବୁଦ୍ଧି-ମାନ ଆଲବର୍ଦ୍ଦି ଖାଁ ବୁଝିଲେ, ସବୁ ବିପଦର ମୂଳ କାରଣ ଭାସ୍କର ପଣ୍ଡିତ । ପଣ୍ଡିତକୁ ଭଲକରି ଶାସନ ନ କଲେ ରାଜ୍ୟରକ୍ଷାର ଉପାୟ ନାହିଁ । ଭାସ୍କର ପଣ୍ଡିତ ବାଲେଶ୍ୱର ବନ୍ଦରଠାରେ ମେରୁଖମ୍ବ ପୋତି ବସିଛନ୍ତି । ଏ ଅଞ୍ଚଳରେ

ନବାବ ଅଧିକାରର ଚିହ୍ନମାତ୍ର ନାହିଁ । ବାଲେଶ୍ୱର ବନ୍ଦରର ନବାବ ବାହାଲ ଫୌଜଦାର କତଲୁ ଖାଁ ପଳାଇ ଯାଇ କେନ୍ଦୁଝର ବଣ ମଧ୍ୟରେ ଲୁଚି ରହିଛନ୍ତି । ବର୍ଦ୍ଧମାନ, କାଟୁଆ, ହୁଗୁଳୀ, ନଦିଆ ପ୍ରଭୃତି ଅଞ୍ଚଳର ପ୍ରଧାନ ପ୍ରଧାନ ବାସିନ୍ଦାମାନେ ଘର ମାଲମତା ପିଲାକୁଟୁମ୍ବ ଧରି ପଳାଇଯାଇ ଜାହାଙ୍ଗିରପୁର, ମାଲଦା, ରାମପୁର, ବୋଆଲିଆ ପ୍ରଭୃତି ଜଙ୍ଗଲ ଅଗମ୍ୟ ସ୍ଥାନମାନଙ୍କରେ ଲୁଚି ରହିଛନ୍ତି । ସୁବାଦାରଙ୍କ ପଛ ଧରି ଚାଲିବାରୁ ବାଲେଶ୍ୱର ଅଞ୍ଚଳର ଖଣ୍ଡାଏତ ପାଇକମାନେ ନିର୍ମୂଳ ହୋଇଗଲେଣି । ପାଲନ୍ଦୀ ଉତ୍ତର କୂଳଠାରୁ କଂସାବତୀ ଦକ୍ଷିଣ କୂଳଯାଏ ସେମାନଙ୍କ ଚୌପାଢ଼ୀର ଚିହ୍ନମାତ୍ର ନାହିଁ । ଜାମକୁଣ୍ଡା ଗଡ଼ର ରାଜୀବ ଦଳଗଞ୍ଜନ, ମାହାବନ୍ଦର ଗଡ଼ର ବିଜୟ ମଲ୍ଲ, ବାଲିଆପାଳର ହରିହର ସାମନ୍ତରାୟ ପ୍ରଭୃତି ମୁଖଣ୍ଡ ମୁଖଣ୍ଡ ଖଣ୍ଡାୟତମାନେ ମଲ୍ଲଭୂମ, ଶିଖର ଭୂମ, ଝାଡ଼ଗାଁ ପ୍ରଭୃତି ଜଙ୍ଗଲରେ ବାସ କରି ରହିଛନ୍ତି । ବାଲେଶ୍ୱର ବନ୍ଦରର ଦକ୍ଷିଣ ଅଞ୍ଚଳର ଖଣ୍ଡାଏତମାନେ ନୀଳଗିରି ଜଗଝରୀ, ବେଣାଗଡ଼ିଆ, କଇଁସାରି, କପ୍ତିପଦା ଅରଣ୍ୟ ସ୍ଥାନମାନଙ୍କରେ ଆଶ୍ରୟ ନେଇ ରହିଛନ୍ତି । ବର୍ତ୍ତମାନ ଖଣ୍ଡାଏତ କୁଳର ପତନ ସମୟ । ନିମୁଣ୍ଡିଆ ହୋଇ କେତେକାଳ ଆତ୍ମରକ୍ଷା କରିବାକୁ ସମର୍ଥ ହେବେ ? ଏଥିକୁ ଭାସ୍କର ପଣ୍ଡିତଙ୍କ ଉପରକୁ ଠେଲାଟିଏ ଫୋପାଡ଼ିବାକୁ କେହି ନାହିଁ । ବଙ୍ଗଳା ଦେଶ ମଧ୍ୟରେ ତେତେବେଳେ ସୂତାନଟି, ଗୋବିନ୍ଦପୁର ବା ନୂତନ କଲିକତା ନିରୁପଦ୍ରବ ଥିଲା । ଇଷ୍ଟଇଣ୍ଡିଆ ନାମଧାରୀ ଥୋକେ ଇଂରେଜ ବେପାରୀ ସେ ସ୍ଥାନରେ କିଣା ବିକା କାରବାର କରୁଥିଲେ । ମରହଟ୍ଟାମାନଙ୍କ ଉପଦ୍ରବରୁ ରକ୍ଷା ପାଇବା ସକାଶେ ଗୋଟାଏ ଗଡ଼ଖାଇ ଖୋଳାଇଥିଲେ—ତାହାର ନାମ ଦେଇଥିଲେ ମରହଟ୍ଟା ଡିଚ୍ । ଆଜିଯାଏ ସେ ନାମ ଏବଂ ସ୍ଥାନର ଚିହ୍ନ ବିଦ୍ୟମାନ ରହିଅଛି । ଇଂରେଜ ବେପାରୀମାନଙ୍କର ଲୁଣ, ରେସମ, ତସର, ଢାକାଇ ଏବଂ ବାଲେଶ୍ୱରୀ ଲୁଗାର କାରବାର ଥିଲା । ସେହି କାରବାର ଉପଲକ୍ଷରେ ଦେଶୀ ଲୋକମାନଙ୍କ ସଙ୍ଗରେ ସେମାନଙ୍କ ସମ୍ପର୍କ । କାରବାରର ସୁବିଧା ପୁଣି ମରହଟ୍ଟାମାନଙ୍କ ହାତରୁ ରକ୍ଷା ପାଇବାପାଇଁ ଦେଶର ପ୍ରଧାନ ପ୍ରଧାନ ଧନବନ୍ତ ଲୋକେ ବାସଗୃହ ନିର୍ମାଣ କରି କଲିକତାରେ ବସବାସ କରିବାକୁ ଆରମ୍ଭ କରୁଥିଲେ । କଲିକତା ବିନା ସେ ସମୟରେ ଅନ୍ୟ କୌଣସି ସ୍ଥାନ ନିରାପଦ ନ ଥିଲା । ମରହଟ୍ଟା ଘୋଡ଼ସବାର ପାଇକେ କେଉଁଦିନ କେତେବେଳେ ଚଢ଼ି ଦେଶଟା ଲୁଟିପାଟି ଦେଇଯିବେ, ଏ କଥା ମନରେ କରି ଦେଶ ଲୋକେ ଗ୍ଲାନିଆଁ ହୋଇ ଯାଉଥିଲେ । ଚାଷ କରିବାକୁ ବେଳ ନାହିଁ ? ବେପାର ବଣିଜ କରୁଛନ୍ତି କିଏ ? ଏଥିକୁ ଖଜଣା ଅସୁଲର ଉପାୟ ନ ଥିଲା । ମୁରଶିଦାବାଦ ନବାବଙ୍କ ଗନ୍ତାଘର ଝାଡ଼ଝଡ଼ ହୋଇ ଯାଇଛି । ନବାବ ଅଲିବର୍ଦ୍ଦିଙ୍କ ଘରିଆଡ଼ର ଉପାୟ ବନ୍ଦ । ଅବଶେଷରେ ସେ ଧନକୁବେର ଜଗତ୍‌ଶେଠଙ୍କୁ ଖଣ୍ଡେ ଚିଠା ଲେଖିଦେଇ ଅଶୀ ଲକ୍ଷ ଟଙ୍କା ଋଣ ନେଲେ । ସେହି ଟଙ୍କାରେ ପାଇକମାନଙ୍କ ପିଛିଲା ଦରମା ଛୁଡ଼ାଇ ଦେଇ ନୂଆ ପାଇକ ଥୋକେ ମଧ୍ୟ ବାହାଲ କଲେ ।

---

-୪-

## ସାମନ୍ତରାୟ ରାଘବ ରାଉସିଂହ ବୈରିଗଞ୍ଜନ ମାନଧାତା

ଉତ୍କଳ ସ୍ୱାରବଲମ୍ବର ଚରମକାଳ ପର୍ଯ୍ୟନ୍ତ ଥୋକେ ଦୁର୍ଗେଶ୍ୱର ଆପଣା ଆପଣା ପ୍ରଭୁତ୍ୱ ଏବଂ ମହିମା ଅକ୍ଷୁଣ୍ଣ ରଖିବାକୁ ସମର୍ଥ ଥିଲେ । ଚିଲିକା ହ୍ରଦର ଦକ୍ଷିଣାଞ୍ଚଳରେ କେତେ ଦୁର୍ଗପତି—ଏମାନଙ୍କ ମଧ୍ୟରୁ କେତେକ ଜଣ ଗଜପତି ବଂଶର ଶାଖା ପ୍ରଶାଖା ବଂଶଧର ଏବଂ ଥୋକେ ଖଣ୍ଡାଏତ ଦଳପତି ଅଛନ୍ତି—

ଦୂରବର୍ତ୍ତୀ ସ୍ଥାନରେ ବାସସ୍ଥାନ ଏବଂ ସମରକୌଶଳ ତଥା ଦୁର୍ଗମ ଅଞ୍ଚଳରେ ବାସ ଯୋଗୁଁ ପଠାଣ ବା ମୋଗଲମାନଙ୍କ ହାତର ଆଞ୍ଚ ଏମାନଙ୍କ ଦେହକୁ ଲାଗି ନ ଥିଲା । ଏଥିକୁ ଆମ୍ଭମାନଙ୍କ ଏହି କ୍ଷୁଦ୍ର ଆଖ୍ୟାୟିକା ସହିତ ସେମାନେ ସମ୍ପର୍କଶୂନ୍ୟ ।

ଉତ୍କଳର ଉତ୍ତରପ୍ରାନ୍ତସ୍ଥ ଜଳେଶ୍ୱର ରାୟବଣିଆ * ଦୁର୍ଗର ତାତ୍କାଳିକ ଅଧିପତିଙ୍କ ନାମ ସାମନ୍ତରାୟ ରାଘବରାଟସିଂହ ଜଗଦ୍ଦେବ ବୈରିଗଞ୍ଜନ ମାନଧାତା । ଏତେବଡ଼ ଗଡ଼ର ଅଧୀଶ୍ୱର, ସେହିପରି ଖୁବ୍ ଗୋଟାଏ ଅସାଧାରଣ ବଡ଼ ନାମ ହେବା ନିତାନ୍ତ ସମ୍ଭବ । ତେବେ ପାଠକମାନେ ବାରମ୍ବାର ପଢ଼ି ଥକି ପଡ଼ିବେ, ଏଥିପାଇଁ ଆମ୍ଭେମାନେ ସେମାନଙ୍କ ପ୍ରତି ବିଶେଷ ଅନୁଗ୍ରହ ପ୍ରକାଶ କରି କେବଳ ମାନଧାତା ସାମନ୍ତ ବୋଲି ଲେଖିବୁଁ । ମାନଧାତାଙ୍କ ଅଧୀନରେ ତିରିଶ ହଜାର ବୃତ୍ତିଭୋଗୀ ଖଣ୍ଡାଏତ ପାଇକ ଥିଲେ । ବାଲେଶ୍ୱର ବନ୍ଦର ପଠାଣମାନଙ୍କ ହସ୍ତଗତ ହେବାରୁ ପ୍ରାୟ କୋଡ଼ିଏ ହଜାର ପାଇକ ଆପଣା ଆପଣା ମାନସମ୍ଭ୍ରମ ରକ୍ଷା କରିବା ଉଦ୍ଦେଶ୍ୟରେ ପାର୍ବତ୍ୟ ପ୍ରଦେଶରେ ବସବାସ କରୁଅଛନ୍ତି । ବର୍ତ୍ତମାନ ମାନଧାତାଙ୍କ ଅଧୀନସ୍ଥ ପାଇକ ସଂଖ୍ୟା ଦଶ ହଜାର ମାତ୍ର ।

ଉତ୍କଳର ପତନର ଯେ ସମସ୍ତ କାରଣ ଥାଉ, ହେଲେ ସ୍ୱାଧୀନ ମହାରାଜାମାନଙ୍କର ବୌଦ୍ଧ ଏବଂ ବୈଷ୍ଣବ ଧର୍ମ ଅବଲମ୍ବନହିଁ ପ୍ରଧାନତମ କାରଣ ଅଟେ । ନରଶୋଣିତ ବିନିମୟରେ ସ୍ୱାଧୀନତା କ୍ରୟ ବା ରକ୍ଷା କରିବା ନିତାନ୍ତ ନିନ୍ଦନୀୟ ବିଷୟ ଅଟେ । ଏଥିକୁ ମହାରାଜାମାନଙ୍କର ଯୁଦ୍ଧ କାର୍ଯ୍ୟରେ ଅନାସ୍ଥା ହେତୁ ଖଣ୍ଡାଏତ ପାଇକ ପ୍ରଧାନମାନେ ମସ୍ତକହୀନ ଅବସ୍ଥାରେ ଛିନ୍ନଭିନ୍ନ ହୋଇ ଯାଇଅଛନ୍ତି । ବାହୁବଳରେ ମରହଟ୍ଟା ବା ପଠାଣମାନେ ଉତ୍କଳ ଜୟ କରିଅଛନ୍ତି, ଏ କଥା ଯେଉଁ ଇତିହାସ ବୋଲେ, ସେ ଘୋର ମିଥ୍ୟାବାଦୀ । ଉତ୍କଳକ୍ଷେତ୍ରରେ ତୁର୍କ ଏବଂ ମରହଟ୍ଟାଙ୍କ ବିଶେଷ ସଂଘର୍ଷଣ ସମୟରେ ଆମ୍ଭମାନଙ୍କ ମାନଧାତା ସାମନ୍ତ ତୁର୍କପଟ୍ଟ ଧରି ମଧ୍ୟ ନିପଦରେ ଥିଲେ । ସେଥିର କାରଣ ରାୟବଣିଆ ଦୁର୍ଗ ନିତାନ୍ତ ଦୃଢ଼ ଏବଂ ବିପକ୍ଷର ଅଜେୟ । ଯେଉଁ ଦଶ ହଜାର ପାଇକ ଅଧୀନରେ ଥିଲେ, ସେମାନେ ମହାବୀର, ସମରସମର୍ଥ ଏବଂ ମାନଧାତାଙ୍କ ଆଜ୍ଞାବହ । ପାଇକମାନେ ମାସିକ ନଗଦ ଟଙ୍କା ବେତନ ପାଉ ନ ଥିଲେ, ପ୍ରତ୍ୟେକ ଜଣର ସ୍ୱତନ୍ତ୍ର ସ୍ୱତନ୍ତ୍ର ଜାଗିରି ଜମି ଥିଲା । ଶିବାଜୀଙ୍କ ଘୋଡ଼ସବାର ପାଇକ, ରାଜପୁତନାର କ୍ଷତ୍ରିୟ ଯୋଦ୍ଧା, ଗୁରୁ ଗୋବିନ୍ଦଙ୍କ ପ୍ରତିଷ୍ଠିତ ଶିଖସେନାଙ୍କ ପରି ରାଜବ୍ୟବସ୍ଥାନୁସାରେ ପାଇକମାନେ ଶାନ୍ତି ସମୟରେ କୃଷି ଏବଂ ବିଦ୍ରୋହ ସମୟରେ ଯୁଦ୍ଧରେ ନିଯୁକ୍ତ ଥିଲେ । ପୁଣି ସୁଦୂର ଇତିହାସରୁ ଜଣାଯାଏ, ଶାକ୍ୟବଂଶୀୟ କ୍ଷତ୍ରିୟମାନେ ମଧ୍ୟ କୃଷି ଏବଂ ସମର ଉଭୟ କାର୍ଯ୍ୟରେ ନିଯୁକ୍ତ ଥିଲେ ।

ଆପଣା ଆପଣା କୃଷି କାର୍ଯ୍ୟରେ ନିଯୁକ୍ତ ଥିବାରୁ ରାୟବଣିଆ ପାଇକମାନେ ସର୍ବଦା ସମସ୍ତେ ଉପସ୍ଥିତ ନ ଥାନ୍ତି । ପ୍ରୟୋଜନ ସମୟରେ ଗଡ଼ରେ ସାଙ୍କେତିକ କଂସା ବାଜେ, ଧଣ୍ଡି ଉଡ଼େ, ବୀରକାହାଳୀ ବାଜେ ଏବଂ ରାତିରେ ହାବେଲି ଛୁଟେ, ଘାଟି ଘାଟିରେ ଏମନ୍ତ ବନ୍ଦୋବସ୍ତ ଯେ, ପ୍ରହରକ ମଧ୍ୟରେ ଦଶ କୋଶ ଦୂରର ପାଇକ ଆସି ଠୁଳ ହୋଇଯାନ୍ତି । ଉତ୍କଳର ସ୍ୱାଧୀନ ନରପତିଙ୍କ ଆଧିପତ୍ୟ ସମୟରେ ମଧ୍ୟ ଏହିପରି ନିୟମ ଯୋଗେ ପକ୍ଷକ ମଧ୍ୟରେ ସମସ୍ତ ଉତ୍କଳରୁ ତିନି ଲକ୍ଷ ପାଇକ ରାଜସିଂହଦ୍ୱାରରେ ହାଜର ହୋଇ ମଜୁରା କରୁଥିଲେ ।

---

* ଦୁର୍ଗର ସ୍ଥାପନକର୍ତ୍ତାଙ୍କ ଉପାଧି ଥିଲା ରାୟ ବଳିଆରସିଂହ । ତାହାଙ୍କ ନାମ ଅନୁସାରେ ଦୁର୍ଗର ନାମ ଥିଲା ରାୟବଳିଆର—କାଳକ୍ରମେ ରାୟବଣିଆ ନାମ ଧାରଣ କରିଅଛି ।

ଉତ୍କଳ ଖଣ୍ଡରେ ମରହଟ୍ଟାମାନଙ୍କ ଗଡ଼ବନ୍ଧୀ ପର୍ଯ୍ୟବେକ୍ଷଣ ଏବଂ ସେମାନେ ଯେପରି ସୁବର୍ଣ୍ଣରେଖା ପାର ହୋଇ ସହଜରେ ବଙ୍ଗଦେଶରେ ପ୍ରବେଶ କରି ନ ପାରନ୍ତି, ସେଥିର ଯତ୍ନ କରିବା ନିମନ୍ତେ ମୁରଶିଦାବାଦ ଦରବାର ମୈତ୍ରୀଭାବରେ ମାନଧାତାଙ୍କୁ ସନନ୍ଦ ଏବଂ କର୍ମଦା ଚକଲା ପାଇକ ଖୋରପୋଷ ସ୍ୱରୂପ ଇନାମ ଦେଇଥିଲେ । ମାନଧାତା ଆପଣା କର୍ମରେ ତ୍ରୁଟି କରି ନାହାନ୍ତି । ତାଙ୍କ ଯତ୍ନରେ ବର୍ଗିମାନେ ସୁବର୍ଣ୍ଣରେଖା ପାର ହୋଇ ପାରୁ ନ ଥିଲେ । ସେମାନଙ୍କୁ ବୀରଭୂମ ଜଙ୍ଗଲବାଟେ ବୁଲି ବଙ୍ଗଦେଶକୁ ଆସିବାକୁ ହେଉଥିଲା । ଏଥି ସକାଶେ ମରହଟ୍ଟା ଫୌଜଦାର ଭାସ୍କର ପଣ୍ଡିତ ମାନଧାତାଙ୍କ ପ୍ରତି ଅସନ୍ତୁଷ୍ଟ । ମାତ୍ର ନାନା କାରଣରୁ ତାଙ୍କୁ ଶାସନ କରିବାକୁ ସୁଯୋଗ ପାଇ ନ ଥିଲେ ।

———

—୪—

## ବିଦେଶିନୀ

ସକାଳ ଓଳିଆ ଦିନ ପହରକ ଭିତରେ ସାମୁବଣିଆ ଦୁର୍ଗେଶ୍ୱର ଶ୍ରୀଶ୍ରୀଶ୍ରୀ ମାନଧାତା ଦରବାରରେ ବିଜେ କରିଅଛନ୍ତି, ପାଞ୍ଜିଆ, ପାଇକ, ପଢ଼ିଆରି, ଦଳେଇ, ଦଳବେହେରା, ଦଉଡ଼ି ଲେଖନକାର, ବେବର୍ତ୍ତା ପ୍ରଭୃତି କର୍ମଗୃହୀମାନେ ଆପଣା ଆପଣା ଜାଗାରେ କେହି ବସି, କେହି ଉଭା ହୋଇ କର୍ମରେ ନିଯୁକ୍ତ । ଢେରଗୁଡ଼ାଏ ଗୁହାଳିଆ ହାତଯୋଡ଼ ଠିଆ ହୋଇଅଛନ୍ତି । ଏମନ୍ତ ସମୟରେ ଡଗରା ଡାକ ଦେଲା "ଗୋବିନ୍ଦ ପୁର ଚୌପାଢ଼ୀର ଦଉଡ଼ି ଧରା ପାଇକମାନଙ୍କ ମଜରା ହେବାକୁ ଆଜ୍ଞା ହେଉ, ଭୋ ମହିମା ଭୋ ମହିମା !" ଗୁରୁଜଣ ଚେଣ୍ଡିଆ ପାଇକ ବଳଉ ଖଣ୍ଡା ଟେକି ତିନିଥର ଖଣ୍ଡାମୂନ ଭୂମିରେ ଛୁଆଇଁ ମଜୁରା କରି ଆଡ଼େଇଗଲେ । ସମସ୍ତେ ଅନାଇ ଦେଖିଲେ, ପାଇକମାନଙ୍କ ପଛ କିଛି ଦୂରରେ ଧୂଳିକର୍ଦ୍ଦମ ବିଳିପ୍ତବସନା ମଳିନବଦନା ବିଷାଦମୟୀ ଗୋଟିଏ ଅପୂର୍ବ ଲଳନାମୂର୍ତ୍ତି ବାଡ଼କୁ ଅଉଜି ନିଶ୍ଚଳ ନିସ୍ପନ୍ଦ ଭାବରେ ଉଭା ହୋଇଅଛି । ଆକୃତି ଏବଂ ପହରଣ ଦେଖିଲେ ସହଜରେ ଅନୁମିତ ହୁଏ, ସ୍ତ୍ରୀଲୋକଟି ବିଦେଶିନୀ ଏବଂ ସମ୍ଭ୍ରାନ୍ତକୁଳଜାତା । ସାଧାରଣ ଘରେ ଏପରି ଲାବଣ୍ୟମୟୀ ସୁଗଠନା ସୁନ୍ଦରୀ ଜାତ ହେବା ଅସମ୍ଭବ । ପ୍ରଭାମୟୀ ପଦ୍ମିନୀ ସ୍ୱଚ୍ଛ ଜଳ ସରୋବରରେ ପ୍ରସ୍ଫୁଟିତ ହୋଇଥାଏ । ଏହାର ବୟଃକ୍ରମ ସମ୍ବନ୍ଧରେ ସଠିକ ସମ୍ବାଦ ଦେବାକୁ ଆମ୍ଭେମାନେ ଅକ୍ଷମ; ମାତ୍ର ତାହାର କନକଗୌର ବଦନମଣ୍ଡଳର ଅପୂର୍ବ ସୌନ୍ଦର୍ଯ୍ୟ, ଅଚଞ୍ଚଳ ବିଶାଳ ନେତ୍ର, ତୋଳା ଉପରେ ଆକର୍ଣ୍ଣବିସ୍ତୃତ ସୁବଙ୍କିମ ଭ୍ରୂଲତା, ସୁନ୍ଦର ସୁଗଠନ ଉନ୍ନତ ନାସା, ଜବାକୁସୁମ ସଙ୍କାଶ ରକ୍ତିମ ଅଧରୋଷ୍ଠ ଏବଂ ସ୍ୱଚ୍ଛ ନିର୍ମଳ ଦର୍ପଣ ଫଳକବତ୍ ଗଣ୍ଡସ୍ଥଳରୁ ଯୌବନସୁଲଭ ଲାବଣ୍ୟ ଚହଟି ଯାଉଅଛି । ଏହାର ବଦନ ବିଷାଦ-କାଳିମାରେ ମଳିନ ହୋଇଥିଲେ ମଧ୍ୟ ଧୂସର ମେଘାବୃତ ଚନ୍ଦ୍ରମଣ୍ଡଳ ପରି ଅପୂର୍ବ ଶ୍ରୀ ଧାରଣ କରିଅଛି । ସ୍ତ୍ରୀଟିର ଆକାର କିଞ୍ଚିତ୍ ଦୀର୍ଘ; କିନ୍ତୁ ସୌନ୍ଦର୍ଯ୍ୟବିନାଶୀ ନୁହେ । ହସ୍ତ ପଦଗୁଡ଼ିକ ସୁଗୋଲ, ସୁଗଠିତ ଓ ସୁଖବର୍ଦ୍ଧିତ ପରି ଅନୁମିତ ହୁଏ । ପହରଣ ମହାର୍ଘ ଜରି କାରୁକାର୍ଯ୍ୟଯୁକ୍ତ ଘାଗରା ଏବଂ କାଞ୍ଚୁଲି — ତଦୁପରି ପୃଷ୍ଠବ୍ୟାପୀ ନିତମ୍ବବିଲମ୍ବୀ କଜ୍ଜ୍ୱଳ କାଳିମାଭ ଅବିନ୍ୟସ୍ତ ଅଯତ୍ନବିକ୍ଷିପ୍ତ କେଶରାଶିକୁ ସୂକ୍ଷ୍ମ ନିପୁଣ ଶିଳ୍ପୀ-ରଚିତ କୌଷେୟ ଓଢ଼ଣା ଘୋଡ଼ାଇ ରଖିଅଛି । ହସ୍ତ-ପଦନାସାକର୍ଣ୍ଣକଣ୍ଠସଂଲଗ୍ନ ରତ୍ନଖଚିତ ସ୍ୱର୍ଣ୍ଣ ଓ ରୌପ୍ୟର ଅଳଙ୍କାରଗୁଡ଼ିକ ଐଶ୍ୱର୍ଯ୍ୟବତ୍ତାର ପରିଚାୟକ । ଶରୀର କେଶବାସ ସମସ୍ତ ଧୂଳି କର୍ଦ୍ଦମ-ବିଳିପ୍ତ, କଣ୍ଟକ ଦ୍ୱାରା ସଦ୍ୟ ଛିନ୍ନ ବିଛିନ୍ନ । ଏଡ଼େବଡ଼ ଦରବାର, ଏଡ଼େ ଲୋକଗହଳ ମୁହୂର୍ତ୍ତକ ମଧ୍ୟରେ ନିସ୍ତବ୍ଧ ହୋଇଗଲା । ସମସ୍ତେ ଏକଧ୍ୟାନରେ ସ୍ତ୍ରୀମୂର୍ତ୍ତିଟିକୁ ଚାହିଁ ରହିଅଛନ୍ତି ।

ମାନଧାତା ଅନ୍ୟାନ୍ୟ ଲୋକଙ୍କ ପରି ସ୍ଥିରଭାବରେ ସେହି ସ୍ତ୍ରୀଟିକୁ ପ୍ରଥମରେ ଚାହିଁ ରହିଲେ, ପରେ କେତେଗୁଡ଼ାଏ କଥା ପଚାରିଲେ । କିନ୍ତୁ ଉତ୍ତର ନାହିଁ । ମାତୃସମ୍ବୋଧନ କରି କୋମଳଭାବରେ କେତେଗୁଡ଼ାଏ ପ୍ରଶ୍ନ କଲେ— ରମଣୀ ପୂର୍ବବତ୍ ନୀରବ । ବହୁତ ଅଭୟ ଦେଇ, ସାନ୍ତ୍ୱନା ଦେଇ ଆଶ୍ୱାସ ବାକ୍ୟରେ କେତେ କଥା ପଚାରିଲେ—ବୃଥା ହେଲା । ବୁଢ଼ା ପଡ଼ିଆଗ୍ର ପଣ୍ଡିଆ ପଡ଼ୋ ଚାଟକୁ ଧାଇଁଆସି ସ୍ତ୍ରୀଟିକୁ କହିଲା "ଉତ୍ତରନାହିଁ ଝିଅ, ଶଙ୍କା କର ନା, ସାଆନ୍ତ ଯାହା ପଚାରୁଛନ୍ତି, କହି ଯା, ସବୁ କଥାର ଜବାବ ଦେଇଯା, ଉଚ୍ଛୁଣି ଉଆସରୁ ସିଧା ଆଣିଦେବ । ଖାଇପିଇ ନିଶ୍ଚିନ୍ତ ରହିବୁ । ମାନଧାତା ଦାତାକର୍ଣ୍ଣ, କେତେ ଅତିଥି ଅଭ୍ୟାଗତ ଖାଇ ଯାଉଛନ୍ତି । ଜଳଖିଆ କର, ଭୋଷେଇ କର, ଯାହା କରୁ ଆଣି ଦେବ ।" ହାୟ ! ଜବାବ ପାଇବ ବୋଲି ପଣ୍ଡିଆ ବିଚରା କେତେ ଆଶାରେ ପାଇଥିଲା, ସବୁ ବୃଥା ହେଲା । ସ୍ତ୍ରୀଟି ଉତ୍ତର ଦେଲା ନାହିଁ କି ସକାଶେ ? ସେ କଣ ଦୂରଦେଶୀ, ବିଦେଶୀୟ ଭାଷା ବୁଝି ପାରିଲା ନାହିଁ ? କିମ୍ବା ସେ ଟିଏ ହିନ୍ଦୁ କୁଳବଧୂ ପୁରୁଷମଣ୍ଡଳୀରେ କଥା କହିବାକୁ ଲଜ୍ଜିତ ହେଲା ? ଅବା ବିନଷ୍ଟ ପଥଭ୍ରଷ୍ଟା ଶ୍ୱାପଦହସ୍ତବିମୁକ୍ତା ହରିଣୀ ଯେଉଁମାନଙ୍କ ହସ୍ତରେ ପତିତ ହୋଇଅଛି, ସେମାନେ ବ୍ୟାଧ କି ପାଳନକାରୀ, କିଛି ସ୍ଥିର କରି ନ ପାରି ଭୟରେ ଉତ୍ତର ଦେଇ ପାରୁ ନାହିଁ ? ମାତ୍ର ଆମ୍ଭେମାନେ ଆକାର ପ୍ରକାରରୁ ସେଥିର କିଛି ଚିହ୍ନ ଦେଖୁନାହୁଁ । ସ୍ତ୍ରୀଟି ବାଟ ଚାଲିବାକୁ ଅକ୍ଷମ ଥିବାରୁ ପାଇକମାନେ ତାହାକୁ ଡୋଲିରେ ବସାଇ ନେଇ ଆସିଥିଲେ-- ଡୋଲିରୁ ଓହ୍ଲାଇ ଯେପରି ଛିଡ଼ା କରାଇ ଦେଇଥିଲେ, କାଷ୍ଠ ପିତୁଳା ପରି ବାଡ଼କୁ ଆଉଜି ସେହିପରି ଛିଡ଼ା ହୋଇଅଛି । ମୁଖ ଅନାବୃତ, ନେତ୍ରରେ ପଲକ ଅଛି କି ନାହିଁ ସନ୍ଦେହ, କେବଳ ନାସାପୁଟ୍ଟା ସ୍ଫୀତ ଓ ସଙ୍କୁଚିତ ହୋଇ ଜୀବନସତ୍ତ୍ୱର ପରିଚୟ ଦେଉଅଛି । ଯେପରି ସ୍ତ୍ରୀ ହେଉ, ଯେପରି ଅବସ୍ଥାରେ ପଡ଼ୁ, ବିଶେଷରେ ହିନ୍ଦୁକୁଳବଧୂ ଯୁବତୀ ପୁରୁଷମଣ୍ଡଳୀକୁ ମିଳିତା ହେଲେ ସ୍ତ୍ରୀସ୍ୱଭାବସୁଲଭ ସଙ୍କୋଚ ଏବଂ ଲଜ୍ଜାର ଗୁପ୍ତା ମୁଖମଣ୍ଡଳକୁ ଆବୃତ କରି ପକାଏ । ମାତ୍ର ସ୍ତ୍ରୀଟି ଅନାବୃତ ମୁଖରେ ସହଜରେ ଉଭା ହୋଇଅଛି । ଆଉ ଭୟ ? ମନୁଷ୍ୟର ଜୀବନାଶା ଥିଲେ ଲଜ୍ଜା ଭୟ ସବୁ ଥାଏ । ଭୟ କଣ ? ବିପଦସଙ୍କୁଳ ସ୍ଥାନରୁ ନିରାପଦ ସ୍ଥାନକୁ ଯିବାର ଏକମାତ୍ର ପ୍ରବୃତ୍ତି । ଆମ୍ଭର ବିଶ୍ୱାସ ଶାରୀରିକ ଓ ମାନସିକ କଷ୍ଟର ଚରମ ସୀମା ଉପସ୍ଥିତ ହେଲେ ମାନବର ଇନ୍ଦ୍ରିୟସମୂହ ଅନାୟତ୍ତ ନିସ୍ତେଜ ହୋଇ ପଡ଼ନ୍ତି; ସୁତରାଂ ଚେତନା ଲୁପ୍ତ ହୋଇଯାଏ । ଏଥିକୁ ଲଜ୍ଜାଭୟ ମନ ମଧ୍ୟରେ ସ୍ଥାନ ପ୍ରାପ୍ତ ହୋଇ ପାରେ ନାହିଁ । ବର୍ତ୍ତମାନ ସ୍ତ୍ରୀଟି ଅଚେତନ ଅବସ୍ଥାରେ ଅଛି, ଆମ୍ଭେମାନେ ବିଶ୍ୱାସ କରି ପାରୁନାହୁଁ ।

ମାନଧାତା ସ୍ତ୍ରୀଟିଠାରୁ କୌଣସି ଜବାବ ନ ପାଇ ଅଭ୍ୟାଗତ ପାଇକମାନଙ୍କୁ ଅନାଇଲେ । ପାଇକ କାଶୀସିଂ ଫତେସିଂହ ଶ୍ରୀ ଶ୍ରୀ ଶ୍ରୀ ମାନଧାତାଙ୍କ ଅଭିପ୍ରାୟ ବୁଝି ପାରି ହାତଯୋଡ଼ି ସମସ୍ତ କଥା ଜଣାଇଲା । ପଶ୍ଚିମଦେଶୀୟ ଯାତ୍ରୀମାନଙ୍କ କଥା, ଗୋଡ଼ଖାଲଠାରେ ଯାହାଜାଣି—ମରହଟ୍ଟାମାନଙ୍କ ଅତ୍ୟାଚାର, ଯାତ୍ରୀମାନଙ୍କ ବିନାଶ ଏବଂ ଗୋବିନ୍ଦପୁରର ପାଇକମାନେ ପାଟଧିକୁ ଯାଇ ସ୍ତ୍ରୀଟିକୁ ଯେପରି ମୂର୍ଚ୍ଛା ଅବସ୍ଥାରେ ଜଙ୍ଗଲ ମଧ୍ୟରେ ପ୍ରାପ୍ତ ହୋଇଥିଲେ, ସମସ୍ତ ବିଷୟ ବିସ୍ତାରିତରୂପେ ଜଣାଇଲା । ଶ୍ରୋତାମାନେ ସମସ୍ତେ ବିଷୟ ଶୁଣି ଏବଂ ସ୍ତ୍ରୀଟିର ଶୋଚନୀୟ ଅବସ୍ଥା ଦେଖି ହାୟ ହାୟ କରିବାକୁ ଲାଗିଲେ । ମରହଟ୍ଟାମାନଙ୍କ ଅତ୍ୟାଚାର କଥା ଶୁଣି ଖଣ୍ଡାୟତମାନଙ୍କ ଖଣ୍ଡା ବଦଉରେ ବାଜି ଧଡ଼ ଧଡ଼ ଶବ୍ଦ କଲା । ଥୋକେ ଖାରବେଶ ଆଉଁଷି ଆରକ୍ତ-ନେତ୍ରରେ ଅନାଇବାକୁ ଲାଗିଲେ । ଉପସ୍ଥିତ ଲୋକମାନେ ସହଜରେ ଅନୁମାନ ଦ୍ୱାରା ବୁଝିଲେ ଅଶ୍ୱାରୋହୀ ବିନଷ୍ଟ ସ୍ତ୍ରୀପୁରୁଷମାନେ ସ୍ତ୍ରୀଟିର ଆତ୍ମୀୟ

ଲୋକ ଅଛନ୍ତି । ପିତା ମାତା ଶାଶୁ ଶ୍ୱଶୁର ସ୍ୱାମୀ କନ୍ୟା ଏହିପରି ଅନ୍ତରଙ୍ଗ ଲୋକମାନଙ୍କୁ ହରାଇ ହତଚେତା ହୋଇ ପଡ଼ିଛି । ଅତଃପର ଜନଶ୍ରୁତି ଶ୍ରୋତାମାନଙ୍କ ଅନୁମାନକୁ ଯଥାର୍ଥରୂପରେ ପ୍ରତିପନ୍ନ କରାଇଥିଲା ।

ସ୍ୱଦେଶରୁ ବହୁ ଦୂରରେ ଅପ୍ରତ୍ୟାଶିତରୂପେ ଗୁରୁଜନ ଆତ୍ମୀୟ ବନ୍ଧୁବର୍ଗଙ୍କର ଶୋଚନୀୟ ଅବସ୍ଥା ପ୍ରତ୍ୟକ୍ଷ କରି ସର୍ବସ୍ୱାନ୍ତ ଅବସ୍ଥାରେ ଗୋଟିଏ କୁଳବଧୂ ବାଳା ନିତାନ୍ତ ଅପରିଚିତ ପୁରୁଷମଣ୍ଡଳୀରେ ପଡ଼ିଲେ ତାହାର କିପରି ଦଶା ଘଟିପାରେ, ବୋଲିବା ବାହୁଲ୍ୟ ମାତ୍ର । ଜନନୀ—କି ଭାଷାରେ କହିବୁଁ, ଜନନୀ କି ପଦାର୍ଥ ? କାହା ସହିତ ଉପମା ଦେବୁଁ, ଜନନୀ କି ପଦାର୍ଥ ? ସ୍ୱର୍ଗାଦପି ଗରୀୟସୀ—ସ୍ୱର୍ଗର ସ୍ତୂପୀକୃତ ସମସ୍ତ ସମ୍ପତ୍ତି ଯାହାଙ୍କ ତୁଳନାରେ ପ୍ରଚୁର ନୁହେଁ; କି ଭାଷାରେ ବୁଝାଇବୁଁ, ସେ ଜନନୀ କି ପଦାର୍ଥ ? ସ୍ନେହ, ଦୟା, ମାୟା, ମମତା, ନିଃସ୍ୱାର୍ଥପରତା ସମସ୍ତ ସମବେତ ହୋଇ ମୂର୍ତ୍ତିମତୀ ହେଲେ ମଧ୍ୟ ଜନନୀ ସହିତ ଅତୁଳନୀୟ । ନରପଶୁ ନୃଶଂସ ଲୋକମାନଙ୍କ-ଦ୍ୱାରା ଯେହି ଜନନୀର ଶୋଚନୀୟ ପରିଣାମ ପ୍ରତ୍ୟକ୍ଷ କରି କେଉଁ ଯୁବତୀ କନ୍ୟା ଧୈର୍ଯ୍ୟ ଧାରଣ କରି ପାରେ ? ମହାଗୁରୁ ଜୀବନପାଳକ ଜୀବନଦାତା ପୂଜନୀୟ ପିତାର ନିଷ୍ଠୁରରୂପେ ନିପାତ ଦେଖି କନ୍ୟା ମନରେ କିପରି ଭାବ ଜାତ ହୋଇପାରେ, ଆମ୍ଭେମାନେ ପ୍ରକାଶ କରିବାକୁ ଅକ୍ଷମ । ବିଶେଷରେ ସତୀ ସ୍ତ୍ରୀର ହୃଦୟାକାଶର ପୂର୍ଣ୍ଣଚନ୍ଦ୍ର, ସମସ୍ତ ଆଶା, ସମସ୍ତ ଭରସା, ଏକମାତ୍ର ଆଶ୍ରୟ ଭୂମି, ସମସ୍ତ ଜୀବନର ଏକମାତ୍ର ଅବଲମ୍ବନ, ସମସ୍ତ ସୁଖୈଶ୍ୱର୍ଯ୍ୟର ଏକମାତ୍ର କାରଣ, ପରମ ଦେବତା ସ୍ୱାମୀକୁ ହରାଇ ଯୁବତୀ ସ୍ତ୍ରୀ ଯେ ଜୀବିତ ଥାଏ, ତାହା କେବଳ ବିଧାତାର ବୈଚିତ୍ର୍ୟମୟ ବିଧାନ ଅଟେ । ପରମାୟୁ ମନୁଷ୍ୟର ଅନାୟତ୍ତ, ମୃତ୍ୟୁର ଶତ ସହସ୍ର କାରଣର ବିଦ୍ୟମାନତାରେ ମଧ୍ୟ ମାନବ ଜୀବନ ଧାରଣ କରି ରହିଥାଏ, କର୍ମଫଳଭୋଗ କ୍ଷେତ୍ରରେ ମାନବ ଅନାୟତ୍ତ ହୋଇ ଭ୍ରମଣ କରେ । ବିଧି-ବିଧାନରେ ସ୍ତ୍ରୀଟିର ଜୀବନ ଦେହପିଞ୍ଜରକୁ ତ୍ୟାଗ କରି ନାହିଁ ସତ୍ୟ; ମାତ୍ର ତାହାର ଇନ୍ଦ୍ରିୟମାନ ଜଡ଼ଭାବାପନ୍ନ ହୋଇ ପଡ଼ିଅଛି । ପ୍ରବୀଣ ମାନଧାତା ସହଜରେ ଏ ବିଷୟ ଅନୁଭବ କଲେ ସ୍ତ୍ରୀଟିର ବୟସ ଓ ଅବସ୍ଥା ଦେଖି ତାଙ୍କ ମନରେ କରୁଣା ସଞ୍ଚାର ହେଲା । ସେ ଗୋଟିଏ ଦୀର୍ଘନିଃଶ୍ୱାସ ପକାଇ ତୁନି ହୋଇ ବସିଲେ । ତାଙ୍କ ଆଦେଶରେ ଦୁଇ ଜଣ ପୋଇଲୀ ଆସି ଅତି ଯତ୍ନରେ ଅତି ସାବଧାନ ଭାବରେ ଯୁବତୀଟିକୁ ଧରାଧରି କରି ଉଆସ ମଧ୍ୟକୁ ନେଇଗଲେ ।

---

-୭-

## ଗଡ଼ ସମ୍ବନ୍ଧରେ ନାନା କଥା

ଶ୍ରୀ ଶ୍ରୀ ଶ୍ରୀ ମାନଧାତାଙ୍କର ସ୍ୱତନ୍ତ୍ର ଉଆସ ନ ଥିଲା, ରାୟବଣିଆ ଦୁର୍ଗରେ ନଅର । ଉତ୍କଳ ଦେଶର ସମସ୍ତ ଖଣ୍ଡାଧିପତିଙ୍କ ନଅର ଏହିପରି । ରାୟବଣିଆ ଦୁର୍ଗ ପ୍ରାଚୀନ; ବିଶାଳତା ଏବଂ ଦୃଢ଼ତାରେ ଉତ୍କଳ ଦେଶର ସମସ୍ତ ଦୁର୍ଗର ଶୀର୍ଷସ୍ଥାନୀୟ । ଦୁର୍ଗ ମଧ୍ୟରେ ଲକ୍ଷେ ପାଇକ ରହି ବାହାର ଶତ୍ରୁ ସହିତ ଯୁଦ୍ଧ କରି ପାରିବେ । ଚତୁର୍ଦ୍ଦିଗରେ ମାଙ୍କଡ଼ା ପଥର ଗୁନ୍ଥା ପ୍ରଶସ୍ତ ଉଚ୍ଚ ପ୍ରାଚୀର, ପ୍ରାଚୀର ଦେହରେ ଗଣ୍ଡି କଟା, ସେହି ଗଣ୍ଡି ବାଟେ ଭିତରୁ ପାଇକମାନେ ବହିଃସ୍ଥ ଶତ୍ରୁପ୍ରତି ଅସ୍ତ୍ରପ୍ରୟୋଗ କରିପାରନ୍ତି । ବାହାରର ନିକ୍ଷିପ୍ତ ଅସ୍ତ୍ର ସେମାନଙ୍କ ଦେହରେ ଲାଗିବ ନାହିଁ । ଗଡ଼ ବହିର୍ଭାଗ ଚତୁର୍ଦ୍ଦିଗରେ ଭ୍ରମଣ କରିବାପାଇଁ ପ୍ରାଚୀର ମୂଳରେ ପ୍ରଶସ୍ତ ପରିଷ୍କୃତ ମାର୍ଗ, ମାର୍ଗ ଉତ୍ତାରେ ଅନତ୍ୟୁଚ୍ଚ ଆଡ଼ଆ ବା କାନ୍ଥ, କାନ୍ଥ ଉପର ତଳ ବାଉଁଶ ମୁଡ଼ାଗୁ, କାନ୍ଥ ମୂଳରେ ଗଡ଼ଖାଇ । ଏହି ଗଡ଼ଖାଇ ସର୍ବଦା ଜଳରେ ପୂର୍ଣ୍ଣ ଥାଏ । ଦୁର୍ଗକୁ ପ୍ରବେଶ କରିବା ନିମନ୍ତେ

ସିଂହଦ୍ୱାର ସମ୍ମୁଖ କିଛି ଦୂରରେ ପରିଖା ଉପରେ ଗୋଟିଏ କାଷ୍ଠର ସେତୁ ନିର୍ମିତ । ସେହି ସେତୁଟି ଏପରି କୌଶଳରେ ନିର୍ମିତ ଯେ, ସହଜରେ ଅପସାରିତ ଏବଂ ପୁନର୍ବାର ସଂଯୋଜିତ ହୋଇପାରେ । ପ୍ରାଚୀର ଚାରି କଣରେ ଚାରିଗୋଟା ଗୋଲାକାର ବୁରୁଜ । ବୁରୁଜ ମଧ୍ୟରେ ବାହାର ତିନି ଦିଗକୁ ମୁହଁ କରି ତିନିଗୋଟା ଲେଖାଏଁ ତୋପ ସ୍ଥାପିତ ଅଛି । ବୁରୁଜ ମଧ୍ୟରେ କୋଡ଼ିଏ କୋଡ଼ିଏ ଜଣ ଗୋଲନ୍ଦାଜ ରହି ତୋପ ଚଳାଇ ପାରନ୍ତି । ସିଂହଦ୍ୱାର ଦୁଇ ପାଖରେ ବିଶାଳବପୁ ବିକଟାକାର ଶିଳ୍ପ କୌଶଳର ନିଦର୍ଶନସ୍ୱରୂପ ଦୁଇ ଗୋଟା ପାଷାଣସିଂହ, ସେହି ସିଂହଙ୍କୁ ଲାଗି ଦୁଇ ପାଖରେ ବିଶାଳକାୟ ଚଢ଼ିଆଳ ପରି ଦୁଇ ଗୋଟା ପ୍ରକାଣ୍ଡ ତୋପ ବାହାରକୁ ମୁହଁ କରି ପଡ଼ିଅଛି । ଚତୁର୍ଦ୍ଦିଗ ପ୍ରାଚୀରରୁ କିଛି ଦୂର ଭିତରକୁ ଉଆସ କାନ୍ଥ । ଏହି କାନ୍ଥ ମଧ୍ୟ ଊଣା ଉଚ୍ଚ ନୁହେଁ । ଦୁର୍ଗ ପ୍ରାଚୀର ଦେହରେ ଅନେକ ସ୍ଥାନରେ ଘାଟି ଅଛି । ପାଳିଆ ପାଇକମାନେ ଦିବା ରାତ୍ର ପହରା ଦେଉଥାନ୍ତି । ସେମାନଙ୍କ ଦୃଷ୍ଟି ଭିତରକୁ ପଡ଼େ ନାହିଁ । ସିଂହଦ୍ୱାରକୁ ଲାଗି ଭିତରକୁ ଉଆସର ତିନି ପ୍ରସ୍ଥ । ସିଂହଦ୍ୱାର ପ୍ରାଚୀରକୁ ଲାଗି ଦୁଇଗୋଟା ବଡ଼ ବଡ଼ ଘର । ଏହି ଦୁଇ ଘର ନାନାରୂପ ଅସ୍ତ୍ରରେ ପରିପୂର୍ଣ୍ଣ । ଏହାହିଁ ଦୁର୍ଗର ଅସ୍ତ୍ରାଗାର । ସେହି ଘର ଉତ୍ତରରେ ଅଗଣା — ଅଗଣା ଚାରିପାଖରେ ଘର । ଦକ୍ଷିଣ ପାଖ ବଡ଼ ମେଲା ଘରେ ମାନଧାତାଙ୍କର ବାହାର ବିଜେ ଦରବାର । ଦ୍ୱିତୀୟ ପ୍ରସ୍ଥକୁ ଯିବା ଦ୍ୱାରରେ ପାଇକ ପହରା । ଦ୍ୱିତୀୟ ପ୍ରସ୍ଥ ମଝି ଅଗଣା ଚତୁର୍ଦ୍ଦିଗରେ ଘର — ଅଧିକାଂଶ ସରଘର । ଛାମୁ ପାଞ୍ଜିଆ, ଉଆସ ପାଞ୍ଜିଆମାନଙ୍କ କଚେରି ଘର ଏବଂ ପ୍ରଶସ୍ତ ଘରଟି ମାନଧାତାଙ୍କର ନିରେଳ ଦରବାର ଘର । ଏହିଠାରେ ଶ୍ରୀଛାମୁ ସର୍ବଦା ବିଜେଥାନ୍ତି । ବିଶେଷ ବିଶେଷ ଦିନ, ବିଶେଷ ବିଶେଷ ଘଟନାରେ ଶ୍ରୀଛାମୁ ବାହାର ଦରବାରକୁ ବିଜେ କରନ୍ତି । ତୃତୀୟ ପ୍ରସ୍ଥ ରାଣୀହଂସପୁର । ଏହି ପ୍ରସ୍ଥକୁ ଯିବାକୁ ଦୁଇଗୋଟା ଦ୍ୱାର । ପ୍ରଥମ ଦ୍ୱାରରେ ବୁଢ଼ା ଚଢ଼ିଆଣୀ, ଦ୍ୱିତୀୟ ଦ୍ୱାରରେ ପୋଇଲି ପହରା । ରାଣୀହଂସପୁର ମଧ୍ୟରେ ଅନେକ ଘର । ସେଥିମଧ୍ୟରୁ ଆଗଦାଲିଆ ବଡ଼ ବଡ଼ ତିନି ଗୋଟା ଘରେ ଶ୍ରୀଛାମୁଙ୍କ ପହଡ଼, ଠା-ବିଜେ, ଭିତରବିଜେ ସମସ୍ତ କାର୍ଯ୍ୟ ଚଳେ ।

ରାୟବଣିଆ ଦୁର୍ଗ ସହିତ ଦୁର୍ଗାଧିପତିଙ୍କ ଗୌରବ ଉତ୍କଳଖଣ୍ଡରେ ଖ୍ୟାତି ଲାଭ କରିଥିଲା । ଉପଯୁକ୍ତ ଦୁର୍ଗରେ ଉପଯୁକ୍ତ ଲୋକ ଆଧିପତ୍ୟ ସ୍ଥାପନ କରିଥିଲେ । କେବଳ ଗୋଟିଏ ବିଷୟରେ ଅଭାବ ଥିଲା । ଜଗନ୍ନିୟନ୍ତା ଜଗଦୀଶ୍ୱର ନିରବଚ୍ଛିନ୍ନ ସୁଖ କାହାର ଅଦୃଷ୍ଟରେ ଲେଖି ନାହାନ୍ତି । ଧନ, ଜନ, ସ୍ୱାସ୍ଥ୍ୟ, ଆଧିପତ୍ୟ ଖ୍ୟାତି କୌଣସି ଗୋଟିଏ ପ୍ରକାରର ଅଭାବ ହେଲେ ମାନବ ଦୁଃଖୀ । ଆମ୍ଭମାନଙ୍କ ମାନଧାତା ଅଦ୍ୱିତୀୟ ଭାଗ୍ୟବନ୍ତ ଲୋକ । ସୁଗଠିତ ବପୁ, ସୁସ୍ଥଶରୀର, ସର୍ବପ୍ରକାର ଅସ୍ତ୍ରଚାଳନା ଏବଂ ହସ୍ତୀ ଅଶ୍ୱ ଆରୋହଣ ବିଷୟରେ ବାଛିବାକୁ ଲୋକ ନାହିଁ । ଅତୁଳ ସମ୍ପତ୍ତି, ନିରଙ୍କୁଶ ଆଧିପତ୍ୟ, ଅନିନ୍ଦ୍ୟ ନିଷ୍କଳଙ୍କ ଚରିତ, ମାନବବାଞ୍ଛିତ ସର୍ବପ୍ରକାର ଐଶ୍ୱର୍ଯ୍ୟ ପ୍ରତୁଳ । ଗୋଟିଏ ଦୁଃଖ ବିଶେଷ ଦୁଃଖ — ବଂଶଧରର ଅଭାବ । ଏହି ଅତୁଳ ସମ୍ପତ୍ତି ଭୋଗ କରିବା ନିମନ୍ତେ ପଛକୁ କେହି ନାହିଁ । ମାନବ ସମସ୍ତ ଜୀବନରେ ବହୁ ଆୟାସୋପାର୍ଜିତ ସମସ୍ତ ସମ୍ପତ୍ତି ଯାହା ହସ୍ତରେ ସମର୍ପଣ କରି ପୃଥିବୀରୁ ବିଦାୟ ଗ୍ରହଣ କରି ଆପଣାକୁ ଧନ୍ୟ ମନେକରେ, ନିତାନ୍ତ ମାନବଦ୍ୱେଷୀ ପରଶ୍ରୀକାତର ଲୋକ ମଧ୍ୟ ଧନ, ମାନ, ବିଦ୍ୟା, ବୁଦ୍ଧିରେ ଯାହାକୁ ଆପଣାଠାରୁ ଶ୍ରେଷ୍ଠତର ଦେଖିଲେ ତପସ୍ୟାର ଫଳ, ଦୟାମୟ ପ୍ରଭୁଙ୍କ ପ୍ରଦତ୍ତ ପୁଞ୍ଜୀକୃତ କଲ୍ୟାଣ ବୋଲି ଜ୍ଞାନ କରେ, ଅଧିକ କଣ, ଯାହାର ବଦନ ମାତ୍ର ଦର୍ଶନରେ ମାନବ ସମସ୍ତ ଦୁଃଖ ବିସ୍ମୃତ ହୋଇଯାଏ, ଯାହା ପାଇଁ ମାନବ ଆପଣା ପ୍ରିୟତମ ପ୍ରାଣ ମଧ୍ୟ ବିସର୍ଜନ କରିବାକୁ ପ୍ରସ୍ତୁତ, ସେହି ପୁତ୍ର ଯାହାର

ନାହିଁ, ମାନବବାଞ୍ଛିତ ସର୍ବୈଶ୍ୱର୍ଯ୍ୟ ଲାଭ କରିଥିଲେ ମଧ୍ୟ ସେ ଦୁଃଖୀ । ଯେଉଁ ଘରେ ପୁତ୍ର ନାହିଁ, ସେ ଘର ଶୂନ୍ୟ । ଯେମନ୍ତ କି ଚନ୍ଦ୍ରହୀନ ଗଗନମଣ୍ଡଳ, ଯେମନ୍ତ କି ପୁଷ୍ପହୀନ ଉଦ୍ୟାନ, ଯେମନ୍ତ କି ଗନ୍ଧହୀନ ପୁଷ୍ପ, ଯେମନ୍ତ କି ନେତ୍ରହୀନ ଲାବଣ୍ୟ । ବେଦବାକ୍ୟ— "ଆତ୍ମାବୈ ପୁତ୍ରନାମାସି"—ଏହା ଉପରେ ଅନ୍ୟ କଥା ନାହିଁ । ଅନେକ ନରପତି ଆତ୍ମକୃତ ଅପରାଧ ହେତୁ ହୀନବଂଶ ହୋଇ ପଡ଼ିବାର ଦେଖାଯାଏ । ମାତ୍ର ଆମ୍ଭମାନଙ୍କ ମାନଧାତାଙ୍କୁ ସେପରି କିଛି ଦୋଷ ସ୍ପର୍ଶ କରି ନ ଥିଲା । ରାଜନ୍ୟମଣ୍ଡଳୀରେ ଈଦୃଶ ଚରିତ୍ରବାନ୍, ଏପରି ଏକପତ୍ନୀବ୍ରତ ବ୍ୟକ୍ତି ନିତାନ୍ତ ବିରଳ । ତଥାପି ସେ ନିଃସନ୍ତାନ । ବିଧାତାଙ୍କ ବିଚିତ୍ର ବିଧାନର ମର୍ମ ଭେଦ କରିବା ମାନବର ସାଧ୍ୟାତୀତ । ଲୋକେ ତାହାଙ୍କୁ ଦୁର୍ଭାଗ୍ୟ ଜ୍ଞାନ କରନ୍ତି; ମାତ୍ର ସେ ଆପେ ଆପଣାର ଭାଗ୍ୟନିନ୍ଦୁକ ନ ଥିଲେ । ସେଥିର କାରଣ, ମହାଦେଈଙ୍କର ସୁମଧୁର କାର୍ଯ୍ୟକଳାପ ।

ମହାଦେଈ ମାନଧାତାଙ୍କର ଏକମାତ୍ର ସହଧର୍ମିଣୀ — ଫୁଲବେଈ ଫଳବେଈ ବୋଲି କେହି ନ ଥିଲେ । ଦୁର୍ଗେଶ୍ୱରୀଙ୍କ ଉପାଧି ମହାଦେଈ ବା ମହାଦେଈ । ପ୍ରକୃତ ପକ୍ଷେ ଗୁଣ ଏବଂ କାର୍ଯ୍ୟରେ ସେ ମହାଦେଈ ଥିଲେ । ଅନ୍ଧର ନାମ ପଦ୍ମଲୋଚନ ପରି ତାଙ୍କର ଗୁଣ ସହିତ ନାମର ଅସାମଞ୍ଜସ୍ୟ ନ ଥିଲା । ରାପୁବଣିଆ ଉଆସ ମଧ୍ୟରେ ନାନା ଜାତିକ, ନାନା ଶ୍ରେଣୀ, ନାନା ଚରିତ୍ରବିଶିଷ୍ଟା, ନାନାବୟସ୍କା ସ୍ତ୍ରୀପରିଜନ ଅଢ଼ାଇ ପଣରୁ ଊଣା ନୁହେ । ମାତ୍ର ମାନଧାତାଙ୍କ ସହିତ ଏମାନଙ୍କ ସମ୍ପର୍କ ବିରଳ । ସମସ୍ତେ ମହାଦେଈଙ୍କ ଖଟଣି ପରିଜନ । ମାନନୀୟା ପୂଜନୀୟା ମହାଦେଈଙ୍କ ସେବିକାମାନଙ୍କୁ କି ପୋଇଲି ବୋଲିଯିବ ? ସୁତରାଂ ସେମାନଙ୍କର ଉପାଧି ପରିଜନ । ଆମ୍ଭମାନେ ମଧ୍ୟ ଏହି ନାମ ବୋଲିବାକୁ ବାଧ୍ୟ । ଆଜି ଗୋଟିଏ କଥା-ସତ୍ୟ କଥା, ନାମରେ ଯେମାନେ ଛତିଶାନିଯୋଗରେ ବିଭକ୍ତ ଥିଲେ; ମାତ୍ର ଏମାନଙ୍କ ସେବାରେ ମହାଦେଈଙ୍କ ସମୟ ଅପ୍ରତୁଳ ହୁଏ । କିଏ ଖାଇଲା, କିଏ ଉପାସ ରହିଲା, କିଏ ରୁଷି ବସିଛି, କାହାର ଲୁଗା ନାହିଁ, କାହାର ଔଷଧ ଲୋଡ଼ା, କିଏ କାହା ସହିତ କଳି କଲା, ଏହି ସମସ୍ତ କଥା ବୁଝୁଁ ବୁଝୁଁ ଦିନ ଯାଏ ।

ମହାଦେଈ ବଂଶୋଚିତା ପଦୋଚିତା ସୁନ୍ଦରୀ ଥିଲେ—ଦେଖିଲେ ଦେବୀ ପ୍ରତିମା ବୋଲି ବିଶ୍ୱାସ ଜନ୍ମେ । ଯେଉଁ ସୌନ୍ଦର୍ଯ୍ୟ ଭକ୍ତି ଶ୍ରଦ୍ଧା ଆକର୍ଷଣ କରେ, ଯେଉଁ ସୌନ୍ଦର୍ଯ୍ୟ ଦେଖିଲେ ମାନବ ପ୍ରଣତ ହେବାକୁ ଇଚ୍ଛା କରେ, ମହାଦେଈଙ୍କ ସୌନ୍ଦର୍ଯ୍ୟ ସେହିପରି । ତାଙ୍କର ଶାରୀରିକ ସୌନ୍ଦର୍ଯ୍ୟ ସହିତ କାର୍ଯ୍ୟ ଏବଂ ଚରିତ୍ରର ଅସାମଞ୍ଜସ୍ୟ ନ ଥିଲା । ଲୋକରେ ପ୍ରକାଶ ତାଙ୍କପରି ଦାନଶୀଳା ଦୟାବତୀ ପରୋପକାରିଣୀ ସ୍ତ୍ରୀ ଜଗତରେ ଦୁର୍ଲଭ । ମହାଦେଈ ସନ୍ତାନସନ୍ତତି-ବିହୀନା । ହିନ୍ଦୁକୁଳରେ ଚତ୍ୱାରିଂଶଦ୍ ବୟସ୍କା ରମଣୀ ବୃଦ୍ଧାଶ୍ରେଣୀରେ ଗଣନୀୟା । କୌଣସି କୌଣସି ପୁତ୍ରାକାଂକ୍ଷିଣୀ ବନ୍ଧ୍ୟା ଏପରି ପରିଣତ ବୟସରେ ମଧ୍ୟ ସନ୍ତାନ କାମନାରେ ବାରବ୍ରତ ଅନୁଷ୍ଠାନ କରିଥାନ୍ତି । ମାତ୍ର ଆମ୍ଭମାନଙ୍କ ମହାଦେଈଙ୍କ ମନରେ ସେପରି ଭାବ ଉଦିତ ହେବାର କେହି କେବେ ଦେଖି ନାହିଁ । ପରିଜନପରିଚର୍ଯ୍ୟା ଏବଂ ସ୍ୱାମୀ ସେବାକୁ ସେ ଜୀବନର ବ୍ରତ ବୋଲି ମଣୁଥିଲେ । ଓଷା ବ୍ରତ ଅନୁଷ୍ଠାନ ତ ହିନ୍ଦୁକୁଳରେ ନୈମିତ୍ତିକ କାର୍ଯ୍ୟ ମଧ୍ୟରେ ଗଣ୍ୟ । ସାବିତ୍ରୀ ନାମୀ ବ୍ରତଦିନ ରାତି ବ୍ରହ୍ମରେକ ସମୟରେ ଶ୍ରୀ ଶ୍ରୀ ମାନଧାତାଙ୍କ ଗମ୍ଭୀରବିଜେ ପୂର୍ବେ ଦୁଇ ଅଧ୍ୟାୟ ଶ୍ରୀମଦ୍ଭାଗବତ ଶୁଣାଏ, କେବଳ ଗୁରୁବାର ଦିନ ଗ୍ରନ୍ଥ ଗାଦିରେ ଭୋଗ ଦେଇ ଆଳତି କରି ଚାଲିଯାଏ ।

ନିମ୍ନଶ୍ରେଣୀ ଦାସୀଙ୍କ ସହିତ ଅଳିଆ ଏବଂ କଳିର କେମନ୍ତ ଗୋଟାଏ ନିତ୍ୟସମ୍ବନ୍ଧ ଥିଲା ପରି ଜଣାଯାଏ !

ମାତ୍ର ମହାଦେବୀଙ୍କ ଶାସନ ଏବଂ ତୀକ୍ଷ୍ଣ ଦୃଷ୍ଟି ହେତୁରୁ ଏହି ସାଧାରଣ ନିୟମ ବ୍ୟର୍ଥ ହୋଇଥିଲା । କଦାଚିତ୍ ପରିଜନମାନଙ୍କ ମଧ୍ୟରେ କଳି କନ୍ଦଳ ହୋଇପଡ଼େ । ମହାଦେବୀଙ୍କ କର୍ଣ୍ଣଗୋଚର ହେବା ମାତ୍ରକେ କାହାକୁ କିଛି ନ କହି କଳି ସ୍ଥାନରେ ଛିଡ଼ା ହୋଇଗଲେ ସବୁ କଳି ମେଣ୍ଟିଯାଏ । ମହାଦେବୀଙ୍କ ଶ୍ରୀମୁଖରୁ କର୍କଶ କଥା କେହି କେବେ ଶୁଣିନାହିଁ । କ୍ରୋଧର ନାନା କାରଣ ବିଦ୍ୟମାନ ଥିଲେ ସୁଦ୍ଧା ତାଙ୍କର କ୍ରୋଧ ଜାତ ହୁଏ ନାହିଁ; ମାତ୍ର ସମସ୍ତେ ତାଙ୍କୁ ଭୟ କରନ୍ତି ଏବଂ ଭୟରେ ଆପଣା ଆପଣା କାର୍ଯ୍ୟରେ ତ୍ରୁଟି କରିବାକୁ ସାହସ କରନ୍ତି ନାହିଁ । ଶ୍ରୀମତୀ ମହାଦେବୀ ପ୍ରତିଦିନ ସକାଳେ ଉଆସର ସବୁ ସ୍ଥାନରେ ଭ୍ରମଣ କରି ଦେଖନ୍ତି, କାହାର ଦୁଆରେ ବା କୌଣସି ସ୍ଥାନରେ ଅଳିଆଟିଏ ପଡ଼ିଥିଲେ ଆପେ ଝାଡ଼ୁଣି ମୁଠାଏ ଧରି ଓଳେଇ ବସନ୍ତି । ତାଙ୍କର ଝାଡ଼ୁଣିଧରା ସାର ହୁଏ, ଆଉ ସ୍ତ୍ରୀଜନ ପଡ଼ି ଝାଡ଼ୁଣି ଛଡ଼ାଇ ନେଇ ଓଳେଇ ଦିଅନ୍ତି । ଝାଡ଼ୁକାରଣୀ ଆପଣାକୁ ଆପେ ଶଙ୍କି ଯାଏ କିମ୍ବା ଅନ୍ୟଦ୍ବାରା ଲାଞ୍ଛିତା ହୁଏ । ପରିଜନମାନଙ୍କର ସ୍ଵତନ୍ତ୍ର ସ୍ଵତନ୍ତ୍ର ଗୃହ ଏବଂ ସ୍ଵତନ୍ତ୍ର ସ୍ଵତନ୍ତ୍ର ରୋଷେଇ । କେଉଁ ଘରେ ଚାରି ପାଞ୍ଚ ଜଣଙ୍କର ଏକା ରୋଷେଇ । ସମସ୍ତଙ୍କ ଘର ଲିପା ପୋଛା, ଦୁଆରେ ଝୋଟି । ଗୁରୁବାର, ସଂକ୍ରାନ୍ତି, ପୂର୍ଣ୍ଣିମାରେ ଲିପା ପୋଛା ଏବଂ ଝୋଟି ଦେବା ବିଧି ।

ନିଷ୍କର୍ମା ଲୋକକୁ ଶୟତାନ ଆପଣା କର୍ମରେ ଲଗାଏ, ମହାଦେବୀ ଏ କଥାଟା ଭଲରୂପେ ଜାଣିଥିଲେ । ଆପେ ଯେମିତି ନିରଳସ, ସମସ୍ତଙ୍କୁ ସେହିପରି କରିବାକୁ ଇଚ୍ଛା । ସମସ୍ତଙ୍କର ଖଟଣି ବଣ୍ଟା ଥିଲା । ପଡ଼ି ସକାଶେ ଚାଉଳ ବଦଳରେ ଧାନର ବନ୍ଦୋବସ୍ତ କରି ଦେଇଥିଲେ । ସମସ୍ତଙ୍କୁ ଆପଣା ଆପଣା ଧାନ କୁଟି ନେବାର ଆଜ୍ଞା ଥିଲା । ଓପରଓଳି ବୁଢ଼ୀମାନେ ତୁଳସୀ କଣ୍ଠି ଧରି ପୁରାଣ ଶୁଣି ବସନ୍ତି । ପ୍ରତି ମହଲର ଅଗଣାରେ ପୁରାଣ ପାଠ ହୁଏ । ପୁରାଣ ପଣ୍ଡିଆଣୀ ନାନା ନିଯୁକ୍ତ ଥିଲେ । ଫୁଲ ତୋଳିବା, ମାଳ ଗୁନ୍ଥିବା, ଫୁଲ ଗଛରେ ପାଣି ଦେବା । ଯୁବତୀ ସ୍ତ୍ରୀଲୋକମାନଙ୍କର ସାପ୍ତାହିକ କାର୍ଯ୍ୟ ନିରୂପିତ ଥିଲା । ଦୁଇ ଚାରୋଟି ଟୋକୀ ମାଳ ଗୁନ୍ଥି ବସିଲେ ଗୀତ ଗାଇବା, ଗୀତ ଶିଖିବା ଆଉ ଗୋଟିଏ ଅଧିକା କାର୍ଯ୍ୟ ଆସି ପଡ଼େ । ପରିଜନମାନଙ୍କୁ ସୁନିୟମରେ ରଖିବା ନିମନ୍ତେ ମହାଦେବୀଙ୍କର ଉଗ୍ର ଶାସନ ନ ଥିଲା । ତାଙ୍କର ଦୟା, ତାଙ୍କର ମାୟା, ତାଙ୍କର ସମବେଦନା ସମସ୍ତଙ୍କୁ ଶୃଙ୍ଖଳାବଦ୍ଧ କରି ରଖିଥିଲା । ପରିଜନମାନେ ତାଙ୍କୁ ମାତାରୂପେ, ଦେବୀରୂପେ ଭକ୍ତି କରୁଥିଲେ । ତାଙ୍କ ଆଜ୍ଞା ଲଙ୍ଘନ ବା ତାଙ୍କର ଅପ୍ରିୟ କାର୍ଯ୍ୟ କରିବାକୁ କେହି ସାହସ କରୁ ନ ଥିଲେ । ରାଣୀହଂସପୁର ଅଗଣା ମଧ୍ୟରେ ବେଣ୍ଟପୋଖରୀ ଚାରିପାଖ ମାଙ୍କଡ଼ା ପଥର ବନ୍ଧା, ଚାରିପାଖରେ ପଥରବନ୍ଧା ଘାଟ, ପ୍ରତି ଘାଟ ଦୁଇ ପାଖରେ ଦୁଇଗୋଟା ପଥରବନ୍ଧା ତୁଳସୀ ଚଉରା, ଘାଟ ଦୁଇ ପାଖରେ ଚମ୍ପା ନାଗେଶ୍ୱର ଗଛ । ପୋଖରୀ ଆଉ ଚାରି ପାଖରେ ମଲ୍ଲୀ, ଜାଈ, ଯୂଈ, ବାଉଁର, ଝୁରଅନା, ଗଙ୍ଗଶିଉଳୀ, କରବୀର, ଅଶୋକ, ସେବତୀ, ନିଆଳୀ, କୁନ୍ଦ, କାମୋଦ ପ୍ରଭୃତି ନାନାପ୍ରକାର ପୁଷ୍ପ ବୃକ୍ଷ ସୂତା ଧରା ପରି ଲଗା ହୋଇଛି । ଏହାଛଡ଼ା ଆଉ ଗୋଟିଏ ତୁଳସୀ ଏବଂ ଫୁଲର କ୍ଷୁଦ୍ର ତୋଟା ଥିଲା । ଦେବପୂଜା ନିମନ୍ତେ ନାରୀମାନେ ସେହି ସ୍ଥାନରୁ ଫୁଲ ତୋଳି ନିଅନ୍ତି । ବୃକ୍ଷଗୁଡ଼ିକପ୍ରତି ମହାଦେବୀଙ୍କର ବିଶେଷ ଯତ୍ନ । କେହି ପାଣି ନ ଢାଳିଲା, ପ୍ରତିଦିନ ତନଖି କରନ୍ତି, ଗଛମୂଳରେ ଅଳିଆଟିଏ ବା ଘାସଟିଏ ରହେ ନାହିଁ । ଗଛଗୁଡ଼ିକ ପରିଜନମାନଙ୍କ ମଧ୍ୟରେ ବଣ୍ଟା ଥିଲା । ମହାଦେବୀଙ୍କ ସନ୍ତୋଷ ସାଧନ ନିମନ୍ତେ ସମସ୍ତେ ଆପଣା ଆପଣା ଗଛକୁ ଯତ୍ନରେ ରଖୁଥିଲେ । ବେଣ୍ଟପୋଖରୀ ଚାରିପାଖରେ ଚାରିଗୋଟି ଦେଉଳ । ଦକ୍ଷିଣ ପାଖରେ ଗଡ଼ଚଣ୍ଡୀ, ପୂର୍ବ ପାଖରେ ଗଡ଼େଶ୍ୱର ମହାଦେବ; ଉତ୍ତର ପାଖରେ ଦୁର୍ଗା, ଲକ୍ଷ୍ମୀ, ଗଣେଶ,

ବ୍ରହ୍ମା, କାର୍ତ୍ତିକ, ପଶ୍ଚିମ ଦିଗରେ ରାଧାକୃଷ୍ଣ ଯୁଗଳ, ଶାଳଗ୍ରାମ ଶିଳା, ପ୍ରଖ୍ୟାତ ଅଖ୍ୟାତନାମା ଅନେକ ଦେବବିଗ୍ରହ ବିରାଜିତ । ଦକ୍ଷିଣ ଘାଟରେ ମହାଦେବୀଙ୍କ ମାଜଣା ବଢ଼େ । ଗଡ଼ଚଣ୍ଡୀ ମନ୍ଦିରରେ ବସି ଦେବାର୍ଚ୍ଚନ ସାରନ୍ତି; ଆଉ ମନ୍ଦିରରେ ଦେବଦର୍ଶନ, ଚରଣୋଦକ ସେବା ଏବଂ ଧଣ୍ଟା ଲଗି ହୋଇ ଆପଣା ସ୍ଥାନକୁ ବିଜେ କରନ୍ତି ।

ନିଜେ ମହାଦେବୀଙ୍କର କେତେ ଗୁଡ଼ିଏ ପକ୍ଷୀ ପୋଷା ଥିଲେ । ପରିଜନ, ବିଶେଷରେ ବୃଦ୍ଧାମାନେ ରାଧାକୃଷ୍ଣ ପଢ଼ାଇବା ସକାଶେ ସାରୁଆ ବଣି ଅନେକ ଗୁଡ଼ିଏ ପକ୍ଷୀ ପୋଷିଥିଲେ । ପୋଷା ପକ୍ଷୀମାନଙ୍କର ବିବିଧ ପ୍ରକାର ଚିତ୍କାର, ସେମାନଙ୍କୁ ରାଧାକୃଷ୍ଣ ପଢ଼ାଇବା, ପରିଜନମାନଙ୍କର ପରସ୍ପର ଆଳାପ, ସଙ୍ଗୀତ, ପ୍ରୟୋଜନୀୟ ଅପ୍ରୟୋଜନୀୟ ସାଧାରଣ କଥା ସମସ୍ତ ମିଶି ଉଆସ ମଧ୍ୟରୁ ସର୍ବଦା ତରଙ୍ଗିଣୀ ବୀଚି-ବିକ୍ଷେପ-ଜାତ କଳକଳ-ନାଦବତ୍ ଗୋଟିଏ ବିମିଶ୍ର ନାଦ ବାହାରି ସ୍ଥିର ବାୟୁରାଶିକୁ ଆନ୍ଦୋଳିତ କରୁଥାଏ । ଉଆସ ମଧ୍ୟରେ ଅନ୍ୟ ପୁରୁଷଲୋକର ସମ୍ପର୍କ ନ ଥିଲା । ନିର୍ଦ୍ଦିଷ୍ଟ ବୟସ୍କ ପଡ଼ିଆରୀମାନେ ଭିତର ବାହାର କାର୍ଯ୍ୟ ସମ୍ପାଦନ କରୁଥିଲେ । ମାନଧାତାଙ୍କ ଭିତର ମଣ୍ଡି ଠା ସଜା, ଶେଯପଡ଼ା ପ୍ରଭୃତି ସମସ୍ତ କାର୍ଯ୍ୟ ମହାଦେବୀ ସ୍ୱହସ୍ତରେ ସମ୍ପାଦନ କରନ୍ତି । ଅନ୍ୟ ଲୋକର ସେଥିରେ ହସ୍ତକ୍ଷେପ କରିବାକୁ ଅଧିକାର ନ ଥିଲା । ମାନଧାତାଙ୍କ ଠା ସମାପ୍ତି ପର୍ଯ୍ୟନ୍ତ ମହାଦେବୀଙ୍କର ଜଳସ୍ପର୍ଶ ପର୍ଯ୍ୟନ୍ତ ହୋଇ ନ ଥାଏ । ସ୍ୱାମୀଙ୍କ ଭୋଜନ ଉତ୍ତାରେ ସେହି ଠା-ସଜର ପରିତ୍ୟକ୍ତ ପ୍ରସାଦ ମାତ୍ର ସେବା କରନ୍ତି । ଆହୁରି ମଧ୍ୟ ଦେଖାଯାଏ, ଯେଉଁ ବ୍ୟଞ୍ଜନ ବା ଯେଉଁ ଖାଦ୍ୟରେ ମାନଧାତାଙ୍କର ହସ୍ତସ୍ପର୍ଶ ହୋଇ ନ ଥାଏ, ତାହା ପ୍ରାୟ ଠା-ଗୋଷ୍ଠୀଙ୍କର ଅଧିକାରଭୁକ୍ତ ହୁଏ । ମହାଦେବୀ କୌଣସି ପ୍ରକାର ସ୍ୱାମୀ-ଆଜ୍ଞା ଲଙ୍ଘନ କରୁ ନ ଥିଲେ; କେବଳ ଗୋଟିଏ ବିଷୟରେ ନିତାନ୍ତ-ଅବାଧ ଥିଲେ । ମାନଧାତାଙ୍କ ବିଶେଷ ନିଷେଧସତ୍ତ୍ୱେ ସେ ଦୁଇ ତିନି ଦଣ୍ଡ ସ୍ୱାମୀପଦସେବା ନ କରି ପଲଙ୍କକୁ ବିଜେ ହେଉ ନ ଥିଲେ । ମହାଦେବୀଙ୍କର ଦେବତା ବ୍ରାହ୍ମଣଠାରେ ଅଚଳା ଭକ୍ତି ଥିଲା । ଏପରି ସର୍ବଜନୀନ ପ୍ରେମ ସ୍ନେହ ମଧ୍ୟ ଅସାଧାରଣ ଲୋକଠାରେ ଲକ୍ଷିତ ହୁଏ ନାହିଁ, ମାତ୍ର ତାଙ୍କର ଆନ୍ତରିକ ସମସ୍ତ ଭକ୍ତି, ସମସ୍ତ ପ୍ରେମ, ସମସ୍ତ ସ୍ନେହ ସ୍ୱାମୀପ୍ରତି ପ୍ରୟୋଗ କରୁଥିଲେ । ପତି ତାଙ୍କର ଧ୍ୟାନ, ପତି ଜ୍ଞାନ, ପତି ଇଷ୍ଟଦେବତା, ପତି ଜପମନ୍ତ୍ର—ପତିଙ୍କୁ ସର୍ବସ୍ୱ କରି ମଣୁଥିଲେ । ତାଙ୍କର ଦେବସେବା ପତି-ହିତ କାମନାରେ, ଗାର୍ହସ୍ଥ୍ୟ କାର୍ଯ୍ୟ ସ୍ୱାମୀଙ୍କ ସନ୍ତୋଷସାଧନ ନିମନ୍ତେ, ପରିଜନମାନଙ୍କୁ ସୁଖ ସ୍ୱଚ୍ଛନ୍ଦ୍ୟରେ ରଖୁଥିଲେ, କାରଣ ସେମାନେ ସ୍ୱାମୀଙ୍କ ଦାସୀ, ରାଣୀହଂସପୁର ପରିଷ୍କୃତ ପରିଚ୍ଛନ୍ନ ରଖୁଥିଲେ ସ୍ୱାମୀ ବିଜେ ହେବା ନିମନ୍ତେ । ସଂକ୍ଷେପରେ ଏତିକି ବୋଲିଯାଇପାରେ, ମହାଦେବୀ ଆପଣାର ସ୍ୱତନ୍ତ୍ର୍ୟ ହୃଦୟଙ୍ଗମ କରୁ ନ ଥିଲେ । ତାଙ୍କର ଧ୍ରୁବ ସିଦ୍ଧାନ୍ତ ଥିଲା ଯେ, ମନ ପ୍ରାଣ ଶରୀର କାର୍ଯ୍ୟ ସୁଖ ସ୍ୱାଚ୍ଛନ୍ଦ୍ୟ ଧନ ସମ୍ପତ୍ତି ସମସ୍ତ ଦ୍ରବ୍ୟରେ ସ୍ୱାମୀ ଅଧିକାରୀ; ନିର୍ମଳ ନିଷ୍କଳଙ୍କ ସରଳ ଭାବରେ ସ୍ୱାମୀଙ୍କୁ ଅର୍ପଣ କରିବା ତାଙ୍କର ଏକ ମାତ୍ର କାର୍ଯ୍ୟ । ପକ୍ଷାନ୍ତରେ ମାନଧାତା ମଧ୍ୟ ସେହିପରି ଗ୍ରାହକ ଥିଲେ । ରାଜନ୍ୟମଣ୍ଡଳୀରେ ଏପରି ଦାମ୍ପତ୍ୟପ୍ରେମ ବିରଳ ଦୃଷ୍ଟିଗୋଚର ହୁଏ । ଶାନ୍ତି ଏବଂ ସୁଖସାଧନ ନିମନ୍ତେ ପରସ୍ପର ସଯତ୍ନ ଥିବାରୁ ଉଭୟେ ଅପୂର୍ବ ସ୍ୱର୍ଗୀୟ ସୁଖ ଅନୁଭବ କରୁଥିଲେ । ଏତିକି କହିଲେ ପର୍ଯ୍ୟାପ୍ତ ହେବ ଯେ, ଏହି ରାଜଦମ୍ପତି ଭିନ୍ନଶରୀର ଏକପ୍ରାଣ ଏକମନ ଥିଲେ । ଏପରି ଶାନ୍ତି, ଏପରି ଦେବବାଞ୍ଛିତ ସୁଖ, ଏପରି ପବିତ୍ର ଭାବ, ଆଧିପତ୍ୟଜାତ କାମନବଲ୍ଲୀ, ସର୍ବପ୍ରକାର ଇନ୍ଦ୍ରିୟସେବ୍ୟ ବିଳାସ-ସାମଗ୍ରୀର ପୂର୍ଣ୍ଣସ୍ଥଳୀ, ସର୍ବପ୍ରକାର କାମ୍ୟ ବସ୍ତୁରେ ପରିପୂର୍ଣ୍ଣ ଭଣ୍ଡାର ରାଜ ଅନ୍ତଃପୁରରେ ସଚରାଚର ଦୃଷ୍ଟି-ଗୋଚର ହୁଏ ନାହିଁ ।

ପୁଣ୍ୟବତୀ ଗୁଣବତୀ ଶାନ୍ତମୟୀ ମହାଦେବୀଙ୍କ ହେତୁରୁ ମାନଧାତାଙ୍କର ଅନ୍ତଃପୁର ସ୍ୱର୍ଗଧାମ ଥିଲା । ଏହି କାରଣରୁ ଏହି ଦମ୍ପତି ଅପତ୍ୟାଭାବଜନିତ କ୍ଲେଶ ଅନୁଭବ କରିବାକୁ ଅବସର ପାଉ ନ ଥିଲେ ।

———

-୭-

## ପରିବର୍ତ୍ତନ

ଲୋକେ ବୋଲନ୍ତି, ଦିନ ଯାଉଛି, ଦିନ ରହୁନାହିଁ । ମାତ୍ର ଦିନ କପରି କାହିଁଗଲା ? ଦିନ ଉତ୍ତାରେ ଦିନ; ମାସ ଉତ୍ତାରେ ମାସ, ଋତୁ ଉତ୍ତାରେ ଋତୁ, ବର୍ଷ ଉତ୍ତାରେ ବର୍ଷ ପରିବର୍ତ୍ତନ ମାତ୍ର । ଯେଉଁ ସୂର୍ଯ୍ୟ ଆଜି ଅସ୍ତ ଗଲା, କାଲି ପୁନର୍ବାର ଉଦିତ ହେବ, ଏହି ପରିବର୍ତ୍ତନରେ ଦିବା ରାତ୍ର । ଦିନ ଯାଉ ନାହିଁ—ଦିବା ରାତ୍ରି ପରିବର୍ତ୍ତନ ମାତ୍ର । ସୃଷ୍ଟିର ଆଦିମ କାଳରେ ଯେଉଁ ଦିବା, ଯେଉଁ ରାତ୍ରି ଥିଲା, ସେହି ଦିବା, ସେହି ରାତ୍ର ଆଜି ଅଛି, ଅନନ୍ତ କାଳ ଥିବ । କୁବଳଚନ୍ଦ୍ର କାହିଁ ଯାଏ ନାହିଁ, ସ୍ୱସ୍ଥାନରେ ରହି ପରିବର୍ତ୍ତନଦ୍ୱାରା ଅସଂଖ୍ୟ ଅସଂଖ୍ୟ ଭ୍ରାନ୍ତି ପ୍ରସୂତ କରାଏ । ଦିନ ଯାଉ ନାହିଁ, ଯାଉଅଛୁଁ ଆମ୍ଭେମାନେ, ଯାଉଅଛ ତୁମ୍ଭେମାନେ, ଯାଉଅଛନ୍ତି ଜଗତ ପ୍ରାଣିପ୍ରବାହ । ଆମ୍ଭମାନଙ୍କର ବାଲ୍ୟ, କୈଶୋର, ଯୌବନ, ବାର୍ଦ୍ଧକ୍ୟ ସୁଖ, ଦୁଃଖ, ଧନ, ସମ୍ପତ୍ତି, ଖ୍ୟାତି, ପ୍ରତିପତ୍ତି, ଅଧିକ କି ପ୍ରାଣ ପର୍ଯ୍ୟନ୍ତ କ୍ରମଶଃ ପ୍ରଳୟପୟୋଧି ଆଡ଼କୁ ଅବିଶ୍ରାନ୍ତ ଧାବିତ ହେଉଅଛି । ଦିବା ଏବଂ ରାତ୍ରି ଦୁଇ ଗୋଟି ଚକ । ଏହି ଦୁଇ ଚକ ମଧ୍ୟରେ ପଡ଼ି, ଶସ୍ୟରୂପ ପ୍ରାଣୀମାନେ ପିଷ୍ଟ ହୋଇ ଯାଉଅଛନ୍ତି । ପ୍ରତି ମୁହୂର୍ତ୍ତରେ ଅବସ୍ଥାନ୍ତର ଘଟିବା ଅନନ୍ତ ମହାପୁରୁଷଙ୍କର ଅନନ୍ତ ବ୍ରହ୍ମାଣ୍ଡରେ ସନାତନ ବିଧି । ହେ ଧନଗର୍ବିତ କ୍ଷମତାଶାଳୀ ଆଧିପତ୍ୟୋନ୍ମତ୍ତ ପୁରୁଷ ! ଜଗତର ଏହି ଦୁର୍ଲଙ୍ଘନୀୟ ପ୍ରତ୍ୟକ୍ଷ ନିୟମ ବିସ୍ମୃତ ହୋଇ ଯାଅ ନାହିଁ । ହେ ବିପଦଗ୍ରସ୍ତ ସର୍ବସ୍ୱାନ୍ତ ମନୁଷ୍ୟ ! ନିଶ୍ଚୟ ଜାଣ, ଅବସ୍ଥାର ପରିବର୍ତ୍ତନ ଘଟେ । ହେ ରୋଗବ୍ୟାକୁଳ ଯନ୍ତ୍ରଣାପ୍ରପୀଡ଼ିତ ସଂସାରବିରାଗୀ ମାନବ ! ମନେ କର, ପୀଡ଼ାର ପରିଣାମ ଅଛି । ଆଉ ଗୋଟିଏ କଥା, ଅର୍ଥ ନାଶ, ବନ୍ଧୁ ବିଚ୍ଛେଦ, ସ୍ୱାସ୍ଥ୍ୟହାନି, ଶତସହସ୍ରବିଧ ବିପଦ ଅପ୍ରତ୍ୟାଶିତରୂପେ ଅଲକ୍ଷ୍ୟ ପଥ ଅବଲମ୍ବନ ପୂର୍ବକ ଆମ୍ଭମାନଙ୍କ ଉପରେ ନିପତିତ ହେଉଅଛି । ଆକାଶରୁ ଜଳବିନ୍ଦୁ ପତିତ ହୋଇ ସ୍ରୋତରୂପେ ଅନନ୍ତ ସିନ୍ଧୁ ଗର୍ଭକୁ ଭାସି ଗଲାପରି ସମସ୍ତ ଚାଲି ଯାଉଅଛି; ମାତ୍ର ଯାହା ଗଲା ତାହା ଗଲା, ପୁନର୍ବାର ପ୍ରତ୍ୟାବର୍ତ୍ତନ କରିବ ନାହିଁ । ଆମ୍ଭମାନଙ୍କ ଜୀବନରେ ପ୍ରତି ନିୟତ ଯେଉଁ ସମସ୍ତ ଦାରୁଣ ଯନ୍ତ୍ରଣାଦାୟକ ଘଟଣାମାନ ସଂଘଟିତ ହେଉଅଛି, ସେ ସମସ୍ତ ଯେବେ ହୃଦୟରେ ଗ୍ରଥିତ କରି ରଖ, ତେବେ ଜୀବନ ନିତାନ୍ତ କଷ୍ଟମୟ ଦୁର୍ବହ ଭାରସ୍ୱରୂପ ହୋଇ ପଡ଼ିବ । ସୁଖ ଦୁଃଖର ପାର୍ଥକ୍ୟ ଅନୁଭବ ନିମନ୍ତେ ଅନନ୍ତ କୌଶଳୀ ଭଗବାନ ବିସ୍ମୃତି ରୂପ ଏକ ଆବରଣ ସୃଷ୍ଟି କରି ରଖିଅଛନ୍ତି । ବିବିଧ କଷ୍ଟକର ଯନ୍ତ୍ରଣା ଦ୍ୱାରା ଆମ୍ଭମାନଙ୍କ ହୃଦୟ କ୍ଷତବିକ୍ଷତ ହୋଇଯାଏ । ସେହି କ୍ଷତ ସ୍ଥାନରେ ବିସ୍ମୃତିରୂପ ପ୍ରଲେପ ପଡ଼ି କ୍ରମଶଃ ସେହି ଯନ୍ତ୍ରଣାକୁ ଲଘୁ କରି ଦିଏ । ଅବଶେଷରେ କ୍ଷତ ସ୍ଥାନର ଚିହ୍ନରୂପ ଘଟଣାଟି ମାତ୍ର ସୂଚନା ଥାଏ, ତଜ୍ଜନିତ ଯନ୍ତ୍ରଣା ଅନୁଭୂତ ହୁଏ ନାହିଁ । ଏହି ଯେ ପୁତ୍ରଶୋକାତୁରା ଜନନୀ ଅନ୍ନ ଜଳ ବିସର୍ଜନ ପୂର୍ବକ ମରଣନିଶ୍ଚୟା ହୋଇ ବସିଅଛି, ଦିନେ ହେଲେ ତାହା ମୁଖରେ ହାସ୍ୟର ଚିହ୍ନ ଦେଖିବ । ହୃଦୟର ସର୍ବସମ୍ପତ୍ତି ପତି ଦେବତାକୁ ହରାଇ ବିଧବା ଜୀବନ ଧାରଣ କରି ରହେ, ଏହା ପ୍ରତ୍ୟକ୍ଷୀଭୂତ ବିଷୟ ଅଟେ । ଏହି ପରିବର୍ତ୍ତନଶୀଳ ଜଗତରେ କିଛିହିଁ ସ୍ଥିର ନୁହେ ।

ଆମ୍ଭମାନଙ୍କ ସେହି ବିଦେଶିନୀ ରମଣୀଟିର ଅବସ୍ଥା ବର୍ତ୍ତମାନ ଦେଖନ୍ତୁ । ପ୍ରଥମେ ସେ

ଚଳତ୍‌ଶକ୍ତିରହିତା ବାଗ୍‌ନିରୁଦ୍ଧା ପ୍ରାୟ ସଂଜ୍ଞାହୀନ ଅବସ୍ଥାରେ ଥିଲି । ଆଜି ଛ ମାସ ମଧ୍ୟରେ ତାହାର ଅବସ୍ଥା କି ପ୍ରକାର ପରିବର୍ତ୍ତିତ ହୋଇଗଲାଣି । ପ୍ରଥମ ଦିନ ପୋଲିସମାନେ ସେହି ବିଦେଶିନୀକୁ ଉଆସ ମଧ୍ୟକୁ ନେଇ ଗଲେ । ଦୟାବତୀ ମହାଦେବୀ ତାହାର ରୂପ, ତାହାର ଅବସ୍ଥା ଦେଖି ଏବଂ ତାହା ପ୍ରତି ଘଟିଥିବା କଥା ଶୁଣି କାନ୍ଦି ପକାଇଲେ ଏବଂ ସସ୍ନେହ ଭାବରେ ତାହା ଦେହରେ ହାତ ବୁଲାଇ ଅତି କୋମଳ, ଅତି ମଧୁର ସ୍ୱରରେ ସାନ୍ତ୍ୱନା ଦେବାକୁ ଲାଗିଲେ । ପଲକହୀନ ଅଶ୍ରୁହୀନ ନେତ୍ରରେ ସେହି ରମଣୀଟି ମହାଦେବୀଙ୍କ ମୁହଁକୁ ଚାହିଁ ରହିଥାଏ । ହୃଦ୍‌ଗତ ଭାବର ଛାୟା କପରି ମୁଖ-ମୁକୁରରେ ପ୍ରତିବିମ୍ବିତ ହୁଏ । ମହାଦେବୀଙ୍କର ସମବେଦନା ଅନୁଭବ କରି ସେହି ସ୍ତ୍ରୀଲୋକଟି କାନ୍ଦିଲା — କେତେଦିନ ପର୍ଯ୍ୟନ୍ତ କିଛି ମାତ୍ର କଥା ନ କହି କେବଳ କାନ୍ଦୁଥାଏ । ସେ କାନ୍ଦିଲେ ମହାଦେବୀ ତାହା ସଙ୍ଗରେ କାନ୍ଦି ବସନ୍ତି । ବିଦେଶିନୀ ଏହା ଦେଖି କେବଳ ମହାଦେବୀଙ୍କ ମନସ୍ତୁଷ୍ଟି ସକାଶେ ଧୈର୍ଯ୍ୟ ଧରି ରହେ, କଦାଚିତ୍ ମହାଦେବୀଙ୍କ ଅସାକ୍ଷାତରେ ବସି କାନ୍ଦେ । ଏଥି ସକାଶେ ମହାଦେବୀ ତାକୁ କାନି ଗଣ୍ଠିଲି କରି ରଖିଥାନ୍ତି । ବିଦେଶିନୀ ଆଉ ଏବେ କାନ୍ଦେ ନାହିଁ; ମାତ୍ର ତାହାର ଶରୀର ରକ୍ଷା ନିମନ୍ତେ କିଛି ମାତ୍ର ଯତ୍ନ ନାହିଁ । ମହାଦେବୀ ପାଖରେ ବସି ଅତି ଯତ୍ନରେ ଭୋଜନ କରାନ୍ତି । କେବଳ ସେ ଅନୁରୋଧରେ ଏବଂ ମହାଦେବୀଙ୍କ ତୁଷ୍ଟି ସାଧନ ନିମନ୍ତେ ଭୋଜନ କରେ । ପରିଜନମାନେ ଧରାଧରି କରି ତେଲ ମର୍ଦ୍ଦନ କରି ଦିଅନ୍ତି ଏବଂ ମୁଣ୍ଡ ବାନ୍ଧି ଦିଅନ୍ତି । କେବଳ ସେ ସ୍ୱେଚ୍ଛାରେ ସିନ୍ଦୂର ଟିପାଟି ମୁଣ୍ଡରେ ଲଗାଏ । ମହାଦେବୀ ବର୍ତ୍ତମାନ ସ୍ୱୟଂ କିଛି କାର୍ଯ୍ୟ କରନ୍ତି ନାହିଁ, ସମସ୍ତ କାର୍ଯ୍ୟ ସେହି ବିଦେଶିନୀ ହାତରେ କରାଇ ନିଅନ୍ତି । ବୋଧହୁଏ ତାହାକୁ ଅନ୍ୟମନସ୍କ କରାଇବା ଏଥିର ମୁଖ୍ୟ ଉଦ୍ଦେଶ୍ୟ । ଗନ୍ତାଘର, ଗୃଙ୍ଗଡ଼ାଘର, ସରଘର ସମସ୍ତ କଞ୍ଚି ବର୍ତ୍ତମାନ ବିଦେଶିନୀ ଜିମାରେ । ମହାଦେବୀଙ୍କ ଦୃଢ଼ ଆଦେଶ ଅନୁସାରେ ନଅରର ଯାବନ୍ତ ଲୋକ ତାକୁ ଜେମାଦେଈ ମଣିମା ପରି ସମ୍ଭ୍ରମ କରନ୍ତି ଏବଂ ତାହାର ଆଜ୍ଞା ପାଳନ କରନ୍ତି । ସାଧାରଣରେ ଏପରି ଗୋଟାଏ ଧାରଣା ହୋଇଗଲାଣି, ମହାଦେବୀ ତାକୁ ଧର୍ମଝିଅ କରିଅଛନ୍ତି ବା କରିବେ । ବିଦେଶିନୀ ମାନଧାତା ଦମ୍ପତିଙ୍କୁ ମା ବାପ ବୋଲି ଡାକେ ।

ଆମ୍ଭେମାନେ ଲୋକାନ୍ତରରେ ଶୁଣିଅଛୁ, ବିଦେଶିନୀ ମହାଦେବୀଙ୍କ ଠାରେ ଏହିପରି ଆତ୍ମପରିଚୟ ଦେଇଥିଲା — ତାହାର ନାମ ଲଛମା, ଘର ସିଂହାନ ଗ୍ରାମ—ଜିଲା ବୋହିଲଖଣ୍ଡ, ନିକଟରେ ଝାନ୍ସୀ । ପିତାର ନାମ ଧେଉଁକଲ ସିଂ, ସେ ନିଜ କ୍ଷୁଦ୍ର ଗ୍ରାମର ଜମିଦାର । ପିତା ନିଃସନ୍ତାନ, ଏକମାତ୍ର ସେହି ଉତ୍ତରାଧିକାରିଣୀ, ସ୍ୱାମୀସହ ପିତୃଗୃହରେ ବାସ କରେ । ପରିଜନମାନେ ନିର୍ବୋଳରେ କେତେ ଥର ତାହାର ସ୍ୱାମୀର ନାମ ପଚାରିଲେ, ଲଛମା ଆକାଶକୁ ହାତ ବଢ଼ାଇ ଦେଇ ବସି କାନ୍ଦେ । ତାହାର କାନ୍ଦିବା ଦେଖି ଅଧିକ କିଛି ପଚାରିବାକୁ କେହି ସାହସ କରନ୍ତି ନାହିଁ । ସମସ୍ତେ ଅନୁମାନରେ ବୁଝିଥିଲେ, ତାହାର ସ୍ୱାମୀର ନାମ ଚନ୍ଦ୍ର, ସୂର୍ଯ୍ୟ ବା ତାରା ଏହିପରି କିଛି ହେବ । ଆପେ ଧେଉଁକଲ ସିଂ ଅପୁତ୍ରକ । ଉପଯୁକ୍ତ ସମୟରେ କନ୍ୟା ଗର୍ଭରୁ କିଛି ସନ୍ତାନ ସନ୍ତତି ଜାତ ନ ହେବାରୁ କାମନା କରି ସପରିବାର ଜଗନ୍ନାଥ ଦର୍ଶନକୁ ଆସିବା ସମୟରେ ଗୋଡ଼ଖାଲଠାରେ ଯେଉଁ ବର ଲାଭ କରିଥିଲେ, ପାଠକମାନଙ୍କଠାରେ ତାହା ଅବିଦିତ ନୁହେଁ ।

ଲଛମା ବର୍ତ୍ତମାନ କାନ୍ଦେ ନାହିଁ ସତ୍ୟ; ମାତ୍ର ଧୂସର ମେଘାବୃତ ଚନ୍ଦ୍ରମା ପରି ତାହାର ମୁଖମଣ୍ଡଳ ସର୍ବଦା ମ୍ଳାନ ଦିଶୁଥାଏ । ମହାଦେବୀ ପ୍ରଥମେ ତାହାର ରୂପ ଦେଖି, ଅବସ୍ଥା ଶୁଣି ତାହା ପ୍ରତି କରୁଣା ପ୍ରକାଶ

କରୁଥିଲେ; ମାତ୍ର ବର୍ତ୍ତମାନ ତାହା ଗୁଣରେ ବାଧ ହୋଇଗଲେଣି । ଲଛମା ସୁଶୀଳା ଏବଂ ଅତ୍ୟନ୍ତ ଲଜ୍ଜାବତୀ । ସେ ଉଆସକୁ ଆସିଲା ଦିନଠାରୁ କୌଣସି ଲୋକର କୌଣସି ପ୍ରକାର ଅପ୍ରିୟ କାର୍ଯ୍ୟ କରି ନାହିଁ । ପରିଜନମାନେ ସର୍ବଦା ତାହା ପାଖରେ ଖଟି ରହୁଥାନ୍ତି । କୌଣସି କାର୍ଯ୍ୟ ହେଲେ କାହାରିକୁ ଆଦେଶ ନ କରି ସେ ସ୍ୱହସ୍ତରେ କରିବାକୁ ସୁଖ ମଣେ; ମାତ୍ର ତାହାର ବାସନା ପୂର୍ଣ୍ଣ ହୁଏ ନାହିଁ । ତାହା ଆଚରଣରୁ ପରିଜନମାନେ ତାହାକୁ ଏପରି ଭୟ କରନ୍ତି ଯେ, ସମବୟସ୍କା ସ୍ତ୍ରୀମାନେ ମଧ୍ୟ ତାହା ସଙ୍ଗରେ ହସି ହସି କଥା କହି ପାରନ୍ତି ନାହିଁ । ଧର୍ମକାର୍ଯ୍ୟରେ ଲଛମାର ପ୍ରଗାଢ଼ ଅନୁରାଗ । ଏକାଦଶୀ ପ୍ରଭୃତି ସମସ୍ତ ପ୍ରକାର ବାରବ୍ରତ କରେ । ଗଡ଼ଚଣ୍ଡୀ ମନ୍ଦିରରେ ଧ୍ୟାନ ପୂଜାରେ ତାହାର ଅନେକ ସମୟ ଅତିବାହିତ ହୁଏ ।

ମହାଦେବୀଙ୍କ ସ୍ନେହରେ ଲଛମା ଅନେକ ପରିମାଣରେ ଆତ୍ମଦୁର୍ଦ୍ଦଶା ପାସୋରି ଯାଇଥିବାର ଜଣାଯାଏ । ଦିନେ ମାନଧାତା ଠା-ବିଜେ ସମୟରେ କଥାପ୍ରସଙ୍ଗରେ ମହାଦେବୀଙ୍କଠାରେ କହି ପକାଇଥିଲେ, ଗୋଡ଼ଖାଲ ଯୁଦ୍ଧରେ ଯେଉଁ ବୀରମାନେ ପଡ଼ିଥିଲେ, ସେମାନଙ୍କ ମଧ୍ୟରୁ କେହି କେହି ବଞ୍ଚି ରହିଥିବାର ଶୁଣାଯାଏ । ସେମାନଙ୍କ ସନ୍ଧାନ ନିମନ୍ତେ ଅମ୍ଭେ ପାଇକ ବରଗିଅଛୁଁ । ଯେତେ ବ୍ୟୟ ହେଉ, ଯେତେ ପରିଶ୍ରମ ହେଉ, ସେମାନଙ୍କ ସନ୍ଧାନ କରାଇବୁଁ । କଥାଟା ଅବଲମ୍ବେ ଲଛମାର କର୍ଣ୍ଣଗୋଚର ହେଲା । ସେ କାହାକୁ କିଛି କହିଲା ନାହିଁ, କେବଳ ଦୀର୍ଘ ନିଶ୍ୱାସ ପକାଇଲା । ସାଗର ଗର୍ଭରେ ଭଗ୍ନପୋତ ଭାସମାନ ନାବିକ ତରଣୀ ଆଶ୍ରୟ ଆଶା ପାଇଲେ କେବଳ ତହିଁ ପ୍ରତି ଲକ୍ଷ୍ୟ କରିଥାଏ । ସେହି ଦିନଠାରୁ ଲଛମା କିଛି ଅଧିକ ଅନ୍ୟମନସ୍କା ଏବଂ ଗଡ଼ଚଣ୍ଡୀ ଠାକୁରାଣୀଙ୍କ ନିକଟରେ ଅଧିକ ସମୟ ଧ୍ୟାନସ୍ଥା ଥିବାର ଦେଖାଯାଏ । ମନ୍ଦିର ମଧ୍ୟରେ ବନ୍ଦୁଣୀ ନାମ୍ନୀ ତାହା ଲଲାଟରେ ଦେବୀ-ପ୍ରସାଦ ସିନ୍ଦୂରଟିପା ଲଗାଇ ଦେଲେ ସେ ଆଗ୍ରହ ସହିତ ଗ୍ରହଣ କରେ ଏବଂ ନୀହାରପୂର୍ଣ୍ଣ ନୀଳେନ୍ଦୀବର ପରି ତାହାର ନେତ୍ରଯୁଗଳ ଢଳ ଢଳ କରୁଥାଏ ।

ପ୍ରାଣିପ୍ରବାହ ଅକ୍ଷୁଣ୍ଣ ରଖିବା ନିମନ୍ତେ ଅନନ୍ତ-କୌଶଳୀ ଜଗଦୀଶ ପ୍ରାଣୀମାନଙ୍କର ବିଶେଷତଃ ନାରୀଜାତିର ହୃଦୟରେ ଅପତ୍ୟ-ସ୍ନେହବୃତ୍ତି ନିହିତ କରିଅଛନ୍ତି । ମହାଦେବୀଙ୍କ ହୃଦୟରେ ସେହି ଅପତ୍ୟ-ସ୍ନେହବୃତ୍ତିଟି ଅବସର ନ ପାଇ ପ୍ରଚ୍ଛନ୍ନ ଭାବରେ ଥିଲା । ସମ୍ପ୍ରତି ଭଗ୍ନ ସେତୁମୁଖରୁ ରୁଦ୍ଧ ସଲିଳରାଶି ବହିର୍ଗତ ହେଲା ପରି ସମସ୍ତ ଅପତ୍ୟସ୍ନେହ ଲଛମା ଉପରେ ଢାଳି ଦେଇଅଛନ୍ତି । ସେ ଦିନ ମାନଧାତାଙ୍କ କଥା ଶୁଣି ମହାଦେବୀ ବିଶ୍ୱାସ କରିଅଛନ୍ତି, ଲଛମାର ସ୍ୱାମୀ ଜୀବିତ ଅଛି । ତାଙ୍କର ଧ୍ରୁବ ଧାରଣା—ଧାର୍ମିକା ସୁଲକ୍ଷଣା ସଚ୍ଚରିତ୍ରା ନାରୀ ପ୍ରତି ବୈଧବ୍ୟ ଯୋଗ ଘଟେ ନାହିଁ । ଆମ୍ଭେମାନେ ଅତି ବିଶ୍ୱସ୍ତସୂତ୍ରରୁ ଅବଗତ ହୋଇଅଛୁଁ—ମାନଧାତା ଦମ୍ପତିଙ୍କ ଇଚ୍ଛା, ଲଛମାର ସ୍ୱାମୀକୁ ଖୋଜି ପାଇଲେ ଲଛମାକୁ ପୋଷ୍ୟା କନ୍ୟା କରି ଜାମାତାକୁ ଉତ୍ତରାଧିକାରୀ କରିବେ ।

— — —

-୮-

## ପଣ୍ଡିତ ଶିଉଶଙ୍କର ମାଲବୀର

ପଣ୍ଡିତ ଶିଉଶଙ୍କର ମାଲବୀର ମହାରାଷ୍ଟ୍ରୀୟ ବ୍ରାହ୍ମଣ । ସଂସ୍କୃତ ଏବଂ ଦେଶୀୟ ଭାଷାରେ ଏହାଙ୍କର ଅସାଧାରଣ ବ୍ୟୁତ୍ପତ୍ତି । କାବ୍ୟ, ନାଟକ, ଅଳଂକାର, ପ୍ରାଚୀନ ଆର୍ଯ୍ୟ ଷଟ୍‌ଦର୍ଶନ ଶାସ୍ତ୍ର କଣ୍ଠସ୍ଥ । ବିଶେଷତଃ ଦୌତ୍ୟ-ନୈପୁଣ୍ୟରେ ତାଙ୍କ ସହିତ ତୁଳିବାକୁ ଲୋକ ନାହାନ୍ତି । ଉତ୍କଳଖଣ୍ଡର ଦୁର୍ଗପତିମାନଙ୍କ ସହିତ ମହାରାଷ୍ଟ୍ରପତିଙ୍କ ସନ୍ଧିବନ୍ଧନ କାର୍ଯ୍ୟ ସାଧନ ନିମନ୍ତେ ନିଜ ଦେଶରର

ଉତ୍ତମ ଦରବାରରୁ ନିଯୁକ୍ତ ହୋଇ ଆସିଅଛନ୍ତି । ଦଶପଲ୍ଲାର ରଞ୍ଜେ, ବାଙ୍କୀର ଶ୍ରୀଚନ୍ଦନେ, ତିଗିରିଆର ଚମ୍ପତି, ନୀଳଗିରିର ହରିଚନ୍ଦନେ ପ୍ରଭୃତି ଦୁର୍ଗପତିମାନେ ଏହାଙ୍କ ଜ୍ଞାନ ଏବଂ ବାକ୍ୟ-କୌଶଳରେ ବେହାରପତି ରଘୁଜୀ ଭୋଁସଲାଙ୍କଠାରେ ବଶ୍ୟତା ସ୍ୱୀକାର କରି ସନ୍ଧିପତ୍ରରେ ସ୍ୱାକ୍ଷର କରିଅଛନ୍ତି । ଫୌଜଦାର ଭାସ୍କର ପଣ୍ଡିତ ଅସ୍ତ୍ରବଳରେ ଢେଙ୍କାନାଳ ମହୀନ୍ଦ୍ରକୁ ଆୟତ୍ତ କରି ପାରି ନ ଥିଲେ । ପ୍ରତ୍ୟୁତ ଆପେ ଯୁଦ୍ଧରେ ପରାସ୍ତ ହୋଇ ଲାଞ୍ଛିତ ହୋଇ ମହାରାଷ୍ଟ୍ରଗୌରବ ଚନ୍ଦ୍ରକୁ କଳଙ୍କ କାଳିମାରେ କଳୁଷିତ କରିଥିଲେ । ମାତ୍ର ପଣ୍ଡିତ ଶିଉଶଙ୍କର ମାଲୱାରଙ୍କ ବାକ୍ୟ-କୌଶଳରେ ଢେଙ୍କାନାଳ ଦୁର୍ଗେଶ୍ୱର ଇଚ୍ଛାପୂର୍ବକ ସନ୍ଧିପତ୍ରରେ ସ୍ୱାକ୍ଷର କରିଅଛନ୍ତି । ରାୟବଣିଆ ଦୁର୍ଗେଶ୍ୱର ଶ୍ରୀ ଶ୍ରୀ ଶ୍ରୀ ରାୟ ରାଘବ ରାଟସିଂହ ଜଗଦ୍ଦେବ ବୈରିଗଞ୍ଜନ ମାନଧାତା ଏପର୍ଯ୍ୟନ୍ତ ବେହାର ଦରବାର-ଠାରେ ବଶ୍ୟତା ସ୍ୱୀକାର କରି ନାହାନ୍ତି, ପ୍ରତ୍ୟୁତ ବିପକ୍ଷ ପକ୍ଷ ଅବଲମ୍ବନଦ୍ୱାରା ତାହାଙ୍କର ଆତଙ୍କର କାରଣ ହୋଇ ରହିଅଛନ୍ତି । ଉତ୍କଳ ଦେଶରୁ ବଙ୍ଗଦେଶକୁ ପ୍ରବେଶ କରିବା ନିମନ୍ତେ ରାୟବଣିଆ ଦୁର୍ଗ ଦ୍ୱାରସ୍ୱରୂପ ଅଟେ । ବିଶେଷରେ ଦୁର୍ଗେଶ୍ୱର ମାନଧାତା ଜଣେ କ୍ଷମତାଶାଳୀ ଏବଂ ରଣକୌଶଳୀ । ତାଙ୍କ ଅଧୀନସ୍ଥ ପଞ୍ଚଦଶ ସହସ୍ର ଖଣ୍ଡାଏତ ପାଇକ ସାହସୀ, ରଣନିପୁଣ ଏବଂ ଅନୁଗତ ଅଟନ୍ତି । ଶୀର୍ଷ ଭାଗରେ ପ୍ରବଳ ଶତ୍ରୁର ବର୍ତ୍ତମାନତାରେ ବେହାରପତି ଉତ୍କଳଖଣ୍ଡ ସମ୍ପୂର୍ଣ୍ଣରୂପେ ଆୟତ୍ତ କରି ମଧ୍ୟ ନିଶ୍ଚିନ୍ତ ହୋଇ ପାରି ନ ଥିଲେ । ତନ୍ନିବନ୍ଧନ ବିଶେଷ ଚିନ୍ତିତ । ଫୌଜଦାର ଭାସ୍କର ପଣ୍ଡିତ ଉଦ୍ଦେଶ୍ୟ ସାଧନରେ ଅକୃତକାର୍ଯ୍ୟ ହେବାରୁ ଦୂତଶ୍ରେଷ୍ଠ ପଣ୍ଡିତ ଶିଉଶଙ୍କର ମାଲୱାର ଆଗମନ କରିଅଛନ୍ତି ।

ସାୟାହ୍ନ ସମୟରେ ଦୂତବର ଶିଉଶଙ୍କର ମାଲୱାର ରାୟବଣିଆ ଦୁର୍ଗର ସିଂହଦ୍ୱାରଠାରେ ଉପସ୍ଥିତ ହେଲେ । ରାୟଗୁରୁ ବନମାଳୀ ବାଚସ୍ପତି, ପୁରୋହିତ ପୁରୁଷୋତ୍ତମ ରଥ, ଦଳବେହେରା ଗୋପାଳ ମଙ୍ଗରାଜ ପ୍ରଭୃତି ରାଜ୍ୟସ୍ଥ ପ୍ରଧାନପୁରୁଷମାନେ ପାଛୋଟି ଯାଇ ତାଙ୍କୁ ସମର୍ଯ୍ୟାଦାରେ ସଙ୍ଗୋଳ ସଭାକୁ ଘେନି ଗଲେ । ଶ୍ରୀ ଶ୍ରୀ ଶ୍ରୀ ମାନଧାତା ଦରବାରରେ ବିଜେ କରିଛନ୍ତି, ତାଙ୍କ ସମ୍ମୁଖଭାଗ ବାମପାର୍ଶ୍ୱରେ ଦଳେଇ, ଦଳ-ବେହେରା, ଥାଟବେହେରା, ଥାଟନାୟକ, ପାଞ୍ଜିଆ କରଣ, ଲେଖନକାର ପ୍ରଭୃତି କର୍ମଚାରୀମାନେ ଆପଣା ଆପଣା ପଦମର୍ଯ୍ୟାଦାନୁସାରେ ଯଥାଯୋଗ୍ୟ ଆସନ ଅଧିକାର କରି ବସିଛନ୍ତି । ଦକ୍ଷିଣଶ୍ରେଣୀରେ ପୁରୋହିତ, ରାଜଗୁରୁ, ରାୟଗୁରୁ, ସଭାପଣ୍ଡିତ, ସଦସ୍ୟ, ଶାସନ-ପାଣିଗ୍ରାହୀ ପ୍ରଭୃତି ବ୍ରାହ୍ମଣମାନଙ୍କ ଆସନ ନିରୂପିତ ହୋଇଅଛି । ସେହି ଶ୍ରେଣୀରେ ଶୀର୍ଷସ୍ଥାନୀୟ ଆସନ ଦୂତଙ୍କୁ ପ୍ରଦତ୍ତ ହେଲା । ଦୂତ ନମସ୍କରଣୀୟ ବ୍ରାହ୍ମଣ, ମାନଧାତା ଉଠିଗି ହେଲେ, ଦୂତ ଦୁଇ ହସ୍ତ ଅଞ୍ଜଳିବଦ୍ଧ କରି ଆଶୀର୍ବାଦ କଲେ—

"କଣ୍ଠେ ଯସ୍ୟ ବିରାଜତଂ ହି ଗରଳଂ
ଶୀର୍ଷେ ଚ ମନ୍ଦାକିନୀ
ବାମାଙ୍ଗେ ଗିରିଜାନନଂ କଟିତଟେ
ଶାର୍ଦ୍ଦୂଳ ଚର୍ମାମ୍ବରଂ ।
ମାୟା ଯସ୍ୟ ରୁଣଦ୍ଧି ବିଶ୍ୱମଖିଳଂ
ପାୟାତ୍ ଶିବଃ ଶଙ୍କରୋ
ଜମ୍ବୁବଚ୍ଛଳବନ୍ଦୁବଚ୍ଛଳଜବ-
ଚ୍ଛମ୍ବାଳବଚ୍ଛାଳବତ୍ ।"

ବୋଇଲେ—ଯେଉଁ ଶିବଙ୍କ କଣ୍ଠରେ ଗରଳ ଜମ୍ବୁଫଳ ରୂପେ, ମସ୍ତକରେ ମନ୍ଦାକିନୀ ଜଳବିନ୍ଦୁରୂପେ, ବାମାଙ୍ଗରେ ଗିରିଜା—କ ପାଦୁଙ୍କ ମୁଖ ପଦ୍ମ ପୁଷ୍ପରୂପେ ଏବଂ କଟିତଟରେ ବ୍ୟାଘ୍ରଚର୍ମ କର୍ଦ୍ଦମରୂପେ ବିରାଜିତ—ଏବଂ ଯାହାର ମାୟା ଜାଲରୂପେ ବିଶ୍ୱ ସଂସାରକୁ ଆବରଣ କରି ରଖିଛି, ଏବଂଭୂତ ଯେ ଶିବ ଆପଣଙ୍କୁ ରକ୍ଷା କରନ୍ତୁ ।

ଦୂତ ଆସନ ଗ୍ରହଣ କଲେ, ସଭା ନିସ୍ତବ୍ଧ, ସମସ୍ତେ ତାହାଙ୍କ ମୁଖକୁ ଚାହିଁ ରହିଛନ୍ତି । ଦୂତ ଆସନ ଗ୍ରହଣ କରି ଥରେ ଶ୍ରୀ ଶ୍ରୀ ଶ୍ରୀ ମାନଧାତାଙ୍କୁ ଅନାଇ ତହିଁ ଉତ୍ତାରେ ସଭାସ୍ଥ ସମସ୍ତଙ୍କୁ ଥରେ ଥରେ ଅନାଇଲେ । ସଭାବୃନ୍ଦ ସର୍ବ ସ୍ଥାନ ଥରେ ନିରୀକ୍ଷଣ କରି ମସ୍ତକ ଅବନତ କରି ତୁନି ହୋଇ ବସିଲେ । ଉଭୟ ପକ୍ଷରୁ ପରସ୍ପର ଶାରୀରିକ, ବୈଷୟିକ, ଉଭୟ ପକ୍ଷର ରାଜ୍ୟ ଏବଂ ରାଜଗୋଷ୍ଠୀର ମଙ୍ଗଳ ସମାଚାର ସଙ୍ଖୋଳା ପୁଚ୍ଛା ହେଲା ଉତ୍ତାରେ ଦୂତବର ମାନଧାତାଙ୍କୁ ଅନାଇ ଏହି ଶ୍ଳୋକ ପାଠ କଲେ—

"ଯଦା ଯଦାହି ଧର୍ମସ୍ୟ ଗ୍ଳାନିର୍ଭବତି ଭାରତ ।
ଅଭ୍ୟୁତ୍ଥାନମଧର୍ମସ୍ୟ ତଦାତ୍ମାନଂ ସୃଜାମ୍ୟହଂ ।"

ହେ ଦୁର୍ଗେଶ୍ୱର ଅବଧାନ, ହେ ସଭାସ୍ଥ ଜ୍ଞାନିବର୍ଗ ! ପ୍ରଣିଧାନ କରିବାକୁ ଆଜ୍ଞା ହେଉ—ଏହି ସଂସାରସ୍ଥ ପ୍ରାଣୀମାନଙ୍କର ଶାନ୍ତିଦାୟକ ଏବଂ ଶ୍ରେୟଃସାଧନକାରୀ ଧର୍ମର ଯେତେବେଳେ ଗ୍ଳାନି ଉପସ୍ଥିତ ହୁଏ— ବୋଇଲା, ଅଧର୍ମବାହୁଲ୍ୟଯୋଗୁଁ ଧର୍ମର ହାନି ହୁଏ, ସେତେବେଳେ ଆମ୍ଭେ ଆପଣାକୁ ସୃଜନ କରୁଁ; ଅର୍ଥାତ୍ କି ନା ଆମ୍ଭେ ଅବତାର ରୂପେ ଜନ୍ମଗ୍ରହଣ କରୁଁ । ଏହା ଭଗବାନଙ୍କ ଶ୍ରୀମୁଖବାକ୍ୟ । ଆହୁରି ମଧ୍ୟ ମହାପ୍ରଭୁ କହିଛନ୍ତି—

"ପରିତ୍ରାଣାୟ ସାଧୂନାଂ ବିନାଶାୟ ଚ ଦୁଷ୍କୃତାଂ,
ଧର୍ମସଂସ୍ଥାପନାର୍ଥାୟ ସମ୍ଭବାମି ଯୁଗେ ଯୁଗେ ।"

ଅର୍ଥାତ୍ କି ନା, ଧର୍ମନିରତ ସାଧୁମାନଙ୍କ ପରିତ୍ରାଣ ଏବଂ ଦୁଷ୍କୃତକାରୀ ପାପୀମାନଙ୍କ ବିନାଶ ନିମନ୍ତେ ଏବଂ ସତ୍ୟଧର୍ମର ସଂସ୍ଥାପନ ସକାଶେ ଆମ୍ଭେ ଯୁଗେ ଯୁଗେ ଜନ୍ମଗ୍ରହଣ କରୁଁ ।

ଦେଖିବା ହେଉନ୍ତୁ, ମହାପ୍ରଭୁଙ୍କ ଶ୍ରୀମୁଖବାକ୍ୟ ବ୍ୟର୍ଥ ହେବାର ନୁହେଁ । ଏହି ପୁଣ୍ୟଭୂମି ଭାରତଖଣ୍ଡ ମଧ୍ୟରେ ଯେତେଥର ଦୁର୍ଦ୍ଧର୍ଷ ରାକ୍ଷସମାନେ ପ୍ରବଳ ହୋଇ ଯାଗଯଜ୍ଞ ପ୍ରଭୃତି ବୈଦିକ କ୍ରିୟାକଳାପ ବିନାଶପୂର୍ବକ ଧାର୍ମିକ ସାଧୁଲୋକଙ୍କ ପ୍ରତି ଅତ୍ୟାଚାର କରିଅଛନ୍ତି ସେତେଥର ମହାପ୍ରଭୁ ସ୍ୱୟଂ ପୃଥିବୀରେ ଅବତୀର୍ଣ୍ଣ ହୋଇଛନ୍ତି । ରାମ ରୂପେ— ଜଗତରେ ଅତ୍ୟାଚାରୀ ରାବଣକୁ ବିନାଶ କରିଅଛନ୍ତି । କଂସ, ଶିଶୁପାଳ, ଜରାସନ୍ଧ ପ୍ରଭୃତିଙ୍କ ଦ୍ୱାରା ଧର୍ମ ପ୍ରତି, ଧାର୍ମିକମାନଙ୍କ ପ୍ରତି ଅତ୍ୟାଚାର ଘଟିଥିଲା; ମହାପ୍ରଭୁ ସ୍ୱୟଂ ଶ୍ରୀକୃଷ୍ଣରୂପେ ଅବତୀର୍ଣ୍ଣ ହେଲେ । ମହାପ୍ରଭୁ ଆଜ୍ଞା କରିଅଛନ୍ତି, ଯେତେବେଳେ ଧର୍ମର ଗ୍ଳାନି ଉପସ୍ଥିତ ହେବ, ସେତେବେଳେ ସେ ଅବତାର ରୂପ ଧାରଣ କରିବେ ।

ମାନଧାତା ଅବଧାନ, ଏହି ପୁଣ୍ୟଭୂମି ଉତ୍କଳଖଣ୍ଡର ରାଜନ୍ୟ ମଣ୍ଡଳୀରେ ଆପଣ ସର୍ବ ବିଷୟରେ ଅଗ୍ରଗଣ୍ୟ । ଆପଣଙ୍କ ସାହସ, ପାଣ୍ଡିତ୍ୟ, ଧାର୍ମିକତା ସର୍ବତ୍ର ବିଦିତ । ଦିଲ୍ଲୀର ଶ୍ରେଷ୍ଠତମ ଦରବାରରେ ଉତ୍କଳ ଦେଶର କଥା ଉତ୍ଥାପିତ ହେଲେ ପ୍ରଥମେ ଆପଣଙ୍କ ନାମର ଉଲ୍ଲେଖ ହୁଏ । ଆପଣ ଖଣ୍ଡାୟତକୁଳର ଚୂଡ଼ାମଣି ଅଟନ୍ତି । ବିଶେଷରେ ମହାପ୍ରଭୁ ସ୍ୱୟଂ ବୋଲି ଅଛନ୍ତି, "ମାନବ ମଧ୍ୟେ ମୁଁ ରାଜନ ।" ରାଜାମାନେ ଭଗବାନ ବିଷ୍ଣୁଙ୍କ ଅଂଶରେ ଜାତ । ଆପଣ ଜଣେ ନରପତି, ଏଥିକୁ ବିଷ୍ଣୁତୁଲ୍ୟ ପୂଜ୍ୟ । ଆପଣଙ୍କ ସଭାସ୍ଥ ଜ୍ଞାନୀମାନଙ୍କ ନାମ କେତେଥର ଶ୍ରବଣ କରିଥିଲୁଁ, ଅଦ୍ୟ ନେତ୍ର କର୍ଣ୍ଣ ଉଭୟ ଇନ୍ଦ୍ରିୟର କ୍ରିୟା ସଫଳ ହେଲା । ଆପଣଙ୍କ ସଭାସ୍ଥ ସଦସ୍ୟମାନେ ବିଶେଷ ଜ୍ଞାନସମ୍ପନ୍ନ ଏବଂ ସର୍ବଶାସ୍ତ୍ରଦର୍ଶୀ, ଏଥିକୁ ଜ୍ଞାନୀମଣ୍ଡଳୀପୂର୍ଣ୍ଣ ଏହି ରାଜସଭାରେ ବିଶେଷ କିଛି ବ୍ୟାଖ୍ୟାନ କରିବା ମତ୍‌ସଦୃଶ କ୍ଷୁଦ୍ର ଲୋକ ପକ୍ଷରେ ଧୃଷ୍ଟତାର କାର୍ଯ୍ୟ ଅଟେ । ମାତ୍ର ପ୍ରୟୋଜନସାଧନର ଅନୁରୋଧରେ କିଛି କଥା ବୋଲିବାକୁ ବାଧ୍ୟ ହେଉଅଛୁ । ଏହି ପୁଣ୍ୟକ୍ଷେତ୍ର

ଭାରତଖଣ୍ଡରେ ମ୍ଲେଚ୍ଛ ପ୍ରାବଲ୍ୟରେ ଦେବତା ବ୍ରାହ୍ମଣଙ୍କ ମର୍ଯ୍ୟାଦା ଏବଂ ସନାତନ ଆର୍ଯ୍ୟ ବୈଦିକ ଧର୍ମର ନିସ୍ତାକାଣ୍ଡ ବିଲୁପ୍ତପ୍ରାପ୍ତ ହୋଇଥିଲା ।

''ମ୍ଲେଚ୍ଛନିବହନିଧନେ କଳୟସି କରବାଳଂ
ଧୂମକେତୁମିବ କମପି କରାଳଂ
କେଶବ ଧୃତ କଳ୍କି ଶରୀର—''

ମହାତ୍ମା ଶିବାଜୀ ବିଷ୍ଣୁଙ୍କ କଳ୍କି ଅବତାର, ମ୍ଲେଚ୍ଛ ନିବହନିଧନ ଏବଂ ସନାତନ ବୈଦିକ ଧର୍ମ ଉଦ୍ଧାର କରି ଲୀଳା ସମ୍ବରଣ କରିଅଛନ୍ତି । ଉକ୍ତ ମହାତ୍ମାଙ୍କ ଆବିର୍ଭାବ ହୋଇ ନ ଥିଲେ ପୁଣ୍ୟକ୍ଷେତ୍ର ଭାରତଖଣ୍ଡର ହିମାଳୟଠାରୁ କନ୍ୟାକୁମାରୀ ପର୍ଯ୍ୟନ୍ତ ସମସ୍ତ ସ୍ଥାନରେ ଯବନାଧିକାର ନିରଙ୍କୁଶରୂପେ ବିସ୍ତୃତ ଥାନ୍ତା, ସନାତନ ହିନ୍ଦୁଧର୍ମର ଚିହ୍ନ ମାତ୍ର ଥାନ୍ତା ନାହିଁ । ମହାତ୍ମା ଶିବାଜୀ ଧର୍ମବୈରୀ ପ୍ରବଳଭୁଜଙ୍ଗରୂପୀ ଦିଲ୍ଲୀ ବାଦସାହ କଣ୍ଠଦେଶରେ ଏପରି କୁଠାରାଘାତ କରି ଯାଇଅଛନ୍ତି ଯେ, ତନ୍ନିବନ୍ଧନ ସେ କ୍ରମଶଃ ନିର୍ବୀର୍ଯ୍ୟ ହୋଇ ପଡ଼ୁଅଛି, ତାହାର ପତନ ଅନିବାର୍ଯ୍ୟ । ବୃକ୍ଷମୂଳ ଭଗ୍ନ ହେଲେ ଶାଖା ପ୍ରଶାଖା ସହଜରେ ବିନଷ୍ଟ ହୋଇଥାଏ । ଦିଲ୍ଲୀ ସିଂହାସନ ସହିତ ତାହାର ଶାଖା ସ୍ୱରୂପ ସୁବା ସମସ୍ତ ଯେ ଧ୍ୱଂସପ୍ରାପ୍ତ ହେବ, ଏହା ଧ୍ରୁବ ସତ୍ୟ ଜାଣିବା ହେବେ । ବର୍ତ୍ତମାନ ମ୍ଲେଚ୍ଛାଧିକାରର ଅବସାନ ଓ ସନାତନ ଆର୍ଯ୍ୟଧର୍ମର ସମୁତ୍‌ଥାନର ସନ୍ଧି ସମୟ ସମୁପସ୍ଥିତ । ଯେପରି ଆର୍ଯ୍ୟ ଆଧିପତ୍ୟ ଆର୍ଯ୍ୟଧର୍ମ ଅକ୍ଷୁଣ୍ଣଭାବରେ ବୃଦ୍ଧି ପାଏ, ସେଥି ସକାଶେ ପ୍ରତ୍ୟେକ ହିନ୍ଦୁ ଅଧିପତିଙ୍କ ପକ୍ଷରେ ସଯତ୍ନ ରହିବା କର୍ତ୍ତବ୍ୟ ଅଟେ । ଆପଣ ଉତ୍କଳଖଣ୍ଡର ଖଣ୍ଡାଏତ କୁଳର ଅଗ୍ରଣୀ । ଭାରତବର୍ଷ ମଧ୍ୟରେ ତୀର୍ଥପ୍ରଧାନ ପୁଣ୍ୟକ୍ଷେତ୍ରମୟ ପତିତପାବନୀ ସର୍ବପାପବିନାଶିନୀ ମହାନଦୀ-ବୈତରଣୀ ବିଧୌତ ଉତ୍କଳ ଖଣ୍ଡରେ ଯବନାଧିକାର ବିଲୁପ୍ତ ହୋଇ ଆର୍ଯ୍ୟ ଆଧିପତ୍ୟ ବଦ୍ଧମୂଳ ହେବା ବିଷୟ ଆପଣଙ୍କ ପ୍ରତି ନିର୍ଭର କରୁଅଛି । ବେରାରେଶ୍ୱର ସମ୍ପୂର୍ଣ୍ଣରୂପେ ଆଶା କରିଅଛନ୍ତି, ଆପଣ ଉତ୍କଳଖଣ୍ଡରୁ ଯବନାଧିକାରର ବିଲୋପ ସାଧନ ବିଷୟରେ ତାଙ୍କର ସହାୟ ହେବେ । ଉତ୍କଳର ସମସ୍ତ ଦୁର୍ଗେଶ୍ୱର ବର୍ତ୍ତମାନ ନବାବର ଦରବାର ସହିତ ସନ୍ଧିସୂତ୍ରରେ ଆବଦ୍ଧ । ଉତ୍କଳର ସ୍ୱଜାତୀୟ ସମସ୍ତ ଖଣ୍ଡାଧିପତି ତାଙ୍କ ପକ୍ଷ ପରିତ୍ୟାଗ କରି ଯବନପକ୍ଷପାତୀ ହେବେ, ବେରାରପତି ଏହା ବିଶ୍ୱାସ କରନ୍ତି ନାହିଁ । ଆପଣ ପୃଥ୍ୱୀରାଜ, ଜୟଚନ୍ଦ ଏବଂ ପ୍ରତାପ, ଶକ୍ତସିଂହଠାରୁ ଅଦ୍ୟାବଧି ସମସ୍ତ ରାଜ୍ୟାଧିକାର ବିଷୟ ପର୍ଯ୍ୟାଲୋଚନା କରି ଦେଖନ୍ତୁ, ଶୌର୍ଯ୍ୟ ବୀର୍ଯ୍ୟର ଅଭାବ ହିନ୍ଦୁଜାତିର ପତନର କାରଣ ନୁହେଁ । ଆର୍ଯ୍ୟ ଜାତିର ଶୌର୍ଯ୍ୟ, ଆର୍ଯ୍ୟ ରଣପାଣ୍ଡିତ୍ୟ ଜଗତରେ ଅତୁଳନୀୟ । ଗୃହବିବାଦ ଆର୍ଯ୍ୟଜାତିର ପତନର ଏକମାତ୍ର କାରଣ ଅଟେ । କୁରୁକ୍ଷେତ୍ର ସମର ଆତ୍ମବିଦ୍ରୋହର ପୌରାଣିକ ଜାଜ୍ୱଲ୍ୟମାନ ପ୍ରମାଣ । ଏହି ପ୍ରତ୍ୟକ୍ଷୀଭୂତ ବିଷୟର ବାହୁଲ୍ୟ ବର୍ଣ୍ଣନା ଅନାବଶ୍ୟକ । ସମ୍ପ୍ରତି ବିଧିଦତ୍ତ ବିଶେଷ ସୁଯୋଗ ଉପସ୍ଥିତ । ଆସନ୍ତୁ, ଆମ୍ଭେମାନେ ମିଳିତ ହୋଇ ବିଧର୍ମୀ ମ୍ଲେଚ୍ଛମାନଙ୍କୁ ଦୂରୀଭୂତ କରି ସ୍ୱର୍ଗାଦପି ଗରୀୟସୀ ମାତୃଭୂମିରେ ବିଲୁପ୍ତ ରତ୍ନ ସ୍ୱାଧୀନତାର ପୁନଃସ୍ଥାପନ ବିଷୟରେ ସଚେଷ୍ଟ ହେବା । ବେରାର-ପତିଙ୍କ ସ୍ୱାର୍ଥ ସହିତ ଭାରତଭୂମିର ପ୍ରତ୍ୟେକ ହିନ୍ଦୁସନ୍ତାନର ସ୍ୱାର୍ଥ ଜଡ଼ିତ । ସମସ୍ତଙ୍କର ଏକମାତ୍ର ଲକ୍ଷ୍ୟ, ଇଚ୍ଛାରେ ଅବା ଅବହେଳାରେ ଲକ୍ଷ୍ୟଭ୍ରଷ୍ଟ ହେବା ଉଚିତ ନୁହେଁ । ବେରାରପତି ବିଶେଷ ଆଶା କରି ଆମ୍ଭକୁ ଆପଣଙ୍କ ନିକଟକୁ ପ୍ରେରଣ କରିଅଛନ୍ତି । ଆମ୍ଭେ ସମ୍ପୂର୍ଣ୍ଣରୂପେ ଆଶା କରୁଁ, ଏହି ସନ୍ମିଳନକର ସୌହାର୍ଦ୍ଦ୍ୟ ସ୍ଥାପନେ ବିଷୟରେ ଆପଣ ଅସମ୍ମତ ହେବେ ନାହିଁ ।

ଦୂତ ଏହି ସମସ୍ତ କଥା ସୁସ୍ପଷ୍ଟ ପ୍ରାଞ୍ଜଳ ଭାଷାରେ ପ୍ରକାଶ କରି ଉତ୍ତର ପାଇବା ଆଶାରେ ମାନଧାତାଙ୍କ ଶ୍ରୀମୁଖକୁ ଲକ୍ଷ୍ୟ କରି ରହିଲେ ।

ଦୂତଙ୍କ କଥାରେ ଉତ୍ତର ଦେବା ନିମନ୍ତେ ଦୁର୍ଗେଶ୍ୱର ରାଜ୍ୟଗୁରୁ ବନମାଳୀ ବାଚସ୍ପତିଙ୍କ ମୁଖକୁ ଦୃଷ୍ଟିପାତ କରିବାରୁ ବାଚସ୍ପତି ତାହାଙ୍କ ଅଭିପ୍ରାୟ ହୃଦୟଙ୍ଗମ କରି କଣ୍ଠ ପରିଷ୍କାରସୂଚକ ଦୁଇ ତିନିଥର ଅନୁଚ୍ଚ ଶବ୍ଦ କରି ଧୀର ଗମ୍ଭୀରସ୍ୱରରେ କହିବାକୁ ଆରମ୍ଭ କଲେ—

"ଦୂତବର, ବର୍ତ୍ତମାନ ସମୟରେ ବେହାର ଦରବାର ଭାରତଖଣ୍ଡ ମଧ୍ୟରେ ବିଶେଷ ଗୌରବାନ୍ୱିତ। ଏହି କ୍ଷମତାଶାଳୀ ନରପତିଙ୍କ ସହିତ ସୌହାର୍ଦ୍ଦ୍ୟ ସ୍ଥାପନ କରିବା ସୌଭାଗ୍ୟର ବିଷୟ ଅଟେ । ବିଶେଷରେ ବେହାରପତି ସ୍ୱେଚ୍ଛାପ୍ରବୃତ୍ତ ହୋଇ ଏହି ଦୁର୍ଗେଶ୍ୱରଙ୍କ ସହିତ ମୈତ୍ରୀ ସ୍ଥାପନର ଅଭିପ୍ରାୟ ପ୍ରକାଶ କରି ସୁଯୋଗ୍ୟ ଲୋକ ହସ୍ତରେ କାର୍ଯ୍ୟ ସମ୍ପାଦନର ଭାର ଅର୍ପଣ କରିଅଛନ୍ତି । ଆପଣ ଯେ ସମସ୍ତ ବାକ୍ୟ ପ୍ରୟୋଗ କଲେ, ସେ ସମସ୍ତ ଅକ୍ଷରେ ସତ୍ୟ, ଧ୍ରୁବ ସତ୍ୟ ଏବଂ ଯୁକ୍ତିଯୁକ୍ତ ଅଟେ । ମହାତ୍ମା ଶିବାଜୀଙ୍କ ଆବିର୍ଭାବ ହୋଇ ନ ଥିଲେ ଆଜି ଭାରତଭୂମିରେ ହିନ୍ଦୁଧର୍ମର ନିଦର୍ଶନ ପର୍ଯ୍ୟନ୍ତ ବିଲୁପ୍ତ ହୋଇଥାନ୍ତା । ମ୍ଳେଚ୍ଛନିବହନିଧନ ସାଧନ ନିମନ୍ତେ ସ୍ୱୟଂ ବିଷ୍ଣୁ ଯେ କଳ୍କି ଅବତାରରୂପେ ଅବତୀର୍ଣ୍ଣ ହୋଇଥିଲେ, ଏ କଥାକୁ ଅପ୍ରତ୍ୟୟ କରି କେଉଁ ଜ୍ଞାନୀ ଲୋକ ପ୍ରତ୍ୟବାୟଭାଗୀ ହେବାକୁ ସାହସ କରିବେ ? ରତ୍ନପ୍ରସୂ, କମଳାଙ୍କ ବିଳାସନିକେତନ, ସମଗ୍ର ଭାରତବର୍ଷରେ ଯାହାର ଅଖଣ୍ଡ ଆଧିପତ୍ୟ, ବହୁ ଲକ୍ଷ ସୁଶିକ୍ଷିତ କୃପାଣହସ୍ତ ପଦାତିକ, ଲକ୍ଷ ଲକ୍ଷ ଅଶ୍ୱାରୋହୀ, ବହୁ ସହସ୍ର ଗଜାରୋହୀ ଯାହାର ଇଙ୍ଗିତ ମାତ୍ରକେ ଚାଳିତ, ସୂର୍ଯ୍ୟ ଚନ୍ଦ୍ର ବଂଶୀୟ ମହାବୀର ନୃପତିବୃନ୍ଦ ଯାହାର ଆଜ୍ଞାବହ, ଭାରତବର୍ଷରେ ରାଜନ୍ୟମଣ୍ଡଳୀ ଯାହାର ସିଂହାସନ ତଳେ ଅବନତମସ୍ତକ, କୁବେରଭଣ୍ଡାର ତୁଲ୍ୟ ଯାହାର ଧନାଗାର, ଏପରି 'ଦିଲ୍ଲୀଶ୍ୱରୋ ବା ଜଗଦୀଶ୍ୱରୋ ବା' ଦୁର୍ଦ୍ଦଣ୍ଡ ସମ୍ରାଟଙ୍କୁ ଗୋଟିଏ କ୍ଷୁଦ୍ର ଜମିଦାରର ପୁତ୍ର ସାମାନ୍ୟ ଦସ୍ୟୁଦଳ ସହାୟତାରେ ପରାସ୍ତ କଲେ, ଏହା ପ୍ରତ୍ୟକ୍ଷୀଭୂତ ବିଷୟ ହୋଇ ନ ଥିଲେ ବିଶ୍ୱାସର ଯୋଗ୍ୟ ହୁଅନ୍ତା ନାହିଁ । ଶିବାଜୀଙ୍କ ଚରିତ୍ରବଳ, ବାହୁବଳ ସାଧାରଣ ମାନବମଣ୍ଡଳୀର ଅତୁଳନୀୟ ବିଷୟ ଅଟେ । ତାଙ୍କର ସମରସାମର୍ଥ୍ୟ, ଧର୍ମପ୍ରାଣତା, ସ୍ୱଦେଶବାତ୍ସଲ୍ୟ ଜଗତରେ ଦୁର୍ଲଭ । ଦୂତବର, ଅଧିକ କଣ କହିବୁଁ, ସେହି ମହାତ୍ମାଙ୍କ ସହିତ ଆର୍ଯ୍ୟଗୌରବ ବିଲୁପ୍ତ ହୋଇଅଛି । ମହାତ୍ମା ଶିବାଜୀଙ୍କ ନିର୍ମିତ କୀର୍ତ୍ତିସୌଧର ପତନ ଅନିବାର୍ଯ୍ୟ ।"

ଦୂତ—ବାଚସ୍ପତି ଅବଧାନ, ସମସ୍ତ ଆର୍ଯ୍ୟ ନୃପତି ସମବେତ ହେଲେ ସେହି କୀର୍ତ୍ତି ସୌଧ-ରକ୍ଷା ସମ୍ଭବ ନୁହେଁ କି ?

ରାଜ୍ୟଗୁରୁ—ହିଁ, ଐକ୍ୟ—ଐକ୍ୟ, ବିଧାତା ଏକତା ଆର୍ଯ୍ୟ-ଅଦୃଷ୍ଟରେ ଲେଖି ନାହାନ୍ତି ଦୂତରାଜ ! 'ଯଦ୍ୟଦାଚରତି ଶ୍ରେଷ୍ଠସ୍ତତ୍ତଦେବେତରୋ ଜନାଃ ।'

ଶ୍ରେଷ୍ଠ ଲୋକର ଆଚରଣକୁ ଇତର ଲୋକ ଅନୁକରଣ କରିଥାନ୍ତି । ଦୂତରାଜ ! ଆପଣ ତ ଉତ୍କଳର ଖଣ୍ଡାଧିପତିଙ୍କୁ ଆପଣାର କରିବାକୁ ଇଚ୍ଛୁକ, ହେଲେ ଆପଣା ଘରକଥା ବୁଝୁନ୍ତୁ ତ ! ସିନ୍ଧିଆ, ହୋଲକାର, ଗାଇକୁମାର, କାହା ସହିତ କାହାର ଐକ୍ୟ ?

ଦୂତ—ଏମାନଙ୍କ ମଧ୍ୟରେ ବର୍ତ୍ତମାନ ବିବାଦବିସମ୍ବାଦ କିଛି ନାହିଁ—ପରସ୍ପର ସମ୍ପ୍ରୀତିରେ ରହିଅଛନ୍ତି ।

ରାଜ୍ୟଗୁରୁ— ଆପଣଙ୍କ ତୁଲ୍ୟ ବ୍ୟକ୍ତିଙ୍କ ମୁଖରେ ଏପରି କଥା ଶୋଭା ପାଏ କି ? ଏପରି କଥା ରାଜଦରବାରରେ ପ୍ରକାଶ କରିବା ଅଯୋଗ୍ୟ ଅଟେ ।

"ତୁଳସି ଦଲ୍ ସମଜଲଆ ବାତ୍ କହୋ ତୋ ନଗୀନ,
ଛିର ଯେସେ ମିଲ୍ ରହେ ଭକତର ଫାଙ୍କେ ତିନ୍ ।

ଦୂତ—ଗୃହ ମଧ୍ୟରେ ଭାଇ ଭାଇ ବିବାଦ ଥିଲେ ମଧ୍ୟ ଗୃହପ୍ରବିଷ୍ଟ ତସ୍କରକୁ ଦୂରୀଭୂତ କରିବା ନିମନ୍ତେ ଯତ୍ନଶୀଳ ହେବା କି ଜ୍ଞାନୀଲୋକ ପକ୍ଷରେ କର୍ତ୍ତବ୍ୟ ନୁହେ ? ବର୍ତ୍ତମାନ ବିଦେଶୀୟ ବିଧର୍ମୀ ଯବନର ଯେପରି ପ୍ରାଦୁର୍ଭାବ; ହିନ୍ଦୁ ରାଜନ୍ୟବର୍ଗ ପରସ୍ପର ବିବାଦ-ବିସମ୍ବାଦ ବିସର୍ଜନ, ବିସ୍ମରଣ, ବଳିଦାନ ନ କଲେ ଧର୍ମରକ୍ଷା, ମାନସମ୍ଭ୍ରମ ରକ୍ଷା ଏମନ୍ତ କି ପ୍ରାଣ ପର୍ଯ୍ୟନ୍ତ ରକ୍ଷା ଆଶା କରିବା ବିଡ଼ମ୍ବନା ମାତ୍ର ।

ରାଘୁଜୀ ଗୁରୁ—ମୁହୂର୍ତ୍ତେ ପୂର୍ବେ ଯେଉଁ କଥା ବୋଲି-ଅଛନ୍ତି ତାହା ବିସ୍ମୃତ ହୋଇଗଲେ ! ଆପଣ ସେ ଆତ୍ମକଥିତ ବାକ୍ୟ ଖଣ୍ଡନ କରୁଅଛନ୍ତି ! ଭ୍ରାତୃବିରୋଧ-ରୂପ ସୁଯୋଗ ପ୍ରାପ୍ତ ହୋଇ ଯବନ ଆର୍ଯ୍ୟଭୂମିରେ ଆଧିପତ୍ୟ ବିସ୍ତାର କରିବାକୁ ସୁଯୋଗ ପ୍ରାପ୍ତ ହୋଇଅଛି ତ ? ରୋଗୋତ୍ପତ୍ତିର କାରଣ ଦୂର ନ କରି ଔଷଧ ପ୍ରୟୋଗ କରିବା ବିଡ଼ମ୍ବନା ମାତ୍ର ।

ଦୂତ—ଅନ୍ତତଃ ଉତ୍କଳ ଦେଶରୁ ଯବନାଧିକାର ବିଲୋପ ନିମନ୍ତେ ସମସ୍ତ ଖଣ୍ଡାଧିପତି ଏକତା ଅବଲମ୍ବନ ପୂର୍ବକ ବେରାରପତିଙ୍କର ସହାୟ ହେବା ଉଚିତ ନୁହେ କି ?

ରାଘୁଜୀଗୁରୁ—ଦୂତବର ! ବେରାର ଅଧିପତି ଉପ-ଯାଚକ ହୋଇ ଯେଉଁ ଅନୁଗ୍ରହ ବିସ୍ତାର କରିବାକୁ ବସିଅଛନ୍ତି, ସେହି ଅନୁଗ୍ରହ ସମ୍ବରଣ କଲେ ଉତ୍କଳ ଦେଶ ଆପଣାକୁ ସୌଭାଗ୍ୟବାନ୍ ଜ୍ଞାନ କରିବ ।

ଦୂତ—ରାଘୁଜୀ ଗୁରୁ ଅବଧାନ ! ମହାରାଜ ରଘୁଜୀ ଭୋଁସଲା ଏପରି କି ଅନ୍ୟାୟ କାର୍ଯ୍ୟ କରିଅଛନ୍ତି ଯେ, ଆପଣ ତାହାଙ୍କ ପ୍ରତି ଏପରି ବିମୁଖ ? ତେବେ ମୀରକାଶିମକୁ ବାଲେଶ୍ୱର ବନ୍ଦରରୁ ତଡ଼ି ଦେବା ଯେବେ ଦୋଷାବହ କାର୍ଯ୍ୟ ହୋଇଥାଏ, ତେବେ ଆମ୍ଭର ବକ୍ତବ୍ୟ କିଛି ନାହିଁ ।

ରାଘୁଜୀ ଗୁରୁ—ଦୂତବର ! ଆପଣ ବିଦେଶୀୟ ହେଲେ ମଧ୍ୟ ଉତ୍କଳର ଇତିବୃତ୍ତ ଅବଗତ ଅଛନ୍ତି । ତଥାପି ବାକ୍ୟର ଶୃଙ୍ଖଳା ରକ୍ଷା ନିମନ୍ତେ ସଂକ୍ଷେପରେ କିଛି କଥା ବୋଲିବା ପ୍ରୟୋଜନ । ଅତି ପ୍ରାଚୀନ ବଟ-ବୃକ୍ଷର ଜୀର୍ଣ୍ଣ କାଣ୍ଡ ବିନଷ୍ଟ ହେଲେ ଶାଖାମାନ ଯେପରି ସ୍ୱଦେହଲମ୍ବିତ ଓହରକୁ ଆଶ୍ରୟ କରି ସ୍ୱତନ୍ତ୍ର ବୃକ୍ଷରୂପେ ପରିଣତ ହୁଅନ୍ତି, ସେହିପରି ଉତ୍କଳର ରାଜରାଜେଶ୍ୱର ଗଜପତି ବଂଶ ବିଲୁପ୍ତପ୍ରଭ ହେବାରୁ ତାହାଙ୍କର କେତେକ ବଂଶଧର ଭାଇପୁଅ ଏବଂ ଖଣ୍ଡାଏତ ସେନାପତିମାନେ ବିଶାଖାପତ୍ତନ ବନ୍ଦରଠାରୁ ତାମ୍ରଲିପ୍ତ ବନ୍ଦର ପର୍ଯ୍ୟନ୍ତ ଏବଂ ପୂର୍ବପଶ୍ଚିମ ଆସମୁଦ୍ର ସୁବର୍ଣ୍ଣପୁର ମଧ୍ୟବର୍ତ୍ତୀ ସ୍ଥାନରେ ଅଧୀନସ୍ଥ ପାଇକମାନଙ୍କ ସହିତ ଆପଣା ଆପଣା ଅଧିକାର ମଧ୍ୟରେ ଦୀର୍ଘକାଳଯାବତ୍ ପରମ ସୁଖରେ ବାସ କରୁଥିଲେ । ହିନ୍ଦୁ ମୁସଲମାନ-ସମଦର୍ଶୀ ଦିଲ୍ଲୀଶ୍ୱର ଆକବରଙ୍କ ସୁଯୋଗ୍ୟ ହିନ୍ଦୁ ସେନାପତି ଅମ୍ବରେଶ୍ୱର ମାନସିଂହ ଏବଂ ରାଜା ତୋଡ଼ରମଲ୍ଲଙ୍କ ଅନୁରୋଧରେ, ତଥା ମାତୃଭୂମିର ଶାନ୍ତିରକ୍ଷା ନିମନ୍ତେ ଉତ୍କଳର ଖଣ୍ଡାଧିପତିମାନେ ନାମମାତ୍ର ମୋଗଲଠାରେ ବଶ୍ୟତା ସ୍ୱୀକାର କରିଥିଲେ । ତାହା ମଧ୍ୟ ପାର୍ବତ୍ୟ ଆରଣ୍ୟ ଖଣ୍ଡାଏତମାନଙ୍କ ସ୍ୱାଧୀନତାରେ ମୋଗଲ ହସ୍ତକ୍ଷେପ କରି ନାହାନ୍ତି । ସମୁଦ୍ର ଉପକୂଳ ସମତଳ ଭୂମିରେ ମୋଗଲାଧିକାର ସ୍ୱୀକୃତ ହୋଇଥିଲା— ସେହି ସ୍ଥାନ ମୋଗଲବନ୍ଦୀ ନାମରେ କଥିତ ହେଉଅଛି । ବର୍ତ୍ତମାନ ଉତ୍କଳପ୍ରତି ଦୃଷ୍ଟିପାତ କରି ଦେଖନ୍ତୁ, ଦେଶ ମଧ୍ୟରୁ ଶାନ୍ତିଦେବୀ ଏକାବେଳକେ ପ୍ରସ୍ଥାନ କରିଅଛନ୍ତି । ସର୍ବତ୍ର ଆତଙ୍କ, ସର୍ବତ୍ର ହାହାକାର, ସର୍ବତ୍ର ଦାରିଦ୍ର୍ୟର ପୂର୍ଣ୍ଣାବସ୍ଥା ! ଶତ ସହସ୍ର

ଖଣ୍ଡାଏତଙ୍କ ଚୌପାଢ଼ୀ କାହ୍ନୀର ଚିହ୍ନମାତ୍ର ବିଲୁପ୍ତ ହୋଇଅଛି । ଏହି ସମସ୍ତ ଅମଙ୍ଗଳର କାରଣ କିଏ ? ଅଥବା କାହା ପ୍ରତି ଦୋଷାରୋପ କରିବା ଉଚିତ ନୁହେଁ—ଉତ୍କଳର ଭାଗ୍ୟଦୋଷ ! ଦେଖନ୍ତୁ, ହରିଶପୁରଠାରୁ ତାମ୍ରଲିପ୍ତ ପର୍ଯ୍ୟନ୍ତ ସମୁଦ୍ର ଉପକୂଳମାନ ବାଣିଜ୍ୟ ବୋଇତରେ ପରିପୂର୍ଣ୍ଣ ଥିଲା, ଉତ୍କଳ ନାବିକମାନେ ଯବ, ବ୍ରହ୍ମ, ସୁମାତ୍ରା, ଲକ୍ଷଦ୍ୱୀପ ପ୍ରଭୃତି ସ୍ଥାନକୁ ଗମନକରି ବାଣିଜ୍ୟ ବିସ୍ତାର କରୁଥିଲେ, ଓଲନ୍ଦାଜ ଦସ୍ୟୁ ଫେରିଙ୍ଗୀମାନେ ସମସ୍ତ ବିନଷ୍ଟ କରିଅଛନ୍ତି । ବର୍ତ୍ତମାନ ଉତ୍କଳର ବାଣିଜ୍ୟଧନ ସାଗରମଧ୍ୟଗତ । ଅବଶିଷ୍ଟ ଥିଲା ସ୍ଥଳଭାଗ । ଦୂତରାଜ ! ମହାରାଷ୍ଟ୍ରପତିଙ୍କ ଠାରେ ଖଣ୍ଡାୟତମାନଙ୍କ ପକ୍ଷରୁ ଏତିକି ମାତ୍ର ପ୍ରାର୍ଥନା କରୁଅଛୁଁ, ତାହାଙ୍କର ଉପଯାଚିତ ଅନୁଗ୍ରହ ସମ୍ବରଣ କରନ୍ତୁ । ସହସ୍ର ବର୍ଷରେ ଉତ୍କଳର କ୍ଷତି ପୂର୍ଣ୍ଣ ହେବ ନାହିଁ । ଦୟାକରି ଆପଣ ବିଚାର କରନ୍ତୁ; ମୋଗଲ ଅଧିକାର ବିଲୋପ ନିମନ୍ତେ ମହାରାଷ୍ଟ୍ରଙ୍କ ସହାୟ ହେବୁଁ, ମୋଗଲ ଯିବେ, ମହାରାଷ୍ଟ୍ର ଆଧିପତ୍ୟ ବିସ୍ତାର କରିବେ—ଉତ୍କଳର ଲାଭ ?

ଦୂତ—ହେଉ, ମହାରାଷ୍ଟ୍ରପତିଙ୍କ ଅନୁଗ୍ରହକୁ ଯେବେ ଏପରି ଅମଙ୍ଗଳକର, ଏପରି ତୁଚ୍ଛ ପଦାର୍ଥ ଜ୍ଞାନ କରନ୍ତି, ନ ହେଲା, ସେହି ଅନୁଗ୍ରହ ସମ୍ବରଣ କରିବେ । ସପ୍ତସହସ୍ର ଖଣ୍ଡାଧାରୀ ବୀରବର ସିଂହଦ୍ୱାରଠାରେ ପ୍ରାର୍ଥୀ ହୋଇ ଉଭା ହୋଇଅଛନ୍ତି । ମହାରାଷ୍ଟ୍ରପତିଙ୍କ ସହିତ ସନ୍ଧି ନ କରିବା ସ୍ୱତନ୍ତ୍ର କଥା; ମାତ୍ର ପରିତାପର ବିଷୟ, ଆପଣ ଅକାରଣ ମହାମାନ୍ୟ ରାଜେଶ୍ୱରଙ୍କ ପ୍ରତି ଅଳୀକ ଦୋଷାରୋପ କରିବାକୁ ସଙ୍କୁଚିତ ହେଲେନାହିଁ । ଆପଣ ବୁଝନ୍ତୁ, ଖଣ୍ଡାଏତମାନଙ୍କ ବିନାଶର କାରଣ ମହାରାଷ୍ଟ୍ର ନୁହନ୍ତି । ସେମାନେ ସ୍ୱକୃତ ଅପରାଧର ଫଳ ଭୋଗ କରୁଅଛନ୍ତି । ବିଧର୍ମୀ ମ୍ଲେଚ୍ଛର ପକ୍ଷାବଲମ୍ବନ କରିବା କି ସେମାନଙ୍କ କର୍ତ୍ତବ୍ୟ ଥିଲା ? ହିନ୍ଦୁ ବା ଶତ୍ରୁ ପକ୍ଷପାତୀ ଲୋକଙ୍କୁ ଶାସନ କରିବା କି ରାଜଧର୍ମାନୁମୋଦିତ ନୁହେ ? ରାଜସମ୍ମାନ ଓ ରାଜଧର୍ମ ରକ୍ଷା କରିବା ରାଜାମାନଙ୍କର କର୍ତ୍ତବ୍ୟ ବ୍ରତ ଅଟେ । ଆଚ୍ଛା ହରିଶପୁର, ମରିଚପୁର, ବିସନପୁର କୁଜଙ୍ଗ, ଆଳି, କନିକା, ମଧୁପୁର ଜମିଦାରମାନେ ତ ଖଣ୍ଡାୟତ ?

ରାଯ୍‌ଗୁରୁ—ସବୁ କଥା ଜଣାଅଛି, ଆପଣାର ପଦମର୍ଯ୍ୟାଦା, ଆପଣାର ଆଧିପତ୍ୟ, ପିତୃପିତାମହଙ୍କ ଅର୍ଜିତ ମାନସମ୍ଭ୍ରମ ହରାଇ ବର୍ଗୀ ଫୌଜଦାରଠାରେ ପଦ୍ଧାନି କରିବାଠାରୁ ବିନଷ୍ଟ ଖଣ୍ଡାୟତମାନଙ୍କ ପନ୍ଥାନୁସରଣ କରିବା ସେମାନଙ୍କ ପକ୍ଷରେ ସାହସ ଥିଲେ ଉଚିତ ଥିଲା । ଏମାନେ ଖଣ୍ଡାଏତ କୁଳର କଳଙ୍କ; ଏମାନଙ୍କ ସହାୟତାରେ ବର୍ଗୀ ଅନ୍ୟ ଖଣ୍ଡାୟତମାନଙ୍କ ବିନାଶ ସାଧନରେ ସମର୍ଥ ହେଲେ ।

ଦୂତ ଉତ୍ତେଜିତ ହୋଇ କହିଲେ, "ହଁ, ରାଯ୍‌ଗୁରୁ ଅବଧାନ ! ମହାରାଷ୍ଟ୍ରପତିଙ୍କର ସୈନ୍ୟବଳ ନ ଥିଲେ ଓଡ଼ିଆ ବାଉଁଶମୂଳୀ ପାଞ୍ଚଣମୁଠା ଧରି ଯୁଦ୍ଧ କରିବାକୁ ଶିଖିଅଛନ୍ତି !"

ଫତିଆବାଦ କାହ୍ନି ଦଳ ବେହେରା ବନମାଳୀ ବଳିଆରସିଂହ ନିତାନ୍ତ ଉତ୍ତେଜିତ ହୋଇ ଖଣ୍ଡାମୁଠି ଦୃଢ଼ରୂପେ ଧରି ଗୁମ୍ଫ ଫୁଲାଇ କହିଲେ—"ଏଁ—ହିଁ, ହେ ଗୋସାଇଁ, କଣ ବୋଇଲେ, କଣ ବୋଇଲେ ? ଓଡ଼ିଆ ବାଉଁଶମୂଳୀ ? ଆପଣ ପୋଥି ଡୋର ବାନ୍ଧନ୍ତୁ । ବାଉଁଶମୂଳୀ ମହିମା କଣ ବୁଝିବେ ? ଢେଙ୍କାନାଳର ପର୍ଯ୍ୟଙ୍କ ବିଶେ ଦଳେଇ, ବାମ ବୈରିଗଞ୍ଜନ, ସୌରାକ ବିଶେ ଦଳ ବେହେରା, ଦଧି ଦକ୍ଷିଣକପାଟଙ୍କ ପାଞ୍ଚଣ ମୁଠି ବଳ ତୁମ୍ଭ ଫୌଜଦାର ଭାସ୍କର ପଣ୍ଡିତ କିଛି ବୁଝିଥିଲେ ! ଆପଣ କୁଣିଆପଣରେ ଆସି ବାହାପାଲ ଗାଉଛନ୍ତି କିଆଁ ?"

ଅନ୍ୟାନ୍ୟ ଦଳେଇ ଦଳବେହେରାମାନେ ଉତ୍ତେଜିତ ହୋଇ କଥା କହିବାକୁ ବାହାରିଥିଲେ;

ମାତ୍ର ମାନଧାତା ନିଷେଧସୂଚକ ଦୃଷ୍ଟି କ୍ଷେପ କରିବାରୁ ସମସ୍ତେ ନିବୃତ୍ତ ହେଲେ ।

ରାଜ୍ୟଗୁରୁ ଦୂତଙ୍କୁ ଅନାଇ କହିଲେ, "ମାଲିକର ଅବଧାନ ! ଏମାନଙ୍କ କଥା ଗ୍ରହଣ କରିବେ ନାହିଁ । ଏମାନେ କ୍ଷତଗ୍ରସ୍ତ ହୋଇ ଉତ୍ତେଜିତ ହୋଇ ପଡ଼ିଛନ୍ତି ।"

ଦୂତ—ବର୍ଗୀବିରୋଧୀ ଖଣ୍ଡାୟତମାନଙ୍କ କଥା ଯାହାହେଉ, ମାତ୍ର ଏହି ବ୍ୟକ୍ତିମାନଙ୍କର ଏପରି ଅସମ୍ମାନଜନକ କଥା କହିବାର କି ଅଧିକାର ଅଛି ?

ରାଜ୍ୟଗୁରୁ—ଦୂତବର ! "ସତ୍ୟଂ ବ୍ରୂୟାତ୍ ପ୍ରିୟଂ ବ୍ରୂୟାତ୍"—ଆମ୍ଭେ ଅନିଚ୍ଛାରେ ଆପଣଙ୍କ କଥାରେ ସତ୍ୟ ଉତ୍ତର ଦେବାକୁ ବାଧ୍ୟ ହେଉଅଛୁଁ । ଆପଣ ଉତ୍କଳଖଣ୍ଡର ବର୍ତ୍ତମାନ ଅବସ୍ଥା ଅବଗତ ନୁହନ୍ତି, ଅଥବା ଆତ୍ମପକ୍ଷ ସମର୍ଥନ ନିମନ୍ତେ ଏପରି କଥା କହୁଅଛନ୍ତି । ଉତ୍କଳ ଖଣ୍ଡାୟତମାନେ ସହସ୍ର ବର୍ଷ ଯାବତ୍ କାଳ ସ୍ୱାଧୀନତାର ଅମୃତମୟ ଫଳ ଭୋଗ କରି ଆସୁଥିଲେ । ଆନନ୍ଦୋତ୍ସବପୂର୍ଣ୍ଣ ଶତ ଶତ ଖଣ୍ଡାୟତ ଗ୍ରାମ ବର୍ତ୍ତମାନ ଶ୍ମଶାନକ୍ଷେତ୍ରରେ ପରିଣତ ହୋଇ ପଡ଼ିଅଛି । ବର୍ତ୍ତମାନ ଉତ୍କଳୀୟମାନେ ମରହଟ୍ଟାମାନଙ୍କୁ ନରମାଂସାଶୀ ବ୍ୟାଘ୍ରଭଲ୍ଲୁକଠାରୁ ଅଧିକ ଭୟ କରୁଅଛନ୍ତି । ଯେଉଁ ଜାତି ପ୍ରତି ଲୋକସାଧାରଣର ଏପରି ଅବିଶ୍ୱାସ, ଏପରି ଭୟ, ସେ ଜାତି ପକ୍ଷରେ ରାଜସିଂହାସନ ଅଭିଳାଷ କରିବା ବିଡ଼ମ୍ବନା ମାତ୍ର । ପାଶବ ବଳରେ ରାଜ୍ୟାଧିକାର କଦାଚ ସ୍ଥାୟୀ ହୋଇ ନ ପାରେ । ରାଜା ପ୍ରଜାଙ୍କ ମଧ୍ୟରେ ପିତା ପୁତ୍ର ସମ୍ବନ୍ଧ । "ସ ପିତା ପିତରସ୍ତେଷାଂ କେବଳଂ ଜନ୍ମହେତବଃ" । ଆପଣ ବୋଲନ୍ତୁ, ଆପଣଙ୍କ ଆଧିପତ୍ୟକୁ ରାଜ୍ୟଶାସନ କି ଲୁଣ୍ଠନ, କରି ବୋଲିବେ ? ଫୌଜଦାରମାନଙ୍କ ଜୁଲମରେ ଗ୍ରାମକୁ ଗ୍ରାମ ଅରଣ୍ୟମୟ ହୋଇ ଗଲାଣି । ମହାତ୍ମା ଶିବାଜୀଙ୍କ ଉଦ୍ଦେଶ୍ୟ ଥିଲା ଧର୍ମ ସଂସ୍ଥାପନ—ବର୍ତ୍ତମାନ ମରହଟ୍ଟାମାନଙ୍କ ଆଚରଣରେ କରି ରାଜଲକ୍ଷ୍ମୀ ଅଚଳା ରହିବାର ସମ୍ଭାବନା ?

ଦୂତ—ଆଜ୍ଞା, ରାଜ୍ୟଗୁରୁ ଅବଧାନ ! ଆପଣ ମୋତେ ବୁଝାଇ ଦେଉନ୍ତୁ ତ, ମାନଧାତାଙ୍କର କୌଣସି ଚାକର ଯେବେ ଦୋଷ କରେ, ସେଥି ସକାଶେ ସ୍ୱୟଂ ମାନଧାତା ଦୋଷୀ ହେବେ କି ? ଦୂରବର୍ତ୍ତୀ ସ୍ଥାନରେ ଜଣେ ଫୌଜଦାରର ଦୋଷରେ ସ୍ୱୟଂ ରଘୁଜୀ ଭୋଁସଲ ଦୋଷୀ ହେବା ସେହିପରି କଥା !

ରାଜ୍ୟଗୁରୁ—ଆପଣ ଯେବେ ଚାକରକୁ ଚୋରି କରିବାକୁ ଉପଦେଶ ଦେବେ, ସୁଯୋଗ ଦେବେ, ତେବେ ସେହି ଚୋର ଚାକର ସକାଶେ କିଏ ଦାୟୀ ହେବ ? ବେରାର ଦରବାରରେ ଉତ୍କଳ ଦେଶଟା ନିଲାମରେ ବିକି ହୁଏ; ଯେ ବେଶି କଉଡ଼ି ଗଣିପାରେ, ସେହି ଫୌଜଦାରୀ ପ୍ରାପ୍ତ ହୁଏ । ଫୌଜଦାର ଯେତେ କାହାଣ କଉଡ଼ି ଗଣି ଦେଇଅଛି, ମୂଳ କଳନ୍ତର ଧେନି ଅସୁଲ କରିବ ତ ? ପ୍ରଜା ମଲେ ବା ଗଲେ, ତାହାଙ୍କ ତ କେହି ଲଗା ଥାଏ ନାହିଁ ! ପୁଣି ସେହି ଫୌଜଦାର ପ୍ରଜା ଠାରୁ ବେଶି ବେଶି ଟଙ୍କା ଅସୁଲ କରିବାକୁ ଚେଷ୍ଟା କରେ । କାରଣ, ଦରବାର ପ୍ରତି ତାହାର ପ୍ରତ୍ୟୟ ନାହିଁ । ସନନ୍ଦ ଧେନି ଆସିଲାବେଳେ ଆଉ କେହି ସନନ୍ଦ ଧେନି ଆସିଲ ପରି, ଏହି ଭୟରେ ପଛକୁ ଅନାଉଥାଏ । ବିଧର୍ମୀ ତୁର୍କ ଅଧିକାରରେ ବରଂ ପ୍ରଜାମାନେ କିଛି ସୁଖରେ ଅଛନ୍ତି ।

ଦୂତ—ଆପଣ ଯେ ସମସ୍ତ କଥା ବୋଇଲେ, ପ୍ରକୃତରେ ସେ ସମସ୍ତ ସତ୍ୟ ବୋଲି ବିଶ୍ୱାସ କରିବାକୁ ଆମେ ପ୍ରସ୍ତୁତ ନୋହୁଁ । ଅଜ୍ଞା, ତର୍କ କ୍ଷେତ୍ରରେ ସତ୍ୟ ବୋଲି ସ୍ୱୀକାର କଲୁଁ । ସେଥିପାଇଁ କି ସ୍ୱଧର୍ମାବଲମ୍ବୀକୁ ତ୍ୟାଗ କରି ବିଧର୍ମୀ ମ୍ଳେଚ୍ଛ ଗୋଖାଦକ ପକ୍ଷ ଅବଲମ୍ବନ କରିବା ଧର୍ମପରାୟଣ ହିନ୍ଦୁ ସନ୍ତାନ ପକ୍ଷରେ ଉଚିତ ?

ରାଜଗୁରୁ—ଆପଣ ଜଣେ ଅସାଧାରଣ ପଣ୍ଡିତ ବୋଲି ସର୍ବତ୍ର ବିଦିତ । ଆପଣଙ୍କୁ କି ରାଜନୀତି ପ୍ରସଙ୍ଗ ବୋଲିବାକୁ ହେବ ? ନୀତିବେତ୍ତାମାନେ ବୋଲି ଅଛନ୍ତି, "ଉପକର୍ତ୍ରା ସମଂ ସନ୍ଧିର୍ନମିତ୍ରେଣାପକାରିଣା ।" ବୋଇଲା, ଉପକାରୀ ଲୋକ ସହିତ ସନ୍ଧି କରିବ, ମିତ୍ର ହେଲେ ମଧ୍ୟ ଅପକାରୀ ବ୍ୟକ୍ତି ସହିତ ସନ୍ଧି ଅକର୍ତ୍ତବ୍ୟ ।

ରାଜଗୁରୁଙ୍କ କଥାରେ ମାଲହାର ବାଧା ଦେଇ ବୋଇଲେ, "ରାଜଗୁରୁ ଅବଧାନ ! ସେ ସମସ୍ତ କଥା ପରିତ୍ୟାଗ କରନ୍ତୁ । ରାଜକାର୍ଯ୍ୟରେ ଯେବେ କୌଣସିଠାରେ କିଛି ଦୋଷ ଥାଏ, ତାହା ସହଜରେ ସଂଶୋଧିତ ହୋଇପାରେ । ମାତ୍ର ମହାରାଜ ସନାତନ ଧର୍ମ ନଷ୍ଟ ହେଲେ ତାହା ତ ପୁନର୍ବାର ପ୍ରାପ୍ତ ହେବ ନାହିଁ । ହିନ୍ଦୁଧର୍ମ ଯେପରି ସ୍ୱଚ୍ଛ ନିର୍ମଳ, ସେହିପରି ଭଙ୍ଗପ୍ରବଣ, ମ୍ଳେଚ୍ଛ ସହିତ ସଂସର୍ଗ ମାତ୍ରକେ ବିନଷ୍ଟ ହୁଏ । ଥରେ ବିନଷ୍ଟ ହେଲେ ପୁନଃପ୍ରାପ୍ତ ହେବା କଠିନ । ଆପଣ ଥରେ ସନାତନ ଆର୍ଯ୍ୟ ଧର୍ମ ପ୍ରତି ଦୃଷ୍ଟିପାତ କରନ୍ତୁ । ପୁଣ୍ୟକ୍ଷେତ୍ର ଉତ୍କଳଖଣ୍ଡ ଦେବପ୍ରଧାନ ଦେଶ, ପବିତ୍ର ଦେବାଳୟରେ ପରିପୂର୍ଣ୍ଣ । ଦେଖନ୍ତୁ, କାଶୀ ବିଶ୍ୱେଶ୍ୱର ମନ୍ଦିର ଗଲା, ବୃନ୍ଦାବନ ଗୋବିନ୍ଦଜୀ ମନ୍ଦିର ଗଲା, କାଳଞ୍ଜର, ଚିତୋର, ଆନହଲବାର, ଅବନ୍ତୀ, ପ୍ରାଚୀନଧାରା ପ୍ରଭୃତି ପବିତ୍ର ସ୍ଥାନମାନ ଦେବାଳୟଶୂନ୍ୟ । ରାଜଗୁରୁ ଅବଧାନ ! ସନାତନ ଆର୍ଯ୍ୟଧର୍ମ ନାମରେ ଆମ୍ଭେ ଅନୁରୋଧ କରୁଅଛୁ, ଉତ୍କଳଖଣ୍ଡର ଦେବମନ୍ଦିରମାନଙ୍କ ପ୍ରତି ଯେପରି ଅତ୍ୟାଚାର ନ ଘଟେ ଏବଂ ଭଗବତୀ ଗୋମାତା ଶୋଣିତରେ ଉତ୍କଳର ଦେବଭୂମି ଯେପରି ଅପବିତ୍ର ନ ହୁଏ, ସେଥି ସକାଶେ ଆପଣଙ୍କର ଯତ୍ନ ହେବାର ଉଚିତ ।"

ରାଜଗୁରୁ—ଦୂତରାଜ ! ଭୟ କିମ୍ବା ସ୍ୱାର୍ଥର ଅନୁରୋଧରେ ଏକ ନରପତି ଅନ୍ୟ ନରପତି ସହିତ ସନ୍ଧି କରିଥାନ୍ତି । ଉପସ୍ଥିତ କ୍ଷେତ୍ରରେ ଉଭୟ କାରଣର ଅଭାବ ଜାଣିବେ । ଆଉ ଯେ ଉତ୍କଳର ଦେବାଳୟ ରକ୍ଷା ବିଷୟ କହିଲେ, ଶତ ଆଲିବର୍ଦ୍ଦି ବା ସହସ୍ର ଆଉରଙ୍ଗଜେବ ଭୁବନେଶ୍ୱର ବା ଜଗନ୍ନାଥ ମନ୍ଦିରର ପ୍ରସ୍ତରଖଣ୍ଡର ରେଣୁ ମାତ୍ର ସ୍ପର୍ଶ କରିପାରିବେ ନାହିଁ । ସମସ୍ତ ଭାରତବର୍ଷ ଏହି ଦୁଇ ମନ୍ଦିରର ପ୍ରହରୀ । ବର୍ତ୍ତମାନ ବା ଭାବୀ କାଳରେ ଯେଉଁ ରାଜା ଏହି ମନ୍ଦିରମାନଙ୍କ ବିନାଶସାଧନରେ ହସ୍ତକ୍ଷେପ କରିବ, ତାହାର ପତନ ଅବଶ୍ୟମ୍ଭାବୀ । ପଞ୍ଚଶତବର୍ଷବ୍ୟାପୀ ଭାରତ ଅଧିକାର କାଳରେ ଯବନ କୌଣସି ପ୍ରକାର ଅନିଷ୍ଟ ସାଧନରେ ସମର୍ଥ ହୋଇନାହିଁ । ଆମ୍ଭଙ୍କୁ ଅତି କଷ୍ଟରେ ଏବଂ ସଲଜ୍ଜଭାବରେ ବୋଲିବାକୁ ହେଉଅଛି, ଉତ୍କଳର ମହାତୀର୍ଥ କ୍ଷେତ୍ରରେ ବର୍ତ୍ତମାନ ଯେବେ କୌଣସି ବୈରୀ ଉପସ୍ଥିତ ଥାଏ, ସେ କେବଳ ହିନ୍ଦୁ କୁଳସନ୍ତାନ ମହାରାଷ୍ଟ୍ର ବଂଶଧରମାନେ । ଅଠରନଳା ଘାଟର ମଙ୍ଗି ଜୁଲମରେ ଗରିବ ଦୁଃଖୀ ଲୋକେ ତୀର୍ଥ ଦର୍ଶନରୂପ ମହାପୁଣ୍ୟରୁ ବଞ୍ଚିତ ହେଲେଣି । ବୋଲନ୍ତୁ ଭଲା, ଆଉରଙ୍ଗଜେବର ଜିଜିଆଠାରୁ ଏହାର ପାର୍ଥକ୍ୟ କଣ ଅଛି ? ସେଥିରେ ବରଞ୍ଚ ରକ୍ଷା ଥିଲା । ସେଦିନ ଗେଉଁଖାଲଠାରେ ଘଟିଥିବା ଘଟଣା ଲୋକେ ଚିରକାଳ ସ୍ମରଣ କରିବେ । ଆପଣ ତ ପ୍ରତ୍ୟେକ କଥାରେ ହିନ୍ଦୁଧର୍ମ, ହିନ୍ଦୁ ଜାତି କଥା ଉଲ୍ଲେଖ କରୁଅଛନ୍ତି, ଶାନ୍ତ, ଶିଷ୍ଟ, ସମ୍ଭ୍ରାନ୍ତ, ଧର୍ମକାମୀ ତୀର୍ଥଯାତ୍ରୀମାନଙ୍କ ଧନ ପ୍ରାଣ ହରଣ କରି ସେମାନଙ୍କ ଲକ୍ଷ୍ମୀରୂପା କୁଳବତୀ ରମଣୀଙ୍କ ଲଜ୍ଜାଶୀଳତା ପ୍ରତି ହସ୍ତକ୍ଷେପ କରିବା କି ଉଚିତ ହୋଇଅଛି ? ବିଧର୍ମୀ ଯବନ ମଧ୍ୟ ଏପରି ଜଘନ୍ୟ କର୍ମ କରିବାକୁ ସଙ୍କୁଚିତ ହୁଅନ୍ତା । ଯେଉଁ ମହାତ୍ମା ଶିବାଜୀ ହସ୍ତଗତା ଅପୂର୍ବ ସୁନ୍ଦରୀ ଯୁବତୀ ନବାବପତ୍ନୀଙ୍କୁ ମାତୃସମ୍ବୋଧନ କରି ସମର୍ଯ୍ୟାଦାରେ ବିଦାୟ ପ୍ରଦାନ କରିଥିଲେ, ସେହି ମହାତ୍ମାଙ୍କ ବଂଶଧରମାନଙ୍କ ହସ୍ତରେ ସ୍ୱଜାତୀୟା କୁଳବତୀମାନଙ୍କ ଅସମ୍ମାନ ବିନିପାତର

ପୂର୍ବ ଲକ୍ଷଣ ଜଣାଇବ । ଆପଣ ଯଦି ଏଥିରେ ପ୍ରତିବାଦ କରନ୍ତି, ଉତ୍ତର ଦେବାକୁ ଆମ୍ଭର ସ୍ପୃହା ନାହିଁ । ମହାକବି ମାଘକାର କହିଅଛନ୍ତି, ପୁନଃ ପୁନଃ ଅପରାଧକାରୀ ଲୋକ କ୍ଷମାର ଅଯୋଗ୍ୟ ।

ଦୂତ ଶିଉଶଙ୍କର ମାଲବ୍ୟର କଥିତ୍ ଅପ୍ରତିଭ ଓ ଲଜ୍ଜିତ ହୋଇ ପରେ ଗୋଟିଏ ଦୀର୍ଘ ନିଶ୍ୱାସ ପକାଇ କହିଲେ, "ରାଜଗୁରୁ ଅବଧାନ ! ଆମ୍ଭେ ଦୃଢ଼ରୂପେ ବୋଲିପାରୁଁ, ଭାସ୍କର ପଣ୍ଡିତଙ୍କ ଅଗୋଚରରେ ଏହି ଦୁର୍ନୀତି ଘଟିଅଛି । ମାତ୍ର ସେହି ସ୍ତ୍ରୀଲୋକମାନେ ସାବଧାନରେ ରକ୍ଷିତ ଅଛନ୍ତି ।"

ରାଜଗୁରୁ— ବେହାର ଦରବାରକୁ ସମ୍ଭ୍ରାନ୍ତ ଅତିଥି ଆସିଲେ ସେମାନଙ୍କ ସଙ୍ଗରେ ଦିଆଯିବା କିମ୍ବା ବ୍ରାହ୍ମଣମାନଙ୍କୁ ଦାନ କରାଯିବା ସକାଶେ ପରା ? ସଙ୍ଗରେ ଖାଦ୍ୟଦ୍ରବ୍ୟ ସହିତ ସ୍ତ୍ରୀଲୋକ ଦିଆଯିବ, ବେହାର ଦରବାରର ଏ କି ଗର୍ହିତ ପ୍ରଥା, ଦୂତରାଜ ?

ଦୂତ—ଆପଣ ପୁରାଣଜ୍ଞ, ସମସ୍ତ ବିଷୟ ବିଦିତ ଅଛନ୍ତି । ଭଗବାନ୍ କୃଷ୍ଣଦ୍ୱୈପାୟନକୃତ ମହାଭାରତ ଉଦ୍‌ଘାଟନ କରି ଦେଖନ୍ତୁ କୁରୁପାଣ୍ଡବ ବଂଶୀୟ ରାଜାମାନେ ଅତିଥି ଏବଂ ବ୍ରାହ୍ମଣମାନଙ୍କୁ କୁମାରୀ କନ୍ୟା ଦାନ କରୁଥିଲେ । ସେମାନେ କି ଘରର କୁଳକନ୍ୟାମାନଙ୍କୁ ଦାନ କରୁଥିଲେ ? ସ୍ୱରାଜ୍ୟ ମଧ୍ୟରୁ ସଂଗ୍ରହ କରୁଥିଲେ ତ ? ଶ୍ରୀକୃଷ୍ଣ ଦୂତରୂପେ ହସ୍ତିନାକୁ ଯିବା ସମୟରେ ଦୁର୍ଯ୍ୟୋଧନ ତାହାଙ୍କୁ ସହସ୍ର କନ୍ୟା ଉପହାର ଦେଇଥିଲେ, ଆପଣ କି ଏହା ଅସ୍ୱୀକାର କରନ୍ତି ?

ରାଜଗୁରୁ ହୋଇଥିବ, ଆମ୍ଭଙ୍କୁ ସେ ପୁରାଣ କଥା ଜଣା ନାହିଁ । ନିରୀହ ପ୍ରଜାବୃନ୍ଦ ଚୌଥ ସରଦେଶମୁଖୀ ଦେବାକୁ ଅସମର୍ଥ ହେଲେ ପାଣ୍ଡବ ପାଞ୍ଚ ଭାଇ, ଦୁର୍ଯ୍ୟୋଧନ ଶଏ ଭାଇ ଘୋଡ଼ା ଚଢ଼ି ଯାଇ ପ୍ରଜାମାନଙ୍କ ସ୍ତ୍ରୀ କନ୍ୟାଙ୍କୁ ଧରି ଆଣି ବାଣ୍ଟୁଥିଲେ ?

ଦୂତ—ଆମ୍ଭେ ଦେଖୁଅଛୁଁ, ଆପଣ ମରହଟ୍ଟା ଦୋଷ ବର୍ଣ୍ଣନାରେ ବିଶେଷ ନିପୁଣତା ଲାଭ କରିଅଛନ୍ତି । ଆପଣ ଜଣେ ସତ୍‌କୁଳଜ ନୈଷ୍ଠିକ ବ୍ରାହ୍ମଣ । ଉତ୍କଳ ଶ୍ରେଣୀ କୌଣସି ବ୍ରାହ୍ମଣମୁଖରୁ ଏପରି ଅକୃତଜ୍ଞ କଥା ବାହାରିବ, ଆମ୍ଭର ବିଶ୍ୱାସ ନ ଥିଲା । ଉତ୍କଳଖଣ୍ଡରେ କିଏ ସହସ୍ର ସହସ୍ର ବ୍ରାହ୍ମଣଶାସନ ସ୍ଥାପନ କରିଅଛି, କାହା ଅନୁଗ୍ରହରୁ ଲକ୍ଷ ଲକ୍ଷ ବ୍ରାହ୍ମଣ ପ୍ରତିପାଳିତ ହେଉଅଛନ୍ତି ଏବଂ ଯାବତ୍‌ଚନ୍ଦ୍ରାର୍କ ଜୀବନଧାରଣ କରି ତ୍ରିସନ୍ଧ୍ୟାରେ ଆଶୀର୍ବାଦ କରିବେ ? ମରହଟ୍ଟା ଭୂମି ଦାନ କରି ନ ଥିଲେ ଉତ୍କଳଖଣ୍ଡରୁ ବ୍ରାହ୍ମଣ୍ୟଧର୍ମ ବିଲୁପ୍ତ ହୋଇଥାନ୍ତା, ବ୍ରାହ୍ମଣମାନେ ଉଦରପୋଷଣ ନିମନ୍ତେ ଶୂଦ୍ର ଘରେ ଦାସତ୍ୱ ସ୍ୱୀକାର କରିଥାନ୍ତେ । କେଉଁଦିନ କେଉଁ ବିଧର୍ମୀ ରାଜା ବ୍ରାହ୍ମଣଶାସନ ବସାଇଅଛି ? ଆପଣ ଯେପରି ଯବନପକ୍ଷପାତି ଦେଖୁଅଛୁଁ, କିଛି କାଜିଇନାମ ପାଇବା ପ୍ରତ୍ୟାଶା କରନ୍ତି ।

ରାଜଗୁରୁ—ଶାସନସ୍ଥାପନକାରୀ ମହାତ୍ମା ଶିବାଜୀଙ୍କୁ ଅନନ୍ତକାଳ ପର୍ଯ୍ୟନ୍ତ ଉତ୍କଳ ବ୍ରାହ୍ମଣମାନେ ତ୍ରିସନ୍ଧ୍ୟାରେ ଅବଶ୍ୟ ଆଶୀର୍ବାଦ କରିବେ । ଆଉ କୌଣସି କୌଣସି ଫୌଜଦାର କେତୋଟା ଶାସନ ବସାଇଅଛନ୍ତି ସତ୍ୟ; ପ୍ରଜାଙ୍କ ଦୁଗ୍ଧବତୀ ଧେନୁକୁ ହତ୍ୟାକରି ତାହାର ଚର୍ମରେ ନିର୍ମିତ ପାଦୁକା ବ୍ରାହ୍ମଣକୁ ଦାନ କଲେ ସେଥିରେ ଯଦି ପୁଣ୍ୟ ସଞ୍ଚିତ ହୁଏ, ତେବେ ନିଶ୍ଚୟ ସେମାନେ ଘୋଡ଼ା ଚଢ଼ି ସଳଖେ ସଳଖେ ସ୍ୱର୍ଗରାଜ୍ୟକୁ ଚାଲିଯିବେ, ସନ୍ଦେହ ନାହିଁ । ଦୂତରାଜ ! ଆମ୍ଭେ ପୂର୍ବାପର ସମସ୍ତ ବିଷୟ ପର୍ଯ୍ୟାଲୋଚନା କରି ଦେଖୁଅଛୁଁ, ମରହଟ୍ଟା ସହିତ ସନ୍ଧି ଏକପ୍ରକାର ତସ୍କରତାର ପ୍ରଶ୍ରୟ ଦେବା ସଙ୍ଗେ ସମାନ ।

ଦୂତ—ବ୍ରାହ୍ମଣମାନଙ୍କ ମୁଖ ଅବାରିତ ସତ୍ୟ; ମାତ୍ର ଆପଣ ବିସ୍ମୃତ ହେବେ ନାହିଁ, କାହାର ପ୍ରତିନିଧି

ହୋଇ କଥା କହୁଅଛନ୍ତି, ତାହାର ସ୍ୱାମୀ ଅଶୁଭ ମାର୍ଗ ପରିଷ୍କାର କରିବାକୁ ଉଦ୍ୟତ ହେଉଅଛନ୍ତି । ବେଗର ଦରବାରରେ ଏ କଥା ଅଗୋଚର ରହିବ ନାହିଁ । ସ୍ୱାମୀକାନ୍ତ ସ୍ୱାଙ୍କଅଧୀନରେ ଲକ୍ଷ ଲକ୍ଷ ପଦାତିକ, ଲକ୍ଷ ଲକ୍ଷ ଅଶ୍ୱାରୋହୀ ଯେଉଁ ଦରବାର ସିଂହଦ୍ୱାରରେ ଆଜ୍ଞାପେକ୍ଷୀ ହୋଇ ଉଭା ହୋଇଅଛନ୍ତି, ସେହି ଦରବାରରେ ଏହି ଅପମାନସୂଚକ କଥା ଅବଶ୍ୟ ଦିନେ ଆଲୋଚିତ ହେବ ।

ରାୟଗୁରୁ ଈଷତ୍ ହାସ୍ୟ କରି କହିଲେ—"ଦୂତରାଜ ! ଭୟ ପ୍ରଦର୍ଶନଦ୍ୱାରା କାର୍ଯ୍ୟୋଦ୍ଧାର କରିବା ବାସନା ଯେବେ ମନ ମଧ୍ୟରେ ପୋଷଣ କରିଥାନ୍ତି, ସେ ଚେଷ୍ଟା ବିଡ଼ମ୍ବନା ବୋଲି ଜାଣିବେ । ଗୌରବାନ୍ୱିତ ବେଗର ଦରବାରର ଗ୍ଳାନି ରଚନା କରିବା କଦାଚ ଏହି ଦରବାରର ଉଦ୍ଦେଶ୍ୟ ନୁହେ । ତେବେ ଆପଣଙ୍କ କଥାର ଉପଯୁକ୍ତ ଉତ୍ତର ଦେବାକୁ ଯେବେ ଅସମ୍ମାନକର ବିବେଚନା କରନ୍ତି, ଆମ୍ଭେ ନିରୁତ୍ତର ।"

ମାଲଖାର କିଞ୍ଚିତ୍ ଶାନ୍ତ ଭାବରେ କହିଲେ, "ଆମ୍ଭର ଇଚ୍ଛା, ସହଜରେ ସମସ୍ତ ବିଷୟ ନିଷ୍ପତ୍ତି ହୋଇଯାଉ । ଆମ୍ଭେ ବନ୍ଧୁଭାବରେ ବୋଲୁଅଛୁଁ, ମାନଧାତା ଯେଉଁ ଯବନର ପକ୍ଷପାତୀ, ତାହାର ପତନକାଳ ଦୂରବର୍ତ୍ତୀ ନୁହେ । ଅଲିବର୍ଦ୍ଦିର ଆସନ୍ନ କାଳ ଉପସ୍ଥିତ ।"

ରାୟଗୁରୁ—ହିନ୍ଦୁ ବା ତୁର୍କ କାହାର ଆଧିପତ୍ୟ ଭାରତଖଣ୍ଡରେ ରହିବ ନାହିଁ । ଏମାନେ ଧର୍ମତ୍ୟାଗୀ, କର୍ତ୍ତବ୍ୟ ପାଳନରେ ଅମନୋଯୋଗୀ । ବିଧାତା ଏମାନଙ୍କ ପ୍ରତି ବିମୁଖ । ସାର୍ବଭୌମ ପ୍ରେମ, ନ୍ୟାୟପରତା, ରାଜହିତୈଷଣା, ଅପକ୍ଷପାତିତା, ସତ୍ୟନିଷ୍ଠା ପ୍ରଭୃତି ରାଜବିଷୟ ଗୁଣରୁ ଏମାନେ ବର୍ଜ୍ଜିତ । ନ୍ୟାୟପର ଆକବର ଓ ଧର୍ମପ୍ରାଣ ଶିବାଜୀଙ୍କ ସହିତ ପ୍ରକୃତ ରାଜଧର୍ମ ଦୁଇ ଜାତି ମଧ୍ୟରୁ ବିଲୁପ୍ତ ହୋଇଅଛି ବୋଲି ଜାଣିବେ ।

ମାଲଖାର—ଆପଣ ଅଦ୍ଭୁତ କଥା କହୁଅଛନ୍ତି, ପୃଥିବୀ କି ଅରାଜକ ହେବ ?

ରାୟଗୁରୁ—ବୈବସ୍ୱତ ମନୁଙ୍କଠାରୁ ଅଦ୍ୟାବଧି ପୃଥିବୀ କେବେ ଅରାଜକ ହୋଇ ନାହିଁ । ସମୟ ସମୟରେ ରାଜପରିବର୍ତ୍ତନ ଘଟିଅଛି । ଈଶ୍ୱରଶୂନ୍ୟ ବ୍ରହ୍ମାଣ୍ଡ, ରାଜହୀନ ରାଜ୍ୟ ମୁହୂର୍ତ୍ତେ ତିଷ୍ଠିବା ଅସମ୍ଭବ । ଆମ୍ଭେ ଶୁଣୁଅଛୁଁ ସାଗର ଗର୍ଭସ୍ଥିତ ଶ୍ୱେତଦ୍ୱୀପରୁ ଶ୍ୱେତକାନ୍ତ କେତେଗୁଡ଼ିଏ ବଣିକ ଆସି ସୂତାନଟି ଗୋବିନ୍ଦପୁରଠାରେ ବାଣିଜ୍ୟ ଦୋକାନ ମେଲିଅଛନ୍ତି । ସେମାନେ ଯେପରି ଶୁକ୍ଳବର୍ଣ୍ଣ, ସେହିପରି ଶୁକ୍ଳକର୍ମା ଅଟନ୍ତି । ଦେଖିବା ହେଉ, ହିନ୍ଦୁସନ୍ତାନ ହିନ୍ଦୁ ରାଜାକୁ ଅବିଶ୍ୱାସ କରି—ମୁସଲମାନ ମୁସଲମାନ ରାଜାକୁ ଅବିଶ୍ୱାସ କରି ଅଜ୍ଞାତକୁଳଶୀଳ ଅନିର୍ଦ୍ଦିଷ୍ଟବାସସ୍ଥାନ ଭିନ୍ନଧର୍ମା ସେହି ଶ୍ୱେତଦ୍ୱୀପବାସୀଙ୍କ ଆଶ୍ରୟରେ ନିର୍ଭୟରେ ସ୍ୱଚ୍ଛନ୍ଦରେ ବାସ କରୁଅଛନ୍ତି । ସେହି ଶୁକ୍ଳବର୍ଣ୍ଣ ଲୋକେ ନ୍ୟାୟପର, ଶରଣାଗତ ପ୍ରତିପାଳକ, ବିପନ୍ନର ବନ୍ଧୁ, ନିରାଶ୍ରୟର ଆଶ୍ରୟ । କୁଟିଳତା ସ୍ୱାର୍ଥପରତାପୂର୍ଣ୍ଣ ବଣିକ୍ ବ୍ୟବସାୟରେ ଯେଉଁମାନେ ଏପରି ନ୍ୟାୟପର, ରାଜ୍ୟେଶ୍ୱର ହେଲେ ସେମାନଙ୍କ ଅଧୀନରେ ପ୍ରଜାମାନେ ଯେ ସୁଖରେ ଦିନ ଯାପନ କରିବେ, ଏଥିରେ ସନ୍ଦେହ ମାତ୍ର ନାହିଁ । ଚିରଦିନ ସମାନ ଥାଏ ନାହିଁ । ଭାରତଭୂମି ଯଥେଷ୍ଟ ଅତ୍ୟାଚାରର ଭୋଗ କଲଣି, ଅବଶ୍ୟ ଦୁଃଖ ଦିନର ଅବସାନ ହେବ । ହିନ୍ଦୁ ବା ତୁର୍କ ରାଜଶକ୍ତିର ଯଥେଷ୍ଟ ଅପବ୍ୟବହାର କଲେଣି, ଭଗବାନ୍ ନୂତନ ରାଜା ପ୍ରେରଣ କରିବେ । ଅନ୍ୟଥା ହିନ୍ଦୁ ବା ତୁର୍କ କାହାର ହାତରେ ଆଧିପତ୍ୟ ରହିଲେ ପରସ୍ପର ବିରୋଧରେ ମହାପ୍ରାଣିଶୋଣିତ ଚିରକାଳ ପ୍ରବାହିତ ହେବ । ଆମ୍ଭେ ଗତ ସମୟର ମକର ବାରୁଣୀ ଉପଲକ୍ଷରେ ଗଙ୍ଗାସ୍ନାନକୁ ଯାଇଥିଲୁଁ । କାଳୀଘାଟରେ ଗୋଟିଏ ଶ୍ୱେତବର୍ଣ୍ଣ ଲୋକ ସହିତ ସାକ୍ଷାତ ହୋଇଥିଲା । ତାହାର ନାମ ପାଦୁଡ଼ି;

ସେ ଶ୍ୱେତବର୍ଣ୍ଣ ଲୋକଙ୍କ ପୁରୋହିତ ଅଟେ । ସେ ପାଦୁଡ଼ ଦେଶୀୟ ଭାଷା ଭଲ ବୁଝିପାରେ. କହିପାରେ । ଅନେକ ବେଳଯାଏ ତାହା ସହିତ କଥାବାର୍ତ୍ତା ହେଲା । ସେ ଯେ ସମସ୍ତ କଥା କହିଲା ସେଥିର ସାର ମର୍ମ ଏହି :—"ଏକମାତ୍ର ମହାନପ୍ରଭୁ ପରମେଶ୍ୱର ବିଶ୍ୱବ୍ରହ୍ମାଣ୍ଡର ଅଧିପତି ଅଟନ୍ତି, ମାନବଜାତି ତାହାଙ୍କ ପୁତ୍ର, ତୁମ୍ଭର ସାମର୍ଥ୍ୟ ତୁମ୍ଭର ଜ୍ଞାନ ମାନବ ଜାତିର ଉନ୍ନତି କଲ୍ପେ ଉତ୍ସର୍ଗ କର । ପୁତ୍ର ପ୍ରତି ଅତ୍ୟାଗୃହୀ ଲୋକ ପିତାଙ୍କର ବିରାଗଭାଜନ ହୁଅନ୍ତି । ସେହିପରି ମାନବ ଜାତିର ହିଂସାକାରୀ, ମାନବ ଜାତିର ଅପ୍ରେମକାରୀ ଲୋକ କରୁଣାମୟ ପିତା ପରମେଶ୍ୱରଙ୍କ ଅପ୍ରିୟପାତ୍ର ଜାଣିବ । ତୁମ୍ଭେ ଯେଉଁ ଦୟା, ଯେଉଁ କ୍ଷମା ପ୍ରଭୁ ପରମେଶ୍ୱଙ୍କଠାରୁ ପାର୍ଥନା କର, ଅନ୍ୟ ମାନବକୁ ସେହି ଦୟା, ସେହି କ୍ଷମା ପ୍ରଦାନ କର । ତୁମ୍ଭର ସମସ୍ତ ମନ, ସମସ୍ତ ପ୍ରାଣ ପ୍ରଭୁଙ୍କ ପଦରେ ଅର୍ପଣ କର, ସର୍ବଦା ତାହାଙ୍କୁ ସ୍ମରଣ କର ।

ମାଲବୀର ଅବଧାନ ! ଆପଣ ତ ଜଣେ ସାଧାରଣ ଶାସ୍ତ୍ରବ୍ୟବସାୟୀ, ବୋଲିବା ହେଉନ୍ତୁ, ସେ ପୁରୋହିତ ପାଦୁଡ଼ ଯାହା କହିଲା, ତାହା କି ଦର୍ଶନଶାସ୍ତ୍ରର ଅନୁଶାସନ ନୁହେଁ ? ଆମ୍ଭେ ସେହି ପାଦୁଡ଼ର କଥା ଶୁଣି ସ୍ଥିର କରିଅଛୁଁ ଈଦୃଶ ସତ୍ୟଧର୍ମବର୍ଜିତ ଜାତି ରାଜପଦର ଅଯୋଗ୍ୟ । ଦେଖିବା ହେଉନ୍ତୁ, "ଏକ ଏବ ପୁରା ଦେବଃ ପ୍ରଣବଃ ସର୍ବବାଙ୍ମୟଃ"। ହିନ୍ଦୁଜାତି ଯେଉଁ ଦିବସରୁ ଏହି ବୈଦିକ ବୀଜମନ୍ତ୍ର ବିସ୍ମୃତ ହୋଇ ନାନା ପ୍ରକାର କାଳ୍ପନିକ ଉପଧର୍ମର ଅନୁଷ୍ଠାନରେ ପ୍ରବୃତ୍ତ ହୋଇଅଛନ୍ତି, ସେହି ଦିବସରୁ ଏମାନଙ୍କର ପତନର ଆରମ୍ଭ ହୋଇଅଛି । "ବସୁଧୈବକୁଟୁମ୍ବକମ୍—"ହିନ୍ଦୁମାନଙ୍କ ପକ୍ଷରେ ବର୍ତ୍ତମାନ ଏହା ପୁସ୍ତକଗତ ବିଦ୍ୟା ଅଟେ । ଆମ୍ଭେ ଅନୁମାନ କରୁଅଛୁଁ, ଭାରତଖଣ୍ଡବାସୀ ଲୋକମାନଙ୍କ ମଙ୍ଗଳ-କାମନାରେ ଦୟାମୟ ପରମେଶ୍ୱର ଶ୍ୱେତଦ୍ୱୀପରୁ ଏହି ଶ୍ୱେତକାନ୍ତି ଲୋକମାନଙ୍କୁ ପ୍ରେରଣ କରିଛନ୍ତି ।

ଦୂତ କିୟତ୍‌କାଳ ମୌନାବଲମ୍ବନପୂର୍ବକ ଗୋଟିଏ ଦୀର୍ଘ ନିଶ୍ୱାସ ତ୍ୟାଗକରି କହିଲେ, "ଜଗତରେ ଭଗବାନଙ୍କ ଲୀଳା ଦୁର୍ଜ୍ଞେୟ । ତାହାଙ୍କର ଇଚ୍ଛା ସଫଳ ହେବ । ତେବେ ମନୁଷ୍ୟମାନଙ୍କର ଗୋଟିଏ କର୍ତ୍ତବ୍ୟ ଅଛି । ଆମ୍ଭେମାନେ ଆତ୍ମକର୍ତ୍ତବ୍ୟରୁ ବିଚ୍ୟୁତ ନ ହେଉଁ, ସେଥି ସକାଶେ ସର୍ବାନ୍ତର୍ଯାମୀ ପ୍ରଭୁ ଆମ୍ଭମାନଙ୍କ ହୃଦୟରେ ବିବେକରୂପ ପ୍ରହରୀ ନିଯୁକ୍ତ କରିଅଛନ୍ତି । ଯାହା ହେଉ, 'ସହସା ବିଦଧୀତ ନ କ୍ରିୟା ।' ଆମ୍ଭେ ଆଶା କରୁଁ, ମାନଧାତା ଆପଣେ ସ୍ୱ ଦେଶର ଶାନ୍ତି, ସ୍ୱଧର୍ମର ଗୌରବ, ସ୍ୱଜାତି ଏବଂ ଅନୁଗତ ଲୋକର ଧନପ୍ରାଣ ନିରୁଦ୍‌ବେଗରେ ରକ୍ଷା କରିବା ଅଭିପ୍ରାୟରେ ସନ୍ଧି ସ୍ଥାପନ କରିବା ଉଚିତ କି ନା, ଏ ବିଷୟ ପୁନର୍ବାର ସ୍ଥିର ଚିତ୍ତରେ ବିଚାର କରିବେ ।"

ରାଜଗୁରୁ—ବିଜ୍ଞ ଦୂତବର ! ଏ ଉତ୍ତରେ ଆଉ କଣ ଆଶା କରନ୍ତି ?

ମାଲବୀର—ଏହା କି ଶେଷ ସିଦ୍ଧାନ୍ତ ?

ରାଜଗୁରୁ – ଅନ୍ତତଃ ଏ ପକ୍ଷରୁ ।

ଦୂତ ଦୀର୍ଘ ନିଶ୍ୱାସ ପକାଇ କହିଲେ, "ହିନ୍ଦୁ ହିନ୍ଦୁ ବିପକ୍ଷରେ ଅସ୍ତ୍ର ଧାରଣ କରିବ, ଏ ଦୃଶ୍ୟ ଯେପରି ଭୀଷଣ, ସେହିପରି ଗ୍ଲାନିକର । ହିନ୍ଦୁର ଅସ୍ତ୍ରାଘାତରେ ହିନ୍ଦୁ ଶୋଣିତଦ୍ୱାରା ପବିତ୍ର ଆର୍ଯ୍ୟଭୂମି କଳଙ୍କିତହେବ, ଏ କଥା ସ୍ମରଣ ମାତ୍ର ଅସହନୀୟ । ଏହାର ପ୍ରତିକାର କି ସାଧିଓତ ?"

ରାଜଗୁରୁ—ମାନବ ଯେତେ ଯତ୍ନ କରୁ, ଯେତେ ବ୍ୟାକୁଳ ହେଉ, ବିଧିର ବିଧାନ ଅବଶ୍ୟମ୍ଭାବୀ ।

———

-୯-

## ସୋସୋ ଗ୍ରାମ

କେନ୍ଦୁଝର ଜିଲ୍ଲାର ପୂର୍ବପ୍ରାନ୍ତ ନିବିଡ଼ ଅରଣ୍ୟ ମଧ୍ୟରେ ଗୋଟିଏ କ୍ଷୁଦ୍ର ଗ୍ରାମ, ନାମ ସୋସୋ । ଗ୍ରାମ ମଧ୍ୟରେ କୋଡ଼ିଏ କି ପଚିଶ ଘର ବାସ । ଏମାନେ ଅରଣ୍ୟ ଅନାର୍ଯ୍ୟ ଜାତି, ଭୂୟାଁ, ସାନ୍ତାଳ, ଜୁହଙ୍ଗ କି ଏହିପରି କିଛି ଜାତି ହେବେ । ଗ୍ରାମଟି ପ୍ରାୟ ବୃତ୍ତାକାର, ଘରଗୁଡ଼ିକ କ୍ଷୁଦ୍ର କ୍ଷୁଦ୍ର ଚାଲ ଘରପରି ଶୃଙ୍ଖଳ ଭାବରେ ନିର୍ମିତ । ଖୁଣ୍ଟିର ବାଡ଼ ମାଟିଛଟା; ବତାବୃଣା କବାଟ । ଘର ମାପରେ ଦୁଆର, ନଇଁ ପଡ଼ି ଘରଭିତରେ ଭିତରକୁ ପ୍ରବେଶ କରିବାକୁ ହୁଏ । ଗ୍ରାମପ୍ରାନ୍ତ ବିପରୀତ ଦୁଇଁ ପାର୍ଶ୍ୱରେ ଅନ୍ୟ ଆଉ ଘରକୁ ଛାଡ଼ି ଦୁଇ ଗୋଟି ଘର; ଆଉ ଆଉ ଘରଠାରୁ କିଛି ବଡ଼, ଗୋଟିଏ ଧାଙ୍ଗଡ଼ା ଆଉ ଗୋଟିଏ ଧାଙ୍ଗଡ଼ୀ ଘର । ସଭ୍ୟତାଭିମାନୀ ହିନ୍ଦୁ ସମାଜର ପଞ୍ଚ ବର୍ଷୀୟା ଦିଗମ୍ବରୀ କନ୍ୟା ଦାନ କରି ସଙ୍ଗେ ସଙ୍ଗେ ଊର୍ଦ୍ଧ୍ୱତନ ସପ୍ତ ପୁରୁଷଙ୍କୁ ସ୍ୱର୍ଗ ରାଜ୍ୟକୁ ଚାଲାଣ ଦେବା ପ୍ରଥା ଏମାନଙ୍କ ମଧ୍ୟରେ ନାହିଁ । ଏମାନେ ପ୍ରକୃତିର ଶିଶୁ, ପ୍ରକୃତିର ଅନୁଶାସନ ଏମାନଙ୍କର ଶାସ୍ତ୍ରବିଧି । କନ୍ୟା ନିକୁଛରେ ପନ୍ଦର, ପୁତ୍ର କୋଡ଼ିଏ ବର୍ଷ ପୂର୍ଣ୍ଣ ନ କଲେ ବିବାହବିଧାନ ବିବର୍ଜିତ । ଅବିଆଡ଼ୀ କନ୍ୟାକୁ ଧାଙ୍ଗଡ଼ୀ, ଅଭିଆଡ଼ା ପୁତ୍ରକୁ ଧାଙ୍ଗଡ଼ା ବୋଲାଯାଏ । ଧାଙ୍ଗଡ଼ୀମାନେ ଆପଣା ଆପଣା ଗୃହ ମଧ୍ୟରେ ରାତ୍ରି କାଳରେ ଶୟନ କରି ରହିବାର ନିଷେଧ । ରାତ୍ରି ସମୟରେ ସମସ୍ତ ଧାଙ୍ଗଡ଼ା, ସମସ୍ତ ଧାଙ୍ଗଡ଼ୀ ପୂର୍ବୋକ୍ତ ଦୁଇ ଘରେ ଶୟନ କରନ୍ତି । ଧାଙ୍ଗଡ଼ୀ ଘରେ ଦୁଇଜଣ ବୁଢ଼ୀ, ଧାଙ୍ଗଡ଼ା ଘରେ ଦୁଇ ଜଣ ବୁଢ଼ା ଜଗୁଆଳ ହୋଇ ଶୁଅନ୍ତି ।

ଅନ୍ୟ ପାର୍ଶ୍ୱରେ ଗ୍ରାମକୁ କିଛି ଦୂର ଛାଡ଼ି ଆଉ ଗୋଟିଏ ଘର । ଅନ୍ୟ ସମସ୍ତ ଗୃହଠାରୁ ବଡ଼ ଏବଂ ସୁନ୍ଦର ଲିପାପୋଛା । ଏ ଘରଟା ସବୁଦିନେ ଖାଲି ପଡ଼ିଥାଏ—ପ୍ରବାସୀ ମହାଜନ, ବାଟୋଇ କିମ୍ବା ଅନ୍ୟ ଗ୍ରାମରୁ କୁଣିଆ ଆସିଲେ ଏହି ଘରେ ରହନ୍ତି । ଗ୍ରାମର ପରଗଣା ବର୍ଷାକାଳରେ ଏହି ଘରେ ପଞ୍ଚାୟତ କରେ ।

ଗ୍ରାମ ଚତୁର୍ଦ୍ଦିଗରେ ଅରଣ୍ୟ—ନିବିଡ଼ ଅରଣ୍ୟ । ଶାଳ, ପିଆଶାଳ, ଅଶନ, ଶିଶୁ, ଧଉରା, ଫାସି, କେନ୍ଦୁ ପ୍ରଭୃତି ବୃହତ୍ ଜାତୀୟ ଏବଂ ଅନ୍ୟାନ୍ୟ ବହୁବିଧ କ୍ଷୁଦ୍ର ବୃହତ୍ ଅଜ୍ଞାତନାମା, ଅଜ୍ଞାତଗୁଣଗ୍ରାମ, ସଫଳ, ନିଷ୍ଫଳ, ସକଣ୍ଟକ, ନିଷ୍କଣ୍ଟକ, ଦୀର୍ଘ, ହ୍ରସ୍ୱ, ବିବିଧାକାର ପତ୍ରବିଶିଷ୍ଟ ଲଗାଲଗି, ଛନ୍ଦାଛନ୍ଦି, ଲତାମଣ୍ଡିତ, ଲତାଶୂନ୍ୟ ଅଗଣ୍ୟ ବନସ୍ପତିବର୍ଗ ଦିଗନ୍ତ ପର୍ଯ୍ୟନ୍ତ ବିସ୍ତୃତ । କୌଣସି ସ୍ଥାନରେ କେବଳ ଶାଳବଣି ବୃହତ୍ ତାଳ ବୃକ୍ଷ ପରି ଶାଖାପତ୍ର ବିହୀନ ହୋଇ ସରଳ ଭାବରେ ବଢ଼ିଅଛି । ମସ୍ତକ ଉପରେ ନିବିଡ଼ ପତ୍ରବିଶିଷ୍ଟ ଛତ୍ରାକାର ଶାଖା-ପ୍ରଶାଖା ବିଜଡ଼ିତ, ଅନ୍ଧକାରମୟ ସୂର୍ଯ୍ୟକିରଣ ପ୍ରବେଶର ଛିଦ୍ର ମାତ୍ର ଶୂନ୍ୟ, ବିଶାଳବପୁ ବୃକ୍ଷ ଗୁଡ଼ିକ ସମୋଚ୍ଚ ସମାନାକାର, ସ୍ୱଭାବର ସୌନ୍ଦର୍ଯ୍ୟାଧାର ଉଦ୍ୟାନ ସ୍ୱରୂପ ହୋଇ ରହିଅଛି । ବୃକ୍ଷତଳ ଭୂମି ସମତଳ, ପରିଷ୍କୃତ ପରିଚ୍ଛନ୍ନ—ଦୂର୍ବାଦଳଟି ପର୍ଯ୍ୟନ୍ତ ଅଦୃଶ୍ୟ । ବହୁବର୍ଷବ୍ୟାପୀ ଶୁଷ୍କ ବୃକ୍ଷପତ୍ର ପତନଦ୍ୱାରା ଭୂମି ଏପରି କୋମଳ ହୋଇଅଛି ଯେ, ବିସ୍ତୃତ ସୁପାଟି ଉପରେ ଚାଲିଗଲା ପରି ଜଣାଯାଏ । ଶାଳବୃକ୍ଷର ଅତି ଉଚ୍ଚ କ୍ଷୁଦ୍ର ପତ୍ରାବଳୀବିଶିଷ୍ଟ କ୍ଷୁଦ୍ର ଶାଖା ଉପରେ କ୍ଷୁଦ୍ର ଦେହଟିକୁ ଘୋଡ଼ାଇ ଶ୍ୟାମା ତାନ ଛାଡ଼ିଅଛି । ସେହି କ୍ଷୁଦ୍ର ପ୍ରାଣୀର କ୍ଷୁଦ୍ର କଣ୍ଠନିସୃତ ଶ୍ରବଣମନୋହର ଅତ୍ୟୁଚ୍ଚ ସ୍ୱରଲହରୀ ବହୁଦୂର ପର୍ଯ୍ୟନ୍ତ ଅରଣ୍ୟ ମଧ୍ୟରେ ଖେଳି ଯାଇ ଗିରି-କନ୍ଦର ମଧ୍ୟରେ ପ୍ରତିଧ୍ୱନିତ ହେଉଅଛି । ସେହି ସମୟରେ ଶ୍ୟାମାସୁନ୍ଦରୀ ତନ୍ନିକଟ ଏକ ନିଭୃତ ସ୍ଥାନରେ ବସି ସ୍ୱାମୀର ସଙ୍ଗୀତକୁ ଅନୁସରଣ କରୁଅଛି । ଶ୍ୟାମାସୁନ୍ଦରୀ ଅପେକ୍ଷା କରି ବସିଥାଏ, ସ୍ୱାମୀର ସଙ୍ଗୀତ ନିବୃତ୍ତ ହେବା

ମାତ୍ରକେ ଆପଣାର ତାନଲହରୀଦ୍ୱାରା ବୃକ୍ଷସମୂହକୁ ପରିପୂର୍ଣ୍ଣ କରନ୍ତି । ଏହିପରି ପ୍ରହରବ୍ୟାପୀ ସଙ୍ଗୀତ ଆଦାନ ପ୍ରଦାନ ଉତ୍ସବରେ ବିହଗଦମ୍ପତି ଉଡ଼ିଆସି ଏକତ୍ରିତ ହୁଅନ୍ତି । ଅନନ୍ତ ବିଚିତ୍ରକର୍ମା ବିଶ୍ୱବିଧାତା ଏହି ନଗଣ୍ୟ କ୍ଷୁଦ୍ର ପ୍ରାଣୀର କଣ୍ଠରେ ଏଡ଼େ ସୁମଧୁର ଏଡେ ଉଚ୍ଚ ସ୍ୱର ପ୍ରଦାନ କରିଅଛନ୍ତି, ଚିନ୍ତା କଲେ ମନ ବିମୋହିତ ହୋଇଯାଏ । ଶାଲବଣର କୌଣସି କୌଣସି ସ୍ଥାନରେ ବିଚିତ୍ରଦେହ ମୟୂର ଆପଣାର ବିଶ୍ୱମୋହନ ବିଧାତୃ-ସୃଷ୍ଟି-ସୌନ୍ଦର୍ଯ୍ୟର ପରାକାଷ୍ଠାରୂପ ବିଚିତ୍ରମୟ ପୁଚ୍ଛ ଉନ୍ନତ ଓ ବିସ୍ତୃତ ଏବଂ ସମୟ ସମୟରେ କମ୍ପିତ କରାଇ ବିଚିତ୍ର ଭଙ୍ଗୀରେ ଚତୁର୍ଦ୍ଦିଗରେ ବୁଲି ବୁଲି ଆପଣାର ସୌନ୍ଦର୍ଯ୍ୟଗରିମା ମୟୂରୀକୁ ଦେଖାଉଅଛି । ମୟୂରୀ ମଧ୍ୟ ସେହି ବିମୋହନ ରୂପରେ ବିମୁଗ୍ଧ ହୋଇ ଅନାଇ ରହିଅଛି ।

କୌଣସି କୌଣସି ସ୍ଥାନରେ ଚଞ୍ଚଳ ସ୍ୱଭାବ ଭୟାତୁର ଚକିତା ହରିଣୀଯୂଥ ବୃକ୍ଷପତିତ ଶାଳ ଫଳ ଗୋଟାଇ ଖାଉଁ ଖାଉଁ ଚମକି ପଡ଼ି ଚତୁର୍ଦ୍ଦିଗକୁ ଚଞ୍ଚଳଭାବରେ ଅନାଉଅଛନ୍ତି, ଶିଶୁଗୁଡ଼ିକ ସଙ୍ଗରେ ଗୋଡ଼ାଇ ଅଛନ୍ତି, କେହି ଦୁଗ୍ଧ ପାନ କରୁଅଛି, କେହି କ୍ଷୁଦ୍ର ତୃଣାଙ୍କୁରଟି ମୁଖରେ ଧରି ନୃତ୍ୟ କରୁଅଛି । ଗ୍ରାମ ନିକଟବର୍ତ୍ତୀ ସ୍ଥାନରେ ଅଭ୍ରଭେଦୀ ଉଚ୍ଚ ପର୍ବତ ନାହିଁ; ମଧ୍ୟ କ୍ଷୁଦ୍ର ପାହାଡ଼ ଅସଂଖ୍ୟ । ଉତ୍ତର ଏବଂ ପଶ୍ଚିମ ଭାଗରେ ଅନୁଚ୍ଚ କ୍ଷୁଦ୍ର କ୍ଷୁଦ୍ର ଖଣ୍ଡଶୈଳମାଳ ପରିପୂର୍ଣ୍ଣ, ଛଡ଼ାଛଡ଼ି ଲାଗି ଲାଗି ପର୍ବତ, ପର୍ବତ ଉପରେ ପର୍ବତ; ଅସଂଖ୍ୟ ପର୍ବତମାଳା ବହୁ ଦୂର ପର୍ଯ୍ୟନ୍ତ ବ୍ୟାପ୍ତ ହୋଇ ରହିଅଛି । ପର୍ବତ ଖୋଲମାନ କଣ୍ଟକବଂଶ, କଣ୍ଟି, ନାନା ପ୍ରକାର ଜଟିଳ ଲତାଗୁଳ୍ମ ଏବଂ ନିବିଡ଼ ବୃକ୍ଷରେ ପୂର୍ଣ୍ଣ । ଦିବା ନିଶି ଅନ୍ଧକାରମୟ, ମନୁଷ୍ୟ ଜାତିର ଅଗମ୍ୟ, ବନ୍ୟବରାହ, ଭଲ୍ଲୁକ, ବ୍ୟାଘ୍ରଙ୍କ ପ୍ରଭୃତିଙ୍କ ଆରାମ-ନିକେତନ ଏବଂ ସୂତିକାଗାର । ଗ୍ରାମର ଉତ୍ତର ଦିଗରେ ସ୍ୱଚ୍ଛତୋୟା ସାଲନ୍ଦୀ ନଦୀ ଲଜ୍ଜାଶୀଳା କୁଳବତୀ ରମଣୀ ପରି ବୃକ୍ଷଲତା ମଧ୍ୟରେ ଦେହକୁ ଘୋଡ଼ାଇ କଳ କଳ ଶବ୍ଦକରି କୁଟିଳା ଭୁଜଙ୍ଗୀ ସମାନ ପ୍ରବାହିତା । ଯୋଗୋ ଅନ୍ୟାନ୍ୟ ଗ୍ରାମଠାରୁ ବହୁଦୂର-ବର୍ତ୍ତିନୀ, ଏଥିକୁ ବିଦେଶୀୟ ସମାଗମ ବିରଳ । ଗ୍ରାମବାସୀମାନେ ରଜାର ପ୍ରଜା କିମ୍ବା ସାହୁର ଖାତକ ନୁହନ୍ତି । ଏମାନଙ୍କର କୌଣସି ବିଷୟର ଅଭାବ ନାହିଁ; ଜୀବନର ଅବଲମ୍ବନ କଙ୍ଗୁ, କଡ଼ବା, ମଣିଆ, ମହୁଲ, ଶଡ଼ପ, ବେଲ, ଆମ୍ବ ଅକ୍ଷୟ ଭଣ୍ଡାର ରୂପେ ରହିଅଛି । ହେଲେ ମହୁଲ, ଶଡ଼ପ ଏହି ଦୁଇଟି ବୃକ୍ଷ ମହାମୂଲ୍ୟ; କାରଣ ଏହା ଖାଦ୍ୟ ଏବଂ ଏଥିରେ ହାଣ୍ଡିଆ ପ୍ରସ୍ତୁତ ହୁଏ । ଏହି ବୃକ୍ଷଗୁଡ଼ିକ ଗ୍ରାମବାସୀମାନଙ୍କ ମଧ୍ୟରେ ବଣ୍ଟା । ଆପଣା ଆପଣା ବୃକ୍ଷ ସମସ୍ତେ ପୁତ୍ରପୌତ୍ରାଦି କ୍ରମେ ଭୋଗ ଦଖଲ କରନ୍ତି । ଗ୍ରୀଷ୍ମ ଏବଂ ବସନ୍ତ ଋତୁରେ ଦୁଇ ଗୋଟିଏ ପଞ୍ଜାବ ଦେଶୀ ମହାଜନ ଗ୍ରାମକୁ ଆସନ୍ତି । ସେମାନେ ଚର୍ମ, ହରିଣଶିଙ୍ଗ, ମହୁ, ମହଣ; ଜଉ ବଦଳରେ ଲୁଣ, ଲୁଗା, ଧୂଆଁପତ୍ର ଦେଇଯାନ୍ତି । ଗ୍ରାମର କଳି କନ୍ଦଳ, ମହୁଲ ଶଡ଼ପ ବୃକ୍ଷଘଟିତ ଦେବାନ ମାମଲା ସମସ୍ତ ଗ୍ରାମର ପରଗଣା ବୁଝା ସୁଝା କରେ । ପରଗଣା ଆଜ୍ଞା ସମସ୍ତଙ୍କ ଶିରୋଧାର୍ଯ୍ୟ । ପରଗଣା ଆଜ୍ଞା ଅମାନ୍ୟକାରୀ ପ୍ରତି ପ୍ରହାରଦଣ୍ଡ, ବଧ, ଗୁରୁତର ଅପରାଧୀମାନଙ୍କ ଦଣ୍ଡ ଗ୍ରାମରୁ ନିର୍ବାସନ । ବର୍ତ୍ତମାନ ପରଗଣାର ନାମ ମୁଣ୍ଡରୁ ମାଝି ।

ଶୀତ ଋତୁ ମାଘ ଗ୍ରାମର କୌଣସି ଲୋକ ଘରେ ରହନ୍ତି ନାହିଁ ପୂର୍ବକଥିତ ଶାଳବଣ ମଧ୍ୟରେ ବୃତ୍ତା-କାରରେ କେତେ ଗଦା ଧୂନି ଜାଳିଦେଇ ତାହା ମଧ୍ୟରେ ରହନ୍ତି । ସମସ୍ତ ପୁରୁଷ ଏକ ପାଖରେ, ସମସ୍ତ ସ୍ତ୍ରୀ ଅନ୍ୟ ପାଖରେ ରହିବା ବିଧି । ଟୁଙ୍ଗ୍ ବଜାଇବା ପୁରୁଷମାନଙ୍କ କାର୍ଯ୍ୟ, ସ୍ତ୍ରୀମାନଙ୍କ କାର୍ଯ୍ୟ ନୃତ୍ୟ ଏବଂ ସଙ୍ଗୀତ । ଅନିଦ୍ରା ଆନନ୍ଦରେ ରାତି ପାହିଯାଏ ।

ଅଭାବ ନାହିଁ, ଅତ୍ୟାଚାର ନାହିଁ, ଚିନ୍ତା ନାହିଁ, ଭାବନା ନାହିଁ, ପରମ ସୁଖରେ ଦିନ ଉତ୍ତାରେ ରାତି, ରାତି ଉତ୍ତାରେ ଦିନ କଟୁଅଛି । ହେଲେ ରଜା ହେଉ, ପ୍ରଜା ହେଉ, ଧନୀ ହେଉ, ଦରିଦ୍ର ହେଉ, ରୋଗଗ୍ରସ୍ତ ହେଉ, ସୁସ୍ଥ ଶରୀର ହେଉ, କାହାର ଅବସ୍ଥା ସ୍ଥାୟୀ ନୁହେ; ପରିବର୍ତ୍ତନଶୀଳ ଜଗତରେ ନିତ୍ୟ ରୂପାନ୍ତର ଘଟୁଅଛି । ସୋସୋ ଗ୍ରାମର ଆଦିମ ନିବାସୀମାନଙ୍କ ଉପରେ ଅଚାନକ ବିପତ୍ତି, ବାସସ୍ଥାନ ପରିତ୍ୟାଗ କରି ସମସ୍ତେ ନିବିଡ଼ ଅରଣ୍ୟକୁ ପଳାଇ ଯାଇଅଛନ୍ତି । ଦୈବାତ୍ କେଉଁ ଦେଶରୁ ପ୍ରାୟ ଦୁଇଶତ ତୁର୍କି, ଚାରି ପାଞ୍ଚ ଶତ ପଞ୍ଚହତ୍ୟାରବନ୍ଦ ଖଣ୍ଡାୟୁତ ପାଇକ ଆସି ଗ୍ରାମ ମଧ୍ୟ ଅଧିକାର କରି ବସିଅଛନ୍ତି । ଗୃହନିର୍ମାଣୋପଯୋଗୀ ଉପକରଣର ଅଭାବ ନାହିଁ, ବନ୍ୟ ଲୋକମାନଙ୍କ ଗୃହ ଭାଙ୍ଗି ଦେଇ ହିନ୍ଦୁ ତୁର୍କି ସ୍ୱତନ୍ତ୍ର ଗ୍ରାମ ବସାଇଅଛନ୍ତି ।

---

-୧୦-

## ନାଗା ଜମାୟତ

ଆଜି ସୋସୋ ଗ୍ରାମରେ ଭାରି ଜାରି, ନାଗା ଜମାଏତ ପଡ଼ି ଅଛନ୍ତି । ନଅ ଜଣ ନାଗା, ଜଣେ ମହନ୍ତ । ନାଗାମାନଙ୍କର ଲମ୍ବ ମୂର୍ତ୍ତି, ବକ୍ଷଆବରଣକାରୀ ବିଶାଳ ଶ୍ମଶ୍ରୁ, ବର୍ତ୍ତର ଉପରି ବୋଝେ ବୋଝେ ଜଟା ପିଠି ଯୋଡ଼ାଇ ପକାଇ ଅଛି । ସମସ୍ତେ ବଳିଷ୍ଠ, ନେତ୍ରଜ୍ୟୋତି ବୀରତ୍ୱବ୍ୟଞ୍ଜକ; ବିଭୂତିଭୂଷଣ । କେହି ସନ୍ଧାନୀ ଲୋକ ନିରୀକ୍ଷଣ କରି ଦେଖିଲେ ସମସ୍ତଙ୍କ ଦେହରେ ଅସ୍ତ୍ରାଘାତର ଚିହ୍ନ ଦେଖନ୍ତା । ସଙ୍ଗରେ ମୃଗଚର୍ମ, ଗୋଟିଏ ଗୋଟିଏ ଚିମଟା ଏବଂ ଝୁଲି, ଦଶ ଜଣଙ୍କର ଦଶ ଗୋଟି ଟାଟୁ । ଶାଳବଣ ମଧ୍ୟରେ ଧୂନି ଜଗାଇ ବସିଅଛନ୍ତି । ଗ୍ରାମବାସୀମାନେ ସାଧୁ ସେବାରେ ବ୍ୟସ୍ତ, ଅଧିକ ବ୍ୟସ୍ତ ପିଲାମାନେ, ଲୁଚ୍ଚାଟାରେ ପାଟିକରି ଗ୍ରାମ ମଝି ଦାଣ୍ଡରେ ଧାଁ ଦଉଡ଼ କରୁ ଅଛନ୍ତି । ପ୍ରଥମ ଦିନ ରାତିରେ ସାଧୁମାନେ ପ୍ରସାଦ ସେବା କରି ଅବା ଖାନା ଖାଇ ବିଶ୍ରାମ କରିଥିଲେ । ଦ୍ୱିତୀୟ ଦିନ ପ୍ରାତଃକାଳରେ ସାଧୁ ଦଶ ଜଣ ଏବଂ ଗ୍ରାମର ପ୍ରଧାନ ପ୍ରଧାନ ତୁର୍କ ଏବଂ ଖଣ୍ଡାୟୁତ ଗୋଟିଏ ବୃହତ୍ ଶାଳ ଗଛ ମୂଳରେ ବସିଅଛନ୍ତି । ଚତୁର୍ଦ୍ଦିଗରେ ପାଇକ ପହରା, ନିର୍ଜନ ବନରେ ପ୍ରୟୋଜନ ନାହିଁ, ତଥାପି ପହରା । ନାଗାମାନଙ୍କ ମୁଣ୍ଡ ଲଣ୍ଡା – ଜଟା ସମସ୍ତ ଭୂମିସାତ୍ ହେଲାଣି । ସେମାନଙ୍କ କଥୋପକଥନ ବିଶେଷ ଅନୁସନ୍ଧାନ ଦ୍ୱାରା ଯାହା ଆମ୍ଭମାନଙ୍କ ଜ୍ଞାନଗୋଚର ହୋଇଥିଲା, ସଂକ୍ଷେପରେ ପ୍ରକାଶ କରୁଅଛୁଁ ।

ଗ୍ରାମର ପ୍ରଧାନ ତୁର୍କି ମୀର କାଶୀମ ପଚାରିଲେ, "ବର୍ତ୍ତମାନ ବାଟ ବନ୍ଦ, ଆପଣମାନେ କିପରି ଆଇଲେ ?" ମହନ୍ତବେଶୀ କହିଲେ—"ଆରେ ତୋ-ବା, ଆସିବାର କଣ ବାଟ ଅଛି ? ବାଲେଶ୍ୱର ବନ୍ଦରଠାରୁ ମେଦିନୀପୁର ପର୍ଯ୍ୟନ୍ତ ବାଟରେ ମରହଟ୍ଟା ପାଇକ ପୂରି ରହିଅଛନ୍ତି । ସ୍ଥାନେ ସ୍ଥାନେ ଘାଟି, ସ୍ଥାନେ ସ୍ଥାନେ ଖଟି । ବାଟୋଇ କଥା ଛାଡ଼, ତୀର୍ଥଯାତ୍ରୀମାନଙ୍କର ମଧ୍ୟ ବାଟ ପଡ଼ିଗଲାଣି ।"

ମୀର କାଶୀମ—ଆପଣ କିପରି ଆସିଲେ ?

ମହନ୍ତ—ହିନ୍ଦୁ ନାଗା ସନ୍ନ୍ୟାସୀମାନଙ୍କୁ ମରହଟ୍ଟା ପାଇକେ ସମ୍ମାନ କରନ୍ତି; ସେଥି ସକାଶେ ଆମ୍ଭେମାନେ ଏହି ବେଶ ଧରି ଆସିଅଛୁଁ ।

ମୀର କାଶୀମ—ଶୁଣାଯାଏ, ନାଗା ସନ୍ନ୍ୟାସୀମାନେ ଗ୍ରାମକୁ ଗ୍ରାମ ଲୁଟପାଟ କରି ନେଉଅଛନ୍ତି । ସେମାନଙ୍କ ଉତ୍ପାତରେ ପ୍ରଜାମାନେ ଅସ୍ଥିର ।

ମଦନ୍ତ— ପ୍ରକୃତ ହିନ୍ଦୁ ଧାର୍ମିକ ନାଗା ସନ୍ନ୍ୟାସୀ ବର୍ତ୍ତମାନ ଏ ଦେଶରେ ନାହାନ୍ତି । ଡକାଏତମାନେ ନାଗା ସାଜି ଦେଶ ଉଜାଡ଼ କରୁଅଛନ୍ତି । ମରହଟ୍ଟାମାନଙ୍କ ହାତରୁ ଯେ ସମସ୍ତ ଗ୍ରାମ ରକ୍ଷା ପାଇଥିଲା, ନାଗାମାନେ ସେ ସମସ୍ତ ଚଡ଼ଆ କରି ଦେଲେଣି । ଆପଣ ଶୁଣିଥିବେ, ସେମାନେ ପିଣ୍ଡାରୀ ଜାତି ଏବଂ ବୁନ୍ଦେଲଖଣ୍ଡବାସୀ; ବଙ୍ଗଦେଶରୁ ସେମାନଙ୍କୁ ତଡ଼ିଦେବା ନିମନ୍ତେ ହଜରତ୍ ଆଲିବର୍ଦ୍ଦିଖାଁ ଏକ ଫୌଜ କାଏମ କରିଅଛନ୍ତି ।

ମୀରକାଶୀମ—ମରହଟ୍ଟାମାନେ ଓଡ଼ିଶାରେ ଆପଣାକୁ ରାଜା ବୋଲି ପରିଚୟ ଦେଉଅଛନ୍ତି, ତେବେ ଡକାଏତ ତଡ଼ୁ ନାହାନ୍ତି କିଁଓ ?

ମଦନ୍ତ—ଆଲ୍ଲା ଆକବର ! 'ପରେଯାକା ମାଲ ଲିଆ ଗେୟା, କ୍ୟା ନୋକ୍‌ସାନ୍ ତେରା ମେରା ।' ଏମାନେ ଯେ ଆପେ ଡକାଇତର ଗୋସେଇଁ ବାପ । ଆପେ ଲୁଟତରାଜରେ ଲାଗିଅଛନ୍ତି, ତଡ଼ିବାର ବେଳ କାହିଁ ?

ମୀର କାଶୀମ—ବାଲେଶ୍ୱର ବନ୍ଦରର ହାଲ କଣ ?

ମଦନ୍ତ—ଆମ୍ଭେମାନେ ପଚାଶପୁର ମଧ୍ୟରେ ପଶି ଝାଡ଼ ବାଟେ ଆଇଲୁଁ ; ମାତ୍ର ବାଲେଶ୍ୱର ବନ୍ଦର ଯିବାକୁ ହେବ । ଫୌଜକୁ ଆଗେ ବାଟର ହାଲ ଜାଣିବା ଦରକାର । ସମସ୍ତ ଖଣ୍ଡାଏତ କି ଆପଣଙ୍କ ସଙ୍ଗରେ ଆସିଅଛନ୍ତି ?

ମୀର କାଶୀମ—ନା, ମୁଖିଆ ମୁଖିଆ କେତେ ଲୋକ ଆସିଅଛନ୍ତି, ଆଉ ସମସ୍ତ ଖଣ୍ଡାଏତ ଚତୁର୍ଦ୍ଦିଗରେ ବୁଣି ପଡ଼ିଅଛନ୍ତି, ଥୋଡେ ଜାତି ଶସ୍ତ୍ର ଜମାତ ପକାଇ ଦେଇ କଷ୍ଟରେ ଆପଣା ଆପଣା ଘରେ ରହି ଅଛନ୍ତି ।

ମୀର କାଶୀମ – ମୁର୍‌ଶିଦାବାଦର ହାଲ କଣ ?

ମଦନ୍ତ—ହଜରତ୍ ନବାବ ସାହେବଙ୍କ ପରୁଆନାରୁ ସମସ୍ତ ଉଆକଫ୍ ହେବେ ।

ମଦନ୍ତ ଆପଣା ଝୁଲି ମଧ୍ୟରୁ ନବାବ ସାହେବଙ୍କ ଦସ୍ତଖତ ମୋହରଯୁକ୍ତ ପରୁଆନା ବାହାର କରି ମୀର କାଶୀମ ହାତରେ ଦେଲେ । ପରୁଆନା ପାରସ୍ୟ ଭାଷାରେ ଲେଖା, ଉତ୍କଳ ଭାଷାରେ ତର୍ଜମା କରି ଖଣ୍ଡାଏତମାନଙ୍କୁ ଶୁଣାଇ ଦିଆଗଲା । ଖୋଦ ମୀର କାଶୀମ ପରୁଆନା ପାଠ କଲେ । ତାହାର ମର୍ମ—

ମେହେରବାନ୍ ଦୋସ୍ତାନ୍ ଫୌଜଦାର ସେକ୍ ମୀର୍ କାଶୀମ୍ ,

ତକ୍ତ ବନ୍ଦର, ବାଲେଶ୍ୱର, ସୁଲମହଲ ।

ଯେହେତୁ ହରକରା ମାରଫତ୍ ତୁମ୍ଭ ଅର୍ଜି ପହୁଞ୍ଚି ପେଶ୍ ହେବାରୁ ସମସ୍ତ ହାଲ ଜାହେର ହେଲା । ଭାସ୍କର ପଣ୍ଡିତ ଜୁଲମରେ ତୁମ୍ଭେ ଆପଣା ଏଲାକା ଛାଡି କେଉଁଝର ଜଙ୍ଗଲ ତରଫକୁ ଚାଲି ଯାଇଅଛ । ଦୁସମନ୍ ବର୍ତ୍ତମାନ ଛାଉଣି କରି ଉକ୍ତ ମୋକାମରେ ରହିଅଛି । ଦୁସମନକୁ ଜବଦ କରିବା ସକାଶେ ଏହି ରମଜାନ ମାସର ଆଖର ଇଦ୍ ପର୍ବର ତେସରା ରୋଜ ଖୋଦ ସରକାର ଫୌଜ ହମରାଏ ମୁରଶିଦାବାଦଠାରୁ ରମାନା ହେବେ । ତୁମ୍ଭଙ୍କୁ ମୁନାସବ୍ କି ହିସାବ ମୁତାବକ ସରକାର ଫୌଜ ବାଲେଶ୍ୱର ବନ୍ଦର ଉତ୍ତର ତରଫ ଫୁଲାରି ନଦୀ ନିକଟ ହାଜର ହେବାର ପସନ୍ଦ କରି ତୁମ୍ଭେ ଝାଡ଼ ରାହାରେ ପ୍ରସିଦ୍ଧ ମାଫିକ ଆସି ରାସ୍ତବଣିଆ କଲ୍ଲାର ମାଲକ ସରକାର ତରଫ ଦୋସ୍ତ ରାସ୍ତ ରାଘବ ରାଟସିଂହ ବୈରଗଞ୍ଜନ ଜଗଦେବ ମାନଧାତାଙ୍କ ଫୌଜ ସାମିଲ ହେବ । ଏ ମାହାର ପରୁଆନା ମାନଧାତା ମୌସୁଫଙ୍କଠାକୁ ମଧ୍ୟ ଭେଜା ଗଲା । ଏହି ପରୁଆନାବାହକ ଛଦ୍ମବେଶଧାରୀ

ସେକ୍ ସମସର ଖାଁ ଜଣେ ଭାରି ଜଙ୍ଗୀ ଦୁସିଆର ସରକାର ସ୍ୱାତ୍ରମାଦ୍ ଲୋକ ଅଟନ୍ତି । ଏହାଙ୍କ ଜବାନରୁ ଆଜି ଆଜି ହାଲ ଉଆକଫ୍ ହେବ । ଇତି ।

. ସନ ୧୧୪୮ ରମଜାନ ମହିନା ତେସରା ରୋଜ ପୀର, ତକ୍ତ ମୁର୍ଶିଦାବାଦ ।

ପରୁଆନାରୁ ଜଣାଗଲା, ଛଦ୍ମବେଶୀ ମହାନ୍ତଙ୍କ ନାମ ସେକ ସମସର ଖାଁ ଏବଂ ସେ ଜଣେ ହଜାର ମନସବଦାର ।

ଅତଃପର ବାଲେଶ୍ୱର ବନ୍ଦରର ଅବସ୍ଥା ଏବଂ ମରହଟ୍ଟାଙ୍କ ଗତିବିଧି ତଦନ୍ତ ନିମନ୍ତେ ଛଦ୍ମବେଶୀ ନାଗାମାନେ ଯୋସୋ ଗ୍ରାମରୁ ବିଦାୟ ଗ୍ରହଣ କରି ଭଦ୍ରକ ହାବେଲି ମାର୍ଗରେ ବାଲେଶ୍ୱର ବନ୍ଦର ଦିଗକୁ ଯାତ୍ରା କରିଗଲେ ।

---

## -୧୧-

## ଫୌଜକୁଚ

ବର୍ଗୀ ସହିତ ଯୁଦ୍ଧ, ନବାବ ସାହେବ ଇତି ପୂର୍ବେ ସର୍ବତ୍ର ଘୋଷଣା କରିଅଛନ୍ତି । ଇଦ ପର ତେସରା ରୋଜ ନବାବ ଆଲିବର୍ଦ୍ଦି ଖାଁ ପ୍ରାତଃକାଳରେ ଉଜିର, ଫୌଜଦାର, ପେସ୍କାର, ମନସବଦାର, କାରକୁନ ସମସ୍ତ କର୍ମଚାରୀଙ୍କୁ ଘେନି ଉଜ୍ ଉତ୍ସରେ ଜୁମା ମସଜିଦରେ ନିମାଜ ପଢ଼ିଲେ । ତହିଁ ଉତ୍ତାରେ ଯୁଦ୍ଧଯାତ୍ରା । ବିଶେଷ ଆଡ଼ମ୍ବର ସହିତ ନବାବ ସାହେବ ବାହାରିଅଛନ୍ତି; ଏପରି ସୈନ୍ୟସମାଗମ, ଏପରି ଆଡ଼ମ୍ବର ମୁର୍ଶିଦାବାଦରେ କେବେ ଦେଖା ନ ଥିଲା । ନବାବଙ୍କ ନିଜ ସରକାରୀ ଫୌଜ ଛଡ଼ା ଅନ୍ୟାନ୍ୟ ଫୌଜ ମଧ୍ୟ ମିଶିଅଛନ୍ତି । ମରହଟ୍ଟା ସାଧାରଣର ଶତ୍ରୁ, ସେମାନଙ୍କ ବିନାଶ କଳ୍ପେ ସମସ୍ତେ ଯତ୍ନଶୀଳ । ପୁର୍ଣ୍ଣିଆର ନବାବ ଶଉକତ ଜଙ୍ଗ, ନବଦ୍ୱୀପରେ ମହାରାଜ କୃଷ୍ଣଚନ୍ଦ୍ର ରାୟରାୟା, ବର୍ଦ୍ଧମାନର ମହାରାଜ ଆପଚାପ ଚନ୍ଦ, ସମସ୍ତେ ଉପଯାଚକ ହୋଇ ସ୍ୱ ସ୍ୱ ସୈନ୍ୟ ପ୍ରେରଣ କରିଅଛନ୍ତି । ଜଗତ୍ ଶେଠଙ୍କ ଦୁଇ ହଜାର ସୈନ୍ୟ ମଧ୍ୟ ମିଳିତ । ସେନାପତି ମୀରଜାଫର୍ ଖାଁ ନବାବ ସାହେବଙ୍କ ନିକଟରେ ସୈନ୍ୟ ସଂଖ୍ୟାର ଏହିପରି ହିସାବ ଦାଖଲ କରିଥିଲେ – ପଦାତିକ ଜଙ୍ଗୀ ପଞ୍ଚାଶ ହଜାର, ଘୋଡ଼ସବାର ତିରିଶ ହଜାର, ଗୋଲନ୍ଦାଜ ଦୁଇ ହଜାର, ଢାଲ୍ଲି ବର୍ଚ୍ଛାଦାର ବରକନ୍ଦାଜ ଚାରି ହଜାର, ଗାଏ ଛୟାଳି ହଜାର । ଏମାନଙ୍କ ସାଙ୍ଗେ ଥିବା ଲସ୍କର ପ୍ରାୟ ପଞ୍ଚାଶ ହଜାର । ଫୌଜ କୁଚ ପୂର୍ବ ଦିନ ପ୍ରାତଃକାଳରେ ଏକହଜାରି ମନସବଦାର ସେକ ଇନାଏତ ହୋସେନ ଆପଣା ତାବେଦାର ଫୌଜ ପାଞ୍ଚ ହଜାର ଲସ୍କର ଘେନି ରମାନା ହୋଇଅଛନ୍ତି । ଏହାର ନାମ ଆଗାଡ଼ି ଫୌଜ; ଏହି ଫୌଜ ସଙ୍ଗରେ କୋଡ଼, କାଙ୍କ, ଖଣିତ, ଦା, କଟୁରି, ବାର୍ଚ୍ଛି, ବଟାଲି, କରତ, ପ୍ରଭୃତି ଅସ୍ତ୍ରମାନ ଧରି ମୂଲିଆ କମାର ବଢ଼େଇମାନେ ଚାଲିଅଛନ୍ତି । ମୂଳ ସୈନ୍ୟମାନଙ୍କ ଯିବାର ସୁବିଧା ନିମନ୍ତେ ବଣ ଜଙ୍ଗଲ କାଟି ବାଟ ପରିଷ୍କାର କରିବା ଏବଂ ତୋପ ଶଗଡ଼, ରସଦ ଶଗଡ଼ ଯିବାର ସୁବିଧା ସକାଶେ ଖାଲ ଢିପ ହାଣି ସମତଳ କରାଇବା ଏବଂ ଜଳ ସୁବିଧା ଦେଖି ଡେରା ପଡ଼ିବାର ସ୍ଥାନ ନିରୂପଣ ଓ ସ୍ଥାନ ପରିଷ୍କାର କରିବା ଆଗାଡ଼ି ଫୌଜର କାର୍ଯ୍ୟ । ମାର୍ଗ ସମ୍ମୁଖ ଏବଂ ଉଭୟ ପାର୍ଶ୍ୱ କେତେକ କୋଶ ପର୍ଯ୍ୟନ୍ତ ଦୁସମନର ଗତି ବିଧିର ସମ୍ବାଦ ପ୍ରଧାନ ସେନାପତି ନିକଟକୁ ପ୍ରେରଣ କରିବା ମଧ୍ୟ ଆଗାଡ଼ି ଫୌଜଙ୍କର ବିଶେଷ ଗୋଟିଏ କାର୍ଯ୍ୟ ସ୍ୱରୂପ ନିରୂପିତ ଥିଲା । ଏହି କାର୍ଯ୍ୟ ସାଧନ ନିମନ୍ତେ ତାଙ୍କ ନିକଟରେ ଅନେକଗୁଡ଼ିଏ ସ୍ତ୍ରୀ ପୁରୁଷ ଗୋଇନ୍ଦା ଥାନ୍ତି । ସେହି ଗୋଇନ୍ଦାମାନେ ଯୋଗୀ, ସନ୍ନ୍ୟାସୀ, ଭିକାରି ମହାଜନ, ତୀର୍ଥଯାତ୍ରୀ, ବୈଷ୍ଣବୀ, ଭିକାରୁଣୀ, ବାଜିକରି, ଚଡ଼ା-

କୁଟିରେ ପ୍ରଚ୍ଛନ୍ନ ବେଶରେ ଭ୍ରମଣ କରି ବିପକ୍ଷ ପକ୍ଷର ସମ୍ବାଦ ସଂଗ୍ରହ କରନ୍ତି ।

ଜୁମା ମସଜିଦ ନମାଜ ଆଖେରର ଉତ୍ତାରେ ରଣବାଦ୍ୟ ବଜାଇ ସୈନ୍ୟ କୁଚ ଆରମ୍ଭ କଲେ । ଅର୍ଦ୍ଧଚନ୍ଦ୍ର ଲାଞ୍ଛିତ ପତାକା ଅନୁସରଣ କରି ସୈନ୍ୟଶ୍ରେଣୀ ଚାଲିଅଛନ୍ତି । ସର୍ବାଗ୍ରେ ଗୋଲନ୍ଦାଜ, ତାଙ୍କ ପଶ୍ଚାତ୍ ପଦାତିଦଳ ଫୌଜ, ତତ୍ପଶ୍ଚାତ୍ ସବାର ସୈନ୍ୟ ଚାଲିଅଛନ୍ତି । ସବାରଙ୍କ ପଶ୍ଚାଦ୍ଭାଗରେ ପାଟବସ୍ତ୍ରବେଷ୍ଟିତ ବଙ୍ଗ, ବିହାର, ଓଡ଼ିଶାର ଖୋଦ ନବାବ ଆଲିବର୍ଦ୍ଦିଖାଁ, ସଙ୍ଗରେ ନାବାଳକ ନାତି ସିରାଜ ଉଦ୍ଦୌଲା । ନବାବ ବାହାଦୁର ଏକ ବିଶାଳକାୟ ବିଶାଳଦଂଷ୍ଟ୍ରହସ୍ତୀ ଆରୋହଣ କରିଅଛନ୍ତି । ସେଇ ମତ୍ତ ମାତଙ୍ଗ ପୃଷ୍ଠରେ ସ୍ୱର୍ଣ୍ଣ ରୌପ୍ୟମୟ ରତ୍ନଖଚିତ ହାଉଦା । ସଚ୍ଛା ଜରିର କାରୁକାର୍ଯ୍ୟ ବିଶିଷ୍ଟ କୌଷେୟ ବସ୍ତ୍ରଦ୍ୱାରା ସର୍ବାଙ୍ଗ ଆବୃତ । ମହାର୍ଘ ବସ୍ତ୍ରାଳଙ୍କାରବିଭୂଷିତ ହସ୍ତୀପକ ଦ୍ୱାରା ଚାଳିତ । ନବାବ ସବାରି ହସ୍ତୀ ସମ୍ମୁଖଭାଗରେ ସମତୁଲ୍ୟକାୟ ସ୍ୱର୍ଣ୍ଣରୌପ୍ୟଜଡ଼ିତ କୌଷେୟବସନାବୃତ ଅନ୍ୟ ଦୁଇଗୋଟି ଦନ୍ତାବଳ । ସେହି ଦୁଇ ହସ୍ତୀପୃଷ୍ଠରେ ମହାର୍ଘ ବସ୍ତ୍ରାଳଙ୍କାର ବିଭୂଷିତ ଦୁଇଗୋଟି ଯୁବକ ସୁବର୍ଣ୍ଣଦଣ୍ଡଲଗ୍ନ କୌଷେୟ ପତାକା ଧରି ବସିଛନ୍ତି । ବାମ ଭାଗରେ ରଜତ ହାଉଦାଧାରୀ ହସ୍ତୀପୃଷ୍ଠରେ ଏକ ସଜ୍ଜିତ ପୁରୁଷ ଗୋଲାପ ଜଳପୂର୍ଣ୍ଣ ସୁବର୍ଣ୍ଣମୟ ଅଲବୋଲା ଧରି ବସିଅଛି । ବିବିଧ ବର୍ଣ୍ଣ ରତ୍ନଜଡ଼ିତ ବଂଶୋର୍ଦ୍ଧ୍ୱ ହସ୍ତ ପ୍ରମାଣ ଲମ୍ବ ବିଶିଷ୍ଟ ଆଲବୋଲା ସଂଲଗ୍ନ ନଳ ନବାବଙ୍କ ହସ୍ତୀପୃଷ୍ଠ ପର୍ଯ୍ୟନ୍ତ ଲମ୍ବିତ ହୋଇଅଛି । ନବାବ ବାହାଦୁରଙ୍କ ହାଉଦା ପଶ୍ଚାଦ୍ଭାଗରେ ଉପବିଷ୍ଟ ଏକ କୁଳୀନ ମୁସଲମାନ ଯୁବକ ସେହି ନଳର ଅଗ୍ରଭାଗ ଧାରଣ କରିଅଛି ଏବଂ ସମୟ ସମୟରେ ନବାବଙ୍କ ଶ୍ରୀମୁଖଲଗ୍ନ କରାଉଅଛି । ବାମ ଓ ଦକ୍ଷିଣରେ କେତୋଟି ସମୋଚ୍ଚ ସଜ୍ଜିତ ହସ୍ତୀ ଉପରେ ସଜ୍ଜିତ ଯୁବକ ବାଦସାହୀ ଛତ୍ର (ରାଜ ଛତ୍ର), ଆଶା, ସୁଣ୍ଟା ରାଜଚିହ୍ନମାନ ଧାରଣ କରି ବସିଛନ୍ତି ଏବଂ ବାମ, ଦକ୍ଷିଣ, ପଶ୍ଚାଦ୍ଭାଗରେ ପଦୋଚିତ ବେଶଭୂଷା ବିମଣ୍ଡିତ ହୋଇ ଅମୀର ଓମରା ଗଜାରୋହୀ ପ୍ରଧାନ କର୍ମଚାରୀମାନେ ନବାବ ମହୋଦୟଙ୍କୁ ବେଷ୍ଟନ କରି ଚାଲିଅଛନ୍ତି । ତତ୍ପଶ୍ଚାତ୍ ନବାବଙ୍କ ଶରୀରରକ୍ଷୀ ସୈନ୍ୟ, ତତ୍ପଶ୍ଚାତ୍ ରସଦ ଶଗଡ଼, ଥୋରି ଓଟ, ଥୋରି ବଳଦ, ଥୋରି ଟଟ୍ଟୁ, ଥୋରି ଗଧ, ଥୋରି ହସ୍ତୀ, ଭାରୁଆ, ବୋହିଆ, ମୋଟିଆ ଇତ୍ୟାଦି । ଚାରି ହଜାର ତାଲ୍ ବରକନ୍ଦାଜ ଏହି ସମସ୍ତ ରସଦ ରକ୍ଷାକାରୀ । ସେମାନଙ୍କ ପଶ୍ଚାଦ୍ଭାଗରେ ବଜାରି, ହଟାରି, ଫେରିବାଲା, ପେଶାଦାର, ନର୍ତ୍ତକୀ, ଗାୟିକା, ଗ୍ଲେକାର, ଭିକାରୀ, ହାକିମ, କବିରାଜ, ଓମେଦାର ଇତ୍ୟାଦି ଆପଣା ଆପଣା ପଦମର୍ଯ୍ୟାଦା ଓ ଅବସ୍ଥା ଅନୁସାରେ କେହି ଘୋଡ଼ା, କେହି ଟଟ୍ଟୁ, କେହି ଡୁଲି ଆରୋହଣ କରି ଚାଲିଅଛନ୍ତି । କେହି କେହି ଲୋକେ ଗଧର ମଧ୍ୟ ମର୍ଯ୍ୟାଦା ରକ୍ଷାକରିଅଛନ୍ତି । ପଦବ୍ରଜୀ ଅସଂଖ୍ୟ ।

ନବାବ ସାହେବଙ୍କ ଅଗ୍ରପଶ୍ଚାତ୍ ବାମ ଦକ୍ଷିଣ ଭାଗରେ ଶତ ଶତ ଉଷ୍ଟ୍ର ଜ୍ୱଳନ୍ତ ଅଙ୍ଗାରପୂର୍ଣ୍ଣ ତହିଁରେ ପ୍ରକ୍ଷିପ୍ତ ଝୁଣା ଗୁଗୁଳ ଚନ୍ଦନ ଲୋବାନରୁ ଉଦ୍ଭୂତ ଧୂମରାଶିଯୁକ୍ତ ଉଟେଇକୁ କୁବ୍ଜ ପୃଷ୍ଠରେ ବହନ କରି ଚାଲିଅଛନ୍ତି । ପ୍ରଥମ ଦିବସରେ ଚାରି କୋଶ ମାତ୍ର ଯାତ୍ରା କରି ମୁର୍ଶିଦାବାଦ ପ୍ରାନ୍ତ ଦେଶରେ ବିଶ୍ରାମ କଲେ । ତହିଁ ଆରଦିନ ପ୍ରାତଃକାଳରେ ପୁନର୍ବାର କୁଚ । ଦିନମାନରେ ବେଳେ ମାତ୍ର କୁଚ ହୁଏ । କାହିଁ ସରଳ, କାହିଁ କୁଟିଳ ବିବିଧ ଭଙ୍ଗୀରେ ଯୋଜନବ୍ୟାପୀ ସୈନ୍ୟପ୍ରବାହ ଚାଲିଅଛନ୍ତି । ଅତି ସାବଧାନ, ନିୟମିତ ଶୃଙ୍ଖଳାବଦ୍ଧ ନୀରବ ଭାବରେ ଯୋଗ୍ୟ ଶିକ୍ଷିତ ସେନାପତି ଦ୍ୱାରା ଚାଳିତ ହେଉଅଛନ୍ତି । ସୈନ୍ୟ ଶୀର୍ଷଭାଗ ଉତ୍କଳସୀମା ସ୍ପର୍ଶ କରିବାକୁ ଦଶାହ କାଳ ଅତୀତ ହେଲା । ରାୟବଣିଆ ଦୁର୍ଗେଶ୍ୱର ରାୟ

ରାଘବ ରାଓସିଂହ ଜଗଦେବ ବୈଂଗେଞ୍ଜନ ମାନଧାତା ସୈନ୍ୟ ସାମନ୍ତ ସହିତ ପାଗ୍ଲେଟି ଯାଇ ଦାନ୍ତୋଣଠାରେ ମିଳିତ ହେଲେ ।

---

-୧୨-

## ହଳଦୀପଦା ଯୁଦ୍ଧ—ନବାବଙ୍କ ଦୁର୍ଦ୍ଦଶା

ନବାବୀ ଫୌଜର ଶୀର୍ଷ ଭାଗ ହଳଦୀପଦାଠାରେ ଉପସ୍ଥିତ । ସେହି ସମୟରେ ନବାବ ସାହେବ ସୁବର୍ଣ୍ଣରେଖା ରାଜଘାଟ ନାମକ ସ୍ଥାନରେ ବିରାଜମାନ ଥିଲେ । ପଞ୍ଚ ସହସ୍ର ମାତ୍ର ଅଶ୍ୱାରୋହୀ ସୈନ୍ୟ ସହିତ ବାଲେଶ୍ୱର ବନ୍ଦର ପଶ୍ଚିମାଂଶ ଭାସ୍କରଗଞ୍ଜ ନାମକ ସ୍ଥାନରେ ମରହଟ୍ଟା ଫୌଜଦାର ଭାସ୍କର ପଣ୍ଡିତ ଉପସ୍ଥିତ ଥିବାର ଗୁପ୍ତ ଗୋଇନ୍ଦା ସମ୍ବାଦ ଦେଲା । ବିପକ୍ଷ ପକ୍ଷ ନବାବ ସୈନ୍ୟ ସମାଗମ ସମାଚାର ପ୍ରାପ୍ତ ହୋଇଥିବାର ଜଣାଯାଏ ନାହିଁ । କାରଣ ସେମାନେ ନିଶ୍ଚିନ୍ତ ନିଶ୍ଚେଷ୍ଟ ଭାବରେ ରହିଅଛନ୍ତି । ଉଭୟ ପାର୍ଶ୍ୱବର୍ତ୍ତୀ ସ୍ଥାନମାନଙ୍କରେ ମଧ୍ୟ ଶତ୍ରୁ ସଞ୍ଚାରର ଚିହ୍ନ ମାତ୍ର ନାସ୍ତି । ନବାବ ସାହେବ ସମ୍ବାଦ ପାଇ ଅତ୍ୟନ୍ତ ଆନନ୍ଦିତ ହେଲେ । ବିଶାଳ ବାହିନୀ ପକାଇ ଅରାତି ଦଳକୁ ଏକାବେଳକେ ଦଳି ଦେବେ, ଉତ୍କଳ ଭୂମିରେ ସେମାନଙ୍କର ଚିହ୍ନ ମାତ୍ର ରହିବ ନାହିଁ । ବାଲେଶ୍ୱର ବନ୍ଦରଠାରେ ଉପସ୍ଥିତ ହୋଇ ଶତ୍ରୁ ସହିତ ଯୁଦ୍ଧ କରିବା ସକାଶେ ଅର୍ଦ୍ଧରାତ୍ରି ସମୟରେ ସେନାପତି ମୀରଜାଫର୍ ନବାବଙ୍କଠାରୁ ହୁକୁମ ନେଇ ରୱାନା ହେଲେ ।

ମକର ମାସ ଶେଷାଶେଷି । ଏହି ସମୟରେ ପ୍ରାକୃତିକ ଗଗନମଣ୍ଡଳ ପ୍ରାୟ କୁଜ୍‌ଝଟିକାଚ୍ଛନ୍ନ ହୁଏ । ତନ୍ନିବନ୍ଧନ ଶୀତଟା ମଧ୍ୟ ଶେଷରାତିରେ କିଛି ବେଶି ଜଣାଯାଏ ।

ନିଶା ଅବସାନ ପ୍ରାୟ । ଆକାଶମଣ୍ଡଳ ତିମିରାଚ୍ଛନ୍ନ । କୂଚ ସମସ୍ତ କିଞ୍ଚିତ୍ ବିଳମ୍ବ ଅଛି । ନବାବ ସୈନ୍ୟ ସ୍କନ୍ଧାବାର ମଧ୍ୟରେ ସଚେତ ଭାବର ଆଭାସ ମିଳୁଅଛି । ଧର୍ମପରାୟଣ କେତେକ ପାଇକ ନମାଜପାଠ ଆରମ୍ଭ କରିଅଛନ୍ତି, କେହି ବା ଉଜୁ କରୁଅଛି । ଯଥାକେ ଉଦରପରାୟଣ ଗତରାତ୍ରି ଖାନାର ଅବଶିଷ୍ଟାଂଶ ନାସ୍ତା ନାମକ କର୍ମରେ ନ୍ୟସ୍ତ କରୁଅଛନ୍ତି । ଶୀତକାଳ ଶେଷରାତ୍ରି ନିଦ୍ରାର ମଧୁରତା କିଛି ବେଶି ଅନୁଭୂତ ହୁଏ, ଅଧିକାଂଶ ନିଦ୍ରାପରାୟଣ ପାଇକ କମ୍ବଳଟା ଭଲ କରି ଭିଡ଼ି ହୋଇ ଶୋଇ ପଡ଼ିଅଛନ୍ତି । ଆକାଶରୁ ବଜ୍ରପାତ ହେଲାପରି ହଠାତ୍ ପଞ୍ଚ ସହସ୍ର ଅଶ୍ୱାରୋହୀ ମରହଟ୍ଟା 'ବୋମ୍ ବୋମ୍ ମହାଦେଓ' ଭୀଷଣ ଚିତ୍କାର କରି ନବାବଙ୍କ ସୈନ୍ୟ ଉପରେ ପଡ଼ି ସେମାନଙ୍କୁ ଛିନ୍ନଭିନ୍ନ କରି ପକାଇଲେ ଧନ୍ୟ ବର୍ଗି-ଗୃଭୁଷି ! ଧନ୍ୟ କ୍ଷିପ୍ରତା ! ଏତେ ଶତ୍ରୁ ଆସି ଉପରେ ପଡ଼ିଲେଣି, ନବାବ ସେନାପତି ମୁହୂର୍ତ୍ତେ ପୂର୍ବେ ସେଥିର ଶବ୍ଦ ମାତ୍ର ଅନୁଭବ କରିପାରି ନାହାନ୍ତି । ନବାବଙ୍କ ସୈନ୍ୟଙ୍କୁ ଅବଧାରଣ କରିବାକୁ ଅବକାଶ ନାହିଁ । ହଠାତ୍ ନିଦ୍ରା ତ୍ୟାଗ କରି ଉଠିଅଛନ୍ତି, ଆକାଶ ମଧ୍ୟ ତିମିରାଚ୍ଛନ୍ନ । ଶତ୍ରୁ ଉପସ୍ଥିତ ଅନୁଭବ କରିବା ପୂର୍ବରୁ ଧରାଶାୟୀ ହେଉଅଛନ୍ତି । ଅର୍ଦ୍ଧ ଘଣ୍ଟା ମଧ୍ୟରେ ନବାବୀ ଅଗାଡ଼ିଫୌଜ ନିଃଶେଷ ପ୍ରାୟ ହୋଇଗଲେ । ତୁର୍କୀ ସୈନ୍ୟ ମଧ୍ୟରେ ସମ୍ବାଦ ପ୍ରଚାରିତ ହେବାରୁ ବିଷମ ବିଶୃଙ୍ଖଳା ଉପସ୍ଥିତ ହେଲା । ସମସ୍ତେ କିଂକର୍ତ୍ତବ୍ୟବିମୂଢ଼, ପ୍ରତିଯୁଦ୍ଧ ଦାନରେ ଅପାରଗ, ପଳାୟନ ପନ୍ଥା ମଧ୍ୟ ନାସ୍ତି । ମୀରଜାଫର ଜଣେ ପ୍ରବୀଣ ବହୁଦର୍ଶୀ ସେନାପତି, ଉପସ୍ଥିତ ବିଭ୍ରାଟରେ ଧୈର୍ଯ୍ୟଚ୍ୟୁତ ହେଲେ ନାହିଁ । ବହୁ କଷ୍ଟରେ ଅରାତି ଗତି ନିବାରଣ ନିମନ୍ତେ ପ୍ରସ୍ତୁତ ହେବାକୁ ଲାଗିଲେ; ମାତ୍ର ଶୀଘ୍ର ସଫଳକାମ ହୋଇ ପାରିଲେ ନାହିଁ । କାରଣ ଆଶୁ ସମର ସମ୍ଭାବନା ନ ଥିବାରୁ ତଦୁପଯୁକ୍ତ ସୈନ୍ୟର ସମାବେଶ ନ ଥିଲା । ଗୋଲନ୍ଦାଜ ସୈନ୍ୟ ଅଗ୍ରଭାଗରେ ଥିଲେ, ମାତ୍ର ତୋପ

ଚଳାଇବାର ସୁଯୋଗ ନ ଥିଲା । ବର୍ଗିମାନେ ଏତେ ନିକଟବର୍ତ୍ତୀ, ସ୍ଥାନେ ସ୍ଥାନେ ଏପରି ମିଶ୍ରିତ ଭାବରେ ଅଛନ୍ତି ଯେ, ତୋପ ଚାଳନା କଲେ ଶତ୍ରୁ ସହିତ ଆତ୍ମପକ୍ଷର ବିନାଶ ଅବଧାରିତ । ପଶ୍ଚାଦ୍‌ବର୍ତ୍ତୀ ଅଶ୍ୱାରୋହୀମାନଙ୍କୁ ଅଗ୍ରସର ହେବା ନିମନ୍ତେ ତୁର୍କ ସେନାପତି ଆଦେଶ ପ୍ରଦାନ କଲେ । ହେଲେହେଁ ପ୍ରୟୋଜନ ସମୟ ମଧ୍ୟରେ ସୈନ୍ୟଶ୍ରେଣୀ କାର୍ଯ୍ୟକ୍ଷେତ୍ରରେ ଉପସ୍ଥିତ ହୋଇପାରିଲେ ନାହିଁ । କାରଣ ମାର୍ଗ ଦୁଇପାର୍ଶ୍ୱ ଜଙ୍ଗଲପୂର୍ଣ୍ଣ, ସମ୍ପ୍ରତି ସୈନ୍ୟସଞ୍ଚାଳନ ନିମନ୍ତେ ବଂଶହସ୍ତ ମାତ୍ର ଜଙ୍ଗଲ କାଟି ମାର୍ଗ ପ୍ରସ୍ତୁତ କରାଯାଇଅଛି । ଅଗ୍ରଗାମୀ ଗୋଲନ୍ଦାଜ ପଦାତିଦଳ ସୈନ୍ୟ ଆଗ୍ରହ ହୋଇ ଯାଇ ଅଶ୍ୱାରୋହୀ ସୈନ୍ୟଙ୍କ ଗତି ସକାଶେ ଦକ୍ଷିଣ ପାର୍ଶ୍ୱରେ ମାର୍ଗ ପରିଷ୍କାର କରି ଦେବାର ପ୍ରୟାସ କଲେ । ତାହା ମଧ୍ୟ ନିତାନ୍ତ ନିରାପଦରେ ସମ୍ପନ୍ନ ହେଲା ନାହିଁ । ଅଶ୍ୱାରୋହୀ ସୈନ୍ୟମାନଙ୍କ କ୍ଷିପ୍ରତା ହେତୁରୁ ଅଶ୍ୱ ପଦାଘାତରେ ଅନେକ ପାଇକ ଗତାୟୁ ହେଲେ । ଅଶ୍ୱାରୋହୀ ସୈନ୍ୟ ଶତ୍ରୁ ସମ୍ମୁଖୀନ ହେବାକୁ ପ୍ରାୟ ପ୍ରହରାଧିକ ସମୟ ଅତିବାହିତ ହେଲା । କୁଜ୍‌ଝଟିକା ସମ୍ପୂର୍ଣ୍ଣରୂପେ ନିରାକୃତ ହୋଇଅଛି, ଗଗନମଣ୍ଡଳ ନିର୍ମଳ । ଆଶ୍ଚର୍ଯ୍ୟର ବିଷୟ, ଦେଖାଗଲା, ବର୍ଗିର ଚିହ୍ନ ମାତ୍ର ନାହିଁ, କେବଳ ଅସଂଖ୍ୟ ମୃତ ତୁର୍କ ମଧ୍ୟରେ ସଦୋଟକ ଶତାର୍ଦ୍ଧସଂଖ୍ୟକ ମାତ୍ର ମୃତ ବର୍ଗି ପତିତ ରହିଅଛନ୍ତି । ବାଜପକ୍ଷୀ ଯେପରି କପୋତ ଦଳରେ ପତିତ ହୋଇ ସେମାନଙ୍କ ବଧସାଧନ କରି ଉଡ଼ିଯାଏ, ବର୍ଗି ସେହିପରି କ୍ଷିପ୍ରଗତିରେ ଅନ୍ତର୍ଦ୍ଧାନ ହୋଇ ଚାଲି ଯାଇଅଛନ୍ତି ।

———

–୧୩–

## ଫୁଲଓଆର ଯୁଦ୍ଧ

ପ୍ରବୀଣ ସେନାପତି ମୀରଜାଫର ବୁଝିଲେ, ବର୍ତ୍ତମାନ କ୍ଷେତ୍ରଟା ବ୍ୟୂହରଚନା ଏବଂ ସୈନ୍ୟସଞ୍ଚାଳନ ପକ୍ଷରେ ଅସୁବିଧାଜନକ । ମରହଟ୍ଟା ହଟିଯାଇ ଫୁଲଓଆର ନାମକ ସ୍ଥାନରେ ଅବସ୍ଥାନ କରୁଥିବାର ସମ୍ବାଦ ପ୍ରାପ୍ତ ହେଲେ । କଥିତ ସ୍ଥାନଟା ପ୍ରଶସ୍ତ ପ୍ରାନ୍ତର; ସୁତରାଂ ସମରାଭିନୟର ଉପଯୋଗୀ । ଦିବା ଦୁଇ ପ୍ରହର ସମୟରେ ଗୋଲନ୍ଦାଜ ଏବଂ ପଦାତିଦଳ ଜଂଘମାନଙ୍କୁ ଧରି ସେନାପତି ରୱାନା ହେଲେ । ପଶ୍ଚାଦ୍‌ଭାଗ ରକ୍ଷା କରିବା ନିମନ୍ତେ ଅଶ୍ୱାରୋହୀମାନଙ୍କ ପ୍ରତି ଆଦେଶ ରହିଲା । ସୈନ୍ୟଶ୍ରେଣୀ ଫୁଲଓଆରଠାରେ ଉପସ୍ଥିତ ହେବାକୁ ପ୍ରାୟ ସନ୍ଧ୍ୟା ଉପସ୍ଥିତ । ପରିଜୟ, ଅନାହାର, ତଥା ପଥକ୍ଳାନ୍ତ ହେତୁରୁ ପାଇକମାନେ ନିସ୍ତେଜ ହୋଇ ପଡ଼ିଥିଲେ । କୋମର ଖୋଲାଇ ଆଦେଶ ପ୍ରଚାରିତ ହେଲା । ଫୁଲଓଆର ନଦୀ ଉତ୍ତର ଦକ୍ଷିଣ ଦୁଇ କୂଳ ଦୁଇ ପକ୍ଷ ସୈନ୍ୟ ଆବୋରି ରହିଅଛନ୍ତି । ନିଶାବସାନର କିଞ୍ଚିତ୍ ପୂର୍ବେ ପ୍ରତ୍ୟୁଷ ନିସ୍ତବ୍ଧତା ଭଙ୍ଗ କରି ଯୁଗପତ୍ ସହସ୍ର ଅଶନିପାତ ତୁଲ୍ୟ ଶବ୍ଦ କରି ନବାବଙ୍କ ଶତାଧିକ କମାଣ ଅଗ୍ନି ଉଦ୍‌ଗୀରଣ କଲା । ତୋପ ସଙ୍ଗରେ ତୋପ, ତୋପ ପଛରେ ତୋପ, ଅବିଶ୍ରାନ୍ତ ତୋପ ଚତୁର୍ଦ୍ଦିଗ ବାୟୁରାଶିରେ ପ୍ରତିଧ୍ୱନି ବ୍ୟାପ୍ତ ହୋଇ ପୃଥିବୀ ଏବଂ ଗଗନମଣ୍ଡଳ କମ୍ପିତ ହେଉଅଛି । ନିବିଡ଼ ଧୂମରାଶିରେ ଗଗନମଣ୍ଡଳ ଆଚ୍ଛନ୍ନ, ଶତହସ୍ତ ଦୂରବର୍ତ୍ତୀ ପଦାର୍ଥ ଅଦୃଶ୍ୟ । ଅର୍ଦ୍ଧ ପ୍ରହର ଉତ୍ତାରେ ପଶ୍ଚାଦ୍‌ବର୍ତ୍ତୀ ସୈନ୍ୟଶ୍ରେଣୀ ଦକ୍ଷିଣ ଭାଗରେ ବର୍ଗି ଅଶ୍ୱାରୋହୀ ପତିତ ହୋଇ ସେନାବଧ ସାଧନରେ ପ୍ରବୃତ୍ତ ହେବାର ଦେଖି ସେନାପତି ମୀରଜାଫର ବୁଝିଲେ, ସେ ଭ୍ରାନ୍ତ ହୋଇଅଛନ୍ତି । ପ୍ରଥମେ ସେନାପତି ଉପସ୍ଥିତ ହୋଇ ବର୍ଗି ପାଇକ ନଦୀର ଦକ୍ଷିଣ ଭାଗରେ କ୍ରୋଶବ୍ୟାପୀ ସ୍ଥାନ ଆବରଣ କରି ଲମ୍ବ ଭାବରେ ପଡ଼ିଥିବାର ଦେଖିଥିଲେ ସେନାପତି ରାତ୍ର ଅନ୍ଧକାରରେ ପ୍ରଚ୍ଛନ୍ନଭାବରେ ଥାଇ ସାରା ରାତି ଶ୍ରମ ସ୍ୱୀକାରପୂର୍ବକ ପଞ୍ଚାଶ ଗୋଟା ତୋପ ସେମାନଙ୍କ ଦିଗକୁ ମୁଖ କରାଇ ସଜାଇ ରଖିଥିଲେ । ତାହାଙ୍କର ଆଶା ଥିଲା, ସମସ୍ତ ମରହଟ୍ଟା ସୈନ୍ୟଙ୍କୁ ଏକାବେଳକେ ଧ୍ୱଂସ କରିଦେବ । ମାତ୍ର ବର୍ଗି

ମୃତ୍ତୁଭୀରେ ସମସ୍ତ କଳ୍ପନା, ସମସ୍ତ ଆଶା ଭରସା ବ୍ୟର୍ଥ ହୋଇଗଲା । ତୁର୍କ ସେନାପତିଙ୍କୁ ଭୁଲାଇବା ସକାଶେ ବର୍ଗି ପାଇକମାନେ ସ୍ଥାନେ ସ୍ଥାନେ ରନ୍ଧନାଦି କାର୍ଯ୍ୟରେ ନିଯୁକ୍ତ ଥିବାର ଛଳନା କରି ଅଗ୍ନି ପ୍ରଜ୍ୱଳିତ କରାଉଥାନ୍ତି ଏବଂ ଥୋକେ ପାଇକ ବ୍ୟର୍ଥ ଗୋଳମାଳ କରୁଥାନ୍ତି । ଅବଶିଷ୍ଟ ସମସ୍ତ ବର୍ଗି ଏକ କୋଶ ଉପରି-ଭାଗରେ ନଦୀ ପାର ହୋଇ ତୁର୍କ ସୈନ୍ୟଶ୍ରେଣୀର ଦକ୍ଷିଣ ଭାଗରେ ଉପସ୍ଥିତ ହେଲେ । ରାତି ତୃତୀୟ ପ୍ରହର ସମୟରେ ନଦୀର ଦକ୍ଷିଣ କୂଳ ନିସ୍ତବ୍ଧ । ବର୍ଗି ନିଦ୍ରିତ ହୋଇ ପଡ଼ିଥିବା ନିସ୍ତବ୍ଧତାର କାରଣ ବୋଲି ସେନାପତିଙ୍କ ଅନୁମାନରେ ସାବ୍ୟସ୍ତ ହୋଇଥିଲା । ନବାବ ପକ୍ଷରେ ତୋପ ଆଉଆଜ ସମସ୍ତ ଶେଷ ରାତି । କୁହୁଡ଼ି ଏବଂ ପ୍ରତ୍ୟୁଷ ଅନ୍ଧକାରରେ ଆକାଶ ଆଚ୍ଛନ୍ନ, ସମ୍ମୁଖବର୍ତ୍ତୀ ପଦାର୍ଥ ଅଦୃଶ୍ୟ । ସେନାପତି ଭ୍ରାନ୍ତ ହୋଇ ବୃଥା ତୋପ ଚଳାଉଥିଲେ । ଆତ୍ମପକ୍ଷ ସୈନ୍ୟ-ଧ୍ୱନାଶ ଦେଖି ତୋପ ମୁଖ ଫେରାଇବାକୁ ଆଦେଶ ଦେଲେ । ତୋପର କାର୍ଯ୍ୟ ଆରମ୍ଭ ହେବା ମାତ୍ରକେ ଚତୁର ବର୍ଗି ନଦୀ ପାର ହୋଇ ଅବଡ଼ ନାମକ ସ୍ଥାନକୁ ପଳାୟନ କଲେ ।

ତୁର୍କ ଅଶ୍ୱାରୋହୀମାନେ ବର୍ଗିମାନଙ୍କ ପଶ୍ଚାଦ୍ଧାବନ କରିଥିଲେ ବିଜୟ ଲାଭର ସମ୍ଭାବନା ଥିଲା । କାରଣ ସେମାନଙ୍କ ସଂଖ୍ୟା ଅନେକ ଗୁଣରେ ନ୍ୟୂନ ଥିଲା, ଅବଡ଼ ମଧ୍ୟ ଘଟଣା ସ୍ଥଳରୁ ଦୁଇ କୋଶରୁ ଅଧିକ ନୁହେ । ତଥାପି ତୁର୍କ ପଶ୍ଚାଦ୍ଧାବନ କରି ପାରିଲେ ନାହିଁ । ଫୁଲ୍‌ଓଆରଠାରୁ ଅବଡ଼ ପର୍ଯ୍ୟନ୍ତ ପ୍ରାନ୍ତରଟା ସ୍ଥାନେ ସ୍ଥାନେ ସ୍ୱଳ୍ପ ଜଳବିଶିଷ୍ଟ ଏବଂ କର୍ଦ୍ଦମମୟ । ତୁର୍କ ଅଶ୍ୱାରୋହୀ ଏବଂ ତୋପ ଶଗଡ଼ର ବେଗଗମନ ପକ୍ଷରେ ଅସୁବିଧାଜନକ । ପ୍ରାନ୍ତରରୁ ଏକ କୋଶ ଦୂରବର୍ତ୍ତୀ ପଶ୍ଚିମ ଭାଗରେ ସୁନ୍ଦର ମାର୍ଗ ତୁର୍କମାନଙ୍କର ଅଜ୍ଞାତ । ବର୍ଗି ସେହି ମାର୍ଗ ଅବଲମ୍ବନ କରି ପଳାଇ-ଥିଲେ ।

ସେନାପତିଙ୍କ ଆଦେଶ ଅନୁସାରେ ପଙ୍କିଳ ପଡ଼ିଆ ମଧ୍ୟରେ ତୋପ ଶଗଡ଼ ଚଳିବା ଉପଯୋଗୀ ଗୋଟିଏ ରାସ୍ତା ଅବିଳମ୍ବେ ପ୍ରସ୍ତୁତ ହୋଇଗଲା । ତୁର୍କ ପାଇକ ଅବଡ଼ ନାମକ ସ୍ଥାନରେ ଉପସ୍ଥିତ ହେବା ମାତ୍ରେ ପୁନର୍ବାର ଯୁଦ୍ଧାରମ୍ଭ ହେଲା । ବର୍ଗି ଯେଉଁ ସ୍ଥାନ ଅଧିକାର କରି ବ୍ୟୂହ ରଚନା କରିଥିଲେ, ସେ ସ୍ଥାନଟା ଅତି ଉଚ୍ଚ, ଏଥିକୁ ସେମାନଙ୍କ ପକ୍ଷରେ ସୁବିଧାଜନକ ଥିଲା; ତଥାପି ତୁର୍କ ତୋପଗୋଳା ସହ୍ୟ କରି ନ ପାରି ପଳାୟନ କଲେ ।

ରାତି ଉପସ୍ଥିତ, ତୁର୍କ ସେନାପତି ଅବଡ଼ରେ ବିଶ୍ରାମ କଲେ । ପ୍ରଭାତ କାଳରେ ବର୍ଗିମାନଙ୍କ ଅନୁସରଣ କରିବା ନିମନ୍ତେ ତୁର୍କ ସେନାପତି ମନସ୍ଥ କରି ତତ୍ତୁଲ୍ୟ ଆୟୋଜନ କରିଥିଲେ । ମାତ୍ର ତାହାଙ୍କୁ ଯାତ୍ରାପରିଶ୍ରମ ସ୍ୱୀକାର କରିବାକୁ ହେଲା ନାହିଁ । ପ୍ରାତଃକାଳରେ ବର୍ଗି ଉପସ୍ଥିତ ।

ସ୍ୱଳ୍ପସଂଖ୍ୟକ ବର୍ଗି ସୈନ୍ୟଦ୍ୱାରା ବିଶାଳ ତୁର୍କ ବାହିନୀ ପରାସ୍ତ ହେବାର ସଚରାଚର ଦୃଷ୍ଟିଗୋଚର ହୁଏ । ସେଥିର ଏକମାତ୍ର କାରଣ ଏହି, ବର୍ଗି ଅଶ୍ୱସମସ୍ତ କ୍ଷୀଣକାୟ, ଖର୍ବଶରୀର କ୍ଷିପ୍ରଗତି, କଷ୍ଟସହିଷ୍ଣୁ । ସେମାନେ ବନ୍ୟ ମୃଗଯୂଥ ପରି ଆରଣ୍ୟ ପାର୍ବତ୍ୟ ସ୍ଥାନରେ ଗଳି ଗଳି ଲମ୍ଫ ପ୍ରଦାନପୂର୍ବକ ବାୟୁବେଗରେ ଧାବମାନ ହେବାକୁ ସମର୍ଥ । ଅଶ୍ୱର ଉପଯୁକ୍ତ ଆରୋହୀ । କ୍ଷିପ୍ରକାରିତା, ଚତୁରତା, କଷ୍ଟ-ସହିଷ୍ଣୁତା ଏମାନଙ୍କର ନୈସର୍ଗିକ ଗୁଣ । ଏହି ସମସ୍ତ ଗୁଣ ସର୍ବଦା ଏମାନଙ୍କର ବିଜୟ ଲାଭର ସହାୟ ହୁଏ । ବର୍ଗିମାନଙ୍କ ବେଶଭୂଷା ମଧ୍ୟ ତତ୍ତୁଲ୍ୟ । ଅଶ୍ୱଭୂଷା ମଧ୍ୟରେ ଲଗାମ ଡୋରି, ଅଶ୍ୱପୃଷ୍ଠରେ ଖଣ୍ଡିଏ କମ୍ବଳ ଭିଡ଼ା ଥାଏ । ସେହି ଟୁକୁରି କମ୍ବଳ ଖଣ୍ଡିକରେ ଆରୋହୀଙ୍କ ଶୀତବସ୍ତ୍ର ଏବଂ ତମ୍ବୁ, ସବୁ କର୍ମ ଚଳେ । ଘୋଡ଼ା ପିଠିରେ ଗୋଟିଏ ଯାଉଁଳି ଥଳୀ ପଡ଼ିଥାଏ,

ତାହାର ଏକ ପାର୍ଶ୍ୱରେ ଅଶ୍ୱଖାଦ୍ୟ, ଅନ୍ୟ ପାର୍ଶ୍ୱରେ ଆରୋହୀଖାଦ୍ୟ, ପରିବର୍ତ୍ତନ ସକାଶେ ଅଧିକା ଖଣ୍ଡିଏ ବସ୍ତ୍ର, ଗୋଟିଏ ଲୋଟା ପ୍ରଭୃତି ଥାଏ । ବର୍ଗି ପାଇକମାନଙ୍କ ଅସ୍ତ୍ର ଢାଲ, ତରବାରି, କଟାରି, ବର୍ଚ୍ଛା ଏବଂ ଆଗ୍ନେୟାସ୍ତ୍ର କଡ଼ାବିନ । ବିଶ୍ରାମ ସମୟରେ ବର୍ଚ୍ଛା ପୋତି ଦେଇ ସେଥିରେ ଅଶ୍ୱକୁ ବନ୍ଧନ କରନ୍ତି । ବର୍ଷା ଖରା ସମୟରେ ପାଇକମାନେ ଅଶ୍ୱ ପେଟତଳେ ରହି ଆତ୍ମରକ୍ଷା କରନ୍ତି । ଏଣେ ନବାବୀ ଅଶ୍ୱ ସମସ୍ତ ଦୀର୍ଘକାୟ, ସ୍ଥୂଳଶରୀର, ଯତ୍ନପାଳିତ । ମୂଲ୍ୟବାନ୍ ଖ୍ୱର୍‌ଶ ଗୃହଜାମା ମୁଖପଟା ଲଗାମରେ ବିଭୂଷିତ । ବନ୍ଧୁର ଅରଣ୍ୟ ସ୍ଥାନ ପର୍ଯ୍ୟଟନରେ ଅନଭ୍ୟସ୍ତ, ଦୀର୍ଘ ପର୍ଯ୍ୟଟନରେ ଅଶକ୍ତ, ପ୍ରତ୍ୟେକ ଘୋଡ଼ାରେ ଦୁଇ ଜଣ ଲେଖାଏଁ ଚାକର ନିଯୁକ୍ତ ଥାନ୍ତି, ଜଣେ ଘାସୀ, ଅନ୍ୟ ଜଣେ ସାମଲ । ଆରୋହୀମାନେ ମଧ୍ୟ ଉତ୍କୃଷ୍ଟ ମହାର୍ଘ ବେଶଭୂଷାରେ ବିଭୂଷିତ । ବଡ଼ ବଡ଼ ଖାଁ ସାହେବମାନେ ଯୁଦ୍ଧଯାତ୍ରା ସମୟରେ ମଧ୍ୟ ଦାଢ଼ିରେ ଅତର ବିନ୍ଦୁ ସଂଲଗ୍ନ କରିବାକୁ ବିସ୍ମୃତ ହୁଅନ୍ତି ନାହିଁ । ଖାଁ ସାହେବମାନେ ଯୁଦ୍ଧରେ ନିଯୁକ୍ତ ଥିବା ସମୟରେ ବବୁର୍ଚ୍ଚି ପଲଉ, କାଲିଆ, କବାବ୍ ରାନ୍ଧିବାରେ ବ୍ୟସ୍ତ ଥାଏ । ବର୍ଗି ପାଇକମାନେ ଯୁଦ୍ଧ ସମାପ୍ତ ହେଲେ କିମ୍ବା ଘୋର ଯୁଦ୍ଧ ସମୟରେ ମୁଠାଏ ଶୁଷ୍କ ବୁଟ ଚର୍ବଣ କରିଦେଲେ ଆହାର କାର୍ଯ୍ୟ ସମାପ୍ତ ହୁଏ । ଏହି ସମସ୍ତ କାରଣରୁ ବର୍ଗି ଅଧିକାଂଶ ସ୍ଥଳରେ ବିଜୟୀ ।

ସେନାପତି ମୀରଜାଫରଖାଁ ଗୋଲନ୍ଦାଜ ଏବଂ ଅଶ୍ୱାରୋହୀମାନଙ୍କ ସହିତ ଅଗଡ଼ ନାମକ ସ୍ଥାନରେ ଉପସ୍ଥିତ । ନବାବ ସାହେବ ଅଗ୍ରସର ହୋଇ ନାହାନ୍ତି, ରାଜଘାଟ ସ୍କନ୍ଧାବାରରେ ଅବସ୍ଥାନ କରିଅଛନ୍ତି । ଫୁଲଓଆର କୂଳଠାରୁ ସୁବର୍ଣ୍ଣରେଖା ନଦୀକୂଳ ପର୍ଯ୍ୟନ୍ତ ତୁର୍କ ସୈନ୍ୟମାନେ ଆପଣା ଆପଣା ସେନାପତି ଅଧୀନରେ ସ୍ଥାନେ ସ୍ଥାନେ ଖଟି କରି ରହିଅଛନ୍ତି । ନବାବ ଏବଂ ତତ୍ପକ୍ଷ ସେନାପତିମାନଙ୍କର ଧ୍ରୁବ ବିଶ୍ୱାସ, ଶତ୍ରୁ ସମ୍ମୁଖରେ । ସେଥିପାଇଁ ଅଗ୍ରବର୍ତ୍ତୀ ସୈନ୍ୟ ସମରସଜ୍ଜାରେ ପ୍ରସ୍ତୁତ ଥିଲେ । ଉଭୟ ପାର୍ଶ୍ୱ କିମ୍ବା ପଶ୍ଚାଦ୍ଭାଗରେ ଶତ୍ରୁର ଚିହ୍ନମାତ୍ର ନାହିଁ, ସେଥିରେ ନିଶ୍ଚିନ୍ତ ।

ବର୍ଗି ମନସବଦାର ଲଛମନ ଜୀ ଦୁଇ ହଜାର ମାତ୍ର ବର୍ଗିପାଇକ ଘେନି ଅଗଡ଼ଠାରେ ସେନାପତି ମୀରଜାଫର ସହିତ ଯୁଦ୍ଧ ଆରମ୍ଭ କଲେ । ନବାବ ପକ୍ଷମାନେ ଦୂରବର୍ତ୍ତୀ ସ୍ଥାନରେ ରହି କେବଳ ତୋପଦ୍ୱାରା ଯୁଦ୍ଧ ଚଳାଉଥାନ୍ତି । ଆଗ୍ନେୟ ଅସ୍ତ୍ରରେ ବର୍ଗିଠାରୁ ତୁର୍କମାନେ ନିପୁଣ । ସେନାପତି ମୀରଜାଫର ଏପରି ଉତ୍ସାହ ଏବଂ ପ୍ରବଳ ବେଗରେ ତୋପ ଚଳାଇଲେ ଯେ ବର୍ଗି ସହ୍ୟ କରିବାକୁ ଅସମର୍ଥ ହୋଇ କ୍ରମଶଃ ପଛଘୁଞ୍ଚା ଦେଉଥିଲେ; ଏହିପରି ପଛଘୁଞ୍ଚା ଦେଇ ପ୍ରାୟ ଦୁଇ କ୍ରୋଶ ଦୂରବର୍ତ୍ତୀ ବାଙ୍ଗରିଆ ପର୍ଯ୍ୟନ୍ତ ହଟିଗଲେ । ଆଶ୍ଚର୍ଯ୍ୟର ବିଷୟ, ପ୍ରହରବ୍ୟାପୀ ଯୁଦ୍ଧରେ କାହାର ପକ୍ଷରୁ କୌଣସି ପ୍ରକାର ବିଶେଷ କିଛି ଅନିଷ୍ଟ ଘଟିଲା ନାହିଁ । ଯୁଦ୍ଧପ୍ରଣାଳୀ ଦୃଷ୍ଟିରେ ପ୍ରକାଶିତ ହେଲା, ପ୍ରକୃତ ଯୁଦ୍ଧ କରିବା ବର୍ଗିଙ୍କର ଅଭିପ୍ରାୟ ନ ଥିଲା, ତୁର୍କ ସେନାପତିଙ୍କୁ ଅନ୍ୟମନସ୍କ କରିବା ଏବଂ ନବାବଙ୍କ ନିକଟରୁ ଦୂରବର୍ତ୍ତୀ ସ୍ଥାନକୁ ଆକର୍ଷଣ କରିନେବା ତାଙ୍କର ଉଦ୍ଦେଶ୍ୟ । ଠିକ୍ ଏହି ସମୟରେ ଦେଖାଗଲା, ସ୍ୱୟଂ ଭାସ୍କର ପଣ୍ଡିତ ଦଶ ସହସ୍ର ଅଶ୍ୱାରୋହୀ ସୈନ୍ୟ ସହିତ ଅତର୍କିତ ଭାବରେ ତୁର୍କ ସୈନ୍ୟ ଉପରେ ପତିତ ହୋଇ ସୈନ୍ୟଶୃଙ୍ଖଳା ଛିନ୍ନ ଭିନ୍ନ କରିଦେଲେ । ତୁର୍କ ସୈନ୍ୟ ବହୁଗୁଣରେ ଅଧିକ ଥିଲେ ମଧ୍ୟ ପରସ୍ପର ସାହାଯ୍ୟ କରିବାକୁ ଅବକାଶ ପାଇଲେ ନାହିଁ । ତୁର୍କ ସୈନଶୃଙ୍ଖଳା ମଧ୍ୟରେ ଏକ ଏକ ସ୍ଥାନରେ ଅଧିକ ପରିମାଣରେ ବର୍ଗି ପଡ଼ି ଛିନ୍ନ ଭିନ୍ନ କରିଦେଲେ । ସେନାପତିମାନଙ୍କର ସମବେତ ପରାମର୍ଶ କରିବାର ସୁଯୋଗ ରହିତ ହୋଇଗଲା । ନବାବଙ୍କ ଆଦେଶ ସେନାପତିମାନଙ୍କଠାରେ ପ୍ରବେଶ ହେବାର ଉପାୟ

ରହିଲା ନାହିଁ । ଏକ ସେନାପତି ଅନ୍ୟ ସେନାପତିକୁ ସାହାଯ୍ୟ କରିବାର କିମ୍ବା ଅନ୍ୟଠାରୁ ସାହାଯ୍ୟ ପାଇବାର ଆଶା ରହିତ ହେଲା । ବର୍ଗି ଦୁଇତିନି ଦଳରେ ବିଭକ୍ତ ହୋଇ ତୁର୍କ ସୈନ୍ୟଶୃଙ୍ଖଳା ଛିନ୍ନ ଭିନ୍ନ କରୁଅଛନ୍ତି । ସେନାପତିମାନେ ଦେଖିଲେ, ଅଗ୍ରଭାଗରେ ବର୍ଗି, ପଶ୍ଚାଦ୍ଭାଗରେ ବର୍ଗି । ସ୍ତମ୍ଭିତ ଭାବରେ ଆପଣା ସ୍ଥାନରେ ରହି ଆତ୍ମରକ୍ଷା କରୁଥାନ୍ତି । ଅଧିକାଂଶ ସେନାପତିଙ୍କ ସୈନ୍ୟମାନେ ଅନାୟତ୍ତଭାବରେ ଛିନ୍ନ ଭିନ୍ନ ହୋଇ ବର୍ଗିଦ୍ୱାରା ହତ ହେଲେ । ଭାସ୍କର ପଣ୍ଡିତ ଯେପରି ପ୍ରବଳ ବେଗରେ ରାଜଘାଟ ଦିଗକୁ ଧାବିତ ହୋଇଥିଲେ, ସେଥିରେ ନବାବଙ୍କର ବଧ ବା ବନ୍ଧନ ନିଶ୍ଚିତ ଥିଲା । ରାୟବଣିଆ ଦୁର୍ଗର ଖଣ୍ଡାଏତ ଏବଂ ସୋରୋ ଗ୍ରାମରୁ ସମାଗତ ତୁର୍କ ଏବଂ ଖଣ୍ଡାଏତ ପାଇକଙ୍କ ହେତୁରୁ ନବାବ ସାହେବ ଏ ଯାତ୍ରା ରକ୍ଷା ପାଇଗଲେ । ଉଲ୍ଲିଖିତ ପାଇକମାନେ ଘଟଣା ସମ୍ବନ୍ଧରେ ଅଭିଜ୍ଞ ଏବଂ ଅରଣ୍ୟ ଯୁଦ୍ଧରେ ଅଭ୍ୟସ୍ତ । ଏହି ପାଇକମାନେ ବନ୍ୟ ସଂକୀର୍ଣ୍ଣ ମାର୍ଗରେ ସ୍ଥାନେ ସ୍ଥାନେ ଅରଣ୍ୟ ମଧ୍ୟରେ ଗଳିଯାଇ ମରହଟ୍ଟଙ୍କ ପଶ୍ଚାତ୍ ଏବଂ ପାର୍ଶ୍ୱଦେଶ ଆକ୍ରମଣ କଲେ । ଏ ପ୍ରକାର ଅସମ୍ଭାବିତ-ରୂପେ ଆକ୍ରାନ୍ତ ହୋଇ ବର୍ଗି କିଞ୍ଚିତ୍ ବ୍ୟସ୍ତ ହୋଇ ପଡ଼ିଲେ । ଅତଃପର ପ୍ରବଳବେଗରେ ସମ୍ମୁଖକୁ ଧାବିତ ହୋଇ ପାରିଲେ ନାହିଁ । ଏହି ସମୟରେ ମନସବଦାର ସମସେର ଖାଁ ସାହସପୂର୍ବକ ବର୍ଗି ସମ୍ମୁଖଭାଗରେ ଦଣ୍ଡାୟମାନ । ପଶ୍ଚାତ୍, ପାର୍ଶ୍ୱ, ସମ୍ମୁଖ ତିନି ଦିଗରୁ ଆକ୍ରାନ୍ତ ବର୍ଗି ଆକ୍ରମଣ ଛାଡ଼ି ଆତ୍ମରକ୍ଷାରେ ବ୍ୟସ୍ତ । ପଶ୍ଚାଦ୍ଭାଗରେ ଶତ୍ରୁ ପଳାୟନର ଉପାୟ ନାହିଁ । ଅରଣ୍ୟମୟ ସ୍ଥାନ, ପଳାୟନ ପକ୍ଷରେ ମାର୍ଗମାତ୍ର ଅବଲମ୍ବନ । ଭାସ୍କର ପଣ୍ଡିତ ଦେଖିଲେ, ଆତ୍ମପକ୍ଷ କ୍ଷୟର କ୍ରମଶଃ ବୃଦ୍ଧି ଶତ୍ରୁ ପକ୍ଷ ଅକ୍ଷୟର କାରଣ; ପାଇକମାନେ ବୃକ୍ଷ ଉହାଡ଼ରେ ବୁଦା ମୂଳରେ ଲତାବିତାନରେ ପ୍ରଚ୍ଛନ୍ନଭାବରେ ଅସ୍ତ୍ରଚାଳନା କରୁଅଛନ୍ତି । କେହି ଅଶ୍ୱ ଉପରୁ କେହି ସପୋଟକ ବର୍ଗି ପାଇକ ଭୂତଳଶାୟୀ ହେଉଅଛନ୍ତି, ଅଳ୍ପସଂଖ୍ୟକ ପାଇକଦ୍ୱାରା ଅଳ୍ପ ସମୟ ମଧ୍ୟରେ ବହୁସଂଖ୍ୟକ ବର୍ଗି ଭୂପତିତ ହେଲେଣି । ଏହି ସମୟରେ ତୁର୍କ ପଦାତିକ ସିପାହୀମାନେ ବର୍ଗିକୁ ଆକ୍ରମଣ କରିଥିଲେ ସେମାନଙ୍କ ବିନାଶ ଅନିବାର୍ଯ୍ୟ ହୋଇଥାନ୍ତା । ମାତ୍ର ବର୍ଗିର ଦୁର୍ଦ୍ଦଶା ନବାବ ସୈନ୍ୟ ମଧ୍ୟରେ ପ୍ରଚାରିତ ହୋଇ ପାରିଲା ନାହିଁ, ସେମାନେ ଭୟବିହ୍ୱଳ ହୋଇ ବହୁଦୂର ପର୍ଯ୍ୟନ୍ତ ବ୍ୟାପ୍ତ ହୋଇ ପଡ଼ିଥିଲେ । ପ୍ରତ୍ୟୁତ୍ପନ୍ନମତି ଭାସ୍କର ଦେଖିଲେ, ଯୁଦ୍ଧପ୍ରଣାଳୀ ପରିବର୍ତ୍ତନ ନ କଲେ ସମୂଳେ ବିନାଶର ସମ୍ଭାବନା । ଅଶ୍ୱ ପରିତ୍ୟାଗ ପୂର୍ବକ ଢାଲ ତରବାରି ଧରି ବନ ମଧ୍ୟରେ ଶତ୍ରୁ ସହିତ ଯୁଦ୍ଧ କରିବାକୁ ସଙ୍କେତ ପ୍ରଚାର କରିବାରୁ ନିମେଷ ମଧ୍ୟରେ ପଞ୍ଚ ସହସ୍ର ପାଇକ ଅଶ୍ୱ ପରିତ୍ୟାଗ ପୂର୍ବକ ଶତ୍ରୁ ସହିତ ଯୁଦ୍ଧରେ ଲିପ୍ତ ହେଲେ । ବୃକ୍ଷମୂଳ, ଗୁଳ୍ମପୂର୍ଣ୍ଣ ସ୍ଥାନ, ଲତାବିତାନ ସର୍ବତ୍ର ଘୋର ଯୁଦ୍ଧ ଲାଗିଅଛି, ତୁର୍କମାନଙ୍କ ବିଶାଳ ଲମ୍ବମାନ ଦାଢ଼ିରେ କଣ୍ଟକଶାଖା ଜଡ଼ିତ ହୋଇ ଗୁଚ୍ଛ ଗୁଚ୍ଛ କେଶ ଉତ୍ପାଟିତ ହେଉଅଛି, ତତ୍ପ୍ରତି ଦୃଷ୍ଟି ନାହିଁ, ଯୁଦ୍ଧରେ ଉନ୍ମତ୍ତ, 'ଆଲ୍ଲା ହୋ ଆକ୍‌ବର' 'ବୋମ୍ ବୋମ୍ ମହାଦେଓ' 'ଜୟ ଗଡ଼ଚଣ୍ଡୀ' ଚିତ୍କାର ଶବ୍ଦ ଓ ଜୀବନାନ୍ତକାଳୀନ ଆର୍ତ୍ତନାଦରେ ଅରଣ୍ୟ ଭୂମି ପରିପୂର୍ଣ୍ଣ ହେଲା, ବୃକ୍ଷଶାଖା ଲତା ଜାଲ ନରରକ୍ତରେ ରଞ୍ଜିତ ହୋଇ ପ୍ରସ୍ଫୁଟିତ ପଳାଶବନ ଆକାର ଧାରଣ କଲା, ଶବରାଶି ଓ ଛିନ୍ନହସ୍ତପଦ ମୁମୂର୍ଷୁ ଲୋକରେ ଅରଣ୍ୟ ପରିପୂର୍ଣ୍ଣ । ପ୍ରହରବ୍ୟାପୀ ଯୁଦ୍ଧ ଉତ୍ତାରେ ରାୟବଣିଆ ପାଇକଦଳ ନିସ୍ତେଜ ହୋଇ ପଡ଼ିଲେ । ମରହଟ୍ଟା ପାଇକଦଳ ସଂଖ୍ୟାରେ ଅନେକ ଗୁଣରେ ଅଧିକ । ପଦଭ୍ରଷ୍ଟ ବର୍ଗିମାନେ ଅରଣ୍ୟ ମଧ୍ୟରେ ପ୍ରବେଶ କରି ଯୁଦ୍ଧରେ ନିଯୁକ୍ତ, ପଳାୟିତ ପାଇକ-ମାନଙ୍କୁ ଅଶ୍ୱାରୋହୀ ବର୍ଗିମାନେ ବଧ କରୁଥାନ୍ତି । ବର୍ଗି ସମ୍ପୂର୍ଣ୍ଣରୂପେ ବିଜୟ ଲାଭ କଲେ ମଧ୍ୟ ଭାସ୍କର ପଣ୍ଡିତ ଆପଣାକୁ ପରାଜିତ ବୋଲି ଜ୍ଞାନ କଲେ । ତାଙ୍କ ପକ୍ଷର ପ୍ରାୟ ପଞ୍ଚ ସହସ୍ର ଅଶ୍ୱାରୋହୀ ମୃତ୍ୟୁମୁଖରେ

ପତିତ ହୋଇଅଛନ୍ତି । ଈଦୃଶ ଅପଚୟ ତାଙ୍କ ପକ୍ଷରେ କସିନ୍ କାଳେ ଘଟନା ହୋଇ ନାହିଁ । ରାୟବଣିଆ ଖଣ୍ଡାୟତ ପାଇକମାନେ ଏହି ଅପଚୟର କାରଣ ବୋଲି ତାଙ୍କ ହୃଦୟରେ ଦୃଢ଼ ବିଶ୍ୱାସ ଜାତ ହେଲା । ସେ ପ୍ରତିହିଂସାସାଧନ ନିମନ୍ତେ ମନ ମଧ୍ୟରେ ପ୍ରତିଜ୍ଞା କଲେ ।

ଭାସ୍କର ପଣ୍ଡିତ ଏହି ସମୟରେ ନବାବ ସୈନ୍ୟ-ଶ୍ରେଣୀର ଅନୁଧାବନ କରିଥିଲେ ବିଜୟଲାଭର ସମ୍ଭାବନା ଥିଲା, ମାତ୍ର ସେ ଆପଣାକୁ ପରାଜିତ ଜ୍ଞାନକରି ଯୁଦ୍ଧ-କ୍ଷେତ୍ର ପରିତ୍ୟାଗ ପୂର୍ବକ ପଳାୟନ କଲେ । ହତାବଶିଷ୍ଟ ଯୁଦ୍ଧକ୍ଳାନ୍ତ କ୍ଷୁଧାର୍ତ୍ତ ସୈନିକମାନଙ୍କୁ ପୁନର୍ବାର ଶୃଙ୍ଖଳାବଦ୍ଧ କରିବାକୁ ସାର୍ଦ୍ଧ ପ୍ରହର ସମୟ ଅତିବାହିତ ହୋଇଗଲା । ଯୁଦ୍ଧକ୍ଷେତ୍ର ପରିତ୍ୟାଗ ସମୟରେ ପ୍ରାୟ ସନ୍ଧ୍ୟା ଅନ୍ଧକାର ଉପସ୍ଥିତ ।

ପ୍ରାଣାଧିକ ପ୍ରିୟତମ ସିରାଜଉଦ୍ଦୌଲା ସଙ୍ଗରେ ଥିବାରୁ ନବାବ ସାହେବ ଏହିପରି ଭୟବିହ୍ୱଳ ହୋଇ ପଡ଼ିଥିଲେ ଯେ, ରାଜଘାଟ ସ୍କନ୍ଧାବାର ପରିତ୍ୟାଗ କରି ଦିବାନିଶି ଯାତ୍ରାପୂର୍ବକ ଦମୋଦର ନଦୀ କୂଳବର୍ତ୍ତୀ ତେବରା ନାମକ ସ୍ଥାନରେ ନିଶ୍ୱାସ ତ୍ୟାଗ କରିବାକୁ ଅବସର ପ୍ରାପ୍ତ ହେଲେ । ପଶ୍ଚାଦ୍‌ବର୍ତ୍ତୀ ଭଗ୍ନ ଛିନ୍ନ ବିଚ୍ଛିନ୍ନ ସୈନିକମାନଙ୍କୁ ସଂଗ୍ରହ କରି ସେନାପତି ମୀରଜାଫର ଏବଂ ସେନାପତି ମୁସ୍ତଫା ଚୁରି ଦିବସ ଉତ୍ତାରେ ନବାବ ସହିତ ମିଳିତ ହେଲେ ।

— —

-୧୪-

## ରାୟବଣିଆ ରଣ

ଦୂତର ଅସମ୍ମାନ, ଉପଯାଚିତ ମୈତ୍ରୀ ପ୍ରତ୍ୟାଖ୍ୟାନ ରାୟବଣିଆର ସାମାନ୍ୟ ଜଣେ ଖଣ୍ଡାଏତର ଈଦୃଶ ଆସ୍ପର୍ଦ୍ଧା ପ୍ରବଳପ୍ରତାପ ବେରାରପତିଙ୍କ ପକ୍ଷରେ ଅସହନୀୟ । ଦ୍ୱିତୀୟତଃ ବଙ୍ଗଦେଶମାର୍ଗ ନିଷ୍କଣ୍ଟକ କରିବା ସର୍ବାଗ୍ରେ କରଣୀୟ । ତୃତୀୟତଃ ଗତ ଯୁଦ୍ଧ ବିଜୟର ବିଘ୍ନକାରୀ ଅବଶ୍ୟ ଶାସନୀୟ । ଉଦ୍ଦେଶ୍ୟ ସାଧନ ନିମିତ୍ତ ବେରାରପତିଙ୍କର ଦାକ୍ଷିଣାତ୍ୟ ଫୌଜଦାର ନୌଲ୍ଲା ରାଓ ଦଶ ସହସ୍ର ଅଶ୍ୱାରୋହୀ ପାଇକ ସହିତ ବାଲେଶ୍ୱର ବନ୍ଦର ଠାରେ ଭାସ୍କର ପଣ୍ଡିତଙ୍କ ପଞ୍ଚବିଂଶତି ସହସ୍ର ଅଶ୍ୱାରୋହୀ ସହିତ ମିଳିତ ହୋଇଅଛନ୍ତି । ଚରଦ୍ୱାରା ଏହି ଅଶୁଭ ସମ୍ବାଦ ପ୍ରାପ୍ତ ହୋଇ ରାୟବଣିଆ ଦୁର୍ଗେଶ୍ୱର ଚିନ୍ତିତ । ପଞ୍ଚତ୍ରିଂଶତ୍ ସହସ୍ର ଶିକ୍ଷିତ ଅଶ୍ୱାରୋହୀଙ୍କ ଆକ୍ରମଣ ନିବାରଣ ତାହାଙ୍କର କ୍ଷମତାତୀତ । ନବାବଙ୍କଠାରୁ ସାହାଯ୍ୟପ୍ରାପ୍ତି ଆଶା ରହିତ । ନବାବ ସାହେବ ନୂତନ ବଳ ସଂଗ୍ରହ ନ କରି ଅଗ୍ରସର ହେବାକୁ ଅସମର୍ଥ । ଆଶୁ ଯୁଦ୍ଧର ସମ୍ଭାବନା ନ ଥିବାରୁ ମାନଧାତାଙ୍କର ସମସ୍ତ ଉପଯୁକ୍ତ ଦଳେଇ ଦଳବେହେରା ନାୟକ ସହିତ ପ୍ରାୟ ସହସ୍ର ପାଇକ ନବାବ ସାହେବଙ୍କ ସ୍କନ୍ଧାବାରରେ ଉପସ୍ଥିତ ରହିଅଛନ୍ତି । ସାହାଯ୍ୟପ୍ରାପ୍ତି ଦୂରେ ଥାଉ, ନବାବଙ୍କ ନିକଟକୁ ଉପସ୍ଥିତ ଦୁର୍ଯୋଗର ସମ୍ବାଦ ପ୍ରେରଣର ମଧ୍ୟ ଉପାୟ ନାହିଁ । ସହିଯା ମରହଟ୍ଟାମାନେ ସ୍ଥାନେ ସ୍ଥାନେ ଘାଟି କରି ସମ୍ବାଦ ଚଳାଚଳର ରାହା ବନ୍ଦ କରି ଦେଇଅଛନ୍ତି । ତଥାପି ମାନଧାତା ନିରୁତ୍ସାହ ହେଲେ ନାହିଁ । ପାଞ୍ଚ ସହସ୍ର ମାତ୍ର ଦୁର୍ଗପ୍ରହରୀ ପାଇକଙ୍କ ସହାୟତାରେ ଦୁର୍ଗରକ୍ଷା କାରଣ କୃତନିଶ୍ଚୟ ହେଲେ । ଅଷ୍ଟାହ ଅବରୋଧ ଉତ୍ତାରେ 'ବୋମ୍ ବୋମ୍ ମହାଦେଓ' ବିକଟ ଚିତ୍କାର କରି ବର୍ଗି ଉପସ୍ଥିତ ହେଲେ । ପ୍ରାତଃକାଳରେ ଯୁଦ୍ଧାରମ୍ଭ ହେଲା, ଚତୁର୍ଦ୍ଦିଗରୁ ଦୁର୍ଗ ଆକ୍ରାନ୍ତ । ମାତ୍ର ସିଂହଦ୍ୱାରର ଆକ୍ରମଣ ପ୍ରବଳତର । ବୃହତ୍ ବୃହତ୍ ଅଗ୍ନିମୟ ଲୌହଗୋଲକ ସିଂହଦ୍ୱାରର ବିଶାଳ କପାଟର ଲୌହ ଫଳକରେ କରକାଘାତ ତୁଲ୍ୟ ବାଜି ଛିନ୍ନ ଭିନ୍ନ ହେଉଅଛି । ଭୟଙ୍କର ଶବ୍ଦ କରି କପାଟ ଈଷତ୍ ମାତ୍ର କମ୍ପିତ ହେଉଅଛି । ଅସଂଖ୍ୟ ଗୋଲକ ପାଷାଣପ୍ରାଚୀରର ପାଦଦେଶସ୍ଥ ମୃତ୍-

ପ୍ରାଚୀରରେ ପ୍ରୋତ୍‌ଥିତ ହୋଇ ଯାଉଅଛୁ । ତିନ ଦିବସବ୍ୟାପୀ ଯୁଦ୍ଧରେ ଦୁର୍ଗର କୌଣସି ପ୍ରକାର ଅନିଷ୍ଟ ଘଟିଲା ନାହିଁ । ଖଣ୍ଡାଏତମାନେ ପରିଖାକୂଳ-ବର୍ତ୍ତୀ ବାଉଁଶ ମୂଳରୁ ପାଦଦେଶର ଅନ୍ତରାଳରେ ଶରୀର ଆଚ୍ଛନ୍ନ କରି ଅସ୍ତ୍ରଚାଳନା କରିବାରୁ ସେମାନଙ୍କ ପକ୍ଷରେ ଅତିଅଳ୍ପ ଘଟିଲା ନାହିଁ; ବର୍ଗି ବର୍ଗ ଭୂପତିତ ହେଉଅଛନ୍ତି । ବର୍ଗି ସିଂହଦ୍ୱାରଠାରେ ଏପରି ଉତ୍ସାହ ଏପରି ସାହସ ସହିତ ଆକ୍ରମଣ କରୁଅଛନ୍ତି ଯେ, ଅର୍ଦ୍ଧକ୍ରୋଶବ୍ୟାପୀ ଭୂମି ଶବରାଶିରେ ପରିପୂର୍ଣ୍ଣ ହୋଇଗଲାଣି, ଭ୍ରୂକ୍ଷେପ ନାସ୍ତି, ଆକ୍ରମଣର ତ୍ରୁଟି ନାହିଁ । ଧାରାବାହିକରୂପେ ତିନ ଦିବସ ପର୍ଯ୍ୟନ୍ତ ସଂଗ୍ରାମର ବିରାମ ନାହିଁ । ଚତୁର୍ଥ ଦିବସରେ ମାନଧାତା ଦେଖିଲେ, ଏତେ ବିନାଶରେ ମଧ୍ୟ ପତଙ୍ଗ ପଲ ପରି ବର୍ଗି ବେଷ୍ଟିତ ହୋଇ ରହିଅଛନ୍ତି । ଆତ୍ମପକ୍ଷର ଅଳ୍ପମାତ୍ର କ୍ଷତିକୁ ସେ ବିଶେଷ କ୍ଷତି ବୋଲି ଜ୍ଞାନ କଲେ । ତଥାପି ସେ ଯେ ମାସବ୍ୟାପୀ କାଳ ଆତ୍ମରକ୍ଷା କରିବାକୁ ସମର୍ଥ ହେବେ, ସେ ବିଷୟରେ ସନ୍ଦେହ ନ ଥିଲା । ମାତ୍ର ଏହି ସମୟରେ ଗୋଟିଏ ବିଷମ ଦୁର୍ଯୋଗ ଘଟିଲା । ସିଂହଦ୍ୱାର ଉପରେ ଗଡ଼ଚଣ୍ଡୀଙ୍କର ଯେଉଁ ବହୁଳବର୍ଣ୍ଣ ଶୁଭ୍ରପତାକା ଉଡ଼ୁଥାଏ, ଶତ୍ରୁ ନିକ୍ଷିପ୍ତ ଗୋଳାଗୋଳା ଆଘାତରେ ଦଣ୍ଡ ଭଗ୍ନ ହୋଇ ପତାକା ତଳେ ପଡ଼ିଗଲା । ଏହା ଗୋଟିଏ ଅଶୁଭ ଲକ୍ଷଣ ଅଟେ । ପତାକା ପତିତ ହେବାର ଦେଖି ମାନଧାତାଙ୍କ ମୁଖ ବିବର୍ଣ୍ଣ ହୋଇଗଲା, ପାଇକମାନେ ନିରୁତ୍ସାହ ହୋଇ ପଡ଼ିଲେ । ବର୍ଣ୍ଣିହଂସ ପୁରରେ ଭ୍ରାନ୍ତ ସମ୍ବାଦ ପ୍ରଚାରିତ ହେଲା, 'ମାନଧାତା ସ୍ୱୟଂ ପତିତ ହେଲେ ।' ହାହାକାର ଓ କ୍ରନ୍ଦନଧ୍ୱନିରେ ରାଣୀହଂସପୁର ପରିପୂର୍ଣ୍ଣ ହେଲା । ଠିକ୍ ଏହି ମୁହୂର୍ତ୍ତରେ ଅନ୍ୟ ଏକ ଭୟଙ୍କର ଦୁର୍ଯୋଗ ଉପସ୍ଥିତ । ଦୁର୍ଗର ଈଶାନ୍ୟ କୋଣ ମହେଖା ବାହାରେ ବେତବନରେ ପରିପୂର୍ଣ୍ଣ । ସେ ସ୍ଥାନରୁ ଶତ୍ରୁଦ୍ୱାରା ଆକ୍ରାନ୍ତ ହେବାର ସମ୍ଭାବନା ନ ଥିଲା, ମଧ୍ୟ ହୋଇନାହିଁ । ଏଥିକି ସେ ସ୍ଥାନ ରକ୍ଷା ନିମନ୍ତେ ପାଇକମାନେ ଶିଥିଳଯତ୍ନ ଥିଲେ । ପରିଖାଠାରୁ ଦୁର୍ଗ ପ୍ରାଚୀର ସହିତ ଅଭ୍ୟନ୍ତର କେତେ ଦୂର ପର୍ଯ୍ୟନ୍ତ ପାଞ୍ଚ ହାତ ଗଭୀର ମୃତ୍ତିକା ଭୟଙ୍କର ଶବ୍ଦରେ ଉଡ଼ିଯାଇ ଗୋଟିଏ ପ୍ରଶସ୍ତ ମାର୍ଗ ହୋଇଗଲା । ଶତ୍ରୁସୁଡ଼ଙ୍ଗ ଖୋଳି ତହିଁରେ ବାରୁଦ ପରିପୂର୍ଣ୍ଣ କରି ଅଗ୍ନି ସଂଯୋଗ କରିଥିଲେ । ମରହଟ୍ଟା ସଙ୍ଗେ ସଙ୍ଗେ ଜଳସ୍ରୋତ ପରି 'ବୋମ୍ ବୋମ୍ ମହାଦେଓ' ଚିତ୍କାର କରି ଦୁର୍ଗ ମଧ୍ୟରେ ପ୍ରବେଶ କଲେ । ମହାଦେବୀ ଅନ୍ଦନ ତ୍ୟାଗ କରିଅଛନ୍ତି, ବୀର ନାରୀ ପରି ଶତ୍ରୁ ଆଗମନ ବେଳେ ଅନାଇ ଦେଖିଲେ । ମୁହୂର୍ତ୍ତ ମଧ୍ୟରେ ତାଙ୍କ ମନରେ ଉଦୟ ହେଲା, ଆଉ କି ସକାଶେ ଜୀବନ ? ଜୀବନେଶ୍ୱର ଯାଇଅଛନ୍ତି, ଅବଶେଷରେ କି ଧର୍ମ ନଷ୍ଟ ହେବ ? ଗଡ଼ଚଣ୍ଡୀ ଦେବୀଙ୍କୁ ପ୍ରଣିପାତପୂର୍ବକ ଦେବୀଙ୍କ ଧଣ୍ଡାମାଳ ଗଳାରେ ଲମ୍ବାଇ ବେଣ୍ଟ ବେଖାରେ ପ୍ରାଣତ୍ୟାଗ କଲେ । ଅନେକ ଅନେକ ପରିଜନ ମଧ୍ୟ ତାଙ୍କର ଅନୁଗାମିନୀ ହେଲେ ।

ଦୁର୍ଗ ଅଭ୍ୟନ୍ତରର ଦୁର୍ଯୋଗ ମାନଧାତାଙ୍କଠାରେ ଉପସ୍ଥିତ ହେଲା । ଦଳ ବେହେରା ହସ୍ତରେ ସିଂହଦ୍ୱାର ରକ୍ଷାର ଭାର ଦେଇ ଦୁର୍ଗ ମଧ୍ୟରେ ଉପସ୍ଥିତ ହେଲେ । ସଖୀ ମହାଦେବୀଙ୍କ ଚରମ ଗତି ବିଷୟ କର୍ଣ୍ଣଗୋଚର ହେଲା । ଢାଲ ତରବାରୀ ଧରି ମତ୍ତ ମାତଙ୍ଗ ତୁଲ୍ୟ ବର୍ଗି ସମ୍ମୁଖରେ ଉଭା ହେଲେ । ଜୀବନାଶା ତ୍ୟାଗ-ପୂର୍ବକ ଖୀର୍ଷଣଭାବରେ ତରବାରୀ ଘୂରାଉଅଛନ୍ତି । ଅସୀମ ସାହସ ସହିତ ପ୍ରବଳ ବେଗରେ ଅସ୍ତ୍ର ଚାଳନା-କୌଶଳରେ ଶତ ଶତ ବର୍ଗିମସ୍ତକ ଭୂଲୁଣ୍ଠିତ ହେଲା । ଶତ୍ରୁ ଅସ୍ତ୍ରାଘାତ ନିବନ୍ଧନ ସ୍ୱଶରୀରନିଃସୃତ ଶୋଣିତ ଧାରାରେ ରକ୍ତବର୍ଣ୍ଣ ଦିଶୁ ଅଛନ୍ତି । ଅବିରଳ ରକ୍ତପାତ ଯୋଗୁଁ କ୍ରମଶଃ ଶରୀର ଅବସନ୍ନ ହୋଇ ଆସିଲା । ବାହ୍ୟ ଜ୍ଞାନ ନାହିଁ, 'ମା ଚଣ୍ଡୀ' 'ମା ଚଣ୍ଡୀ' ଚିତ୍କାର କରି ଅବଶେଷରେ ଶବରାଶି ଉପରେ ପଡ଼ିଗଲେ । ବର୍ଗି ହାବିଲ୍‌ଦାର ଡାକିଦେଲା, "ସାବଧାନ ! ଶତ୍ରୁକୁ ହତ୍ୟା

କର ନାହିଁ, ସେନାପତିଙ୍କ ଆଜ୍ଞା—ତାହାର ଜୀବନରେ ପ୍ରୟୋଜନ ।

— ——

-୨୫-

## ବିଚାର ଏବଂ ପ୍ରାଣଦଣ୍ଡ

ରାୟବଣିଆ ଦୁର୍ଗ ସମ୍ପ୍ରତି ସମ୍ପୂର୍ଣ୍ଣରୂପେ ମହାରାଷ୍ଟ୍ର-କରାୟତ୍ତ । ସମସ୍ତ ସମ୍ପତ୍ତି ଅପହୃତ ହୋଇଅଛି, ଦୁର୍ଗ ମଧ୍ୟରେ ଜୀବିତ ପ୍ରାଣୀ ମାତ୍ରର ଅଭାବ । ଦୁର୍ଗର ଅଭ୍ୟନ୍ତର ଏବଂ ଚତୁର୍ଦ୍ଦିଗ ବହିର୍ଭାଗ ସହସ୍ର ସହସ୍ର ଶବରାଶିରେ ପରିପୂର୍ଣ୍ଣ । ପୂତିଗନ୍ଧ ତଥା ଶ୍ୱାପଦ ପଶୁ-ପକ୍ଷୀମାନଙ୍କ ବିକଟ ଚିତ୍କାରରେ ଭୟଙ୍କର ନରକବତ୍ ପ୍ରତୀୟମାନ ହେଉଅଛି ।

ଶ୍ରୀ ଶ୍ରୀ ଶ୍ରୀ ରାୟ ରାଘବ ରାୟଟସିଂହ ବୈରିଗଞ୍ଜନ ମାନଧାତା ବର୍ତ୍ତମାନ ମରହଟ୍ଟା ଫୌଜ ମଧ୍ୟରେ ବନ୍ଦୀ । ଆହତ ଶଯ୍ୟାଗତ ଥିବାରୁ ଏତାବତ୍କାଳ ତାହାଙ୍କର ବିଚାରକାର୍ଯ୍ୟ ସ୍ଥଗିତ ଥିଲା । ଅଦ୍ୟ ବିଚାରର ଦିନ । ମଧ୍ୟାହ୍ନ ସମୟ, ମହାରାଷ୍ଟ୍ର ସ୍କନ୍ଧାବାର ମଧ୍ୟସ୍ଥଳ ମଣ୍ଡପରେ ବିଚାରକ ଭାସ୍କର ପଣ୍ଡିତ ବିରାଜମାନ । ସମ୍ମୁଖ ଭାଗ ଦୁଇ ପାର୍ଶ୍ୱରେ କସନ୍ତାଜୀ ରାଓ, ଜୟନ୍ତ ରାଓ, ପ୍ରଶାନ୍ତ ଚେଟପକାର, ଗୋପାଳ ଜୀ ପ୍ରଭୃତି ସେନାପତି, ଶିଟକର ବାହଦାର, କାରକୁନ କର୍ମଚାରୀବର୍ଗ ଉପବିଷ୍ଟ । ଆମ୍ଭମାନଙ୍କ ପୂର୍ବପରିଚିତ ଓକିଲ ଶିଓଶଙ୍କର ମାଲଦାର ମଧ୍ୟ ଉପସ୍ଥିତ ଅଛନ୍ତି । ଉନ୍ମୁକ୍ତ କୃପାଣହସ୍ତ ପଞ୍ଚାଶତ୍ ପ୍ରହରୀ ବେଷ୍ଟିତ ବଦ୍ଧହସ୍ତ ରାୟବଣିଆ ଦୁର୍ଗେଶ୍ୱର ମାନଧାତା ବିଚାରସ୍ଥଳକୁ ଆନୀତ ହେଲେ । ସେ ପିଞ୍ଜରାବଦ୍ଧ କ୍ରୋଧୋନ୍ମତ୍ତ ଶାର୍ଦ୍ଦୂଳ ପରି ପ୍ରଖର ଭାବରେ ଥରେ ମାତ୍ର ଭାସ୍କର ପଣ୍ଡିତଙ୍କୁ ଅନାଇ ଦେଇ ନିର୍ଭୀକ ଚିତ୍ତରେ ନମ୍ରମୁଖ ହୋଇ ସ୍ଥିର ଗମ୍ଭୀର ଭାବରେ ବିଚାରକ ସମ୍ମୁଖରେ ଉଭା ହୋଇଅଛନ୍ତି । ମାନଧାତାଙ୍କ ସହିତ ଆଉ ଗୋଟିଏ ବଦ୍ଧହସ୍ତ ବନ୍ଦୀ ମଧ୍ୟ ଆନୀତ ହୋଇଅଛି । ନାମ ରାୟଗୁରୁ ବନମାଳୀ ବାଚସ୍ପତି । ଅସଂଖ୍ୟ ଦର୍ଶକ ନୀରବ ଭାବରେ ଉଭା ହୋଇ ବିଚାର କାର୍ଯ୍ୟ ଦର୍ଶନ କରୁଅଛନ୍ତି । ଦରବାର ନିସ୍ତବ୍ଧ । ରାଜନ୍ୟସ୍ୱ ଅଭିଯୋକ୍ତା ଓକିଲ ଗଡ଼ରେ ରାଓ ବୁଝାଇ ଦେଲେ, "ରାୟବଣିଆ ଗଡ଼ର ଖଣ୍ଡାଏତ ରାଘବ ରାୟଟସିଂହ ! ଶୁଣ, ତୁମ୍ଭେ ରାଜଦ୍ରୋହୀ । ମହାମହିମ ମହାରାଜା ଶ୍ରୀମାନ ବେରାର ଅଧିପତିଙ୍କ ପ୍ରେରିତ ଓକିଲଙ୍କୁ ଅସମ୍ମାନ କରିଅଛ । ବିଧର୍ମୀ ଯବନ ସହିତ ମିଳିତ ହୋଇ ରାଜନ୍ୟସ୍ୱ ସୈନ୍ୟ ବିପକ୍ଷରେ ଅସ୍ତ୍ର ଧାରଣ କରିଅଛ । ତୁମ୍ଭକୃତ ଅପରାଧର ବିଚାର ହେବ । ଏଥିରେ କି ଉତ୍ତର ଅଛି, ଦିଅ ।"

ଦସ୍ୟୁତୁଲ୍ୟ ବନ୍ଦୀ ଏବଂ ଅସମ୍ମାନ ସୂଚକ ଭାଷାରେ ସମ୍ବୋଧନ କରାଯିବାରୁ ମାନଧାତାଙ୍କର କ୍ରୋଧ ଏତେ-ଦୂର ଉଦ୍‌ବେଳିତ ହୋଇ ଉଠିଥିଲା ଯେ, ସେ ଉତ୍ତର ଦେବାକୁ ଅସମର୍ଥ ହେଲେ । ପୂର୍ବବତ୍ ସ୍ଥିର ଅଟଳ ଭାବରେ ଉଭା ହୋଇଅଛନ୍ତି ।

ଓକିଲ ଶିଓଶଙ୍କର ମଲହାର କହିଲେ, "ଦେଖ ମାନଧାତା ! ଆମ୍ଭେ ରାୟବଣିଆଠାରୁ ବାହୁଡ଼ି ଆସି ସେନାପତି ଭାସ୍କର ପଣ୍ଡିତ ମହୋଦୟଙ୍କୁ ବୁଝାଇ ଦେଇଅଛୁ, ତୁମ୍ଭେ ସ୍ୱୟଂ କିଛି ମତ ପ୍ରକାଶ କରି ନାହ, ତୁମ୍ଭର ରାୟଗୁରୁ ଏହି ବନ୍ଦୀ ବ୍ରାହ୍ମଣ ସମସ୍ତ କଥା କହିଅଛି । ବର୍ତ୍ତମାନ ତୁମ୍ଭେ ଶ୍ରୀଯୁତଙ୍କ ଠାରେ କ୍ଷମା ପ୍ରାର୍ଥନା କଲେ ପ୍ରାଣରକ୍ଷା ହୋଇପାରେ ଏହି ବିପ୍ରାଧମ ପ୍ରାଣଦଣ୍ଡର ଯୋଗ୍ୟ ।"

ଓକିଲ ଶିଓଙ୍କର ମାଲହରଙ୍କ ବାକ୍ୟ ଶ୍ରବଣକରି ରାୟଗୁରୁ ବନମାଳୀ ବାଚସ୍ପତି ଭୟରେ ବାତାହତ କଦଳୀ ବୃକ୍ଷ ପରି କମ୍ପିତ ହେଉଥାନ୍ତି । ପ୍ରହରୀମାନେ ତାଙ୍କୁ ଧରି ରଖି ନ ଥିଲେ ବୋଧକରୁଁ ଭୂପତିତ ହୋଇଥାନ୍ତେ ।

ମାନଧାତା ନିଜ ସମ୍ବନ୍ଧରେ ନିଶ୍ଚିନ୍ତ ଥିଲେ, ବୋଧ କରୁଁ କୌଣସି ଉତ୍ତର ଦେଇ ନ ଥାନ୍ତେ; ମାତ୍ର ବପୁଗୁରୁ ବନମାଳୀ ବାଚସ୍ପତିଙ୍କ ଅବସ୍ଥା ଦେଖି ସତେଜରେ କହିଲେ, "ଉତ୍କଳ ! ତୁମ୍ଭେ ଭାସ୍କର ପଣ୍ଡିତଙ୍କୁ ବୁଝାଇ ଦିଅ, ଏହି ବ୍ରାହ୍ମଣ ନିର୍ଦ୍ଦୋଷ । ଆମ୍ଭ ଉପଦେଶ ଅନୁସାରେ ସମସ୍ତ କଥା କହିଅଛନ୍ତି । ତାଙ୍କ କଥିତ ସମସ୍ତ ବାକ୍ୟ ଆମ୍ଭର ଆତ୍ମକଥା ବୋଲି ଜାଣିବ । ନିଶ୍ଚୟ ଜାଣ, ଏହି ନିର୍ଦ୍ଦୋଷ ସତ୍କୁଳଜାତ ବ୍ରାହ୍ମଣର ପ୍ରାଣହାନି ହେଲେ ତାଙ୍କ ଅଭିସମ୍ପାତରେ ସମସ୍ତ ମହାରାଷ୍ଟ୍ର ଧ୍ୱଂସ ହୋଇଯିବେ ।"

ଉତ୍କଳ ଶିଉଶଙ୍କର ମାଲଗାର କହିଲେ, "ଦେଖ ମାନଧାତା ! ବିନୀତ ହୁଅ. ସମର୍ଯ୍ୟାଦାରେ କଥା ବୋଲ, କ୍ଷମା ପ୍ରାର୍ଥନା କର, ଆମ୍ଭେ ତୁମ୍ଭ ପ୍ରାଣରକ୍ଷା ସକାଶେ ଅନୁରୋଧ କରିବୁଁ ।"

ମାନଧାତା ଅବଜ୍ଞା ସହକାରେ କହିଲେ, "କ୍ଷମା ? କ୍ଷମା, କିଏ ବର୍ଗୀରକ ? କାହାଠାରେ କ୍ଷମା ପ୍ରାର୍ଥନା କରିବୁଁ ?"

ଭାସ୍କର ପଣ୍ଡିତ ସକ୍ରୋଧରେ କହିଲେ, "ଦେଖ ଖଣ୍ଡାଏତ ! ତୁ ରାଜଦ୍ରୋହୀ—ତୁ ପ୍ରାଣଦଣ୍ଡର ଯୋଗ୍ୟ । ତୋହର ଯେବେ କିଛି କହିବାର ଥାଏ, ଶୀଘ୍ର ପ୍ରକାଶ କର ।"

ମାନଧାତା କହିଲେ, "ରାଜଦ୍ରୋହୀ ? ରାଜା କିଏ ? ଗଜପତି ଗୌଡେଶ୍ୱର ଚନ୍ଦ୍ରବଂଶ, ରାଜରାଜେଶ୍ୱର, ଉତ୍କଳର ସମସ୍ତ ଦୁର୍ଗପତି, ସମସ୍ତ ଖଣ୍ଡାଏତ ରାଜ-ରାଜେଶ୍ୱର ଗଜପତି ଗୌଡେଶ୍ୱରଙ୍କ ଦତ୍ତ ସମ୍ପତ୍ତିରେ ପ୍ରତିପାଳିତ । ଖଣ୍ଡାଏତମାନେ ରାଜଦ୍ରୋହୀ ନୁହନ୍ତି । ରାଜରାଜେଶ୍ୱରଙ୍କ ସିଂହାସନ ତଳେ ଚିରକାଳ ଅବନତ-ମସ୍ତକ ଥିବେ ।"

ଭାସ୍କର ପଣ୍ଡିତ—"ଗଜପତି ବଂଶ ବର୍ତ୍ତମାନ ମହାମହିମ ବେରାର ଅଧିପତିଙ୍କର ଜଣେ ସାମାନ୍ୟ ପ୍ରଜା ମାତ୍ର । ରଘୁଜୀ ଭୋଁସଲା ଉତ୍କଳଖଣ୍ଡର ଏକମାତ୍ର ଅଧୀଶ୍ୱର । ତୁ ମହାରାଜାଙ୍କ ବିପକ୍ଷରେ ଅସ୍ତ୍ର ଧାରଣ କରିଅଛୁ, ଏହି ବିପ୍ରାଧମ ମହାରାଜାଧିରାଜଙ୍କ ସମ୍ବନ୍ଧରେ ପ୍ରକାଶ୍ୟ ଦରବାରରେ ଅସମ୍ମାନସୂଚକ କଥା କହିଅଛି, ଦୁଇ ଜଣ ପ୍ରାଣଦଣ୍ଡର ଯୋଗ୍ୟ ।"

ମାନଧାତା—"ଶୁଣ ଭାସ୍କର ପଣ୍ଡିତ ! ଭାରତଖଣ୍ଡସ୍ଥ ସମସ୍ତ ନରପତିଙ୍କ ମୁକୁଟମଣି ମହାମହିମ ଗଜପତିଙ୍କ ପୁଣ୍ୟଭୂମି ଛାରଖାର କରି ଦେଲଣି । ଅସଂଖ୍ୟ ଶିଶୁହତ୍ୟା ଅସଂଖ୍ୟ ନାରୀହତ୍ୟା କରିଅଛ, ବର୍ତ୍ତମାନ ଏହି ନିର୍ଦ୍ଦୋଷ ବ୍ରାହ୍ମଣର ରକ୍ତପାତ କଲେ ସର୍ବଶକ୍ତିମାନ୍ ପ୍ରଭୁଙ୍କଠାରୁ ଉଚିତ ଶାସ୍ତି ପ୍ରାପ୍ତ ହେବ ।"

ଭାସ୍କର ପଣ୍ଡିତ ସହ୍ୟ କରିପାରିଲେ ନାହିଁ । ଅତ୍ୟାଚାରୀଠାରେ ତତ୍‌କୃତ ଅତ୍ୟାଚାରର କାହାଣୀ କଥିତ ହେଲେ ତାହାର କ୍ରୋଧ ଜାତ ହେବା ସ୍ୱାଭାବିକ । ତାହା ସହିତ ପୁଣି ପବିତ୍ର ସର୍ବଶକ୍ତିମାନ୍ ପ୍ରଭୁଙ୍କ ନାମ ଉଚ୍ଚାରଣ ନିତାନ୍ତ ଅସହ୍ୟ ।

ଭାସ୍କର ପଣ୍ଡିତ ଗମ୍ଭୀରସ୍ୱରରେ ଆଜ୍ଞା କଲେ—"ଘାତକ ! ଆମ୍ଭ ସାକ୍ଷାତରେ ଏହାର ବଧ ସାଧନ କର ।" ସଭାସ୍ଥ ସମସ୍ତେ ନୀରବ ନିଃଶ୍ୱାସ ପକାଇ ମସ୍ତକ ଅବନତ କଲେ । ମାନଧାତା ଅଟଳ ଭାବରେ ଉଭାହୋଇ ଇଷ୍ଟଦେବ ନାମ ସ୍ମରଣରେ ନିମଗ୍ନ । ଘାତକ ଉପସ୍ଥିତ । ସେହି ମୁହୂର୍ତ୍ତରେ ରାମ୍ପୁବଣିଆ ବୀରବଂଶର ଶେଷ ପୁରୁଷ ସହିତ ନାମ ବିଲୁପ୍ତ ହେଲା ।

ହିନ୍ଦୁ ଦରବାରରେ ବ୍ରାହ୍ମଣ ଅବଧ୍ୟ । ମୁକ୍ତି ଲାଭକରି ବପୁଗୁରୁ ବନମାଳୀ ବାଚସ୍ପତି ପଳାୟନ କଲେ ।

———

## -୧୭-

## ଅନାଥା

ସୁବର୍ଣ୍ଣରେଖା ନଦୀର ଉତ୍ତରକୂଳରେ ମଧୁମଲ-କାନ୍ଥୀ ଗୋଟିଏ ପାଇକ ଗ୍ରାମ । ଏଥିରେ ପ୍ରାୟ ଷାଠିଏ ବାସ୍ତବ୍ୟ ଘର । ସମସ୍ତେ ଏକ ଜାତି ଖଣ୍ଡାଏତ ପାଇକ । ଛିନ୍ନଭିନ୍ନ, ପତିତ, ପତନୋନ୍ମୁଖ, ଦଗ୍ଧ, ଅର୍ଦ୍ଧଦଗ୍ଧ ବଡ଼ ବଡ଼ ଆଠୁ ଘରଗୁଡ଼ିକ ଗତଗୌରବର ପରିଚାୟକ । ଅଧିକାଂଶ ଘର ଶୂନ୍ୟ, କେତେଗୁଡ଼ିଏ ଗୃହରେ ବୃଦ୍ଧା ସ୍ତ୍ରୀ, ଶୀର୍ଣ୍ଣକାୟ ଭଗ୍ନବସ୍ତ୍ର ପୁରୁଷ, ବାଳକ ବାଳିକା ବାସ କରି ରହିଅଛନ୍ତି । ଗ୍ରାମରେ ଜମି ବାସ୍ତବ୍ୟ ବାଡ଼ି । ନଦୀକୂଳିଆ ବନମଡ଼ା ଏଥିକୁ ସବୁ ଜମିଗୁଡ଼ିକ କଳନ୍ଦ ଦୋଫସଲି । ଜମିଗୁଡ଼ିକ ପାଇକଭୁକ୍ତିଆ । ଗ୍ରାମ ମୁଣ୍ଡରେ ପୁଷ୍କରିଣୀ, ଜଳ ଦର୍ପଣ ପରି ନିର୍ମଳ । ଘାଟ ବେକେ ଜଳ ପର୍ଯ୍ୟନ୍ତ ବାଲିସରି ଉପରେ ମହୁରାଳୀ ପଞ୍ଝା ପଞ୍ଝା ଝକ୍ ଝକ୍ କରି ପହଁରୁ ଥିବାର ବେଶ୍ ଦିଶେ । ପୁଷ୍କରିଣୀ ମଝିରେ ଯୂପଦଣ୍ଡ । ପୁଷ୍କରିଣୀଟା ବଉଳମାଳା ଦଳ ଓ ଧଳା କଇଁରେ ପୂର୍ଣ୍ଣ, ଉଚା କଇଁ ମଧ ଦୁଇ ଗୁଚ୍ଛା ଫୁଟିଅଛି । ଚୋଠ ଆଡ଼ ଉପରେ ବାଟ ପାଖରେ ମହାଦେବ ମନ୍ଦିର । ବିପରୀତ ଦିଗରେ ଓର ଓହଳା ଗୋଟିଏ ବରଗଛ । ପୁଷ୍କରିଣୀ କୂଳରେ ବଗଲା ବଗୁଲି ଦୁଇ ଗୋଟି ବସିଛନ୍ତି । ଯୋଡ଼ିଏ ମରାଳୀ ଜଳମଧ୍ୟରେ ପହଁରୁ ଅଛନ୍ତି ।

ସୂର୍ଯ୍ୟଦେବ ଅସ୍ତ ହୋଇ ଗଲେଣି, ଅନ୍ଧକାର ହୋଇ ନାହିଁ । ଚୋଠ ବରଗଛ ମୂଳରେ ଗୋଟିଏ ଯୁବତୀ ସ୍ତ୍ରୀ ମଳିନ ବେଶରେ ଗାଲରେ ହାତ ଦେଇ ବସି ବଗଲା ବଗୁଲି ଯୋଡ଼ିକୁ ଏକ ଧ୍ୟାନରେ ଚାହିଁ ରହିଅଛି । ପକ୍ଷୀ ଦୁଇଗୋଟି ଲଗାଲାଗି ହୋଇ ବସିଅଛନ୍ତି, ବେଳେ ବେଳେ ଥଣ୍ଟକୁ ଥଣ୍ଟ ଲଗାଇଟିକିଏ ଅସ୍ପଷ୍ଟ କୁଟୁରୁ କୁଟୁରୁ ଶବ୍ଦ କରୁଅଛନ୍ତି । ସ୍ତ୍ରୀଲୋକଟି ମନ ମଧ୍ୟରେ ଚିନ୍ତା କଲା, ଏହି କ୍ଷୁଦ୍ର ପ୍ରାଣୀ ଗୁଡ଼ିକ ପୃଥିବୀରେ ଏକା ସୁଖୀ । କେଉଁ ତପସ୍ୟାର ଫଳ ଭୋଗ କରୁଅଛନ୍ତି । ଅନ୍ଧକାର ମାଡ଼ିଆସିଲା, ବଗଲାବଗୁଲି ଅଦୃଶ୍ୟ ହେଲେ । ସ୍ତ୍ରୀଲୋକଟି ଦୀର୍ଘ ନିଃଶ୍ୱାସ ପକାଇ ଚିନ୍ତା କଲା, 'ହା ବିଧାତା ! ମୋ କପାଳରେ ଏହା ଲେଖିଥିଲୁ ! ଜମିଦାରର ଝିଅ, ବାପ ମା'ର ଗୋଟିଏ, କେତେ ସୁଖରେ, କେତେ ଯତ୍ନରେ ମୋତେ ପାଳିଥିଲେ, ଆନନ୍ଦ ଉଚ୍ଛବରେ ଦିନ ଯାଉଥିଲା । ସବୁ ଯାଇଥିଲା, ଶେଷରେ ଯାହା ଆଶ୍ରୟରେ ଥିଲି, ଝିଅଠାରୁ ବଳି କରୁଥିଲେ । ଭାବିଥିଲି, ସେହିଠାରେ ସେହିପରି ଅବା ଦିନ ସରିବ । ହା ବିଧେ ! ତାହା ମଧ ଛଡ଼ାଇ ନେଲୁ । ଦୁରାଚାର ମରହଟ୍ଟାମାନେ ଯେ ଗଡ଼ ଦଖଲ କରିବେ, ମହାଦେବୀ ପୂର୍ବରୁ ଜାଣିଥିଲେ;ସେଥି ସକାଶେ ସେ ଦିନେ ରାତିରେ ଚାରିଜଣ ପୋଇଲୀ ଚାରିଜଣ ପାଇକ ସାଙ୍ଗରେ ମୋତେ ଗଡ଼ ଗୁପ୍ତ ଦ୍ୱାର ଦେଇ ମଧୁପୁର ପାଇକ ଗାଁକୁ ପଠାଇଦେଲେ । କେତେ କାନ୍ଦିଲି, ଗୋଡ଼ତଳେ ପଡ଼ି କେତେ କହିଲି, ମହାଦେବୀ ପଛନ୍ତେ ସେହି ଗ୍ରାମକୁ ଆସିବାକୁ ଆଶ୍ୱାସ ଦେଲେ । ଶୁଣିଲି, ଦେବୀ ବର୍ତ୍ତମାନ ସ୍ୱର୍ଗରେ । ଧିକ୍ ମୋ ବୁଦ୍ଧିକୁ ! କପାଳି ତାଙ୍କୁ ଛାଡ଼ିଆସିଲି ? ଦେବି ! ମା ! ପ୍ରାଣରୁ ଅଧିକ କରିଥିଲ, କି ଅପରାଧ ଦେଖି ଛାଡ଼ି ଗଲ ? ମଧୁପୁର ଗ୍ରାମର ପାଇକାଣୀମାନେ ଅମଙ୍ଗଳୀ ବୋଲି ଗାଳିଦେଇ ମୋତେ ଗ୍ରାମରୁ ତଡ଼ିଦେଲେ । ସେମାନଙ୍କ କଥା ସତ୍ୟ । ମୁଁ ଆଶ୍ରୟ ନେବାରୁ ରାୟବଣିଆ ଗଡ଼ ନାଶ ଗଲା, ମଧୁପୁର ଗ୍ରାମର ପାଇକାଣୀମାନେ ବିଧବା ହେଲେ । ମୋତେ ଗାଳି ଦେଲେ, ସେମାନଙ୍କର ଦୋଷ ନାହିଁ, ସର୍ବସ୍ୱ ହରାଇ କାନ୍ଦି କାନ୍ଦି ବାୟାଣୀ ହୋଇ ଗଲେଣି । ମୋ ପଦର ବଡ଼ ମନ୍ଦ, ନିଶ୍ଚେ ମୁଁ ଅମଙ୍ଗଳୀ ।"

"କିଏ ଲୋ ତୁ ? ତୋ ଘର କେଉଁଠି ଲୋ ? କଣ ଖୋଜୁଛୁ ଲୋ ? କିଆଁ ବସିଛୁ ଲୋ ?" ଉତ୍ତରର ପ୍ରତ୍ୟାଶା ନାହିଁ, ପ୍ରଶ୍ନ ଉପରେ ପ୍ରଶ୍ନ, ଅନର୍ଗଳ ପ୍ରଶ୍ନ, ପ୍ରଶ୍ନ ସଙ୍ଗେ

ସଙ୍ଗେ ଆସନ୍ତାର ଅବସ୍ଥା ବର୍ଣ୍ଣନ । ସ୍ତ୍ରୀଲୋକଟି ଚମକି ପଡ଼ି ଅନାଇ ଦେଖିଲା, ପ୍ରଶ୍ନକାରିଣୀ ଗୋଟିଏ ଅତ୍ୟନ୍ତ ବୃଦ୍ଧା, ନିତାନ୍ତ ମଳିନ ଛିନ୍ନବସ୍ତ୍ର ପରିହିତା, ଦଶନ-ବିହୀନା, ଅସ୍ଥିଚର୍ମମାତ୍ରାବଶିଷ୍ଟା, କମ୍ପିତ ଦେହା, ଅନାବୃତ ମସ୍ତକରେ କେତେ କେଶ ତୈଳହୀନ, କଙ୍କତିକାସ୍ପର୍ଶ ବର୍ଜିତ, ଶୁଦ୍ଧ କାଉଁରିଆ ଝୋଟ ପରି ଶୁକ୍ଳବର୍ଣ୍ଣ କେଶ ଫର ଫର ହୋଇ ଉଡ଼ୁଅଛି, ବାଁ କାଖରେ ଝୋଟକେଇଟିଏ, କମ୍ପିତ ଦକ୍ଷିଣ ହସ୍ତରେ ଖଣ୍ଡିଏ ବାଉଁଶ ଯଷ୍ଟି, କ୍ରମଶଃ ଅନ୍ଧକାରରେ ଆପଣା ଦେହରେ ବର୍ଣ୍ଣ ମିଳାଇ ଛିଡ଼ା ହୋଇଅଛି । ଏହି ବୃଦ୍ଧାଟି ଆମ୍ଭମାନଙ୍କର ବିଶେଷ ପରିଚିତା । ଦୁଇଗୋଟି ଢେଣ୍ଡିଆ ପୁଅ, ଦୁଇଗୋଟି ବୋହୂ ଏବଂ ଘରର ସମସ୍ତ ସମ୍ପତ୍ତି ହରାଇ ବାଇଆଣୀ ହୋଇ ଯାଇଅଛି । ଏହି ସେ ଜଗା ଫତେସିଂହର ମା । ବର୍ତ୍ତମାନ ଏହାକୁ ଦେଖିଲେ କିଏ କହିବ, ଏହାର ଘର ପରି ଗୋଟାଏ ଘର ଥିଲା ! ବୁଢ଼ୀର ଦିନରାତି ମୁହଁ ବନ୍ଦ ନାହିଁ, ସବୁବେଳେ କଳି କରୁଥାଏ, ଗ୍ରାମର ଯାହାକୁ ଦେଖେ, ତା ସହିତ କଳି ଲଗାଏ । ହେଲେ ଗ୍ରାମ ଲୋକେ ଦେଖି ବାଟ ଆଡ଼େଇ ଯା'ନ୍ତି । କଳି କରିବାପାଇଁ ସଚରାଚର ତାକୁ ଲୋକ ମିଳନ୍ତି ନାହିଁ । କୁକୁର, ବିରାଡ଼ି, ଗଛ, ପଥର, କାଉ, ଚିଲ, ଯାହାକୁ ଦେଖେ, ତାହା ସହିତ କଳି । ମାତ୍ର ରାତି କଳିଟା ବନ୍ଦ ପଡ଼େ । ମଶା, ଓଡ଼ଶଗୁଡ଼ାକ ବଡ଼ କଳିଆ, ସାରା ରାତି ବୁଢ଼ୀଟା ସାଙ୍ଗରେ ଲଗିଥାନ୍ତି । ବୁଢ଼ୀ ବିଲକୁ ଢସି ପାଉଁଟି ଯାଇଥିଲା, ଘରକୁ ଲେଉଟୁଅଛି ।

ବୃକ୍ଷମୂଳୋପବିଷ୍ଟା ଅନାଥା ସ୍ତ୍ରୀଲୋକଟିକୁ ଚିହ୍ନାଇ ଦେବାକୁ ହେବ ନାହିଁ । ପାଠକମାନଙ୍କର ବିଶେଷ ପରିଚିତା ସେହି ଲଛମା ।

ଜଗା ଫତେସିଂହ ମା ଏବଂ ଲଛମା ମଧ୍ୟରେ ଯେଉଁ କଥାବାର୍ତ୍ତା ହେଲା, ସେଥିର ସଂକ୍ଷିପ୍ତ ସାର ଏହିପରି—

ଲଛମା ବୁଢ଼ୀକୁ ଅନାଇ କହିଲା, "ନେହିଁ ମା ! ହାମେ ଭୁକ୍ଖା ବସିଛେ, ତୁମ୍ ଚଲିଯାଅ ମା !"

ବୁଢ଼ୀ—"ହେଇ ଲୋ ହେଇ, ମଲା ଯା, ଏଠା ତ ମରହଟ୍ଟା ପୁଣି ଅଇଲାଣି । ଦେଖ—ଦେଖ ସ୍ୱାର ହଇ ଦେଖ, ଆଜ ମାଇକିନିଆ ବେଶ ଧରି ଆସିଛି । ତୋ ଘୋଡ଼ା କାହିଁ ଲୋ ?"

ଲଛମା—"ନାହିଁ ମା, ହାମ୍ ମହହଟ୍ଟା ନାହିଁ, ହାମ୍ ବଡ଼ା ଦୁଃଖିଆ, ଗାଳି ଦେ ନା ମା, ଗୋସା କର ନା ମା !"

ବୁଢ଼ୀ—"ଚିନିଛି ଲୋ ଚିନିଛି, ତୋ ଚତୁରପଣ ବାନ୍ଧି ରଖ । ତୁ ମରହଟ୍ଟା ନୋହୁ ତ ଏପରି ବଙ୍କା ବଙ୍କା କଥା କହୁଛୁ କିଆଁ ? ଆଉ କଣ ନବୁ ଆସିଛୁ ? ନିଆଁ ନେ, ପାଉଁଶ ଅଛି, ଅ ଆ, ବୋହେ ପାଉଁଶ ନବୁ ଆ । ତେତିକବେଳେ ପୁଅ ଦିହିଁଙ୍କୁ କହିଲି, 'ଆରେ ଆସ ବୋହୂ ଯୋଡ଼ାକୁ ନେଇ ବଣକୁ ପଳେଇ ଯିବା, ମାଲମତା ଗଲା ତ ଗଲା । ସେ ଘରବୁଡ଼ା ନିଆଁଖିଆ ପୋଡ଼ାମୁହାଁ ନିଉଁଗୁଆ ମରହଟ୍ଟାଙ୍କ ସାଙ୍ଗରେ ଲଗା ନା ।' ଅଲୋଇଯିବ ଗାଁ ପାଇକଙ୍କ ବୋଲରେ ମାତି ପାରିଲାପଣି କରି ଫରି ଖଣ୍ଡା ଧରି ଲଢ଼େଇ କରି ଗଲେ, ମୋ ବୋଲ ନ ମାନି ଗଲେ, ସିମିତି ମଲେ ! ମର ମର, ଆଛା କରି ମର; ଆହୁରି ମର !"

ଲଛମା - "ନାହିଁ ମା, ହାମେ ମରହଟ୍ଟା ନାହିଁ, ମରହଟ୍ଟାର ନାମ ଦୁଷମନ ।" ଲଛମା ଭଲ କରି ଓଡ଼ିଆ କହି ପାରେ ନାହିଁ, ତା ଓଡ଼ିଆ କଥା ସହିତ ହିନ୍ଦି ମିଶିଯାଏ ।

ବୁଢ଼ୀ—"ଆଲୋ, ରଖ, ବାନ୍ଧି ରଖ । ମୋତେ ଆଉ କିଏ କଣ ପାଇଛୁ ପରା ! ମୋଟେ ଦି'କୋଡ଼ି କି ପାଞ୍ଚ କୋଡ଼ି, କି ଗୃବ କାହାଣ ବୟସ ହେଲା ।

ବ'ମରେଇ ଧାନ ଫାଟି ପଡ଼ୁଥିଲା, ଗୁହାଳେ ଗାଈ ଭର୍ତ୍ତି, ହଣ୍ଟା ବୋହୂ ସର୍ଗ ଛତ୍ର, ସୁନା ରୂପା ଝଲମଲ, ଦୁଧ ଦହି ସୁଅ ଛୁଟୁଥିଲା । ମୋର ସେ ବଉଳା ଗାଈଟା କାହିଁ ଲୋ ? ମୋ ଗାଈ ଦୁଧଖାଇ ଗନ୍ତିଟି କେମନ୍ତ ମୋଟ କରିଛୁ ଦେ, ଆ-ରଙ୍ଗ ଦଶ, ହାତରେ ସୁନାବଳା, ପାଟଶାଢ଼ୀ ପିନ୍ଧିଛୁ । ତୁ ଇମିତି କରି ଲୁଗା କଁ୍ୟା ପିନ୍ଧିଛୁ ଲୋ ? ତୁ ମାଈ ନା ଅଣ୍ଡିରି ଲୋ ?"

ଲଛମା—"ମା ! ମୋତେ ଏଇସି କଞ୍ଚ କଥା କହ ନା, ହାମ ମରହଟ୍ଟା ନାହିଁ, ସବ୍ କହୁଛେ ।"

ବୁଢ଼ୀ—"ମାରବୁ, ମାରବୁ, ମୋତେ ମାରବୁ ? ଆଇଲୁ ମାରିଲୁ ?" ବୁଢ଼ୀ ବାଡ଼ି ଉଞ୍ଚାଇ ମାରିବାକୁ ଯିବାରୁ ଲଛମା ଦୂରେଇଗଲା । ବୁଢ଼ୀ ଗାଳି ଦେଇ ଦେଇ ଗ୍ରାମ ଆଡ଼କୁ ଚାଲିଗଲା ।

ବୁଢ଼ୀ ଚାଲିଯିବା ଉତ୍ତାରେ ଲଛମା ଆପଣା ଜୀବନକୁ ଧିକ୍କାର ଦେଇ କହିଲା, "ସେଉଁଠାକୁ ଗଲି ଦୂର ଦୂର କରି ତଡ଼ିଲେ । ଧିକ୍ ମୋ ଜୀବନକୁ । ଏବେ କାହିଁ ଯିବି ? ଜଗତରେ ମୁଣ୍ଡ ଗୁଞ୍ଜିବାକୁ ଥାନ ନାହିଁ । ଏତକ ନୁହେଁ, ସେହି ପାପିଷ୍ଠ ମରହଟ୍ଟା ହାତରେ ପେବେ ପଡ଼େଁ, ସର୍ବନାଶ ! ଜୀବନରେ ପ୍ରୟୋଜନ କଣ ? ମହାଦେବୀ ପରଲୋକରେ ଅଛନ୍ତି; ତାଙ୍କୁ ତ ଭେଟିବି ? ମହାଦେବୀ ବେଣ୍ଟ ପୋଖରୀରେ ପ୍ରାଣତ୍ୟାଗ କରିଅଛନ୍ତି । ଏହି ତ ପୋଖରୀ । ଆଉ କହିଁ ।"

ଲଛମା ଆକାଶକୁ ଅନାଇଲା, ଗ୍ରହ ନକ୍ଷତ୍ର ସମସ୍ତଙ୍କୁ ଭଲ କରି ଦେଖିଲା । ଚତୁର୍ଦ୍ଦିଗକୁ ଭଲ କରି ଅନାଇ ହାତ ଯୋଡ଼ି ନେତ୍ର ମୁଦ୍ରିତ କରି ପ୍ରାର୍ଥନା କଲା, "ହେ ଜଗନ୍ନାଥ !—ଗଙ୍ଗାମାତା !"

ଠିକ୍ ଏହି ସମୟରେ ଶବ୍ଦ ଶୁଭିଲା—

"ନେହିଁ ମା, ହାମ୍ ଲୋକ ମରହଟ୍ଟା ନେହିଁ ଦେଖିତେହେଁ, ଦୋଠୋ ଦୁଃଖୀ ବୁଢ଼ୀଆ—"

ଲଛମା ଚମକି ପଡ଼ି ଅନାଇଲା, ଦେଉଳ ମଧ୍ୟରୁ ଶବ୍ଦ ଆସୁଅଛି । ଏ ତ ମୋ ମା'ର ସ୍ନେହ ଅମୃତମୟ ବଚନ । କଣ ଇଏ, କଏ କଥା କହିଲା ? ମୋର କି ଭ୍ରମ ? ମୁଁ କି ଶୋଇଁ ସ୍ୱପ୍ନ ଦେଖୁଅଛି ? ଦୁଇ ହାତରେ ଚକ୍ଷୁ ମୁଖ ଆଉଁସି ଦେଉଳ ଆଡ଼କୁ ଅନାଇଲା, ପୁନର୍ବାର ଶବ୍ଦ—"ହା ରେ ବାଦଲ ରେ ! ହା ରେ ମେରା ଖାମିନ୍ଦ ରେ ! ହା ମେରା କ୍ୟା ହୁଆରେ !" ନିଶ୍ଚୟ ନିଶ୍ଚୟ ମୋ ମା'ର ଅମୃତମୟ ବାଣୀ । ଏ କଣ ? କେବଳ ମୋ ମା'ର ନୁହେଁ, ଶାଶୁଙ୍କର ମଧ୍ୟ କଥା ଶୁଭୁଛି । ଦେଉଳ ଦ୍ୱାର ମୁକୁଳା, କାହିଁ କେହି ତ ନାହିଁ ! ଏହିଲାଗେ ତ ଦେବତା ଦର୍ଶନ କରି ଆଇଲି, କେହି ନାହିଁ ।

ପୁନର୍ବାର ଶବ୍ଦ—

"ହା ଜଗନ୍ନାଥ ! ତେରା ଖାଙ୍କେପର ଆୟେଥେଁ ତେରା ଏହି ମର୍ଜି ହୁଆ, ଜଗନ୍ନାଥ !"

ଏ ତ ମୋ ଶାଶୁଙ୍କ କଥା । ଲଛମା ଲଣ୍ଡଭଣ୍ଡ ହୋଇ ମନ୍ଦିର ପାଖକୁ ଧାଇଁ ଗଲା । ହାୟ ! ଶୂନ୍ୟ—ଅପୂଜିତ ଶକ୍ତି ଉପରେ ଶିବଲିଙ୍ଗ ବିରାଜିତ, ଜନପ୍ରାଣୀ ନାସ୍ତି, ମନ୍ଦିର ଅଭ୍ୟନ୍ତର ଅନ୍ଧକାରମୟ । ଲଛମା ମନ୍ଦିର ସାରା ଅଣ୍ଡାଳି ଅଣ୍ଡାଳି ଦେଖିଲା, ପ୍ରତ୍ୟେକ ସ୍ଥାନ ଛନ୍ଦି ଚାରି ଥର କରି ଅଣ୍ଡାଳିଲା । ବାରମ୍ବାର ଶିବଲିଙ୍ଗ ହାତରେ ପଡ଼ିଥାନ୍ତି । ଅବଶେଷରେ ନିରାଶ ହୋଇ ବାଡ଼କୁ ଆଉଜି ଲଠ କରି ବସି ପଡ଼ିଲା । ହାତ ଯୋଡ଼ି ଦେବତାଙ୍କ ଉଦ୍ଦେଶ୍ୟରେ ନମସ୍କାର କରି କହିଲା, "ହେ ଦେବ ! ଆଉ ଥରେ ଅନୁଗ୍ରହ କର, ଆଜି ବେଳେ ସେହି କଥା ଶୁଣାଅ, ଆଉ ଥରେ ସେହି ଅମୃତମୟ କଥା ଶୁଣି ପ୍ରାଣ ଶୀତଳ ହେଉ ।" ବାରମ୍ବାର ଏହି

କଥା କହୁଥାଏ, କଥା କହିବାର ଶକ୍ତି ମଧ୍ୟ ବିଲୁପ୍ତ, ହାତ ଯୋଡ଼ି ଅନ୍ଧକାର ମଧ୍ୟରେ ଦେବବିଗ୍ରହ ପ୍ରତି ନିରୀକ୍ଷଣ କରୁଥାଏ । ମନ୍ଦିର ଅନ୍ଧକାର, ମଧ୍ୟ ତାହାର ହୃଦୟ ତତୋଽଧିକ ଅନ୍ଧକାରପୂର୍ଣ୍ଣ, ବୁଦ୍ଧିବୃତ୍ତି ବିଚଳିତ, ସଲଗ୍ନ କିଛି କଥା ମନକୁ ଆସୁ ନାହିଁ । ଏହି ଅବସ୍ଥାରେ କେତେବେଳଯାଏ ରହିଲା ଜାଣିବାର ତାହାର ଶକ୍ତି ନାହିଁ । ଅଜ୍ଞାତସାରରେ ନିଦ୍ରା ଆସି ତାହାର ଗ୍ରୀବାକୁ ବକ୍ର କରି ଦେଲା । ଏ ଅବସ୍ଥାରେ କି ନିଦ୍ରା ଆସେ ? ହେଲେ ଲଛମା ନିଦ୍ରିତା ।

ଲଛମା ସ୍ୱପ୍ନରେ ଦେଖିଲା—ଅତି ରମଣୀୟ ବସନ୍ତାନିଳ ପ୍ରବାହିତ, ଚିତ୍ତବିନୋଦନ, ସୁଖମୟ, ସୁଗନ୍ଧଯୁକ୍ତ, ପ୍ରସ୍ଫୁଟିତ ପାରିଜାତ କୁସୁମରେ ପୂର୍ଣ୍ଣ ନନ୍ଦନକାନନ ମଧ୍ୟରେ ଦେବଦେବୀ ଯାତ୍ରୀମାନେ ଗୋଲକଧାମକୁ ଯାଉଅଛନ୍ତି । ଲଛମା ଗୋଟିଏ ରତ୍ନମୟ ଦୋଳାରେ ସ୍ୱାମୀ ବାମପାର୍ଶ୍ୱରେ ବସି ସେମାନଙ୍କ ସଙ୍ଗରେ ଯାଉଅଛି । କିଛି ଦୂର ପରମ ସୁଖରେ ଯାଉଁ ଯାଉଁ ଅସଂଖ୍ୟ ଭୀଷଣଦଂଷ୍ଟ୍ରା ବନ୍ୟ ବରାହ ଆସି ଆକ୍ରମଣ କଲେ; ଭୟବିହ୍ୱଳ ଯାତ୍ରୀମାନେ ଛିନ୍ନ ଭିନ୍ନ ହୋଇ ପଳାୟନ କଲେ । ଲଛମା ଦୋଳାରୁ ଖସି ତଳେ ଲୋଟିବାକୁ ଲାଗିଲା । ମାର୍ଗମଧ୍ୟରେ ଗୋଟିଏ ଦେବୀ ବସିଥିଲେ, ଲଛମାକୁ ପଣତକାନିରେ ଘୋଡ଼ାଇ ରଖିଲେ । ପୁନର୍ବାର ବରାହଯୂଥ ଉପସ୍ଥିତ, ଦେବୀ ରକ୍ଷା କରିବାକୁ ଅସମର୍ଥ ହେଲେ । ଲଛମା ଭୟରେ ପଳାଉଅଛି—ଦିନ ନାହିଁ, ରାତ୍ରି ନାହିଁ, ଅବିଶ୍ରାନ୍ତ ପଳାୟନ । କେତେ ଗ୍ରାମ, କେତେ ନଗର, କେତେ ନଦୀ, କେତେ ନାଳ ମାର୍ଗରେ ପଡ଼ିଲା । ଲଛମା ଅବିଶ୍ରାନ୍ତ ଧାଇଁଅଛି । ଅବଶେଷରେ ଗୋଟିଏ ଦେବ-ନଗରୀରେ ଉପସ୍ଥିତ ହେଲା । ଦେବଦୂତମାନେ ଧାଇଁ ଆସି ବରାହମାନଙ୍କୁ ବଧ କଲେ । ଅନେକଗୁଡ଼ିଏ ଦେବକନ୍ୟା ସେ ସ୍ଥାନରେ ଭ୍ରମଣ କରୁଥିଲେ । ପତିବ୍ରତା ଅଇଲେ—ସତୀ ଅଇଲେ—ସଧବା ଅଇଲେ, ଏହି ପ୍ରକାର ସମ୍ବୋଧନ କରି ଆଦର ପୂର୍ବକ ତାହାକୁ ଘେନିଗଲେ । ଲଛମାର ସ୍ୱାମୀ ଏକ ରତ୍ନମୟ ସିଂହାସନରେ ବିରାଜିତ, ଦେବକନ୍ୟାମାନେ ତାଙ୍କ ବାମ ପାର୍ଶ୍ୱରେ ବସାଇଦେଲେ । ଠିକ୍ ଏହି ସମୟରେ ଗୋଟିଏ ଟେଁଟେଁୟା ପକ୍ଷୀ ନୈଶ ଆକାଶର ନିସ୍ତବ୍ଧତା ଭଙ୍ଗ କରି 'କ-ଏ-ରେ, କ-ଏ-ରେ' ଡାକ ଦେଉଳ ଉପର ଦେଇ ଉଡ଼ିଗଲା । ଗୋଟିଏ ଗୃତକ ବରଗଛ ଉପରେ ବସି ଡାକୁଥାଏ, 'ସ-ଅ-ତୀ, ସ ଅ-ତୀ' । ପକ୍ଷୀମାନଙ୍କ ଶବ୍ଦରେ ଲଛମାର ନିଦ୍ରା ଭଗ୍ନ ହେଲା । ନିଦ୍ରା ଆଳସ୍ୟରେ ତାକୁ ଜଣାଗଲା, ସେହି ଦେବକନ୍ୟାମାନେ କହୁଅଛନ୍ତି, 'ସ-ଅ-ତୀ, ସ-ଅ ତୀ' । ତାକୁ ସ୍ୱପ୍ନ ସତ୍ୟ ପରି ଜଣା ଯାଉଥିଲା । ଅଳ୍ପ କ୍ଷଣ ଉତ୍ତାରେ ପ୍ରକୃତ ଚେତନା ଫେରିଲା, ଭାବିଲା—'କଣ ଇଏ ? ଏ କି ଦେବମାୟା ? ଦେବକନ୍ୟାମାନେ କହୁଅଛନ୍ତି—ମୁଁ ସତୀ । ମୁଁ କି ସତୀ ? ସତୀ କିଏ ? ହେ ଭଗବାନ, ହେ ମହାଦେବ, ତୁମ୍ଭେ ଜାଣ; ଜନ୍ମକାଳରୁ ଆଜଯାଏ କିଛି କଳୁଷିତ କାର୍ଯ୍ୟ କରି ନାହିଁ, କେବେ ମିଥ୍ୟା କଥା କହି ନାହିଁ, କାହାରି ମନରେ କଷ୍ଟ ଦେଇ ନାହିଁ, କାହାର ଅମଙ୍ଗଳ କାମନା କରି ନାହିଁ, ମା'ଙ୍କ ଆଜ୍ଞାରେ ଦେବ ବ୍ରାହ୍ମଣ ପୂଜିଅଛି, ଆଉ ସ୍ୱାମୀ ହୃଦୟର ଦେବତା, ସର୍ବଦା ତାଙ୍କର ଚରଣ ସେବା କରି ଆପଣାକୁ ଧନ୍ୟ ଜ୍ଞାନ କରୁଥିଲି, ତାଙ୍କ ଆଜ୍ଞା କେବେ ଅବଜ୍ଞା କରି ନାହିଁ, ବାହାଘର ରାତିଠାରୁ ତାଙ୍କୁ ହୃଦୟ-ସିଂହାସନରେ ସ୍ଥାପନ କରିଅଛି । ବାକ୍ୟରେ, ଦେହରେ, କିମ୍ବା କାର୍ଯ୍ୟରେ ପତି-ଦେବତାଙ୍କ ଅପ୍ରିୟ କାର୍ଯ୍ୟ କରିନାହିଁ । ହେ ଦେବ ! ମୁଁ କ୍ଷୁଦ୍ର ପ୍ରାଣୀ, ଆଶୀର୍ବାଦ କର, ମୁଁ ପତିବ୍ରତା ହୁଏ । ମା କହୁଥିଲେ—ମଧ୍ୟ ପୁରାଣରେ ଶୁଣିଅଛି, ସତୀ ପତିବ୍ରତାମାନେ ସଧବା । ସୀତା, ସାବିତ୍ରୀ, ଶକୁନ୍ତଳା ସମସ୍ତେ ପତିବ୍ରତା, ସମସ୍ତେ ସଧବା । ହେ ଦେବତା ! ମୋ ପ୍ରଭୁଙ୍କୁ ମିଳାଇ ଦିଅ, ପ୍ରଭୁଙ୍କୁ ଖୋଜିବାକୁ ବଳ ଦିଅ, ମୁଁ ଚତୁର୍ଦ୍ଦିଗରେ ତାଙ୍କ ଛାୟାରୂପ ଦେଖୁଅଛି, ନୟନ—ପ୍ରତିମା ରୂପେ ପ୍ରତି

ନିମେଷରେ ମୋ ନେତ୍ରରେ ଭାସୁ ଅଛନ୍ତି ।' ଲଛମା ପୁରାଣରେ ଶୁଣିଥିଲା, ଦୁର୍ଘଟନା ସତୀମାନଙ୍କ ପରୀକ୍ଷା, ସତୀମାନେ ବିପଦ ସମୟରେ ଧୈର୍ଯ୍ୟଚ୍ୟୁତ ହୁଅନ୍ତି ନାହିଁ । ସତୀଧର୍ମ ସତୀମାନଙ୍କର ରକ୍ଷାକାରୀ । ସତୀମାନେ ଅସାଧ୍ୟ ସାଧନରେ ସମର୍ଥ । ଭାବିଲା—'ମୁଁ କଣ ଆତ୍ମ-ଘାତିନୀ ହୋଇ ଜୀବନକୁ କଳଙ୍କିତ କରିବି ? ମୋହର ଉପର ବଂଶ ବୀରଙ୍ଗବାଈ, ପଦ୍ମିନୀ ସତୀମାନେ କେତେ କଷ୍ଟ ସହି କେତେ କୌଶଳରେ ସ୍ୱାମୀ ଲାଭ କରିଅଛନ୍ତି । ଏ ଶରୀର ମନ ପ୍ରଭୁଙ୍କୁ ସମର୍ପଣ କରିଅଛି, ପ୍ରଭୁଙ୍କ ସମ୍ପତ୍ତି କପରି ବିନଷ୍ଟ କରିବି ? ମୋ ପ୍ରଭୁ ମୋତେ ଅନ୍ୱେଷଣ କରୁଅଛନ୍ତି; ମୁଁ ତାଙ୍କୁ ଖୋଜିବାକୁ ଯିବି । ଅବଶ୍ୟ ଭେଟ ହେବ, ଏକଲିଙ୍ଗ ଭେଟ କରାଇ ଦେବେ । ମୋର ବର୍ତ୍ତମାନ ଦୁଇଗୋଟି କର୍ତ୍ତବ୍ୟ—ସ୍ୱାମୀଙ୍କ ଅନ୍ୱେଷଣ, ପିତୃହନ୍ତା ମର-ହଟ୍ଟାର ବଧ ସାଧନ । ଶତ୍ରୁ ଅସଂଖ୍ୟ, ପ୍ରବଳ, ମୁଁ ଅନାଥା ଏକାକିନୀ । ଚିନ୍ତା ନାହିଁ, ଭୟଭଞ୍ଜନ ମଧୁସୂଦନ ସହାୟ ହେବେ, କୁଳ ଦେବତା ଏକଲିଙ୍ଗ ରକ୍ଷା କରିବେ, ସାଧୁ କାର୍ଯ୍ୟରେ ପ୍ରଭୁ ସହାୟ ହୁଅନ୍ତି । ଶତ୍ରୁ ଅସଂଖ୍ୟ, ସମସ୍ତଙ୍କୁ ମାରିପାରିବି ନାହିଁ । ସେମାନଙ୍କ ମୂଳ ସର୍ଦ୍ଦାର, ଯାହା ଆଜ୍ଞାରେ ସମସ୍ତେ ଚାଳିତ, ତାହାକୁ ହତ୍ୟା କରିବି । ନରହତ୍ୟା ? ପିତୃଘାତୀକୁ ବିନାଶ କରିବା କର୍ତ୍ତବ୍ୟ, ଶତ ସହସ୍ର ଲୋକଙ୍କ ହତ୍ୟାକାରୀକୁ ବଧ କରିବା ପୁଣ୍ୟ କାର୍ଯ୍ୟ । ଲଛମା ଅଞ୍ଜଳି ଅଞ୍ଜଳି ଶିବଲିଙ୍ଗରେ ମସ୍ତକ ସ୍ପର୍ଶ କରାଇ ପ୍ରାର୍ଥନା କଲା, "ଦେବ ! ହେ ଅନାଥନାଥ ! ହେ ପ୍ରଭୋ ! ସହାୟ ହୁଅ । ପ୍ରଭୋ ! ମୁଁ ଯଦି ସତୀ ହୁଏଁ, ଯଦି ତୁମ୍ଭପ୍ରତି ମୋର ଭକ୍ତି ଥାଏ, ସହାୟ ହୁଅ । ଅନାଥା, ଅଜ୍ଞାନା, ଅବଳା ବାଳିକାକୁ ରକ୍ଷା କର । ଶିଶୋଦୀୟ ରାଠୋର ବଂଶର କୁଳଦେବତା ହେ ଏକଲିଙ୍ଗ ! ମୁଁ ଅକୂଳ ସମୁଦ୍ରରେ ଭାସୁଅଛି, ରକ୍ଷା କର ।" ଲଛମା ଶିବଲିଙ୍ଗଙ୍କୁ ସାଷ୍ଟାଙ୍ଗ ପ୍ରଣିପାତ କଲା । ସେହି ସମୟରେ ଲଛମା ଅପୂର୍ବ ବଳ, ଅପୂର୍ବ ଶାନ୍ତି, ଅପୂର୍ବ ଜ୍ଞାନ ସ୍ୱର୍ଗରାଜ୍ୟରୁ ପ୍ରାପ୍ତ ହେଲପରି ଅନୁଭବ କଲା ।

ଅଦ୍ୟାବଧି ଗୃହଦିବସ ହେଲା ଲଛମା ଆହାର-ନିଦ୍ରା-ବିବର୍ଜିତା; ମାତ୍ର ତଜ୍ଜନିତ କ୍ଳେଶ ଅନୁଭବ କରି ନ ଥିଲା । ହଠାତ୍ ତାହାର ପଣତ କାନିରେ ବନ୍ଧା ପୁଟୁଳିରେ ହାତ ପଡ଼ିଲା । ସେଥିରେ କି ପଦାର୍ଥ ବନ୍ଧା ଅଛି, ଲଛମା ଏ ପର୍ଯ୍ୟନ୍ତ ସେଥିପ୍ରତି ମନେ ଯୋଗ କରି ନାହିଁ । ଲଛମା ଯେତେବେଳେ ଉଆସରୁ ଆସିଲା, ମହାଦେବୀ ତାହାର ପଣତ କାନିରେ କଣ ବାନ୍ଧି ଦେଇ କହିଥିଲେ, "ମା ଭୋକ ଲାଗିଲେ ଖାଇବୁ, ମୋ ରାଣ ।" ସେହି ଅମୃତମୟ ସ୍ନେହବାକ୍ୟ ମନରେ ପଡ଼ିବାରୁ ତାହା ନେତ୍ରରୁ ଲୋତକପାତ ହେଲା । କାନି ଫିଟାଇ ଦେଖିଲା, ପ୍ରାୟ ଦୁଇମାଣ ଚୂଡ଼ା ଏବଂ କେତେଗୁଡ଼ିଏ ଖଜା । ଆଉ କେତେଗୁଡ଼ିଏ କଠିନ ପଦାର୍ଥ ତାହା ହାତକୁ ଲାଗିଲା । ଗଣି ଦେଖିଲା, ସଂଖ୍ୟା କୋଡ଼ିଏ । ସ୍ପର୍ଶଦ୍ୱାରା ଅନୁଭବ କଲା, ସୁନା ମୋହର ।

ଲଛମା ଖାଦ୍ୟଗୁଡ଼ିକ ଦେବତାଙ୍କ ଉଦ୍ଦେଶ୍ୟରେ ନୈବେଦ୍ୟ କରି ଘାଟରେ ଜଳଯୋଗ କଲା ।

— — —

## -୧୬-

## ପଲା—ମରହଟ୍ଟା

ମଧୁମଲ୍ଲୀ କାନ୍ଥୀରେ ସବୁ ଦିନେ ଯେପରି ରାତି-ପାହେ, ଆଜି ମଧ୍ୟ ସେହିପରି ପାହିଅଛି । ଜଗା ଫତେ-ସିଂହ ମା ପ୍ରତିଦିନ ପ୍ରାତଃକାଳରେ ଟୋକେଇଟିଏ କାଖେଇ କମ୍ପିତ ହସ୍ତରେ ବାଡ଼ିଶବାଡ଼ି ଖଣ୍ଡିଏ ଧରି

ଠାକୁରୁ ଠାକୁର୍ କରି ଢସି ଗୋଟାଇବାକୁ ବଳକୁ ବାହାରେ, ଆଜି ମଧ୍ୟ ସେହିପରି ବାହାରି ଅଛି । ସବୁବେଳେ ବର୍ ବର୍ କରି ଯାହାକୁ ତାହାକୁ ଗାଳି ଦେବାଟା ତ ତାହାର ଅଭ୍ୟାସ; ଆଜି ମଧ୍ୟ ସେହିପରି ବର୍ ବର୍ ହୋଇ ଚାଲିଅଛି । ସେହି ଛୋଟ ବରମୂଳରେ ଠିଆ ହେଲା, ବୋଧ କରୁ, କାଲି କଥାଟା ମନରେ ପଡ଼ିଗଲା । ବାଡ଼ ଭିଡ଼ି ଦେଇ ଛିଡ଼ା ହେଲା, ଗଛମୂଳକୁ ଭଲକରି ଅନାଇଲା, ଚାରିଆଡ଼କୁ ଅନାଇଲା, କେହି ନାହିଁ । ତାହା ମୁଖଭଙ୍ଗୀରୁ ଜଣାଯାଏ, କିଛି କଷ୍ଟ ହେଲା । ଯେହି ସ୍ତ୍ରୀଟିକୁ ଭେଟିଥିଲେ ଆଉ ଥରେ ଭଲକରି କଳି ଲଗାଇ ଶାନ୍ତି ଲାଭ କରିଥାନ୍ତା । ତଥାପି ସେ ବରମୂଳକୁ ଅନାଇ ସ୍ତ୍ରୀଲୋକଟି ଉଦ୍ଦେଶ୍ୟରେ ଖୁବ୍ ଥରେ କଳିକଲା ।

ହାଲି ବର୍ତ୍ତମାନକୁ ଗାମ ଲୋକେ ସନ୍ଧ୍ୟା ଉତ୍ତାରେ ଯେପରି ଚୁନ୍ ଚାନ୍ ହୋଇ ଶୋଇ ପଡ଼ନ୍ତି, ଗତ ରାତିରେ ସେମାନଙ୍କ ଅଦୃଷ୍ଟରେ ସେଇଟା ଘଟି ନାହିଁ । ଘରି ଗୋଟାଏ ଅରିଷ୍ଟ ଘଟି ଯାଇଅଛି । ଜଗା ଫତେସିଂହ ମା ଲଛମାକୁ ଗାଳି ଦେଇ ସାରି ଘରକୁ ଯାଇ ତାହା ଘର ପିଣ୍ଡାରେ ଦୁଇଗୋଟି ବୁଢ଼ୀ ବସିଥିବାର ଦେଖିଲା । ହରି ଖପା ହୋଇ ସେମାନଙ୍କ ସାଙ୍ଗରେ କଳି ଲଗାଇଲା, ବାଡ଼ ଉଞ୍ଚାଇ ବାଡ଼େଇବାକୁ ଧାଇଁଲା । ସ୍ତ୍ରୀଲୋକ ଦିଓଟି କାକୁତିମିନତି ଦ୍ୱାରା ନିଜ ନିଜ ନିର୍ଦ୍ଦୋଷତା ସାବ୍ୟସ୍ତ କରାଇବା ନିମନ୍ତେ ନାନା ପ୍ରକାର ଯୁକ୍ତି ଏବଂ ପ୍ରମାଣ ପ୍ରୟୋଗ କରିବାକୁ ଲାଗିଲେ । ହେଲେ ଫତେସିଂହ ମାର କାହିଁରେ କର୍ଣ୍ଣପାତ ନାହିଁ । କେବଳ ଗାଳି, ଅନର୍ଗଳ ଗାଳି । ଗାଳିର ସାରାଂଶ ଏହି—'ପୋଡ଼ାମୁହିଁଏ, ଅଲପାଇସେ ନିଆଁ ଖାଇଏ, ମୋ ମାଲମତା ଲୁଟି ନେଲ, ପୁଅମାନଙ୍କୁ ମାରି ପକେଇଲ, ବୋହୂଗୁଡ଼ିକୁ ଧରି ନେଇଗଲ,' ଇତ୍ୟାଦି ଇତ୍ୟାଦି । ଏକ ପକ୍ଷରୁ ବିରକ୍ତି, ଅନ୍ୟ ପକ୍ଷରୁ ବିନୟ; କେହି କାହାରି କଥା ବୁଝିବାକୁ ନାହିଁ । ବାସ୍ତାଣୀ ବାଡ଼େଇବାକୁ କହିବାରୁ ବୁଢ଼ୀ ଦିଓଟି ବଡ଼ଜଳରେ ସ୍ୱାମୀ ପୁତ୍ରଙ୍କ ନାମ, ଈଶ୍ୱରଙ୍କ ନାମ ଉଚ୍ଚାରଣ କରି ଏପରି ଉଚ୍ଚସ୍ୱରରେ କାନ୍ଦି ପକାଇଲେ ଯେ ଛୋଟ ମନ୍ଦିର ମଧ୍ୟରେ ପ୍ରତିଧ୍ୱନି ହୋଇଥିଲା । ମନ୍ଦିରଟା ଜଗା ଫତେସିଂହ ଘରଠାରୁ ଦୁଇଶ କଦମରୁ ବେଶି ଦୂରବର୍ତ୍ତୀ ନୁହେଁ, ମଧ୍ୟରେ ଦୁଇଟା ଘର ବ୍ୟବଧାନ ମାତ୍ର । ଫତେସିଂହ ମା କଳିଲେ କ୍ଲାନ୍ତ ହୋଇ ବର୍ ବର୍ ହୋଇ ଘରକୁ ବାହାରିଲା । ପଡ଼ୋଶୁଣୀ ରାଜୀବ ରାଉତର ବିଧବା ଭଉଣୀ ରାଧିକା ଅଳ୍ପ ଦୂରରେ ଛିଡ଼ା ହୋଇ ଫତେସିଂହ ମାର କାର୍ଯ୍ୟକଳାପ ଦେଖୁଥିଲା । ବିଦେଶିନୀ ଦିଓଟିଙ୍କୁ ରକ୍ଷା କରିବାକୁ ଇଚ୍ଛା; ମାତ୍ର କଳିର ଅଂଶ ପାଇବା ଭୟରେ ଭରସି ପାଖ ପଶି ପାରି ନାହିଁ । ଫତେସିଂହ ମାର ଦୃଷ୍ଟି ରାଧିକା ଉପରେ ପଡ଼ିଗଲା, କହିଲା, "ଚାହିଁଛୁ କଣ ଲୋ, ଏହି ତ ଦୁଇଟା, ଆଉ ଗୋଟାଏ ମରହଟ୍ଟା ଆସି ଛୋଟ ବରମୂଳରେ ବସିଲାଣି । ଆଉ ଘରେ ନିଆଁ ଅଛି, ପାଉଁଶ ଅଛି, ନେବେ ।" ରାଧିକା ଥରି ଥରି ପଚାରିଲା, "ଏଁ, କଣ ଲୋ, ଛୋଟ ଯାଏ ଆସିଲେଣି ?" ରାଧିକା ଛୋଟ ଯାଏ ଚାଲି ଯାଇଥିଲେ ପ୍ରକୃତ ମରହଟ୍ଟାର ପରିଚୟ ପାଇଥାନ୍ତା । ହେଲେ ବାଘ ଆସିଅଛି, ସତ୍ୟ ମିଥ୍ୟା ପ୍ରମାଣ ନିମନ୍ତେ ତାହା ପାଖକୁ ଯାଇ ଦେଖିବା ବୁଦ୍ଧିମାନର କାର୍ଯ୍ୟ ନୁହେ । ପ୍ରକୃତରେ ରାଧିକା କିଛି ବୁଦ୍ଧିମତୀ ବୋଲି ଗ୍ରାମରେ ପରିଚିତା । ମୁହୂର୍ତ୍ତ ମଧ୍ୟରେ ସିଦ୍ଧାନ୍ତ କରି ପକାଇଲା । ବାସ୍ତାଣୀ ବୁଢ଼ୀଟା ବୁଝିପାରି ନାହିଁ, ମରହଟ୍ଟା ହଜାର ହଜାର ଆସନ୍ତି, ନିଶ୍ଚୟରେ ହଜରେ ଆସିଥିବେ, ଘୋଡ଼ାରେ ଚଢ଼ି ଆସିଥିବେ । ଗୋଟାଏ ଉତ୍କଟ ରଡ଼ି କଲା—ପଳା ରେ, ପଳା ରେ ! ହଜାରେ ମରହଟ୍ଟା ଘୋଡ଼ାରେ ଚଢ଼ି ଛୋଟଯାଏ ଅଇଲେଣି—ବିଦ୍ୟୁତ୍ ଗତିରେ ଗାଁ ଏ ମୁଣ୍ଡ ସେ ମୁଣ୍ଡ ଚହଳ ପଡ଼ିଗଲା । ସମସ୍ତଙ୍କ ମୁଖରେ ଏକ କଥା—'ପଳାରେ, ପଳାରେ, ମରହଟ୍ଟା' ଯେ ଯେଉଁଠାରେ ଥିଲା ପାଟି କରି ପଳାଇଲା ।

କିଏ ଚୋରୁଣି ମଦ୍ୟ ପିଉଥିଲା, ଦରପିଆ ହୋଇ ଧାଇଁଛି, ହାତ ଧୋଇବାକୁ ତର କାହିଁ ? କିଏ ଶୋଇବା ପାଇଁ ହେଁସଟା ପାରୁଥିଲା, କିଏ ଘର ଖରକୁଥିଲା, କିଏ ହଣ୍ଡାଟାକୁ ବାନ୍ଧୁଥିଲା, କିଏ କଥା କହୁଥିଲା, କିଏ କଥା ଶୁଣୁଥିଲା, ଠା ଜାଗାରୁ ପାଟି କରି ଧାଇଁଛନ୍ତି । ଗୋଟିଏ ମାଇକିନିଆ ପିଲାଟା ମୁହଁରେ ଭାତ ହଟା ଗୁଞ୍ଜି ଦେଉଥିଲା, କେବଳ ହାତରେ ପିଲାଟାର ଡେଣା ଧରି ଧାଇଁଛି, କାଖେଇବାକୁ ଅବସର ନାହିଁ । ପିଲାଟା ଭେଁ ଭେଁ କରି ରଡ଼ି ଛାଡ଼ୁଛି । ମା ରଡ଼ି ଛାଡ଼ୁଛି—'ପଳା, ମରହଟ୍ଟା !' ଦଣ୍ଡକ ମଧ୍ୟରେ ଗ୍ରାମଟା ନିସ୍ତବ୍ଧ ହୋଇଗଲା । ରାତି ଅନ୍ଧକାର, ଗ୍ରାମର ଅର୍ଦ୍ଧକୋଶ ଦୂରରେ ବଣ । ଏହି ଅନ୍ଧକାର ବା ବଣ ଗ୍ରାମବାସୀଙ୍କ ପକ୍ଷରେ ସୌଭାଗ୍ୟ ବା ଦୁର୍ଭାଗ୍ୟର କାରଣ ହୋଇଥିଲା । କାରଣ ସେମାନଙ୍କୁ ଅଧିକ ବାଟ ଧାଇଁବାକୁ ପଡ଼ିଲା ନାହିଁ । ବଣରେ ବାଘ ଭାଲୁ, ଅନ୍ଧକାରରେ ଭିତରେ ପଶୁଛି କିଏ ? ବଣ ଧାର ବୁଦା ମୂଳରେ ସମସ୍ତେ ଗାଦାଗୁଦା ତୁନି ହୋଇ ବସିଛନ୍ତି । କାହାରି ପାଟିରେ କଥା ନାହିଁ । କେହି ମାଇକିନିଆ କଅଁଳା ପିଲା ମୁହଁରେ ସ୍ତନଟା ଗୁଞ୍ଜି ଦେଇ ସାବଧାନରେ ଧୀରେ ଧୀରେ ମୁଣ୍ଡଟା ଥାପୁଡ଼ି ଦେଉଛି; କାରଣ ପିଲା କାନ୍ଦଣା ଶୁଣି ମରହଟ୍ଟା ଧାଇଁ ଆସିବାର ସମ୍ପୂର୍ଣ୍ଣ ସମ୍ଭାବନା । ମଶା ଡାଆଁଶ ଗୁଡ଼ାକ ଭଣ ଭଣ ହୋଇ ଦେହରେ ଲାଗିଛନ୍ତି, ପଟ୍‌କରି ଚାପୁଡ଼ାଟା ମାରିବାକୁ ବାଟ ନାହିଁ, କାଳେ ମରହଟ୍ଟା ଶୁଣି ପାରିବ । ହାୟ ! ହାୟ ! ଏଠାରେ ମଧ୍ୟ ଶାନ୍ତି ନାହିଁ । ପଲେ ମରହଟ୍ଟା ଘୋଡ଼ା ଧଡ଼ଧଡ଼ କରି ବଣଟାକୁ ଦୁଲକାଇ ଦେଇ ଧାଇଁ ଗଲେ । ଆଉ କି ରକ୍ଷା ଅଛି ? ଦେ ପଳା—ପଳା—ପଳା ! ନିବିଡ଼ ଅନ୍ଧକାର ବଣ ମଧ୍ୟରେ ଧାଇଁଛନ୍ତି । କଣ୍ଟା ଖୁଞ୍ଚ ଲାଗି ଲୁଗାପଟା ଫାଳ ଫାଳ ହୋଇ ଚିରି ଗଲେଣି । ଗୋଡ଼ ହାତ ଚିରି ଆମ୍ପୁଡ଼ି ଯାଇ ଝରର ଝର ହୋଇ ରକ୍ତ ବହୁଛି । ଆରେ, ବାଘ ଭାଲୁ ? ବାଘ କିନା ଗୋଟାଏ ଘୋଡ଼ାଏ ମନୁଷ୍ୟ ଖାଇବ, ମରହଟ୍ଟା ହାତରୁ ଯେ କାହାରି ରକ୍ଷା ନାହିଁ । ବରଂ ବାଘ ଭାଲୁ ଗୁଡ଼ାକ ଭଲଥିବେ, ଆଜି ଏ କି ବିପଦ ? ସେମାନେ ଗ୍ରାମବାସୀଙ୍କ ପରି ବୁଦ୍ଧିମାନ ହୋଇଥିଲେ ମନରେ କରନ୍ତେ, ଅଭ୍ୟାଗତ ମରହଟ୍ଟାଙ୍କ ଯୋଗେ ବଣରେ ମଧ୍ୟ ଶାନ୍ତି ନାହିଁ । ଆମ୍ଭମାନଙ୍କୁ ସମସ୍ତ କଥା ବୁଝି ସୁଝି ଲେଖିବାକୁ ହୁଏ; ଉତ୍ତମରୂପେ ଅନୁସନ୍ଧାନ କରି ବୁଝିଅଛୁଁ ଯେ ପ୍ରକୃତ ମରହଟ୍ଟାଙ୍କ ଘୋଡ଼ା ବଣକୁ ଯାଇନାହାନ୍ତି, ପଲେ ହରିଣ ଚରି ଚରି ଆସୁଥିଲେ, ମନୁଷ୍ୟ ଗନ୍ଧ ପାଇ ତ୍ରସ୍ତ ହୋଇ ଭୟରେ ପଳାଇ ଗଲେ । ଗ୍ରାମବାସୀମାନେ ଏକାପଡ଼ି ବଣ ମଧ୍ୟରେ ଗୋଟିଏ ନିରାପଦ ସ୍ଥାନରେ ବସିଲେ । ଅନେକ ଧାଁ ଦୌଡ଼, ଅନେକ କଷ୍ଟରେ କାଳ-ରାତିଟା କଟିଗଲା । ପ୍ରଭାତ ହେଲା ସୂର୍ଯ୍ୟୋଦୟ ହେଲା, ସମସ୍ତେ ମୁହଁ ଚାହାଁଚାହିଁ ହେଲେ । ଭୟଙ୍କର ବିପଦରୁ ପ୍ରାଣରକ୍ଷା ହେଲା, ଏବେ ଉପାୟ କଣ କରାଯିବ ? ଅନେକ ତର୍କ ବିତର୍କ, ଅନେକ ବାଦାନୁବାଦ ଉତ୍ତାରେ ସ୍ଥିର ହେଲା, ଆଗେ ମରହଟ୍ଟା ହାଲ ବୁଝିବା ପ୍ରୟୋଜନ । ଦୁଇ ଜଣ ସାହସୀ ଲୋକ ଅଣ୍ଟାଭିଡ଼ି ବଣ ପ୍ରାନ୍ତ ପର୍ଯ୍ୟନ୍ତ ଆସି ଗୋଟାଏ ଉଚ୍ଚ ଶାଳଗଛ ଉପରେ ଚଢି ଅନାଇଲେ । ଗ୍ରାମ ନିସ୍ତବ୍ଧ, ଜନପ୍ରାଣୀ ନାସ୍ତି । ଗ୍ରାମ ପଛ ପଟରେ ମରହଟ୍ଟା ଲୁଚି ଥାଇପାରେ । ସେହି ସାହସୀ ପୁରୁଷମାନେ ବଣ ବୁଦା ଉହାଡ଼ରେ ଲୁଚି ଲୁଚି ବୁଲି ଯାଇ ଆଉ ଗୋଟାଏ ଗଛରେ ଚଢ଼ି ଭଲ କରି ଅନାଇଲେ । ପଛ ପଟ ମଧ୍ୟ ସେହିପରି ନିର୍ଜନ । ବାହୁଡ଼ି ଲୋକମାନଙ୍କୁ ସମ୍ବାଦ ଦେଲେ । ଅତି ଧୀରେ ସାବଧାନରେ ଚାରିଆଡ଼କୁ ଚାହିଁ ଚାହିଁ ଆଗେ ପୁରୁଷ, ପଛେ ସ୍ତ୍ରୀମାନେ ବଣରୁ ବାହାରିଲେ, ଧୀରେ ଧୀରେ ଗ୍ରାମରେ ପଶିଲେ, ମରହଟ୍ଟାର ଚିହ୍ନମାତ୍ର ନାସ୍ତି । ମରହଟ୍ଟା କାହିଁ ଗଲେ ? ଘର ଦ୍ୱାର ଅଣ୍ଡାଳି କିଛି ନ

ପାଇ ଚାଲିଗଲେ । କେହି କହିଲି, ବଣରେ ଲୁଚି-ଅଛନ୍ତି, କେହି ମରହଟ୍ଟା ଅସ୍ତିତ୍ୱ ସନ୍ଦେହ କଲି । ରାୟବଣିଆ ଦୁର୍ଗକୁ ଯୁଦ୍ଧ କରିବାକୁ ଯାଇଥିବା ବିଷୟ ପ୍ରମାଣ କରାଇବା ନିମନ୍ତେ କେହି କେହି ଯୁକ୍ତି ପ୍ରୟୋଗ କରିବାକୁ ଲାଗିଲେ । କେହି କେହି କ୍ଷୁଦ୍ର କ୍ଷୁଦ୍ର ବକ୍ତୃତା କରି ପ୍ରମାଣ କରାଇଲେ, ଜଗା ଫତେସିଂହ ମା ବୁଢ଼ୀ ମିଥ୍ୟାବାଦିନୀ । ଗ୍ରାମବାସୀଙ୍କର ଏତେ ଦୁର୍ଦ୍ଦଶା, ହେଲେ ଫତେସିଂହ ମା ନିଶ୍ଚିନ୍ତ । ସାରା ରାତି ଆପଣା ଘରେ ମଶାଓଡ଼ିଶଙ୍କ ସଙ୍ଗରେ ମାମୁଲି କଳିର ତ୍ରୁଟି ହୋଇ ନାହିଁ । ତାହାଙ୍କୁ ମରହଟ୍ଟା ସମ୍ବନ୍ଧରେ ପ୍ରଶ୍ନ କରାଯାଇ-ଥିଲି ; ମାତ୍ର ସେ ଚିଡ଼ିରେ, ସେ ଗାଳି ଖାଏ । ବାଘୁଣୀ-ଟାକୁ ଚିହ୍ନିଲେ କଣ ହେବ ? ସମସ୍ତେ ତୁନି ହେଲେ ।

ବିଦେଶିନୀ ବୁଢ଼ୀ ଦୁଇଗୋଟି ତୋଠ ବରଗଛ ମୂଳରେ ବସିଛନ୍ତି । କାହିଁ ଯିବେ ? ଉପବାସ, ଚାଲିଯିବାର ଶକ୍ତି ନାହିଁ । ବରଗଛ ମୂଳରେ ଯେଉଁ ଠାରେ ଲଛମା ବସିଥିଲି, ଠିକ୍ ସେହି ସ୍ଥାନରେ ବସି ଅଛନ୍ତି । ପ୍ରଶ୍ନ କରି ଗ୍ରାମବାସୀମାନେ ସେମାନଙ୍କ ଅବସ୍ଥା ଅବଗତ ହେଲେ । ପଶ୍ଚିମଦେଶୀୟ ଜଗନ୍ନାଥଯାତ୍ରୀ—ତେଡ଼ଖାଲଠାରେ ଡକାଇତି, ସଙ୍ଗୀ ଆତ୍ମୀୟଙ୍କ ବିନାଶ, ସର୍ବସ୍ୱ ଲୁଣ୍ଠନ, ମରହଟ୍ଟା ଫୌଜ ମଧ୍ୟରେ ବନ୍ଦୀ—ବୃଦ୍ଧା ଅକର୍ମଣ୍ୟ ଥିବାରୁ ପରିବର୍ଜନ, ସମସ୍ତ ବିଷୟ ପ୍ରକାଶ କଲେ । ଗ୍ରାମର ସମସ୍ତେ କହିଲେ ଜଗା ଫତେସିଂହ ମା ନୁହନ୍ତି, ଦୟାଳୁ ଲୋକେ ସେମାନଙ୍କୁ ଘେନି ଯାଇ ଆଶ୍ୱସ୍ତ କରାଇଲେ ।

———

## -୧୮-

## ପାନୱା

ନବାବଙ୍କ ସହିତ ଯୁଦ୍ଧ କରିବା ନିମନ୍ତେ ମରହଟ୍ଟା ଫୌଜଦାର ଭାସ୍କର ପଣ୍ଡିତ ସୈନ୍ୟ ସଂଗ୍ରହରେ ନିଯୁକ୍ତ । ହଳଦିପଦାଠାରେ ବର୍ତ୍ତମାନ ତାଙ୍କର ଡେରା ପଡ଼ିଅଛି । ଅର୍ଥପିପାସା ମହା ଭୟଙ୍କରୀ । ସେହି ଅର୍ଥ ସଂଗ୍ରହ କରିବା ନିମନ୍ତେ ମାନବ ସଙ୍କଟସଙ୍କୁଳ ସ୍ଥାନକୁ ମଧ୍ୟ ଯିବାପାଇଁ ସଙ୍କୁଚିତ ହୁଏ ନାହିଁ । ସୈନ୍ୟମାନଙ୍କୁ ଆବଶ୍ୟକ ସାମଗ୍ରୀମାନ ବିକ୍ରୟ କରି ଅର୍ଥ ସଂଗ୍ରହ କରିବା ନିମନ୍ତେ ବେପାରୀମାନେ ନାନାରୂପ ଦ୍ରବ୍ୟ ଘେନି ଫୌଜ ସଙ୍ଗେ ସଙ୍ଗେ ଭ୍ରମଣ କରୁଥାନ୍ତି । ମରହଟ୍ଟା ଫୌଜ ମଧ୍ୟରେ ଗୋଟିଏ ନୂଆ ବେପାରୀ ଦେଖା ଯାଉଅଛି । ବେପାରୀଟା ପାନୱା । ଗୁଆ ଗୁଣ୍ଡି ପାନ ଧୂଆଁପତ୍ର ବିକ୍ରୟ ବ୍ୟବସାୟ । ଫୌଜ ଗୋଳମାଳ ଲୋକ ଗହଳ ମଧ୍ୟରେ କିଏ କାହାକୁ ପଚାରୁଛି ? ଆକାର ପ୍ରକାରରୁ ଜଣାଯାଏ, ଲୋକଟା ପଶ୍ଚିମ ଦେଶୀୟ । ବୟସ ଅନ୍ଦାଜ ତିରିଶ ତଳ; ହେଲେ ମୁଛ ଦାଢ଼ି ଉଠି ନାହିଁ ଅବା କ୍ଷୌରକରା । ପହିରଣ ମାଲକଚ୍ଛ, ଚାରିପାଞ୍ଚଟା ଅଙ୍ଗା ଉପରେ ଉପରେ ଲଗାଇଛି, ଭରି ଗ୍ରୀଷ୍ମରେ ମଧ୍ୟ ଅଙ୍ଗା ବୋଝ ଛାଡ଼ୁ ନାହିଁ । ମୁଣ୍ଡରେ ଗୋଟାଏ ଭାରି ଢାଳିଆ ପଗଡ଼ି । ନିଜ ଫୌଜଦାରଙ୍କ ତମ୍ବୁଠାରେ ଏହାର ବେଶି କାରବାର । କବି ବୋଲି-ଛନ୍ତି—ବିଦ୍ୟା, ବପୁ, ବାକ୍ୟ, ବସ୍ତ୍ର ଏବଂ ବିଭବ ଏହି ପଞ୍ଚ ବକାରରେ ମାନବ ଗୌରବଭାଜନ ହୁଏ । ହେଲେ “ପ୍ରାୟେଣ ସାମଗ୍ର୍ୟବିଧୌ ଗୁଣାନାଂ ପରାଙ୍ମୁଖୀ ବିଶ୍ୱସୃଜଃ ପ୍ରବୃତ୍ତିଃ ।” ସବୁ ବକାର ପ୍ରାୟ ସମସ୍ତଙ୍କ ଭାଗ୍ୟରେ ଘଟେ ନାହିଁ । ଫୌଜଦାରଙ୍କ ଶରୀରରକ୍ଷୀ ପାଇକ-ମାନଙ୍କର ପାନୱା ପ୍ରତି ଭାରି ଆଦର । ଲୋକଟା ଦେଖିବାକୁ ସୁନ୍ଦର, ଲୁଗାପଟା ବିଶେଷ ମଧ୍ୟ ସେହିପରି, କଥାଗୁଡ଼ିକ ଓଡ଼ିଆ ମିଶା ହିନ୍ଦି—ସୁମଧୁର; ବିଶେଷରେ ମାଲଗୁଡ଼ିକ ବେଶି ସସ୍ତା । କାଲି ବାକି ଦେବାକୁ ମନା ନାହିଁ । କାହାରି ଅଣ୍ଟାରେ ପଇସା ନାହିଁ, ମାହାଳିଆ ଚାରି ଖିଲି ଖାଇ ଯାଉ । ପାନୱା ସକାଳୁ ସନ୍ଧ୍ୟା ପର୍ଯ୍ୟନ୍ତ ଫୌଜଦାରଙ୍କ ଡେରା ଚାରିପାଖରେ ବୁଲି ବୁଲି ପାନ ବିକ୍ରୟ କରେ । ରାତିରେ କେଉଁଠାରେ ରହେ, କଣ

ଖାଏ, ଲୋକଙ୍କୁ ଅଗୋଚର । ଫୌଜଦାର ଉତ୍ତର ଦିଗକୁ ଯୁଦ୍ଧଯାତ୍ରା କଲେ, ତାନରା ସଙ୍ଗେ ସଙ୍ଗେ ଚାଲିଥାଏ ।

———

-୧୯-

## ମୀର ହବିବ୍

ମୀର ହବିବ୍ ନବାବ ଆଲିବର୍ଦ୍ଦିଖାଁଙ୍କର ଜଣେ ଅନ୍ୟତମ ସେନାପତି, ଜନ୍ମସ୍ଥାନ ପାରସ୍ୟ ଦେଶରେ । ମୀର ହବିବ୍ ଗୋଟିଏ ଦରିଦ୍ରର ପୁତ୍ର । ପିଲାକାଳଟା ଦାଣ୍ଡେ ଦାଣ୍ଡେ ବୁଲି ବୁଲି ଯାଇଅଛି, ପାଠଶାଳୀ ସ୍ପର୍ଶ କରି ନାହାନ୍ତି । ନାମ ଲେଖି ଜାଣି ନ ଥିବାରୁ ଏ ଉତ୍ତାରେ ବଡ଼ ହରବରରେ ପଡ଼ିଥିଲେ । ପିଆଦାପଣ କରି ପେଟପୋଷିବା ଉଦ୍ଦେଶ୍ୟରେ ହିନ୍ଦୁସ୍ଥାନକୁ ଆଗମନ ହେଲେ ତାଙ୍କର ବୁଦ୍ଧିଶକ୍ତି ଅସାଧାରଣ । ମୀର ହବିବ୍ ବଳିଷ୍ଠଶରୀର, ନିରଳସ, କାର୍ଯ୍ୟଦକ୍ଷ । ଯେ ସମସ୍ତ ଗୁଣ ଥିଲେ କମଳା ମାନବକୁ ଆଲିଙ୍ଗନ କରନ୍ତି, ତାଙ୍କ ଦେହରେ ସେ ସମସ୍ତ ଗୁଣ ବର୍ତ୍ତମାନ ଥିଲା ! ହେଲେ ମାନବମାତ୍ରକେ ଦୋଷଗୁଣଯୁକ୍ତ । ନିରବଚ୍ଛିନ୍ନ ସଦ୍‌ଗୁଣସମ୍ପନ୍ନ ବା ନିରବଚ୍ଛିନ୍ନ ଦୁର୍ଗୁଣଯୁକ୍ତ ମାନବ ଜଗତରେ ଦୁର୍ଲ୍ଲଭ । କେବଳ ଦୋଷ ଗୁଣର ତାରତମ୍ୟ ମାନବକୁ ମହତ୍ ବା ନୀଚ ବୋଲି ପରିଚିତ କରାଏ; ଦୋଷ ମଧ୍ୟରେ ମୀର ହବିବ୍ ଭୟଙ୍କର କ୍ରୋଧୀ, କ୍ଷମାଗୁଣବର୍ଜ୍ଜିତ ଏବଂ ହିଂସାପରାୟଣ ।

ମୀର ହବିବ୍ ପ୍ରଥମେ ମୁର୍ଶିଦାବାଦ ନବାବ ସରକାରରେ ପିଆଦା ପଦରେ ନିଯୁକ୍ତ ଥିଲେ । ସ୍ୱକୀୟ କାର୍ଯ୍ୟଦକ୍ଷତା ବଳରେ ଉନ୍ନତି ଲାଭ କରି ଜମାଦାର, ହାବିଲଦାର, ମନସବ୍‌ଦାର, ଅବଶେଷରେ ବେହାରର ଶାସନକର୍ତ୍ତା ପଦରେ ନିଯୁକ୍ତ ହୋଇଥିଲେ । ଶେଷୋକ୍ତ ପଦରେ ନିଯୁକ୍ତ ଥିବା ସମୟରେ ନବାବ ଦରବାର ସହିତ ମନାନ୍ତର ଘଟିଲା । ମନାନ୍ତରର କାରଣ ନବାବଙ୍କ ସେନାପତି ମୀରଜାଫର, ମୁସ୍ତଫା ଖାଁ, ଓମର ଗୋଲାମ ରସୁଲ, ହବିବୁଲା, ରହିମାନ, ଅବଦୁସ୍ ଶୋଭାନ୍ ଖାଁ ପ୍ରଭୃତି ପାରିଷଦମାନେ ଅଭିଜାତ ଏବଂ ସିଆ ଦଳଭୁକ୍ତ । ପକ୍ଷାନ୍ତରେ ମୀର ହବିବ୍ ଆଭିଜାତ୍ୟହୀନ ପୁଣି ସୁନ୍ନିଦଳପକ୍ଷପାତି । ଦରବାରରେ କିଞ୍ଚିତ୍ ଅବଜ୍ଞାତ ହେବାରୁ ଭୟଙ୍କର କ୍ରୋଧ ଜାତ ହେଲା । ପାରିଷଦମାନଙ୍କୁ ଶାସନ କରିବା ଅଥବା ସ୍ୱକୀୟ ବାହୁବଳରେ ମୁର୍ଶିଦାବାଦ ନବାବ ତକ୍ତ ଅଧିକାର କରିବା ଉଦ୍ଦେଶ୍ୟରେ ସେ ମରହଟ୍ଟା ସହିତ ମିଳିତ ହୋଇଥିଲେ । ମିର୍ ହବିବ୍ ସେହି ସମୟରେ ପାଞ୍ଚ ହଜାର ପାଇକ ସହିତ ମେଦିନୀପୁରରେ ବାସ କରୁଥିଲେ । ଖଡ଼୍‌ଗପୁରଠାରେ ଭାସ୍କର ପଣ୍ଡିତଙ୍କ ସହିତ ତାଙ୍କର ଭେଟ ହେଲା । ମିଳିତ ବର୍ଗି ତୁର୍କ ସୈନ୍ୟକୁ ଦୁଇ ଦଳରେ ବିଭକ୍ତ କରି ନବାବଙ୍କୁ ଉଭୟ ପାର୍ଶ୍ୱରୁ ଆକ୍ରମଣ କରିବା କଥା ସ୍ଥିର ହେଲା ।

———

-୨୦-

## ମୁସ୍ତାଫା ଖାଁ

ନବାବ ଫୌଜର ଦ୍ୱିତୀୟ ସେନାପତି ନାମ ମୁସ୍ତାଫା ଖାଁ; ନିବାସ ପଞ୍ଜାବ । ତାଙ୍କ ନିମ୍ନପଦସ୍ଥ କେତେଜଣ ହାବିଲ୍‌ଦାର, ଜମାଦାର ମଧ୍ୟ ପଞ୍ଜାବ-ନିବାସୀ । ଏହି ପଞ୍ଜାବୀ ମହାବୀରମାନେ ବର୍ତ୍ତମାନ ନବାବଙ୍କ ପ୍ରତି କିଞ୍ଚିତ୍ ବିମୁଖ । କାରଣ ଗନ୍ତାଘରେ ଟଙ୍କା ନିଅଣ୍ଟ ଥିବାରୁ କେତେ ମାସ ହେଲା ମାସହାରା ପାଇ ନାହାନ୍ତି । ଅନ୍ୟତର ବିଶେଷ କାରଣ, ସୈନ୍ୟ-ଶ୍ରେଣୀର ଅଗ୍ରଭାଗ ଅଧିକାର କରି ଚାଳନା କରିବା ଗୌରବର ବିଷୟ । ନବାବ ଏହି ଗୌରବାନ୍ୱିତ

ପଦଟି ମୀର୍‌ଜାଫରଙ୍କୁ ଅର୍ପଣ କରି ଅନ୍ୟାୟ କାର୍ଯ୍ୟ କରିଅଛନ୍ତି । ନ୍ୟାୟ ଅନୁସାରେ ସେହି ଗୌରବାନ୍ୱିତ ପଦଟି ମୁସ୍ତାଫାଙ୍କର ପ୍ରାପ୍ୟ ଥିଲା । ମଧ୍ୟ ସେ ବୟସ ବଂଶ, ପଦମର୍ଯ୍ୟାଦାରେ ମୀର୍‌ଜାଫର ଠାରୁ ଶ୍ରେଷ୍ଠତର ଅଟନ୍ତି । ମୁସ୍ତାଫା ଖାଁ ଏବଂ ଆଲିବର୍ଦ୍ଦିଖାଁଙ୍କ ମଧ୍ୟରେ ମନୋମାଳିନ୍ୟ ବିଷୟ ମୀର୍ ହବିବଙ୍କଠାରେ ଅବିଦିତ ନ ଥିଲା । ସେଥି ସକାଶେ ମୀର୍‌ହବିବ ସାହସ କରି ବର୍ଗି ପକ୍ଷ ଅବଲମ୍ବନ କରିବା ନିମନ୍ତେ ମୁସ୍ତାଫା ଖାଁଙ୍କୁ ପରାମର୍ଶ ଦେଇଥିଲେ । ଟାଳମଟାଳ କରି ମୁସ୍ତାଫା ଖାଁ ଏପର୍ଯ୍ୟନ୍ତ କିଛି ସ୍ପଷ୍ଟ ଜବାବ ଦେଇ ନାହାନ୍ତି । ନବାବଙ୍କ ଖାତଣି ପରିଜୟର ଏହା ଅନ୍ୟତର କାରଣ ଅଟେ ।

———

-୨୧-

## ନୈଶ ସମର

ମରହଟ୍ଟା କ୍ଷିପ୍ରକାରୀ, ସେମାନଙ୍କ କାର୍ଯ୍ୟପ୍ରଣାଳୀ ଗତିବିଧି ବିପକ୍ଷ ଅପରିଜ୍ଞାତ ଏବଂ ସେମାନେ ଆତ୍ମଗୋପନରେ ସମର୍ଥ । ଏହି ସମସ୍ତ କାରଣରୁ ବିଜୟଲକ୍ଷ୍ମୀ ସର୍ବଦା ସେମାନଙ୍କୁ ଆଲିଙ୍ଗନ କରିଥାନ୍ତି । ନିଶୀଥ ସମୟ, ଜଗତ ନିସ୍ତବ୍ଧ । ଦାମୋଦର ନଦୀକୂଳସ୍ଥ ମନ୍ହଡରେଖା ଗ୍ରାମର ଏ ବିସ୍ତୀର୍ଣ୍ଣ ପ୍ରାନ୍ତର ମଧ୍ୟରେ ନବାବ ଆଲିବର୍ଦ୍ଦି ଖାଁଙ୍କ ବିଶାଳ ବାହିନୀ ନିଦ୍ରାଦେବୀଙ୍କ କୋଡ଼ରେ ବିଶ୍ରାମ ଲାଭ କରୁଅଛନ୍ତି । କେତେକ ମୁହୂର୍ତ୍ତ ପୂର୍ବେ ନବାବଙ୍କ ଗୁପ୍ତ ଗୋଇନ୍ଦା ଖଡ଼୍ଗପୁରଠାରୁ ବାହୁଡ଼ି ଆସି ସମ୍ବାଦ ଦେଇଅଛି, ବର୍ଗିମାନଙ୍କର ଯୁଦ୍ଧଯାତ୍ରାର ଆୟୋଜନ ନାହିଁ । ନବାବ ସାହେବ ନିଶ୍ଚିନ୍ତରେ ନିଦ୍ରା ଯାଉଅଛନ୍ତି ।

ନୈଶ ଆକାଶର ନିସ୍ତବ୍ଧତା ଭଙ୍ଗ କରି ଗୁଡ଼ୁମ୍ ଗୁଡ଼ୁମ୍ ଶବ୍ଦରେ ତୋପ ପଡ଼ିଲା । ତୋପ ସଙ୍ଗରେ ତୋପ, ତୋପ ପଛରେ ତୋପ, ଅବିଶ୍ରାନ୍ତ ଅବିରଳ ଭାବରେ ତୋପ ଡାକୁଅଛି । ଆକାଶରୁ କରକାପାତ ସମାନରେ ଅସଂଖ୍ୟ ଅଗ୍ନିମୟ ଗୋଲକ ନବାବ ସୈନ୍ୟ ମଧ୍ୟରେ ବୃଷ୍ଟି ପଡ଼ୁଅଛି । ନବାବ ସ୍କନ୍ଧାବାରରେ ଭୟଙ୍କର ଦୁର୍ଯୋଗ ଏବଂ ବିଶୃଙ୍ଖଳା ଉପସ୍ଥିତ । ଅଗ୍ନିମୟ ଗୋଳାଘାତରେ ତମ୍ବୁଗୁଡ଼ିକ ଛିନ୍ନଭିନ୍ନ ହୋଇ ସ୍ଥାନେ ସ୍ଥାନେ ବହ୍ନିରାଶି ପ୍ରଜ୍ୱଳିତ ହେଉଅଛି । ଭୟବିହ୍ୱଳ ହସ୍ତୀ, ଅଶ୍ୱ, ଉଷ୍ଟ୍ର, ଗର୍ଦ୍ଦଭ, ବଳୀବର୍ଦ୍ଦ ପଶୁମାନେ ବନ୍ଧନରଜ୍ଜୁ ଛିନ୍ନ କରି ଅନ୍ଧକାର ମଧ୍ୟରେ ପ୍ରଚଣ୍ଡବେଗରେ ଧାବିତ ହେଉଅଛନ୍ତି । ପଶୁ ପଦାଘାତରେ ବହୁ ସୈନ୍ୟ ବିନଷ୍ଟ । ନବାବ ଏବଂ ସେନାପତିମାନେ ଜାଗରିତ ହୋଇ ବିଷମ ବିଭ୍ରାଟ ପ୍ରତ୍ୟକ୍ଷ କଲେ, ଅପ୍ରତ୍ୟାଶିତ ଅତର୍କିତ ଭାବରେ ସହସା ଉପସ୍ଥିତ ଭୟଙ୍କର ଦୁର୍ଯୋଗ ସମୟରେ ମଧ୍ୟ ଧୈର୍ଯ୍ୟଚ୍ୟୁତ ହେଲେ ନାହିଁ, ସାଧ୍ୟାନୁସାରେ ସୈନ୍ୟ ଶୃଙ୍ଖଳାବଦ୍ଧ କରାଇବାକୁ ଲାଗିଲେ । ବିପକ୍ଷ ତୋପନିର୍ଗତ ଧୂମରାଶି ନୈଶ ଅନ୍ଧକାରକୁ ନିବିଡ଼ତର କରି ପକାଇଅଛି । ଶତ୍ରୁ କେଉଁ ସ୍ଥାନରେ, ତାହାର ସ୍ଥିରତା ନାହିଁ । କେବଳ ଶବ୍ଦକୁ ଲକ୍ଷ୍ୟ କରି ଗୋଲନ୍ଦାଜମାନେ ବୃଥା ତୋପ ଚଳାଇବାକୁ ଲାଗିଲେ । ପ୍ରତି ନିମେଷରେ ନବାବ ପକ୍ଷର ଅପର୍ଯ୍ୟାପ୍ତ ଅପଚୟ ଘଟୁଅଛି । ବର୍ଗିବର୍ଗ ଅଦୃଷ୍ଟଭାବରେ ରହିଅଛନ୍ତି । ମରହଟ୍ଟାମାନେ ରାତ୍ରି ଅନ୍ଧକାରରେ ପ୍ରଚ୍ଛନ୍ନ ଭାବରେ ଆସି ନଦୀର ବିପରୀତ କୂଳସ୍ଥିତ ଉଚ୍ଚ ଉଚ୍ଚ ବୃକ୍ଷଡାଳରେ ତୋପ ସମସ୍ତ ବନ୍ଧନପୂର୍ବକ ନବାବ ସୈନ୍ୟକୁ ଲକ୍ଷ୍ୟ କରି ଚଳାଉଥାନ୍ତି । ଅନ୍ୟ ବର୍ଗିମାନେ ନଦୀ କାନ୍ଥି ଉହାଡ଼ରେ ଶରୀର ଗୋପନ କରି ନୀରବଭାବରେ ରହିଥାନ୍ତି । ଏଥିକୁ ନବାବଚାଳିତ ଅଗ୍ନି ଗୋଳକ ସେମାନଙ୍କର କିଛିମାତ୍ର ଅନିଷ୍ଟ ସାଧନରେ ସମର୍ଥ ହେଲା ନାହିଁ । ଅବଶେଷରେ ତୁର୍କ ସୈନ୍ୟମାନେ ଆତ୍ମପକ୍ଷୀୟ ମୃତ ଭୂପତିତ ପ୍ରାଣୀମାନଙ୍କୁ ପଦରେ ଦଳନ କରି ଛତ୍ରଭଙ୍ଗପୂର୍ବକ ପଳାୟନ କରିବାକୁ ଲାଗିଲେ

ପଳାୟନ କାର୍ଯ୍ୟଟା ମଧ୍ୟ ନିର୍ବିପଦରେ ସାଧିତ ହେଲା ନାହିଁ । ମୀର ହବିବ୍ ଏକ ଅଂଶ ବର୍ଗିସୈନ୍ୟ ସହିତ ପଶ୍ଚାଦ୍ଭାଗସ୍ଥିତ ମାର୍ଗ ଅବରୋଧ କରି ବସିଥିଲେ । ସେହି ଦିଗକୁ ପଳାୟିତ ତୁର୍କମାନଙ୍କୁ ଦିବାଲୋକ ଦେଖିବାକୁ ହେଲା ନାହିଁ । କ୍ରମଶଃ ଏହି ଭୟଙ୍କର ନିଶା ଅବସାନ ହେଲା; ଶେଷ ରାତିର ଈଷତ୍ ଅନ୍ଧକାର ଆକାଶକୁ ଆଚ୍ଛନ୍ନ କରି ରଖିଅଛି । ନବାବ ଚାହିଁ ଦେଖିଲେ, ଆତ୍ମପକ୍ଷ ଜନପ୍ରାଣିଶୂନ୍ୟ । ଏକାକୀ ହସ୍ତୀ ଉପରେ ବସିଅଛନ୍ତି, ପତାକାବାହୀ ଦୁଇଗୋଟି ବିଶାଳକାୟ କରୀ ସମ୍ମୁଖରେ ଦଣ୍ଡାୟମାନ । ହସ୍ତୀମାନେ ସୁଶିକ୍ଷିତ, ଅବିଶ୍ରାନ୍ତ କୁଳିଶନାଦୀ ତୋପ ଶବ୍ଦରେ ମଧ୍ୟ ହସ୍ତୀପକଶାସନରେ ବିଚଳିତ ହୋଇ ନାହାନ୍ତି ।

ନବାବଙ୍କ ଈଦୃଶ ଶୋଚନୀୟ ଅବସ୍ଥା ଦେଖି ନିକଟର ବିପରୀତ ଦିଗସ୍ଥିତ ବୃକ୍ଷାରୋହୀ ସଶସ୍ତ୍ର ଦୁଇଶତ ବର୍ଗି 'ବୋମ୍ ବୋମ୍ ମହାଦେଓ' ଚିତ୍କାର କରି ସ୍ୱଳ୍ପତୋୟା ନଦୀ ଅତିକ୍ରମପୂର୍ବକ ଧାଇଁ ଆସିଲେ । ନବାବ ଅସହାୟ, ଏକାକୀ, ବିପକ୍ଷ ବହୁସଂଖ୍ୟକ, ବିନାଶ ଅନିବାର୍ଯ୍ୟ । ହେଲେ "ଯାହାକୁ ରଖିବେ ଅନନ୍ତ, କି କରିପାରେ ବଳବନ୍ତ ?" ନବାବଙ୍କ ସମ୍ମୁଖବର୍ତ୍ତୀ ପତାକାବାହୀ ଦୁଇଗୋଟି ହସ୍ତୀଙ୍କ ବିଶାଳ ଦଂଷ୍ଟ୍ରରେ ଦଶହସ୍ତ ଲୌହଶୃଙ୍ଖଳ ବେଷ୍ଟିତ ଥାଏ । ହସ୍ତୀମାନେ ସେହି ଶୃଙ୍ଖଳକୁ ଝମ୍ ଝମ୍ କରି ଗୁଲୁଥାନ୍ତି । ଏଥିକୁ ସେମାନଙ୍କ ମନରେ ଆନନ୍ଦ ଜାତ ହୁଏ, ଦୀର୍ଘ ମାର୍ଗ ପର୍ଯ୍ୟଟନରେ ମଧ୍ୟ କ୍ଳାନ୍ତ ବୋଧ କରନ୍ତି ନାହିଁ । ପତାକାବାହୀ ହସ୍ତୀମାନେ ଅପରିଚିତ ଲୋକର ଗନ୍ଧ ପାଇ ଏବଂ ବିପକ୍ଷ ନିକ୍ଷିପ୍ତ ବର୍ଚ୍ଛାଘାତରେ ଉନ୍ମତ୍ତବତ୍ ହୋଇଗଲେ । ଦନ୍ତସଂଲଗ୍ନ ଶୃଙ୍ଖଳକୁ ଥୋରହସ୍ତରେ ଧରି ଏପରି ପ୍ରଚଣ୍ଡଭାବରେ ବୁଲାଇବାକୁ ଲାଗିଲେ ଯେ, ସେହି ଶୃଙ୍ଖଳାଘାତରେ ବିପକ୍ଷମାନେ ଧରାଶାୟୀ ହୋଇ ପଡ଼ିଲେ । ସେହି ସମୟରେ ଆହୁରି ମଧ୍ୟ ଗୋଟିଏ ବିଚିତ୍ର ଘଟଣା ସଂଘଟିତ ହେଲା । ହସ୍ତୀଦ୍ୱୟ ସମ୍ମୁଖବର୍ତ୍ତୀ ଶତ୍ରୁନାଶରେ ନିଯୁକ୍ତ ଥିବାବେଳେ ଚାରିଜଣ ବଳିଷ୍ଠ ବର୍ଗି ଅନ୍ୟ ପାର୍ଶ୍ୱରୁ ବୁଲି ଆସି ନବାବଙ୍କ ଉପରେ ବର୍ଚ୍ଛାଘାତ କଲେ । ନବାବ ଅଳିବର୍ଦ୍ଦି ସ୍ଥିର ଚକିତଭାବରେ ସେମାନଙ୍କୁ ଚାହିଁ ରହିଥାନ୍ତି— ଦେଖିଲେ, ଜଣେ ମରହଟ୍ଟା ତାହାଙ୍କ ପ୍ରତି ଲକ୍ଷ୍ୟ ରଖି ପ୍ରବଳ ବେଗରେ ବର୍ଚ୍ଛା ନିକ୍ଷେପ କରିବା ସମୟରେ ଗୋଟିଏ ନିପୁଣ ସ୍ଥିରହସ୍ତନିକ୍ଷିପ୍ତ ତୀକ୍ଷ୍ଣମୁନ ବର୍ଚ୍ଛା ଆସି ବିପକ୍ଷର ଦକ୍ଷିଣ ନାଡି ଭେଦ କରି ଯିବାରୁ ସେ ଲୋକଟା ବର୍ଚ୍ଛାସହିତ ହଠାତ୍ ତଳେ ଗଡ଼ିଗଲା । ସେହି ସମୟରେ ଅନ୍ୟ ତିନିଜଣ ବର୍ଚ୍ଛାଧାରୀ ବର୍ଗି ଭୀଷଣ ବେଗରେ ନବାବଙ୍କ ନିକଟକୁ ଧାଇଁ ଆସିଲେ । ଏମାନଙ୍କର ଅନ୍ୟ ଦିଗକୁ ଦୃଷ୍ଟିପାତ ନାହିଁ, କେବଳ ହସ୍ତୀପୃଷ୍ଠସ୍ଥ ନବାବଙ୍କୁ ଲକ୍ଷ୍ୟ କରି ଧାଇଁଅଛନ୍ତି । ଅଦ୍ଭୁତ ଘଟଣା ! ଦୈବପ୍ରେରିତ ତୁଲ୍ୟ ଜଣେ ବଳିଷ୍ଠ ଯୁବକ ନବାବଙ୍କ ଆରୂଢ଼ ହସ୍ତୀର ପଶ୍ଚାଦ୍ଭାଗରୁ ଧାଇଁ ଆସି ନିମେଷ ମଧ୍ୟରେ ସେହି ବର୍ଗି ତିନିଜଣଙ୍କର ମସ୍ତକ ଛେଦନ କରି ପକାଇଲା । ସମସ୍ତ ଶତ୍ରୁ ବିନଷ୍ଟ ହୋଇଅଛନ୍ତି, ନବାବ ନିରାପଦ । ମହାରାଷ୍ଟ୍ର ସୈନ୍ୟ ମଧ୍ୟରେ ଏ ବିଷୟ ପ୍ରଚାର ହେବା ପୂର୍ବେ ନବାବ ପଳାୟନ କଲେ । ପଳାୟନ ସମୟରେ କୃତଜ୍ଞ ନବାବ ସେହି ଅପରିଚିତ ପ୍ରାଣରକ୍ଷାକାରୀ ଯୁବକଟିକୁ ସ୍ୱକୀୟ ହସ୍ତୀପୃଷ୍ଠରେ ଆପଣା ପାର୍ଶ୍ୱରେ ବସାଇ ନେବାକୁ ବିସ୍ମୃତ ହେଲେ ନାହିଁ । ଏତେବେଳକୁ ଦିବାଲୋକ ପ୍ରକାଶିତ ହେଲାଣି । ଧୀର ସୁଶୀତଳ ସମୀରଣ ପ୍ରବାହିତ ହେଉଅଛି । ସମବେତ ତିନିଗୋଟି ବିଶାଳକାୟ କରୀ ଥୋରହସ୍ତ ଓ ପୁଚ୍ଛ ଉତ୍ତୋଳନପୂର୍ବକ ପ୍ରଚଣ୍ଡ ବେଗରେ ଧାଇଁଅଛନ୍ତି । ନବାବ ଅନାଇ ଦେଖିଲେ, ସମସ୍ତ ପ୍ରାନ୍ତର ଶୁଶ୍ରୂମୟ, ବୃକ୍ଷପତିତ ତାଳଫଳ ପରି ଅସଂଖ୍ୟ ନରମସ୍ତକ ବିଲୁଣ୍ଠିତ ହେଉଅଛି । ହାହାକାର, କ୍ରନ୍ଦନ, ବିଳାପରେ ପ୍ରାନ୍ତର ପରିପୂର୍ଣ୍ଣ । ସ୍ଥାନେ ସ୍ଥାନେ ସଦ୍ୟଃପତିତ ଉଷ୍ଣ ରୁଧିରରେ ଭୂମି କର୍ଦ୍ଦମମୟ ହୋଇ ଯାଇଅଛି । ଗୋଳାଘାତ-ପିଷ୍ଟ ପ୍ରାଣୀଶରୀରର ମାଂସରାଶି ସ୍ଥାନେ ସ୍ଥାନେ ଗ ।

ହୋଇଅଛି, ମନୁଷ୍ୟ ବା ପ୍ରାଣୀ ଆକାରର ଚିହ୍ନ ମାତ୍ର ନାହିଁ । ଆହତ ଭୂପତିତ ଥୋକେ ଲୋକ ଭୂମି ଭର ଦେଇ ଉଠିବାକୁ ଚେଷ୍ଟା କରୁଅଛନ୍ତି; ମାତ୍ର ଉତ୍ଥାନ-ଶକ୍ତିରହିତ । କେହି ଦୟାମୟ ପ୍ରଭୁଙ୍କ ନାମ, କେହି ଜ୍ଞାତିବନ୍ଧୁ ନାମଧରି ଚିତ୍କାର କରୁଅଛନ୍ତି । ବହୁସଂଖ୍ୟକ ଲୋକ ପାଣି ପାଣି ବୋଲି ଡାକ ପାରୁଅଛନ୍ତି । କାହିଁ ବା ମନୁଷ୍ୟ, ଅଶ୍ୱ, ହସ୍ତୀ ଶବରାଶି ଉପର୍ଯ୍ୟୁପରି ଗଦାହୋଇ ପଡ଼ିଅଛନ୍ତି । ଆହତ ଭୂଲୁଣ୍ଠିତ ପଶୁମାନଙ୍କ ପ୍ରବଳ ପଦାଘାତରେ ଭୂପତିତ ଅର୍ଦ୍ଧମୃତ ଲୋକମାନେ ପ୍ରାଣତ୍ୟାଗ କରୁଅଛନ୍ତି । ଭୟତ୍ରସ୍ତ, ହସ୍ତୀପକ-ଅଙ୍କୁଶାଘାତ-ଅସହିଷ୍ଣୁ କରୀସମୂହ ଆହତ ଲୋକମାନଙ୍କୁ ପଦରେ ଦଳିତ କରି ପ୍ରଚଣ୍ଡ ବେଗରେ ଧାବମାନ ହେଉଅଛନ୍ତି । ମନୁଷ୍ୟ ଉଦର ଓ ମସ୍ତକଗୁଡ଼ାକ ଫଟ୍ ଫଟ୍ ମଡ୍ ମଡ୍ କରି ଦଳି ହୋଇ ଯାଉଅଛି । ନବାବ ସାହେବ ତଳକୁ ଚାହିଁ ପାରିଲେ ନାହିଁ, ଆତ୍ମପକ୍ଷୀୟ ଲୋକମାନଙ୍କ ଦୁର୍ଦ୍ଦଶା ଦେଖି ଆଖି ବୁଜି ପକାଇଲେ ।

ନବାବଙ୍କ ପଳାୟନର ଅବ୍ୟବହିତ ପରେ ବର୍ଗିବର୍ଗ ଯୁଦ୍ଧକ୍ଷେତ୍ରରେ ଉପସ୍ଥିତ ହେଲେ । ସେହି ସମୟରେ ସେମାନେ ଅନୁଧାବନ କରିଥିଲେ ନବାବଙ୍କ ରକ୍ଷାର ଉପାୟ ନ ଥିଲା । ମାତ୍ର କେତେଗୁଡ଼ିଏ କାରଣରୁ ସେମାନେ ପଶ୍ଚାଦ୍ଧାବନରୁ ନିବୃତ୍ତ ହେଲେ । ପ୍ରଥମତଃ, ସେମାନେ ଯୁଦ୍ଧକ୍ଷେତ୍ରରେ ଉପସ୍ଥିତ ହେବା ସମୟକୁ ନବାବ ଦୃଷ୍ଟିପଥରୁ ବହିର୍ଭୂତ ହୋଇଥିଲେ; ଏଥିକୁ କେଉଁ ଦିଗକୁ ନବାବ ପଳାୟନ କରିଅଛନ୍ତି, ସ୍ଥିର କରିପାରିଲେ ନାହିଁ । ଦ୍ୱିତୀୟତଃ, ମୀର ହବିବ୍ ନିକଟରେ ନ ଥିବାରୁ ତାଙ୍କ ସହିତ ପରାମର୍ଶ ବିନା ଭବିଷ୍ୟତ ପ୍ରତି କର୍ତ୍ତବ୍ୟ ନିରୂପଣ କରିବାକୁ ଅସମର୍ଥ ହେଲେ । ତୃତୀୟତଃ, ନବାବଙ୍କ ପରିତ୍ୟକ୍ତ ପର୍ବତ-ପ୍ରମାଣ ଖାଦ୍ୟରାଶି, ଅପର୍ଯ୍ୟାପ୍ତ ବହୁମୂଲ୍ୟ ସମ୍ପତ୍ତି, ଅସଂଖ୍ୟ ପଶୁ ପ୍ରାପ୍ତ ହୋଇ ବର୍ଗିବର୍ଗ ଏପରି ଉଲ୍ଲସିତ ହୋଇଥିଲେ ଯେ, ନବାବଙ୍କ ଅନୁସରଣ ସେମାନଙ୍କ ମନରେ ଉଦିତ ହେବାକୁ ସୁଦ୍ଧା ଅବସର ପ୍ରାପ୍ତ ହେଲା ନାହିଁ ।

———

-୨୨-

## ତାହାର ନାମ ବାଦଲ ସିଂହ

ବହୁ କ୍ରୋଶ ମାର୍ଗ ଅତିକ୍ରମ କରି ନବାବ ସାହେବ ସ୍ୱପକ୍ଷୀୟ ପାଇକମାନଙ୍କ ସହିତ ମିଳିତ ହେବାକୁ ରାତ୍ରି ଉପସ୍ଥିତ ହୋଇଥିଲା । ପଥଶ୍ରାନ୍ତ ପାଇକମାନେ ଏକ ଅନାବୃତ ପ୍ରାନ୍ତର ମଧ୍ୟରେ ଅନାହାରରେ ପଡ଼ିଅଛନ୍ତି । ସେମାନଙ୍କର ଧ୍ରୁବ ବିଶ୍ୱାସ ଥିଲା, ନବାବ ସାହେବ ବନ୍ଦୀ ବା ବିନଷ୍ଟ । ଏଥିକୁ ସେମାନେ ନିତାନ୍ତ ମ୍ରିୟମାଣ ହୋଇ ପଡ଼ିଥିଲେ । ବର୍ତ୍ତମାନ ନବାବଙ୍କୁ ସମ୍ମୁଖରେ ଦେଖି "ଆଲ୍ଲା ହୋ ଆକ୍‌ବର" ବୋଲି ଚିତ୍କାର କରିବାକୁ ଲାଗିଲେ ।

ନବାବ ସାହେବ ହସ୍ତୀରୁ ଓହ୍ଲାଇ ଗୋଟିଏ ବୃକ୍ଷ ମୂଳରେ ବସିଅଛନ୍ତି । ଜଗତ୍ ଅନ୍ଧକାରାବୃତ, ତୁର୍କମାନେ ନିଦ୍ରାରେ ଅନାବୃତ ହୋଇ ତଳେ ପଡ଼ି ଗଲେଣି । ନବାବଙ୍କ ନେତ୍ରରେ ନିଦ୍ରା ନାହିଁ । ସେହି ପ୍ରାଣଦାତା ଯୁବକଟି ପାର୍ଶ୍ୱରେ ବସିଅଛି । ନିଶିଯାପନ ନିମନ୍ତେ ନବାବ ସାହେବ ସେହି ଯୁବକଟି ସହିତ କଥୋପକଥନ କରୁଅଛନ୍ତି । ନବାବଙ୍କ ପ୍ରଶ୍ନାନୁସାରେ ସେହି ଯୁବକ ଆତ୍ମ-ଇତିହାସ ଏହିପରି ବର୍ଣ୍ଣନ କଲା—

ତାହାର ନାମ ବାଦଲ ସିଂହ, ପିଲାକାଳରୁ ପିତୃ-ହୀନ, ବିଧବା ମାତା ସହିତ ଶ୍ୱଶୁର ଘରେ ଥିଲା । ଶ୍ୱଶୁର ଧୌଁକଲ ସିଂହ ଜଣେ ସାମାନ୍ୟ ଜମିଦାର, ନିବାସ ରୋହିଲଖଣ୍ଡ; ଶ୍ୱଶୁର, ଶାଶୁ, ସ୍ତ୍ରୀ ଓ ଅନ୍ୟାନ୍ୟ ଲୋକଙ୍କ ସହିତ ଜଗନ୍ନାଥ ଦର୍ଶନ ନିମନ୍ତେ ଯାଉଥିଲେ ।

ଗୋଡ଼ଖାଲଠାରେ ବର୍ଗିମାନେ ସମସ୍ତଙ୍କୁ ବଧ କରି ସର୍ବସ୍ୱ ଲୁଣ୍ଠନ କରି ନେଇଅଛନ୍ତି । ସେ ମଧ୍ୟ ବିଷମ ଆହତ ହୋଇଥିଲା, ମାତ୍ର ଆୟୁର୍ବଳ ଥିବାରୁ ରକ୍ଷା ପାଇଅଛି । ଡକାଇତି ପରଦିନ ତାହାର ଚେତନା ବସିବାରୁ କଷ୍ଟେ ମଷ୍ଟେ ଯାଇ ନିକଟବର୍ତ୍ତୀ ଗୋଟିଏ ଗ୍ରାମରେ ଆଶ୍ରୟ ନେଲା । ଦୟାଳୁ ଗ୍ରାମବାସୀଙ୍କ ଯତ୍ନ ଏବଂ ଚିକିତ୍ସାରେ ଆରୋଗ୍ୟ ଲାଭ କରିଅଛି । ସେ ଇଷ୍ଟଦେବ ଏକଲିଙ୍ଗଙ୍କ ନାମରେ ଶପଥ କରିଅଛି, ବର୍ଗି ସର୍ଦ୍ଦାର ଭାସ୍କର ପଣ୍ଡିତକୁ ସ୍ୱହସ୍ତରେ ବଧ କରି ତାହା ରୁଧିରରେ ପିତୃତର୍ପଣ କରିବ, ନଚେତ୍ ଆତ୍ମଘାତୀ ହେବ । ହେଲେ ନିଃସହାୟ ନିଃସମ୍ବଳ, ଏଣେ ବିପକ୍ଷ ବିଷମ କ୍ଷମତାଶାଳୀ । ଏହି ଅସାଧ୍ୟ ସାଧନ ନିମନ୍ତେ ନବାବ ସାହେବଙ୍କ ସହାୟତାର ପ୍ରୟୋଜନ । ନବାବଙ୍କଠାରେ ପରିଚିତ ହେବା କିମ୍ବା ଅନୁଗ୍ରହ ପ୍ରାପ୍ତ ହେବା ତାହା ପରି ଦରିଦ୍ର ପକ୍ଷରେ ଅସମ୍ଭବ; ମାତ୍ର ଦୃଢ଼ ଯତ୍ନ ଅସାଧ୍ୟ ସାଧନ କରେ, ଏହି ବିଶ୍ୱାସରେ ସେ କେତେଦିନ ହେଲା ଦିବାରାତ୍ର ନବାବ ସାହେବଙ୍କର ଅବିଚ୍ଛେଦ ଅନୁସରଣ କରି ଅବକାଶ ଅନ୍ୱେଷଣ କରୁଥିଲା । ଅଧ୍ୟବସାୟୀ ଲୋକକୁ ଭଗବାନ୍ ସହାୟ ହୁଅନ୍ତି, ତାହାର ଯତ୍ନ ଆଂଶିକ ସଫଳ ହୋଇଅଛି ।

ଯୁବକ ପ୍ରାଣଦାତା, ଏଥକୁ ହିତକାରୀ ବନ୍ଧୁ, ପୁଣି ତାହାର ଲକ୍ଷ୍ୟ ନବାବଙ୍କ ପକ୍ଷରେ ନିତାନ୍ତ ଅନୁକୂଳ । ନବାବ ସାହେବ ଅତ୍ୟନ୍ତ ଆନନ୍ଦିତ ହୋଇ ତତ୍‌କ୍ଷଣାତ୍ ତାହାକୁ ହଜାରେ ପାଇକ ଉପରେ ହାବିଲଦାର ପଦରେ ନିଯୁକ୍ତ କଲେ । ରାଜପ୍ରିୟ ଲୋକେ ସାଧାରଣରେ ମାନନୀୟ । ନବାବ ଫୌଜ ମଧ୍ୟରେ ବାଦଲ ସିଂହ ଅଳ୍ପକାଳ ମଧ୍ୟରେ ବିଶେଷ ପରିଚିତ ହୋଇଗଲା । ବର୍ଗି ଖଡ଼୍‌ଗାଘାତରେ ତାହାର ଗୋଟିଏ କାନ କଟି ଯାଇଥିଲା; ଏଣୁ ସମସ୍ତେ ତାହାକୁ କାନକଟା ହାବିଲଦାର ବୋଲି ଡାକନ୍ତି ।

———

–୨୩–

## ନବାବ ଏବଂ ମୁସ୍ତାଫା ଖାଁ

'ମନ୍ଦ ଭାଗ୍ୟ ବେଲକୁ ବିଧାତା ଅବଳକୁ ନୃପତି ଦାଣ୍ଡରେ ଭିକାରୀ ।' ବଙ୍ଗ, ବିହାର ଓଡ଼ିଶାର ସୁବାଦାର ହଜରତ୍ ଆଲବର୍ଦ୍ଦି ଖାଁ ବର୍ତ୍ତମାନ ଉପଦ୍ରୁତ, ପଳାୟିତ । ମହିଷରେଖା କ୍ଷେତ୍ରରେ ନବାବଙ୍କ ସମସ୍ତ ସମ୍ପତ୍ତି ସହିତ ତମ୍ବୁ ମଧ୍ୟ ବର୍ଗିହସ୍ତଗତ । ଉଲବାଡିଆ ନାମକ ସ୍ଥାନରେ ଗୋଟିଏ ଅତି କ୍ଷୁଦ୍ର ପୁରାତନ ଛିନ୍ନ ମହାଶ୍ୱ-ବାସ ଅଯୋଗ୍ୟ ତମ୍ବୁ ମଧ୍ୟରେ ନବାବ ରହିଅଛନ୍ତି । ଅନ୍ୟାନ୍ୟ ସେନା ସେନାପତିମାନଙ୍କର ଅନାବୃତ ଭୂଶଯ୍ୟା । ନବାବ ସାହେବ ଅତି କଷ୍ଟରେ ପ୍ରାଣାଧିକ ପ୍ରିୟତମ ବାଳକ ସିରାଜଉଦ୍ଦୌଲା ସକାଶେ ଦୁଇଖଣ୍ଡି ରୋଟି ସଂଗ୍ରହ କରିଥିଲେ, ସେଥିରୁ ଅର୍ଦ୍ଧଖଣ୍ଡ ଏବଂ ଏକ ବଦନା ପାଣିରେ କ୍ଷୁଧା ନିବୃତ୍ତି କରିଅଛନ୍ତି । ରାତ୍ରି ଏକ ପ୍ରହର ସମୟରେ ହରକରା ସମ୍ବାଦ ଦେଲା, ଶତ୍ରୁ-ମାନେ ଅନୁସରଣ କରି ଆସି ଏକ କ୍ରୋଶ ଦୂରରେ ଡେରା ଗାଡ଼ି କରି ଅଛନ୍ତି । ଏହା ମଧ୍ୟ ଗୁପ୍ତ ଭାବରେ ସମ୍ବାଦ ପାଇଲେ ଯେ, ଅଧିକାଂଶ ସେନା, ସମସ୍ତ ସେନାପତି ବିଦ୍ରୋହୀ ହୋଇ ଗଲେଣି, ଆଉ ରକ୍ଷା ନାହିଁ, ନିଧନ ନିଶ୍ଚିତ । ନିଦ୍ରାଗତ ବାଳକ ସିରାଜ ଉଦ୍ଦୌଲାକୁ ଅନାଇଲେ । ତାହାଙ୍କ ନେତ୍ରରୁ କେତେ ବିନ୍ଦୁ ଲୋତକ ବହି ପଡ଼ିଲା । ସେହି ମୁହୂର୍ତ୍ତରେ ମରହଟ୍ଟା ଆକ୍ରମଣ କରିଥିଲେ ନବାବଙ୍କ ବିନାଶ ଅନିବାର୍ଯ୍ୟ ହୋଇଥାନ୍ତା । ହେଲେ ତାହାଙ୍କ ସୌଭାଗ୍ୟ ବଳ, ଦୁଇଗୋଟି କାରଣରୁ ସେମାନେ ଆକ୍ରମଣ କଲେ ନାହିଁ ।

ପ୍ରଥମ– ମୀର ହବିବ୍‌ଙ୍କ ମନ୍ତ୍ରଣାରେ ନବାବ ପକ୍ଷର କେତେଜଣ ସେନାପତି ବିଦ୍ରୋହୀ ହୋଇଅଛନ୍ତି, ସେମାନେ ବର୍ଗିପକ୍ଷ ଅବଲମ୍ବନ କଲେ ବିନା ଯୁଦ୍ଧ, ବିନା ରକ୍ତପାତରେ ନବାବ ପରାସ୍ତ ହେବେ । ମାତ୍ର

ସୁଦ୍ଧାରମ୍ଭ କଲେ ଏହି ସନ୍ଧିଜନିତ ସୁଯୋଗଟି ହସ୍ତ-ବହିର୍ଭୂତ ହେବ ।

ଦ୍ୱିତୀୟ—ନବାବ ସାହେବ ଉପାୟାନ୍ତର ନ ଦେଖି ସନ୍ଧିପ୍ରସ୍ତାବ କରି ବର୍ଦ୍ଧମାନର ଦେବାନ ଜାନକୀରାମଙ୍କୁ ଭାସ୍କର ପଣ୍ଡିତଙ୍କ ନିକଟକୁ ପଠାଇଥିଲେ । ସେଥିରେ ମରହଟ୍ଟା ପକ୍ଷରେ ଅନେକ ଅର୍ଥଲାଭ ହେବାର ପ୍ରଲୋଭନ ମଧ୍ୟ ଥିଲା । ହେଲେ ଭାସ୍କର ପଣ୍ଡିତ ସନ୍ଧି ସର୍ତ୍ତରେ ଯେ ସମସ୍ତ ପ୍ରସ୍ତାବ କରିଅଛନ୍ତି, ତାହା ନବାବଙ୍କ ପକ୍ଷରେ ନିତାନ୍ତ ଗ୍ଲାନିକର । ଯାହା ହେଉ, ଭାସ୍କର ପଣ୍ଡିତ ସେଥିର ଗୋଟିଏ ଶେଷ ଉତ୍ତର ପାଇବାକୁ ଆଶା କରି ରହିଅଛନ୍ତି ।

ନୀରବ ନିଶୀଥ, ଜଗତ ନିସ୍ତବ୍ଧ, ଦିଗନ୍ତ ତମସାବୃତ—ବିଶ୍ୱବ୍ରହ୍ମାଣ୍ଡ ଅନ୍ଧକାରସମୁଦ୍ରରେ ନିମଗ୍ନ । ନବାବ ଆଲିବର୍ଦ୍ଦିଖାଁଙ୍କ ହୃଦୟ ତତୋଽଧିକ ଅନ୍ଧକାରମୟ । ନେତ୍ରରେ ନିଦ୍ରା ନାହିଁ । ଶିବିର ଉଦ୍ଦୌଲାର ଶଯ୍ୟାପାର୍ଶ୍ୱରେ ବସି ଚିନ୍ତା କରୁଅଛନ୍ତି, ଚିତ୍ତ ବିଚଳିତ, ଚିନ୍ତାର ଇୟତ୍ତା ନାହିଁ, କୌଣସି ସିଦ୍ଧାନ୍ତରେ ଉପନୀତ ହୋଇ ପାରୁନାହାନ୍ତି । ନବାବ ତମ୍ବୁ ମଧ୍ୟରୁ ମୁହଁ ଗଳାଇ ଦେଖିଲେ—ସମସ୍ତ ଦିଗ ଅନ୍ଧକାରପୂର୍ଣ୍ଣ, ଅନ୍ଧକାରସମୁଦ୍ର ଉପରେ ଶୁକ୍ଳ ଫେନଖଣ୍ଡନିଭ କ୍ଷୁଦ୍ର ବୃହତ୍ ଅନନ୍ତ ନକ୍ଷତ୍ର ଭାସୁଅଛନ୍ତି । ସହସ୍ର ମାନବର ନିଶ୍ୱାସ ଶବ୍ଦ ଈଷତ୍ ଅନୁଭୂତ ହେଉଅଛି । ଦୂରକୁ ଅନାଇ ଦେଖିଲେ, ପ୍ରାୟ ଏକ କ୍ରୋଶ ଦୂର ପ୍ରାନ୍ତର ମଧ୍ୟରେ କେତେଗୋଟି କ୍ଷୀଣାଲୋକ ଦୃଷ୍ଟ ହେଉଅଛି । ଗୋଟିଏ ଲୋହିତବର୍ଣ୍ଣ ବୃହତ୍ ଆଲୋକ ଊର୍ଦ୍ଧ୍ୱାଧୋଭାବରେ ଘୂର୍ଣ୍ଣିତ ହେଉଅଛି । ପ୍ରବୀଣ ନବାବ ବୁଝିଲେ, ଏହା ବର୍ଗି ସ୍କନ୍ଧାବାରର ଅଭୟସୂଚକ ସାଙ୍କେତିକ ଚିହ୍ନ । ବର୍ଗି ଅଭୟପ୍ରଦାନପୂର୍ବକ ନବାବ ସୈନ୍ୟମାନଙ୍କୁ ଆତ୍ମପକ୍ଷ ଅବଲମ୍ବନ କରିବା ନିମନ୍ତେ ଆହ୍ୱାନ କରୁଅଛି । ବର୍ଗିପକ୍ଷ ଅବଲମ୍ବନ କରି ଉପସ୍ଥିତ ବିପଦରୁ ଉଦ୍ଧାର ପାଇବାକୁ ସର୍ବସ୍ୱାନ୍ତ, ଶ୍ରମକ୍ଳାନ୍ତ କ୍ଷୁତ୍‌ପିପାସାର୍ତ୍ତ ଅଧିକାଂଶ ସୈନ୍ୟ ଓ ସେନାପତିଙ୍କର ଇଚ୍ଛା; ମାତ୍ର ପବିତ୍ର ଇସଲାମ୍‌ଧର୍ମାବଲମ୍ବୀ ଅନ୍ନଦାତା ନବାବଙ୍କୁ ପରିତ୍ୟାଗ ପୂର୍ବକ ବିଧର୍ମୀ କାଫେର ପକ୍ଷ ଅବଲମ୍ବନ କରିବା ନିତାନ୍ତ ଗ୍ଲାନିକର କଥା ଅଟେ । ଅଧିକନ୍ତୁ ଉପରିସ୍ଥ ସେନାପତିମାନେ ବର୍ଗିପକ୍ଷ ଅବଲମ୍ବନ କରି ନ ଥିବାରୁ ସୈନ୍ୟମାନେ ଇତସ୍ତତଃ ହୋଇ ବିପକ୍ଷପକ୍ଷାବଲମ୍ବୀ ହୋଇ ପାରି ନାହାନ୍ତି ।

ତମ୍ବୁଦ୍ୱାରଠାରେ ନବାବ ସ୍ଥିର ଭାବରେ ଛିଡ଼ା ହୋଇ ମରହଟ୍ଟା ସ୍କନ୍ଧାବାରକୁ ଲକ୍ଷ୍ୟ କରି ଚିନ୍ତା କଲେ, ବୋଧକରୁଁ, ଆମ୍ଭକୁ ଆଉ ଦିବାଲୋକ ଦେଖିବାକୁ ହେବ ନାହିଁ । ଏହି ଘୋର ଅନ୍ଧକାର ମଧ୍ୟରେ ବର୍ଗି ପ୍ରଚ୍ଛନ୍ନ ଭାବରେ ଆସି ଆମ୍ଭକୁ ବିନାଶ କରିବ । ନୈରାଶ୍ୟସୂଚକ ନିଶ୍ୱାସ ପକାଇ ମନ ମଧ୍ୟରେ ସର୍ବ ଶକ୍ତିମାନ୍, ଦୟାମୟ, ବିପଦଭଞ୍ଜନପ୍ରଭୁଙ୍କ ଶ୍ରୀଚରଣ ଧ୍ୟାନ କରିବାକୁ ଲାଗିଲେ । ସ୍ୱର୍ଗୀୟ ଆଦେଶରୂପେ ଚକିତ ଭାବରେ ସେନାପତି ମୁସ୍ତାଫାଙ୍କ ନାମ ତାଙ୍କର ମନ ମଧ୍ୟରେ ଖେଳିଗଲା । ନବାବ ଚିନ୍ତା କଲେ, ମୁସ୍ତାଫା ସାହସୀ, ରଣକୁଶଳୀ, ପ୍ରବୀଣ, ବହୁଦର୍ଶୀ, ମଧ୍ୟ ତାଙ୍କ ସୈନ୍ୟମାନେ ସୁଶିକ୍ଷିତ, ଅନୁଗତ, କର୍ତ୍ତବ୍ୟପରାୟଣ । ମରହଟ୍ଟା ସୈନ୍ୟ ରଣନିପୁଣ ସତ୍ୟ, ହେଲେ ମୁସ୍ତାଫାର ସମକକ୍ଷ ନୁହନ୍ତି; କାରଣ ସେମାନଙ୍କ ମଧ୍ୟରେ ଶୃଙ୍ଖଳା ନାହିଁ । ବର୍ତ୍ତମାନ ମୁସ୍ତାଫା ବିନା ଆମ୍ଭର ଗତ୍ୟନ୍ତର ନାହିଁ । ଏପରି ମୁସ୍ତାଫାକୁ ଅସମ୍ମାନ କରି ଗର୍ହିତ କାର୍ଯ୍ୟ କରିଅଛୁଁ । ବର୍ତ୍ତମାନ ମୁସ୍ତାଫା ମେହେରବାନି କରି ସହାୟ ହେଲେ ପରିତ୍ରାଣର ସମ୍ପୂର୍ଣ୍ଣ ସମ୍ଭାବନା । ହେଲେ ମୁସ୍ତାଫା କି ବର୍ତ୍ତମାନ ଆମ୍ଭ କଥା ଶୁଣିବ ? ଅସମୟରେ ପୁତ୍ର ଯେ ପର ହୁଏ । ଦେଖାଯାଉ, ଥରେ ଭଲରୂପେ ତାହାକୁ ଧରୁଁ । "ଧନ କାର୍ପଣ୍ୟ ସେବା ଫଳେ, କବା ଅସାଧ୍ୟ ମହୀତଳେ ?" ଏହି କଥା ମନରେ କରି

ନବାବ କିଞ୍ଚିତ୍ ଆଶ୍ୱସ୍ତ ହେଲେ, ତାହାଙ୍କ ଦେହରେ ନୂତନରୂପେ ବଳ ସଞ୍ଚାରିତ ହେଲା । ସେତେବେଳେ ଏ ଯାମାର ତୃତୀୟ ପ୍ରହର ଅତୀତପ୍ରାୟ । ନବାବ ନିଦ୍ରିତ ନାତି ସିରାଜ ଉଦ୍ଦୌଲାଙ୍କୁ ଉଠାଇଲେ, ବାମ ହସ୍ତରେ ତାହାର ଦକ୍ଷିଣ ହସ୍ତ ଧାରଣ କରି ସେହି ନିବିଡ଼ ଅନ୍ଧକାର ମଧ୍ୟରେ ମୁସ୍ତାଫା ତମ୍ବୁକୁ ଲକ୍ଷ୍ୟ କରି ବାହାରିଲେ । ମୁସ୍ତାଫା ମଧ୍ୟ ଘୋଡ଼ଘାସି-ନିବାସର ଉପଯୁକ୍ତ ଗୋଟିଏ ତମ୍ବୁ ମଧ୍ୟରେ ଶୟନ କରି ରହିଛନ୍ତି । ମୁସ୍ତାଫା ନିଦ୍ରାଭିଭୂତ, ଆଲିବର୍ଦ୍ଦି ଶଯ୍ୟାପାର୍ଶ୍ୱରେ ବସି ତାହାଙ୍କୁ ଜାଗରିତ କଲେ । ସୁପ୍ତୋତ୍ଥିତ ମୁସ୍ତାଫା ଅନ୍ନଦାତା ପ୍ରଭୁ-ସଖା-ସହାୟ ବଙ୍ଗ ବିହାର ଓଡ଼ିଶାର ନବାବ ଆଲିବର୍ଦ୍ଦି ଖାଙ୍କୁ ଦୌହିତ୍ର ସହିତ ଆପଣା ପାର୍ଶ୍ୱରେ ମ୍ଳାନଭାବରେ ଦଣ୍ଡାୟମାନ ଥିବାର ଦେଖି ଆଶ୍ଚର୍ଯ୍ୟାନ୍ୱିତ ହେଲେ । କିଞ୍ଚିତ୍ ଅପ୍ରତିଭ ମଧ୍ୟ ହେଲେ । ଗୋଟିଏ ଉଚ୍ଚାସନରେ ନବାବ ଏବଂ ସିରାଜ ଉଦ୍ଦୌଲାଙ୍କୁ ବସାଇ ହାତଯୋଡ଼ି ଜଣାଇଲେ, "ଜାହାଁପନା ! ଏ ଗୋଲାମ ପ୍ରତି କି ଆଜ୍ଞା ହେଉଅଛି ?" ନବାବ ସାଶ୍ରୁନୟନରେ ଅତି କରୁଣ ଭାଷାରେ କହିଲେ, "ଦୋସ୍ତ ମୁସ୍ତାଫା ! ଆଉ କଣ କହିବି ? ମୋ କହିବାର କଥା ସବୁ ଶେଷ ହୋଇଅଛି । ଶୁଣ ଦୋସ୍ତ ! ମନୁଷ୍ୟର ପ୍ରାଣଠାରୁ ପ୍ରିୟତର ଜଗତରେ ଆଉ କିଛି ନାହିଁ । ହେଲେ ମୋ ଜୀବନ ବର୍ତ୍ତମାନ ମୋ ପକ୍ଷରେ ନିତାନ୍ତ ଭାରବତ୍ ହୋଇ ପଡ଼ିଅଛି । ମୋ ପକ୍ଷରେ ମୃତ୍ୟୁ ବାଞ୍ଛନୀୟ । ଦୋସ୍ତ ! ମୁଁ ବେଶ୍ ଜାଣୁଅଛି, ଆଉ କହିବାକୁ ହେବ ନାହିଁ, ତୁମ୍ଭେ ମୋ ପ୍ରତି ବିରକ୍ତ, ଯେବେ ମୋର ବିନାଶ କାମନା କର, ଭଲ କଥା—ସେଥି ସକାଶେ ଏତେ ହରବର କିପାଇଁ—ଏତେ ସନ୍ତାସନ୍ତ କିଆଁ ? ଏହିଠାରେ ଶେଷ କରିଦିଅ । ସତ କଥା, ମୁଁ ତୁମ୍ଭଠାରେ ଅପରାଧୀ, ମୋ ପାପର କି ଅନ୍ୟରୂପ ପ୍ରାୟଶ୍ଚିତ୍ତ ନାହିଁ ? ମୁସଲମାନଠାରୁ କି ମୁସଲମାନ କ୍ଷମା ପାଇବାର ଯୋଗ୍ୟ ନୁହେ ? ଦୋସ୍ତ ! ପବିତ୍ର ଇସଲମ୍ ଧର୍ମକୁ ସ୍ମରଣ କର, ମୁସଲମାନ ହୋଇ ମୁସଲମାନର ଗୌରବ ରକ୍ଷା କର । ମୁଁ ଆଉ ସନ୍ତାପିତ ହୋଇ ପାରିବି ନାହିଁ । ( ନବାବ ଆପଣା ହସ୍ତର ତରବାରି ମୁସ୍ତାଫା ସମ୍ମୁଖକୁ ପକାଇ ଦେଇ କହିଲେ ) ଆଉ କିଛି ଆବଶ୍ୟକ ନାହିଁ, ମୁସ୍ତାଫା ! ଡେରି ହେଲାଣି, ମୁଁ ତୁମ୍ଭ ଆଗରେ ଅଛି, ଏହି ମୋ ନୟନ-ପ୍ରତିମା ସିରାଜ ଉଦ୍ଦୌଲା ତୁମ୍ଭ ଆଗରେ ରହିଅଛି, ଦୁଇ ଜଣଙ୍କୁ ଶେଷ କରିଦିଅ, ବିଧର୍ମୀ କାଫେର ହାତଯାଏ ରଖନାହିଁ; ମାତ୍ର ହେ ମୁସ୍ତଫା, ହେ ଦୋସ୍ତ ! ଆମ୍ଭମାନଙ୍କ ବହୁକାଳର ଦୋସ୍ତଦାରି ଯେବେ ତୁମ୍ଭ ମନରେ ଥାଏ—ମୁଁ ଯେବେ କେବେ କିଛି ତୁମ୍ଭର ଉପକାର କରିଥାଏ, ଅଥବା କିଛି ନ ହେଉ, ତୁମ୍ଭ ନିଜ ଉଦାରତା ଗୁଣରେ ମୋହର ଅପରାଧ ଯେବେ ମାର୍ଜନ କରିପାର. ଜାତୀୟ ଗୌରବ ରକ୍ଷା କରିବାକୁ ଯେବେ ତୁମ୍ଭର ଇଚ୍ଛା ଥାଏ, ତେବେ ଆସ, କୋରାଣ ସରିଫ୍ ସ୍ପର୍ଶ କରି ବୋଲ, ମୋତେ ତ୍ୟାଗ କରିବ ନାହିଁ । ମୋର ବୋଲିବାର ଏତିକି ମାତ୍ର । ବର୍ତ୍ତମାନ ଭାସ୍କର ପଣ୍ଡିତ ସହିତ କିରୂପ ବ୍ୟବହାର କରିବାକୁ ହେବ, ମୋତେ ଉପଦେଶ ଦିଅ । ତୁମ୍ଭେ ମୋ ଅଭିପ୍ରାୟ ଜାଣ । ବର୍ଗିସନ୍ଧି ବିଷୟରେ ଯେ ସମସ୍ତ ଗ୍ଳାନିକର ପ୍ରସ୍ତାବ କରିଅଛି, ସେଥିରେ ସମ୍ମତ ହେବା ମୋପକ୍ଷରେ କଷ୍ଟକର—ମୁଁ କିଆଁ, ମୁସଲମାନ ପକ୍ଷରେ ତାହା ଅସହ୍ୟ ।"

ନବାବଙ୍କ କାରୁଣ୍ୟରେ ମୁସ୍ତାଫା ବିଚଳିତ ହେଲେ । ତାଙ୍କ କଠିନ ପ୍ରାଣ ବିଚଳିତ ହୋଇଗଲା । କି ଉତ୍ତର ଦେବେ, କିଛି ସ୍ଥିର କରି ପାରିଲେ ନାହିଁ । କେତେ ମୁହୂର୍ତ୍ତ କାଷ୍ଠପ୍ରତିମା ପରି ଛିଡ଼ାହୋଇ ରହିଲେ । ଏ ଉତ୍ତରେ ବିନୀତ ଭାବରେ କହିଲେ—"ପ୍ରଭୋ ! କ୍ଷମା କରନ୍ତୁ, କିଛିକାଳ ଅବକାଶ ଦେଉନ୍ତୁ, ସ୍ୱଦେଶୀୟ କର୍ମଚାରୀଙ୍କ ସହିତ ପରାମର୍ଶ କରି ଏ ବିଷୟର ଉତ୍ତର ଦେବି । ସେମାନଙ୍କ ସଙ୍ଗରେ ବିଚାର ନ କରି

କିଛୁ କଥା କହି ପାରୁନାହିଁ ।” ନବାବ ବ୍ୟଗ୍ର ଭାବରେ କହିଲେ, “ହେଉ, ତାହା ହେଉ, ସେହିପରି କର, ମୋର ଏଥିରେ କିଛୁ ଆପତ୍ତି ନାହିଁ ।”

ମୁସ୍ତାଫା ଖାଁ ତତ୍‌କ୍ଷଣାତ୍ ଲୋକ ପଠାଇ ହାବିଲ-ଦାର ସମସେର ଖାଁ, ଜମାଦାର, ସର୍ଦ୍ଦାର ଖାଁ, ମନ୍‌ସବଦାର ଅବଦୁଲ ଶୋଭାନ ଖାଁ ଅବଦୁଲ ରହିମାନ ପ୍ରଭୃତିଙ୍କୁ ଡକାଇ ଆଣିଲେ । ସେମାନେ ଉପସ୍ଥିତ ହୁଅନ୍ତେ ମୁସ୍ତାଫା ଖାଁ ନବାବଙ୍କୁ ଅନାଇ କହିଲେ, “ହଜ୍‌ରତ ଜାହାଁପନା ! ମୋତେ ଯେ ସମସ୍ତ କଥା କହୁଅଛନ୍ତି, ଏମାନଙ୍କୁ ମଧ୍ୟ ସେହି ସମସ୍ତ କଥା ବୋଲନ୍ତୁ ।” ନବାବ ଇତିପୂର୍ବେ ମୁସ୍ତଫାକୁ ଯେ ସମସ୍ତ କଥା କହିଥିଲେ, ସେମାନଙ୍କୁ ମଧ୍ୟ ସେହିପରି କହିଲେ । ଯୋଦ୍ଧାବର୍ଗ ସେ ସମସ୍ତ କଥା ଶୁଣି ନିରୁତ୍ତର ହୋଇ ବସିଲେ । ମୁସ୍ତାଫା କହିଲେ— “ଭାଇମାନେ ! ଉତ୍ତର ଦିଅ ।”

ସମସ୍ତଙ୍କ ଅନୁମତି ଗ୍ରହଣ କରି ସମସେର ଖାଁ, ସରଦାର ଖାଁ କହିଲେ, “ଆମ୍ଭମାନେ କଣ କହିବୁଁ ? ଆପଣ ହେଲେ ଜାତିର ସର୍ଦ୍ଦାର, ଆମ୍ଭମାନଙ୍କର ସେନାପତି, ଆପଣଙ୍କ ମତରେ ଆମ୍ଭମାନଙ୍କର ମତ ଜାଣିବେ, ଆପଣଙ୍କ ଆଜ୍ଞା କେବେହେଁ ଅବଜ୍ଞା କରି ନାହୁଁ, ବର୍ତ୍ତମାନ ମଧ୍ୟ ସେହି କଥା ।”

ଶରଣାଗତ ଅନ୍ନଦାତା ନବାବଙ୍କ କାତର ବଚନ ଶୁଣି ଏବଂ ତାହାଙ୍କ ନେତ୍ରରୁ ଅନର୍ଗଳ ପ୍ରବାହିତ ଅଶ୍ରୁଧାରା ଦେଖି ଅତି କଠୋର ହୃଦୟ ନରଶୋଣିତ-ପିପାସୁ ସମରକୁଶଳୀ ମୁସ୍ତାଫାଙ୍କ ହୃଦୟ ବିଗଳିତ ହୋଇଗଲା । ସମସେର ଖାଁ, ସର୍ଦ୍ଦାର ଖାଁ, ଅବଦୁଲ ଶୋଭନ ପ୍ରଭୃତି ସ୍ୱଦେଶୀୟ ଯୋଦ୍ଧାମାନଙ୍କୁ ସମ୍ବୋଧନ କରି କହିଲେ, “ଭାଇମାନେ ! ଯାହା ହେବାର ହୋଇ ଯାଇଛି, ପୁରୁଣା କଥା ପାସୋରି ପକାଅ । ଭାଇମାନେ, ମୁଁ ସରଳ ହୃଦୟରେ ପବିତ୍ର କୋରାଣ ସରିଫ୍ ସ୍ମରଣ କରି କହୁଛି, ଆଜିଠାରୁ—ଏହି ମୁହୂର୍ତ୍ତଠାରୁ, ମୋହର ଏବଂ ମୋହର ପୁତ୍ର କନ୍ୟାଙ୍କର ମସ୍ତକ ପ୍ରଭୁପଦରେ ବିକ୍ରୟ କଲି । ଆଜିଠାରୁ ମୋ ଦେହର ପ୍ରତ୍ୟେକ ରକ୍ତବିନ୍ଦୁରେ ପ୍ରଭୁଙ୍କର ଅଧିକାର । ଏହାପ୍ରଭୁଙ୍କ ଦତ୍ତକ ସମ୍ପତ୍ତି । ଭାଇମାନେ ! ମୁଁ ଦୃଢ଼ରୂପେ କହୁଅଛି, ଏହା ମୋହର ହୃଦୟର ଅନ୍ତସ୍ଥଳର କଥା ଜାଣିବେ । ଭାଇମାନେ, ତୁମ୍ଭମାନଙ୍କ ପରି ଶଏଜଣ ବୀର ଯଦି ପାଏଁ, ସେହି ଶହେ ଖଣ୍ଡ ତରବାରିରେ ଗୋଟିଏ ରାଜ୍ୟ ଦଖଲ କରିପାରେ । ଭାଇମାନେ, ନିରାଶ ହୁଅ ନାହିଁ । ବର୍ତ୍ତମାନ ମଧ୍ୟ କୋଡ଼ିଏ ହଜାର ସବାର ହାଜର ଅଛନ୍ତି । ସେମାନଙ୍କୁ ଚଳାଇ ନେଲେ ଶତ୍ରୁ-ମାନଙ୍କୁ ଖଣ୍ଡ ବିଖଣ୍ଡ କରି ପକାଇବେ । ଭାଇମାନେ ! ପୂର୍ବେ କହିଅଛି, ପୁନର୍ବାର କହୁଅଛି, ଗତ କଥା ବିସ୍ମୃତ ହୁଅ । ମୁଁ ମନର କଥା କହିଲି ତୁମ୍ଭମାନଙ୍କ କଥା ଫେଇ ବୋଲ ।” ମୁସ୍ତଫାଙ୍କ କଥା ଶୁଣି ସମସ୍ତେ ଏକବାକ୍ୟରେ କହିଲେ, “ଭାଇ ସାହେବ, ସେନାପତି ସାହେବ ! ଆମ୍ଭମାନଙ୍କର ଅଧିକ କିଛୁ ବୋଲିବାର ନାହିଁ । ଆପଣଙ୍କ ମତରେ ଆମ୍ଭମାନଙ୍କ ମତ ଜାଣିବେ । ଏହା ନିଶ୍ଚୟ କଥା । ଆପଣଙ୍କ ଏବଂ ମୁନିବ ନବାବ ସାହେବଙ୍କ ବିଶ୍ୱାସ ସକାଶେ କହୁଅଛୁଁ, ଏଥିର ସାକ୍ଷୀ କୋରାଣ ସରିଫ ।”

ତୃଷାର୍ତ୍ତ ସୁଶୀତଳ ଜଳଧାରା ପ୍ରାପ୍ତ ହେଲା, ଅମୃତଭାଣ୍ଡ କ୍ଷୁଧାର୍ତ୍ତର ହସ୍ତଗତ ହେଲା, ଭଗ୍ନପୋତ ଅକୂଳ ସମୁଦ୍ରରେ ଭାସମାନ ନାବିକ କୂଳ ପ୍ରାପ୍ତ ହେଲା, ନିବିଡ଼ ଅମାନିଶାରେ ସହସା ଚନ୍ଦ୍ରୋଦୟ ହେଲା । ନବାବ ଆଶ୍ୱସ୍ତ ହେଲେ । ମନ ମଧ୍ୟରେ ନବାବ ଚିନ୍ତାକଲେ ମୁସ୍ତାଫା ନିଷ୍ଠୁର ସତ୍ୟ, ମୁସ୍ତାଫା ଭୟଙ୍କର କ୍ରୋଧୀ ସତ୍ୟ; ମାତ୍ର ମୁସ୍ତାଫା ବୀର, ମୁସ୍ତାଫା ଯୋଦ୍ଧା ଏବଂ ସତ୍ୟବାଦୀ । ଇସଲାମ ଧର୍ମ ପ୍ରତି ତାହାର ଦୃଢ଼ ବିଶ୍ୱାସ । ମାନବ ଜାତିର ସୁମହତ୍ ଗୁଣ ସ୍ୱଜାତି-ବାତ୍ସଲ୍ୟ ସ୍ୱଜାତି ଗୌରବ

ରକ୍ଷଣରେ ମୁସ୍ତାଫା ତତ୍ପର । ଏ ଉତ୍ତରରେ ମେଲଣି ଦେଇ ନବାବ ବିଶ୍ରାମ ନିମନ୍ତେ ସିରାଜଙ୍କୁ ଧରି ଡେରାକୁ ବାହୁଡ଼ିଲେ । ମୁସ୍ତାଫା ସଙ୍ଗେ ସଙ୍ଗେ ଆସି ଡେରା ଦ୍ୱାରରେ ନବାବଙ୍କୁ ଛାଡ଼ିଗଲେ । ଆମ୍ଭେମାନେ ବୋଲିବାକୁ ବିସ୍ମୃତ ହୋଇଅଛୁଁ, ସେହି କାନକଟା ହିନ୍ଦୁ ହାବିଲଦାର ନବାବଙ୍କ ଶରୀରରକ୍ଷକ ରୂପେ ଛାୟାସ୍ୱରୂପ ସଙ୍ଗେ ସଙ୍ଗେ ରହିଅଛି ।

———

-୨୪-

## ମନ୍ତ୍ରଣା

ନିଶା ଅବସାନ, ସୂର୍ଯ୍ୟୋଦୟ ପୂର୍ବେ ନବାବ ଉଠି କରି ପ୍ରାତଃକାଳିକ ଉପାସନା ସମାପ୍ତ କଲେ । ପୁନଶ୍ଚ ମନରେ ସଂଶୟ ଭଞ୍ଜନ ନିମନ୍ତେ ଆଜିମାବାଦର ଉଜୀର ଗୋଲାମ କାଦରଙ୍କୁ ମୁସ୍ତାଫା ନିକଟକୁ ପଠାଇଲେ । ଉଜୀର ବାହୁଡ଼ି ଆସି ସମ୍ବାଦ ଦେଲେ, ମୁସ୍ତାଫାଙ୍କ ପ୍ରତିଜ୍ଞା ଅଟଳ ।

ନବାବଙ୍କ ଡେରାରେ ସମର-ସମିତି ଆହୂତ ହେଲା । ମୁସ୍ତାଫା ସମସେର ଖାଁ, ସର୍ଦ୍ଦାର ଖାଁ, ମୀରଜାଫର, ଅବଦୁସ୍ ଶୋଭନ ଖାଁ, ଅବଦୁଲ କାଦର, ବାଦଲ ସିଂହ ଓରଫେ କାନକଟା ହାବିଲଦାର ଏବଂ ସ୍ୱୟଂ ନବାବ ଉପସ୍ଥିତ । ସର୍ବସଂଖ୍ୟା ଆଠଜଣ । ନବାଗତ ଜଣେ କାଫେରକୁ ଗୁପ୍ତ ମନ୍ତ୍ରଣା ସ୍ଥଳରେ ଉପସ୍ଥିତ ଥିବାର ଦେଖି ତୁର୍କ ସେନାପତିମାନେ ପରସ୍ପର ମୁହଁ ଚୁହାଁଚୁହିଁ ହେଲେ । ନବାବ ସାହେବ ସେମାନଙ୍କର ଅଭିପ୍ରାୟ ଜାଣି ଗତ ଦିବସର ସମସ୍ତ ଘଟନା ବିସ୍ତାରିତ ରୂପେ ବର୍ଣ୍ଣନା କଲେ । ତୁର୍କ ସେନାପତିମାନେ ହୃଦୟଙ୍ଗମ କଲେ, ମହିଷରେଖାଠାରେ ବାଦଲ ଉପସ୍ଥିତ ନ ଥିଲେ ନବାବଙ୍କୁ ବର୍ତ୍ତମାନ ଏଠାରେ କେହି ଦର୍ଶନ କରିବାକୁ କ୍ଷମ ହୁଅନ୍ତା ନାହିଁ । ବାଦଲସିଂହ ସମସ୍ତଙ୍କୁ ସଲାମ କରି କହିଲେ, "ଖାଁ ସାହେବମାନେ ! ଶୁଣ, ମୋ ହୃଦୟର କଥା ଶୁଣ, ମୋହର ପ୍ରତିଜ୍ଞା କଥା ଶୁଣ । ଆପଣମାନଙ୍କ ହିସାବରେ ମୁଁ ଜଣେ କାଫେର, ମାତ୍ର ଖାଁ ସାହେବମାନେ ! କାଫେରଙ୍କର ମଧ୍ୟ ଏକ ସର୍ବଶକ୍ତିମାନ ଈଶ୍ୱର ଅଛନ୍ତି, ସେହି ଈଶ୍ୱର ଅନ୍ୟ କେହି ନୁହନ୍ତି, ତୁମ୍ଭମାନଙ୍କର ଆଲ୍ଲାତାଲ୍ଲା । ମୁଁ ସେହି ଅଲ୍ଲାତାଲ୍ଲାଙ୍କ ନାମଧରି ଆପଣମାନଙ୍କ ନିକଟରେ ଶରଣ ପଶିଲି ଆପଣମାନଙ୍କଠାରୁ ସାହାଯ୍ୟ ପାଇବାପାଇଁ ଶରଣ ପଶିଲି । ମୁଁ ଜମିଦାର ପୁତ୍ର, ଅର୍ଥର ଭିଖାରୀ ନୁହେ । ଆଜି ପଦସମ୍ଭ୍ରମ—ମୋହର ପାର୍ଥିବ ସମସ୍ତ ବାସନା ସମାପ୍ତ ହୋଇଅଛି । ( ବାଦଲ ସିଂହ ଆପଣା ବସ୍ତ୍ର ମଧ୍ୟରୁ ଖଣ୍ଡିଏ ତୀକ୍ଷ୍ଣ ଛୁରିକା ଦେଖାଇ କହିଲେ ) ମୁଁ ଈଶ୍ୱରଙ୍କ ନାମ ଧରି କୁଳଦେବତାଙ୍କ ନାମ ଧରି ପ୍ରତିଜ୍ଞା କରୁଅଛି, ପିତୃହତ୍ୟାକାରୀ, ମାତୃଘାତୀ ପାପିଷ୍ଠ ବର୍ଗି ସର୍ଦ୍ଦାରର ହୃଦୟ ରକ୍ତରେ ପିତୃତର୍ପଣ କରି ତପସ୍ୟା ନିମନ୍ତେ ହିମାଳୟ ଆଶ୍ରମକୁ ଯିବି । ଯେବେ କାର୍ଯ୍ୟ ସାଧନରେ ଅକୃତକାର୍ଯ୍ୟ ହୁଏଁ, ଏହି ଅସ୍ତ୍ରଦ୍ୱାରା ଆତ୍ମଘାତୀ ହେବି । ଖାଁ ସାହେବମାନେ ! ମୁଁ ପିଲା, ଆପଣମାନେ ପିତୃତୁଲ୍ୟ । ଆଜିଠାରୁ ଆପଣମାନେ ମୋହର ଧର୍ମପିତା ହେଲେ । ଏହି ଆଶୀର୍ବାଦ କରନ୍ତୁ, ଆତ୍ମକୃତ ପ୍ରତିଜ୍ଞା ପାଳନରେ ଯେବେ କିଞ୍ଚିତ୍ ମାତ୍ର ଶୈଥିଲ୍ୟ କରେଁ, ତେବେ ଯେପରି ମୋ ମସ୍ତକରେ ବଜ୍ରପାତ ହେବ, ମୁଁ ଯେମନ୍ତ ଅନନ୍ତ ନରକ-ଭୋଗୀ ହେବି ।"

ବାଦଲ ସିଂହ ଆପଣା ପିତୃମାତୃନାମ ସ୍ମରଣ ସମୟରେ ସବିଶେଷ କରୁଣ ଭାବରେ କଥା କହୁଥିଲା । ହଠାତ୍ ତାହାର ଭାବାନ୍ତର ଉପସ୍ଥିତ ହେଲା । ପଦାହତ ଭୁଜଙ୍ଗପରି ନିଶ୍ୱାସ ତ୍ୟାଗ କରିବାକୁ ଲାଗିଲା । ତାହା ନେତ୍ରରୁ ଅଗ୍ନି ସ୍ଫୁଲିଙ୍ଗ ଜାତ ହେବାପରି ଜଣାଗଲା । କାହାର ନାମ ମନରେ ଉଦିତ ହେଲା ? ହୃଦୟେଶ୍ୱରୀ

କଥା ? ଶତ୍ରୁ ତାଙ୍କୁ ହରଣ କରିଅଛି, ଏହା ପ୍ରତ୍ୟେକ ପୁରୁଷ ପକ୍ଷରେ, ବିଶେଷତଃ କ୍ଷତ୍ରିୟ ପକ୍ଷରେ ଅସହ୍ୟ ।

ସମସ୍ତ କଥା କର୍ଣ୍ଣଗୋଚର କରି ଖାଁ ସାହେବମାନେ ବାଦଲସିଂହଙ୍କୁ ଆଶ୍ୱାସ ଦେଇ ପାଖରେ ବସାଇଲେ ।

ସଭାର କାର୍ଯ୍ୟାରମ୍ଭ ହେଲା ।

ପ୍ରଶ୍ନ—ବର୍ଗି ସହିତ ସନ୍ଧି ବା ବିଗ୍ରହ, ବର୍ତ୍ତମାନ କ୍ଷେତ୍ରରେ କେଉଁ ମାର୍ଗ ଅବଲମ୍ବନୀୟ ?

ମୁସ୍ତାଫା କହିଲେ—"କାଫେର ସହିତ ମିଳିତ ହେବା ମୋହର ମଧ୍ୟ ଇଚ୍ଛାବିରୁଦ୍ଧ । ହେଲେ ବିଚାର କରି ଦେଖନ୍ତୁ, ବର୍ତ୍ତମାନ ଅବସ୍ଥାରେ ଯୁଦ୍ଧ ଆମ୍ଭମାନଙ୍କ ପକ୍ଷରେ ଅନୁକୂଳ କି ନାହିଁ ? ସୈନ୍ୟମାନଙ୍କୁ ଯୁଦ୍ଧ କ୍ଷେତ୍ରକୁ ଆହ୍ୱାନ ମୃତ୍ୟୁମୁଖକୁ ପ୍ରେରଣ ମାତ୍ର । ସେମାନେ ଧାଇଁ ଧାଇଁ ଥକି ପଡ଼ିଛନ୍ତି । ଆହାର କଥା ତେଣିକି ଥାଉ, ତୃଷା ସମୟରେ ଜଳବିନ୍ଦୁ ମାତ୍ର ପ୍ରାପ୍ତ ହୋଇ ନାହାନ୍ତି । ଏଣେ ସମସ୍ତ କମାଣ, ସମସ୍ତ ଗୋଳା ବାରୁଦ ଶତ୍ରୁ ହସ୍ତଗତ । ଦେହ ସାମର୍ଥ୍ୟହୀନ, ତହିଁରେ ପୁଣି ଅସ୍ତ୍ରାଭାବ । ଏ କ୍ଷେତ୍ରରେ ଯୁଦ୍ଧର ଆୟୋଜନ ବିନାଶର କାରଣ ବୋଲି ଆମ୍ଭର ବିଶ୍ୱାସ । ବର୍ତ୍ତମାନ ଫୌଜ ମଧ୍ୟରେ ପାଇକ ଲସ୍କର ପ୍ରଭୃତି ଲକ୍ଷାବଧି ଲୋକ ରହିଅଛନ୍ତି । ସେମାନଙ୍କପାଇଁ ହଠାତ୍ ଖାଦ୍ୟସଂଗ୍ରହ କରିବା ନିତାନ୍ତ ସହଜ କଥା ନୁହେ । ଅଗ୍ରପଶ୍ଚାତ୍ ଚିନ୍ତାକରି ମୁଁ ସ୍ଥିର କରିଅଛି, ସହସା ସମରାରମ୍ଭ ଅନୁଚିତ ।"

ନବାବ କହିଲେ—ଭାସ୍କର ପଣ୍ଡିତ ଜୋରେ ଟଙ୍କା ପୁଣି ଚୌଥ ସରଦେଶମୁଖୀ ସକାଶେ ବର୍ଦ୍ଧମାନ ମେଦିନୀପୁର ଦୁଇଜିଲ୍ଲା ଲେଖି ନେବାକୁ କହୁଅଛି । ଏହା ମଧ୍ୟ ତାହାର ପ୍ରସ୍ତାବ ଯେ, ମିର୍ ହବିବ୍ ପୂର୍ବବତ୍ ବେହାରର ଶାସନକର୍ତ୍ତା ହୋଇ ରହିବ । ଏଣେ ଦେଖନ୍ତୁ, ବାଲାଜି ରାଓ ହୁଲକାର ଚୌଥ ସକାଶେ ବେହାର ଅଞ୍ଚଳରେ ଉତ୍ପାତ ଆରମ୍ଭ କଲାଣି, ଭାସ୍କର ପଣ୍ଡିତଙ୍କୁ ଟଙ୍କା ଦେବାର ଶୁଣିଲେ ସେ ମଧ୍ୟ ଭଲକରି କାନ୍ଦ ପାତି ବସିବ । ଗନ୍ତାଘର କଥା ତ ଜାଣ, ଯେଉଁ ପାଇକମାନେ ପ୍ରାଣଦେବାକୁ ଆସିଛନ୍ତି, ନ ଖାଇ ନ ପିଇ ଖରା ନାହିଁ, କାକର ନାହିଁ ଉଦୁଆଁ ପଦାରେ ପଡ଼ି କଷ୍ଟ ସହୁଅଛନ୍ତି, ସେମାନଙ୍କ ପରିବାରମାନେ କି ଉପବାସରେ ମରିବେ ?

ମୁସ୍ତାଫା କହିଲେ—କେବେହେଁ ନୁହେଁ, କେବେଁ ନୁହେ, କଦାଚ ଆମ୍ଭେ ଏପରି ପ୍ରସ୍ତାବରେ ସମ୍ମତ ହୋଇ ନ ପାରୁ । ମୁସଲମାନ ବୀରମାନେ ଉପବାସରେ ବଲ ବଲ କରି ଚାହିଁ ରହିଥିବେ, ଆଉ କାଫେର ଆସି ଠେଙ୍ଗା ଦେଖାଇ ଥଳି ବାନ୍ଧି ନେଇଯିବ, ଏହା ନିତାନ୍ତ ଅସହ୍ୟ ।

ଅନେକ ତର୍କ ବିତର୍କ ଉତ୍ତାରେ ସ୍ଥିର ହେଲା, କୌଣସି ରୂପେ ଟାଳଟୁଳ କରି ଦୁଇ ଚାରିଦିନ ଯୁଦ୍ଧ ସ୍ଥଗିତ ରଖାଯାଉ । ରସଦ ତୋପ ଗୋଳା ବାରୁଦ ଆଣିବା ନିମନ୍ତେ ଦ୍ରୁତଗାମୀ ଦୂତ ମୁର୍ଶିଦାବାଦ ଯାଉନ୍ତୁ । ସେନାପତି ମୀରଜାଫର ହାଲପଦା ଯୁଦ୍ଧରେ ଆହତ, ଆରୋଗ୍ୟଲାଭ ନିମନ୍ତେ ମୁର୍ଶିଦାବାଦ ଯାଉନ୍ତୁ । ଆରୋଗ୍ୟଲାଭ ଉତ୍ତାରେ ଆଉ କିଛି ପାଇକ ସଂଗ୍ରହ କରି ପୁନର୍ବାର ଫୌଜ ସହିତ ମିଳିତ ହେବେ ।

ସମସେର ଖାଁ କହିଲେ—ନବାବଙ୍କ ପକ୍ଷ ପରିତ୍ୟାଗ କରି ବର୍ଗି ପକ୍ଷରେ ମିଳିତ ହେବେ, ଏହି ଭାବରେ କେତେକ ଜଣ ହାବିଲଦାର ଭାସ୍କର ପଣ୍ଡିତଙ୍କୁ ଜାଲ୍ ଚିଠି ଲେଖନ୍ତୁ । ଭାସ୍କର ସେମାନଙ୍କ ପ୍ରତ୍ୟାଶାରେ ଯୁଦ୍ଧ ସ୍ଥଗିତ ରଖିବ ।

ମୁସ୍ତାଫା କଞ୍ଚତ୍ ସ୍ୱରକୁ ଗ୍ରବରେ କହିଲେ, "ଏପରି କାପେଖି କାର୍ଯ୍ୟରେ ସମ୍ମତ ହେବାକୁ ଆମ୍ଭେ ନାରାଜ ।"

ସମସେର ଖାଁ କଞ୍ଚତ୍ ଅପ୍ରତିଭ ହୋଇ କହିଲେ, "ନାହିଁ, ନାହିଁ ଆମ୍ଭେ ମତଲବ ହାସଲ ନିମନ୍ତେ ଏପରି ପ୍ରସ୍ତାବ କରିଥିଲୁଁ ।"

ପଶ୍ଚାତ୍ ପ୍ରକାଶ ପାଇଲା, ନବାବ ଏବଂ ସମସେର ଖାଁ ମନ୍ତ୍ରଣା କରି ଏହିପରି କାର୍ଯ୍ୟ କରିଥିଲେ ।

ଅବଶେଷରେ ସଭାର ସିଦ୍ଧାନ୍ତ ଅନୁସାରେ ସନ୍ଧିର ପ୍ରସ୍ତାବ ଘେନି ଜାନକୀରାମ ଶାସ୍ତ୍ରୀ ପଣ୍ଡିତ ନିକଟକୁ ପ୍ରେରିତ ହେଲେ । ତାହାଙ୍କୁ ଉପଦେଶ ଦିଆଯାଇଥିଲା, ଯେପରି ଶୀଘ୍ର କଥା ମୀମାଂସା ନ ହୁଏ ।

---

-୨୫-

## ଅବସାଦ-ଅବସାଦ

ସମସ୍ତ ବିଷୟ ବନ୍ଦୋବସ୍ତ ହେଲା ସତ୍ୟ; ମାତ୍ର କ୍ଷୁଧା ପିପାସାରେ ସୈନ୍ୟମାନେ ଜୀର୍ଣ୍ଣ ଶୀର୍ଣ୍ଣ, ଯୁଦ୍ଧ କରିବାର ଥାଉ, ଚଳତ୍‌ଶକ୍ତି ରହିତ । ଘୋଡ଼ାଗୁଡ଼ିକ ଦୁଇ ଦିବସ କାଳ ତୃଣଟିଏ ପର୍ଯ୍ୟନ୍ତ ଦନ୍ତରେ ଛେଦନ କରି ନାହାନ୍ତି । ମୁସ୍ତାଫା, ସମସେର ଏବଂ ସର୍ଦ୍ଦାର ଖାଁ ପ୍ରଭୃତି ନଅ ଜଣ ପଞ୍ଜାବୀ ବୀର ଅଧସେର ଧାନୁଆ ମୋଟା ଚାଉଳ, ଅଧସେର ବାସୀ ପଶୁ ମାଂସ ଗୋଟିଏ ଆଣ୍ଠିକାରେ ସିଝାଇ ଭକ୍ଷଣ କରିଅଛନ୍ତି । ଖୋଦ ନବାବଙ୍କର ମଧ୍ୟ ସେହି ଦଶା । ଗ୍ରୀଷ୍ମାବସାନ ଉତ୍ତାରେ ବୃଷ୍ଟିଧାରା ପତନ ପୂର୍ବେ ଗଗନମଣ୍ଡଳ ମେଘାବୃତ ହୁଏ, ଈଷତ୍ ସୁଶୀତଳ ବାୟୁ ପ୍ରବାହିତ ହୁଏ । ଗତ ରାତ୍ରି ଅନ୍ଧକାର ସହିତ ନବାବ ସାହେବଙ୍କ ଅବସାଦ କଥଞ୍ଚିତ୍ ଅବସାନ ହେଲାପରି ଜଣାଯାଏ । କାରଣ ତାହାଙ୍କର ବଡ଼ ବଡ଼ ଅମୀର ସେନାପତିମାନେ ଖଣ୍ଡେ ଖଣ୍ଡେ ପଶୁ ମାଂସ ମୁହଁରେ ଦେବାକୁ ପାଇଅଛନ୍ତି । ଗତ କାଲି ସୈନ୍ୟମାନେ ରାତ୍ରି ସାରା ବାଟ ଅବାଟ ନ ମାନି ଧାଇଁଥିଲେ, ତୃଷାରେ ଗ୍ରୁତି ଫାଟିଅଛି । ଅନେକ ପାଇକ ଜଳାଭାବରେ ମୃତ୍ୟୁମୁଖରେ ପତିତ ହୋଇ ଅଛନ୍ତି । ଗନ୍ତବ୍ୟ ମାର୍ଗରେ ଜଳବିନ୍ଦୁ ମାତ୍ର ଅଭାବ ଥିଲା । ଅଦ୍ୟ ଦିବାଲୋକରେ ସୈନ୍ୟମାନେ ନିର୍ମଳ ଜଳପୂର୍ଣ୍ଣ କେତେଗୋଟି ପୁଷ୍କରିଣୀ ପାଇଲେ । ବାଟୋଇମାନଙ୍କ ଉପକାର ନିମନ୍ତେ ହିନ୍ଦୁ ଧନବନ୍ତ ଲୋକମାନେ ଜଗନ୍ନାଥ ସଡ଼କ ପାର୍ଶ୍ୱରେ ଏହି ସମସ୍ତ ପୁଷ୍କରିଣୀ ଖୋଳାଇ ଦେଇ ଅଛନ୍ତି । ପୁଷ୍କରିଣୀର ଅନତିଦୂରରେ ଆମ୍ରକାନନ । ବସନ୍ତ କାଳ, ବକୁଳ ଏବଂ କୋମଳ ପତ୍ରରେ ବୃକ୍ଷମାନ ଅବନତ ହୋଇ ପଡ଼ିଅଛନ୍ତି । ଆମ୍ରକାନନର କିଞ୍ଚିଦ୍ଦୂରରେ ସାମାନ୍ୟ ପ୍ରକାର ଅରଣ୍ୟ ଭୂଇଁ, ବରକୋଳି ଏବଂ ବଣ୍ୟ ବେରିରେ ପରିପୂର୍ଣ୍ଣ । ନବାବ ସୈନ୍ୟମାନେ ସେହି ସମସ୍ତ ଫଳ ପତ୍ର ଆମ୍ରବକୁଳ ଭକ୍ଷଣ ଏବଂ ଜଳ ପାନଦ୍ୱାରା ବଳ ସଞ୍ଚୟ କଲେ । ତୃଣଭକ୍ଷଣ, ଜଳପାନ ଓ ଭୂଲୁଣ୍ଠନଦ୍ୱାରା ଅଶ୍ୱମାନଙ୍କର କ୍ଳାନ୍ତି ଦୂର ହୋଇଅଛି ।

---

-୨୬-

## ସହସା ସମର

ବର୍ଗି ବୁଝିଲେ, ସମସ୍ତ ଗୃହଭଙ୍ଗ । ବଳସଞ୍ଚୟ ନିମନ୍ତେ ତୁର୍କ ସନ୍ଧିର ପ୍ରସ୍ତାବ କରିଅଛି; ପ୍ରକୃତ ସନ୍ଧି କରିବା ତାହାର ଉଦ୍ଦେଶ୍ୟ ନୁହେଁ । ତୁର୍କ ସେନାପତିମାନେ ବର୍ଗି ପକ୍ଷ ଅବଲମ୍ବନ କରିବା ପ୍ରସ୍ତାବ ମଧ୍ୟ

ପ୍ରତାରଣାମୟ । ଖାଦ୍ୟ ଏବଂ ସମରୋପକରଣ ସଂଗ୍ରହ ନିମନ୍ତେ ମୁର୍‌ଶିଦାବାଦକୁ ସବାର ଯାଇଥିବା ଭାସ୍କର ପଣ୍ଡିତଠାରେ ଅବିଦିତ ରହିଲା ନାହିଁ । ଦଗାବାଜ ତୁର୍କର ପ୍ରତାରଣାରେ ଭୁଲି ରହିବା ଜ୍ଞାନହୀନତାର କାର୍ଯ୍ୟ ଅଟେ । ସନ୍ଧିର ପ୍ରସ୍ତାବ କରି ରାତିଯୋଗେ ତୁର୍କ ଫୌଜ ରମାନା ହେବାରୁ ବର୍ଗିଙ୍କ ମନରେ ସମସ୍ତ ସଂଶୟ ଜାତ ହେଲା । ସଂଶୟ ଜାତ ହେବା ମାତ୍ର ଯୁଦ୍ଧଯାତ୍ରା । ତୁର୍କକୁ ଧରିବାକୁ ରାତି ଉପସ୍ଥିତ । ତୁର୍କ ପାଇକମାନେ ଏକ ବିସ୍ତୀର୍ଣ୍ଣ ପ୍ରାନ୍ତର ମଧ୍ୟରେ ପଡ଼ିଅଛନ୍ତି । ବର୍ଗିବର୍ଗ ପ୍ରାନ୍ତର ପାର୍ଶ୍ୱବର୍ତ୍ତୀ ବଡ଼ ବଡ଼ ଅଶ୍ୱତ୍ଥ, ବଟବୃକ୍ଷ ଡାଳ ଉପରେ ତୋପବାନ୍ଧି ତୁର୍କ ଉପରକୁ ଚଳାଇବାକୁ ଲାଗିଲେ । ଏଣେ ତୁର୍କ ଦେହରେ କଷ୍ଟିତ୍‌ବଳ ସଞ୍ଚିତ ହୋଇଅଛି । ମୁସ୍ତାଫା, ସର୍ଦ୍ଦାର ଖାଁ, ସମସେର ଖାଁ ତିନି ଦଳ ସୈନ୍ୟ ଘେନି ତିନି ଦିଗରୁ ବର୍ଗିଙ୍କୁ ଆକ୍ରମଣ କଲେ । ନୈଶ ଅନ୍ଧକାରରେ ଉଭୟ ପକ୍ଷରୁ ବିଷମ ସମର ସଂଘଟିତ ହେଲା । ଦିଗ୍‌ବିଦିଗ ଜ୍ଞାନ ନାହିଁ, ଲକ୍ଷ୍ୟାଲକ୍ଷ୍ୟ ଜ୍ଞାନ ନାହିଁ, ଭୟଙ୍କରରୂପେ ଉଭୟ ପକ୍ଷରୁ ଅସ୍ତ୍ର ଚଳୁଛି । କେହି ବା ଭ୍ରାନ୍ତ ହୋଇ ଆତ୍ମପକ୍ଷ୍ୟ ବିନାଶରେ ପ୍ରବୃତ୍ତ । ଆତ୍ମପକ୍ଷର କେତେଜଣ ପ୍ରଧାନ ଲୋକ ଆହତ ହେବାରୁ ବର୍ଗିବର୍ଗ କିଞ୍ଚିତ୍ ନିସ୍ତେଜ ହୋଇ ପଡ଼ିଲେ । କ୍ଷୁଦ୍ର କ୍ଷୁଦ୍ର ଦଳରେ ବିଭକ୍ତ ହୋଇ ତୁର୍କମାନଙ୍କୁ ଆକ୍ରମଣ କଲେ । ଉଭୟ ପକ୍ଷ କ୍ଳାନ୍ତ ଏବଂ ରାତି ଅନ୍ଧକାରରେ ଭ୍ରାନ୍ତ, ବାରମ୍ବାର ଶୃଙ୍ଖଳାଚ୍ୟୁତ ହେଉଅଛନ୍ତି । ମାତ୍ର ଅନାଯୃତ୍ତ, ଅଶୃଙ୍ଖଳିତା ସ୍ଥକିତ ରହିଲେ ପରାଜୟ ନିଶ୍ଚିତ । ସୈନ୍ୟଶୃଙ୍ଖଳା ରକ୍ଷା ନିମନ୍ତେ ବର୍ଗିବର୍ଗ ସମ୍ମୁଖ ଆକ୍ରମଣ ତ୍ୟାଗ କରି ଦୁଇ ପାର୍ଶ୍ୱକୁ ଦୁଇ ଭାଗରେ ବିଭକ୍ତ ହୋଇଗଲେ । ତୁର୍କମାନଙ୍କୁ ନିଶ୍ୱାସ ତ୍ୟାଗ କରିବାକୁ ଅବକାଶ ମିଳିଲା । ସେମାନେ ଯୁଦ୍ଧ କରୁ କରୁ ପଛଘୁଞ୍ଚା ଦେବାକୁ ଲାଗିଲେ । ସର୍ବ ରାତି ଏବଂ ପର ଦିବସ ଦିବା ଏକ ପ୍ରହର ପର୍ଯ୍ୟନ୍ତ ଯୁଦ୍ଧ ଏବଂ ଯାତ୍ରା ଦୁଇ କାର୍ଯ୍ୟ ଚଳୁଥାଏ । ତୁର୍କ ନିତାନ୍ତ ନିସ୍ତେଜ ହୋଇ ପଡ଼ିଲେଣି । ଆଉ ପ୍ରହରବ୍ୟାପୀ ଯୁଦ୍ଧ ହୋଇଥିଲେ ସେମାନଙ୍କର ପତନ ବିନା ଗତ୍ୟନ୍ତର ନ ଥିଲା । ମାନବ ଜାତିର ଶୁଭାଶୁଭ ଅଲକ୍ଷ୍ୟ ଭାବରେ ଉପସ୍ଥିତ ହୁଏ । ଉଲୁଡ଼ିଆ ନାମକ ସ୍ଥାନରେ ବର୍ଗିମାନେ ହଠାତ୍ ଗଙ୍ଗାମାତାଙ୍କ ଦର୍ଶନ ପାଇ ଅତ୍ୟନ୍ତ ଆନନ୍ଦିତ ହୋଇ ପଡ଼ିଲେ । ତୁର୍କ ତ ନିସ୍ତେଜ ହୋଇ ପଡ଼ିଲେଣି, ଅଳ୍ପକ୍ଷଣ ଉତ୍ତାରେ ତାହାଙ୍କୁ ବିନାଶ କରାଯିବ । ମାତ୍ର ଗଙ୍ଗାମାତା କପାଳ ଗୁଣରେ ସ୍ୱୟଂ ଦର୍ଶନ ଦେଇଛନ୍ତି, ତାହାଙ୍କୁ ଆରାଧନା ନ କରି ଚାଲିଯିବା ଅଧର୍ମ । ନୀତିବେତ୍ତାମାନେ ବୋଲିଅଛନ୍ତି, ଶତ୍ରୁ ଯେତେ ଦୁର୍ବଳ ହେଉ, ତାହାକୁ ଉପେକ୍ଷା କରିବା ଉଚିତ ନୁହେ । ଆହୁରି ମଧ୍ୟ ନୀତିବେତ୍ତାମାନେ ବୋଲିଅଛନ୍ତି, ଆରବ୍ଧ କର୍ମ ପରିସମାପ୍ତି ପର୍ଯ୍ୟନ୍ତ ସଚେଷ୍ଟ ରହିବାର ଉଚିତ । ଯାହାହେଉ, ବର୍ଗିମାନେ ଯୁଦ୍ଧତ୍ୟାଗପୂର୍ବକ ଜାହ୍ନବୀକୂଳରେ ବିଶ୍ରାମ କରିବାକୁ ଲାଗିଲେ ।

ଏଣେ ତୁର୍କମାନେ ଗଡ଼ଟକ୍ରିରହିତ, ବିପକ୍ଷମାନଙ୍କୁ ନିବୃତ୍ତ ଦେଖି କ୍ଳାନ୍ତଭାବରେ ପ୍ରାନ୍ତର ମଧ୍ୟରେ ପଡ଼ିଗଲେ ।

---

-୨୭-

## ବାଦଲ ସିଂହର ମନ୍ତ୍ରଣା, ମୁସ୍ତାଫାର

## ଗୋସା ଏବଂ ଯୁଦ୍ଧ

ଅନାବୃତ ବିସ୍ତୀର୍ଣ୍ଣ ପ୍ରାନ୍ତର ମଧ୍ୟରେ ତୁର୍କ ପଡ଼ିଅଛନ୍ତି । ମଧ୍ୟାହ୍ନ କାଳ, ପ୍ରଚଣ୍ଡ ରୌଦ୍ର । ସାରା ରାତି ପରିଶ୍ରମ, ଅନାହାର, ପୁଣି ପ୍ରଚଣ୍ଡ ସୂର୍ଯ୍ୟକିରଣରେ ଜୀବନ୍ମୃତ । ଏଥିପୂର୍ବେ ବର୍ଗିବର୍ଗ ସେ ସ୍ଥାନକୁ ପାଇ

ସମସ୍ତ ଲୁଣ୍ଠନ କରି ନେଇଅଛନ୍ତି । କ୍ଷେତ୍ରର ଶସ୍ୟ, ଗ୍ରାମବାସୀଙ୍କ ସମ୍ପତ୍ତି ସମସ୍ତ ଅପହୃତ ହୋଇଅଛି । ଯାହା ନେଇ ପାରି ନ ଥିଲେ, ଅଗ୍ନିସଂଯୋଗରେ ସେ ସମସ୍ତ ଦଗ୍ଧ କରି ଦେଇ ଯାଇଅଛନ୍ତି । ଗ୍ରାମସକଳ ଶୂନ୍ୟ । ଜୀବନ ସମ୍ଭ୍ରମ ରକ୍ଷା ନିମନ୍ତେ ଲୋକ ସପରିବାର ପଳାୟନ କରିଅଛନ୍ତି । ଶୀତ ଋତୁରେ କ୍ଷେତ ଶସ୍ୟପୂର୍ଣ୍ଣ, ଲୋକଙ୍କ ଗୃହ ଧନଧାନ୍ୟରେ ପୂର୍ଣ୍ଣ ଥାଏ । ବର୍ଗି-ବାହନ ଅଶ୍ୱମାନଙ୍କ ଆହାରସ୍ୟ ଅଭାବ ଥାଏ ନାହିଁ । ଉପଯୁକ୍ତ କାଳ ଜାଣି ବର୍ଗି ଏହି ଅନୁକୂଳ କାଳରେ ଯୁଦ୍ଧ ଯାତ୍ରା ଅବା ଲୁଣ୍ଠନଯାତ୍ରା କରିଥାଆନ୍ତି ।

ବର୍ଗି-ପରିତ୍ୟକ୍ତ ଏବଂ ଅର୍ଦ୍ଧଦଗ୍ଧ ଶସ୍ୟ ବା ଫଳମୂଳ ସଂଗ୍ରହକରି ତୁର୍କ ପାଇକମାନେ କଥଞ୍ଚିତ୍‌ରୂପେ ପ୍ରାଣ ଧାରଣ କଲେ । ତାହା ମଧ୍ୟ ସମସ୍ତଙ୍କ ଭାଗ୍ୟରେ ଘଟିନାହିଁ । ଦଗ୍ଧ ଗୃହ ଉପରୁ ଅର୍ଦ୍ଧଦଗ୍ଧ କଖାରୁ, ଲାଉ, ଶିମ୍ବ, ପୋଇ ପ୍ରାପ୍ତ ହୋଇ ବଡ଼ ବଡ଼ ଖାଁ ସାହେବମାନେ ଅତି ଉପାଦେୟ ଜ୍ଞାନ କରି ଭୋଜନ କରିଅଛନ୍ତି ।

ମୁସ୍ତାଫା ଏକ ସ୍ଥାନରେ ଗାଲରେ ହାତ ଦେଇ ବସିଅଛନ୍ତି । ବାଦଲ ସିଂହ ତାଙ୍କ ସମୀପରେ ଉପସ୍ଥିତ ହୋଇ ସଲାମ କଲେ ।

ମୁସ୍ତାଫା ପଚାରିଲେ—"କି ବାଦଲ, କି ଖବର ?" ବାଦଲ ସିଂହ କହିଲେ—"ଖାଁ ସାହେବ ! ମୋ ଗୋସ୍ତାକି ମାଫ କର, ମୁଁ ସଲ୍ଲା ଦେବାକୁ ଆସି ନାହିଁ ଆପଣଙ୍କୁ କିଛି କଥା ଜଣାଇବାକୁ ଆସିଛି । ମୁଁ ପିଲା—ଆପଣ ହେଲେ ମୁରବି, ଆପଣଙ୍କୁ କିଛି କଥା କହିପାରେ ? ଆଚ୍ଛା, ମୁଁ ପଚାରେଁ, ଆମ୍ଭେମାନେ କି ଏହିପରି ପଳାଇ ବୁଲୁଥିବା ? ଆଉ କେତେଦିନ ପଳାଇବାକୁ ବାକି ଅଛି ? ଦୁସମନ୍ ଆମ୍ଭମାନଙ୍କର ମୁହଁରୁ ରୋଟି ଛଡ଼ାଇ ଖାଇ ଗୋଡ଼ାଇବେ, ଆମ୍ଭେମାନେ ପଳାଉଥିବା, ବେଶ୍ କଥା । ଆଚ୍ଛା ମୁଲ୍ଲୁକୁ ଯେବେ ନଷ୍ଟପ୍ରାୟ, ଆସନ୍ତୁ ତରବାରି ଧରି ସମ୍ମୁଖଯୁଦ୍ଧରେ ମାରି ପରି ମରୁଁ, ଧାଇଁ ଧାଇଁ ଅନାହାରରେ କିଆଁ ମରିବୁଁ ? ଆପଣ ନ ହୁଏ ବୋଲନ୍ତୁ, ଆମ୍ଭମାନଙ୍କ ପକ୍ଷରେ ଏହା ଉଚିତ କାର୍ଯ୍ୟ ହେଉଅଛି କି ?"

ମୁସ୍ତାଫା ସମସ୍ତ କଥା ଶୁଣି କିଛିକ୍ଷଣ ବାଦଲ ମୁହଁକୁ ଚାହିଁ ରହିଲେ । ସମସେର ଖାଁ ସର୍ଦ୍ଦାର ଖାଁ ପ୍ରଭୃତି ସେନାପତିମାନଙ୍କୁ ଡକାଇ ଭାରି ଗୋସ୍ସା ହୋଇ କହିଲେ—"ଭାଇମାନେ ! ଏହି ହିନ୍ଦୁ ହାବିଲଦାର କଣ କହୁଛି ଶୁଣ । ହା—ଆଲ୍ଲା—ଆକବର ! ଆମ୍ଭମାନଙ୍କୁ ଧିକ୍, ମୁସଲମାନ ଧର୍ମକୁ ଧିକ୍ ! ଅଥବା ଆମ୍ଭେମାନେ ମୁସଲମାନ କୁଳର କୁଳାଙ୍ଗାର, କାବୁଲର କଳଙ୍କ, କୋରାଣ ସରିଫ୍ ଝୁଠା, ବୃଥା ଜୁମା ମସଜିଦରେ ନମାଜ ପଢ଼ିଥିଲୁଁ ! ହିନ୍ଦୁ କାଫେର ବଲୁଆ ପରି ପଛେ ପଛେ ଗୋଡ଼ାଇଥିବ, ଆଉ ଆମ୍ଭେମାନେ ଠେକୁଆ ପରି ପଳାଇ ବୁଲୁଥିବୁଁ । ତୁଳ୍ଳାଟାରେ ନବାବ ଆମ୍ଭମାନଙ୍କୁ ପୋଷି ଅଛନ୍ତି । ମୁର୍ଶିଦାବାଦରେ କିପରି ମୁହଁ ଦେଖାଇବୁଁ, କାବୁଲର ଲୋକେ କଣ କହିବେ ? ଆଉ ସହ୍ୟ ହେଉ ନାହିଁ । ଆସ, ଧର ତରବାରି, ନେହିଲେ ପଡ଼ିଥାଅ, କାଫେର ଆସି ଗୋଟି ଗୋଟି କରି ଜବେ କରୁ ।"

ସେନାପତିମାନେ ଶୁଣି ନିତାନ୍ତ ଉତ୍ତେଜିତ ହୋଇ ଉଠିଲେ । ଦିନ୍ ଦିନ୍ ଚିତ୍କାର କରି ହଜାର ହଜାର ତୁର୍କ ତରବାରି ଧରି ଡେଇଁ ଉଠିଲେ ।

ଏଣେ ସମରବିଜୟୀ ବର୍ଗି ଆନନ୍ଦରେ ଉନ୍ମତ୍ତ । ତୁର୍କ ପଳାଇ ଯାଇ କେଉଁଠାରେ ଚଢ଼ିଅଛି, ଅନାହାରରେ କେଉଁଠାରେ ହେଲେ ଚଢ଼ିଆରେ ପଡ଼ି ମରିଯିବ ଅଥବା ମରିଗଲାଣି । ଓପର ଓଳ ହ ଇ

ସେମାନଙ୍କୁ ନିର୍ମୂଳ କରିଦେବା କଠିନ କଥା ନୁହେଁ । ଭାଗ୍ୟଗୁଣରେ ପତିତପାବନୀ ଭାଗୀରଥୀ ପାଇଅଛନ୍ତି, ଅବଗାହନ କରି ଶରୀର ଶୀତଳ କରିବେ, ଜନ୍ମାର୍ଜିତ ପାପ ବିଧୌତ ହେବ । ନବାବଠାରୁ ଶଗଡ଼ ଶଗଡ଼ ଚହମ ଚୂନା, ଶଗଡ଼ ଶଗଡ଼ ଗୁଡ଼, ଶଏ ଶଏ ମହଣ ଘିଅ, ପର୍ବତ ପ୍ରମାଣେ ଡାଲି, ଚୃଉଳ, ପିଆଜ, ମସଲା ପାଇଅଛନ୍ତି । କେତେ ଦିନ ହେଲା ଭୋଜନର ଠିକଣା ନାହିଁ, ଆଜି କି ଆନନ୍ଦର ଦିନ, ତୀର୍ଥ ଜଳରେ ସ୍ନାନ, ତହିଁ ଉତ୍ତାରେ ଇଚ୍ଛାନୁସାରେ ଉପାଦେୟ ଭୋଜନ ।

ଶତ୍ରୁକ୍ଷୟ, ବିପୁଳ ସମ୍ପତ୍ତି ଲାଭ, ସୌଭାଗ୍ୟର ସୀମା ନାହିଁ । ସମ୍ପଦବେଳେ ଚାରିଆଡ଼ୁ ସୁଖଗୁଡ଼ିକ ଆସି ଠୁଳ ହୋଇପଡ଼େ । ଏଡ଼େ ସୁସମୟରେ ଆଉ ଲଢ଼େଇ ଭିଡ଼େଇ କଥା କିଏ ମନରେ ପକାଏ ? ପାଇକମାନେ ଆପଣା ଆପଣା ଅସ୍ତ୍ର ଶସ୍ତ୍ର ଫୋପାଡ଼ି ଦେଇ 'ବୋମ୍ ବୋମ୍ ମହାଦେଓ, ଜୟ ମାତଃ ଗଙ୍ଗେ' ଚିତ୍କାର କରି ଗଙ୍ଗା ଗର୍ଭକୁ ଡେଇଁ ପଡ଼ିଲେ । କେହି ସ୍ନାନରେ ନିଯୁକ୍ତ, କେହି ସ୍ନାନର ଉଦ୍ୟୋଗ କରୁଅଛି, କେହି କେହି ଆକଣ୍ଠ ଗଙ୍ଗା ଜଳରେ ଶରୀର ମଜ୍ଜନ ଏବଂ ଗଙ୍ଗାସ୍ତବ ପାଠ, ଦୁଇକାର୍ଯ୍ୟ—ଅର୍ଥାତ୍ ଦେହ ଏବଂ ଆତ୍ମା ଉଭୟର ପବିତ୍ରତା ସମ୍ପାଦନରେ ନିଯୁକ୍ତ ଅଛନ୍ତି । କେହି ରୋଟି ସେକୁଅଛି, କାହାର କାହାର ଡାଲି ଚୁଙ୍କା ହୋଇଗଲାଣି, ଟକରମକର କରି କାହାର ଭାତହାଣ୍ଡି ଡାକୁଅଛି, କେହି କେହି ପେଟବିକଳିଆ ରୋଟି ସେକୁ ସେକୁ ଅଧାଅଧି ସାରି ଦେଲାଣି । କେତେ ଗୁଡ଼ିଏ ଲୋକଙ୍କର ପେଟର ପାଣି ହୋଇଅଛି । କେହି ଲୋକ ଗଙ୍ଗାକୂଳରେ ଦାନ୍ତ ଘଷୁଁ ଘଷୁଁ ଗତ ରାତି ଯୁଦ୍ଧରେ ଆପଣା ବୀରତ୍ୱ କଥା ସାଙ୍ଗକୁ ଶୁଣାଇ ଦେଉଅଛି । ଶ୍ରୋତା କହିଲା—"ଆରେ ଭାଇ ! ତୁ କଣ ହାଣିଚୁ ? ମୋ ହାବୁଡ଼ରେ ପଡ଼ିଗଲା, ଏକା ନିଶ୍ୱାସରେ ସତେଇଶଟା ତୁର୍କ ଦାଢ଼ି ଧରି କଦଳୀ ଗଛ ହାଣିଲା ପରି କଚ କଚ କରି ହାଣି ପକାଇଲି ।" ବଡ଼ ବଡ଼ ସେନାପତିମାନେ ବସି ଲୁଣ୍ଠିତ ମୁଦ୍ରା ବିଭାଗର ବ୍ୟବସ୍ଥା ଏବଂ ଖରଚର ବଜେଟ ତୟାର କରୁଅଛନ୍ତି ।

ଅଇଲା ରେ, ଅଇଲା ରେ, ତୁର୍କ ଅଇଲା ରେ ! ବର୍ଗି ଦଳରେ ଭୟଙ୍କର ଚହଳ ପଡ଼ିଗଲା । ପ୍ରାୟ ପନ୍ଦର ହଜାର ଘୋଡ଼ା ଚଢ଼ି ତୁର୍କ ଖଣ୍ଡା ଓଲଗ୍ନ ବିଦ୍ୟୁତ୍ ବେଗରେ ପଡ଼ିଗଲେ । ସୂର୍ଯ୍ୟକିରଣ ଲାଗି ଖଣ୍ଡା ଝକ ଝକ କରୁଅଛି । ନିୟମ ନାହିଁ, ଶୃଙ୍ଖଳା ନାହିଁ, ମାରିବେ ବା ମରିବେ, ଏହି ଭାବରେ ତୁର୍କଦଳ ବର୍ଗି ଉପରେ ଚଢ଼ିଅଛନ୍ତି । ଏମନ୍ତ ସମୟରେ ତୁର୍କ ଯେ ଆସିବ, ସ୍ୱପ୍ନାରୂପେ ମଧ୍ୟ ବର୍ଗି ମନରେ ଉଦିତ ହୋଇ ନାହିଁ । ସମସ୍ତେ ନିଶ୍ଚିନ୍ତ ଥିଲେ, ଶତ୍ରୁ ଆସି ଉପରେ ପଡ଼ିଲାଣି, ଖଣ୍ଡାଟି ଧରିବାର ଅବକାଶ ନାହିଁ । ବର୍ଗି ମଧ୍ୟରେ ଯେ ଯେଉଁଠାରେ ଥିଲା ପଳାଇଅଛି । କେହି ଗଙ୍ଗାଜଳରୁ ଉଠି ଓଦା ଲୁଗାରେ ଧାଇଁଅଛି, କାହାର ହାଣ୍ଡିରେ ରୋଟି, କାହା ପାଟିରେ ଭାତ ଅଛି, କାହାର ଅଇଣ୍ଠା ହାତ କାହାର ମୃତ୍ତିକାଶଙ୍କର ପଡ଼ିଛନ୍ତି ପୂଜା ଅଧାଅଧି, ଧାଇଁଅଛନ୍ତି । ଖଣ୍ଡାଟି ଧରିବାର ବେଳ ନାହିଁ । ଦନ୍ ଦନ୍ ଚିତ୍କାର କରି ତୁର୍କ ଯାହାକୁ ପାଉଅଛି, ହାଣୁଅଛି । ବର୍ଗି ପାଟି ଫିଟିବାକୁ ନାହିଁ, କେବଳ ଧାଇଁ ଅଛନ୍ତି । କେତେ ତୁର୍କଖଣ୍ଡାରେ ଗଲେ, କେତେ ବର୍ଗି ତ୍ରାସରେ ଗଙ୍ଗା-ଜଳରେ ପଡ଼ି ବୁଡ଼ିମଲେ । ବଡ଼ ବଡ଼ ବର୍ଗି ସେନାପତି-ମାନେ ସୈନ୍ୟ ସମ୍ଭାଳିବେ କଣ, ଆପେ ବଞ୍ଚିଲେ ବାପର ନାମ ।

ମହ୍ୱତରେଖା କ୍ଷେତ୍ରରେ ତୁର୍କ ନିକଟରୁ ବର୍ଗି ଯେ ସମସ୍ତ ସମ୍ପତ୍ତି ନେଇଥିଲେ, ଭଲ ଖାତକ ସାହୁକୁ ମୂଳ କଳନ୍ତର ଗଣି ଦେଲା ପରି ସେ ସମସ୍ତ ପଦାର୍ଥ ଏବଂ ଆପଣା ପକ୍ଷରୁ କିଛି ସମ୍ପତ୍ତି ଦେଇ ଭଲଲୋକ ପରି ପଳାଇଗଲେ । ବର୍ଗି ଯେପରି ବିଶୃଙ୍ଖଳଭାବରେ ପଳାୟନ କରୁଥିଲେ, ତୁର୍କ ପଶ୍ଚାଦ୍ଧାବନ କରିଥିଲେ ସେମାନଙ୍କ ପରିଣାମ ଫଳ କଣ ହୋଇଥାନ୍ତା, ବୋଲାଯାଇ ନ ପାରେ । ହେଲେ ଧାଇଁବାକୁ ତୁର୍କମାନଙ୍କର ବଳ ବା ଇଚ୍ଛା ନାହିଁ ।

ତୁର୍କ ଦେଖିଲେ ଭାତ ଡାଲି, ରୋଟି ତରକାରି ସମସ୍ତ ପ୍ରସ୍ତୁତ । ଅନେକ ସ୍ଥଳରେ ବର୍ଗି ଭଲ ଖାନସମା ପରି ବାଢ଼ିବୁଢ଼ି ଥୋଇଦେଇ ଯାଇଅଛନ୍ତି । କେତେ ଦିନର ଉପବାସ, ଆଉ ବିଳମ୍ବ କିଆଁ ? ଆଲ୍ଲା ମାଲିକ, ଆଲ୍ଲା ଦେନେବାଲା । ଚଟପଟ ଘୋଡ଼ାରୁ ଡେଇଁପଡ଼ି କେହି ପାଚୁଡ଼ା, କେହି ପଗଡ଼ି ମେଲାଇ ଦେଲେ, ପାଞ୍ଚ—ପାଞ୍ଚ, ଦଶ—ଦଶ, ଚାରି—ଚାରି ବସିଯାଇ 'ବିସମିଲ୍ଲା ରହେମାନ, ରହିମ' ମନ୍ତ୍ର ପଢ଼ି ନାସ୍ତା ନାମକ କାର୍ଯ୍ୟ ଆରମ୍ଭ କରିଦେଲେ ।

ତୁର୍କ ଫଉଜ ସହିତ ହିନ୍ଦୁ ହାବିଲଦାର ବାଦଲ ସିଂହ ଅଗ୍ରଣୀ ହୋଇ ଆସିଥିଲେ । ସେ ଆନନ୍ଦ ଏବଂ ଉତ୍ସାହ ସହିତ ବୈରି ବିନାଶ କାର୍ଯ୍ୟରେ ନିଯୁକ୍ତ ଥିବା ସମୟରେ ପଳାତକ ବର୍ଗି ଲସ୍କର ମଧ୍ୟରେ ଗୋଟିଏ ଯୁବକ ପଳାୟନ କରୁଥିବାର ଦେଖିଲେ । ସେ ଯୁବକର ଆକୃତି ଦେଖିଲା ଉତ୍ତାରେ ସେ ଆଉ ଅସ୍ତ୍ର ଧାରଣ କରି ନାହାନ୍ତି । ବିଜୟୀ ତୁର୍କମାନେ ଆନନ୍ଦ ଉତ୍ସବ କରିବା ସମୟରେ ସେ ଗଙ୍ଗାକୂଳରେ ଅନ୍ୟମନସ୍କ ହୋଇ ବସିଥାନ୍ତି ।

–୨୮–

## ନବାବ କାଟୋୟାରେ

ନବାବ ଆଲିବର୍ଦ୍ଦିଖାଁ ଜଣେ ପ୍ରବୀଣ ଲୋକ । ସେ ବୁଝିଲେ, କେବଳ ଦୈବ ସହାୟରେ ବିଜୟୀ ହୋଇଅଛନ୍ତି । ବର୍ଗି କିଞ୍ଚିନ୍ମାତ୍ର ସଚେଷ୍ଟ ଥିଲେ ବିଜୟର ସମ୍ଭାବନା ନ ଥିଲା । ଯାହାହେଉ, ଭାଉଡ଼ିଆ କ୍ଷେତ୍ରଟା ସେନା ସମାବେଶର ଅନୁକୂଳ ନୁହେଁ ; ଏଠାରେ ରହିଲେ ନିଧନ ନିଶ୍ଚିତ । ପରଦିନ ପ୍ରାତଃକାଳରେ କାଟୋୟା ଅଭିମୁଖରେ ଯାତ୍ରାକଲେ । ଏହି ଯାତ୍ରା ମଧ୍ୟ ନିର୍ବିପଦରେ ଘଟିଲା ନାହିଁ । ବର୍ଗି ପଳାଇ ଯାଇ ଚାରି କୋଶ ଦୂରରେ ସମବେତ ହୋଇଥିଲେ । ସେନାପତିମାନେ କ୍ଷୁଦ୍ର କ୍ଷୁଦ୍ର ଦଳରେ ବିଭକ୍ତ ହୋଇ ନବାବଙ୍କୁ ଆକ୍ରମଣ କଲେ । ମାର୍ଗ ମଧ୍ୟରେ ନାନା ସ୍ଥାନରେ ସମର ସଂଘଟିତ ହେଲା । ହେଲେ କାହାର ପକ୍ଷରୁ ବିଶେଷ କ୍ଷତି ଅପଚୟ ହୋଇନାହିଁ । କାରଣ, ବର୍ଗିମାନେ ସମ୍ମୁଖୀନ ହୋଇ ଉପଯୁକ୍ତରୂପେ ଯୁଦ୍ଧ କରି ନାହାନ୍ତି । ବର୍ଗିମାନଙ୍କ ଯୁଦ୍ଧର ଗୋଟିଏ ନିୟମ ଏହି – ଶତ୍ରୁ ସୈନ୍ୟଶ୍ରେଣୀର ଯେଉଁସ୍ଥାନ ଦୁର୍ବଳ, ହଠାତ୍ ସେହି ସ୍ଥାନ ଆକ୍ରମଣ କରି ବିପକ୍ଷ ପଂକ୍ତିର ଶୃଙ୍ଖଳା ଭାଙ୍ଗି ଦିଅନ୍ତି; ଅନ୍ୟ ସୈନିକମାନେ ସେ ସ୍ଥାନ ରକ୍ଷା ନିମନ୍ତେ ଉପସ୍ଥିତ ହେବା ମାତ୍ରେ ପଚ୍ଛଘୁଞ୍ଚା ଦେଇ ପଳାୟନ କରନ୍ତି । ଯାହାହେଉ ମାର୍ଗ ମଧ୍ୟରେ ସଂଘଟିତ ନାନା ବିଘ୍ନ ଅତିକ୍ରମ ପୂର୍ବକ ନବାବ କାଟୋୟାରେ ଉପସ୍ଥିତ ହେଲେ ।

ଦିବାନିଶି ପରି ମାନବମାନଙ୍କୁ ସୁଖ ଦୁଃଖ ଦୁଇ ଗୋଟି ଭୋଗ କରିବାକୁ ହୁଏ । ନିରବଚ୍ଛିନ୍ନ ଦୁଃଖ ବିଧାତା ମାନବ ଅଦୃଷ୍ଟରେ ଲିପିବଦ୍ଧ କରି ନାହାନ୍ତି । ଦୁଃଖ କାହାର ବାଞ୍ଛନୀୟ ନୁହେଁ, ସୁଖାଭିଳାଷ ମନୁଷ୍ୟ ଜାତିର ନୈସର୍ଗିକ ଧର୍ମ । ତଥାପି ମନୁଷ୍ୟ ସମୟ ବିଶେଷରେ ଦୁଃଖଭୋଗୀ ହୁଏ । ଏହା ବିଧାତାଙ୍କର ଦୁର୍ଲଙ୍ଘନୀୟ ବିଧାନ । ଫରାସୀ ସମ୍ରାଟ୍ ନେପୋଲିଅନ ବୋଲିଅଛନ୍ତି "ମାନବ ! ତୁମ୍ଭେ ଚିରସୁଖୀ ବା ଚିର-ଦୁଃଖୀ, ଜୀବନକାଳରେ ତୁମ୍ଭର ଏ କଥା ବୋଲିବାର ଅଧିକାର ନାହିଁ ।" ଆମ୍ଭେମାନେ ପୂର୍ବେ ବୋଲିଅଛୁଁ, ସୁଖ ଦୁଃଖ ଦୁଇ ଗୋଟି ଦିବା ରାତ୍ରିପରି । ଦିବସରେ ସର୍ବତ୍ର ଆଲୋକ—ଘରେ ଆଲୋକ, ବାହାରେ ଆଲୋକ—ଆଲୋକ ମୟ ଜଗତ । ସେହିପରି ନିଶି ତମିସ୍ର ସର୍ବତ୍ର ବ୍ୟାପ୍ତ ।

ନବାବ ଯଥେଷ୍ଟ କଷ୍ଟ ଭୋଗ କଲେହିଁ, ବର୍ତ୍ତମାନ ଭାଗ୍ୟଚକ୍ରର ପରିବର୍ତ୍ତନ ସମୟ ଉପସ୍ଥିତ । ନବାବ

କାଟୋୟାରେ ଉପସ୍ଥିତ ହୋଇ ନିଶ୍ୱାସ ତ୍ୟାଗ କରିବାକୁ ଅବସର ପ୍ରାପ୍ତ ହେଲେ । କାଟୋୟା ସ୍କନ୍ଧାବାର ସ୍ଥାପନର ଉପଯୁକ୍ତ ସ୍ଥାନ । ଅଜୟ ଏବଂ ଭାଗୀରଥୀ ନଦୀ ପରିଖାରୂପେ ଏହାକୁ ପ୍ରାୟ ଚତୁର୍ଦ୍ଦିଗରୁ ବେଷ୍ଟନ କରିଅଛି । ସହସା ଶତ୍ରୁ ଆଗମନର ସମ୍ଭାବନା ବିରଳ । ନବାବ ଉପସ୍ଥିତ ହେବାମାତ୍ର ଶତ ଶତ ଶଗଡ଼ ଡାଲି ଚାଉଳ, ଚହମଚୂନା, ଆଳୁ, କଦଳୀ, ଘିଅ, ଗୁଡ଼, ପିଆଜ, ରସୁଣ, ଏବଂ ଫଳକୁ ଫଳ ଛେଳି; ମେଣ୍ଢା, ଘରକୁ ଘର କୁକୁଡ଼ା ଆସି ଉପସ୍ଥିତ ହେଲା । ଏହି ସକଳ ସରଞ୍ଜାମ ସକାଶେ ନବାବ ଘାଉଡ଼ଆଠାରୁ ପ୍ରଧାନ ସରବରାକାର ଜମିଦାରମାନଙ୍କଠାକୁ ଚିଠି ପଠାଇଥିଲେ । ନବାବଙ୍କ ମନୋରଞ୍ଜନ ସକାଶେ ମହାଜନ ବେପାରୀମାନେ ମଧ୍ୟ ଶଗଡ଼କୁ ଶଗଡ଼ ଖାଦ୍ୟ ଦ୍ରବ୍ୟ ଘେନି ସଞ୍ଚଳିବାକୁ ଆସି ଉପସ୍ଥିତ ହେଲେ । ସୁପ୍ରାକାର ଖାଦ୍ୟଦ୍ରବ୍ୟ ଦେଖି ପାଇକମାନେ ଆନନ୍ଦରେ ଚିତ୍କାର କରିବାକୁ ଲାଗିଲେ । ଧୋବା ମାହାରମାନେ ଖେଚଡ଼ି ସକାଶେ ଘିଅ ଆଣିବା ନିମନ୍ତେ କଂସା ପିତ୍ତଳ ଧରି ପଡ଼ିକାର ନିକଟକୁ ଧାଇଁବାର ଦେଖାଗଲା ।

ନବାବ ଅନାଇ ଦେଖିଲେ, ସର୍ବତ୍ର ସୌଭାଗ୍ୟ, ସର୍ବତ୍ର ପ୍ରଫୁଲ୍ଲ । ମହ୍ରଷ୍ଟରେଖା କ୍ଷେତ୍ରରେ ବର୍ଗି ତାହାଙ୍କର ଯେ ସମସ୍ତ କମାଣ, ଯେ ସମସ୍ତ ଗୋଳାଗୁଳି, ଯେ ସମସ୍ତ ଡେରାଦଣ୍ଡା, ଯେ ସମସ୍ତ ଖାଦ୍ୟ ଏବଂ ଅନ୍ୟାନ୍ୟ ସମ୍ପତ୍ତି ଛଡ଼ାଇ ଘେନି ଯାଇଥିଲେ, ସେ ସମସ୍ତ ବାହୁଡ଼ି ଆସିଅଛି । ପୁଣି ବର୍ଗି ପକ୍ଷରୁ ଅଧିକା କିଛି ଆସିଅଛି । ପୁନଃ ପୁନଃ ପରାଜୟ ଏବଂ ଅନାହାରରେ ପାଇକମାନେ ଦୁର୍ବଳ ଏବଂ ନିରୁତ୍ସାହ ହୋଇ ପଡ଼ିଥିଲେ, ବର୍ତ୍ତମାନ ଦୁଇ ଗୁଣ ସବଳ, ଦୁଇ ଗୁଣ ଉତ୍ସାହିତ ହୋଇ ପଡ଼ିଅଛନ୍ତି । ସୁଖ ଉପରେ ସୁଖ । ସେନାପତି ମୀରଜାଫର ଦଶ ସହସ୍ର ଘୋଡ଼ଚଢ଼ା ପାଇକ ଘେନି ମୁର୍ଶିଦାବାଦରୁ ତାହାଙ୍କଠାକୁ ରୱାନା ହୋଇଥିବାର ସମ୍ବାଦ ପ୍ରାପ୍ତ ହେଲେ । ନବାବଙ୍କ ଆନନ୍ଦର ସୀମା ନାହିଁ । ଅରିତର ଅପଚୟ, ଆତ୍ମପକ୍ଷର ଉନ୍ନତି ଦେଖି ଆନନ୍ଦିତ ହେବା ମାନବ ଜାତିର ନୈସର୍ଗିକ ଧର୍ମ ।

———

-୨୯-

## ଆକ୍ଷେପ ଏବଂ ଆଶ୍ୱାସ

ମହାରାଷ୍ଟ୍ର ସୈନିକମାନେ ଭୟରେ ବିହ୍ୱଳ । ଭାସ୍କର ପଣ୍ଡିତ ଗଣ୍ଡହସ୍ତଚିନ୍ତାନିମଗ୍ନ । ଭାସ୍କର ପଣ୍ଡିତ ଭାବିଲେ ହାୟ ! ଏକଣ ହେଲା । ଶତ୍ରୁକୁ ଧରୁ ଧରୁ ହାତରୁ ଖସିଗଲା । ଆଲିବର୍ଦ୍ଦି ବଡ଼ ଭାଗ୍ୟବାନ୍ । ତାହାର ଲକ୍ଷାଧିକ ସୈନିକ ଛିନ୍ନଭିନ୍ନ କରି ଦେଲି, ତାହାର କମାଣ, ତାହାର ବାରୁଦ, ତାହାର ଗୁଳିରେ ତାହାର ସେନା ବିନାଶ କଲି । ବାଲେଶ୍ୱର ଫୁଲଉଆର ନଦୀକୂଳଠାରୁ ଗଙ୍ଗାନଦୀ କୂଳ ଯାଏ ଘଉଡ଼ି ଆଣିଲି ! ସମସ୍ତ ଟଙ୍କା, ସମସ୍ତ ଦ୍ରବ୍ୟ ଛଡ଼ାଇ ନେଲି । ହାୟ ! ଏତେ ଆଶା, ଏତେ ଭରସା ସବୁଥିରୁ ନିରାଶ ହେଲି । ହାୟ ! ହାୟ ! ଦିନକ ମଧ୍ୟରେ ସବୁ ନେଉଟି ଗଲା । ଏବେ ତାହା ଆଗରେ ପର୍ବତ ପ୍ରମାଣ ଖାଦ୍ୟ ଦ୍ରବ୍ୟ କାଣ୍ଡିମରି, ଟଙ୍କାର ଅଭାବ ନାହିଁ, ମୁର୍ଶିଦାବାଦରୁ ପୁଣି ନୂଆ ପାଇକ ଆସିଲାଣି । ତାହାର ଏବେ ସବୁଆଡ଼େ ବାଟ ମୁକୁଳା, ଯାହା ଲୋଡ଼ିବ ତାହା ପାଇବ । ହାୟ ! ଏତେ କଷ୍ଟ ସହିଲି, ଏତେ ବିପଦରେ ପଡ଼ିଲି, ଏତେ ପ୍ରାଣପଣ କରି ଯୁଦ୍ଧକଲି, ସବୁ ବୃଥା ଗଲା । ଆଉ ଆଲିବର୍ଦ୍ଦିକୁ କିଏ ଆଣ୍ଟିବ ? ମୋହର କମାଣ ନାହିଁ, ବାରୁଦ ନାହିଁ, ଟଙ୍କା ନାହିଁ, ଖଣ୍ଡା ନାହିଁ । ଏ ସବୁ ତ ଥାଉ, ମୂଳରେ ଖାଇବାକୁ ନାହିଁ । ଲୁଟି ଆଣିବାକୁ ଗ୍ରାମ ମଧ୍ୟ ନାହିଁ, ବଙ୍ଗଳା ଦେଶ ପଡ଼ିଆ ପଡ଼ିଅଛି, ଯୁଦ୍ଧ ଗୋଳମାଳରେ ପ୍ରଜାମାନେ ଗ୍ରାମ ଛାଡ଼ି ପଳାଇ ଯାଇଅଛନ୍ତି । ଆମ୍ଭ ପାଇକମାନେ ଅମାନିଆ ହୋଇଗଲେଣି । ସେମାନଙ୍କର ଅବା ଅପରାଧ କଣ ?

କେତେ ମାସ ହେଲା ପଇସାଏ ବର୍ତ୍ତନ ପାଇବାକୁ ନାହିଁ । ଧାଇଁ ଧାଇଁ ଥକଲେଣି, ସେମାନଙ୍କୁ ଆଉ କଣ କହିବୁ ? ମୁସ୍ତାଫା, ମୀରଜାଫର ସମସ୍ତଙ୍କୁ ଜଣିଥିଲ । ଏହି ହିନ୍ଦୁ ହାବଲଦାରଟା କିଏ ? ଏଟାର ନାମ ତ ଶୁଣା ନ ଥିଲା, ଏହି ପାଷଣ୍ଡ ମୋ ବିଜୟରେ ଅନ୍ତରାୟ ହୋଇଅଛି । ଏଟା ନ ଥିଲେ ମହିଷ-ରେଖାଠାରେ ତ ସବୁ କଥା ଛିଣ୍ଡିଥା'ନ୍ତା । ଗଙ୍ଗାକୂଳରେ ପରାଜୟର କାରଣ ଏହି ସ୍ୱଜାତିବିଦ୍ରୋହୀ ହିନ୍ଦୁ । ଏହିପରି ପାଷଣ୍ଡମାନଙ୍କ ଯୋଗେ ତ ହିନ୍ଦୁ ଧର୍ମ ଲୋପ ପାଇବାକୁ ବସିଅଛି । ନାହିଁ ରେ ବାପା ନାହିଁ, ଆଉ ଲୋଡ଼ା ନାହିଁ । ଭୁଗୁଟାରେ ବଙ୍ଗଳା ଦେଶରେ ରହି ଆଉ କଣ ହେବ ? ବାଟେ ବାଟେ ଦେଶକୁ ବାହୁଡ଼ିଯିବା ଭଲ ।

ଭାସ୍କର ପଣ୍ଡିତ ଆପଣାର ଅଭିପ୍ରାୟ ସୈନ୍ୟମାନଙ୍କ ମଧ୍ୟରେ ଘୋଷଣା କରିଦେଲେ ।

ଏହି ସମସ୍ତ କଥା ଶୁଣି ମୀର ହବିବ କହିଲେ, "ପଣ୍ଡିତଜୀ ! ଏ କଣ କରୁଅଛନ୍ତି ? ଏହା କି ବୀରର କଥା ? ଗୋଟାଏ ଯୁଦ୍ଧରେ ହାରି ଯାଇ ଏପରି ନିରାଶ ହୋଇ ପଡ଼ିଲେ ? ଦେଖନ୍ତୁ ତ ନବାବର ଧୈର୍ଯ୍ୟ ? ଆପଣ କଣ ବୁଝିଲେ ? ନବାବ ଏତେ ହାରି ହାରି ସିନା ଥରେ ଜିଣିଲା ? ସ୍ଥିର ହେଉନ୍ତୁ, ଧୈର୍ଯ୍ୟ ଧରନ୍ତୁ, ପୁନର୍ବାର ଜୟୀ ହେବେ । ଆପଣଙ୍କର କଣ କ୍ଷତି ହୋଇଅଛି ? ଶତ୍ରୁଠାରୁ ଯାହା ପାଇଥିଲେ ତେତିକ ସିନା ଛଡ଼ାଇ ନେଇଅଛି ? ପୁନର୍ବାର ଛଡ଼ାଇ ଆଣିବି, ଏଥିପାଇଁ ଭାବନା କଣ ? ଦେଖନ୍ତୁ, କେତେକାଳ ପରିଶ୍ରମ କରି କେଡ଼େ ଅଧିକାର ପାଇଅଛନ୍ତି । ଋଷିକୁଲ୍ୟା କୂଳଠାରୁ ଗଙ୍ଗାକୂଳ ପର୍ଯ୍ୟନ୍ତ ବୃହତ୍ ରାଜ୍ୟ ବର୍ତ୍ତମାନ ଆପଣଙ୍କ କରାୟତ୍ତ । ଯୁଦ୍ଧତ୍ୟାଗ କଲେ ଏହା କରି ପାରିବେ କି ? ଛି ! ଛି ! ଛି ! ଏ ବୁଦ୍ଧି ଛାଡ଼ନ୍ତୁ । ଓଡ଼ଗା ଖଣ୍ଡାଏତମାନେ ଆପଣଙ୍କୁ କଣ ବୋଲିବେ ? ଛାଡ଼ନ୍ତୁ ଏ କଥା, ସେନାପତି ବଳରେ ସୈନ୍ୟମାନଙ୍କ ବଳ । ଦେଖନ୍ତୁ, ପାଇକମାନେ କିପରି ନିସ୍ତେଜ ହୋଇ ପଡ଼ିଲେଣି । ଆସନ୍ତୁ, ଅସ୍ତ୍ର ଭିଡ଼ନ୍ତୁ, ପୁନର୍ବାର କଣ କରିବି ଦେଖିବେ ।"

ଭାସ୍କର ପଣ୍ଡିତ ଆପଣା ପକ୍ଷର ସମସ୍ତ କଥା ବର୍ଣ୍ଣନ କରି ମୀରହବିବଙ୍କୁ କହିଲେ—"ବର୍ତ୍ତମାନ କ୍ଷେତ୍ରରେ ପ୍ରବଳ ଶତ୍ରୁ ସହିତ ଯୁଦ୍ଧ କରିବା ସାଧ୍ୟାତୀତ ।"

ମୀର ହବିବ କହିଲେ, "ଏଥିପାଇଁ ଆପଣ ଏପରି ନିରାଶ ହୋଇ ପଡ଼ିଅଛନ୍ତି ? ସହଜ ମାର୍ଗରେ ସମସ୍ତେ ଚଳିଯାନ୍ତି; ଅସାଧ୍ୟ ସାଧନ କରିବା ବୀରତ୍ୱ । ସତ୍ୟ କଥା, ଆପଣଙ୍କଠାରେ କିଛି ନାହିଁ, ଟଙ୍କାରେ କଣ ନ ହୁଏ ? ଆପଣଙ୍କ ହାତରେ ଟଙ୍କା ନାହିଁ, ମୁଁ ଦେବି । ଯେତେ ଟଙ୍କା ଲୋଡ଼ା, ମୋଠାରୁ ଗଣି ନିଅନ୍ତୁ । ଏ ଉତ୍ତାରେ ମୋ କଥା ନ ଶୁଣି ଆପଣ ଯେବେ ବାହୁଡ଼ିଯିବେ, ମୁଁ ବେରାର ଅଧିପତି ରଘୁଜୀ ଭୋଁସଲାଙ୍କୁ ଭାଷା ଲେଖିବି, ଆପଣ ସେନାପତି ପଦର ଅଯୋଗ୍ୟ, ବଙ୍ଗୋତ୍କଳ ଦେଶରେ ବର୍ଗିଗୌରବ ବିନାଶକାରୀ ।"

ଖାତି ଏବଂ ମୈତ୍ରୀରେ ଭାସ୍କର ପଣ୍ଡିତ ଖାତ ଓ ଆଶ୍ୱସ୍ତ ହେଲେ । ବର୍ଗିଫୌଜରେ ମୀର ହବିବଙ୍କର ବିଶେଷ ପ୍ରତିପତ୍ତି । କାରଣ, ତାହାଙ୍କ ବୁଦ୍ଧି କୌଶଳରେ, ତାହାଙ୍କ ବୀରତ୍ୱରେ ବର୍ଗିବର୍ଗ ଅନେକ କ୍ଷେତ୍ରରେ ବିଜୟୀ । ବର୍ଗି ପାଇକମାନେ ମୀର ହବିବଙ୍କ କଥାରେ ପୋଷକତା କରିବାରୁ ନବାବ ସହିତ ପୁନର୍ବାର ଯୁଦ୍ଧ କରିବା କଥା ସ୍ଥିର ହେଲା ।

ମରହଟ୍ଟା ସ୍କନ୍ଧାବାରଠାରୁ ମୁର୍ଶିଦାବାଦ ପ୍ରାୟ କୋଡ଼ିଏ କ୍ରୋଶ ଦୂର । ମୀର ହବିବ ନବାବଙ୍କ ଅଜ୍ଞାତସାରରେ ପଞ୍ଚଦଶ ସହସ୍ର ଦ୍ରୁତଗାମୀ ଅଶ୍ୱାରୋହୀ ସୈନ୍ୟ ସହିତ ମୁର୍ଶିଦାବାଦ ଯାତ୍ରା କଲେ । ପ୍ରଭାତ

ସମୟରେ ଅତର୍କିତ ଭାବରେ ଉପସ୍ଥିତ ହୋଇ ଜଗତ୍ ସେଠଙ୍କ କୋଠି ଲୁଣ୍ଠନପୂର୍ବକ ନଗଦ ଦୁଇ କୋଟି ଟଙ୍କା ଏବଂ ଅନ୍ୟାନ୍ୟ ଅନେକ ବହୁମୂଲ୍ୟ ଦ୍ରବ୍ୟ ପ୍ରାପ୍ତ ହେଲେ । ନବାବଙ୍କ ଭବନ ତାଦୃଶ ସୁରକ୍ଷିତ ନ ଥିଲା । ନବାବଙ୍କ ଭାଇ ହାଜି ଆହମଦ ଖାଁ ଉଆସ ଏବଂ ଗଞ୍ଜାଘର ରକ୍ଷା କରୁଥିଲେ । ମୀର ହବିବ ଇଚ୍ଛା କରିଥିଲେ ଅଧିକାର କରି ପାରିଥାନ୍ତେ, ହେଲେ ତାହାଙ୍କର ସାହସ ଅଣ୍ଟିଲା ନାହିଁ ।

ମୀର ହବିବଙ୍କ ଗୁପ୍ତଯାତ୍ରା ନବାବଙ୍କଠାରେ ଅବିଦିତ ରହିଲା ନାହିଁ । ହରକରା ସମ୍ବାଦ ଦେବା ମାତ୍ର ନବାବ କାଟୋୟା ପରିତ୍ୟାଗପୂର୍ବକ ମୁର୍ଶିଦାବାଦ ଯାତ୍ରା କଲେ ।

— ——

-୩୦-

## ପାନଗିର ଉଦ୍‌ବେଗ

ନବାବ ଫୌଜ ମଧ୍ୟରେ ନବନିଯୁକ୍ତ ହିନ୍ଦୁ ହାବିଲଦାରର ଶୌର୍ଯ୍ୟ-ବୀର୍ଯ୍ୟ-କାର୍ଯ୍ୟ କାହାଣୀ ବର୍ଗି ମଣ୍ଡଳୀରେ ଅବିଦିତ ରହିଲା ନାହିଁ । ସମସ୍ତେ ଅବଗତ ହେଲେ, ହିନ୍ଦୁ ହାବିଲଦାରର ମନ୍ତ୍ରଣା ଏବଂ ବାହୁବଳରେ ନବାବ ବିଜୟୀ । ହାବିଲଦାରର ଘର ରୋହିଲଖଣ୍ଡ, ହାବିଲଦାର ଯୁବକ । ଯୁଦ୍ଧକ୍ଷେତ୍ରରେ ବର୍ଗିପକ୍ଷରୁ ଯେଉଁମାନେ ତାହାକୁ ଦେଖିଥିଲେ, ତାହାର ରୂପ ସମ୍ବନ୍ଧରେ ମଧ୍ୟ ନାନାରୂପ ବର୍ଣ୍ଣନା କଲେ । ଅସ୍ମମାନଙ୍କ ପୂର୍ବପରିଚିତ ସେହି ତାମ୍ବୁଲବିକ୍ରେତା ପାନଗି ମରହଟ୍ଟା ଫୌଜ ସଙ୍ଗେ ସଙ୍ଗେ ରହିଅଛି । ନିୟମିତରୂପେ ନିରୂପିତ ସ୍ଥାନରେ ତାହାର କାରବାର ଚଳୁଅଛି । ଆଜକୁ କେତେ ଦିନ ହେଲା ଲୋକେ ତାହାକୁ କିଛି ଅନ୍ୟମନସ୍କ ଦେଖୁଅଛନ୍ତି । କେହି ପାନ ମାଗିଲେ ଚୂନ ଦିଏ, ଗୁଆ ମାଗିଲେ ଚୂଆ ଦିଏ, ସଉଦା ଦେଇ ପଇସା ନେବାକୁ ଭୁଲେ । ଲୋକ ବିଶେଷରେ ପାନଖିଲ ଲାଞ୍ଚ ଦେଇ ମନ୍ସ୍ୱଟରେଖା ଯୁଦ୍ଧ କଥା, ଗଙ୍ଗାକୂଳ ଯୁଦ୍ଧକଥା ଶୁଣେ । ସବୁ କଥା ମଧ୍ୟରେ ନବାବ ପକ୍ଷରେ ହିନ୍ଦୁ ହାବିଲଦାରର କଥା ଶୁଣିବା ତାହାର ଆଗ୍ରହ । କେବଳ ସେହି କଥା ଶୁଣିବା ସକାଶେ ଲୋକମାନଙ୍କୁ ଯୁଦ୍ଧପ୍ରସଙ୍ଗ ପ୍ରଶ୍ନ କରେ, ହେଲେ ସୁସ୍ପଷ୍ଟରୂପେ କେବଳ ସେ ହିନ୍ଦୁ ହାବିଲଦାର କଥା ପଚାରିବାର କେହି ଶୁଣି ନାହିଁ । ପାନଗି ଦିନକରେ ନିର୍ଜନରେ ବସି ଚିନ୍ତା କଲା, 'ହେ ପ୍ରଭୋ, ହେ ଦୟାମୟ ! ସତେ କି ମୋ ପ୍ରତି କୃପା କଲ ? ମୋ ଭାଗ୍ୟ କି ସୁପ୍ରସନ୍ନ ହେବ ? ପୁଣି କି ସେହି ଶ୍ରୀଚରଣ ଦର୍ଶନ କରିବି ? ତୁମ୍ଭ ଇଚ୍ଛା ପ୍ରଭୋ ! ଦୟାମୟ ବିପଦଭଞ୍ଜନ ! ତୁମ୍ଭ ଦୟାମୟ ନାମ ସାର୍ଥକ ହେଉ ।'

ପାନଗି ଚିନ୍ତା କଲା, 'ନିବାସ ରୋହିଲଖଣ୍ଡ, ଲୋକେ ରୂପର ଯେପରି ବର୍ଣ୍ଣନା କରୁଅଛନ୍ତି, ପ୍ରତ୍ୟେକ କଥା ମିଳୁଅଛି, ନାମ କଣ ? ହିନ୍ଦୁ ହାବିଲଦାର? ହିନ୍ଦୁ ହାବିଲଦାର ତ ନାମ ନୁହେ । ଆଚ୍ଛା, ଏତେ କଥା କିଂପା ? ନିଜେ ଯାଇ ଦେଖି ଆସିଲେ ତ ସବୁ ସନ୍ଦେହ ଦୂର ହେବ । ନବାବ ବର୍ତ୍ତମାନ ମୁର୍ଶିଦାବାଦରେ, ସୈନ୍ୟ ସେନାପତି ସମସ୍ତେ ସେହି ସ୍ଥାନରେ ଥିବେ । 'ଶୁଭସ୍ୟ ଶୀଘ୍ରଂ ।' ପାନଗି ସେହି ମୁହୂର୍ତ୍ତରେ ଯାତ୍ରାରମ୍ଭ କଲା । ମାତ୍ର ମୁର୍ଶିଦାବାଦ ପର୍ଯ୍ୟନ୍ତ ତାକୁ ଯିବାକୁ ପଡ଼ିଲା ନାହିଁ, ମାର୍ଗମଧ୍ୟରେ ମନର ସନ୍ଦେହ ଦୂର ହେଲା । ହିନ୍ଦୁ ହାବିଲଦାରର ନାମ କାନକଟା ହାବିଲଦାର; ମଧ୍ୟ ସେହି ଲୋକଟାର କାନ ନାହିଁ ।

ପାନଗି ଭାବିଲା, 'ଛି ! ଛି ! ମୁଁ କାହିଁରେ ଭୁଲିଲି ! ଆଜକୁ ଚାରି ଦିନ ହେଲା ଭ୍ରାନ୍ତିରେ ଭ୍ରମୁଅଛି । ବର୍ତ୍ତମାନ ସେହି ଦୁରାଚାରର କିଛି ଅନ୍ୟମନସ୍କ କିମ୍ବା ଅସାବଧାନ । କିଏ ଜାଣେ ଏହି ଚାରିଦିନ ମଧ୍ୟରେ ମୋତେ ସୁଯୋଗ

ମିଳିଥାନ୍ତା । ମୁଁ କୁଳଦେବତା ଭଗବାନ୍ ଏକଲିଙ୍ଗଙ୍କ ନାମ ଧରି ପ୍ରତିଜ୍ଞା କରିଅଛି, ଜୀବନର ଏକ ମୁହୂର୍ତ୍ତ କାଳ ବୃଥା କାଟିବି ନାହିଁ, ଉଦ୍ଦେଶ୍ୟ ସାଧନରେ ସଚେଷ୍ଟ ଥିବି । ମୋ ଉଦ୍ଦେଶ୍ୟ ଅତୀବ ଭୀଷଣ, ଅତୀବ ଦୁରୂହ, ହେଲେ, ପ୍ରଭୁ ସାହା ହେବେ, ପ୍ରଭୁ ବଳ ବିକ୍ରମ ବିତରଣ କରିବେ ।'

ପାଗଳୀ ଆପଣା ପୂର୍ବ ସ୍ଥାନକୁ ପ୍ରତ୍ୟାବୃତ୍ତ ହେଲା ।

———

-୩୧-

## ବର୍ଗି ବିଶ୍ରାମ

ନବାବ ଆଲିବର୍ଦ୍ଦି ଖାଁ କାଟୋୟା ପରିତ୍ୟାଗ କରିବା ମାତ୍ର ଭାସ୍କର ପଣ୍ଡିତ ସେ ସ୍ଥାନ ଅଧିକାର କରି ବସିଲେ । କାଟୋୟା ସୈନ୍ୟ ସମାବେଶ ପକ୍ଷରେ ସମ୍ପୂର୍ଣ୍ଣ ଉପଯୋଗୀ । ଆଜିକୁ ତିନି ମାସ ହେଲା ବର୍ଗି ଏ ସ୍ଥାନରେ ବିଶ୍ରାମ କରି ସମରକ୍ଲାନ୍ତି ଦୂର କରୁଅଛନ୍ତି । ବର୍ଦ୍ଧମାନ, ବୀରଭୂମି, ବାଙ୍କୁଡ଼ା, ବଗୀକର ପ୍ରଭୃତି ସମସ୍ତ ସ୍ଥାନ ବର୍ଗି ହସ୍ତଗତ । ଲୋକେ ବୁଝିଲେ, ବର୍ଗି ବଙ୍ଗେଶ୍ୱର ହେଲେ; ମାତ୍ର ଭାସ୍କର ପଣ୍ଡିତ ଆଶାନୁରୂପ ଅର୍ଥଲାଭରୁ ବଞ୍ଚିତ । ଭାସ୍କର ଭୟଙ୍କର ଅର୍ଥପିଶାଚ; ଅର୍ଥ ତାଙ୍କର ସର୍ବସ୍ୱ । ପାଇକମାନଙ୍କ ଅତ୍ୟାଚାରରେ ପ୍ରଜାମାନେ ଦେଶତ୍ୟାଗୀ, ଗୃହତ୍ୟାଗୀ ହୋଇଅଛନ୍ତି । ଅର୍ଥ କାହୁଁ ଆସିବ ? ସମସ୍ତ ଧନବନ୍ତ ହିନ୍ଦୁ ମୁସଲମାନ ପ୍ରଜା ଆପଣା ଆପଣା ସମ୍ପତ୍ତି ନେଇ କଲିକତାରେ ଇଂରେଜମାନଙ୍କ ଆଶ୍ରୟରେ ରହିଅଛନ୍ତି । ଏକା କଲିକତା ଲୁଣ୍ଠନ କଲେ ବିପୁଳ ବିତ୍ତ ହସ୍ତଗତ ହେବାର ସମ୍ଭାବନା; ମାତ୍ର କେତେ ଗୋଟି କାରଣରୁ ଭାସ୍କର ପଣ୍ଡିତ ଇଂରେଜମାନଙ୍କ ବିପକ୍ଷରେ ଅସ୍ତ୍ରଧାରଣ କରି ନାହାନ୍ତି । ସଂଖ୍ୟାରେ ଇଂରେଜ ସ୍ୱଳ୍ପ ସତ୍ୟ, ମାତ୍ର ସେମାନଙ୍କ ଶୁଭ୍ର ସୈନିକ ସୁଶିକ୍ଷିତ, ସମରସମର୍ଥ, ଆଗ୍ନେୟାସ୍ତ୍ର ପରିଚାଳନାରେ ଅଦ୍ୱିତୀୟ, ପୁଣି ମାନ୍ଦ୍ରାଜ ପ୍ରଦେଶରେ ସେମାନଙ୍କର ଅନେକ ସୈନିକ ଅବସ୍ଥାନ କରୁଥିବାର ସମ୍ବାଦ ପ୍ରଚାରିତ ଅଛି । ପ୍ରୟୋଜନ ସମୟରେ ଘଟନା ସ୍ଥଳରେ ସେମାନଙ୍କର ଉପସ୍ଥିତି ବିଳମ୍ବ ହୁଏ ନାହିଁ । ଏହା ମଧ୍ୟ ପ୍ରଚାରିତ ଥିଲା ଯେ, ସେମାନଙ୍କ ରାଜା ଜର୍ଜ ଅଦ୍ୱିତୀୟ ସମ୍ରାଟ, ଅନନ୍ତ ସମୁଦ୍ରର ଅଧିପତି, ଜଳଯୁଦ୍ଧରେ ତାହାଙ୍କ ସମକକ୍ଷ କେହି ନାହିଁ । ଏଥିକୁ କଲିକତା ଲୁଣ୍ଠନ ଆପାତତଃ ଲାଭଜନକ ହେଲେହେଁ ପରିଣାମ ଭୟଙ୍କର । ଅଦ୍ୟାବଧି ବର୍ଷବର୍ଷବ୍ୟାପୀ ବିପକ୍ଷତାରେ ଆଲିବର୍ଦ୍ଦି ବଶୀଭୂତ ହୋଇ ପାରି ନାହିଁ । ଏଥିଉତ୍ତାରେ ଇଂରେଜ ସହିତ ସମରାରମ୍ଭ କରିବା ବର୍ଦ୍ଧିଷ୍ଣୁ ବିପଦମାର୍ଗ ବିସ୍ତାର କରିବା ତୁଲ୍ୟ ହେବ । ଅଗ୍ର ପଶ୍ଚାତ୍ ଦୁଇ ଦିଗର ଶତ୍ରୁ ସହିତ ଯୁଦ୍ଧ କରିବା ସହଜସାଧ୍ୟ ନୁହେ । ଏହି ସମସ୍ତ କଥା ଚିନ୍ତା କରି କଲିକତା ଆକ୍ରମଣରୁ ନିବୃତ୍ତ ହେଲେ । କି ଉପାୟରେ ସମର୍ଥ ଶତ୍ରୁ ଆଲିବର୍ଦ୍ଦି ନିହତ ଓ ମୁର୍ଶିଦାବାଦ ଧନାଗାର ହସ୍ତଗତ ହେବ, ଭାସ୍କର ପଣ୍ଡିତ ପ୍ରତିନିୟତ ଏହି ଚିନ୍ତାରେ ନିମଗ୍ନ । ତାଙ୍କ ଅଦ୍ୱିତୀୟ ସହାୟ ମନ୍ତ୍ରଣାଦାତା ମୀର ହବିବ ସହସା ମୁର୍ଶିଦାବାଦ ଆକ୍ରମଣ ବିଲୁଣ୍ଠନ କରିବା ସକାଶେ ପ୍ରତିନିୟତ ପରାମର୍ଶ ଦେଉଥାନ୍ତି । ତାଙ୍କ ପରାମର୍ଶ ଅନୁସାରେ କାର୍ଯ୍ୟାନୁଷ୍ଠାନ କରିଥିଲେ ସଫଳକାମ ହେବାର ସମ୍ପୂର୍ଣ୍ଣ ସମ୍ଭାବନା ଥିଲା । ମାତ୍ର ନାନା କାରଣରୁ ମନ୍ତ୍ରଣା କାର୍ଯ୍ୟରେ ପରିଣତ ହୋଇ ପାରି ନାହିଁ ।

———

-୩୨-

## ସମ୍ପଦେ ବିପଦେ ନବାବ

ଭୀଷଣ ବର୍ଗି ଯୁଦ୍ଧରୁ ନବାବ ଅକ୍ଷତ ଦେହରେ ବାହୁଡ଼ିବେ, ଏ ଆଶାକୁ ମୁର୍ଶିଦାବାଦବାସୀମାନେ ମନ ମଧ୍ୟରେ ସ୍ଥାନ ଦେଇ ନ ଥିଲେ । ଆଜି ନବାବ

ମଧ୍ୟ ଯୁଦ୍ଧଯାତ୍ରା ସମୟରେ ଜୀବନାଶା ପରିତ୍ୟାଗ କରିଥିଲେ । ନବାବ ଅକ୍ଷତ ସୁସ୍ଥ ଦେହରେ ପ୍ରତ୍ୟାଗତ ହୋଇଅଛନ୍ତି । ଆଜ ମୁର୍ଶିଦାବାଦ ଆନନ୍ଦ ଉତ୍ସବରେ ପରିପୂର୍ଣ୍ଣ । ପୁଷ୍ପମାଳା ପତାକା ଚୂତପଲ୍ଲବମାଳାରେ ରାଜମାର୍ଗ ପରିଶୋଭିତ । ସ୍ଥାନେ ସ୍ଥାନେ ମଧୁର କାହାଲୀ ପୂରବୀରାଗିଣୀ ଆଳାପ କରି ରୋଶନ ଚୌକା ବାଜୁଅଛି । ହିନ୍ଦୁମାନଙ୍କ ଦ୍ୱାରଦେଶରେ କଦଳୀ ବୃକ୍ଷ ରୋପିତ, ପୂର୍ଣ୍ଣକୁମ୍ଭ ସ୍ଥାପିତ ହୋଇଅଛି । ଖ୍ୟାତନାମା ମୌଲବୀ ସାହେବମାନେ ଅତର ସୁବାସିତ ମହାର୍ଘ ବସନରେ ଭୂଷିତ ହୋଇ ନବାବ ସାହେବଙ୍କ ଦୁଆ ମନାଇବା ସକାଶେ ଚଞ୍ଚଳପଦରେ ମସ୍‌ଜିଦକୁ ଲକ୍ଷ୍ୟ କରି ଚାଲିଅଛନ୍ତି । ସର୍ବସ୍ଥାନ ଗୀତ ବାଦ୍ୟ ଆନନ୍ଦ ଉତ୍ସବରେ ପରିପୂର୍ଣ୍ଣ । ଧନଶାଳୀ ଲୋକମାନେ ଦରିଦ୍ର-ମାନଙ୍କୁ ଅକାତରେ ଅର୍ଥ ବିତରଣ କରୁଅଛନ୍ତି । କି ସମ୍ଭ୍ରାନ୍ତ, କି ସାମାନ୍ୟ ନଗରବାସୀ ସମସ୍ତେ ନବାବଙ୍କୁ ଦର୍ଶନ କରିବା ସକାଶେ ଆନନ୍ଦମନରେ ଧାବିତ । ସିଂହଦ୍ୱାରଠାରେ ନବାବ ହସ୍ତୀରୁ ଓହ୍ଲାଇ ସମାଗତ ସମସ୍ତ ଲୋକଙ୍କୁ ଯଥାଯୋଗ୍ୟ ସାଦର ସମ୍ଭାଷଣଦ୍ୱାରା ଆପ୍ୟାୟିତ କରି ଦୌହିତ୍ର ସିରାଜ ଉଦ୍ଦୌଲାର ହସ୍ତ ଧାରଣ ପୂର୍ବକ ମହଲକୁ ବିଜେ କଲେ । ବେଗମ ସାହେବା ବାନ୍ଦୀମାନଙ୍କ ସହିତ ଆସି ସସମ୍ଭ୍ରମରେ ପାଛୋଟି ନେଇଗଲେ । ସର୍ବସାଧାରଣଠାରୁ ବେଗମ ସାହେବା ବିଶେଷ ଆନନ୍ଦିତା । ନବାବଙ୍କ ଯୁଦ୍ଧଯାତ୍ରା ଦିବସରୁ ସେ ଜୀବନ୍ମୃତା ତୁଲ୍ୟ ପଡ଼ି ରହିଥିଲେ । ଜୀବନବଲ୍ଲଭଙ୍କୁ ପାଇ ପ୍ରକୃତ ଜୀବନ ପ୍ରାପ୍ତ ହୋଇଅଛନ୍ତି । ହାସ୍ୟ କୌତୁକ ଗୀତ ବାଦ୍ୟ ଆନନ୍ଦ ଉତ୍ସବରେ ବେଗମ ମହଲ କମ୍ପିତ ହେଉଅଛି । ବେଗମ ସାହେବା ସିରାଜ ଉଦ୍ଦୌଲାକୁ କୋଳରେ ବସାଇ ବାରମ୍ବାର ମୁଖ ଚୁମ୍ବନ କରିବାକୁ ଲାଗିଲେ । ନବାବ ଆଲିବର୍ଦ୍ଦି ଖାଁଙ୍କର ଅନ୍ୟ ସହସ୍ର ଦୁର୍ଗୁଣ ଥାଉ ପଛକେ, ଗୋଟିଏ ସୁମହତ୍ ଗୁଣ ଥିଲା, ସେ ଏକପତ୍ନୀବ୍ରତ । ବହୁପତ୍ନୀପ୍ରିୟ ମୁସଲମାନ ନବାବ ମଣ୍ଡଳୀରେ ଏହା ଗୋଟିଏ ବିରଳ ଦୃଶ୍ୟ । ଏଥିକୁ ପ୍ରକୃତ ଦାମ୍ପତ୍ୟ ପ୍ରେମର ଦେବଦୁର୍ଲ୍ଲଭ ସୁଖଭୋଗ ତାହାଙ୍କ ପକ୍ଷରେ ସୁଲଭ ଥିଲା । ବେଗମ ସାହେବା ଆଜ ସମସ୍ତ ଦିନବ୍ୟାପୀ ଅର୍ଥ ବିତରଣଦ୍ୱାରା ଆପଣାର ଧନାଗାର, ବସ୍ତ୍ରାଗାର ଶୂନ୍ୟ କରି ପକାଇଲେଣି ।

ହାବିଲଦାର, ସର୍ଦ୍ଦାର, ମନସବଦାର, ଜମାଦାର, ସିପାହୀମାନେ ଦୁଶ୍‌ମନ୍ ମାରି ଜଙ୍ଗ୍ ଫତେ କରି ଫେରିଅଛନ୍ତି । ବିବୀ ମାନଙ୍କର ଆନନ୍ଦର ସୀମା ନାହିଁ । ନାସ୍ତା ସକାଶେ ମିଠାଇ, ମୋହନଭୋଗ, କଚୁରି, ପରୋଟା, ସିମାଇ, ଖିରଣୀ ପ୍ରସ୍ତୁତ କରି ସାରି ପଲଓ, ସୁରୁଆ, ଖେଚୁଡ଼ି ରାନ୍ଧିବାକୁ ବସିଯାଇଅଛନ୍ତି । ପକ୍ଷାଧିକ କାଳ ଏହିପରି ଆନନ୍ଦ ଉତ୍ସବ, ନୃତ୍ୟ, ଗୀତ, ଖାନା, ଜାଫତ ମାଫତରେ କଟିଗଲା ।

ଆମ୍ଭମାନଙ୍କର ଆଦିପିତା ପ୍ରଥମ ଦିବସ ସୂର୍ଯ୍ୟୋଦୟ ଦେଖି ଭାବିଥିବେ, ଏହି ଜ୍ୟୋତିର୍ମୟ ପଦାର୍ଥ ସର୍ବଦା ଗଗନମଣ୍ଡଳରେ ବିରାଜିତ ଥିବ, ପୃଥିବୀ ଏହିପରି ଆଲୋକିତ ହୋଇ ରହିଥିବ । ମାତ୍ର ସାୟାହ୍ନ ସମୟରେ ସେ ସୂର୍ଯ୍ୟାସ୍ତ ଦେଖି ଅବଶ୍ୟ ଚମତ୍କୃତ ଭୀତ ହୋଇ ପଡ଼ିଥିବେ । ଅଧିକନ୍ତୁ ରଜନୀରେ ଅନ୍ଧକାର ସମାଗମ ଦେଖି ମନରେ ଭାବିଥିବେ, ପୃଥିବୀ ଚିରକାଳ ଅନ୍ଧକାରବ୍ୟାପ୍ତ ହୋଇ ରହିବ । ଯେଉଁ ସୂର୍ଯ୍ୟ ଅସ୍ତ ଗଲେ ତାଙ୍କର ଆଉ ଉଦୟ ହେବ ନାହିଁ । ସେହିପରି ଆମ୍ଭେମାନେ ସୁଖ ସମୟରେ ଏପରି ଉନ୍ମତ୍ତ ହୋଇ-ପଡ଼ୁଁ, ଯେ ଅତଃପର ଯେ ଦୁଃଖ ଆସୁଅଛି, ଏ କଥା ମନ ମଧ୍ୟରେ ସ୍ଥାନ ଦେବାକୁ ଅବସରର ଅଭାବ ହୁଏ । ଦୁଃଖ ସମୟରେ ମଧ୍ୟ ସେହିପରି ନୈରାଶ୍ୟ ଆସି ଆମ୍ଭମାନଙ୍କ ହୃଦୟକୁ ଆଚ୍ଛନ୍ନ କରି ରଖେ ।

ମୁର୍ଶିଦାବାଦରେ ଏତେ ଯେ ଆନନ୍ଦ, ଏତେ ଯେ ଉତ୍ସବ, ସବୁ ପ୍ରସ୍ଫୁଟିତ ଶେଫାଳିକା କୁସୁମବତ୍ ହଠାତ୍ ଅନ୍ତର୍ହିତ ହୋଇଗଲା । ଘୋର ବିପଦ ! ତିନି ଦିଗରୁ ତିନି ପ୍ରବଳ ପରିପନ୍ଥୀ ଉପସ୍ଥିତ ।

ପ୍ରଥମ ଶତ୍ରୁ—ପ୍ରବଳ ପ୍ରଧାନ ଶତ୍ରୁ ଭାସ୍କର ପଣ୍ଡିତ । ସେ ତ ଲାଗି ରହିଅଛନ୍ତି ।

ଦ୍ୱିତୀୟ ଶତ୍ରୁ—ବାଲାଜୀ ରାଓ ହୁଲକାର ଚୌଥ ଆଦାୟ ନିମନ୍ତେ ବେହାର ପ୍ରଦେଶରେ ଲୁଟପାଟ ଆରମ୍ଭ କରିଅଛନ୍ତି ।

ତୃତୀୟ ଶତ୍ରୁ—ଦିଲ୍ଲୀ ବାଦସାହଙ୍କ କାରକୁନ । ବଙ୍ଗଳା ସୁବାର ରାଜସ୍ୱ ଦୁଇ ବର୍ଷ ହେଲା ଦିଲ୍ଲୀ ଗନ୍ତାଘରେ ଭେଟ ନ ହେବାରୁ ବାଦସାହ ସରକାରରୁ ପରୁଆନା ଆଣି କାରକୁନ ମୁର୍ଶିଦାବାଦରେ ଜୁଲମ ଲଗାଇଅଛନ୍ତି ।

ନବାବଙ୍କ ଭାବନାର ଇୟତ୍ତା ନାହିଁ । ଅଭାବ ବେଳେ ସବୁଠି ଅଭାବ । ଗନ୍ତାଘରେ ଅର୍ଥାଭାବ । ପ୍ରଜାଙ୍କଠାରୁ ଖଜଣା ଅସୁଲ ହେବାର ସମ୍ଭାବନା ନାହିଁ । ମୂଳରେ ମାନବାଭାବ; ଖଜଣା ଦେବ କିଏ ? ସେଉଁ ପ୍ରଜାମାନେ ନିତାନ୍ତ ମାୟା ନ ଛାଡ଼ି ପୈତୃକ ଭିଟାରେ ପଡ଼ି ରହିଅଛନ୍ତି, ସେମାନେ ସର୍ବସ୍ୱାନ୍ତ । ଦେଶର କୃଷିଯୋଗ୍ୟ ସମସ୍ତ ଭୂମି ପତିତ । ପ୍ରତିବିଧାନ ନ ହେଲେ ଭବିଷ୍ୟତରେ ମଧ୍ୟ ଅର୍ଥାଗମର ଉପାୟ ନାହିଁ । ଜଗତ୍ ସେଠ୍‌ଠାରୁ ଧାର କରଜ କରି ଅଭାବ ମୋଚନ କରନ୍ତେ, ମୀର ହବିବ ସେ ମାର୍ଗରେ କଣ୍ଟକପାତ କରି ଯାଇଅଛି ।

ନବାବ ଆଲିବର୍ଦ୍ଦି ଖାଁ ପ୍ରବୀଣ ଏବଂ ଧୈର୍ଯ୍ୟଶୀଳ ଲୋକ । ଏହି ବିପଦସଙ୍କୁଳ ସମୟରେ ବିଚଳିତ ହେଲେ ନାହିଁ । ଦିଲ୍ଲୀ ବାଦସାହାଙ୍କଠାକୁ ଅର୍ଜି କଲେ, "ପ୍ରଭୋ ! ବର୍ଗିବର୍ଗ ସୁବା ମଧ୍ୟରେ ଉତ୍ପାତ ଲଗାଇ ଅଛନ୍ତି; ରାଜ୍ୟ ଅରଣ୍ୟମୟ, ଆପଣଙ୍କ ରାଜସ୍ୱ କିପରି ଆଦାୟ କରିବ ?"

ବାଦସାହ ନବାବଙ୍କ ଆବେଦନର ସତ୍ୟତା ପ୍ରମାଣ ପାଇ ରାଜସ୍ୱ ମହକୁବ ରଖିଲେ । ଅଧିକନ୍ତୁ ତାହାଙ୍କୁ ପାଇକଦ୍ୱାରା ସାହାଯ୍ୟ ଦେବା ନିମନ୍ତେ ଅଯୋଧ୍ୟା ସୁବାଦାରଙ୍କ ନିକଟକୁ ପରୁଆନା ପଠାଇଲେ । ନବାବ କଥଞ୍ଚିତ୍ ଆଶ୍ୱସ୍ତ ହେଲେ । ତଥାପି ଦୁଇ ପ୍ରବଳ ଶତ୍ରୁ ବର୍ତ୍ତମାନ । ଗୋଟିଏ ଶତ୍ରୁକୁ ଶାସନ କରି ହେଉ ନାହିଁ, ଦୁଇଗୋଟି ଶତ୍ରୁ ସହିତ ଯୁଦ୍ଧ କରିବା ସହଜ-ସାଧ୍ୟ ନୁହେଁ ।

ମନ୍ତ୍ରୀମାନଙ୍କ ମନ୍ତ୍ରଣାନୁସାରେ ହୁଲକାର ସହିତ ସନ୍ଧି କରିବାର ସିଦ୍ଧାନ୍ତ ହେଲା । ନାନାରୂପ ଉପାଦେୟ ଉପହାର ସହିତ ଜାନକୀରାମ, ସର୍ଦ୍ଦାର ଖାଁ ଦୁଇ ଜଣ ସନ୍ଧି ପ୍ରସ୍ତାବ କରିବା ସକାଶେ ହୁଲକାରଙ୍କ ନିକଟକୁ ପ୍ରେରିତ ହେଲେ । ରୋଗୀର ବାଞ୍ଛିତ ବୈଦ୍ୟର ବ୍ୟବସ୍ଥା । ହୁଲକାରଙ୍କର ତାହିଁ ଇଚ୍ଛା । ବିନା ଯୁଦ୍ଧ, ବିନା ରକ୍ତପାତ, ବିନା ପରିଶ୍ରମରେ ଯେବେ ଅର୍ଥ ଲାଭ ହେଲା, ଏଥିଁ ବଳି ସୁଖକର କଥା ଆଉ କଣ ଅଛି ?

ରାଜମହଲ ନିକଟରେ ନବାବ ଏବଂ ହୁଲକାରଙ୍କ ମଧ୍ୟରେ ଭେଟ ହେଲା । ନବାବ ସାହେବ କେତେକ ଉପାଦେୟ ଦ୍ରବ୍ୟ ଉପହାର ଦେଇ ମଧୁର ବାକ୍ୟରେ ତାହାଙ୍କୁ ସାନ୍ତ୍ୱନା କରିବାକୁ ଲାଗିଲେ । ମାତ୍ର ହୁଲକାର କେବଳ କଥାରେ ଭୁଲିବାର ଲୋକ ନୁହନ୍ତି, ତାଙ୍କର ଲକ୍ଷ୍ୟ ଅର୍ଥ ପ୍ରତି । ଏଣେ ତାଙ୍କ ବାସନା ପୂର୍ଣ୍ଣ କରିବା ନିମନ୍ତେ ନବାବ ଆପାତତଃ ଅକ୍ଷମ । ଅବଶେଷରେ ସ୍ଥିର ହେଲା, ହୁଲକାରଙ୍କ ଓକିଲ ମୁରଶିଦାବାଦରେ ରହିବେ, ତିନିମାସ ଉତ୍ତାରେ ସନ୍ଧି ସର୍ତ୍ତ ଅନୁସାରେ ଏକ କୋଟି ଟଙ୍କା ନେଇ ପଶ୍ଚାତ୍ ରମାନା ହେବେ ।

ବାଲାଜୀ ହୁଲକାର ସସୈନ୍ୟ ସ୍ୱଦେଶକୁ ରମାନା ହେଲେ ।

ଏଣେ ବେହାର ଫୌଜଦାର ଭାସ୍କର ପଣ୍ଡିତ ଏତାବତ୍ କାଳ ନିଶ୍ଚେଷ୍ଟ ଭାବରେ କାଟୋୟାଠାରେ

ହନ କାହିଁଥିଲେ । ସମ୍ପ୍ରତି ହୁଲକାର ନବାବଙ୍କ ଠାରୁ ଏକ କ୍ରୋର ଟଙ୍କା ନେଇ ଯିବାର ଶୁଣି ସମରାୟୋଜନ କରିବାକୁ ଲାଗିଲେ ।

———

-୩୩-

## ନବାବ ବାଦଲ ସିଂହ ବାଗ୍‌ବିତଣ୍ଡା

ରାତି ପ୍ରହରେକ ଅତୀତ ପ୍ରାୟ, ନବାବ ସାହେବଙ୍କ ମହଲସ୍ଥ ଏକ ନିଭୃତ ପ୍ରକୋଷ୍ଠ ମଧ୍ୟରେ ଦୁଇ ଜଣ ଲୋକ ବସି ଅତି ସଙ୍ଗୋପନରେ କଥୋପକଥନ କରୁଅଛନ୍ତି । ତୃତୀୟ ଲୋକ ନାହିଁ । ଦ୍ୱାର ଦେଶରେ ଉନ୍ମୁକ୍ତ କୃପାଣହସ୍ତ ପ୍ରହରୀ ସାବଧାନତା ସହିତ ସ୍ୱକାର୍ଯ୍ୟ ସାଧନରେ ନିଯୁକ୍ତ ।

"ଦେଖ ହାବଲଦାର ବାଦଲସିଂହ, ଆମ୍ଭ ଦୁଇ ଜଣଙ୍କର ଏକମାତ୍ର ଉଦ୍ଦେଶ୍ୟ ରାଘବ ପଣ୍ଡିତଙ୍କର ନିଧନ ସାଧନ । ମାତ୍ର ବର୍ତ୍ତମାନ ଆମ୍ଭର ଯାଦୃଶ ଅବସ୍ଥା, ସନ୍ଧି ବ୍ୟତୀତ ଗତ୍ୟନ୍ତର ନାହିଁ ।"

ନବାବ ଅଲିବର୍ଦ୍ଦି ଖାଁ ଏହି କଥା କହିବାରୁ ବାଦଲସିଂହ କିଞ୍ଚିତ୍ ଉତ୍ତେଜିତ ହୋଇ କହିଲେ, "ହଜୁର ଜାହାଁପନା ! ମୋ ଗୋସ୍ତାକି ମାଫ ହେଉ, ତେବେ ମୋ ଇସ୍ତଫା ଗ୍ରହଣ କରନ୍ତୁ, ମୁଁ ଚାଲିଯାଏଁ । ହଜୁର ହୁକୁମ କରୁଅଛନ୍ତି ଦୁଇ ଜଣଙ୍କର ଉଦ୍ଦେଶ୍ୟ ଏକ । ନାହିଁ, ନାହିଁ, ସେ କଥା ନୁହେ । ହଜୁରଙ୍କ ଉଦ୍ଦେଶ୍ୟ ରାଜ୍ୟଶାସନ, ମୋ ଉଦ୍ଦେଶ୍ୟ ବୈର ସାଧନ । ହଜୁର ହଜାର ଉପାୟରେ ଦୁସମନର ମେହେରବାନି ହାସଲ କରନ୍ତୁ, ମୁଁ ଚାଲିଯାଏ । ମୁଁ ଏହି କଥା ମନ ମଧ୍ୟରେ ପୋଷଣ କରି ଯାଏଁ, ବଙ୍ଗ ବେହାର ଓଡ଼ିଶାର ସୁବାଦାର ପ୍ରତିଶ୍ରୁତି ପାଳନରେ ଉଦାସୀନ । ଜଗତ ଜାଣନ୍ତୁ ନବାବ ସାହେବ ହୀନବଳ, ତାଙ୍କର ସ୍ୱକୀୟ ଶକ୍ତି କିଛି ମାତ୍ର ନାହିଁ, ଦୁସମନ୍‌ଠାରୁ କୃପା ଭିକ୍ଷା କରି ରାଜ୍ୟ ଶାସନ କରୁଅଛନ୍ତି । କଲିକତାର ଇଂରେଜ ବଣିକମାନେ ଜାଣନ୍ତୁ, ଭୟ ପ୍ରଦର୍ଶନ ଦ୍ୱାରା ନବାବଙ୍କଠାରୁ ଟଙ୍କା ଅସୁଲ କରିନେବା କିମ୍ବା କିଞ୍ଚିତ୍ ବଳ ବିକ୍ରମ ପ୍ରକାଶ କରି ନବାବୀ ତକ୍ତ ହସ୍ତଗତ କରିବା ଶକ୍ତ କଥା ନୁହେ । ଦିଲ୍ଲୀ ବାଦସାହ ଜାଣନ୍ତୁ, ଉପଯୁକ୍ତ ଲୋକ ହସ୍ତରେ ନବାବୀ ନ୍ୟସ୍ତ ହୋଇ ନାହିଁ ।"

ନବାବ ସାହେବ କହିଲେ, "ବାଦଲ ! ତୁମ୍ଭେ ଧୈର୍ଯ୍ୟଧର ରହ, ସମୟରେ ତୁମ୍ଭ ଅଭୀଷ୍ଟ ସାଧନ ସକାଶେ ସହାୟ ହେବୁଁ, ଆମ୍ଭ ନିକଟରୁ ଚାଲି ଯାଇ ଏକାକୀ କଣ କରିବ ?"

ବାଦଲ ସିଂହ—ମୁଁ ଏକାକୀ ନୁହେଁ, ସର୍ବଶକ୍ତିମାନ୍ ଭଗବାନ ଏକଲିଙ୍ଗ ମୋହର ସହାୟ । ମୋହର ଉଦ୍ଦେଶ୍ୟ ଯେବେ ସାଧୁ ହୁଏ, ପ୍ରଭୁ ମୋର ସହାୟ ହେବେ । ସାଧୁ ସଂକଳ୍ପରେ ସର୍ବଶକ୍ତିମାନ୍ ପ୍ରଭୁ ସହାୟ ହୁଅନ୍ତି । ମାନବର ଭରସା ବିଡ଼ମ୍ବନା ମାତ୍ର । ଦୃଷ୍ଟାନ୍ତ ସଂଗ୍ରହ କରିବା ସକାଶେ ଅଧିକ ଦୂର ଯିବାକୁ ହେବ ନାହିଁ । ମୁଁ ପ୍ରଭୁଙ୍କ ନାମରେ ପ୍ରତିଜ୍ଞା କରିଅଛି, ପିତୃଘାତିକୁ ସ୍ୱହସ୍ତରେ ବଧ କରିବି, ନଚେତ୍ ଆତ୍ମଘାତୀ ହେବି । କ୍ଷତ୍ରିୟ ଜାତି ସତ୍ୟବାଦୀ, କ୍ଷତ୍ରିୟର ପ୍ରତିଜ୍ଞା ଅଟଳ, କୌଣସି ପ୍ରକାର ବାଧାବିଘ୍ନ, କୌଣସି ପ୍ରକାର ପ୍ରଲୋଭନ ମୋତେ ପ୍ରତିଜ୍ଞା ପାଳନ୍ ବିଚଳିତ କରିଇ ପାରିବ ନାହିଁ । ଆପଣ ସତ୍ୟ ପ୍ରତିଜ୍ଞା କରି ଯାହା କହିଥିଲେ, ଆଜ ସେଥିର ଅନ୍ୟଥାଚରଣ କରିବାକୁ କୁଣ୍ଠିତ ହେଲେ ନାହିଁ, ଅଥବା ରାଜପୁରୁଷ ପକ୍ଷରେ ଏହା ବିଚିତ୍ର ନୁହେ । ରାଜନୀତି ସ୍ୱଭାବରେ ବହୁରୂପା, ଏଥିକୁ ରାଜପୁରୁଷମାନଙ୍କୁ ବହୁରୂପ ଧାରଣ କରିବାକୁ ହୁଏ । ମାତ୍ର ମୋ କଥା ସ୍ୱତନ୍ତ୍ର । ମୁଁ ଅନ୍ନଦାସ ହୋଇ

ଆପଣଙ୍କ ନିକଟରେ ଗୃହର କର ପାରିବ ନାହିଁ । ଏହିକ୍ଷଣି ମୋ ଇସ୍ତଫା ଗ୍ରହଣ କରନ୍ତୁ ।

ବାଦଲସିଂହ ମୁଖରୁ ଏହି ସମସ୍ତ କଥା ଶୁଣି ନବାବ ବିରକ୍ତ ହେଲେ ନାହିଁ, ବରଞ୍ଚ ଲଜ୍ଜିତ ହେଲେ ।

ନବାବ ଚିନ୍ତା କଲେ, ବାଦଲ ଆପଣା ପ୍ରାଣପ୍ରତି ନିର୍ମମ । ଯେଉଁ ଲୋକ ମୃତ୍ୟୁକୁ ଭୟ ନ କରେ, ସେ ଜଗତରେ ନିର୍ଭୀକ । ନବାବ ଆହୁରି ମଧ୍ୟ ଚିନ୍ତା କଲେ, ବାଦଲ ଧନାଭିଳାଷୀ ନୁହେ କିମ୍ବା ପଦ-ମର୍ଯ୍ୟାଦା ଲାଭ ନିମନ୍ତେ ଆମ୍ଭଠାରେ ଗୃହର କର ନାହିଁ । ଏ କ୍ଷେତ୍ରରେ ସେ କିପାଇଁ ଅସଦ୍‌ବ୍ୟବହାର ପାଇଁ ଆମ୍ଭକୁ ଅସମ୍ମାନ ନ କରିବ ?

ନବାବଙ୍କ ମନରେ ଉଦୟ ହେଲା, ବାଦଲ ସିଂହ ପିଲା, ଆମ୍ଭ ଅଧୀନସ୍ଥ ଲୋକ, ତାହାଠାରେ ପ୍ରତିଜ୍ଞା ପାଳନରେ ବିମୁଖ ହେଲୁଁ, ଲଜ୍ଜାକର କଥା ।

ନବାବ ଆହୁରି ମନ ମଧ୍ୟରେ ଭାଳିଲେ, ବାଦଲ ସିଂହ ହିନ୍ଦୁ କାଫେର, ପ୍ରତିଜ୍ଞା ପାଳନରେ ଅଟଳ, ମୁଁ ମୁସଲମାନ ହୋଇ ବାକ୍ୟ ବିଚଳିତ ହେଲି, ଛି !

ଏହି ସମସ୍ତ କଥା ଚିନ୍ତା କରି ନବାବ କହିଲେ, "ବାଦଲ ! ତୁମ୍ଭେ ପିଲା ଲୋକ, କଥା ନ ବୁଝି ଆମ୍ଭ ପ୍ରତି ବିରକ୍ତ ହେଉଅଛ । ଦେଖ, ଆଜକୁ ତିନ ବର୍ଷ ହେଲା ବର୍ଗି ଆମ୍ଭ ସଙ୍ଗରେ ଲାଗିଅଛି । ଆମ୍ଭକୁ ସର୍ବସ୍ୱାନ୍ତ କରି ପକାଇଲାଣି । ଦେଖ, ଆମ୍ଭର କମାଣ ନାହିଁ । ବନ୍ଧୁକ ନାହିଁ; ଖାଇବାକୁ ମଧ୍ୟ ମୁଠାଏ ନାହିଁ ଗନ୍ତାଘର ଶୂନ୍ୟ ଦେଖି କାଳବାସି କେହି ଦେଉ ନାହାନ୍ତି, ରାଜ୍ୟ ଲଣ୍ଡ ଭଣ୍ଡ, କାହାକୁ ଘେନ କ'ଣ ଧରି ଯୁଦ୍ଧ କରିବୁଁ ? ଆହୁରି ଦେଖ, ଦିବାନିଶି ଚିନ୍ତା; ଯୁଦ୍ଧ କ୍ଷେତ୍ରରେ ଅନାହାର ଅନିଦ୍ରାରେ ଦେହ ଭାଙ୍ଗିଗଲାଣି; ଆଉ ଶକ୍ତି ନାହିଁ । ଦେଖ ବାଦଲ, ଆମ୍ଭ ଶରୀର ଦେଖ, ଆମ୍ଭେ କି ସହଜରେ ସନ୍ଧି କରିବାକୁ ସ୍ୱୀକୃତ ହୋଇ-ଅଛୁ ? ଯୁଦ୍ଧକ୍ଷେତ୍ରର ଅବସ୍ଥା ତୁମ୍ଭକୁ ବୋଲିବାକୁ ହେବ ନାହିଁ । ସେହି ସଙ୍କଟ ସମୟରେ ତୁମ୍ଭେ ସହାୟ ହୋଇ ନ ଥିଲେ ଆଜ କଣ ହୋଇଥାନ୍ତା ! ପ୍ରକୃତ କଥା ବାଦଲ ! ତୁମ୍ଭ ପ୍ରତିଜ୍ଞା ଶୁଣି ଆମ୍ଭେ କେତେ ବଳ ବାନ୍ଧିଥିଲୁଁ, କଣ କରିବୁଁ ? ନାଚାର ।"

ବାଦଲ ସିଂହ କିଞ୍ଚିତ୍ ଅପ୍ରତିଭ, ବିମର୍ଷିତ ହୋଇ କହିଲେ, "ଜାହାଁପନା, ହଜୁର ! ଦୁସମନ ବିନାଶର କି ଅନ୍ୟ କିଛି ଉପାୟ ନାହିଁ ?"

ଏ ଉତ୍ତରେ ନବାବ ବାଦଲ ସିଂହ ଦୁଇଜଣ ଅନେକ ରାତି ପର୍ଯ୍ୟନ୍ତ ଅତି ସଂଗୋପନରେ ବସି ମନ୍ତ୍ରଣା କଲେ । ଏତେ ସାବଧାନ, ଏତେ ଅନୁଚ୍ଚସ୍ୱରରେ କଥୋପକଥନ ହେଲେ ଯେ, ଅନ୍ୟ ପ୍ରାଣୀର ଅଗୋଚର । ଅବଶେଷରେ ନବାବ କହିଲେ, "ପାରିବ ତ ?"

ବାଦଲ ସିଂହ, "ନିଶ୍ଚୟ, ନିଶ୍ଚୟ, ନିଶ୍ଚୟ । ଜାହାଁପନା, ମୁଁ ଧର୍ମ ଅଧର୍ମ ଜାଣେ ନାହିଁ, ନ୍ୟାୟ ଅନ୍ୟାୟ ଜାଣେ ନାହିଁ । ଏତିକି ଜାଣେ ପିତୃଆଜ୍ଞା ମୋହର ବିଧି । ସ୍ୱହସ୍ତରେ ପିତୃହନ୍ତାକୁ ବଧ କରିବ, ଏହାହିଁ ମୋହର ପ୍ରତିଜ୍ଞା । ପିତୃବୈର ସାଧନକୁ ମହା ପୁଣ୍ୟକର ବିଷୟ ଜ୍ଞାନ କରେଁ । ଯେନ ତେନ ପ୍ରକାରେଣ ଶତ୍ରୁ ନିପାତ ସାଧନ ଧର୍ମଶାସ୍ତ୍ରର ବିଧାନ । ସ୍ୱୟଂ ଭଗବାନ୍ ଶ୍ରୀକୃଷ୍ଣ କୌଶଳରେ ଜରାସନ୍ଧକୁ ବିନାଶ କରିଥିଲେ ।"

ନବାବ, "ସେନାପତି ମୁସ୍ତାଫା ଏଥିରେ ସମ୍ମତ ହେବେ କି ନାହିଁ ମୋହର ସନ୍ଦେହ ଅଛି ।"

ବାଦଲ—"ଆପଣଙ୍କ କାବୁଲ କସମିସବାଲା ସେନାପତିଙ୍କୁ ଭଲକରି ଚିହ୍ନିଲଣି । ଭୁକିଲା କୁକୁର ମୁହଁରେ ମାଂସ ଖଣ୍ଡେ ଗୁଞ୍ଜି ଦେଲେ ତୁନ ।"

———

-୩୪-

## ସନ୍ଧି ପ୍ରସ୍ତାବ—ଚତୁରେ ଚାତୁରୀ

କାଟୋୟାଠାରେ ଭାସ୍କର ପଣ୍ଡିତଙ୍କ ତମ୍ବୁ ମଧ୍ୟରେ ନବାବ ପ୍ରେରିତ ଦେୱାନ ଜାନକୀରାମ, ପଞ୍ଚ ପ୍ରହରୀ, ମନସବଦାର ସର୍ଦ୍ଦାର ଖାଁ ଏବଂ ସ୍ୱୟଂ ଭାସ୍କର ପଣ୍ଡିତ ତିନ ଜଣ ବସି ସନ୍ଧି ସମ୍ବନ୍ଧରେ କଥୋପକଥନ କରୁଅଛନ୍ତି । ଅନେକ ତର୍କ ବିତର୍କ, ଅନେକ ବାଦାନୁବାଦ, ଅନେକ କଥୋପକଥନ ଉତ୍ତାରେ ଜାନକୀରାମ କହିଲେ, "ଦେଖିବା ହେଉ ପଣ୍ଡିତଜୀ, ମୁଁ ହିନ୍ଦୁ । ହିନ୍ଦୁ ହିନ୍ଦୁର ମଙ୍ଗଳ କାମନା କରିବା ସ୍ୱାଭାବିକ । ଅପରନ୍ତୁ ମୁଁ ନବାବ ସାହେବଙ୍କ ବର୍ତ୍ତନଗ୍ରାହୀ ଭୃତ୍ୟ, ଏଥିକୁ ତାଙ୍କର ସ୍ୱାର୍ଥ ପ୍ରତି ଦୃଷ୍ଟି ରଖି କାର୍ଯ୍ୟ କରିବା ମଧ୍ୟ ମୋ ପକ୍ଷରେ ଅବଶ୍ୟ କର୍ତ୍ତବ୍ୟ । ବର୍ତ୍ତମାନ ମୁଁ ଉଭୟ ପକ୍ଷର ମଙ୍ଗଳସାଧକ କାର୍ଯ୍ୟ ପ୍ରତି ଦୃଷ୍ଟି ରଖି ବୋଲୁଅଛି, ମିଳନ ସର୍ବାଂଶରେ ଶ୍ରେୟଃପ୍ରଦ ଅଟେ । ବିଗ୍ରହ କରି ଦେଖିଲୁ, ଏଥିବିଷୟରେ ବରଞ୍ଚ ଆପଣଙ୍କ ପକ୍ଷରେ ଅଧିକତର କଷ୍ଟଲାଭର ସମ୍ଭାବନା । ସୁଲଭ ନିଶ୍ଚିତ-ଲାଭ ତ୍ୟାଗପୂର୍ବକ ସଙ୍କଟସଙ୍କୁଳ ଅନିଶ୍ଚିତ ଲାଭ ପ୍ରତ୍ୟାଶା କରିବା ଜ୍ଞାନସମ୍ପନ୍ନ ଲୋକ ପକ୍ଷରେ କଦାଚ ଅନୁମୋଦନୀୟ ନୁହେ । ନବାବସାହେବଙ୍କ ପକ୍ଷରୁ ସନ୍ଧିପ୍ରସ୍ତାବର ଉଦ୍ଦେଶ୍ୟ ଆପଣଙ୍କ ପରି ଜ୍ଞାନୀ ଲୋକଠାରେ ସଠିକ ବ୍ୟାଖ୍ୟା କରିବା ନିଷ୍ପ୍ରୟୋଜନ । ବର୍ଷବ୍ୟାପୀ ଯୁଦ୍ଧରେ ଉଭୟ ପକ୍ଷର ବଳାବଳ ଉଭୟ ପକ୍ଷଠାରେ ଅବିଦିତ ନାହିଁ । ଏ କ୍ଷେତ୍ରରେ ଆପଣ ସହଜରେ ଅନୁଭବ କରିପାରନ୍ତି, କି ସକାଶେ ସନ୍ଧି ବାଞ୍ଛନୀୟ । ଆଉ ଜୟପରାଜୟ କେବଳ ବଳାବଳ ପ୍ରତି ନିର୍ଭର କରେ ନାହିଁ । ବିଜୟ ଲକ୍ଷ୍ମୀ ସମ୍ପୂର୍ଣ୍ଣ ଦୈବାଧୀନା । ଅପରନ୍ତୁ ବର୍ତ୍ତମାନ ଦେଶର ଯେ ପ୍ରକାର ଅବସ୍ଥା, ଜୟ ପରାଜୟ ଉଭୟ ତୁଲ୍ୟ ଜ୍ଞାନ କରିବାକୁ ହେବ । ବଙ୍ଗଦେଶ ମାନବଶୂନ୍ୟ ହୋଇ ପଡ଼ିଲାଣି, ଆଉ କିଛିଦିନ ଯୁଦ୍ଧ ଚାଲିଲେ ବନ୍ୟ ଜନ୍ତୁର ବାସୋପଯୋଗୀ ହୋଇ ପଡ଼ିବ । ବିଜିତ ବିଜନ ରାଜ୍ୟ ହସ୍ତଗତ ହେବା ବିଡ଼ମ୍ବନା ମାତ୍ର ଆପଣଙ୍କ ପରି ନବାବ ସାହେବ ମଧ୍ୟ ପ୍ରଥମରେ ସନ୍ଧିର ପକ୍ଷପାତୀ ନ ଥିଲେ । ଆମ୍ଭେମାନେ ପ୍ରକୃତ ଘଟନା ବୁଝାଇ ଦେବାରୁ ସମସ୍ତ ବିଷୟ ତାଙ୍କର ହୃଦୟଙ୍ଗମ ହେଲା ।"

ଧାରା ଶ୍ରାବଣ, ଉପଯୁକ୍ତ ସ୍ଥାନାଭାବ ହେତୁରୁ ବର୍ଗି ପାଇକମାନେ ବ୍ୟାକୁଳ ହୋଇ ପଡ଼ିଲେଣି, ବର୍ଗି ଜୀବନ ସ୍ୱରୂପ ଅଶ୍ୱଗୁଡ଼ିକ କାଦୁଅରେ ଛିଡ଼ା ହୋଇ ହୋଇ ସେମାନଙ୍କ ଗୋଡ଼ରେ ରସବାତ ଫୁଟିପଡ଼ିଲାଣି । ଭାଗୀରଥି ଏବଂ ଅଜୟ ନଦ ବର୍ଦ୍ଧିତ ହୋଇ ବିଗ୍ରହ ବିଷୟରେ ବିଶେଷ ବିଘ୍ନ ଉପସ୍ଥିତ କରାଇଅଛି । ବାଲେଶ୍ୱର ବନ୍ଦରଠାକୁ ବାହୁଡ଼ି ଯିବେ କି ନବାବଙ୍କଠାରେ ସନ୍ଧି ପ୍ରସ୍ତାବ କରିବେ, ଏହି ବିଷୟ ସେନା ଭାସ୍କର ପଣ୍ଡିତ ଅଧୀନସ୍ଥ ସେନାପତିମାନଙ୍କ ସହିତ ପରାମର୍ଶରେ ନିଯୁକ୍ତ ଥିଲେ, ଇତ୍ୟବସରରେ ନବାବ ପକ୍ଷରୁ ସନ୍ଧିର ପ୍ରସ୍ତାବ ଉପସ୍ଥିତ ହେବାରୁ ଅତ୍ୟନ୍ତ ଆନନ୍ଦିତ ହେଲେ । ମନ ମଧ୍ୟରେ ଚିନ୍ତା କଲେ, ଭାଗ୍ୟ ସୁପ୍ରସନ୍ନ ହେଲେ ଈଦୃଶ ସୁଯୋଗ ଉପସ୍ଥିତ ହୁଏ । ଆମ୍ଭମାନଙ୍କ ପକ୍ଷରେ ଏପରି କେତେ ଦୁଃଖଜନକ ବା ସୁଖକର ବିଷୟ କଦାଚିତ୍ ଉପସ୍ଥିତ ହୁଏ, ଯାହାକୁ ଆମ୍ଭେମାନେ ବିପରୀତ ଭାବରେ ଗ୍ରହଣ କରୁଁ; ଅର୍ଥାତ୍ ଦୁଃଖକର ବିଷୟ ସୁଖଜନକ ଏବଂ ସୁଖଜନକ ବିଷୟ କଷ୍ଟକର ବୋଲି ଆମ୍ଭମାନଙ୍କର ପ୍ରତ୍ୟୟ ହୁଏ । ଭବିଷ୍ୟତର ନିବିଡ଼ାନ୍ଧକାର ମଧ୍ୟରେ ନିହିତ ବିଷୟ ଦର୍ଶନରେ ମାନବ ଅନ୍ଧ ।

ଭାସ୍କର ପଣ୍ଡିତ ଆପଣାର ଅଭିପ୍ରାୟ ଗୋପନ ରଖି ଏବଂ ସନ୍ଧି ବିଷୟରେ ଈଷତ୍ ଅସମ୍ମତିସୂଚକ ଭାବ ପ୍ରକାଶ କରି କହିଲେ, "ଅବଶ୍ୟ ବିଗ୍ରହ କାହାରି ବାଞ୍ଛନୀୟ ନୁହେ, ତେବେ ଆପଣାର ପ୍ରାପ୍ୟାଂଶ ସହଜରେ କେହି ପରିତ୍ୟାଗ କରିବାକୁ ସମ୍ମତ ହୁଏ

ନାହିଁ । ଆପଣମାନେ ବିଜ୍ଞ ବହୁଦର୍ଶୀ ରାଜନୀତିଜ୍ଞ, ଉଭୟ ପକ୍ଷର ମଙ୍ଗଳ କାମନା କରି ସ୍ୱେଚ୍ଛାପ୍ରେରିତ ହୋଇ ସନ୍ଧି ପ୍ରସ୍ତାବ କରୁଅଛନ୍ତି । ଆଶା କରୁଁ ସର୍ବାଗ୍ରେ ଏ ବିଷୟ ମୀମାଂସା କରିବାକୁ ଯତ୍ନଶୀଳ ହେବେ ।”

ଜାନକୀରାମ—ଅବଶ୍ୟ ଆପଣଙ୍କ ପ୍ରସ୍ତାବ ଅସଙ୍ଗତ ନୁହେ । ଏହା ତ ସନ୍ଧିର ପ୍ରଧାନ ଅଙ୍ଗ; ମାତ୍ର ପ୍ରଣୟ ମିଳନ ସ୍ଥଳରେ ଉଭୟ ପକ୍ଷକୁ କିଛି କିଛି କ୍ଷତି ସ୍ୱୀକାର କରିବାକୁ ହୁଏ ।

ଭାସ୍କର ପଣ୍ଡିତ—ମାତ୍ର ନ୍ୟାଯ୍ୟ ପ୍ରାପ୍ୟ ପରିତ୍ୟାଗ କରିବା କାହାରି ପକ୍ଷରେ ସୁବିଧାଜନକ ନୁହେ । ବେରାରପତିଙ୍କ ପ୍ରାପ୍ୟ ଟଙ୍କାଟା ନବାବ ସାହେବ ଦେବାକୁ ସ୍ୱୀକୃତ ହେଲେ ଏହିକ୍ଷଣି ସନ୍ଧି ବିଷୟରେ ସମ୍ମତ ହେବୁଁ ।

ଜାନକୀରାମ—ଆପଣ କିରୂପ ସର୍ତ୍ତରେ ସନ୍ଧି କରିବାକୁ ସମ୍ମତ ?

ଭାସ୍କର ପଣ୍ଡିତ—ଆପଣ ଯେ ସ୍ଥଳରେ ସ୍ପଷ୍ଟରୂପେ ପ୍ରଶ୍ନ କରୁଅଛନ୍ତି, ଇତସ୍ତତଃ ନ କରି ସ୍ପଷ୍ଟରୂପେ ସେଥିର ଉତ୍ତର ଦେବା ଆବଶ୍ୟକ । ବାଲେଶ୍ୱର, ବାଙ୍କୁଡ଼ା, ବର୍ଦ୍ଧମାନ, ହୁଗୁଳୀ ଏ ସମସ୍ତ ମହାରାଷ୍ଟ୍ରପତିଙ୍କ ବିଜିତ ପ୍ରଦେଶ, ଏଥି ସମ୍ବନ୍ଧରେ କୌଣସି କଥା ବୋଲିବାର ନାହିଁ । ବଙ୍ଗଳାର ଅନ୍ୟାନ୍ୟ ପ୍ରଦେଶ ଏବଂ ବେରାର ପ୍ରଦେଶ ପାଇଁ ଚୌଥସ୍ୱରୂପ ଦୁଇ କୋଟି ଟଙ୍କା ନବାବ ସାହେବ ଦେବାକୁ ସ୍ୱୀକୃତ ହେଲେ ସନ୍ଧି ସକାଶେ ସିନ୍ଧିଆଙ୍କୁ ଅନୁରୋଧ କରିପାରୁଁ ।

ଜାନକୀରାମ—ଆପଣଙ୍କ ଦାବୀ ଅସଙ୍ଗତ ନୁହେଁ, ତେବେ ଏ ବିଷୟରେ ମୀମାଂସାର ଭାର ଆପଣଙ୍କ ପ୍ରତି ନିର୍ଭର କରେ । ବିଚାର କରନ୍ତୁ, ହୁଗୁଳୀ କୌଣସି ଦିନ ମହାରାଷ୍ଟ୍ର-ବିଜିତ ସ୍ଥାନ ନୁହେ । ଅଧିକନ୍ତୁ ଦୁଇ ରାଜଶକ୍ତି ଏତେ ଅଦୂରବର୍ତ୍ତୀ ସ୍ଥାନରେ ଅବସ୍ଥାନ କଲେ ନାନା ସମୟରେ ନାନା କାରଣରେ ମନୋମାଳିନ୍ୟ ସଂଘଟିତ ହେବାର ସମ୍ପୂର୍ଣ୍ଣ ସମ୍ଭାବନା । ଆଉ ବିହାର ଚୌଥ ସକାଶେ ହୁଲକାର ବାଲଜୀ ରାଓ ଏକ ହୋର ଟଙ୍କା ଗ୍ରହଣ କରିଅଛନ୍ତି ।

ଭାସ୍କର ପଣ୍ଡିତ—ନବାବ ସାହେବଙ୍କ ମନସ୍ତୁଷ୍ଟି ସକାଶେ ଆମ୍ଭେ ହୁଗୁଳୀର ଦାବୀ ତ୍ୟାଗ କରି ପାରୁଁ । ଆଉ ହୁଲକାର ବାଲଜୀ ରାଓଙ୍କର ନାଯ୍ୟ ଦାବୀ କିଛି ମାତ୍ର ନ ଥିଲା । ସେ ଅକାରଣ ଏତେ ଟଙ୍କା ଗ୍ରହଣ କରିଅଛନ୍ତି ।

ଜାନକୀରାମ ସନ୍ଧି ସଂସ୍ଥାପନ ସମୟରେ ସଙ୍ଗତ ଅସଙ୍ଗତ ବିଷୟ ସମାଲୋଚନା କରାଯାଏ ନାହିଁ, କେବଳ ମୈତ୍ରୀ ରକ୍ଷା ନିମନ୍ତେ ହୁଲକାରଙ୍କୁ ଦାବୀ ଟଙ୍କା ପ୍ରଦତ୍ତ ହୋଇଅଛି ।

ଭାସ୍କରପଣ୍ଡିତ—ଅବଶ୍ୟ ଆପଣମାନେ ବିଜ୍ଞ, ଶାନ୍ତିପ୍ରିୟ, ଆପଣମାନଙ୍କ ଯତ୍ନ ଓ ପରିଶ୍ରମଦ୍ୱାରା ହୁଲକାର ଓ ନବାବ ମଧ୍ୟରେ ଯେ ସନ୍ଧି ସଂସ୍ଥାପିତ ହୋଇଅଛି, ସେଥିରେ ସନ୍ଦେହ ନାହିଁ । ଆଶା କରୁଁ, ପ୍ରସ୍ତାବିତ ସନ୍ଧି ବିଷୟରେ ଆପଣମାନେ ବେରାରପତିଙ୍କ ସକାଶେ କିଞ୍ଚିତ୍ ପରିଶ୍ରମ ସ୍ୱୀକାର କରିବେ । ସନ୍ଧି ସମ୍ବନ୍ଧରେ ଆମ୍ଭେ ସମ୍ପୂର୍ଣ୍ଣ ସମ୍ମତ ଅଛୁଁ ଜାଣିବେ ।

ଜାନକୀରାମ—ନିଶ୍ଚୟ, ଆମ୍ଭେମାନେ ପ୍ରାଣପଣେ ଯତ୍ନ କରିବୁଁ । ଆମ୍ଭମାନଙ୍କର ଧ୍ରୁବ ବିଶ୍ୱାସ, ନବାବ ସାହେବ ଏବଂ ଆପଣଙ୍କ ମଧ୍ୟରେ ଭେଟ ହେବା ମାତ୍ରକେ ସମସ୍ତ ବିଷୟ ନିଷ୍ପତ୍ତି ହୋଇଯିବ । ହୁଲକାରଙ୍କ ସହିତ ସନ୍ଧି ସମୟରେ ଦୀର୍ଘକାଳ ବ୍ୟାପୀ ତର୍କବିତର୍କରେ କିଛି ମୀମାଂସା ହୋଇ ପାରି ନ ଥିଲା, ମାତ୍ର ପରସ୍ପର

ସାକ୍ଷାତ୍ ମାତ୍ରକେ ସମସ୍ତ ବିଷୟ ସ୍ଥିରୀକୃତ ହୋଇଗଲା । ଆମ୍ଭମାନଙ୍କ କଥାର ଯାଥାର୍ଥ୍ୟ ପଶ୍ଚାତ୍ ଅନୁଭବ କରିବେ ।

ଭାସ୍କର ପଣ୍ଡିତଙ୍କୁ ଉପହାର ଦେବା ନିମନ୍ତେ ଜାନକୀରାମ ଏବଂ ସର୍ଦ୍ଦାର ଖାଁ ନବାବଙ୍କ ଗୁଦାମ ଘରୁ ମଣିମାଣିକ୍ୟଜଡ଼ିତ ଅନେକ ପ୍ରକାର ସ୍ୱର୍ଣ୍ଣାଲଙ୍କାର ଏବଂ ବିବିଧ ପ୍ରକାର ବହୁମୂଲ୍ୟ ଦ୍ରବ୍ୟ ଆଣିଥିଲେ । ସେ ସମସ୍ତ ଦେଖି ଭାସ୍କର ପଣ୍ଡିତ ଆନନ୍ଦମନରେ ଚିନ୍ତା କଲେ, ଏହା ସମ୍ପତ୍ତି ଲାଭର ସୂଚନା ମାତ୍ର ।

ଅତଃପର ସମସ୍ତ କାର୍ଯ୍ୟ ବିଶ୍ୱସ୍ତତା ସହିତ କରାଯିବ, ଏଥି ସକାଶେ ଜାନକୀରାମ ଭାସ୍କର ପଣ୍ଡିତ ଦୁଇଜଣ ଗଙ୍ଗାଜଳ ଏବଂ ସର୍ଦ୍ଦାର ଖାଁ କୋରାନ ସରିଫ ସ୍ପର୍ଶ କଲେ ।

ସିଦ୍ଧାନ୍ତ ହେଲା—ନବାବ ଏବଂ ଭାସ୍କର ପଣ୍ଡିତ ଉଭୟଙ୍କ ସାକ୍ଷାତରେ ସନ୍ଧି ବ୍ୟବସ୍ଥା ଏବଂ ସନ୍ଧିପତ୍ର ସ୍ୱାକ୍ଷରିତ ହେବ । ଉଭୟ ପକ୍ଷ ମର୍ଯ୍ୟାଦା ରକ୍ଷା ସକାଶେ କେହି କାହାର ଅଧିକାରଭୁକ୍ତ ସ୍ଥାନକୁ ଯିବେ ନାହିଁ । ମୁର୍ଶିଦାବାଦ ଏବଂ କାଟୋୟା ମଧ୍ୟବର୍ତ୍ତୀ ମାନକର ନାମକ ସ୍ଥାନରେ ନବାବଙ୍କ ଡେରାରେ ଉଭୟ ପକ୍ଷର ମିଳନ ହେବ । ଡେରାଠାରୁ ଦୁଇ କୋଶ ଦୂରବର୍ତ୍ତୀ ସ୍ଥାନ ମଧ୍ୟରେ କୌଣସି ପକ୍ଷର କୌଣସି ପ୍ରକାର ପାଇକ ଉପସ୍ଥିତ ରହିବେ ନାହିଁ । କେବଳ ପଦ-ଗୌରବ ରକ୍ଷା ଅନୁରୋଧରେ ଉଭୟ ପକ୍ଷରୁ ଏକ ଶତ ମାତ୍ର ପାଇକ ଉପସ୍ଥିତ ରହିବେ ।

ଶ୍ରାବଣ କୃଷ୍ଣ ତୃତୀୟା ଶନିବାର ପ୍ରାତଃକାଳରେ ସାକ୍ଷାତର ସମୟ ନିରୂପିତ ହେଲା ।

ଉଭୟ ପକ୍ଷ ପରସ୍ପର ସହିତ ଆନନ୍ଦ ପ୍ରେମାଳାପରେ ମେଳାଣି ହେଲେ ।

ଆମ୍ଭେମାନେ ବିଶେଷ ଅନୁସନ୍ଧାନଦ୍ୱାରା ଅବଗତ ହୋଇଅଛୁଁ, ଉଭୟ ପକ୍ଷ ଯେ ଆନନ୍ଦିତ ହୋଇଥିଲେ ସେଥିରେ ସନ୍ଦେହ ମାତ୍ର ନାହିଁ । ନବାବ ପକ୍ଷ ଆନନ୍ଦିତ ବିଲୁଆଟି ଫାନ୍ଦରେ ଗୋଡ଼ ଦେଉଛି । ଭାସ୍କର ପଣ୍ଡିତ ଆନନ୍ଦିତ—ପଠାଣ ଘର ଟଙ୍କାଟା ତ ଆଗେ ବାହାର ଅସୁ, ପଛେ ବୁଝା ସୁଝା । ଦୁଲକାର ଚୁଙ୍ଗଟାରେ ଏକ କୋର ଟଙ୍କା ବାନ୍ଧି ଦେବ ଗଲା । ଦେଖାଯାଉ ପଠାଣ କଣ କହେ । ନିକୁଛରେ କୋରେ ଟଙ୍କାରୁ ତ ଊଣା ନୁହେ । ଭଗବାନ୍ ବାସୁଦେବ ମଧ୍ୟମ ପାଣ୍ଡବ ଅର୍ଜ୍ଜୁନଙ୍କୁ ବୋଲିଥିଲେ, "ଏକମାତ୍ର ଲୋଭରୁ ସମସ୍ତ ପ୍ରକାର ବିପଦ ଜାତ ହୁଏ, ଲୋଭ ବିନାଶର ଦ୍ୱାର ।"

ଚତୁରତାରେ କେହି କାହାକୁ ଊଣା ନୁହନ୍ତି । ଆମ୍ଭେମାନେ ଏହା ମଧ୍ୟ ଅବଗତ ହୋଇଅଛୁ ଭାସ୍କର ପଣ୍ଡିତ ଏବଂ ଜାନକୀରାମ ଦୁଇଜଣ ଯେଉଁ ଗଙ୍ଗାଜଳ ସ୍ପର୍ଶ କରିଥିଲେ, ତାହା ପ୍ରକୃତ ଗଙ୍ଗୋଦକ ନୁହେ, ଉଭୟ ପକ୍ଷ ଭୃତ୍ୟଦ୍ୱାରା କୌଶଳରେ ଆଣିତ କୂପୋଦକ ଅଟେ । ଆଉ ପାଠକମାନରେ ଭଡ଼ା ଗୋଲେସ୍ତାନ୍ କିତାପକୁ କୋରାନ ସରିଫ ବୋଲି ସର୍ଦ୍ଦାର ଖାଁ ସ୍ପର୍ଶ କରିଥିଲେ । ଆପଣା ଆପଣା ବୁଦ୍ଧିକୁ ପ୍ରଶଂସା କରି ଉଭୟ ପକ୍ଷ ନିଶ୍ଚିନ୍ତ ।

———

—୩୫—

## ଉତ୍କଟ ଆନନ୍ଦ

'ହେ ଭଗବାନ୍ ! ରକ୍ଷା କର ।' ବିଦ୍ୟୁତ୍ ଗତିରେ ଦେଶମୟ ଚହଳ ପଡ଼ିଗଲା । ନବାବ ଓ ବର୍ଗି ମଧ୍ୟରେ ସନ୍ଧି । ସମସ୍ତେ ଆନନ୍ଦିତ, ସମସ୍ତେ ପ୍ରଫୁଲ୍ଲ । ମହାଜନ ଆନନ୍ଦିତ, ବଣିଜ କରିବାକୁ ବାଟ ଫିଟିଲା । କୃଷକ ଆନନ୍ଦିତ, କୃଷି କରି କୁଟୁମ୍ବ ପୋଷିବ । ପାଇକ

ଆନନ୍ଦିତ, ବର୍ଷା ଋତୁର ମାସଟା ଘରେ ବସି ଖେଚୁଡ଼ି ଖାଇବା ଆରମ୍ଭମାନଟା ମେଣ୍ଟିବ । ସେନାପତିମାନେ ଆନନ୍ଦିତ, ବର୍ଷା ଋତୁରେ ଘରେ ବସି ନ୍ୟାୟୁବଲ କସ୍ରତମାତ୍ର କରିବେ କମ୍ବା ବେହାଗ ମେଘମହ୍ଲାର ରାଗିଣୀର ସମ୍ମାନ ରକ୍ଷା କରିବେ । ବର୍ଗି ଆନନ୍ଦିତ, ଦେଶକୁ ଯାଇ ପରିବାର ମୁଖଚନ୍ଦ୍ର ଦେଖି ଆତ୍ମାରାମର ତୃପ୍ତି ସାଧନ କରିବେ । ମୁର୍ଶିଦାବାଦରେ ଆନନ୍ଦ ଉତ୍ସବ ଲାଗିଅଛି । ଏହି ସନ୍ଧି ସହିତ ବହୁ ଲକ୍ଷ ଲୋକଙ୍କ ସୁଖ ଦୁଃଖର ଘନିଷ୍ଠ ସମ୍ବନ୍ଧ ଅଛି । ସନ୍ଧିର ସର୍ତ୍ତ ଶୁଣିବା ସକାଶେ ସମସ୍ତେ ଉଦ୍‌ବିଗ୍ନ, ମାତ୍ର ଏତେ ଆନନ୍ଦ ଉତ୍ସବ ମଧ୍ୟରେ ସମସ୍ତେ ନବାବ ସାହେବଙ୍କୁ ସର୍ବଦା ଉଦ୍‌ବିଗ୍ନମନା ଦେଖୁଅଛନ୍ତି । ସେ ଯେମନ୍ତ ସର୍ବଦା ଶଙ୍କା, ସଂଶୟ, ଅସନ୍ତୋଷରେ ଦୋଳାୟମାନ ହେଉଅଛନ୍ତି । ଅଧିକାଂଶ ସମୟ ନିର୍ଜନରେ ଉପବିଷ୍ଟ, ପାଖରେ କେବଳ ବାଦଲ ସିଂହ ।

ମାନବ ଜାତିର ଭାରି ଗୋଟାଏ ଗର୍ବ ଅଛି, ସେ ଈଶ୍ୱରଙ୍କ ସୃଷ୍ଟିରେ ସର୍ବଶ୍ରେଷ୍ଠ ପ୍ରାଣୀ । ମାତ୍ର ଭବିଷ୍ୟତର ନିବିଡ଼ ଅନ୍ଧକାରରେ ନିହିତ ବିଷୟ ଜାଣିବା ସକାଶେ ଆଦିପିତାଠାରୁ ଏ ପର୍ଯ୍ୟନ୍ତ ଯତ୍ନ କରି ମଧ୍ୟ କେହି କୃତକାର୍ଯ୍ୟ ହୋଇପାରି ନାହିଁ । ହେଲେ ଆଶାରୂପ ପ୍ରତିଚକ୍ଷୁଦ୍ୱାରା ମାନବ ଭବିଷ୍ୟତ ଅନ୍ଧକାର ମଧ୍ୟରେ ଆପଣାର ପ୍ରାପ୍ୟ ଅନେକ ସୁଖରାଶି ନିହିତ ଦେଖି-ପାରେ । କଷ୍ଟଦାୟକ ଦୁଃଖମାନ ଦେଖିବାକୁ ସେ ନିତାନ୍ତ ଅନିଚ୍ଛୁକ । ଆହୁରି ମଧ୍ୟ ମାନବ ଯାହା ପ୍ରାପ୍ତ ହେବାପାଇଁ କୃତନିଶ୍ଚୟ ହୋଇ ବସିଥାଏ, ତାହା କାହିଁ ଶୂନ୍ୟମୟ ଆକାଶରେ ବିଲୁପ୍ତ ହୋଇଯାଏ, ଠିକ୍ ସେହି ସମୟରେ ପୁଣି କଳ୍ପନାତୀତ ଘଟନାମାନ ସଂଘଟିତ ହୁଏ । ମାନବ ଜୀବନରେ ଏପରି ଅସଂଖ୍ୟ ଘଟନା ପ୍ରତ୍ୟକ୍ଷ କରି ମଧ୍ୟ ବିମୁଗ୍ଧ ।

ଭାସ୍କର ପଣ୍ଡିତ ପାରିଷଦମାନଙ୍କୁ ନେଇ ଆପଣା ଡେରା ମଧ୍ୟରେ ଅନେକ ରାତ୍ରି ପର୍ଯ୍ୟନ୍ତ ପରାମର୍ଶ କଲେ । କି ସର୍ତ୍ତରେ ନବାବ ସହିତ ସନ୍ଧି କରାଯିବ, କେତେ ଟଙ୍କା ଗ୍ରହଣ କରାଯିବ, ସେହି ଟଙ୍କାରୁ କାହାର କେତେ ପ୍ରାପ୍ୟ, କେଉଁ କେଉଁ ବିଷୟରେ କେତେ ଟଙ୍କା ବ୍ୟୟ କରାଯିବ, ଏଥିର ବଜେଟ୍ ପ୍ରସ୍ତୁତ କରିବା ସଭାର ବିଚାର୍ଯ୍ୟ ବିଷୟ ଥିଲା ।

ଆଜି ଆଜି ଦିନ ପରି ଏହି କେତୋଟି ଦିନ ମଧ୍ୟ ଚାଲିଗଲା, ଶ୍ରାବଣ କୃଷ୍ଣ ଦ୍ୱିତୀୟା ଶୁକ୍ରବାର ଶେଷ, ତୃତୀୟା ଶନିବାର ପ୍ରାତଃକାଳ ଉପସ୍ଥିତ । ମାନକର ଗ୍ରାମର ପ୍ରଶସ୍ତ ପ୍ରାନ୍ତର ମଧ୍ୟରେ ନବାବ ସାହେବଙ୍କ ଦରବାରୀ ବିଶାଳ ତମ୍ବୁ ପଡ଼ିଅଛି । ତମ୍ବୁ ମଧ୍ୟସ୍ଥଳରେ ସଚ୍ଚାଜରିଦାର କିଂଖାପ ବହୁମଣ୍ଡିତ ନବାବ ସାହେବଙ୍କ ସିଂହାସନ ସଂସ୍ଥାପିତ ହୋଇଅଛି । ଭାସ୍କର ପଣ୍ଡିତ ମହାରାଜାଧିରାଜ ବେରାରପତିଙ୍କ ପ୍ରତିନିଧି, ସ୍ୱୟଂ ମଧ୍ୟ ସେନାପତି; ସୁତରାଂ ଅସାଧାରଣ ଲୋକ । ନବାବ ସାହେବଙ୍କ ଆସନର ବାମ ପାର୍ଶ୍ୱରେ ତାହାଙ୍କ ଉପବେଶନ ସକାଶେ ସ୍ୱତନ୍ତ୍ର ଆସନ ନିରୂପିତ ହୋଇଅଛି । ଦରବାର ଡେରାର ଚତୁର୍ଦ୍ଦିଗ ବୃତ୍ତାକାରରେ କ୍ରୋଶ ପରିଧିବିଶିଷ୍ଟ ବସ୍ତ୍ର-ପ୍ରାଚୀରଦ୍ୱାରା ପରିବେଷ୍ଟିତ । ନବାବ ସାହେବ ଏକଧ୍ୟାନରେ ଭାସ୍କର ପଣ୍ଡିତଙ୍କ ଆଗମନ ପ୍ରତୀକ୍ଷା କରି ସିଂହାସନରେ ଉପବିଷ୍ଟ । ମୁସ୍ତାଫା, ସୟଦ ଅସଫ ଅଲି, ଜାନକୀରାମ, ସର୍ଦ୍ଦାର ଖାଁ, ବାଦଲ ସିଂହ, ଅବଦୁଲ ଶୋଭାନ ଖାଁ, ମୀର ହବିବୁଲା, ଗୋଲାମ, କାଦର ପ୍ରଭୃତି ବିଶ୍ୱସ୍ତ ପ୍ରଧାନ ପ୍ରଧାନ କର୍ମଚାରୀମାନେ ନିଃସନ୍ଦେହ ସାନନ୍ଦ ପ୍ରଫୁଲ୍ଲ ମନରେ ଇତସ୍ତତଃ ଭ୍ରମଣ କରୁଅଛନ୍ତି ।

ବର୍ଗି ଶିବିର ମଧ୍ୟରୁ ଦୁଇ ଜଣ ଦ୍ରୁତଗାମୀ ଅଶ୍ୱାରୋହୀ ଆସି ଉପସ୍ଥିତ ହେଲେ । ଜଣକର ନାମ ଆଲିଭ କାର୍ଟ୍ଟେମ୍ପୁଲ, ଅନ୍ୟ ଜଣ କରିନଲ୍ଲା ରାଓ । ଏହି ଦୁଇ ମହାବୀର ଭାସ୍କର ପଣ୍ଡିତଙ୍କ ପ୍ରଧାନ

ସେନାପତି, ବିଶ୍ୱସ୍ତ ବନ୍ଧୁ, ସବୁ ସମୟରେ ବାମ ଦକ୍ଷିଣ ହସ୍ତ ସ୍ୱରୂପ ସହାୟ । ସମର ବ୍ୟବସାୟୀମାନେ ସଚରାଚର ସନ୍ଦିଗ୍ଧମନା । ଏତେ ଶପଥ, ଏତେ ବନ୍ଧୁଭାବରେ କଥୋପକଥନ, ଏତେ ଉପହାର ଆଦାନ ପ୍ରଦାନ, ତଥାପି ଭାସ୍କର ପଣ୍ଡିତ ମନରେ ସମୟ ସମୟରେ ସନ୍ଦେହ କାଳମାରୁତୀ ପତିତ ହୋଇ ବିଶୁଦ୍ଧ ବିଶ୍ୱାସକୁ ଆବରଣ କରୁଅଛି । କିଏ ଜାଣେ ପଠାଣ ମନରେ କଣ ଅଛି ? ନବାବ ସାହେବଙ୍କ ସାମ୍ପ୍ରତିକ ଅଭିପ୍ରାୟ, ଶିବିରର ଅବସ୍ଥା, ପାରିଷଦମାନଙ୍କ ଆଚରଣ ପରୀକ୍ଷା ଉଦ୍ଦେଶ୍ୟରେ ଏହି ଦୁଇ ପ୍ରବୀଣ ପ୍ରଜ୍ଞାଶାଳୀ ପ୍ରଧାନ ଯୋଦ୍ଧୃପୁରୁଷଙ୍କ ଆଗମନ । ମାତ୍ର ଚତୁରେ ଚତୁରେ ଚତୁରାନ୍ତ, ଆଗନ୍ତୁକ ବୀରପୁରୁଷମାନେ ଆପଣାର ଅଭିପ୍ରାୟ ଗୋପନ କରି ନବାବ ସାହେବଙ୍କ ଅବକାଶ ବୁଝିବା ଆଗମନର କାରଣ ବୋଲି ପ୍ରକାଶ କଲେ । ନବାବ ଆଲିବର୍ଦ୍ଦି ଏବଂ ସେନାପତି ମୁସ୍ତାଫା କପଟତାର ଅବତାର, ପ୍ରଶସ୍ତ କପଟତା ସେମାନଙ୍କର ଭୂଷଣ ଥିଲା, ସେମାନଙ୍କର ଧାରଣା କପଟତା ସର୍ବାର୍ଥ-ସାଧିକା । ଏଥିକୁ ନବାବ ଦରବାର ନିରନ୍ତର କପଟତାମୟ । ବର୍ଗି ଦୂତଦ୍ୱୟ ପ୍ରେମାଳାପ ଏବଂ ନବାବ-ପ୍ରଦତ୍ତ ଉପହାରରେ ବିମୋହିତ ହୋଇଗଲେ । ଶିବିରର ସନ୍ଦେହବର୍ଜ୍ଜିତ ଅବସ୍ଥା ନବାବ ସାହେବଙ୍କ ମଧୁର ପ୍ରେମାଳାପ; ପାରିଷଦମାନଙ୍କ ପରିପୂର୍ଣ୍ଣ ପ୍ରଫୁଲ୍ଲତା ପର୍ଯ୍ୟବେକ୍ଷଣ କରିବାରୁ ସେମାନଙ୍କ ମନରେ ସନ୍ଦେହ ସ୍ଥାନମାତ୍ର ଲାଭ କରିବାକୁ ଅବସର ପ୍ରାପ୍ତ ହେଲା ନାହିଁ । ତୀକ୍ଷଣଦୃଷ୍ଟି ବର୍ଗି ଦୂତଦ୍ୱୟ କୌଶଳରେ ତୀକ୍ଷ୍ଣ ଦୃଷ୍ଟିରେ ଦେଖିଲେ, ଦରବାରୀ ବସନ ଭବନ ବସ୍ତ୍ର ପ୍ରାଚୀର ବେଷ୍ଟିତ, ଦୃଷ୍ଟିରେଖାବ୍ୟାପୀ ସ୍ଥାନମାନ ଜନଶୂନ୍ୟ । ଦରବାର ସ୍ଥାନ ପ୍ରଧାନ ପ୍ରଧାନ ପାରିଷଦ ବ୍ୟତୀତ ଅନ୍ୟରୂପ ସନ୍ଦେହଜନକ ପ୍ରାଣୀବର୍ଜ୍ଜିତ ।

ପ୍ରତ୍ୟାଗତ ବିଶ୍ୱସ୍ତ ଦୂତମାନଙ୍କ ମୁଖରୁ ସମାଚାର ଅବଗତ ହୋଇ ବର୍ଗି ସେନାପତି ଭାସ୍କର ପଣ୍ଡିତ ନିଃସନ୍ଦେହ । କୃଷ୍ଣ ତୃତୀୟା ଶନିବାର । ସୂର୍ଯ୍ୟୋଦୟ ସମୟରେ ଶୁଭଯାତ୍ରା ଆରମ୍ଭ କଲେ । ସଙ୍ଗରେ ଅର୍ଦ୍ଧଶତ ଅଶ୍ୱାରୋହୀ ପାରିଷଦ, ସମସ୍ତେ ଅସ୍ତ୍ରଧାରୀ । ଏହି ଅସ୍ତ୍ର ସହିତ ଯାବାର କୌଣସି ପ୍ରଚ୍ଛନ୍ନ କାରଣ ଥିବ; ମାତ୍ର ପ୍ରକାଶ କଲେ ସନ୍ଧିପତ୍ର ସ୍ୱାକ୍ଷର ସମୟରେ ସମସ୍ତଙ୍କୁ ଆପଣା ଆପଣା ଅସ୍ତ୍ର ସ୍ପର୍ଶ କରି ଶପଥ କରିବାକୁ ହେବ ।

ଆଜକୁ କେତେ ଦିନ ହେଲା ଆମ୍ଭମାନଙ୍କ ସେହି ପୂର୍ବ ପରିଚିତ ପାନରୀକୁ ନିତାନ୍ତ ଅସ୍ଥିରମନା, ନିତାନ୍ତ ବ୍ୟସ୍ତ ଦେଖୁଅଛୁଁ । ସେ ଭାସ୍କର ପଣ୍ଡିତର ଶରୀର ରକ୍ଷକମାନଙ୍କ ଅନୁଗ୍ରହ ଲାଭ ନିମନ୍ତେ ଆପଣା ବ୍ୟବସାୟ ପାଣି ଝାଡ଼ଝୁଡ଼ି କରି ପକାଇଲଣି । ସେମାନଙ୍କ କୃପାରେ ସେ ଶୁଭସନ୍ଧି କାର୍ଯ୍ୟ ସନ୍ଦର୍ଶନ ନିମନ୍ତେ ଅଶ୍ୱସାମଲରୂପେ ସଙ୍ଗେ ସଙ୍ଗେ ଚାଲିଅଛି । ନବାବ ଶିବିର ମଧ୍ୟରେ ଚହଲ ପଡ଼ିଲା, ବର୍ଗି ଅଇଲେ; ବର୍ଗି ଅଇଲେ । ସମସ୍ତେ ବ୍ୟସ୍ତ, ସ୍ୱୀୟ ସ୍ୱୀୟ କାର୍ଯ୍ୟାନୁଷ୍ଠାନରେ ତତ୍ପର । ନବାବ ସାହେବ ନିଶ୍ଚଳ ନିସ୍ପନ୍ଦ ଅନିମେଷ ନେତ୍ରରେ ବର୍ଗିଙ୍କୁ ଚାହିଁ ବସିଅଛନ୍ତି । ଅତଃପର ନବାବ ଶିବିର ନିଶ୍ଚଳ ନୀରବ । ସମସ୍ତେ ସ୍ୱୀୟ ସ୍ୱୀୟ କାର୍ଯ୍ୟକ୍ଷେତ୍ରରେ ଦଣ୍ଡାୟମାନ ଅଛନ୍ତି ଏବଂ ମନୋଗତ ଭାବବ୍ୟଞ୍ଜକ ପରସ୍ପର ମୁଖାବଲୋକନ କରୁଅଛନ୍ତି । ସମସ୍ତଙ୍କ ନେତ୍ରରୁ ଯେମନ୍ତ ଏକପ୍ରକାର ବିଜାତୀୟ ଜ୍ୟୋତି ବହିର୍ଗତ ହେଉଅଛି ।

ଭାସ୍କର ପଣ୍ଡିତ ଅଶ୍ୱପୃଷ୍ଠରୁ ଲମ୍ଫ ପ୍ରଦାନ କରିବାମାତ୍ରକେ ଜାନକୀରାମ ଏବଂ ସର୍ଦ୍ଦାର ଖାଁ ଦୁଇ ଜଣ ତାହାଙ୍କୁ ସଙ୍ଗ୍ଲ ଡେରା ମଧ୍ୟରେ ପ୍ରବେଶ କଲେ । ଅଗ୍ରେ ଜାନକୀରାମ, ତତ୍ପଶ୍ଚାତ୍ ଭାସ୍କର ପଣ୍ଡିତ, ତତ୍ପଶ୍ଚାତ୍ ସର୍ଦ୍ଦାର ଖାଁ, ତତ୍ପଶ୍ଚାତ୍ ବର୍ଗି ଅନୁଚରବର୍ଗ ବୀରପାଦ ବିକ୍ଷେପରେ ଭାସ୍କର ପଣ୍ଡିତ ଚାଲିଅଛନ୍ତି । ତାହାଙ୍କ ବିବିଧ ମହାର୍ଘ ରତ୍ନଖଚିତ ଉଷ୍ଣୀଷ

ସୁବର୍ଣ୍ଣଜଡ଼ିତ କାରୁକାର୍ଯ୍ୟବିଶିଷ୍ଟ ପରିଧେୟ ବସନରେ ପ୍ରାତଃସୂର୍ଯ୍ୟକିରଣ ପତିତ ହୋଇ ବିବିଧ ବର୍ଣ୍ଣବିଶିଷ୍ଟ ପ୍ରତିକିରଣମାଳା ଚତୁର୍ଦ୍ଦିଗରେ ବିକୀର୍ଣ୍ଣ ହୋଇ ପଡ଼ୁଅଛି । ସୁବର୍ଣ୍ଣ ଶୃଙ୍ଖଳଯୁକ୍ତ ରତ୍ନଜଡ଼ିତ ଖାପମଧ୍ୟଗତ କଟିବିଲମ୍ବିତ ଖଡ଼୍ଗ ଭୂତଳେ ବିଲୁଣ୍ଠିତ ହୋଇ ଝମ ଝମ ଶବ୍ଦ ବିସ୍ତାର କରୁଅଛି ।

ହାଁ, ହାଁ, କଣ ହେଲା, କଣ ହେଲା, ମାର ମାର, ଧର ଧର, ପଳା, ପଳା ଇତ୍ୟାକାର ବିମିଶ୍ରିତ ଆକାଶଭେଦୀ ବିକଟ ଶବ୍ଦ ନବାବଙ୍କ ଦରବାରି ଡେରାରୁ ବାହାରିଲା । ବାରୁଦପୂର୍ଣ୍ଣ ଅଗ୍ନିସଂଯୁକ୍ତ ତୋପରୁ ଯେପରି ହଠାତ୍ ଭୟଙ୍କର ଶବ୍ଦ ବହିର୍ଗତ ହୋଇ ଆକାଶବାୟୁକୁ ଆନ୍ଦୋଳିତ କରେ, ତଦ୍ରୂପ ସହସା ଶତ ଶତ ଲୋକଙ୍କ ମୁଖନିଃସୃତ ଭୀଷଣ ଶବ୍ଦ ନିର୍ଗତ ହେଲା । ମାର ମାର ଶବ୍ଦ କରି ଭାସ୍କର ପଣ୍ଡିତଙ୍କ ପଞ୍ଚାଶତ୍ ଖଡ଼୍ଗହସ୍ତ ଅନୁଚର ଧାବିତ ହେଲେ, ମାତ୍ର ମୁହୂର୍ତ୍ତ ମଧ୍ୟରେ ସେମାନଙ୍କ ଖଣ୍ଡ ବିଖଣ୍ଡ ଶରୀର ଭୂତଳରେ ବିଲୁଣ୍ଠିତ ହେଲା । ନବାବ ଏକ ଧ୍ୟାନରେ ଗୃହିଁ ରହି ଦେଖୁଅଛନ୍ତି । ଭାସ୍କର ପଣ୍ଡିତ ଶିବିର ଦ୍ୱାର ଲଙ୍ଘନ କରିବା ମାତ୍ରକେ ଦୁଇ ଦିଗରୁ ଦୁଇ ଜଣ ଯୁବକ 'ଭଗବାନ୍ ଏକଲିଙ୍ଗ ସହାୟ' ସମ-ମୁହୂର୍ତ୍ତରେ ସମସ୍ୱରରେ ଚିତ୍କାର କରି ଦୁଇ ଗୋଟି ଯୁବକ-ସିଂହ ବଳିଷ୍ଠ ବଳିବର୍ଦ୍ଧ ଉପରେ ଝାମ୍ପି ପଡ଼ିଲା ପରି ତାହାଙ୍କ ଉପରେ ପଡ଼ିଗଲେ । ନବାବ ଗୃହିଁ ଅଛନ୍ତି, ଦୁଇ ଜଣଙ୍କ ହସ୍ତସ୍ଥିତ ତୀକ୍ଷ୍ଣଧାର ଛୁରିକାରେ ଭାସ୍କର ପଣ୍ଡିତଙ୍କ ଗଳଦେଶର ଦୁଇ ଦିଗରୁ ଅର୍ଦ୍ଧାଂଶ ବିଚ୍ଛିନ୍ନ ହୋଇଗଲା, ତନ୍ମୁହୂର୍ତ୍ତରେ ବିନା ଶବ୍ଦରେ ରକ୍ତାକ୍ତକଳେବର ବର୍ଗିପତି ଛିନ୍ନମୂଳ କଦଳୀବୃକ୍ଷ ପରି ଭୂପତିତ ହୋଇ ଯନ୍ତ୍ରଣାବ୍ୟଞ୍ଜକ ହସ୍ତପଦ ବିକ୍ଷେପପୂର୍ବକ ଗଡ଼ ଗଡ଼ ମରିଗଲେ । ଇଷ୍ଟଦେବଙ୍କର ନାମ ଉଚ୍ଚାରଣ କରିବାକୁ ମଧ୍ୟ ସମୟ ପ୍ରାପ୍ତ ହୋଇନାହାନ୍ତି । ନବାବ ଦେଖିଲେ, ବର୍ଗିହନ୍ତାରକ ମଧ୍ୟରୁ ଜଣେ ବାଦଲ ସିଂହ, ଦ୍ୱିତୀୟ ଜଣକ କିଏ ? ନବାବ ମନମଧ୍ୟରେ ପ୍ରଶ୍ନ କଲେ, ଏହି ଅପରିଚିତ ଯୁବକ କିଏ ?

ବାଦଲସିଂହ ଦକ୍ଷିଣ ହସ୍ତଦ୍ୱାରା ଭାସ୍କର ପଣ୍ଡିତଙ୍କ ଗଳଦେଶରେ ଛୁରିକାଘାତ ପୂର୍ବକ ବାମ ହସ୍ତସ୍ଥିତ ଶିଙ୍ଗା ଧ୍ୱନିତ କଲେ । ସେହି ଶିଙ୍ଗା ଶବ୍ଦ ଶ୍ରବଣ ମାତ୍ରକେ ତମ୍ବୁ ଚତୁର୍ଦ୍ଦିଗ ବେଷ୍ଟିତ ବସ୍ତ୍ର-ପ୍ରାଚୀର ଭେଦ କରି ପଞ୍ଚାଶତ ଉନ୍ମୁକ୍ତ-ଖଡ଼୍ଗହସ୍ତ ବୀରପୁରୁଷ ଅତି ବେଗରେ ବାହାରି ପଡ଼ିଲେ ଏବଂ ଭାସ୍କର ପଣ୍ଡିତଙ୍କ ଅନୁଚର ପଞ୍ଚାଶତ୍ ବର୍ଗିଙ୍କୁ ଖଣ୍ଡ ବିଖଣ୍ଡ କରି ପକାଇଲେ । ବର୍ଗି ଅନୁଚରବର୍ଗ ମୃତ୍ୟୁ ନିକଟ ସକାଶେ ବୃଥା ଆତ୍ମରକ୍ଷା କରିବାକୁ ଚେଷ୍ଟା କରିଥିଲେ । ଦେଖାଗଲା, ନବାବ ପକ୍ଷରେ କୌଣସି ପ୍ରକାର ଅନିଷ୍ଟ ସଂଘଟିତ ହୋଇନାହିଁ, କେବଳ ଦେବାନ ଜାନକୀରାମ ଏବଂ ମନସବାଦାର ସର୍ଦ୍ଦାର ଖାଁ ବର୍ଗି ଖଡ଼୍ଗାଘାତରେ ଖଣ୍ଡବିଖଣ୍ଡ ହୋଇ ପଡ଼ିଅଛନ୍ତି । ସପକ୍ଷ ଲୋକମାନଙ୍କ ମୁଖରୁ ମଧ୍ୟ ଶ୍ରୁତ ହେଲା, ଏହା ବିଶ୍ୱାସଘାତକତାର ପ୍ରତିଫଳ ।

ଭାସ୍କର ପଣ୍ଡିତଙ୍କୁ ହତ୍ୟା କରିବା ସମୟରେ ହତ୍ୟାକାରୀ ଦୁଇ ଜଣ ସ୍ୱୀୟ ସ୍ୱୀୟ ଦେହ ବଳରେ ପରସ୍ପର ଉପରେ ଈଷତ୍ ଭାବରେ ନିପତିତ ହୋଇଗଲେ । ଉଭୟେ ଅନୁଭବ କଲେ ଯେମନ୍ତ ସ୍ୱର୍ଗୀୟ ଅମୃତଧାରା ଦୁଇଜଣଙ୍କ ଦେହରେ ପ୍ରତ୍ୟେକ ରକ୍ତ ବିନ୍ଦୁରେ ସଞ୍ଚାରିତ ହୋଇଗଲା । ଉଭୟ ଉଭୟଙ୍କ ମୁଖକୁ ଗୃହିଁ ସ୍ମିତ ଭାବରେ ଉଭା ହୋଇଅଛନ୍ତି । ଦୁଇଜଣଙ୍କ ହସ୍ତରେ ରକ୍ତଲିପ୍ତ କବିଳ ଛୁରିକା, ପଦ ତଳେ ନିହତ ଭାସ୍କର ପଣ୍ଡିତର ଶରୀର ବିଲୁଣ୍ଠିତ ହେଉଅଛି । ଏତେ ଯେ ଗଣ୍ଡଗୋଳ, ଏତେ ଯେ ପ୍ରାଣୀନାଶ, ସେଥିରେ ସେହି ହନ୍ତାରକ ଦ୍ୱୟଙ୍କର କିଛି ମାତ୍ର କାନ ନାହିଁ ।

ନାୟକହୀନ ବର୍ଗି ଛିନ୍ନ ଭିନ୍ନ ହୋଇ ବଙ୍ଗଦେଶରୁ ଜଙ୍ଗଲ ମାହାଲ ମାର୍ଗରେ କେତେକ ସ୍ୱଦେଶକୁ, ଥୋକେ ବାଲେଶ୍ୱର ବନ୍ଦରକୁ ପଳାୟନ କଲେ ।

———

-୩୭-

## ଉମେଦୁଆରର ପ୍ରାର୍ଥନା

ବର୍ଗି-ବଧ-ସାଧନ-ଗଣ୍ଡଗୋଳ ନିବୃତ୍ତ ହେଲା ଉତ୍ତାରୁ ନବାବ ଆଲିବର୍ଦ୍ଦି ଖାଁ ଲମ୍ଫ ପ୍ରଦାନ ପୂର୍ବକ ସିଂହାସନରୁ ଓହ୍ଲାଇ ଆସି ସପ୍ରେମରେ ହାବିଲଦାର ବାଦଲ ସିଂହଙ୍କୁ ଆଲିଙ୍ଗନ କଲେ । ଦ୍ୱିତୀୟ ଯୁବକକୁ ଆଲିଙ୍ଗନ କରିବାକୁ ଯାଉଥିଲେ, ମାତ୍ର ସେ ଲୋକ ସଲଜ୍ଜ ଭାବରେ କୁର୍ନିଶ କରି ଅପସୃତ ହୋଇଗଲା ।

ନବାବ କେତେକ୍ଷଣ ପର୍ଯ୍ୟନ୍ତ ତାହାକୁ ଆପାଦ-ମସ୍ତକ ନିରୀକ୍ଷଣ କରି ସସ୍ନେହ ଭାବରେ ପ୍ରଶ୍ନ କଲେ— "ଆରେ ପିଲା, ତୁ କିଏ ?"

ଏହି ଯୁବକ ଆମ୍ଭମାନଙ୍କର ପୂର୍ବପରିଚିତ ପାନରି ଅଟେ ।

ନବାବଙ୍କ ପ୍ରଶ୍ନ ଶୁଣି ସେହି ପାନରି ବିନୀତଭାବରେ କୁର୍ନିଶ କଲା, କି ଉତ୍ତର ଦେବ କିଛି ସ୍ଥିର କରି ପାରିଲା ନାହିଁ । ହଠାତ୍ କହି ପକାଇଲା, "ହଜୁର ! ମୁଁ ଉମେଦୁଆର ।"

ନବାବଙ୍କ ମନରେ ବିସ୍ମୟ ଜାତ ହେଲା । ଉମେଦୁଆର ? ଅବଶ୍ୟ ସୈନିକପଦପ୍ରାର୍ଥୀ ହେବ । ମାତ୍ର ଏପରି ଭୟଙ୍କର ସଙ୍କଟପୂର୍ଣ୍ଣ କର୍ମରେ କି ସକାଶେ ପ୍ରବୃତ୍ତ ହେଲା ? ଏହା ଯେ ପ୍ରାଣବିନାଶକ କାର୍ଯ୍ୟ ? ଏ ଲୋକର କି ଆତ୍ମଜୀବନ ପ୍ରତି ମମତା ନାହିଁ ? ପୁଣି ଏହା ଯେ ଆମ୍ଭର ପ୍ରୀତିକର କାର୍ଯ୍ୟ, ତାହା କିପରି ଜାଣିଲା ? ସାଧାରଣଙ୍କ ଅଗମ୍ୟ ଏ ସ୍ଥାନକୁ କିପରି ଆସିଲା ? ଆଚ୍ଛା, ଜଣାଯିବ ।

ଏହି ଅବସରରେ ସମସ୍ତ ପାରିଷଦ ପ୍ରଫୁଲ୍ଲ ମନରେ ନବାବ ସାହେବଙ୍କୁ ବେଷ୍ଟନ କରି ଉଭା ହେଲେଣି । ନବାବ ଆମୋଦ କରିବା ଅଭିପ୍ରାୟରେ କିଞ୍ଚିତ୍ କୃତ୍ରିମ କୋପ ପ୍ରକାଶ କରି କହିଲେ, "ଆରେ ଗୋଲାମ ! ତୁ ବର୍ଗି ସେନାପତିକୁ ହତ୍ୟା କରିଛୁ; ଏ ଅପରାଧର କି ଦଣ୍ଡ, ତାହା ଜାଣୁ ?"

ଅମ୍ଭମାନଙ୍କ ପାନରି ବହୁ ବିପଦ ସହିତ ସଂଗ୍ରାମ କରି ବହୁ ସୈନିକ ପୁରୁଷଙ୍କ ସହିତ ସର୍ବଦା ବ୍ୟବହାର କରି ଖୁବ୍ ସାହସୀ ହୋଇ ଗଲାଣି । ବିଶେଷରେ ଯାହାର ଜୀବନପ୍ରତି ମାୟା ନାହିଁ, ସେ ସର୍ବଦା ନିର୍ଭୀକ । ପାନରି ନିର୍ଭୟରେ ସେହି ସପାରିଷଦ ନବାବଙ୍କ ସାକ୍ଷାତରେ କୁର୍ନିଶ କରି ଉତ୍ତର ଦେଲା, "ହଜୁର ! ଜାହାଁପନା ! ଯେବେ ଦୋଷୀ ହୁଏଁ, ଦଣ୍ଡ ଗ୍ରହଣ କରିବାକୁ ପ୍ରସ୍ତୁତ ଅଛି । ହେଲେ ମୁଁ ହଜୁରଙ୍କ ଦୁସ୍‌ମନକୁ ମାରିଅଛି ।"

ନବାବ—ନା, ବର୍ଗି ଅମ୍ଭର ଦୋସ୍ତ ।

ପାନରି—ବର୍ଗି ଦୁନିଆର ଦୁସମନ । ଯେ ଦୁନିଆର ଦୁସମନ ସେ ଦୁନିଆର ବାଦ୍‌ସାହାଙ୍କ ଦୁସମନ, ସେ ବଧ୍ୟ ।

ନବାବ—ଆଚ୍ଛା, ତୁ କି ସକାଶେ ତାକୁ ମାରିଲୁ ?

ପାନରି—ସେ ଦୁନିଆର ଦୁସମନ ।

ନବାବ—ପୁନର୍ବାର ସେହି କଥା—ସେ ଦୁନିଆର ଦୁସମନ, ଚୋର କଣ ଗଲା ? ଚୋର କି ଦୁସମନ ?

ପାନରି – ସେ ଦୁନିଆର ଦୁସମନ, ମୁଁ ଦୁନିଆର ମନୁଷ୍ୟ ।

ନବାବ ଆଲବର୍ଦ୍ଦି ଖାଁ ଜଣେ ଗୁଣଗ୍ରାହୀ ଲୋକ, ପ୍ରଥମରେ ପାନଗ୍ର କାର୍ଯ୍ୟରେ ଅତ୍ୟନ୍ତ ସନ୍ତୁଷ୍ଟ ଥିଲେ, ବର୍ତ୍ତମାନ ତାହାର ବାକ୍ୟବିନ୍ୟାସ, ବଚନମାଧୁରୀ ଶୁଣି ଏବଂ ରୂପଲାବଣ୍ୟ ଦେଖି ବିମୋହିତ ହୋଇଗଲେ । କାପଟ୍ୟ ବିଦ୍ରୂପ ପରିତ୍ୟାଗ କରି ସସ୍ନେହ ଭାବରେ କହିଲେ, "ଆଚ୍ଛା ! ତୁ ଦୁନିଆର ଦୁସମନକୁ ହତ୍ୟା କରିଅଛୁ, ବକ୍‌ସିସ୍ ପାଇବାର ଯୋଗ୍ୟ ।"

ପାନଗ୍ର ପୁନର୍ବାର କୁର୍ନିଶ କରି ହାବିଲଦାର ସିଂହ ଆଡ଼କୁ ସଲଜ୍ଜ ଭାବରେ ହାତ ବଢ଼ାଇ କହିଲା, "ହଜୁରଙ୍କ ଏହି ସାହସୀ ସିପାହୀ ବକସିସ୍ ପାଇବାର ଯୋଗ୍ୟ ।"

ନବାବ—ଅବଶ୍ୟ ସେ ତ ପାଇବ, ତୁ ମଧ୍ୟ ପାଇବୁ ।

ପାନଗ୍ର—ହଜୁର ମାଲିକ ଖୋଦାବନ୍ଦ !

———

-୩୭-

## ସାକ୍ଷାତ୍ ସଂଶୟ

ଦିଗ୍‌ଦର୍ଶନଶଳାକା ଯେପରି ପ୍ରକୃତିସୂଚ ଉତ୍ତରାଭିମୁଖୀନ, ବିପରୀତମୁଖ ବଳରେ ଅନ୍ୟ ଦିଗକୁ ଚାଳିତ ହେଲେ ମଧ୍ୟ ଯେପରି ଅବସର ପ୍ରାପ୍ତି ମାତ୍ରକେ ଉତ୍ତର ଦିଗକୁ ଧାବିତ ହୁଏ, ସେହିପରି ଆମ୍ଭମାନଙ୍କ ପାନଗ୍ରର ଦୃଷ୍ଟିରେଖା ବାଦଲ ସିଂହ ଉପରେ ପଡ଼ୁଅଛି । ବାଦଲ ସିଂହ ପ୍ରତିମୂର୍ତ୍ତି-ଦର୍ଶନ ମାତ୍ରକେ ଯେମନ୍ତ ତାହାର ଜୀବନୀ ଶକ୍ତି; ତାହାର ଧୈର୍ଯ୍ୟ, ତାହାର ଆନନ୍ଦ, ତାହାର ସାମର୍ଥ୍ୟ ତଡ଼ିତ୍ ପ୍ରବାହ ପରି ଶତ ସହସ୍ର ଗୁଣରେ ବର୍ଦ୍ଧିତ ହୋଇ ଦେହର ଶୋଣିତବାହିନୀ ପ୍ରତି ଶିରାରେ ବ୍ୟାପ୍ତ ହୋଇ ଯାଉଅଛି । ଏଣେ ବାଦଲ ସିଂହ ମଧ୍ୟ ଏକ ଧ୍ୟାନରେ ପାନଗ୍ରକୁ ଚାହିଁ ରହିଅଛି ଏବଂ ମନୋଯୋଗପୂର୍ବକ ତାହାର ପ୍ରତ୍ୟେକ କଥା ଶ୍ରବଣ କରୁଅଛି । ପାନଗ୍ର କଥାରୁ ଜଣାଯାଏ, ନବାବ ସାହେବଙ୍କ ସହିତ ସେ ଯେଉଁ ସ୍ୱରରେ କଥୋପକଥନ କରୁଅଛି, ଏହା ତାହାର ପ୍ରକୃତିଦତ୍ତ ସ୍ୱର ନୁହେଁ, କଦାଚିତ୍ ଅସାବଧାନତାରେ ଏକ ପ୍ରକାର ସ୍ୱର ବାହାରି ପଡ଼ୁଅଛି । ସେହି ସ୍ୱର ଶୁଣି ପୁଣି ରୂପ ଦେଖି ବାଦଲ ସିଂହ ସ୍ତମ୍ଭୀଭୂତ ହୋଇ ଗଲାଣି ଏବଂ ତାହାର ବିସ୍ମୃତପ୍ରାୟ ବିଗତ ବିଷାଦ ନବୀଭୂତ ହୋଇ ତାହାକୁ ବାହ୍ୟଜ୍ଞାନଶୂନ୍ୟ କରି ପକାଉଛି । ବାଦଲ ସିଂହ ମନ ମଧ୍ୟରେ ଚିନ୍ତା କରୁଅଛି, ଲଛମାର ଭାଇ ଥିଲେ ତାହାର ଏତାଦୃଶ ରୂପ, ଏତାଦୃଶ ସ୍ୱର ହେବାର ସମ୍ଭାବନା ଥିଲା । ପୃଥିବୀ ମଧ୍ୟରେ ଦୁଇ ଜଣଙ୍କର କି ଏକ ପ୍ରକାର ରୂପ ହୋଇପାରେ ? କେବଳ ରୂପ ନୁହେଁ ତାହା ସହିତ ସ୍ୱର, ଆଶ୍ଚର୍ଯ୍ୟ । ପୁଣି ଲିଙ୍ଗ ଭେଦ । ନାହିଁ ନାହିଁ, ମୋହର ଭ୍ରମ । ଲଛମାର କି ଏହିପରି ରୂପ ? ସେ ଲାବଣ୍ୟ କାହିଁ ? ସେ କୋମଳ କଥା କାହିଁ ? ସେ ସଲଜ୍ଜ କଟାକ୍ଷପାତ କାହିଁ ? ସେ ଓଷ୍ଠପ୍ରସାରୀ ମଧୁର ହାସ୍ୟ କାହିଁ ? ହା ଭଗବାନ୍ ! ବାଲ୍ୟକାଳରୁ ପିତୃହୀନ ଥିଲି, ପିତା ଦେଇଥିଲ, ବିପୁଳ ବିତ୍ତ ଦେଇଥିଲ, ଦେବଦୁର୍ଲଭ ପତିବ୍ରତା ପ୍ରଣୟିନୀ ଦେଇଥିଲ, ବର୍ତ୍ତମାନ ମୋ ପକ୍ଷରେ ସମସ୍ତ ସ୍ୱପ୍ନବତ୍ ପ୍ରତୀୟମାନ ହେଉଅଛି । ଲଛମାର ଚରଣାମ ବାଦଲ ସିଂହ ଚିନ୍ତା କଲା । ସେହି ପ୍ରାଣପ୍ରତିମା ନୟନତାରା ଲଛମା ପରଲୋକଗତା ଅଥବା ବର୍ଗି ଶିବିର ମଧ୍ୟରେ ଅବସ୍ଥିତା । ବାଦଲ ସହ୍ୟ କରିପାରିଲା ନାହିଁ, ଛୁରିକାମୁଷ୍ଟି ଦୃଢ଼ କରି ଭାସ୍କର ଶିବ ପ୍ରତି ସକ୍ରୋଧରେ ଅନାଇଲା ।

ନବାବ ସାହେବ ବାଦଲ ସିଂହର ପ୍ରକୃତ ଅଭିପ୍ରାୟ ଅନବଗତ, ହସି ହସି ତାହା ହାତ ଧରି ଓଟାରି ନେଇଗଲେ ।

———

—୩୮—

## ବିଚିତ୍ର ବକ୍ସିସ୍ ବାସନା

ବିଜ୍ଞ ବିଚକ୍ଷଣ ବୟୋବୃଦ୍ଧ ବିଶିଷ୍ଟ ଲୋକମାନଙ୍କର ବିଧାନ, ବିଜନ ସ୍ଥାନରେ ବିଶ୍ରାମ ବିଧେୟ ନୁହେ । ମୁର୍ଶିଦାବାଦ ରୱାନା ସକାଶେ ନବାବ ସାହେବଙ୍କ ଆଦେଶ ପ୍ରଚାରିତ ହେଲା ।

ସାଗରଗାମିନୀ ସୁରଧୁନୀ ସର୍ବ ବାଧାବିଘ୍ନ ଅତିକ୍ରମ ପୂର୍ବକ ସାଗରସଙ୍ଗ ଲାଭ ସକାଶେ ପ୍ରତିନିୟତ ଧାବମାନା । ଆମ୍ଭେମାନେ ଦେଖୁଅଛୁଁ, ପାନରା ବାଦଲ ସିଂହ ସଙ୍ଗଲାଭ ସକାଶେ ତଦ୍ରୂପ ବ୍ୟତିବ୍ୟସ୍ତ ହୋଇ ପଡ଼ିଲାଣି । ମାତ୍ର ମାନସ ସଫଳ କରିବାର ସୁଯୋଗ ଓ ଅବକାଶ ଉଭୟର ଅଭାବ । ଆଜକୁ କେତେଦିନ ହେଲା ମୁର୍ଶିଦାବାଦରେ ଆନନ୍ଦ ଉତ୍ସବ ଲାଗିଥିଲା, ସେହି ଆନନ୍ଦ ଅନେକ ଗୁଣରେ ବର୍ଦ୍ଧିତ ହୋଇ ଯାଇଅଛି । ବର୍ତ୍ତମାନ ଆନନ୍ଦ ଅନ୍ୟରୂପ । ଶତ୍ରୁ ବିନଷ୍ଟ ହୋଇଅଛି । ଚିରକାଳ ପାଇଁ, ଶାନ୍ତି ଲାଭ କରିବ । ରାଜକର୍ମଚାରୀ; ବାଣିଜ୍ୟ ବ୍ୟବସାୟୀ ସୈନିକ, ନାଗରିକ ଓ ଜନପଦବାସୀ ଯାବତୀୟ ଲୋକେ ଦରବାରରେ ନବାବ ସାହେବଙ୍କୁ ଅଭିନନ୍ଦନ କରିବା ସକାଶେ ଧାବିତ । ନବାବ ସାହେବ ପ୍ରେମାଳାପଦ୍ୱାରା ସମସ୍ତଙ୍କୁ ଆପ୍ୟାୟିତ କରୁଅଛନ୍ତି । ଏ ଉତ୍ତାରୁ ଖିଲତ୍ ବିତରଣ—ସେନାପତିମାନଙ୍କୁ ଖିଲତ୍ ବିତରଣ କରାଯାଇ ବର୍ଗିହତ୍ୟାକାରୀ ସୈନିକମାନଙ୍କ ସହିତ ବାଦଲ ସିଂହକୁ ଆହ୍ୱାନ କରାଗଲା । ନବାବ ସାହେବ ଆନନ୍ଦ ମନରେ କହିଲେ—"ବାଦଲ, ହାବିଲଦାର ବାଦଲ ! ତୁମ୍ଭ ପରାମର୍ଶ, ତୁମ୍ଭ ସାହସିକତା, ତୁମ୍ଭ ବୀରତ୍ୱରେ ଆମ୍ଭ ନିଷ୍କଣ୍ଟକ ହୋଇଅଛୁଁ । ତୁମ୍ଭଙ୍କୁ ଖିଲତ୍ ଦେବାକୁ ଇଚ୍ଛା କରୁଁ । ରାଜୋପାଧି ସହିତ ମେଦିନୀପୁର ଜିଲ୍ଲା ଅନ୍ତର୍ଗତ ବଣବିଷ୍ଣୁପୁର ପରଗଣା ନିଷ୍କରରୂପେ ତୁମ୍ଭଙ୍କୁ ଇନାମ ପ୍ରଦତ୍ତ ହେଲା । ଆଉ ଯେବେ କିଛି ପ୍ରାର୍ଥନା ଥାଏ ପ୍ରକାଶ କର ।"

ପାନରାକୁ ଦେଖିବା ସମୟଠାରୁ ବାଦଲର ବିସ୍ମୃତ ପ୍ରାୟ ବିଷାଦ ନବୀଭୂତ ହୋଇ ପଡ଼ିଅଛି । ତାହାର ବର୍ତ୍ତମାନ ପାର୍ଥିବ କୌଣସି ପଦାର୍ଥର ଆକାଂକ୍ଷା ନାହିଁ । ଆପଣାର ପ୍ରତିଜ୍ଞା ଆଂଶିକ ପ୍ରତିପାଳନ କରିଅଛି । ଏକପ୍ରକାର ନିଶ୍ଚିନ୍ତ ।

ବାଦଲ ସିଂହ କହିଲା—ହଜୂର ! ମୋହର କିଛି ପ୍ରାର୍ଥନା ନାହିଁ ।

ବାଦଲ ସିଂହର ଭାବ ଦର୍ଶନ କରି ଦର୍ଶକମଣ୍ଡଳୀ ଆଶ୍ଚର୍ଯ୍ୟାନ୍ୱିତ ହେଲେ ।

ଏ ଉତ୍ତାରେ ନକିବ ଡାକିଲା, ଉମେଦୁଆର ହାଜର—ଉମେଦୁଆର ହାଜର ।

ଦରବାରରେ ଜନତା ହେବାରୁ ଆମ୍ଭମାନଙ୍କ ପାନରା ଅପସୃତ ହୋଇଯାଇ ଏକ ନିଭୃତ ସ୍ଥାନରେ ଉଭା ହୋଇ ବାଦଲ ସିଂହକୁ ଏକ ଧ୍ୟାନରେ ଅନାଇ-ଥାଏ । ନକିବ ଡାକରା ଶୁଣି ଧୀରେ ଧୀରେ ଅଗ୍ରସର ହେଲା । ଲୋକମାନେ ଆଡ଼ ହୋଇଯାଇ ତାହାର ମାର୍ଗ ପରିଷ୍କାର କରିଦେଲେ । ଆମ୍ଭେମାନେ ବର୍ତ୍ତମାନ ପାନରାର ଭାବାନ୍ତର ଦେଖୁଅଛୁଁ । ଯେ ବ୍ୟକ୍ତି ଶତ ଶତ ବୀର ମଧ୍ୟରେ ନିର୍ଭୟ ଚିତ୍ତରେ ଆପଣା ଜୀବନର ମାୟା ପରିତ୍ୟାଗପୂର୍ବକ ଗୋଟିଏ ଜଗଦ୍ୱିଖ୍ୟାତ ବୀରକୁ ହତ୍ୟା କରିଥିଲା, ବର୍ତ୍ତମାନ ସେ ଯେମନ୍ତ ସାହସ ସହକାରେ ନବାବ ସାହେବଙ୍କ ସମ୍ମୁଖକୁ ଅଗ୍ରସର ହୋଇପାରୁ ନାହିଁ । ଲଜ୍ଜା, ଭୟ, ସଙ୍କୋଚ ଯେମନ୍ତ ଯୁଗପତ୍ ମିଳିତ ହୋଇ ପାଦକୁ ପଛକୁ ଓଟାରୁଛି । ନବାବ ସାହେବଙ୍କ ପୁନଃ ପୁନଃ ଆହ୍ୱାନରେ ଅନାୟତ୍ତ ହୋଇ ବାଦଲ ସିଂହ ପ୍ରତି ଈଷତ୍ ଦୃଷ୍ଟିପାତପୂର୍ବକ

ଅଗ୍ରସର ହେଲା । ମୃଦୁମୃଦୁ ନବାବ ସାହେବ ସ୍ନେହ-ଆଦରପୂର୍ବକ କହିଲେ, "ଆରେ ପ୍ରେଜବ ! ତୁ ଖିଲତ୍ ପାଇବାର ଯୋଗ୍ୟ । କଣ ତୋର ଇଚ୍ଛା ?" ନବାବ ସାହେବଙ୍କ ହୁକୁମ ଶୁଣି ପାନବା କ ଉତ୍ତର ଦେବ କିଛି ସ୍ଥିର କରିପାରିଲା ନାହିଁ । ଅଧୋବଦନ ହୋଇ ଦକ୍ଷିଣ ପଦ ବୃଦ୍ଧାଙ୍ଗୁଳିରେ ମୃତ୍ତିକା ଖନନ କରୁଥାଏ । ଦରବାରର ଜାବତୀୟ ଲୋକେ ତାହା ଆଡ଼କୁ ଚାହିଁ ରହିଅଛନ୍ତି । ଏଥିକୁ ସେ ଆହୁରି ମଧ୍ୟ ସଙ୍କୁଚିତ ହୋଇ ଯାଉଅଛି । ନବାବ ସାହେବଙ୍କ ପୁନଃ ପୁନଃ ପ୍ରଶ୍ନର ଉତ୍ତର ଦେବାକୁ ଆପ୍ରସ୍ତୁତ ନାହିଁ । ହଠାତ୍ ତାହା ମୁଖରୁ ବାହାରି ପଡ଼ିଲା, "ମୋ ଭଗିନୀ ସହିତ ଏହି ହାବିଲ-ଦାରଙ୍କ ବିବାହଦିଆଯାଉ ।" ନବାବ ସାହେବ ମନରେ କରିଥିଲେ, ଏ ବ୍ୟକ୍ତି ଉମେଦୁଆର, ହାବିଲଦାରୀ, ମନସବଦାରୀ କିମ୍ବା ଅନ୍ୟ କୌଣସି ପ୍ରକାର କିଛି ଗୋଟାଏ ଚାକିରି ପ୍ରାର୍ଥନା କରିବ । ମାତ୍ର ବର୍ତ୍ତମାନ ବିଚିତ୍ର ବକ୍‌ସିସ୍ ବାସନା ଦେଖି ବିସ୍ମିତ ହେଲେ । ଅନ୍ୟ ଲୋକେ ପରସ୍ପର ମୁଖାବଲୋକନ କଲେ । ଦରବାର କାଇଦା ସକାଶେ ହସିବାକୁ ସାହସ କରି-ପାରିଲେ ନାହିଁ । ଆଉ ବାଦଲ ସିଂହ ସେ ତ ଦାରୁଭୂତୋ ମୁରାରି ହୋଇ ଗଲାଣି । ପାନବାକୁ ଥରେ ଅମନୋଯୋଗପୂର୍ବକ ଅନାଇ ଭାବିଲା, ଲୋକଟା କଣ ବାଇଆ !

ନବାବ ସାହେବ ବାଦଲ ପ୍ରତି ଦୃଷ୍ଟିପାତ କରି କହିଲେ, "ଦେଖ ହାବିଲଦାର ! ଆଲ୍ଲାତାଲଙ୍କର ତୁମ୍ଭ ପ୍ରତି ଭାରି ମେହେରବାନୀ, ରାଜା ହେଲ, ଜମିଦାରୀ ପାଇଲ, ପୁଣି ଏକ ନମ୍ବା ବିବି ପ୍ରାପ୍ତ ହେବ ।" ବାଦଲ ସ୍ଥିର ଭାବରେ ଉଭା ହୋଇଅଛି । ନବାବ ସାହେବଙ୍କ ପୁନଃ ପୁନଃ ପ୍ରଶ୍ନରେ ଉତ୍ତର ଦେଲା, "ହଜୁର । ମୋ ପ୍ରତିଜ୍ଞା ଜାଣନ୍ତି, ଦୁନିଆ ଦୌଲତରେ ମୋହର ପ୍ରୟୋଜନ ନାହିଁ । ଗୟା କ୍ଷେତ୍ରରେ ପିତୃତର୍ପଣ ଦ୍ୱାରା ପିତୃଋଣ ଶୁଝିବି । ମୋହର ଆହୁରି ଗୋଟିଏ କାର୍ଯ୍ୟ ଅବଶିଷ୍ଟ ରହିଅଛି । ହଜୁର ! ମୋ କସୁର ମାଫ ହେଉ, ମୁଁ ମୋ ସ୍ତ୍ରୀଠାରେ ପ୍ରତିଜ୍ଞା କରି ଏକପତ୍ନୀବ୍ରତ ଗ୍ରହଣ କରିଅଛି । ଅନ୍ୟ ସ୍ତ୍ରୀର ମୁଖାବଲୋକନ କରିବି ନାହିଁ, ଯାବଜ୍ଜୀବନ ମୋ ସ୍ତ୍ରୀକୁ ଧ୍ୟାନ କରିବି ।"

ନବାବ ସାହେବ ମୁସ୍ତାଫା ପ୍ରତି ଦୃଷ୍ଟିପାତ କଲେ, ଅଭିପ୍ରାୟ—ସେ ବାଦଲ ସିଂହଙ୍କୁ ବୁଝାଇ କହୁ । ମୁସ୍ତାଫା ଓ ବାଦଲ ସିଂହ ମଧ୍ୟରେ ବିଶେଷ ସମ୍ପ୍ରୀତି ଥିଲା । ମୁସ୍ତାଫା ଖାଁ ନବାବ ସାହେବଙ୍କ ଅଭିପ୍ରାୟ ଜାଣି କହିଲେ, "ଦେଖ ଦୋସ୍ତ ବାଦଲ ! ତୁମ୍ଭେ ଜବାନ ଲୋକ । ଦୁନିଆଦାରି କଥା କହ, ଏ କି ଅହମକୀ ଫକୀରି କଥା କହୁଅଛ ? ଗୋଟାଏ ସାଦୀ ହୋଇଥିଲ, ସେ ତ ଫୌତ ହୋଇଅଛି । କୋରାଣ ସରିଫରେ ହୁକୁମ ଅଛି, ମରଦ ଚାରିଟା ସାଦୀ କରି ପାରିବ । କେହି କେହି ନବି ଏହା ବି ହୁକୁମ କରିଅଛନ୍ତି, ଆସମାନ୍‌ରେ ଯେତେ ତାରା, ତେତେଟା ନିକା କରିପାରିବ ।

ମୁସ୍ତାଫା ଦତ୍ତ ବ୍ୟବସ୍ଥା ବାଦଲ ସିଂହ ହୃଦୟଙ୍ଗମ କରିପାରିଲା କି ନାହିଁ ବୋଲିଯାଇ ନ ପାରେ । କାରଣ ମୁସଲମାନ ଆକାଶରେ ଅସଂଖ୍ୟ ତାରା ବିରାଜିତ, ମାତ୍ର ବାଦଲ ହୃଦୟ ଆକାଶରୁ ଗୋଟିଏ ଚନ୍ଦ୍ର ଅସ୍ତ ଯାଇଅଛନ୍ତି, ଏଥିକୁ ତାହାର ହୃଦୟାକାଶ ନିବିଡ଼ ନୈରାଶ୍ୟ-ଅନ୍ଧକାରମୟ । ସେ ସ୍ଥିର ହୋଇ ଉଭା ହୋଇଅଛି । ତାହାର ନେତ୍ରଦ୍ୱୟ ଅଶ୍ରୁପୂର୍ଣ୍ଣ । ତାହାର ମନସ୍କାମ ସିଦ୍ଧ ହୋଇଅଛି । ବର୍ତ୍ତମାନ ଅନ୍ୟ ଭାବନା ନାହିଁ । ତାହା ମନ ଜ୍ଞାନ ପ୍ରାଣ ପ୍ରିୟତମା ଭାର୍ଯ୍ୟା ଲଛମାମୟ । ଜୀବନରେ କିଛି କର୍ତ୍ତବ୍ୟ ଅଛି ବୋଲି ଜ୍ଞାନ କରିପାରୁ ନାହିଁ । ଆଉ ରାଜପଦ—ଜମିଦାରୀ ? ତାହାର ଯେଉଁ ସମ୍ପତ୍ତି ଅପଚୟ ହୋଇଅଛି ଶତ ସହସ୍ର ପଦଗୌରବ, ଶତ ସହସ୍ର ରାଜତ୍ୱ ସେ କ୍ଷତି ପୂରଣ କରିପାରିବ ନାହିଁ । ପୁଣି

ପାର୍ଥିବ ସୁଖ ସମ୍ପତ୍ତି ଭୋଗର ଭାଗୀ ପରିଜନ ଅଭାବରେ ସୁଖକର ସମ୍ପତ୍ତି ଲାଭ କଷ୍ଟର କାରଣ ହୋଇପଡ଼େ ।

ବାଦଲ ସିଂହ ଏବଂ ମୁସ୍ତାଫାର ଦତ୍ତ ବ୍ୟବସ୍ଥାର ପ୍ରତ୍ୟେକ କଥା ଆମ୍ଭମାନଙ୍କ ପାନରି ମନୋଯୋଗପୂର୍ବକ ଶୁଣୁଥିଲି । ତାହା ନେତ୍ରରୁ ଅଶ୍ରୁଧାରା ପ୍ରବାହିତ ହେଉଅଛି । ସେ ଯେମନ୍ତ ମନର ଭାବ ଗୋପନ କରିବାକୁ ବିଶେଷ ଚେଷ୍ଟା କରି ମଧ୍ୟ କୃତକାର୍ଯ୍ୟ ହୋଇ ପାରୁ ନାହିଁ । ବାଦଲର ପତ୍ନୀପ୍ରେମ, ପତ୍ନୀମମତା ଶୁଣି ସେ ଯେମନ୍ତ ସହ୍ୟ କରି ପାରୁନାହିଁ । ପୁଣି ବାଦଲ ମନଃକଷ୍ଟ ଭୋଗ କରୁଅଛି, ଏହା ମଧ୍ୟ ତାହା ପକ୍ଷରେ ଅସହ୍ୟ ।

ମୁସ୍ତାଫା ଦୁଇ ଜଣଙ୍କୁ ଲକ୍ଷ୍ୟ କରି କହିଲେ. "ବେକୁବ୍ !" ନବାବ ସାହେବ ମନ ମଧ୍ୟରେ ବିଚାର କଲେ, 'ବାଦଲ ତାହା ପିତାମାତା ସକାଶେ କାନ୍ଦୁଅଛି । ଉମେଦୁଆର ଭଗିନୀକୁ ବାଦଲ ବିବାହ କରିବାକୁ ଅସ୍ୱୀକାର କରିବାରୁ ସେ କାନ୍ଦୁଅଛି । ଆଚ୍ଛା ଅତଃପର ବିଚାର କରାଯିବ ।' ଦରବାର ଭଙ୍ଗସୂଚକ ନାଗରା ବାଜିଲା । ନବାବ ସାହେବଙ୍କ ଆଦେଶ ଅନୁସାରେ ନାଜର ଉମେଦୁଆରକୁ ଗୋଟିଏ ବସା ନିରୂପଣ କରାଇଲେ ।

— —

-୩୯-

## ଅନ୍ୱେଷଣ

ଦାମ୍ଭିକ ପ୍ରଜ୍ଞାଭିମାନୀ ମାନବ ! ଆତ୍ମ-ପୌରୁଷକୁ ସର୍ବସ୍ୱ କରି ମଣ; ମାତ୍ର ତୁମ୍ଭେ ଯେ କୌଣସି ଅଦୃଷ୍ଟ ହସ୍ତଦ୍ୱାରା ଚାଳିତ ହେଉଅଛ, ଜୀବିତ କାଳରେ ଦିନେ ହେଲେ ଏପରି କିଛି ପ୍ରତ୍ୟକ୍ଷ ଘଟନା ଉପସ୍ଥିତ ହୋଇ ତୁମ୍ଭ ବିଶ୍ୱାସର ଅବଶ୍ୟ ବ୍ୟତ୍ୟୟ ଜାତ କରାଇବ । ଘଟନାଚକ୍ରରେ ପଡ଼ି ମାନବ ବିବିଧ ଅବସ୍ଥାକୁ ବିକ୍ଷିପ୍ତ ହୁଏ; ତାହା ନିବାରଣ କରିବା ସାଧ୍ୟାତୀତ । ଆଉ ଲାଭାଲାଭ ସମ୍ବନ୍ଧରେ ମଧ୍ୟ କାମ୍ୟବସ୍ତୁ ଲାଭ କରିବା ସକାଶେ ତୁମ୍ଭର ସମସ୍ତ ସାମର୍ଥ୍ୟ, ସମସ୍ତ ଜ୍ଞାନ, ସମସ୍ତ କୌଶଳ ପ୍ରୟୋଗ କରି ହୁଧା ଅକୃତକାର୍ଯ୍ୟ, ସମୟ ବିଶେଷରେ, ବିଷୟ ବିଶେଷରେ ବିନା ଯତ୍ନ ବିନା ପରିଶ୍ରମରେ କାମନାତିରିକ୍ତ କାମ୍ୟବସ୍ତୁ ହସ୍ତଗତ ହେବାର ପ୍ରତ୍ୟକ୍ଷ କଲି ଉତ୍ତାରେ ଯେବେ ଦୈବ ଅସ୍ୱୀକାର କର, ଆମ୍ଭେମାନେ ଅନାୟତ୍ତ । ତେବେ କୌଣସି ସମୟରେ କୌଣସି ଅବସ୍ଥାରେ କୌଣସି ବିଷୟରେ କର୍ତ୍ତବ୍ୟ ପାଳନରେ ଉଦାସୀନ ହୁଅ ନାହିଁ । ଆମ୍ଭେମାନେ କର୍ତ୍ତବ୍ୟପାଳନ ଜନିତ ଫଳକୁ ଦୈବ ଏବଂ ପୌରୁଷ ଉଭୟଦତ୍ତ ପୁରସ୍କାର ସ୍ୱରୂପ ଜ୍ଞାନ କରୁଁ । ଭଗବାନ ବାସୁଦେବ ଅର୍ଜ୍ଜୁନଙ୍କୁ ଉପଦେଶ ଦେଇ ଅଛନ୍ତି —

"କର୍ମଣ୍ୟେବାଧିକାରସ୍ତେ ମା ଫଳେଷୁ କଦାଚନ ।"

ବର୍ତ୍ତମାନ ଆମ୍ଭମାନଙ୍କ ପାନରି ସମ୍ପୂର୍ଣ୍ଣରୂପେ ଅଶ୍ୱସ୍ତ, ତାହାର ଆନନ୍ଦର ସୀମା ନାହିଁ । ଭଗବାନ କୁଳଦେବତା ସହାୟ ହୋଇଅଛନ୍ତି, ଅସାଧ୍ୟ ସାଧନ କରିଅଛି । ଆଉ ଯେଉଁ ହୃଦୟସର୍ବସ୍ୱଙ୍କୁ ଦିବାନିଶି ଶୟନରେ ସ୍ୱପ୍ନରେ ପ୍ରତି ମୁହୂର୍ତ୍ତରେ ଧ୍ୟାନ କରୁଥିଲି, ତାହାଙ୍କୁ ବିନା ଅନ୍ୱେଷଣେ, ବିନା ଯତ୍ନରେ ଅପ୍ରତ୍ୟାଶିତ-ରୂପେ ପ୍ରାପ୍ତ ହୋଇଅଛି । ସମୟ ସମୟରେ ଆନନ୍ଦରେ ଧୈର୍ଯ୍ୟ ଧରି ପାରୁ ନାହିଁ । ମାତ୍ର ସର୍ବଦା ସାଧ୍ୟାନୁସାରେ ସାବଧାନ, କାଳେ ଛଦ୍ମବେଶ ପ୍ରକାଶ ହୋଇ ପଡ଼ିବ । ପାନରି ଛଦ୍ମବେଶୀ । ତେବେ ମନ ମଧ୍ୟରେ ଅନେକ କଥା ପାଞ୍ଚ ସ୍ଥିରକଲି, ରାତିର ଅନ୍ଧକାରରେ ଏକାକୀ ନିର୍ଜ୍ଜନରେ ବାଦଲସିଂହ ନିକଟରେ ଉପସ୍ଥିତ ହେବ । ଛଳନାକ୍ରମେ ବାଦଲ ସିଂହ ବସା ଚିହ୍ନି ଆସି ନାଜର ନିର୍ଦ୍ଦିଷ୍ଟ ବସାକୁ ଗଲି ।

ଓହୋ ! ଆଜ ଦିନଟା କେତେ ବଡ଼, ସୂର୍ଯ୍ୟ ଯେ ଅସ୍ତ ହେଉ ନାହାନ୍ତି । ସନ୍ଧ୍ୟାତାରା ଆକାଶକୁ ଚାହିଁଲଣି, କେତେଥର ଲୋକଙ୍କୁ ପଚାରିଲଣି, ବର୍ତ୍ତମାନ ସମୟ କେତେ ? ଆନନ୍ଦ ଉଦ୍‌ବେଗରେ ଅନ୍ନ ପର୍ଯ୍ୟନ୍ତ ଅରୁଚିକର । ତାହା ହିସାବରେ ଆଜ ଦିନଟା ନିତାନ୍ତ ବଡ଼ । ହେଉ, ମାତ୍ର ସୂର୍ଯ୍ୟ ଠିକ୍ ସମୟରେ ଅସ୍ତ ହେଲେ । କ୍ରମଶଃ ରାତି ପ୍ରହରକ ଗତ, ରାଜମାର୍ଗରେ ଲୋକଗତିବିଧି କ୍ରମଶଃ ବିରଳ ହୋଇ ଆସୁଅଛି, କଦାଚିତ୍ କେହି ଦୁଇଜଣ ଜଣ ଅସମାପ୍ତକର୍ମା ଲୋକ ଗତାୟାତ କରୁଅଛନ୍ତି । ଆଉ ବିଳମ୍ବରେ କଣ ପ୍ରୟୋଜନ ? ଏହି ସମୟରେ ପୁଣି ଜଟିଳ ଚିନ୍ତା ମନ ମଧ୍ୟରେ ଉପସ୍ଥିତ ହେଲା । କିପରି ସାକ୍ଷାତ କରିବି, କି କଥା କହିବି, କୌଣସି ମୀମାଂସାରେ ଉପସ୍ଥିତ ହୋଇ-ପାରୁନାହିଁ । ସଙ୍ଗେ ସଙ୍ଗେ ପୁଣି ଭୟ ଉପସ୍ଥିତ, କ୍ରମଶଃ ଭୟ ପ୍ରବଳତର ହେଉଅଛି, ମୋତେ ଗ୍ରହଣ କରିବେ ତ ? ଏକାକିନୀ ଥିଲି, ନାନା ପୁରୁଷ ମଧ୍ୟରେ ବାସ କରୁଥିଲି । ନା, ନା, ପାଦ ଧରିବି, କାନ୍ଦି କାନ୍ଦି ସମସ୍ତ କଥା କହିବି, କୁଳଦେବତାଙ୍କ ନାମ ଧରି ଶପଥ କରି କହିବି, ମୁଁ ତ ଇଚ୍ଛା କରି ଏକାକିନୀ ନ ଥିଲି, ପ୍ରଭୁ ସବୁ କଥା ଜାଣନ୍ତି, ଅବଶ୍ୟ ଗ୍ରହଣ କରିବେ । ଯାହାଙ୍କର ଏତେ ଦୂର ସ୍ନେହ, ଏତେ ଦୂର ଆଦର, ମୋ ପାଇଁ ରାଜପଦ ତୁଚ୍ଛଜ୍ଞାନ କଲେ, ପ୍ରତିଜ୍ଞା କରିଅଛନ୍ତି ଅନ୍ୟ ସ୍ତ୍ରୀ ମୁଖାବଲୋକନ କରିବେ ନାହିଁ, ସେ କ'ଣ ମୋତେ ଫୋପାଡ଼ି ଦେବେ ? ନାହିଁ, ନାହିଁ ନିଶ୍ଚୟ ଗ୍ରହଣ କରିବେ । ଅନ୍ୟ ଚିନ୍ତା, ପ୍ରକୃତ ବେଶରେ ଯିବି କି ଏହି ଛଦ୍ମବେଶରେ ଯିବି ? ନାହିଁ, ବର୍ତ୍ତମାନ ରାଜମାର୍ଗରେ ପ୍ରକୃତ ବେଶରେ ଯିବା ନିରାପଦ ନୁହେଁ । ପାନବୀ ଗୋଟିଏ ନିଶ୍ୱାସ ପକାଇ ଇଷ୍ଟଦେବତା ନାମ ସ୍ମରଣପୂର୍ବକ ଶୁଭଯାତ୍ରା ଆରମ୍ଭ କରିଦେଲା । ରାଜମାର୍ଗ ଏକ ପ୍ରକାର ନିର୍ଜନ । କଦାଚିତ୍ ଜଣେ ଦୁଇ ଜଣ ଲୋକ ଯା ଆସ କରୁଛନ୍ତି । କୋଉ ହେରେ, କୋଉ ହେରେ ଭୁକ୍କାଟାରେ ପାଟି କରି ଦିଗବାରି ଆପଣା କର୍ତ୍ତବ୍ୟତତ୍ପରତା ଜଣାଉଅଛି । ସେହିପରି ଦାଣ୍ଡବୁଲା କୁକୁରଗୁଡ଼ାକ ନିତାନ୍ତ କର୍ମରେ ନିଯୁକ୍ତ ଥିଲା ପରି ଭୁଙ୍କାଟାରେ ପାଟି କରୁଅଛନ୍ତି । କେଉଁଠାରେ ଗୋଟାଏ କୁକୁର ସଡ଼କ ମଝିରେ ଠିଆ ଆପଣାର କର୍ତ୍ତବ୍ୟକର୍ମ ଜ୍ଞାନ କରି ପରେ ଅନ୍ୟ କୁକୁରକୁ ଅପେକ୍ଷାକୃତ କ୍ଷୀଣ-ସ୍ୱରରେ ଭୁ ଭୁ କରି ଉତ୍ତର ପ୍ରଦାନ କରୁଅଛି । ସଡ଼କ ପାଖରେ ସହରର ବୁଲା ଷଣ୍ଢଟା ଶୁକ୍ଳବର୍ଣ୍ଣ ବସ୍ତୁସ୍ତୂପ ଆକାରରେ ପଡ଼ି ରହି ନବାବ ସାହେବଙ୍କ ପରି ଆନନ୍ଦ ମନରେ ପାକୁଳି କରୁଅଛି । ମାତ୍ର ଆମ୍ଭେମାନେ ଆଲିବର୍ଦ୍ଦି ଖାଁଙ୍କଠାରୁ ଏହାକୁ ଭାଗ୍ୟବାନ ଜ୍ଞାନ କରୁଁ; କାରଣ ନବାବ ସାହେବ ସୁବାଦାରିଟା ଉଦରଗତ କରି ମଧ୍ୟ ପାକୁଳି କରିବାକୁ ଅବସର ପ୍ରାପ୍ତ ହୋଇ ନାହାନ୍ତି । ସହରର ଦୋକାନ ଘର, ଗୋଦାମ ଘର, କାରବାରୀ ଘର ସମସ୍ତ ନିସ୍ତବ୍ଧ । କୌଣସି ଘରର କବାଟ ଫାଙ୍କରୁ ଆଲୋକ ରେଖାଟା ଆସି ଦାଣ୍ଡରେ ପଡ଼ୁଅଛି; କୌଣସି କୌଣସି ଘରୁ ଛୁଟ ଭୁଟ ଶବ୍ଦ ଶୁଭୁଅଛି ।

ପାନବୀ ବାଦଲ ସିଂହ ବସାକୁ ଲକ୍ଷ୍ୟକରି ସଡ଼କ ମଧ୍ୟରେ ଏକଧ୍ୟାନରେ ଚାଲିଅଛି । ଆଶଙ୍କା, ଆନନ୍ଦ, ଉଦ୍‌ବେଗ, ମନ ମଧ୍ୟରେ ନାନା ଭାବ ଯୁଗପତ୍ ଉଦିତ ହୋଇ ତାହାକୁ ବ୍ୟାକୁଳ କରୁଅଛି । ସାଗର-ମଧ୍ୟଗତା ଦ୍ରୁତଗାମିନୀ ତରୀ ପ୍ରତିମୁଖ ବାୟୁ ଏବଂ ଉତ୍ତାଳ ତରଙ୍ଗରେ ଯେପରି ଯେମନ୍ତ ବିଚଳିତ ହୋଇପଡ଼େ, ସେହିପରି ପାନବୀ ଚାଲିବା ସମୟରେ କେମନ୍ତ ଦୁଇ ପଦ ପରସ୍ପର ଜଡ଼ିତ ହୋଇ ଯାଉଅଛି ।

ଏହି ତ ହାବିଲଦାର ଦେଉଡ଼ି, ଏହି ନିଶ୍ଚୟ । ପ୍ରହରୀ ଡାକଦେଲା, "ହୁକୁମ୍ ଧର ।"

ପାନବୀ ଆଜ ମୁର୍ଶିଦାବାଦରେ ଅପରିଚିତ ନୁହେ । ନବାବଙ୍କ ଅନୁଗୃହୀତ ଲୋକର ସମ୍ମାନ ସର୍ବତ୍ର । ପ୍ରହରୀ ସମ୍ଭ୍ରମରେ ସଲାମ କରି ପାନବୀ ପ୍ରଶ୍ନ

କରିବା ପୂର୍ବରୁ କହିଲା, "ହଜୁର ! ହାବିଲଦାର ବାହାରକୁ ଯାଇଅଛନ୍ତି ।" ବାହାରକୁ ଯାଇଅଛନ୍ତି ? ପାନଗି ମନରେ ହଠାତ୍ ଗୋଟାଏ ଭୟଙ୍କର ଅମଙ୍ଗଳ-ଆଶଙ୍କା ଉପସ୍ଥିତ ହେଲା । ପ୍ରିୟଜନ ସମ୍ବନ୍ଧରେ ଅମୂଳକ ବା ସମୂଳକ ଆଶଙ୍କା ଉପସ୍ଥିତ ହୋଇଥାଏ । ସେ କେତେକ ମୁହୂର୍ତ୍ତ ସ୍ତମ୍ଭୀଭୂତ ହୋଇ ଛିଡ଼ା ହୋଇଗଲା । ହା ! ଲୋକ ଶତ ସହସ୍ର ଥର ପ୍ରମାଣ ପାଉଅଛି, ଆଶା ଭୟଙ୍କର ବିଶ୍ୱାସଘାତିନୀ, ତଥାପି ମାନବ ତାହା ପ୍ରତାରଣାରେ ବିମୁଗ୍ଧ । ଏହା ମଧ୍ୟ ସତ୍ୟ, ଆଶା ବିଶ୍ୱାସଘାତିନୀ ହେଉ, ଯାହା ହେଉ, ତାହାର ମୋହନ ମନ୍ତ୍ରରେ ମୋହିତ ନ ହେଲେ ମାନବ ପକ୍ଷରେ ଜୀବନ ଧାରଣ କରିବା କଷ୍ଟକର ହୁଅନ୍ତା । ପରମୁହୂର୍ତ୍ତରେ ଆଶା ଆସି ପାନଗି କର୍ଣ୍ଣରେ କହିଲା, 'ବାହାରକୁ ଯାଇଅଛନ୍ତି ଆସିବେ; ଅଧୈର୍ଯ୍ୟ କିପାଇଁ ? ସତ କଥା ।'

ପାନଗି ପଚାରିଲା—"ହାବିଲଦାର କେତେବେଳେ ବାହାରକୁ ଗଲେ ?"

ପ୍ରହରୀ—ରାତ୍ର ଏକଦଣ୍ଡ ସମୟରେ ।
ପାନଗି—କେଉଁଠାକୁ ଯାଇଅଛନ୍ତି ?
ପ୍ରହରୀ—ଜଣା ନାହିଁ ।
ପାନଗି—କେତେବେଳେ ବାହୁଡ଼ିବା ସମ୍ଭବ?
ପ୍ରହରୀ ଜଣା ନାହିଁ ।
ପାନଗି—ସେ କି ନବାବମହଲକୁ ଯାଇଅଛନ୍ତି ?

ପ୍ରହରୀ—ସମ୍ଭବ ନୁହେ, କାରଣ ସାମାନ୍ୟ ବେଶରେ ଯାଇଅଛନ୍ତି ।

ପାନଗି ନିରୁତ୍ତର—ଦେହୁଡ଼ିରେ ସ୍ଥିର ଭାବରେ ରାଜମାର୍ଗକୁ ଚାହିଁ ବସିଅଛି । ରାଜମାର୍ଗ ଅନ୍ଧକାରମୟ; କଦାଚିତ୍ ଗୋଟାଏ ଯୋଡ଼ାଏ ଜନ୍ତୁଜଳା କ୍ଷଣିକ ଆଲୋକ ପ୍ରକାଶ କରି ଅନ୍ଧକାରରେ ମିଶି ଯାଉଅଛନ୍ତି । ପାନଗି ହୃଦୟ ତତୋଽଧିକ ଅନ୍ଧକାରମୟ, ଜ୍ୟୋତି-ରିଙ୍ଗଣ ପରି କ୍ଷଣିକ କ୍ଷୁଦ୍ର ଆଶା ଉଦିତ ହୋଇ ବିଲୟ ପ୍ରାପ୍ତ ହେଉଅଛି । କ୍ରମଶଃ ରାତ୍ରି ଦ୍ୱିତୀୟ, ତୃତୀୟ ପ୍ରହର ଅତୀତ । ଦୁଇ ତିନ ଥର ପହରା ବଦଳି ହୋଇ ଗଲାଣି । ଅନେକ ସମୟରେ ଅଗତ୍ୟା ମନୁଷ୍ୟକୁ ବାଧ୍ୟ ହୋଇ ଧୈର୍ଯ୍ୟ ଧରିବାକୁ ହୁଏ । ହେଲେ ତାହାର ମଧ୍ୟ ଗୋଟାଏ ସୀମା ଅଛି । ଆକାଶ ପାତାଳ ଭାବି ପାନଗି କିଛି ସ୍ଥିର କରିପାରିଲା ନାହିଁ । ରାତ୍ରି ସହିତ ତାହାର ଆଶା ଭରସା କ୍ରମଶଃ ଶେଷ ହୋଇ ଆସୁଛି । ରାତ୍ରି ପ୍ରଭାତ, ପାନଗି ଜାଣେ ବାଦଲସିଂହ ଘରେ ନାହାନ୍ତି; ତଥାପି ସେ ଆପେ ଘର ମଧ୍ୟକୁ ଯାଇ ପ୍ରତ୍ୟେକ ଗୃହ ତନ୍ନ ତନ୍ନ କରି ଦେଖିଲା । ଅବଶିଷ୍ଟ ଗୋଟିଏ ଗୃହ ଥିଲା, ତାହା ମଧ୍ୟକୁ ଯାଇପାରିଲା ନାହିଁ, ଦ୍ୱାରଠାରେ ଅନାସ୍ଥିତ ହୋଇ ବସି ପଡ଼ିଲା ।

ରାତ୍ରି ପ୍ରଭାତ ହେଲା, ନବାବ ସାହେବଙ୍କ ତଲବ, ବାଦଲ ସିଂହ ବସାରେ ନାହାନ୍ତି । ସମ୍ଭବ ଅସମ୍ଭବ, ଗମ୍ୟ ଅଗମ୍ୟ ସର୍ବ ସ୍ଥାନରେ ତଲାସ କରାଗଲା । ସ୍ଥିର ହେଲା—ବାଦଲ ସିଂହ ମୁର୍ଶିଦାବାଦ ସହରରେ ନାହାନ୍ତି ।

ପାନଗିକୁ ନବାବ ସାହେବଙ୍କର ତଲବ ହେଲା; ମାତ୍ର ସେ ହଠାତ୍ ପୀଡ଼ିତ, ଶଯ୍ୟାଗତ, ଉତ୍ଥାନଶକ୍ତି-ରହିତ । ହେଲେ ପ୍ରତିକ୍ଷଣ ବାଦଲ ସିଂହ ସମ୍ବନ୍ଧୀୟ ସମାଚାର ସଂଗ୍ରହ କରିବାରୁ ନିବୃତ୍ତ ନାହିଁ । ସନ୍ଧ୍ୟା ଉତ୍ତାରେ ନିଃସନ୍ଦେହ ହେଲା । ତହିଁ ଉତ୍ତାରେ ଜ୍ୱର, କ୍ରମଶଃ ଜ୍ୱରବୃଦ୍ଧି, ନବାବ ସାହେବ ହାକମ୍ ପଠାଇ ଚିକିତ୍ସା କରାଉଅଛନ୍ତି ।

ତୃତୀୟ ଦିବସ ଶେଷ ରାତ୍ରିରେ ସେ ସ୍ୱପ୍ନ ଦେଖିଲା —ଅନନ୍ତ ଆକାଶ--ଅନନ୍ତ ନକ୍ଷତ୍ରମଣ୍ଡଳ ଉପରିଭାଗରେ ପିତୃଲୋକ ସଭା, ନିଷ୍ପାପ, ନିଷ୍କଳଙ୍କ ମାନବାତ୍ମା ସକଳ ଦେବବିଗ୍ରହ ଧାରଣ କରି ସେ ସଭାରେ ବିରାଜିତ ଅଛନ୍ତି । ଯେଉଁ ମାନବାତ୍ମାମାନଙ୍କ ପୁତ୍ର କନ୍ୟାମାନେ

ଗୁଣବାନ୍, ବିଦ୍ୱାନ୍, ଯଶସ୍ୱୀ, ନିଷ୍ଠାପରାୟଣ, ସେମାନଙ୍କର ଆସନସର୍ବୋଚ୍ଚ । ପାନଗ୍ରା ଦେଖିଲା, ତାହାର ପିତା ଧେର୍ଯ୍ୟକଲ୍ ସିଂହଙ୍କ ଆତ୍ମା ସେହି ସଭାର ଦ୍ୱାରସ୍ଥମାନଙ୍କଦ୍ୱାରା ବିଶେଷରୂପେ ନିବାରିତ ହୋଇ ଦ୍ୱାରଦେଶରେ ନିତାନ୍ତ ବିଷଣ୍ଣ କ୍ଷୁଣ୍ଣ ନିରାଶଭାବରେ ଦଣ୍ଡାୟମାନ ଅଛି ଏବଂ ଏକ ଧ୍ୟାନରେ ପୃଥିବୀକୁ ନିରୀକ୍ଷଣ କରି ରହିଅଛି । ପିଣ୍ଡହୀନ ଅପବିତ୍ର ଆତ୍ମା ପ୍ରତି ସଭାପ୍ରବେଶ ନିଷେଧ ।

ପାନଗ୍ରାର ନିଦ୍ରାଭଙ୍ଗ ହେଲା । ଆପଣାକୁ ଧିକ୍କାର ଦେଇ କହିଲା, "ହା ! ମୁଁ ସେ କୁଳର ଏକମାତ୍ର ବଂଶଧର, ପିତୃଆତ୍ମା ଉଦ୍ଧାରକାରୀ ଆଉ ଦ୍ୱିତୀୟ କେହି ନାହିଁ । ହା ! ମୁଁ କର୍ତ୍ତବ୍ୟକର୍ମରେ ତ୍ରୁଟି କରିଅଛି । ପିତାଙ୍କ ଆତ୍ମାକୁ ଉଦ୍ଧାର କରିବା ମୋ ପକ୍ଷରେ ଅବଶ୍ୟ କର୍ତ୍ତବ୍ୟ ।" କ୍ରମଶଃ ପାନଗ୍ରା ଆରୋଗ୍ୟ ଲାଭ କଲା । ମାତ୍ର ତାହାକୁ ମଧ୍ୟ ପଞ୍ଚମ ଦିନଠାରୁ ମୁର୍ଶିଦାବାଦ ସହର ମଧ୍ୟରେ ଆଉ କେହି ଦେଖି ନାହିଁ ।

— —

## -୪୦-

## ଗୟାକ୍ଷେତ୍ର

ଭଗବାନ ବିଷ୍ଣୁ ଗୟାସୁରକୁ ବଧ କରି ଏହି ପବିତ୍ର କ୍ଷେତ୍ର ପ୍ରତିଷ୍ଠା କରି ଅଛନ୍ତି । ଜମ୍ବୁଦ୍ୱୀପ ଭାରତଖଣ୍ଡ ମଧ୍ୟରେ ଏହା ଗୋଟିଏ ମହାପୁଣ୍ୟମୟ ଧାମ । ଭାରତଭୂମିର ସମସ୍ତ ପ୍ରଦେଶରୁ ଅସଂଖ୍ୟ ହିନ୍ଦୁ ସନ୍ତାନ ସହସ୍ର ସହସ୍ର କ୍ରୋଶ ମାର୍ଗ ଅତିକ୍ରମ କରି ପ୍ରାଣାନ୍ତକ ପରିଶ୍ରମ ସ୍ୱୀକାରପୂର୍ବକ କଷ୍ଟୋପାର୍ଜିତ ବିତ୍ତ ମାୟା ତ୍ୟାଗ କରି ପିତୃଲୋକଙ୍କ ସଦ୍‌ଗତିକାମନାରେ ଏହି ପୁଣ୍ୟମୟ ସ୍ଥାନକୁ ସମାଗତ ହେଉଅଛନ୍ତି । ଜନକକୁମାରୀ ସୀତାଦେବୀ ବନବାସ ସମୟରେ ଏହି ପବିତ୍ର କ୍ଷେତ୍ରରେ ପିତୃଲୋକଙ୍କ ଉଦ୍ଧାର ଉଦ୍ଦେଶ୍ୟରେ ପିଣ୍ଡଦାନ କରିଥିଲେ । ଗୟାସହର ପାଷାଣମୟ ସୌଧଶ୍ରେଣୀର ପାଦଦେଶରେ ପ୍ରଚ୍ଛନ୍ନସଲିଳା ପତିତପାବନୀ ପିତୃଲୋକତାରିଣୀ ଫଲ୍‌ଗୁ ନଦୀ ବିରାଜିତା । ନଦୀ ସୈକତ ବିଦାରଣ ପୂର୍ବକ ଯାତ୍ରୀମାନେ ପିଣ୍ଡଦାନ କରୁଅଛନ୍ତି ।

ପୂର୍ବାହ୍ଣ ଦିବା ପ୍ରହରକ ସମୟରେ ଅନୁମାନ ତ୍ରିଶତ୍ ବର୍ଷ ବୟସ୍କ ଗୋଟିଏ ଯୁବକ ଫଲ୍‌ଗୁନଦୀ ବାଲୁକାପ୍ରାନ୍ତ ମଧ୍ୟରେ ଭ୍ରମଣ କରୁ କରୁ ସମାଗତ ଯାତ୍ରୀମାନଙ୍କ ପିଣ୍ଡଦାନ କ୍ରିୟାକଲାପ ଦର୍ଶନ କରୁଅଛି । ଅବିଚ୍ଛେଦରୂପେ ଯାତ୍ରୀ ଦଳର ଗତିବିଧି ଚଳୁଅଛି, ଏକ ଦଳ ପିଣ୍ଡଦାନ କ୍ରିୟା ସମାପ୍ତ କରି ଚାଲି ଯାଉଅଛନ୍ତି, ପର ମୁହୂର୍ତ୍ତରେ ଅନ୍ୟ ଦଳେ ଯାତ୍ରୀ ଆସି ସେ ସ୍ଥାନ ପୂର୍ଣ୍ଣ କରୁଅଛନ୍ତି । ଏକ ସ୍ଥାନରେ ସେହି ଯୁବକ ଦେଖିଲା, ଗୋଟିଏ ଲୋକ ସୂର୍ଯ୍ୟକିରଣ ନିବାରଣ ନିମନ୍ତେ ବସ୍ତ୍ରଦ୍ୱାରା ମସ୍ତକ ଆବରଣପୂର୍ବକ ହାତ ଯୋଡ଼ି ନେତ୍ର ମୁଦ୍ରିତ କରି ଧ୍ୟାନନିମଗ୍ନ ହୋଇ ନଦୀଗର୍ଭସ୍ଥ ବାଲୁକା ଉପରେ ଉପବିଷ୍ଟ । ଗୟାଳୀ ପଣ୍ଡା ସମ୍ମୁଖରେ ବସି ମନ୍ତ୍ର ପାଠ କରୁଅଛି—

"ପିତା ସ୍ୱର୍ଗଃ ପିତା ଧର୍ମଃ ପିତା ହି ପରମଂ ତପଃ
ପିତରି ପ୍ରୀତିମାପନ୍ନେ ପ୍ରୀୟନ୍ତେ ସର୍ବଦେବତାଃ ।"

ଦର୍ଶକ ଯୁବକଟି ମନୋଯୋଗପୂର୍ବକ ସେହି ମନ୍ତ୍ରପାଠ ଶ୍ରବଣ କଲା । ବର୍ତ୍ତମାନ ଏହା ମନରେ ଅନ୍ୟ କିଛି ଚିନ୍ତା ନାହିଁ, ଅନ୍ୟ ଚିନ୍ତାକୁ ସ୍ଥାନ ଦେଉ ନାହିଁ, ସମସ୍ତ ଚିନ୍ତା ପିତୃଦେବମୟ, ତାହାର ସମସ୍ତ ହୃଦୟ ପିତୃଦେବମୟ । ସେ କଳ୍ପନାନେତ୍ରରେ ନିରୀକ୍ଷଣ କରି ଦେଖିଲା, ତାହାର ପିତୃଦେବଙ୍କ ଆତ୍ମା ପୂର୍ବରୁ ପିତୃଲୋକରେ ରହି ପିଣ୍ଡ ପ୍ରାପ୍ତି ପ୍ରତ୍ୟାଶାରେ ଏକ ଧ୍ୟାନରେ ବଂଶଧର ହସ୍ତକୁ ନିରୀକ୍ଷଣ କରିଅଛନ୍ତି ।

ସେହି ଭ୍ରମଣକାରୀ ଯୁବକଟି ଅନ୍ୟ କେହି ନୁହେ, ଆମ୍ଭମାନଙ୍କ ପରିଚିତ ପାନଗ୍ରା ଅଟେ ।

ପାଠକଗଣ ସମ୍ପ୍ରତି ଏକ ବିଷମ ସମସ୍ୟାରେ ପଡ଼ିଅଛୁ । ଧର୍ମକାର୍ଯ୍ୟରେ ଛଦ୍ମବେଶ ଅପାରଲକ୍ଷ ନିତାନ୍ତ ବର୍ଜନୀୟ, ବିଶେଷତଃ ପିତୃକ୍ରିୟା ସମୟରେ । ପ୍ରକୃତ ନାମ ପ୍ରକୃତ ଗୋତ୍ର, ପ୍ରକୃତ ବେଶ ଧାରଣ କରିବା ନିତାନ୍ତ ପ୍ରୟୋଜନ । କାପଟ୍ୟ ଧର୍ମକାର୍ଯ୍ୟରେ ବିଘ୍ନକାରୀ । ତାହାର ସରଳ ସହଜ ଜ୍ଞାନଦ୍ୱାରା ସହଜ ମୀମାଂସାରେ ଉପନୀତ ହେଲୁ ।

---

-୪୧-

## ଅପୂର୍ବ ମିଳନ

ମଧ୍ୟାହ୍ନ ସମୟ, ଅଧିକାଂଶ ଯାତ୍ରୀ ଫଲ୍‌ଗୁ କ୍ରିୟା ସମାପନ ପୂର୍ବକ ବିଷ୍ଣୁ ପାଦରେ ପିଣ୍ଡଦାନ କରୁଅଛନ୍ତି । ଥୋକେ ଗତ ଦିବସ ଉକ୍ତ ଦୁଇ କାର୍ଯ୍ୟ ସମାପ୍ତ କରିଥିଲେ, ଅଦ୍ୟ ସୁଫଳ ଗ୍ରହଣ କରିବାର ଦିନ । ପ୍ରତ୍ୟେକ ଯାତ୍ରୀ ସକାଶେ ଷୋଡ଼ଶ ଦାନ ସାମଗ୍ରୀ ପ୍ରସ୍ତୁତ ଅଛି । ଧେନୁ, ଶଯ୍ୟାମଣ୍ଡିତ ପଲଙ୍କ, ଜଳପାତ୍ର, ଅନ୍ନପାତ୍ର ପ୍ରଭୃତି ପ୍ରାୟ ଶତାଧିକ ମୁଦ୍ରା ମୂଲ୍ୟର ଦ୍ରବ୍ୟ ପ୍ରସ୍ତୁତ ଅଛି । କେହି କେହି ଅସମ୍ପନ୍ନ ଯାତ୍ରୀ ଚାରିଅଣା, ଆଠଅଣା ମୂଲ୍ୟରେ ସେହି ସମସ୍ତ ଦ୍ରବ୍ୟ କ୍ରୟ କରି ପଣ୍ଡାଙ୍କୁ ଦାନ କରୁ ଅଛନ୍ତି । ସେହି ସମସ୍ତ ମୂଲ୍ୟବାନ୍ ଦ୍ରବ୍ୟର ମୂଲ୍ୟ ଦୁଇଅଣା ନିରୂପିତ ହେଲେ ମଧ୍ୟ ପଣ୍ଡାଗୋସାଇଁଙ୍କର କ୍ଷତି ନାହିଁ । କାରଣ ପଣ୍ଡାଙ୍କ ସ୍ୱଗୃହ ଆନୀତ ସେହି ସମସ୍ତ ଦ୍ରବ୍ୟ ପୁନର୍ବାର ବାହୁଡ଼ି ଯିବ, ଯଜମାନଙ୍କଦ୍ୱାରା ମନ୍ତ୍ରପୂତ ହେବ ମାତ୍ର । ସେହି ଏକ ସଜ ଦାନ ସାମଗ୍ରୀ ସେହି ସ୍ଥାନରେ ଚିରକାଳ ସଜ୍ଜିତ ହୋଇ ରହିଅଛି, ପ୍ରତ୍ୟହ ଶତ ଶତ ଯାତ୍ରୀ ଦ୍ରବ୍ୟ କ୍ରୟ ଏବଂ ଦାନ କରି ଯାଉଅଛନ୍ତି । ବାକ୍ୟରେ କ୍ରୟ ଏବଂ ଦାନ ମନ୍ତ୍ରପାଠ ମାତ୍ର; ଦାନପାତ୍ରର ଉନ୍ନତି ବା ଅପଚୟ ହେବାକୁ ନାହିଁ ।

ସେହି ସୁଫଳ ଦାନ ସ୍ଥଳରେ ଆନୁମାନିକ ବିଂଶତି-ବର୍ଷୀୟା ପରମାସୁନ୍ଦରୀ କୁଶହସ୍ତା ମୁଦ୍ରିତନେତ୍ରା ଧ୍ୟାନ-ନିମଗ୍ନା ଗୋଟିଏ କ୍ଷତ୍ରିୟ କନ୍ୟା ଉପବିଷ୍ଟା, ସମ୍ମୁଖରେ ବିଲ୍ୱଲଗା ମିର୍ଜାଇ ପରିଧାନଧାରୀ ଶ୍ୱେତବର୍ଣ୍ଣ ଉଷ୍ଣୀଷଧାରୀ ଗୟାଳୀ ପଣ୍ଡା ବସି ଯଜମାନଙ୍କୁ ସଙ୍କଳ୍ପମନ୍ତ୍ର ପଢ଼ାଉ-ଅଛି—ପଣ୍ଡାକଥିତ ମନ୍ତ୍ର ଯଜମାନ ପୁନରାବୃତ୍ତି କରୁଅଛି । ଯଜମାନ ଭକ୍ତିପୂର୍ବକ ଗମ୍ଭୀର ସ୍ୱରରେ ଉଚ୍ଚାରଣ କଲା—ଅହଂ ଲଛମା ଦେବ୍ୟା ପିତୃଃ-ଧେଓଁ କଲ ସିଂହବର୍ମଣ—

ଠିକ୍ ସେହି ମୁହୂର୍ତ୍ତରେ ଅଳ୍ପ ଦୂରରେ ଆଉ ଗୋଟିଏ କ୍ଷତ୍ରିୟ ଯୁବକ ସୁଫଳ ଗ୍ରହଣ କରୁଥିଲା । ସେ ଯୁବକଟି ମଧ୍ୟ ଧ୍ୟାନମଗ୍ନ ଏବଂ କୁଶହସ୍ତ, ତାହାର ଗୟାଳୀ ପଣ୍ଡା ମନଯାବନ ଗ୍ରେବେ କଥିତାନୁସାରେ ଉଚ୍ଚାରଣ କଲା—ଅହଂ ବାଦଲ ସିଂହ ବର୍ମଣ ପିତୃଃ ହରିଭଜନ ସିଂ ବର୍ମଣ—

ଦୁଇ ଯଜମାନ ଉଚ୍ଚାରିତ ବାକ୍ୟ ଯୁଗପତ୍ ଦୁଇ ଜଣଙ୍କ କର୍ଣ୍ଣରେ ପ୍ରବେଶ କଲା, ଚକିତ ନେତ୍ରରେ ପରସ୍ପର ଚୃହିଁଲେ, ଏକଧ୍ୟାନରେ ଚୃହିଁ ଅଛନ୍ତି, ନେତ୍ରରେ ପଲକପାତ ନାହିଁ । ଏ କଣ ସ୍ୱପ୍ନ, ନା ଦେବମାୟା, ନା ପିଣ୍ଡଦାନ ସମୟରେ ଏହିପରି ଦୃଶ୍ୟ ହୁଏ ? ଉଭୟଙ୍କ ମନରେ ସମାନ ଭାବନା । ଆଉ ସନ୍ଦେହ ନାହିଁ, ପ୍ରତ୍ୟକ୍ଷ ପ୍ରମାଣ, ଅକାଟ୍ୟ ଲୌହ ଚୁମ୍ବକ ପରି ଦୁଇଜଣ ପରସ୍ପର ଆଡ଼କୁ ଧାବିତ ହେଲେ । ଲଛମା ବାଦଲ ସିଂହ ପାଦଦ୍ୱୟ ଧରିଅଛି, ବାଦଲ ସିଂହ ଲଛମାକୁ ଦୃଢ଼ରୂପେ ଧାରଣ କରିଅଛି । କାହାରି ମୁଖରେ କଥା ନାହିଁ, ବାଳକ ବାଳିକା ପରି ଦୁଇ ଜଣ ଚିତ୍କାର ପୂର୍ବକ କାନ୍ଦୁ ଅଛନ୍ତି ।

ଅନ୍ୟ ଦିଗରେ ଦୁଇଗୋଟି ଭିକାରୁଣୀ ବୃଦ୍ଧା ସ୍ତ୍ରୀ ସୁଫଳଗ୍ରହଣ ସକାଶେ ବସି ଅଛନ୍ତି, ପୁଷ୍ପମାଳାରେ

ସେମାନଙ୍କ ହସ୍ତ ବଦ୍ଧ । ଭିକ୍ଷାଲବ୍ଧ ଯତ୍‌କିଞ୍ଚିତ୍ ଧନ ପଣ୍ଡାଠାକୁରଙ୍କର ଏଥିପୂର୍ବେ ହସ୍ତଗତ ହୋଇ ଯାଇ-ଅଛି । ସୁଫଳ ଦକ୍ଷିଣା ଦେବାକୁ ଶକ୍ତି ନାହିଁ, ଏଥି ସକାଶେ ବଦ୍ଧ ହସ୍ତ । ସେହି ବୃଦ୍ଧା ଦୁଇଗୋଟି ଧାଇଁଲେ, ଆରେ ମୋର ଲଛମା ରେ—ଆରେ ମୋର ବାଦଲରେ । ଯୁବୋଟି ତ୍ରଣୀ ଜଡ଼ିତ ହୋଇ ପଡ଼ିଅଛନ୍ତି, କେତେ ଦଣ୍ଡ ପର୍ଯ୍ୟନ୍ତ କାହାର ମୁଖରେ କଥା ନାହିଁ କେବଳ ଚିତ୍କାର, କେବଳ କ୍ରନ୍ଦନ, ସମସ୍ତଙ୍କ ନେତ୍ରରୁ ଅବିରଳ ଧାର ପ୍ରବାହିତ ହେଉଅଛି । ସମୟ ସମୟରେ ପରସ୍ପର ମୁଖାବଲୋକନ କରି ଅଧିକତର ଉଚ୍ଚ ଚିତ୍କାର କରୁଅଛନ୍ତି । ସମସ୍ତ ଯାତ୍ରୀ, ସମସ୍ତ ପଣ୍ଡା ତଟସ୍ଥ ହୋଇ ଏହି ଅପୂର୍ବ ମିଳନ ଦେଖୁଅଛନ୍ତି । ଅନେକ ସମୟ ଉତ୍ତାରେ ସେହି ଚାରିଜଣ ପ୍ରକୃତିସ୍ଥ ହେଲେ ଏବଂ ଅବଶିଷ୍ଟ ଦୈବକାର୍ଯ୍ୟ ସମାପନପୂର୍ବକ ପଣ୍ଡାଙ୍କ ନିର୍ଦ୍ଦିଷ୍ଟ ବାସସ୍ଥାନକୁ ଗମନ କଲେ ।

ଚିହ୍ନାଇ ଦେବା ଅନାବଶ୍ୟକ; ବୃଦ୍ଧା ସ୍ତ୍ରୀ ଦୁଇଗୋଟି ଲଛମାର ମା ଓ ଲଛମାର ଶାଶୁ, ବାଦଲ ସିଂହ ମା ଓ ବାଦଲ ସିଂହ ଶାଶୁ ।

———

-୪୨-

## ବଂଶ ପରିଚୟ

ମହାତ୍ମା କର୍ଣ୍ଣେଲ ଟଡ଼ ସାହେବ ରାଜପୁତ ସ୍ଥାନର ବିଗତ ବିସ୍ମୃତ ପ୍ରାୟ ବୀରତ୍ୱ କାହାଣୀ ଜଗତକୁ ଶ୍ରବଣ କରାଇ ଭାରତବାସୀଙ୍କର ଧନ୍ୟବାଦର ପାତ୍ର ହୋଇ ଯାଇଅଛନ୍ତି । ଉକ୍ତ ମହାତ୍ମାଙ୍କ ସଂଗୃହୀତ ରାଜସ୍ଥାନ ନାମକ ପୁସ୍ତକରୁ ଜଣାଯାଏ, ୧୧୯୩ ଖ୍ରୀଷ୍ଟାବ୍ଦରେ ଆର୍ଯ୍ୟାବର୍ତ୍ତ ଭୂମିରେ ମହାରାଜ ପୃଥ୍ୱୀରାଜ ଏବଂ ମହାରାଜ ଜୟଚ୍ଚନ୍ଦ ଈର୍ଷାବୃତ୍ତିର ବଶମ୍ବଦ ହୋଇ ବହୁବର୍ଷ-ବ୍ୟାପୀ ପରସ୍ପର ଯୁଦ୍ଧଦ୍ୱାରା ନିତାନ୍ତ ନିସ୍ତେଜ ଏବଂ ନିର୍ଦ୍ଧନ ହୋଇ ପଡ଼ିଥିଲେ । ଏହି ସମୟରେ ଯବନବୀର ସାହାବୁଦ୍ଦୀନ ପାଣ୍ଡବତିଳକ ଧର୍ମପୁତ୍ର ଯୁଧିଷ୍ଠିରଙ୍କ ପବିତ୍ର ହସ୍ତିନାପୁରୀ ହସ୍ତଗତ କରି ଜୟଚ୍ଚନ୍ଦ ବିରୁଦ୍ଧରେ ଯୁଦ୍ଧଯାତ୍ରା କଲେ । ଏଣେ ଜୟଚ୍ଚନ୍ଦ ହୀନବଳ ଅର୍ଥଶୂନ୍ୟ । ତଥାପି ସେ ଯବନବୀରଙ୍କ ଗତିରୋଧ କରିବା ବିଷୟରେ ନିରୁତ୍ସାହ ହେଲେ ନାହିଁ । ଦୃଶଦ୍‌ବତୀ ନଦୀକୂଳରେ ଉଭୟ ପକ୍ଷରୁ ବିଷମ ସମର ସଂଘଟିତ ହେଲା । ଦୈବ ବିମୁଖ ସମୟରେ ଅପ୍ରତ୍ୟାଶିତରୂପେ ସର୍ବଦିଗରୁ ବିପଦରାଶି ସମୁପସ୍ଥିତ ହୁଏ । ଭାରତଭୂମି ବିଦେଶୀୟ ହସ୍ତଗତ ହେବା ଯେମନ୍ତ ଭଗବାନଙ୍କ ଅଭିପ୍ରେତ ! ଜୟଚ୍ଚନ୍ଦ ନଦୀ ପାର ହେବା ସମୟରେ ତାଙ୍କର ତରଣୀ ନଦୀଗର୍ଭରେ ନିମଗ୍ନ ହେଲା । ତାହାଙ୍କର ସାମନ୍ତ ସେନାପତି ଏବଂ ବଂଶଧରମାନେ ପକ୍ୱ ଶାଲ୍ମଳୀବୀଜ ସମାନ ଆର୍ଯ୍ୟାବର୍ତ୍ତଭୂମିରେ ବିକୀର୍ଣ୍ଣ ହୋଇ ନାନା ସ୍ଥାନରେ କ୍ଷୁଦ୍ର କ୍ଷୁଦ୍ର ରାଜ୍ୟ ଏବଂ ବଂଶ ସ୍ଥାପନ କଲେ ।

ରାମଶରଣ ସିଂହ ଏବଂ ଦୀନଦୟାଲ ସିଂହ ଦୁଇ ଜଣ ସାମନ୍ତ ଦୀନ ବେଶରେ ନାନା ଦେଶ ଭ୍ରମଣ ପୂର୍ବକ ଅବଶେଷରେ ରୋହିଲଖଣ୍ଡରେ ବାସସ୍ଥାନ ନିରୂପଣ କରିଥିଲେ । ଲଛମାର ପିତା ଧେଓଁକଲ ସିଂହ ଏବଂ ବାଦଲ ସିଂହର ପିତା ହରିଭଜନ ସିଂହ ସେମାନଙ୍କ ବଂଶଧର । ଆମ୍ଭମାନଙ୍କ ବର୍ଣ୍ଣିତ ସମୟରେ ରୋହିଲଖଣ୍ଡ-ନିବାସୀମାନେ ସମରବ୍ୟବସାୟୀ ଏବଂ ଲୁଣ୍ଠନକାରୀ ଜାତି ଥିଲେ । ସେମାନେ ସମସ୍ତେ ମୁସଲମାନ ଧର୍ମାବଲମ୍ବୀ, ହିନ୍ଦୁମାନେ ସେମାନଙ୍କ ସହିତ ଯୋଗଦାନ କରି ନାହାନ୍ତି । ମାତ୍ର ଧେଓଁକଲ ସିଂହ ଏବଂ ହରିଭଜନ ସିଂହ ଲୁଣ୍ଠନକାରୀମାନଙ୍କର ସହାୟତା କରିଥିବାର ପ୍ରକାଶିତ ହେଲା । ବାଦଲର ମାତା ଶ୍ୟାମାବାଈ, ଲଛମାର ମାତା ରୁକ୍ମାବାଈ ଦୁଇ ଜଣ ନିତାନ୍ତ ସରଳା, ସଚ୍ଚରିତ୍ରା ଏବଂ ପତିପରାୟଣା ଥିଲେ । ସ୍ୱାମୀମାନଙ୍କ

ଦୁଷ୍ଟଚରିତ୍ରତା ସେମାନଙ୍କ କର୍ଣ୍ଣଗୋଚର ହେବାରୁ ସଦ୍‌ବିନୟ ହିତୋପଦେଶ ଓ ଆନ୍ତରିକ ଯତ୍ନଦ୍ୱାରା ସେମାନଙ୍କୁ ସନ୍ମାର୍ଗଗାମୀ କରାଇଥିଲେ ଏବଂ ସେମାନଙ୍କ ପାପ ବିମୋଚନ ନିମନ୍ତେ ନାନା ତୀର୍ଥସ୍ଥାନରେ ପରିଭ୍ରମଣ କରିଥିଲେ । ପଶ୍ଚାତ୍ ପ୍ରକାଶିତ ହେଲା, ଧୌଙ୍କଲ ସିଂହ ଏବଂ ହରିଭଜନ ସିଂହ ଦୁଇ ଜଣ ସପରିବାରରେ ତୀର୍ଥ ଭ୍ରମଣ କରୁଥିବା ସମୟରେ ଲୁଣ୍ଠନକାରୀ ମୁସଲମାନମାନଙ୍କଦ୍ୱାରା ସେମାନଙ୍କ ସମସ୍ତ ସମ୍ପତ୍ତି ଅପହୃତ ହୋଇଥିଲା ।

———

## ଉପସଂହାର

ମନୁଷ୍ୟଭାଗ୍ୟ କ୍ଷଣପରିବର୍ତ୍ତନଶୀଳ । ବାଦଲ ସିଂହ ଏବଂ ଲଛମୀର ଭାଗ୍ୟ ସମ୍ପୂର୍ଣ୍ଣରୂପେ ପରିବର୍ତ୍ତିତ ହୋଇଅଛି । ବର୍ଦ୍ଧମାନପୁର ପରଗଣାରେ ରାଜଧାନୀ ସ୍ଥାପନପୂର୍ବକ ସେମାନେ ପରମ ସୁଖରେ ବାସ କରୁଛନ୍ତି । ବର୍ତ୍ତମାନ ରାଜା ବାଦଲ ସିଂହ ଏବଂ ରାଣୀ ଲଛମାବାଈ ନାମ ବଙ୍ଗଦେଶରେ ସର୍ବତ୍ର ପରିଚିତ । ବେଗମ ସାହେବଙ୍କ ଅନୁରୋଧ ତଥା ନବାବ ସାହେବଙ୍କ ଅନୁଗ୍ରହରେ ରାଣୀ ଲଛମାବାଈ ରାଇବଣିଆ ଦୁର୍ଗର ଅଧିକାର ପୁରସ୍କାର ସ୍ୱରୂପ ପ୍ରାପ୍ତ ହୋଇଅଛନ୍ତି । ଶ୍ୟାମାବାଈ ଏବଂ ରୁକ୍ମାବାଈ ଶେଷ ଜୀବନରେ ପରଂବ୍ରହ୍ମଙ୍କ ଶ୍ରୀଚରଣ ଧ୍ୟାନପୂର୍ବକ ପରମ ଶାନ୍ତିରେ ପରଲୋକକୁ ଗମନ କରିଅଛନ୍ତି । ଧାର୍ମିକା ସତୀ ସ୍ତ୍ରୀମାନଙ୍କ ସନ୍ତାନ ସନ୍ତତି ପୃଥିବୀରେ ଯଶ ସୁଖ ସୌଭାଗ୍ୟ ଭୋଗ କରନ୍ତି । ଧର୍ମନିଷ୍ଠା, ପ୍ରଜାବାତ୍ସଲ୍ୟ, ପରୋପକାରିତା, ଦାନଶୀଳତା ପ୍ରଭୃତି ସଦ୍‌ଗୁଣରେ ମଣ୍ଡିତ ହୋଇ ରାଜା ଏବଂ ରାଣୀ ବହୁ ବର୍ଷ ଯାବତ୍ ପରମ ସୁଖରେ ରାଜତ୍ୱ ଭୋଗ କରିଥିଲେ । ବର୍ତ୍ତମାନ ସେହି ରାଜବଂଶ ଏବଂ ରାଇବଣିଆ ଦୁର୍ଗ କାହିଁ ?

'ଯଦୂପତେଃ କ୍ୱଗତା ମଥୁରାପୁରୀ
ରଘୂପତେଃ କ୍ୱ ଗତୋତ୍ତର କୋଶଳଃ ।
ଇତି ବିଚିନ୍ତ୍ୟ କୁରୁଷ୍ୱ ମନସ୍ଥିରଂ
ନସଦିଦଂ ଜଗଦିତ୍ୟବଧାରୟ ।'

"ସର୍ବେ ଚଳିବେ କାଳବଳେ,
କଥା ରହିବ ମହୀତଳେ ।"

———

## କୃତଜ୍ଞତା ସ୍ୱୀକାର

ପୀଡ଼ିତାବସ୍ଥାରେ ପୁସ୍ତକଖଣ୍ଡିକ କୌଣସି ରୂପେ ଲେଖି ପକାଇଲି—ମାତ୍ର ଥରେ ଫେର ପଢ଼ିବାକୁ ବଳ ଅଣ୍ଟିଲା ନାହିଁ । ମୋହର ଯୁବକ ବନ୍ଧୁ ବାଲେଶ୍ୱର ଟ୍ରେନିଂ ସ୍କୁଲର ହେଡ୍‌ମାଷ୍ଟର ପଣ୍ଡିତ ଶ୍ରୀ କୁଳମଣି କାବ୍ୟତୀର୍ଥ ମହାଶୟ ଅନୁଗ୍ରହ ପୂର୍ବକ ଆମୂଳାନ୍ତ ପାଠ କରି ଭ୍ରମାତ୍ମକ ଶବ୍ଦ ଏବଂ ଅକ୍ଷରଗୁଡ଼ିକ ଲେଖି ଦେଇଅଛନ୍ତି । ତାହାଙ୍କର ଏହି ମହୋପକାର ଚିରକାଳ ସ୍ମରଣ କରିବି ।

| | | |
|---|---|---|
| ମଲ୍ଲିକାଶପୁର, ବାଲେଶ୍ୱର, ୧୯୧୫ | } | ଗ୍ରନ୍ଥକାର |

# ପ୍ରାୟଶ୍ଚିତ୍ତ

-୧-

## ସୂଚନା

ପୋଲିସ୍ ଥାନା, ମଫସଲ ନିମ୍ନଅଦାଲତ, ଅପୀଲ ଜଜ ଅଦାଲତ, ସର୍ବୋପରି ହାଇକୋର୍ଟ ଯାଏ, ତା' ପଛକୁ ତା' ପଛ ଧାଡ଼ିବନ୍ଧା ମାମଲା ଚାଲିଛି । ଦୁଇ ପକ୍ଷରେ କୋଡ଼ି କୋଡ଼ି ସଂଖ୍ୟା ଓକିଲ, ମୁକ୍ତାର, ବାରିଷ୍ଟର ଭିଡ଼ ଲାଗିଛନ୍ତି । ଉଭୟ ପକ୍ଷ କାରପରଦାଜମାନଙ୍କର ରାତି ବୋଲି, ଦିନ ବୋଲି ଅବସର ନାହିଁ । ଟଙ୍କା ବୁଜୁଳା କାଖରେ ଯାକି ଭୋର ମନପୁଲଣାରେ ଅମଲା ଆଉ ଓକିଲ ମୁକ୍ତାରଙ୍କ ଦ୍ୱାର ଦ୍ୱାର ବୁଲୁଛନ୍ତି । ଏଣେ ମଫସଲରେ ମାରଧର ଦଙ୍ଗାଫିସାଦ ତ ଚାଲିଛି । ଦୁଇପକ୍ଷ ଠେଙ୍ଗୁଆ, କଉଡ଼ିଆ, ଦୁହେଁଯାକ ସମାନ ଆଣି, କଟିଯିବେ—ହଟିବାର ନୁହନ୍ତି । ଦୁହିଙ୍କ ଜମିଦାରୀ ସୀମା ଲଗାଲଗି । କଳି ଖୋଜିବାକୁ ଦୂରକୁ ଯିବାର ଲୋଡ଼ା ନାହିଁ ।

ମାମଲା ସବୁର ମୂଳ ହେତୁ ଫେଇ ନ ଦେଲେ ପାଠକମାନେ ବୁଝିବାପାଇଁ ଯେ ଛନ୍ଦ ହେବେ, ଏଟା ନିଶ୍ଚୟ କଥା । କଟକ ଜିଲ୍ଲାରେ ଅସୁରେଶ୍ୱରଟା କରଣବଡ଼ିଆ ପ୍ରଗଣା । ବିଶେଷତଃ ତାଲୁକେ ଦଶଗ୍ରାମରେ ଯାବନ୍ତ ଶ୍ରୀକରଣଙ୍କ ନିବାସ । ପୁଣି ଚନ୍ଦନପୁର ଗ୍ରାମଟା ନିରେଳ କରଣବସ୍ତି । ଏହି ଗ୍ରାମରେ ଜମିଦାରଙ୍କ ଉଆସ । ବର୍ତ୍ତମାନ ଜମିଦାର ବୈଷ୍ଣବଚରଣ ପଟ୍ଟନାୟକ ବିଦ୍ୟାଧର ମହାପାତ୍ରଙ୍କ ସ୍ୱର୍ଗଗତ ପିତା ବିଶାଳାକ୍ଷ ପଟ୍ଟନାୟକ ବିଦ୍ୟାଧର ମହାପାତ୍ରଙ୍କ ସମୟରେ ଶ୍ରୀକରଣ ଶ୍ରେଣୀ ଭିତର ଭାରି ଗୋଟାଏ ଗୋଳମାଳ ଉଠିଥିଲା । ସେହି ସମୟରେ ଗଣାଗଣିରେ ତାଲୁକେ ଦଶଗ୍ରାମରେ ଶ୍ରୀକରଣ ଥିଲେ ସାଢ଼େ ବାଉତି ଘର, ବର୍ତ୍ତମାନକୁ ପୁଅ ନାତି ମିଶାଇ ଗଣି ବସିଲେ ଶ'କଡ଼ା ଘରରୁ ବଳି ପଡ଼ିବ । ଏହିମାନେ ଏକ ଅଉଲ କସମ ଶ୍ରୀକରଣ ଅଢ଼େଇ ଘର ମଧ୍ୟରୁ ଦେଢ଼ ଘରର ବଂଶଧର । ଓଡ଼ିଶି କରଣମାନେ ହେଲେ କସମ୍ ହଯୁମ୍ ଶ୍ରୀକରଣ । ଶ୍ରୀକରଣ ସାମନ୍ତମାନଙ୍କ ମତରେ ଆଉଗୁଡ଼ାକ ନାମ ମହାନ୍ତି, ଗାଁ ମହାନ୍ତି, ମହାନ୍ତି ତାଖରେ ଥାଇ ମହାନ୍ତି ।

ତାଲୁକେ ସମସରପୁର ମଧ୍ୟ ଭାରି କରଣବଡ଼ିଆ ଜାଗା । ଏମାନେ ବି ନିଜକୁ ଶ୍ରୀକରଣ ବୋଲନ୍ତି । ଏମାନଙ୍କ ମତରେ ମୂଳ ଅଢ଼େଇ ଘର ଶ୍ରୀକରଣ ବଂଶଧରମାନେ ଯେପରି ଉତ୍କଳର ସର୍ବତ୍ର ବୃଣୀ ଚଢ଼ିଛନ୍ତି, ଏମାନେ ବି ସେହି ମୂଳ ଘରର ଶାଖା ପ୍ରଶାଖା । ହେଲେ ଦଶଗ୍ରାମୀ ଶ୍ରୀକରଣମାନେ ସାମନ୍ତ ଗଣାଗଣି ବେଳେ ଏମାନଙ୍କ ନାମରେ ଲେଖନୀ ବୁନ୍ଦା ବସାନ୍ତି ନାହିଁ ।

ଏମାନଙ୍କ ମତରେ ଏଗୁଡ଼ାକ କୃଷ୍ଣପକ୍ଷିଆ ମହାନ୍ତି । ଢେର ବର୍ଷ ତଳେ ସମସରପୁରିଆ ମହାନ୍ତିମାନେ ଟଙ୍କା ଖାଇ ଗୋଟାଏ ଗୋଲାମ ମହାନ୍ତିଙ୍କୁ ପଗ ଆପଣା ପନ୍ତୀକୁ ଟେକି ନେଇଥିଲେ, ଏଥିକୁ ଏମାନଙ୍କର ନାମ ଡାକ ରହି ଯାଇଛି--ଗୋଲାମ ମହାନ୍ତି । ପୋଖରୀଆଡ଼ରେ କେବେ ଗୋଟାଏ ପଗ ତାଳ ଗଛ ଥିଲା, ନାମ ହୋଇଥିଲା ତାଳପୋଖରୀ । ତାଳଗଛର ମୂଳ ଚେରର ନାଁ ନିଶାଣ ବି ନାହିଁ, ହେଲେ ଡାକ ନାମ ରହି ଯାଇଛି ତାଳପୋଖରୀ ।

ସାମନ୍ତ ବୈଷ୍ଣବଚରଣ ପଟ୍ଟନାୟକ ବିଦ୍ୟାଧର ମହାପାତ୍ର ଜିଲ୍ଲା ମଧ୍ୟରେ ଜଣେ ନାମଡାକ ଜମିଦାର । ଅସୁରେଶ୍ୱର ପ୍ରଗଣାର ବାରପଣି ଭଳି ମୌଜା କସମତ୍ ତୌଜିପଣି ଏହାଙ୍କର ଖାସ ଜମିଦାରୀ ଥିଲା । ସାମନ୍ତଙ୍କର ସ୍ୱର୍ଗଗତ ପିତା ଡାକପୂଜାର ଶ୍ରୀକରଣଗୋଷ୍ଠୀର ସମାଜପତି ହେବା ସକାଶେ ଜମିଦାରୀରୁ ଅନୁମାନ ଦୁଇପଣି ଭଳି ଭୂମି କରଣ ସାମନ୍ତମାନଙ୍କୁ ମହତ୍ତ୍ରାଣ କରାଇ ଦେଇ ଯାଇଛନ୍ତି । ସେହି ଦିନାବଧି ଆଜଯାଏ କରଣ ସାମନ୍ତମାନେ ପୁତ୍ରପୌତ୍ରାଦି କ୍ରମେ ଯାବ-ଚନ୍ଦ୍ରାର୍କେ ଜମିଦାରଦତ୍ତ ମହତ୍ତ୍ରାଣ ଭୋଗ ଦଖଲ କରି ଆସୁଅଛନ୍ତି ଏବଂ କରିବେ, ଏହା ସଦର ଅଦାଲତରେ ଫଏସଲ୍ ରୋବକାରୀ ହୋଇଯାଇଛି ।

ସମସରପୁର କରଣ ଗୋଷ୍ଠୀର ପ୍ରଧାନ ଏବଂ ଜମିଦାର ସଙ୍କର୍ଷଣ ମହାନ୍ତି ଜଣେ ଭାରି ଜାହାଁବାଜ, ବୁଦ୍ଧିଆ, କାମ ପାରିଲା ଲୋକ । ଏହାଙ୍କ ଖାନଦାନରେ ସେପରି କିଛି ବିତ୍ତପୁ ଆଶପୁ ନ ଥିଲା । ନିଜେ ଦେଶ ଦେଶାନ୍ତରରେ ବୁଲି ଏବଂ କଲିକତାରେ ଢେର ଢେର ସାହେବଙ୍କୁ ପଟାପଟି କରି ଠିକା ଆଉ ବଲାଣ୍ଟି ଜାହାଜର ଲୋଡ଼ିଂ, ଅନ୍‌ଲୋଡ଼ିଂ ପାଇଁ ଯୋଗେ ଆଙ୍କା ଦଶଟଙ୍କା ଉଆଉଟି ହାତଟେଠ କରିଛନ୍ତି, ତାଙ୍କ ନିଜ ଖରିଦା ଜମିଦାରୀର ମଫସଲ ତହସିଲ ଦୁଇ ଲକ୍ଷରୁ ବଳିଯିବ ବୋଲି ଲୋକାଏତରେ ଶୁଣାଯାଏ । ଏହା ଛଡ଼ା ନଗଦାତ ଏବଂ ଧାନ ମହାଜନୀ ଅକଳନ୍ତା । ଲୋକେ ବୋଲାବୋଲି କରନ୍ତି, ଏହାଙ୍କର ଉଖୁ ଯେତେ, ପୋତା ତେତେ । ବୋଇଲା—ଯହିଁ ଧନ, ତହିଁ ଜନ । ପ୍ରକାଶ୍ୟରେ ସମାଜପତି ନ ହେଲେ ମଧ୍ୟ ସମସ୍ତ କରଣ ସାନ୍ତ ତାଙ୍କ ହାତତଳେ ବନ୍ଧା ଥାନ୍ତି । ଜମିଦାରଙ୍କର ବି ଜାତିଭାଇମାନଙ୍କ ଉପକାର ସକାଶେ ଫିଟା ହାତ । ଦାତାପଣିଆରେ ମଧ୍ୟ ଭାରି ଖ୍ୟାତି । ଯୋଉଁ ଲୋକ ହେଉ ପଛେ, ବିପଦ ଆପଦରେ ପଡ଼ି ତାଙ୍କୁ ଧରି ପକାଇଲେ ତା ପାଇଁ ସର୍ବସ୍ୱ ଦେବାକୁ ପଛଦୁଞ୍ଚା ନୁହନ୍ତି । ଦେଶଟା ଯାକରେ ତାଙ୍କର ଭାରି ନାମଡାକ୍ ।

ସାମନ୍ତ ସଙ୍କର୍ଷଣ ମହାନ୍ତିଙ୍କ ସୁଖ୍ୟାତି ବିଷୟ ଶୁଣିଲେ ଆମ୍ଭମାନଙ୍କ ଦଣ୍ଡଗ୍ରାମୀ ଶ୍ରୀକରଣ ସମାଜପତିଙ୍କ ନାକପୁଡ଼ା ଯୋଡ଼ାକ ଟସମନ୍ତ ଫୁଲି ଉଠେ । ଅନ୍ୟ ଜଣକର ଖ୍ୟାତି ରଟନା ହେଉ ତାହାଙ୍କ ଧନରେ, ମାନ ମର୍ଯ୍ୟାଦାରେ କିଛିମାତ୍ର ଦାଗ ନ ଲାଗିଲେ ମଧ୍ୟ କୃଷ୍ଣପକ୍ଷିଆ ମହାନ୍ତିଟାର ଏଡ଼େ ଖ୍ୟାତି, ଏତେ ବୋଲବାଲ ସହିବା କଥା ନୁହେ । ସାମନ୍ତ ବୈଷ୍ଣବ-ଚରଣ ଜଣେ ଧାର୍ମିକ ପରୋପକାରୀ ଈଶ୍ୱରଭକ୍ତ; ତାଙ୍କ ପକ୍ଷରେ ଏପରି ପରବିତ୍ତାନ୍ତରେ ଅସହଣି ହେବା ସୁନ୍ଦର ଦିଶେ ନାହିଁ । କଥା କଣ ଜାଣନ୍ତି, ମନୁଷ୍ୟ ଶରକାଳ ମନୁଷ୍ୟ, ଯେତେ ନିର୍ମଳହୃଦୟ ହେଉ ପଛକେ ଖୋଜି ବସିଲେ ଗୋଟାଏ କୋଣରେ ଦୋଷ କାଳମାଟାଏ ନିଶ୍ଚେ ଲାଗି ରହିଥିବ । ଆଉ ସମାଜପତି ସାମନ୍ତଙ୍କ ମନରେ ପ୍ରଚ୍ଛନ୍ନ ଭାବରେ ଗୋଟାଏ ଗର୍ବ ଥିଲା, ସେ ହେଲେ କରଣକୁଳର ମଉଡ଼ମଣି; ଯେତେ ପ୍ରଶଂସା, ନାମଖ୍ୟାତି ତାଙ୍କର ପାଇଁ । ଆଉ ଜମିଦାର ହେଉ, ବଡ଼ଲୋକ—ହୋଡ଼ପତି ହେଉ ପଛକେ, ଯେତେ ହେଲେ କୃଷ୍ଣପକ୍ଷିଆ ମହାନ୍ତିଟାଏ ତ, ଦେଶଯାକ ଲୋକ ତାହାର ସୁଖ୍ୟାତି ଗାଇ ବୁଲିବେ, ନିଶ୍ଚୟ ଏଟା ସହିବାର କଥା ନୁହେ ।

ସାମନ୍ତ ସଙ୍କର୍ଷଣ ମହାନ୍ତଙ୍କର ସବୁ ବିଷୟ ପୂର୍ଣ୍ଣ, କେବଳ ଗୋଟାଏ କଥା ଅଭାବଯୋଗୁଁ ତାଙ୍କ ମନରେ ସୁଖ ନ ଥାଏ । ନିତାନ୍ତ ଇଚ୍ଛା, କୌଣସି ରୂପେ ହେଉ ଶ୍ରୀକରଣଗୋଷ୍ଠୀରେ ମିଶିବେ । ଟଙ୍କା ଗୁଡ଼ାଏ ଦେଲେ କଣ ନ ମିଳିପାରେ ? ଏଣେ ସାମନ୍ତ ବାବୁ ମଧ୍ୟ ଖୁବ୍ ଫିକରବନ୍ଦ ଲୋକ । ଏଥି ମଧ୍ୟରେ ଭିତରେ ଭିତରେ ଢେରଗୁଡ଼ାଏ ଶ୍ରୀକରଣଙ୍କୁ ହାତ କରି ନେଲେଣି, ଆହୁରି ଥୋକେ ଆସିବାର କଥା ଚାଲିଛି । ଲୋକଟା ବୁଦ୍ଧିଆ କି ନା । ହେଲେ ଏଥିରେ ତାଙ୍କର ମନ ମାନୁ ନାହିଁ । ଭଲରୂପେ ବୁଝିଛନ୍ତି; ଯେପରି ସେପରି ପ୍ରସଙ୍ଗ ଚଳିବା ଜାଗାରେ ଆଜି ଯେଉଁମାନେ ପାଟଜଥା ପିନ୍ଧି ଟଙ୍କାବୁଜୁଳି ବାନ୍ଧି ଆମ ଖନ୍ଦାରେ ଖାଇଗଲେ, ସେମାନେ ସହଜରେ ମୁହଁ ପୋଛିଦେଇ ବସିଯିବେ । ସମାଜପତି ବୈଷ୍ଣବଚରଣ ପଟ୍ଟନାୟକ ବିଦ୍ୟାଧର ମହାପାତ୍ର ବୋଲକୁ ନ ଆସିବାଯାଏ ଏହି ଭିତରିଆ କଥାଗୁଡ଼ାକ ଲେଖାରେ ନୁହେ । ଶ୍ରୀକରଣ ସାନ୍ତଙ୍କ ମଧ୍ୟରେ ମୁଖ୍ୟା ମୁଖ୍ୟା ଜମିଦାର ବାବୁଙ୍କ ପାଖପଣା ଲୋକ, ଯେଉଁମାନଙ୍କ କଥା କାଟି କରିପାରେ, ଏପରି କେତେଜଣଙ୍କୁ ହାତ କଲେ ।

ଦିନେ ଉପରଓଳି ଜମିଦାର ସାମନ୍ତ ବୈଷ୍ଣବ-ଚରଣ ପଟ୍ଟନାୟକ ବିଦ୍ୟାଧର ମହାପାତ୍ରେ ଥୋକେ କରଣ ସାଆନ୍ତଙ୍କୁ ଧରି ଆପଣା କଚେରି ମେଲରେ ବସିଛନ୍ତି, ଖୁସବାସ କଥା ଚାଲିଛି, କରଣ ସାମନ୍ତ-ମାନଙ୍କୁ ଛାଡ଼ି ବାହାର ଲୋକ କେହି ନାହାନ୍ତି । ବେଳ ଉଣ୍ଡି କଥା ପ୍ରସଙ୍ଗରେ ମୁରବିଭଳିଆ ଜଣେ ଲୋକ କହି ବସିଲେ, "ଏହି ଯେ ସଙ୍କର୍ଷଣ ମହାନ୍ତି ଏ କରଣ ତ, ତାଙ୍କ ସହିତ ଚଳାଚଳରେ ବାଧା କ'ଣ ଅଛି ?" କଥାଟା ଶୁଣି ଜମିଦାର ସାନ୍ତେ ତ ମନ ମଧ୍ୟରେ ଭାରି ଖପାଟାଏ ହୋଇ ସାରିଲେଣି । ହେଲେ ମୁରକି ମୁରକି ହସି ହସି କହିଲେ, "ହଇ ହେ ପଟ୍ଟନାୟକ ଭାଇସାନ୍ତେ ! ତୁମେ ତ ହେଲ ମୁରବିପଣିଆ ବୟୋବୃଦ୍ଧ ଲୋକ, ତୁମ ମୁହଁରୁ ଏ କଥାଟା ମାନିଲା ତ ? ଗୋଲାମ ମହାନ୍ତି ଦୁଆରେ ଶ୍ରୀକରଣ ସାମନ୍ତମାନେ ଚକା ମାଡ଼ି ବସି ଡାଲି ଭାତ ହାପୁରିବେ ପରା ? ଯେତିକି ହେଲା ସେତିକିରେ ଥାଉ ।"

ସାମନ୍ତ ସଙ୍କର୍ଷଣ ମହାନ୍ତଙ୍କ ଗୁଡ଼ ଲାଗିଛି, କଥାଟା ଚଞ୍ଚଳ ଠିକ୍ କରି ତାଙ୍କ କାନରେ ବାଜିଗଲା । ପୃଥିବୀରେ ଦୁର୍ଗୁଣ ଛଡ଼ା ଲୋକ ନାହିଁ । ମହାନ୍ତି ସାଆନ୍ତେ ସବୁ ସଦ୍‌ଗୁଣରେ ଭୂଷିତଭଳିଆ ଲୋକ ଥିଲେ ମଧ୍ୟ ଗୋଟାଏ ବଡ଼ ଦୁର୍ଗୁଣ ଥିଲା, ଲୋକଟା ଭାରି ବଦରାଗୀ । ଥରେ ଯଦି କାହାରି ଉପରେ ଖପା ହୋଇଯାଇଛନ୍ତି, ତାହା କାନ୍ଧୁଡ଼ାରେ ବାଇଗଣ ବୋଇବାଯାଏଁ କଣ୍ଟ । କଥାଟା ଯିମିତି କାନରେ ପଡ଼ିଛି, ରାଗରେ ଭାରି ଗୋଟାଏ ଗର୍ଜନ କରି ପାଖ ଲୋକଙ୍କୁ ଅନାଇ କହିଲେ, "ଶୁଣନ୍ତୁ ସାନ୍ତ ସମସ୍ତେ । ମୋହର ଏହି ଯେଉଁ ବିଷୟ ଆଶୟ ସବୁ ଦେଖୁଛନ୍ତି, ବାପା ଦାଦା ଅମଳର ନୁହେ, ସବୁ ମୋ ବାହୁବଳରେ ଅର୍ଜିଲି ବନ୍ତି । ମୋ ତହବିଲରେ ଲକ୍ଷକରୁ ଉପରି ନଗଦ, ମହାଜନୀରେ ପାଞ୍ଚ ଲକ୍ଷ ଟଙ୍କା ଲାଗିଛି, ଏ ସବୁ ଟଙ୍କାରେ ତୁଳସୀ-ପତ୍ରଟାଏ ପକାଇ ଚଳୁ ଧରି ଦେଲି, ଧାନ ଅମାର ଆଉ ଜମିଦାରୀ ତା ପଛକୁ ରହିଲା ।

ତାଲୁକେ ଦଶଗ୍ରାମ, ତାଲୁକେ ସମସରପୁରର ଢେର ଢେର ମୌଜା ସୀମା ଲଗାଲଗି । ଭିଆଇ ବସିଲେ ମାଲମାମଲାର ଅଭାବ କଣ ? ଏଥି ମଧ୍ୟରେ ଦୁଇ ପକ୍ଷରୁ ଢେର ଢେର ଫୌଜଦାରୀ ଦେବାନୀ ପୋଲିସ ମାମଲା ଦାଏର ହୋଇଗଲାଣି । 'ରଜାର ରଜାର ଲଢ଼େଇ, ପ୍ରଜାଙ୍କୁ ଦିଅ ଗଡ଼େଇ ।' ଦୁଇ ପକ୍ଷରୁ ଢେର ଢେର ଗରିବ ପ୍ରଜା ତାନାତରାଜ ହୋଇ-ଗଲେଣି ।

---

-୭-

## ଇଂରାଜୀ ପଢ଼ା ଆରମ୍ଭ

ନାନା କାରଣରୁ ସାମନ୍ତ ବୈଷ୍ଣବଚରଣ ପଟ୍ଟନାୟକ ବିଦ୍ୟାଧର ମହାପାତ୍ରଙ୍କୁ ବେଳେ ବେଳେ କଟକ ଆସିବାକୁ ପଡ଼େ । ଗୋଟାଏ ହକଆଣ୍ଡ ମାମଲାରେ ଉକିଲ ସହିତ ପରାମର୍ଶ କରିବା ଲାଗି କଟକ ଆସିଛନ୍ତି । ସଙ୍ଗରେ ଅଛନ୍ତି କୁଅଁର ଗୋବିନ୍ଦଚନ୍ଦ୍ର । ଆଜି କାଲି ସାମନ୍ତ ଯହିଁ ଯାନ୍ତି, ପିଲାଟି ସଙ୍ଗେ ସଙ୍ଗେ । ସେହି ହେଲା ଗୋଟିଏ ବୋଲି ପୁଅ, ଏକ ଆଖି, ତାଙ୍କୁ ନ ଦେଖି କଣ ଦଣ୍ଡେ କାହିଁ ରହିପାରିବେ ? କୁଅଁର ଗୋବିନ୍ଦଚନ୍ଦ୍ର ଏକମାତ୍ର ବଂଶଧର, କୁଳର ଚନ୍ଦ୍ରମା, ହୃଦୟର ସର୍ବସ୍ୱ, ଶ୍ରୀକରଣକୁଳର ଦିଗ୍ଦୀପ୍ତି ବୃନ୍ଦ, ସେ ତ ଆତ୍ମାର ପ୍ରତିରୂପ । ସେ କଣ ଦୂରରେ ରହିବ ? କଟକର ଉକିଲ ଦୋପଟୀ ଆଉ ଆଉ ବାବୁମାନେ କହିଲେ, "ସାନ୍ତେ ? ଆପଣଙ୍କ ଏହି ପିଲାଟି ଦେଖିବାକୁ ବଡ଼ ସୁନ୍ଦର ? ବୁଦ୍ଧିମାନ ପରି ମଧ୍ୟ ଜଣାଯାଉଅଛି, ଏହାକୁ କଟକରେ ରଖି ଇଂରାଜୀ ପଢ଼ାନ୍ତୁ । ଜାଣିଲେ ସାନ୍ତେ ! ଆଜି କାଲି ଯିମିତିକା ଦିନ କାଳ ପଡ଼ିଲାଣି, ଇଂରାଜୀ ନ ଜାଣିଲେ, ତୁମେ ଯେତେ ଜମିଦାର ଧନବନ୍ତ ହୁଅ ପଛକେ, ଦେଶ ଭିତରେ ଦଶ ଜଣରେ ଜଣେ ଗଣାରେ ଆସିବ ନାହିଁ । ଆପଣ ଜଣେ ରଜାଭଳିଆ ଜମିଦାର, ସବୁଦିନେ ହାକମ-ହୁକୁମା ସାହେବସୁବାଙ୍କ ସଙ୍ଗରେ କାରବାର । ଆପଣ ହେଲେ ମରହଟି ଲୋକ । ସେତେ ଦିନ କାଠଖଣ୍ଡାରେ ମାଟି ଦେଇ ଗଲେ, ଏଣିକି ଜମିଦାରମାନେ ଇଂରାଜୀ ନ ଜାଣିଲେ ହାକମହୁକୁମାରେ ଛିଡ଼ା ହୋଇ ପାରିବେ ନାହିଁ; ଜାଣନ୍ତୁ !"

ପିଲାଟିକୁ ଏକୁଟିଆ କଟକରେ ଛାଡ଼ି ଯିବାକୁ ସାନ୍ତଙ୍କର କେତେବେଳେ ହେଲେ ମନ ବଳୁ ନାହିଁ, ଏଣେ ବାବୁମାନଙ୍କ କଥା ମଧ୍ୟ ଏଡ଼ିବାର ନୁହେ । ମନରେ ବିଚାର କଲେ, ସତ ଏକା, ଆଜକାଲି ଇଂରାଜୀ ନ ଜାଣିଲେ କିଛି ନୁହେ । ସେଇଟା ହେଲା ହାକମଘର ପାଠ, ହାକମଙ୍କୁ କିଛି ଜଣାଇବାକୁ ହେଲେ ତାଙ୍କର କଥାରେ ବୁଝାଇବାକୁ ହେବ, ତୁମ ଆମ କଥା ସେମାନେ ବୁଝିବେ କାହିଁ ? ଏଥିଲାଗି ତ ଓଡ଼ିଶା ମକ୍ତାରମାନେ ଥଳ ଥଳ ଟଙ୍କା ବାନ୍ଧି ନେଉଛନ୍ତି, ନୋହିଲେ ଆଉ କଣ ?

ସେକ୍‌ବଜାରରେ ଜମିଦାରଙ୍କର ଗୋଟାଏ ବଡ଼ କୋଠାଘରେ ଥିଲା, ଗୋବିନ୍ଦଚନ୍ଦ୍ର ଆଉ ସଦାନନ୍ଦ ପିଲାଯୋଡ଼ାକ ସେହି ଘରେ ରହିଲେ । କାମପାଇଁଟି ପାଇଁ ସାଙ୍ଗରେ ରହିଲେ ସଇତା ବାରିକପିଲା, ଆଉ ଜଣେ ଭଣ୍ଡାରୀ, ଜଣେ ଗଉଡ଼, ଆଉ ଜଣେ ରୋଷେୟା ସୁଆର ବ୍ରାହ୍ମଣ । ପିଲାଯୋଡ଼ାକ ବିଦେଶରେ ଏକୁଟିଆ କିପରି ରହିବେ ? ସେମାନଙ୍କ ଦେଖାପା ତନଖିବା ପାଇଁ ଉଆସରୁ ବୁଢ଼ା କରଣ ଶ୍ରୀଧର ଦାସେ ଆସି ଜଗୁଆଳପରି ରହିଲେ ।

---

-୮-

## ଗୋବିନ୍ଦଚନ୍ଦ୍ର ଓ ସଦାନନ୍ଦ

ସାନ୍ତଙ୍କ କୁଳଦେବତାଙ୍କ ନାମ ଗୋବିନ୍ଦଚନ୍ଦ୍ର । ସାନ୍ତାଣୀ ଡେର ଡେର ବାରବ୍ରତ କରି କୁଳଦେବତାଙ୍କ ପାଖରେ ଧାରଣା ପଡ଼ି ରହି ପୁତ୍ର ରତ୍ନଟି ବର ପାଇଛନ୍ତି । ସେହି ଦେବତାଙ୍କ ନାମରେ ପୁତ୍ରଟିର ନାମ ଥୋଇଛନ୍ତି ଗୋବିନ୍ଦଚନ୍ଦ୍ର । ଆଉ ମଧ୍ୟ ଜମିଦାର ସାନ୍ତେ, ଦିବାରାତ୍ରି ପ୍ରଭୁ ଗୋବିନ୍ଦଚନ୍ଦ୍ର—ପ୍ରଭୁ ଗୋବିନ୍ଦଚନ୍ଦ୍ର ଭଜନ କରୁଥାନ୍ତି । ପୁତ୍ରକୁ ଡାକିଲେ ଦେବତାଙ୍କ ନାମ ମନେ ପଡ଼ିବ, ଏଥିପାଇଁ ମଧ୍ୟ ପୁତ୍ରର ନାମ ଥୋଇଛନ୍ତି ଗୋବିନ୍ଦଚନ୍ଦ୍ର ।

ପିଲାଟି ଦେଖିବାକୁ ଯେମନ୍ତ ଗୋଟିଏ କାଠିରେ ଗଢ଼ା ସୁନ୍ଦର—ରାଜପୁତ୍ର ବୋଲି କିଏ ନ ବୋଲିବ ? ବୁଦ୍ଧିରେ ମଧ୍ୟ ସେହିପରି ତେଜ । ଉଆସରେ ପ୍ରଜା ପାଠକ ମଧ୍ୟରେ ଡାକ ନାମ କୁଅଁର ବାବୁ ।

ସାନ୍ତାଣୀଙ୍କ ବାପ ଘର ଗୋପାଳପୁର ଗ୍ରାମରେ । ଯୋଡ଼ିଏ ମାତ୍ର ଶ୍ରୀକରଣ ଘର । ଘର ଯେ ଢ଼ିକ ଏକା ଉହିରେ । ସାନ୍ତାଣୀ ଶ୍ରୀ ହରିପ୍ରିୟାଙ୍କର ଯେତେବେଳେ ଛ ବର୍ଷ ବୟସ, ପଡ଼ୋଶ କରଣ ଘର ପିଲା ଦୁଃଶାସନର ସେ ସମୟକୁ ବୟସ ଚାରି । ସାନ୍ତାଣୀଙ୍କ ଦଶ ବର୍ଷ ବୟସଯାଏ ଏହି ପିଲାଯୋଡ଼ିକ ଏକା ମା ପେଟ ଭାଇ ଭଉଣୀ ପରି ଏକ ଅବଧାନ ପାଖରେ ପଢ଼ାପଢ଼ି, ଏକା ସାଙ୍ଗରେ ଖେଳାଖେଳି ବୁଲାବୁଲି କରୁଥିଲେ । ଆଉ ଦୁଇଙ୍କ ଘରେ କେହି ପିଲାପିଲି ନ ଥିବାରୁ ଏହି ପିଲାଯୋଡ଼ିକ ସବୁବେଳେ ସାଙ୍ଗସୁଙ୍ଗା ହୋଇ ବୁଲାବୁଲି କରୁଥାନ୍ତି । ଶ୍ରୀହରିପ୍ରିୟା ଦଶ ବର୍ଷ ବୟସ ବାଦେ ଆଉ ଘର ମଧ୍ୟରୁ ବାହାରନ୍ତି ନାହିଁ । ଏଥିକୁ ଦୁଇ ପିଲା ସାଙ୍ଗ ଛଡ଼ାଛଡ଼ି ହୋଇ ଯାଇଥିଲେ । ଶ୍ରୀହରିପ୍ରିୟାଙ୍କ ମଙ୍ଗଳକୃତ୍ୟ ବଢ଼ିଲା ବାଦେ ଶ୍ୱଶୁରାଳୟକୁ ଯାତ୍ରା ସମୟରେ ଦୁଃଶାସନ ହାତ ଯୋଡ଼ି ଜଣାଇଲା, "ଅପା, ତୁମେ ତ ରାଣୀ ହୋଇ ବାହାରିଲ, ମୋର ଆଉ ଭରସା କିଏ ।"

ସାନ୍ତାଣୀ ଶ୍ରୀହରିପ୍ରିୟା ଦେଈ ପାସୋରି ନାହାନ୍ତି, କେତେ ବର୍ଷ ବାଦେ କନ୍ୟାଟିଏ ଠିକଣା କରି ଦୁଃଶାସନକୁ ବିଭା କରାଇଦେଲେ । ତାହାର ଅବସ୍ଥା ସେପରି ନ ଥିଲା, ବିଭାଲାଗୁନ୍ତି, ସବୁ ସାନ୍ତାଣୀ ନିଜ ତହବିଲରୁ ଚଳାଇ ନେଲେ । ବିଭା ତ ହେଲା ହିଁ, ଏବେ ପେଟକୁ କି ପେଟ, ଚଳାଚଳ ପକ୍ଷରେ ସେପରି କିଛି ବାଟ ନାହିଁ, ଏ କଥା ସାନ୍ତାଣୀଙ୍କୁ ଭଲ ଜଣା । ସାନ୍ତଙ୍କୁ ଜଣାଇ ଆପଣା ତେଲହଳଦୀ ମୌଜା ଗୋବିନ୍ଦପୁରରେ ମକଦ୍ଦମ କରାଇ ଦେଲେ । ବଢ଼ିଲା ପିଲା, ପୁଣି ଦେଖିବା ଶୁଣିବାକୁ କେହି ନାହିଁ, କରଣଘର ବହୂ, ତାକୁ ଘେନିଯାଇ ଆପଣା ଉଆସରେ ରଖାଇଲେ । ଉଆସରେ ତିନି ବୋଡ଼ି ସରିକି ଯୋଇଲା, ଆପଣା ଭାଉଜ ବୋଲି ସାନ୍ତାଣୀ ଚହ୍ଲାଇ ଦେବାରୁଂ ସମସ୍ତେ ବହୂ ପାଖରେ ଖଟୁଥାନ୍ତି, ଆଉ ସାନ ସାନ୍ତାଣୀ ବୋଲି ଡାକନ୍ତି । ଏଣେ ଦୁଃଶାସନ ତହସିଲ ମଉଜାରୁ ଅନେକ ଗୁଡ଼ିଏ ଟଙ୍କା ପେଟରେ ପକାଇ ଦେଲା, ତାହା ଯୋଗେ କାମ ବି ଭଲ ଚଳିଲା ନାହିଁ । ସାନ୍ତାଣୀଙ୍କ ଖାତିରରେ ସାନ୍ତେ ତାକୁ ଏକାବେଳକେ ବରଖାସ୍ତ ନ କରି ଦୁମଦୁମପୁର ମୌଜାର ମକଦମ ତଳେ କରଣ କାମରେ ରଖାଇ ଦେଲେ । ସ୍ୱ—ଭାବ କିଣ, ନା—ନିଜର ଭାବ ଛାଡ଼ିବା ମନୁଷ୍ୟ ପକ୍ଷରେ ସହଜ କଥା ନୁହେଁ । କବି ଗାଇଛନ୍ତି—'ନିମ୍ବ ମୂଳରେ ଦୁଧ ଶାକର ଢାଳ ପଛକେ ଆପଣା ପିତା ଗୁଣ ଛାଡ଼େ ନାହିଁ ।' ଦୁଃଶାସନ ଏଠାରେ ମଧ୍ୟ ତହବିଲ ଭାଙ୍ଗିଲାଣି; ପୁଣି ପ୍ରକାଶ ପାଇଲା, କେତେଗୁଡ଼ିଏ ପ୍ରଜାଙ୍କଠାରୁ ଟଙ୍କା ଅସୁଲ କରିନେଇ ପାଉତି ଦେଇ ନାହିଁ । ହେଲେ ଏ ସମସ୍ତ ଦୋଷ ସକାଶେ ଦଣ୍ଡଭୋଗ ପର୍ଯ୍ୟନ୍ତ ଗଲା ନାହିଁ । ଦିନେ ସକାଳେ କରଣ ଦୁଃଶାସନ ଦାସର ହଇଜା ରୋଗରେ ମୃତ୍ୟୁସମ୍ବାଦ ଦେଇ ମକଦ୍ଦମର ରିପୋର୍ଟ ଜମିଦାର ସାନ୍ତଙ୍କ ପାଖରେ ପହଞ୍ଚିଲା । ଦୁଃଶାସନର ମୃତ୍ୟୁ ସମୟରେ ତାହାର ଗୋଟିଏ ମାତ୍ର ପୁତ୍ରର ବୟସ ହୋଇଥିଲା ଚାରି ବର୍ଷ, ନାମ ସଦାନନ୍ଦ । ସାନ୍ତାଣୀ ଅତି ଦୟାରେ, ଅତି ସ୍ନେହରେ ପୁଅଟିକୁ କୋଳରେ ଟେକିନେଲେ । କୁଅଁର ଗୋବିନ୍ଦଚନ୍ଦ୍ର ତେତେବେଳକୁ ବର୍ଷକର ପିଲା । ସାନ୍ତାଣୀ କହିଲେ, "ମୋ ସଦେଇ ଆଗ ତ ଗୋବିନ୍ଦ ପଛ ।"

———

-୪-

## ଦଶ ବର୍ଷର କଥା

ପିଲାଯୋଡ଼ିକ କଟକରେ ରହି ଇଂରେଜୀ ପଢ଼ିବା ଉତ୍ତାରୁ ଅଧିକ ଦଶ ବର୍ଷ କାଳ ବିତି ଗଲାଣି । ଲେଖି

ରଖିବା ଭଳି ଏମନ୍ତ କିଛି କଥା ଏଥିମଧ୍ୟରେ ଘଟି ନାହିଁ । ପ୍ରଥମେ କଟକ ମିଶନ ସ୍କୁଲରେ ପଢ଼ୁଥିଲେ, ସେଠାରେ ମେଟ୍ରିକୁଲେଶନ ପାସ କରି ଆସି ବର୍ତ୍ତମାନ କଲେଜରେ ପଢ଼ୁଛନ୍ତି । ଜଗୁଆଳସ୍ୱରୂପ ବସାରେ ଉଆସର ବୁଢ଼ା କରଣ ଥିଲା, କଲେଜକୁ ଆସିବା ଦିନଠାରୁ ବଡ଼ବାବୁ ଅର୍ଥାତ୍ ସଦାନନ୍ଦ ବାବୁ ତାକୁ ବିଦା କରି ଦେଇ ବସା ଖରଚର ହିସାବ କିତାବ ଏବଂ ତହବିଲ ରଖିବାର ଭାର ଆପଣା ହାତରେ ରଖି ପିଉସୀ ସାନ୍ତାଙ୍କୁ ଚିଠିଲେଖି ପଠାଇଲେ, ବସାରେ ହିସାବ ପତ୍ର ରଖିବା ଅତି ସାମାନ୍ୟ କାର୍ଯ୍ୟ, ସେଥି-ସକାଶେ ଜଣେ କରଣ ରଖି ଖର୍ଚ୍ଚାନ୍ତ ହେବା ଦରକାର ନାହିଁ । ଜମିଦାର ସାନ୍ତ ଭାଷା ପାଇ ବଡ଼ ଖୁସି ହେଲେ, ପିଲାମାନେ ହୁସିଆର ହୋଇ ହିସାବ କିତାବ ବୁଝି ପାରିଲେଣି, ବଡ଼ ଆନନ୍ଦର କଥା । ବସାରେ ବଡ଼-ବାବୁଙ୍କର କଥା ଚଳେ, କୁଅଁରବାବୁ ଟଙ୍କା କଉଡ଼ି ହିସାବରେ ଲଗା ହେବାକୁ ଭଲ ପାନ୍ତି ନାହିଁ । ଉଆସରୁ ପ୍ରଥମ ଆସିବାବେଳେ ସାନ୍ତାଣୀ କହି ଦେଇଥିଲେ, "ଆରେ ବାପ ସଦେଇ, ବିଦେଶ ଭୂଇଁକୁ ଯାଉଛ, ସବୁବେଳେ ଦେହଟା'କୁ ଦେଖି ଚଳିବ, ବେଳମାଫିକେ ଖାଇବ, କାହାରି ସାଙ୍ଗରେ କଳି କଜିଆ ଲଗାଇବ ନାହିଁ । ଗୋବିନ୍ଦ ତୋ ସାନ ଭାଇ, ସେ କିଛି ଜାଣେ ନାହିଁ, ତାକୁ ଜଗିଥିବୁ ।" ସାନ୍ତାଣୀ ଜାଣନ୍ତି,ସଦାନନ୍ଦ ଖୁବ୍ ବୁଦ୍ଧିଆ, ସବୁକଥାରେ ତାହାର ନଜର ବୁଲେ । କୁଅଁର ଗୋବିନ୍ଦଚନ୍ଦ୍ର ପିଲାଟା ବଡ଼ ସରଳ; ଦୋଷ ବୋଲ, ଗୁଣ ବୋଲ,ତାହାର ଗୋଟିଏ ସ୍ୱଭାବ, ଯାହା ଥରେ ବୁଝିଯାଇଛି, ଯାହା ଇଚ୍ଛା ତାହା ହେଉ ପଛକେ ସେ କଥାଟା ଛାଡ଼ିବ ନାହିଁ । ଅଉ ସଦେଇ ଭାଇ ଉପରେ ତାହାର ଭାରି ବିଶ୍ୱାସ, ମଧ୍ୟ ବଡ଼ ଭାଇ କଥାରେ ଚଳିବା ପାଇଁ ମା ସାନ୍ତାଣୀ କହି ଦେଇଛନ୍ତି ।

କରଣକୁ ବିଦା କରିଦେବା ଦିନରୁ ବସାରେ ନାନା କଥାରେ ହରକତ । ଆଜି ବଜାରସଉଦାକୁ ପଇସା ନାହିଁ, ଲଗୁଆ ଦୋକାନୀର ଢେର ଟଙ୍କା ପାଉଣା, ବେଳମାଫିକେ ପଉଦା ଦେବାକୁ ଖିଟିର-ମିଟିର କରେ । ଦିନେ ଦିନେ ଚାକରମାନେ ଉପାସ ରହିଯା'ନ୍ତି । ଢେର ଟଙ୍କା ପାଉଣା ହେଲେ ମଧ୍ୟ ଦୋକାନମାନଙ୍କର ସେଥିକି ଶୋଚନା ନ ଥାଏ— ରଜା ପିଲାଯୋଡ଼ାକ ଟଙ୍କା ନ ଦେଇ କୁଆଡ଼େ ଯିବେ ? ଆଉ ଗୋଟାଏ କଥା, ଦରଦାମ ହିସାବ କିତାବ ଧରେଟ କରୁଛି କିଏ ? କମ୍ଭିର ଗୋଳିଆ ପାଣିଖୋଜେ, ଦୋକାନିଏ ଭାଉ ଉପରେ ଚଣକ ଜାଗାରେ ପାଞ୍ଚ ବୋଡ଼ି କଷି ଦେଇଥାନ୍ତି । ବଡ଼ ବାବୁ ହିସାବ ରଖିବାରେ ଯିମିତିକା ହେଉଁଳା, ଖର୍ଚ୍ଚ ବେଳକୁ ସେହିପରି ଫିଟାହାତ । ସାତ ଆଠ ଦିନକୁ ଦୁଇ ତିନିଥର ବସାରେ ବନ୍ଧୁ ବାନ୍ଧବଙ୍କର ଯୋଡ଼ାଏ ତିନିଟା ଭୋଜି ହୋଇଯାଏ, ଟଙ୍କା ପଇସା ଖରଚ ଖାତିର ଥାଏ ନାହିଁ । ଏଥି ସକାସେ ବସା ଖରଚବେଳକୁ ଟାଣଟୁଣ ପଡ଼ଯାଏ । ବଜାର ଦେଣା ତ ଅଛି, ତାକୁ ଛାଡ଼ି ହାତଚିଠା ଲେଖିଦେଇ କେତେ ଲୋକଙ୍କଠାରୁ ଟଙ୍କା ଧାର ଆଣିଲେଣି ବୋଲି ଶୁଣାଯାଏ । ବଡ଼ ସାନ୍ତଙ୍କର ଏହି ସମସ୍ତ କାରବାର ସଇତାକୁ ଭଲ ଲାଗୁ ନାହିଁ । ହେଲେ ଲୋକଟା ବୁଦ୍ଧିଆ, ସେ ଭଲ ବୁଝିଛି, ଖାଉନ୍ଦ ବେଭାରରେ ପାଟି ଫିଟାଇବାଁ ତା ପକ୍ଷରେ ବେଆଦବି । ଭଣ୍ଡାରି ବାପୁଡ଼ା ହେଲେ କଣ ହେଲା, ଲୋକଟା ଯେମନ୍ତ ବୁଦ୍ଧିଆ, ସେହିପରି ବିଶ୍ୱାସୀ ଅନ୍ନଦାତାଙ୍କୁ ଦେବତା ବୋଲି ମଣେ, ବେଳ ପଡ଼ିଲେ ମୁନିବ ସକାଶେ ଜୀବନ ଦେଇପାରେ । ସେ ଏକା କୁଅଁର ବାବୁଙ୍କୁ ତାହାର ମୁନିବ ବୋଲି ମଣେ । କୁଅଁର ବାବୁ ବି ତାକୁ ବଡ଼ ଭଲ ପାନ୍ତି, ଛୁପ୍ପା ପରି ଦିନ ରାତି ସବୁବେଳେ ସାନ୍ତଙ୍କ ପାଖରୁ ଟିକିଏ ବି ଆଉ ଅନ୍ତର ହୁଏ ନାହିଁ । ବଡ଼ ସାନ୍ତଙ୍କ ବେଭାର ତାକୁ ବଳେଇଲାଣି, ଆଉ ସମ୍ଭାଳି ହୋଇପାରିଲା ନାହିଁ । ଦେଖେଇ ଦେଖେଇ କୁଅଁରବାବୁଙ୍କୁ କେତେ ଥର କେତେ କଥା ଜଣାଇଲାଣି । ହେଲେ ସାନ୍ତ ସେ ସବୁ

କଥା ଶୁଣି ନ ଶୁଣିଲା ପରି ରହନ୍ତି । ଆଜି ବଳେଇ ଦି'ପଦ କଥା କହିବାକୁ ସଇତାର ଭରସା ଖଣ୍ଟୁ ନାହିଁ ।

———

-୬-

## ରାଜୀବ ଲୋଚନ

ସମ୍ବଲପୁର ତାଲୁକର ଜମିଦାର ସାମନ୍ତ ସଙ୍କର୍ଷଣ ମହାନ୍ତି ଆପେ ତେଡ଼େ ପାଠୁଆ ନ ଥିଲେ, ମାତ୍ର ପାଠର ମର୍ଯ୍ୟାଦା ବୁଝନ୍ତି । ସବୁ ଦିନେ ତାଙ୍କର କଥା, ଦଶଗ୍ରାମୀ ତାଲୁକର ଶ୍ରୀକରଣଗୋଷ୍ଠୀର ଏତେ ଟେକ, ଏତେ ବୋଲବାଲ କିଆଁ ? ଶ୍ରୀକରଣ ବୋଲି କଣ ସେମାନଙ୍କ ମୁଣ୍ଡରେ ଯୋଡ଼ାଏ ଶିଙ୍ଗ ବାହାରିଛି ? ମୂଳ କଥା ସେମାନେ ପାଠର ମର୍ଯ୍ୟାଦା ବୁଝନ୍ତି—ଊଣା ଅଧିକରେ ସମସ୍ତେ ପଢ଼ୁଆ, ତେର ସରକାରୀ ଚାକିରିଆ, ନ ଥିଲା ଲୋକ ସେମାନଙ୍କ ଭିତରେ ନାହିଁ ବୋଲି । ମର୍ଯ୍ୟାଦା ଜାଗାରେ ଜାତି ବିଚାର ଥାଏ ନାହିଁ । ବିଦ୍ୟା, ଧନ, କ୍ଷମତା ଯେଉଁଠାରେ ସେହିଠାରେ ମାନ ମହତ୍ତ୍ୱ, ପାଞ୍ଚ ଜଣରେ ସମ୍ମାନ, ସମାଜରେ ଟେକ ସେହିଠାରେ । ଆପଣା ଶ୍ରେଣୀ ମଧ୍ୟରେ ପିଲାମାନେ ଯେପରି ପଢ଼ୁଆ ହେବେ, ସେଥି ସକାଶେ ତାଙ୍କର ବିଶେଷ ଯତ୍ନ । ପଢ଼ାର ସମସ୍ତ ଖରଚ, ନ ଥିଲା ଲୋକ ଘର ପିଲାମାନଙ୍କୁ ଖାଇବାକୁ ପିନ୍ଧିବାକୁ ଦେଇ ମଧ୍ୟ ପାଠ ପଢ଼ାଉଛନ୍ତି । କରଣ ଗାଁମାନଙ୍କରେ କେତୋଟା ଚାଟଶାଳୀ ବସାଇ ଦେଲେଣି ।

ପୁରୁଣା କାଳିଆ ଲୋକ ହେଲେ କଣ ହେଲା, ସେ ବୁଝିଛନ୍ତି, ଝିଅମାନେ ପାଠ ପଢ଼ିଲେ ଘରଖରଚ ହିସାବ ଲେଖିବେ, ଭାଗବତ ପୁରାଣ ପଢ଼ି ଘରଭିତରେ ମାଇକିନିଆମାନଙ୍କୁ ଶୁଣାଇବେ । କୁଳଦେବତା କୁଞ୍ଜବିହାରୀ ମନ୍ଦିର ଅଗଣାରେ ଗୋଟିଏ ଝିଅଚାଟଶାଳୀ ବସିଛି । ପ୍ରଥମେ କରଣ ସାନ୍ତମାନେ ଆପଣା ଆପଣା ଝିଅମାନଙ୍କୁ ଦାଣ୍ଡ ଗୋହିରିରେ ଚଲାଇ ଚାଟଶାଳୀକୁ ପଠାଇବାକୁ ମଙ୍ଗୁ ନ ଥିଲେ । ସାନ୍ତଙ୍କ ଜେମା ଇନ୍ଦୁମତୀ ଚାଟଶାଳୀକୁ ଯିବାରୁ କାହାରି ଓଜର ଚଳିଲା ନାହିଁ । କଥା ହେଲା, ସାତ ବର୍ଷ ବୟସଯାଏ ଝିଅମାନେ ପଢ଼ିବେ, ବଡ଼ ଝିଅ କେହି ଯିବେ ନାହିଁ । ଓପର ଓଳିଟାରେ ପଢ଼ାପଢ଼ି ହୁଏ । ପାଇକ ଜଗୁଆ, ପଢ଼ାପଢ଼ି ବେଳେ ବାହାର ଲୋକ ମନ୍ଦିର ମଧ୍ୟକୁ ଯିବାର ବାରଣ । ଅବଧାନଙ୍କ ନାମ ଦେବବର ଓଝା, ଜାତିରେ ମାଟିବଂଶ, ବୟସ ଅଶୀକୁ ଲାଗେ ଲାଗେ । ଓଝାଏ ଭାରି ପାଠୁଆ ବୋଲି ଗୋଟା ତାଲୁକ ଦଶ କୋଶ ମଧ୍ୟରେ ହରି ନାମ ଡାକ । ସେ ଲୀଳାବତୀ ସୂତ୍ର ପଢ଼ିଛନ୍ତି, ଅଶ୍ୱତ୍ଥ ବରଗଛର ପତ୍ର ଗଣି କହିଦେବେ । ପାଠସୂତ୍ର ଧରି ଉଡ଼ନ୍ତା ଚଢ଼େଇର ପର ଗଣି ପାରନ୍ତି । ଏମନ୍ତ କିଏ ପାଠୁଆ ଅଛି ଯେ ବିଦ୍ୟା ବୁଝିବ ? ତାଙ୍କର ବିଦ୍ୟାର ପରୀକ୍ଷା ଏ ଯାଏଁ ହୋଇ ନାହିଁ । ଓଝାଏ କହନ୍ତି, 'ତାଙ୍କର ବେତ ବାଜିଥିବାରୁ ସାନ୍ତଙ୍କର ଏତେ ବଢ଼ନ୍ତି । କଟକ ଜିଲ୍ଲାର ଅଧାଅଧି ଅବଧାନ ତାଙ୍କର ଚାଟ ।' ବର୍ତ୍ତମାନ ଅବଧାନଙ୍କର ଦରମା ନଗଦ ମାସକୁ ଯୋଡ଼ାଏ ଟଙ୍କା, ସଖାଳ ଓଳିଟା ମନ୍ଦିରରେ ପ୍ରସାଦ ସେବା । ଏ ସବୁକୁ କିଏ ଲେଖାରେ ଆଣେ, ଏକା ଶ୍ରୀପଞ୍ଚମୀ ତ ଆଉ ।

ଅନେକଗୁଡ଼ିଏ କରଣ ପିଲା ସାନ୍ତଙ୍କ ଖରଚରେ ପଢ଼ନ୍ତି । ସେଥି ମଧ୍ୟରେ ରାଜୀବଲୋଚନ ସମସ୍ତଙ୍କ ଉପରେ । ରାଜୀବଲୋଚନ ସବୁ ବିଷୟରେ ଯେମନ୍ତ ବୁଦ୍ଧିଆ, ପାଠ ମଧ୍ୟ ସେହିପରି ହେଉ ରଖିପାରେ । ବର୍ତ୍ତମାନ କଟକ କଲେଜରେ ଦ୍ୱିତୀୟ ବର୍ଷୀୟ ଶ୍ରେଣୀରେ ପଢ଼େ । ରାଜୀବଲୋଚନର ପିତୃବଂଶ ସମ୍ବନ୍ଧରେ କୌଣସି ଜଣାଶୁଣା ଇତିହାସ ନାହିଁ ବିଧବା ମାତା ଅନେକ ଦିନ ହେଲା ଉଆସରେ ଅଛନ୍ତି । ରାଜୀବ-ଲୋଚନ ଏଣ୍ଟ୍ରେନ୍ସ ପାସ୍ କରିବା ଦିନଠାରୁ ବିଧବା

ମାତା ତାରା ଦେଈଙ୍କର ଉଆସ ମଧ୍ୟରେ କିଛି ମର୍ଯ୍ୟାଦା ବଢ଼ିଛି । ପୁଅମାନଙ୍କ ଯୋଗେ ବାପ ମା'ଙ୍କ ନିନ୍ଦା ପ୍ରଶଂସା ବଢ଼େ । ତାଙ୍କୁ ଏବେ କାମ ପାଇଟି କିଛି କରିବାକୁ ହୁଏ ନାହିଁ । କଟକ କଲେଜର ଛାତ୍ରମାନେ ଜାଣନ୍ତି; ରାଜୀବ ବାବୁ ଜମିଦାର ସାମନ୍ତ ସଙ୍କର୍ଷଣ ମହାନ୍ତିଙ୍କ ନିଜନ ଭଣଜା । ସାନ୍ତାଣୀ ଲଳିତା ଦେଈଙ୍କ ବିଯୋଗ ଦିନରୁ ଉଆସ ମଧ୍ୟରେ ତାରା ଦେଈଙ୍କ ଆଜ୍ଞା ପୋଇଲୀ ପରିବାରୀ ମଧ୍ୟରେ ଚଳେ । ସାନ୍ତଙ୍କ ହୁକୁମରେ ଏବେ ଉଆସ ପ୍ରସ୍ତର କଥା ବୁଝାବୁଝି କରୁଛନ୍ତି । କୌଣସି ପୋଇଲୀର ଚାଲଚଳନ ଦେଖି ତାରା ଦେଈ ଗାଳି ଫଜିତ କଲେ, ସେମାନେ ଭୁନ ଭୁନ ଫୁସୁରଫାସର ହୁଅନ୍ତି । 'ଓହୋ ! କାଲି ଆମ ସାଙ୍ଗରେ ଢେଙ୍କି ମାଡ଼ୁଥିଲେ, ସାନ୍ତାଣୀ ସ୍ୱର୍ଗକୁ ଗଲେ ନା ଆମକୁ କଥା ଶୁଣିବାକୁ ପଡ଼ିଲା ।'

---

-୭-

## ଇନ୍ଦୁମତୀ

ସାନ୍ତାଣୀ ଲଳିତା ଦେଈଙ୍କ ବିଯୋଗ ଦିନରୁ ଉଆସ ସହିତ ସାନ୍ତଙ୍କର ଚେତେ ଲଗାପଗା ନାହିଁ । ତାରାଦେଈ ଭିତର କଥା ସବୁ ବୁଝାବୁଝି କରନ୍ତି । ବାହାରକୁ କିଛି ଜିନିଷ ଲୋଡ଼ା ହେଲେ ଭିତରିଆ ପଡ଼ିଆରୀ ବୁଢ଼ା, ଗଉଡ଼ ମଦନା ମହାକୁଡ଼, ଉଆସ କରଣ ଛଟୀ ମହାନ୍ତିଙ୍କ ପାଖକୁ ବେଉରା ଯେନଯାଏ । ସେପରି କିଛି ଆଣ୍ଠ କଥା ପଡ଼ିଲେ ସାନ୍ତଙ୍କ କାନକୁ ଉଠେ । ଆଜିକାଲି ପାଞ୍ଚ ସାତ ଦିନ ବାଦେ ଶାନ୍ତେ ଦିନକୁ ଇନ୍ଦୁକୁ ଦେଖିବାଲାଗି ଉଆସକୁ ବିଜେ ହୁଅନ୍ତି । ମରୁଆ ଚଞ୍ଚଳ ଧାଇଁଯାଇ ଇନ୍ଦୁମତୀ ପହଡ଼ଘର ଆଗ ଗୁମୁଆ ମେଲାରେ ଖଣ୍ଡେ ଗାଲିଚା ପାରିଦିଏ । ସାନ୍ତ ଝିଅଟିକୁ ପାଖରେ ବସାଇ ତା ମୁଣ୍ଡରେ ହାତ ବୁଲାଇ ଢେର ଢେର କଲ୍ୟାଣ କରନ୍ତି, ମନବହଲା କଥା ଢେର ରକମ କହନ୍ତି, ଏପରି କଥାଗୁଡ଼ାଏ ଲଗେଇ ପଗେଇ କହନ୍ତି ଯେ, ସେଥିରୁ ଇନ୍ଦୁ ବୁଝେ, ଘରର ସବୁ ମାଲମତା ଆଉ ଯେତେ ଜମି ବାଡ଼ି ସମ୍ପତ୍ତି ଅଛି, ସବୁ ତାହାର । ଇନ୍ଦୁ ମନ ବହଲ ଯାଉ, ତା ମା କଥା ମନରେ ପକାଇ ନ କାନ୍ଦୁ, ସେଥିଲାଗି ଏହିପରି କଥା କହନ୍ତି । ହେଲେ ବାପା ସାନ୍ତଙ୍କ ମନଭୁଲାଣିଆ କଥା କହିବା ବେଳେ ଇନ୍ଦୁର ବଡ଼ ବଡ଼ ଆଖି ଯୋଡ଼ିକରେ ଲୋତକ ଛଳ ଛଳ ହେଉଥାଏ ।

ଇନ୍ଦୁ ପିଲାଦିନେ ବଡ଼ ଚଞ୍ଚଳିଆ ଥିଲେ, ହରିଣ ପିଲାପରି ସବୁବେଳେ ଧାଁ ଦଉଡ଼ ଖେଳରେ ଲାଗିଥାନ୍ତି । ମା ସାନ୍ତାଣୀଙ୍କ ବିଯୋଗ ଦିନରୁ ଆଉ ସେ ଇନ୍ଦୁମତୀ ନାହାନ୍ତି । ସ୍ୱଭାବଟା ଏକାବେଳକେ ପାଲଟିଗଲାଣି, ଉଛୁଣିକା ଭଳି ପଥରଟାଏ । ହାତରେ ପୋଥି ଖଣ୍ଡେ ଧରି ନିରୋଳାରେ ବସି କଣ କଥାଟାଏ ଭାବୁଥାନ୍ତି । ଇନ୍ଦୁ ଖଟଣିପାଇଁ ମା ସାନ୍ତାଣୀ ଆଠ ଦଶଜଣ ପୋଇଲି ଖଞ୍ଜି ଦେଇଥିଲେ । ହେଲେ, ଇନ୍ଦୁ କାହାରି ସହିତ କିଛି କଥା କହନ୍ତି ନାହିଁ । ଏକା ମରୁଆ ସାଙ୍ଗରେ ତାଙ୍କ ମନ ମିଳେ । ତାଙ୍କର ଯାହା କିଛି କଥା ତାକୁ କେବଳ କହନ୍ତି । ମରୁଆ ବି ତାଙ୍କ ମନ ଜାଣି ସବୁ କାମ ପାଇଟି ସଜେଇ ରଖିଥାଏ । ମରୁଆ ଇନ୍ଦୁଠାରୁ ଅନୁମାନ ପାଞ୍ଚ ସାତ ବର୍ଷ ବଡ଼ ହେବ । ବର୍ତ୍ତମାନ ସେ ବାଳିକା ନୁହେ, ପୂର୍ଣ୍ଣ ଯୁବତୀ । ତାହାର ପିତୃମାତୃବଂଶ କଥା ଜଣା ନାହିଁ । ମାବାପଛେଉଣ୍ଡ ଝିଅ ଢେରଗୁଡ଼ାଏ ଉଆସରେ ପଶିଛନ୍ତି, ମରୁଆ ସେଥି ମଧ୍ୟରୁ ଜଣେ । ହେଲେ କଥାବାର୍ତ୍ତାରୁ ଜଣାଯାଏ, ଭଲଲୋକ ଘର ଝିଅ ହେବ । ଆଉ ଆଉ ପୋଇଲି ପରିବାରୀଙ୍କ ପରି କଥାଗୁଡ଼ାକ ଠସ୍‌ମସ୍—ହେଁ ହେଁ—ଫେଁ ଫେଁ ନୁହେ, ଟିକଏ ଟିକଏ ହସି ହସି ଧୀରେ ଧୀରେ ଅତି ସୁନ୍ଦର କଥା କହେ, ସବୁବେଳେ ଭ୍ରୂଲତା ଯାଏଁ ଉଢ଼ଣୀଟା ପଡ଼ିଥାଏ । ବାଟ ଚାଲି ଗଲେ ଖୁସ୍

ପର ବି ଗୋଟିଏ ଶବ୍ଦ ହେବ ନାହିଁ । ଦେହର ଢୌଲଢାଉଲ, ରୂପକାନ୍ତି, ଚାଲିଚଲଣ, କଥାବାର୍ତ୍ତା ଦେଖିଲେ ଶୁଣିଲେ କିଏ କହିବ, ଏ ଗୋଟିଏ ଭଲଲୋକ ଘର ଝିଅ ନୁହେଁ ? କେଉଁ କର୍ମ ଫଳରୁ ସାନ୍ତଙ୍କ ଘରେ ଆସି ପଡ଼ିଛି । ମଲୁଆ ବି କାହାରି ସାଙ୍ଗରେ ମିଶେ ନାହିଁ । ଯେଉଁଠି ଜେମାଦେଈ, ସେଇଠାରେ ମଲୁଆ । ମଲୁଆ ଜେମାଙ୍କ ପାଖରେ ବସି ବସି ଲେଖି ପଢ଼ି ଶିଖିଲାଣି । ଦୁଇଜଣ ନିରୋଳାରେ ବସି ଶ୍ରୀକୃଷ୍ଣ ଅଷ୍ଟପାଟବଂଶୀ, କଦମ୍ବ ଗଛ, ପଦ୍ମଫୁଲ ଚିତ୍ର ଲେଖନ୍ତି । ଇନ୍ଦ୍ ମଲୁଆ ଛଡ଼ା ଆଉ କାହାରି ସହିତ କଥା ନ କହିବାରୁ ଆଉ ପୋଇଲୀମାନେ ମାନ ମାରି କହନ୍ତି, "ଜେମାଦେଈଙ୍କର ସବୁ ତ ହେଲା ମଲୁଆ, ଆମେଗୁଡ଼ାକ ଆଉ ରହିବୁ କିଆଁ ? ଚାଲ ଉଆସରୁ ବାହାରିଯିବା ।"

— — —

-୭-

## ଆଲୋଚନା ସଭା

କଟକ କଲେଜର ପିଲାମାନେ ମିଳି ଗୋଟିଏ ସଭା ସ୍ଥାପନ କରିଅଛନ୍ତି, ନାମ ଆଲୋଚନା ସଭା । ପ୍ରତି ମାସ ପ୍ରଥମ ସପ୍ତାହ ଶନିବାର ସନ୍ଧ୍ୟା ସମୟରେ ସଭାର ଅଧିବେଶନ ହୁଏ ।

ଆଜିକାଲି ଶିକ୍ଷିତ ଯୁବକମାନେ ବୁଝିଲେଣି, ମାତୃଭାଷାର ଉନ୍ନତି ବିନା ଦେଶର ତଥା ଜାତି ସାଧାରଣର ଉନ୍ନତି ସମ୍ଭାବନା ବିରଳ । କଲିକତାର ଭାଇସ୍ ଚେନସଲର ବହୁଶାସ୍ତ୍ରଦର୍ଶୀ ଭାଷାବିତ୍ ଡାକ୍ତର ଆଶୁତୋଷ ମୁଖାର୍ଜ୍ୟା ଆପଣା ଜୀବନରେ ଅନୁଭବ କଲେ, ପ୍ରକୃତ ଜ୍ଞାନ ଲାଭ ବିଦେଶୀ ଭାଷା ଯୋଗେ ହୁଏ ନାହିଁ । ମାତୃଭାଷାର ଆଲୋଚନା ଆବଶ୍ୟକ । ଏଥିସକାଶେ ବିଶ୍ୱବିଦ୍ୟାଳୟରେ ଉଚ୍ଚତମ ଶ୍ରେଣୀ ପର୍ଯ୍ୟନ୍ତ ମାତୃଭାଷା ଅଧ୍ୟୟନର ବ୍ୟବସ୍ଥା କରିଦେଇଅଛନ୍ତି । ପ୍ରକୃତପକ୍ଷେ ସେହିଦିନରୁ ଶିକ୍ଷିତ ସମାଜର ମନ ଟିକିଏ ବିଶେଷଭାବରେ ମାତୃଭାଷା ପ୍ରତି ଆକୃଷ୍ଟ ହୋଇଛି । ମଧ୍ୟ ସେମାନେ ପ୍ରତ୍ୟକ୍ଷ ଦେଖୁଛନ୍ତି, ପ୍ରାଚୀନତମ ସମ୍ମାନିତ ଉତ୍କଳୀ ଜାତି ପ୍ରତିବେଶୀ ଅନ୍ୟ ଜାତିମାନଙ୍କ ନିକଟରେ ଯେ ଲାଞ୍ଛିତ, ଉପହସିତ ହେଉଅଛନ୍ତି, ମାତୃଭାଷାର ଅବନତି ହିଁ ସେଥିର ପ୍ରଧାନ କାରଣ ଅଟେ । ସ୍ୱଭାବରେ ଆମ୍ଭମାନଙ୍କ ମାତୃଭାଷା କୁତ୍ସିତା ନୁହନ୍ତି, ଅଙ୍ଗସୌଷ୍ଠବ ତୁଳନାରେ ଅନ୍ୟାନ୍ୟ ଅନେକ ଭାଷାଠାରୁ ଉତ୍କଳ ଭାଷା ସୌନ୍ଦର୍ଯ୍ୟଶାଳିନୀ ଏବଂ ଗୌରବାନ୍ୱିତା । ବିଶେଷରେ ପ୍ରାଚୀନତାରେ ସହସ୍ରାଧିକ ବର୍ଷୀୟସୀ, ମାନସମ୍ଭ୍ରମଶାଳିନୀ । ପଞ୍ଚାଶତ୍ ବର୍ଷ ପୂର୍ବେ ଯେଉଁ ସମସ୍ତ ଭାଷା ଏହାଙ୍କ ସମାସନରେ ଉପବେଶନ କରିବାକୁ ସଙ୍କୁଚିତ ହେଉଥିଲେ, ଆଜି ସେମାନେ ଆମ୍ଭମାନଙ୍କ ପୁଣ୍ୟମୟୀ ମାତୃଭାଷାକୁ ଅବଜ୍ଞାନେତ୍ରରେ ନିରୀକ୍ଷଣ କରୁଅଛନ୍ତି । ଯେହେତୁ ସେମାନେ ବର୍ତ୍ତମାନ ସମୟରେ ପରମ ସମୃଦ୍ଧିଶାଳୀ ବହୁସଂଖ୍ୟକ ଭାଷା-ଭଣ୍ଡାରରୁ ସଂଗୃହୀତ ମହାର୍ଘ୍ୟ ରତ୍ନାଳଙ୍କାରଶୋଭିତା ଜ୍ଞାନରତ୍ନଶାଳିନୀ, ଗୌରବାନ୍ୱିତା । ଏଥିକୁ ଆମ୍ଭମାନଙ୍କ ମାତୃଭାଷା ସ୍ୱଭାବସୁନ୍ଦରୀ ହେଲେ ମଧ୍ୟ ସେମାନଙ୍କ ସମାଜରେ ମିଳନ ସକାଶେ ସଙ୍କୁଚିତା । ଜନନୀର ଗୌରବବର୍ଦ୍ଧନ ସୁପୁତ୍ରମାନଙ୍କ ପ୍ରତି ନିର୍ଭର କରେ । ନିରାଶ୍ରୟା କୁନ୍ତୀଦେବୀଙ୍କ ଗୌରବବର୍ଦ୍ଧନ ସମୟରେ ଲାଞ୍ଛିତା ଅପଦସ୍ଥା ଗାନ୍ଧାରୀ ଦେବୀ ନିଶ୍ଚୟ ମନରେ କରିଥିବେ, ଅଯୋଗ୍ୟ ଶତ ପୁତ୍ର ବଦଳରେ ମୁଁ ଗୋଟିଏ ମାତ୍ର ଅର୍ଜ୍ଜୁନ ପାଇଥିଲେ ମୋହର କିଣ ଏପରି ଭାଗ୍ୟବିପର୍ଯ୍ୟୟ ଘଟିଥାନ୍ତା ?

ଶିକ୍ଷିତ ଯୁବକମାନେ ଏହା ମଧ୍ୟ ବୁଝିଲେଣି, ସେମାନଙ୍କର ଉପାସ୍ୟା ରାଜଭାଷା ସର୍ବସମୃଦ୍ଧିଶାଳିନୀ, ଜଗଦ୍‌ବ୍ୟାପୀ ଗୌରବାନ୍ୱିତା ସତ୍ୟ; ମାତ୍ର ତାଙ୍କ

ଉପାସନା ଯୋଗେ ଆମ୍ଭମାନଙ୍କ ଜାତି ସାଧାରଣ ଉନ୍ନତି ଆକାଂକ୍ଷା କରିବା ବିଡ଼ମ୍ବନା ମାତ୍ର । ଯେହେତୁ ସେ ଆମ୍ଭମାନଙ୍କର ଉପାସ୍ୟା ଦେବୀ ବରଦାୟିନୀ ହେଲେ ମଧ୍ୟ ସନ୍ତାନମାନଙ୍କୁ କୋଳକୁ ଟେକି ନେବାପାଇଁ ଜନନୀ ତୁଲ୍ୟ ସ୍ନେହପ୍ରବଣା ନୁହନ୍ତି । କେହି ନୈଷ୍ଠିକ ଉପାସକ ଦେବୀ-ବର ପ୍ରଭାବରେ ମାନସମ୍ଭ୍ରମ ଯୁକ୍ତ ସମ୍ପତ୍ତିଶାଳୀ ହୋଇପାରେ ସତ୍ୟ; ମାତ୍ର ଜାତି ସାଧାରଣର ସେହି ଗୌରବର ଅଂଶ ଭାଗୀ ହେବାକୁ ଚେଷ୍ଟା କରିବା ବିଡ଼ମ୍ବନା ମାତ୍ର । ଏହା ମଧ୍ୟ ଶିକ୍ଷିତ ଯୁବକେ ବୁଝିଲେଣି, ଶତଶତ ବର୍ଷବ୍ୟାପୀ କାଳ ଉପାସନାରେ ମଧ୍ୟ ଉପାସ୍ୟା ଦେବୀଙ୍କୁ ଆୟତ୍ତ କରିବା ସହଜସାଧ୍ୟ ନୁହେ । ସେହି ନିମ୍ନ ଶ୍ରେଣୀ ହିଁ ଜାତି ନାମରେ ବାଚ୍ୟ । ଆମ୍ଭେମାନେ ମଧ୍ୟ ସ୍ୱଆଲୋଚନା ଯୋଗେ ଅନୁଭବ କରୁଅଛୁଁ, ବିଦେଶୀୟ ଭାଷାରେ ଜ୍ଞାନାଲୋଚନା ଜଳପୂର୍ଣ୍ଣ ପାତ୍ରରେ ଘୃତବିନ୍ଦୁ ପତନବତ୍; ଅର୍ଥାତ୍ କେବଳ ଆଲୋଚକ-ଠାରେ ଜ୍ଞାନ ଆବଦ୍ଧ ଥାଏ, ମାତୃଭାଷାରେ ଜ୍ଞାନାଲୋଚନା ଜଳପାତ୍ରରେ ତୈଳବିନ୍ଦୁ ପତନବତ୍ ସର୍ବତ୍ର ବିସ୍ତୀର୍ଣ୍ଣ ହୋଇଯାଏ ।

ଦେଶର ଦୁର୍ଗତି ତଥା ଜାତୀୟ କଳଙ୍କମୋଚନର ଭାର କୁଳନନ୍ଦନ ଶିକ୍ଷିତ ଯେଉଁ ଯୁବକମାନଙ୍କ ପ୍ରତି ସମ୍ପୂର୍ଣ୍ଣରୂପେ ଅର୍ପିତ ଅଛି, ସେମାନଙ୍କର ବର୍ତ୍ତମାନ ମାତୃଭାଷା ପ୍ରତି ଅନୁରାଗ ଏବଂ ଥୋକେ ଶିକ୍ଷିତ ଯୁବକ ଜନ୍ମଭୂମିର କଲ୍ୟାଣ କାମନାରେ ଶାରୀରିକ ସମସ୍ତ ଉନ୍ନତି, ସମସ୍ତ ସୁଖାଭିଳାଷ ବିସର୍ଜନପୂର୍ବକ ଜୀବନ ପଣ କରିବା ଦେଖି ଦେଶର ମଙ୍ଗଳକାମୀ ଅଥଚ ସର୍ବ ବିଷୟରେ ସମ୍ପୂର୍ଣ୍ଣ ଅକ୍ଷମ ସ୍ଥବିର ଲୋକେ ସହଜ ଜୀବନରେ ସେହି ଉତ୍ସାହୀ ଯୁବକମାନଙ୍କ ଦୀର୍ଘଜୀବନ କାମନା କରି ଆଶାନ୍ୱିତ ପ୍ରାଣରେ ଚରମ ଦିବସକୁ ସୁଖକର ଜ୍ଞାନ କରି ନିର୍ଭୟ ଆନନ୍ଦିତ ଚିତ୍ତରେ ପ୍ରୟାଣ ସକାଶେ ପ୍ରସ୍ତୁତ ହେଉଛନ୍ତି ।

ଆଲୋଚନା ସଭାର ପ୍ରତ୍ୟେକ ଅଧିବେଶନରେ ନୂତନ ନୂତନ ଗଦ୍ୟ ପଦ୍ୟମାନ ପଠିତ ହୁଏ । ଜମିଦାର ପୁତ୍ର କୁଅଁର ଗୋବିନ୍ଦ ଚନ୍ଦ୍ରଙ୍କ କବିତାଗୁଡ଼ିକ ଯେ ପଦଲାଳିତ୍ୟରେ, ଭାବସମ୍ଭାରବାହୁଲ୍ୟରେ ଅସପତ୍ନ ଆସନ ଗ୍ରହଣ କଲାଣି, ଏହା ଏକାବେଳକେ ସର୍ବବାଦିସମ୍ମତ । ସେ ଯେ ଅଦୂରବର୍ତ୍ତୀ ଭବିଷ୍ୟତରେ ମହାକବି ନାମରେ ପରିଚିତ ହେବେ, ଏ ସମ୍ବନ୍ଧରେ ଥୋକେ ସଭ୍ୟ ପ୍ରକାଶ୍ୟ ମତ ପ୍ରକାଶ କରିବାକୁ କୁଣ୍ଠିତ ହେଉ ନାହାନ୍ତି । ଠିକ୍ ଏତିକିବେଳେ ରାଜୀବଲୋଚନ ବାବୁ କହି ପକାଇଲେ, "ଗୋବିନ୍ଦ ବାବୁଙ୍କର କବିତ୍ୱ ଶକ୍ତି ଅଛି, ସନ୍ଦେହ ନାହିଁ; ହେଲେ ସତ କଥାଟା ଘୋଡ଼ାଇ ରଖିବାକୁ ମତେ କଷ୍ଟ ବୋଧ ହେଉଅଛି । ମୁଁ ନିଶ୍ଚିତରୂପେ କହିପାରେ କବିତାର ଓଜୋଗୁଣ, ମାର୍ଜିତ ଶବ୍ଦାବଳୀର ସଂଯତ ବିନ୍ୟାସ ବିଷୟ ବୁଝିବାକୁ ଗଲେ ତୁଳନାରେ ଆମ ଇନ୍ଦୁର କବିତା ତେର ଉପରେ ଆସନ ପାଇବାର ଯୋଗ୍ୟ ।" କେହି ସନ୍ଧାନୀ ଲୋକ ଭଲ କରି ଚାହିଁ ଦେଖିଥିଲେ ବୁଝି ପାରିଥାନ୍ତେ, ନିର୍ମଳ ଚନ୍ଦ୍ରମଣ୍ଡଳରେ ସହସା ନିପତିତ ଭାସମାନ ପାତଳ ମେଘଖଣ୍ଡ ପରି କୁଅଁର ବାବୁଙ୍କ ମୁଖରେ ଯେମନ୍ତ ଗୋଟାଏ ମଳିନତାର ଛାୟା ପଡ଼ିଗଲା, ଅନ୍ୟ ଲୋକେ ସେଥିପ୍ରତି ଲକ୍ଷ୍ୟ ନ ରଖିଥିଲେ ମଧ୍ୟ ଘଟନାଟା ରାଜୀବଲୋଚନଙ୍କ ଦୃଷ୍ଟି ଏଡ଼ି ପାରିଲା ନାହିଁ ।

ରାଜୀବଲୋଚନଙ୍କ ମୁହଁରୁ କଥାଟା ଯିମିତି ବାହାରିଛି, ଚାରି ପାଞ୍ଚଜଣ ସଭ୍ୟ ଏକାବେଳକେ ପଚାରି ପକାଇଲେ, —ଏଁ—ଏଁ ଇନ୍ଦୁ ବାବୁ କିଏ—ଇନ୍ଦୁବାବୁ କିଏ ? ରାଜୀବଲୋଚନ କହିଲେ, "ନା—ନା, ଇନ୍ଦୁ ବାବୁ ନୁହନ୍ତି ! ମୋ ଭଉଣୀ ।" ଘନଶ୍ୟାମ ବାବୁ କହିଲେ, "ହୋଇ ହେ ରାଜୀବବାବୁ, ସେଦିନ ସଞ୍ଜବେଳେ କହିଥିଲେ, ଆପଣଙ୍କର ଭାଇ ଭଉଣୀ କେହି ନାହିଁ, ଏକା—ଆଜି ପୁଣି ଭଉଣୀଟିଏ କାହୁଁ ବାହାରିଲେ ?"

ରାଜୀବଲୋଚନ ବାବୁ କହିଲେ, "ସେ ମୋ ନିଜର ଭଉଣୀ ନୁହେଁ, ମାମୁଁଝିଅ ଭଉଣୀ, ସମସରପୁର ଜମିଦାରଙ୍କ ଏକମାତ୍ର କନ୍ୟା ଇନ୍ଦୁମତୀ ଦେବୀ ।"

ଘନଶ୍ୟାମ ବାବୁ—ସେ କଣ ସ୍କୁଲରେ ପଢ଼ିଥିଲେ? ରାଜୀବ ବାବୁ ଉତ୍ତର କଲେ, "ନାହିଁ—ନାହିଁ, ତା ପଢ଼ାପାଇଁ ମାମୁ ସାନ୍ତେ ଦୁଇଜଣ ଭଲ ପଣ୍ଡିତ ନିଯୁକ୍ତ କରି ଦେଇଛନ୍ତି । ମୁଁ ଦେଖିଛି, ବାଳିକାଟା ଏପରି ବୁଦ୍ଧିମତୀ, କି ସାହିତ୍ୟରେ, କି ଗଣିତରେ, ତା ବୟସରେ କେହି ପିଲା ତା ସଙ୍ଗେ ସମାନ ହୋଇ ପାରିବ, ମୁଁ ଏହା ବିଶ୍ୱାସ କରି ପାରୁନାହିଁ । ସେ ନାନା ପ୍ରକାର ଚିତ୍ର ମଧ୍ୟ ଆଙ୍କି ପାରେ; ମାତ୍ର ନିଶ୍ଚୟ କଥା, ଉପଯୁକ୍ତ ଶିକ୍ଷା ଅଭାବରୁ ସେପରି ନିପୁଣତା ଲାଭ କରିପାରି ନାହିଁ ।"

ଘନଶ୍ୟାମ ବାବୁ ଅନେକ ବେଳଯାଏ ରାଜୀବ ବାବୁଙ୍କ ମୁହଁକୁ ଚାହିଁ ରହିଲେ; ଇଚ୍ଛା—ଇନ୍ଦୁମତୀ ସମ୍ବନ୍ଧରେ ଆଉ ଅଧିକ କିଛି କଥା ପଚାରିବେ, ହେଲେ ସାହସ ଖଟିଲା ନାହିଁ । ସମ୍ଭ୍ରାନ୍ତ ଲୋକର ଯୁବତୀ କନ୍ୟା, ତାଙ୍କ ସମ୍ବନ୍ଧରେ ଅଧିକ କିଛି ପଚାରିବା ଉପଯୁକ୍ତ ବୋଲି ବିବେଚନା କଲେ ନାହିଁ । ଆଗେ ଆମ୍ଭମାନଙ୍କ ସମାଜର ଲୋକେ ଆପଣା ଆପଣା କୁଳର ବଧୂ କିମ୍ବା ଯୁବତୀ କନ୍ୟା ଯୁବା ଭଗିନୀମାନଙ୍କ ନାମ ପାଞ୍ଚଜଣଙ୍କ ଆଗରେ ପ୍ରକାଶ କରିବା ନିତାନ୍ତ ଅସମ୍ମାନକର ଓ ଲଜ୍ଜାଜନକ ବୋଲି ମଣୁଥିଲେ । ଏଣିକି ପାଶ୍ଚାତ୍ୟ ସାମାଜିକ ରୀତିନୀତି କ୍ରମଶଃ ଆମ୍ଭମାନଙ୍କ ସମାଜର ଅସ୍ଥି ମଜ୍ଜା ପର୍ଯ୍ୟନ୍ତ ସ୍ପର୍ଶ କରିବାକୁ ବସିଲାଣି । ବିଶେଷତଃ ଆଜିକାଲି ସ୍ତ୍ରୀଶିକ୍ଷା ପ୍ରଚାର ଆରମ୍ଭ ଦିନରେ କାହାରି ବଧୂ ବା ଭଗିନୀ ଶିକ୍ଷିତା ଥିଲେ ଶିକ୍ଷିତ ଯୁବକମାନେ ଆପଣା ବନ୍ଧୁମାନଙ୍କ ମଧ୍ୟରେ ଉତ୍ସାହ ଓ ଆନନ୍ଦ ସହିତ ସେ ବିଷୟ ପ୍ରକାଶ କରିଥାନ୍ତି ।

କୁଅଁର ଗୋବିନ୍ଦଚନ୍ଦ୍ରଙ୍କ କବିତା ବିଷୟ ଏକାବେଳକେ ଚାପି ହୋଇଗଲା । ଇନ୍ଦୁମତୀର କବିତା ଓ ବିଦ୍ୟାଶିକ୍ଷା ବିଷୟ ପ୍ରବଳ ଉତ୍ସାହ ସହିତ ଆଲୋଚନା ଚାଲିଅଛି । ମଫସଲ ଗାଁର ଗୋଟିଏ ମରହଟ୍ଟିଆ କରଣ ଘର ଝିଅ ଏତେଦୂର ବିଦ୍ୟାବତୀ ହୋଇ ପଡ଼ିଲାଣି, ଏ କଥା ଯେ ସମସ୍ତଙ୍କର ବିସ୍ମୟ ଉତ୍ପାଦନ କରିଅଛି, ସଭ୍ୟମାନଙ୍କ ସୋତ୍ସାହ କଥୋପକଥନ ଏବଂ ମନୋଭାବରୁ ସୁସ୍ପଷ୍ଟ ଅନୁମାନ କରାଯାଇପାରେ । ସେମାନଙ୍କ ମନରେ ଧ୍ରୁବ ଧାରଣା ଜାତ ହେଲାଣି, ଉତ୍କଳର ସମାଜଗତ କୁସଂସ୍କାର ଅଜ୍ଞାନାନ୍ଧକାରର ବିମୋଚନ ଅଚିରକାଳ ମଧ୍ୟରେ ହେବା ଅବଶ୍ୟମ୍ଭାବୀ । କଥୋପକଥନ ସମୟରେ ରାଜୀବଲୋଚନ କୌଶଳରେ କୁଅଁର ବାବୁଙ୍କ ମୁଖଭାବ ପ୍ରତି ଲକ୍ଷ୍ୟ ରଖିଥିଲେ ଏବଂ ଜଣାଯାଏ, ରାଜୀବ ବାବୁଙ୍କ ମନରେ ଗୋଟାଏ ଭାରି ଆନନ୍ଦ ଜାତ ହେଉଥାଏ ।

ଏ କଥା ନିଶ୍ଚିତ ଇନ୍ଦୁମତୀର ଯୋଗ୍ୟତା ସମ୍ବନ୍ଧରେ ସମସ୍ତ ସଭ୍ୟ ଅନଭିଜ୍ଞ, ଆହୁରି ମଧ୍ୟ ନିଶ୍ଚିତ ଯେ ତତ୍କୃତ କବିତାର ଗୁଣାଗୁଣ ବୁଝିବା ପଛକୁ ଥାଉ, ପ୍ରକୃତରେ ସେ କବିତା ଲେଖିପାରନ୍ତି କି ନାହିଁ, ଏ କଥା ସମସ୍ତଙ୍କୁ ତୁଲ୍ୟ ଅଗୋଚର । ହେଲେ ସେମାନେ ଏତେଦୂର ଭକ୍ତିମାନ୍ ହୋଇ ପଡ଼ିଲେଣି ଯେ, ସ୍ୱୟଂ ବାଗ୍‌ଦେବୀଙ୍କର ପ୍ରଧାନ ସହଚରୀ ଇନ୍ଦୁମତୀ ସହିତ ଘଟନାସ୍ଥଳରେ ଉପସ୍ଥିତ ହେଲେ କାହାକୁ ଅଗ୍ରେ ଆସନ ପ୍ରଦତ୍ତ ହେବ, ଏ ବିଷୟ ନେଇ ସେମାନଙ୍କ ମଧ୍ୟରେ ମତାନ୍ତର ଘଟିବାର ନିତାନ୍ତ ସମ୍ଭାବନା ନ ଥିଲା, ଏ କଥା ଉଲ୍ଲେଖ କରିବା ଅସଙ୍ଗତ ହେବ ନାହିଁ ।

ଇନ୍ଦୁମତୀର କବିତା ଦେଖିବା ଏବଂ ଗୁଣାଗୁଣ ପରୀକ୍ଷା ଆବଶ୍ୟକ ବୋଲି କାହାରି କାହାରି ମନରେ ଉଦୟ ମଧ୍ୟ ହେଲାଣି । ଏପରି ଅବସର—ଅସହିଷ୍ଣୁତା ଶିକ୍ଷିତ ଯୁବକମାନଙ୍କ ପକ୍ଷରେ ନିଶ୍ଚୟ ଶୋଭନୀୟ

ନୁହେ, ହେଲେ ଯୁବକ ସୁଲଭ ଶୃଙ୍ଖଳା ଶିକ୍ଷା ବା ଧୈର୍ଯ୍ୟକୁ ଅତିକ୍ରମ କରିବା ସହଜସିଦ୍ଧ ବିଷୟ ଅଟେ । ଇନ୍ଦୁମଣି କବିତା ରଚନାରେ ସିଦ୍ଧହସ୍ତା, ଅଥବା ତାହାର ପ୍ରତିଭା ସ୍ୱାଭାବିକ ତୁଳନାରେ ଗୋବିନ୍ଦଚନ୍ଦ୍ରଙ୍କୁ ଅତିକ୍ରମ କରିବାକୁ ସମର୍ଥା, ଆମ୍ଭମାନଙ୍କ ମତରେ ବିଷୟଟି ଘୋର ସନ୍ଦେହର ସ୍ଥଳ । ଅଥବା ଇନ୍ଦୁ ଆଦୌ କବିତା ରଚନାରେ ସମର୍ଥା, ଏ କଥା ମଧ୍ୟ ସାହସପୂର୍ବକ ବୋଲିଯାଇ ନ ପାରେ । ପାର୍ଶ୍ୱବର୍ତ୍ତୀ ଘଟନା ପରମ୍ପରା ଦୃଷ୍ଟିରେ ବରଞ୍ଚ ସାହସପୂର୍ବକ ବୋଲିଯାଇ ପାରେ, ଯେ ବଂଶଗତ ବୈର ଯୋଗୁଁ ଗୋବିନ୍ଦଚନ୍ଦ୍ରଙ୍କ ପ୍ରଶଂସା ଶ୍ରବଣରେ ଅସହିଷ୍ଣୁ ରାଜୀବଲୋଚନଦ୍ୱାରା ଇନ୍ଦୁମଣିର କାଳ୍ପନିକ କବିତ୍ୱମାହାତ୍ମ୍ୟର ଅବତାରଣା କରିଯାଇଅଛି । ସଚରାଚର ଦେଖାଯାଏ, କୁଅଁର ଗୋବିନ୍ଦଚନ୍ଦ୍ର ଓ ସଦାନନ୍ଦଙ୍କ ସହିତ ରାଜୀବଲୋଚନ ଏକ ସଙ୍ଗରେ ଏକ ଶ୍ରେଣୀରେ ଅଧ୍ୟୟନ କରୁଥିଲେ ମଧ୍ୟ ପରସ୍ପର ଯୁବଜନସୁଲଭ ପ୍ରେମାଳାପ କରୁଥିବାର କଦାଚ ଦେଖାଯାଇ ନାହିଁ । ଏହା ମଧ୍ୟ ଅନେକ ଥର ଦେଖାଯାଇଅଛି, ଗୋବିନ୍ଦଚନ୍ଦ୍ରଙ୍କ କବିତା ପାଠ ବା ପ୍ରଶଂସା ସମୟରେ ରାଜୀବଲୋଚନଙ୍କ ମୁଖରେ ଯେମନ୍ତ ଗୋଟାଏ ବିରକ୍ତି ପ୍ରକାଶ ପାଏ । ପୁଣି ଏହା ମଧ୍ୟ ସଚରାଚର ପ୍ରତ୍ୟକ୍ଷ ହୁଏ ଯେ, ତାଲୁକେ ସମରପୁର ଓ ତାଲୁକେ ଦଶଗ୍ରାମୀ କରଣସାନ୍ତ ଗୋଷ୍ଠୀର, ଏମନ୍ତ କି ଯୋଡ଼ିଏ ମାର୍ଜାରଶିଶୁର ଦୈବାତ୍ ଭେଟ ହୋଇଗଲେ ପରସ୍ପର ଗର୍ଜନ କରି ଉଠନ୍ତି ।

ବିବଦମାନ ବଂଶଯୁଗଳ ପ୍ରତ୍ୟେକ ଲୋକର ମନ ମଧ୍ୟରେ ବଂଶଗତ ବିଦ୍ୱେଷ ଭାବ ସଞ୍ଚାରିତ ହେବା ସ୍ୱାଭାବିକ ଅଟେ ।

———

-୮-

## କୁଅଁର ବାବୁଙ୍କ ଚିତ୍ତ ଚାଞ୍ଚଲ୍ୟ

ରୂପଜ—ଗୁଣଜ ମୋହ ଏବଂ ବହୁବିଧ ଅବସ୍ଥା ସାହାଯ୍ୟରେ ଯୁବକ ଯୁବତୀଙ୍କ ମନରେ ପରସ୍ପର ମିଳନାକାଙ୍‌କ୍ଷା ଜାତ ହୋଇଥାଏ । ଏପରି ଆକାଙ୍‌କ୍ଷାକୁ ପ୍ରେମାଭିଳାଷ ବୋଲି ମଧ୍ୟ କୁହାଯାଇ ପାରେ । ଏପ୍ରକାର ପ୍ରେମାଭିଳାଷ ସେମାନଙ୍କ ମନରେ ଜାତ ହେଲେ ସମୟ ସମୟରେ ଦେଖାଯାଏ, ସେମାନେ ପରସ୍ପର ମିଳନ କାଳ ପର୍ଯ୍ୟନ୍ତ ଚିତ୍ତଚାଞ୍ଚଲ୍ୟରେ ଏ ପ୍ରକାର ଅନାୟତ୍ତ ହୋଇପଡ଼ନ୍ତି ଯେ, ଅତି ସାବଧାନତାରେ ମଧ୍ୟ ବିବିଧପ୍ରକାର ଚିତ୍ତବିକାର ବଦନମଣ୍ଡଳରେ ପ୍ରକାଶ ହୋଇପଡ଼େ । ସେ ସମୟରେ ମନୋଭାବ ଗୋପନ ସକାଶେ ସକଳପ୍ରକାର ଚେଷ୍ଟା ମଧ୍ୟ ବ୍ୟର୍ଥ ହୋଇଯାଏ । ଇନ୍ଦୁମଣିଙ୍କ କବିତ୍ୱ ଖ୍ୟାତି ଶୁଣିବା ଦିନଠାରୁ ଗୋବିନ୍ଦଚନ୍ଦ୍ରଙ୍କର କିଛି ଚିତ୍ତବିକାର ଜାତ ହେଲା କି ନାହିଁ, ସମ୍ପର୍କବିହୀନ ଅନ୍ୟ ଲୋକେ ନ ବୁଝିଲେ, କେବଳ ଯୋଡ଼ିଏ ଲୋକ ସେଥିର ଆଭାସ ପାଇ, ଜଣେ ଆନନ୍ଦିତ, ଅନ୍ୟ ଜଣେ କାତର ହୋଇ ପଡ଼ୁଅଛନ୍ତି । ବଂଶଗତ ବୈର ହେତୁରୁ ଗୋବିନ୍ଦଚନ୍ଦ୍ରଙ୍କ କବିତ୍ୱ ଖ୍ୟାତିରେ କାଳିମା ଲେପନ ସକାଶେ ରାଜୀବଲୋଚନ ଯେ ସତ୍ୟ ହେଉ ବା ମିଥ୍ୟା ହେଉ ଇନ୍ଦୁମଣିର କବିତ୍ୱ ବିଷୟ ରଟନା କରିଥିଲେ, ଏଥିରେ ସନ୍ଦେହ ନାହିଁ, ସେହି ବିଦ୍ୱେଷ ଭାବଟି ବର୍ତ୍ତମାନ ଯେମନ୍ତ ମିଳନାକାଙ୍‌କ୍ଷାରେ ପରିଣତ ହୋଇ ଯାଇଥିବାର ଦେଖାଯାଏ । ବର୍ତ୍ତମାନ ରାଜୀବଲୋଚନ ଦଶଗ୍ରାମୀ ଭ୍ରାତୃଯୁଗଳଙ୍କ ସହିତ ମିଳନ ସକାଶେ ନିତାନ୍ତ ଲୋଲୁପ । ଆଜକୁ କେତେଦିନ ହେଲା ସଦାନନ୍ଦ, ଗୋବିନ୍ଦଚନ୍ଦ୍ର ଏବଂ ରାଜୀବଲୋଚନ ସନ୍ଧ୍ୟା ସମୟରେ ଏକତ୍ର ଭ୍ରମଣ ଏବଂ ପ୍ରେମାଳାପ କରୁଥିବାର ଦେଖାଯାଏ । ପୁଣି ବିଶ୍ୱସ୍ତ ସୂତ୍ରରେ ଏଥିର ମଧ୍ୟ ସନ୍ଧାନ ମିଳିଅଛି ଯେ,

କୁଅଁର ଗୋବିନ୍ଦଚନ୍ଦ୍ରଙ୍କୁ କଦାଚିତ୍ ଏକାକୀ ଦେଖିଲେ ରାଜୀବଲୋଚନ ଯେମନ୍ତ ଅନିଚ୍ଛାରେ ଅସାବଧାନତାରେ ଅନ୍ୟ କଥାପ୍ରସଙ୍ଗରେ ଇନ୍ଦୁମତୀର ରୂପ, ସୁଶୀଳତା, ଧର୍ମନିଷ୍ଠା ପ୍ରଭୃତି ଗୁଣମାନ ବ୍ୟାଖ୍ୟା କରି ଦେଉଥାନ୍ତି । କୁଅଁର ବାବୁ ଯେମନ୍ତ ସଲଜ୍ଜଭାବରେ ଅନ୍ୟମନସ୍କ ହୋଇ ଆଗ୍ରହ ସହିତ ଶୁଣୁଥାନ୍ତି ।

———

-୯-

## ସଇତାର ଆତଙ୍କ

ଏଁ ଏ କଣ ହେଲା ? ସାନ ସାନ୍ତ ଏପରି ହେଉଛନ୍ତି କାହିଁକି ? ପଢ଼ାରେ ମନ ନାହିଁ, ସଞ୍ଜ ହେଲେ ଏକୁଟିଆ ନଦୀକୂଳରେ ବସି ଭୁଚ୍ଛା ଭକ ଭକ କରି ଚାହିଁଥାନ୍ତି, ଯେମନ୍ତ କଣ ଗୋଟାଏ ବସି ଭାଳୁଛନ୍ତି । ଠାବେଳେ ବି ସେହିପରି, କେଉଁଦିନ ଭାତଆରେ ଗୁଡ଼ାଏ ଲୁଣ ଗୋଳାଇ ଦେଲେ ତ, କେଉଁଦିନ ଭୁଚ୍ଛା ଅଲଣା, କେଉଁ ତିଅଣ ଶିନାରେ ଶ୍ରୀହସ୍ତ ବାଜିଲା ନାହିଁ ତ, ଭୁଚ୍ଛା କେଉଁ ତିଅଣଟା ଗାବୁଲ ଗାବୁଲ ସାରୁଛନ୍ତି । ଜ୍ୱର ତ ନୁହେ, ମର୍ଦ୍ଦନ ଦେହପାଣି ଭଲ ଚଳୁଛି, ଦେହରେ ତାତି ନାହିଁ, କଥା କଣ ? ସାନ୍ତେ ତ ମୋ ପାଖରେ କିଛି କଥା ଛପାନ୍ତି ନାହିଁ, ଆଉ କାହାରିକୁ ଅଜଣା, ସାନ୍ତଙ୍କ ସବୁ କଥା ମୁଁ ଜାଣେ । ଆଉ କିଛି ବେମାରି ହୋଇଥିଲେ ତ ମୋତେ ଆଜ୍ଞା କରିଥାନ୍ତେ । ଉଆସକୁ ଖବର ଦେବି ? ନାହିଁ ଲୋ ବାପ ! ଆଜୁ ଖୋଜୁ ଖୋଜୁ ମହାଦେବ ହେଲେ ବାହାରିପଡ଼ିବ, ଶେଷକୁ ମୋ ଦାନାପାଣି ଉଠିବ । କଥାଟା ପଚାରିବାପାଇଁ ମନ ମଧ୍ୟରେ ଆକୁପାକୁ ହେଲାଣି, ବେଳ ଘଟୁ ନାହିଁ, ଭରସା ଖଟୁ ନାହିଁ । ବେମାରି ନୁହେ, ଏଇଟା ଏକାବେଳକେ ଠିକ୍ କଥା । ଜଣାଯାଏ, କଣ ଗୋଟାଏ ଘର କଥା ଚାଲିଛି । ସେଇଟା କଲେଜ ପାଠ କଥା ନିଶ୍ଚୟ; ବାହାରର କଥା ହୋଇଥିଲେ ଆଜଯାଏ ଢାଙ୍କା ଦେଇ ନ ଥାନ୍ତା, ଫୁଟିଆସି ହୋଇ ପଡ଼ିଥାନ୍ତା । ଉଁ— ହୁଁ, ତା ବି ନୁହେ । ଆମ ଗାଁ ଶାମ ଧଳ ସାନ୍ତଙ୍କ ପୁଅ ଘନୁ ବାବୁ ଆମ ସାନ୍ତଙ୍କ ସାଙ୍ଗରେ ଏକ ଜାଗାରେ ବସି ପଢ଼ନ୍ତି, ତାଙ୍କୁ ବା କିଛି ଜଣାଥିବ, ଅସଲ କଥାଟା କାଢ଼ିବାପାଇଁ ଫିକର ଫାକର କରି କେତେକଥା ପଚାରିଲି, ସେ ତ କିଛି କହି ପାରିଲେ ନାହିଁ । କଲେଜ କଥା ହୋଇଥିଲେ ନିଶ୍ଚୟ ତାଙ୍କୁ ଜଣା ଥାନ୍ତା । କଲେଜ ପାଠ କଥା ନୁହେ । ଆଉ ଗୋଟାଏ କଥା, ଦୁଇ ଭାଇଙ୍କ ଭିତରେ ଦଣ୍ଡେ ଛାଡ଼ବାଡ଼ ଥାଏ ନାହିଁ । ଆଜକାଲି ସଞ୍ଜ ବଇଠା ଲାଗିଲା ତ ବଡ଼ ସାନ୍ତ ବାହାରିଲେ, ରାତି ପହରେଯାଏଁ ବସାରେ ପଶିବାକୁ ନାହିଁ । ସଉଦା ଆଣିବା ବାହାନାରେ କେତେଥର ଯାଇ ଦେଖି ଆସିଲିଣି, କାଠଯୋଡ଼ ବରଗଛ ମୂଳ, ନଦୀବେଳା ଅନ୍ଧାରିଆରେ ବଡ଼ ସାନ୍ତ ଆଉ ରାଜୀବଲୋଚନ ବାବୁ ବସି କଣ ଫୁସରଫାସର ହେଉଥାନ୍ତି । ସେ ତ ହେଲେ ଶତ୍ରୁପକ୍ଷ ଲୋକ— ମୁଖାଳାପ ନ ଥିଲା, କେହି କାହାରି ଛାଇ ମାଡ଼ୁ ନ ଥିଲେ, ଏବେ ତାଙ୍କ ସାଙ୍ଗରେ ଏତେ ଫୁସୁରଫାସର କଣ ରେ ବାବୁ ? ସେ କଥାରେ ସାନ ସାନ୍ତଙ୍କର କିଛି ଲଗାପଟା ଅଛି, ନୋହିଲେ ବଡ଼ ସାନ୍ତ ବାହୁଡ଼ି ଆସିଲେ ଦୁଇ ଭାଇ ନଦୀକୂଳରେ ବସି ଭୁନ ଭୁନ କଣ କଥାଭାଷା ହୁଅନ୍ତି ? ଶତ୍ରୁପକ୍ଷିଆ ଲୋକ ସାଙ୍ଗରେ ଏତେ ରଙ୍ଗଢଙ୍ଗ ଭଲ ନୁହେ—କର୍ତ୍ତା ସାନ୍ତଙ୍କ କାନକୁ ଗଲେ କଣ ଗୋଟାଏ ବଖେଡ଼ା ବାହାରିପାରେ । ବଡ଼ ସାନ୍ତଙ୍କ କଥାରେ ନ ପଡ଼ିବାଲାଗି ମୋ ସାନ୍ତଙ୍କୁ ଚେତେଇ ଦେବା ଉଚିତ । ନାହିଁ ଲୋ ବାପ ! ଭାଇ ଭାଇ ଯିବେ ମିଳି, ମୁଁ ବସିବି ଚିଙ୍କି ଗିଳି । ଆଚ୍ଛା ଦେଖା ଯାଉ, କୁଆଡ଼କା ପାଣି କୁଆଡ଼େ ଯାଉଛି । ସବୁରେ ମେବା ଫଳେ ।

———

-୧୦-

## ଗ୍ରୀଷ୍ମାବକାଶ

ଗ୍ରୀଷ୍ମାବକାଶ ସମ୍ପୂ ଉପସ୍ଥିତ, କଲେଜ, ସ୍କୁଲ ସବୁ ବନ୍ଦ, ବିଦେଶୀ ପିଲାମାନେ ଆପଣା ଆପଣା ଗ୍ରାମକୁ ଯିବାଲାଗି ସଜବାଜ ହେଉଛନ୍ତି । ଚନ୍ଦନପୁର ବଡ଼ ଗ୍ରାମ୍ଯକରଣ ବିଦ୍ୟାଧର ପଟ୍ଟନାୟକ ଯୋଡ଼ାଏ ପାଲଙ୍କି କେତେ ଜଣ ବାହାଙ୍ଗୀ ଆପଟ ଧରି ଠିକ୍‌କଲେଜ ବନ୍ଦ ଦିନ ସକାଳ ଝଟପଟର କଟକରେ ପହଞ୍ଚଗଲେ । ସାନ୍ତ ସାନ୍ତାଣୀଙ୍କର କରଣ ପ୍ରତି ବିଶେଷ ଆଦେଶ, 'କଲେଜ ବନ୍ଦ ହେଲାକ୍ଷଣି ବାବୁମାନଙ୍କୁ ଧରି କଟକରୁ ବାହାରି ଆସିବେ ।' ହେଲେ ସଦାନନ୍ଦ ଏ କଥା ସେକଥା ବାହାନା କରି ଡୁଚ୍ଛାଟାରେ ଗଡ଼ିମଠ କରୁଛନ୍ତି । ସେଦିନ ଉଆସକୁ ଯିବାରି ହେଲା ନାହିଁ । ଆଜିକାଲି ସଇତାର ସବୁ କଥାରେ ସନ୍ଦେହ, ସଦାନନ୍ଦଙ୍କ ଚାଲିଚଳନକୁ ଆଖି କରି ଜଗିଛି । ଦେଖିଲା, ସେଦିନ ସଞ୍ଜରୁ ପହରେ ରାତିପାଏ ସଦାନନ୍ଦ ଆଉ ରାଜୀବଲୋଚନ କାଠଯୋଡ଼ି କୂଳ ବରଗଛ ମୂଳ ଅନ୍ଧାରିଆରେ ବସି କଣ କଥାଭାଷା ହେଉଛନ୍ତି । ସଇତା ଡେର ଆକୁପାକୁ କରି ଗଛ ଗୁଡ଼ି ଅନ୍ଧାରିଆ ଧରି ପାଖେଇ ପାଖେଇ ଗଲା, ହେଲେ ଫୁନ ଫୁନ କଥା, ଶୁଭିଲା ନାହିଁ । ଶେଷରେ ଦୁହେଁ ମେଲାଣି ନେବା ବେଳେ ରାଜୀବଲୋଚନ ଜାଗ୍ରତ କରାଇଦେଲେ, "ଦେଖ ସଦାନନ୍ଦ ଭାଇ ! ଖୁବ୍ ଜାଗ୍ରତ ଥିବ, କଥାଟା ଯେମନ୍ତ ଫୁଟିଆରୁ ନ ହୁଏ, ଟିକିଏ ହେଲେ ଜଣା ପଡ଼ିଗଲେ ସବୁ ଭଣ୍ଡୁର ହୋଇ ଯିବଟି ! ଗଡ଼ରେ ଗଡ଼ିମଠ କରିବ ନାହିଁ, କଲେଜ ଫିଟିବା ପନ୍ଦର ଦିନ ଆଗରୁ ଚାଲି ଆସିବ ।" ଶେଷ କଥାଗୁଡ଼ିକ ସଇତା କାନରେ ଟିକିଏ ବାଜିଗଲା, ମନରେ କଲା ଏତେ ଶର୍ମ୍ମପଣ, ମୁହଁ ଚୁହାଁଚୁହିଁ ବାସନ୍ଦ—ଏଥି ମଧ୍ୟରେ ପୁଣି ସଦାନନ୍ଦ ଭାଇ ପାଲଟି ଗଲେଣି ।

———

-୧୧-

## ଉଆସରେ ଉପସ୍ଥିତ

କଲେଜ ବନ୍ଦ ବାସିଦିନ ଗୋରୁଗୋଠ ଘର-ବାହୁଡ଼ା ବେଳେ ସବାରି ଯୋଡ଼ିକ ଚନ୍ଦନପୁର ଉଆସ ସିଂହଦ୍ୱାରରେ ଭିଡ଼ିଲା । ତେତେବେଳେ ସାମନ୍ତ ଗୋବିନ୍ଦ ଜୀଉଙ୍କ ନାଟମନ୍ଦିରରେ ବସି ସନ୍ଧ୍ୟାହ୍ନିକ ଅନୁଷ୍ଠାନ କରୁଥିଲେ । ପିଲା ଯୋଡ଼ିକ ଗୋଡ଼ତଳେ ଲଠ ଲଠ ପଡ଼ିଯିବାରୁ ଉଆସ ଭିତରକୁ ଯିବା ସକାଶେ ସେମାନଙ୍କୁ ଠାରିଦେଲେ । ମା ସାନ୍ତାଣୀ ପିଲାମାନଙ୍କ ପହଞ୍ଚିବା କଥା ଶୁଣି ଉଆସ ଭିତରୁ ବାହାରି ଆସି ମଝି ଗ୍ରାମ୍ଯ ଦୁଆରବନ୍ଧଟାକୁ ଧରି ଉଭା ହୋଇଥିଲେ । ପିଲା ଯୋଡ଼ିକ ଗୋଡ଼ତଳେ ପଡ଼ନ୍ତେ 'ଉଠ ବାପ ଉଠ ବାପ' କହି ଆଗେ ସଦାନନ୍ଦକୁ ଉଠାଇ ତାହା ମୁଣ୍ଡକୁ ଚୁମ୍ବନ କଲେ । ସବୁଦିନେ ସାନ୍ତାଣୀ ଆଗେ ସଦାନନ୍ଦକୁ ଆଦର କରନ୍ତି । ଆପଣାକୁ ଗରବର ପୁଅ ମଣି କାଳେ ମନରେ ଦୁଃଖ କରିବ, ସେଥିପାଇଁ ଆଗେ ସଦାନନ୍ଦକୁ ସ୍ନେହ କରି ପଛେ କୁଅଁର ଗୋବିନ୍ଦଚନ୍ଦ୍ରକୁ ଉଠାଇଲେ । ପୁଅଟିକୁ ଧରି ଯେମନ୍ତ ଉଠାଇଛନ୍ତି, ହାତକୁ ଶୁଖିଲା ଶୁଖିଲା ଲାଗିଲା, ମୁଖକୁ ଅନାଇଦେଲେ, କଳା ପଡ଼ି-ଯାଇଛି । "ଏ କଣ ରେ ଗୋବିନ୍ଦ ! ତୋର କଣ ହୋଇଥିଲା ରେ, ଦେହକୁ ବାଧିଥିଲା କି ରେ ?" ଆଉ କିଛି କହିପାରିଲେ ନାହିଁ, ସକସକ କରି କାନ୍ଦି ପକାଇଲେ । ପଣତକାନିରେ ଲୁହ ପୋଛି ପକାଉଥାନ୍ତି । ଉଆସ ଭିତରୁ ପୋଇଲାମାନେ ଧାଇଁ ଆସିଲେ, ସେମାନଙ୍କୁ ତ କିଛି ଜଣା ନାହିଁ, କଟାଶ ପରି ପିଲା-ମାନଙ୍କୁ ଅନାଇ ରହିଥାନ୍ତି । ସଦାନନ୍ଦ କହିଲେ, "ପିଉସୀ ! ଆପଣ କିଆଁ ଇମିତି ବାପୁଣୀ ପରି ହେଉଛନ୍ତି ? ଗୋବିନ୍ଦଚନ୍ଦ୍ରର କିଛି ହୋଇ ନାହିଁ । କଥା କଣ କି, କଲେଜରେ ବାର୍ଷିକ ପରୀକ୍ଷା ହୋଇଥିଲା, ଗୋବିନ୍ଦ ଦିନ ରାତି କିତାପ ପଢ଼ିବାରୁ ଭାରି ଭିଡ଼ ପଡ଼ିଲା ଯେ, ସେଥିଲାଗି ଦେହ ଟିକିଏ ଶୁଖି ଯାଇଛି ।"

ସାନ୍ତାଣୀ—ନାହିଁ ରେ, ନାହିଁ ରେ ! ତୁମ୍ଭେମାନେ କାହିଁ ଇମିତିକା କଡ଼ାପ ଚଢ଼ିଲ ରେ ? ଯେତିକ ପାଠ ହେଲ, ତେତିକ ହେଉ, ଆଉ ପାଠ ଲୋଡ଼ା ନାହିଁ, ଆଉ କଟକ ଯାଅ ନାହିଁ ରେ ।

ସଦାନନ୍ଦ—ନାହିଁ ପିଉସୀ ! ପରୀକ୍ଷା ସରିଗଲାଣି, ଆଉ ସେପରି କଡ଼ାପ ଚଢ଼ିବାକୁ ହେବ ନାହିଁ, ଏଣିକି ଅଳ୍ପ ପଢ଼ା, ବେଳ ମାପିକେ ଖାଇ ପିଇ ଖୁଣ୍ଟା କଟକରେ ବସିଥିବା । ଥରେ ଥରେ କଲେଜରେ ବୁଲି ଆସିବାକୁ ହେବ, ଆଉ ସେପରି ବାଧିବ ନାହିଁ । ପରୀକ୍ଷା ହେବାକୁ ଆହୁରି ବରଷେ କାଳ ଅଛି, ମୁଁ କହୁଛି, ଆମ୍ଭେମାନେ ଆଉ ପରୀକ୍ଷାଯାଏ ରହିବା ନାହିଁ, ତୁନ ତୁନ ଘରକୁ ଚାଲି ଆସିବା ।

ସାନ୍ତାଣୀ—ହଁ ରେ ହଁ, ସଦେଇ-ଲୁ-ଚାହିଁ କରିବୁ ରେ । ଗୋବିନ୍ଦ ପିଲାଟା, ତାର ତେତେ ବୁଦ୍ଧି ନାହିଁ । ତାକୁ ଧରି ବାହାରି ଆସିବୁ ରେ । ଆଲୋ କନକ; ଆଲୋ ପଦ୍ମ ! ବେଗି ବେଗି ଜଳ, ପାପୋସ୍ଥ ଯେନି ଆସ, ମୋ ମେଲାକୁ ଶୀତଳ ଠା ଆଣିବାଲାଗି ଲଳିତା ନାମାକୁ ଡାକ ଦେ ।

---

## -୧୨-

## ବିବାହ ପ୍ରସ୍ତାବ

'ଗୋବିନ୍ଦର ରୂପ ଦେଖିଲଣି ନା ? ସଇତାକୁ ଡାକ ନିରୋଳାରେ ପଚାରିଲେ, ସେ କହିଲା, ନାହିଁ ତ, କୁଅଁର ସାନ୍ତଙ୍କ ଶ୍ରୀଅଙ୍ଗକୁ କଟକରେ କିଛି ବାଧିନା ଲାଗିନାହିଁ । ସଦେଇ କହୁଛି ବେଶି ପାଠ ପଢ଼ିବାରୁ ଗୋବିନ୍ଦ ଦେହ ଖଗୁଡ଼ିଆ ହୋଇ ଯାଇଛି । ହେଲେ ଏ କଥାରେ ମୋ ମନ ମାନୁ ନାହିଁ । ସବୁଦିନେ ତ କଟକରୁ ପାଠ ପଢ଼ି ପଢ଼ି ଆସେ, କାହିଁ, କେବେ ତ ଏପରି ଦେହ ଖଗୁଡ଼ିଆ ହୋଇ ନ ଥାଏ । ଆଉ ଗୋଟାଏ କଥା, ମୁଁ କଥା ପଚାରିବାବେଳେ ସଇତା କମିତିକା ଉପର ଉପର ହେପ ଢୋକ ଢୋକ, ମୁଣ୍ଡ ପୋତି ମୋ କଥାରେ ଉତ୍ତର ଦେଉଥିଲା । ଏପରି କଥା ସେ କେଭେ କହେ ନାହିଁ । ତେବେ ବି ଭୁଲାଇ ଭୁଲାଇ ତେର କଥା ପଚାରିଲି, କିଛି ସଫା କଥା କହିଲା ନାହିଁ । ଜାଣିଲି, କହିବ ନାହିଁ, ଆଉ ବଳେଇଲି ନାହିଁ । ଗୋବିନ୍ଦ କଟକରୁ ବାହୁଡ଼ିଲା-ବେଳରୁ ଦୁଇ ତିନେଦିନ ହେଲା ତାକୁ ଜଗିଛି । ଦେଖିଲି, କାହାରି ସାଙ୍ଗରେ ହସି ଖୁସି କଥା ନାହିଁ, ଏକୁଟିଆ ବସି ବସି ଖୁଣ୍ଟାଟାରେ କଣ ଖାଳୁଥାଏ । କଣ ହେଲା,ତୁମେ ଟିକିଏ ବୁଝାବୁଝି କର ନା ?' ପଦ୍ମଡ଼ିଙ୍ଗର ପଲଙ୍କ ଉପରେ ବସି ନିରୋଳାରେ ସାନ୍ତାଣୀ ସାନ୍ତଙ୍କୁ ଏହିସବୁ କଥା କହିଲେ । ଜମିଦାର ସାନ୍ତ ସାନ୍ତାଣୀଙ୍କ କଥାରେ କିଛି ଉତ୍ତର ନ ଦେଇ 'ଗୋବିନ୍ଦ ଶ୍ରୀହରି— ଗୋବିନ୍ଦ ଶ୍ରୀହରି' କେବଳ ଏତିକ ନାମ ଭଜନ କରି ତୁନ ହେଲେ ।

ସାନ୍ତାଣୀ—ମୁଁ କହୁଛି ପୁଅଟିକୁ ଏହି ବରଷ ମଧ୍ୟରେ ବିଭା କରାଇ ପକାଅ । ମନ ଯିମିତିକା ଡାକୁଛି ବିଭା ହେଲେ ତା ଦେହ ଭଲ ହୋଇଯିବ । ସାଙ୍ଗେ ସାଙ୍ଗେ ସଦେଇପାଇଁ ବି ଗୋଟିଏ କନ୍ୟା ଖୋଜ, ତା' ଲାଗି ଆଉ କଏ କରିବ ? କେଉଁଦିନ ହେଲେ ତ ଆମ୍ଭମାନଙ୍କୁ କରିବାକୁ ହେବ, ମୁଁ କହୁଛି ଏକାସାଙ୍ଗରେ ଏକ ଖରଚରେ ଚଳିଯାଉ ।

ସାନ୍ତ—ଗୋବିନ୍ଦ ଶ୍ରୀହରି—ଗୋବିନ୍ଦ ଶ୍ରୀହରି ! ତୋ ଇଚ୍ଛା । ଆଚ୍ଛା ହେଉ, ଦେଖିବା ।

ସାନ୍ତାଣୀ—ଦେଖିବ କଣ, କାଲି ସକାଳୁ ଲାଗିପଡ଼ । ପାଟଜୋଷୀଙ୍କୁ ଡକାଅ; ଭଲଦିନଟିଏ ଧରି ସାଙ୍ଗେ ସାଙ୍ଗେ କନ୍ୟା ଲୋଡ଼ିବା ପାଇଁ ଘଟିଆଲିକୁ ଓକିଲ ବରଗି ଦିଅ ।

---

-୧୩-

## ବିବାହ ଅସ୍ୱୀକାର

ରଜା ପରି ଜମିଦାର ଟାଏ, ଶ୍ରୀକରଣ ମଉଡ଼ମଣି, ଦେଶ ଦେଶାନ୍ତରରେ ନାମ ଡାକ, ସଦର ହାକିମମାନଙ୍କ ଆଗରେ କୁର୍ଚ୍ଚିରେ ବସିବା ଲୋକ, ଗୋଟିଏ ବୋଲି ପୁଅ, କାର୍ତ୍ତିକ ପରି ରୂପ, ଗୁରୁପାଠରେ ଫାର୍କତ, ଆଜିବାଦେ କାଲି ରାଜଗାଦିରେ ବସିବେ, ତାଙ୍କପାଇଁ କିଏ କନ୍ୟାର ଅଭାବ ? ରଜା ଝିଅ ହେଲେ ବି ଜନ୍ମକେ ତପସ୍ୟାବଳରେ ଏହାଙ୍କ ହାତ ଧରିବେ, ତାଙ୍କପାଇଁ କଣ କନ୍ୟାର ଅଭାବ ? ଦିନ ଆଠ ଦଶଟା ଭିତରେ ଗୋଛାକୁଗୋଛା କନ୍ୟା ଟିପଣା ଆସି ଉଆସରେ ପହଞ୍ଚିଲା । କେଉଁଠିକୁ ଓକିଲ ଯାଉଛନ୍ତି, ଅନେକ ଲୋକ ଶୁଣାଶୁଣିରେ ଆପଣା ଆପଣା ପୁରୋହିତଙ୍କୁ କନ୍ୟାଟିପଣା ସହିତ ପଠାଇଦେଇଛନ୍ତି । ସାନ୍ତେ ପୁରୁଖା ପାଞ୍ଜିଆ, କରଣ, ଆଉ ପାଞ୍ଚଜଣ ଗ୍ରାମର ମୁଖଣ୍ଡ ମୁଖଣ୍ଡ କରଣ ସାନ୍ତ, ପୁରୋହିତ ମହାପାତ୍ର ପାଟଜୋଷୀମାନଙ୍କୁ ଧରି ନିରୋଳାରେ ବୁଝାବୁଝି କଲେ । ଦୁଇ ଗୁରୁଖଣ୍ଡ ମାତ୍ର ଟିପଣା ପାଖରେ ରଖି ଆଉଗୁଡ଼ିକ ଲେଉଟାଇ ଦେଲେ । ଟିପଣା ଧରି ଆସିଥିବା ଲୋକ ସମସ୍ତଙ୍କର ଖିଆଣ ପିଆଣ କଥା ଭଲରୂପେ ବୁଝିଲେ । ସମସ୍ତଙ୍କୁ ମାଣିଆବନ୍ଦୀ ଯଥା ଉପଯୁକ୍ତ ବାଟଖର୍ଚ୍ଚ ଦେଇ ମେଲାଣି ଦେଲେ । ସମସ୍ତଙ୍କ ସଙ୍ଗରେ ହସିଖୁସି ବେଭାର — ହେଲେ କାହାକୁ ନିରାଶ ବାକ୍ୟ କହିଲେ ନାହିଁ, ପଛନ୍ତେ ଦରକାର ପଡ଼ିଲେ ଟିପଣା ଅଣାଇନେବେ । ସମସ୍ତେ ବୁଝିଗଲେ, ସାନ୍ତେ ତାଙ୍କରି ଟିପଣାକୁ ପସନ୍ଦ କରିଛନ୍ତି । କେବଳ ପଦ୍ମପୁର ଜମିଦାର ରାମରଞ୍ଜନ ଦାସ ମାନ୍ଧାତା ଆଉ ସରିମରା ତାଲୁକର ଜମିଦାର ଗୋପାଳକୃଷ୍ଣ ପଟ୍ଟନାୟକ ବିଦ୍ୟାଧର ଦୁଇ ଜଣଙ୍କ କନ୍ୟାଙ୍କ କୋଷ୍ଠୀ ରହିଲା, ଓକିଲମାନେ ମଧ୍ୟ ବିଦା ହୋଇ ନାହାନ୍ତି । ଏହିପରି ଟିପଣା ଗୋଟିଆଗୋଟେଇ ବେଳେ ପ୍ରଜାପତି ଉହାଡ଼ରେ ଥାଇ ହସି ହସି ଗଡ଼ି ଯାଉଥିବେ ! ମଙ୍ଗଳକୃତ୍ୟ ପ୍ରସଙ୍ଗ ଶୁଣିଲା ବେଳକୁ ସଦାନନ୍ଦ ଅଥୟ ହୋଇ ପଡ଼ିଲେଣି, ଯଦି ବିଭା ହୋଇଯାଏ, ରାଜୀବଲୋଚନଙ୍କ ପାଖରେ ମୁହଁ ଦେଖାଇବାକୁ ବାଟ ରହିବ ନାହିଁ । ଆପେ ଚିହ୍ନା ନ ପଡ଼ି ସବୁ କାର୍ଯ୍ୟ କରିବାକୁ ହେବ । ମୁଁ କଥା ଭାଙ୍ଗୁଛି, ପିଉସା ପିଉସୀ ଶୁଣିଲେ ସର୍ବନାଶ ! ବିଭା ପ୍ରସଙ୍ଗ ପଡ଼ିଲେ ସଦାନନ୍ଦ ଲୋକମାନଙ୍କ ଆଗରେ ଖୁବ୍ ଗୋଟାଏ ଲୋକଠକାଣ ଆନନ୍ଦ ପ୍ରକାଶ କରନ୍ତି, ଲୋକେ ବୁଝନ୍ତି, କୁଅଁର ବାବୁଙ୍କ ମଙ୍ଗଳକୃତ୍ୟରେ ତାଙ୍କର ଭାରି ଆନନ୍ଦ । ଏହା ମଧ୍ୟ ସମସ୍ତଙ୍କ ପାଖରେ କହି ବୁଲନ୍ତି, ମୋ ବିଭାଲାଗି ଏତେ ତରବର କିଆଁ ? ମୂଳକଥା ଗୋବିନ୍ଦର ବିଭା ହୋଇଗଲେ ସବୁ ହେଲା । ମନରେ ବିଚାର କଲେ, ସବୁ କଥା ଗୋବିନ୍ଦ ହାତରେ କରାଇବାକୁ ହେବ । ଏହି ଘାଟିଟା ଟପି ଥରେ କଟକ ନେଇ ଯାଇ ପାରିଲେ ବସାରେ ବସି ସବୁ ଠିକ୍ କରି ନେବି ।

ଫୁଲସଞ୍ଜ ଟପି ଗଲାଣି ଗୁରୁଆଡ଼ୁ ଅନ୍ଧାର ମାଡ଼ି ଆସୁଛି, ସମସ୍ତଙ୍କ ଗୁହାଳରୁ ଧୂଆଁ ବାହାରୁଛି, ସଞ୍ଜ ଶଙ୍ଖ ବାଜି ଗଲାଣି, ବଧୂମାନେ ନଈ ଚୂଆରୁ ଜଳ ନେଇ ଗଲେଣି, ଯୋଡ଼ାଏ ଯୁବକ ଗ୍ରାମର ପଶ୍ଚିମପଟ ନଈକୂଳ ଆମ୍ବତୋଟା ଭିତରୁ ବୁଲି ବୁଲି ବାହାରି ଆସି ନଈତୁଠ ବରଗଛର ଯୋଡ଼ାଏ ଚେର ଉପରେ ବସିଲେ । ନଈଆଡ଼କୁ ଅନାଇଥାନ୍ତି । କେତେ ବର୍ଷ ହେଲା ନଈ ଦକ୍ଷିଣ କୂଳ ଖାଇ ଉତ୍ତର କୂଳ ବାନ୍ଧୁଛି, ବର ମୂଳ ଅଧାଅଧି ନଈଗର୍ଭକୁ ଯାଇ ସାରିଲାଣି, ମୋଟା ସରୁ ଢେରଗୁଡ଼ାଏ ଚେର ଆକାଶରେ ଝୁଲୁଛି ବଢ଼ିଦିନେ ସେହି ଚେରମୂଳେ ସବୁବେଳେ ପୁରୁଷେ ପୁରୁଷେ ପାଣି । ଆଜକାଲ ନଈଟା ଭୁଙ୍କା ଶୁଖିଲା ପଡ଼ିଛି, ନଈ ଭିତରେ ଧାଡ଼ିକଧାଡ଼ି ଚୂଆ । ଘରପିଛେ ଗୋଟାଏ ଗୋଟାଏ—ଯାହା ଘରେ ମଣିଷ ବଳ ବେଶି ବା କୁଟୁମ୍ବ ବେଶି, ତାହାର ଯୋଡ଼ାଏ ଚୂଆ ।

ପୁଷ ମାସଠାରୁ ନଈରେ ପାଣି ମରିଯାଏ । ଲୋକେ ବାଲି ଆଡ଼େଇ ଦେଇ ଗୁରି ପାଞ୍ଚ ହାତ ଗଭୀର ଗୋଟାଏ ଗୋଟାଏ କୂଅ ଖୋଳନ୍ତି । ଅତି ସୁନ୍ଦର ନିର୍ମଳ ଥଣ୍ଡା ପାଣି ଝରିପଡ଼େ, ଆଣ୍ଠୁଆଣି ପାଣି ଜମିଯାଏ । ସବୁ ପାଣି ତୋଳିନେଇ ଶୁଖାଇଦିଅ, ଦଣ୍ଡକ ବାଦେ ପାଣି ଯେତିକି ସେତିକି । ଫଲ୍‌ଗୁ ସ୍ରୋତ ବନ୍ଦ ହେବାର ନାହିଁ । ସଦାନନ୍ଦ କୂଳ ଉପରକୁ ଅନାଇ ଦେଖିଲେ, ଦଶ ପନ୍ଦର ହାତ ଦୂରରେ ଗୋଟାଏ କାଳିଆ ମୂର୍ତ୍ତି ଛିଡ଼ା । ଗଛ ଗୁଳ ଅନ୍ଧାରରେ ମଣିଷ ଚିହ୍ନା ଯାଉନାହିଁ; ହେଲେ ସଦାନନ୍ଦବାବୁ ଡାକ ଦେଲେ, "ଆରେ ସଇତା ! ବେଗେ ବେଗେ ଯା, ପଢ଼ାଘରେ ଆଲୁଅ ଜାଳି ଦେ, ଆମେମାନେ ଏଇଲାଗେ ଯାଉଚୁଁ ।" କାଳିଆ ମୂର୍ତ୍ତିଟି କିଛି ଉତ୍ତର ନ କରି ପଛ ବୁଲାଇ ଧୀରେ ଧୀରେ ଗୁଲିଗଲା—ମନରେ କରୁଥାଏ—ହେଉ ହେଉ, କେତେଦିନ ଲୁଚକାଳି ଖେଳିବ ଖେଳ ।

ସଦାନନ୍ଦ କଥା ଆରମ୍ଭ କଲେ, "ଗୋବିନ୍ଦ ! କଥା ତ ଠିକ୍ ଠାକ ହେବାର ଗୁଲିଲା, ଏବେ କ'ଣ କରିବୁ ?"

ଗୋବିନ୍ଦ—କ'ଣ କହୁଚୁ ସଦେଇ ଭାଇ ? ଏଇ ବିଭାଘର କଥା ନା ?

ସଦାନନ୍ଦ—ଆଉ କଥା କଣ ?

ଗୋବିନ୍ଦ—ସଫା କଥା, ମୁଁ ଉଚୁଣିକା ବିଭା ହେବି ନାହିଁ ।

ସଦାନନ୍ଦ ଶୁଣି ମନ ମଧ୍ୟରେ ଭାରି ଖୁସିଟାଏ ହେଲେ । ସେ ଭଲକରି ଜାଣନ୍ତି, ଗୋବିନ୍ଦ ଯେଉଁଟା ଧରିବ ତା'ହିଁ କରିବ, କାହାର କଥା ଶୁଣିବ ନାହିଁ, କାହାରି ଭଲ ମନ୍ଦକୁ ଗୃହିଁବ ନାହିଁ । ଗୋବିନ୍ଦର ଆଉ ଯେ ଗୁଣ ଥାଉ ପଛକେ, ଆପଣା ମତକୁ ନିର୍ଭୁଲ ଜ୍ଞାନ କରେ; ତଥାପି ଗୋବିନ୍ଦର ମନ ବଢ଼ିବା ଆଉ ଆଗକୁ ଆପଣାର ବାଟ କାଟିରଖିବା ନିମନ୍ତେ କହିଲେ, "ନାହିଁ ନାହିଁ, ସେପରି କଥା କହ ନା, ପିଉସା ପିଉସୀ ମନଦୁଃଖ କରିବେ ଯେ ? ସବୁ ଆଡ଼କୁ ଗୃହିଁ ସବୁ କଥା ବୁଝି ସମଜ କରିବା ଭଲ । ଭାରବିର ସେ ଶ୍ଳୋକଟା ତୋ ମନରେ ଅଛି ତ ?

"ସହସା ବିଦଧୀତ ନ କ୍ରିୟା-
ମବିବେକଃ ପରମ ପଦାଂ ପଦଂ ।
ବୃଣୁତେ ହି ବିମୃଶ୍ୟକାରିଣଂ
ଗୁଣଲୁବ୍‌ଧାଃ ସ୍ୱୟମେବ ସମ୍ପଦଃ ।"

ଗୋବିନ୍ଦ—ମନୁଷ୍ୟମାତ୍ରକେ ସ୍ୱାଧୀନ ଜୀବ, ଆପଣା ବିବେକ ବିପକ୍ଷରେ କାର୍ଯ୍ୟ କରିବା ନିର୍ବୋଧତାର ବିଷୟ ବୋଲି ଜ୍ଞାନ କରେଁ ।

× × × ×

ଦୁଇଜଣ ଓକିଲ ବସି ବସି ପଡ଼ି ଝାଉଁଛନ୍ତି । ସାନ୍ତ ମନ ମଧ୍ୟରେ ବିଗୁରି କଲେ, ଯୋଗ୍ୟପୁତ୍ର—ତା ମନ ନ ବୁଝି କାର୍ଯ୍ୟ କରିବା ଉଚିତ ନୁହେଁ ।

ମଦନ ପଟ୍ଟନାୟକେ ସାନ୍ତଙ୍କର କୁଟୁମ୍ବୀ ମାମୁଁ—ବଳେ ଗୋବିନ୍ଦର ଅଜା । ଦିନ ପହରକବେଳେ ସଦାନନ୍ଦ ଗୋବିନ୍ଦ ଦୁଇ ଜଣ ପଢ଼ାଘରେ ବସି ଲେଖାଲେଖି କରୁଛନ୍ତି, ପଟ୍ଟନାୟକ ଅଜା ବାଡ଼ି ଖଣ୍ଡିଏ ଧରି ଠୁକୁରୁ ଠୁକୁରୁ ହୋଇ ନାତିମାନଙ୍କ ପାଖରେ ପହଞ୍ଚିଗଲେ । ଚତୁର ସଦାନନ୍ଦ ଅଜାଙ୍କ ଆଗମନର କାରଣ ବୁଝିପାରି ଗୋବିନ୍ଦକୁ ଟିପିଦେଲେ—ଏଣେ ହସି ହସି, ଆସନ୍ତୁ ଅଜା ସାନ୍ତ—ଆସନ୍ତୁ ଅଜା ସାନ୍ତ, କହି ବାହୁ ଧରି ଗୋଟାଏ ଚଉକିରେ ବସାଇ ଦେଲେ । କଟକ କଥା, କଲେଜ କଥା, କଟକରେ ଖିଆପିଆ ଏଣୁ ତେଣୁ ତେର କଥା ହେଲା । ଅଜା ମରହଟ୍ଟିଆ ବୁଢ଼ା ହେଲେ କଣ ହେଲା, ମାମଲତ ବୁଝନ୍ତି, ପୁରୁଖା ଲୋକ ପହଞ୍ଚିଯାଇ ଟାଉପରି ବିଭାଘର କଥାଟା ପକାଇ ଦେଲେ

ସୁନ୍ଦର ଦଶିବ ନାହିଁ ତ । କେତେବେଳ ବାଦେ ଦୁଇ ଖ୍ଚାର ଥର ଗଳା ଖଙ୍କାର ଦେଇ କହିଲେ, "ହୋଇ ରେ ସଦେଇ, ହୋଇ ରେ ଗୋବନ୍ଦ ! ବୈଷ୍ଣବ ବାବୁ କଣ କହୁଛନ୍ତି ?" ଦୁଇ ଜଣଯାକ ପଚାରିଲେ, "କଣ, ଅଜା କଣ ?"

ଅଜା—ଆରେ ଉଦାରିଆ ! କିଛି ଜାଣନ୍ତି ନାହିଁ । ଗାଁଯାକ ହାଟ ବସିଛି, ପୁଞ୍ଜାକୁ ପୁଞ୍ଜା ଓକିଲ ଯା ଆସ କରୁଛନ୍ତି; କିଛି ଜାଣନ୍ତି ନାହିଁ ! ହେଲା ହେଲା, ନ ଜାଣିଲ । ମୁଁ କହୁଛି କଣ କି, ତୁମ୍ଭମାନଙ୍କର ତ ମଙ୍ଗଳକୃତ୍ୟ ଦିନେ ବଡ଼ିବ ସ୍ୱର୍ଗଉବଶ ପରି ବୋହୂ ଯୋଡ଼ିଏ ଆସିବେ, ମୁଁ କହୁଛି କଣ କି, ଏହି ଶୁଭ-କାର୍ଯ୍ୟଟା ଚଞ୍ଚଳ ବଡ଼ିଯାଉ । ଆଖିସୁଲଭ ଦେଖିବୁଁ, ଝିଙ୍ଗା ପିଠା ଖାଇବୁଁ, ପାଟଜଥା ପିନ୍ଧିବୁଁ । ଆମ୍ଭମାନେ ଆଉ କେତେ ଦିନ ? ସେହି ଶୁଭକାର୍ଯ୍ୟ ଦିନକୁ ଚାହିଁବସିଛୁଁ ପରା । ଢେର ଢେର ଜାଗାରୁ କନ୍ୟାର ବାଡନ ଆସିଥିଲା, ଯୋଡ଼ିଏ କନ୍ୟା କଥା ସମସ୍ତଙ୍କର ବଡ଼ ପସନ୍ଦ ହୋଇଛି, ଖୁବ୍ ବଡ଼ ଜମିଦାର ଝିଅ । ପଦ୍ମପୁର ଆଉ ସରମଣ ଜମିଦାରମାନଙ୍କ ନାମ ଶୁଣିଛ ତ ? ସେହିମାନଙ୍କ ଝିଅ, ଅପୂର୍ବ ସୁନ୍ଦରୀ, ପଢ଼ାଶୁଣାରେ ପାରଙ୍ଗତ, ରଜାଙ୍କୁ ରାଣୀ ଯୋଖିଯିବ ଏକା । ସବୁ ଠିକଠାକ ହୋଇଗଲାଣି, ବାପା ସାଆନ୍ତ ଖାଲି ତୁମମାନଙ୍କ ମୁହଁକୁ ଚାହିଁଛନ୍ତି । ତୁମମାନଙ୍କ ପାଟିରୁ ଯିମିତି ବାହାରିବ—ହଁ,ସିମିତି ସମସ୍ତେ ଦିନରାତି ଲାଗିଯିବା । ଦିନ ପନ୍ଦରଟା ଭିତରେ ସବୁ ଠିକଠାକ ହୋଇଯିବ । ସ୍ୱର୍ଗଅପ୍‌ସରା ପରି ବୋହୂ ଯୋଡ଼ାକ ଏକାବେଳକେ ଉଆସ ଭିତରେ ଦାଖଲ । ଏହି ଜ୍ୟେଷ୍ଠ ମାସ ଭିତରେ ତିନଟା ଲଗ୍ନ ଅଛି, ତେଣିକି ଦେବଶୟନ କାଳ, ଶୁଭକାର୍ଯ୍ୟ ମନା ।

ସଦାନନ୍ଦ ଭାରି ଚତୁର, ସବୁ କାର୍ଯ୍ୟ କରିବେ, ଚନ୍ଧା ପଡ଼ିବେ ନାହିଁ । "ପଙ୍କଜ ଯେହ୍ନେ ପଙ୍କେ ଥାଇ । ତା ଦେହେ ପଙ୍କ ନ ଲାଗଇ ।" ଅଜାଙ୍କ କଥାରେ ଉତ୍ତର ଦେବାଲାଗି ଇସାରା କରିଦେଲେ । ଗୋବନ୍ଦ କହିଲେ, "ଅଜା ! ଇଂରେଜୀ ପାଠ ନ ପଢ଼ିଥାନ୍ତୁ ତ ନାହିଁ, ଦଶବର୍ଷ କାଳ ବିଦେଶରେ ପଢ଼ିଛୁଁ । ବାପା ସାନ୍ତ ଆମ୍ଭମାନଙ୍କ ପଛରେ ମାସକୁ ମାସ ଥଳକୁ ଥଳ ଟଙ୍କା ସାରୁଛନ୍ତି । ଆଉ କେତେଟା ମାସ, ଅଧିକ ନ ପଢ଼ୁଁ, ଆସନ୍ତା ମାର୍ଚ୍ଚ ମାସରେ ଏଫ୍. ଏ. ପରୀକ୍ଷା ଦେଇ ଚାଲି ଆସିବୁଁ, ତେଣିକି ଆଉ ନ ପଢ଼ିଲେ ବି ଚଳେ ।"

ସଦାନନ୍ଦ କହିଲେ, "ଅଜା ! ଗୋବନ୍ଦ ଯାହା କହିଲା, ସବୁ ତ ଶୁଣିଲେ । ଆପଣ ତ ବୁଦ୍ଧିମାନ୍ ଲୋକ, ଆମ୍ଭେମାନେ ଆପଣଙ୍କ ପାଖରୁ ବୁଦ୍ଧି ଶିଖିବୁଁ । ବୁଝନ୍ତୁ, ଏଫ୍. ଏ. ପାସ୍ ନ କରି ଉଚ୍ଛୁଣିକା ପଡ଼ାରେ ବଖାଡ଼ କଲେ ବାର ବରଷର ତପ ଶୁଖଆପୋଡ଼ାରେ ଯିବ । ଆପଣମାନଙ୍କ ଆଜ୍ଞା ମୁଣ୍ଡେଇ ନେବୁଁ, ଦିନ କେତେଟା ସବୁର କରନ୍ତୁ ।

ଅଜା—ହୋଇ ରେ ସଦାନନ୍ଦ ! ଫେଁ-ଫେଁ ପାସ ନ କଲେ ଇଂରେଜୀ ପାଠ ହୁଏ ନାହିଁ, ଏ କଥା ଆମକୁ ଜଣା । ମାତ୍ର ଆମେ କହୁଛୁଁ, ତୁମ୍ଭେମାନେ ବିଭା ହୋଇ ଚାଲିଯାଅ, ବୋହୂମାନେ ଘରେ ରହିବେ । ତୁମ୍ଭେମାନେ କଟକରେ ରହି ଫେଁ ଫେଁ ପାସ କର ।

ସଦାନନ୍ଦ—ନାହିଁ ଅଜା, ଏବେ ଆଉ ସେ ଆଇନ ଚଳୁ ନାହିଁ, ବିଭା ହେଲେ ଆଉ ଏଫ୍. ଏ. ପାସ୍ କରିପାରିବା ନାହିଁ ।

———

-୧୪-

## କଟକ ଯାତ୍ରା

ସଇତା ଆଜକାଲ ଖୁବ୍ ଜଗି ବଡ଼ ସାନ୍ତଙ୍କ ଚାଲିଚଳନକୁ ଅନାଇଛି । ସେ ଭଲରୂପେ ବୁଝିଲାଣି, ଭିତରେ ଭିତରେ କଣ ଗୋଟାଏ ବଡ଼ ପ୍ରସଙ୍ଗ ଚାଲୁଛି ।

ଏତେ ଜଗିଜାଗି ମଧ୍ୟ କଥାର ମୂଳଟା ଧରି ପାରୁ ନାହିଁ । ସଇତା ବଡ଼ ସାନ୍ତଙ୍କୁ ଚିହ୍ନେ, ବଗୁର କଲ, କେତେବେଳେ କଣଟାଏ ବିପଦ ପକାଇ ଦେବା ତାଙ୍କୁ ବଡ଼ କଥା ନୁହେଁ । ହେଲେ ଯାହା ଇଚ୍ଛା ତାହା ହେଉ, ମୋ ସାନ୍ତ ଦେହକୁ ଆଞ୍ଚ ନ ଲାଗିଲେ ହେଲା । ସଇତା ଦେଖୁଛି, ଦିନେ ଛଡ଼ା, ଦିଦିନ ଛଡ଼ା ଟପା ପାଇକ ଚିଠି ଧରି ଆସୁଛି । ସମସରପୁର ଉଆସ ପାଇକ ମଧ୍ୟ ଦିନେ ଦିନେ ଚିଠି ଧରି ଆସେ । ହେଲେ ସେ ପାଇକେ ଗଡ଼ଦୁଆରଯାଏ ଆସନ୍ତି ନାହିଁ । ଗାଁ ପଶ୍ଚିମ ପଟ ଆମ୍ବ ତୋଟାରେ ବସିଥାନ୍ତି, ବଡ଼ ସାନ୍ତ ଧଞ୍ଚସଞ୍ଚିଆ ଯାଇ ସେମାନଙ୍କ ହାତରୁ ଚିଠି ନେଇ ଆସନ୍ତି । ମଧ୍ୟ ଦିନେ ଦିନେ ଚାଲଟା ଚିଠି ଦିଅନ୍ତି । ସଇତା ଏହା ମଧ୍ୟ ଜହାଡ଼ରେ ଥାଇ ଦେଖିଛି, ଗୁଡ଼ାଏ ଖିଷା ବଡ଼ ସାଆନ୍ତ ଆପେ ଚଢ଼ି ଚିରି ପକାନ୍ତି, କେତେଖଣ୍ଡ ମାତ୍ର ସାନ ସାଆନ୍ତଙ୍କ ହାତକୁ ଦିଅନ୍ତି ।

ଦିନେ ସକାଳେ ଦିନ ପହରକ ସରିକି ଟପା ପାଇକ ଗୋଟାଏ ବଡ଼ ଲମ୍ବ ଚିଠିଧରି ପହଞ୍ଚିଲା । ଚିଠିଟା ରେଜେଷ୍ଟରି, ଇଂରାଜୀରେ ଲେଖା । ଦୁଇ ସାଆନ୍ତ ଏକଯାଗାରେ ବସିଥିଲେ । ବଡ଼ ସାଆନ୍ତ ପାଇକ ହାତରୁ ଚିଠି ଖଣ୍ଡ ନେଲେ, ଆପେ ନ ପଢ଼ି ସାନ ସାଆନ୍ତଙ୍କ ହାତକୁ ବଢ଼ାଇ ଦେଲେ । ସାନ ସାଆନ୍ତ ଲଫାଫା ଫିଟାଇ ପ୍ରଥମେ ମନ ମଧ୍ୟରେ ଥରେ ପଢ଼ିଗଲେ । ଚିଠିରେ କଣ ଲେଖାଅଛି, ସଦାନନ୍ଦ ବାବୁ ପଚାରିବାରୁ ଗୋବିନ୍ଦ ବାବୁ ପାଠକରି ପଢ଼ିଲେ । ଚିଠିଖଣ୍ଡି ଇଂରେଜୀରେ ଲେଖା, ସେଥିର ଅର୍ଥ ଏହି —

ସାନ୍ତ ସଦାନନ୍ଦ ପଟ୍ଟନାୟକ ଓ କୁଅଁର ସାନ୍ତ ଗୋବିନ୍ଦଚନ୍ଦ୍ର ପଟ୍ଟନାୟକ କଲେଜରେ ଦ୍ୱିତୀୟ ବାର୍ଷିକ ଶ୍ରେଣୀର ଛାତ୍ରମାନଙ୍କ ଜାଣିବା କାରଣ ଲେଖା ଯାଉଅଛି କି, ଆସନ୍ତା ଜୁନମାସ ୨ ତାରିଖ ସୋମବାର ତୁମ୍ଭମାନଙ୍କ ପରୀକ୍ଷା ଫଳ ବାହାରିବ । ଉକ୍ତ ତାରିଖରେ ତୁମ୍ଭମାନଙ୍କ ଉପସ୍ଥିତ ନିତାନ୍ତ ଆବଶ୍ୟକ । ଇତି ।

(ସ୍ୱାକ୍ଷର) ଡବଲିଉ ଜୋନ୍ସ
ପ୍ରିନ୍ସିପଲ, କଟକ କଲେଜ ।

ସାଙ୍ଗେ ସାଙ୍ଗେ ଉଆସ ଭିତରେ ଆଉ ଗାଁଯାକ ଚହଳ ପଡ଼ିଗଲା—ବଡ଼ ସାହେବ ପରୁଆନା ପଠାଇଛି, ବାବୁ ସାନ୍ତମାନେ କଟକ ଗଲେ ଇଂରେଜୀ ପାସ୍ କରିବେ ।

ପିଲା ଦୁହେଁ ଲଫାଫାଟା ଧରି ସାନ୍ତଙ୍କ ପାଖକୁ ଗଲେ । ସଦାନନ୍ଦ ଚିଠିଖଣ୍ଡ ତାଙ୍କ ହାତକୁ ବଢ଼ାଇ-ଦେଲେ, ସେଥିରେ ଲେଖା ବିଷୟ ଓଡ଼ିଆରେ ତର୍ଜମା କରି ବୁଝାଇଦେଲେ । ସାନ୍ତ ଲଫାଫାଟା ଓଲଟ ପାଲଟ କରି ଦୁଇ ତିନି ଥର ଦେଖିଲେ—'ଗୋବିନ୍ଦ—ଗୋବିନ୍ଦ ଶ୍ରୀହରି—ତୋ ଇଚ୍ଛା' କହି ସଦାନନ୍ଦ ହାତକୁ ବଢ଼ାଇ ଦେଲେ ।

ଲଫାଫାଟା ଧରି ପିଲାସାନ୍ତ ଦୁହେଁ ଉଆସ ଭିତରକୁ ଗଲେ । ସାଆନ୍ତାଣୀ ଆଗରୁ ଶୁଣି ପାରି ଗାଲରେ ହାତ ଦେଇ ବସିଛନ୍ତି । ପିଲା ଦୁହିଙ୍କୁ ପାଖରେ ଦେଖି କହିଲେ, "ଆରେ ସଦେଇ, ତୁମେମାନେ ଯେ କହୁଥିଲ ଦୁଇ ମାସ କୋଡ଼ିଏ ଦିନ କଲେଜ ବନ୍ଦ—ମୁଁ ଦିନ ଗଣୁଛି, ଆହୁରି ତ ସତର ଦିନ ବାକି—ଆଜି ଏ ଚିଠି କଣ ରେ ?"

ସଦାନନ୍ଦ—ଆଜ୍ଞା ହଁ ପିଉସୀ, ମୁଁ ଅନ୍ଦାଜ କରି କହୁଥିଲି । ଏଟା ହେଲା ସରକାରୀ ମାମଲା, ଯେତେ-ବେଳେ ଯେ ହୁକୁମ ଜାରୀ ହେବ, ତାକୁ ମାନିବାକୁ ହେବ ।

ସାଆନ୍ତାଣୀ—ତୁମେମାନେ ଏତେ ଇଂରେଜୀ ପାଠ ପଢ଼ିଲଣି, ଆଉ ପାଠରେ ଲୋଡ଼ା ନାହିଁ, କଟକ ଯା ନା ।

ସଦାନନ୍ଦ—ଆଜ୍ଞା, ଦଶ ଦଶ ବରଷ କାଳ କଟକରେ ରହି ପଢ଼ିଲୁ, ଆଉ କେତେଟା ମାସ ଲାଗି କଣ ସବୁ ମାଟି ହେବ ?

ମା'ଙ୍କ ଆଖି ଲୋତକରେ ପୂରିଗଲା, ପଣନ୍ତ-କାନରେ ପୋଛି ପକାଇ ତୁନି ହେଲେ ।

ଆଜି ହେଲା ଶନିବାର, ସୋମବାର ରହିଲା ଆଉ ଯୋଡ଼ାଏ ଦିନ । କାଲି ରବିବାର ଯାତ୍ରା କରି ନ ବାହାରି ପଡ଼ିଲେ ଠିକ୍ ବେଳ ମାଫିକେ ସୋମବାର କଟକରେ ପହଞ୍ଚିହେବ ନାହିଁ । ଯାତ୍ରାର ବନ୍ଦୋବସ୍ତ ଲାଗିଲା ।

ଖବର ପାଇଲା ବେଳକୁ ମା ସାଆନ୍ତାଣୀ ଠାଏ ବସି-ଯାଇଛନ୍ତି, ଦିନ ଦିପହର ଗଡ଼ି ଗଲାଣି । ପୋଇଲା ମଙ୍ଗୁଳି ମର୍ଦ୍ଦନ ଗିନା, ପୋଛା, ପାଟ ଶାଢ଼ୀ ଧରି ଘଡ଼ିଏ ହେଲା ପାଖରେ ଛିଡ଼ା ହୋଇଛି । ଆଜ୍ଞା, ଆଜ୍ଞା ଦେହପାଣି ବେଳ ଗଡ଼ିଗଲା, ଦେବାର୍ଚ୍ଚନ ବେଳ ଗଡ଼ି ଯାଉଛି— ଦୁଇ ତିନି ଥର ହାତ ଯୋଡ଼ି ଜଣାଇଲାଣି ।

ସାନ୍ତଙ୍କୁ ପାଖକୁ ଡକାଇ ସାଆନ୍ତାଣୀ କହିଲେ, "ଶୁଣ, ପିଲାଯୋଡ଼କୁ କଟକ ପଠାଇବାକୁ କେତେ-ବେଳେ ମୋ ମନ ଡାକୁ ନାହିଁ । ମୋ ମନଟା କମିତକା ଛିଁକଉଛି, ତୁମେ ନ ହୁଏ ସାଙ୍ଗରେ ଧରି ଯାଅ ।"

ସାଆନ୍ତଙ୍କର କୌଣସି କଥାରେ ଶୋଚନା ନ ଥାଏ । ତାଙ୍କର ଦୃଢ଼ ବିଶ୍ୱାସ, ସବୁ ଗୋବିନ୍ଦଜୀଉଙ୍କ ଇଚ୍ଛା । ସୁଖ ଦୁଃଖର ହାନି ଲାଭ ସବୁ ତାଙ୍କର ବିଧାନ, ମନୁଷ୍ୟର କିଛି ଆୟତ୍ତ ନାହିଁ, ମନୁଷ୍ୟର ସବୁ ଚେଷ୍ଟା ବୃଥା । "ଗୋବିନ୍ଦ—ଗୋବିନ୍ଦ—ଶ୍ରୀହରି—ସବୁ ତୋ ଇଚ୍ଛା" ଏତିକି କହି ଚାଲିଗଲେ । ସାନ୍ତାଣୀ ସାଆନ୍ତଙ୍କ ମନକଥା ଭଲକରି ଜାଣନ୍ତି, କିଛି ନ କହି ତୁନି ହେଲେ ।

ରବିବାର ସକାଳେ କଟକ ଯାତ୍ରା ପାଇଁ ସବୁ ପ୍ରସ୍ତୁତ । ସଇତା ସବୁ ଠିକଠାକ କରି ରଖିଛି, ତାକୁ କିଛି ବୋଲିବାକୁ ହୁଏ ନାହିଁ ।

ପିଲା ଦୁହେଁ ମାତାଙ୍କ ପଦରେଣୁ ମୁଣ୍ଡରେ ଲଗାଇ ମେଲାଣି ହେବାବେଳେ ସା'ନ୍ତାଣୀ ଓଠକୁ କାମୁଡ଼ି ରଖିଥାନ୍ତି । ପିଲାମାନଙ୍କ ଦହି ମାଛ ବେଳେ କାନ୍ଦ-ପକାଇବାଟା ଅମଙ୍ଗଳର ଚିହ୍ନ । ହେଲେ ଲୁହ ବୋଲ ମାନୁ ନାହିଁ, ଦୁଇ ଆଖିରୁ ଝର-ଝର ହୋଇ ବହି ପଡ଼ୁଛି । ସଦାନନ୍ଦକୁ କୁଣ୍ଢେଇ ପକାଇ କହିଲେ, "ଆସ ବାପା ଆସ, ଗୋବିନ୍ଦଜୀଉଙ୍କ ଚରଣୋଦକ ସେବା କରି ଧଣ୍ଡା ବେକରେ ଲମ୍ବାଇ ସିଧାରିବ । ଶୁଣ ବାପ ସଦେଇ, ଗୋବିନ୍ଦଟି ସାନ ପିଲା, ତାହାର କିଛି ବୁଦ୍ଧି ହୋଇନାହିଁ । ବେଳ ମାଫିକେ ଦିଟା ସାରିବ, ବେଳ ମାଫିକେ ନଦେଇବ । ରାତିରେ ଘରୁ ବାହାରିବ ନାହିଁ । ଆସ ବାପା ଆସ, ଗୋବିନ୍ଦଜୀଉ ତୁମ୍ଭମାନଙ୍କୁ ରକ୍ଷା କରନ୍ତୁ ।"

ଟପା ଟେଠି ପହଞ୍ଚିବାରୁ କଟକ ଯାତ୍ରା ଏତେ ଶୀଘ୍ର ହେଲା ଯେ, ଯାତ୍ରାପାଇଁ ଗୋଟିଏ ଶୁଭଦିନ ଧରିବା କଥା କାହାରି ମନରେ ପଡ଼ି ନାହିଁ । ରବିବାର ସକାଳେ ପାଟଜୋଷୀଏ କାଖରେ ତାଳପତ୍ର ପାଞ୍ଜି ବିଡ଼ା, ହାତରେ ବାଡ଼ି ଖଣ୍ଡିଏ ଧରି ଲସରପସର ହୋଇ ଧାଇଁଛନ୍ତି । ଉଆସରେ ପହଞ୍ଚିଲା ବେଳକୁ ସା'ନ ସାନ୍ତ ଦୁହେଁ ସବାରିରେ ବିଜେ ହୋଇ ସାରିଲେଣି । ପାଟ-ଜୋଷୀଏ କାହାରିକୁ କିଛି ନ ବୋଲି କଚେରିଘର ଏକ କୋଣରେ ବାଡ଼ିକୁ ଆଉଜି ବସିଗଲେ । ପିଲାମାନଙ୍କ ସବାରି ବାହାରିଗଲା ବାଦେ ସାନ୍ତଙ୍କ ନଜର ହଠାତ୍ ପାଟଜୋଷୀଙ୍କ ଉପରେ ପଡ଼ିଗଲା । "ମଲା ଯା, ପାଟ-ଜୋଷୀଏ, ତୁମକୁ ଖବର ଦେବାକୁ ଭୁଲି ଯାଇଛୁଁ । ଦେଖିଲ, ଦେଖିଲ, ଆଜକୁ ଯାତ୍ରା ଦିନଟା କପରି ?"

ପାଟଜୋଷୀ—ଆଜ୍ଞା ।

ସାନ୍ତେ ଦେଖିଲେ, ପାଠଜୋଷୀଙ୍କ ମୁହଁଟା ଶୁଖି ଯାଇଛି, ତୁନି ହୋଇ କାଠଟି ପରି ବସିଛନ୍ତି ।

ସାନ୍ତେ—ହେଉ ହେଉ, ପାଞ୍ଜିଟା ବେଳେ ଦେଖ ।

ପାଠଜୋଷୀଏ ଅଣ୍ଟିରୁ ଝଡ଼ଗୋଟାକଟା କାଢ଼ି କୁଅଁର ବାବୁଙ୍କ କୋଷ୍ଠୀଟା କାଢ଼ିଲେ—ଉଆସର ସମସ୍ତଙ୍କ କୋଷ୍ଠୀ ତାଙ୍କୁ ଜଣା । ଦୁଇ ଚାରିଟା ମାତ୍ର ଅଙ୍କ ତଳେ ଲେଖିଲେ । ପାଞ୍ଜିବିଡ଼ାକୁ ଦୁଇ ତିନି ଥର ଅନାଇ ତୁନି ହୋଇ ବସିଲେ ।

ସାନ୍ତେ—କଣ ଦେଖିଲ ପାଠଜୋଷୀଏ ?

ପାଠଜୋଷୀ—ଆଜ୍ଞା ।

ସାନ୍ତେ—ବାବୁମାନେ ତ ଯାତ୍ରା କରି ଗଲେଣି, କଣ ଦେଖିଲେ, ସବୁ କଥା କହନ୍ତୁ ।

ପାଠଜୋଷୀ ନିଃଶ୍ୱାସଟାଏ ପକାଇ କହିଲେ, "ଆଜି ଅଶ୍ଳେଷା ଏକ ଦଣ୍ଡ ଛ ଲିତ୍ୟା ଦୁଇ ବିଳିତା ଭୋଗ ଯାଇ ମଘା ଆରମ୍ଭ । ଏହି ସନ୍ଧି ବେଳଟାରେ ଯାତ୍ରା ଆରମ୍ଭ ହୋଇଛି । ପୁଣି ତେତିକବେଳେ ବିଷ୍ଟି ଯୋଗ ଆରମ୍ଭ । ଆଉ ପ୍ରତିପତ୍ ନବମୀ ପୂର୍ବେ ରାମରୁଦ୍ରାଷ୍ଟ ପାବକେ, ଷଷ୍ଠୀ, ଚତୁର୍ଦ୍ଦଶୀ ପଶ୍ଚାତ୍—କଟକ ଯାତ୍ରାକୁ ହେଲା ସମ୍ମୁଖ ଯୋଗିନୀ । ଆହୁରି ମଧ୍ୟ ଆଜି ଧନୁ ଚନ୍ଦ୍ର, କୁଅଁର ବାବୁଙ୍କ ବୃଷ ରାଶିକୁ ହେଲା ଅଷ୍ଟମ ଚନ୍ଦ୍ର, ଆଜି ଉଦୟକାଳଟା ବି ଯାତ୍ରାପାଇଁ ଶୁଭ ନୁହେଁ, ତେରଗୁଡ଼ାଏ ଅଲକ୍ଷଣ ।

ସାନ୍ତ "ଗୋବିନ୍ଦ—ଗୋବିନ୍ଦ—ଶ୍ରୀହରି—ତୋ ଇଚ୍ଛା ।" ଛୁମୁକରଣ କହିଲେ, "ଯାହାହେଉ ଇଂରାଜୀ ପଢ଼ୁଆମାନେ ଏସବୁ କଥା ମାନନ୍ତି ନାହିଁ । ଯେ ନ ମାନିବେ ତାଙ୍କପାଇଁ କଣ ?"

କଉଶୁଲ୍ୟା ବୁଢ଼ୀ ଦାଈ କୁଅଁର ସାନ୍ତଙ୍କ ଦହି ମାଛ ଦେଖିବାକୁ ଆସିଥିଲା, କଥା ଶୁଣି ଯାଙ୍ଗେ ହାଙ୍ଗେ ଯାଇଁ ମା ସାନ୍ତାଣୀଙ୍କୁ ଜଣାଇଲା । ସାନ୍ତାଣୀ ତ ଅଥୟ ହୋଇ ପଡ଼ିଲେଣି । ଚଞ୍ଚଳ ବାକ୍ସ ଫିଟାଇ ଶଏ ଆଠଟଙ୍କା ବାହାର କରି ପକାଇଲେ, ମୁଣ୍ଡରେମାରି ସାନ୍ତଙ୍କ ପାଖକୁ ପଠାଇଲେ, ଗ୍ରହ ଅବଲ ଶାନ୍ତି ନିମନ୍ତେ କହି ପଠାଇଲେ ।

ପାଠଜୋଷୀଙ୍କ ପରାମର୍ଶରେ ବିଷ୍ଣୁ ସହସ୍ରନାମ, ଦୁର୍ଗାସହସ୍ର ନାମ ଜପ, ଚଣ୍ଡୀପାଠ, ଶିବଙ୍କଠାରେ ସହସ୍ର କୁମ୍ଭ, ଗୋବିନ୍ଦଜୀଉଙ୍କ ପାଦପଦ୍ମରେ ଲକ୍ଷେ ତୁଳସୀ ପତ୍ର ଚଢ଼ାଇବା ସକାଶେ ସାତ ଜଣ ବ୍ରାହ୍ମଣ ବରଣ ହୋଇ ଗୁଆ ଟେକି ନେଲେ । ପାଠଜୋଷୀଏ କୁଅଁର ବାବୁଙ୍କ କୋଷ୍ଠୀର ଦଶା ଅବଲ ବିଷୟ ଭଲ କରି ଗଣାଗଣି କରି ଦେଖିଲେ, ବର୍ତ୍ତମାନ ଶନି ମହାଦଶାରେ ଶନି ଅନ୍ତର—ଶନି ପ୍ରତ୍ୟନ୍ତର । ତେବେ ଶନି ହେଉଛି ନିଧନାଧିପତି, ଅଛି ଜାୟା ସ୍ଥାନରେ । କୁଅଁର ବାବୁଙ୍କର ତ ମଙ୍ଗଳକୃତ୍ୟ ବଡ଼ି ନାହିଁ । ଏଥିକୁ ଏ ଗ୍ରହ ଅବଲ ବାଧିବ ନାହିଁ । ଯାହାହେଉ, ଶନିତୁଷ୍ଟି ଶାନ୍ତି ନିମନ୍ତେ ଗୋଟାଏ ଗ୍ରହଭଣ୍ଡାରିକା ଯାଗ କରିବା ଆବଶ୍ୟକ । ଆସନ୍ତା କାଲି ଯାଗର ଡାବ ଦାଖଲ କରିବାର କଥା ହେଲା ।

ପୁରୋହିତ ମହାପାତ୍ରେ ତ୍ରିଲୋଚନ ତିହାଡ଼ିଏ କହିଲେ, "ନାହିଁ, ନାହିଁ ପାଠଜୋଷୀଏ, ଗ୍ରହଭଣ୍ଡାରିକା ଯାଗର ବିଶୁଦ୍ଧ ଡାବ ଆମ ଘରେ ଅଛି, ପୁରୁଣା ପାଞ୍ଜିରେ ଦଦେଇଙ୍କ ହାତଲେଖା । ମୂଳକରେ ଯାହାର ଯାଗ ହୁଏ, ଦଦେଇଙ୍କ ପାଞ୍ଜିରୁ ଉତାରି ନେଇଯାନ୍ତି ।"

———

-୧୫-

## ଅନୁଷ୍ଠାନ

ଏଥର କଟକ ହାଲଚାଲ ଦେଖି ସଇତା ତ କାବା ହୋଇଗଲାଣି । କଥା କଣ ? ବଜାରଯାକ ଦେଣା । ଟଙ୍କା ତହବିଲରେ ନ ଥିବାରୁ ଦିନେ ଦିନେ ନଗଦ'ତ ସଉଦା କଣା ହୋଇପାରୁ ନ ଥିଲା, ହଠାତ୍ ଏତେ ଗୁଡ଼ାଏ ଟଙ୍କା କାହୁଁ ଅଇଲା ? ସେଦିନ ଦେଖିଲି, ବଡ଼ ସାନ୍ତ ବିଡ଼ାଏ ନୋଟ ବାନ୍ଧିଥିଲେ, ମୋତେ ଦେଖି ଚଞ୍ଚଳ ଚାକି ପକାଇଲେ । ବଡ଼ ସାନ୍ତଙ୍କର ଠିକ୍ ଲେଖାପଡ଼ା ହିସାବକିତାବ ବୋଲି ଗୋଟାଏ କେବେ ଦିନ ନ ଥାଏ । ଏଣେ ଟଙ୍କା କଉଡ଼ିକୁ ଖାତର ନାହିଁ । ହିସାବ ନାହିଁ, କିତାବ ନାହିଁ; ପଚରା ଉଚରା ନାହିଁ, ଦୋକାନଗୁଡ଼ାକ ଯେ ଯେତେ ଟଙ୍କା କହୁଛି ବଡ଼ାଇ ଦେଉଛନ୍ତି । କଟକିଆ ବେପାରୀ ଭଲ ପଟାଏ ଗ୍ରମାଜନୀ ଚଢ଼ାଉଥିବେ । ମୁଁ ତ ଦେଖିଛି, ଉଆସରୁ ଆସିବା-ବେଳେ ଉଆସକରଣ କଂକ ଖରଚ ସକାଶେ ବଡ଼ ସାନ୍ତଙ୍କ ହାତରେ ଦେଡ଼ଶ ଟଙ୍କା ଦେଇଥିଲେ । ସେଥି ଭିତରେ ଖଣ୍ଡେ ବି ତ ନୋଟ ନ ଥିଲା । ଦୋକାନ ସଉଦା ସାହୁ ଏକା ତ ଦେଢ଼ଶ ଟଙ୍କା ନେଇଗଲା । ଜକୁଣିକା ବି ତ ପେଟରାରେ ଟଙ୍କା ଭର୍ତ୍ତି, ମୁଁ ଉଠାଇ ପାରୁ ନାହିଁ । ଆହୁରି ଗୋଟାଏ କଥା ବି ଦେଖୁଛି, କୁଅଁର ସାନ୍ତ ନ ଥିବାବେଳେ ବଡ଼ ସାନ୍ତଙ୍କର ଟଙ୍କାର କାରବାର । ଆମର କଣ ରେ ବାବୁ—ବରଜାତି ପଣରେ ଆସି ଯୁଆ କଉଡ଼ିଖେଳ କଥା ବୁଝିବା ?

ଆହୁରି ବି ଗୋଟାଏ କଥା । ଏହି ଯେ ରାଜୀବ ବାବୁ ଟଙ୍କା ନଅଣ୍ଟ ହେବାରୁ ବୋଡ଼ିଂରୁ ବାହାରି ଯାଇ ଯୁ ତା ବସାରେ ଗୁଞ୍ଜି ହେଉଥିଲେ, ଏବେ ବଡ଼ ଦୋତାଲା ବସା ଦେଖେ କିଏ ? ଖାଲି ଏତିକି ନୁହେ, ରାତି ଭୋଜଟା ମଝିରେ ଯୋଡ଼ାଏ ଦିନ ବି ଫାଙ୍କ ଯାଉ ନାହିଁ । କଣ ପାସ୍ ହେବ ବୋଲି ଚଞ୍ଚଳ ଉଆସରୁ ଧାଇଁ ଆସିଲେ, କାହିଁ ? ପାସ୍, ନା ଫାସ୍—ଲାଗିଛି ଭୋଜନ ଟଙ୍କା ଝମ୍ଝାମ- ଲାଗିଛି ଫୁସରଫାସର କଥା ! ସେମାନେ ଯାହା ଇଚ୍ଛା କରନ୍ତୁ, ମୋ ସାନ୍ତଙ୍କୁ ଭଲ କରି ଜଗିଥିଲେ ମୋ ପଇଟି ତୁଟିଲା ।

ସନ୍ଧ୍ୟାବେଳେ ବଡ଼ ସାନ୍ତ ରେଷେୟାକୁ ଡାକି କହିଦେଲେ, "ଆଜି ରାତିରେ ରାଜୀବ ବାବୁଙ୍କ ବସାରେ ନିମନ୍ତ୍ରଣ, ତୁମ୍ଭେମାନେ ଆପଣାର ରୋଷେଇବାସ କରି ଖିଆପିଆ କର ।" ।ଇତା ଶୁଣି ମନ ମଧ୍ୟରେ ଠିକ୍ କଲା, ଯେପରି ହେଉ ଆଜି ରାତିରେ ଲୁଚି ଲୁଚି ଯାଇ କଥାଟା କଣ ଦେଖିବାକୁ ହେବ ।

ସନ୍ଧ୍ୟାବେଳେ ସାନ୍ତମାନେ ବସାରୁ ବାହାରିଯିବା ସମୟରେ ବଡ଼ ସାନ୍ତ ଡାକ ଦେଇ କହିଲେ, "ଆମ୍ଭମାନଙ୍କ ବସାକୁ ବାହୁଡ଼ିବା ମଠ ହେବ, ବୁଝି ସାବଧାନ, ବସାରୁ ଗୋଡ଼ କାଢ଼ିବୁ ନାହିଁ, ଢେର ଢେର ରକମ ଟଙ୍କା ପଇସା ଅଛି, କଟକ ଜାଗା—ବୁଝିଲୁ ତ ରେ ?" ସଇତା ନିଶ୍ୱାସଟାଏ ପକାଇ କହିଲା, "ଆଜ୍ଞା ସବୁ ବୁଝିଲି ।"

"ସବୁ ବୁଝିଲି କଣ ରେ ?"

"ଆଜ୍ଞା—ଆପଣ ଯାହା ଯାହା ଅଜ୍ଞା କଲେ ।"

---

-୧୬-

## ଭୋଜିସଭା

କଟକ ବକ୍ସିବଜାର ସଡ଼କ ଛାଡ଼ି ଟିକିଏ ଗଳି ଭିତରକୁ ଗୋଟିଏ ଦୋମହଲା କୋଠାଘର । ଘରଟି ଉତ୍ତର ଦକ୍ଷିଣ ଲମ୍ବା । ତଳ ମହଲାର ଆଗକୁ ଗୋଟାଏ ଚୌଡ଼ା ଲମ୍ବାଲମ୍ବି ବାରଣ୍ଡା । ତା ପଛକୁ ଯୋଡ଼ିଏ କୋଠରି । ତଳ ବାରଣ୍ଡା ପଶ୍ଚିମପଟ କାନ୍ଥକୁ ଲାଗି

ଉପରକୁ ଉଠିବା ଶିଡ଼ୀ ପାହାଚ । ତଳ ବାରଣ୍ଡା ଉତ୍ତରଟା ଲମ୍ବ ଦାଲାଣ । ତା ପଛକୁ ତଳ କୋଠରୀ ସଇ ଉପରକୁ ଯୋଡ଼ାଏ କୋଠରୀ । ଦାଲାଣ ଆଉ କୋଠରୀକୁ ସଇ ଉଚ୍ଚ ଉଚ୍ଚ ତିନି ଯୋଡ଼ା ଝିଲମିଲ କପାଟବାଲା ଝରକା ଲାଗିଥିବାରୁ ଘର ମଧ୍ୟରେ ଆଲୁଅ ପବନ ଖେଳିବାକୁ ଅସଜ ହୁଏ ନାହିଁ । ତଳେ ଘର ଆଗକୁ ଖଣ୍ଡେ ଚଉଖୁଣିଆ ଜାଗା । ତିନି ପାଖ ପକ୍କା ପାଚେରୀରେ ଘେରା, ଆଗ ପାଚେରୀ ଠିକ୍ ମଝାମଝି ଗୋଟାଏ ଯାଉଁଳି କବାଟ ଲାଗିଛି—ସେଇଟା ହେଲା ଘରୁ ପଦାକୁ ବାହାରିବା ଦ୍ୱାର । ଏହି ଦ୍ୱାର ପାଖରୁ ବାରଣ୍ଡା ମୂଳଲଗା ଗୋଟିଏ ସରୁ ସଡ଼କ । ଏଦ୍ୱାର ଦୁଇ ପାଖରେ ମଲ୍ଲି ଗଛ ହାତକୁ ହାତ ଛଡ଼ାରେ ଲାଗିଛି । ବାରଣ୍ଡା ତଳ ଦୁଇ ପାଖରେ ଯୋଡ଼ାଏ ପଦ୍ମ କରବୀର ଝାଡ଼ରେ ଫେଣ୍ଟାକୁ ଫେଣ୍ଟା ଫୁଲ ଫୁଟି ଦୋହଲିବା ବେଳେ ବଡ଼ ସୁନ୍ଦର ମାନେ । ଅଗଣା ଭିତର ପଟ ପାଚେରୀ କାନ୍ଥଲଗା ଯୋଡ଼ାଏ ଖପରଲି ଘର—ଗୋଟିକରେ ରୋଷେଇ ହୁଏ, ଆଉ ଗୋଟାଏ ସର ଘର । ରୋଷେଇଘର ଆଗ ପାଞ୍ଚ ଛ ହାତ ଛାଡ଼ି ଗୋଟାଏ ନଳବସା କୂଅ । ଏଟା ହେଲା ହରଦେବଲାଲ ଭଗତର ଭଡ଼ାଟିଆ ଘର । ହରଦେବର ବଡ଼ ପୁଅ ରାମଦେବଲାଲ ସଉକିନ ଦଳିଆ ଲୋକ । ତା ନିଜ ବୈଠକଖାନା ସକାଶେ ଭଲ ମିସ୍ତ୍ରୀହାତରେ କାମ କରାଇଥିଲା, ଏବେ ଭଡ଼ାରେ ଲାଗେ । ଆଜକୁ ଊଣା ଅଧିକ ମାସେ ହେଲା କଲେଜର ଥୋକେ ପିଲା, ଏକ-ରୋଷେଇରେ ରହୁଛନ୍ତି । ବସାରେ ଚାକର ଯୋଡ଼ାଏ, ଜଣେ ରୋଷେୟା, ଜଣେ ବାଳକ । ଏମାନେ ମଫସଲ, ହାଲ କଟକ ଆସିଛନ୍ତି, ଘର ସମସରପୁର ତାଲୁକରେ । ରାଜୀବଲୋଚନ ବାବୁ ସେମାନଙ୍କୁ ବାର ବାର ବୁଝାଇ ଦେଇଛନ୍ତି, କଟକର କୌଣସି ଲୋକ ସାଙ୍ଗରେ କଥା କହିବେ ନାହିଁ, ବାହାରକୁ ବାହାରିବେ ନାହିଁ । ଏକୁଟିଆ ଦେଖିଲେ ଠିକାଦାର ଆସି ଫିରିଙ୍ଗି ଘର ଗ୍ଳ ବଗିଚାରେ ବନ୍ଦ ପକାଇବ । ଅଗଣା ସଦର ଦୁଆର କବାଟରେ ସବୁବେଳେ କୋଳପ ପଡ଼ିଥାଏ, କୋଳପର କୁଞ୍ଚି ରାଜୀବଲୋଚନ ବାବୁଙ୍କ ଅଣ୍ଟାରେ ।

ଆଜକୁ ଆଠ ଦଶ ଦିନ ହେଲା ଦିନେ ଛଡ଼ା ରାତିରେ ଭୋଜି ହେଉଛି । ବାହାରୁ କେବଳ ଯୋଡ଼ାଏ ନିମନ୍ତ୍ରିତ ପିଲା ଆସିବାର ଦେଖାଯାଏ । ଜଣେ ବା ତିନି ଜଣ ବା ଅଧିକ ପିଲା ଆସିବାର କେବେ ଦେଖାଯାଇ ନାହିଁ । ଘର ଉପର ମହଲା ଆଗ ଦାଲାଣରେ ସଭା ବସେ । ତଳେ ଶତରଞ୍ଜି ବିଛଣା, ଗୋଟାଏ ବାଦାମି ଆକାରର ମେଜ, ତା ଉପରେ ଧପଧପିଆ ଧଳା ସୁନ୍ଦର ବଡ଼ ଚଦର ଖଣ୍ଡେ ପଡ଼ି ହୋଇଛି । ଗୃର ପାଖରେ ସାତ ଗୋଟା ଚଉକି ପଡ଼ିଛି—ଉପରେ କଡ଼ରେ ଅସଲର କମ୍ପାନୀର ଗୋଟାଏ ସାତଡ଼ୋଳିଆ ଝାଡ଼ ଝୁଲୁଛି, କାନ୍ଥ ଗୃହପଟ ଗୋଟା ଆଠ ଦଶ ଦେୱାଲ-ଗିରି—ଦିନ ପରି ଆଲୁଅ ହୋଇଛି ।

ଭୋଜି ପ୍ରଥମ ଦିନ ଆରମ୍ଭରେ ସେଥିମଧ୍ୟରେ ଛିଡ଼ାହୋଇ ଜଣେ ସଭ୍ୟ କମଳଲୋଚନ ବାବୁ କଥା ଆରମ୍ଭ କଲେ, "ସଭାସ୍ଥ ମହୋଦୟଗଣ ! ରାଜାବିହୀନ ରାଜ୍ୟ ସଭାପତିବିହୀନ ସମିତି ତୁଲ୍ୟରୂପ ଅଶୋଭନୀୟ । ଆପଣମାନେ ଉତ୍ତମରୂପେ ଅବଗତ ଅଛନ୍ତି, ବିଲାତ ପ୍ରଭୃତି ସଭ୍ୟତର ଦେଶମାନଙ୍କ ଭୋଜିସଭାରେ ସଭାପତି ବରଣ କରାଯାଏ ଏବଂ ସଭାରେ ଗୁରୁତର ବିଷୟମାନ ଆଲୋଚିତ ଓ ବ୍ୟାଖ୍ୟାତ ହୋଇଥାଏ । ଗତ ସପ୍ତାହ ଖବରକାଗଜମାନଙ୍କରେ ଆପଣମାନେ ପାଠ କରିଥିବେ, କଲିକତା ଯେଣ୍ଟ ଏଣ୍ଡ୍ ଭୋଜିସଭାରେ ଆମ୍ଭମାନଙ୍କ ମହାମାନ୍ୟ ଲାଟ ସାହେବ ସଭାପତି ଆସନ ଗ୍ରହଣ କରିଥିଲେ । ଦେଖୁଅଛୁଁ ଆମ୍ଭମାନଙ୍କ ଏହି ସଭା ସାମାନ୍ୟ ନୁହେଁ । ଯେତେ ଜଣ ସଭ୍ୟ ଉପସ୍ଥିତ ଅଛନ୍ତି, ସମସ୍ତେ ବିଦ୍ୱାନ୍, ସ୍ୱାଧୀନ-ଚେତା, କୁସଂସ୍କାରବର୍ଜିତ ଏବଂ ସମ୍ଭ୍ରାନ୍ତବଂଶଜାତ ! ଇତର ସାଧାରଣ ଲୋକଙ୍କ ସଭାପରି ଏହା ସାମାନ୍ୟ

ନୁହେ । ଅତଏବ, ଏ ସଭାରେ ଜଣେ ସଭାପତି ବରଣ ହେବା ନିତାନ୍ତ ଆବଶ୍ୟକ ।”

“ଆମ୍ଭେ ପ୍ରସ୍ତାବ କରୁଁ, ଏହି ସଭାରେ ସାମନ୍ତ କୁଅଁର ଗୋବିନ୍ଦଚନ୍ଦ୍ର ବାବୁଙ୍କୁ ସଭାପତିପଦରେ ବରଣ କରାଯାଉ । ଯେହେତୁ, କୁଅଁର ବାବୁ ସବୁ ବିଷୟରେ ସଭାପତି ହେବାର ଯୋଗ୍ୟ ।”

ସମସ୍ତ ସଭ୍ୟ କରତାଳି ଦେଇ ପ୍ରସ୍ତାବ ଅନୁମୋଦନ କଲେ ।

ଜଣେ ସଭ୍ୟ ଲମ୍ବୋଦର ଦାସେ ଛିଡ଼ାହୋଇ କହିଲେ, “ଉଁ—ଉଁ - ହେ ସଭ୍ୟବୃନ୍ଦ ମାନେ ଏବଂ ସଭାପତି ( ନାହିଁ, ଉଚ୍ଛୁଣିକା ନାହିଁ ) କେବଳ ସଭ୍ୟମାନେ ଉଁ—ଉଁ ଏହି ପ୍ରସ୍ତାବକୁ ମୁଁ Second ଅର୍ଥାତ୍ ଦୁଖାୟ କଲି ।” ବାବୁ ମୁକୁନ୍ଦରାମ ମହାନ୍ତିଏ ଦଣ୍ଡାୟମାନ ହୋଇ କହିଲେ, “ମୁଁ ଦୁଖାୟକୁ Support ଅର୍ଥାତ୍ ସାହାଯ୍ୟ କଲି ।”

ସମସ୍ତ ସଭ୍ୟ ଆନନ୍ଦପୂର୍ବକ କରତାଳି ଦେଇ ଅନୁମୋଦନ କଲେ ।

ଗୋଟିଏ ସୁନ୍ଦର ସାଗୁଆନ କାଠ ଚଉକି ଉପରେ ସଜାଜରିରେ ଫୁଲଲତା କାମକରା ଖଣ୍ଡିଏ ବନାରସୀ ଲାଲ ମଖମଲ କୁଶନ ବିଛା ହୋଇଥିଲା । ବାବୁ ରାଜୀବଲୋଚନ ଦାସେ ଅତି ସମ୍ମାନ ସହିତ ସଭାପତିଙ୍କୁ ବାହୁ ଧରି ସେଥିରେ ବସାଇଦେଲେ ।

ସଭାପତି ମହାଶୟ ଦଣ୍ଡାୟମାନ ହୋଇ କହିଲେ, “ଅଦ୍ୟ ଏହି ସଭାରେ ସୁପ୍ରସିଦ୍ଧ ସୁବକ୍ତା ବାବୁ କମଳଲୋଚନ ଦାସେ ଗୋଟିଏ ସୁନ୍ଦର ବକ୍ତୃତା କରି ଆମ୍ଭମାନଙ୍କୁ ବାଧିତ କରିବେ ।”

କମଳଲୋଚନ ବାବୁ ଯେମନ୍ତ ପ୍ରସ୍ତୁତ ହୋଇ ବସିଥିଲେ; ସଭାପତିଙ୍କ କଥା ସମାପ୍ତି ପୂର୍ବରୁ ଖଣ୍ଡିଏ ଲେଖା କାଗଜ ଧରି ଛିଡ଼ା ହୋଇଗଲେ ଏବଂ ଦୁଇ ତିନି ଥର ଗଳାଖଙ୍କାର ଦେଇ ଆରମ୍ଭ କଲେ—

“ସଭାପତି ମହାଶୟ ଏବଂ ସଭ୍ୟ ମହୋଦୟଗଣ ! ସଭାପତି ମହାଶୟ ଅନୁଗ୍ରହ କରି ମୋ ପ୍ରତି ଗୋଟିଏ ଗୁରୁତର ଭାର ଅର୍ପଣ କରିଛନ୍ତି । ଏହି ମହତୀ ସମିତି ସମୀପରେ ବକ୍ତୃତା କରିବାର ଚେଷ୍ଟା ଧୃଷ୍ଟତା ପ୍ରଦର୍ଶନ ମାତ୍ର; ହେଲେ ସଭାପତି ମହାଶୟଙ୍କ ଆଦେଶ ପାଳନ କରିବା ମାଦୃଶ କ୍ଷୁଦ୍ରତମ ଲୋକ ପକ୍ଷରେ ସମ୍ପୂର୍ଣ୍ଣରୂପେ ଉଚିତ କର୍ତ୍ତବ୍ୟ ବୋଲି ବିବେଚନା କରେଁ । ଗୋଟିଏ ପ୍ରବନ୍ଧ ପାଠ କରିବାକୁ ଇଚ୍ଛା କରେଁ, ବିଷୟଟି ନିତାନ୍ତ ଗୁରୁତର, ଜଗତସ୍ଥ ପ୍ରତ୍ୟେକ ନର ନାରୀ ସହିତ ସମ୍ପର୍କିତ । ଜ୍ଞାନୀ ଦେଶହିତୈଷୀ ସମାଜଗତ କୁସଂସ୍କାର ଦୂରୀକରଣରେ ପ୍ରତ୍ୟାଶୀ ବିଚକ୍ଷଣମାନଙ୍କ ସାକ୍ଷାତରେ ତୁଚ୍ଛ ଅପ୍ରୟୋଜନ ବିଷୟରେ ବକ୍ତୃତା କରିବାକୁ ଚେଷ୍ଟା କରିବା ବିଡ଼ମ୍ବନା ମାତ୍ର । ମୋର ପ୍ରସ୍ତାବିତ ପ୍ରବନ୍ଧଟିର ନାମ—

“ଯୌନ ନିର୍ବାଚନ”

ବନ୍ଧୁଗଣ ! ଆପଣମାନେ ବହୁଶାସ୍ତ୍ରଦର୍ଶୀ, ବିଶେଷରେ ଦର୍ଶନଶାସ୍ତ୍ରବିଶାରଦ । ଏହି ଯୌନ ନିର୍ବାଚନ ସମ୍ବନ୍ଧରେ ପାଶ୍ଚାତ୍ୟ ମହର୍ଷି ଡାର୍‌ଉଇନ ଅକାଟ୍ୟ ପ୍ରମାଣ ସହ ଯେଉଁ ସମସ୍ତ ମତ ପ୍ରକାଶ କରି ଯାଇଛନ୍ତି, ସେ ସମସ୍ତ ବିଷୟ ଆପଣମାନଙ୍କୁ ବିଶେଷ ଭାବରେ ଜଣା । ଜଗତରେ ପ୍ରାଣୀ ସଂସାର ରକ୍ଷଣ ବର୍ଦ୍ଧନ ସକାଶେ ପ୍ରକୃତି ଯେଉଁ ଯୌନ ସମ୍ମିଳନର ନିୟମମାନ ସଂସ୍ଥାପନ କରି ଅଛନ୍ତି, ତାହା ପ୍ରତ୍ୟେକ ପ୍ରାଣୀ ପକ୍ଷରେ ଅଲଙ୍ଘନୀୟ । ପ୍ରକୃତିନିର୍ଦ୍ଦିଷ୍ଟ କୌଣସି ବିଧାନ ଅମାନ୍ୟ କଲେ ଜଗତ୍ ସଂସାରଟା ଯେ ବିଧ୍ୱସ୍ତ

ହୋଇଯିବ, ଏ କଥା ଅସ୍ୱୀକାର କରିବାର ଉପାୟ ନାହିଁ । ଏ ସମ୍ବନ୍ଧରେ ଭ୍ରାନ୍ତ ହିନ୍ଦୁ ଶାସ୍ତ୍ରକାରଗଣ ଅନ୍ୟାନ୍ୟ ବିଷୟ ପରି ଅଯୌକ୍ତିକ ମତ ପ୍ରକାଶ କରି ଯାଇଅଛନ୍ତି ସତ୍ୟ; ମାତ୍ର ଜ୍ଞାନାଲୋକସମୁଜ୍ଜ୍ୱଳ ପାଶ୍ଚାତ୍ୟ ମନୀଷିଗଣ ଏ ସମ୍ବନ୍ଧରେ ଯେଉଁ ମାର୍ଗ ପ୍ରଦର୍ଶନ କରି ଯାଇଅଛନ୍ତି, ତାହା ସମ୍ପୂର୍ଣ୍ଣରୂପେ ଅନୁମୋଦନୀୟ ବୋଲି ନିଶ୍ଚୟ ସ୍ୱୀକାର କରାଯାଇ ପାରେ । ( ସଭ୍ୟମାନଙ୍କ କରତାଳି )

ହିତାହିତ ବିବେକସମ୍ପନ୍ନ ମାନବଜାତିର କଥା ଦୂରେ ଥାଉ, ପଶୁ; ପକ୍ଷୀ, କୀଟ, ପତଙ୍ଗ ପର୍ଯ୍ୟନ୍ତ ନିତାନ୍ତ ତିର୍ଯ୍ୟକ୍ ପ୍ରାଣିଗଣ ଯୌନ ସମ୍ମିଳନ ସମୟରେ କି ପ୍ରକାର ଅମୋଘ ଶକ୍ତିରେ ଚାଳିତ ହୋଇ ପରସ୍ପର ମିଳିତ ହୁଅନ୍ତି—ଏ ବିଷୟ ପ୍ରତ୍ୟକ୍ଷ କଲେ ପ୍ରକୃତିର ଅସୀମ ଶକ୍ତି ଅନନ୍ତ କୌଶଳ ବିଷୟ ଉପଲବ୍ଧି କରି ହୃଦୟ ସ୍ତମ୍ଭିତ ହୋଇଯାଏ ।

(କରତାଳି)

ଆପଣମାନେ ବିଶେଷରୂପେ ଏହି ମୂଳତତ୍ତ୍ୱଟି କଦାଚ ବିସ୍ମୃତ ହେବେ ନାହିଁ ଯେ, ଯୌନମିଳନ ସମୟରେ ସ୍ତ୍ରୀ ପୁରୁଷ ଦୁଇ ପକ୍ଷ ଆପଣା ଆପଣା ଅଭିରୁଚି, ଜ୍ଞାନଶକ୍ତି, ବିବେଚନା ପ୍ରତି ନିର୍ଭର କରନ୍ତି, କଦାଚ ତୃତୀୟ ଲୋକର ସାହାଯ୍ୟ ଗ୍ରହଣ କରନ୍ତି ନାହିଁ । ଯେହେତୁ ଏହା ପ୍ରକୃତିନିର୍ଦ୍ଦିଷ୍ଟ ନିୟମ ଅଟେ । ପାପ ବୋଲି ଗୋଟାଏ ସ୍ୱତନ୍ତ୍ର ପଦାର୍ଥ ନାହିଁ, ପ୍ରାକୃତିକ ବିଧି ଲଙ୍ଘନ ହିଁ ପାପ ଏବଂ ସେହି ପାପର ଦଣ୍ଡ ଅପରିହାର୍ଯ୍ୟ । (କରତାଳି)

ବର୍ତ୍ତମାନ ଆମ୍ଭେ ମାନବ ଜାତି ମଧ୍ୟରେ ଯୌନ-ମିଳନ, ସେଥିର ବିଧାନ, ବ୍ୟଭିଚାର, ଫଳାଫଳ ସମ୍ବନ୍ଧରେ ସଂକ୍ଷେପରେ କେତୋଟି କଥା ଉଲ୍ଲେଖ କରି ଆମ୍ଭର ବକ୍ତବ୍ୟ ବିଷୟରେ ଉପସଂହାର କରିବାକୁ ଇଚ୍ଛା କରୁଁ ।

ମାନବସମାଜର ଆଚାର ବ୍ୟବହାର ପ୍ରତି ମନୋଯୋଗପୂର୍ବକ ଦୃଷ୍ଟିପାତ କଲେ ଜଣାଯାଏ, କେତେଗୁଡ଼ିଏ ସମାଜ ପ୍ରକୃତିପ୍ରଦତ୍ତ ଅଲଙ୍ଘ୍ୟ ବିଧାନରେ ପରିଚାଳିତ । ଆରଣ୍ୟ ବା ଅଶିକ୍ଷିତ ସମାଜ ଏହି ଶ୍ରେଣୀର ଅନ୍ତର୍ଗତ ଅଟନ୍ତି । ଆଉ ଥୋକେ ଶିକ୍ଷିତ ଉନ୍ନତ ସମାଜ ବିବେକ ଉଦ୍ଭୂତ, ସୁଜ୍ଞାନ ମାର୍ଜିତ, ସମାଜର ଉପଯୋଗୀ, ସୁଖଶାନ୍ତିପ୍ରଦ ନିୟମାବଳୀରେ ପରିଚାଳିତ । ମାତ୍ର ବିଶେଷରୂପେ ଅନୁଧାବନ କରି ଦେଖିଲେ, ଶେଷୋକ୍ତ ସମାଜର କାର୍ଯ୍ୟାବଳୀ ମୂଳରେ ପ୍ରକୃତିର ବିଧାନ ନିହିତ ଥିବାର ଦେଖାଯାଏ । ଆଉ ଏକ ଶ୍ରେଣୀର ଅଳ୍ପଶିକ୍ଷିତ ଅଥଚ ଆତ୍ମାଭିମାନୀ ସମାଜ ଅଛନ୍ତି, ସେମାନେ କେତେଗୁଡ଼ିଏ ଭ୍ରାନ୍ତ ମତକୁ ତଥାକଥିତ ଶାସ୍ତ୍ରୀୟ ବିଧାନ ସୁତରାଂ ଅପରିତ୍ୟାଜ୍ୟ ଜ୍ଞାନ କରି ତଦବଲମ୍ବନ ହେତୁ ଦାରୁଣ ଦୁର୍ଯୋଗ ଭୋଗ କରିଥାନ୍ତି । ଯେହେତୁ ପାପର ପରିଣାମ ଫଳ ଦୁର୍ଦ୍ଦଶା ଓ କଷ୍ଟ ଅପରିହାର୍ଯ୍ୟ ଅଟେ । ଦାରୁଣ ଦୁଃଖର ସହିତ ବୋଲିବାକୁ ହେଉଅଛି, ଆମ୍ଭମାନଙ୍କ ହିନ୍ଦୁ-ଜାତି ଏହି ଶ୍ରେଣୀଭୁକ୍ତ ଅଟନ୍ତି । ( ଘନ ଘନ କରତାଳି )

ମାନବସମାଜରେ ଯେତେପ୍ରକାର ସଂସ୍କାର ବିଧାନ ନିର୍ଦ୍ଦିଷ୍ଟ ଅଛି, ସେଥିମଧ୍ୟରେ ଯୌନ ନିର୍ବାଚନ ସର୍ବପ୍ରଧାନ ଅଟେ । ଯେହେତୁ ସମାଜର ହ୍ରାସ ବୃଦ୍ଧି, ଲୋକର ଚିରଜୀବନ ଶାନ୍ତି ସୌଭାଗ୍ୟ ଏଥି ପ୍ରତି ନିର୍ଭର କରେ । ( କରତାଳି )

ପ୍ରକୃତିର ଶିଶୁ ଅଶିକ୍ଷିତ ମାନବସମାଜରେ ଯୌନ ମିଳନ ପ୍ରଥା କିରୂପ ପ୍ରଚଳିତ ଅଛି, ଦୃଷ୍ଟାନ୍ତସ୍ୱରୂପ କେତେଗୋଟିର ନାମୋଲ୍ଲେଖ କରିବାକୁ ଇଚ୍ଛା କରେଁ । ବନ୍ୟ ଭୂୟାଁ କନ୍ଧ ଦୁରାଂ ଜାତି ମଧ୍ୟରେ ଏ'ପ୍ରକାର ନିୟମ ପ୍ରଚଳିତ ଅଛି ଯେ, ଗୋଟିଏ ଧାଙ୍ଗଡ଼ା ( ଅବିବାହିତ ଯୁବା ) ଗୋଟିଏ ଧାଙ୍ଗଡ଼ୀ (ଅବିବାହିତା ଯୁବତୀ ) ମୁଣ୍ଡରେ ସିନ୍ଦୂର ଟିପାଏ ମାରିଦେଲେ

ତାହା ନ୍ୟାଯ୍ୟ ବିବାହରୂପେ ଗଣ୍ୟ ହୁଏ । ସମାଜ ସେହି ନବଦମ୍ପତିର ମିଳନ ବିଷୟରେ ସହାନୁଭୂତିର ନିଦର୍ଶନସ୍ୱରୂପ ପାନାହାର ଏବଂ ନୃତ୍ୟଗୀତାଦିର ଅନୁଷ୍ଠାନ କରିଥାନ୍ତି ।

ଇଉରୋପଖଣ୍ଡରେ ଇଂରେଜ, ଫରାସୀ, ଜର୍ମାନ ପ୍ରଭୃତି ଜ୍ଞାନାଲୋକସମ୍ପନ୍ନ ଜାତୀୟ ଲୋକଙ୍କ ନ୍ୟାୟାନୁମୋଦିତ ସୁଖଶାନ୍ତିପ୍ରଦ ଯୌନମିଳନ ପ୍ରଥା ଆପଣମାନଙ୍କଠାରେ ଅବିଦିତ ନାହିଁ ।

ବର୍ତ୍ତମାନ ଆମ୍ଭମାନଙ୍କ ହିନ୍ଦୁ ସମାଜ ପ୍ରଚଳିତ ବୈବାହିକ ପ୍ରଥା ସମ୍ବନ୍ଧରେ ସଂକ୍ଷେପରେ ଦୁଇ ଚାରିଗୋଟି କଥା କହିବା ସକାଶେ ଆପଣମାନଙ୍କ ଅନୁମତି ପ୍ରାର୍ଥନା କରେଁ । ହିନ୍ଦୁଜାତି ପା’ଭାଗ କିମ୍ବା ଅଧାଅଧି ଶିକ୍ଷିତ । ଏଥିକୁ ସେମାନଙ୍କ ବିବାହପ୍ରଥା ମଧ୍ୟରେ ସ୍ୱାଭାବିକତାରେ ଅଥବା ଜ୍ଞାନାନୁମୋଦିତ ବିଧାନରେ ବ୍ୟତିକ୍ରମ ଘଟିବା ନିତାନ୍ତ ସମ୍ଭବପର ଅଟେ । (ପୁନଃପୁନଃ କରତାଳି) ବିଷୟଟି ବିଷଦରୂପେ ବିଶ୍ଳେଷଣ କରି ଦେଖାଇବାକୁ ଇଚ୍ଛା କରେଁ ।

କୌଣସି ଜାତୀୟ ଚରିତ୍ର ଲେଖିବାର ଆବଶ୍ୟକ ହେଲେ, ଶ୍ରେଣୀର ଶୀର୍ଷସ୍ଥାନୀୟ, ଲୋକଚରିତ୍ର ଲେଖିବାର ଆବଶ୍ୟକ । ଯେହେତୁ ନିମ୍ନ ଶ୍ରେଣୀ ଲୋକ ପ୍ରଧାନ ଲୋକଙ୍କ ଆଚରଣ ଅନୁସରଣ କରିଥାନ୍ତି । ଏହି ସଭାସ୍ଥ ସମସ୍ତ ସଭ୍ୟ ଶ୍ରୀକରଣବଂଶଜ ଅଟନ୍ତି । ଆମ୍ଭମାନଙ୍କ ମଧ୍ୟରେ କିରୂପ ବୈବାହିକ ପ୍ରଥା ପ୍ରଚଳିତ ଅଛି, ତେତିକି ମାତ୍ର ଉଲ୍ଲେଖ କଲେ ଉତ୍କଳବାସୀ ସର୍ବସାଧାରଣ ଜାତିର ଏହି ପ୍ରଥା ସମ୍ବନ୍ଧରେ ଆଉ କିଛି ବୋଲିବା ଆବଶ୍ୟକ ହେବନାହିଁ ।

ପ୍ରଥମେ—ଆମ୍ଭମାନଙ୍କ ଜାତୀୟପ୍ରଥା ଅନୁସାରେ ସ୍ତ୍ରୀ ପୁରୁଷଙ୍କ ମଧ୍ୟରେ ଯେଉଁ ସମ୍ମିଳନ, ତାହା ଯାବଜ୍ଜୀବନ ଅପରିଚ୍ଛେଦ୍ୟ । ପରସ୍ପର ସୁଖ ଦୁଃଖ ଗୁଣାଗୁଣର ଫଳ ପରସ୍ପର ଭୋଗ କରିବାକୁ ବାଧ୍ୟ । ଜଣକର ଦୁର୍ବ୍ୟବହାର ହେତୁ ଅନ୍ୟ ଜଣେ ଯେତେ ପ୍ରକାର କଷ୍ଟ ଭୋଗକରୁ ପଛକେ ତାହା ଅପରିହାର୍ଯ୍ୟ । ଏପରି ସ୍ଥଳରେ ଏହି ବିଷମ ଦୁର୍ଯୋଗ ନିବାରଣର ଉପାୟସ୍ୱରୂପ ଖ୍ରୀଷ୍ଟୀୟ ସମାଜରେ ଯେଉଁ ଡାଇଭୋର୍ସ, ମୁସଲମାନ ସମାଜରେ ଯେଉଁ ତଲାକର ସୁପ୍ରଥା ପ୍ରଚଳିତ ଅଛି, ଆମ୍ଭମାନଙ୍କ ମଧ୍ୟରେ ସେହି ସୁପ୍ରଥା ମାର୍ଗ ଏକାବେଳକେ ଅବରୁଦ୍ଧ । ( ପୁନଃ ପୁନଃ କରତାଳି )

ପ୍ରିୟ ଭ୍ରାତୃବୃନ୍ଦ ! ଏ ଅବସ୍ଥାରେ ଆମ୍ଭମାନଙ୍କର କର୍ତ୍ତବ୍ୟ କଣ ? ଯେଉଁ ବ୍ୟାଧିର ପ୍ରତିକାର ନାହିଁ, ସେ ପ୍ରକାର ବ୍ୟାଧି ଯେପରି ଶରୀରକୁ ସ୍ପର୍ଶ ନ କରେ, ସେଥି ବିଷୟରେ ସତର୍କ ହେବା କର୍ତ୍ତବ୍ୟ ନୁହେ କି ? ( କରତାଳି )

ଆମ୍ଭର ବୋଲିବାର ଉଦ୍ଦେଶ୍ୟ—ଆମ୍ଭମାନଙ୍କ ଭାର୍ଯ୍ୟା, ସହଧର୍ମିଣୀ, ସଙ୍ଗିନୀ, ନିତ୍ୟସହଚରୀ—ଯାହା ବୋଲ, ସେ ଯଦି କଳହପ୍ରିୟା, ଅପ୍ରିୟବାଦିନୀ, ଅଶିକ୍ଷିତା, ରୂପଲାବଣ୍ୟବର୍ଜିତା, ଯାହାହେଉ ପଛକେ ସେ ଅପରିତ୍ୟଜ୍ୟା ? ଏ କ୍ଷେତ୍ରରେ ପରିଣୟ ପୂର୍ବେ ଭାବୀ ସଙ୍ଗିନୀ ନିର୍ବାଚନ ସମ୍ବନ୍ଧରେ ବିଶେଷ ସାବଧାନତା ଅବଲମ୍ବନ କରିବା ଉଚିତ କି ନୁହେଁ, ଅବଶ୍ୟ ସାବଧାନତା ସହିତ ଅନୁସନ୍ଧାନ ପୂର୍ବକ ଦେଖିବାର ବିଷୟ ଅଟେ । ( କରତାଳି )

ଆଉ ଗୋଟିଏ କଥା ଦେଖନ୍ତୁ, ଏହି ଯେ ଆମ୍ଭମାନଙ୍କର ଗୋଡ଼ତଳେ ଅତି ତୁଚ୍ଛ ଚଟି ଜୋତା ଯୋଡ଼ାକ ଦେଖୁଛନ୍ତି, ଯାହା କି ଦୁଇ ଚାରି ମାସ ଉତ୍ତାରେ ଛିଣ୍ଡିଗଲେ ଫୋପାଡ଼ି ଦେବୁଁ, ସେ ଜୋତା ଯୋଡ଼ାକ କିଣିବା ସମୟରେ କେତେ ସାବଧାନତା

ଅବଲମ୍ବନ କରିଥାଉଁ, କେତେ ଥର ଗୋଡ଼ରେ ଦେଇ ପରୀକ୍ଷା କରିଥାଉଁ; ମାତ୍ର ଆମରଣ-ସଙ୍ଗିନୀ, ଜୀବନସର୍ବସ୍ୱମୟୀ ପତ୍ନୀ ଗ୍ରହଣ ସମୟରେ କିରୂପ ଉପାୟ ଅବଲମ୍ବନ କରିଥାଉଁ ? ଅଥବା ଜ୍ଞାନାଲୋକ-ସମ୍ପନ୍ନ ଯୁବକମାନଙ୍କ ପକ୍ଷରେ ଯୁଗୋପଯୋଗୀ କର୍ତ୍ତବ୍ୟ କଣ ? ବେଳେ ମୁଦ୍ରିତନେତ୍ରରେ ସ୍ଥିରଭାବରେ ବସି ଅନୁଧ୍ୟାନ କରି ଦେଖିବା କେତେଦୂର ଉଚିତ, ଚିନ୍ତା କରନ୍ତୁ ।

ବର୍ତ୍ତମାନ ଆମ୍ଭମାନଙ୍କ ସମାଜରେ ଏ ସମ୍ବନ୍ଧରେ କି ପ୍ରକାର ନିୟମ ପ୍ରଚଳିତ ଅଛି ? ବିବାହ କରିବେ, ସେଥି ସମ୍ବନ୍ଧରେ ଶୁଭାଶୁଭ ଫଳଭୋଗୀ ହେବେ ଜଣେ—ମାତ୍ର କନ୍ୟା ନିର୍ବାଚନ ଭାର ରହିବ ଅନ୍ୟ ଜଣ ପ୍ରତି । ଅର୍ଥାତ୍ ଦେଶୀୟ କୁପ୍ରଥା ଅନୁସାରେ ବରର ଉପଯୋଗୀ କନ୍ୟା ନିର୍ବାଚନ ଭାର ପିତା କିମ୍ବା ଅନ୍ୟ ବନ୍ଧୁବର୍ଗ ପ୍ରତି ଅର୍ପିତ ଥାଏ । ଅବଶ୍ୟ ଏ କଥା ସ୍ୱୀକାର କରିବାକୁ ହେବ, ପିତା ଅଥବା ବନ୍ଧୁବର୍ଗ ନିଶ୍ଚୟ ପୁତ୍ରର ଶୁଭାକାଙ୍କ୍ଷୀ । ପୁତ୍ର ବା ଆତ୍ମୀୟ ଗୋଟିଏ ମନ୍ଦକନ୍ୟା ବିବାହ ହେଉ, ଏହା କଦାଚ ସେମାନଙ୍କର ଅଭିଲଷଣୀୟ ନୁହେ; ମାତ୍ର ଦେଖିବାକୁ ହେବ, କନ୍ୟା ନିର୍ବାଚନ ସମ୍ବନ୍ଧରେ ସେମାନେ ସଚରାଚର କିରୂପ ପ୍ରଥା ଅବଲମ୍ବନ କରିଥାନ୍ତି ? କନ୍ୟାର ରୂପ ଗୁଣ ବୁଝିବା ସକାଶେ ସେମାନେ କେତେଦୂର ସୁଯୋଗ ପ୍ରାପ୍ତ ହୋଇଥାନ୍ତି ? ଦୃଷ୍ଟାନ୍ତସ୍ୱରୂପ ଆମ୍ଭମାନଙ୍କ ଶ୍ରୀକରଣଗୋଷ୍ଠୀର କନ୍ୟାନିର୍ବାଚନ ଉପାୟ ବିଷୟ ଉଲ୍ଲେଖ କରିବୁଁ । ପୁତ୍ରର ବିବାହ ସମୟ ଉପସ୍ଥିତ, ଅନୁସନ୍ଧାନରେ ଗୋଟିଏ କନ୍ୟା ସ୍ଥିର ହେଲା, ବରପିତା ସର୍ବାଗ୍ରେ ଅନୁସନ୍ଧାନ କରି ଦେଖନ୍ତି, କନ୍ୟାବଂଶ ପ୍ରକୃତ ଶ୍ରୀକରଣ କି ନାହିଁ ଏବଂ କେଉଁ କେଉଁ ଶ୍ରୀକରଣଗୋଷ୍ଠୀ ସହିତ ତାହାଙ୍କର ବୈବାହିକ ଆଦାନ ପ୍ରଦାନ ଚଳେ । ସନ୍ଧାନରେ ସ୍ଥିର ହେଲା, କନ୍ୟାର ପିତା ନିର୍ଭେଳ ଶ୍ରୀକରଣ – ଏହିଠାରେ କନ୍ୟା ନିର୍ବାଚନ ସମ୍ବନ୍ଧର ଅଧାଅଧି ପାଇଟି ଛିଡ଼ିଲା । (ସମସ୍ତଙ୍କ ହାସ୍ୟ) ତହିଁ ଉତ୍ତାରେ ଜ୍ୟୋତିର୍ବିଦ ନାମଧାରୀ ନିତାନ୍ତ ପ୍ରତାରକ, ନିର୍ବୋଧ, ଗୋଟିଏ ଲୋକ ଆସିଲା—ଯାହାର ବିନଯାକ ପରିଶ୍ରମର ମୂଲ୍ୟ ହେବରେ ଗୁଡ଼ାଏ ଆଉ ଦୁଇଅଣା ପଇସା । ସେ ଚଉ ଭୂତ ଭବିଷ୍ୟତ୍ ବର୍ତ୍ତମାନ ତ୍ରିକାଳଜ୍ଞ – କେତେଟା ଅଙ୍କ କଷାକଷି ହିସାବ କିତାପ ଛିଡ଼ାଇ ଠିକ୍ କରିଦେଲା, ବିବାହର ନବମେଳକ ମଧ୍ୟରୁ କେବଳ ଅମେଳ ରହିଲା ଗୋଟାଏ । ଏହିପରି ହୁଏ । ପୃଥିବୀରେ କେଉଁଠାରେ ନବମେଳକ ହୁଏ ନାହିଁ; ବେଦୀ ଉପରେ ବ୍ରାହ୍ମଣ ହାତରେ କିଛି ସୁନା ଆଉ ଜ୍ୟୋତିଷକୁ କିଛି ନଗଦ ପଇସା ଦେଲେ ଅମେଳ ଦୋଷ କଟିଯିବ । ଏହିଠାରେ ସମସ୍ତ ପ୍ରାଥମିକ ଅନୁଷ୍ଠାନ ସମାପ୍ତ । କଦାଚିତ୍ କୌଣସି ସ୍ଥାନରେ ଧାଈ ବେହେଣାର କାର୍ଯ୍ୟ କର୍ମ ଅବଶିଷ୍ଟ ଥାଏ । କନ୍ୟାର ରୂପ ଗୁଣ ସମସ୍ତ ବିଷୟ ସନ୍ଧାନର ଭାର କେଉଁ ଶ୍ରେଣୀର ସ୍ତ୍ରୀ ଲୋକ ଉପରେ ପଡ଼େ ? ଯେ ଘରେ ବାସିପାଇଟି କରେ ଅଥବା ଧାନ କୁଟେ । ବୁଦ୍ଧିମତୀ କନ୍ୟାମାତା ତାହା ପଣନ୍ତକାନିରେ ଟଙ୍କା ଗୁଟିଏ ବାନ୍ଧିଦେଲେ କନ୍ୟାର ରୂପଗୁଣ ସବୁ ଶୁଣ—ଚମ୍ପାଫୁଲ ପରି ରଙ୍ଗ, ଖଣ୍ଡାଧାରିଆ ନାକ, ଢେର ପାଠ ପଢ଼ିଛି, ଗୀତ ଛାନ୍ଦକୁ ଛାନ୍ଦ ହାଙ୍କିଗଲା । ବନ୍ଧୁଗଣ ! ଆପଣମାନେ କାବ୍ୟ ନାଟକ ଉପନ୍ୟାସରେ କେତେ ମଧୁମୟ ପବିତ୍ର ପ୍ରଣୟ ବିଷୟ ପଢ଼ିଅଛନ୍ତି, ଆମ୍ଭମାନଙ୍କ କୁସଂସ୍କାରଚ୍ଛନ୍ନ ସମାଜରୁ ସେ ପ୍ରକାର ସ୍ୱର୍ଗୀୟ ପବିତ୍ର ଦାମ୍ପତ୍ୟପ୍ରଣୟର ବିନ୍ଦୁମାତ୍ର ପ୍ରତ୍ୟାଶା କରିପାରିବେ କି ?

ଅଥବା ଜ୍ଞାନବିଜ୍ଞାନସମ୍ପନ୍ନ ବିଂଶତି ଶତାବ୍ଦୀରେ ଶିକ୍ଷିତ ଲୋକମାନଙ୍କ ପକ୍ଷରେ କିଛି ଅସାଧ୍ୟ ନୁହେ । ମେଣ୍ଢାପଲରେ ଦେଖାଯାଏ, ଅଗ୍ରଗାମୀ ପଲମଧ୍ୟରୁ ଗୋଟାଏ ଖାତରେ ପଡ଼ି ଗୋଡ଼ ଭାଙ୍ଗିଲେ ମଧ୍ୟ ପଶ୍ଚାଦ୍‌ଗାମୀ ମେଷଯୂଥ ଆପଣା ଉପସ୍ଥିତ ଦୁର୍ଦ୍ଦଶା ପ୍ରତି ଦୃଷ୍ଟି ନ କରି ଧାବିତ ହୋଇ ଗର୍ତ୍ତରେ ପତିତ ହୁଅନ୍ତି ।

ଅଶିକ୍ଷିତ କୁସଂସ୍କାରାଚ୍ଛନ୍ନ ମୂର୍ଖ ଲୋକମାନେ ଚିରାଚରିତ ମନ୍ଦ ପ୍ରଥାମାନ ଅନୁସରଣ କରି ଦୁର୍ଦ୍ଦଶା ଭୋଗ କରିଥାନ୍ତି ସତ୍ୟ; ମାତ୍ର ଜ୍ଞାନାଲୋକ ସମ୍ପନ୍ନ ଶିକ୍ଷିତ ଲୋକମାନଙ୍କ କଥା ସ୍ୱତନ୍ତ୍ର ଅଟେ । ସେମାନେ ସ୍ୱକୀୟ ଜ୍ଞାନଶକ୍ତିବଳରେ ସମାଜଗତ କୁସଂସ୍କାରକୁ ପଦଦଳିତ କରି ସୁଖରେ ଶାନ୍ତିପ୍ରଦ ମାର୍ଗରେ ସଂଚରଣ କରନ୍ତି । କେବଳ ତାହା ନୁହେ, ଭବିଷ୍ୟତ ବଂଶଧରମାନଙ୍କ ସକାଶେ ମାର୍ଗଦର୍ଶକ ହୋଇ ସର୍ବତ୍ର ଅତୁଳନୀୟ ପ୍ରଶଂସାଭାଜନ ହୋଇଥାନ୍ତି ।

ବନ୍ଧୁଗଣ ! ବର୍ତ୍ତମାନ ଆପଣାର ସୁଖସ୍ୱାଚ୍ଛନ୍ଦ୍ୟ—ସମାଜ ତଥା ସ୍ୱର୍ଗାଦପି ଗରୀୟସୀ ଜନ୍ମଭୂମିର ମଙ୍ଗଳକାମନାରେ ଚିରାଗତ କୁସଂସ୍କାର ଏବଂ ଅଳୀକ ଆତ୍ମାଭିମାନ ସଂଶୋଧନ ବିଷୟରେ ଆମ୍ଭେମାନେ ଯଦି ଯତ୍ନଶୀଳ ନ ହେଉଁ, ତେବେ ଆମ୍ଭମାନଙ୍କର କଷ୍ଟସାଧ୍ୟ ବହୁ ଗ୍ରନ୍ଥ ଅଧ୍ୟୟନ ବିଡ଼ମ୍ବନାର ବିଷୟ ନୁହେ କି ?

(କରତାଳି)

ଅନ୍ୟ ସଭ୍ୟତମ ଜାତିମାନଙ୍କ ନେତ୍ରରେ ଆମ୍ଭ ଉତ୍କଳୀୟ ଜାତି ହେୟ ଅପଦାର୍ଥରୂପେ ପ୍ରତୀୟମାନ ହେଉଅଛନ୍ତି । ଆମ୍ଭମାନଙ୍କ କୁସଂସ୍କାର ଏବଂ ଅନ୍ଧତା ସେଥିର ଏକମାତ୍ର କାରଣ ନୁହେ କି ?

ପ୍ରିୟବନ୍ଧୁଗଣ !

ବର୍ତ୍ତମାନ ସମାଜଗତ କୁସଂସ୍କାର ଦୂରୀକରଣ ଓ ସୁମାର୍ଜିତ ସୁନିୟମ ପ୍ରଚାରଣ ବିଷୟରେ ବଦ୍ଧପରିକର ହେବା ପ୍ରତ୍ୟେକ ବିବେକଶାଳୀ ଶିକ୍ଷିତ ଲୋକ ପକ୍ଷରେ ନିତାନ୍ତ କର୍ତ୍ତବ୍ୟ । ଅନ୍ୟଥା ନିଶ୍ଚୟ ପ୍ରତ୍ୟବାୟର ବିଷୟ ଅଟେ । ଏ କଥା ନିଶ୍ଚୟ, ବିଷୟଟି ନିତାନ୍ତ ସହଜସାଧ୍ୟ ନୁହେ; ହେଲେ ସହଜ ମାର୍ଗରେ ଇତର ସାଧାରଣ ଲୋକ ଗମନ କରିଥାନ୍ତି, ଦୁର୍ଗମ କଣ୍ଟକର ପନ୍ଥା ବୀର ସାହସୀ ପୁରୁଷମାନଙ୍କ ପକ୍ଷରେ ଅବଲମ୍ବନୀୟ ଅଟେ । ସମାଜଗତ କୁସଂସ୍କାର ଶରୀର ମଧ୍ୟରେ ଦୂଷିତ ବଦ୍ଧଶୋଣିତ ତୁଲ୍ୟ । ସମାଜ ଏବଂ ଶରୀରର ବିନାଶକାରୀ । ଦୂଷିତ ବଦ୍ଧଶୋଣିତ ନିତାନ୍ତ କଷ୍ଟକର, ବିନାଶକାରୀ; ତଥାପି ରକ୍ତମୋକ୍ଷଣକାରୀ ଅସ୍ତ୍ରଚିକିତ୍ସକ ପ୍ରତି ରୋଗୀ କିରୂପଭାବରେ ଦୃଷ୍ଟି କରିଥାଏ ? ସେଥିପାଇଁ ଜନହିତୈଷୀ ସମାଜସଂସ୍କାରକମାନଙ୍କୁ ପ୍ରଥମତଃ ବିଷମ ଯନ୍ତ୍ରଣା ଭୋଗ କରିବାକୁ ହୁଏ । ମାତ୍ର ପରେ ସେମାନେ ଦେବତୁଲ୍ୟ ପୂଜିତ ହୋଇଥାନ୍ତି । ବର୍ତ୍ତମାନ ଆମ୍ଭେମାନେ କର୍ତ୍ତବ୍ୟ କର୍ମ ଅନୁଷ୍ଠାନ କାଳରେ ଅନେକ ବାଧାବିଘ୍ନ ସମ୍ମୁଖରେ ଦେଖିବାକୁ ପାଉଁ; ମାତ୍ର ସେ ସମସ୍ତ କ୍ଷଣସ୍ଥାୟୀ । ଆକାଶମାର୍ଗରେ ବିଚରଣ କାଳରେ ବ୍ୟୋମଯାନ-ଆରୋହୀ ସମ୍ମୁଖରେ ବଜ୍ରବିଦ୍ୟୁତ ସମନ୍ୱିତ ଖଣ୍ଡିଏ ମେଘ ଦେଖି ବିବେଚନା କରେ, ସେହି ମେଘ ଉପରେ ଅଳ୍ପକାଳ ଉତ୍ତାରେ ବ୍ୟୋମଯାନ ଯନ୍ତ୍ର ପତିତ ହୋଇ ଖଣ୍ଡ ବିଖଣ୍ଡ ହୋଇଯିବ; ମାତ୍ର ଯେଉଁ ବାୟୁ ଯନ୍ତ୍ରକୁ ମେଘ ପାର୍ଶ୍ୱବର୍ତ୍ତୀ କରାଏ, ସେହି ପୁଣି ବାରିଦଖଣ୍ଡକୁ ଦୂରବର୍ତ୍ତୀ କରାଇଦିଏ । ପ୍ରିୟ ବନ୍ଧୁଗଣ ! ଅନ୍ୟାନ୍ୟ ଲୋକସାଧାରଣ ପରି ଆମ୍ଭେମାନେ ସ୍ୱାର୍ଥପରାୟଣ ହେବୁ ନାହିଁ । ଆମ୍ଭମାନଙ୍କ ଶିକ୍ଷା, ଜ୍ଞାନାର୍ଜନ ଶକ୍ତି, ସାମର୍ଥ୍ୟ ସମାଜହିତକର କାର୍ଯ୍ୟରେ ବ୍ୟୟିତ ହେଉ । ଭ୍ରାତୃବୃନ୍ଦ ! ଆମ୍ଭମାନଙ୍କ ସମ୍ମୁଖରେ ଅନେକ କର୍ତ୍ତବ୍ୟ ବିସ୍ତୃତ ଅଛି । ସର୍ବାପେକ୍ଷା ବିଶେଷ କର୍ତ୍ତବ୍ୟ, ଯୌନ ନିର୍ବାଚନ । ଯେହେତୁ ଜୀବନବ୍ୟାପୀ ସମସ୍ତ ସୁଖ ଦୁଃଖ ତହିଁ ପ୍ରତି ନିର୍ଭର କରେ । ଆସନ୍ତୁ ଭାଇମାନେ ! ଆମ୍ଭେମାନେ ସୁପନ୍ଥା ଅବଲମ୍ବନପୂର୍ବକ ସମସ୍ତଙ୍କର ଆଦର୍ଶସ୍ଥଳ ହେଉଁ । ବିବାହ ସମ୍ବନ୍ଧରେ ଆମ୍ଭେମାନେ ଏହିପରି ନିୟମପାଳନ କରିବୁଁ ।

୧ । ଶ୍ରୀକରଣ—କରଣ କିସମ ଦୁଇ, ଉତ୍ତରାଳୀ କରଣ ଇତ୍ୟାଦି କାଳ୍ପନିକ ସଂକୀର୍ଣ୍ଣ ଭାବ ତ୍ୟାଗ କରି କରଣ ମାତ୍ରକେ ସମସ୍ତଙ୍କୁ ବନ୍ଧୁ ବୋଲି ଜ୍ଞାନ କରିବୁଁ ।

୨ । ନବ କନ୍ୟା ପାଇବା ସହଜ କଥା ନୁହେ, ତାହା ବହୁ ଯୁଗ ତପସ୍ୟାସାଧ୍ୟ ଦେବଦୁର୍ଲଭ ବସ୍ତୁ ଅଟେ । ତେବେ ଆମ୍ଭେମାନେ ସ୍ଥିର କଲୁଁ ମୂର୍ଖ ଅଶିକ୍ଷିତା କନ୍ୟା ବିବାହ କରିବୁଁ ନାହିଁ ।

୩ । ଶିକ୍ଷିତା କନ୍ୟା ଆବିଷ୍କାର କରିବା କଷ୍ଟକର କଠିଣ କଥା; ମାତ୍ର ଯେଉଁ କରଣ ଗ୍ରାମରେ ବାଳିକା ବିଦ୍ୟାଳୟ ଅଛି, ସେହି ଗ୍ରାମରୁ କନ୍ୟା ନିର୍ବାଚନ କରିବୁଁ ।

ଭ୍ରାତୃଗଣ ! ଆମ୍ଭେ ଯେଉଁ ତିନୋଟି ନିୟମ ଉଲ୍ଲେଖ କଲୁଁ, ଆପଣମାନଙ୍କ ମନୋମତ ହେଲେ ହସ୍ତୋତ୍ତୋଳନ କରନ୍ତୁ । (ସମସ୍ତଙ୍କର ହସ୍ତୋତ୍ତୋଳନ) ଭ୍ରାତୃଗଣ ! ମୋହର ଶେଷ ପ୍ରାର୍ଥନା, ଏହି ନିୟମ ଲିପିବଦ୍ଧ କରାଯାଉ ଏବଂ ସମସ୍ତେ ପ୍ରତିଜ୍ଞାବଦ୍ଧ ହୋଇ ଏଥିରେ ସ୍ୱାକ୍ଷର କରନ୍ତୁ । [ ଘନଘନ କରତାଳି ଓ ସଭାଭଙ୍ଗ । ]

— ——

## –୧୭–

## ମନ୍ତ୍ରଣା

କଟକ ସହରର ଉତ୍ତର ଭାଗ ଉତ୍କଳ ସ୍ୱାଧୀନତାର ଶ୍ମଶାନ କ୍ଷେତ୍ର, ଯାହାକୁ ବର୍ତ୍ତମାନ ଲୋକେ କିଲ୍ଲା ପଡ଼ିଆ ବୋଲିଥାନ୍ତି । ତାହାର ଉତ୍ତରାଂଶ ନଦୀ କୂଳେ କୂଳେ ଗୋଟିଏ ସଡ଼କ ପ୍ରାୟ ମଣ୍ଡଳାକାରରେ ପ୍ରାଚୀନ କିଲ୍ଲା ଅଂଶକୁ ବେଢ଼ି ରହିଅଛି । ସଡ଼କ ତଳେ ଭିତରକୁ ଗଡ଼ଖାଇ । ସେହି ଅଂଶରେ ନଦୀକୂଳ ପ୍ରାୟ ନିର୍ଜନ ହୋଇ ପଡ଼ିଥାଏ । ନଦୀର ଏହି ଅଂଶଟା ଗୋଟିଏ ପାଖ ଧାର । ଗ୍ରୀଷ୍ମ କାଳରେ ସେପରି କିଛି ଜଳ ନ ଥାଏ, ଗୋଟିଏ କ୍ଷୁଦ୍ର ଅପ୍ରଶସ୍ତ ନିର୍ମଳ ସ୍ରୋତ କେଉଁ ବର୍ଷ କୂଳଲଗା, କେଉଁ ବର୍ଷ ମଝି-ବାଟରେ କଳକଳ ନାଦରେ ବହି ଯାଉଥାଏ । ବର୍ଷା କାଳରେ କୂଳଉଚ୍ଛୁଳା ଜଳ, ସମ୍ବଲପୁରିଆ ଆଉ ଆଉ ପଶ୍ଚିମ ଗଡ଼ଜାତିଆ ବେପାରୀ ଜନସପୂର୍ଣ୍ଣ ନାହାରେ କୂଳ ଲଗି ଭିତରକୁ କେତେଦୂରଯାଏ ଲମ୍ବାଲମ୍ବି ପା-କୋଶ ବାଟ ନଦୀଜଳ ଗ୍ରୁଇଯାଏ । ନାହାରେ ମାଲ ଉପର ଫନ୍ଦଯାଏ ବୋଝାଇ, ପବନବେଳେ ପାଣିଝିଲକା ନାହା ଉପର ଗୁଳକୁ ବାଜଯାଉଥାଏ, ଉପରେ ଗୁଳ ନ ଥିଲେ ମାଲ ସବୁ ତିନ୍ତି ଯାଉଥାନ୍ତା । ପଚିଶ ଷାଠିଏ ବର୍ଷ ତଳେ ସେହି ସବୁ ନାହା ନରାଜ ବାଟେ କାଠଯୋଡ଼ିରେ ପଶି ନଦୀର ଉତ୍ତର କୂଳ ଦୋବନ୍ଧା-ଠାରେ ଲାଗୁଥିଲା, ନରାଜ ବନ୍ଧ ପଡ଼ିବା ଦିନରୁ ସେ ସବୁ ନାହା ବନ୍ଦ ।

ସୂର୍ଯ୍ୟାସ୍ତ ସମୟ, କିଲ୍ଲା ପଡ଼ିଆ ଉତ୍ତର ଭାଗ ନଦୀକୂଳ ନିରୋଳାରେ ଯୋଡ଼ିଏ ଯୁବକ ବସିଛନ୍ତି । ଗୋଟିକର ବୟସ ଅନୁମାନ ବାଇଶ, ଆଉ ଗୋଟିକର ଉଣେଇଶ କୋଡ଼ିଏ ମଧ୍ୟରେ ।

ସାନ ଯୁବକଟି କଥା ଆରମ୍ଭ କଲେ, "ସଦେଇ ଭାଇ ! ଉତ୍କଣ୍ଠିକା କଣ କରିବାକୁ ହେବ, ମୁଁ କିଛି ଠିକ୍ କରି ପାରୁନାହିଁ । ତୁମ୍ଭର ଇଚ୍ଛା କଣ ?"

ସଦାନନ୍ଦ— ଶୁଣ ଗୋବିନ୍ଦ, ଆଜକୁ ଆଠ ଦିନ ହେଲା ଦିନ ରାତି ମୁଁ କେବଳ ସେହି କଥା ବସି ଭାବୁଛି । ଦେଖ ଭାଇ, ମୋର ଏଥିରେ କିଛିମାତ୍ର ସ୍ୱାର୍ଥ ନାହିଁ । ହେଲେ, ତୋ ମଙ୍ଗଳରେ ମୋର ମଙ୍ଗଳ । ତୁ ହେଲୁ ମୋର ସବୁ । ଉତ୍କଣ୍ଠିକା ଆମ୍ଭମାନଙ୍କୁ ଖୁବ୍ ସାବଧାନ ହୋଇ କାର୍ଯ୍ୟ କରିବାକୁ ହେବ । ଜାତିର ଉନ୍ନତି, ସମାଜର ମଙ୍ଗଳ ସାଧନ ପ୍ରତି ଦୃଷ୍ଟି ରଖିଥିବା ସର୍ବାଗ୍ରେ ଉଚିତ । ନିର୍ବୋଧ ଲୋକଙ୍କ କଥାରେ ପଡ଼ି ଅନ୍ଧବିଶ୍ୱାସରେ ଆମ୍ଭେମାନେ ଯଦି ଆଗ [illegible] ନ

ଅନାଇ ଗୋଟିଏ କାର୍ଯ୍ୟ କଲ୍ପେ କାଉଁ, ତେବେ ଏତେ ଜ୍ଞାନାର୍ଜନର ଫଳ କଣ ? ତାହାହେଲେ, ପୁଣି ଜାତିର ଅବନତି ଯେ ମୂଳ ହୋଇ ରହିବ, ଏଟା ଏକାବେଳକେ ନିଶ୍ଚିତ କଥା ବୋଲି ଜାଣିବୁ ।

ଗୋବିନ୍ଦ—ସଦେଇ ଭାଇ ! ରାଜୀବଲୋଚନ ବାବୁ ଯେଉଁ ବିଷ୍ଣୁ ପ୍ରସଙ୍ଗ ଉଠାଇଛନ୍ତି, ସେଇଟା ସଙ୍ଘଟନ ହେବା ଏକାବେଳକେ ଅସମ୍ଭବ । ଶୁଣ ଭାଇ, ପ୍ରଥମ—ଆମ୍ଭେମାନେ ହେଲେ ଶ୍ରୀକରଣ, ସେମାନେ ଜାତିରେ ଉଞ୍ଚା, ପୁଣି ବଂଶଗତ ବିବାଦ ମାଲିମକଦ୍ଦମା ଚାଲିଛି; ବାପା କଣ ସହଜରେ ସମ୍ମତ ହେବେ ? ନ ହୁଏ ବାପାଙ୍କୁ କୌଣସିରୂପେ ରାଜି କରାଗଲା । ଜାତି-ଭାଇମାନେ ସମ୍ମତ ହେବେ କିଁଆ ? ସେମାନଙ୍କୁ ଏଡ଼ି ଦେଇ ବାପା କୌଣସି କାର୍ଯ୍ୟ କରିବେ, ତୁ କଣ ଏହା ବିଶ୍ୱାସ କରୁ ?

ସଦାନନ୍ଦ—ଦେଖ ଗୋବିନ୍ଦ ! ତୁ ପୁଣି ଗୋଟାଏ ମରହଟ୍ଟିଆ କଥା ଆରମ୍ଭ କରି ବସିଲୁ ! ବର୍ତ୍ତମାନ ଦେଶ କାଳ ପାତ୍ର ଗୁରୁଆଡ଼କୁ ଅନାଇ କଥା କହିଲେ ସିନା ହେବ । ମତେ ଭବିଷ୍ୟତ କଥା ଦିଶି ଯାଉଛି—ତୁ ସମାଜର ନେତା, ଆଦର୍ଶ ପୁରୁଷ ହେବୁ । ସେଥିକି ଦୃଷ୍ଟି ରଖି କାର୍ଯ୍ୟ କଲେ ସିନା ହେବ । କଣ ଗୋଟାଏ କାଳ୍ପନିକ ଜାତ୍ୟାଭିମାନ ବୃଥା ଗର୍ବ କଥା ବୋଇଲୁ ରେ ! ଆମ୍ଭେ ବଡ଼ କରଣ, ରାଜୀବ ଉଞ୍ଚା କରଣ, ଏ ମାପ କାଠି କେଉଁଠୁ ପାଇଲୁ ? ଏହି ସାମ୍ୟ ମୈତ୍ରୀ ସ୍ୱାଧୀନତା ପ୍ରଚୁର ଦିନରେ ଏପରି ଅଖାଡ଼ୁଆ କଥାଟାଏ କଣ କହି ପକାଇବା ଉଚିତ ? ନ ଡର କରଣ ଛ ବାର୍ତ୍ତ - ଏହିଟା ହେଲା ଜାତିର ଅବନତିର ଅନ୍ୟତମ ଅଥବା ମୂଳ କାରଣ । ଧନ, ଜ୍ଞାନ, ଲୋକ ବାହୁଲ୍ୟ ଏହି ତିନିଗୋଟି ହେଲା ଜାତିର ଉନ୍ନତି ବା ଗୌରବ ଲାଭର ହେତୁ । ହିନ୍ଦୁ ଜାତି ଗତସର୍ବସ୍ୱ, ପରପଦାନତ, ଏଥିର ଅମୋଘ କାରଣ କଣ ଜାତିର ପାର୍ଥକ୍ୟ ନୁହେ ? ଏଇଟା ହେଲା ନିତାନ୍ତ ଅପ୍ରାକୃତିକ କଥା । ପ୍ରକୃତିଦତ୍ତ ସହଜ ବିଧାନ ଅବମାନନାକାରୀ କଷ୍ଟ-ଭୋଗୀ ହେବ, ଏଇଟା ତ ସ୍ୱତଃସିଦ୍ଧ କଥା । ଗୀତାରେ ତ ପଢ଼ିଛୁ, "ଗୁଣ କର୍ମବିଭାଗଶଃ" ଗୁଣ କର୍ମ ଆଗୁର ବେ ର ସର୍ବ ବିଷୟରେ ଏକ କରଣ ଜାତି, ଏଥି ମଧ୍ୟରେ ପୁଣି ପାର୍ଥକ୍ୟ କଣ ? ଆଉ ଗୋଟାଏ କଥା ଶୁଣ, ଆମ୍ଭମାନଙ୍କ ସାକ୍ଷାତରେ ଦୁଇ ପ୍ରଧାନ କରଣ ଘରୁ ମିଥ୍ୟ ମାଲିମକଦ୍ଦମାରେ ଲାଖକୁ ଲାଖ ଟଙ୍କା ବାହାରି ଯାଉଛି, ଶତ ଶତ ଲୋକ ମିଥ୍ୟା ସାକ୍ଷ୍ୟ ଦେଉଛନ୍ତି, କେତେ ନିରୀହ ଲୋକଙ୍କୁ ଦାରୁଣ କାରାଦଣ୍ଡ ଭୋଗ କରିବାକୁ ହେଉଛି । ଦୁଇ ବଂଶକୁ ଭାବୀ ଦାରିଦ୍ର୍ୟରୁ ରକ୍ଷା, ନିରୁପାୟ ଦରିଦ୍ର ଲୋକଙ୍କୁ ମିଥ୍ୟା ସାକ୍ଷ୍ୟରୂପ ମହାପାପରୁ ଉଦ୍ଧାର, ଦରିଦ୍ର ପ୍ରଜାମାନଙ୍କ କଷ୍ଟ ବିମୋଚନ ନିମନ୍ତେ ହେଲେ ତୁମ୍ଭ ପରି ଜ୍ଞାନୀ ଦେଶହିତୈଷୀ ପରୋପକାରୀ ପ୍ରଜାପାଳକ ଲୋକ ପକ୍ଷରେ ଗୋଟାଏ ଉପାୟ ଅବଲମ୍ବନ କରିବା ଉଚିତ ନୁହେଁ କି ? ଆମ୍ଭମାନଙ୍କ କରଣ ସମାଜର ଦୁର୍ନୀତି ସହଜରେ ତୁମ୍ଭ ଯୋଗେ ନିଷ୍ପୁନିବାରିତ ହୋଇପାରେ । କଥାଟା ପରିଷ୍କାରରୂପେ ଫିଟାଇ କହିବା ଉଚିତ । ଇନ୍ଦୁମତୀ ସହିତ ତୋହର ଯଦି ଶୁଭ ପରିଣୟ କାର୍ଯ୍ୟ ସମ୍ପନ୍ନ ହୋଇଯାଏ, ନିଆଁରେ ପାଣି ପକାଇଲା ପରି ସବୁ ମାଲି ମାମଲା ଦୁର୍ଯୋଗ ଏକାବେଳକେ ଦୂର ହୋଇଯିବ, ନିଶ୍ଚୟ ଜାଣିବୁ । ସେକ୍ସ୍‌ପିୟରଙ୍କ ରୋମିଓ ଜୁଲିୟେଟ ବୃତ୍ତାନ୍ତ ତ ଭଲକରି ତୋତେ ଜଣାଅଛି । କେପ୍ୟୁଲେଟ ଓ ମଣ୍ଟେଗୋ ଦୁଇ ବଂଶ ମଧ୍ୟରେ ଦୀର୍ଘକାଳବ୍ୟାପୀ ବିବାଦ ବିସମ୍ବାଦ ହାଣକାଟ ଏକ ବିବାହସୂତ୍ରରେ ସମସ୍ତ ଶେଷ । ଏତିକିମାତ୍ର ପାର୍ଥକ୍ୟ ହେବ, ସେମାନଙ୍କର ବିଷାଦାତ୍ମକ ଆମ୍ଭମାନଙ୍କର ହେବ ଉତ୍ସବାତ୍ମକ ମିଳନ ।

ଗୋବିନ୍ଦ—ନାହିଁ-ନାହିଁ, ସଦେଇ ଭାଇ ! ବାପାଙ୍କ ସ୍ୱଭାବ ତ ଜାଣୁ, ସେ କିପରି ଦୃଢ଼ପ୍ରତିଜ୍ଞ ଲୋକ । ସେ

ଏଥିରେ ସମ୍ମତ ହେବେ ବୋଲି ତୁ କିଣ ବିଶ୍ୱାସ କରୁ ?

ସଦାନନ୍ଦ ଆଚ୍ଛା ଗୋବିନ୍ଦ, ମୁଁ ନ ହେଲି ସ୍ୱୀକାର କଲି, ପିଉସା ଏଥିରେ ସମ୍ମତ ହେବେ ନାହିଁ, ଆଚ୍ଛା ମତେ ନ ହେଲି ପରିତ୍ୟାଗ କଲେ, ତାଙ୍କ ସମ୍ପତ୍ତିରୁ ବଞ୍ଚିତ ହେଲି । ମାତ୍ର, ତୋର ଏଥିରେ କ୍ଷତି କିଣ ? ସଙ୍କର୍ଷଣ ବାବୁଙ୍କ ଜମିଦାରୀ ରିପୋର୍ଟ ଆମ୍ଭମାନଙ୍କ ତାଲୁକଠାରୁ ଢେର ବେଶି—ମହାଜନୀ ତେଜାରତି କାରବାରରେ ଢେର ଟଙ୍କା ଖେଳେ । ଲୋକେ କହନ୍ତି, ସମସରପୁର ସାନ୍ତଙ୍କର ଉଚ୍ଚ ଯେତିକି ପୋତା ତେତିକି । ସଙ୍କର୍ଷଣ ବାବୁ ଜବାବ୍ ଦେଇଛନ୍ତି, ସମସ୍ତ ବିଷୟ ଆଶୟ ତୋ ନାମରେ ଲେଖି ରେଜିଷ୍ଟରି କରାଇଦେବେ । ମାତ୍ର, ଭାଇ ଗୋବିନ୍ଦ ! ମୋ ଭବିଷ୍ୟତ କଥା ଲେଖି ରଖ । ସମୟରେ ଦୁଇ ତାଲୁକା ଏକ ହୋଇଯିବ, ତୁ ଏକାଙ୍ଗଚକ୍ରବର୍ତ୍ତୀ ହୋଇଯିବୁ । ନିଶ୍ଚୟ ନିଶ୍ଚୟ ନିଶ୍ଚୟ ଏ କଥା ଜାଣିବୁ । ଏ କଥା ଯେବେ ନ ହୁଏ, ତୁ ସଦେଇ ଭାଇ ନାମରେ କୁକୁର ପୋଷିବୁ । ଭାଇ ଗୋବିନ୍ଦ ! ତୁ ତ ଏତେ ଲେଖାପଢ଼ା ଶିଖିଛୁ, ତୋ ପରି ପ୍ରତିଭାଶାଳୀ କବି ଗୋଟାଏ ଓଡ଼ିଶାରେ ଖୋଜି ଜଣେ କାଢ଼ିଲୁ ? ମନୁଷ୍ୟ ସ୍ୱଭାବ କିଣ ଆଲୋଚନା କରି ଦେଖି ନାହୁଁ ? ତୁ ହେଲୁ ଏକମାତ୍ର ବଂଶଧର, ଶ୍ରୀ କରଣକୁଳର ଚନ୍ଦ୍ରମା, ପିଉସା କିଣ ମତେ ସହଜରେ ତ୍ୟଜ୍ୟପୁତ୍ର କରି-ଦେବେ ? ଆଚ୍ଛା, ତର୍କ ସୂତ୍ରରେ ସ୍ୱୀକାର କଲୁଁ, ତାହା ଜାଣି କଲେ; ମାତ୍ର ହିନ୍ଦୁଶାସ୍ତ୍ର ମିତାକ୍ଷରା ବିଧାନ ଅନୁସାରେ ସମ୍ପତ୍ତିରୁ ବଞ୍ଚିତ କରିବା ତାଙ୍କର କିଣ ଅଧିକାର ଅଛି ? ମୁଁ କିଣ ସମ୍ପତ୍ତି ସକାଶେ ଏତେ ଟାଣି ହେଉଛି, ତୋର ଯାହା ଭଲ ହେବ, କୋଟିପତି ପକ୍ଷରେ ମଧ୍ୟ ତାହା ଦୁଷ୍ପ୍ରାପ୍ୟ । ଚିନ୍ତା କରି ଦେଖ ନା, ଗୋଟା ଉତ୍କଳରେ କେତେ ଜଣ କୁଳଲକ୍ଷ୍ମୀ କବି ?

ଅବଶ୍ୟ ପିତାମାତାଙ୍କୁ ସମ୍ମାନ କରିବା, ସେମାନଙ୍କର ଆଜ୍ଞାବହ ହୋଇ ରହିବା ସମ୍ପୂର୍ଣ୍ଣରୂପେ ଆମ୍ଭମାନଙ୍କ ପକ୍ଷରେ କର୍ତ୍ତବ୍ୟ । ଶାସ୍ତ୍ରରେ ମଧ୍ୟ ଲେଖା ଅଛି,

'ପିତା ସ୍ୱର୍ଗ ପିତା ଧର୍ମଃ ପିତା ହି ପରମଂ ତପଃ ।
ପିତରି ପ୍ରୀତିମାପନ୍ନେ ପ୍ରୀୟନ୍ତେ ସର୍ବଦେବତାଃ ।'

ମାତ୍ର ସମସ୍ତ ବିଷୟରେ ବିବେକାନୁମୋଦିତ କାର୍ଯ୍ୟ କରିବା ଉଚିତ । ଜୀବନବ୍ୟାପୀ କ୍ଲେଶକର, ସମାଜର ଅନିଷ୍ଟକାରୀ, ଜାତୀୟ ଉନ୍ନତିର ଅନ୍ତରାୟ— ପିତା ଅବିବେକ ପଣରେ ଅଥବା କୁସଂସ୍କାରଚ୍ଛନ୍ନ ହୋଇ ଏପରି ଯଦି କିଛି କଥା ଆଦେଶ କରନ୍ତି, ତାହା କିଣ ସମ୍ମାନ କରିବା ଉଚିତ ? ପ୍ରତ୍ୟୁତ ପ୍ରକାରାନ୍ତରେ ତାଙ୍କୁ ଅପମାନିତ ଓ ତାଙ୍କର ଅନିଷ୍ଟ ସାଧନ କରିବାକୁ ହୁଏ । ତୋହର ଲାଭ-କ୍ଷତି ଶୁଭାଶୁଭ ସମସ୍ତ ବିଷୟ ତାଙ୍କର ନିଜର ବୋଲି ଜାଣିବୁ ।

ଆମ୍ଭମାନଙ୍କ ସମାଜରେ ଚିରାଗତ ପ୍ରଚଳିତ ନିୟମ, ବର କନ୍ୟା ସମ୍ବନ୍ଧ ସମୟରେ ପିତା ମାତା ଧନ ସମ୍ପତ୍ତି ମାନମର୍ଯ୍ୟାଦା ବିଷୟ, ବନ୍ଧୁମାନେ କୁଳର ନିର୍ମଳତା, ଅପର ସାଧାରଣ ମିଷ୍ଟାନ୍ନ ଭୋଜନ ବିଷୟ ତତ୍ତ୍ୱ ନେଇ ଥାନ୍ତି । ମାତ୍ର କନ୍ୟାଟି କିରୂପ ଚରିତ୍ରବତୀ, କେତେଦୂର ବିଦ୍ୟାଶିକ୍ଷା କରିଛି, ଏ ବିଷୟ ଅନୁସନ୍ଧାନ କରିବା ଯେ ଉଚିତ, ଏ କଥା ଥରେ ହେଲେ କାହାର ମନରେ ଉଦିତ ହୁଏ ନାହିଁ । ଉପସ୍ଥିତ କ୍ଷେତ୍ରରେ ତୁ ବିଷୟଟି ବିଚାର କରି ଦେଖ । ତୋପାଇଁ ଯେଉଁ କନ୍ୟାଟି ପିଉସା ଠିକ କରିଛନ୍ତି, ସେ ଲେଖା ପଢ଼ା ଜାଣେ କି ନା କେହି ହେଲେ ଥରେ ଏ ବିଷୟ ତତ୍ତ୍ୱ ନେବା ଉଚିତ ବୋଲି ବିଚାରିଲେ ନାହିଁ । ମୁଁ ଯାହା ଶୁଣିଛି, କନ୍ୟାଟିର ଯେ ବର୍ଣ୍ଣପରିଚୟ ପର୍ଯ୍ୟନ୍ତ ହୋଇ

ନାହିଁ, ଏ କଥା ନିଶ୍ଚିତରୂପେ ବୋଲାଯାଇ ପାରେ । କନ୍ୟାଟି ଆସି ତିନି ଗୁରବର୍ଷ କଥା କହିବ ନାହିଁ, ତୁଚ୍ଛା ଚୂ—ଚୂ କରିବ, କୁଜା ପରି ନଇଁ ନଇଁ ଚୂଲିବ । ଅର୍ଦ୍ଧରାତ୍ରି ଉତ୍ତାରେ କେତେ କ୍ଷଣ ସକାଶେ ଦେଖା ସାକ୍ଷାତ୍ । ଗୁଣ ମଧ୍ୟରେ ଶ୍ରୀକରଣ ଝିଅ । ଧୋଇ ପିଉଥାଅ । ବହୁଶାସ୍ତ୍ରଦର୍ଶୀ ଗୋଟିଏ ଯୁବକ ଏପରି ଜଡ଼ବତ୍ ସଙ୍ଗିନୀକୁ ପାଇ କେତେଦୂର ଜୀବନରେ ସୁଖଭୋଗ କରିବାକୁ ସମର୍ଥ ହେବ, ସହଜରେ ଅନୁମାନ କରାଯାଇ ପାରେ । ଏଥିର ପ୍ରତିକାରର ଉପାୟ ସହଜଲଭ୍ୟ । ଉପସ୍ଥିତ ସୁଖସୌଭାଗ୍ୟକୁ ଯେ ପରିତ୍ୟାଗ କରେ, ତାହାର ଚିରଜୀବନ ଦୁର୍ଦ୍ଦଶା ଭୋଗ ସକାଶେ, ତା' ପ୍ରତି ସହାନୁଭୂତି ପ୍ରକାଶ କରିବା କୌଣସି ଲୋକ ପକ୍ଷରେ ନିଷ୍ପ୍ରୟୋଜନ । ବିଦ୍ୱାନ୍ ବିବେକଶାଳୀ ଲୋକ ଯଦି ଏପରି କାର୍ଯ୍ୟ କରିବ, ଆତ୍ମଘାତୀ ବୋଲି ଆଉ କାହାକୁ ବୋଲଯିବ ?

ଶୁଣ ଭାଇ ଗୋବିନ୍ଦ ! ମୁଁ ତୁନି ହୋଇ ବସି ନାହିଁ, ମାସେ ହେଲା ଅନୁସନ୍ଧାନରେ ଅଛି । ସଙ୍କର୍ଷଣ ବାବୁଙ୍କ କନ୍ୟା ସମ୍ପୂର୍ଣ୍ଣରୂପେ ତୋର ଉପଯୁକ୍ତ । ତା' ସମାନ ସୁଗଠନା ସୁନ୍ଦରୀ କରଣକୁଳରେ ଦୁର୍ଲ୍ଲଭ । ବିଦ୍ୟାବତୀ, ବିଶେଷରେ ପ୍ରତିଭାମୟୀ, ପୁଣି ସୁନ୍ଦର ଭାବପୂର୍ଣ୍ଣ କବିତା ଲେଖିପାରେ, ଚିତ୍ରକଳାରେ ନିପୁଣା, ସମସ୍ତ ସଦ୍‌ଗୁଣ ପରିପୂର୍ଣ୍ଣ । ମୋହର ଯାହା ବୁଝିବାର ବୁଝିଛି, କହିବାର କହିଲି; ଯାହା ମନକୁ ଆସେ କର, ପଛକୁ ମୋ ଦୋଷ ବାଛିବୁ ନାହିଁ ।"

ସତେଇ ଭାଇ କଥା ଶୁଣି କୁଅଁର ବାବୁଙ୍କ ମୁଣ୍ଡ ବୁଲାଇଲାଣି । ମିଶନ ସ୍କୁଲରେ ପଢ଼ିବାବେଳେ ମାଷ୍ଟରଙ୍କ ମୁଖରୁ ଧର୍ମଶାସ୍ତ୍ରବଚନ ଶୁଣିଥିଲେ, "ପୁରୁଷ ପିତା-ମାତାଙ୍କୁ ପରିତ୍ୟାଗ କରି ଭାର୍ଯ୍ୟା ସହିତ ମିଳିତ ହେବେ ?

କୁଅଁର ବାବୁ—ମୁଁ ଭାବି ଭାବି କିଛି କଥାର ଠିକଣା ଲଗାଇ ପାରୁ ନାହିଁ । ତୁ ଯାହା ଭଲ ବିବେଚନା କରୁ, କର ।

ସଦାନନ୍ଦ—ଗୋବିନ୍ଦ, ତୁ ତ ଜାଣୁ, 'ଶ୍ରେୟାଂସି ବହୁ ବିଘ୍ନାନି ।' ଯେବେ କରିବା ଠିକ ହେଲା, ଚଞ୍ଚଳ କରି ପକାଇବା ଉଚିତ ।

କୁଅଁର ବାବୁ—ତୁ ଏଇଲାଗେ ରାଜୀବ ବାବୁଙ୍କ ସାଙ୍ଗରେ ସାକ୍ଷାତ୍ କରି ସବୁ କଥା ଠିକ ଠିକଣା କରି ପକା ।

ସଦାନନ୍ଦ—ମୁଁ ଏଇ ବାଟେ ଯାଉଛି, ତୁ ବସାକୁ ଯା, ଖବରଦାର ! ସଇତା ଯେପରି କଥାର ଗନ୍ଧ ବାସ ନ ପାଏ । ତୁ ତାକୁ ଭଲ ପାଉ ସତ, ହେଲେ ମୂର୍ଖ ଭଣ୍ଡାରି ଟୋକାଟାକୁ ବିଶ୍ୱାସ କଣ ? କଥାଟା ତା' କାନରେ ପଡ଼ିଗଲେ ଗୃହିଆଡ଼େ ନ ଗରା ପିଟି-ଦେବ । 'ଛଅ କାନ ମନ୍ତ୍ରଭେଦ', ଜାଣୁ ତ ?

———

## —୧୮—

## ରାଜୀବଲୋଚନ ଓ କମଳଲୋଚନ

କମଳଲୋଚନ—ରାଜୀବଲୋଚନ ବାବୁ ! ମୋ ବକ୍ତୃତା ଶୁଣିଲେ ତ ? ଦେଖୁଛନ୍ତି ତ, ଟୋକାର ମୁଣ୍ଡ ବୁଲିଗଲାଣି ? ରହନ୍ତୁ, କଣ ହୋଇଛି କି, ଆଉ ଯୋଡ଼ାଏ ବକ୍ତୃତାରେ ତାକୁ ତଳେ କଚାଡ଼ି ଦେବି । ଆପଣ କ'ଣ ମନେ କରୁଛନ୍ତି, ସଞ୍ଜ ବାଦେ ମୁଁ କବାଟ ଆଉଜାଇ ଦେଇ ତୁନି ହୋଇ ବସିଥାଏଁ ? ଆଠ ଦିନ କାଳ ଭାବି ଭାବି ଏହି ବକ୍ତୃତାଟା ଠିକ କରିଥିଲି । ଦିନ ରାତି ସେହି କଥାଟା ଚିନ୍ତା କରି ମୋ ମୁଣ୍ଡ ଖରାପ

ହୋଇଗଲାଣି । ଦେଖୁଛନ୍ତି ତ, ଆଉ କଲେଜ ପଢ଼ା କିଛି କରିପାରୁ ନାହିଁ । ଆପଣ ଅନୁଗ୍ରହ କରି ଅବଶ୍ୟ ଅବଶ୍ୟ ମୋ ବକ୍ତୃତାର ବିଶେଷ ବିବରଣ, ମାମୁସାନ୍ତଙ୍କୁ ଲେଖିବେ, ବିଶେଷ କରି ଲେଖିଦେବେ, ଆଉ କିଛି କରିବାକୁ ହେବ ନାହିଁ, କେବଳ ମୋ ବକ୍ତୃତା ବଳରେ ମାମଲା ଫତେ ହୋଇଯିବ । ଦେଖିଲେ ତ, ଯେଉଁମାନଙ୍କୁ ଦୁଇ ଦୁଇ ମାସ ହେଲା ବସାରେ ବସେଇ ରଖିଛନ୍ତି, ବକ୍ତୃତାବେଳେ 'ଏଁ—ଉଁ—ଏଁ—ଉଁ' କରି ଚୁନ ହୋଇ ବସି ପଡ଼ିଲେ । 'ଯେତେ କଥାଅ ଟଣାଟଣି—କାମ ପଡ଼ିଲେ ଜଣାଜଣି ।' ମାମୁ ସାନ୍ତଙ୍କୁ ଲେଖନ୍ତୁ, ନିର୍ଭୟରେ ବସି ଥାଆନ୍ତୁ, ସବୁ କାମ ମୋ ଜିମା । ରାଜୀବଲୋଚନ ବାବୁ, ଆପଣଙ୍କୁ ତ ସବୁ କଥା ଜଣା, ଆଉ ଜାଗା ହୋଇଛି ଯେ ଲୁଚାଇବି ? ଆପଣଙ୍କ କଥାରେ ପଡ଼ି ଦୁଇ ଦୁଇ ଜାଗାର ଟ୍ୟୁସନ୍ ଏକାବେଳକେ ଛାଡ଼ିଦେଇଛି—ତେତିକ ଥିଲା ମୋର ସବୁ । କଲେଜ ଫି, ବୋର୍ଡିଂ ଖର୍ଚ୍ଚ, ଲୁଗାପଟା, ବହି କଣା ସବୁ ସେଇଥିରୁ । ଫେର ମାସକୁ ମାସ ଘରକୁ କିଛି କିଛି ପଠାଇବାରେ ଲୋଡ଼ା ହୁଏ । ଆପଣଙ୍କ ସାଙ୍ଗରେ ଯେ କଥା ଛିଡ଼ିଛି, ତା ଅଛି । ଯାହା ଦେଇଥିଲେ, ସେ ତ ନିତାନ୍ତ ଅଳ୍ପ, ସରିଗଲାଣି । ଆପଣ ନ ହୁଏ ହାତ ଉଧାର ସ୍ୱରୂପ ଉଚ୍ଛୁଣିକା ମୋତେ ଦୁଇଶ ଟଙ୍କା ଦେଇ ଥାଉନ୍ତୁ । ଏ ଟଙ୍କାଟା ଅଲଗା କଥା, ମୁଁ ନ ହୁଏ ଘର ପାଖରୁ ଆଣାଇ ଆପଣଙ୍କ ଟଙ୍କା ଶୁଝିଟ କରିଦେବି ।

ରାଜୀବଲୋଚନ—କମଳଲୋଚନ ବାବୁ ! ଆପଣ ଦେଖୁଛନ୍ତି ତ ମୋ ହାତଟା କିଛି ଟାଣଟଣ ପଡ଼ିଛି, ବସାର ଖରଚରେ ବି ହରକତ ହେଉଛି । କାଲି ସକାଳେ ମାମୁଁ ସାନ୍ତଙ୍କୁ ଲେଖିବି । ଏଇ ଦେଖନ୍ତୁ, ଦିନ ଗୁରିକା ଭିତରେ ସମସରପୁରରୁ ଲୋକ ବାହୁଡ଼ି ଆସିବ । କିଛି ଭାବନା କରିବେ ନାହିଁ, ଲୋକ ପହଞ୍ଚି-ଗଲେ ଆପଣ ପାଇଯିବେ ।

କମଳଲୋଚନ—ଶେଠିରେ ମୋ ବକ୍ତୃତା ବିଷୟ ଅବଶ୍ୟ ଅବଶ୍ୟ ବିଶେଷ କରି ଲେଖିବେ । ଆହୁରି ଗୋଟାଏ ଲମ୍ବା ବକ୍ତୃତା ମୁଁ ରଚନା କରୁଛି, ଏହା ମଧ୍ୟ ଲେଖିଦେବେ ।

———

-୧୯-

## ଶୁଭ ସମାଚାର

ସମସରପୁର ଉଆସର କୁଳଦେବତା ବିନୋଦ-ବିହାରୀ ଠାକୁରଙ୍କ ସମ୍ମୁଖ ନାଟମନ୍ଦିର ମଧ୍ୟରେ ଆସି ସାମନ୍ତ ସଙ୍କର୍ଷଣ ମହାନ୍ତିଏ, ପୁରୋହିତ ବିଶ୍ୱନାଥ ଶତପଥୀଏ, ଗ୍ରାମୁକରଣ ଶ୍ରୀକଣ୍ଠ ପଟ୍ଟନାୟକେ, ଡ୍ରୋହାଚାର୍ଯ୍ୟ ଭାସ୍କର ଖଡ଼ିରତ୍ନେ ବସିଛନ୍ତି । ମନ୍ଦିର ଶୋଧ ହୋଇ ଯାଇଛି— ସିଂହଦ୍ୱାର, ପଶ୍ଚିମଦ୍ୱାର, ଚୋରାଦୁଆର ସବୁ ବନ୍ଦ । ପୁଣି ଶିକୁଳି କଡ଼ାମାନଙ୍କରେ ବଡ଼ ବଡ଼ ନଳୀ-କୋଲପ ପଡ଼ିଛି । ତହିଁ ବାଦେ ପଦା ଆଡ଼େ ଯୋଡ଼ିକ ଯୋଡ଼ି ପାଇକ ପହରୀ, ବିଲେଇ ପିଲାଟିଏ ବି ଭିତରକୁ ପଶିବା ବାସନ୍ଦ ।

ସାମନ୍ତେ ପଚାରିଲେ—ହୋଇ ହେ ଖଡ଼ିରତ୍ନେ, ଏଥି ମଧ୍ୟରେ କଣ ଲଗ୍ନ ନାହିଁ ?

ଖଡ଼ିରତ୍ନେ ଆଉଥରେ ପାଞ୍ଜି ଓଲଟାଇ ପାଲଟାଇ ଭଲ କରି ଦେଖି କହିଲେ,"ଆଜ୍ଞା, ଏଥି ମଧ୍ୟରେ କାହିଁ, ଏ ବର୍ଷ ମଧ୍ୟରେ ବି ଲଗ୍ନ ନାହିଁ । ଆସନ୍ତା ବର୍ଷକୁ ନୂଆ ପାଞ୍ଜି ବାହାରିଲେ ଯାହା ହେବ, ଜଣା ପଡ଼ିବ"

ସାଆନ୍ତେ ଯେମନ୍ତ ଟିକିଏ ବ୍ୟସ୍ତ ହୋଇ ପଡ଼ିଲେ । ପୁରୋହିତ ବିଶ୍ୱନାଥ ଶତପଥୀଏ ବୟୋବୃଦ୍ଧ ପୁରୁଖା ଲୋକ, ଶାସ୍ତ୍ରଜ୍ଞାନ ଭଲ ଅଛି; ସାନ୍ତଙ୍କ ଅଭିପ୍ରାୟ ଜାଣି

କହିଲେ, "ଆଜ୍ଞା, ଶାସ୍ତ୍ରରେ ଏପରି ମଧ୍ୟ ବିଧାନ ଅଛି, ଅରକ୍ଷିତା କନ୍ୟା ସକାଶେ ଲଗ୍ନାଲଗ୍ନ ବିଚାର ଥାଏ ନାହିଁ । ଆମ ଦେଓ୍ୱାନ ମଣିମା ବୟଃପ୍ରାପ୍ତା, ଏଥିକୁ ଅରକ୍ଷିତା । ତାଙ୍କ ମଙ୍ଗଳକୃତ୍ୟ ପାଇଁ ଲଗ୍ନ-ବିଚାର ଅନାବଶ୍ୟକ ।" ସାଆନ୍ତେ ଭଟ୍ଟାଚାର୍ଯ୍ୟଙ୍କ ମୁଖକୁ ଚାହାନ୍ତେ, ସେ କହିଲେ, "ନାହିଁ କିଣ, ଜ୍ୟୋତିଷ-ଶାସ୍ତ୍ରରେ ବି ଏହିପରି ଲେଖା ଅଛି । ଆଜ୍ଞା ଆଜ୍ଞା ଦଶ ପାଞ୍ଚ ଜାଗାରେ ଏହିପରି ଘଟଣା ଘଟିଥିବାର ମୁଁ ଦଦେଇଙ୍କ ମୁହଁରୁ ଶୁଣିଛି । ସେ ଥିଲେ ମୁଁ ଏହିକ୍ଷଣି ମୁକାବିଲା କରାଇ ଦିଅନ୍ତି ।"

ସାଆନ୍ତ—ତେବେ ଭଲ କରି ପାଞ୍ଜି ଦେଖି ବିଭାଘର ଦିନଟାଏ ଠିକ୍ କରିପକାଅ ।

ଜ୍ୟୋତିଷେ ଆଗେ ଆଗେ କହିଲେ, "ଦୁଇ ଟିପଣୀ ଏକ ସାଙ୍ଗରେ ଥିଲେ ଭଲ ହୁଅନ୍ତା, ତାହା ତ ନାହିଁ; ହେଉ ।" ଏତିକି କହି ଅଣ୍ଟାରୁ ଖଡ଼ି ଗୋଟାଏ କାଢ଼ି ଭୂଇଁରେ ରାଶିଚକ୍ରଟାଏ କାଟିଲେ । ତହିଁ ବାଦେ ଜେମାଙ୍କ କୋଷ୍ଠୀରେ ଗ୍ରହ ଲଗ୍ନ ଯେଉଁଠାରେ ଯେପରି ଅଛି, ଠିକ ଠିକ ବସାଇ ଦେଲେ, ଜନ୍ମକୁଣ୍ଡଳୀ ମଧ୍ୟ କାଟିଲେ । ତହିଁ ଉତ୍ତାରେ ମହାଦଶା—ଅନ୍ତର ପ୍ରତ୍ୟନ୍ତର ଠିକଣା କରିବାକୁ ଢେର ପାଠ ଲେଖି ଖଡ଼ି ଘଷାଘଷି କରିବାକୁ ହେଲା । ଖଡ଼ି ଥୋଇ କହିଲେ, "ବର୍ତ୍ତମାନ ଜେମା ମଣିମାଙ୍କ ବୃହସ୍ପତି ମହାଦଶା । ବୃହସ୍ପତି ଅନ୍ତର, ବୃହସ୍ପତି ପ୍ରତ୍ୟନ୍ତର ଦଶା ଉପସ୍ଥିତ, ଧନାଧିପତି ବୃହସ୍ପତି ଅତ୍ର କର୍କଟରେ ଉଚ୍ଚ । ତାହାର ମହାଦଶା ଅନ୍ତର ପ୍ରତ୍ୟନ୍ତର ଉପସ୍ଥିତ । ଖୁବ୍ ଶୁଭ ଖୁବ୍ ଶୁଭଦଶା ଉପସ୍ଥିତ । ମଙ୍ଗଳକୃତ୍ୟ କରିବାର ଉପଯୁକ୍ତ ସମୟ ।" ଏ ଉତ୍ତାରେ ଜ୍ୟୋତିଷେ ବିବାହଲଗ୍ନ ସ୍ଥିର କରିବା ବିଷୟରେ ମନୋଯୋଗୀ ହେଲେ । ଢେର ବେଳଯାଏ ବାର, ତିଥି, କନ୍ୟାର ରାଶି, ଲଗ୍ନ ସହିତ ମିଳାଇ ଦେଖିଲେ, ତହିଁ ଉତ୍ତାରେ ସାଆନ୍ତଙ୍କ ଶ୍ରୀମୁଖକୁ ଚାହିଁ କହିଲେ, "ଆଜ୍ଞା ! ଏଥି ମଧ୍ୟରେ କେବଳ ଗୋଟିଏ ଶୁଭଦିନ ଦେଖୁଛି, ମେଷ ଶୁକ୍ଳପଞ୍ଚମୀ ଶୁକ୍ରବାର ରାତି କୋଡ଼ିଏ ଦଣ୍ଡ ଛ ଲିତ୍ୟା ଉତ୍ତାରେ ବୃଷରାଶି ମୃଗଶିରା ନକ୍ଷତ୍ର ଭୋଗ ଯାଇ ପୁନର୍ବସୁ ଏକ ଦଣ୍ଡ ଚାରି ଲିତ୍ୟା ବାର ବିଲିତ୍ୟା ସମୟ ହସ୍ତଗ୍ରନ୍ଥିର ଶୁଭ ଲଗ୍ନ ।"

ସାଆନ୍ତେ ଅତ୍ୟନ୍ତ ଆନନ୍ଦରେ 'ଜୟ ବିନୋଦ-ବିହାରୀ ଜୟ, ବିନୋଦବିହାରୀ ଆଶୀର୍ବାଦ କର' କହି ଦେବବିଗ୍ରହଙ୍କ ସାକ୍ଷାତରେ ପ୍ରଣିପାତ କଲେ । ଉପସ୍ଥିତ ଆଉ ସମସ୍ତେ ମଧ୍ୟ 'ହରିବୋଲ, ହରିବୋଲ, ଜୟ ବିନୋଦବିହାରୀ' କହି ଭୂମିଷ୍ଠ ପ୍ରଣାମ କଲେ । ଏ ଉତ୍ତାରେ ସାଆନ୍ତେ ଆଜ୍ଞା କଲେ, "ଆଜି ହେଲା ଶନିବାର, ଆଜି ଦିନଟା ତ ଗତ ହେଲା । ହେବା ଦିନ ହେବ, ମଝିରେ ବାକି ରହିଲା ଦିନ ପାଞ୍ଚଟା । ଏଥି ମଧ୍ୟରେ ସବୁ ଆୟୋଜନ କରିବାକୁ ହେବ । ଆଉ ଗୋଟାଏ କଥା ବିଶେଷ କରି ସମସ୍ତେ ମନରେ ରଖନ୍ତୁ, ଏଠାରେ କି କାନଆ ପୁଅ ଯେମନ୍ତ ନ ଜାଣିବ । ପୁରୋହିତ ମହାପାତ୍ରେ ଆଉ ଗୁମୁକରଣେ ଟଙ୍କା ଧରି ଆଜି ରାତିବିରାତି କଟକ ରମାନା ହେଉନ୍ତୁ । ମଙ୍ଗଳ-କୃତ୍ୟକୁ ଯାହା ଯାହା ଲୋଡ଼ା, ସବୁ କଟକରୁ ଆସିବ । ଅଧିକ କଣ, ଦୂବ ବରକୋଳିପତ୍ର ବି ଆଉ ଜାଗାରୁ ଅଣାଯିବ । ଏ ତାଲୁକ ଭିତରୁ ବେଠିଆ କାଠିଆ କି ଯିବେ ନାହିଁ, କଟକରୁ ମୂଲିଆ କରି ପଦାର୍ଥମାନ ଅଣାଯିବ । ଖୁବ୍ ସାବଧାନ ! ବିବାହ ଦିନ ସନ୍ଧ୍ୟା ସରିକି ସମସ୍ତେ ଯେମନ୍ତ ଏଠାରେ ପହଞ୍ଚିବେ । ବାଣ ଆଉ ଚୂନା ରୋଷଣି ହାବେଲି ଭୁଇଁଚମ୍ପା ଚନ୍ଦ୍ରଉଦିଆ ଚର୍ଖି, ଏ ସବୁ ସକାଶେ ବଇନା ଦେବେ । ହେଲେ, କେଉଁ ଜାଗାପାଇଁ କାହାର ଲୋଡ଼ା, ଏ ସମସ୍ତ କଥା ଫିଟାଇ କାହାକୁ କହିବ ନାହିଁ । ଫୁଲଝାଡ଼ ଗିଲସଝାଡ଼ ଏ ସମସ୍ତ ଆସିବ । ରୋଷଣିଧରା ମୂଲିଆ କଟକରୁ ଆସିବେ । ରୋସନଚୌକି, କଡ଼ା ନାଗରା,

ତେଲଙ୍ଗୀ ବାଜା ଦଶ କୋଡ଼ିଏ ଦଫା ଆସିବେ । ଗୋଟିପୋ ନାଚ ଗୃହ ପାଞ୍ଚ ପଞ୍ଝା ଆସିବେ । ଭିଙ୍ଗାର ପୁରୁଆ ପଞ୍ଝା ଭଲ ନାଚଗାଇ ପାରନ୍ତି । ଯେତେ ଟଙ୍କା ପଡ଼ୁ, ସେମାନଙ୍କୁ ଆଣିବ । ଆହେ ପୁରୋହିତ ମହାପାତ୍ରେ ! ଆହେ ଗୁମାସ୍ତାଚରଣେ ! ଆମେ ଯେଉଁ ସବୁ କଥା କହିଲୁ ମନରେ ରଖ; ଆଉ ଏହି ତିନୋଟି କଥା ବିଶେଷରୂପେ ମନରେ ରଖ—

୧ । ଖରଚକୁ ଡରିବ ନାହିଁ ।

୨ । କଟକର କେହି ଲୋକ ଯେମନ୍ତ ଜାଣିବେ ନାହିଁ ।

୩ । ଶୁକ୍ରବାର ଠିକ ସନ୍ଧ୍ୟା ସମୟରେ ସମସ୍ତ ଦ୍ରବ୍ୟ ଧରି ଆସି ପହଞ୍ଚିବ ।

ମାଝ ବାଜାଦାର ଆଉ ଷ୍ଟେସନ ଶୁକ୍ରବାର ସନ୍ଧ୍ୟା ସମୟରେ କଟକରୁ ରମାନା ହେବେ । ଗ୍ରାଣ୍ଡ ଦଶ ଘଡ଼ି ସକାଳ ଏଠାରେ ପହଞ୍ଚିବେ । ସେମାନଙ୍କୁ ବାଟ କଢ଼ାଇ ଆଣିବା ସକାଶେ ଘାଟି ଘାଟି ଜଗୁଆଳ ବସିଥିବେ । ବାଣ ବାଜା ଏଠାରେ ପହଞ୍ଚି ଖୁବ୍ ଗୁପ୍ତ ଭାବରେ ଠୁଳ ହୋଇ ରହିଥିବେ, ଆମ୍ଭ ଆଦେଶ ପାଇଲାକ୍ଷଣି ଢୋଲରେ ବାଡ଼ି ପଡ଼ିବ, ସମସ୍ତ ଷ୍ଟେସନ ଏକାବେଳକେ ଜଳି ଉଠିବ । ଏକାବେଳକେ ପଚାଶ ଷାଠିଏ ଗୋଟା ଗଛ ବାଣରେ ନିଆଁ ଦିଆଯିବ ! ଆଉ ଗୋଟାଏ କଥା, ସମସରପୁର ତାଲୁକ ପୂର୍ବପଟ ଶେଷ ମୌଜା ରାଧିକାଦେଈପୁର ଦଣ୍ଡଗ୍ରାମ ତାଲୁକର ପଶ୍ଚିମପଟ ଶେଷ ମୌଜା ଗୋବିନ୍ଦପ୍ରସାଦପୁରକୁ ଲଗାଲଗି । ରାଧିକାଦେଈପୁର ମୌଜାରେ ଗୃହ ପାଞ୍ଚଗୋଟା ବମ୍ବାଇ ଗଛବାଣ ଥିବ, ଗଡ଼ରୁ ଶବଦ ଶୁଣିବାକ୍ଷଣି ସେ ବାଣରେ ଏକାବେଳକେ ନିଆଁ ଦିଆଯିବ, ସେ ତାଲୁକ ଲୋକେ ଯେମନ୍ତ ଶବ୍ଦ ଶୁଣି ଉଠିପଡ଼ିବେ ।

ଖବରଦାର ! ବିଶେଷରୂପେ ମନରେ ରଖ, କଟକରୁ ଆସିବାବେଳେ ବାଟୋଇ ଅଜଣା ଲୋକଙ୍କ ସାଙ୍ଗରେ ବି କଥା କହିବ ନାହିଁ ।

ଆହେ ପୁରୋହିତ ମହାପାତ୍ରେ ! ଆହେ ପଞ୍ଚନାୟକେ ! ତୁମେ ଦୁଇଜଣ ଏକା ମୋହର ବିଶ୍ୱାସୀ । ବାରମ୍ବାର ଚେତେଇ ଦେଉଛୁ, ଖୁବ୍ ଜାଗ୍ରତ ଥିବ, ଯେମନ୍ତ କଥାର ଗନ୍ଧ ନ ଫିଟେ । ନୋହିଲେ, ସବୁ ପ୍ରସଙ୍ଗ ଭଣ୍ଡୁର ହେଲା ଜାଣିବ ।”

———

## -୨୦-

## ଯାତ୍ରାର ଅନୁଷ୍ଠାନ

ଗୁରୁବାର ରାତ୍ର । ଶୁକ୍ଳା ଚତୁର୍ଥୀ । ଚନ୍ଦ୍ର ବୁଡ଼ିବାକୁ ବସିଲାଣି । ବକ୍‌ସିବଜାର ବସାଘର ଦରଜାରେ ଖଣ୍ଡିଏ ସେକେଣ୍ଡ କ୍ଲାସ ଗାଡ଼ି ଘଡ଼ ଘଡ଼ କରି ପହଞ୍ଚିଲା । ରାଜୀବଲୋଚନ ବାବୁ ହସି ହସି ଚଞ୍ଚଳ ଧାଇଁ ଆସି ଗାଡ଼ିରୁ ଦୁଇଜଣ ବାବୁଙ୍କୁ ଅତ୍ୟନ୍ତ ଆଦର ଗୌରବରେ ଓହ୍ଲାଇ ନେଲେ । କୋଚବାକ୍‌ସ କଚୁଆନ ବା ପାଖରେ ଗୋଟିଏ ଚାକରଭଳିଆ ଲୋକ ବସିଥିଲା । ସେ ଧୀରେ ଧୀରେ ଆପେ ଓହ୍ଲାଇ ଆସିଲା । ଗାଡ଼ିକୁ ବିଦାକରି ଦେଇ ରାଜୀବଲୋଚନ ବାବୁ ତଳ ସଦର ଦୁଆରେ କୋଲପ ଲଗାଇ ଦେଲେ । ଅଭ୍ୟାଗତ ଦୁଇ ବାବୁଙ୍କ ହାତ ଧରି ଉପର ତାଲାକୁ ଉଠିଗଲେ । ସେଠାରେ ଯେଉଁ ତିନିଜଣ ଯୁବକ ଅପେକ୍ଷା କରୁଥିଲେ । ହସି ହସି ଧାଇଁ ଆସି ଅତି ସମାଦର, ଅତି ବିନୟରେ ଇଂରେଜୀ ଢଙ୍ଗରେ “ଉତ୍ତମ ରାତି” କହି କରମର୍ଦ୍ଦନ ପୂର୍ବକ ମେଜ ପାଖ ଚୌକିରେ ବସାଇଲେ । ବାବୁମାନଙ୍କ ସଙ୍ଗୀ ଚାକରଟି ତଳେ ରୋଷେଇ ଘରେ ଚାକରମାନଙ୍କ ସଙ୍ଗରେ ବସି ରହିଲା । ଏମନ୍ତବେଳେ କେତେ

ଗୁଡ଼ାଏ କଥାଭାଷା ଉତ୍ତରେ ରାଜୀବଲୋଚନ ବାବୁଙ୍କ ପ୍ରସ୍ତାବ ଆଉ ସମସ୍ତଙ୍କ ଅନୁରୋଧରେ କମଳଲୋଚନ ବାବୁ ଗୋଟିଏ ବକ୍ସ ହାରମୋନିୟମ ଧରି ସଙ୍ଗୀତ ଆରମ୍ଭ କଲେ—

'ରାଗ-କାମୋଦୀ । ତାଳ ଏକତାଳି

ସଖି ! ଯା ଯା ବେଗେ ଶ୍ୟାମ ପାଶକୁ ଗୋ !
ରହିଛି ରହିଁ ତାହା ଆଶକୁ ଗୋ । ଘୋଷା ।
ବୋଲିବୁ ପାଦ ଧରି ବେଳେ କରୁଣା କରି
ଆସନ୍ତୁ ତାଙ୍କ ଦାସୀ ପାଶକୁ ଗୋ ।
ନ ଲେଖେଁ କୁଳ ମାନ ଚଞ୍ଚଳ ମନ ପ୍ରାଣ
ରହିଁ ବସିଛି ଶ୍ୟାମ ସଙ୍ଗକୁ ଗୋ ।
ପୀରତି ସୁଧାଧାର ପ୍ରେମ ରତ୍ନଭଣ୍ଡାର
ତା ବିନା ତୁଚ୍ଛ ମଣେ ପ୍ରାଣକୁ ଗୋ ।
ମୋହ ଦୁଃଖ ଜଣାଇ ଆଣି ତାକୁ ମଣାଇ
ନୋହିଲେ ତେଜିବି ମୁଁ ପ୍ରାଣକୁ ଗୋ ।'

ସଙ୍ଗୀତଟି କମଳଲୋଚନ ବାବୁଙ୍କ ନିଜ ରଚିତ । ବାବୁ ସବୁ ବିଷୟରେ ନିପୁଣ, ତାଳ ମାନ ଠିକ୍ କରି ଗୀତ ସୁନ୍ଦରରୂପେ ଗାଇ ପାରନ୍ତି । କଣ୍ଠସ୍ୱରଟି ଅତି ଉତ୍ତମ । କହିଲେ ଦୁଇ ଗୁରଖଣ୍ଡ ନାଚି ଯିବେ । ଅନେକ ରକମ ବଜାଇ ପାରନ୍ତି । ତାଙ୍କ ଆଗରେ ମାଦଳରେ କେହି ହାତ ଦେଇପାରିବ ନାହିଁ । ଝରୁଆ ଗୁଡ଼ ଜାଗା ନାହିଁ, କେହି କେହି ଅସହଣି ଲୋକେ ଭୁନ ଭୁନ କହି ପକାନ୍ତି, କମଳଲୋଚନ ଗୋଟିପୋ ପିଲା ଥିଲା ।

ଅନେକ ରାତିଯାଏ ସଙ୍ଗୀତ ଚାଲିଲା, ମଝିରେ ମଝିରେ ହସ ଖୁସି ଗପ ବି ଚାଲିଚ ।

ଡିନର ସମ୍ବାଦ ଆସିଲା, ସବୁ ପ୍ରସ୍ତୁତ । ଦୁଇଜଣ ଠିକା ରୋଷେୟା ଅଣାଯାଇଛି, ଦେଶୀ ବିଲାତି ମିଶାମିଶି ଅନେକ ପ୍ରକାର ଖାଦ୍ୟ ଦ୍ରବ୍ୟ ପ୍ରସ୍ତୁତ, ଫଳ ମୂଳ ଆୟୋଜନ କୌଣସି ବିଷୟରେ ତ୍ରୁଟି ନାହିଁ । କମଳଲୋଚନ ବାବୁ ପ୍ରସ୍ତାବ କଲେ, "ଭାଇମାନେ ! ଆମ୍ଭେମାନେ ସମସ୍ତେ ଶ୍ରୀକରଣ—ଏକପଙ୍କିଆ । ହାତ ଧୁଅ ରେ—ଗୋଡ଼ ଧୁଅରେ—ଗାମୁଛାରେ ମୁହଁ ପୋଛରେ, —ଆସନରେ ବସରେ—କଦଳୀପତ୍ର ବିଛାଅ ରେ—ହାତଗୋଟାକ ଭାତ ତିଅଣ ବଳ ବଳ କରି ରେ—ତେବେ ଯାଇଁ ଖିଆହେବ । ଶିକ୍ଷିତ ସଭ୍ୟ ଦେଶମାନଙ୍କରେ କେମନ୍ତ ସୁନ୍ଦର ରୀତି ବୋଲ ତ ? ଖୁବ ସହଜ, ଖୁବ୍ ସୁନ୍ଦର । ଚାମଚ କଣ୍ଟା ଠୁକଠାକ ଚାଲିବ; ହସି ଖୁସି ଆମୋଦ ପ୍ରମୋଦ ସଙ୍ଗେ ଖିଆ । ଆସନ୍ତୁ ଆଜ ବେଳେ ପରୀକ୍ଷା ହୋଇଯାଉ ।" ସମସ୍ତେ ହାତତାଳି ଦେଇ ହୋ-ହୋ କରି ଖୁବ ଗୋଟାଏ ହସିଲେ । ଜଣାଯାଏ ପୂର୍ବରୁ ସବୁ ବନ୍ଦୋବସ୍ତ, ଆଉ ଚାକରମାନଙ୍କୁ ଶିକ୍ଷା ଦିଆଯାଇଥିଲା । ରାଜୀବଲୋଚନବାବୁ ଗୋଟିଏ କ୍ଷୁଦ୍ର ଘଣ୍ଟି ବଜାଇଦେବା ମାତ୍ରକେ ଦୁଇଜଣ ଚାକର ଚଞ୍ଚଳ ଆସି ମେଜ ଉପରେ ଖଣ୍ଡିଏ ଟେବୁଲ କ୍ଲଥ ପାରି ଦେଲେ । ରାଜୀବଲୋଚନ ବାବୁ ଆଉ ଥରେ ଘଣ୍ଟି ବଜାଇ ଦେବା ମାତ୍ରକେ ତନ୍ତୁ ଉସ୍‌କୁ ଉସ୍ ସୁନ୍ଦର ସୁପାକ ସୁଗନ୍ଧ ଖାଦ୍ୟ ଦ୍ରବ୍ୟ ଆସି ମେଜ ପୂରିଗଲା । ଛ ଜଣଙ୍କ ଆଗରେ ଚାମଚ କଣ୍ଟା ତଉଲିଆ ସଜା ହୋଇ ରଖା ଯାଇଛି । ସେ ଦୁଇଜଣ ରୋଷେୟା ନୂଆ ଠିକା ଚାକର ଆସିଛନ୍ତି, ସେମାନେ ଟେବୁଲ ସଜାସଜି ମାମଲାରେ ପକ୍କା । ଖୁବ୍ ଆମୋଦ ପ୍ରମୋଦରେ ଖିଆପିଆ ଚାଲିଛି ସତ; ମାତ୍ର କେହି ସନ୍ଧାନୀ ଲୋକ ଥିଲେ ସହଜରେ ବୁଝିଥାନ୍ତା, ଯେମନ୍ତ ସଦାନନ୍ଦ ରାଜୀବଲୋଚନ ଆଖିଠାରରେ କେତେ କଥା କୁହାକୁହି ହେଉଛନ୍ତି । ଖିଆପିଆ ଅଧାଅଧି ବଳିଲାଣି, ରାଜୀବଲୋଚନ ବାବୁ କଥା ଆରମ୍ଭ କଲେ, "ଭାଇମାନେ ! କାଲିକା ଯାତ୍ରା ପ୍ରୋଗ୍ରାମଟା ଆଜି ଠିକଠାକ କରି ରଖାଯାଉ । ଆମ୍ଭମାନଙ୍କ ଦେଶଗୁଡ଼ା ସବୁଥିରେ ଗୋଳମାଳ । କାମ ଉପସ୍ଥିତ ବେଳେ ହୋ ହୋ

ତାଙ୍କ ହାକ ଗୋଟାଏ ହୁର ଡଙ୍କା ଦେଇଯାଏ । ସଭ୍ୟ ଶିକ୍ଷିତ ଦେଶ ରୀତିରେ ପ୍ରୋଗ୍ରାମ ଠିକ୍ ଥିଲେ ପାଠି ଫିଟୁ ନାହିଁ, ସୁନ୍ଦର କାମ ଚାଲୁଛି । ସମସରପୁର ଯାତ୍ରା ସକାଶେ ଏହିପରି ପ୍ରୋଗ୍ରାମ ଠିକ କରାଯାଉ, ଛ ଘଣ୍ଟା ଆଗରୁ, ଛ'ଟା ସବାରି ସଜବାଜ କରି ତଳ ଅଗଣାରେ ହାଜର ଥିବେ । ସେମାନଙ୍କ ସଙ୍ଗରେ ଅଧିକା ଆଠ ଜଣ ବାହାଙ୍ଗୀଆ ମଧ୍ୟ ଛୁଡ଼ା ଥିବେ । ଲୁଗାପଟା ଆଉ ଆଉ ଜିନିଷ ଯାହାର ଯାହା ସଙ୍ଗରେ ନେବାର ଲୋଡ଼ା, ସେହି ବାହାଙ୍ଗୀଆମାନେ ଧରିବେ । ରାତି ଶେଷ ହାଉ ହା କରିବା ଆଗ ବ୍ରାହ୍ମମୁହୂର୍ତ୍ତରେ ଘଣ୍ଟାଧ୍ୱନି ହେବା ମାତ୍ରେ ସମସ୍ତେ ଆପଣା ଆପଣା ସବାରିରେ ବସି ଯାତ୍ରା ଆରମ୍ଭ କରିବୁଁ । ସମସ୍ତଙ୍କ ସବାରି ପୃଥକ୍ ପୃଥକ୍ ଚିହ୍ନିତ ଥିବ, ସମସ୍ତେ ଆପଣା ଆପଣା ସବାରି ଧରିବେ, କାହାରିକୁ କିଛି ପଚାରି ଓଚାରି ନାହିଁ । ବେଳ ଛ ଦଣ୍ଡ ସରିକି ସବାରି ଗୋପାଳପୁର ତୋଟାରେ ଭିଡ଼ିବ । ରୋଷେଇ ସୁଆର ବନ୍ଦୋବସ୍ତ ହୋଇଯାଇଛି । ପାଲିକି ଭିଡ଼ିବା ଆଗରୁ ସବୁ ଠିକଠାକ ହୋଇ ରହି-ଥିବ । ଗୋପାଳପୁର ତୋଟାଟି ନଦୀକୂଳରେ । ଅତି ସୁନ୍ଦର ସ୍ଥାନ, ଖୁବ୍ ପରିଚ୍ଛନ୍ନ । ଗଛ ମୂଳରେ ଗୋଟିଏ ଶୁଖିଲା ପତ୍ର କି ଟିକିଏ ଧୂଳି ବୋଲି ଦେଖିବ ନାହିଁ । ନଦୀ ଯୋଗୁଁ ପ୍ରାକୃତିକ ଶୋଭା ଅତ୍ୟନ୍ତ ମନୋହର । ନଦୀସ୍ନାନ ବେଳେ ପହଁରା ପହଁରି ଖୁବ୍ ମଜାଟାଏ ହେବ । ଦେଖିବେ, ନଦୀଜଳଟା ଯେମିତିକା କାଚଧାର । ଭୋଜନ ଆଉ ଟିକିଏ ବିଶ୍ରାମ ବାଦେ ଦୁଇ ଘରି ବାଜି ଚଉପଟ କାଠି ଗଡ଼ାଗଡ଼ିରେ ବି ବନ୍ଦୋବସ୍ତ କରାଯାଇଛି । କମଳଲୋଚନ ବାବୁ କହିଲେ, "ଏ ଗୋବିନ୍ଦ ବାବୁ ! ମୁଁ ହାତ ହାରମୋନିୟମଟା ବି ପେଟରାରେ ପକାଇ ଦେଇଛି । ତୁମ୍ଭେମାନେ ଚଉପଟରେ ଲାଗିଥିବାବେଳେ ମୁଁ ଦୁଇ ତିନଟା ଦକ୍ଷିଣୀ ଚୌପଦୀ ବଜାଇ ନେବି ।" ଏତିକିବେଳେ କୁଅଁର ଗୋବିନ୍ଦଚନ୍ଦ୍ର ସଦାନନ୍ଦ ବାବୁଙ୍କ ମୁହଁକୁ ଚାହିଁବାରୁ ରାଜୀବଲୋଚନ ବାବୁ ଅଭିପ୍ରାୟ ବୁଝି ପାରି ଚଞ୍ଚଳ କହି ବସିଲେ, "ଏ କୁଅଁର ବାବୁ ! ମାମୁ ସାନ୍ତ ବାରମ୍ବାର ତାକିଦ୍ କରି ଲେଖିଛନ୍ତି, କେହି ଆମ୍ଭମାନଙ୍କ ମଧ୍ୟରେ ଜଣେ ବିଶ୍ୱାସୀ ଚାଲାକ ଲୋକ ଏହିଠାରେ ରହିବେ, ତେର ରକମ ବରାଦ ଦେଇ ତେର ଥର ଧାଉଡ଼ିଆ ଆସିବ । ସେ ସବୁ କାର୍ଯ୍ୟ ତୁଲାଇବା ଲାଗି ସଦାନନ୍ଦ ଭାଇ ଛଡ଼ା ଆଉ କାହାରିକୁ ଦେଖୁ ନାହିଁ । ମୁଁ ତେର ନେହୁରା କରି ସଦାନନ୍ଦ ଭାଇକୁ ରାଜି କରାଇଛି । ସେ ରହିବେ । ଆଉ ଗୋଟାଏ କଥା, ଖଣ୍ଡେ ପାଲିକି ଧରି ଝଣ୍ଟେ ଅଟେ ହାଜର ଥିବେ, ଏତିକା କାର୍ଯ୍ୟ ଯିମିତି ସମାଧା ହୋଇଯିବ, ମୋ ଚିଠି ପାଇଲେ ଭାଇ ତକ୍ଷଣେ ସବାରି ପଠାଇଦେବେ । କି ସଦାନନ୍ଦ ଭାଇ, ଏହି କଥା ବନ୍ଦୋବସ୍ତ ରହିଲା ନା ?"

ସଦାନନ୍ଦ ବାବୁ କହିଲେ, "ଆପଣଙ୍କୁ ମାମୁଁ ଯେ ସ୍ଥଳେ ଲେଖିଛନ୍ତି, ଗୁରୁଜନଙ୍କ ଆଜ୍ଞା କିଣି ମୁଁ ଏଡ଼ି ପାରେଁ ? ସେ ବା କିଣି ମନରେ କରିବେ ? କିଛି ନ ବୋଲନ୍ତୁ, ମନରେ କହିବେ, ଇଂରେଜୀପଢ଼ୁଆ ଟୋକାଗୁଡ଼ାକ ଅବାଧ୍ୟ । ନାହିଁ—ନାହିଁ, ମୁଁ କେତେରୂପେ ହେଲେ ତାଙ୍କ ଆଜ୍ଞା ଅମାନ୍ୟ କରିପାରିବି ନାହିଁ ।"

———

-୧୨-

## ମଙ୍ଗଳକୃତ୍ୟ

ସମସରପୁର ତାଲୁକ ଜମିଦାରଙ୍କ ଉଆସ ବନୋଦପୁର ମୌଜାର ଆଖପାଖ ଲୋକେ ବୁଝୁଛନ୍ତି, ଆଜି ସାନ୍ତଙ୍କ ଉଆସ ଭିତରେ କିଣି ଗୋଟାଏ କାଣ୍ଡ ହେଉଛି ବା ହେବ । ସାନ୍ତଙ୍କ ବିଶ୍ୱାସୀ ଥୋକେ କରଣ ଧାଁ ଦଉଡ଼ରେ ଲାଗିଛନ୍ତି । ମୁହଁରେ କିଛି କଥା ନାହିଁ । ଆପଣା ମଧ୍ୟରେ ଫୁସଫାସ କଥା ବା ଆଖି ହାତ-ଠାରେ ପ୍ରସଙ୍ଗ ଚାଲୁଛି । ଥୋକେ ଧାଉଡ଼ିଆ ପାଇକ ଦଣ୍ଡକୁ ଦଣ୍ଡ ଗୁପ୍ତରେ ଖଣ୍ଡେ ଖଣ୍ଡେ ଭାଷା ଧରି କଟକ ଦାଣ୍ଡକୁ ଧାଉଁଛନ୍ତି । ବଡ଼ ସକାଳୁ ଶହେ ଜଣ ଭଲ

ତାଙ୍କ ଗାଁର ସବୁ ଦାଣ୍ଡମୁଣ୍ଡରେ ଜଗୁଆଳ । ଗାଁ ଭିତରକୁ ବାହାର ଲୋକ ଯେ ଆସିବାର ଆସୁ, ଗାଁରୁ କେହି ବାହାରି ପାଇପାରିବ ନାହିଁ । ମନିଷ ତ ମଣିଷ, ପାଞ୍ଚବରଷିଆ ପିଲାଟିଏ ବି ବାହାରି ଯିବାର ବାସନ୍ଦ । ଉଆସ ସଦର, ଆଉ ଛଅପଟରେ ଦୋହରି ଦୋହରି ଜଗୁଆଳ । ଉଆସ ଭିତରୁ କେହି ମାଇକିନିଆ ବାହାରିବ ନାହିଁ, ବାହାରୁ ଭିତରକୁ ଯିବାକୁ ବି ମନା । ସାନ୍ତଙ୍କର ଆଜି ବେଳମାପିକେ ଦେହପାଣି ବଡ଼ା କମ୍ପା ଦେବାର୍ଚ୍ଚନ ହେବାର ନାହିଁ, ଗୋଟାଏ ଜାଗାରେ ବି ଦଣ୍ଡେ କାଳ ସ୍ଥିର ହୋଇ ବସି ପାରୁ ନାହାନ୍ତି । ଉଆସରୁ ବାହାରି ଖଣ୍ଡେ ବାଟ ଆଗେଇ ଯାଇ ଥରକୁଥର କଟକଦାଣ୍ଡକୁ ଅନାଉଛନ୍ତି । ଦିନ ଅନୁମାନ ଦୁଇପହର ସରିକି ଯୋଡ଼ାଏ ତାଇକା କଟକଦାଣ୍ଡରେ ଉଆସମୁହାଁ ଧାଇଁଛନ୍ତି । ଗମାଗମ ଦେହଗୋଟା ଝାଳରେ ବୁଡ଼ିଗଲେଣି । ସାନ୍ତଙ୍କ ପାଖରେ ପହଞ୍ଚି ଯାଇ ହାତକୁ ଖଣ୍ଡେ ଚିଠା ବଢ଼ାଇଦେଲେ । ସାଆନ୍ତେ ଚିଠା ପଢ଼ି ଭାରି ଆନନ୍ଦରେ ମୁରୁକି ମୁରୁକି ହସି ପକାଇଲେ । ଦୂରରୁ କରଣମାନେ ଦେଖି ପାଖକୁ ଧାଇଁ ଆସିଲେ । ସାନ୍ତେ ହସି ହସି ତୁନି ତୁନି କହିଲେ, 'ଠିକଣା ମୁକାମରେ ସବାରି ଗୁଡ଼ିକ ହାଜର ।' ଉଆସ ଭିତରେ ଶଙ୍ଖ ହୁଳହୁଳି ଉଛୁଳି ଉଠିଲା । ସାନ୍ତେ ଦେହ ପାଣିକୁ ବିଜେ କଲେ ।

ଗୋରୁବାହୁଡ଼ା ବେଳ ଗଡ଼ିଗଲାଣି । ବିନୋଦପୁର ମୌଜାରେ କାହା ଘରେ ସଞ୍ଜଦୀପ ଲଗିଲାଣି, ଥୋକେ ଘରେ ଲାଗେ ଲାଗେ । କଟକଦାଣ୍ଡ ଦୂରରୁ ହୁଁ - ହାଁ ସବାରିଡାକ ଶୁଭିଲା । ହେଇ ଅଇଲେ—ହେଇ ପହଞ୍ଚିଲେ— ଉଆସ ଭିତରେ ଶଙ୍ଖ ହୁଳହୁଳି—ଗୋଟାଏ ଭାରି ହେଳ ପଡ଼ିଗଲା । ପାଞ୍ଚ ଛ' ଜଣ ବଇଣିଆ ବ୍ରାହ୍ମଣ ଏବଂ ପୁରୋହିତ ବିଶ୍ୱନାଥ ଶତପଥୀଙ୍କୁ ଧରି ସାଆନ୍ତ ଉଆସ ଭିତରୁ ବିଜେ କଲେ । ଆଗ ପଛରେ ଦୁଇପୁଞ୍ଜା ଭଳି ମଶାଲ ଧୂ—ଧୂ ଜଳୁଛି । ସାଆନ୍ତ କୁମ୍ଭକର୍ଣ୍ଣୀ ଧଡ଼ି ଗୋଟିଏ ଶୁକ୍ଳବର୍ଣ୍ଣ ପାଟଯଥା ପିନ୍ଧିଛନ୍ତି । ପାଗ୍ଗୋଡ଼ି ଖଣ୍ଡେ ପଟି ପରି ଚୌଡ଼ା ହୋଇ ବାଁ କାନ୍ଧରୁ ଦକ୍ଷିଣ ତରଫ ଅଣ୍ଟାଯାଏ ପଇତା ପରି ପଡ଼ି ଅଣ୍ଟାରେ ଗୁଡ଼ିଆ ହୋଇଛି । ଡାହାଣ ହାତ ଅନାମିକା ଅଙ୍ଗୁଳିରେ କୁଶ । ବିନୋଦବିହାରୀ ମନ୍ଦିରରେ ଆରତିଘଣ୍ଟା ଯିମିତି ଢଂ କରି ବାଜିଛି, ଆପଟମାନେ ଛ ଖଣ୍ଡ ପାଲିଙ୍କି ଉଆସ ସଦର ଦେହୁଡ଼ି ଆଗରେ ଧାଡ଼ି କରି ଥୋଇଦେଲେ । ବ୍ରାହ୍ମଣମାନେ ସମସ୍ୱରରେ ବେଦମନ୍ତ୍ର ପାଠ କରୁ କରୁ ପାଲିଙ୍କି ପାଖକୁ ଚାଲି ଅଇଲେ । ସେମାନଙ୍କ ପଛରେ ଆପେ ସାମନ୍ତ ଶ୍ରୀ ଶ୍ରୀ ସଙ୍କର୍ଷଣ ମହାନ୍ତିଏ । ରାଜୀବଲୋଚନ ବାବୁ ଚଞ୍ଚଳ ସବାରିରୁ ବାହାରି ପଡ଼ି ଆଉ ଚାରି ଜଣ ବାବୁଙ୍କୁ ପାଲିଙ୍କିରୁ ବାହାର କରାଇଲେ । ଏହି ପାଞ୍ଚ ଜଣ ବାବୁ କୁଅଁର ଗୋବିନ୍ଦଚନ୍ଦ୍ରଙ୍କ ପାଲିଙ୍କି ବେଢ଼ି ଛିଡ଼ା ହୋଇଛନ୍ତି । ଗୋବିନ୍ଦଚନ୍ଦ୍ର ପାଲିଙ୍କିରୁ ଓହ୍ଲାଇ ନାହାନ୍ତି । ତାଙ୍କ ପାଲିଙ୍କି ଖଣ୍ଡି ଛ' ହାତ ସରିକି ଲମ୍ବ —ତସବିରସ—ରୂପାର ମଗରମୁହାଁ—ଭିତରେ ସଚ୍ଚା ସୁନେଲି ଜରିଦାର କାର୍ଯ୍ୟ, ମଖମଲ ବନାତସି ବିଛଣା । ସେହିପରି ମଖମଲ ଘଟାଟୋପ, ମାତ୍ର ସେଟା ଗୁଡ଼ିଆ ହୋଇ ପାଲିଙ୍କି ଛାତ ଉପରେ ଲମ୍ବାଲମ୍ବି ଥୁଆ ହୋଇଛି । ଷୋଳ ଜଣ ଆପଟରେ ପାଲିଙ୍କି ଭୂଇଁରୁ ଉଠେ । ରାଜୀବଲୋଚନ ଉଆସପଟକୁ ପାଲିଙ୍କି ଦୁଆର ଯୋଡ଼ିକ ଭିଡ଼ି ଉଦୁଆ କରିଦେଲେ । ଯୋଡ଼ାଏ ବାଙ୍କେ ହାତେ ଲମ୍ବ ଚୌଡ଼ା ଖଣ୍ଡିଏ ରୂପାର ପିଢ଼ା, ଗୋଟାଏ ରୂପାର କୁଣ୍ଡ ଗୋଟାଏ ରୂପାର ଅବଖୁରାରେ ପୂରା ଜଳ, ତା ଉପରେ ଚଉତିଆ ଖଣ୍ଡିଏ ଶୁକ୍ଳ ନୂଆ ପୋଛା ଥୋଇ ଆଡ଼େଇଗଲେ ।

ରାଜୀବଲୋଚନ ପାଲିଙ୍କିର ପଛପଟ କବାଟ ଅଳ୍ପ ମେଲା କରିଦେଇ କୁଅଁର ବାବୁଙ୍କ କାନରେ ତୁନି ତୁନି କହିଲେ, "ମାମୁ ତୁମ୍ଭ ପାଦ ଧୌତ କରି ଦେବାବେଳେ ତାଙ୍କ ହାତ ଆଡ଼େଇ ଦେବ ବିଧି-

ରକ୍ଷା ନମନ୍ତେ ସେ ପଦ ଯୌତୁକ ଅଭିନୟ ମାତ୍ର କରିବେ ।"

କୁଆଁର ଗୋବର୍ଦ୍ଧନଚନ୍ଦ୍ର ବାବୁ ବର୍ତ୍ତମାନ ବର— ଶ୍ରେଷ୍ଠ; ଅର୍ଥାତ୍ ବରଣୀୟ । ପଥବରଣ କାର୍ଯ୍ୟ ଆରମ୍ଭ ହେଲା । ପୁରୋହିତେ ବେଦମନ୍ତ୍ର ପାଠ କଲେ,

'ଆଗଚ୍ଛ ମମ ବାକ୍ୟେନ ଭୂଜ୍ୟତାଂ ଶୁଭମୁତ୍ତମମ୍ ।
ଦଦାମି କନ୍ୟକାଦାନଂ ଶୁଭେନ ଗମ୍ୟତାଂ କୁଳମ୍ ।"

ରୂପା ଅବଖୁରାରେ ହରିଦ୍ରାଜଳ ପୂର୍ଣ୍ଣ ଥିଲା । କନ୍ୟାକର୍ତ୍ତା ଭାବୀ ଜାମାତାଙ୍କ ପଦରେ ତାହା ଦେଇ ମସ୍ତକରେ ସିନ୍ଦୂର ଏବଂ ଚନ୍ଦନଟୋପା ଲଗାଇଦେଲେ । ଏ ଉତ୍ତାରେ ବରଙ୍କ ଗଳାରେ ଗୋଟିଏ ସୁବର୍ଣ୍ଣ ହାର ଏବଂ ପୁଷ୍ପହାର ଲମ୍ବାଇ ଦେଇ ଅଙ୍ଗୁଳିରେ ଗୋଟିଏ ହୀରାବସା ମୁଦି ପିନ୍ଧାଇଦେଲେ । ମଶାଲର ଆଲୁଅ ପଡ଼ି ହୀରାର ଜ୍ୟୋତି ଝକ ଝକ ଚହଟି ଯାଉଥାଏ ।

ଏ ଉତ୍ତାରେ ଉପସ୍ଥିତ ବିପ୍ରମଣ୍ଡଳୀ ସମସ୍ୱରରେ ବେଦମନ୍ତ୍ର ଉଚ୍ଚାରଣ କଲେ,

"ବିରଜ ହୋହସି—ବିରଜ ହୋହମସୀତ୍ଵ
ମମ ପାଦ୍ୟାନ ବିରଜ ହୋହ ।"

ଅନନ୍ତର ଅଗ୍ରେ ବିପ୍ରମଣ୍ଡଳୀ, କନ୍ୟାକର୍ତ୍ତା ବରଙ୍କ ଦକ୍ଷିଣ ହସ୍ତର ବୃଦ୍ଧାଙ୍ଗୁଳି ଧରିଛନ୍ତି ଉଆସ ଭିତରକୁ ବିଜେ ହେଲେ । ପଶ୍ଚାଦ୍ଭାଗରେ କଟକରୁ ଆଗତ ବନ୍ଧୁମଣ୍ଡଳୀ ଆନନ୍ଦ-ପ୍ରଫୁଲ୍ଲ ମୁଖରେ ଚାଲିଛନ୍ତି ।

ଏହି ପ୍ରକାରେ ବରଙ୍କୁ ନେଇ ଯାଇ ଉଆସ ଭିତରେ ସଜ୍ଜିତ ମଜଲିସ ଘର ମଧ୍ୟରେ ବରାସନରେ ବସାଇଦେଲେ । ଘର କଡ଼ିକାଠରେ ଦଶଡାଳିଆ ବାରଡାଳିଆ ଅନେକଗୁଡ଼ିଏ ଝାଡ଼, କାନ୍ଥରେ ଅନେକଗୁଡ଼ିଏ ଦେବାଲଗିର ଜଳୁଛି । ସଚାଜର କାମକରା ବରାଜନରେ ଆଲୁଅ ପଡ଼ି ଜ୍ୟୋତିରାଶି ଯେମନ୍ତ ବୃଷ୍ଟି ପଡ଼ୁଛି । ବର ମସ୍ତକ ଅବନତ କରି ପ୍ରତିମାଟିପରି ସ୍ଥିର ହୋଇ ବସିଛନ୍ତି । କଟକ ଓ ପୁରୀ ଜିଲ୍ଲାରୁ ବଛା ବଛା ଗୋଟିଏ ଚାଳିଆ ଆସି ବେଶଭୂଷାର ଆୟୋଜନ କରୁଥିଲେ । ସାଙ୍ଗେ ସାଙ୍ଗେ ନୃତ୍ୟ ଗୀତ ଆରମ୍ଭ ହୋଇଗଲା । ରାଜୀବଲୋଚନ ବାବୁ ନାଚୁଆଙ୍କ କାନରେ ଭୁନ ଭୁନ କହିଦେଲେ, "ଭୁଚ୍ଛା ପ୍ରେମ ବିଷୟରେ ସଙ୍ଗୀତ ଲଗାଇ ଦିଅ । ବରଙ୍କ ସମ୍ମୁଖରେ ଦୁଇ ପୁଞ୍ଜା ଭଳି ଅତର ଦାନ, ଗୋଲାପପାସ ଥୁଆ ହୋଇଥାଏ । ରାଜୀବଲୋଚନ ବାବୁ ଦଣ୍ଡକୁ ଦଣ୍ଡ ଗୋଲାପଜଳ, ଲୋଭଣ୍ଡର ଜଳ ସଭାରେ ଛିଞ୍ଚୁଥାନ୍ତି । ତୁଳା କାଠିରେ ସଙ୍ଗେ ସଙ୍ଗେ ଅତର ବଣ୍ଟା ଯାଉଛି । ଗୋଲାପଜଳରେ ସଭାସ୍ଥ ଲୋକମାନଙ୍କ ପୋଷାକ ଭିଜି ସରପଟ ହୋଇଗଲାଣି । ବଡ଼ ବଡ଼ ଯୋଡ଼ାଏ ରୂପା ପରାତରେ ପାନଖିଲ, ନାନାପ୍ରକାର ମଶଲା ଜମା ଅଛି । ମୁଠାକୁ ମୁଠା ବିତରଣ କରା ଯାଉଛି ।

ଅଳ୍ପକ୍ଷଣ ଉତ୍ତାରେ ରାଜୀବଲୋଚନ ବାବୁ ବେକରେ ଚଦର ପକାଇ ହାତ ଯୋଡ଼ି ବରଙ୍କୁ ଜଣାଇଲେ, "ଆପଣ ଅନୁଗ୍ରହ କରି ପାଖ ଘର ଭିତରକୁ ଟିକିଏ ବିଜେ ହେଉନ୍ତୁ ।" ବର୍ତ୍ତମାନ ଏ ଜାଗାରେ କନ୍ୟାସମ୍ପର୍କ ଲୋକମାନଙ୍କ ପକ୍ଷରୁ ବରଙ୍କୁ ଏହିପରି ସମ୍ମାନସୂଚକ କଥା ବୋଲିବାର ବିଧି । ରାଜୀବଲୋଚନବାବୁ ବରଙ୍କ ଦକ୍ଷିଣ ହସ୍ତ ଧରି ମଜଲିସ ଘର ପାଖ ଆଉ ଗୋଟିଏ ଘରକୁ ନେଇଗଲେ । ଏହି ଘରଟି ମଧ୍ୟ ଆଲୋକମୟ । ରୁପେଲି ସୁନେଲି ଗିଲ୍‌ଟିକରା ଢେରଗୁଡ଼ାଏ ଚୌକା କାନ୍ଥଲଗା ପଡ଼ିଛି । ମଝିରେ ଗୋଟିଏ ସୁନ୍ଦର ଗୋଲାକାର ମେଜ । ତଳେ ପ୍ରଥମେ ଶତରଞ୍ଜି, ତା ଉପରେ ଇରାନ ଦେଶର ସୁନ୍ଦର ମୂଲ୍ୟବାନ ଗାଲିଚା ବିଛଣା । ମେଜ ଉପରେ ବନାରସି କାମଦାର ପଗଡ଼ି,

ବନାରସି ସୂତାନେଲି ଜରିଦାର ଚପ୍‌କନ୍, ପାଜାମା ଥୁଆ ଥିଲା । ସେହି ସମସ୍ତ ପୋଷାକ ପିନ୍ଧିବା ସକାଶେ ରାଜୀବଲୋଚନ ବାବୁ ଅନୁରୋଧ କଲେ । କୁଅଁର ଗୋବିନ୍ଦଚନ୍ଦ୍ର ବାବୁଙ୍କୁ ଭାରି ଲାଜ ମାଡ଼ୁଛି । ରାଜୀବଲୋଚନ ବାବୁ ହାତ ଯୋଡ଼ି ଧରି ଅନେକ ନେହୁରା ହେଲେ । ବର୍ତ୍ତମାନ ପିନ୍ଧିବାର ବାଧ୍ୟ, ନ ପିନ୍ଧିଲେ ନୁହେଁ. ନ ପିନ୍ଧିଲେ ତ ଛାଡ଼ିବେ ନାହିଁ । କୁଅଁର ବାବୁ ସେ ସମସ୍ତ ବର ପୋଷାକ ଧୀରେ ଧୀରେ ପିନ୍ଧି ପୁନର୍ବାର ମଜଲିସରେ ଆସି ବସିଲେ । ଏତେବେଳେ ସଭାଟା ଖୁବ୍ ମାନିଲା ଏକା । ସଭାର ସୌନ୍ଦର୍ଯ୍ୟ ଦେଖି ସମସ୍ତଙ୍କ ମନରୁ ଯେମନ୍ତ ଆନନ୍ଦ ଉଛୁଳି ପଡ଼ୁଛି ।

ଏ ଉତ୍ତାରେ ବିବାହ ବେଦୀ ଉପରେ କାର୍ଯ୍ୟାରମ୍ଭ ହେଲା । ନାନ୍ଦୀମୁଖୀ ଏବଂ ବେଦବିହିତ ଅନ୍ୟାନ୍ୟ କାର୍ଯ୍ୟ ସମାପ୍ତି ଉତ୍ତାରେ ବେଦୀର ଚତୁର୍ଦ୍ଦିଗରେ କେତେ ଜଣ ବ୍ରାହ୍ମଣ ଛିଡ଼ା ହୋଇ ମନ୍ତ୍ର ଉଚ୍ଚାରଣପୂର୍ବକ ହସ୍ତସୂତ୍ର ପ୍ରସ୍ତୁତ କରିବାକୁ ଲାଗିଲେ ।

"ଯଥା ଇନ୍ଦ୍ରସ୍ୟ ଇନ୍ଦ୍ରାଣୀ
ଯଥା ନଳସ୍ୟ ଦମୟନ୍ତୀ
ଯଥା ସୌଦାସସ୍ୟ ମଦୟନ୍ତୀ ।
ଯଥା ରାବଣସ୍ୟ ମନ୍ଦୋଦରୀ ।
ଯଥା ଧୃତରାଷ୍ଟ୍ରସ୍ୟ ଗାନ୍ଧାରୀ ।"

ଇତ୍ୟାଦି ମନ୍ତ୍ର ପଢ଼ୁଁ ପଢ଼ୁଁ ହସ୍ତସୂତ୍ର ପ୍ରସ୍ତୁତ ହୋଇଗଲା । ଯେତେବେଳେ ବରକନ୍ୟା ଦୁହିଙ୍କ ହସ୍ତ ଏକତ୍ର କରାଗଲା, ପରସ୍ପର ସମ୍ମୁଖୀନ ଦୁଇଖଣ୍ଡି ବାଦଲରୁ ଚପଳାପ୍ରଭା ପରସ୍ପର ଆକୃଷ୍ଟ ହେଲା ପରି ଯେମନ୍ତ ପରସ୍ପର ସମ୍ମିଳିତ ଗୋଟାଏ ବୈଦ୍ୟୁତିକ ତେଜ ଦୁହିଁଜଣଙ୍କ ସର୍ବାଙ୍ଗରେ ବ୍ୟାପ୍ତ ହୋଇଗଲା । ଦୁଇ ଶରୀର ଦୁଇ ମନ ଏକ ହୋଇଗଲା ବୋଲି ଦୁହେଁ ଅନୁଭବ କଲେ । ହସ୍ତଗଣ୍ଠି ସମସ୍ତଙ୍କୁ ରାତି ଏକ ଦଣ୍ଡ ମାତ୍ର ଅବଶିଷ୍ଟ । ହସ୍ତଗଣ୍ଠି ଫିଟି ନାହିଁ, ଏଣେ ଗ୍ରାମପ୍ରାନ୍ତ ଅମ୍ବତୋଟା ପାଖ ପଡ଼ିଆରେ ଏକାବେଳକେ ଶତ ଶତ ବୋମ୍‌ବାଜି ଢୋ ଢୋ କରି ଫୁଟିଲା । ଏପରି ବନ୍ଦୋବସ୍ତ ଥିଲା ଯେ ଶ୍ରେଣୀ ଏକାବେଳକେ ଜଳି ଉଠିଛି । ଅଳ୍ପକ୍ଷଣ ଉତ୍ତାରେ ତାଲୁକସୀମାନ୍ତ ଗୋବିନ୍ଦରାୟପୁର ଗ୍ରାମରେ ମଧ୍ୟ ବୋମ୍‌ବାଜି ଫୁଟିବାକୁ ଲାଗିଲା । ଏତେଗୁଡ଼ାଏ ବାଜାରେ ଏକାବେଳକେ ହାତ ଆଞ୍ଜି କାଠି ପଡ଼ୁଛି । ଏପରି ବନ୍ଦୋବସ୍ତ ଏତେ କାଣ୍ଡ ପାଖ ଗାଁ ଲୋକଙ୍କୁ ମଧ୍ୟ କିଛି କଥା ଜଣାନାହିଁ । ବୋମ୍‌ବାଜି ଶବ୍ଦରେ ଗ୍ରାମଟା କମ୍ପି ଉଠିଲା, ବୃକ୍ଷରୁ ଝର ଝର କରି ମାଟି ଝରି ପଡ଼ୁଛି । ମହାଶବ୍ଦରେ ପୁରୁଷ ସ୍ତ୍ରୀ ପିଲାପିଲି ସମସ୍ତଙ୍କର ଏକାବେଳକେ ନିଦ ଭାଙ୍ଗିଛି । ବହୁଭୁଆସୁଣୀ ଗୁଡ଼ାକ ଘୁମନିଆରେ ଏପରି ଅଥୟ ହୋଇ ଧାଇଁଛନ୍ତି, ତେତେବେଳେ ଠିକଏ ଅନ୍ଧାରିଆ ନ ଥିଲେ ସବୁଗୁଡ଼ାକ ବେମହତ ହୋଇ ପଡ଼ିଥାନ୍ତେ । ତେତେବେଳେ କଣ ଶାଶୁ ଶ୍ୱଶୁର ଦେଢ଼ଶୁର ବସ୍ତ୍ର ଅଛି ? ପ୍ରାଣବିକଳରେ ଧାଇଁଛନ୍ତି । କଥା କଣ କିଛି ବୁଝିବାକୁ ନାହିଁ, ହାଉଳି ଖାଇ ଧାଇଁଛନ୍ତି । ତେତିକିବେଳେ ଉଆସ ଭିତରୁ ହସ୍ତଗଣ୍ଠି ଫିଟା ଶଙ୍ଖ ହୁଳହୁଳି ଶୁଭିଲା । ସମସ୍ତେ ଚଟ୍ ବୁଝିଗଲେ, ଆରେ ଭୂଇଁକମ୍ପରେ - ଦେ ହରିବୋଲ । ହରିବୋଲ ହରିବୋଲ ପଡ଼ିଗଲା—ସଙ୍ଗେ ସଙ୍ଗେ ଶଙ୍ଖ ହୁଳହୁଳି ଚାଲିଛି ତ ଚାଲିଛି । ଅଧ ଘଡ଼ିକ ମଧ୍ୟରେ ଚାରିଆଡ଼େ ଦଶ କୋଶ ବାଟ ଶବ୍ଦଟା ଠ ଅକ୍ଷରିଆ ବୁଲିଗଲା । ସମସରପୁର ଉଆସ ପାଖରୁ ଚନ୍ଦନପୁର ଉଆସ ଦଶ ବାର କୋଶ ଦୂର, ସେହି ଚନ୍ଦନପୁର ଉଆସ ଭିତରେ ବିକାର ଡାକ ସଙ୍ଗେ ସଙ୍ଗେ ଶଙ୍ଖ ହୁଳହୁଳି ପଡ଼ୁଛି । ପୋଇଲୀ ପରିବାରୀଙ୍କ କଥା ଛାଡ଼, ଆପେ ସାଆନ୍ତାଣୀ ଶେଯରୁ ଉଠିଆସି ହୁଳହୁଳି ପକାଉଛନ୍ତି । କେହି କଣ କଥା ବୁଝୁଛି । ନିଦରୁ ଉଠି ଶଙ୍ଖ ହୁଳହୁଳି ହରିବୋଲ ପକାଉଛନ୍ତି—ସମସ୍ତେ ବୁଝି ଯାଇଛନ୍ତି ଭୂଇଁକମ୍ପ । ପିଲାଗୁଡ଼ାକ କାନ୍ଦି ପାରୁ ନାହାନ୍ତି, ଡରରେ ଘୁମନିଆ

ହୋଇ ପଶନ୍ତି କାନ ଧରି ମା'ମାନଙ୍କ ମୁହଁକୁ ଅାଁ କରି ଚାହିଁ ରହିଛନ୍ତି । ଚନ୍ଦନପୁର ଉଆସ ସାଆନ୍ତେ ବି ଶବ୍ଦରେ ଉଠି ପଡ଼ି ଗୋବିନ୍ଦଜୀଉ ମନ୍ଦିରକୁ ଧାଇଁ ଅଇଲେ । ପୁଷ୍ପାଳି ଟହଲଆମାନଙ୍କୁ ହୁକୁମ କଲେ, "ମହାପ୍ରଭୁଙ୍କ ଆଗରେ ଘୋରକାହାଳୀ ଘଣ୍ଟ ଶଙ୍ଖ ବଜାଅ ।" ସେ ମଧ୍ୟ ବୁଝିଛନ୍ତି ଭୂଇଁକମ୍ପ ।

ମଙ୍ଗଳକୃତ୍ୟ ବଢ଼ିଗଲା । ପ୍ରାତଃକୃତ୍ୟ ସମାପ୍ତ କରି ରାତି ଜାଗରଣ କ୍ଲାନ୍ତି ନିବାରଣ ନିମନ୍ତେ କଟକୀ ଅଭ୍ୟାଗତ ବାବୁମାନେ ଉଆସ ଭିତରକୁ ଯିବା ବାଟ ମଝି ପ୍ରସ୍ତ ଗୋଟିଏ ସୁନ୍ଦର ସୁସଜ୍ଜିତ କୋଠାଘର ମଧ୍ୟରେ ଗୋଟିଏ ଗୋଲାକାର ଟେବୁଲକୁ ବେଢ଼ି ଚୌକିରେ ବସି ଚା'ସେବନରେ ନିଯୁକ୍ତ—ସଙ୍ଗେ ସଙ୍ଗେ ନାନା ପ୍ରକାର ଆମୋଦଜନକ କଥାବାର୍ତ୍ତା ଚାଲିଛି । କୁଅଁର ଗୋବିନ୍ଦଚନ୍ଦ୍ରଙ୍କ ମନୋରଞ୍ଜନ କରିବା ଗଳ୍ପର ଉଦ୍ଦେଶ୍ୟ । ପୁରୁଖା ସାଆନ୍ତଙ୍କ ସଙ୍କେତରେ ଏହି ଚା' ମଜଲିସ୍ ବସିଛି । ମଙ୍ଗଳକୃତ୍ୟ ବଢ଼ିଗଲା ସତ୍ୟ, ହେଲେ ସାଆନ୍ତଙ୍କ ମନ ସ୍ଥିର ହୋଇ ପାରୁ ନାହିଁ । କେ ଜାଣି କଣ ଗୋଟାଏ ବଖେଡ଼ା ବାହାର ପଡ଼ିବ ପରା । ତାହାହେଲେ ତ ସର୍ବନାଶ ! ତେର ଦିନ ଯାଏ ବର ପିଲାଟାକୁ ହାତରେ ରଖିବାକୁ ହେବ । ଆଗରୁ ଖବର ଦେଇ ଆପେ ସାଆନ୍ତେ ଚା' ପାନ ବୈଠକ ପାଖକୁ ଆସି ଟେବୁଲ ପାଖରେ ଛିଡ଼ା ହେଲେ । ବାବୁମାନେ ଚା' ପିଆଲା ଥୋଇ ଦେଇ ଛିଡ଼ା ହୋଇଗଲେ । ସାଆନ୍ତେ, "ବସ ବସ, ବାପାମାନେ, ବସ ବସ । ବାପା, ମୁଁ ବୁଢ଼ା ହେଲି, ମୁଁ ଆଉ କେତେ ଦିନ ? ବାପା ଗୋବିନ୍ଦ ଏବେ ମୋ କୁଳ ଉଦ୍ଧାର କରିବେ । ମୋର ଏହି ଯେ ଜମିଦାରୀ ଧନ ଦୌଲତ ଦେଖୁଛ ସବୁ ଗୋବିନ୍ଦର । ମୁଁ ଏବେ ଅଲଗା ହୋଇଯିବି । ଗୋବିନ୍ଦ କଟକ ପଢ଼ା ସାରି ଆସି ସବୁ ଜମା କରି ନେଉ । ବସ ବସ, ବାପାମାନେ ।" ଏତିକି କହି ବାହାରି ଅଇଲେ ।

—— ——

-୨୨-

## ଦୁଃସମ୍ବାଦ

ସୂର୍ଯ୍ୟ ଦେବତା ଉଦେ ହୋଇ ନାହାନ୍ତି, ଆଖପାଖିଆ ଗାଁ ଗହିରିଆଡ଼କା ଲୋକେ ଚନ୍ଦନପୁର ଗଡ଼କୁ ଧାଇଁଛନ୍ତି । ଗଡ଼ରେ ସବୁବେଳେ ଅନେକ ବୁଦ୍ଧିଆ ମାମଲତକାର ଲୋକ, ଅନେକ ପଣ୍ଡିତ ହାଜର ଥା'ନ୍ତି । ତାଲୁକ ଗୋଟାକ ଦଶ ପନ୍ଦର କୋଶ ମଧ୍ୟରେ ଯାହାର ଯେଉଁ କଥା ବୁଝିବାର ଅଖଞ୍ଜ ହୁଏ, ଧାଇଁ ଆସି ଗଡ଼ କଚେରିରୁ ବୁଝିଯାଏ । ବଡ଼ ସକାଳୁ ଲୋକେ ଅଥୟ ହୋଇ ଧାଇଁଛନ୍ତି; ବିଛଣାରୁ ଉଠି କିଏ ମୁହଁ ଧୋଇଛି, କିଏ ବା ବାସୀ ଅଧୁଆମୁହାଁ—ଲୁଗା ଖଣ୍ଡି ବି ସଜାଡ଼ି ପିନ୍ଧିବାକୁ ତର ନାହିଁ—ବୁଝିଯିବେ କଥଟା କଣ । ଏତେ ବଡ଼ ଘଟଣାଟାଏ ଦେଖା ତ ଦେଖା, କେବେ ଶୁଣା ବି ନାହିଁ । ଘଡ଼ିଏଯାଏ ଭୂଇଁକମ୍ପ, ବଡ଼ ଆଶ୍ଚର୍ଯ୍ୟ କଥା ! ତୁଚ୍ଛା ଭୂଇଁକମ୍ପ ନୁହେଁ, ଆକାଶଟା ବି କମ୍ପିଗଲା । ବା—ବତାସ ନାହିଁ, ପାଣି ନାହିଁ, ଘଡ଼-ଘଡ଼ ଚଡ଼ଚଡ଼ ହେ ଘଡ଼ିଏଯାଏଁ କାହାରି ମୁହଁରେ ଆଉ କିଛି କଥା ନାହିଁ, ଆପଣା ମଧ୍ୟରେ ତୁଚ୍ଛା ସେହି କଥା ।

ଜମିଦାର ସାନ୍ତେ ବୈଷ୍ଣବଚରଣ ପଟ୍ଟନାୟକ ବିଦ୍ୟାଧର ମହାପାତ୍ରେ ମନ୍ଦିର ଅଗଣାରେ ବସିଛନ୍ତି । କେହି ଡାକିବାରେ, ତେର ଆପେ ଆପେ, ବ୍ରାହ୍ମଣ ପଣ୍ଡିତ, ମୁରବି ଭଲଆ କରଣ ସାନ୍ତେ ଆଉ ଛତିଶ ପାଟକ ମୁଖ୍ୟା ମୁଖ୍ୟା ଲୋକେ ସାନ୍ତଙ୍କ ପାଖରେ ହାଜର ହୋଇଗଲେଣି । ସାନ୍ତେ ପଚାରିଲେ, "ହୋଇ ହେ ବିଦ୍ୟାନିଧିଏ, ଏ କିରୂପ ଭୂଇଁକମ୍ପ ? ଆକାଶଟା କମ୍ପିଲା କିଁଆ ?" କାଶୀନାଥ ବିଦ୍ୟାନିଧିଏ ଅନେକ ବେଳଯାଏ ମୁଦ୍ରିତ ନେତ୍ରରେ ଚିନ୍ତା କରି କହିଲେ, "ଆଜ୍ଞା ! ଉତ୍ପାତସାଗର ଶାସ୍ତ୍ରରେ ଏହିପରି ଲେଖିଛି

ଅଚ୍ଛି, ପଦା ଭୂମ୍ୟାକାଂଶୀ ଯୁଗପଚ୍ଚ ପ୍ରଜମ୍ପତ୍, ତଦା ରାଷ୍ଟ୍ର ବିବଧାନ ଅମଙ୍ଗଳାନ ଭବିଷ୍ୟନ୍ତ ।'' ଖ୍ରମସେନ ତିହାଡ଼ିଏ କହିଲେ, ''ଆମ ବୁଢ଼ା କକେଇ ଗଦେଇ ତିହାଡ଼ିଏ କି ରକମ ପୁରୁଣା ପଣ୍ଡିତ ଥିଲେ, ଗ୍ରାମକୁ ତ ଜଣା । ସେ ଶାସ୍ତ୍ର ପଢ଼ି ଏହି କଥା କହୁଥାନ୍ତି, ଠିକ୍ ଏହି କଥା । ମୁଁ ଆପେ ଆପଣା କାନରେ ଢେର ଥର ଶୁଣିଛି ।'' ଖଡ଼ିରତ୍ନେ କହିଲେ, ''ଆଜ୍ଞା ପଣ୍ଡିତମାନେ ଯାହା କହିଲେ, ସତ ଏକା । ଆଜ ଯେପରି ପ୍ରଥମ ଭୂଇଁଟା କମ୍ପି ଉଠିଛି କି, ମୁଁ ଝଟ୍ ବଛଣାରୁ ଉଠି ପଡ଼ି ପାଞ୍ଜି ବଡ଼ାଟା ଫିଟାଇ ପକାଇଲି । ଶୁକ୍ରବାର ପଞ୍ଚମୀ ତିଥି ବୃଷରାଶି ମୃଗଶିରା ନକ୍ଷତ୍ର ଛ ଦଣ୍ଡ ଆଠ ଲିତ୍ୟା ଯୋଗ ସମୟରେ କମ୍ପ ବାୟବ୍ୟ-କୋଣରୁ ଆରମ୍ଭ, ଈଶାନ୍ୟ କୋଣରେ ମୋଚନ, ସ୍ଥିତି କାଳ ଦୁଇ ଦଣ୍ଡ ତିନ ଲିତ୍ୟା ଛ ବିଲିତ୍ୟା । ଏଥିରେ ଢେର ଢେର ଅମଙ୍ଗଳମାନ ଭବନ୍ତି ।''

ଜମିଦାର ସଙ୍କର୍ଷଣ ମହାନ୍ତି ପୂର୍ବରୁ ଏପରି ଠିକ-ଠାକ କରି ରଖିଥିଲେ, ଯେମନ୍ତ ମଙ୍ଗଳକୃତ୍ୟ ବଢ଼ିବା ମାତ୍ରକେ ସମ୍ବାଦଟା ଚନ୍ଦନପୁର ଉଆସରେ ବାଜିଯିବ ।

ଦୋସମାଳ ପାଖ ଗୁରି ଛଟା ମୌଜାର ଦଗବାରିଙ୍କୁ ପରିବାରେ ହାତରେ ରଖିଥିଲେ । ଟଙ୍କା ଗୁଡ଼ିଲେ କଣ ନ ହୁଏ ? ବର୍ତ୍ତମାନ ଘଟଣାରେ ଜମିଦାର ସଙ୍କର୍ଷଣ ମହାନ୍ତିଙ୍କ ଗନ୍ତାଘରେ ଉଦୁଆ । ଗୋବିନ୍ଦ ଜୀଉଙ୍କ ମନ୍ଦିର ମେଲରେ ସାନ୍ତଙ୍କ ସାକ୍ଷାତରେ ଜ୍ୟୋତିଷ ଭୂମିକମ୍ପର ଉତ୍ପତ୍ତି ସ୍ଥିତିକାଳ ବିଷୟ ବ୍ୟାଖ୍ୟା କରୁଛନ୍ତି ଠିକ୍ ଏତିକ ବେଳେ ସୋମନାଇପୁର ତାଲୁକା ଗୋପାଳ ଗାଁ ମୌଜାର ଚୁଟିଆ ହାଜର । ଧାଇଁ ଧାଇଁ ଥକେଇ ଗଲାଣି । ଠେଙ୍ଗାଟାଏ କାନ୍ଧରେ ପଡ଼ିଛି, ମନ୍ଦିର ସିଂହଦ୍ୱାର ବାହାରେ ଛିଡ଼ା ହୋଇ ଖୁବ୍ ପାଟିକରି ଡାକ ଦେଉଛି, ''ଆଜ୍ଞା । ଗଲା ରାତିରେ ଆମର କୁଅଁର ବାବୁଙ୍କର ସମସରପୁର ତାଲୁକ ଜମିଦାର କେମାଙ୍କ ସାଙ୍ଗରେ ମଙ୍ଗଳକୃତ୍ୟ ବଢ଼ିଗଲା ।''

ପ୍ରଥମ ଦୁଇ ତିନ ଡାକ ତ ଲୋକେ ଶୁଣି ନ ଶୁଣିଲା, ବୁଝି ନ ବୁଝିଲା ପରି ଥିଲେ; ଶେଷ କୁହାଟଟା ସାଫ ବୁଝାଗଲା । ଆଶ୍ଚର୍ଯ୍ୟ ! ଅତି ଆଶ୍ଚର୍ଯ୍ୟ ! ସେହିମୁହୂର୍ତ୍ତରେ ଆଉଥରେ ଭୂମିକମ୍ପ ହୋଇଥିଲେ ବା ଶଏଟା ବଜ୍ର ଏକ ସଙ୍ଗରେ ପଡ଼ିଥିଲେ ଉପସ୍ଥିତ ଲୋକେ ଏତେ ଚମକ ପଡ଼ଥାନ୍ତେ କି ନାହିଁ ସନ୍ଦେହ । ଠିକ୍ ସେତିକ-ବେଳେ ଆଉ ଗୋଟାଏ ଚୌକିଆ ବି ସେହି କଥା କୁହାଟି ଦେଲା । ତା ପଛକୁ ଆଉ ଗୋଟାଏ—ଏଥିରେ ଆଉ ସଂଶୟ କଣ ? ପହିଲୁ ଆଷାଢ଼ ବୃଷ୍ଟି ପାହାଡ଼ ଉପରୁ ଯେମନ୍ତ ଉପରମୁଣ୍ଡା ପାଣି ମାଡ଼ି ଆସେ, ସେହିପରି ସମସରପୁର ତାଲୁକ ମଧ୍ୟରୁ ଖବରଟା ଆସି ଦଶଗ୍ରାମ ତାଲୁକଯାକ ମାଡ଼ିଗଲା । ଯାହା ମୁଖରୁ ଶୁଣ, ସେଇ କଥା । ସାନ କଥାଟାକୁ ବଡ଼ କଥା ଢାଙ୍କିପକାଏ । ଆଉ ଭୂଇଁକମ୍ପ କଥା କାହାରି ମୁହଁରୁ ଶୁଣା ଶୁଣି ନାହିଁ । ମନ୍ଦିର ମଧ୍ୟରେ ସାନ୍ତଙ୍କୁ ବେଢ଼ି ଯେତେ ଲୋକ ବସି-ଥିଲେ, ସମସ୍ତେ ଆପଣା ମଧ୍ୟରେ ମୁହଁ ଗୁହାଁଗୁହିଁ ହୋଇ କାଠ ପିତୁଳା ପରି ବସିଯାଇଛନ୍ତି । ସାଆନ୍ତେ ପ୍ରଥମେ ଆଁ—ହେଟାଏ କରି ଦଗବାରି ଆଡ଼କୁ ଯେ ଗୁହିଁ-ବସିଛନ୍ତି, ଆଉ ପାଟି ବୁଜିବାକୁ ନାହିଁ । ଦେହ ହାତ ହଲଚଲ ହେଉ ନାହିଁ । ଚେତନା ଅଛି କି ନାହିଁ କିଏ ଜାଣେ । ଯେପରି ବସିଥିଲେ, ଠିକ୍ ସେହିପରି ବସିଛନ୍ତି । ଦିନ ତିନି ପହର ଗଡ଼ିଗଲାଣି, ସାଆନ୍ତ ଉଠି ଆଜ୍ଞା ହୋଇ ନାହାନ୍ତି, ଆଉ ବା ଉଠୁଛି କିଏ ? ବାଉନବୁଢ଼ା ଗୁଟିଆଗୁଡ଼ାକ ଠେଙ୍ଗାଟାଏ ଲେଖାଏଁ କାନ୍ଧରେ ପକାଇ ସେହିପରି ଛିଡ଼ା । ବୁଢ଼ା ପାଣିକରଣ ବଦେଇ ମହାନ୍ତିଏ ସାଆନ୍ତଙ୍କ ଭୁଜ ଧରି ଦେହପାଣି ବଢ଼ାଇବାକୁ ନେଇଗଲେ । ସ୍ନାନ ଉତ୍ତାରେ ସାଆନ୍ତେ ଗୋବିନ୍ଦଚନ୍ଦ୍ର ଜୀଉଙ୍କ ଆଗରେ ହାତଯୋଡ଼ି ଉଭା ଅଛନ୍ତି । ଦଣ୍ଡିକ ବାଦେ ଖୁବ୍ ଗୋଟାଏ ଟାଣ ନିଃଶ୍ୱାସ ପକାଇ ପାଟିକରି କହିଲେ, 'ଆରେ ବାପା ଗୋବିନ୍ଦଚନ୍ଦ୍ର ! ଏଇଟା କଣ ତୋ କାର୍ଯ୍ୟ ? ଆଉ କିଏ କଲା ? ତୋ ଆଜ୍ଞା ବିନା

ବ୍ରହ୍ମାଣ୍ଡରେ ଯେ ଦୁର୍ଘଟଣାଟାଏ ହୋଇନ ନାହିଁ, ଏହା କଣ ମୋତେ ଅଜଣା ? ମୁଁ ତୁଚ୍ଛନର ତୋ ମାୟା କଣ ବୁଝିବି ? ସାତ ମୁଣ୍ଡ ଦେଇ ତୋ ଆଶ୍ରାରେ ପଡ଼ିଛୁଁ —ତୋ ବିନା ମୁଁ ଯେ ଆଉ କିଛି ଜାଣେ ନାହିଁ, ଏ କଥା କଣ ତୋତେ ଅଜଣା ? ମୋର ଏତେବଡ଼ ମାନ ମହତ, ସବୁ ଏକାବେଳକେ କଥା ପଦକେ କଣ ସାରିଦେଲୁ ? ହେଉ ହେଉ, ତୋହର ଇଚ୍ଛା ନ ହୁଏ ସଫଳ ହେଉ ।”

ତେର ବର୍ଷଯାଏ ସାମନ୍ତଙ୍କର ସନ୍ତାନାଦି ନ ଥିଲା, ଆଶା ବି ଛାଡ଼ି ବସିଥିଲେ । ପୁତ୍ରେଷ୍ଟି ଯଜ୍ଞ କରି ସାମନ୍ତ ସାମନ୍ତାଣୀ ଦୁହେଁ ଏକ ପରାମର୍ଶରେ ଦେବତା ଗୋବିନ୍ଦଚନ୍ଦ୍ର ଜୀଉଙ୍କୁ ପୋଷ୍ୟପୁତ୍ର ଗ୍ରହଣ କରିଥିଲେ । ସାମନ୍ତଙ୍କ ମୁଲକବାଡ଼ି ଧନଦଉଲତ ଗୋବିନ୍ଦଜୀଉଙ୍କ ନାମରେ ଲେଖାପଢ଼ା କରି ଦେଇଥିଲେ । ସେହି ଦିନାବଧି ସାଆନ୍ତେ ଭଲ ମନ୍ଦ ସୁଖ ଦୁଃଖ ମାଲମାମଲା ସବୁକଥା ଗୋବିନ୍ଦଜୀଉଙ୍କୁ ପଚାରି କରନ୍ତି । ସେବକରୂପେ ପ୍ରସାଦ ମୁଠାଏ ଖାଇବା ବିନା ଆପଣା ସକାଶେ ଦେବୋତ୍ତର ବିତ୍ତ ପଇସାଏ ମଧ୍ୟ ଖରଚ କରନ୍ତି ନାହିଁ । ସାମନ୍ତାଣୀଙ୍କର ଅଲଗା ତେଲ ହଳଦୀ ବୋଲି ତେର ଗୁଡ଼ାଏ ମୌଜା ପୃଥକ୍ ଥିଲା । କାହାରକୁ ଦେବା ନେବା ବା ଆପଣା ଲାଗି କିଛି ଲୋଡ଼ା ହେଲେ ସ୍ୱାମୀ ସ୍ତ୍ରୀ ସେହି ଖଞ୍ଜା ମୌଜା ଆୟରୁ ଖରଚ କରନ୍ତି ।

ସାଆନ୍ତେ ମନ୍ଦିର ମଧ୍ୟରେ ହାତ ଯୋଡ଼ି ଗୋବିନ୍ଦ-ଜୀଉଙ୍କୁ ଆପଣା କଥାମାନ ଜଣାଉଥିବା ସମୟରେ କେହି ଅଜଣା ବାହାର ଲୋକ ମନରେ କରିବ, ବାପ ପୁଅ ସଙ୍ଗରେ କଥା କହୁଛି ।

ଭିତର ପ୍ରସ୍ତ ଅଗଣାରେ ସାମନ୍ତାଣୀ ଛିଡ଼ା ହୋଇ ପୋଇଲୀମାନଙ୍କ ମୁହଁରୁ ଭିନ୍ନ କର୍ମ କଥା ଶୁଣୁଥିଲେ, କୁଅଁର ବାବୁଙ୍କ ମଙ୍ଗଳକୃତ୍ୟ ପ୍ରସଙ୍ଗ ନିମିତ୍ତ ଶୁଣିଲେ ଆଁ—ଶବ୍ଦଟାଏ କରି ଦୁଲୁକରି ତଳେ ପଡ଼ିଗଲେ, ଝାମ ମାରିଗଲା, ମୁହଁରୁ ଆଉ ଭାଷା ବାହାରି ନାହିଁ । ଆଠ ଦଶଟା ପୋଇଲୀ ଧାଇଁ ଆସି ଧରାଧରି କରି ଟେକି ନେଇ ଯାଇ ଶେଯରେ ଶୁଆଇଦେଲେ । ମୁହଁରେ ପାଣିଛିଟା ମାରି ପଙ୍ଖା କରୁଥାନ୍ତି । ପହରକ ଉତ୍ତାରେ ଟିକିଏ ଚେତା ବସିଲା । ଗୋଟିଏ ବୋଲି ପୁଅ, ମନମାଫିକେ ବିଭାଟାଏ କରାଇବେ, ଦେବକନ୍ୟା ପରି ବୋହୂଟିଏ ଆସି ଈଶାଣରେ ପଶିବ । ବରଷେ ହେଲା ସାମନ୍ତାଣୀଙ୍କର ଆଉ କିଛି ଚିନ୍ତା ନାହିଁ, ମୁହଁରେ ଆଉ କିଛି କଥା ନାହିଁ, ଏକା ବିଭାଘର ପ୍ରସଙ୍ଗ, କନ୍ୟା ଲୋଡ଼ାଲୋଡ଼ି କଥା, ଅଳଙ୍କାର ଗଢ଼ାଗଢ଼ି—ଲୁଗାପଟା କିଣା—ବିଭାଘରକୁ ଜ୍ଞାତି କୁଟୁମ୍ବ ମଧ୍ୟରୁ କାହାକୁ କିପରି ଲୋଡ଼ିବେ, ସେହି ପ୍ରସଙ୍ଗ । ଜଣାଯାଏ, ସାମନ୍ତାଣୀଙ୍କ ଏହି ଆନନ୍ଦ ଉଲ୍ଲାସ ସମୟରେ ଭାଗ୍ୟବିଧାତା ଯେମନ୍ତ ଅନ୍ତରାଳରେ ଥାଇ ହସୁଥିଲେ । ଭବିଷ୍ୟତ୍-ଅନ୍ଧ ବର୍ତ୍ତମାନସର୍ବସ୍ୱ କ୍ଷୁଦ୍ର ପ୍ରାଣୀ ମାନବ ଜୀବନର କାଳ୍ପନିକ ସୀମା ମଧ୍ୟରେ ସୁଖର ରାଜ୍ୟ ଗଠନ କରିବାକୁ ପ୍ରତିନିୟତ ତତ୍ପର । ମାତ୍ର ତାହାର ଅନନ୍ତ ଅବିନାଶୀ ଜୀବନାଧିପତି ମଙ୍ଗଳକାମୀ ଜନକଙ୍କ ବିଧାନ ତାହା ପକ୍ଷରେ କଷ୍ଟକର ବୋଲି ଅନୁଭବ କରିବା ବିଚିତ୍ର ନୁହେ । କ୍ରୀଡ଼ାରେ ଉନ୍ମତ୍ତ ନିର୍ବୋଧ ସନ୍ତାନକୁ ଜନକ ଭାବୀ ଜୀବନର ମଙ୍ଗଳକାମନାରେ ଧରିନେଇ ଜ୍ଞାନଶିକ୍ଷାରେ ନିଯୁକ୍ତ କରିବା ସମୟରେ ସେ ପିତାଙ୍କ ମଙ୍ଗଳ ଅଭିପ୍ରାୟ ନ ବୁଝି ତାହାଙ୍କ ପ୍ରତି ନିଷ୍ଠୁରତା ଦୋଷାର୍ପଣ କରିଥାଏ । ମଙ୍ଗଳମୟ ପରମପିତା ପରମେଶ୍ୱର ଆମ୍ଭ-ମାନଙ୍କ ଶୁଭକାମନାରେ ଯେଉଁ ସମସ୍ତ ବିଧିବିଧାନ କରିଥାଏ, ଜ୍ଞାନର ନ୍ୟୂନତାନିବନ୍ଧନ ସେଥିର ପ୍ରକୃତ ମର୍ମ ବୁଝିବାକୁ ଅକ୍ଷମ ହୋଇ ଆମ୍ଭେମାନେ ବିଳାପ ପରିତାପ କରିବାକୁ ବସିଥାଉଁ ।

ବଜ୍ରଟାଏ ଭାଙ୍ଗି ସହସା ମୁଣ୍ଡରେ ପଡ଼ିଲା ପରି ମଙ୍ଗଳକୃତ୍ୟ ସମ୍ବାଦଟା ସବୁ ଆଶା ଭରସା କଳ୍ପନା

କଳ୍ପନା ବିଲୁପ୍ତ କରି ପକାଇଲା । ସେହି ମୁହୂର୍ତ୍ତଠାରୁ ସାଆନ୍ତାଣୀଙ୍କୁ ଉଆସ ଅଗଣାରେ ଟହଲୁଥିବାର କିମ୍ବା କାହାରି ସହିତ କଥାଭାଷା ହେଉଥିବାର କେହି କେବେ ଦେଖିନାହିଁ । ଉଆସ ମଧ୍ୟରେ ମାଛିଟି ଯେମନ୍ତ ମରି ଯାଇଛି, କାହାରି ସୋର ଶବ୍ଦ ନାହିଁ । ଏଣେ ସାନ୍ତଙ୍କ ବାହାର କଚେରିଟା ବି ଶୁନ ହୋଇ ପଡ଼ିଛି । ସଞ୍ଜ ସକାଳେ ଯେଉଁ କଚେରିମେଲକୁ ପଞ୍ଝାକୁ ପଞ୍ଝା ଲୋକ ଯା-ଆସ କରୁଥିଲେ, ସେ ଜାଗାଟା ଏବେ ଖାଁ ଖାଁ ଗୋଡ଼ାଉଛି । କେତେବେଳେ ବା ଭୁଲଭଟକାରେ ପ୍ରଜାଟାଏ ପହଞ୍ଚିଗଲେ କଚେରି ଅଗଣାକୁ ଅନାଇ ଦଣ୍ଡବତଟାଏ କରି ତୁନି ହୋଇ ଚାଲିଯାଏ । କରଣ ସାନ୍ତମାନେ, କାହିଁ ଦୁଇ ଜଣ, କାହିଁ ପାଞ୍ଚଜଣ ମୁଣ୍ଡ ପୋତି ବସିଛନ୍ତି । ସମସ୍ତଙ୍କ ମୁହଁରେ ଗୋଟିଏ କଥା, ପିଲାଟା କ'ଣ କଲା ! ଶ୍ରୀ କରଣଗୋଷ୍ଠୀ ମୁଣ୍ଡ ତଳକୁ କରାଇଦେଲା !

— — —

-୧୩-

କବି ମଧୁସୂଦନ ଜୀବନାନ୍ତ ସମୟରେ ଗୋଟିଏ ପରିଚିତ ଛନ୍ଦଟା କହିଥିଲେ—

"ବେଙ୍ଗଲା ବୋଲେ ବେଙ୍ଗୁଲି, ପୃଥିବୀ କ୍ଷଣକ୍ଷଣକେ ଆନ ।"

ପରିବର୍ତ୍ତନଶୀଳ, ଜଗତରେ ମାନବ ଗୋଟିଏ କ୍ଷୁଦ୍ରତମ ଅଂଶ ମାତ୍ର, ଏଥିକୁ ସମ୍ପୂର୍ଣ୍ଣରୂପେ ଜାଗତିକ ନିୟମାଧୀନ, ଏଥିକୁ ମାନବୀୟ ଯାବତ ଘଟଣା କ୍ଷଣଭଙ୍ଗୁର ଅଟେ । ଆମ୍ଭମାନଙ୍କ ଦୁଇ କରଣ ବଂଶ ମଧ୍ୟରେ ଭାରି ଉତ୍ସାହ ଓ ଶେଷ ପ୍ରବଳବେଗରେ ଯେଉଁ ମାଲମାମଲା—ନିଆଁରେ ପାଣି ପଡ଼ିଲା ପରି ଏକାବେଳକେ ସବୁ ନିଭି ଗଲାଣି । ଅଦାଲତମାନଙ୍କରେ ଯେଉଁ ସମସ୍ତ ମାମଲା ଚାଲୁଥିଲା, ପକ୍ଷମାନଙ୍କ ଅନୁପସ୍ଥିତିରେ କ୍ରମଶଃ ଖାରଜ ହୋଇଯାଉଛି । ପୂର୍ବେ ଦୁଇ ତାଲୁକର କରଣ ସାଆନ୍ତଙ୍କ ପରସ୍ପର ଭେଟାଭେଟି ହୋଇଗଲେ ଯୋଡ଼ାଏ କୁକୁର ଭେଟ ପରି ରାଗରେ ଗର୍ଜ୍ଜନ କରୁଥିଲେ, ଏବେ ଏକକୁ ଅନେକ ଭେଟାଭେଟି ହୋଇଗଲେ ଅତି ଶାନ୍ତ ଭାବରେ ବାଟ ଆଡ଼େଇ ଚାଲି ଯାଉଛନ୍ତି । କେହି ସନ୍ଧାନୀ ଲୋକ ସେମାନଙ୍କ ମୁଖକୁ ଚାହିଁଲେ ସହଜରେ ବୁଝି ପାରିବେ, ଏକ ପକ୍ଷରେ ମସ୍ତକ ଦୁଃଖ ଭାରାବନତ, ଅନ୍ୟ ପକ୍ଷରେ ବଦନମଣ୍ଡଳ ପ୍ରଫୁଲ୍ଲିତା ସହିତ ଗମ୍ଭୀରକୃତ ।

— — —

-୧୪-

ଦିନ କାହାରି ପାଇଁ ବସି ରହେ ନାହିଁ, ଦଶଗ୍ରାମ ତାଲୁକ ଉଆସର ବିଳାପ ସନ୍ତାପ ଏବଂ ସମସରପୁର ତାଲୁକର ଆନନ୍ଦୋଲ୍ଲାସ ମଧ୍ୟଦେଇ ଚାରିମାସ କାଳ ବିତିଗଲାଣି । ମଙ୍ଗଳକୃତ୍ୟ ସମ୍ବାଦ ଶୁଣିବା ସମୟଠାରୁ ସାମନ୍ତ ବୈଷ୍ଣବଚରଣ ପଟ୍ଟନାୟକ ବିଦ୍ୟାଧର ମହାପାତ୍ର ସବୁ ବେବସା ଛାଡ଼ି ଶ୍ରୀ ଶ୍ରୀ ଗୋବିନ୍ଦଜୀଉଙ୍କ ଆଗରେ ବସିଛନ୍ତି । ସବୁବେଳେ ସେହି ଦେବତାଙ୍କ ସହିତ କଥା ଭାଷା ହେଉଥାନ୍ତି । ପୁଝାରୀ ଟହଲିଆ ସାନ୍ତଙ୍କ ସଙ୍ଗୀ । ଆଉ ଆଉ ଲୋକେ କହନ୍ତି, ଶ୍ରୀଜୀଉ ସାନ୍ତଙ୍କ ସାଙ୍ଗରେ କଥାଭାଷା ହେଉଥିବାର ଢେର ଥର ଶୁଣା ଯାଇଛି । କେହି ଲୋକ ସାନ୍ତଙ୍କୁ କିଛି କଥା ପଚାରିଲେ, ହଁ କିମ୍ବା ନା ଏହି ଦୁଇ ଅକ୍ଷର ଛଡ଼ା ଆଉ କିଛି ଉତ୍ତର ପାଏ ନାହିଁ । ତାହା ମଧ୍ୟ ଯେ ସେ ଲୋକର ସାଆନ୍ତଙ୍କ ପାଖକୁ ଯିବାର ଭରସା ଖଟେ ନାହିଁ । କେବଳ ନିତାନ୍ତ ଆପଣାର ଲୋକେ ବେଳ ଜଣି ଅତି ଧୀରେ ସାବଧାନରେ କିଛି କଥା ପଚାରିବାକୁ ସାହସ କରନ୍ତି ।

ସାନ୍ତାଣୀ ତ ବିଛଣା ଧରିଛନ୍ତି, କାହାରି ସହିତ କଥାଭାଷା ନାହିଁ । ପୋଇଲିମାନେ ବଡ଼ କଷ୍ଟରେ ଭୋଜନା ମିତ ବଢ଼ାଇ ଯାନ୍ତି । ପୁତ୍ରର ଏହି ଅମାର୍ଜ୍ଜନୀୟ ଦୋଷ ସବୁ ପାସୋରି ଗଲେଣି, ଦିନ ରାତି ଗୋଟିଏ

ଚିନ୍ତା, ପୁଅକୁ ଥରେ ଦେଖିବେ। ମୁଖରେ ଗୋଟିଏ କଥା, ମୋ ଗୋବିନ୍ଦକୁ ଡାକ, ତାକୁ ଥରେ ଦେଖିବି। ଘଟଣା ସମ୍ବନ୍ଧରେ ସାଆନ୍ତେ ପୁତ୍ର ସମ୍ବନ୍ଧରେ କିଛି କଥା କହନ୍ତି ନାହିଁ। ସ୍ୱାମୀଭକ୍ତିପରାୟଣା ସତୀ ସାଧ୍ୱୀ ସାନ୍ତାଣୀ ସ୍ୱାମୀଙ୍କ ଅପ୍ରୀତିକର କାର୍ଯ୍ୟରେ ଶଙ୍କାନ୍ୱିତା। ସାନ୍ତାଣୀ ପୁଅକୁ ଦେଖିବା ଲାଗି ଇଚ୍ଛା କଣ୍ଠରୁ ଉଚ୍ଚାରି ପାରୁ ନାହାନ୍ତି। ସ୍ୱଭାବସୁଲଭ ପୁତ୍ରସ୍ନେହ ଆଉ ସ୍ୱାମୀଭକ୍ତି ମଧ୍ୟରୁ ସାଧାରଣ ନାରୀମାନଙ୍କ ହୃଦୟରେ ପ୍ରଥମଟି ଆଧିପତ୍ୟ ବିସ୍ତାର କରିଥାଏ। ହେଲେ, କର୍ତ୍ତବ୍ୟପରାୟଣା ସାନ୍ତାଣୀଙ୍କ କଥା ସ୍ୱତନ୍ତ୍ର ଅଟେ। ମାନସିକ ଦାରୁଣ ଦୁଃଖ ଓ ସ୍ନାନାହାର ବିଷୟରେ ତାଚ୍ଛଲ୍ୟନିବନ୍ଧନ ରୋଗଗ୍ରସ୍ତା ହୋଇ ପଡ଼ିଲେଣି। ଜ୍ୱର ଦିନକୁ ଦିନ ବଳି ପଡ଼ୁଥିଲା। ଆଜି ସକାଳେ ରାଜବୈଦ୍ୟ ଅଶ୍ୱିନୀକୁମାର ଧନ୍ୱନ୍ତରି ନାଡ଼ିକା ଦେଖି କହିଲେ, ସନ୍ନିପାତର ପୂର୍ଣ୍ଣ ଲକ୍ଷଣ। ଦାର୍ଶନିକ-ମାନଙ୍କର ମତ, ଜୀବନାବସାନ ସମୟରେ ମାନବ ଚିରଅଭିଳଷିତ ବିଷୟ ଚିନ୍ତା କରିଥାଏ। ସାନ୍ତାଣୀ ସବୁବେଳେ ବାଉଳାହୋଇ କହୁଛନ୍ତି—"ମୋ ଗୋବିନ୍ଦ କାହିଁ?" ସଦର କଚେରି ପାଞ୍ଚିଆମାନେ ବସି ବିଚାର କଲେ, ସାନ୍ତଙ୍କୁ ଜଣାଇ କୁଅଁର ବାବୁଙ୍କୁ କଟକରୁ ଅଣାଇବାକୁ ହେବ, ନୋହିଲେ ସାନ୍ତାଣୀଙ୍କ ଆଶା ଗୁଡ଼।

---

## -୨୫-

## ସଦାନନ୍ଦର ଆତ୍ମଚିନ୍ତା

ବାଃ! କିମିତିକା ଗୋଟାଏ ଫିକର ବାହାର କଲି। ମୁଁ ଶ୍ୱଶୁରଘରକୁ ସାଙ୍ଗରେ ନ ଗଲି ବୋଲି ଗୋବିନ୍ଦ ମନରେ ଦୁଃଖ କରିଥାନ୍ତା। ରାଜୀବଲୋଚନକୁ କହିଲି—'ଶୁଣୁଛି, ଉଆସରୁ ଲୋକମାନେ ଆସୁଛନ୍ତି, ଆମ୍ଭମାନଙ୍କୁ ଏଠାରେ ନ ଦେଖିଲେ ସମସରପୁରର ଉଆସକୁ ଧାଇଁ ଯାଇ ଗୋଳମାଳ ଲଗାଇବେ। ସେମାନଙ୍କ କଥାରେ ପଡ଼ି ଗୋବିନ୍ଦର ମନ ବଦଳି ଯାଇପାରେ। ତେତେବେଳେ ଭାରି ଗୋଟାଏ ଅସୁନ୍ଦର କଥା ହୋଇ ପଡ଼ିବ। ମୁଁ ଯେବେ କଟକରେ ରହିଯାଏଁ, ଗୋବିନ୍ଦ ପୁରୀ ଯାଇଛି ବୋଲି କହି ସେମାନଙ୍କୁ ଅଟକାଇ ରଖିବି କିମ୍ବା ସାଙ୍ଗରେ ଧରି ପୁରୀ ବାହାରି ଯିବି। ଏଥି ମଧ୍ୟରେ ମାମଲା ଫତେ ହୋଇଯିବ।' ମୋ ଫିକର କେହି ବୁଝିପାରିଲେ ନାହିଁ, ଗୋବିନ୍ଦ ବି ଆପେ ପ୍ରସ୍ତାବ କରି ମୋତେ କଟକରେ ରଖାଇ ଗଲା। ଖୁବ୍ ଗୋଟାଏ ବାଟ କାଟି ରଖିଛି, ମିଉସା ମିଉସୀଙ୍କ ଆଗରେ କଥା ପଡ଼ିଲେ କହିବି, 'ମୁଁ କିଛି ଜାଣେ ନାହିଁ। ତେତେବେଳେ ଜାଣିଥିଲେ ଆପଣମାନଙ୍କୁ କଣ ଖବର ଦେଇ ନଥାନ୍ତି?' ଏ କଥାଟା କହିଦେଇ ଏକାବେଳକେ ଅଲଗା ହୋଇଯିବି। ଏ ବି ଗୋଟାଏ କଥା, ତାହାହେଲେ ଗୋବିନ୍ଦ ମନରୁ ଏକାବେଳକେ ଯିବି। ଏଥିପାଇଁ ଆଉ ଗୋଟାଏ ଫିକର କାଢ଼ିବାକୁ ହେବ। ହିଁ—ହିଁ, ବେଶ କଥାଟାଏ ମନରେ ପଡ଼ିଗଲା, ଗୋବିନ୍ଦ ଯିମିତି ଉତ୍ତୁଣିକା ଉଆସକୁ ନ ଯାଏ, ସେଥିର ଗୋଟାଏ ଫିକର ପାଞ୍ଚିବାକୁ ହେବ। ସେ ତ ଗୋଟାଏ ଏକଗୁଣ୍ୟାଁ ଟୋକା, ଯାହା ଧରିଥିବ ତ ଧରିଥିବ—କେହି ଛଡ଼ାଇ ପାରିବ ନାହିଁ। ବାପ ପୁଅ ଭିତରେ ଯିମିତିକା ଟିକିଏ ମନ ଉଣାଉଣି ହୁଏ, ସେଥିର ଉପାୟ କରିବାକୁ ହେବ। ମିଉସା ବି ଡାକିବେ ନାହିଁ, କି ଗୋବିନ୍ଦ ବି ତାଙ୍କ ପାଖକୁ ଯିବ ନାହିଁ।

---

## -୨୬-

## ଭାଇ—ଭାଇ

ଗୋବିନ୍ଦଚନ୍ଦ୍ର—ସଦେଇ ଭାଇ, ଏଡ଼େ ହେଲା କୋଠାଟା ଉପରେ ଏକୁଟିଆ ବସି କଣ ଭାବୁଛୁ? କାଲିକା କଲେଜର ପଢ଼ାଟାରେ ଲାଗି ପଡ଼ିଥିଲି, ସେଥିପାଇଁ ତୋ ପାଖକୁ ଏତେବେଳ ଯାଏ ଆସି ପାରି ନାହିଁ।

ସଦାନନ୍ଦ—ନା ନା ଗୋବିନ୍ଦ, ମୁଁ ଭୁଲିଯାଇ ବସିଛି । ନା ନା, ତୁ ମୋତେ କିଛି ପଚାରନା, ଆଉ କଥା ପକା ।

ଗୋବିନ୍ଦଚନ୍ଦ୍ର—ନାହିଁ, ସଦେଇ ଭାଇ ! ମୋତେ ନିଶ୍ଚେ ବୋଲିବାକୁ ହେବ, କଥାଟା କଣ ?

ସଦାନନ୍ଦ— ଶୁଣ ଗୋବିନ୍ଦ ! ସେ ଯେତେହେଲେ ପିତା, ଦେବତା ସମାନ, ରାଗରେ ଯେବେ ଗୋଟାଏ କଥା କହି ପକାଇଲେ, ସେ କଥାଟାକୁ ଧେନା କରିବା ତୋ ପରି ବୁଦ୍ଧିମାନ୍ ପିଲା ପକ୍ଷରେ କଦାଚ ଉଚିତ ନୁହେ ।

ଗୋବିନ୍ଦ ଟିକେ ଖପା ହୋଇ କହିଲେ, "ଦୂର କର ! ଅସଲ କଥାଟା କଣ କହି ପକା ନା, ତୋର ସଜାସଜ ବନାବନ କଥା ମୋତେ ଆଚ୍ଛା ଲାଗୁନାହିଁ ।"

ସଦାନନ୍ଦ —ଏହି ତ ତୁ ରାଗି ଗଲୁଣି । ଏହି ଡରରେ ମୁଁ କହୁ ନ ଥିଲି । ଆଚ୍ଛା ତେବେ କହୁଛି, ଶୁଣି ଯା, "ଆମ ଗାଁ ମହା ମହାନ୍ତିକୁ ତୁ ଚିହ୍ନୁ ତ ? ତା ସାଙ୍ଗରେ କାଲି ଉପର ଓଳି ସାହଜାଦା ବଜାରରେ ଭେଟ ହୋଇଥିଲି । ତାହାର ମୁହଁରୁ ଶୁଣିଲି, ପିଉସା କମିଶନରୀ ଦିନେ ଖପା ହୋଇ ପାଞ୍ଚ ଜଣଙ୍କ ଆଗରେ କହି ପକାଇଲେ, "ଗୋବିନ୍ଦ ମୋତେ ଏଡ଼ି ଦେଇ ଗୋଟାଏ ଗୋଲାମ ଘରେ ବିଭା ହୋଇଛି । ସେଟା ମୋ ପୁଅ ନୁହେଁ, ମୁଁ ତାହା ମୁହଁ କେବେ ଚାହିଁବି ନାହିଁ ।" ଶୁଣ ଗୋବିନ୍ଦ ! ବୁଢ଼ା ମୁରବି ଲୋକ, ରାଗ ଚମକରେ ଯେବେ କଥାଟାଏ କହି ପକାଇଛନ୍ତି, ସେ କଥାଟା ମନରେ ଧେନା କରନା । ଦି ଦିନ ବାଦେ ସବୁ ପାସୋରି ଯିବେ, ପୁଣି ତୋତେ ଡକାଇ କୋଳକୁ ନେବେ । ହଉ—ପିଉସା ଖପା ହୋଇ ତୋ ପାଖକୁ ଚାରି ମାସ ହେଲା ଖରଚପତ୍ର ପଠାଉ ନାହାନ୍ତି । ବିଦେଶ ଭୂଇଁରେ କପର ଚଳାଚଳ କରୁଛୁ ପଚରା ପଚରି ନାହିଁ, ସେଥିଲାଗି କଣ ଅଟକ ଯାଉଛୁ ? ତୋର ଭାବନା କଣ ? ଛାଡ଼ ସେ ସବୁ କଥା, ମୁରବିଙ୍କ କଥା ଧରିବା ଉଚିତ ନୁହେ ।"

ଗୋବିନ୍ଦଚନ୍ଦ୍ର ଦଣ୍ଡେଯାଏଁ ଗୁମ ମାରି ବସି କହିଲେ, "ଶୁଣ ସଦେଇ ଭାଇ ! ମୋହର ଏକଥା, ତୁ ତ ଜାଣୁ । ବାବା ସ୍ୱାନ୍ତ ନିଜେ ମୋତେ ଡାକି ନ ଆସିଲେ ମୁଁ କେବେଁ ଭଉଆସକୁ ଯିବି ନାହିଁ ।"

---

## —୨୬—

## ଛାମୁକରଣଙ୍କ ଚିଟାଉ

ସଞ୍ଜ ବଇଠା ଲାଗି ଗଲଣି, କୁଅଁର ଗୋବିନ୍ଦଚନ୍ଦ୍ର ବାବୁ, ସଦାନନ୍ଦ ବାବୁ ଦୁଇଜଣ ନିଜ୍ଜକ୍ଲରୁ ବୁଲି ବାହୁଡ଼ା ସାରି ପଢ଼ାର ଉଦ୍‌ଯୋଗ କରୁଛନ୍ତି । ରାଜୀବଲୋଚନ ବାବୁ ସଦର ଦୁଆର ପାଖରୁ 'ଏ ଗୋବିନ୍ଦଚନ୍ଦ୍ର ବାବୁ ! ଏ ସଦାନନ୍ଦ ବାବୁ !' ଡାକି ଡାକି ପାଖରେ ଆସି ଛିଡ଼ା ହୋଇଗଲେ । କୁଅଁର ଗୋବିନ୍ଦଚନ୍ଦ୍ର ବାବୁ ପଚାରିଲେ, "ଏଇଲାଗେ ତ ଆମ୍ଭମାନଙ୍କ ପାଖରୁ ମେଲାଣି ଘେନି ଗଲେ, ପୁଣି ସାଙ୍ଗେ ସାଙ୍ଗେ ଏତେ ଚଞ୍ଚଳ ଧାଇଁ ଅଇଲେ କିଁଆ ? କଥା କଣ !"

ରାଜୀବଲୋଚନ ବାବୁ—'ଏଇ ଦେଖନ୍ତୁ' କହି କୁଅଁର ବାବୁଙ୍କ ହାତକୁ ଭାଷା ଖଣ୍ଡେ ବଢ଼ାଇ ଦେଲେ ।

କୁଅଁର ବାବୁ—ଏ ସଦେଇ ଭାଇ, ପଢ଼ିଗଲ ଏ ଭାଷାରେ କଣ ଲେଖା ଅଛି ।

ସଦାନନ୍ଦ ବାବୁ ଚିଠିଖଣ୍ଡିକ ଏ ପାଖ ସେ ପାଖ ବୁଲାଇ ଦେଖି ଜଉମୁଦ ଫେଇ ପଢ଼ିବାକୁ ଆରମ୍ଭ କଲେ —

ଶ୍ରୀ ଶ୍ରୀ ଶ୍ରୀ କୁଳଦେବତା ବିନୋଦବିହାରୀଙ୍କ ଶ୍ରୀଚରଣେ ଶରଣ । ଶ୍ରୀ ଶ୍ରୀ ଦିବ୍ୟସିଂହ ଦେବଙ୍କ ଛ ଅଙ୍କ କକଡ଼ା ଦିଶଦିନ ଶୁକ୍ଳ ଦ୍ଵିତୀୟା ରୋଜ ବୁଧବାର ବେଳ ପହରକ ସମୟ ସମସରପୁର ଉଆସଠାରୁ ଲେଖିଲୁଁ, ଆହେ ରାଜୀବଲୋଚନ ବାବୁ ଶ୍ରୀଶ୍ରୀଶ୍ରୀ ସାମନ୍ତ ଗୋସାଇଁ ଆଜ୍ଞା ଅବଧାନ କରିବାରୁ ଲେଖୁଅଛୁଁ କି ଗଲ ଅଙ୍କ ଏ ଅଞ୍ଚଳରେ ଧାନଫସଲ ମରୁଡ଼ି ହୋଇଥିବାରୁ ପାଣ କଣ୍ଡରା ଅଛିବି ଲୋକ ଖାଇବାକୁ ନ ପାଇ ମୁଲକରେ ଚୋରି ଚମାଟି ଭାରି ଗୋଳ ଲଗାଇ ଅଛନ୍ତି, ଫି ଗାଁରେ ରୋଜନା ରାତିରେ ଦୁଇ ତିନି ଘରୁ ଚୋରି ଯାଉ ଅଛି । ଉଆସ ଲଗାଲଗି ଚଉପିଠି ଗାଁରେ ଚୋରି ମାଡଛନ୍ତି । ଗଲ ରାତିରେ ଉଆସ ନିକଟ ଶିମିଳିପୁର ଘନ ମହାନ୍ତି, ଗୋବିନ୍ଦ ସା, ଶ୍ୟାମ ରଣା ତିନିଟା ଘରେ ସିନ୍ଧି କରି ଚୋରରେ ପୋଖ୍ତ ପୋଖ୍ତ କରି ସବୁ ମାଲମତା ଧରି ବାହାରି ଯାଇଛନ୍ତି । ଏ ପ୍ରସଙ୍ଗ ଜିଲ ମେଜେଷ୍ଟର ସାହେବ ପୁଲିଶ ସୁପରଡ଼ଣ୍ଟ ସାହେବଙ୍କୁ ଜଣାଇ ଉଆସ ହେପାଜତ ସକାଶେ ପୁଲିଶ କନଷ୍ଟବଲ ମଦତ ଆଣିବାକୁ ହେବ; ମାତ୍ର ରିପୋର୍ଟ ଖଣ୍ଡି ସାହେବ ମଉସୁଫମାନେ ଆପେ ଆପେ ପଢ଼ିବା ସକାଶେ ଇଂରେଜୀରେ ଲେଖିବାର ଦରକାର । ହେଲେ ତୁମ୍ଭଙ୍କୁ ଭଲ ଜଣା, ଇଂରେଜୀ ଜାଣନ୍ତା ଲୋକ ଏଠାରେ କେହି ନାହିଁ । ଶ୍ରୀ ଶ୍ରୀ ସାନ୍ତ ମଉସୁଫଙ୍କ ବିଶେଷ ଆଜ୍ଞା, ଉକ୍ତ ରିପୋର୍ଟ ଲେଖିବା ସକାଶେ ତୁମ୍ଭେ ଜରୁର କଟକରୁ ରମାନା ହୋଇ ଆସିବ । ଶ୍ରୀ ଶ୍ରୀ ସାନ୍ତ ମଉସୁଫଙ୍କ ଏହି ଆଜ୍ଞାକୁ ଆକଟ ଜାଣିବ ।

ଦୁଇଖଣ୍ଡ ଆପଟ ବେହେରା ସହିତ ଦୁଇଖଣ୍ଡ ସବାରି ପଠାଗଲା । ଖଣ୍ଡେ ସବାରିରେ ତୁମ୍ଭେ ଆପେ ଆସିବ । ଆଉ ଖଣ୍ଡେ ସବାରି ଖଣ୍ଡେ କାନ୍ଧିଆ ଆପଟ ସୃରଜଣ ବାହୁଙ୍ଗୀଆପଟ କଟକରେ ଛାଡ଼ି ଆସିବ । ତୁମ୍ଭ ପୂର୍ବ ଚିଠାଉ ଧରି ହିସାବ କରିଥିଲୁ, କଲେଜ ବନ୍ଦ ହେବାକୁ ଆଉ ଚାରିଦିନ ମାତ୍ର ବିଳମ୍ବ ଅଛି । ଆସନ୍ତା ସୋମବାର ଦିନ କଲେଜ ବନ୍ଦ ହେଲାକ୍ଷଣି ଶ୍ରୀମାନ ଜ୍ଵାଇଁ ବାବାଜୀଉ କୁଅଁର ବାବୁ କଟକରୁ ଏ ସ୍ଥାନକୁ ରମାନା ହୋଇ ଆସିବେ । ଶ୍ରୀ ଶ୍ରୀ ଶ୍ରୀ ସାମନ୍ତ ମଉସୁଫଙ୍କ ହୁମୁରେ ଶ୍ରୀ ଶ୍ରୀମାନ୍ କୁଅଁର ବାବୁଙ୍କୁ ଦେଖିବା ସକାଶେ ବଡ଼ ବ୍ୟାକୁଳ ହୋଇ ପଡ଼ିଛନ୍ତି । ଉଆସ ଭିତରେ ମଧ୍ଯ ସମସ୍ତେ ବୃତକ ପଥ ଚାହିଁ ରହିଛନ୍ତି । ଏ ପ୍ରସଙ୍ଗ ଶ୍ରୀମାନ୍ କୁଅଁର ବାବୁଙ୍କୁ ବିଶେଷ ବିଶେଷରୂପେ ଜଣାଇ ଆସିବ । ଆଉ ଅଧିକ କି ଲେଖିବୁଁ । ଇତି ।

ଲେଖନକାରି ଉଆସପାଞ୍ଜିଆ ବାଞ୍ଛାନିଧି ମହାନ୍ତି ।

ଚିଠା ପାଠ ଉତ୍ତାରେ ସମସ୍ତେ ମୁଣ୍ଡ ନୁଆଇଁ ତୁନି ହୋଇ ବସିଛନ୍ତି । ରାଜୀବଲୋଚନ ବାବୁ କହିଲେ, "ଶୁଣନ୍ତୁ ଗୋବିନ୍ଦ ବାବୁ ! ଚିଠାରୁ ତ ସମସ୍ତ ଶୁଣିଲେ, ମାତ୍ର ମୁଁ ଭଲ କରି କଥା ଜାଣେ, ମାମୁଁ ସାମନ୍ତଙ୍କର ଆପଣଙ୍କୁ କହିବା ପାଇଁ ବିଶେଷ କଣଟାଏ ଗୁପ୍ତ କଥା ଅଛି ।"

ସଦାନନ୍ଦ ବାବୁ କହିଲେ, "ଶୁଣ ଗୋବିନ୍ଦ ! ମୁଁ ଭଲ କରି ବୁଝିଛି, ତୋର ଯିବାର ନିତାନ୍ତ ଦରକାର, ଏଣିକି ତୋ ଇଚ୍ଛା ।"

କୁଅଁର ବାବୁ ନିଃଶ୍ୱାସଟାଏ ଛାଡ଼ି କହିଲେ, "ହେଉ ତେବେ ମୁଁ ଯିବି ।"

ରାଜୀବଲୋଚନ ବାବୁ ଧଡ଼୍ କରି ଛିଡ଼ା ହୋଇ ଯାଇ କହିଲେ, "ତେବେ ମୁଁ ଆସୁଛି, ବଜାରରୁ କିଛି ସଉଦା କିଣି ଏହିଲାଗେ ବାହାରି ଯିବି ।" ସଦାନନ୍ଦ ବାବୁଙ୍କୁ ଆଖିଠାରି ଦେଇ ବାହାରିଗଲେ । ସଦାନନ୍ଦ କହିଲେ, "ରାଜୀବଲୋଚନ ଭାଇ ! ଟିକିଏ ରହିଯାଅ, ମୁଁ ତୁମ୍ଭଙ୍କୁ ବାଟେଇ ଦେଇ ଆସେଁ ।" ଘର ମଧ୍ଯରୁ ବାହାରି ଆସି ଥରେ ପଛକୁ ଅନାଇ ଦେଇ ତୁନି ତୁନି କହିଲେ "ଶୁଣ ରାଜୀବ ଭାଇ, ମୋ କଥାଟା ଭୁଲିବ ନାହିଁଟି ।"

ରାଜୀବ ଲୋଚନ—ମାମୁଁ ସାନ୍ତଙ୍କୁ ଜଣାଇ ଅବଶ୍ୟ ପଠାଇ ଦେବ । ହେଲେ, ସେ ନ ଗଲେ ମାମୁଁ ସାନ୍ତଙ୍କ ମନ ଉଣା ହୋଇଯିବ, ତେଣେତେବେଳେ ମୁଁ ତାଙ୍କୁ ଜଣାଇବାକୁ ଭରସି ପାରବ ନାହିଁ ।

———

-୨୮-

ଶୁକ୍ରବାର ସନ୍ଧ୍ୟା ସମୟ । ସଦାନନ୍ଦ ବାବୁ, କୁଅଁର ବାବୁ ବସା ସମ୍ମୁଖରେ ଟହଲୁଛନ୍ତି । ଏଇଲାଗେ ନଙ୍ଗକୂଳରୁ ବୁଲବୁଲ କର ବାହୁଡ଼ ଅଇଲେ । ଏହି ସମୟରେ ଆଗରେ ଜଣେ ଭଲଲୋକ, ତା ପଛରେ ଦୁଇଖଣ୍ଡ ସବାର ଆସୁଥିବାର ଦେଖାଗଲା । ସଦାନନ୍ଦ ବାବୁ ଦୂରରୁ ସେମାନଙ୍କୁ ଦେଖି ଆଗରେ ଚାଲୁଥିବା ଲୋକକୁ ଚହ୍ନି ପକାଇଲେ—ଗୋପାଳପୁର ମକଦ୍ଦମ ଦୁର୍ଗାଦାସ ମହାନ୍ତି । ସଦାନନ୍ଦ ଏବୁ କଥା ବୁଝିଗଲେ, କୁଅଁର ବାବୁ ବସା ଦୁଆର ଆଡ଼କୁ ମୁହ କରିଥିବାରୁ ସେମାନଙ୍କୁ ଦେଖି ନାହାନ୍ତି । ସଦାନନ୍ଦ ଚଞ୍ଚଳ କହିଲେ, "ଆସ ଗୋବନ୍ଦ, ସଞ୍ଜ ହେଲା, ଭିତରକୁ ଯିବା ।"

ଦୁଇଜଣ ଭିତରକୁ ଚାଲିଯାଇ ସଦାନନ୍ଦ ଧଡ଼କର ଦୁଆରଟା ବନ୍ଦ କର ଦେଲେ । 'ସଇତା ! ସଇତା ! ସଇତା ! ରେ ପଇତା ! ରେ ବାରକ !' କହି ସଦର ଦୁଆରେ କଏ ଡାକପକାଇଛି । ସଦାନନ୍ଦ ବାବୁ ପିନ୍ଧା ଲୁଗା ବଦଳାଉଥିଲେ । ବାହାରୁ ଡାକ ଶୁଣି କବାଟ ଫିଟାଇ ଦେବାଲାଗି ଚଞ୍ଚଳ ଘର ମଧ୍ୟରୁ ବାହାର ଅଇଲେ । କବାଟ ଫିଟେଇ ଦେଇ ଆସନ୍ତା ଲୋକଟିକୁ ପଚାରିଲେ, 'କଏ ହେ ମହାନ୍ତିଏ ! ତୁମେ କୁଆଡ଼େ ?'

ଦୁର୍ଗାଦାସ କାନ୍ଦ ପକାଇ ଧକେଇ ଧକେଇ କହିଲେ, 'ଅଜ୍ଞ, କୁଅଁର ବାବୁଙ୍କୁ ତୁରନ୍ତ ଡାକ ଦିଅନ୍ତୁ । ଦୋର ବିପଦ, ମା ମଣିମାଙ୍କର ବେଠିକଣା —ଉଚ୍ଛୁଣି ଉଚ୍ଛୁଣି ପର—ଆପଣମାନଙ୍କୁ ଦେଖିବାଲାଗି ମା ମଣିମା ଲେଡ଼ିଛନ୍ତି । ଆଉ ମଠ କରିବେ ନାହିଁ, ବେଗି ବେଗି କୁଅଁର ବାବୁଙ୍କୁ ଡାକନ୍ତୁ ।'

ସଦାନନ୍ଦ କହିଲେ, "ଆଚ୍ଛା ତୁମେ ଏଇଠି ବସ, ମୁଁ ଗୋବନ୍ଦକୁ ଡାକ ଆଣେ । ସଦାନନ୍ଦ ପୁଣି କବାଟ କଳଦେଇ ଯିମିତ ଭିତରକୁ ଯାଇଛନ୍ତି, କୁଅଁର ବାବୁ ପାଖକୁ ଚାଲି ଆସି କହିଲେ, "ସଦେଇ ଭାଇ ! ମୁଁ କବାଟ ଉହାଡ଼ରେ ସବୁ ଶୁଣିଛି, ଉଚ୍ଛୁଣି ଯିବା, ନା କଣ କରିବା କହିଲୁ ?"

ସଦାନନ୍ଦ—ଆରେ ଭାଇ ! ମିଛ, ମିଛ—ତୁଚ୍ଛ ମିଛ । ପିଉସୀ ବାଧିକା ପଡ଼ିଥିଲେ ଆଗେ ଶୁଣି ନ ଥାନ୍ତୁ ? କୁଆଡ଼େ କିଛି କଥା ଶୁଣାଶୁଣି ନାହିଁ, ଲୋକଟା ବୋଲୁଛି କଣ ନା - ମା ମଣିମା ଉଚ୍ଛୁଣି ଉଚ୍ଛୁଣି । ନିତ ନିତ ତ ଝଙ୍କଡ଼ ଲୋକଙ୍କ ସାଙ୍ଗରେ ମୋର ଦେଖା ହୁଏ । ମୁଁ ଆଗେ ସେମାନଙ୍କୁ ଉଆସ ଖବର-ଖବର ପଚାରେ—ସେମାନେ କହନ୍ତି, ଉଆସରେ ସମସ୍ତଙ୍କ ଦେହପା ଭଲ । ମୁଁ ବେଶ ବୁଝୁଛି, ଲୋକଟା କିଛି ଫନ୍ଦରେ ଆସିଛି । ତା କଥାରୁ ମୁଁ ତ ସାଫ୍ ବୁଝି ଗଲଣି, କଥା କିଛି ନାହିଁ । ଆଗେ ସକେଇ ବସିଲା । ଏଟା ହେଉଛି ଠକମାନଙ୍କର ଫନ୍ଦ । ଏହି ମୂର୍ଖଟା କଥାରେ ଯେବେ ଭୁଲିଯିବା, ତେବେ ଏତେ ପଢ଼ିଛେ କିଂ? କଥାଟା ସତ ହୋଇଥିଲେ ପିଉସା ସାନ୍ତ ତ ଆଜ୍ଞାପତ୍ର ପଠାଇଥାନ୍ତେ, ନୋହିଲେ ଉଆସରୁ କେହି ଦଉଡ଼ ଲୋକ ଆସିଥାନ୍ତା । କାହିଁ କିଛି ନାହିଁ, କୁଆଡ଼ୁ ମଫସଲରୁ ଅଚହ୍ନା ଲୋକଟା ଏକାବେଳକେ ପାଲିଙ୍କି ଯୋଡ଼ାଏ ଧର ବାହାର ଆସିଛି । କହୁଛି କଣ ନା, ଗାଁର ମକଦ୍ଦମ । ମୁଁ ତ ଏଟାକୁ କେବେ ଦେଖି ନାହିଁ—ଚହ୍ନେ ନାହିଁ । ତୁ ଚହ୍ନୁ କ ଗୋବନ୍ଦ ?

ଗୋବନ୍ଦ ବାବୁ କହିଲେ—ମୁଁ ତ ମଫସଲର କେହି କରଣଙ୍କୁ ଚିହ୍ନେ ନାହିଁ ।

ସଦାନନ୍ଦ—ଆରେ ଭାଇ, ଆମ ଗ୍ରାମ ଲୋକ ହୋଇଥିଲେ ସବୁବେଳେ ଯା ଆସ କରୁଥାନ୍ତା, ଅବଶ୍ୟ ଚିହ୍ନା ପଡ଼ନ୍ତା । ନିଶ୍ଚେ କୁଆଡ଼କା ଭଣ୍ଡଟାଏ ।

ଗୋବନ୍ଦଚନ୍ଦ୍ର—ନା ରେ ସଦେଇ ଭାଇ ! ମୋ ମନଟା କମିତିକା ଘାଣ୍ଟି ହେଉଛି, ଚାଲ ଉଆସଆଡ଼୍‌ ଥରେ ବୁଲି ଆସିବା ।

ସଦାନନ୍ଦ—ସତ କଥା, ଠିକ କଥା, ପିଉସୀ ବାଧିକା ପଡ଼ିଥିଲେ ନିଶ୍ଚେ ଯିବାର ଉଚିତ । ନୋହିଲେ ମାହାଲଆଟା କିଆଁ ଯିବୁଁ ? ତୁ କଣ ମନରେ କରିଛୁ, ମୁଁ ଭୁନ ହୋଇ ବସିଛି ? ରୋଜନା ଉଆସର ଖବର ନିଏଁ । ମୁ ବେଶ ଜାଣେ, ଉଆସର ସମସ୍ତ କୁଶଳ । ପିଉସୀ ବାଧିକା ପଡ଼ିଥିଲେ, ମୁଁ କଣ ଏଯାଏଁ କଟକରେ ନିଶ୍ଚିନ୍ତ ବସିଥାନ୍ତି ? ସେ ଯେ ମୋର ସବୁ ଆଶା ଭରସା ରେ ! ପିଉସୀ ତୋଠାରୁ ମୋତେ ଅଧିକ ସେହ କରନ୍ତି, ଏ କଥା କ'ଣ ତୋତେ ଅଜଣା ? ଲୋକଟାର କଥା ମିଛ ହେଉ ପଛକେ ଥରେ ଉଆସ ଆଡ଼ ବୁଲି ଅସିବା ଉଚିତ । ଆଚ୍ଛା ତେବେ ଗୋଟାଏ କାମ କରିଯାଉ, ତୁ ଏ ବାଟେ ସମସରପୁର ଯା, ମୁଁ ଏଣେ ଉଆସକୁ ଯାଉଛି । ପିଉସୀ ତ ପିଉସୀ—ଉଆସରେ କେହି ଲୋକ ବାଧିକା ପଡ଼ିଥିବାର ଯେବେ ଦେଖେ, ତଡ଼େଦମ ଧାଉଡ଼ିଆ ପାଇକ ପଠାଇ ଦେବ । ତୁ ଡଙ୍ଗା ସଜାଇ ରଖାଇଥିବୁ । ମୋ ଭାଷା ପାଇଲାକ୍ଷଣି ନାଅରେ ବସି ପିଟାଇଦେବୁ । ଆଜି କାଲି ନଈରେ ପାଣି, ଏ କୂଳ ସେ କୂଳ ଠାଣି ସୁଅ, ଚାଲ ଭଟା—ସଖାଙ୍କୁ ନା ମେଳଦେଲେ ଦିପହର ସରିକି ଆମ ଉଆସ ମାଜଣା ଘାଟରେ ଭିଡ଼ିଯିବ ।

ଏହି ପରାମର୍ଶ କୁଅଁର ବାବୁଙ୍କ ମନକୁ ମାନିଗଲା । କବାଟ ଫେଇ ଦେଇ ଦୁଇଜଣଯାକ ବାହାରକୁ ବାହାରି ପଡ଼ିଲେ ।

ଦୁର୍ଗାଦାସ ବାବୁମାନଙ୍କୁ ଦେଖି କାନ୍ଦ ପକାଇ କହିଲା, "ଆଜ୍ଞା ! ପାଲିଙ୍କି ହାଜର, ଏଇଲାଗେ ଦହିମାଛ କରିବାକୁ ଆଜ୍ଞା ହେଉ ।"

ଗୋବନ୍ଦଚନ୍ଦ୍ର—ହେଉ ଉଆସକୁ ଯିବୁଁ, ପାଲିଙ୍କି ଏହିଠାରେ ଥାଉ । ଆମର କଲେଜରେ କିଛି କାର୍ଯ୍ୟ ଅଛି, ସାରି ଦେଇ କାଲି ଉପରଓଳି ଯିବୁଁ । ସଦେଇ ଭାଇ କାଲି ସକାଳେ ଯିବ ।

ଝଙ୍କଡ଼ର ଶ୍ରୀକରଣଗୋଷ୍ଠୀ ପିଲା ଦୁହିଙ୍କ ଉପରେ ଭାରି ଖପ୍‌ପା ହୋଇ ବସିଛନ୍ତି, କେବଳ ଜମିଦାରଘର ପିଲା ବୋଲି କିଛି କହିପାରୁ ନାହାନ୍ତି । ଦୁର୍ଗାଦାସ ଟିକିଏ ସମ୍ଭାଳି ଯାଇ କହିଲା, "ଆଜ୍ଞା ନା, ମା ମଣିମାଙ୍କ ଶ୍ରୀଚରଣ ଦର୍ଶନ କରିବାକୁ ଇଚ୍ଛା ଥିଲେ ଏହିଲାଗେ ବିଜେ ହେଉନ୍ତୁ ।"

ଗୋବନ୍ଦ ବାବୁ ଟିକିଏ ଟାଣି କରି କହିଲେ, 'ଆମେ ତ କହିଲୁଁ, ଉଆସକୁ ଯିବୁଁ, ଆଉ କେତେଥର ସେଇକଥା, ସେଇକଥା ଭଜି ହେବୁଁ ?" ଏହି ସମୟରେ ସଦାନନ୍ଦ କଣି ଆଖି ଠାରି ଦେବାରୁ ଗୋବନ୍ଦଚନ୍ଦ୍ର ଚଞ୍ଚଳ ଉଠି ଭିତରକୁ ଚାଲିଗଲେ ।

ଦୁର୍ଗାଦାସ ସବୁ କଥା ବୁଝିଗଲା । ମନ ମଧ୍ୟରେ ବିଚାରିଲା, ମା ମଣିମା କଣ ଏଯାଏଁ ଅଛନ୍ତି ? ତୁଚ୍ଛାଟାରେ ମୁଁ ଏଠାରେ ବସି ରହିଲେ କଣ ଲାଭ ହେବ ? ଏକୁଟିଆ ଝଙ୍କଡ଼ ଯିବାପାଇଁ ବାହାରିଲା । ଆପଟମାନଙ୍କୁ କହିଲା, "ପାଲିଙ୍କି ରହିଲା, ତୁମ୍ଭେମାନେ ଥାଅ—ବାବୁମାନେ କାଲି ବିଜେ ହେଲେ ତୁମ୍ଭେ ମାନେ ଧରି ବାହାରିଯିବ ।" ରଘୁ ବାଘସିଂହ ପାଇକ

କାର୍ଯ୍ୟଗହଣରେ ଆସିଥିଲା । ବାହୁଡ଼ି ଯିବାବେଳେ ବାଟରେ କହିଲା, "ଦେଖିଲେ କାର୍ଯ୍ୟୀଅବଧାନ ! ବଡ଼ ବାବୁ ସାନ ବାବୁଙ୍କୁ କେମିତି ଆଖି ଠାରୁଥାନ୍ତି ?" କାର୍ଯ୍ୟୀ କହିଲେ, "ଆରେ ସେ କଥା ଉଚ୍ଛୁଣିକା ଥାଉ । ଏତେ କଥାରେ ନଷ୍ଟ ଗୋବର୍ଦ୍ଧନ ଦାସ କିଏ, ଝଙ୍କଡ଼ରେ ସମସ୍ତେ ଜାଣିଲେଣି । ସେ ଆପଣା ମନରେ ବୁଡ଼ ବୁଡ଼ ପାଣିପିଉଛନ୍ତି । ସାନ୍ତାଣୀ ଦୟା କରି ଅରକ୍ଷିତ କାଙ୍ଗାଳୀଟାକୁ ଗୋଟାଇଆଣି ଘରେ ପୂରାଇଥିଲେ, ଗଳାକଟା ଟେରି ପୁଅ କଣ ସାଧୁ ହୋଇଯିବ ? ହେଉ ହେଉ, ଗୋବିନ୍ଦଜୀଉ ଯେବେ ସାନ୍ତାଣୀଙ୍କୁ ଚହଦୁଦାଡ଼-କରିବେ, ପଛକେ ସିନା ବୁଝାବୁଝି ।"

———

-୨୯-

## ପତ୍ରରେ ସ୍ୱାକ୍ଷର

ରାଜୀବଲୋଚନ ସମସରପୁର ଉଆସରେ ପହଞ୍ଚି ମାମୁଁ ସାନ୍ତଙ୍କ ଗୋଡ଼ତଳେ ଯିମିତି ଲଠ କରି ଦଣ୍ଡବତଟାଏ କରିଛନ୍ତି, ସାନ୍ତ ପଚାରିଲେ, "ଆରେ ରାଜୁ । କେତେବେଳେ ଅଇଲୁ ? ତାକୁ ସାଙ୍ଗରେ ଧରି ଅଇଲୁ ନାହିଁ କିଁ୍ୟା ? କଣ ଗୋଟିଏ ଗୋଳଧାନ୍ଦା ହୋଇଯିବ ପରା । ଆରେ ଉଚ୍ଛୁଣିକା ମାସକେତେ ଜଗିଜାଗି ବାଟ ଚାଲିବାକୁ ହେବ ।"

ରାଜୀବଲୋଚନ, "ଅଜ୍ଞା ସେଥିପାଇଁ କିଛି ଭାବିବେ ନାହିଁ, ମୁଁ ସେଥିପାଇଁ କଟକଣା କରି ଆସିଛି । ( ହସି ହସି କହିଲା ) ସଦେଇ ଭାଇକୁ ଟିକିଏ ହାତରେ ରଖିଲେ କୌଣସି କଥାରେ ଚିନ୍ତା କରିବାକୁ ହେବ ନାହିଁ । ଆସନ୍ତା ସୋମବାର ଅସିବାର ଦିନ ଠିକ ହୋଇ ଯାଇଛି । ମୁଁ ଯାଉଛି ଅଜ୍ଞ ପୁଣି ଥରେ ଚିଠି ଲେଖିବ ।" ସାନ୍ତ କହିଲେ, "ଆରେ ବାପା ! ସଦାନନ୍ଦକୁ ପାଣ୍ଡି କରି ବସ ନା । ସେ ଯେଉଁଭଳି ଲୋକ, ସବୁ କରି ପାରେ । ଯାହା ହେଉ ଏଇଲାଗେ ତାକୁ ମୁଠା ଭିତରେ ରଖିବା ଉଚିତ ।" ରାଜୀବଲୋଚନ ମାମୁଁ ସାନ୍ତଙ୍କଠାରୁ ମେଲାଣି ହେବା ସଲଖେ ସଲଖେ ଇନ୍ଦୁମଣି ପୁରି ଆଡ଼କୁ ଚାଲିଗଲେ । ଭାଇ ଭଉଣୀ ମଧ୍ୟରେ ଭେଟାଭେଟି ହେବାରୁ ଇନ୍ଦୁଭାଇ ସାନ୍ତଙ୍କ ଗୋଡ଼ତଳେ ଦଣ୍ଡବତଟାଏ କରି ବାଡ଼କୁ ଆଉଜି ଛିଡ଼ା ହୋଇ ରହିଲେ । ଭାଇଙ୍କୁ ଦେହ ପା କଥା, ପଢ଼ାଶୁଣା କଥା ପଚାରିଲେ । ଭାଇ ମଧ୍ୟ ଭଉଣୀଙ୍କୁ ଉତ୍ତର ଦେଇ ଦେହ ପା କୁଶଳ କଥା ପଢ଼ା ଶୁଣା କଥା ପଚାରିଲେ । ଇନ୍ଦୁଙ୍କ ସହଚରୀ ମରୁଆ ପଚାରି ବସିଲା, "ଭାଇ ସାନ୍ତ ! କଟକରେ ଆଉ ସମସ୍ତଙ୍କ ଦେହ ପା କୁଶଳ ତ ?" ମରୁଆର ପଚାରିବାର ଢଙ୍ଗ ଦେଖି ଇନ୍ଦୁ ଟିକିଏ ଖପା ହୋଇ ତାକୁ ଆଡ଼େଇ ଅନାଇଲେ । ରାଜୀବ ବାବୁ ଉତ୍ତର ଦେଲେ, "କଟକରେ ସମସ୍ତେ ଭଲ ଅଛନ୍ତି । ସଦେଇ ଭାଇ, ଗୋବିନ୍ଦ ବାବୁ ଆଉ ମୁଁ ସମସ୍ତେ ଏକ ସଙ୍ଗରେ ଥିଲୁଁ । ମାମୁଁ ସାନ୍ତଙ୍କ ଆଜ୍ଞା ଚିଠି ପାଇ ମୁଁ ଚାଲି ଆସିଲି । ଆସନ୍ତା ସୋମବାର ଗୋବିନ୍ଦଚନ୍ଦ୍ର ଏଠାକୁ ଆସିବେ ।" ଇନ୍ଦୁମଣି ରାଜୀବଲୋଚନଙ୍କ କଥା ଆରମ୍ଭ ସମୟରେ ସେଥିର ଅଭିପ୍ରାୟ ବୁଝି ପାରି ଚଞ୍ଚଳ ଘର ଭିତରକୁ ଚାଲି ଯାଇଥିଲେ । ରାଜୀବଲୋଚନ ମେଲାଣି ହେବାବେଳେ ପହଡ଼ ଘର ଦୁଆର ପାଖକୁ ଚାଲିଯାଇ କହିଲେ, "ଇନ୍ଦୁ ! ମୁଁ ତୋତେ ଗୋଟାଏ କଥା କହିବି, ହେନା କରିବୁ ଏକା ।" ଇନ୍ଦୁମଣି ଅତି କୋମଳ ସ୍ୱରରେ କହିଲେ, "କଣ ରାଜୁ ଭାଇ, ବୋଲନ୍ତୁ ।"

ରାଜୀବଲୋଚନ— ଆଚ୍ଛା ମୁଁ ସଞ୍ଜବେଳେ ଆସି ବୋଲିବି ।

ରାଜୀବଲୋଚନ ଖିଆପିଆ ଉତ୍ତାରେ ଚିଠି ଲେଖି ବସିଲେ । ସଦାନନ୍ଦକୁ ଖଣ୍ଡିଏ ଫର୍ଦ୍ଦପତ୍ର ଲେଖି ସାରି

ଗୋବନ୍ଦଚନ୍ଦ୍ରଙ୍କୁ ଅଳପରେ ଖଣ୍ଡିଏ ଚିଠି ଲେଖିଲେ । ଏହି ଚିଠିରେ କେବଳ ଆପଣା ପହଞ୍ଚିବା କଥା, ଉଆସରେ ସମସ୍ତଙ୍କ ମଙ୍ଗଳ କଥା, ଆଉ ତାଙ୍କ ଆସିବା ସକାଶେ ଉଆସ ଭିତରେ ଯେ ସମସ୍ତେ କଣ୍ଟାଶପରେ ରହିଁ ବସିଚନ୍ତି, ଏତିକି ମାଧ କଥା ଲେଖା ହେଲା । ଦୁଇ ଚିଠି ଦୁଇଟା ଲଫାଫାରେ ମୁଦ ସଦାନନ୍ଦ ନାମର ଚିଠି ଖଣ୍ଡର ବନ୍ଦ ଯୋଡ଼ା ଜାଗାରେ ଜଉ ଲଗାଇ ତାହା ଉପରେ ଆପଣାର ନାମର ମୁଦ୍ରା ଚପାଇ ଦେଲେ ।

ଚିଠି ଲେଖାଲେଖି ସରିଲା ଉତ୍ତାରେ ନିଶ୍ଚଳ ମନରେ ଗୋଟିଏ କବିତା ଖଣ୍ଡେ ଭଲ କାଗଜରେ ଉତାରି ବସିଲେ । କବିତାଟି କଟକରେ ଲେଖା ହୋଇଥିଲା । ଗୋବନ୍ଦଚନ୍ଦ୍ରଙ୍କ ଅସାକ୍ଷାତରେ ରାଜୀବ-ଲୋଚନ ସଦାନନ୍ଦ ଦୁଇଜଣ ପରାମର୍ଶ କରି ରଚନା କରିଥିଲେ ।

ସଞ୍ଜବେଳେ ରାଜୀବଲୋଚନ କବିତାଟି ଧରି ଧୀରେ ଧୀରେ ଇନ୍ଦ୍ରମଣି ପାଖକୁ ଗଲେ—ମୁରୁକି ମୁରୁକି ହସି ହସି କହିଲେ, "ଇନ୍ଦ୍ର ! ମୁଁ ତୋତେ କେବେ କିଛି ଜିନିଷ ମାଗି ନାହିଁ, ଉକ୍ତୁଣିକା ଗୋଟାଏ ମାଗୁଣି ଅଛି, ତୁ କେବେ ନା କରିବୁ ନାହିଁ ।

ଇନ୍ଦ୍ରମଣି—ଛି ! ରାଜଭାଇ ! ଏ କଉଭଳି କଥା ! ଆପଣ ହେଲେ ମୋ ବଡ଼ ଭାଇ, ଯାହା କହିବେ, ମୁଁ କଣ ଆପଣଙ୍କ କଥାରୁ ବାହାରି ଯିବି ? କଣ ବୋଲନ୍ତୁ ।

ରାଜୀବଲୋଚନ—"ଆଚ୍ଛା ଇନ୍ଦ୍ର ! ତାହି ଜାଣି ହେଲା । ଉକ୍ତୁଣିକା ମୁଁ ଯାହା କହୁଛି, ତାହା କର ।" ଏହା କହି ଖଣ୍ଡିଏ ଲେଖା କାଗଜ ବଢ଼ାଇ ଦେଲେ । ଇନ୍ଦ୍ର ଭଲକରି ମନ ଦେଇ ପଢ଼ିଗଲେ, ଆଗସରେ କିଛି କିଛି ବୁଝି ପାରି ଟିକିଏ ଲାଜ ଲାଜ ହେଲେ । ହେଲେ କିଛି ନ ବୁଝିଲା ପରି ବାହାନା କରି ପଚାରିଲେ, "ଏ କି କବିତା ରାଜ୍ନ ଭାଇ ?"

ରାଜୀବଲୋଚନ—ଏହି କବିତା ତଳେ ତୋ ନାମ ଲେଖି ଦେ ।

ଇନ୍ଦ୍ରମଣି ଏବେ ସମସ୍ତ କଥା ଭଲ କରି ବୁଝିଗଲେ । ତାହାଙ୍କ ସର୍ବାଙ୍ଗ ଥରି ଗଲା । ଛାତି ଭିତରୁ ଦମ ଦମ କରି ଚେମେନ୍ତ ମାରୁଛି । ଟାଣ ନିଶ୍ୱାସଟାଏ ପକାଇ ରାଜୀବଲୋଚନଙ୍କ ଗୋଡ଼ତଳେ କାଗଜ ଖଣ୍ଡି ଧୀରେ ଧୀରେ ଥୋଇଦେଲେ ।

ରାଜୀବଲୋଚନ କହିଲେ, "ନାହିଁ ନାହିଁ ଇନ୍ଦ୍ର ! ତୋତେ ନାମ ଲେଖି ଦେବାକୁ ହେବ ।" ଇନ୍ଦ୍ରମଣିଙ୍କ ମୁହଁରୁ ଯେମନ୍ତ କଥା ବାହାରୁ ନାହିଁ—କଷ୍ଟରେ ଧକେଇ ହେଲା ପରି କହିଲେ, "ନାହିଁ ନାହିଁ ରାଜୁ ଭାଇ, ଆପଣଙ୍କ ଗୋଡ଼ତଳେ ପଡ଼ୁଛି; ମୋତେ କ୍ଷମା କର, ମୁଁ କେଭେଁ ମିଛରେ ନାମ ଲେଖିବି ନାହିଁ ।" ତେତେ-ବେଳେ ଇନ୍ଦ୍ର ମୁହଁ ପୋତି କଥା କହୁଥିଲେ, ଆଖି ଯୋଡ଼କ ଓଢ଼ଣାରେ ଢାଙ୍କି ହୋଇଥିଲା । ନୋହିଲେ ଆଖି ଯୋଡ଼କ କପଟ ଜଳରେ ଢଳ ଢଳ କରୁଥିଲା ରାଜୀବଲୋଚନ ଦେଖି ପାରିଥାନ୍ତେ ।

ରାଜୀବଲୋଚନ—ଏଥିରେ ମିଛ କଣ ଅଛି ?

ଇନ୍ଦ୍ରମଣି—ଭାଇ ! ମୁଁ ମିଛ ସତ ଜାଣେ ନାହିଁ । ଆପଣ ଜ୍ୟେଷ୍ଠ ଭ୍ରାତା, ଧର୍ମଜ୍ଞାନ ଦେଉନ୍ତୁ । ମୁଁ କେଭେଁ ଦସ୍ତଖତ କରିପାରିବି ନାହିଁ ।

ଏତିକି କଥା କହି ଇନ୍ଦ୍ରମଣି ସୁଁ ସୁଁ କରି ପଣନ୍ତ କାନରେ ନାକ ପୋଛି ପକାଇଲେ ।

ଯେତେ ପ୍ରଚାରକ ସ୍ୱାର୍ଥରେ ଅଧାର୍ମିକ ହେଉ ପଛକେ ଧର୍ମ ନାମ ଶୁଣିଲେ ଟିକିଏ ଶଙ୍କିଯାଏ । ରାଜୀବ ମନ

ମଧ୍ୟରେ ବୁଝିଗଲେ, ତାଙ୍କର କଥା ରହିବ ନାହିଁ । ଏତେ ଯେ ଫାନ୍ଦଟାଏ ମେଲଇଛନ୍ତି, ସବୁ ବ୍ୟର୍ଥ ହୋଇଯିବ । ଗୋବନ୍ଦକୁ ଯେମ ଯିବାପାଇଁ ତାଙ୍କ ଉଆସକୁ ଲୋକ ଆସିବା କଥା ଶୁଣାଯାଉଛି । ଯଦି ସେ ଘରଠାକୁ ଯାଏ, ଝଙ୍କଡ଼ କରଣପଲ କଣ ତାକୁ ସହଜରେ ଆଉ କଟକ ଅସିବାକୁ ଦେବେ ? ନଷ୍ଟେ କଣଟାଏ ବୋଲି କଣଟାଏ ଗୋଳମାଳ ଭେଇ ବସିବେ, ତାହା ହେଲେ ତ ସର୍ବନାଶ ! ଏତେ ଆୟୋଜନ ସବୁ ଭଣ୍ଡୁର ହୋଇଯିବ । ହାୟ ! ହାୟ ! ଯାହା ଭଲ ପାଇଁ ଦିନ ନାହିଁ ରାତ ନାହିଁ ଲାଗି ପଡ଼ୁଛି, ସେ ଆପଣାର ମଙ୍ଗଳ ବୁଝିଲା ନାହିଁ, କି ଦୁଃଖର କଥା ! ଏବେ କଣ କରିବି ? ଏଟା ତ ମନା କଲାଣି, ଆଉ ମୋ କଥା ରଖିବ ନାହିଁ । ତୁନି ହୋଇ ଦଣ୍ଡେଯାଏ ଛିଡ଼ା ହେଲେ । ମନ ମଧ୍ୟରେ ଗୋଟାଏ ଉପାୟ ପାଞ୍ଚିଲେ । ସ୍ଥିର କଲେ ମାମୁ ସାନ୍ତକୁ ଥରେ ଜଣାଏଁ, ସେ ଥରେ ଏଥିରେ ହାତ ନ ଦେଲେ ସବୁ କଥା ଏକାବେଳକେ ଭଣ୍ଡୁର । ଧୀରେ ଧୀରେ ମାମୁ ସାନ୍ତଙ୍କ ଛାମୁରେ ପହଞ୍ଚିଲେ । ଦୁଇଜଣଙ୍କ ମଧ୍ୟରେ ଢେର ବେଳଯାଏ ଫୁସରଫାସର କଣ କଥାଭାଷା ହେଲା । ଶେଷରେ ସାନ୍ତେ କହିଲେ, "ଆଚ୍ଛା, ମୁଁ ଯାଇ କହୁଛି ।" ହାତୀ ଦାନ୍ତଚୂଳିଆ କଠଉ ଯୋଡ଼ାକ ଗୋଡ଼ରେ ଦେଇ ଇନ୍ଦୁମଣି ଉଆସ ପରସ୍ତରେ ବିଜେ ହେଲେ । ଦୁଆରବନ୍ଧ ପାଖରୁ "ଇନ୍ଦୁରେ ! ମା ଇନ୍ଦୁରେ ! ଆରେ ଇନ୍ଦୁ !" ଡାକ ଚାଲିଛନ୍ତି । ସେ ସ୍ନେହମୟ ଡାକ ଶୁଣି ଇନ୍ଦୁମଣି ଭୟରେ ଥରି ଗଲେଣି । ଆଉ ଦିନେ ବାପା ସାନ୍ତଙ୍କ ଡାକ ଶୁଣି ସେ ଆନନ୍ଦ ମନରେ ପାଖକୁ ଧାଇଁ ଆସନ୍ତି, ଆଜି କିଆଁ ବାପା ସାନ୍ତଙ୍କ ପାଖକୁ ଆସିବାପାଇଁ ଗୋଡ଼ ଚଳୁ ନାହିଁ । ବାପା ସାନ୍ତଙ୍କ ପ୍ରଥମ ଡାକଟା ଶୁଣିବା ମାତ୍ରେ ବୁଦ୍ଧିମତୀ ଇନ୍ଦୁ ପ୍ରସଙ୍ଗଟା ବୁଝି ଗଲେଣି । ବାପା ସାନ୍ତ ତ କେବେହେଲେ ଏପରି ସମୟରେ ଏ ପୁରକୁ ଆସନ୍ତି ନାହିଁ । ରାଜ ଘର ଏଇଲାଗେ ଉଠିଗଲା, ବାପା ସାନ୍ତ ସାଙ୍ଗେ ସାଙ୍ଗେ ବିଜେ ହେଲେ କିଆଁ ? ମରୁଆ ଚଞ୍ଚଳ ଧାଇଁ ଯାଇ ଖଣ୍ଡିଏ ସୁନ୍ଦର ଚଉକୀ ଆସନ ବାରଣ୍ଡାରେ ପାରିଦେଲା । ସାନ୍ତ କହିଲେ, "ଥାଉ ଥାଉ, ମୁଁ ବସୁନାହିଁ—ଠିଆଁ ଠିଆଁ ଟିକିଏ ବୁଲିଚାଲି ହୋଇ ଚାଲିଯିବି ।" ସାନ୍ତ ଆପଣା ଝିଅକୁ ଦେହପା କଥା, ଚଡ଼ାଚଡ଼ି କଥା, ଆହୁରି ଏଣୁତେଣୁ କେତେ କଥା ପଚାରିଗଲେ । ଇନ୍ଦୁ 'ହଁ'—'ନାହିଁ' କେବଳ ଏତିକି ଉତ୍ତର ଦେଇ ଯାଉଥାନ୍ତି; ମାତ୍ର ମନ ମଧ୍ୟରେ ବିଚାର କରୁଥାନ୍ତି, ବାପା ସାନ୍ତଙ୍କର ଏ ସବୁ କଥା କିଛି ନୁହେଁ । ତୁଚ୍ଛା ମନ ଭୁଲାଇବାପାଇଁ ଏଗୁଡ଼ାକ କହୁଛନ୍ତି—ଅସଲକଥା କଣ ଶୁଣିବା ଅପେକ୍ଷାରେ ଥାନ୍ତି । ଶେଷରେ ସାଆନ୍ତେ ଅତି କୋମଳଭାବରେ, ଅତି ସ୍ନେହରେ ମୁରୁକି ମୁରୁକି ହସି ହସି କହିଲେ, "ଆରେ ମା ଇନ୍ଦୁ ! ରାଜୁ ଯାହା କହୁଛି ଶୁଣିବୁ, ମୋ କଥାଟା ଏଡ଼ି ଦେବୁ ନାହିଁ ।" କଥାଟା ଶୁଣିବାମାତ୍ରେ ଇନ୍ଦୁ ଦେହଯାକ ଅବଶ ହୋଇଗଲାଣି, କାଠ ପିତୁଳାଟି ପରି ବାଡ଼କୁ ଆଉଜି ଛିଡ଼ା ହୋଇଛନ୍ତି । ସାଆନ୍ତେ ଏତିକିମାତ୍ର କହି ଠକ ଠକ କରି ବାହାରକୁ ବାହାରିଲେ । ଇନ୍ଦୁ ଢେରବେଳଯାଏ ଛିଡ଼ା ହୋଇଛନ୍ତି । ବାପା ସାଆନ୍ତେ ବାହାରକୁ ବାହାରି ଯିବାବେଳେ ଯେ କଠଉ ଠକ୍ ଠକ୍ ଶବ୍ଦ ହେଲା, ତାହା ତାଙ୍କ କାନଯାଏ ଯାଇ ନାହିଁ । ମରୁଆ ଡାକିବାରୁ ଅନାଇ ଦେଖିଲେ, ବାପା ସାନ୍ତେ ଚାଲି ଯାଇଛନ୍ତି । ଇନ୍ଦୁମଣି ମନ ମଧ୍ୟରେ ଭାବିଲେ, 'ବାପା ତ ଆଜ୍ଞା କଲେ ହିଁ, ଯେ ମୋ ଜୀବନସର୍ବସ୍ୱ ମସ୍ତକର ମଣି, ପରମ ଦେବତା, ତାଙ୍କୁ କଣ ମିଛ କଥା ଲେଖିବି ? ମୋ ନାମ ଦେଖି ଏହି କବିତାଟି ମୁଁ ଲେଖିଛି ବୋଲି ମୋ ପ୍ରଭୁ ଅବଶ୍ୟ ବିଶ୍ୱାସ କରିବେ—କି ବିଶ୍ୱାସଘାତକ ପଣିଆ କରିବିଟି । ଏତିକିବେଳେ ଧର୍ମଜ୍ଞାନ ଓ ପିତୃଭକ୍ତି ହୃଦୟରେ ପ୍ରବେଶ କରି ଇନ୍ଦୁକୁ ଶାସନ କରୁଛନ୍ତି—

'ଧର୍ମଜ୍ଞାନ—ଶୁଣ ଇନ୍ଦୁ, ମୁଁ ଜଗତର ମୂଳାଧାର, ଲୋକମାନଙ୍କର ରକ୍ଷାକାରୀ, ସୁଖ ସମ୍ପଦଦାତା, ଇହ

ପରକାଳର ଏକମାତ୍ର ଆଶ୍ରୟ, ମୋତେ ଛାଡ଼ିଲେ ତୋହର ଅମଙ୍ଗଳ ହେବଟି ।

ପିତୃଭକ୍ତ—ଇନ୍ଦୁ ମନ ମଧ୍ୟରେ ବଚ୍ଛିର ବୁଝ—ପିତା ପରମଦେବତା, ତୁ ବୁଦ୍ଧିମତୀ କନ୍ୟା, ଏ କଥା ଭଲ କରି ଜାଣୁ, କେବେ ତାଙ୍କ ପାଖରେ ଅମାନିଆ ହୋଇ ନାହୁଁ—ଆଜି କଣ ତାଙ୍କ ଆଜ୍ଞା ଏଡ଼ି ଦେବୁ ? ମାତା ସାନ୍ତାଣୀ ବିଯୋଗ ଦିନରୁ, ମନରେ ଭାଳି ଦେଖ, କେତେ ଯତ୍ନରେ, କେତେ ସ୍ନେହରେ ସେ ତୋତେ ପାଳନ କରି ଆସୁଛନ୍ତି । ତୁ ବାଧିକା ପଡ଼ିଲେ କିଏ ତୋ ବିଛଣା ପାଖରେ ମାଞ୍ଚିଅଟିରେ ବସି ରହିଥାନ୍ତି ? ତୋ ରକ୍ଷାପାଇଁ, ତୋ'ଭୋଗପାଇଁ ସର୍ବସ୍ୱ ? ଦେହ ରକ୍ତ ପର୍ଯ୍ୟନ୍ତ ଦେବାକୁ ଅମଙ୍ଗ ହେବେ ନାହିଁ । ମନରେ ବିଚାରି ଦେଖ, ତୋ ବିନା ତାଙ୍କର ଆଉ କେହି ସ୍ନେହପାତ୍ର ନାହିଁ । ତୋ ମଙ୍ଗଳ ସାଧନପାଇଁ ଦିନ ରାତି ଲାଗି ପଡ଼ିଛନ୍ତି । ତୁ କଣ ତାଙ୍କ ମନରେ ଦୁଃଖ ଦେବୁ ?'

ଏତିକିବେଳେ ଇନ୍ଦୁ ଟିକିଏ ଚମକି ପଡ଼ିଲେ, 'ଏଁ—କଣ ? ବାପା ସାନ୍ତ ମନରେ ଦୁଃଖ କରିବେ ? ନାହିଁ ନାହିଁ, ତାଙ୍କ ମନରେ ଦୁଃଖ ଦେବି ନାହିଁ । ସାପ ନ ମରୁ ବାଡ଼ି ନ ଭାଙ୍ଗୁ, ଏପରି ଗୋଟାଏ କଥା ଠିକ୍ କଲି । ହେଉ, କବିତା ତଳେ ମୁଁ ନାମ ଲେଖି ଦେବି । ମୋହର ଜୀବନସର୍ବସ୍ୱ ପ୍ରଭୁ ମୋ ନାମ ଦେଖି, ମୁଁ ଲେଖିଛି ବୋଲି ନିଶ୍ଚୟ ବିଶ୍ୱାସ କରିବେ । ପ୍ରଭୁ ଆସନ୍ତୁ, ମୁଁ କବିତା ଲେଖି ନାହିଁ ବୋଲି କହିବି । ଆଜିକା କଥାଗୁଡ଼ାକ ସବୁ ଫେଇ କହିବି । ଗୋଡ଼ତଳେ ପଡ଼ିବି, କ୍ଷମା ମାଗିବି, ପ୍ରଭୁ ନିଶ୍ଚେ କ୍ଷମା କରିବେ ।'

ଠିକ୍ ଏତିକିବେଳ ରାଜୀବଲୋଚନ ଦୁଆର-ବନ୍ଧ ପାରୁ ଡାକିଲେ, "ଇନ୍ଦୁ !" ଭାଇ ଯେ ଅନ୍ଧାରିଆ ଜାଗାଟାରେ ଛିଡ଼ା ହୋଇଛନ୍ତି, ଇନ୍ଦୁ ଦେଖି ନାହାନ୍ତି—ଟିକିଏ ଥରପଡ଼ି ଗଲେ । ରାଜୀବଲୋଚନ ଇନ୍ଦୁ ହାତକୁ କବିତାଲେଖା କାଗଜଖଣ୍ଡ ଓ ଗୋଟାଏ କଲମ ବଢ଼ାଇ ଦେଇ ଦୁଆତଟାଏ ତଳେ ଥୋଇ ଦେଲେ । କହିଲେ, "ଏଇ କାଳି ଏଇ କଲମରେ ନାମ ଲେଖ ।" ଇନ୍ଦୁମତୀ ଭାଇ ସାନ୍ତଙ୍କ କଥାର ମର୍ମ ବୁଝିଗଲେ, କିଛି କହିଲେ ନାହିଁ । କବିତା ପଢ଼ିଲେ ନାହିଁ । ଆଗେ ଥରେ ପଢ଼ିଥିଲେ । ଆଲୁଅ ପାଖକୁ ଯାଇ ନାମ ଲେଖି ଦେଲେ । ନାମ ଲେଖିବା-ବେଳେ ତାଙ୍କ ହାତଟା ଯେମନ୍ତ ଥରି ଯାଉଥାଏ । ନିଃଶ୍ୱାସଟାଏ ପକାଇ ଭାଇ ସାନ୍ତଙ୍କ ହାତକୁ କାଗଜ ଖଣ୍ଡ ବଢ଼ାଇ ଦେଲେ ।

— —

—୩୦—

## ଦୁର୍ଲଭଂ ଶ୍ୱଶୁରାଲୟଂ

ଇନ୍ଦୁମତୀ ହାତରୁ କାଗଜଖଣ୍ଡ ପାଇବା ମାତ୍ରକେ ରାଜୀବଲୋଚନ ବାବୁ ଆନନ୍ଦମନରେ ଚଞ୍ଚଳ ଆପଣା ପଢ଼ାଘରକୁ ଚାଲି ଆସିଲେ । କୁଅଁର ଗୋବିନ୍ଦଚନ୍ଦ୍ର ବାବୁଙ୍କ ନାମ ଗୋଟିଏ ଲଫାଫା ଉପରେ ଆଗରୁ ଲେଖିଥିଲେ, ସେହି ଲଫାଫା ମଧ୍ୟରେ ଚିଠି ପୂରାଇ ଜଉମୁଦ କରିଦେଲେ । ସଦାନନ୍ଦ ବାବୁଙ୍କ ନାମରେ ଇଂରାଜୀରେ ଖଣ୍ଡିଏ ଚିଠି ଲେଖି ବନ୍ଦ କରି ରଖିଥିଲେ । ନିଜେ ସାନ୍ତ ମଧ୍ୟ ଜୁଆଁଇ ବାବୁଙ୍କ ନାମରେ ଖଣ୍ଡିଏ ଭାଷା ଲେଖି ଦେଇଥିଲେ । ଏହି ତିନିଖଣ୍ଡ ଭାଷା ଆଉ ଗୋଟାଏ ମୋଟା କାଗଜ ବଡ଼ ଲଫାଫାରେ ପୂରାଇ ବନ୍ଦ କଲେ । ଆଜି ସକାଳୁ ସମସରପୁରଠ'ରୁ କଟକ ଦାଣ୍ଡରେ ଯୋଡ଼ିଏ ଯୋଡ଼ିଏ କରି ପାଇକ ଧାଉଁଡ଼ି ଟମା ବସିଥିଲେ । ସିଂହଦୁଆରଠାରେ ହାଜର ଥିବା ପାଇକ ଯୋଡ଼ାକ ହାତକୁ ଲଫାଫାଟା ବଢ଼ାଇ ଦେଇ ରାଜୀବ-

ଲୋଚନ ବାବୁ କହିଲେ, "ଦେଖ, ସାବଧାନ ! ମାମୁଁ ସାନ୍ତଙ୍କ ଆକଟ ଆଜ୍ଞା, ପାଇକମାନେ ଧାଉଁଡ଼ରେ ଯାଇ ରାତି ନ ପାହୁଣୁ କଟକ ସେଣ୍ଟବଜାର ବସାଘରେ କୁଆଁ ର ସାନ୍ତଙ୍କ ହାତରେ ଏହି ଖରା ଦେବ—ଏହି କାର୍ଯ୍ୟରେ ଟିକିଏ ମାତ୍ର ହେଳା ହେଲେ ସବୁ ପାଇକ ଦଣ୍ଡରେ ପଡ଼ିବେ ଜାଣିବ ।"

—୩.୧—

ବଡ଼ସକାଳେ ସୂର୍ଯ୍ୟ ଉଇଁ ନାହାନ୍ତି । ସଦାନନ୍ଦ ବାବୁ ଓ କୁଅଁ ର ବାବୁ ବସାଘର ସଦର ବାରଣ୍ଡାରେ ବସି ଦାନ୍ତ ଘଷିବାର ଆୟୋଜନ କରୁ ଅଛନ୍ତି । ଯୋଡ଼ାଏ ପାଇକ ଧାଇଁ ଧାଇଁ ଆସୁଥିବାର ଦୁଇ ବାବୁଯାକ ଦୂରରୁ ଏକାବେଳକେ ଦେଖି ପକାଇଲେ । ସଦାନନ୍ଦ ବାବୁ କଥା ବୁଝିଗଲେ । କୁଅଁ ର ବାବୁ କହିଲେ, "ଦେଖ୍ ସଦେଇ ଭାଇ ! ପାଇକ ଯୋଡ଼ାଏ କେମନ୍ତ ଧାଇଁଛନ୍ତି । ଏମାନେ ସମସରପୁରିଆ, ଆମ୍ଭମାନଙ୍କ ପାଖକୁ ଆସୁଛନ୍ତି ।" ସଦାନନ୍ଦ ବାବୁ ନ ଜାଣିଲା ପରି କହିଲେ, "କେଜାଣି ସମସରପୁରରୁ ଆଇଲେ, କି ଉଆସରୁ ଆଇଲେ, ପାଖକୁ ଆଇଲେ ଜଣାଯିବ ।"

କୁଅଁ ରବାବୁ— ନାହିଁ ନାହିଁ, ଏମାନେ ସମସରପୁରିଆ ପାଇକ ।

ପାଇକ ଯୋଡ଼ାକ ପାଖରେ ପହଞ୍ଚି ଦୁଇ ବାବୁଙ୍କୁ ମଜୁରା କଲେ । ଧାଇଁ ଧାଇଁ ଆସିବାରୁ ସେମାନେ ଧକେଇ ଯାଇଛନ୍ତି । ବାବୁମାନଙ୍କୁ ଦେଖାଇବାପାଇଁ ଅଧିକ ଧକାଉଥାନ୍ତି । ଗୋଟାଏ ପାଇକ ଅଣ୍ଟା ଭିଡ଼ା ପାଗୁଡ଼ିରୁ ପୁଳାଟାଏ କାଗଜ କାଢ଼ି ବଡ଼ବାବୁଙ୍କ ହାତକୁ ବଢ଼ାଇଦେଲା । ବାବୁ ଉପର କାଗଜଟା ଚିରମକାଇ ସେଥି ମଧ୍ୟରୁ ତିନିଖଣ୍ଡ ଚିଠି ପାଇଲେ । ସେଥି ମଧ୍ୟରୁ ଆପଣା ନାମର ଚିଠି ଖଣ୍ଡ ରଖି ଆଉ ଦୁଇଖଣ୍ଡ ଚିଠି କୁଅଁ ର ବାବୁଙ୍କ ହାତକୁ ବଢ଼ାଇଦେଲେ । କୁଅଁ ର ବାବୁ ଖଣ୍ଡେ ଚିଠି ପଢ଼ିସାରି ଆଉ ଖଣ୍ଡିଏ ଥରକୁ ଥର ପଢ଼ୁଥାନ୍ତି । ଏ ଚିଠିଖଣ୍ଡ ଇନ୍ଦୁମତୀର, ସେଥିରେ ଏହି କବିତାଟି ଲେଖା ଅଛି—

'ବିନୋଦବିହାରୀ କୁଳ ଦେବତା,
ତାହାଙ୍କ ଚରଣେ ନୁଆଇଁ ମଥା,
କରଯୋଡ଼ ଦାସୀ କରେ ବିନୟ,
ଯେନ ଦଣ୍ଡବତ ହେ ଦୟାମୟ !
ଜଣାଣ କରୁଛି ଚରଣ ତଳେ,
ଉଆସରେ ସର୍ବେ ଅଛୁ କୁଶଳେ,
ପ୍ରାର୍ଥନା କରୁଛି ଯୋଡ଼ଣ କର,
ଶୁଣି ଆଜ୍ଞା ହେଉ ହେ ପ୍ରାଣେଶ୍ୱର !
ପ୍ରଭୁଙ୍କ ଚରଣ ଦର୍ଶନ ପାଇଁ
ଦିନ ରାତି ଅଛି ବାଟକୁ ଚାହିଁ ।
କଲେଜ ବନ୍ଦରେ ଦେବେ ଦର୍ଶନ,
ଆଜ୍ଞା କରିଥିଲେ ହେ ପ୍ରାଣଧନ !
ଗଣୁଅଛି ଦିନ ଦିବା ଶର୍ବରୀ,
ଦିନକୁ ମଣୁଛି ବରଷ ପରି ।
ଅଧିକ କରିବି ଜଣାଣ କିସ,
ଅନ୍ନ ଜଳ ମୋତେ ଲାଗୁଛି ବିଷ ।
ବେଳେ ଯେବେ କୃପା କରିବେ ନାହିଁ;
ବଞ୍ଚି ରହିବି ମୁଁ କାହାକୁ ଚାହିଁ ?
ନ କର ନିରାଶ ହେ ପ୍ରାଣେଶ୍ୱର,
ଆସନ୍ତୁ ଚଞ୍ଚଳ ଯୋଡ଼ୁଛି କର ।
ଅବୋଧ ବାଳିକା ନ ଜାଣେ କିଛି,
ପ୍ରଭୁଙ୍କ ଚରଣ ଧ୍ୟାନ କରୁଛି ।
କେବେ ମୋ ଅଦୃଷ୍ଟ ହେବ ପ୍ରସନ୍ନ,
ଭକ୍ତିରେ ସେବିବି ପ୍ରଭୁ ଚରଣ ।
କି କରିବି ଆଉ ଚରଣେ ଜଣା,
ଦର୍ଶନ ଦେଉନ୍ତୁ ଏହି ପ୍ରାର୍ଥନା ।

କଲ୍ୟାଣ କରନ୍ତୁ ଏଠାକୁ ଆସି,
ଇନ୍ଦୁମଣି ତୁମ୍ଭ ଚରଣଦାସୀ ।’

ଚରଣଦାସୀ
ଇନ୍ଦୁମଣି

ସଦାନନ୍ଦ ବାବୁ ଆପଣା ଚିଠି ଖଣ୍ଡ ପଢ଼ିବାର କଡ଼େଇ କଡ଼େଇ ଗୋବିନ୍ଦଚନ୍ଦ୍ର ବାବୁଙ୍କ ଆଡ଼କୁ ଅନାଉଥାନ୍ତି । ହେଲେ, ଚିଠିଖଣ୍ଡ ଆଖିଆଗରେ ଏପରି ମେଲାଇ ଧରି ଥାନ୍ତି, ଯେମନ୍ତ ଗୋବିନ୍ଦଚନ୍ଦ୍ର ବୁଝିବେ, ସେ ଆପଣା ଚିଠିଖଣ୍ଡ ପଢ଼ିବାରେ ଲାଗିଛନ୍ତି, ତାଙ୍କ ଆଡ଼କୁ ଅନାଇ ନାହାନ୍ତି । ଗୋବିନ୍ଦଚନ୍ଦ୍ର ବାବୁ ମୁରୁକି ମୁରୁକି ହସି ହସି ଚିଠି ପଢ଼ୁଥିବାର ଦେଖି ସେ ମନ ମଧ୍ୟରେ ବଡ଼ ଖୁସି ହେଲେ । ମନ ମଧ୍ୟରେ ବିଚାର କଲେ, ତେବେ ତ କାମ ଫତେ ।

ଗୋବିନ୍ଦ ବାବୁ ପଢ଼ାପଢ଼ି କରି ସାରି ଚିଠି ଦୁଇଖଣ୍ଡ ମୋଡ଼ି ତେଣିକି ହାତରେ ଧରିବାରୁ ସଦାନନ୍ଦ ବାବୁ ପଚାରିଲେ, "କି ରେ ଗୋବିନ୍ଦ ! ଚିଠିଖଣ୍ଡ କିଏ ଲେଖିଛି ? ରାଜୁଭାଇ ଲେଖିଛନ୍ତି ପରା ? ଯୋଡ଼ାଏ ଚିଠି ଦେଖୁଛି ଯେ ?" ଗୋବିନ୍ଦଚନ୍ଦ୍ର ବାବୁ କହିଲେ, "ନାହିଁ ନାହିଁ, ଖଣ୍ଡେ ଶ୍ୱଶୁର ସାନ୍ତ ଲେଖିଛନ୍ତି, ଆଉ ଖଣ୍ଡେ—" ଏତିକି କହି ହସ ହସ ମୁହଁ କରି ମୁଣ୍ଡ ତଳକୁ ପୋତିଲେ ।

ସଦାନନ୍ଦ ବାବୁ—ସା’ନ୍ତ କଣ ଲେଖିଛନ୍ତି ?

ଗୋବିନ୍ଦଚନ୍ଦ୍ର—ମୋତେ ସମସରପୁରକୁ ଯିବା ସକାଶେ ଲେଖିଛନ୍ତି ।

ସଦାନନ୍ଦ—ମୋତେ ବି ରାଜୁଭାଇ ସେଇ କଥା ଲେଖିଛନ୍ତି । ଜଣାଯାଏ ଭାରି ଚୋଟାଏ କଣ ଦରକାରୀ କାମ ଅଛି । ସେଇ ଲାଗି ମୁଁ ବାରବାର କହି ଆସୁଛି ପରା, ତୋର ଯିବାର ଖୁବ୍ ଦରକାର । କଣ କହୁଛୁ ? ଏଥିରେ ତ ମୁଁ କିଛି ହରକତ ଦେଖୁ ନାହିଁ । ସେଠି ଯେବେ ତୋର ରହିବାକୁ ଇଚ୍ଛା ନ ହୁଏ, ସେମାନଙ୍କ ସାଙ୍ଗରେ ଯୋଡ଼ାଏ କଥାଭାଷା ହୋଇ ନାଆ ମେଲିଦେବୁ । ସା’ନ୍ତଙ୍କ କଟକର ତୋଠରେ ସବୁବେଳେ ତ ଚାରି ଛଖଣ୍ଡ ନାଆ ଖଞ୍ଜା ହୋଇଥାଏ । ନାଉରିମାନେ ବି କାଠ ଧରି ହାଜର । ମୁଁ ସକାଳେ ଉଆସରେ ପହଞ୍ଚିବି, ତୁ ଉପରଓଳି ବେଳ ଟେର ଚଉଦ ଦଣ୍ଡ ସରକ ପହଞ୍ଚିଯିବୁ । ପହରେ ପାଞ୍ଚ ଦଣ୍ଡ ବେଳ ଫେରିପାର ।

ଗୋବିନ୍ଦଚନ୍ଦ୍ର—ହେଉ ତେବେ ତାହି ହେଲା ।
ସଦାନନ୍ଦ ମନ ମଧ୍ୟରେ ଭାରି ଖୁସି ହୋଇଗଲେ ।

— —

—୩୨—

"ରଜନୀତିମିରାବଗୁଣ୍ଠିତେ ପୁରମାର୍ଗେ ଘନଶବ୍ଦବିକ୍ଲବାଂ
ଅସତି ତ୍ୱୟି କାମିନାଂ ପ୍ରିୟାଂ ତ୍ୱଦୃତେ
ପ୍ରାପୟିତୁଂ କ ଈଶ୍ୱରଃ ।"
—କୁମାର ।

ସଦାନନ୍ଦ ବାବୁଙ୍କର ରାତିରେ ନିଦ ନାହିଁ—ଯାତ୍ରାର ସଜଲ କରୁଛନ୍ତି । ଶନିବାର ସକାଳେ ସୂର୍ଯ୍ୟ ଉଏଁ ଉଏଁ । କୁଅଁର ବାବୁଙ୍କୁ ପାଲିଙ୍କିରେ ବସାଇ ଦେଲେ । କୁଅଁର ବାବୁଙ୍କ ସିଧାରିବା ବେଳେ ବୁଢ଼ା ସୁଆର ନିଧି ପାଣିଗ୍ରାହୀ ଟିପେ ଟିପେ ନାସ ସୁଙ୍ଘି ସୁଙ୍ଘି ପାଖରେ ଛିଡ଼ା ହୋଇ ଦେଖୁଥାଏ । ପାଣିଗ୍ରାହୀ ତୁଚ୍ଛା ସୁଆରଟାଏ ନୁହେ—ଟିକିଏ ପଢ଼ାଶୁଣା ଅଛି । ପିଲାଟି କାଳରୁ ଉଆସରେ ରହି ମୁଣ୍ଡ କଳାବାଳ ଧଳା କଲଣି । ସା’ନ୍ତଙ୍କ ସାଙ୍ଗରେ ରହିବାରୁ କିଛି କିଛି ମାମଲତ କଥା ବୁଝେ । ଉଆସରେ ସାନ୍ତ ସାନ୍ତାଣୀ ଦୁହେଁ ଯାକ ତାକୁ ବଡ଼ ବିଶ୍ୱାସ କରନ୍ତି । ପିଲା ଯୋଡ଼ିକର ଖିଆ ପିଆ କଥା ବୁଝିବା ସକାଶେ ସାଙ୍ଗରେ

ଦେଇଛନ୍ତି । ସାଆନ୍ତଙ୍କ ଉପରରେ ପିଲା ଦୁହେଁ ତାଙ୍କୁ ଟିକିଏ ଶଙ୍କି ଥାନ୍ତି । କୁଅଁର ବାବୁଙ୍କ ସମ୍ବଲପୁର ଯାତ୍ରା କଥାରେ କାଳେ କିଛି ବାଧା ଦେବ, ସେଥିଲାଗି ସଦାନନ୍ଦ ବାବୁ ପାଣିଗ୍ରାହୀଙ୍କ ଅଗୋଚରରେ ସମସ୍ତ ଆୟୋଜନ କରୁଥିଲେ ।

ପାଣିଗ୍ରାହୀଏ ନଦୀରୁ ଉଠି ଆସି ପାଖରେ ଛିଡ଼ା ହୋଇ ସବୁ ଦେଖୁଥାନ୍ତି । ସବୁ କଥା ବୁଝିଗଲେ । ସାଧା ସରପଟ ମରହଟି ଲୋକ—ଆଉ ସମ୍ଭାଳି ହୋଇ ପାରିଲେ ନାହିଁ । ଆଗ ପଛକୁ ନ ଅନାଇଁ କହି ପକାଇଲେ, "ଉଦୟାସ୍ତେ ଶନିର୍ଘାତ । ଉତ୍ତରିକା ପୂର୍ବ ବାରବେଳା, ଉତ୍ତରିଣୀ ଅଶ୍ଳେଷା ମଘା ସନ୍ଧିବେଳ—ଆଉ 'ପ୍ରତିପ ନବମୀ ତ୍ୟଜେ—' ଆଜି ନବମୀ ତିଥି—ସମ୍ମୁଖ ଯୋଗିନୀ, ଯାତ୍ରା ଏକାବେଳକେ ନିଷେଧ ।" ସଦାନନ୍ଦ ବାବୁ ଠୋ—ଠୋ ହସିପକାଇ ଇଂରାଜୀରେ କହି ପକାଇଲେ, "A bloody fool !" କୁଅଁର ବାବୁ ବି ଟିକିଏ ହସି ପକାଇ ପାଲିଙ୍କିରେ ବସିଗଲେ । ହୁଁ - ହାଁ କହି ଆପଟମାନେ ପାଲିଙ୍କି ଘେନି ଚାଲିଚନ୍ତି । ସଦାନନ୍ଦ ବାବୁ ଡାକ ଦେଲେ, "ଏ ଆପଟେ ! ବେଳ ନବୁଡ଼ୁଣୁ ଉଆସରେ ପହଞ୍ଚାଇ-ଦେଲେ ବକସିସ୍ ପାଇବ ।" ପାଲିଙ୍କି ଉଠିବାବେଳେ କୁଅଁର ବାବୁ ପଚାରିଲେ, 'ଏ ସଦେଇ ଭାଇ ! ତୁ କେତେବେଳେ ଯିବୁ ?"

ସଦାନନ୍ଦ —"ଏଇ ମୁଁ ବାହାରି ବସିଛି ପରା ।"

ସଇତା ତାହାର ଆପଣା ଲୁଗାପଟା ବିଖଣ୍ଡ ଅଣ୍ଟାରେ ଭିଡ଼ ଦେଇ ଦେହପୋଛା ଖଣ୍ଡ ମୁଣ୍ଡରେ ଗୁଡ଼ାଇ ପାଲିଙ୍କି ପିଛୁ ଧରି ଧାଇଁଛି । ତାକୁ କେହି କିଛି ବୋଲିବାକୁ ନାହିଁ । ହେଲେ, କଥାଟା ତା ମନକୁ ମାନୁ ନାହିଁ । ଭଣ୍ଡାରି ବାପୁଡ଼ା କଣ କରିବ, ମୁହଁଟା ଶୁଖାଇ ଧାଇଁଛି । ମନରେ ବିଚାରିଲା, 'ସମ୍ବଲ-ପୁର ଉଆସରେ ପହଞ୍ଚିବାକୁ ତ ରାତି ହୋଇଯିବ—ବାଟରେ ଅବଶ୍ୟ ଖିଆପିଆର ସଜଳ ହୋଇଥିବ ।' ହେଲେ କଣ, ଭଣ୍ଡାରି ପିଲାଟା ସବୁରକମ ବୁଦ୍ଧି ସୁଝି ପାରେ । କଟକରୁ ବାହାରିବାବେଳେ ମନରେ କଲା, 'ଆରେ କୋଉଣେ ଯିବାକୁ ତ ପୋଷେ ବାନ୍ଧିବୁ ।' ହେଲେ ଆପଣା ପକାଶେ କିଛି ଭାବିଲା ନାହିଁ । ସାଆନ୍ତଙ୍କ ପାଇଁ ଗୁଡ଼ିଆ ଦୋକାନରୁ କିଛି ପୁସ୍ତ କଚୁରୀ ସନ୍ଦେଶ ମିଶାମିଶି କରି ଆଠଣାର, ଅଣାକର ପାନ ଗୁଆ ବାନ୍ଧିଲା ।

ବେଳ ଦୁ' ଦଣ୍ଡ ସରିକି ପାଲିଙ୍କି ଗୋବିନ୍ଦପୁର ତୋଟାରେ ହାଜର । ଆପଟମାନେ ପାଲିଙ୍କିଟା ତୋଟା ମଧ୍ୟରେ ଥୋଇ ଦେଇ ଧକ ମାରିବାପାଇଁ ଗଛ ମୂଳରେ ଯାଇ ବସିଲେ । ଥୋକେ ଛିଡ଼ା ହୋଇ ଟହଲି ଟହଲି ଅଣ୍ଟାରୁ ଦେହପୋଛାଟା ବାହାର କରି ହାଇ ହେଉଥାନ୍ତି । ସଇତା ଅନାଇ ଦେଖିଲା, କେହି କୁଆଡ଼େ ନାହିଁ । ଛୁଛା ଗୁଡ଼ାଏ ଗୋରୁମଣା ଟୋକା—ଗାଁଆରୁ ଗୁଡ଼ାଏ ପିଲା ଧରି ଆସି କିଛି ଦୂରରେ ଛିଡ଼ା ହୋଇ ପାଲିଙ୍କି ଦେଖୁଛନ୍ତି । ବିଶ୍ୱାଦନ ଯିବାବେଳେ ଦେଖିଥିଲା, ଉଆସରୁ ଗୁରି.ପାଞ୍ଚ ଜଣ ସୁଆର ଆସି ରନ୍ଧାବଢ଼ା ସଜଳ କରି ରଖିଥିଲେ ।• ଉଆସରୁ ଥୋକେ କରଣ ପାଇକ ମକଦ୍ଦମ ବେଠିଆ ଗଉଡ଼ ଭଣ୍ଡାରି ହାତ ବାନ୍ଧି ଛିଡ଼ା ହୋଇଥିଲେ । ଆଜି କଣ ନା ଗୋଟାଏ ଲୋକର ମୁହଁ ଦେଖିବାକୁ ନାହିଁ ! କୁଅଁର ସାନ୍ତ ମଧ୍ୟ କାହାରିକୁ ନ ଦେଖି କାଠ ମୂର୍ତ୍ତିଟି ପରି କାବା ହୋଇ ଗଛଟି ମୂଳରେ ଛିଡ଼ା ହୋଇଛନ୍ତି । ତେତେବେଳେ ତାଙ୍କର ହୋସ ବସିଲା, 'ଉଆସକୁ ତ ଖବର ଦିଆଯାଇ ନାହିଁ, କିଏ କାହିଁକି ଆସିବ ?' ସାଆନ୍ତ ସଇତା ମୁହଁକୁ ଅନାଇ କହିଲେ, "ହୋଇ ରେ, ବେଳ ତ ହୋଇଗଲାଣି, ଖିଆ ପିଆ ସଜଳ କଣ ହେବ ?" ସଇତା କହିଲା, "ଆଜ୍ଞା, ମୁଁ ବି ସେହି କଥାଟା ମନରେ ଭାବୁଛି, ଠା ସଜଳ କଣ ହେବ ?" ଖପାଟାଏ ହୋଇ ମନ ମଧ୍ୟରେ ବିଚାରିଲା, 'ସଦେଇ ଭାଇ ତ ସବୁ ସଜଳ କରି

ଦଅନ୍ତୁ—ଖାଲି ଖିଆ ପିଆ କଥାଟା ପାସୋର ପକାନ୍ତୁ ପଛ ?' ସାନ୍ତଙ୍କୁ ଅନାଇ କହିଲା, "ଆଜ୍ଞା ଦେହପାଣି ବଡ଼, ବୁଝାଯିବ ।" ସାନ୍ତ ଆଉ କିଛି କହିଲେ ନାହିଁ - ସେ ଜାଣନ୍ତି ସଇତାଟା ବୁଦ୍ଧିଆ, କୁଆଡ଼ୁ ହେଲେ କିଛି ସଜିଲ କରି ଆଣିବ । ସଇତା ସାନ୍ତଙ୍କ ଯୋଗୁ ପଖାଳକରିଆ ବାହାର କଲା । କୁଅଁର ସାନ୍ତ କହିଲେ, "ହୋଇ ରେ, ଗାଧୋଇବୁଁ, ମାଲପା ଟୋପାଏ ସଜିଲ ହୋଇ ପାରିବ ନାହିଁ ? ନାହିଁ ରେ ନାହିଁ, ଏଠି ମାଲପା କାହୁଁ ପାଇବୁ ? ଆଜ ନୁଖିରା ଶୁଖୁରା ହେଉ ।"

ତୋଟା ତଳେ ମାଚୁଆ ନଈ । ସାନ୍ତେ ଦେହପାଣି ବଢ଼ାଇ ଅଇଲେ । ସଇତା ଗୋଟାଏ ରେକାବିରେ ଜଳଖିଆଗୁଡ଼ିକ ସଜିଲ କରିଦେଇ ଅବଖୁରାରେ ଜଳ ଥୋଇ ଦେଲା । ସାଆନ୍ତେ ତା ମୁହଁକୁ ଘଣ୍ଟେଯାଏ ଅନାଇ ରହି କହିଲେ, "ଆରେ ଏଗୁଡ଼ାକ କାହୁଁ ପାଇଲୁ ରେ ? ମତେ ତ ସବୁଗୁଡ଼ିକ ଡାଳି ଦେଲୁ, ତୋର କାହିଁ ରେ ?"

ସଇତା—"ଠା ବଢ଼ୁ, ମୋ କଥା ସଜିଲ କରି ନେବି ।" ଆପଟମାନେ ନଈରୁ ବୁଡ଼ପଡ଼ ଆସି ଗେଷାଇବାସ ପାଇଁ ଗୁନିଆ ଲଗାଇଛନ୍ତି । ସଇତା ଭଲ କରି ଜାଣେ, ଉଅଣ ନ ହେଉ ପଛକେ, ଆପଟମାନେ ଜଣକା ସେରେ ଗୁଡ଼ଳର ଅନ୍ନ ପେଟରେ ନ ପକାଇଲେ ସବାରି କାନ୍ଧକୁ ଟେକିବେ ନାହିଁ । ତୋଟା ପାଖରୁ ଗୋବନ୍ଦପୁର ଗାଁ ଅଧ ମାଇଲେ ବାଟ ସଇତା ଯୋଡ଼ାଏ ଆପଟଙ୍କୁ ଧରି ଧାଇଁଲା । ହାଣ୍ଡି, କାଠ, ରଙ୍ଗା ରଙ୍ଗା ମୋଟା ଅଚାଣ୍ଡିଆ ଗୃଜଳ, ଦୁଇସେର ଭଳ ଗୁେପାଳିଆ ଖିରି ଜାଇ କିଣି ଦେଲା । ଆପଣାପାଇଁ କିଛି ଚୂଡ଼ା, ପଇସାକର ଗୁଡ଼ କିଣିଲା ।

ଗୋବନ୍ଦଚନ୍ଦ୍ର ବାବୁ ଆପଟମାନଙ୍କୁ ଗୁନିଆଁ କରୁଛନ୍ତି, ବିନୋଦବିହାରୀ ଅଲକ୍ଷୀ ଆଗରୁ ଉଆସରେ ପହଞ୍ଚିବାକୁ ମନ । ଯେତେ ତନଘନ କଲେ ବି ଆପଟମାନଙ୍କ ଖିଆପିଆ କାମ ଛୁଡ଼ିବାକୁ ତିନି ଘଣ୍ଟାରୁ ଊଣା ନଠ ନୁହେ । ଅନୁମାନ, ବାରଟା ଉପରେ ଯୋଡ଼ାଏ ବେଳେ ଆପଟମାନେ ସବାରି କାନ୍ଧ ଦେଲେ । ସାନ୍ତଙ୍କର ଥରକୁ ଥର ଆଜ୍ଞା, ପୁଣି ଖଜାଖିଆ ପାଇବାର ଆଶା—ପାଲିଙ୍କି ଛଡ଼ବଡ଼ ଧାଇଁଛି । ସୁ ରୁସୁରିଆ ଘାଟଠାରେ ପହଞ୍ଚିବାକୁ ସାତ ଘଡ଼ିଏ ଘାଟନାଉରୀ ବନ୍ଧିଆ ବେହେରା ଧାଇଁ ଆସି ଭୂଇଁରେ ମୁଣ୍ଡ ଛୁଆଇଁ ସାନ୍ତଙ୍କୁ ଦଣ୍ଡବତଟାଏ କଲା—ହାତ ଯୋଡ଼ି କହିଲା, "ଆଜ୍ଞା ! ସବାରି ଏଇଲଗେ ପାରି ହୋଇପାରିବ ନାହିଁ, ଆଜ ହାଟବାର ନୁହେ, ପଝାର ଭିଡ଼ ନ ଥିଲା, ଗାଁ ପଧାନ ମହ ପଇଡ଼ାଏ ; ବଡ଼ ନାଆଖଣ୍ଡ ବେଠିରେ ଘେନି ଯାଇଛନ୍ତି । ଦେଖି ଆଜ୍ଞା ହେଉ, ନଈଟା ଢ଼ୁଲିଥିଲା ଦି କୂଳ ଖାଉଛି । ସାନ କାଠୁଆ ଖଣ୍ଡକରେ ତିନିଜଣରୁ ବେଶି ଲୋକ ପାରି କରିବାକୁ ମୋ ବହପ ଖଟୁ ନାହିଁ । ସବାରି ତ ସବାରି ।"

ସାଆନ୍ତ ଆଜ୍ଞା କଲେ କଣ କହୁଚୁ ରେ ? ତେବେ ?

ନାଉରୀ—ଆଜ୍ଞା ବଡ଼ ଡଙ୍ଗା ଅସିବ, ଦୁଇ ଡଙ୍ଗା ଯୋଡ଼ା ଗଲେ ତେବେ ଯାଇ ସବାରି ପାରି ହେବ ।

ସାଆନ୍ତ—ଅଚ୍ଛା ଯୋଡ଼ାଏ ଟଙ୍କା ଧର, ଦୁଇଜଣ ଲୋକ ଦଉଡ଼ାଇ ଦେ—ବଡ଼ ଡଙ୍ଗାଖଣ୍ଡ ଧରି ଚଞ୍ଚଳ ଆସନ୍ତୁ ।

ନାଉରୀ—ଆଜ୍ଞା ବଲପଡ଼ା ଗାଁରେ ଲୋକ ପହଞ୍ଚି-ବାକୁ ଯାହା ନଠ, ଡଲମୁହାଣି ନାଆଖଣ୍ଡ ଘଣ୍ଟାକ ମଧ୍ୟରେ ଉଢ଼ି ଆସିବ ।

ଅଖଞ୍ଜ ବେଳେ ସବୁ ଅଖଞ୍ଜ । ଆଜ ଦିନଟାଯାକ କାଢ଼ିଁଲିଆ ପାଗ । ଦିନବେଳେ ଦୁଇ ତିନି ଥର ଫିସିର ଫିସିର ପାଣି ବରଷି ଯାଇଥିଲା । ସଞ୍ଜବେଳ

ମେଘଟା ଟିକିଏ ବେଶି ଅନ୍ଧାରିଆ ହୋଇ ଆସୁଛି । ଆକାଶରେ ଥରକୁ ଥର ବିଜୁଳି ଖେଳି ଯାଉଛି । ସହଜେ ଅନ୍ଧାର ପକ୍ଷ, ମେଘ ଢାଙ୍କିବାରୁ ପାଞ୍ଚହାତ ଦୂରର ମଣିଷ ଦୃଶ୍ୟ ପଡ଼ୁ ନାହାନ୍ତି । ଥୋକେ ଆପଟ ଓଦା ମାଟିରେ ପଡ଼ି ଝଟଦେଇ ଗଲେଣି । ସାଆନ୍ତଙ୍କ ମନ ବେଳକୁ ବେଳ ଅସ୍ଥିର, ସବାରିଟାରୁ ଥରକୁ ଥର ଭିତର ବାହାର ହେଉଛନ୍ତି । କେତେବେଳଯାଏ ଏହିପରି ହେବାରୁ ମନ ଭାରି ଦିକ୍‌ଦାର ହୋଇଗଲାଣି । ଭାରି ଆନନ୍ଦରେ, କେତେ ଉତ୍ସାହରେ କଟକରୁ ବାହାରି ପଡ଼ିଥିଲେ । ବାଟରେ ପାଲିଙ୍କି ଭିତରେ ବସି ବସି କେତେ କଥା ପାଞ୍ଚୁଥିଲେ । କେତେ ହସି ଖୁସି କଥା—କେତେ କବିତା ପଢ଼ାପଢ଼ି କଥା ହେବ । ଦିନବେଳଟିରେ ଖିଆପିଆଟା ତ ସେହିପରି ହୋଇଥିଲା—ଭାରି ଭୋକ ଲାଗିଲାଣି । କହିଲେ, "ଆରେ ନାଉରି, ପଦାଟାରେ କେତେବେଳ ଯାଏ ବସିବୁଁ ? ସଇତାକୁ ଆଉ ମୋତେ ଦୁଇ ଜଣଙ୍କୁ ପାରି କରି ଦେ, ଆର କୂଳ ତୁଠ ବଡ଼ ବରଗଛ ମୂଳରେ ବସିବୁଁ ।" ପାରି କରି ଦେବାକୁ ନାଉରିର ଇଚ୍ଛା ନ ଥିଲା, ମନ ମଧ୍ୟରେ ଭାବୁଥିଲା, ମେଘଟା ତ ଘୋଟି ଆସୁଛି, ଯେବେ ବରଷା ହେବ, ସାଆନ୍ତ ତ ତିନ୍ତିବେ । ପାଲିଙ୍କି ଏକୂଳରେ ରହିଲା, ପଦାରେ ବସି ତିନ୍ତିବେ ସିନା । ହେଲେ, ନା ବୋଲିବାକୁ ଅଯୁତ୍ତ ନାହିଁ ।' ସାଆନ୍ତ, ବାରିକ ଦୁଇଜଣଙ୍କୁ ପାରି କରିଦେଲା । ଦୁହେଁଯାକ ଯାଇ ବରଗଛ ତଳେ ଗୋଟାଏ ମୋଟା ଚେର ଉପରେ ବସିଲେ ।

କୁଅଁର ବାବୁ ସ୍ଥିର ହୋଇ ବସି ପାରୁ ନାହାନ୍ତି, ଥରକୁ ଥର ଉଠବସ ହେଉଛନ୍ତି । ମନ ବେଳକୁ ବେଳ ଅସ୍ଥିର, ଭୋକରେ ବି ଅନାପୂତ୍ତ ହୋଇ ପଡ଼ିଲେଣି । ଘୋର ଅନ୍ଧକାରରେ ବିଜୁଳିର ଆଲୁଅ, ସାଆନ୍ତଙ୍କ ମନକଷ୍ଟ ଭିତରେ ବି ଇନ୍ଦୁମତୀର ମୁଖଚ୍ଛବି ମନରେ ପଡ଼ୁଛି, ବେଳକୁ ବେଳ ଅସ୍ଥିର ହୋଇ ପଡ଼ିଲେଣି । ଥରକୁ ଥର ଉଆସ ଆଡ଼କୁ ଅନାଉଛନ୍ତି ।

ମାଚୁଆ ନଈଟା ସଳଖେ ଉତ୍ତର ଦିଗକୁ ଯାଇ ସାଆନ୍ତଙ୍କ ଉଆସ ପାଚିରି କାନ୍ଥ ଝପି ପୂର୍ବ ଦିଗକୁ ବୁଲି ଯାଇଛି । ଉଆସ ମାଜଣା ତୁଠଟା ପାଚିରି ଦୁଆରବନ୍ଧ ତଳେ । ନଈ ପୁଣି ସାପବୁଲା ପରି ଅଙ୍କବାଙ୍କ ହୋଇ ପାଞ୍ଚ କୋଶ ତଳେ ଝଙ୍କଡ଼ ସାଆନ୍ତଙ୍କ ଉଆସ ତଳଦାଟେ ବହି ଯାଇ ଦୁଇ କୋଶ ତଳେ ଖିମପୁର ଗାଁ ତଳେ ମହାନଦୀରେ ପଡ଼ିଛି ।

କୁଅଁର ସାଆନ୍ତ ନଈ ଭିତରକୁ ଚୁହାଇ ଚୁହାଇ ଅନାଉଛନ୍ତି, ନାଆ ଆସୁଛି ପରା । ନାଉରିକୁ ପଚାରିଲେ, "ହୋଇ ରେ ! ନାଆ କେତେବେଳେ ସରିକ ପହଞ୍ଚିବ ?" ନାଉରି କହିଲା, "ଆଜ୍ଞା, ଏଇଲାଗେ କାହିଁ, କିଛି ମଠ ନ କରି ଠିକ ବେଳରେ ନା' ମେଲିଥିଲେ ରାତି ଦଶଘଡ଼ି ସରିକ ପହଞ୍ଚିବ, ନୋହିଲେ ଯାଇ ପାହାନ୍ତା ପହର ।" କୁଅଁର ବାବୁଙ୍କ ମୁଣ୍ଡରେ ଯେମନ୍ତ ଚଡ଼କଟାଏ ପଡ଼ିଗଲା—ଫଁ କରି ନିଃଶ୍ୱାସଟାଏ ପକାଇଲେ । କେଜାଣି କାନ୍ଦି ପକାଇବେ ପରା ! ମନ ମଧ୍ୟରେ ବିଚାରିଲେ, 'ଉଆସଟା ଏଠାକୁ ଅଧକୋଶରୁ ବଳିବ ନାହିଁ, ଚାଲିଗଲେ ତ ହୁଅନ୍ତା । ଛି ! ନାହିଁ, ନାହିଁ, ସଦରଦୁଆର ମେଲରେ ପାଞ୍ଜିଆ ପାଇକ ରଇତ ବାଇତଗୁଡ଼ାଏ ବସିଥିବେ, ଅନ୍ଧାରରେ ଯାଇ ସେମାନଙ୍କ ଆଗରେ ଛିଡ଼ା ହେବୁଁ ? ଛି ଛି ! ଉଆସରେ ଥିବାବେଳେ ବନ୍ଦୋବସ୍ତ ଥିଲା, ମାଜଣାପାଇଁ ନଈକୁ ଗଲେ ସବାରିରେ ବସି ଯାଉଥିଲୁଁ । ଶଶୁର ସାଆନ୍ତ ଆଜ୍ଞା କରିଥିଲେ, ଚାଲିଯିବା ଅମର୍ଯ୍ୟାଦାର କଥା । ଉଚ୍ଛୁଣିକା ଅଧରାତିବେଳେ ଅଧକୋଶେ ବାଟ ଏକୁଟିଆ ଚାଲି ଯିବୁଁ, ଲୋକେ କଣ ବୋଲିବେଟି !'

କାମ ଅଟକିଲେ ବୁଦ୍ଧି ବାହାରେ, ହଠାତ୍ ତାଙ୍କ ମୁଣ୍ଡରୁ ଗୋଟାଏ ବୁଦ୍ଧି ବାହାରିପଡ଼ିଲା । ଉଆସ ପଛପଟ ମାଜଣା ତୁଠ ଠାରୁ ଏଯାଏ ଆମ୍ବତୋଟା ଭିତର ଗଛ ମୂଳେ ମୂଳେ ସଳଖ ଗୋଟାଏ ବାଟ

ଅଛି । ସେ ବଡ଼ ସମୟରେ ଉଆସରେ ଥିବାବେଳେ, ନଈ କୂଳେ କୂଳେ ସଞ୍ଜ ସକାଳ ବୁଲୁଥିଲେ । ଆଉ ଇନ୍ଦୁ ପଢ଼ଉଥିବାର ଝରକାଟା ଉଆସ ପଛପଟ ନଈ ଆଡ଼କୁ । ଗୁଡ଼ାଏକେଟରୁ ସାନ ଘଡ଼ିଟା କାଢ଼ି ଦେଖିଲେ, ଦଶ ଘଣ୍ଟା ପନ୍ଦର ମିନିଟ । ଇନ୍ଦୁ ରାତିରେ ଭୋଜନ ସାରି ସେହି ଝିଅଡ଼କ ପାଖରେ ମାଞ୍ଚଆଟାରେ ବସି ରାତି ଏଗାରଟାଯାଏ ନଈକୁ ଚାହିଁ ଥାଏ । ବାରଟା ଆଗରୁ ପଢ଼ଉକୁ ଯାଏ ନାହିଁ । ଉଆସ ପଛପଟକୁ ଯିବାକୁ ସମସ୍ତଙ୍କୁ ମନା, ଖୁବ୍ ନଗୋଳା । ମୁଁ ଯେବେ ଏତିକିବେଳେ ଝିଅଡ଼କ ବାହାର ପାଖରେ ହଠାତ୍ ଛିଡ଼ା ହୋଇଯାଏଁ, ଖୁବ୍ ମଜା ହେବ । ମରୁଆ ଭୁନ ଭୁନ ମାଜଣା ଦୁଆର କବାଟ ଫିଟାଇ ଦେବ । ଭିତରକୁ ଚାଲି ଯିବି କେହି ଜାଣିପାରିବ ନାହିଁ । ସବାର ପହଞ୍ଚିବାକୁ ରାତି ଶେଷ । ତେତେବେଳେ କଏ ବା ଥିବ ? ମୁଁ ଭିତରୁ ବାହାର ଆସି ସବାର ପାଖରେ ଛିଡ଼ା ହୋଇଯିବି, ସମସ୍ତେ ମନରେ କରିବେ, ମୁଁ ସବାରରୁ ବାହାର ଛିଡ଼ା ହୋଇଛି ।

କୁଅଁର ସାନ୍ତ ଆପଣା ପାଗ୍ରେଡ଼ ଖଣ୍ଡ ଅଣ୍ଟାରେ ଭଲ କରି ଭିଡ଼ ଦେଇ ବାହାର ପଡ଼ିଲେ । ସଇତାକୁ କହିଲେ, "ସବାରଟା ଏପାଖକୁ ଅଇଲେ ଭୁନ ଭୁନ ଉଆସକୁ ଧରି ଆସିବୁ, ଆପଟଗୁଡ଼ାକ ହୁଁ — ହାଁ ପାଟି କରିବେ ନାହିଁ, ଚିନ୍ତା ନାହିଁ ।" ସଇତା ବୁଝି ପାରିଲା, ସାନ୍ତଙ୍କ ପିଛା ଧରି ଚାଲିଛି । କହିଲା, "ଆଜ୍ଞା, ମୁଁ ଅମ୍ଭୁକୁ ଉଆସରେ ପହଞ୍ଚାଇ ଦେଇ ବାହୁଡ଼ ଆସିବି ।"

କୁଅଁର ସାନ୍ତ, "ନାହିଁରେ ନାହିଁ, ତୁ ଏଇଠି ଥା ।" ଏଟିକ କୃଷ୍ଣପକ୍ଷ, ଚହିଁରେ ପୁଣି ମେଘ ଢାଙ୍କୁଚି, ଚହିଁ ବାଦ ପୁଣି ଆମ୍ବଗଛ ମୂଳଟାରେ ଘିଟିଘିଟିଆ ଅନ୍ଧାର, ଦେହର ଲୋମ ଦିଶୁନାହିଁ । ସାନ୍ତ ମନରେ କଲେ, ହେଉ ଅନ୍ଧାର, ବାଟ ଅଧକୋଶେ ତ, ସଳଖ ବାଟ, ଏଇଲାଗେ ପହଞ୍ଚିବି । ମଲା ଯା ! ବାଟ କାହିଁମ —ତୋଟା ଭିତରେ ପଶି ବାଟବଣା ହେଲେଣି । ଅନ୍ଧାର ହେଉଛନ୍ତି, ସବୁଆଡ଼େ ବଣ, ବାଟ କାହିଁ ? ବଡ଼ ସମୟରେ ଯେ ଆସିଥିଲେ, ସେଟା ଗ୍ରୀଷ୍ମ, ଉଚ୍ଛୁଣିକା ଯେ ବର୍ଷା କାଳ, ସାନ୍ତଙ୍କର ସେ କଥାକୁ ଲକ୍ଷ୍ୟ କାହିଁ ? ଉଚ୍ଛୁଣିକା ଆଙ୍କୁ, ଗୁଳୁନ୍ଦା, ବଣିଆଡ଼ଙ୍ଗା, ବଇଞ୍ଚବଣ ପୂରୁଯାଇ ବାଟଟା ବୁଜି ଗଲାଣି । ଜଣ କଡ଼ିବେ, ବଣ ଅଡ଼େଇ ଅଡ଼େଇ ଆଗକୁ ଚାଲୁଛନ୍ତି । ମାଟିଟା, କାଦୁଆ, କାହିଁବା ପାଣି ଚପର ଚପର, କାହିଁବା ପାଣି ଗୋଇଠିଏ । ଯୋତା ଭିତରେ ପାଣି ପଶିଛି, ଚାଲିବାବେଳେ ପଚର-ପଚର ଛିଟିକି ପିନ୍ଧିବା ଲୁଗା କାଦୁଆ ସରପଟ ହୋଇଗଲାଣି । ବଇଞ୍ଚ ଆଙ୍କୁ କଣ୍ଟା ଲାଗି ପିନ୍ଧିବା ପାତଳ ଖଣ୍ଡ କୁରୁତା ଫାଳ ଫାଳ ହୋଇଗଲାଣି । ସଞ୍ଜବେଳେ ଟିକିଏ ଝିପିର ଝିପିର ପାଣି ବର୍ଷୁଥିଲା, ଗଛଉପରୁ ଟପର ଟପର ପାଣି ମୁଣ୍ଡରେ ପଡ଼ି ଦୁଇ ଗାଲବାଟେ ଦୁଇଟା ଧାର ବହୁଛି । ବାଟୋଇଙ୍କର ଚହିଁକି ଦୃଷ୍ଟି ନାହିଁ, କେବଳ ଆଗେଇଛନ୍ତି । ବେଳେ ବେଳେ ଟିକିଏ ଟିକିଏ ବିଜୁଳି ଆଲୁଅରେ ଆଗ ବଣଟା ଦିଶିଯାଉଛି । ଦୁଇପାଖକୁ ବଣ ଅଡ଼େଇ ଚାଲିବାରୁ କଣ୍ଟା ଲାଗି କହୁଣି ଯାଏ ହାତ ଚିରି ଫାଳ ଫାଳ ହୋଇଗଲାଣି । ବାଟ ତ ବଣା ହୋଇ ସାରିଲେଣି, ଖାଲି ଏତିକି କଥା ଜଗିଛନ୍ତି, ମୁହଁକୁ ଆଗକୁ ଠିକ୍ ରହିବ । ମୁହଁ ବୁଲିଗଲେ କାଳେ ଆଉ ଆଡ଼କୁ ଚାଲିଯିବେ, ଏତିକି ଡର । ଗୋଟାଏ ଗୋଟାଏ ଜାଗାରେ ବିଲୁଆଗୁଡ଼ାଏ ଚରି ବୁଲୁଥିଲେ, ମଣିଷ ଗନ୍ଧ ପାଇ ଚୁନଆ ହୋଇ ଏଣେ ତେଣେ ଧାଇଁଛନ୍ତି । ଗୋଟାଏ ଉତ୍ସାହ ଆଶାର ଆଲୁଅ ମନ ମଧ୍ୟରେ ଜଳୁଥିଲେ ବାହାର ଅନ୍ଧାର ବାଧେ ନାହିଁ ।

———

-୩୩-

"ଯଚ୍ଚିନ୍ତିତଂ ତଦିହ ଦୂରତରଂ ପ୍ରୟାତି
ଯଚ୍ଚେତସା ନ ଗଣିତଂ ତଦିହାଭ୍ୟୁପୈତି ।"

କେତେ ରକମ ସୌକିନ ଜିନସରେ ସଜାସଜ ହୋଇଥିବା ଗୋଟିଏ ଧୂଳିଆ ବଡ଼ ଘର । ଭିତରେ ଏକ ପାଖ ବାଡ଼ ଲଗେ ଲଗେ ଗୃହ ପାଞ୍ଚଜଣ ଲୋକ ଶୋଇବାଭଳି ଗୋଟିଏ ବଡ଼ ସୁନ୍ଦର ପଲଙ୍କ ପଡ଼ିଛି । ପଲଙ୍କ ବିଛଣା ଗଦି ଉପରେ ହାଲୁକା ଭୂଲାପୁରି ଛିଟ କନାରେ ଯୋଡ଼ାଏ ରେଜେଇ ପଡ଼ି । ତାହା ଉପରେ ଯୋଡ଼ାଏ ଶୁକ୍ଳ ଗୃଦର ବସ୍ତ୍ର, ବିଛଣା ମୁଣ୍ଡଆଡ଼େ ଗୋଡ଼ଆଡ଼େ ଦୁଇ ପାଖରେ ଲମ୍ବ—ଚକା କେତେଟା ମାଣ୍ଡି ପଡ଼ିଛି । ପଲଙ୍କଉପରେ ପାତଳ ରେଶମ କନାର ଝାଲରଲଗା ନେଟ୍ ଲୁଗାର ମଶାରି ଟଙ୍ଗା ହୋଇଛି । ପଲଙ୍କ ଉପରେ ଚମ୍ପକକୁସୁମାଭା ସର୍ବାଙ୍ଗସୁଗଠନା ଗୋଟିଏ ଷୋଡ଼ଶୀ ସୁନ୍ଦରୀ ଶୟନା—ଯେମନ୍ତ ଶୁକ୍ଳ ଫେନିଳ ଜଳାଶୟରେ ଗୋଟିଏ ଦେବୀ ପ୍ରତିମା ଭାସୁଛନ୍ତି ।

ଅଧରାତି ଗଡ଼ିଯାଇଛି । ଅନୁମାନ ବିଂଶତିବର୍ଷ-ବୟସ୍କା ଆଉ ଗୋଟିଏ ସୁନ୍ଦରୀ ହାତରେ ଗୋଟିଏ ଜଳନ୍ତା ବତିଟା ଧରି ପଶିଲା । ଦୁଆରବନ୍ଧ ପାଖରେ ବତିଟାକୁ ନିଭାଇ ଘର ମଧ୍ୟକୁ ପଶିଲା । କବାଟଟା କିଳି ଦେଇ ଧୀରେ ଧୀରେ ଯାଇ ପଲଙ୍କ ବାଡ଼ ଧରି ଛିଡ଼ା ହେଲା । କେତେବେଳଯାଏ ପଲଙ୍କ ଉପରକୁ ଭଲ କରି ଚାହିଁ ଓଠ କାମୁଡ଼ି ଟିକିଏ ହସ ହସ ହୋଇ କହିଲା, "ଓଃ, ପହଡ଼ ହୋଇ ନାହିଁ ପରି ?"

ପଲଙ୍କସ୍ଥା କଣେଶ୍ୱରୀ—ନାହିଁ ଲୋ ମରୁଆ ! କାହିଁକି କେଜାଣି ନିଦ ମାଡ଼ୁ ନାହିଁ—ମନଟା କମିତିକା କମିତିକା ହେଉଛି ।

ମରୁଆ ହସି ହସି କହିଲା ସତ ସତ, ମନ ତ ଚଞ୍ଚଳ ହୋଇଥିବ । ରାଜୁଭାଇଙ୍କୁ ସଞ୍ଜବେଳେ ପଚାରୁଥିଲି । ମହିରେ ଯୋଡ଼ାଏ ଦିନ, ଅପର ଦିନ ଏତେବେଳକୁ ଗୋଟିଏ ଚନ୍ଦ୍ରମଣି ଏହି ପଲଙ୍କ ଉପରେ ଉଦେ ହୋଇଥିବ । ନିଦେଇ ଯାଅ, ନିଦେଇ ଯାଅ ଯୋଡ଼ିଏ ରାତି ଗଲା ପରି ।

ଶୟନା କଣେଶ୍ୱରୀ—ଦୂର ହୋ ! ଫେର ଇମିତିକା କଥା କହିଲେ କାନ୍ଦିବ । ଆଜ ଦିନଟାପାକ କି ରକମ ମନଟା ଧାଣ୍ଡି ହେଉଛି । କିଛି ସୁଖ ଲାଗୁ ନାହିଁ ।

ମରୁଆ—ମନଟା କଣ ହେଉଛି ?

କଣେଶ୍ୱରୀ—କେଜାଣି କିଛି ବୁଝିପାରୁ ନାହିଁ, ତୁଚ୍ଛା କାନ୍ଦ ମାଡ଼ୁଛି, କମିତିକା ଗୋଟାଏ ଡର ମାଡ଼ୁଛି ।

ମରୁଆ—ଡର କଣ ଜେମା ? ଉଆସ ଚୌପିଠି ପାଇକ ଜଗୁଆଳ, ହାକିମ ଘର—କେଉଁ ଗ୍ରେର ଡକାଇତର ଏଡ଼େ ଗୁର୍ଦ୍ଦା, ଆସୁ ତ ଭଲା ।

ଜେମାଦେଈ—ପରିଦିନ ରାତିରେ ଡକାଇତମାନେ ଶାବଳରେ ଝରକା ଖୋଳି ଘନ ମହାନ୍ତି ଘରେ ପଶି ସବୁ ଜିନିସପାତି ପୋଛିପାଛି କରି ନେଇ ଯାଇଛନ୍ତି । ତୁ ଆମ ଝରକା ଭଲ କରି କିଳିଛୁ ତ ?

ମରୁଆ—ଏଇ ଦେଖ, ହୁଡ଼ୁକା କିଳି ଦେଇଛି ।

ମରୁଆ ଯେମିତି ଝିଡ଼କିଆଡ଼କୁ ହାତ ବଢ଼ାଇ ଦେଖାଇଲା; ଦୁଇ ଜଣଯାକ ସେଇଆଡ଼କୁ ଚାହିଁଛନ୍ତି, ଠିକ୍ ସେତିକିବେଳେ ବାହାର ପଟରୁ ଝରକାରେ ଠୁକ୍ ଠୁକ୍ ଶବ୍ଦ ଶୁଭିଲା । ମରୁଆ ଚାଙ୍କା ହୋଇ ଝରକାକୁ ଅନାଇଛି । ଶବ୍ଦଟା ପ୍ରଥମେ ଧୀରେ ଧୀରେ ହେଉଥିଲା, ଠୁକ୍—ଠୁକ୍ । ବେଳକୁବେଳ ଟାଣ ଶବ୍ଦ ଶୁଭିଲା, ଠକ୍—ଠକ୍ । ମରୁଆ କଣେଶ୍ୱରୀ ଆଡ଼କୁ ମୁହଁ ବୁଲାଇ ଯେମନ୍ତ 'ଆଁ' ବୋଲି ଶବ୍ଦଟାଏ କଲା, ଜେମା ପଲଙ୍କ ଉପରୁ ବୋପା ଲୋ ବୋଲି କହି ତଳକୁ ଡେଇଁ ପଡ଼ିଲେ । ଦୁଇଜଣଯାକ କୁଣ୍ଢିଆକୁଣ୍ଢେଇ ହୋଇ, ଧାଇଁ ପଡ଼ି ରେ—ମାରି ପକାଇଲା ରେ—ଡକାଇତ ରେ—

ଧାଇଁ ଆସ ରେ, ବୋଲି ଘର ରଡ଼ି ଛାଡ଼ୁଛନ୍ତି । ଏମାନଙ୍କ ହୁରି ଶୁଣି ବାହାରୁ ଆହୁରି ଝାଣ ଦୁମ୍ ଦୁମ୍ ଶବ୍ଦ ଶୁଭିଲା । କିଏ ଯେମନ୍ତ କହୁଛି, 'ଭୁନ ହୁଅ, ଭୁନ ହୁଅ, ମୁଁ—ମୁଁ' ମାତ୍ର ଯୁବତୀମାନେ ମନରେ କଲେ, ଡକାଇତମାନେ ଶାବଳରେ ଖିଡ଼କି ଖୋଲି ପକାଉଛନ୍ତି । ଦୁଇଜଣଯାକର ଚେତା ବୁଡ଼ି ଗଲାଣି, ଆଉ ରଡ଼ିଛାଡ଼ି ପାରୁ ନାହାନ୍ତି, ଖାଲି ଗଁ—ଗଁ ଗରଜୁଛନ୍ତି । ଉଆସ ଭିତରେ ଯୋଇଲା ମହଲରେ କିଏ ଘିଚ ଖାଉଥିଲା, କିଏ ଆଞ୍ଚଉଛି, ଥୋକେ ବିଛଣା ପାରି ଏଇଲାଗେ ଶୋଇ ପଡ଼ିଛନ୍ତି, କିଏ ବା ଖାଇଲା କଂସା ଖଣ୍ଡ ପାଣିରେ ପିଛୁଳି ପକାଇ ଘର ମଧ୍ୟରେ ରଖୁଛି, ଜେମାଙ୍କ ପୁରରୁ ରଡ଼ି ଶୁଣି ଚଞ୍ଚଳ ଧଡ଼ ଧାଡ଼ି କରି ଆପଣା ଆପଣା ଘର କବାଟ କିଳି ପକାଇ 'ବୋପାରେ, ମାରି ପକାଇଲା ରେ' ବୋଲି କୁହାଟୁଛନ୍ତି । ସାନ୍ତାଣୀଙ୍କ ବପୋଟ ଦିନରୁ ସାନ୍ତେ ସଞ୍ଜ ଉତ୍ତାରେ ଆଉ ଭିତର ପ୍ରସ୍ତକୁ ଯାନ୍ତି ନାହିଁ । କଚେରି ପ୍ରସ୍ତ ପାଖରେ ଗୋଟାଏ ପଲଙ୍କ ପଡ଼ିଛି, ସେଇଠାରେ ପହଡ଼ ବଡ଼େ । ଏଇଲାଗେ ଯାଇ ଶେଯ ଉପରେ ବସିଛନ୍ତି, ଭିତରୁ ହୁରି ଶୁଭିଲା; କାନ୍ଥରେ ଝୁଲୁଥିବା ତରବାରି ପଟେ ଖାପରୁ ଓଲାଡ଼ି ଉଆସ ଭିତରକୁ ଧାଇଁଲେ । ଗୁରି ପାଞ୍ଚ ଜଣ କଚେରି ପହରା ପାଇକ ବାଡ଼ିକି ଠେଙ୍ଗା ଗୋଟାଏ ଗୋଟାଏ ଧରି ପଛରେ ଧାଇଁଛନ୍ତି । ସାନ୍ତେ ଉଆସ ଭିତରକୁ ଯାଇ 'କଣ ହେଲା, କଣ ହେଲା' ପଚାରୁଛନ୍ତି । ଉତ୍ତର ଦେଉଛି କିଏ ? ଯୋଇଲାଗୁଡ଼ାକ ତ 'ବୋପା ଲୋ ! ମାରି ପକାଇଲା ଲୋ ! ଧାଇଁ ପଡ଼ ହୋ !' ବୋଲି ରଡ଼ି ଛାଡ଼ୁଛନ୍ତି—ସାନ୍ତଙ୍କ କଥା କାହା କାନରେ ବା ପଡ଼ୁଛି ? ସାନ୍ତ ନିହାତି ବିକଦାର ହୋଇ ଗୋଟାଏ ଯୋଇଲା ଘର କବାଟରେ ଆଣ୍ଠରେ ଯୋଡ଼ାଏ ଗୋଇଠା ମାରିଲେ । ଭିତରୁ 'ହେଇ ଲୋ ! ଡକାଇତ ଲୋ !' ଗୁରି ଛଅ ଥର ରଡ଼ି ଶୁଭିଲା, ଆଉ ସୋର ଶବ୍ଦ ନାହିଁ । ଜଣା ଯାଏ, ଯୋଇଲାଟାର ଆଉ ଚେତା ନାହିଁ, ଝାମ ଯାଇ ପଡ଼ି ଗଲାଣି । ସାଆନ୍ତେ ଆଉ କାହାରିକୁ କିଛି ନ ପଚାରି ଉଆସ ଭିତରେ ସବୁ ଜାଗାରେ ବୁଲି ବୁଲି ଦେଖିଲେ, ବାରିକଟା ମଶାଲ ଆଲୁଅ ଗୁରିଆଡ଼େ ବୁଲାଇ ବୁଲାଇ ଭଲ କରି ଦେଖାଉଥାଏ । ସାଆନ୍ତେ ଭଲ କରି ବୁଝିଲେ, ଡକାଇତମାନେ ଉଆସ ଭିତରକୁ ପଶି ନାହାନ୍ତି । ଜଗୁଆଳି ପାଇକମାନେ ବାରକୁହାଟ ମାରି ଉଆସ ବାହାର ଗୁରି ପିଠିରେ ଧାଁ ଦଉଡ଼ି କରୁଛନ୍ତି ।

ଉଆସ ହାତାଣପଟ ବାହାରକୁ ପାଚେରି ତଳେ ନଅ ଅଡ଼ାଏ ଜାଲି ଦେଇ ଗୁରି ଜଣ ପାଇକ ପହରାରେ ଅଛନ୍ତି, ସମସ୍ତଙ୍କ ଫରିଗଦକା ପାଚେରୀ କାନ୍ଥରେ ଝୁଲୁଛି । ଗୁରି ପହରକୁ ଗୁରି ଜଣ ପାଳି କରି ପହରା ଦିଅନ୍ତି । ପାଳିଆ ପାଇକଟା ଫରିଗଦକା ଧରି ଛିଡ଼ା ଛିଡ଼ା ପହରା ଦେଉଥାଏ, ଆଉ 'କିଏ ରେ— ହୁସିଆର' ବେଳେ ବେଳେ କୁହାଟୁ ଥାଏ ।

ଉଆସ ଭିତରୁ ଗୋଳମାଳ ଶୁଣି ପହରା ପାଇକ ଗୁରିଜଣଯାକ ଚଞ୍ଚଳ ଅଣ୍ଟା ଭିଡ଼ି ଫରିଗଦକାଟାମାନ ଅଣ୍ଟାରେ କଷି ଠେଙ୍ଗାଟାମାନ ଧରି 'ହୁସିଆର, ହୁସିଆର, ଖବରଦାର' କହି ବାହାରି ପଡ଼ିଲେ । ପ୍ରଥମେ ଜେମାମଣିମାଙ୍କ ଉଆସ ପ୍ରସ୍ତରୁ ପାଟି ଶୁଭୁଥିଲା, ସେହି ଦିଗକୁ ତଳେ କରି ବାହାରେ ବାହାରେ ପାଚେରି ମୂଳେ ମୂଳେ ଧାଇଁଛନ୍ତି । ପାଇକମାନଙ୍କର ବାରପଣିଆ ସବୁ ଯାଇଛି, ଅଛି ସାତପୁରୁଷ ଆଗର ଭଙ୍ଗା ଦଦରା ଗଦକା ଖଣ୍ଡିକ—ଅଛି ଶତ୍ରୁ ନାମ ଶୁଣିଲେ କୁହାଟମାରି ଆଗକୁ ଧାଇଁଯିବାର, ସେଟା ବି ବାରପଣି ଭଳି ପାଇକଙ୍କର ଗଲାଣି—ଏଣିକି ଆଉ ସମସ୍ତଙ୍କର ବି ଯାଇ ବସୁଛି ।

ନଣ୍ଡକୂଳରେ ପଲେ ବିଲୁଆ ଗାଡ଼ ଭିତରେ ଲଞ୍ଜି ଗୁଞ୍ଜି କଙ୍କଡ଼ା ଧରି ଖାଉଥିଲେ, ପାଇକମାନଙ୍କ କୁହାଟ ଶୁଣି ଧଡ଼ପଡ଼ ହୋଇ ବଣ ଭିତରେ ଏଣେ ତେଣେ ଧାଇଁଛନ୍ତି—କେତେ ଗୋଟା ତରଛରେ ଝପ୍ ଝପ୍ କରି

ନଈପାଣିରେ ଚଢ଼ି ଆର କୂଳକୁ ପହଁରି ପଳାଇଲେ । ଘିଟିଘିଟିଆ ଅନ୍ଧାର, ପାଣିରେ କିଏ ପଡ଼ିଲା, ବଣ ଭିତରେ ଧଡ଼ପଡ଼ ହୋଇ କିଏ ଧାଉଁଛି, ଦେଖୁଛି କିଏ ? ପାଇକମାନେ 'ହେଇ ରେ ଡକାୟତ— ହେଇ ରେ ଡକାୟତ—ଧର ରେ—ଧର ରେ' ବଲିଆଙ୍କ ପଛରେ ପାଟି କରି ଧାଇଁବାରୁ ସେଗୁଡ଼ାକ ଜୀବନ ବିକଳରେ ଆହୁରି ବି ଅଧିକ ତରତରରେ ଧାଇଁଛନ୍ତି । ଏତିକିବେଳେ ଆକାଶରେ ବିଜୁଳିଟାଏ ଚମକି ଗଲା । ପାଇକେ ଦେଖି ପକାଇଲେ, ଜେମାମଣିମାଙ୍କ ଉଆସ କାନ୍ଥ ଖିଡ଼କି ତଳେ ମଣିଷଟା ପରି ଧଳା କଣଟାଏ ଠିଆ ହୋଇଛି; ତାକୁ ଦେଖି 'ହେଇ ରେ— ଡକାଇତ ରେ—ଧରରେ—ଧର ରେ' ଖୁବ୍ ଗୋଟାଏ ପାଟି କରି ପୁଞ୍ଜାକପାକ ପାଇକ ତା ପାଖକୁ ଧାଇଁଛନ୍ତି । ପାଇକେ ପାଖକୁ ଧାଇଁ ଆସୁଥିବାର ଦେଖି ସେହି ଧଳା ମଣିଷଟା ବଣ ବୁଦା ମାଡ଼ି ଅନ୍ଧାରରେ ଧାଇଁଲା । ହେଲେ, ଅଧିକ ଦୂରକୁ ଯାଇପାରିଲା ନାହିଁ, କଣ୍ଟା-ବଣରେ ଲୁଗା ଛନ୍ଦି ଯିବାରୁ ଦୁଲ୍ କରି ତଳେ କଚଡ଼ି ପଡ଼ିଲା । ବଣ ବୁଦା ମାଡ଼ି ଧାଇଁବାର ପାଇମାନଙ୍କ ଅଭ୍ୟାସ । ଚିଲ ମାରି ଧାଇଁ ଯାଇ ଲୋକଟାକୁ ମାଡ଼ି ବସିଲେ । ସାଙ୍ଗେ ସାଙ୍ଗେ ବିଧା ଗୁଞ୍ଜୁଡ଼ା ଚାଲିଛି, ଗୋଟାଏ ପାଇକ ଡକାୟତଟା ପିଠିରେ ଯୋଡ଼ାଏ ଠେଙ୍ଗା ବି କଷି ଦେଲେଣି । ଡକାୟତଟାର ଅଣ୍ଟାରେ ଫାଳେ ଲଗାଇ ଧଳା ପାଗୁଡ଼ିଟାଏ ଭିଡ଼ା ଥିଲା, ସେଟାକୁ ଫିଟାଇ ପକାଇ ଡକାୟତ ବାହୁଯୋଡ଼ାକୁ ସଙ୍କୋଡ଼ି ପଶ୍ଚିମମୁଣ୍ଡି କରି ଭିଡ଼ି ଦେଲେ । ଡକାଇତଟା ତଳେ ପଡ଼ିଛି, ଉଁ—ଚୁଁ ଶବ୍ଦଟି ନାହିଁ । ପାଇକେ ଦେଖିଲେ, ତାର ଚେତା ମୋଟ୍ । ପାଇକେ ବୋଲା-ବୋଲି ହେଲେ, "ଶଳା ଡକାଇତ ବାଗୁଟା ପରି ହଶୁଛି ଆଉ ଆଉ, ମାରିବା ନାହିଁ । ମରିଗଲେ ଭାରି ବୋଲଣାରେ ପଡ଼ିବା, ଚାଲ ସାନ୍ତଙ୍କ ପାଖକୁ ନେଇ-ଯିବା ।" ଡକାଇତର ହାତ ଧରି ଟେକିଲେ, ଚେତା ନାହିଁ ଚାଲୁଛି କିଏ ? ମୁର୍ଦାରକୁ ଉଠାଇ ନେଲା ପରି ଯୋଡ଼ାଏ ପାଇକ ଉଠାଇ ନେଇ ଚାଲିଲେ । ଭାରି ମନ ଫୁଲଣାରେ ପାଇକାଳି କୁହାଟ ମାରୁଛନ୍ତି । କଚେରି ଘର ମଝି ଖମ୍ବରେ ବାନ୍ଧି ପକାଇଲେ । ଉଆସ ହେପାଜତ ସକାଶେ ସଦର କଚେରିରୁ ମୁତୟନ ହୋଇ ଆସିଥିବା ବଦ୍ଧିଆନ ମିଶିର କନଷ୍ଟେବଲ କଚେରି ମେଲାରେ ଗୋଟାଏ ଖଟିଆରେ ପଡ଼ି ଘୋର ନିଦ ଯାଇଥିଲା, ପାଇକେ ଡାକ ଦେବାରୁ ଉଠି ପଡ଼ି ଭାରି ଆନନ୍ଦରେ ଦାଢ଼ିରେ ହାତ ବୁଲାଇ ଚୋରଟାକୁ ଜିମା କରି ନେଲା । ପଳାଇ ଯାଉଥିବା ଆଉ ଆଉ ଡକାଇତମାନଙ୍କୁ ଧରିବା ସକାଶେ ପାଇକମାନେ ଧାଇଁଲେ । ଚୋରଟା ମୁହଁରେ କଥାଭାଷା ନାହିଁ, ଦୁଇ ଆଣ୍ଠୁ ମଝିରେ ମୁଣ୍ଡଟା ଗୁଞ୍ଜି ତୁନି ହୋଇ ପଡ଼ିଛି ।

ଉଆସ ପଛପଟରେ ସାନ୍ତଙ୍କ ସଙ୍ଗରେ ପାଇକମାନଙ୍କର ଭେଟ ହେଲା । ପାଇକମାନେ ବାହୁପଟ ମାରି ପାହୁଲ ପକାଇ ଫରମୁନ ତିନି ଥର ଭୂଇଁରେ ଆଉ ମୁଣ୍ଡରେ ତିନି ଥର ଲଗାଇ ମଜୁରା କଲେ । ଏକାବେଳକେ ଚଞ୍ଚଳ ସମସ୍ତେ କହି ପକାଇଲେ, "ଆଜ୍ଞା ! ଆମ୍ଭେମାନେ ଡକାଇତ ଦଳ ଭିତରେ ପଶି-ଗଲୁଁ । ସେଗୁଡ଼ାକ ଜୁଙ୍ଗା ଜୁଙ୍ଗା ମର୍ଦ୍ଦ, ସମସ୍ତଙ୍କ କାନ୍ଧରେ ଲମ୍ବ ଲମ୍ବ ଠେଙ୍ଗା ।" ଭୀମ ପଇଡ଼ା ପାଇକ କହିଲା, "ବିଜୁଳି ଆଲୁଅରେ ମୁଁ ଦେଖିଛି, ଚାରି ଜଣଙ୍କ କାନ୍ଧରେ ଚାରିଟା ତୋଡ଼ାଦାର ବନ୍ଧୁକ ଥିଲା । ହେଲେ, ଆମେମାନେ ଫେରି ବୁଲାଇ ଯିମିତି ଯାଇଛୁ, ସେ ଗୁଡ଼ାକ ଏକାବେଳକେ ଛିନ୍ଛତର । ଗୁଡ଼ାଏ ନଈକୁ ଡେଇଁ ଚଢ଼ି ପହଁରି ପଳାଇଲେ । ଅନ୍ଧାରରେ ଦିଶିଲା ନାହିଁ, ନୋହିଲେ ମୁଁ ତ ଏକଲା ଦୁଇ ପୁଞ୍ଜା ବାନ୍ଧି ପକାଇଥାନ୍ତି ।"

ମାଇକିନିଆମାନେ ତଗ ମେଲନ୍ତି, "ପାଇକ କହଣି, ଆଉ ମଇଁଷି ଚହାଣି ।"

ତତକ୍ଷଣେ ଉଆସ ଭିତରୁ ଆଠ ଦଶ ଗୋଟା ମଶାଲ ଜଳା ହୋଇ ଆସିଲା । ସାଆନ୍ତେ ସମସ୍ତଙ୍କୁ ଡକାଇ ଡକାଇତ ଧରିବାକୁ ବାହାରିଲେ । ଗଛ ଡାଳ ପତ୍ର ବଢ଼ିଲା ସନ୍ଧିମାନଙ୍କୁ ଉଣ୍ଡି ଉଣ୍ଡି ଚାହିଁଲେ । ନଈ କୂଳେ କୂଳେ ଅଧ କୋଶଯାଏ ଦଉଡ଼ି ପକାଇଲେଣି । ବଣ ବୁଦା ଆଡ଼େ ଦେଖିଲେ, କାହିଁ ଡକାଇତର ଚିହ୍ନ ନାହିଁ । ସାଆନ୍ତେ ଆଜ୍ଞା କଲେ, "ଭଲକରି ଦେଖ ତ କେଉଁ ଦିଗକୁ ମଡ଼ା ପଡ଼ୁଛି ।" ଓଦା ମାଟିରେ ମଣିଷର ପାହୁଲ ଚିହ୍ନ ନାହିଁ, ଗୁଡ଼ାଏ ବିଲୁଆ ଖୋଜ ଦାଗ ପଡ଼ିଛି, ଯେମନ୍ତ ଏକ୍ବାଳେ ବିଲୁଆ ଗୁଡ଼ାଏ ପଳାଇ ଯାଇଛନ୍ତି । ଡକାଇତର କିଛି ଚିହ୍ନ ନାହିଁ—କେବଳ ଜେମା ମଣିମାଙ୍କ ଉଆସ ପାଚେରି ଖିଡ଼କି ବାହାର ପଟେ ତଳେ ପଟେ ନୂଆ କଳା ବାର୍ନିଶ ବିଲାତି ଜୋତା ପଡ଼ିଥିବାର ଦେଖାଗଲା । ସେଇ ଜୋତା ପଟିକ ଧରି ସମସ୍ତେ ଉଆସ ଭିତରକୁ ବାହାରିଲେ । ସାଆନ୍ତେ ବନ୍ଧା ହୋଇଥିବା ଚୋରକୁ ଦେଖିବାକୁ ଗଲେ ନାହିଁ । ସେଟା ତ ବନ୍ଧା ହୋଇଛି, କାଲି ସକାଳେ ଦେଖାଯିବ । ବଡ଼ ଥକି ପଡ଼ିଛନ୍ତି, ପହଡ଼ ଘରକୁ ବିଜେ କଲେ । ସାଆନ୍ତେ ଭାରି ଖପା ହୋଇଛନ୍ତି । ଉଆସକୁ ବିଜେ ହେବା ବେଳେ ସମସ୍ତଙ୍କୁ ଅନାଇ କହିଲେ, "ହଁ, ମୋ ଘରେ ଡକାଇତି ! ଏତେ କଟକଣାରେ ତ ମୋ ଘରେ ପଶିଲେଣି, ଆଉ କଣ ଦେଶ ଲୋକଙ୍କୁ ରଖିବେ ? ଆଚ୍ଛା ଦେଖିବା—ଡକାଇତ ବଂଶରେ ଗୋଟାଏ ବଳଇ ପିଲା ବି ରଖିବି ନାହିଁ ।"

ପୂର୍ବରେ ପୁହାତରା ଉଇଁଲାଣି, ରାତି ଆଉ ଦଣ୍ଡେ ଖଣ୍ଡେମାତ୍ର ଅଛି । ଆଗରେ ସଇତା, ତା ପଛରେ ଖାଲି ସବାରି ଖଣ୍ଡି, ସମସ୍ତଙ୍କ ପଛରେ ଯୋଡ଼ାଏ ବାହୁଙ୍ଗୀ କାନ୍ଧିଆ ଆପଟ ଚାଲିଛନ୍ତି । ଉଆସ ସିଂହଦରଜା ଆଗରେ ସବାରିଟା ଥୋଇ ଦେଲେ । ସଇତା ମନରେ କହୁଛି, ସାଆନ୍ତେ ଏତେବେଳେ ଭିତରେ ପହଞ୍ଚିଥିବେ । ଏଥିକୁ ତାଙ୍କ ବିଷୟରେ ମନରେ କିଛି ଚିନ୍ତା କଲା ନାହିଁ । କଚେରି ମେଳରେ ଥୋକେ ଗାଁ ଲୋକ ଜୁଟି ହୋଇ ଡକାଇତି ବିଷୟରେ କଥା ଭାଷା ହେଉଛନ୍ତି । ସଇତା ସବୁ କଥା ଶୁଣିଲା । ଜଣେ ଲୋକ ହାତ ବଢ଼ାଇ ବନ୍ଧା ହୋଇଥିବା ଡକାଇତକୁ ଦେଖାଇ ଦେଲା । କିଛି ଦୂରରେ ଦୀପରୁଖା ଉପରେ ଗୋଟାଏ ବଇଠାମିଞ୍ଜି ମିଞ୍ଜି ଜଳୁଛି । ରାତି ଶେଷ ଦୀପରୁ ତେଲ ସରି ଯାଇଛି । ଚୋରଟା ଟିକିଏ ଆଡ଼ ଅନ୍ଧାରରେ ବନ୍ଧା ହୋଇଛି । ସଇତା ଖପାଟାଏ ହୋଇ ଚୋର ପାଖକୁ ଚାଲିଗଲା । ଦୀପଟା ରହିଲା ପଛରେ, ସଇତାର ଛାଇ ଚୋର ଉପରେ ପଡ଼ିଛି । ସଇତା ଖପା ହୋଇ ଚୋର ପିଠିରେ ଦୁମ୍‌କରି ଗୋଇଠା କଷି ଦେଇ କହିଲା, "ଶଳା ଚୋର ! ଆମ ସାଆନ୍ତ ଘରେ ଚୋରି କରିବୁ ?" ଚୋରଟା 'ବାପା ଲୋ—ସଇତା !' ଆଉ କିଛି କହି ପାରିଲା ନାହିଁ । ଉଁ—ଉଁ କରି କୁନ୍ଥେଇଲା । ସଇତା ତୁଣ୍ଡ ବାରି ପକାଇ ଚୋରି ପାଞ୍ଚ ହାତ ପଛକୁ ଘୁଞ୍ଚିଗଲା, ଦୀପ ବଳିତାଟା ଖୁଞ୍ଚିଦେଇ ଭଲକରି ଅନାଇଲା । ଚୋର ମୁହଁ ଦିଶୁ ନାହିଁ । ଗଲା କାଲି ସକାଳେ ଯେଉଁ ରଙ୍ଗଧଡ଼ି ପିନ୍ଧାଟା କୁଞ୍ଚାଇ ସାନ୍ତଙ୍କୁ ପିନ୍ଧାଇ ଦେଇଥିଲା, ସେ ଲୁଗା ଖଣ୍ଡ ଚିହ୍ନାଗଲା । ସେ ଖଣ୍ଡ ଚିରି ଫାଳକୁ ଫାଳ କାଦୁଅ ସରସର । ଦେହରେ ସେହି ସିଲ୍‌କ ଲୁଗାର ଅଙ୍ଗା ଚିରି ଫାଳକୁ ଫାଳ । କଲିକତା ସାହେବ ଦୋକାନରୁ ଡାକରେ ଯେଉଁ ଚକଚକିଆ ଜୋତା ଆସିଥିଲା, ସେଥିରୁ ଗୋଟାଏ ଗୋଡ଼ରେ ପଟେ । ଆମ୍ଭମାନଙ୍କୁ ଲେଖିବାକୁ ଏତେ ମଠ, ସଇତା ଅନାଇଦେବା ମାତ୍ରକେ ସବୁ ଦେଖିଗଲା । 'ଆରେ ମୋ ବାପା ଲୋ ! ହାୟ ହାୟ ! କଣ ହେଲା ଲୋ !' ଭାରି ପାଟିଟାଏ କରି ବନ୍ଧା ଫିଟାଇବାକୁ ଲାଗିଲା । କନଷ୍ଟବଳ ମିଶ୍ରଜୀ ଭାରି ମନଫୁଲାଣରେ ଅଗଣାରେ ଟହଲ ହେଉଥିଲେ, ଚୋରର ବନ୍ଧା ଫିଟାଯିବାର ଦେଖି ଭାରି ପାଟିଟାଏ କରି ଡାକଦେଲେ, "ଆରେ ଓ ଭାୟା ! ଶଶୁରା ଚୋରନ୍‌କୋ ଛୋଡ଼ବେ ନ କରେ । ମଇନା ଶଶୁରକୁ ପକଡ଼ଲ—ମୋରେ

ନଉକର ଚରକବ୍ ହୋବେ କରେ—ମଇନା ଜମାଦାର ବନବେ କରେ ।” ମିଶରଜୀ ଜମାଦାର ହେଉଥାଉନ୍ତୁ - ସଇତା ତେଣିକି କାନ ନ ଦେଇ ବକଲରେ ରଡ଼ ଛାଡ଼ ବନ୍ଧା ପିଟାଉଥାଏ ।

ସାଆନ୍ତ ବହୁତ କଷ୍ଟରେ ସଇତାକୁ ଏହି ବିପଦ କଥା କହିଲେ, “ମତେ ସବାର ଭିତରକୁ ନେ— ଜଲଦି କଟକ ଡାକ୍ତରଖାନାକୁ ଚାଲ—ନୋହିଲେ ପ୍ରାଣ ଗଲା ଜାଣ ।” ଆଉ ପାଟି ଫିଟିଲା ନାହିଁ । ଚେତା ବି ମୋଟ୍ । ସଇତା କାନ୍ଦୁଥାଏ । ସାନ୍ତଙ୍କୁ କାଖେଇ ଧେନ ପାଇଁ ଅତି ସାବଧାନରେ ସବାର ଭିତରେ ଶୁଆଇ ଦେଲା । ଦୁଇ ଆଖିରୁ ଲୋତକଧାର ବହୁଛି — ଦୁଇ ଓଠକୁ କାମୁଡ଼ି ଧରିଛି, ବୋବାଳ ବେଳେ ସମ୍ଭାଳି ପାରୁ ନାହିଁ, ଭେ—ଭେ କରି ରଡ଼ ଛାଡ଼ୁଛି ।

ରାତି ପାହି ଗଲଣି । ଗାଁ ଗୋଟାକ ଲୋକ ସାନ୍ତଙ୍କ କଟେରି ଅଗଣାରେ ରୁଣ୍ଡ । ‘ଜୁଆଁଇ ବାବୁ ବଡ଼ ମାଡ଼ ଖାଇଛନ୍ତି, ଖମ୍ବରେ ବନ୍ଧା ।’ କଥାଟା ଯିମିତି ଉଆସ ଭିତରେ ପହଞ୍ଚିଲା, ସମସ୍ତେ ତ କାନ୍ଦି ଲୋଟିଗଲେଣି । ଗାଁଟାଯାକ ରଡ଼ିରେ ଉଚ୍ଛୁଳି ପଡ଼ୁଛି । ଇନ୍ଦମଣି ତଳେ ପଡ଼ି ଯାଇଛନ୍ତି । କାନ୍ଦିବାକୁ ନାହିଁ—ବେଳକୁ ବେଳ ଝାମ ଯାଉଛନ୍ତି । ଦୁଇପୁଞ୍ଜା ସରିକି ପୋଇଲି ତାଙ୍କ ମୁହଁରେ ପାଣିଛାଟ ମାରି ଟଙ୍କା କରିବାରେ ଲାଗିଛନ୍ତି । ସେମାନଙ୍କ ଆଖିରୁ ବି ଲୋତକ ଧାର ଛୁଟିଛି । ମରୁଆ ଇନ୍ଦୁକୁ ସମ୍ଭାଳିବ କିଏ, ଆପେ ଅଥୟ । ସାଆନ୍ତ ଏଡ଼େ ମାମଲତ୍‌କାର, ଏଡ଼େ ଧୈର୍ଯ୍ୟବନ୍ତ—ହେଲେ, ପିଲାଟା ପରି ରଡ଼ିଛାଡ଼ି ଲୋଟି ଯାଉଛନ୍ତି । ପାଟି ଫିଟୁ ନାହିଁ, କିଛି କଥା ବୋଲିବାର ବଳ ଘଟୁ ନାହିଁ । ଚାରି ଛ ଜଣ ସଦର ପାଞ୍ଜିଆ ବେଢ଼ି ବସିଛନ୍ତି । କେତେଟା ବାଳକ ବଡ଼ ବଡ଼ ତାଳପଙ୍ଖାରେ ବିଞ୍ଚି ବିଞ୍ଚି ହାଲିଆ ହୋଇ ପଡ଼ିଲେଣି ।

କରଣମାନେ ଲୋଡ଼ି ବସିଲେ—କଥାଟା କଣ ? ବୋଲୁଛି କିଏ, ମୂଳ ପ୍ରସଙ୍ଗଟା କାହାକୁ ବା ଜଣା ? ଯାହାଙ୍କୁ କହୁଛି କଣା, ତାଙ୍କର ତ ଚେତା ମୋଟ୍ । ମରୁଆ ଭୁଞ୍ଚା ଭକ ଭକ କରି ଚାହିଁଛି, ପାଟି ଫିଟୁନାହିଁ । ଏଥିକୁ ମୂଳ ପ୍ରସଙ୍ଗଟା ଯେଉଁ ଅନ୍ଧାରକୁ ସେହି ଅନ୍ଧାରରେ ବୁଡ଼ି ରହିଲା ।

ସାଆନ୍ତ ଏତେବେଳେ କାଠ ମୁଗରଟି ପରି ବସିଛନ୍ତି । ଗୋଟାଏ ଲୟ କରି ଉପରକୁ ଚାହିଁଛନ୍ତି । କାହାରି ସଙ୍ଗରେ କଥା ନାହିଁ । କେହି ଲୋକ ବି ଭରସି ତାଙ୍କୁ କିଛି ପଚାରି ପାରୁ ନାହିଁ ।

ସଇତା ଢେର ଲୋକ ହାତରେ ଢେର ଥର ରାମଲୋଚନ ବାବୁଙ୍କୁ ଡକାଇ ସାକ୍ଷାତ୍ କମ୍ବା କହୁଛି ଜବାବ ନ ପାଇବାରୁ, ଆଉ ତାଙ୍କ ନାମ ତୁଣ୍ଡରେ ଧଇଲେ ନାହିଁ । ଏତେବେଳେ ଉଆସ ଭିତରକୁ ଯିବାର ଯାହାକୁ ଦେଖୁଛି, କାନ୍ଦି କାନ୍ଦି ହାତ ଯୋଡ଼ି କହୁଛି, “ସାନ୍ତଙ୍କୁ ଜଣାଅ, ସାନ୍ତଙ୍କୁ ଧରି କଟକ ଡାକ୍ତରଖାନାକୁ ଯିବା ।” ଆପଣା ଇଚ୍ଛାରେ କାର୍ଯ୍ୟଟାଏ କରିବାକୁ ସଇତାର ବଳପ ଘଟୁ ନାହିଁ ।

ସଇତା କଥା କରଣମାନେ ଥରକୁ ଥର ସାନ୍ତଙ୍କୁ ଜଣାଇବାରୁ, ସେ ‘ଆଁ—ଆଁ’ କହି ଭୁଞ୍ଚା ଲୋକଙ୍କ ମୁହଁକୁ ଭକ ଭକ କରି ଚାହିଁ ରହିଥାନ୍ତି, ଉତ୍ତର ନାହିଁ । କରଣମାନେ ବସି ବିଚାର କଲେ, ‘ସାନ୍ତଙ୍କର ତ ଏହି ଦଶା, ଜୁଆଁଇ ସାନ୍ତଙ୍କୁ ଏପରି ବେହାଲରେ କିପରି ଛାଡ଼ି ଦିଆଯିବ ? ନ ହେଲେ ବି ନୁହେ, ଏ ଜାଗାରେ ତ ଭଲ ଚିକିତ୍ସା ହୋଇ ପାରିବ ନାହିଁ ।’ ଏଟା ବି ଗୋଟାଏ କଥା, ସାନ୍ତଙ୍କ ଆଜ୍ଞା ବିନା କିଏ ବା ଭରସି ଗୋଟାଏ ଜବାବ ଦେବ ? ଛାମୁ ପାଞ୍ଜିଆ ବିନୋଦ ମହାନ୍ତି ଭରସି ସାନ୍ତଙ୍କ ଆଗରେ ହାତ ଯୋଡ଼ି ମୁହଁ ପାଖରେ ଖୁବ ପାଟି କରି ସଇତା କଥା ଜଣାଇବାରୁ

ସାନ୍ତ 'ଆଁ—ଆଁ' ଦୁଇ ଥର କହି ଟାଣ ନିଃଶ୍ୱାସଟାଏ ପକାଇ କହିଲେ, "ଏଁ—ଏଁ, ଟଙ୍କାଟା ପାଇଁ କଷ୍ଟକ ଯିବେ—କିଁଆ ? ଧାଙ୍ଗଡ଼ ଲୋକ ଯାଇ ଯେତେ ହଜାର ଲାଗୁ କଷ୍ଟକର ସବୁ ସାଇବ ଡାକ୍ତରଙ୍କୁ ଧରି ବାହାରି ଆସୁ ।" ରାଜୀବଲୋଚନ ମାମୁଙ୍କ ସାମ୍ନାରେ ବସିଥିଲେ, ଜଣାଇଲେ; "ଆଜ୍ଞା, ଶୁଣି ଆଜ୍ଞା ହେଉ, ଯାହା ହେବାର ତ ହୋଇଗଲେଣି, ଏଥିକି ଆପୃତ୍ତି କାହାର ? ଏତେବେଳେ ଟିକିଏ ଆଗ ପଛ ବିଚାରି ଚଳିବାକୁ ହେବ । ବିନୋଦବିହାରୀ ରକ୍ଷା କରନ୍ତୁ ! ହେଲେ ଯେମନ୍ତ ହାଲ ଦେଖା ଯାଉଛି, ସହଜରେ ଭଲ ନ ହେଲେ କଥାଟା ନେଇ ଆଣି ଥୋଇହେବ ନାହିଁ । ଆମେ ଚଡ଼ ଦେଇ ନାହୁଁ, ସେ ଆପେ ଯାଉଛି ତ ଯାଉ । ଭୁଚ୍ଛାଟାରେ କିଁଆ ଭଲ ମନ୍ଦକୁ ଲଗା ହେବୁ ? ଦୁଇ ବଂଶ ମଧ୍ୟରେ ଯେ ଭାରି ମାଲମାମଲା ଚଳୁଛି, ଏ କଥା ସଦରରେ ଅମଲା ଫଏଲା ଓକିଲ ମୁକ୍ତାରଠାରୁ ହାକମ ହୁକୁମା ଯାଏ କାହାକୁ ଅଜଣା ? ଏତିକିବେଳେ ବାଟ କାଟି ରଖୁଁ—କହିବୁ, 'ଏଠି କାହାରିକୁ କିଛି ଜଣା ନାହିଁ ।' ଦୁଇ ଗୁରି ଜଣ ପାଞ୍ଜିଆ ଏକାବେଳକେ କହି ପକାଇଲେ, "ସତ—ସତ, ପିଲାଟା ହେଲେ କଣ ହେଲା, କଥାଟାଏ ବୋଇଲା ଏକା ।" ହେଲେ ସାଆନ୍ତଙ୍କ ମୁହଁରୁ କଥା ବାହାରୁ ନାହିଁ, ଭକ ଭକ କରି ଗୁହିଁଛନ୍ତି । ସଇତା ବୁଝିଲାଣି, ସାଫ୍ ଜବାବ ମିଳିବ ନାହିଁ । 'ସାନ୍ତଙ୍କୁ କଣ ଏହି ହାଲରେ ସମସ୍ତଙ୍କ ଆଗରେ ଏଠି ପକାଇ ରଖିବ ? ଇଷ୍ଟଦେବତା ଗୋବିନ୍ଦଚନ୍ଦ୍ର ସାହା ହେବେ ।' ଅଣ୍ଟା ଭିଡ଼ ବାହାରି ପଡ଼ିବାକୁ ସଜ ହେଲା । ଡାକଦେଲା, "ଆପଟେ ! ଭିଡ଼ ପାଲିକି । ଆପଟେ ଖୁବ୍ ଗୋଟାଏ ଆଶା କରି ବାଟରୁ ଧାଇଁଛନ୍ତି, ସାନ୍ତ ଉଆସରୁ ଖୁବ୍ ବଡ଼ ଛଞ୍ଚାଟାଏ ଆସିବ, ମନ ମାଫିକେ ଦୁଇ ଓଳି ଖାଇ ଧକ ମେଣ୍ଟିବେ । ଉଆସରୁ ଖଜାଖିଆ ବି ମିଳିବ । ଏତେବେଳେ ସେମାନେ ବି କଣ ସହଜରେ ପାଲିକି ଉଠାଉଛନ୍ତି ? ସଇତା ଦୁଇ ତିନି ଥର ଡାକିବାରୁ ଜବାବ ଦେଲେ, "ଏ ବାରିକ ଭାଇ ! ଆମମାନଙ୍କୁ ମାରିପକା ପଛକେ, ଲେଉଟାଏ ବି ଉଠାଇ ପାରିବୁ ନାହିଁ । ଆମମାନଙ୍କର ମଣିଷଜୀବନ ନା ଆଉ କଣ ।"

ବାରିକେ ଆପଟମାନଙ୍କ ନାଡ଼ୀ ଚିହ୍ନନ୍ତି । ଟଙ୍କା ଆଠଣି ଗିନି ପୂରି ଗୋଟାଏ ଗାଞ୍ଜିଆ ସଇତା ଚିନ୍ହା ଖଦି ତଳେ ଅଣ୍ଟାରେ ଭିଡ଼ା ଥିଲା, ଝଟ୍ ସେଟା ଫିଟାଇ ପକାଇ ସେଥିରୁ ଅଗଣା ଅଟୋଗ୍ଗ ମୁଠାଏ ଟଙ୍କା କାଢ଼ି ଆପଟମାନଙ୍କ ହାତରେ ଗୁଞ୍ଜି ଦେଇ କହିଲା, "ଉଠାଅ, ଗୋବିନ୍ଦପୁର ତୋଟାରେ ବାଣ୍ଟିଦେଇ ଖାଇବ ।"

ଟଙ୍କା ବଳ ଭାରି ବଳ । ତାହାର କେମନ୍ତ ଗୋଟାଏ ବୈଦ୍ୟୁତିକ ଶକ୍ତି ଅଛି, ଅଣ୍ଟାରେ ଗୁଞ୍ଜିଲେ ଦେହ ଯାକରେ ଦୁଇ ଗୁଣ ବଳ ଖେଳିଯାଏ । ଆଉ ଓଜର ନାହିଁ । ଟେଂଅଲ ସବାନ୍ଥଟା କାନ୍ଧେଇ ପକାଇ 'ହୁଁ ମେର ଭାଇ ରେ···ଖଡ଼ପା ପାହି ରେ—ହୁସିଆର କରି ରେ' କହି ଧାଇଁଛନ୍ତି ।

ବେଳ ଅନୁମାନ ନ' ଘଡ଼ି ସମୟରେ ଆପଟେ ଗୋବିନ୍ଦପୁର ତୋଟାରେ ଦୁମ୍ କରି ସବାରି ଖଣ୍ଡ ଥୋଇ ଦେଇ ଦେହ ତୋଗ୍ଗରେ ବାଞ୍ଚ ହେବାକୁ ଲାଗିଲେ । ପାଟି କରି ଡାକ ଦେଲେ, "ଆହେ ବାରିକ ଭାଇ ! ବେଗି ବେଗି ପଞ୍ଚା ସଜିଲା କରିଦିଅ, ଆଉ ତର ସହିବ ନାହିଁ । ଉଛୁଣିକା ପେଟକୁ ଦିଅ, ପଛକେ ପିଠିରେ ମାରିବ ।"

ସଇତା ସାନ୍ତଙ୍କ ପିନ୍ଧିବା ଲୁଗାଗୁଡ଼ାକ କାଢ଼ି ପକାଇ ଶୁକ୍ଳ ସଫା ଲୁଗା ପିନ୍ଧାଇ ଦେଲା । ଗ୍ରୀଅଙ୍ଗ ଘା ଜାଗାମାନ ଧୋଇଧାଇ ଦେଇ କନାପଟି ବାନ୍ଧି ଦେଲା । ଘୋଡ଼ାଏ ଟଙ୍କା ଯୋଡ଼ାଏ ଆଟେ ଧରି ଧାଇଁଛି । ଗୋବିନ୍ଦପୁର ଗାଁ । ତୋଟା ପାଖକୁ ଅଧ କୋଶରୁ ଉଣା

ନୁହେଁ । ଗାଁରେ ଦୋକାନ ନାହିଁ, ରାମ ନାୟକ ଘରେ ଡାଲି ଚାଉଳ ତେଲ ଲୁଣ ଗୋଟେଇ ସରଞ୍ଜାମ ସବୁ ଜଗାଇ ରଖିଥାଏ । ବାଟୋଇମାନେ କେବେ କେବେ କଣ୍ଟନ୍ତି, ଥିଲା ନ ଥିଲା ବେଳେ ସାଇପଡ଼ିଶାଏ ବି କିଛି କିଛି କିଣି ନିଅନ୍ତି ।

ନାୟକ ଆପଣା କାମ ଧନ୍ଦାରେ ଲାଗିଥାଏ, ସଞ୍ଜ ସକାଳ ହାତରେ ପାଇଟି ନ ଥିବା ବେଳେ ପସରା ମେଲାଇ ବସେ । ସଇତା ଆପଟମାନଙ୍କ ଚଳିବା ଭଳି ଜିନିଷ ସବୁ କିଣି ଦେଇ ସାନ୍ତଙ୍କ ସକାଶେ ଦୁଧ ଖୋଜି ବସିଲା । ନାୟକ କହିଲା, "ମୋର ଗୋଟାଏ ଦୁହାଁଳି ଗାଈ ଅଛି ହିଁ, ହେଲେ ସେଟା ଦିନ ଦି ପହରବେଳେ ଦୁହାଁଯାଏ । ଉଚ୍ଛୁଣିକା ଦୁହିଁଲେ ଗାଈଟା ଚମକି ଯିବ, ଭଲ ଦୁଧ ଦେବ ନାହିଁ ।" ସଇତା ନିହାତି ତରବରରେ କହିଲା, "ନାହିଁ ନାହିଁ ଦୋକାନୀ ! ଯେତେ ଦୁଧ ଦେବ ଦେଉ, ଯେତେ ଦାମ ନେବ ନେବ ।" ନାୟକ କହିଲା, "ଆଚ୍ଛା ହେଉ, ଯାଏଁ ଦେଖେ ।" ସଇତା ବାହାର ପିଣ୍ଡାରେ ବସି ଘର ଭିତରେ ସେଁ—ସାଁ ଦୁଧ ଦୁହାଁ ଶବ୍ଦ ଶୁଣୁ ଛି, ଆଉ ଶବ୍ଦ ନାହିଁ । ସଇତା ବୁଝିଲା, ଦୁଧ ଦୁହାଁ ସରିଲାଣି । ନିହାତି ଆକୁଳରେ ଡାକ ପକାଉଛି, "ଦୋକାନୀ, ଏ ଦୋକାନୀ ! ଦୁଧ ଚଞ୍ଚଳ ଆଣ ଭଲା । ମଠ କର ନା, ସେରକୁ ଅଠଣା ଦେବି ।" ନାୟକ ଦୁଧ ଘେନି ବାହାରି ଆସୁଥିଲା—ସେରକୁ ଅଠଣା ଯିମିତି ଶୁଣିଛି, ଠେକି ଭିତରକୁ ଅନାଇଲା, ଦୁଧ ଅଧସେରକୁ ବି ଊଣା । ମନରେ କଲା, ବାଟୋଇଟା ଯିମିତିକା ଆକୁଳ ହେଉଛି, ଜଣାଯାଏ, ନ ହେଲେ ନୁହେଁ । ଏଇଟା କତିରୁ ଅଠଅଣା ନେବାକୁ ହେବ । ଦୁଧ ଠେକିଟା ଶିକା ଉପରେ ଥୋଇ ଦେଇ ବାହାରି ଆସି କହିଲା, "ନାହିଁ ନାହିଁ, ବାବୁ ଦୁଧ ହେଲା ନାହିଁ । ସେଇ କଥା ମୁଁ ଆଗରୁ କହୁଥିଲି ପରା, ଉଚ୍ଛୁଣିକା ଗାଈ ଦୁଧ ଦେବ ନାହିଁ । ଦୁଧ ବି ହେଲା ନାହିଁ, ଆପଣଙ୍କ ସକାଶେ ମୋ ଗାଈଟା ବି ବିଗିଡ଼ିଲା ।"

କଥାଟା ଶୁଣି ସଇତା ତ କାନ୍ଦ ପକାଇବ—ଦୁଧ ନ ହେଲେ କଣ ସାନ୍ତଙ୍କ ଜୀବନ ରକ୍ଷା ହେବ ? ଚଞ୍ଚଳ ଉଠିପଡ଼ି ନାୟକର ହାତ ଧରି ପକାଇଲା—ଅତି ବ୍ୟାକୁଳରେ କହିଲା, "ଏ ଦୋକାନୀ ଭାଇ ! ଯିମିତି ହେଉ ସେରେ ଅବା ଯେତେ ମିଳିବ ଦୁଧ ଆଣି ଦିଅ, ଏଇ ଧର ସେରକର ଦାମ ଆଠଅଣା ।" ନାୟକ ଅଧୁଲିଟା ଧରି ଏ ଚିତ୍ ସେ ପଟ୍ ଦେଖିଲା—ବଷି ଆଙ୍ଗୁଳି ଉପରେ ରଖି ବୁଢ଼ାଆଙ୍ଗୁଳି ନଖରେ ଠଣ କରି ବଜାଇଲା । ବୁଝିଲା, ଭଲ ଅଧୁଲି ଏକା । ମନଭିତରେ ଭାରି ଖୁସି ହୋଇ ଗଲାଣି—କହିଲା, "ମହାଜନ ଆପଣେ, ପିଣ୍ଡାରେ ଟିକିଏ ବସନ୍ତୁ । ରାମ ବାରିକ ଘରେ ଦୁଧ ଥାଏ, ଦେଖେଁ ଅଛି କି ? ହେଉ ହେଉ ଆପଣେ ବସନ୍ତୁ, ଚିନ୍ତା କରିବେ ନାହିଁ, ଯେଉଁଠୁ ହେଲେ ଖୋଜି ଲେଉଡ଼ି ଆଣି ଦେବି ।" ଧଡ଼କରି କବାଟଟା ଆଉଜାଇ ଦେଇ ଭିତରକୁ ଚାଲିଗଲା । ମନରେ ପାଞ୍ଚିଲା, ମୁଁ ଯଦି ଝାଉଁକରି ଯାଏଁ, ଶଳା ମନରେ କରିବ, ଘରୁ ଦୁଧ ଦେଲା । ପଇସାପାଇଁ କିଛି ତୋଖଡ଼ ମୋଖଡ଼ କରିବ । ଖିସା ଭିତରୁ ଧୂଆଁ, ଶାଳପତ୍ର କାଢ଼ି କାହାଳଟାଏ ମୋଡ଼ି ବଣିଆ ନିଆଁରେ ଲଗାଇ ଭିଡ଼ି ବସିଛି । ଏଣେ ସଇତା ତ ଅଥୟ—'ଏ ଦୋକାନୀ ! ଏ ଦୋକାନୀ ।' ଭୁହାକୁ ଭୁହା ଡାକ ଛାଡ଼ୁଛି । ଶେଷକୁ କେଜାଣେ ନିହାତି ଆକୁଳରେ ଡାକ ଛାଡ଼ିଲା— କେଜାଣେ କାନ୍ଦ ପକାଇବ ପରା ! ନାୟକ ମନରେ କଲା ଆଉ ମଠ କଲେ ଚଳିବ ନାହିଁ । ଭିତରୁ ଜବାବ ଦେଲା, "ବସିବା ହେଉ, ବସିବା ହେଉ, ମହାଜନେ ! ଗାଁରୁ ଦୁଧ ଖୋଜି ଆଣି ଏହି ବାଡ଼ିଦୁଆର ବାଟେ ଧାଇଁ ଧାଇଁ ଅଇଲି ପରା ।" ସଇତା, "ଆଣ ଆଣ, ଆଉ ମଠ କର ନା ।" ନାୟକ ଶିକାରୁ ଠେକିଟା କାଢ଼ି ଭିତରକୁ ଅନାଇଲା—ଦୁଧ ପା ଦେଢ଼ରୁ ଅଧିକ ନୁହେଁ । ଘରଭିତରେ ପାଣି ଲୋଟାଟା ଥିଲା, ସେଥିରୁ ପାଣି ପା'ଦେଢ଼ ମିଶାଇ ଭିତରକୁ ଆଉ ଥରେ ଅନାଇଲା । ମନରେ କଲା, 'ହଁ—ଆଉ ଚଳିବ ନାହିଁ ।'

ବାହାର ଆସି କହିଲା, "ମହାଜନେ ! ଆପଣ ଭଲଲୋକ, ଦୁଧ ଠୋପାକ ପାଇଁ କହିଲେ—କଣ କରିବ; ଗାଁ ସାକ ଖୋଜ ଖୋଜ ଗ୍ରାମ ପରିଡ଼ା ଘରୁ ପାଇଲି, ଧରି ଧାଇଁଛି । ନଅ ନଅ ।" "ଦିଅ—ଦିଅ ଚଞ୍ଚଳ ଦିଅ" ବୋଲି କହି ସଇତା ହାତଟା ବଢ଼ାଇ ଦେଲା ।

ନାୟକ—କାହିଁରେ ନେବ, ଜାଗା ଆଣ ।

ସଇତା—ଜାଗା ତ ଆଣିନାହିଁ, ସେଇ ଠେକରେ ଦିଅ ।

ନାୟକ—ନାହିଁ ନାହିଁ, ଏଟା ମୋ ଦୁଧଦୁହାଁ ପାକଲା ଠେକ, କପରି ଦେବ ?

ସଇତା—ଏ ଦୋକାନୀ ! ତୁମକୁ ହାତ ଯୋଡ଼ୁଛି, ଆଉ କିଛି ବୋଲ ନା, ଠେକଟା ବଢ଼ାଇ ଦିଅ ।

କେଜାଣେ କପାଁଇଁ ନାୟକ ମନରେ ଟିକିଏ ଦୟା ବସିଲା—କହିଲା, "ହେଉ ହେଉ, ଘେନ ଯାଉନ୍ତୁ । ମୁଁ ଯାଇ ଘେନ ଆସିବି । ତୋଟାରେ ଅଛନ୍ତି ତ ?"

ସଇତା ଡେବିରି ହାତ ପାପୁଲି ଉପରେ ଠେକ ଥୋଇ ଦୁଧ ପଡ଼ିବ ବୋଲି ଖାଲିହାତ ପାପୁଲିଟା ଠେକ ମୁହଁପରେ ଦେଇ ତୋଟାମୁହାଁ ଧାଇଁଛି ।

— —

## –୩୪–

## ଗ୍ରେରୀକଥା

ଦୁର୍ଗନ୍ଧ ଆଉ ମନ୍ଦ କଥା ବେଗି ବେଗି ପବନରେ ମେଲିଯାଏ । ସାନ୍ତଙ୍କ ଉଆସର ଡକାୟତି ଖବରଟା ଦିନ ପହରକ ସରିକ ସମସର ପୁର ତାଲୁକ ଗୋଟାଯାକ ମେଲିଗଲାଣି । ମୁହଁକୁ ମୁହଁ କଥାଟା ନାନା ରୂପ ଧରି ମେଲି ଯାଇଛି । ସବୁ ଦେଶରେ, ସବୁ ଜାଗାରେ ଗୁଡ଼ାଏ ଡମ୍ଫା କଥାବକା ଲୋକ ଥାନ୍ତି । ଗୋଟାଏ କିଛି ନୂଆ ରକମ କଥା ପାଇଲେ ସେଟା କହିବୁଲିବା ସେମାନଙ୍କର ବେଉସା ହୋଇଯାଏ । ତାଲୁକ ଭିତରେ କଥାଟା ସ୍ଥିର ହୋଇ ଗଲାଣି, ଦେଶ ମଧ୍ୟରେ ଯେତେ ଡକାଇତି ହେଉଛି, ସବୁ ଜୁଆଁଇ ବାବୁଙ୍କର କାମ । ସାନ୍ତଙ୍କ ଉଆସ ଆଗଗୁମୁଆରେ ପାଲିକିବୁହା କଟକୀ ଯେଉଁ କାଳିଆ କାଳିଆ ଭୁଜଙ୍ଗା ଆଠଟମାନେ ଦେହ ପୋଚ୍ଛ ଖଣ୍ଡମାନ ମେଲାଇ ଶୋଇ ପଡ଼ିଥିଲେ, ଥୋକେ ବାଛୋଇ ଠିକ କଲେ, ଏମାନେ ଡକାଇତ, ସାନ୍ତଙ୍କ ସାଙ୍ଗରେ ଧରି ପଡ଼ିଛନ୍ତି । ସେମାନେ ବାଟଯାକ କଥା କହିବାରେ ଲାଗିଛନ୍ତି । ଗୋଟାଏ ଗୋଟାଏ ଅତି ବୁଢ଼ିଆ ଲୋକ ଠିକ୍ କରିନେଲେ, ଏହି କେତେଜଣ ନୁହେ—ଡକାଇତ ପୋଆକୁ ପଞ୍ଝା—ଗୋଟାଏ ଗୋଟାଏ ପଞ୍ଝାରେ ପନ୍ଦର କୋଡ଼ିଏ ଡକାଇତ । ସବୁ ପଞ୍ଝାରେ ଜୁଆଁଇ ବାବୁ ସରଦାର । ସେ କଟକରେ ବସିଥାଇ ଜାଗା ବରଜାଗାକୁ ଡକାଇତମାନଙ୍କୁ ପଠାଇ ଦିଅନ୍ତି ।

ଦୋସମାଳ ଲଗାଲଗି ସମସରପୁର ତାଲୁକ କେତେଟା ଗ୍ରାମର ଥୋକେ ପ୍ରଜାଙ୍କୁ ଜମିଦାର ବୈଷ୍ଣବ ଚରଣ ପଟ୍ଟନାୟକେ ଜେଲ କରାଇ ଦେଇଥିଲେ, ସେମାନଙ୍କ ମନ ଭିତରେ ବଡ଼ ରାଗ ଥିଲା । ଜମିଦାର ତ ବଡ଼ଲୋକ, କଣ କରିବେ, ପେଟ ଭିତରେ ସାପ ପରି ମୋଡ଼ାମୋଡ଼ି ହୋଇ ପଡ଼ିଥିଲେ । ଏତିକ ବେଳେ ପଡ଼ିଗଲା ଦାଉ, ଆପଣା ଆପଣା କାମ ପାଇଟି ଗୁଡ଼ି ଭାରି ଆନନ୍ଦରେ ଝିଙ୍କଡ଼ ତାଲୁକର ପ୍ରଜାମାନଙ୍କୁ ଶୁଣାଇ କହି ବୁଲୁଛନ୍ତି, "ଦେଖ ତ ଏଡେ ଲୋକ ପୁଅଟା, କ'ଣ ବା ନାହିଁ, କୋଡ଼ିକୁ କୋଡ଼ି ଡକାଇତ ଧରି ଗାଁକୁ ଗାଁ ଗ୍ରେଷି—ଏ କଣ ରେ ? ଛିଃ ଛିଃ ଛିଃ ! ଧର୍ମ ଅଛି ତ ପାପ ବେଉସା କେତେ ଦିନ ଚଳେ ? ସରଦାର ହାତରେ ଦୋହରି ବେଡ଼ି, ଆଉ ସମସ୍ତଙ୍କ ହାତ ହଳକୁ ହଳ ବନ୍ଧା । ସଦରରୁ ନିଜେ ମେଜେଷ୍ଟର ସାହେବ ଦେଡ଼ଶ ଭଲ କନେଷ୍ଟବଲ ଧରି ଆସିଥିଲେ, ହାତକୁ ହାତ ଗ୍ରେପ୍ ମାଲ ଧାବୁନ୍ତି, ଏଇଥର କଳାପାଣି ଦାଖଲ । ଓ ହୋ ! ଡକାଇତ ଡରରେ ତାଲୁକ-

ଗୋଟାକୁ ରାତ୍ରରେ ନିଦ ନ ଥିଲା । ଏବେ ଟିକିଏ ନିଶ୍ୱାସ ପକାଇ ଶୋଇବୁଁ । ଏ ପଞ୍ଝାରେ ଚଲାଣ ଗଲେ ଅଢ଼େଇ ବୋଡ଼—ଡର ଡକାଇତ ପଳାଇଯାଇଛନ୍ତି—କୁମ୍ପାନୀ ମୁଲକରେ କେଉଁଠି ଲୁଚିବେ ?"

— - —

-୩୫-

## ଇନ୍ଦୁମତୀ ପ୍ରସଙ୍ଗ

ଗୋବିନ୍ଦଚନ୍ଦ୍ରଙ୍କ କଷ୍ଟକପାହାର ଆଜି ଚତୁର୍ଥ ଦିବସ । ଘଟଣା ସମୟଠାରୁ ଇନ୍ଦୁମତୀ ଏପାଏଁ ଅଚେତ ହୋଇ ଶେଯରେ ପଡ଼ିଛନ୍ତି । କେବେ କେବେ ଚେତା ବସିଲେ ଗୁଡ଼ାଏ ବାଉଳା ହୁଅନ୍ତି । ଗୁଡ଼ାଏ ଦାସୀ ପାଳି କରି ଦିନ ରାତ୍ର ବେଢ଼ି ବସିଥିଲେ ହେଁ ମରୁଆର ଗୃହ ଦିନ ହେଲା ଆହାର ନିଦ୍ରା ନାହିଁ । ଦିନରାତ୍ର ନେମାଙ୍କ ମୁହଁକୁ ଅନାଇ ଠାଁ ବସିଛି । ସାନ ତାଳପଙ୍ଖାଟିଏ ହାତରେ ଧରି ବେଳେ ବେଳେ ବିଞ୍ଚୁଥାଏ । ବହୁତ କଷ୍ଟରେ ବିଶେଷ ଯତ୍ନରେ ଟିକିଏ ଟିକିଏ ଦୁଧ ପିଆଇ ଦେଉଛି । ଇନ୍ଦୁମତୀ କେତେବେଳେ ବା ଢୋକେ ଢୋକେ ଦିଅନ୍ତି, କେତେବେଳେ ଦୁଇ କଳ ଦେଇ ବୋହିଯାଏ । ଇନ୍ଦୁମତୀଙ୍କ ଶରୀର ସ୍ପନ୍ଦନ ପରି ମାନସିକ ଚିନ୍ତା ଭାବନାଶୂନ୍ୟ । ଚତୁର୍ଥରାତ୍ରି ଶେଷ ମୁହୂର୍ତ୍ତରେ ଇନ୍ଦୁ ସ୍ୱପ୍ନରେ ଦେଖିଲେ – ସହସ୍ର ଚନ୍ଦ୍ର-ଜ୍ୟୋତିବିଭାସିତ ନିର୍ମଳ ଗଗନମଣ୍ଡଳରେ ଅପାର୍ଥିବ କୁସୁମମାଳାମଣ୍ଡିତ ଅତି ସ୍ନିଗ୍ଧ କୋମଳ ସହସ୍ର ସୂର୍ଯ୍ୟ-କିରଣପ୍ରତିଭାତ ରତ୍ନମୟ ସିଂହାସନରେ ଜ୍ୟୋତିର୍ମୟ ନାନା ରତ୍ନାଳଙ୍କାରବିଭୂଷିତା ମାତୃମୂର୍ତ୍ତି ବିରାଜିତା । ସେହି ଦେବୀମୂର୍ତ୍ତି ଯେମନ୍ତ ଅତି କୋମଳ ଅଭୟ କୋଳ ବିସ୍ତାର କରି କିଣ ସଙ୍କେତ କରୁଛନ୍ତି । ଇନ୍ଦୁମତୀ ଅନିମେଷନେତ୍ରରେ ସେହି ଅଭୟା ଶାନ୍ତିଦାୟିନୀ ମୂର୍ତ୍ତିକୁ ଦୃଷ୍ଟି ରହିଛନ୍ତି । ନିଶାବସାନ ସମୟରେ ସେ ଯେମନ୍ତ ଅନୁଭବ କଲେ, ଦେବୀ ଆଦେଶ କରୁଛନ୍ତି—'ଇନ୍ଦୁ ! ପ୍ରସ୍ତୁତ ହୋ—ଏହି କୁଟିଳ କଳୁଷମୟ ସ୍ୱାର୍ଥପୂର୍ଣ୍ଣ ସଂସାର ତୋ'ପାଇଁ ନୁହେ । ଆଜୀବନ ଶ୍ରୁତ ଉପଦେଶ ସ୍ମରଣ କର—ସତ୍ୟଭ୍ରଷ୍ଟ ହେବାଠାରୁ ମୃତ୍ୟୁ ବାଞ୍ଛନୀୟ । ମନର ଦୁର୍ବଳତା ଜନିତ ହେଉ ପଛକେ, ଜ୍ଞାତସାରରେ ଯେଉଁ ଅଧର୍ମ ଅର୍ଜନ କରିଛୁ, ସେଥିପାଇଁ ପ୍ରାୟଶ୍ଚିତ୍ତ ପ୍ରୟୋଜନ ।' ବିନୋଦବିହାରୀଙ୍କ ମଙ୍ଗଳ ଆରତ୍ରି ଘଣ୍ଟା ଶୁଣି ଇନ୍ଦୁଙ୍କ ନିଦ ଭାଙ୍ଗି ଗଲା । ସେ ମନ ମଧ୍ୟରେ ଅନୁଭବ କଲେ, ସେହି ଦେବୀମୂର୍ତ୍ତିଙ୍କଠାରୁ ଗୋଟିଏ ବିଶାଳ, ନିର୍ମଳ, ଜ୍ଞାନଦ, ବଳଦ, ସ୍ନିଗ୍ଧ ଜ୍ୟୋତିଃପୁଞ୍ଜ ବହିର୍ଗତ ହୋଇ ତାଙ୍କ ଦେହରେ ପ୍ରତ୍ୟେକ ଶିରା ଉପଶିରା, ପ୍ରତ୍ୟେକ ରକ୍ତବିନ୍ଦୁରେ ବ୍ୟାପ୍ତ ହୋଇଗଲା । ପ୍ରତିଦିନ ସକାଳେ ନିଦରୁ ଉଠି ବସିଲା ପରି ବିଛଣାରେ ଉଠି ବସିଲେ । ଗଲା ରାତିଯାଏଁ ଯୋଡ଼ାଏ ଟୋଇଲା ନ ଧରିଲେ ଉଠି ବସି ପାରୁ ନ ଥିଲେ, ଉତ୍ତରୁଣିକା ସେ ସାହାଯ୍ୟ ଲୋଡ଼ା ନାହିଁ । ହେଲେ, ମନ ବା ଜ୍ଞାନରେ ସୁଖ ଦୁଃଖ କିଛି ଜଣା ପଡ଼ୁ ନାହିଁ । କି ପ୍ରକାର ଗୋଟାଏ ଅପୂର୍ବ ଭାବ ଉଦୟ ହୋଇଛି । ଇନ୍ଦୁମତୀ କାହାରିକୁ କିଛି ନ ବୋଲି, କାହାରି ସାହାଯ୍ୟ ନ ଲୋଡ଼ି ସକାଳଆ ନିତି ସବୁ ଆପେ ଆପେ ବଢ଼ାଇଲେ । ପ୍ରତି-ଦିନ ଦେହପାଣି ବଢ଼ାଇ ଦୁଇଦଣ୍ଡ ଯାଏଁ ପୂଜା ଏବଂ ଗୀତା ପାଠ କରିଥାନ୍ତି । ଏହା ମାତୃଦେବୀଙ୍କ ଦତ୍ତ ଶିକ୍ଷା ଏବଂ ଉପଦେଶ । ସ୍ନାନ ସାରି ଖଣ୍ଡିଏ ନୂଆ ପାଟଶାଢ଼ୀ ପିନ୍ଧିଲେ ଏବଂ ମାତୃଦତ୍ତ ସମସ୍ତ ଅଳଙ୍କାର ଦେହରେ ଲଗାଇଲେ । ଉପାସନା ନିମନ୍ତେ ଗୋଟିଏ ସ୍ୱତନ୍ତ୍ର କୋଠରୀ ଅଛି । ପୂର୍ବେ ତାହା ମାତୃଦେବୀଙ୍କର ଉପାସନା-ମନ୍ଦିର ଥିଲା । ଉପାସନାନ୍ତେ ଆଖି ବୁଜି ଧ୍ୟାନ କଲାବେଳେ ତାଙ୍କୁ ଜଣାଗଲା, ସେହି ମାତୃମୂର୍ତ୍ତି ଯେମନ୍ତ ସମ୍ମୁଖରେ ଭାସିଯାଉଛନ୍ତି । ଇନ୍ଦୁମତୀ ସେହି ଦେବୀ-ମୂର୍ତ୍ତିକୁ ଲକ୍ଷ୍ୟ କରି ହାତ ଯୋଡ଼ି ପ୍ରାର୍ଥନା କଲେ, "ମା ! ଜୀବନଦାୟିନି, ଉପଦେଷ୍ଟ୍ରୀ ମା ! ମୋହର ପ୍ରତିପାଳନ, ମୋହର ସୁଖସ୍ୱାଚ୍ଛନ୍ଦ୍ୟ ବିଧାନରେ ଆଜୀବନ ଯତ୍ନଶୀଳା ମା ! ସତ୍ୟମାର୍ଗରେ, ଧର୍ମମାର୍ଗରେ ଜୀବନ ଯାପନ

କରିବାକୁ ସବୁବେଳେ ଉପଦେଶ ଦେଇଥିଲ ମା ! ତୁମ୍ଭେ ବର୍ତ୍ତମାନ ନିୟତିର ବିଧାନରେ ସ୍ୱର୍ଗସ୍ଥା—ତୁମ୍ଭ ପବିତ୍ର ସହବାସରୁ ମୁଁ ବିଚ୍ୟୁତ – ହେଲେ, ପ୍ରତିନିୟତ ତୁମ୍ଭଦତ୍ତ ଉପଦେଶ ସ୍ମରଣ କରୁଥିଲି । ତୁମ୍ଭେ ଜାଣ ମା ! ଦେବି ! ସର୍ବଦ୍ରଷ୍ଟା ଈଶ୍ୱର ସାକ୍ଷୀ, ମୁଁ କେବେ-ବେଳେ ଧର୍ମମାର୍ଗରୁ ବିଚ୍ୟୁତ ହୋଇ ନାହିଁ, କୌଣସି ପ୍ରକାର କଳୁଷିତ ଭାବନା ମୋ ମନରେ ସ୍ଥାନପ୍ରାପ୍ତ ହୋଇ ନ ଥିଲା । ମା ତୁମ୍ଭର ପବିତ୍ର କୋଡ଼ରୁ ବିଚ୍ୟୁତ ହୋଇ ଦାରୁଣ ଦୁର୍ଦ୍ଦଶାରେ ପଡ଼ିଛି ମା ! ତୁମ୍ଭର ସେହି ପୂତ ଅମିୟକୋଡ଼ରେ ଆଉ ବେଳେ ସ୍ଥାନ ଦିଅ ମା ! ମା ! ତୁମ୍ଭ ଆଜ୍ଞା ଲଙ୍ଘନ କରିଛି— ସମ୍ପ୍ରତି ମୁଁ ସତ୍ୟଭ୍ରଷ୍ଟା, ମିଥ୍ୟାବାଦିନୀ, ପାପକାରିଣୀ । ମୋ ଅଧର୍ମ ସକାଶେ ଅନ୍ୟ କେହି ଦାୟୀ ନୁହନ୍ତି । କ୍ଷଣିକ ଚିତ୍ତଦୌର୍ବଲ୍ୟ ଉପସ୍ଥିତ ଦାରୁଣ ପାପର ମୂଳ-କାରଣ । ତୁମ୍ଭେ ବାଲ୍ୟକାଳରୁ ଯେଉଁ ସତ୍ୟର ମହିମା ଶିକ୍ଷା ଦେଇଥିଲ, ସେଥିରୁ ବିଚ୍ୟୁତ ହୋଇ ଦାରୁଣ ଯନ୍ତ୍ରଣା ଭୋଗ କରୁଛି । ଶିକ୍ଷା ଦିଅ ମା ! କି ପ୍ରାୟଶ୍ଚିତ୍ତ କଲେ ଏଥିରୁ ମୁକ୍ତିଲାଭ କରିବି ? ମୋର କ୍ଷୁଦ୍ର ବିବେଚନାରେ ଚରମ ପ୍ରାୟଶ୍ଚିତ୍ତ ବିନା ଅନ୍ୟ ଉପାୟ ଦେଖୁନାହିଁ । ସର୍ବପ୍ରକାର ଦଣ୍ଡଭୋଗ କରିବାକୁ ମୁଁ ପ୍ରସ୍ତୁତ ଅଛି । ସହସ୍ର ବଜ୍ରପାତକୁ ମୁଣ୍ଡ ପତାଇ ଗ୍ରହଣ କରିବାକୁ ମୁଁ କାତର ନୁହେ ।”

‘ହାୟ ! ହାୟ ! ଧିକ ମୋ ଜୀବନକୁ ! ମୋ ମସ୍ତକର ଦେବତା, ମୋ ଚିର ଜୀବନର ଆଶ୍ରୟ-ସ୍ଥଳ, ଦୋଷକଳଙ୍କ ଶୂନ୍ୟ ମୋ ଦେବତା କେବଳ ମିଥ୍ୟାବାଦିନୀର ପ୍ରତାରଣାମୟ ପତ୍ର ଖଣ୍ଡିକ ବିଶ୍ୱାସ କରି ଦାରୁଣ ଯନ୍ତ୍ରଣା ଭୋଗ କରୁଛନ୍ତି । ମୋ ପରି ତୁଚ୍ଛ ଦାସୀଟା ସକାଶେ ଜ୍ଞାତି ବନ୍ଧୁ କୁଟୁମ୍ବ ବଂଶାଭିମାନ ବିଶାଳ ଭୂସମ୍ପତ୍ତି ଅତି ସହଜରେ ସମସ୍ତ ତ୍ୟାଗ କଲେ । ହାୟ ! କୃତଘ୍ନ, ନିଷ୍ଠୁର ପାପୀୟସୀ ମୁଁ ତାହାଙ୍କ ନିର୍ମଳ-ଚରିତ୍ରରେ କି ଜଘନ୍ୟ କଳଙ୍କ ଲଗାଇଦେଲି ! କୁସୁମାଘାତସହନାକ୍ଷମ ସୁଗଠିତ କୋମଳ ଅଙ୍ଗରେ କି ଦାରୁଣ ଆଘାତ ! ହାୟ ହାୟ ହାୟ !’

ଇନ୍ଦୁମତୀ ସ୍ୱାମୀ ସମ୍ବନ୍ଧରେ ଆଉ ଅଧିକ କିଛି ଚିନ୍ତା କରିପାରିଲେ ନାହିଁ । କିପରି ଅବସ୍ଥାରେ କାହିଁ ରହିଲେ ? ହେଲେ, ତାଙ୍କ ପ୍ରତି କିଛି ଅମଙ୍ଗଳ ଘଟଣା ଘଟି ନାହିଁ, ମୋ ହୃଦୟରୁ ଏହିର ପରିଚୟ ପାଇଛି, ଅନ୍ୟଥା ହୃତ୍ପିଣ୍ଡ ଭିନ୍ନ ହୋଇଯାନ୍ତାଣି । ମାଙ୍କ ମୁହଁରୁ ଢେର ଥର ଶୁଣିଛି, ପତିପରାୟଣା ସତୀ ସ୍ତ୍ରୀମାନଙ୍କୁ ବୈଧବ୍ୟ ଯନ୍ତ୍ରଣା ଭୁଞ୍ଜିବାକୁ ହୁଏ ନାହିଁ । ମୁଁ ତ ଚିରଜୀବନ କୌଣସି ପ୍ରକାର କଳୁଷିତ କାର୍ଯ୍ୟ କରିବା ଥାଉ, ମନ ମଧ୍ୟରେ ଚିନ୍ତା ବି କରି ନାହିଁ । ହେଲେ, କ୍ଷଣିକ ଚିତ୍ତଦୌର୍ବଲ୍ୟ ହେତୁ ଯେଉଁ ମହାପାପ ଅର୍ଜନ କରିଛି, ସେଥି ସକାଶେ ପ୍ରାୟଶ୍ଚିତ୍ତ ନିତାନ୍ତ ପ୍ରୟୋଜନ ।’

‘ହାୟ ! କି ଭାଗ୍ୟହୀନା ମୁଁ, ପ୍ରଭୁଙ୍କର ଏହି ଦାରୁଣ ଯନ୍ତ୍ରଣା ସମୟରେ ଦିବା ନିଶି ପଦତଳେ ବସି ସେବା କରିବି କଣ, ବେଳେ ଦର୍ଶନ ମଧ୍ୟ ମୋ ଭାଗ୍ୟରେ ଘଟିଲା ନାହିଁ । ହେଉ ତାଙ୍କ ଶ୍ରୀଚରଣ ହୃଦୟରେ ଧ୍ୟାନ କରି ପ୍ରାୟଶ୍ଚିତ୍ତ ସମାପନ କରିବି ।’

———

-୩୭-

## ନୈରାଶ୍ୟ

ହିନ୍ଦୁର ସମସ୍ତ ଦର୍ଶନଶାସ୍ତ୍ର ତଥା ସର୍ବଶ୍ରେଷ୍ଠ ଧର୍ମଗ୍ରନ୍ଥ ଭଗବଦ୍‌ଗୀତାର ମୂଳ ସୂତ୍ର ଦୁଃଖବାଦ । ସ୍ୱୟଂ ମହର୍ଷି ଗୌତମ ମଧ୍ୟ ଦୃଢ଼ରୂପେ ବୋଲି ଯାଇଅଛନ୍ତି, “ମାନବର ପୃଥିବୀକୁ ଆଗମନର କାରଣ କ୍ରନ୍ଦନ । ମାନବ ଜନ୍ମ ସମୟରେ କ୍ରନ୍ଦନ, ମୃତ୍ୟୁ ସମୟରେ କ୍ରନ୍ଦନ, ଜୀବନବ୍ୟାପୀ କାଳ କ୍ରନ୍ଦନମୟ ।” ମାନବସନ୍ତାନ

ସୁଖ ସୌଭାଗ୍ୟ ବୋଲି ଯାହା ଭୋଗ କରେ, ସେଠା ଦୁଃଖର ଅଭାବ ମାତ୍ର । ସୁସ୍ପଷ୍ଟ ଦେଖା ଯାଉଛି, ବିଧାତା-ପୁରୁଷ ମାନବସନ୍ତାନ ଅଦୃଷ୍ଟରେ ନିରବଚ୍ଛିନ୍ନ ସୌଭାଗ୍ୟ ଲେଖିବା ବିଷୟରେ ଯେମନ୍ତ ନିତାନ୍ତ କାର୍ପଣ୍ୟ ପ୍ରକାଶ କରିଅଛନ୍ତି ।

ତୁମ୍ଭେ ଦେବୀ ବୋଲ ଅବା ଦାନବୀ ବୋଲ, ଆଶା ମାନବସନ୍ତାନ ସମ୍ମୁଖରେ ସୁଖର ଆଲୋକ ଦେଖାଇ ତାହାକୁ ଅଗ୍ରସର କରାଉଥାଏ । ଅନନ୍ତ କୌଶଳୀ ଭଗବାନ୍ ଆଶାକୁ ପ୍ରେରଣ କରି ନ ଥିଲେ ମାନବ-ସମାଜର ଅବସ୍ଥା ଯେ କଣ ହୁଅନ୍ତା, କେଉଁ ଲୋକ ବୋଲିବାକୁ ସମର୍ଥ ହେବ ? ଘୋର ଯନ୍ତ୍ରଣାରେ ଅବସନ୍ନ ଶଯ୍ୟାଗତ ମାନବ ଜାଣେ ଯେ, ମୃତ୍ୟୁ ତାହାର ସମସ୍ତ ଯନ୍ତ୍ରଣାର ଅବସାନକାରୀ । ଆଶା ଆସି ହୃଦୟରେ ଯନ୍ତ୍ରଣା ଦେଲା, ଉପସ୍ଥିତ ବ୍ୟାଧିଜନିତ ଯନ୍ତ୍ରଣା ଚିରସ୍ଥାୟୀ ନୁହେ, ବିପୁଳ ସ୍ୱାସ୍ଥ୍ୟସୌଭାଗ୍ୟ ତାହା ସମ୍ମୁଖରେ ସଞ୍ଚିତ ରହିଅଛି । ତେତେବେଳେ ମାନବ ଧୈର୍ଯ୍ୟ ଧାରଣପୂର୍ବକ ସର୍ବସନ୍ତାପହାରୀ ମୃତ୍ୟୁଠାରୁ ଦୂରରେ ରହିବାପାଇଁ କାମନା କରି ରହିଥାଏ । ପୁତ୍ରଶୋକାତୁରା ଜନନୀ ଅସହ୍ୟ ଯନ୍ତ୍ରଣାରେ ଧରାବଲୁଣ୍ଠିତା, ଆଶା ଆସି ମନ୍ତ୍ରଣା ଦେଲା, 'ଚିନ୍ତା କଣ ? ଉଠି ଯା, ଆଉ ଗୋଟିଏ ପୁତ୍ରଲାଭ କରିପାରୁ ।' ତେତେବେଳେ ପୁତ୍ରବିୟୋଗବିଧୁରା ଜନନୀ ଉଠି ବସି ସାଂସାରିକ କାର୍ଯ୍ୟରେ ମନଃସଂଯୋଗ କରେ । ସ୍ୱର୍ଗାଦପି ଗରୀୟସୀ ଜନନୀ ଜନ୍ମଦାତ୍ରୀ—ପାଳନକର୍ତ୍ତ୍ରୀ, ଶିକ୍ଷୟିତ୍ରୀ, ଧର୍ମସୁଖଦାୟିନୀ ଜନନୀଙ୍କ ବିୟୋଗରେ ଇନ୍ଦୁମତୀ ଅନେକ ଦିବସ ପର୍ଯ୍ୟନ୍ତ ଶଯ୍ୟାଗତ ଥିଲେ । କାଳସ୍ରୋତରେ ସେହି ଦୁଃଖରାଶି କିଞ୍ଚିତ୍ ଭସିଯିବାରୁ ଆଶା ହୃଦୟ ମଧ୍ୟରେ ଉପସ୍ଥିତ ହୋଇ ମନ୍ତ୍ରଣା ଦେଲା, 'ଉଠି ବସ ଇନ୍ଦୁ, ଧୈର୍ଯ୍ୟ ଧର । ଜନନୀ ଜନ୍ମଦାତ୍ରୀ ପ୍ରତିପାଳିକା ମାତ୍ର ଚିରସଙ୍ଗିନୀ ନୁହନ୍ତି । ବିଧିବିଧାନ ଅନୁସାରେ ତୁମ୍ଭ ପ୍ରତି ତାହାଙ୍କର କର୍ତ୍ତବ୍ୟ କର୍ମ ସମାପନ କରି ଉପଯୁକ୍ତ ସମୟରେ ନିୟତିର ଆହ୍ୱାନରେ ପରମ ଗତି ଲାଭ କରିଅଛନ୍ତି । ଏହା ବିଧିସୃଷ୍ଟ ଜଗତର ଅପରିହାର୍ଯ୍ୟ ନିୟମ ଅଟେ । ନାରୀ-ଜୀବନରେ ଅନେକଗୁଡ଼ିଏ କର୍ତ୍ତବ୍ୟ କର୍ମ ଅଛି, ଉପଯୁକ୍ତରୂପେ ସେହି କର୍ତ୍ତବ୍ୟ ପାଳନହିଁ ଧର୍ମ । ଭବିଷ୍ୟତ୍ ତିମିରରାଶି ଭେଦ କରି ଏକ ଦେବପୁରୁଷ ଆସୁଅଛନ୍ତି । ତାହାଙ୍କ ଆଶ୍ରୟରେ ଥାଇ ତାହାଙ୍କ ସାହାଯ୍ୟରେ ସମସ୍ତ କର୍ତ୍ତବ୍ୟ କାର୍ଯ୍ୟ ସାଧନ କରିବାକୁ ସମର୍ଥ ହେବ । ସେହି ସୁଧାମୟ ସମୟ ତୁମ୍ଭ ସମ୍ମୁଖରେ ଉପସ୍ଥିତ ପ୍ରାୟ ଜାଣ । ଉଠ, ତୁମ୍ଭର ସେହି ପ୍ରାଣେଶ୍ୱର ପରମସହାୟ ପୁରୁଷଙ୍କ ଶୁଭାଗମନ ପ୍ରତୀକ୍ଷା କର ।'

ନାରୀଜୀବନର ଏକମାତ୍ର ଆଶ୍ରୟ, ସମସ୍ତ ପ୍ରକାର ସୁଖସୌଭାଗ୍ୟଲାଭର ପରମ ସହାୟ ସେହି ଉପାସ୍ୟ ଦେବତା ଉପସ୍ଥିତ । ପ୍ରକୃତ ତାହାଙ୍କୁ ସ୍ୱର୍ଗୀୟ ଦେବ-ପ୍ରତିମା ବୋଲିବା ଅସଙ୍ଗତ ନୁହେ । ବିଷୟ ଐଶ୍ୱର୍ଯ୍ୟରେ ରାଜପୁତ୍ର, କୁଳମର୍ଯ୍ୟାଦାରେ ମୁକୁଟମଣି, ସ୍ୱାସ୍ଥ୍ୟ-ସୌନ୍ଦର୍ଯ୍ୟରେ ନବକିଶୋର କାର୍ତ୍ତିକେୟସ୍ୱରୂପ । କବିତ୍ୱଂ ଦୁର୍ଲଭଂ ଲୋକେ, ସ୍ୱଭାବପ୍ରଦତ୍ତ କବିତ୍ୱ-ଗୁଣଶାଳୀ—ସଂକ୍ଷେପରେ ବୋଲି ଯାଇପାରେ, ମାନବବାଞ୍ଛିତ ସମସ୍ତ ଗୁଣ ଯେମନ୍ତ ଏକାଧାରରେ ବିଦ୍ୟମାନ । ଜନ୍ମଜନ୍ମାନ୍ତର ଅର୍ଜିତ ପୁଣ୍ୟରାଶିର ବିଧିଦତ୍ତ ମହାବର ସହସା ସମ୍ମୁଖରେ ଉପସ୍ଥିତ । ସୁଖସୌଭାଗ୍ୟର ଅରୁଣ ଜ୍ୟୋତି ବିକାଶ, ମାତ୍ର ବିପଦରାଶି ବାରିଦପଟଳ ଆଚ୍ଛାଦିତ, ଏକସଙ୍ଗରେ ଯେମନ୍ତ ଶତ ସହସ୍ର ଦାରୁଣ କୁଳିଶ ଭାଙ୍ଗି ପଡ଼ୁଛି । ସମସ୍ତ ଦୁର୍ଯୋଗର ମୂଳ କାରଣ ଇନ୍ଦୁମତୀ ଆପଣାକୁ ଜ୍ଞାନ କରନ୍ତି । ଜୀବନାଶା ଏକାବେଳକେ ପରିତ୍ୟାଗ କରି ଯାଇଛି ।

———

—୩୭—

## ଦୈନିକ ନିତ୍ୟକାର୍ଯ୍ୟ

ଇନ୍ଦୁମତୀ କାହାରି ସହିତ କଥା ଭାଷା ନ କରି ଉଆସ ପ୍ରାୟ ସବୁ ଜାଗାରେ ବୁଲୁଛନ୍ତି । ସ୍ନାନ ଉପାସନା ନିୟମିତରୂପେ ବଢ଼ାଇଲେ । ଉଆସ ଅଗଣାରେ ମଲ୍ଲୀ ନିଆଳୀ ଜାଈ ଯୂଇ ପ୍ରଭୃତି କେତେ-ଗୁଡ଼ାଏ ଫୁଲ ଗଛ ଧାଡ଼ିବନ୍ଧା କରି ଲଗାଇଥିଲେ, ସେଗୁଡ଼ିକ ତାଙ୍କ ନିଜର ହାତଲଗା ଗଛ । ପ୍ରତିଦିନ ଓପରଓଳିଆ ମରୁଆ ଆଉ ସେ ନିଜେ ସାନ ସାନ ପିତ୍ତଳ ମାଠିଆ ଗୋଟିଏ ଗୋଟିଏ କାଖେଇ ନଈରୁ ପାଣି ଆଣି ଦିଅନ୍ତି, ଆଜି ମଧ୍ୟ ସେହିପରି ଦେଲେ; ତେବେ ଆଗେ ପାଣି ଦେବାବେଳେ ହସିଖୁସିରେ ସେହି ଗଛକଥା କେତେ କହୁଥିଲେ, ଆଜି ଦୁହେଁଯାକ ତୁନିତାନି ଗଛରେ ଜଳ ଦେଇ ଯାଉଛନ୍ତି । ଇନ୍ଦୁ ଯନ୍ତ୍ରଚାଳିତା ପରି କାର୍ଯ୍ୟରେ ନିଯୁକ୍ତା । ହେଲେ, ମରୁଆ ତାଙ୍କ ପ୍ରତି ବିଶେଷରୂପେ ଦୃଷ୍ଟି ରଖିଛି । ସେ ଦେଖୁଛି, ଇନ୍ଦୁ ମୁହଁରୁ ଦୁଃଖ ବା ସୁଖ କିଛି ହେଲେ ଚିହ୍ନ ଜଣାଯାଉ ନାହିଁ । ଇନ୍ଦୁର ମନ ବୁଝିବାପାଇଁ ମରୁଆ କିଛି କଥା ପଚାରିଲେ ହୁଁ କମ୍ବା ନାହିଁ, ଏତିକିମାତ୍ର ଉତ୍ତର ପାଏ ।

ଉଆସର ଲୋକେ ବୁଝିଛନ୍ତି, ଇନ୍ଦୁମତୀ ସବୁ ଦୁଃଖ ପାସୋରି ପକାଇଲେଣି । କାରଣ ସେ କାନ୍ଦୁ ନାହାନ୍ତି ବା ମଥା ପୋତି କେଉଁଠାରେ ତୁନି ହୋଇ ବସୁ ନାହାନ୍ତି । ଭୟଙ୍କର ଝଞ୍ଜାବାୟୁ ବହିବା ଆଗେ ଆକାଶ-ମଣ୍ଡଳ ପରି ଇନ୍ଦୁଙ୍କ ମୁଖମଣ୍ଡଳ ସ୍ଥିର ଏବଂ ଗମ୍ଭୀର । ଅଜଣା ଲୋକ ଦେଖିଲେ ମନରେ କରିବେ, ଏହାଙ୍କ ମନ ମଧ୍ୟରେ କୌଣସି ପ୍ରକାର ସୁଖ ବା ଦୁଃଖ ଜାତ ହୋଇନାହିଁ । ହେଲେ, ମରୁଆ ମନ ନିତାନ୍ତ ଅସ୍ଥିର, ଥରକୁ ଥର ଇନ୍ଦୁ ମୁଖକୁ ଚାହୁଁଛି ।

ଝିଅପାଇଁ ମା-ମଣିମା ଦୁଇ ତିନି ସାଜ କରି ସୁନାର ଅଳଙ୍କାର ଗଢ଼ାଇ ବାକ୍‌ସକୁ ବାକ୍‌ସ ଥୋଇ ଯାଇଛନ୍ତି । ମା ମଣିମା ଯେମନ୍ତ ସବୁଦିନେ ଅଳଙ୍କାର ଗଢ଼ାଇବାକୁ ଲାଗିଥାନ୍ତି, ନାନାପ୍ରକାର ଜଡ଼ଉ ସୁନା ଅଳଙ୍କାର ମଧ୍ୟ ନାନା ଜାଗାରୁ କିଣୁଥିଲେ । ବରଷକୁ ତିନି ଚାରି ଲକ୍ଷ ଟଙ୍କା ଘରେ ପଶେ । ଗୋଟିଏ ବୋଲି ଝିଅ, ସେଉଟି ବି ବଡ଼ ରୂପବତୀ, ଗୁଣବତୀ । ମା କଥା ଚଳେ ପଡ଼େ ନାହିଁ । ପୁଣି ସେଇଟି ହେଲା ଘରୁ ସମ୍ପତ୍ତିର ଉତ୍ତରାଧିକାରିଣୀ । ତାଙ୍କପାଇଁ ମା ଅନେକ-ଗୁଡ଼ାଏ ମୂଲ୍ୟବାନ୍ ଅଳଙ୍କାର ଗଢ଼ାଇଲେ, ଏଥିରେ ଅଧିକ କଥା କଣ ? ଇନ୍ଦୁ ଅଳଙ୍କାର ବାକ୍‌ସ ଫିଟାଇଲେ, ଯେତେ ପାରିଲେ ଦେହରେ ଲଗାଇଲେ । କେହି ଲୋକ ଭଲ କରି ଅନାଇଲେ ବୁଝି ପାରନ୍ତା, ସେ ଯେମନ୍ତେ ଆନନ୍ଦମନରେ ଯତ୍ନ କରି ଲଗାଉ ନାହାନ୍ତି । ଛୁଞ୍ଚା ଖଞ୍ଜି ଦେଇ ଯାଉଛନ୍ତି ।

ଅଳଙ୍କାର ପିନ୍ଧା ଦେଖି ମରୁଆ ଗୋଟାଏ ଟାଣ ନିଶ୍ୱାସ ପକାଇଲା । ତା ମନଟା ଯେମନ୍ତ କିରିକିମ ଛନ ଛନ ହେଉଛି, କିଛି କଥା ବୁଝି ପାରୁ ନାହିଁ ।

ଉଆସ ମଧ୍ୟରେ ତିନି ବୋଡ଼ି ସରିକି ଝୋଟା, ବୁଢ଼ୀ, ଦରବୁଢ଼ୀ ପୋଇଲୀ । ଇନ୍ଦୁମତୀ କାହା ପାଖକୁ ଚାଲି ଚାଲି ଯାଇ କାହାକୁ ବା ପାଖକୁ ଡାକି ଏଣୁ ତେଣୁ ସମସ୍ତଙ୍କୁ ପଦେ ପଦେ କଥା କହିଲେ । କାହାକୁ ସୁନା ମୁଦିଟାଏ, କାହାକୁ ବା ସୁନା କଙ୍କଣ ପଟେ, କାହାକୁ ଚୁଡ଼ି ପଟେ, ଏହିପରି ସମସ୍ତଙ୍କୁ ବାଣ୍ଟିଲେ ।

ବରଷକ ତଳେ ଦିନେ ଖରାଦିନିଆ ଓପରଓଳି ନିମା ପୋଇଲୀକୁ ତାଙ୍କ ଫୁଲଗଛରେ ପାଣି ଦେବାକୁ କହି ଆପେ ମରୁଆକୁ ଧରି କଚାପ ପଢ଼ି ବସିଲେ । ସଞ୍ଜବେଳେ ଯାଇ ଦେଖିଲେ, ଗଛରେ ପାଣି ଦିଆଯାଇ ନାହିଁ । ଭାରି ଖପାଟାଏ ହୋଇ ତାକୁ—"ଦୂର ଦୁର !

ତୁ ମରିଯା'' ବୋଲି ଗାଳି ଦେଲେ । ମାତ୍ର ଦଣ୍ଡକ ବାଦେ ଟିକିଏ ରାଗ ଶାନ୍ତ ହେବାରୁ ମନ ବଡ଼ ଆକୁଳ ହେଲା, ସେଦିନ ରାତିରେ ଭଲ ନିଦ ହେଲା ନାହିଁ । ସେହିଦିନ କତିରୁ ନିମାକୁ ଦେଖିଲେ ତାଙ୍କୁ ଲାଜ ମାଡ଼େ, ତା ମୁହଁକୁ ଅନାଇ ପାରନ୍ତି ନାହିଁ । ଉବୁଟିକା ଫେରି ସେଇ କଥାଟା ମନରେ ପଡ଼ିଗଲା । ନିମା ପାଖକୁ ଚାଲିଗଲେ, ଆପଣା ବେକରୁ ସୁନା ହାରଟାଏ କାଢ଼ି ତା ବେକରେ ଗଳାଇ ପକାଇ କହିଲେ, "ନିମା ! ମୁଁ ତୋତେ ଗାଳି ଦେଇଥିଲି, ତୁ କିଛି ମନରେ କରିବୁ ନାହିଁ, ମୋତେ କ୍ଷମା କରିବୁ ।'' ନିମା ତାଙ୍କ ଗୋଡ଼ତଳେ ପଡ଼େ ଭେ ଭେ ଡକା ପାରି କହିଲା, "ଆଜ୍ଞା, ଆଜ୍ଞା ! ତୁମ୍ଭ ଆଜି ଏ କେମିତି କଥା ଆଜ୍ଞା ଦେଉଛନ୍ତି !'' ଇନ୍ଦୁ ତାକୁ ଧରି ଉଠାଇ କହିଲେ, "ନାହିଁ ଲୋ ନାହିଁ, କିଛି କଥା ନାହିଁ, ତୁ ଉଠ୍ ଉଠ୍ ।'' ଆପଣା ପଣନ୍ତ କାନରେ ନିମା ଦେହରୁ ଧୂଳି ଝାଡ଼ିଝୁଡ଼ି ଦେଲେ । ଦାସୀଦଳରେ ଅଳଙ୍କାର ବଣ୍ଟାବଣ୍ଟି କଥା ସାନ୍ତଙ୍କ କାନରେ ପଡ଼ନ୍ତେ କହିଲେ, "ହେଉ ହେଉ, ତା ମନ ଟିକିଏ ବହଲି ଯାଉ ।''

ଉଆସ ମଧ୍ୟରେ ଆଜି ସମସ୍ତଙ୍କ ମନ ଖୁସି, ଏକା ଖୁସି ନାହିଁ ମରୁଆ ମନ । ସେ ଜେମାଙ୍କ ମୁହଁକୁ ଥରକୁ ଥର ଅନାଉଛି, ସବୁ କାର୍ଯ୍ୟ ଜଗି ଜଗି ଦେଖୁଛି । ହେଲେ ଜେମାଙ୍କ ମନ କଥା କଣ କିଛି ବୁଝି ପାରୁ ନାହିଁ । ପୁଣି ଭରସି କିଛି କଥା ତାଙ୍କୁ ପଚାରି ପାରୁ ନାହିଁ । ଜେମା ସବୁ କଥା ତାକୁ ବୋଲନ୍ତି । ଜେମାଙ୍କ ମନର ସବୁ କଥା ତାକୁ ଜଣା । ହେଲେ ଆଜି ତାକୁ କିଛି କଥା ବୋଲୁ ନାହାନ୍ତି । ପଚାରିଲେ ସେ କଣ ବୋଲିବେ ! ଏକଥା ବି ମରୁଆ ବୁଝିଲାଣି, ସେମନ୍ତ ତାଙ୍କ ମନରେ କିଛି ଗୋଟାଏ କଥା ଅଛି, ଜଗି ଜଗି ଚାଲୁଛନ୍ତି, ସେ କଥାଟା ମରୁଆ ନ ବୁଝୁ । ଛୁଞ୍ଚାଟାରେ ଯେମନ୍ତେ ମନ ଭିତରେ ଗୋଟାଏ ଡର ପଶିଲାଣି—ଆଉ କୁଆଡ଼କୁ ମନ ନ ଦେଇ ତାକୁ କାନଗଣ୍ଡିଲା କରି ରଖିଛି ।

———

## -୩୮-

## ମରୁଆ କଥା

ଭୀମସେଣ ମହଲ (ମଲ୍ଲ) ସମସରପୁର ତାଲୁକର ଛଅଟା ମୌଜାର ମୌରସି ମକଦମ । ଜମିଦାର ଶଙ୍କର୍ଷଣଙ୍କର ଜଣେ ବିଶ୍ୱାସୀ ସଙ୍ଗୀ ଲୋକ । ମହଲ ଜଣେ ମଧ୍ୟବିତ୍ତ ଲୋକ । ଧୂଳିଭାଗ ଛାଡ଼ି ଦଶହଳ ହାତ-ଚାଷ, ଆଉ ଆଉ ବିଷୟୁ ମଧ୍ୟ ସେହିପରି ଭଲ ଚଳେ । ଲୋକଟି ବଡ଼ ଧାର୍ମିକ, ପରୋପକାରୀ । ଏଥିଲାଗି ଗାଁ ଲୋକେ ତାକୁ ମାନନ୍ତି । ବାରମାସିଆ ଦିନମୂଲିଆ, ପୋଇଲା ପରିବାରୀ ଲଗାଇ ଘରେ ଦଶ ବାର ଜଣ ଲୋକ । ରାତି ଛ ଘଡ଼ିଯାଏ ଘରେ ଗହଳ ଲଗିଥାଏ ସତ, ହେଲେ ନିଜର କୁଟୁମ୍ବ ବୋଇଲେ ଗୃହିଣୀ ଦଶ ବରଷର ଝିଅଟିଏ, ନାମ ମରୁଆ । ଝିଅଟା ବଡ଼ ହୀନ-କପାଳୀ, ମାସକ କତିରୁ ମା ଛେଉଣ୍ଡି ।

ଆଶିଣ ଅଧ କତିରୁ କାର୍ତ୍ତିକ ଅଧାଅଧିଯାଏ ମଫସଲ ଗାଁରେ ସବୁ ବର୍ଷ ଲୋକମାନଙ୍କର ସର୍ଦ୍ଦି ଆଉ ଜର ହୁଏ । ଏ ବର୍ଷ କେମନ୍ତ ଜରଟାଏ ଆସିଛି, ମଣିଷକୁ ଧରିଲା ତ, ନେଲା ।

ଭୀମସେଣ ମହଲଙ୍କର ଭାରି ଜର, ଆଠଦିନ ହେଲା ବିଛଣା ଛାଡ଼ିବାକୁ ନାହିଁ । ଯୋଡ଼ାଏ ବୈଦ୍ୟ ଜଗି ବସିଛନ୍ତି । ଜମିଦାର ସାନ୍ତ ଦୁଇ ଓଳି ଆସି ରୋଗୀଙ୍କ ଔଷଧ ପାଣି ଆଉ ଆଉ କଥା ବୁଝାବୁଝି କରି ଯାନ୍ତି ।

ନ' ଦିନ ଦିନ ସଞ୍ଜବେଳେ ମହଲେ ଜମିଦାର ସାନ୍ତଙ୍କୁ ପାଖକୁ ଡକାଇଲେ । ଶୋଇଲା ଗୁମ୍ଫୀରଟାକୁ

ନବେଲା କରଦେଇ କହିଲେ, "ମଣିମା ! ମୋ ମରୁଆ ରହିଲା, ମୋର ସବୁ ଧନ ଖରଚ କର ତାକୁ ପାଳବେ, ଭଲ ପାଣ୍ଟିଏ ଲେଡ଼ ତା ହାତରେ ଦେବେ ।" ମହଲ ସାଆନ୍ତଙ୍କୁ ଏତକ କହିବାପାଇଁ ଯେମନ୍ତ ଗୃହିଁ ବସିଥିଲେ, ପାଟି ଚଡ଼ଗଲା ।

ଆଜ ଇନ୍ଦୁମତୀର ଏକୋଇଶିଆ । ସାଆନ୍ତେ ମରୁଆକୁ ଆଣି ସାନ୍ତାଣୀଙ୍କ କୋଳରେ ଦେଲେ । ମରୁଆ 'ବା—ଲେ ! ବା—ଲେ' କହି ଡକା ପାରୁଥାଏ । ସାନ୍ତାଣୀ ହାତରେ କଣ୍ଢେଇ ଖଜା ଦେଇ ତାକୁ ବହଲାଉଥାନ୍ତି । ବର୍ଷେକ ଭିତରେ ମରୁଆ ତା ବାପକୁ ଭୁଲଗଲା । ସାନ୍ତାଣୀଙ୍କୁ ପଗୃରଲା, "ତୁ କେ ?"

ସାନ୍ତାଣୀ—ମୁଁ ତୋ ମା ପର ।

ମରୁଆ—ଗୋପାଲ ମା·ଅଛି । ଚନ୍ଦ୍ରୀ ମା ଅଛି । ମୋ ମା ମଲଗଲା । ବା କାନ୍ଦଲା ।

ସାନ୍ତାଣୀ—ହସି ହସି କହିଲେ, "ହଁ, ମୁଁ ମର ଯାଇଥିଲି, ଫେର ଆସିଲି ।"

ମରୁଆ—ଆଉ ତୁ ମଲଯିବୁ ନାଇଁ, ମୁଁ କାନ୍ଦବି । ବା କା-ଇଁ ?

ସାନ୍ତାଣୀ—ତୋ' ବା' ମରଯାଇଛି, ଆସିବ ।

ଇନ୍ଦୁମତୀ ଆଉ ମରୁଆ ଏକସାଙ୍ଗରେ ଖାଆନ୍ତି, ଖେଳନ୍ତି, ଶୁଅନ୍ତି । ଇନ୍ଦୁ ମରୁଆକୁ ଅପା ବୋଲ ଡାକେ । ଉଆସର ପୋଇଲିମାନେ ମରୁଆକୁ ବଡ଼ ଜେମା ବୋଲ ଡାକନ୍ତି, ସେହିପର ଖଟିଥାନ୍ତି । ମରୁଆ ଏବେ ଅପଣା କଥା ବୁଝିଲାଣି, ସେହିପର ଟିକିଏ ଶଙ୍କି ଶଙ୍କି ଗୃଲେ । ହେଲେ, ସାନ୍ତାଣୀ କେବେ ତାକୁ ଆଉଅଲର କରନ୍ତି ନାହିଁ ।

ଭୀମସେଣ ମହଲର ଚଳନ୍ତି ଅଚଳନ୍ତି ଯେତେ ବିତ୍ତ ଥିଲା, ସବୁ ବିକ ଦେଇ ଜମିଦାର ସାନ୍ତ ସେହି ସବୁ ଟଙ୍କା ମରୁଆ ନାମରେ ସରକାରରେ ଜମା କର ଦେଇଛନ୍ତି । ସେଥିରୁ ପଇସାଏ ବି ଖରଚ କର ନାହାନ୍ତି । ଆଜିଯାଏଁ ମୂଳ କଳନ୍ତର ମିଶି ପଞ୍ଚାଶ ହଜାର ଟଙ୍କା ହେଲାଣି ।

ବିଦ୍ୟାମନ୍ତ, ବୁଦ୍ଧିମନ୍ତ, ଦେଖିବାକୁ ସୁନ୍ଦର ହୋଇଥିବ, ଭଲଲୋକ ପୁଅ ହୋଇଥିବ, ଖଣ୍ଡାଏତ କୁଳରେ ଏପର ପିଲା ମିଳୁଛନ୍ତି ସତ, ହେଲେ ଘରଜୋଇଁଆ ରହିବାକୁ ନାରାଜ । ସାଆନ୍ତେ ବରପାଣ୍ଟିଏ ଲେଡ଼ ଲେଡ଼ ଥକଲେଣି । ମରୁଆ ଆଜ ଯାଏ ଅଭିଆଡ଼ୀ ରହିଛି ।

———

-୩୯-

## ଇନ୍ଦୁମତୀ ଅସ୍ତମିତ

ସଖାଳ ଓଳଟା ଯାକ ପୋଇଲିମହଲରେ କଟିଲା । ଓପରଓଳ ମରୁଆକୁ ସଙ୍ଗରେ ଧର ଅଗଣା ଫୁଲବଗିଗୃରେ ପାଣି ଢଳା ଲଗିଛି । ଇନ୍ଦୁ ପ୍ରତ୍ୟେକ ଫୁଲଗଛରେ ଆପେ ମାଠିଆଏ କର ଜଳ ଦେଲେ । ପ୍ରତ୍ୟେକ ଗଛରେ ଅତି ସ୍ନେହରେ ଧୀରେ ଧୀରେ ହାତ ବୁଲଉଥାନ୍ତି । ଦୁଇ ଜଣଯାକ ମାଠିଆ କାଖେଇ ନଈରୁ ଜଳ ତୋଳ ଆଣୁଥାନ୍ତି, କାହାର ମୁଖରେ କଥାଭାଷା ନାହିଁ । ମରୁଆ ବେଳେ ବେଳେ କଣେଇ କଣେଇ ଇନ୍ଦୁ ମୁହଁକୁ ଗୃହିଁଥାଏ । ମରୁଆ କେତେଥର ଦେଖିଲାଣି, ଜଳ ତୋଳବା ବେଳେ ଇନ୍ଦୁ ନଈର ଗୃରଆଡ଼କୁ ଭଲ କର ଅନାନ୍ତି, ମରୁଆ ଏ କଥାର ଅର୍ଥ କଛି ବୁଝି ପାରୁ ନାହିଁ, ହେଲେ ଭରସି କଛି କଥା ପଗୃର ପାରୁ ନାହିଁ । ଗୁଡ଼ାଏ ପୋଇଲି ଦୂରରେ ଛିଡ଼ା ହୋଇ ସେମାନଙ୍କ ଜଳଦିଆ ଦେଖୁଛନ୍ତି, ମାତ୍ର ଡରରେ ପାଖ ପଶି ପାରୁ ନାହାନ୍ତି । ପ୍ରଥମେ ଯୋଡ଼ାଏ ପୋଇଲି ଧାଇଁ ଆସି ସେମାନଙ୍କ ପାଖରୁ ପିତଳ ମାଠିଆ ନେଇ

ନଈରୁ ଜଳ ଆଣିବାକୁ କହିଲେ । ଇନ୍ଦୁ ଏମନ୍ତ ଗୃହାଣିରେ ସେମାନଙ୍କୁ ଅନାଇଲେ ଯେ, ପୋଇଲା ପୋଡ଼ାକ ଡରରେ ଅଡ଼େଇ ଗଲେ ।

ଇନ୍ଦୁ, ମରୁଆ ଦୁଇ ଜଣ ଏକସାଙ୍ଗରେ ଦିନେ ଦିନେ ବନୋଦବିହାରୀଙ୍କ ଆଳଟି ଦର୍ଶନକୁ ଯାନ୍ତି । ଗଛରେ ଜଳଦିଆ ସରିଲା । ସୂର୍ଯ୍ୟ ଅସ୍ତ ହେଲା ପରେ, ଗଛ ଅଗ ଡାଳରୁ ବି ଖରା ଛାଡ଼ି ଗଲାଣି । ଯୋଡ଼ାଏ ପୋଇଲା ସଞ୍ଜବଇଠା ସଜାଡ଼ିବାରେ ଲଗିଛନ୍ତି । ଇନ୍ଦୁ ଦେବତାଙ୍କ ଆଳଟି ଦର୍ଶନ କଥା କହିବାରୁ ଉଆସର ବୁଢ଼ା ପଡ଼ିଆରି ମୁକୁନ୍ଦ ବାରିକ ଧାଇଁ ଯାଇ ମନ୍ଦିର ସୋଧି ଦେଲା । ଇନ୍ଦୁ, ମରୁଆ ଦୁହେଁଯାକ ନଈରେ ଅଣ୍ଠାପାଣି ବଡ଼ାଇଲେ, ଭଲ ଶୁକ୍ଳ ଶାଢ଼ୀ ଦୁଇଖଣ୍ଡ ପିନ୍ଧି ଦର୍ଶନକୁ ବାହାରିଲେ । ଆଉ ଆଉ ଦିନ ଆଗ ପଛରେ ଆଠ ଦଶଟା ପୋଇଲା ଚାଲୁଥାନ୍ତି । ଆଜି ପୋଇଲାମାନଙ୍କୁ ସାଙ୍ଗରେ ଚାଲିବାର ଦେଖି ଟିକିଏ ମୋଡ଼ ମୋଡ଼ ହେବାରୁ ସାଙ୍ଗରେ ଯିବାକୁ ମରୁଆ ସେମାନଙ୍କୁ ମନା କରିଦେଲା ।

ଆଳଟି ବଢ଼ିବା ଉତ୍ତାରେ ପୂଜାରୀ ଯୋଡ଼ାଏ ଆଳଟି ବଳିତା ନିଆଇ ଦୁଇ ଜଣଙ୍କ ହାତରେ ଦେଲା । ବଳିତାରୁ ଟିକିଏ ଟିକିଏ ଧୂଆଁ ବାହାରୁଥାଏ । ଦୁହେଁଯାକ ଅତି ଭକ୍ତିରେ ସେଇ ଧୂଆଁ ସୁଙ୍ଘିଲେ । ଇନ୍ଦୁମତୀ ଢେର ବେଳଯାଏ ସାଷ୍ଟାଙ୍ଗ ଦଣ୍ଡବତ କରି ଗୁଣ ଗୁଣ କଥାରେ ଦେବତାଙ୍କୁ କଣ ଜଣାଉଥାନ୍ତି । ଭୋଜନା ପରି ଠିକ ବେଳରେ ଦୁହିଙ୍କର ଠା ବଢ଼ିଲା । ମରୁଆ ଜଗି ଜଗି ଦେଖୁଥାଏ, ଇନ୍ଦୁ ଯେମନ୍ତ କଷ୍ଟରେ ଅନ୍ନ ସାରୁଛନ୍ତି । ଅଧାଅଧି ଭୋଜନ କରି ଇନ୍ଦୁ ଚଞ୍ଚଳ ଉଠିଡ଼େଲେ, ଭୋଜନପାଇଁ ବଳାଇବାକୁ ମରୁଆ ବେଳ ପାଇଲା ନାହିଁ । ମରୁଆ ବି ଅଧାଅଧି ଭୋଜନ ସାରି ଉଠିଗଲା ।

ଭୋଜନା ପରି ଦୁହେଁ ପହଡ଼କୁ ଗଲେ, ଦୁହିଙ୍କର ପହଡ଼ ଏକା ପଲଙ୍କ ଶେଯରେ । ନିଦ ଲଗିବାଯାଏ ଦୁହିଙ୍କ ମଧ୍ୟରେ କେତେ କଥାଭାଷା ଚଳୁଥାଏ । ଫୁଲ ଗଛ କଥା, କଚାପ କଥା, ଉଆସ ଭିତରର ସବୁ କଥା ଚଳେ । ଆଜ ହେଲେ କାହାର ପାଟି ଫିଟିବାକୁ ନାହିଁ । ଦୁହିଁଙ୍କୁ ଦୁହେଁ ଜଗିଛନ୍ତି, କିଏ କଣ କରୁଛି— ଏକକୁ ଆରେକ କଣେଇ କଣେଇ ଗୃହୁଁଛନ୍ତି । ଦୁହେଁଯାକ ନିଦେଇ ଗଲା ପରି କପଟରେ [illegible]ନି ହୋଇ ପଡ଼ିଛନ୍ତି । ଗଲା କେତେ ରାତି ମରୁଆ ସୋଇ ନାହିଁ, ନିଦରେ ବାଉଳା ହେଉଛି, ଆଖି ମଳ ମଳ ଗୃହୁଁଛି, ଆଖି ବୁଜୁନାହିଁ । ଏହିପରି କରୁ କରୁ କେତେବେଳେ ଅଜଣାରେ ନିଦ ଆସି ମାଡ଼ି ବସିଲାଣି । ନିଶ୍ୱାସରୁ ମରୁଆ ଶୋଇଥିବା ଜାଣି ଇନ୍ଦୁ ଢେର ବେଳଯାଏ ତାକୁ ଅନାଇଲେ । ଉଆସ ପଛପଟ ଆମ୍ବତୋଟା ଭିତରୁ ବିଲୁଆପଲର 'ହୁକେ—ହୁ' ଶବ୍ଦ ଶୁଣାଗଲା । ଇନ୍ଦୁ ବୁଝିଲେ, ଅଧରାତି ଗଡ଼ି ଯାଉଛି । ମନରେ କଲେ, ଏଇଟା ଠିକ ବେଳ । ଧୀରେ ଅତି ଧୀରେ ଶେଯରୁ ଉଠି ବସିଲେ, ପୁଣି କେତେଥର ଗୋଡ଼ଠାରୁ ମୁଣ୍ଡଯାଏ ମରୁଆକୁ ଅନାଇଲେ । ଗୋଟାଏ ଉଚ୍ଚ ପିତଳ ଫାପରୁଖା ଉପରେ ପିତଳ ଫାପଟାରେ ମୋଟା ମୋଟା ଯୋଡ଼ାଏ ବଳିତା ମିଞ୍ଜି ମିଞ୍ଜି ହୋଇ ଜଳୁଛି । ଧୀରେ ଅତି ଧୀରେ ପଲଙ୍କରୁ ଓହ୍ଲାଇ ପୁଣି ଢେର ଥର ମରୁଆକୁ ଅନାଇଲେ, ଅତି ସାବଧାନରେ କବାଟ-କିଳଣୀ ଫିଟାଇଲେ ଦୁଆରବନ୍ଧ ଡେଇଁ ପୁଣି ମୁହଁ ଫେରାଇ ମରୁଆକୁ ଅନାଇଲେ । ଭଲକରି ବୁଝିଲେ, ମରୁଆ ନିଦେଇ ଗଲାଣି । ଉଚ୍ଛୁଣିକା ଖାଲି ତାଙ୍କର ମରୁଆକୁ ଡର, ତାଙ୍କ କାର୍ଯ୍ୟରେ ବାଧା ଦେବାକୁ ଆଉ କେହି ନାହିଁ । ଅତି ସାବଧାନରେ ଟାଣ ନିଶ୍ୱାସଟାଏ ପକାଇ ଚାଲିଲେ । ଉଆସ ମଧ୍ୟରେ ରାତିରେ ଯିବା ଆସିବାବେଳେ ଥୋକେ ପୋଇଲା ଆଗ ପଛରେ ଆଲୁଅ ଦେଖାଇ ପହଣ୍ଡ ମଣାଇ ନିଅନ୍ତି । ଘିଟିଘିଟିଆ ଅନ୍ଧାରରେ ଏକୁଟିଆ ଚାଲିବା ଏହିଟା ପ୍ରଥମ । ଚାଲି ପାରୁନାହାନ୍ତି,

ଗୋଡ଼କୁ ଗୋଡ଼ ବାଜି ଛନ୍ଦି ଯାଉଛି । ଦଶ ଜାଗା ହାବୁଡ଼ ପଡ଼ୁଛନ୍ତି, ଯେଉଁ ପିଣ୍ଡାରେ ପିଲାକାଳୁ ହଜାର ହଜାର ଥର ଗୃଲିଛନ୍ତି, ସେ ବାଟଟା ଦିଶୁ ନାହିଁ । ଇନ୍ଦୁ ପକ୍ଷରେ ଉତ୍କଣ୍ଠିକା ଘର ବାହାର—ମନ ମଧ୍ୟରେ ଜଗତ ସଂସାରଟାଯାକ ସବୁ ଅନ୍ଧକାର । ପାହୁଣ୍ଡେ ପକାଇ ଗୃଣିଆଡ଼କୁ ଥରେ ଅନାଉଛନ୍ତି, ଟିକିଏ ଚମଚଟାଟାଏ ଉଡ଼ିଯିବାର, ଛୁଚୁନ୍ଦରାଟାଏ ଧାଇଁଯିବାର, ପବନରେ ଖୁଟ୍ କରି ଶବ୍ଦଟାଏ ହେଲେ ଚମକିପଡ଼ି ଠିଆ ହୋଇ ଯାଉଛନ୍ତି । କିଏ ଦେଖିପକାଇଲା ପରି, ଡରରେ ଦେହ ଗୋଟାକ ଥରି ଯାଉଛି । ଉଆସର ଅଧିଶ୍ୱରୀ—ଯେଉଁ ଦାସ ଦାସୀମାନେ ତାଙ୍କ ପାଖରେ ହାତବାନ୍ଧି ଥାନ୍ତି, ସେମାନଙ୍କୁ ଡରି ଡରି ଗୃଲୁଛନ୍ତି । ଯେତେଡ଼ ରାଜରାଣୀ ରାଜରାଜେଶ୍ୱରୀ ହୋଇ ପଛକେ, ଈଶ୍ୱରଙ୍କ ରାଜ୍ୟରେ ନିର୍ଭୟରେ ଅନ୍ୟାୟ କାର୍ଯ୍ୟ କରିବାକୁ କେହି କ୍ଷମ ନୁହେଁ ।

ଏତେ ବଡ଼ ଉଆସଟାରେ ମରଦ ମାଇକିନିଆ କରି ପଣେ ପାଞ୍ଚ ବୋଡ଼ ଲୋକ, ସବୁ ଯାଗାରେ ନିଘୋର । ଝିଙ୍କା କେତେଟା ପୋଇଲାଙ୍କର ଗମ୍ଭିରି ଭିତରୁ ନାନା ରାଗିଣୀରେ ଝଣଝଣ ଶବ୍ଦ ଶୁଭୁଛି । ଇନ୍ଦୁ ଏତେବେଳେ ଭଲକରି ବୁଝିଲେଣି, ସମସ୍ତେ ନିଦେଇ ଯାଇଛନ୍ତି, ତାଙ୍କୁ ଦେଖିବାକୁ କେହି ନାହିଁ । ଅଣ୍ଡାଳି ଅଣ୍ଡାଳି ମାଳଣା ଦୁଆରକୁ ଗଲେ, ଅତି ସାବଧାନରେ ଦୁଆର ଫିଟାଇଲେ, ଦୁଆରବନ୍ଧ ଡେଇଁବାବେଳେ ଆଉ ଥରେ ଉଆସ ଭିତରକୁ ଅନାଇ ଟାଣ ନିଶ୍ୱାସଟାଏ ପକାଇଲେ ।

ନଈରେ ଉପରମୁଣ୍ଡା ପାଣି ଚଢ଼ୁଛି, ସମସ୍ତ ପରି ସ୍ରୋତ ଧାଇଁଛି । ନଈଜଳ ଦୁଆରବନ୍ଧକୁ ଲାଗେ ଲାଗେ । ଇନ୍ଦୁମତୀଙ୍କ ଗୋଡ଼ ବୁଡ଼ିଲା, ଅଣ୍ଟା ବୁଡ଼ିଲା, ଗୁଡ଼ପାଏଁ ଜଳ ହେଲା । ଠିକ୍ ଏତିକିବେଳେ ଇନ୍ଦୁମତୀ ଉବ୍ ଉବ୍ ହେଉଛି, ନଈରୁ ଝପ କରି ଶବ୍ଦଟାଏ ଶୁଭିଲା— ଆଉ କିଛି ଚିହ୍ନ ନାହିଁ ! ଠିକ ଏତିକିବେଳେ ପଶ୍ଚିମାକାଶରେ ଯେଉଁ ଇନ୍ଦୁପ୍ରଭା ଡୁବିଲା, କାଲି ସଞ୍ଜବେଳେ ପୁଣି ଉଦୟ ହେବ । ସମ୍ବଲପୁର ଉଆସରୁ ଚିରକାଳପାଇଁ ଇନ୍ଦୁମତୀ ଅସ୍ତ ଗଲା ।

———

—୪୦—

## ମରୁଆର ଚେତା

ମନୀଷ ମନ ଭିତରେ ଗୋଟାଏ ଦକ ପଶିଥିଲେ ସେ ଯେତେ ନିଘୋଡ଼ରେ ଶୋଇ ଥାଉ ପଛକେ ଅଳ୍ପ ଟିକିକ ହେରେ ଚହ୍ଲିକି ପଡ଼େ, ନିଦ ଭାଙ୍ଗିଯାଏ । ଗାଁରେ ଗୋଳମାଳ ହେବା ଦିନରୁ ଜମିଦାର ସାନ୍ତଙ୍କର ଟାଣ ହୁକୁମ, ଗାଁ ଦଗବାର ରାତି ତିନି ପହରରେ ଗାଁ ଗୋହିରୀରେ ବୁଲି ବୁଲି ତିନିଥର ଡାକ ଦେବ । ଦଗବର କୁହାଟି ଦେଲା, 'ଏ-ଏ-ଏ ଏ ଗାଁ ଲୋକେ ହୁସିଆର !' ଦଗବାର କୁହାଟଶୁଣି ଗାଁ ବୁଲା କୁକୁରଗୁଡ଼ାଏ ଭେ ଭେ କରି ଭୁକିଲେ । ଶବ୍ଦ ଶୁଣି ମରୁଆ ଚହ୍ଲିକି ପଡ଼ିଲା । ନିଦ ବାଉଳାରେ ହାତ ବୁଲାଇ ବିଛଣାଟା ଅଣ୍ଡାଳି ପକାଇଲା, ହାତକୁ କିଛି ଲାଗିଲା ନାହିଁ । "ଏ କିଏ" କହି ଧଡ଼ କରି ଉଠି ବସିଲା, ଭଲ କରି ଅନାଇଲା, ଶେଯଟା ଝିଙ୍କା ପଡ଼ିଛି । ଖପ କରି ପଲଙ୍କ ଉପରୁ ତଳକୁ ଡେଇଁ ଦେଲା । ଗୋଟାଏ ବଡ଼ ପିତ୍ତଳ ଦୀପରୁଖା ଉପରେ ଗୋଟାଏ ପିତ୍ତଳ ଦୀପରେ ମିଞ୍ଜି ମିଞ୍ଜି ଆଲୁଅ ଜଳୁଛି, ବଳିତାଗୁଡ଼ାକ ଗର୍ଭକୁ ଜଳି ଗଲାଣି । ଖଣ୍ଡେ ସରୁ ସୂତାରେ ଖଣ୍ଡେ ପିତ୍ତଳ ଝୁଣ୍ଟା ଦୀପରୁଖାରେ ଝୁଲୁଛି । ମରୁଆର ତର ସହିଲା ନାହିଁ, ଅଙ୍ଗୁଳିରେ ଭଲ କରି ବଳିତାଗୁଡ଼ାକ ଖୁଣ୍ଟି ଦେଲା । ପଲଙ୍କ ଉପର ତଳ, ଘର କୋଣମାନଙ୍କୁ ଭଲ କରି ଅନାଇଲା । ଶେଯ ଚଦରଟା ଭିଡ଼ି ଦେଇ ମାଣ୍ଡିଗୁଡ଼ାକ ଓଲଟାଇ ଦେଖିଲା । ଅନାଇ ଦେଲା, ଦୁଆର ଅଉଜା । ଭଲ କରି ମନରେ କଲା, ସେ ଆପେ କବାଟ କିଳି ଶୋଇଥିଲା ।

ମରୁଆର ମୁଣ୍ଡ ବୁଲାଇଲାଣି, ଚତୁର୍ଦ୍ଦିଗ ଅନ୍ଧକାର ଦିଶୁଛି, ପାଟିରୁ କଥା ଫିଟୁନାହିଁ । ଝଟ କବାଟଟା ଉଦୁଆଁ କରିଦେଇ ମେଲାକୁ ବାହାରି ପଡ଼ିଲା । ଘରଆଡ଼କୁ ଆଖି ବୁଲାଇଲା, ଘିଟିଘିଟିଆ ଅନ୍ଧାର । କେଜାଣେ ତାକୁ ବା ଦିଶୁ ନାହିଁ, ଦୁଇ ହାତରେ ଭଲ କରି ଆଖି ରଗଡ଼ି ଦେଇ ଚାହିଁଲା, ସବୁ ଏକାକାର । ଦେହ ଗୋଟାଯାକ ବରଡ଼ାପତ୍ର ପରି ଥରୁଛି, ଜିଭ ଶୁଖି ଗଲାଣି । ମାଜଣା ଦୁଆରକୁ ଧାଇଁଲା, ବଡ଼ ବଡ଼ କବାଟ ଯୋଡ଼ାକ ଉଦୁଆଁ । ଖୁବ୍ ଗୋଟାଏ ରଡ଼ି ଛାଡ଼ିଲା, "ଧାଇଁପଡ଼ରେ —ଧାଇଁପଡ଼ ରେ—ସବୁ ସରିଲା ରେ" ବୋଲି କରି ତଳେ ପଡ଼ିଗଲା, ଆଉ ଚେତା ନାହିଁ । ଗୁଡ଼ାଏ ପୋଇଲା ଟିକିଏ ଟିକିଏ ଚେତେଇ ଥିଲେ, ଭୁଣ୍ଡ ବାରି ଗଲେ—ଏ ଯେ ମରୁଆ ଜେମା ଡାକ । "କଣ କଣ" ରଡ଼ି ଛାଡ଼ି ଧଡ଼ଧାଡ଼ କରି କବାଟ ଫିଟାଇ ପକାଇ ଧାଇଁଛନ୍ତି । ଗୋଳମାଳରେ ଉଆସ ଭିତର ସବୁଲୋକ ଉଠି ପଡ଼ିଲେଣି । ସମସ୍ତେ ଡାକ ପାଡ଼ୁଛନ୍ତି, 'କଣ ହେଲା !' ଅନ୍ଧାରରେ ଧାଁଦୌଡ଼ରେ ଗୋଟାକ ଉପରେ ଗୋଟାଏ ପଡ଼ି ଯାଉଛନ୍ତି । ଗୁଡ଼ାଏ ହାବୁଡ଼ା ଖାଇ ତଳେ ପଡ଼ି ଗଡ଼ି ଗଲେଣି । କଥାଟା ଯେ କଣ, ଏ ଯାଏ କେହି କିଛି ବୁଝିପାରି ନାହାନ୍ତି । ପାଟି ଶୁଣି ସାନ୍ତେ ବି ଭିତର ପ୍ରସ୍ତରେ ବାଜେ ହୋଇ ଗଲେଣି । 'କଣ ହେଲା—କଣ ହେଲା' ପାଟି କରି ପଚାରୁଛନ୍ତି, କିଏ କଣ ବୁଝିଛି ଯେ, ଉତ୍ତର ଦେବ ? ସାନ୍ତଙ୍କ ପଛେ ପଛେ ବାରିକ ଜଣେ ଦୀପଟାଏ ଧରି ଧାଇଁଛି । ଟିକିଏ ଆଲୁଅରେ ମାଇକିନିଆଟାଏ ଦେଖି ପକାଇଲା, ମାଜଣା ଦୁଆର ଉଦୁଆଁ, ମଣିଷଟା ପରି ଧଳା କଣଟାଏ ତଳେ ପଡ଼ିଛି । 'ଏଟା କଣ, ଏଟା କଣ' ହାତ ବଢ଼ାଇ ଦେଖାଉଛି । ଏବେ ସେଇ ଧଳା ପଦାର୍ଥଟା ଉପରେ ସମସ୍ତଙ୍କ ଦୃଷ୍ଟି ପଡ଼ିଲାଣି, ଆଉ ଟେଡ଼େ ପାଟି ନାହିଁ । ହେଲେ ଭରସି କେହି ପାଖପଶି ପାରୁନାହାନ୍ତି । ସାଆନ୍ତେ ଚଞ୍ଚଳ ପାଖକୁ ଚାଲିଗଲେ, ସମସ୍ତେ ସେଇ ଜାଗାକୁ ଧାଇଁଛନ୍ତି । ଗୋଟାଏ ପୋଇଲା ଭଲ କରି ଅନାଇ ରଡ଼ିଟାଏ ଛାଡ଼ିଲା, 'ବଡ଼ ଜେମା ରେ !' ଗୁଡ଼ାଏ ମାଇକିନିଆ ତା ପରେ ଗୋଟାକ ଉପରେ ଗୋଟାଏ ପଡ଼ି ଧାଇଁଲେ । ଗୁଡ଼ାଏ ରଡ଼ି ଛାଡ଼ୁଛନ୍ତି, 'ଆରେ ବଡ଼ ଜେମା ରେ !' ସାନ୍ତେ ପାଟି କରୁଛନ୍ତି, 'ଚୁପ୍‌କର, ଚୁପ୍‌କର, କଥା କଣ ବୁଝେଁ ।' ଶୁଣୁଛି କିଏ ? ଗୋଟାଏ ମାଇକିନିଆ ଉଠାଇ ଦେଖିଲା, ଚେତା ନାହିଁ । ପାଟି କରିଦେଲା, 'ପାଣି ପାଣି, ପଙ୍ଖା ପଙ୍ଖା ।' ଆଉ ଗୁଡ଼ାଏ ପାଟି କଲେ, 'ପାଣି ଆଣ, ପାଣି ଆଣ ।' ହେଲେ ଚଞ୍ଚଳ ଧାଇଁ ଯାଇ କେହି ଆଣୁ ନାହିଁ । ମୁହଁକୁ ପାଣିଛିଟା ମାରି ପଙ୍ଖା କରିବାରୁ ଦଣ୍ଡକ ବାଦେ ଚେତା ବସିଲା । ଯିମିତି ପାଟି ଫିଟିଛି, ଗୋଟାଏ ରା ଧରିଛନ୍ତି—ଇନ୍ଦୁ-ଇନ୍ଦୁ ଇନ୍ଦୁ !'

ଏବେ ସମସ୍ତଙ୍କର ଚେତା ବସିଲା, ଜେମା ମଣିମା କାହାନ୍ତି ? ସମସ୍ତଙ୍କ ମୁହଁରେ ଏକ କଥା । ସମସ୍ତେ ଖୋଜି ବସିଲେ । ପୋଇଲାଗୁଡ଼ାକ ଆପଣା ଆପଣା ଗମ୍ଭିରି ଭିତରୁ କେହି ଦୀପଟାଏ, କେହି ଭୁଚ୍ଛା ବଳିତାଟାଏ ଜାଳି ଆଣି ଖୋଜିବାକୁ ଲାଗିଲେ । ସବୁ ଘର ପିଣ୍ଡା ଅଗଣା ଓଳତଳ ଖୋଜା ସରିଲାଣି—କାହିଁ ନାହାନ୍ତି । ସାଆନ୍ତେ ଗୁଡ଼ାଏ ଚାକରଙ୍କୁ ଧରି ମାଜଣା ଦୁଆର ବାଟେ ନଈକୂଳକୁ ବାହାରି ପଡ଼ିଲେ । ବର୍ଷାକାଳ, ମାଟି ଓଦା, ଦେଖାଗଲା, ଦୁଆରବନ୍ଧ ତଳୁ ନଦୀ-ଜଳଯାଏ ଯୋଡ଼ିଏ ପାଦଚିହ୍ନ ସଫା ପଡ଼ିଛି । 'ହାୟ' ବୋଲି କହି ସର୍ବାଙ୍ଗ ଥରି ଗଲା । ଯୋଡ଼ାଏ ବାରିକ ଚଞ୍ଚଳ ଧରି ରଖି ନ ଥିଲେ କେ ଜାଣେ କାଦୁଅରେ ପଡ଼ି ଲୋଟି ଯାଇଥାନ୍ତେ ! ଆଉ କାହାରି ମୁହଁରେ କିଛି କଥା ନାହିଁ—"ହା ଜେମାମଣି ! ମୋ ଚନ୍ଦ୍ରମଣି ! ଆହା ମୋ ଲକ୍ଷ୍ମୀମଣି !" କହି ଲୋଟି ଯାଉଛନ୍ତି । ରାତି ପାହି ଆସିଲାଣି, ଗାଁ ଗୋଟାକ ଲୋକ ସକାଳରେ ଡାକ ପାରୁଛନ୍ତି ।

---

-୪୧-

## ଦେବୀ ପ୍ରତିମା

ଦଶଗ୍ରାମ ତାଲୁକ ଜମିଦାରଙ୍କର ଉଆସ ପଛ-ପଟରେ ପାଚେରି କାନ୍ଥ ଲଗାଲଗି ସାପୁଆ ସୁଅଟା ବହି ଯାଉଛି । କାନ୍ଥ ତଳେ ମାଳଣୀ ତୁଠ । ସେ ତୁଠଟା ଭାରି ଆକଟ । ସେ ଜାଗାକୁ ବାହାର ଲୋକର ଦୃଷ୍ଟି ପଡ଼ିବ ନାହିଁ । ତୁଚ୍ଛା ଉଆସ ଭିତର ପରିଜନ-ମାନଙ୍କର କାରବାର । ଉଆସ ପଶ୍ଚିମ ପାଖ ସାତଶ କଦମ ସୁଅ ଉପରକୁ ଭୂଆସୁଣୀ ତୁଠ । ସେ ଅଞ୍ଚଳଟା ତୁଚ୍ଛା କରଣ ବସ୍ତି—ଆଉ ଜାତି ଘର ଗୋଟାଏ ବି ନାହିଁ । କାଉ କା କରିବା ଆଗରୁ କରଣ ଘର ବୋହୂ ଭୂଆସୁଣୀଗୁଡ଼ିକ ଗାଧୁଆ ପାଧୁଆ କରିଯାନ୍ତି । ଦିନଯାକ ମା ମାଉସୀ ଭଳିଆ ସ୍ତ୍ରୀଲୋକ ଆଉ ପୋଇଲି ପରିବାରି-ମାନଙ୍କ କାରବାର ଲାଗିଥାଏ । କି ଦିନ, କି ରାତି ସେ ତୁଠକୁ ଯିବାପାଇଁ ପୁରୁଷମାନଙ୍କୁ ମନା । ସାନ୍ତଙ୍କ ଉଆସଟା ହେଉଛି ଗାଁ ମଝିରେ—ଉଆସ ତଳକୁ ଆଉ ଉପରକୁ ଆହୁରି ବି ଢେର ତୁଠ ଅଛି । ହେଲେ ଆମ୍ଭମାନଙ୍କ କଥା ସଙ୍ଗରେ ସେଗୁଡ଼ିକର କିଛି ଲଗାପଗା ନାହିଁ ।

ଝିଲିଝିଲିଆ ଅନ୍ଧାର ଅଛି । ରାତିଟା ପୁହାପୁହା ପରି । ଭୂଆସୁଣୀ ତୁଠରେ ହଠାତ୍ ଭାରି ଗୋଟାଏ ଚହଳ ପଡ଼ିଗଲା । ବୋହୂ ଝିଅମାନଙ୍କ ରଡ଼ି ଶୁଣି ଶାଶୁ ନଣନ୍ଦ ଆଉ ଆଉ ମାଇକିନିଆମାନେ ଧାଇଁଲେ । ଭୂଆସୁଣୀଗୁଡ଼ାକ ମାଠିଆ ଟିଏ ଟିଏ କାଖେଇ ବରଗଛ ଶୁଖିଲାପଟକୁ ବେଢ଼ି ଯାଇ ମୂଳକୁ ଚାହିଁ ତାଟକା ପରି ଛିଡ଼ା ହୋଇଛନ୍ତି । ବରଗଛ ମୂଳରେ ଗୋଟିଏ ଦେବୀ-ମୂର୍ତ୍ତି ବିରାଜିତା । ମୁରବି ଭଳିଆ ସ୍ତ୍ରୀମାନେ ସ୍ଥିର କଲେ, ଗଙ୍ଗା ମାତା ବିଜେ । ଜଣେ ବୁଦ୍ଧିମତୀ ସ୍ତ୍ରୀ ସମସ୍ତଙ୍କ କଥା ଭାଙ୍ଗି ଦେଇ କହିଲେ, "ନାହିଁ ଲୋ ନାହିଁ, ସେ କଥା ନୁହେଁ, ମା ସାନ୍ତାଣୀ ଦେବୀ ପାଲଟି ଯାଇଛନ୍ତି ।" ଶଙ୍ଖ ହୁଳହୁଳି ଚହଳ ପଡ଼ିଗଲା । ଥୋକେ ମାଇକିନିଆ କାଦୁଅରେ ଲୋଟି ଯାଇ ଦେବୀଙ୍କୁ ଦଣ୍ଡ-ପ୍ରଣାମ କରୁଅଛନ୍ତି । କିଏ ହାତଯୋଡ଼ି ପିତୁଳାଟି ପରି ଦେବୀଙ୍କି ଚାହିଁ ଛିଡ଼ା ହୋଇଛି । ଥୋକେ ବେକରେ ପଟକା ପକାଇ ପୁଅ ଝିଅଙ୍କ ବେମାରି ଭଲ ହୋଇ ଯିବାପାଇଁ ବର ମାଗୁଛନ୍ତି । ଗୁଡ଼ାଏ ଯୁବତୀ ସ୍ୱାମୀ ଶୀଘ୍ର ବିଦେଶରୁ ବାହୁଡ଼ିବାପାଇଁ ତୁନି ତୁନି ଜଣାଉଛନ୍ତି । ମାଇକିନିଆଗୁଡ଼ାକଙ୍କ ପାଟି ଶୁଣି ପୁରୁଷମାନେ ବି ନିଦଅଳସିଆ ଅଧୁଆମୁହଁରେ ଧାଇଁଲେ । ଉଚ୍ଛୁଣିକା ସ୍ତ୍ରୀପୁରୁଷ ବୋଲି ବାଛ ବିଚାର ନାହିଁ—ଦେଢ଼ଶୁର ଭାଇବୋହୂ ଚିହ୍ନୁଛି କିଏ ? ମାଇକିନିଆ ମରଦ ପେଲା-ପେଲି ହୋଇ ଦେବୀଙ୍କୁ ଅନାଇ ଧାଇଁଛନ୍ତି । ଆଗ ପଛକୁ କାହାରି ଦୃଷ୍ଟି ନାହିଁ - କିଏ କାହାକୁ ବା ଚିହ୍ନିଛି ଯେ, ସ୍ତ୍ରୀ ପୁରୁଷ ବୋଲି ବାରି ହେବେ ? ଶଙ୍ଖ ହୁଳହୁଳି ଦେଇ ସମସ୍ତେ ଛିଡ଼ା । ଏଥି ମଧ୍ୟରେ ଘଡ଼ିଏ କାଳ ବିତିଗଲା । ପେଲାପେଲି କରି କରି ସମସ୍ତେ ଥକି ପଡ଼ିଲେଣି । ଏବେ ସମସ୍ତେ ବୁଝି ବସିଲେ —'ଏ ଦେବୀ ପ୍ରତିମା କିଏ - କିଁଆ ବିଜେ ହେଲେ ?'

ସ୍ତ୍ରୀ ମହଲରେ ଆଗରୁ ତ କଥା ଛିଡ଼ିଛି, ମା ମଣିମା ଗଙ୍ଗାଦେବୀ ପାଲଟି ଯାଇଛନ୍ତି । ଯେପରି ଠାଣିରେ ପ୍ରତିମାଟି ବସିଛନ୍ତି, ତାଙ୍କୁ ଦେବୀ ବୋଲି ସରଳବୁଦ୍ଧି ସ୍ତ୍ରୀମାନେ ଅନୁମାନ କରିବା କିଛି ଅସଙ୍ଗତ କଥା ନୁହେଁ । ଭୂଆସୁଣୀତୁଠକୁ ଓହ୍ଲାଇବା ଖାଇଲା-ହାତି ପଟରେ ଗୋଟାଏ ଖୁବ ବଡ଼ ବରଗଛ । ନଈ ସୁଅ ଆଗେ ଗଛ କଡ଼ରୁ ଢେର ଦୂରରେ ଥିଲା । ବର୍ଷକୁ ବର୍ଷ ବଢ଼ି ପାଣି ତୋଡ଼ରେ ଅତଡ଼ା ପଡ଼ି ପଡ଼ି ବରଗଛ ମୂଳ ଅଧାଅଧି ପାଏ ନଈଗର୍ଭକୁ ଗଲାଣି । ସେ ପଟଟାରେ ଅଧାଅଧି ଚେର ବାହାରି ପଡ଼ି ଶୂନ୍ୟେ ଶୂନ୍ୟେ ଝୁଲୁଛି । ଦେବୀ ମୂର୍ତ୍ତି ସେହି ଦୋକେନା ଗୋଟିଏ ଚେର ମଧ୍ୟରେ ଲଖି ଯାଇ ଝୁଲୁଛନ୍ତି । କେନା ଯୋଡ଼ାକ କାଖ ବାଟେ ଆଗକୁ ବାହାରି ପଡ଼ିଛି । ଦେବୀଙ୍କ ଅଣ୍ଟାଠାରୁ ଦେହର

ଅଧାଅଧି ପାଣି ଭିତରେ ବୁଡ଼ି ରହିଛନ୍ତି । ତାକୁଆ ନଈମାନଙ୍କର ଉପରମୁଣ୍ଡା ଜଳ ଯେମନ୍ତ ହୁ କରି ମାଡ଼ି ଆସେ, ସେହିପରି ଦୁ କରି ଚୁଡ଼ି ଯାଏ । ଜଣାଯାଏ ପ୍ରତିମା ଆଣିକବା ବେଳେ ନଈରେ ମୁଣ୍ଡେ ଜଳ ଥିଲା; ଉଚ୍ଛୁଳିବା ଗୁଡ଼ିକ ପଡ଼ିଛି । ପ୍ରତିମା ଗୁରି ପାଖରେ ଗୁଡ଼ାଏ ଚେଙ୍ଗ ରୁଦ୍ଧ ହୋଇଥିବା ଯୋଗୁ ପାଣିସୁଅ ବାଜି ଘୂରି ଯାଉଛି । ସେହି ଜଳ ଭଉଁରୀ ମଧ୍ୟରେ ଗୁଡ଼ାଏ ଫେଣ ଘୂରୁଥିବା ଯୋଗୁ କଇଁଫୁଲମାଳ ବୁଲୁଥିବା ପରି ଜଣାଯାଏ । ପୁଣି ତେରଗୁଡ଼ାଏ ଫେଣ ତେରରେ ଲାଖି ରହିଛି । ସେଥି ମଧ୍ୟରେ ଦେବୀମୂର୍ତ୍ତି ବିରାଜିତା । ଦେବୀଙ୍କ ମସ୍ତକ ଅଳଙ୍କାର ମଧ୍ୟଭାଗ ଠିକ୍ ସିନ୍ଦୂରବିନ୍ଦୁ ଉପରେ ବଡ଼ ଖଣ୍ଡିଏ ହୀରା ବରଗଛର ବଉଳ ପତ୍ର ଫାଙ୍କ ବାଟେ ଟିକିଏ ସୂର୍ଯ୍ୟକିରଣ ପଡ଼ି ଦପ୍ ଦପ୍ କରି ଜଳି ଉଠୁଛି । ପୁଣି ହୀରାକର ଦୁଇ ପାଖକୁ କର୍ଣ୍ଣମୂଳଯାଏ ଜଡ଼ାଉ ଅଳଙ୍କାରେ ନାନାରଙ୍ଗର ତେରଗୁଡ଼ାଏ ମହାର୍ଘ ରତ୍ନ ମଧ୍ୟରୁ ନାନା ରଙ୍ଗର ଜ୍ୟୋତି ବାହାରି ଗୋଟିଏ କ୍ଷୁଦ୍ର ଇନ୍ଦ୍ରଧନୁ ଆକାର ଧାରଣ କରିଛି । ଦେବୀଙ୍କ ହୃଦୟ ଉପରେ ହାତ ପାପୁଲି ଯୋଡ଼ିକ ସ୍ଥାପିତ, ଦକ୍ଷିଣ ହସ୍ତର ଚମ୍ପାଫୁଲ କଳି ପରି ପାଞ୍ଚ ଅଙ୍ଗୁଳିରେ ପାଞ୍ଚଟି ରତ୍ନବସା ମୁଦ୍ରିକା, ଦୁଇ ହସ୍ତରେ ରତ୍ନଜଡ଼ା ସୁବର୍ଣ୍ଣ-ଚୂଡ଼ି—ସେହିପରି ବାହୁରେ ସୁବର୍ଣ୍ଣ ବାହୁଟି । ନାସା-ବସଣିରୁ ଗଜମୁକ୍ତା ପରି ଗୋଟିଏ ବଡ଼ ମୁକ୍ତାରୁ ଝିକ ଝିକ କରି ଜ୍ୟୋତି ବାହାରି ପଡ଼ୁଛି । ଏହିପରି ଉପଯୁକ୍ତ ସ୍ଥାନମାନଙ୍କରେ ମହାର୍ଘ ଅଳଙ୍କାର ପୂର୍ଣ୍ଣ । ନବବଧୂରୂପେ ପୃଷ୍ଠ ଆଚ୍ଛାଦନ କରି କେଶରାଶିର ଅଗ୍ରଭାଗ ଜଳ-ସ୍ରୋତରେ ଇତସ୍ତତଃ ବିଞ୍ଚି ହୋଇ ଭାସୁଛି, ଗୁଡ଼ାଏ କେଶ କେରି କେରି ହୋଇ ସୁନ୍ଦର ମୁଖଟିକୁ ବିରଳ-ଭାବରେ ଢାଙ୍କି ପକାଇଛି । ଉପରି ପତ୍ରରୁ ବିନ୍ଦୁ ବିନ୍ଦୁ ଜଳ କେଶରାଶି ଉପରେ ପଡ଼ି ମୁକ୍ତାମାଳା ପରି ଝରି ପଡ଼ୁଛି ।

ଏତେବେଳେ ପୁରୁଷମାନଙ୍କ ମଧ୍ୟରେ ଦେବୀମୂର୍ତ୍ତି ବିଷୟ ଆଲୋଚନା ଲାଗିଲା । ଜଣେ କଳ୍ପନାପ୍ରିୟ ବୁଦ୍ଧିମାନ୍ ଲୋକ କହି ବସିଲେ, 'ଦେବୀମୂର୍ତ୍ତି ନଦୀରେ ଭାସି ଭାସି ଆସିଛନ୍ତି । ନିଶ୍ଚୟ କଟକର ସବୁଠାରୁ ବଡ଼ିଆ କାରିଗର ହାତତିଆରି । ଦେଖ ନାହିଁ, ହିଙ୍ଗୁଳ ହରିତାଳ ଘଷି ଯେମନ୍ତ ଚମ୍ପାଫୁଲିଆ ରଙ୍ଗ ବୋଳି ଦେଇଛି । ଆହା ! ନାସିକାଟି ଖଣ୍ଡାଧାରର ପରି କେଡ଼େ ସୁନ୍ଦର ! ଦେଖନ୍ତୁ, ଭ୍ରୂଲତା ଯୋଡ଼ିକ ତୂଳୀରେ କେମନ୍ତ ବଙ୍କାଇ କାନଯାଏ ଟାଣି ଦେଇଛି । ଦେଖ ଦେଖ, ନୂଆ ବନାରସୀ ଶାଢ଼ୀ ଖଣ୍ଡେ ଦେହରେ ଏପରି ଭିଡ଼ି ପିନ୍ଧାଇ ଦେଇଛି, କାହିଁକି ଜାଣ ? ପାଣି ସୁଅରେ କାଳେ ଫିଟିଯିବ, ସେଥିପାଇଁ ।'

ପ୍ରତିମାଟିଏ କଟକରୁ ଏ ଯାଏ ଭାସି ଆସିପାରେ କି ନାହିଁ, ଏ କଥା କେହି ବୁଝିଲେ ନାହିଁ । କହିବା ଲୋକ କଥାରେ ସାଇ ଦେଇଗଲେ । କେବଳ କେତେ ଜଣ କହିଲେ, 'ଆହା ! କାଦୁଅପାଣି ବୋଳି ନ ହୋଇ ଥିଲେ କେଡ଼େ ସୁନ୍ଦର ଦିଶୁଥାନ୍ତେ । ଆହା ଆହା ! ଦେଖ ଦେଖ, ଆଖି ବୁଜି ଡାହାଣ ପାଖକୁ ବେକ ଢଳିଯିବାରୁ କେଡ଼େ ସୁନ୍ଦର ଦିଶୁଛନ୍ତି । ଦେଖ ଦେଖ, ଚଳେ ସୁଅ ପାଣି ବାଜିବାରୁ ଦେହ ଉପରି ଟିକିଏ ଟିକିଏ ଦୋହଲି ଯାଉଛି—ଜଣା ଯାଉଛି, ଯେମନ୍ତ ଜୀଅନ୍ତା ଦେବତା ।'

ଜମିଦାର ସାଆନ୍ତେ ପ୍ରାତଃକାଳରୁ ଉଠି ଗୋବିନ୍ଦ-ଜୀଙ୍କ ସାକ୍ଷାତରେ ଧ୍ୟାନ କରୁଥିଲେ । ଭକ୍ତଙ୍କର ଗୋଳମାଳ ଶୁଣି ତଥ୍ୟ ବୁଝିବା ପାଇଁ ବାହାରି ପଡ଼ିଲେ । ମନ୍ଦିର ପୂଜାରୀ ଟହଲିଆ, ଆଉ ଆଉ ଖଟଣି ଲୋକେ ବାନା ବୈରଖ ଖୋଳ କରତାଳ ଧରି ପଛରେ ଧାଇଁଛନ୍ତି । ସାଆନ୍ତେ ବିଜେ ହେବାରୁ ଆଉ ଆଉ ଲୋକେ ଆଡ଼େଇ ଗଲେ । ସାଆନ୍ତେ ତୁଠଠାରେ ଉପସ୍ଥିତ ହୋଇ ଦେବୀଙ୍କୁ ଏକ ଧ୍ୟାନରେ ଚାହିଁଛନ୍ତି ।

ମନ ମଧ୍ୟରେ ବିଚାରିଲେ, ରେ ଗୋବିନ୍ଦ ! ଏ ପୁଣି ତୋର କି ମାୟା, କି ଲୀଳା ?' ସାଆନ୍ତଙ୍କର ଦୃଢ଼-ବିଶ୍ୱାସ ଗୋବିନ୍ଦଜୀଙ୍କ ଆଜ୍ଞାରେ ସଂସାରର ସମସ୍ତ କାର୍ଯ୍ୟ ଘଟୁଛି । ମନୁଷ୍ୟର ଆୟତ୍ତ କିଛି ମାତ୍ର ନାହିଁ । ପାପ ପୁଣ୍ୟ, ଯଶ ଅପଯଶ, ହାନି ଲାଭ ସବୁ ତାଙ୍କଠାରୁ ଆସୁଛି । ମନୁଷ୍ୟମାନେ ତାଙ୍କ ହାତରେ ନାଟୁଆ ପିତୁଳୀ ।

ସାଆନ୍ତେ ବିଜେ ହେବା ଯୋଗୁ ପୁନର୍ବାର ଶଙ୍ଖ ହୁଳହୁଳି ପଡ଼ିଗଲା । କାର୍ତ୍ତିମାୟା ପଞ୍ଚା ମନ୍ଦିରରୁ ଆସି ଖୋଳ କରତାଳ ବଜାଇବାକୁ ଆରମ୍ଭ କରିଦେଲେ ।

ଠିକ ଏତିକିବେଳେ ଲୋକଭିଡ଼ ଭିତରୁ ଘୋର ଗୋଟାଏ ଚିତ୍କାର ବାହାରିଲା—ଜଣ କୋଡ଼ିଏ ଲୋକ, ସର୍ବାଙ୍ଗ କାଦୁଅ ଲଟପଟ , ମୁକୁଳା ମୁଣ୍ଡ, ବାଳରୁ ପାଣି ବହି ପଡୁଛି । ଗତ ଅଧରାତିବେଳେ ଯେଉଁ ଝିପିରି ଝିପିରି ପାଣି ବର୍ଷା ହୋଇଥିଲା, ଜଣାଯାଏ, ଗୋଟା ପାଣିମାଡ଼ ଖାଇଛନ୍ତି । ମୁହଁରେ ଆଉ କଥା ନାହିଁ, ବିକଳରେ ରଡ଼ି ଛାଡ଼ୁଛନ୍ତି । 'ହେଇ ରେ ଆମ ଜେମା ମଣିମା, ହେଇ ରେ ଆମ ଜେମା ମଣିମା !'

"ବୁଝ ବୁଝ, ଏମାନେ କିଏ, କଣ କହୁଛନ୍ତି ?"

ବୁଝାଗଲା, ଗଲା କାଲି ରାତି ଅଧିକ ବେଳେ ସମସରପୁର ଜମିଦାରଙ୍କର ଗୋଟିଏ ବୋଲି କନ୍ୟା ନଈବଢ଼ିରେ ଭାସି ଆସିଛନ୍ତି । ଏହି ଲୋକମାନେ ପାଞ୍ଚ ଖଣ୍ଡ ଡଙ୍ଗା ଧରି ନଦୀ ଗୋନାକ ଖୋଜ ଖୋଜ ଏଠାରେ ପହଞ୍ଚିଲେ ।

ସମାଚାରଟା ଶୁଣି ସାଆନ୍ତେ ଗୋଟାଏ ଟାଣ ନିଃଶ୍ୱାସ ପକାଇଲେ । 'ଗୋବିନ୍ଦ ! ଗୋବିନ୍ଦ ! ଯେଉ ହେଉ, ତୋର ଯାହା ଇଚ୍ଛା କର ।' ସମସ୍ତଙ୍କୁ ଅନାଇ କହିଲେ, "ଦେଖ, ମୋ କୁଳବଧୂ, ମର୍ଯ୍ୟାଦାକୁ ଜଗି ଚାଲ ।" ଉପସ୍ଥିତ ସମସ୍ତ ପୁରୁଷ ମୁହଁ ଫେରାଇ ଆପଣା ଆପଣା ଘରକୁ ବାହୁଡ଼ି ଗଲେ । ଉଆସର ପୋଇଲି-ମାନେ 'ବୋହୂ-ମଣିମା, ବୋହୂ ମଣିମା' କହି ଧାଇଁଛନ୍ତି । ସଧବା କରଣଘରର ବୋହୂମାନଙ୍କୁ ଛାଡ଼ି ଆଉ ସମସ୍ତଙ୍କୁ ବିଦା କରି ଦିଆଗଲା । ସଧବା କରଣ ବୋହୂମାନେ ଶଙ୍ଖ ହୁଳହୁଳି ଦେଇ ଅହିଅ-ମେଳଣିର ମଙ୍ଗଳ କାର୍ଯ୍ୟ କରିବାକୁ ଲାଗିଲେ । ବଧୂଙ୍କୁ ଉପଯୁକ୍ତରୂପେ ବେଶ ଭୂଷଣ କରି ଦିଆଗଲା । ଯାହାବେଳେ ବାଟରେ ଖୁଣାଯିବା ନିମନ୍ତେ ପାଛିଆକୁ ପାଛିଆ ଖଇ, କଉଡ଼ି; ଫୁଲ, ଟଙ୍କା, ସୁକ ଅଧୂଲି ଉଆସରୁ ଆସିଲା । ବୋହୂଙ୍କ ମୁଣ୍ଡରୁ ସିନ୍ଦୂର ପାଦରୁ ଅଳତା ନେଇ ସଧବା କରଣବୋହୂମାନେ ମୁଣ୍ଡରେ ଲଗାଇଲେ । ଭଣ୍ଡାରୁଣୀ ଯେ କମେଇ ଦେଇଥିଲେ—କେହି କରଣବୋହୂ ସେଇ ନଖ ଟିକିଏ, କେହି ମୁଣ୍ଡର ବାଳ କେରାଏ, କେହି ଖୁଣା କଉଡ଼ିରୁ କଡ଼ାଏ ଘରେ ପେଡ଼ିରେ ବାନ୍ଧି ରଖିବାପାଇଁ ଆପଣା ଆପଣା ପଣନ୍ତ କାନିରେ ବାନ୍ଧି ରଖିଲେ । ଏହି ସବୁ କାର୍ଯ୍ୟରେ ଦେଢ଼ ପହର ଅନ୍ଦାଜ ବେଳ ବିତି ଗଲାଣି । ଖୋଜ ଆସିବା ଲୋକଙ୍କ ପଛେ ପଛେ ନଈ କୂଳେ କୂଳେ ଘୋଡ଼ାର ଟପା ବସିଥିଲା । ସମସରପୁରରେ ସମ୍ବାଦ ପହଞ୍ଚନ୍ତେ ଘୋର ଆହୁଲା ବାହାଣି ଡଙ୍ଗାରେ ବସି ସେ ଉଆସର ଶିଠ କରଣ ଜମିଦାରଙ୍କଠାକୁ ସମ୍ବାଦ ଆଣିଛି । ଶିଠ କରଣ ସାନ୍ତଙ୍କ ଗୋଡ଼ତଳେ ପଡ଼ି ହାତ ଯୋଡ଼ି ଜଣାଇଲେ, "ପ୍ରଭୁ ! ତୁମ୍ଭରେ ଆଉ କିଛି ଜଣାଇବାର ନାହିଁ । ସବୁ ସରି ଯାଇଛି । ଏ ଆମ୍ଭ କୁଳକନ୍ୟା ନୁହନ୍ତି, ଧର୍ମ ପ୍ରମାଣେ ଆପଣଙ୍କ କୁଳବଧୂ । ଧର୍ମପରାୟଣ ଆପଣ ଉଭୟ କୁଳର, ଅବୋଧ ବାଳିକାର ଧର୍ମ ରକ୍ଷା କରନ୍ତୁ । ଆମ୍ଭ ସାଆନ୍ତ ଆପଣଙ୍କ ଶ୍ରୀଚରଣରେ ମୁଣ୍ଡ ନୁଆଁଇ ଏତିକି ପ୍ରାର୍ଥନା କରିଛନ୍ତି. ଆପଣଙ୍କ ବଧୂଙ୍କ ଅଳଙ୍କାରରେ ହାତ ଦିଆଯିବ ନାହିଁ ।"

ଜମିଦାର ସାଆନ୍ତ 'ଗୋବିନ୍ଦ ତୋ ଇଚ୍ଛା, ତୋ ଇଚ୍ଛା, ତୋ ଇଚ୍ଛା' ତିନି ଥର କହି ଉପସ୍ଥିତ କାର୍ଯ୍ୟ ସମାଧା ନିମନ୍ତେ କରଣ ସାନ୍ତମାନଙ୍କୁ ଆଜ୍ଞା କଲେ ।

ଆକାଶରେ ଇନ୍ଦୁପ୍ରଭା ପ୍ରକାଶ ପୂର୍ବରେ ଅହିଅ ସୁଲକ୍ଷଣୀ ଇନ୍ଦୁମତୀଙ୍କ ମହାପ୍ରସ୍ଥାନର ସମସ୍ତ କାର୍ଯ୍ୟ ଶେଷ ହୋଇଗଲା ।

———

-୪୭-

## ଜେନେରାଲ ହସ୍ପିଟାଲ

କଟକ ଜେନେରାଲ ହସ୍ପିଟାଲ ଉପରତାଲା ଏକପାଖିଆ ଗୋଟିଏ ବଡ଼ କୋଠରି । ଉତ୍ତର ଦକ୍ଷିଣ ମିଳାଣ ବଡ଼ ବଡ଼ ଚଉଠା କବାଟ ଲାଗିଛି । କବାଟ ଯୋଡ଼ାକ ମଝିରେ ସେହିପରି ଉତ୍ତର ଦକ୍ଷିଣ ରୁଜୁ ମିଳାଣ ଉଞ୍ଚା ଉଞ୍ଚା ଯୋଡ଼ାଏ ଝିଙ୍କା । ପଶ୍ଚିମପଟ ଖୋଲା ଆକାଶ ଦିଗକୁ ଯୋଡ଼ାଏ ଝିଙ୍କା । ପୂର୍ବପଟ ଆଉ କୋଠରିକୁ ଯିବାପାଇଁ ଯୋଡ଼ାଏ ଦୁଆର । ଘର ମଧ୍ୟଭାଗରେ ଗୋଟିଏ ଲୁହାର ବଡ଼ ତକ୍ତପୋଷ ପଡ଼ିଛି । ତକ୍ତପୋଷ ଉପରେ ବାଡ଼ିଆ କତାପରି ଗୋଟାଏ ତୋଷକ, ତାହା ଉପରେ ନୀଳାପରି ରେଜାଇଟିଏ ପରା ହୋଇଛି । ବାସିକରୁ ଚଦରଟିରେ ବିଛଣା ଢଙ୍କା — ତା ଉପରେ ସାନ ବଡ଼ ପୁଞ୍ଜାଏ ମାଣ୍ଡି ପଡ଼ିଛି । ବିଛଣାରେ ଗୋଟିଏ ଯୁବକ ରୋଗୀ ଶୋଇଛନ୍ତି । ଖଣ୍ଡିଏ ଶୁକ୍ଳ ଚଦରରେ ସର୍ବାଙ୍ଗ ଢଙ୍କା । ଡାକ୍ତରମାନେ ତାପମାନ ଯନ୍ତ୍ର ଧରି ଥରକୁ ଥର ପରୀକ୍ଷା କରି ଦେଖୁଛନ୍ତି । ୯ ଦିନ କାଳ ଅବିଚ୍ଛେଦ ଜ୍ୱର । ଦେହର ଉତ୍ତାପ ତାପମାନ ଯନ୍ତ୍ରର ଶହେ ପାଞ୍ଚ ଅଂଶରୁ ତଳକୁ ଖସିବାକୁ ନାହିଁ । ରୋଗୀଙ୍କର ଜ୍ଞାନ ମୋହ୍ । ଗୋଟିଏ ଯୁବକ ଚାକର ତକ୍ତପୋଷ ଗୋଡ଼ ପଟରେ ଦିନ ରାତି ରୋଗୀଙ୍କୁ ଚାହିଁ ଜଗି ବସିଛି, ଠାଁରୁ ଉଠିବାକୁ ନାହିଁ । ବେଳେ ବେଳେ ତକ୍ତପୋଷ ବାଡ଼ରେ ମୁଣ୍ଡ ଲଗାଇ ଟିକିଏ ନିଦେଇଯାଏ । ସିଭିଲସାର୍ଜନ ମିଷ୍ଟର ଥାମସ୍, ଆସିଷ୍ଟାଣ୍ଟ ସୁକାନ୍ତ ବାବୁ ସ୍ୱୟଂ ଦିନ ରାତି ଦଶ ପନ୍ଦର ଥର ଆସି ରୋଗୀକୁ ପରୀକ୍ଷା କରି ଯାଆନ୍ତି । ଘଣ୍ଟାକୁ ଘଣ୍ଟା ଯୋଡ଼ାଏ ଯୋଡ଼ାଏ ନର୍ସ ଦିନରାତି ପାଳି କରି ଜଗି ରହିବାର, ପୁଣି ସେମାନେ ପ୍ରତି ଘଣ୍ଟାରେ ଡାକ୍ତରମାନଙ୍କୁ ରୋଗୀର ଅବସ୍ଥା ଜଣାଇ-ବାର ବନ୍ଦୋବସ୍ତ । ଡାକ୍ତରମାନେ ରୋଗୀକୁ ତାପମାନ ଯନ୍ତ୍ରରେ ପରୀକ୍ଷା କରିବା ବେଳେ ସେମାନଙ୍କ ମୁହଁକୁ ଅନାଇ ଚାକରଟା କଣ ବୁଝେ, ତାହା ଆଖିରୁ ଝର୍ ଝର୍ କରି ଦୁଇ ଧାର ଲୋତକ ବହିଯାଏ । ଅନାହାର ଅନିଦ୍ରା ଯୋଗୁଁ ଲୋକଟାର ପଞ୍ଜରାହାଡ଼ ଗଣି ହେଲାଣି, ସହଜରେ ଏଣିକି ଉଠି ବସିବା କଷ୍ଟ; ହେଲେ, ଆପଣା ଦେହ ପ୍ରତି ତାହାର କିଛିମାତ୍ର ଦୃଷ୍ଟି ନାହିଁ ।

ଆଜି ଦଶଦିନ ଦିନ । ବଡ଼ସକାଳେ ଡାକ୍ତରମାନେ ଆସି ରୋଗୀକୁ ପରୀକ୍ଷା କରି ଦେଖିଲେ, ଦେହର ଉତ୍ତାପଟା ତାପମାନ ଯନ୍ତ୍ରର ଶହେ ଦୁଇ ଅଂଶକୁ ଖସି ଆସିଲାଣି । ରୋଗୀ ଟିକିଏ ଟିକିଏ 'ଉଁ ଉଁ' କୁନ୍ଥେଇ ଏକଡ଼ ସେକଡ଼ ହେଉଛନ୍ତି । ଡାକ୍ତରମାନେ ମୁହଁ ଚୁହାଁଚୁହିଁ ହେଲେ । ସେମାନଙ୍କ ମୁଖରେ ଟିକିଏ ଆନନ୍ଦର ଚିହ୍ନ ଦେଖି ଚାକରଟା ଫୁଁ କରି ନିଃଶ୍ୱାସଟାଏ ପକାଇଲା । ଡାକ୍ତରମାନେ ଚାକରର ପ୍ରଭୁଭକ୍ତି ଦେଖି ତା' ଉପରେ ଭାରି ସନ୍ତୁଷ୍ଟ ହୋଇଥିଲେ । ସାହେବ କହିଲେ, "ଆରେ ସଇତା, ଆଉ କିଛି ଚିନ୍ତା ନାହିଁ, ତୋ ସା'ନ୍ତ ଏବେ ଭଲ ହୋଇଯିବେ ।" ସଇତା ସମ୍ଭାଳି ନ ପାରି ଭୋ କରି ରଡ଼ିଟାଏ ଛାଡ଼ିଲା । ଆସିଷ୍ଟାଣ୍ଟ ସାର୍ଜନ ସୁକାନ୍ତ ବାବୁ ଅତି ସାବଧାନରେ ରୋଗୀଙ୍କ କ୍ଷତସ୍ଥାନଗୁଡ଼ିକ ଧୋଇଧାଇ ଦେଇ ସେଥିରେ ପଟି ଲଗାଇ ଦେଲେ । ଅଳ୍ପ ଗରମ ଏକପ୍ରକାର ତରଳ ପଦାର୍ଥ ପଥ୍ୟ ପିଆଇ ଦେଇ ଚାଲିଗଲେ । ଦୁଇ ଘଣ୍ଟାକୁ

ଦୁଇ ଘଣ୍ଟା ସେହିପରି ପଥ୍ୟ ଦେବା ସକାଶେ ଡାକ୍ତର ସାହେବଙ୍କର କମ୍ପାଉଣ୍ଡରଙ୍କ ପ୍ରତି ଦୃଢ଼ ଆଜ୍ଞା ହେଲା ।

———

-୪୩-

## ସ୍ୱାସ୍ଥ୍ୟ ଲାଭ

ଅଳ୍ପ ଅଳ୍ପ କରି ଜ୍ୱରଟା ଊଣା ହୋଇ ପଡ଼ୁଛି । ବର୍ତ୍ତମାନ ରୋଗୀ ବାଡ଼ ଖଣ୍ଡିଏ ଧରି ହୋଟାଲ ଉପର ବାରନ୍ଦାରେ ସଞ୍ଜ ସକାଳ ଟିକିଏ ଟିକିଏ ବୁଲାବୁଲି ହୁଅନ୍ତି । ସିଭିଲ ସାର୍ଜନଙ୍କର ଏହିପରି ଉପଦେଶ । ଦେହର ଘାଗୁଡ଼ାକ ଏକରକମ ଶୁଖି ଉଠିଲାଣି । ସିଭିଲ ସାର୍ଜନ ଖୁବ୍ ମନ ଦେଇ ଚିକିତ୍ସା କରୁଛନ୍ତି ସତ ହେଲେ ଆସିଷ୍ଟାଣ୍ଟ ସାର୍ଜନ ସୁକାନ୍ତ ବାବୁଙ୍କ ପ୍ରଗାଢ଼ ମନଯୋଗ ଓ ବିଶେଷ ପରିଶ୍ରମ ହେତୁରୁ ରୋଗୀ ଏତେ ଜଲଦି ଆରୋଗ୍ୟ ଲାଭ କରିବାକୁ କ୍ଷମ ହେଲେ । ରୋଗୀ ସମସରପୁରରୁ ଅଣାଯିବା ଦିନାବଧି ସୁକାନ୍ତ ବାବୁ ଆପଣାର ସବୁ କାମ ପାଇଁ ଟିକିଏ ଦିନ ରାତି ତାଙ୍କ ପିଛା ଲାଗି ପଡ଼ିଛନ୍ତି । ଡାକ୍ତର ବାବୁଟି ବଡ଼ ଭଦ୍ର ଲୋକ, ନିର୍ଲୋଭ ଏବଂ ଦୟାଳୁ— ଦରିଦ୍ର ଆଉ ବନ୍ଧୁବାନ୍ଧବ ରୋଗୀଙ୍କ ପାଖରୁ ଦର୍ଶନୀ ଟଙ୍କା ପ୍ରାୟ ନିଅନ୍ତି ନାହିଁ । ଅନ୍ୟାନ୍ୟ ରୋଗୀଙ୍କଠାରୁ ଆପଣା ପାଉଣା ଗଣ୍ଡାକ ଅସୁଲ ହେଉ ବା ନ ହେଉ, ସେଥି ପ୍ରତି ଦୃଷ୍ଟି ନ ରଖି ରୋଗୀ କିପରି ଆରୋଗ୍ୟ ଲାଭ କରିବ, ସେଥିପ୍ରତି ତାଙ୍କର ବିଶେଷ ଦୃଷ୍ଟି ।

ରୋଗୀଙ୍କ ସହିତ ଡାକ୍ତର ବାବୁଙ୍କର ପୂର୍ବରୁ ବିଶେଷ ବନ୍ଧୁତା ତ ଥିଲା—ଆହୁରି ଗୋଟାଏ କଥା, ତାହା ଉପରେ ରୋଗୀଙ୍କ ସମାଚାର ସବୁ ଶୁଣିଲେଣି । ସେ ଜାଣନ୍ତି, ରୋଗୀ ଅସୁରେଶ୍ୱର ପରଗନା ଜମିଦାରଙ୍କର ଏକମାତ୍ର ଉତ୍ତରାଧିକାରୀ, କିଛି ଦୁର୍ଘଟନା ହେଲେ ଏତେବଡ଼ ତାଲୁକାଟା ଲଣ୍ଡଭଣ୍ଡ ହୋଇ ଯିବ । ପୁଣି ସମସରପୁର ଜମିଦାରଙ୍କ ବଂଶରେ ଦୁଃଖର ସୀମା ରହିବ ନାହିଁ । କୁଅଁର ଗୋବିନ୍ଦଚନ୍ଦ୍ରଙ୍କ ମର୍ମଭେଦୀ ପ୍ରୟୋଗ ଏବଂ ସ୍ତ୍ରୀଙ୍କ ପ୍ରାଣତ୍ୟାଗ ସମାଚାର ଉପଯୁକ୍ତ ସମୟରେ ଜେନରେଲ ହସ୍ପିଟାଲରେ ପହଞ୍ଚିଥିଲା । ସେତେବେଳେ ରୋଗୀଙ୍କର ଭୟାନକ ଜ୍ୱର, ପ୍ରାୟ ଅଚେତନ ଅବସ୍ଥାରେ ଥିଲେ । ଡାକ୍ତରମାନେ ସ୍ଥିର କଲେ, ରୋଗୀର ଯେପରି ଅବସ୍ଥା, ଏପରି ଦାରୁଣ କଷ୍ଟକର ସମ୍ବାଦ ଶୁଣିଲେ ନିଶ୍ଚୟ ପ୍ରାଣରକ୍ଷା ହେବ ନାହିଁ । ସୁତରାଂ କିଛି ସମ୍ବାଦ ଦିଆ ଯାଇ ନାହିଁ । ସମସରପୁର ତାଲୁକର ଏବଂ ଅସୁରେଶ୍ୱର ପରଗଣାର ଜମିଦାରମାନଙ୍କ ପକ୍ଷର ମାମଲତକାରମାନେ ହସ୍ପିଟାଲ ନିକଟ ବଜାରରେ ବସା କରି ରହିଅଛନ୍ତି ଏବଂ ଦୁଇ ଜାଗାକୁ ଧାଉଡ଼ ପାଇକ ଟିପା ବସିଛି—ରୋଗୀଙ୍କ ସ୍ୱାସ୍ଥ୍ୟ ସମ୍ବାଦ ଦୁଇ ଓଳି ଦୁଇ ଜାଗାକୁ ଯାଉଛି । ହେଲେ ରୋଗୀଙ୍କ ସହିତ ସାକ୍ଷାତ୍ କରିବା ସେମାନଙ୍କୁ ଡାକ୍ତର ସାହେବଙ୍କର ବିଶେଷରୂପେ ମନା । ପୁଣି ସେମାନଙ୍କ ପ୍ରସଙ୍ଗ ସଇତାକୁ ବି ବୋଲା ଯାଏ ନାହିଁ । ସଇତା ମଧ୍ୟ ରୋଗୀଙ୍କୁ ଛାଡ଼ି ଦଣ୍ଡକପାଇଁ ବାହାରକୁ ବାହାରେ ନାହିଁ । ରୋଗୀଙ୍କ ସେବା ବିନା ଆଉ କୌଣସି ବିଷୟରେ ମନ ଦେବାକୁ ତାହାର ଚିର ନାହିଁ ?

———

-୪୪-

## ଦାରୁଣ ସମ୍ବାଦ

ସଞ୍ଜ ବାଜି ଗଲାଣି—ହସ୍ପିଟାଲର ସମସ୍ତ କୋଠରୀରେ ଆଲୁଅ ଜଳୁଛି । କୁଅଁର ଗୋବିନ୍ଦଚନ୍ଦ୍ରଙ୍କ କୋଠରୀ ମଧ୍ୟରେ ଯୋଡ଼ିଏ ଚୌକି ପଡ଼ିଛି । ବାବୁ ନିଜେ ଆଉ ଡାକ୍ତର ସୁକାନ୍ତ ବାବୁ ଦୁଇ ଜଣ ବସି

କଥାଭାଷା ହେଉଥିଲା । କୁଅଁର ବାବୁଙ୍କ ମନ ବହଲେଇବାପାଇଁ ଆଜ କେତେଦିନ ହେଲା ଡାକ୍ତର ବାବୁ ସନ୍ଧ୍ୟାବେଳେ ପାଖରେ ବସି ନାନା ପ୍ରକାର ଖୋସ୍‌ଗପ କରନ୍ତି । ଆଜ ବି ସେହିପରି କଥାଭାଷା ଚାଲୁଛି । ସଇତା ଲେପ ଚଦର ଭଲ କରି ଝାଡ଼ିଝୁଡ଼ି କରି ଶେଯ ପାରିବାରେ ଲଗିଛି । ଏଣୁତେଣୁ କଥା ଚଳିବାବେଳେ କୁଅଁର ବାବୁ ପଚାରି ବସିଲେ, "ହୋଇ ହେ ଡାକ୍ତର ! ଆଜ ସଖାଳେ ତଳ ପ୍ରସ୍ତରେ କଣ ଗୋଟାଏ ରଡ଼ି ଡକା ଗୋଳମାଳ ହେଉଥିଲା ?"

ଡାକ୍ତର ସୁକାନ୍ତ ବାବୁ—"ଓଃ, ସେଇ କଥା—ଗୋଟାଏ ଭିତରିଆ ରୋଗୀ ଢେରଦିନ ହେଲା ହସ୍ପିଟାଲରେ ଥିଲା, ଘରି ଛନ୍ଦୁଆଣ ରୋଗ, ରୋଗୀଟାର ବୟସ ବି ଟଳି ଯାଇଛି, ଢେର କବିରାଜ, ଡାକ୍ତର ପାଖରୁ ବୁଲି ବୁଲି ଶେଷବେଳକୁ ଏଠିକି ଆସିଥିଲା । ସେପରି ରୋଗ କ'ଣ ସହଜରେ ଭଲ ହୁଏ ? ଆଜ ପାହାନ୍ତାପହରୀ ମରିଗଲା । ଲୋକଟା ଥିଲା ମଫସଲର ଜମିଦାର—ସାଙ୍ଗରେ ଗୁଡ଼ାଏ ଲୋକ ଥିଲେ । ତାକୁ ନେଇ ଯିବାବେଳେ ଲୋକଗୁଡ଼ାକ ଡକା ପାରୁଥିଲେ ।"

ଦୁଇଜଣଯାକ ଦଣ୍ଡେ ତୁନି ହୋଇ ବସିଲା ଉତ୍ତାରେ କୁଅଁର ବାବୁ ପଚାରିଲେ, "ହୋଇ ହେ ଡାକ୍ତର ! ମନୁଷ୍ୟର ମୃତ୍ୟୁ ବିଷୟରେ ତୁମର ଡାକ୍ତରୀ ଶାସ୍ତ୍ର କଣ ବୋଲେ ?"

ଡାକ୍ତର—କଣ ପଚାରୁଛ, ବୁଝି ପାରିଲି ନାହିଁ, କଥାଟା ସାଫ ଫିଟେଇ ବୋଲ ।

କୁଅଁର ବାବୁ—ଅର୍ଥାତ୍ ମୁଁ ପଚାରୁଛି ମନୁଷ୍ୟ ମରି ଆଉ ଥରେ ଜନ୍ମେ ନା ଏହିଠାରେ ଶେଷ ?

ଡାକ୍ତର—ଓଃ, ଏଇ କଥା । ଦେଖନ୍ତୁ ବନ୍ଧୁ ! ଡାକ୍ତରୀ କାରବାରରେ ମନୁଷ୍ୟର ଜଡ଼ପିଣ୍ଡ ନେଇ କାରବାର । ଆପଣ ଯାହା ପଚାରିଲେ, ତାହା ତ ଆଧ୍ୟାତ୍ମ ପ୍ରସଙ୍ଗ—ଏହା ଧର୍ମଶାସ୍ତ୍ରର କଥା । ଦେଖନ୍ତୁ, ବନ୍ଧୁ ! ପୃଥିବୀରେ ଯେତେପ୍ରକାର ଧର୍ମଶାସ୍ତ୍ର ଅଛି, ଏମନ୍ତ କି, ଧର୍ମଗ୍ରନ୍ଥ ହୀନ ଜଡ଼ ଉପାସକମାନେ ମଧ୍ୟ ଆତ୍ମାର ଅମରତ୍ୱ ସ୍ୱୀକାର କରନ୍ତି । ଈଶ୍ୱରଦ୍ୱେଷୀ ଯେ ଦର୍ଶନଶାସ୍ତ୍ର ସେ ବି ମାନବାତ୍ମାର ଅମରତ୍ୱ ଅସ୍ୱୀକାର କରିପାରି ନାହିଁ ।

କୁଅଁର ବାବୁ—ଚାର୍ବାକ, କୋମତଙ୍କ ଶିଷ୍ୟ ତ ଆତ୍ମା ଶରୀର ସହିତ ବିଧ୍ୱଂସୀ ବୋଲି ବ୍ୟାଖ୍ୟା କରନ୍ତି । ଚାର୍ବାକର ସୁସ୍ପଷ୍ଟ ମତ —

"ଋଣଂ କୃତ୍ୱା ଘୃତଂ ପିବେତ୍ ।"
"ଭସ୍ମୀଭୂତସ୍ୟ ଦେହସ୍ୟ ପୁନରାଗମନଂ କୁତଃ ।"

ଡାକ୍ତର ସୁକାନ୍ତ ବାବୁ—ହୋଃ, ହୋଃ ! ଚାର୍ବାକ ବୋଲି ନାମଟାଏ ବର୍ତ୍ତମାନ ଶୁଣିବାକୁ ମିଳେ ସତ, ହେଲେ ତାଙ୍କ ଦର୍ଶନ କେବେ କୌଣସି କାଳରେ ଥିଲା, ଜ୍ଞାନୀ ଲୋକେ ବହୁକାଳରୁ ତାହାକୁ ନିତାନ୍ତ ଘୃଣା, ନିତାନ୍ତ ଅବଜ୍ଞା ସହିତ ପରିତ୍ୟାଗ କରିଅଛନ୍ତି । ସେହି ଜଘନ୍ୟ ଦର୍ଶନ ପୃଥିବୀରୁ ଏକାବେଳକେ ବିଲୁପ୍ତ ହୋଇ ଯାଇଅଛି । ବିଲୁପ୍ତ ହେବା ସମ୍ପୂର୍ଣ୍ଣରୂପେ ଉଚିତ । ସତ କଥା, ଲକ୍ଷ ଲକ୍ଷ ମନୁଷ୍ୟ ମଧ୍ୟରେ ଜଣେ ଜଣେ ଅନାତ୍ମବାଦୀ ଏବଂ ନିରୀଶ୍ୱର ଦେଖିବାକୁ ମିଳନ୍ତି । ପରକାଳରେ ସେମାନଙ୍କ ପକ୍ଷରେ ଯାହା ହେଉ, ମାତ୍ର ପ୍ରତ୍ୟକ୍ଷ ଦେଖିବାରେ ଆସେ, ସେହି ଦୁର୍ଭାଗା ଲୋକେ ଜୀବନ ଗୋଟାକ ନିତାନ୍ତ ଅଶାନ୍ତି, ଜୀବନରେ ବ୍ୟାକୁଳତା ଭୋଗ କରିଥାନ୍ତି । ତୁମ୍ଭେ ପିଶାଚ, ରାକ୍ଷସ, ସର୍ପବଂଶକୁ ବିଶ୍ୱାସ କରିପାର, ମାତ୍ର ସେହି ନାସ୍ତିକ ବଂଶକୁ କଦାଚ ବିଶ୍ୱାସ କରିବ ନାହିଁ । ସେମାନଙ୍କ ମନ ମାନବ-ସମାଜ ପ୍ରତି ଦୟା-ମାୟା-ମମତ୍ୱଶୂନ୍ୟ—ନିଜର ସୁଖ ସମ୍ପଦ ଭୋଗ ସେମାନଙ୍କର ଏକମାତ୍ର ଲକ୍ଷ ଅଟେ । ସେମାନଙ୍କର ଅସାଧ୍ୟ କୌଣସି ଦୁଷ୍କର୍ମ ନାହିଁ, କେବଳ ରାଜଦଣ୍ଡ

ଉପ୍ୱରୁ ସେମାନେ ଦୁଷ୍କର୍ମରୁ ନିବୃତ୍ତ ଥାନ୍ତି ମାତ୍ର । ସେମାନଙ୍କ କଥା ଏକାବେଳକେ ପରିତ୍ୟାଗ କରନ୍ତୁ । ବର୍ତ୍ତମାନ ଧାର୍ମିକ ବିବେକଶାଳୀ ଲୋକ ଏବଂ ଧର୍ମଶାସ୍ତ୍ର ଆଲୋଚନା କରିଯାଉ । ମୁଁ ପୂର୍ବେ କହିଛି, ଜଗତର ସମସ୍ତ ଧର୍ମଶାସ୍ତ୍ରର ଏକ ମତ—ମାନବାତ୍ମା ଅବିନାଶୀ; ମୃତ୍ୟୁ ବୋଲି ଯାହା କଥିତ ହୁଏ, ଆତ୍ମାର ଗୋଟିଏ ଜୀର୍ଣ୍ଣ ଶରୀର ପରିତ୍ୟାଗ ମାତ୍ର । ଆଉ ସମସ୍ତ ଧର୍ମଶାସ୍ତ୍ର ଥାଉ, ସର୍ବବାଦସମ୍ମତ ପୃଥିବୀର ସର୍ବଶ୍ରେଷ୍ଠ ଧର୍ମଶାସ୍ତ୍ର ଶ୍ରୀମଦ୍‌ଭଗବଦ୍‌ଗୀତା ଏଥି ସମ୍ବନ୍ଧରେ କଣ ବୋଲିଛନ୍ତି; ଶୁଣନ୍ତୁ -

"ବାସାଂସି ଜୀର୍ଣ୍ଣାନି ଯଥା ବିହାୟ
ନବାନି ଗୃହ୍ଣାତି ନରୋଽପରାଣି ।
ତଥା ଶରୀରାଣି ବିହାୟ ଜୀର୍ଣ୍ଣା-
ନାନ୍ୟାନି ସଂଯାତି ନବାନି ଦେହୀ ।"
"ଜାତସ୍ୟ ହି ଧ୍ରୁବୋ ମୃତ୍ୟୁ
ର୍ଧ୍ରୁବଂ ଜନ୍ମ ମୃତସ୍ୟ ଚ ।
ତସ୍ମାଦପରିହାର୍ଯ୍ୟେଽର୍ଥେ
ନ ତ୍ୱଂ ଶୋଚିତୁମର୍ହସି ।"
"ଦେହିନୋଽସ୍ମିନ୍ ଯଥା ଦେହେ
କୌମାରଂ ଯୌବନଂ ଜରା ।
ତଥା ଦେହାନ୍ତରପ୍ରାପ୍ତି-
ର୍ଧୀରସ୍ତତ୍ର ନ ମୁହ୍ୟତି ।"

ଗୀତା ଶାସ୍ତ୍ରରେ ଏହିପରି ଅନେକଗୁଡ଼ିଏ ମହାବଚନ ସୁସ୍ପଷ୍ଟ ଉଲ୍ଲିଖିତ ଅଛି । ମୃତ୍ୟୁ ବୋଲି ଆଉ କିଛି ନୁହେ; ଆମ୍ଭମାନଙ୍କ ବର୍ତ୍ତମାନରେ ଯେଉଁ ସମସ୍ତ ଲୋକ ମୃତ୍ୟୁଲାଭ କରୁଅଛନ୍ତି, ସେମାନେ ଅଗ୍ରଗାମୀ; ମାତ୍ର ଆମ୍ଭେମାନେ ଯାଇ ସେମାନଙ୍କ ସହିତ ପୁନର୍ବାର ମିଳିତ ହେବୁଁ । ଏଥିପାଇଁ ଜ୍ଞାନିଗଣ ମୃତଲୋକଙ୍କ ସକାଶେ ବିଳାପ କରନ୍ତି ନାହିଁ; ମଧ୍ୟ ବିଳାପ କରିବାକୁ ଧର୍ମଶାସ୍ତ୍ରରେ ମନା । ଏତିକି କଥା ବୋଲି ଡାକ୍ତର ବାବୁ ଦଣ୍ଡେଯାଏ ତୁନି ହୋଇ ବସି ରହିଲେ । କୁଅଁର ବାବୁ ଏଥର ଭଲ କରି ଦେଖିଲେ, ମଧ୍ୟ ଅନେକଥର ଦେଖିଲେଣି, ଡାକ୍ତର ବାବୁ କଥା ବୋଲୁଁ ବୋଲୁଁ ତେର ଥର ଥକି ରହିଯାନ୍ତି, ଥରକୁ ଥର ତାଙ୍କ ମୁହଁକୁ ଅନାନ୍ତି, ଯେମନ୍ତ କିଛି ଗୋଟାଏ କଥା ବୋଲିବାଲାଗି ବେଳ ଉଣ୍ଡୁଛନ୍ତି । ସାନ୍ତଙ୍କ ଏପ୍ରକାର ଚିନ୍ତା କରିବା ସମୟରେ ଡାକ୍ତର ସୁକାନ୍ତ ବାବୁ କେତେଥର ଉପରକୁ ଆଉ କେତେଥର କୁଅଁର ବାବୁଙ୍କ ମୁହଁକୁ ଚାହିଁ ତାଙ୍କ ଖାଇବ ବାହୁ ଦୁଇ ହାତରେ ଟାଣି କରି ଧରି କହିଲେ, ଆଚ୍ଛା ବନ୍ଧୁ ! ତୁମ୍ଭ ମାମା ସାଁ—

ଡାକ୍ତର ବାବୁଙ୍କ କଥା କହିବା ସରି ନାହିଁ, କୁଅଁର ବାବୁ ଅତି ଚଞ୍ଚଳ, ଅତି ବଳରେ ଛୁଡ଼ା ହୋଇପଡ଼ି 'ଏଁ – ମୋ ମା ନାହାନ୍ତି ?' କହି ମାମା—ମାମା ବୋଲି ରଡ଼ି ଛାଡ଼ୁଛନ୍ତି । ସଇତା ଧାଇଁ ଆସି ମାମା—ମାମା ମାମା ସାନ୍ତାଣୀ ବୋଲି ଭାରି ରଡ଼ିଟାଏ ଛାଡ଼ିଛି । ସାନ୍ତଙ୍କ କଷ୍ଟ ଦେଖି ସଇତା ତେର ଥର କାନ୍ଦେ, ହେଲେ ସରକାରୀ ଜାଗା ବୋଲି ପାଟିକରି କାନ୍ଦେ ନାହିଁ । ଉତ୍ତୁଣିକା ତାର ସେ ଜ୍ଞାନ ନାହିଁ, ସାନ୍ତଙ୍କ ଗୋଡ଼ ଯୋଡ଼ାକ ଜାବୁଡ଼ି ଧରି ଡାକ ପକାଇଛି ।

ଏତିକି ଉତ୍ତାରେ କୁଅଁର ବାବୁ ଟିକିଏ ତୁନି ହୋଇ ତୁଚ୍ଛା ଧକେଇ ହେଉଛନ୍ତି । ଡାକ୍ତର ବାବୁ ଭିଜା ରୁମାଲରେ ଥରକୁ ଥର ମୁହଁ ପୋଛି ଦେଇ ନାନାପ୍ରକାର କଥା କହି ସାନ୍ତ୍ୱନା କରୁଛନ୍ତି । ସଇତା ବେକ ଭାଙ୍ଗି ସାନ୍ତଙ୍କ ଗୋଡ଼ରେ ମୁଣ୍ଡ ଲଗାଇ ପଡ଼ି ଯାଇଛି ।

ଡାକ୍ତର ବାବୁ ଦେଖିଲେ, ଭାରି ବିପଦ । ଡାକ୍ତର ସାହେବ ହସ୍ପିଟାଲରୁ କୋଠିକୁ ଯିବାବେଳେ ବଗିରେ ବସି ତାଙ୍କୁ ନିର୍ଭୋଳାରେ କହି ଯାଇଛନ୍ତି, କୁଅଁର

ବାବୁଙ୍କୁ ଆଉ ଅନ୍ଧକାରରେ ରଖିବା ଉଚିତ ନୁହେ—ମାତା ଏବଂ ସ୍ତ୍ରୀ ଦୁହିଙ୍କ ମୃତ୍ୟୁ କଥା ଆଜି ଶୁଣାଇ ଦେବାକୁ ହେବ । କୁଅଁର ବାବୁଙ୍କର ବର୍ତ୍ତମାନ ଯେପରି ଅବସ୍ଥା, ତାଙ୍କ ଭାର୍ଯ୍ୟାର ମୃତ୍ୟୁ ସମ୍ବାଦ ଦେବାକୁ ଭରସା ଖଟୁ ନାହିଁ ଏବଂ ସାହେବଙ୍କ ଆଦେଶ ପୂର୍ଣ୍ଣରୂପେ ପାଳନ ନ କଲେ କାଲି ସକାଳେ ଆସି ପଚାରିଲେ କଣ ବୋଲିବେ ? ଯାହା ଥାଉ କପାଳରେ, ବୋଲିବାକୁ ହେବ ।

ଏଥି ମଧ୍ୟରେ ପହରେ କାଳ ବିତି ଗଲାଣି, କୁଅଁର ବାବୁ ନିର୍ବାକ ହୋଇ ବସିଛନ୍ତି । ଡାକ୍ତର ବାବୁ ଠାର ଦେବାରୁ ଜଣେ ହସ୍ପିଟାଲ ସହକାରୀ ଦୁଇଟା କାଚ ଗ୍ଲାସରେ ଦୁଇଗ୍ଲାସ ଏକ ପ୍ରକାର ଟନିକ ଔଷଧ ଆଣି ଦେଲେ । ସୁକାନ୍ତ ବାବୁଙ୍କୁ କୁଅଁର ବାବୁ ଆଉ ସଇତାକୁ ଟିକିଏ କଷ୍ଟରେ ପିଆଇ ଦେବାକୁ ପଡ଼ିଲା ।

ଡାକ୍ତର ବାବୁ କୁଅଁର ବାବୁଙ୍କ ଅଜାଣରେ ତାଙ୍କ ନାଡ଼ୀ ପରୀକ୍ଷା କରି ଦେଖିଛନ୍ତି । ବର୍ତ୍ତମାନ ଦେଖିଲେ, ବାବୁ ସାଷ୍ଟମ ହୋଇଛନ୍ତି । ଅତି କଷ୍ଟରେ, ଅତି ଅନିଚ୍ଛାରେ କୁଅଁର ବାବୁଙ୍କୁ ଶୁଣାଇ ଶୁଣାଇ କହିବାକୁ ଲାଗିଲେ । "ଅବଶ୍ୟ ମାତୃବିୟୋଗ ବଡ଼ କଷ୍ଟକର, ହେଲେ ତାଙ୍କର ସମୟ ହୋଇଥିଲା, ତେବେ —"ଏତିକି କହି ତୁନି ହୋଇଗଲେ । କୁଅଁର ବାବୁ ମୁହଁ ଟେକି ଡାକ୍ତରଙ୍କ ମୁହଁକୁ ଅନାଇଛନ୍ତି; ଆଖିରେ ପିଛୁଡ଼ା ପଡ଼ୁ ନାହିଁ । ଡାକ୍ତର ତାଙ୍କ ମୁହଁକୁ ଅନାଇ ଧୀରେ ଧୀରେ କହିଲେ, ସ୍ତ୍ରୀ ସକାଶେ ଚିନ୍ତା କଣ—

କୁଅଁର ବାବୁ, 'ଏଁ ଏଁ ଏଁ — ଇନ୍ଦୁ ! ଇନ୍ଦୁ ! ହାୟ ମୋ ଇନ୍ଦୁ !' ଚେତା ମୋହ୍ । ସୁକାନ୍ତ ବାବୁ ଆଉ ଦୁଇ ତିନି ଜଣ ସହକାରୀ ଧରାଧରି କରି ଟେକି ନେଇ ବିଛଣାରେ ଶୁଆଇ ଦେଲେ । ସଇତା ବି ସେହିପରି ପଡ଼ି ଯାଇଥିଲା, ତାକୁ ମଧ୍ୟ ଆନ ଧରି ଶୁଆଇ ଦିଆଗଲା । ସୁକାନ୍ତ ବାବୁ, ଆଉ ତିନି ଚାରିଜଣ ସହକାରୀ, ଜଣ ଆଠ ଗୁଷ ରାତି ଗୋଟାକ ଜଗି ବସିଛନ୍ତି । କାହାରି ଆଖିରେ ନିଦ୍ରା ନାହିଁ ।

———

–୪୫–

## ଅନୁତାପ

ଅସୁରେଶ୍ୱର ପରଗଣାର, ସମସରପୁର ତାଲୁକର ଦୁଇ ଜମିଦାରଙ୍କ ଉଆସ ଭିତର ବାହାରେ ଯେମନ୍ତ ମାଛିଟି ମରି ଯାଇଛି । କି ମାଇକିନିଆ, କି ମରଦ, ସମସ୍ତେ ଗାଲରେ ହାତ ଦେଇ ବସିଛନ୍ତି, କାହାରି ପାଟିରୁ କଥାଟିଏ ଫିଟିବାକୁ ନାହିଁ । ଜମିଦାର ବୈଷ୍ଣବଚରଣ ପଟ୍ଟନାୟକ ବିଦ୍ୟାଧର ମହାପାତ୍ରେ ଦୁର୍ଯୋଗ ଘଟଣା ଦିନାବଧି ଆଉ କିଛି କଥା ବୁଝିବାକୁ ନାହିଁ, ଦିନ ରାତି ସବୁବେଳେ ଇଷ୍ଟଦେବତା ଗୋବିନ୍ଦ-ଜୀଉଙ୍କ ସାକ୍ଷାତରେ ବେକରେ ପଟକା ପକାଇ ଆଖି ବୁଜି ବସିଛନ୍ତି । ମନ ମଧ୍ୟରେ ପ୍ରଭୁଙ୍କୁ ଧ୍ୟାନ— ପାଟି ଫିଟୁ ନ ଥିଲା, ଆଜି ସକାଳେ ଦେହପାଣି ବଢ଼ାଇ ସେଇ ଭିଜା ଲୁଗାରେ ପ୍ରଭୁଙ୍କ ସାକ୍ଷାତରେ ହାତଯୋଡ଼ି ତେର କଥା ଜଣାଣ କଲେ । ସେଥିର ସାରମର୍ମ—

'ଗୋବିନ୍ଦ ! ପ୍ରଭୁ ଗୋବିନ୍ଦ ! ଜୀବନର ସ୍ୱାମୀ ଗୋବିନ୍ଦ । ଏହି ବଂଶର ଅଧିକାରୀ ତୁ । କେତେ ପୁରୁଷରୁ ତୋ ଚରଣରେ ଖଟଣି ଦାସୀ ହୋଇ ପଡ଼ିଛୁଁ । ସବୁ ସମ୍ପତ୍ତିର ଅଧିକାରୀ ତୁ, ମୁଁ ତୋ ଶ୍ରୀଚରଣ ଦାସ; ମାତ୍ର ମଦଗର୍ବରେ ଭୋଳ ହୋଇ ସେ କଥା ବୁଝିଲି ନାହିଁ । ମୁଁ ଶ୍ରୀକରଣଗୋଷ୍ଠୀର ମଉଡ଼ମଣି, ମୁଁ ଦେଶର ରାଜା, ମୋହର ଅତୁଳ ସମ୍ପତ୍ତି, ମୋ ପାଖରେ ଲୋକେ ଖଟି ରହନ୍ତି, ଏହି ଗର୍ବରେ ଆପଣାକୁ ବଡ଼, ଆଉ ଲୋକଙ୍କୁ ତୁଚ୍ଛ ମଣି ଅପମାନ କରିଛି ।

ପ୍ରଭୁ ଗୋବିନ୍ଦ ! ଜଗତ୍‌ବାସୀ ସମସ୍ତେ ତୁମ୍ଭର ପୁତ୍ର କନ୍ୟା, ତୁମ୍ଭ ନ୍ୟାୟ ବିଚାରରେ ମୋ ଗର୍ବ ରହିବ କିଁଆ ? ଗର୍ବଗଞ୍ଜନ ବାନା ବହିଛ—ମୋ ଗର୍ବଟା ଭାଙ୍ଗି ଚୂନା କରିଦେଲ, ଭଲ କଲ । ବାପା ! ମୋତେ ଲୋକଙ୍କ ପଦଧୂଳିର ଯୋଗ୍ୟ କରିଦିଅ, ସବୁ ଛାଡ଼ି ତୁମ୍ଭ ପଦସେବାରେ ମୋତେ ଲଗାଇ ଦିଅ । ପ୍ରଭୁ ! ଜୀବନର ସ୍ୱାମୀ ! ମୋ ପୁତ୍ର ଗୋବିନ୍ଦର ସମସ୍ତ ଅପରାଧ କ୍ଷମା କର । ମୋ ପୁତ୍ର କିଣ, ଏହି ବଂଶର ସମ୍ପତ୍ତି ରକ୍ଷା ନିମନ୍ତେ ତାକୁ ସ୍ଥାପନ କରିଛ, ତୁମ୍ଭ ଚରଣ ଦାସ କରି ପକାଅ । ମନ୍ଦ ସଙ୍ଗରେ ପଡ଼ି ଯେଉଁ ଅନ୍ୟାୟ କାର୍ଯ୍ୟ କରୁଥିଲା, ଉଚିତ ଦଣ୍ଡ ଦେଇଛ । ବୁଝି ବସିଲେ ସେ ନିର୍ଦ୍ଦୋଷ, ମୋ ଅପରାଧରୁ ସେ ଦଣ୍ଡ ପାଇଛି । ପ୍ରଭୁ ! ତାକୁ କ୍ଷମା କର । ପ୍ରଭୁ ! ତୁମ୍ଭ ବିଷୟ ରଖି ମୋତେ ଅଲଗା କରି ନିଅ । ମୁଁ ତୁମ୍ଭ ନିଜ ଧାମକୁ ଯାଇ ଆପଣା କୃତ ପାପରେ ପ୍ରାୟଶ୍ଚିତ୍ତ କରିବାକୁ ଇଚ୍ଛା କରେଁ । ପ୍ରଭୁ ! ମୋ ବାସନା, ମୋ ପ୍ରାର୍ଥନା ପୂର୍ଣ୍ଣ କର ।'

ସାଆନ୍ତେ ପୂର୍ବ ରୀତିରେ ଗୁମୁକରଣଙ୍କ ହାତରେ ଖଣ୍ଡିଏ ଚରମପତ୍ର ଲେଖାଇ ହାତରେ ଧରିଥିଲେ, ଦଣ୍ଡ ପ୍ରଣାମ କରି ପ୍ରଭୁଙ୍କ ପାଦ-ପଦ୍ମରେ ସେହି ମୁଦି ଲେଖାଟି ଥୋଇଦେଲେ । ସେହି ଚରମପତ୍ରର ସାରମର୍ମ :—

'ଆମ୍ଭ ବଂଶର ଯାବନ୍ତ ସ୍ଥାବରାସ୍ଥାବର ସମ୍ପତ୍ତି କୁଳଦେବତା ଗୋବିନ୍ଦଚନ୍ଦ୍ରଙ୍କ ଦତ୍ତ ଅଟେ । ବର୍ତ୍ତମାନ ସେହି ସମସ୍ତ ସମ୍ପତ୍ତି ପ୍ରଭୁଙ୍କ ପାଦପଦ୍ମରେ ପ୍ରତ୍ୟର୍ପଣ କରି ନିଜ କୃତ ପାପର ପ୍ରାୟଶ୍ଚିତ୍ତ ନିମନ୍ତେ ପ୍ରଭୁଙ୍କ ନିଜ ଧାମକୁ ଯାଉଅଛୁଁ । ଆମ୍ଭ ଉଆସରେ ଦାସଦାସୀ ଯେତେ ପ୍ରାଣୀ ଅଛନ୍ତି, ପ୍ରଭୁଙ୍କ ପ୍ରସାଦ ସେବାକରି ପ୍ରତିପାଳିତ ହେବେ । ଆମ୍ଭର ଏକମାତ୍ର ପୁତ୍ରକୁ ପ୍ରଭୁଙ୍କ ସେବାଯୁକ୍ତ ପଦରେ ନିଯୁକ୍ତ କଲୁଁ । ସେ ଆପଣାର ଖୋରାକ ପୋଷାକ ମାତ୍ର ପ୍ରଭୁଙ୍କ ସମ୍ପତ୍ତିରୁ ପ୍ରାପ୍ତ ହେବ ।'

କେମାମଣିଙ୍କର ବିୟୋଗ ଦିନାବଧି ସାମନ୍ତ ନିର୍ଦ୍ଧନ ମହାନ୍ତିଏ ଅଚେତ ଥିବା ପରି ଶେଯରେ ପଡ଼ିଥିଲେ । କାହାରି ସହିତ କିଛି କଥାଭାଷା ନ ଥିଲା, କେହି ହେଲେ ଭରସି ପାଖ ଦେଇ ପାରୁ ନ ଥିଲେ, କେବଳ ଶିଠକରଣ ରାମହରି ମହାନ୍ତିଏ ବହୁତ ବିନୟରେ ବହୁତ ଯତ୍ନରେ ସାନ୍ତଙ୍କ ଭୋଜନା ମାତ୍ର ବଢ଼ାଇ ଦେଉଥିଲେ ।

ଆଜିକରେ ଯେମନ୍ତ ସହସା ସମସ୍ତ ସାମର୍ଥ୍ୟ ପାଇ ଗଲେଣି । କଥାଭାଷା ଆଉ ମୁଖାକୃତିରୁ ତାଙ୍କ ମନରେ କିଛି ଦୁଃଖ ବା ସୁଖ ଥିବାର ଜଣା ପଡ଼ୁ ନାହିଁ । ସଦର ମଫସଲ ସମସ୍ତ କରଣ ପଧାନ ପଟ୍ଟଆରି ଗ୍ରାମସ୍ଥ ଆଉ ଆଉ ମୁଖ୍ୟ ଲୋକେ ସାନ୍ତଙ୍କ ଡାକରାରେ ଉପସ୍ଥିତ । ବିନୋଦବିହାରୀଙ୍କ ଆଗ ଅଗଣାରେ ସମସ୍ତେ ହାତଯୋଡ଼ି ମୁଣ୍ଡ ପୋତି ସାନ୍ତଙ୍କୁ ବେଢ଼ି ବସିଛନ୍ତି । ଶତାବଧି ଉପରି ଲୋକ ଉପସ୍ଥିତ, ଟାଣ ନିଃଶ୍ୱାସଟାଏ ବି ଶୁଭୁ ନାହିଁ, ଛୁଞ୍ଚିଟିଏ ପଡ଼ିଲେ ଠୁଣି କରି ଶବ୍ଦଟାଏ ହେବ ।

ସାଆନ୍ତେ ସମସ୍ତଙ୍କୁ ଅନାଇ ଟାଣ ନିଃଶ୍ୱାସଟାଏ ପକାଇ କହିଲେ, "ଭାଇମାନେ ! ଆପଣମାନେ ସମସ୍ତେ ଜାଣନ୍ତି, ପ୍ରଭୁଙ୍କ ରାଜ୍ୟରେ ସମସ୍ତ ଘଟଣା ତାଙ୍କ ଆଜ୍ଞାରେ ଆତଯାତ ହେଉଛି । ହେଲେ ମନୁଷ୍ୟମାନେ ଆପଣା ଆପଣା କୃତ ପାପ ପୁଣ୍ୟ ଯୋଗୁ ସୁଖ ଦୁଃଖ ଭୋଗ କରନ୍ତି । ଭାଇମାନେ ! ଆପଣମାନେ ପ୍ରତ୍ୟକ୍ଷରେ ଦେଖି ବୁଝୁଛନ୍ତି ତ, କେବଳ ମୋହର ଅଧର୍ମ ଆଚରଣ ଯୋଗୁଁ ଦେଶ ମଧ୍ୟରେ ଯୋଡ଼ାଏ ପ୍ରଧାନ ବଂଶ ଲଣ୍ଡଭଣ୍ଡ ହୋଇଯାଇଛି ।"

ଥୋକେ ମୁରବିଭଲିଆ କରଣ କାନ୍ଦୁଣୁ ମାନ୍ଦୁଣୁ ହୋଇ ହାତଯୋଡ଼ି କହିଲେ, "ଆଜ୍ଞା—ଆଜ୍ଞା ନାହିଁ, ନାହିଁ, ଏହା ଦୈବାଧୀନ ଘଟଣା ଅଟେ; ଏଥିରେ

କାହାର ଆୟତ୍ତ ନାହିଁ ।'' ବୃଦ୍ଧ ପୁରୋହିତ ହରିରାମ ତିହାଡ଼ିଏ କହିଲେ:—

''ଯଦ୍‌ଭାବି ତଦ୍‌ଭବତି ନାନ୍ୟଥା ଯତ୍ନତୋଽପି
ଯତ୍ନେନାପି ବହୁନାନ ଭବତ୍ୟଭାବ ।''

ସାଆନ୍ତେ—''ହେଉ, ତାହି ହେଲେ ମୋହର ସବୁ ସରି ଗଲାଣି । ଏକା ଇନ୍ଦୁ ଅଭାବରୁ ମୋ ପକ୍ଷରେ ଏବେ ଜଗତ୍ ସଂସାର ସମସ୍ତ ଅନ୍ଧକାରମୟ । ଭାଇମାନେ ! ଗଲା ରାତି ଶେଷରେ ସାନ୍ତାଣୀ ଆସି ସ୍ୱପ୍ନରେ କହି ଯାଇଛନ୍ତି—ମୋତେ ପ୍ରାୟଶ୍ଚିତ୍ତ କରିବାକୁ ହେବ । ହେଲେ ମୋହର ଘୋର ପାପ ସକାଶେ ତ କିଛି ପ୍ରାୟଶ୍ଚିତ୍ତ ଦେଖି ନାହିଁ । ମନରେ ପାଞ୍ଚୁଛି, ସମସ୍ତ ତୀର୍ଥୋଦକ, ସମସ୍ତ ତୀର୍ଥରେଣୁ ମସ୍ତକରେ ପଡ଼ିଲେ ବା ଆତ୍ମା କିଞ୍ଚିତ୍ ଶାନ୍ତିଲାଭ କରିବ ।

''ଭାଇମାନେ ! ମୁଁ ଲେଖାପଢ଼ା କରି ଦେଇଗଲି । ଏ ବଂଶର ସମସ୍ତ ସମ୍ପତ୍ତି ବିନୋଦବିହାରୀଙ୍କର—ଜୁଆଇଁ କୁଅଁର ବାବୁ ସେବାୟତ ହୋଇ ରହିବେ । ହେଲେ ସେ ପିଲାଲୋକ, ତାଙ୍କୁ ଚଳାଚଳ କରାଇ ନେବାକୁ ହେବ । ସମସ୍ତେ ଆପଣା ଆପଣା ଏଲାକାରେ ରହିବେ, କେହି ଏଲାକାଚ୍ୟୁତ ହେବ ନାହିଁ ।

''ମଚ୍ଛୁଆଟିକୁ ଆପଣମାନଙ୍କ ହାତରେ ସମର୍ପି ଦେଇଗଲି । ଅବୋଧ ବାଳିକା, ବିଶେଷରେ ଉତ୍କୁଣିକା ତାହାର କିଛିମାତ୍ର ଜ୍ଞାନ ନାହିଁ, ସଂସାର କଥା କିଛି ଜାଣେ ନାହିଁ । ଉଆସ ଭିତରେ ଅଧିକାର ତା ହାତରେ ରହିବ । ତା ବାପର ଊଣା ଅଧିକ ଲକ୍ଷାବଧି ଟଙ୍କା ସରକାର ତହବିଲରେ ଜମା ଅଛି । ସେଥିରେ ହାତ ଦେବେ ନାହିଁ—ଗୋଟିଏ ଉପଯୁକ୍ତ ପାତ୍ର ଲୋଡ଼ି ତାକୁ ସମର୍ପଣ କରିବେ, ସେତେବେଳେ ସବୁ ଟଙ୍କା ତା ଜିମାରେ ଦେବେ । ବର୍ତ୍ତମାନ ତାହା ଚଳାଚଳପାଇଁ ଆମ୍ଭ ତହବିଲରୁ ପାଇବ ।

''ଭାଇମାନେ ! ମୋ କଥା ଶେଷ ହେଲା, କାହାରି-ଠାରେ କିଛି ଅପରାଧ କରିଥିଲେ କ୍ଷମା କରିବେ ।''

ଉପସ୍ଥିତ ସମସ୍ତ ଲୋକ ସାନ୍ତଙ୍କ ଗୋଡ଼ତଳେ ପଡ଼ି ଲୋଟି ଯାଉଛନ୍ତି । ଭେଁ ଭେଁ ରଡ଼ି ଛାଡ଼ି କହିଲେ—''ପ୍ରଭୁ ! ଏପରି ଆଜ୍ଞା କରିବେ ନାହିଁ, ଆମ୍ଭେମାନେ କାହା ଆଶ୍ରା ଧରି ବଞ୍ଚିବୁ ?''

ସାଆନ୍ତ—''ଭାଇମାନେ ! ମୁଁ ଏତେକାଳ ବିଷୟ-ଭୋଗରେ ପଡ଼ି ପ୍ରଭୁଙ୍କୁ ଭୁଲି ଯାଇଥିଲି । ଆତ୍ମାର ସଦ୍‌ଗତି ନିମନ୍ତେ ପ୍ରଭୁଙ୍କ ପାଦପଦ୍ମ ଆଶ୍ରୟ ନେଉଛି । ମୋତେ କରୁଣା କରନ୍ତୁ ।''

ତହିଁ ଆରଦିନଠାରୁ ସାମନ୍ତ ସଙ୍କର୍ଷଣ ମହାପାତ୍ରଙ୍କୁ ସମସରପୁର ଏଲାକା ମଧ୍ୟରେ ଆଉ କେହି ଦେଖି ନାହିଁ ।

ମଚ୍ଛୁଆ ଯାହା ଟିକିଏ ଧାଷ୍ଟମ ହୋଇ ଆସୁଥିଲା, ସାନ୍ତ ଉଆସ ଛାଡ଼ି ଯିବା ଦିନଠାରୁ ତାହାର ସବୁ ବୁଦ୍ଧି ଲୋପ ହେଲାଣି—ବଡ଼ ଧୂଳିଆ ଘର କୋଣିଟାକୁ ଆଁ କରି ଏକଧ୍ୟାନରେ ଅନାଇ ବସିଥାଏ, ଆଖିରେ ପଛଡ଼ା ପଡ଼ିବାକୁ ନାହିଁ—ସେ ଯେ କିଛି ଦେଖୁଛି, ଶୁଣୁଛି, ବୁଝୁଛି, ଏପରି ଜଣାଯାଏ ନାହିଁ । ଏପରି ଥୋକେ ଦିନ ଗଲା । ଏଣିକି ବେଳେ ବେଳେ କହି ଭାଳେ—ମୋହରି ଦୋଷରୁ ଜେମାମଣିକୁ ହରାଇ ବସିଛି । କାହୁଁ କାଳନିଦଶାଏ ଆସି ମାଡ଼ି ବସିଲା, ମୁଁ ଶୁଏଁ ବସିଥିଲେ କିଏ ସେ ଯାଇ ପାରିଥାନ୍ତେ ? ମୋ ପାପ ସକାଶେ ପ୍ରାୟଶ୍ଚିତ୍ତ କରିବି । ଜେମାମଣି ଯେଉଁଠାରୁ ଯେଉଁବାଟେ ଗଲେ, ମୁଁ ସେଇ ବାଟରେ ଯାଇ ତାଙ୍କୁ ଭେଟିବି ।

ଆଜି କେତେଦିନ ହେଲା ବଡ଼ଜେମା ମଚ୍ଛୁଆ ଟଙ୍ଗ ଟଙ୍ଗ ହୋଇ ଗୁହିଁବା, ଥରକୁ ଥର ମାଜଣା ଭିତ ଆଡ଼କୁ ଯିବାର ଦେଖି ବୁଦ୍ଧିମନ୍ତ ପରିଜନଗୁଡ଼ାକ ଘର

ଉଠି ଗଲେଣି । ଦିନ ରାତି ପାଳି କରି ଠିଆ ପହରାରେ ତାଙ୍କୁ ଆଖି ଉପରେ ରଖିଛନ୍ତି ।

ସଦାନନ୍ଦ ବାବୁ ପରି ଦିନେ ରାମବିଲୋଚନ ବାବୁଙ୍କ ପାଖରେ ବସି ଅନୁତାପ କରୁଥିଲେ "ଦେଖ ତ ବନ୍ଧୁ ! ଆମ୍ଭେମାନେ ଗୋବିନ୍ଦ ଭଲପାଇଁ କେତେ ମେହନତ, କେତେ ଯତ୍ନ କଲୁଁ—ମାହାଳଆକୁ ମାହାଳିଆ ରାଜ୍ୟଟାଏ ପାଇ ଯାଇଥିଲା । ଏପରି ସରସ୍ୱତୀ ପରି ଭାର୍ଯ୍ୟା କେତେ ଲୋକ କପାଳକୁ ଘଟେ ? ନିର୍ବୁଦ୍ଧିଆ ଦୁଣ୍ଡାଟା ସବୁ ସାରିଲା ! ସେ ଆପଣାର ଯାହା କଲା ତ କରୁ ଆମ୍ଭମାନଙ୍କର ଯେ ସବୁ ଲୋକସାନ କରିଦେଲା । ଦିନ ରାତି ଲାଗି କେତେ ବୁଦ୍ଧି ଖଟେଇ କେତେ କାର୍ଯ୍ୟ କରିଥିଲେ ! ସଙ୍କର୍ଷଣ ମହାନ୍ତି ଯାହା ଦେବାକୁ ମଙ୍ଗିଥିଲା, ଅଧାଅଧି ବି ପାଇଲୁଁ ନାହିଁ । ଆମ୍ଭମାନଙ୍କ ନ୍ୟାଯ୍ୟ ପାଉଣାଟା ପାଇ ଯାଇଥାନ୍ତୁ, ପଛକେ ଯାହା ଇଚ୍ଛା ହୋଇଥାନ୍ତା ପଛକେ । ନିର୍ବୋଧଟା ସବୁ ସାରିଦେଲା !"

କୁଅଁର ବାବୁଙ୍କ ବାଧିକା ବଳ ପଡ଼ିଥିବାବେଳେ ସଇତା ରାତିକୁ ରାତି ବିଛଣା ଗୋଡ଼ତଳେ ଜଗି ବସିଥାଏ, ନିଦେଇ ଯାଏ ନାହିଁ । ସେତିକିବେଳେ ଗାଲରେ ହାତ ଦେଇ ବସି ଭାବୁଥାଏ, "ହାୟ ହାୟ ! ମୋହରି ଢିଲାପଣରୁ ସାନ୍ତଙ୍କୁ ଏତେ ଦୁଃଖ ଭୋଗିବାକୁ ହେଉଛି । କଟକରେ ଦୁଷ୍ଟ ବାବୁଗୁଡ଼ାକ ଯେତେବେଳେ ଫୁସୁରଫାସର ଲଗେଇଥିଲେ, ମୂଳରୁ ମୁଁ ଟିକିଏ ଗନ୍ଧ ପାଇଥିଲି । ବାପା ସାନ୍ତଙ୍କ କାନରେ ଫୁଙ୍କି ଦେଇଥିଲେ, ଏତେ ସରିକି ଯାଇ ନ ଥାନ୍ତା । ମୋ ସାନ୍ତ ସିଧା ଲୋକ, ଛନ୍ଦ କପଟ ଜାଣନ୍ତି ନାହିଁ, ଦୁଷ୍ଟ ଲୋକଗୁଡ଼ାକ କଥାରେ ପଡ଼ିଗଲେ । ଯାହା ହେବାର ତ ହୋଇଗଲାଣି, ହେ ମହାପ୍ରଭୁ ! ମୋ ସାନ୍ତଙ୍କୁ ଭଲ କରିଦିଅ । ପଛକେ ମୋ ପାପ ସକାଶେ ପ୍ରାୟଶ୍ଚିତ୍ତ କରିବି ।"

— — —

-୪୭-

ଦିନ କାହାରିପାଇଁ ବସି ରହେ ନାହିଁ । ଜଗତର ସୁଖ ଦୁଃଖ, ଆନନ୍ଦ ଉଲ୍ଲାସ, ହାହାକାର ସମସ୍ତ ଯେମିତି ସମାନଭାବରେ ବହି ଯାଉଛି ।

ଏଥି ମଧ୍ୟରେ ଆହୁରି ବି ଆଠ ଦଶ ଦିନ ବିତି ଗଲାଣି । କୁଅଁର ଗୋବିନ୍ଦଚନ୍ଦ୍ର ହସ୍ପିଟାଲରୁ ବାହାରିକୁ ଯିବାପାଇଁ ଅନୁମତି ପାଇ ନାହାନ୍ତି । ବାହାରିବାପାଇଁ ତାଙ୍କର ଇଚ୍ଛା ବା ଅନିଚ୍ଛା ନାହିଁ । ଆମ୍ଭେମାନେ ବିପଦ ନାମରେ ଅଧୈର୍ଯ୍ୟ ହୋଇପଡ଼ୁ । ହେଲେ ବିପଦ ମନୁଷ୍ୟତ୍ୱ ଆଣି ଦିଏ । ସଂସାରକୁ ଚିହ୍ନାଇ ଦେବାପାଇଁ ବିପଦରୁ ବଳି ଆଉ କେହି ବନ୍ଧୁ ନାହିଁ । ଭବ ମାୟାରେ ଆଚ୍ଛନ୍ନ ଅଧିକାଂଶ ମାନବ ବିପଦ ପ୍ରସାଦରୁ ଆପଣାର ଅବସ୍ଥା ବୁଝିବାକୁ କ୍ଷମ ହୁଏ । ବର୍ତ୍ତମାନ କୁଅଁର ଗୋବିନ୍ଦଚନ୍ଦ୍ରଙ୍କ ମନ ସ୍ଥିର, ଗମ୍ଭୀର । ଜଗତରେ ତାଙ୍କର କେହି ଶତ୍ରୁ ମିତ୍ର ଅଛି ବୋଲି ବୁଝି ପାରୁ ନାହାନ୍ତି । ମନ ମଧ୍ୟରେ ସୁଖ ବା ଦୁଃଖ ନାହିଁ । କାମ୍ୟ ବା କାମନା ମନ ମଧ୍ୟରୁ ବିଲୁପ୍ତ ହୋଇଛି । ଦୃଷ୍ଟି ମାର୍ଗରେ ସଇତା ମୂର୍ତ୍ତି, ହୃଦୟ ପଟରେ ଇନ୍ଦୁମତୀ ଚିତ୍ର ଅଙ୍କିତ ରହିଅଛି । ବେଳେ ବେଳେ ମାତୃଦେବୀଙ୍କ କଥା ମନରେ ପଡ଼ିଲେ ଟିକିଏ ଚଞ୍ଚଳ ହୋଇ ପଡ଼ନ୍ତି । ବାହାର ଲୋକେ ଦେଖୁଛନ୍ତି, ଦେହର ଛାୟା ପରି ସଇତା ସବୁବେଳେ ପାଖରେ ବସି ସାନ୍ତଙ୍କ ଗୋଡ଼ରେ ହାତ ବୁଲାଉଛି । ସାନ୍ତ ବି ସଇତା ବିନା ଆଉ କାହାରିକୁ ଯେମିତି ଚିହ୍ନି ପାରୁ ନାହାନ୍ତି । ଡାକ୍ତରଖାନାର କେହି ଲୋକର ଦରକାରବେଳେ ତିନି ଚାରି ଡାକରେ ତାଙ୍କର ଟିକିଏ ହୋସ୍ ବସେ, ଜବାବ ଦିଅନ୍ତି ।

କୋଡ଼ିଏ ପଚିଶ ଦିନ ଭିତରେ ସାନ୍ତ ଘରକର ମଧ୍ୟରେ ଦୁଇ ତିନି ଥର ଦୁଇ ତିନିପଦ ମାତ୍ର କଥା ହୋଇଛି । କଥା ହେବାର ଲୋଡ଼ା ପଡ଼ିଲା ।

ପିଲମାନଙ୍କ କଟକ ଖରଚ ଟଙ୍କା ସବୁତ ସାଙ୍ଗରେ ଥିବା ଗୁଜରମାନଙ୍କ ଦରମା ଟଙ୍କା ଆସେ । ବାବୁ-ମାନେ କଟକ ଆସିବା ସମୟରେ ଖରଚର ଯେଉଁ ବନ୍ଦୋବସ୍ତ ହୋଇଥିଲା, ତାହା ଆଜଯାଏ ଠିକ୍ ରୂପେ ଚଳୁଛି ।

ସଇତା ଯେଉଁ ଦରମା ଟଙ୍କା ପାଏ, ତାର ବୁଢ଼ୀ-ମାର ଭଲରୂପେ ଚଳିବା ଭଳି ଖରଚ ଦେଇ ବଳକା ଟଙ୍କାଟା ପାଖରେ ରଖେ । ଲୋକଙ୍କ ଅଜଣା, ଖୁବ୍ ଗୋପନରେ ଅଣ୍ଟାରେ ଗୋଟାଏ ଗାଞ୍ଜିଆ ବାନ୍ଧିଛି । ଟଙ୍କା ବଳି ପଡ଼ିଲେ ଗିନି ବାନ୍ଧି ସେହି ଗାଞ୍ଜିଆରେ ପୂରାଏ । ଗିନି ଆଉ ଟଙ୍କାରେ ଗାଞ୍ଜିଆଟା ପୂରି ଯାଇ-ଥିଲା । ସାନ୍ତଙ୍କ ବିପଦ ଦିନଠାରୁ ସେଥିରେ ହାତ ଲଗିଛି । ସାନ୍ତଙ୍କ ପାଇଁ ଡାକ୍ତରଖାନାର ଖରଚ ବନ୍ଦୋ-ବସ୍ତ । ସାନ୍ତଙ୍କପାଇଁ ଗୋଟାଏ ଖୁବ କଉଡ଼ିଆ ଭଲ ଔଷଧ ଲୋଡ଼ା, ଭଲ ପଥ୍ୟ ଅଣାଯିବ, ଆଜି ଏ ଖରଚ, କାଲି ସେ ଖରଚ ଦରକାର, ସଇତା କାନରେ ପଡ଼ିଲା । ଯେତେ ଲୋଡ଼ା ଦୋହରି ଆଣି ରଖାଯାଉ, ହିସାବ ନାହିଁ, ବୁଝା ବୁଝି ନାହିଁ ପାଞ୍ଚ ଜାଗାରେ ଦଶ କାଢ଼ି ଦେଲା । ସବୁ ଜାଗାରେ ଭଲ ମନ୍ଦ ଲୋକ ଅଛନ୍ତି । ସଇତାର କାରବାର ଦେଖି ସେପରି ସେପରି ଲୋକ ସଟାବଟା କରି କିଛି ଟାଣି ନେଇ ନାହାନ୍ତି, କିଏ ବୋଲି ପାରେ ? ତେବେ ଏହା ନିଶ୍ଚୟ କଥା, ତଳିଆ ସାମାନ୍ୟ ଗୃହକରବାଳର ହାତକୁ ସଇତା ଟଙ୍କା ବଢ଼ାଇ ଦେବାର ଦେଖା ଯାଇଛି । ଏହା ମଧ୍ୟ ଦେଖିବାରେ ଆସିଛି ଯେ, ସେ ଜଣେ ସାମାନ୍ୟ ଗୃହକର ହାତରେ ତିନିଟାଏ ଭଙ୍ଗାଇବାକୁ ଦେଇଛି, ସେ ଲୋକଟା ବଜାରରୁ କିଛି ଜିନିଷ କିଛି ଟଙ୍କା ଆଣି ତା ହାତରେ ଦେଲା । କେତେକର ଜିନିଷ ଆସିଲା, ବଳକା ବାହୁଡ଼ିବା କେତେ ଟଙ୍କା ସଇତା ଅଗଣା ଅପୁଛା ଅଣ୍ଟାରେ ଗୁଞ୍ଜି-ଦେଇ ଧାଇଁଲା ସାନ୍ତଙ୍କ ପାଖକୁ । ସଇତା ଏକା ଗ ଧରିଛି—ଯାଉ ସବୁ ଟଙ୍କା, ପ୍ରଭୁ ସାନ୍ତଙ୍କୁ ଭଲ କରି ଦେଉନ୍ତୁ । ସଇତା ଗୁହାରି ପ୍ରଭୁ ଶୁଣିଛନ୍ତି, ସାନ୍ତଙ୍କ ରୋଗ ସହିତ ସଇତାର ଗାଞ୍ଜିଆଟା ଖାଲି ହୋଇ-ଯାଇଛି । ହେଲେ ଖରଚଟା ବନ୍ଦ ହେବାକୁ ନାହିଁ । ଏଇଟା ଉଆସ ବା କଟକ ନୁହେ ଯେ, ହୁକୁମ ଧାର ଉଧାରରେ ଚଳିଯିବ, ଏ ସବୁ ଜାଗାରେ 'ଟଙ୍କାଟି ଥୋ, ଆଉ ଗୋଡ଼ଟି ଧୋ' ମାତ୍ର ସଇତାର ସେଥିକି ଚିନ୍ତା ନାହିଁ । ତାହାର ବିଶ୍ୱାସ, ସହରକୁ ବାହାରିଲେ ଯେତେ ଟଙ୍କା ଲୋଡ଼ା, ତକ୍ଷଣେ ଦେନି ଆସିବ । ସେ ଢେର ଥର ଦେଖିଛି, ରାମକୃଷ୍ଣ ବାବୁ, ଲଛମନ ବାବୁ, ଶିବୁ ବାବୁ ହାତ ଉଧାର ବୋଲି ମୁଠା ମୁଠା ଟଙ୍କା ସାନ୍ତଙ୍କ ପାଖରୁ ଦେନି ଯାଇଛନ୍ତି । ଉତ୍ତୁଣିକା ସେମାନଙ୍କ ପାଖରେ ଛୁଡ଼ା ହୋଇଗଲେ ଯେତେ ଟଙ୍କା ଲୋଡ଼ା ସାଙ୍ଗେ ସାଙ୍ଗେ ଦେଇ ପକାଇବେ । ତେଉକବେଳେ ଏକା ତାହା ମନରେ ଗୋଟାଏ ଧୋକା ଛୁଇଁ ଗଲା—'ହୋଇ ହେ, ସତ ତ ! ଯେଉଁ ବାବୁମାନେ ରୋଜ ରୋଜ ସଞ୍ଜ ବାଜିଲେ ସାନ୍ତଙ୍କୁ ନ ଭେଟି ପାଣି ଛୁଇଁ ନ ଥିଲେ, ସେମାନଙ୍କର ବେଳେ ହେଲେ ଭେଟଟା ବି ନାହିଁ କିଆଁ ? ସେମାନେ କଣ ଏ ଯାଏ ଶୁଣି ପାରି ନାହାନ୍ତି ? ହେଉ ବୁଝାଯିବ ।'

ସାନ୍ତଙ୍କୁ କିଛି କହିଲା ନାହିଁ । କିଛି ଦରକାର ଅଛି ବୋଲି ତାଙ୍କୁ ଜଣାଇ ସହରକୁ ବାହାରିଲା ।

ସେ ଜାଣେ, ବଡ଼ ସାନ୍ତ ଉଆସକୁ ବିଜେ ହୋଇଛନ୍ତି । ହେଉ, ଥରେ ଲୋଡ଼ ବୁଝେ । କଟକ ସହର ବସା ନିକଟ ଆସପାଖ ଚିହ୍ନା ଲୋକଙ୍କୁ ପଚରା-ପଚରି କରି ବୁଝିଲା, ବଡ ସାନ୍ତ ବାବୁ ଆଜକୁ ଗୃହଦିନ ହେଲା ପୁରୀ ଜିଲ୍ଲା ତେଲଙ୍ଗ ପରଗଣାର ଜମିଦାର ହରିହର ମର୍ଦରାଜଙ୍କ ନାଏବ ହୋଇ ଯାଇଛନ୍ତି । ଶୁଣା-ଶୁଣିରେ ମାସକୁ ଦରମା ଶହେ ଟଙ୍କା ।

ଏହି ଜମିଦାର ବାବୁ ନାବାଳକ ଥିଲେ, ମାହାଲ ସରକାର ହାତରେ ଥିଲା । ଦଶ ବର୍ଷ ଯାଏ କଲେକ୍ଟର

ସ୍କୁଲରେ ପଢ଼ି ମେଟ୍ରିକ୍ୟୁଲେଶନ ଥାର୍ଡ୍ କ୍ଲାସ ପର୍ଯ୍ୟନ୍ତ ଉଠିଛନ୍ତି । ବଡ଼ ବଡ଼ ସ୍ଥାନ ସମିତିରେ ତେର ଥର ବକ୍ତୃତା କଲେଣି । ଶୁଣିବାରେ ଆସେ, କବିତା ବି ଲେଖି ପାରନ୍ତି । ସରକାର ତହବିଲରେ ଲକ୍ଷାବଧି ଟଙ୍କା ଜମା ଥିବାର ତାଙ୍କ ଲୋକମାନଙ୍କଠାରୁ ଶୁଣାଯାଏ ।

ସଦାନନ୍ଦ ବାବୁଙ୍କ ସଙ୍ଗରେ ଭଲ ବନ୍ଧୁପଣ । ତାଙ୍କର ବାଇଶ ବର୍ଷ ପୂରିଯିବାରୁ ଜମିଦାରୀ ପାଇ ଘରକୁ ଯିବାବେଳେ ସଦାନନ୍ଦ ବାବୁଙ୍କୁ ସାଙ୍ଗରେ ଧରି ଯାଇଛନ୍ତି ।

ସଇତା ଜଣ ଜଣ କରି ସବୁ ଚିହ୍ନାଜଣା ବାବୁଙ୍କ ଦୁଆର ଦୁଆର ବୁଲିଲା । ଯେଉଁ ବାବୁମାନେ ରୋଜ ରୋଜ ସଞ୍ଜ ଉତ୍ତାରେ କୁଅଁର ବାବୁଙ୍କ ନ ଭେଟି ପାଣି ଟିକେ ନ ଥିଲେ, ସାନ୍ତଙ୍କ ବସାରେ ଜଳଖିଆ କରି ରାତି ଛ ଘଡ଼ିଯାଏଁ ଆନନ୍ଦ ପ୍ରେମରେ ହସି ହସି ଟଳି ପଡ଼ୁଥିଲେ, ସେମାନେ ଉକ୍ତୁଣିକା ସଇତାକୁ ଅଜଣା ଲୋକ ପରି ଅନାଇଲେ । ପ୍ରଥମରେ ଶିବୁ ବାବୁ ତ ସଇତାକୁ ସାଫ୍ ପଚାରି ଦେଲେ, "ତୁ କିଏ ରେ ? କିଆଁ ଆସିଛୁ ? ଯା ଯା, ଏତେବେଳେ ତୋ ସାଙ୍ଗରେ କଥା ବୋଲିବାକୁ ଆମର ଅବସର ନାହିଁ, ଆମ ପାଖରୁ ବାହାରି ଯା ।" ଟଙ୍କା ମାଗିବ କଣ, ବାବୁମାନଙ୍କୁ ପଦେ କଥା ବୋଲିବାକୁ ବି ଭରସିଲା ନାହିଁ ।

ମାଣିକଘୋଷ ବଜାର ତିନିମୁଣ୍ଡିଆ ଛକ ପାଖରେ ରାମ ସାହୁ ଗୁଡ଼ଆ ଦୋକାନ । ସଇତା ମୁଣ୍ଡ ତଳକୁ ପୋତି ଦୋକାନ ଆଗ ବାଟେ ଧୀରେ ଧୀରେ ଚାଲି ଯାଉଛି । ସାହୁଏ ଡାକିଲେ, "କିଏ ହେ, ସଇତ ବାରିକେ ନା କିଏ ? ଆହେ ସଇତା ଭାଇ ! ଆସ ଆସ, ଆମ ଦୋକାନକୁ ଆସ ।" ସହର ମଧ୍ୟରେ କାହାରି ସହିତ ଦେଖା କରିବ, କଥାଭାଷା ହେବ, ସଇତାର ଇଚ୍ଛା ନୁହେ । କଣ କରିବ, ଲୋକଟା ଡାକୁଛି । ଖଣ୍ଡେ ଆମ୍ବ କାଠ ପିଢ଼ା ପକାଇ ଦେଇ ସଇତାକୁ ବସାଇଲେ । ସାହୁଏ ଆପେ ପାଖରେ ବସି ଚାରିଆଡ଼କୁ ଅନାଇଲେ, ଦୋକାନରେ ଯେତେବେଳେ ଗରାକ ବା ଉପରି ଲୋକ କେହି ନାହିଁ । ଦୁଇ ତିନି ଥର ଗୁପ୍ତ ଢୋକ ପଚାରିଲେ,"ସଇତା ଭାଇ ! ଗୋଟାଏ କଥା ପଚାରନ୍ତି ? ମୋର ତ କେବେହେ ପରତେ ନାହିଁ । ସାନ୍ତେ କଣ ଚୋରି କରି ଯାଇଥିଲେ ? ଚୋରି ମାଲ ବା କଣି ଥିବେ ।"

ସଇତା—ମିଛ—ମିଛ—ଭୁଚ୍ଛା ମିଛ ।

ରାମ ସାହୁ—ତେବେ ଡାକ୍ତରଖାନାରେ ବନ୍ଦୀ ଅଛନ୍ତି କିଆଁ ?

ସଇତା ଯେ କେତେଟା କଥା କହିଲା, ସେଥିର ଅର୍ଥ ସାନ୍ତେ ବାଧିକା ପଡ଼ି ଡାକ୍ତରଖାନାରେ ଅଛନ୍ତି । ଚୋର ତ ଜେଲଖାନାରେ ଥାନ୍ତି—ଡାକ୍ତରଖାନାରେ ବେମାରି ଲୋକେ ଔଷଧ ଖାଇବାପାଇଁ ରହନ୍ତି ।

ରାମ ସାହୁ—ହଁ ସତ, ଏକଥାଟା ମନକୁ ମାନିଗଲା ଏକା ।

ସଇତା—ହଁ ହେ ସାହୁଏ ! ଏପରି କଥାଟା କିଆଁ ପଚାରିଲ ?

ରାମ ସାହୁ—କଥାଟା କଣ କି, କୁଅଁର ବାବୁ ଶଶୁର ଗାଁକୁ ଗଲାଦିନରୁ ଲୁଆଡ଼ୁ ଜଣେ ଭେଣ୍ଡିଆ ଜମିଦାର ଆସି ତୁମ ବସାରେ ଥିଲେ । ରୋଜ ରାତିରେ ଭୋଜ ନ୍ଦୁସିବାସି ମୌଜ ହୁଏ । ବଡ଼ ସାନ୍ତଙ୍କ ହୁକୁମରେ ମୁଁ ତେର ଜଳଖିଆ ଉଠାଣ ଦେଇଛି । ସବୁଦିନେ ନାଗୁଆ ଦିଏଁ, ଉକ୍ତୁଣିକା କପରି ନ ଦିଅନ୍ତି ? ହେଲେ ବଡ଼ ବାବୁ ଟଙ୍କା ନ ଦେଇ ଚାଲିଗଲେ, ଫେରି ଆସି ଦେବେ ଯେ ।

"ଦିନେ ସଞ୍ଜବେଳେ ବଡ଼ ବାବୁ ପାଖକୁ ଟଙ୍କା ମାଗି ଯାଇଥିଲି । ଦୁଆରବନ୍ଧ ଏ ପାଖରେ ଥାଇ ବାବୁମାନଙ୍କ କଥା ଶୁଣିଲି । ଆମ ବଡ଼ ବାବୁ ଆଉ ଆଉ ବାବୁମାନଙ୍କୁ କହୁଥାନ୍ତି, "ଗୋବିନ୍ଦାଟା ତା ଶଶୁର ଘରୁ ଗୁଡ଼ାଏ ଅଳଙ୍କାର ଚୋରିକରି ନେଇ ପଳାଇ ଆସୁଥିଲା । ଜମିଦାର ଘର ଲୋକେ ତାକୁ ଖୁବ୍ ମାଡ଼ ଚଢ଼େଇ ପୋଲିସ ହାଜତରେ ଦେଇଛନ୍ତି । ସେତେବେଳେ ତା ପାଖ ପଶିବା ଆମମାନଙ୍କର ଉଚିତ ନୁହେ । ମାମଲା ସଙ୍ଗୀନ, ଆମେମାନେ ମାଙ୍ଗ ଲୋକ, ପୋଲିସ ଗ୍ରେପ୍ତାର କରିବା ବଡ଼ କଥା ନୁହେ । ଯେ ଯା କଲା ଭୋଗୁ, ଅମେମାନେ କାହିଁ ବଳେଇ ମୁଣ୍ଡକୁ ନେବା ?"

ସଇତା କାନ୍ଦି କାନ୍ଦି ଧକେଇ ଗଲାଣି, ଆଉ ପାଟି ଫିଟୁ ନାହିଁ । ସାହୁ ଦେଖିଲା, ସଇତାର ଆଗ ରୂପ ନାହିଁ । ଉଚ୍ଛୁଣିକା ପେଟ ଖଣ୍ଡ ପିଠିକି ଲାଗି ଯାଉଛି । ବୁଝିଗଲା, କେତେଦିନ ହେଲା ଉପାସିଆ ଅଛି । ବହୁତ ନେହୁରା କରି ହାତ ଗୋଡ଼ ଧରି ବଳେଇ ବଳେଇ ସଇତାକୁ ଭଲ କରି ଜଳଖିଆ କରାଇଦେଲା । ସଇତା ଲୋଟାଏ ପାଣି ପିଇ ଅଧଘଣ୍ଟାଯାଏ ଅଚେତରେ ପଡ଼ିଗଲା ।

— —

-୪୭-

ରାତି ଅଧାଅଧି ଗଡ଼ିଗଲାଣି । ଏତେ ବଡ଼ ହସ୍ପିଟାଲଟା ସବୁ ଶୁନଶାନ । ଉଚ୍ଛୁଣି ଉଚ୍ଛୁଣି ଟିକେ କେହି ରୋଗୀ ଛଟକୁଥିଲେ ଥୋକେ ପଢ଼ୁଆ ପାଳି କରି ତାକୁ ଜଗି ବସିଥାନ୍ତି, ଆଜି ସେପରି ରୋଗୀ କେହି ନାହିଁ । ପଢ଼ୁଆ ପିଲାଏ ଆପଣା ଆପଣା କୋଠରିରେ ଶୋଇ ପଡ଼ିଲେଣି । କେବଳ କେତୋଟା ରୋଗୀଙ୍କ ବଛଣାରୁ ବେଳେ ବେଳେ କୁନ୍ଥା ଶବ୍ଦ ଶୁଭୁଛି ।

ଆଜି ସଞ୍ଜପହରୁ କୁଅଁର ସାନ୍ତ ଆପଣା ବଛଣାରେ ବସିଛନ୍ତି । ସାନ୍ତ ପହଡ଼କୁ ଗଲେ ନ ହେଲେ ସଇତା ଶୋଇବାକୁ ଯାଏ ନାହିଁ । ଖଟ ଖୁରା ପାଖରେ ବସିଛି । ଆଜି ସକାଳେ ଡାକ୍ତର ଖାମସ୍ ସାହେବ ଏବଂ ଆସିଷ୍ଟାଣ୍ଟ ସୁକାନ୍ତ ବାବୁ ପାଖକୁ ଆସି କହିଗଲେ, 'କୁଅଁର ବାବୁ ! ସମ୍ପୂର୍ଣ୍ଣରୂପେ ରୋଗରୁ ମୁକ୍ତ ହୋଇଛନ୍ତି, ଏବେ ଇଚ୍ଛା କଲେ ଉଆସକୁ ଯାଇ ପାରିବେ ।" ସାଆନ୍ତ ଭଲ ହୋଇ ଯାଉଛନ୍ତି, ଶୁଣିଲା ବେଳୁଁ ସଇତାର ମନ ଭାରି ଖୁସି । ଉଆସକୁ ଯିବାପାଇଁ ତାହାର ଭାରି ମନ, ହେଲେ ଡରସି ସାନ୍ତଙ୍କୁ ବୋଲିପାରୁ ନାହିଁ । ଏତେ ଦିନ ଉତ୍ତାରେ ସବୁ ଦିନ ପରି ସାନ୍ତେ ସହଜରେ କଥା କହୁଛନ୍ତି, ଏଥିପାଇଁ ବି ସଇତାର ମନରେ ଆନନ୍ଦର ସୀମା ନାହିଁ ।

ଏଣୁତେଣୁ ପାଞ୍ଚ କଥା ଉତ୍ତାରେ ସାନ୍ତେ କହି ବସିଲେ, "ସଇତା ! ତୁ ମୋପାଇଁ ବଡ଼ ଦୁଃଖ ପାଇଗଲୁ । କଣ କରିବା, ସବୁ କପାଳ କଥା ! ଆମ୍ଭମାନଙ୍କ ମଙ୍ଗଳପାଇଁ ପ୍ରଭୁ କେତେବେଳେ କଣ ବିଧାନ କରନ୍ତି, କ୍ଷୁଦ୍ର ପ୍ରାଣୀ ଆମ୍ଭେମାନେ ସେଥିର ତତ୍ତ୍ୱ କଣ ବୁଝିବୁଁ ? ଆଉ ଗୋଟାଏ କଥା, ସଇତ ! ସୁନାର ପରଖ ଅଗ୍ନି, ବନ୍ଧୁର ପରଖ ବିପଦ । ତୁ ବୁଦ୍ଧିମାନ୍ ଲୋକ, ସବୁ ବୁଝିସୁଝି ପାରୁ, ଆପଣା ବାଟ କାଟି ଚାଲିବୁ, ହେଲେ କାହାରିକୁ ଦୋଷ ଦେବୁ ନାହିଁ ।

"ଉଚ୍ଛୁଣିକା ଯେ କଥା କହିବି, ଚଞ୍ଚଳ କରିବୁ । କେବେହେଲେ ମୋ କଥା ଏଡ଼ୁ ନାହୁଁ, ଆଜି ଅମାନ୍ୟ ହେଲେ ମୋ ମନରେ ବଡ଼ ଦୁଃଖ ହେବ ।"

ସଇତା ସାନ୍ତଙ୍କ ଗୋଡ଼ ଯୋଡ଼ାକ ଧରି ଟିକିଏ କାନ୍ଦୁଣୁ ମାନ୍ଦୁଣୁ ହୋଇ କହିଲା, "ଆଜ୍ଞା ! ଆଜି ଏପରି ଆଜ୍ଞା କାହିଁ କରୁଛନ୍ତି ? ଦିନେ ହେଲେ ତ ଏପରି ଆଜ୍ଞା ଶୁଣି ନାହିଁ ।"

କୁଅଁର ସାନ୍ତ—ନାହିଁରେ ନାହିଁ, ମୁଁ କହୁଛି କଣ କ, ଉତ୍ତୁଣିକା ଯାହା କହିବି, ଚଞ୍ଚଳ କରି ପକାଇବୁ, କାହାରିକି ହେଲେ କିଛି ବୋଲିବୁ ନାହିଁ । ଯା, ସେଇ ହଳଦିଆ ଟିଣପେଡ଼ିଟା ଆଉ ଲୁହା ହାତବାକ୍‌ସଟା ଆଣି ମୋ ବିଛଣା ଉପରେ ଥୋଇ ଦେ ।

ସାନ୍ତ ପେଡ଼ି ଆଉ ବାକ୍‌ସ କଞ୍ଚିକାଠିରେ ଫିଟାଇ ପକାଇ ପେଡ଼ିରୁ ଯୋଡ଼ାଏ ପାଞ୍ଚ ପାଞ୍ଚ କେରିଆ ସୁନାହାର, ଯୋଡ଼ାଏ ରତ୍ନବସା କଙ୍କଣ, ପାଞ୍ଚଟା ହୀରାବସା ମୁଦି, ଗୋଟାଏ ଗବତାହାର, ଏହିପରି ଆହୁରିଗୁଡ଼ାଏ ସୁନା ଅଳଙ୍କାର ବାକ୍‌ସରୁ ବାହାର କରି ହାତବାକ୍‌ସରେ ଥୋଇଲେ । କେବଳ ଗୋଟିଏ ସୁନାମୁଦି ଖାଇଲହାତ ବଶିଆଙ୍ଗୁଳିରେ ଲଗାଇ ଟିକିଏ ଅନାଇ ଦେଖିଲେ—ଏହି ମୁଦିଟାରେ କିଛି ରତ୍ନ ବସି ନାହିଁ, ତୁଚ୍ଛା ଇନ୍ଦୁମତୀ ନାମ ଖୋଳା ହୋଇଛି । ଅଳଙ୍କାରଗୁଡ଼ାକ ବାକ୍‌ସରେ ବନ୍ଦ କରିବାବେଳେ ସେଥିରେ ଦୀପ ଆଲୁଅ ପଡ଼ି ଘର କାନ୍ଥରେ ନାନାରଙ୍ଗର ଜ୍ୟୋତି ଚହଟି ଯାଉଥାଏ । ଏହି ସମସ୍ତ ଅଳଙ୍କାର ବିବାହ ବେଳେ ବେଦୀ ଉପରେ ଶ୍ୱଶୁର ସାନ୍ତ ଯୌତୁକ ଦେଇଥିଲେ ।

ଦିନବେଳୁ ଖଣ୍ଡିଏ ଚିଠି ଲେଖି ମାଣ୍ଡି ତଳେ ଥୋଇଥିଲେ । ସେହି ଚିଠି ଆଉ ହାତବାକ୍‌ସ ସଇତା ହାତକୁ ବଢ଼ାଇ ଦେଇ କହିଲେ, ''କାଲି ବଡ଼ି ସକାଳେ ଏହି ସବୁ ପଦାର୍ଥ ଧରି ଯିବୁ । ଉଆସର କାରବାରି ମହାଜନ ଲଛମନ ଭଗତକୁ ଦେଇ ତା ପାଖରୁ ପାଞ୍ଚ ହଜାର ଟଙ୍କା ଆଣିବୁ । ଟଙ୍କା ଆଣିବୁ ନାହିଁ, ବୁଝି ଖବରଦାର ! ତୁଚ୍ଛା ନୋଟ ଆଉ ମୋହର ଆଣିବୁ । କେହି ଯେମନ୍ତ ଜାଣି ନ ପାରେ ।'

ସଇତା ହାତଯୋଡ଼ି ଜଣାଇଲା, ''ପ୍ରଭୁଙ୍କ ଆଜ୍ଞା ପାଇଲେ ତ ମହାଜନ ଟଙ୍କା ଦେବ, ଅଳଙ୍କାରଗୁଡ଼ାକ କିଆଁ ?''

କୁଅଁର ସାନ୍ତ—ନାହିଁ ରେ ନାହିଁ, ଅଳଙ୍କାରଗୁଡ଼ାକ କିଆଁ ସାଙ୍ଗରେ ଧରି ବୁଲିବୁ ? ଉତ୍ତୁଣିକା ତା ପାଖରେ ଥାଉ ।

ତହିଁ ଆରଦିନ ସନ୍ଧ୍ୟାବେଳେ ମହାଜନ ଟଙ୍କା ଧରି ଉପସ୍ଥିତ । କୁଅଁର ସାନ୍ତଙ୍କୁ 'ରାମ ରାମ' ଜଣାଇଲା । ମୁହଁରେ ଲୁଗା ଦେଇ ଗୁଡ଼ାଏ କାଶିଲା, ତେତିକ ବେଳେ ସଇତା ଥରକୁ ଥର ବାହାରକୁ ଚାଲି ଯାଇ ଲୋତକ ପୋଛି ପକାଉଥାଏ । ସାନ୍ତ ସ୍ଥିର ଗମ୍ଭୀର-ଭାବରେ ତୁନି ହୋଇ ବସିଥାନ୍ତି । ମହାଜନ ଥରକୁ ଥର ଅନାଇ ଦେଖିଲା, ସାନ୍ତଙ୍କ ଶ୍ରୀମୁଖରୁ ଦୁଃଖ ବା ସୁଖର କିଛି ଚିହ୍ନ ଜଣା ଯାଉ ନାହିଁ । ଦଣ୍ଡିକ ଉତ୍ତାରେ ମହାଜନ ଟଙ୍କା ଗଣି ଦେଇ 'ରାମ ରାମ' ଜଣାଇ ଚାଲିଗଲା ।

ମହାଜନ ଦେବା ଟଙ୍କା ମଧ୍ୟରୁ ଦେଢ଼ ହଜାର ଟଙ୍କାର ନୋଟ ଆଉ ଗୋଟିଏ ହୀରାବସା ମୁଦି ସଇତା ହାତକୁ ବଢ଼ାଇ ଦେଇ ସାନ୍ତ ଆଜ୍ଞା କଲେ, ''ସଇତା ! ଏହି ଟଙ୍କାରୁ ପାଞ୍ଚଶ ଟଙ୍କାର ନୋଟ ତୋ ମାକୁ ଦେବୁ, ସେ ଝିଆପିଆ ଲୁଗାପଟା କରିବ । ହଜାରେ ଟଙ୍କା ତୋ ବିଭାବେଳେ ଖରଚ କରିବୁ । ମୁଦିଟି ସବୁବେଳେ ପାଖରେ ରଖିବୁ । ଏହି ମୁଦି ଆଉ ଚିଠିଖଣ୍ଡି ପାଖରେ ରଖ । ମୁଦି ଆଉ ନୋଟ ବିଷୟରେ କିଛି କଥା ହେଲେ ଚିଠି ଫେଇ ଦେଖାଇ ଦେବୁ ।''

ଏତେଗୁଡ଼ାଏ ଟଙ୍କା, ଢେର ଟଙ୍କା ଦାମର ମୁଦିଟା ନେବାକୁ ସଇତା ହାତ ମୋଡ଼ି ମୋଡ଼ି ହେଉଥାଏ । ମନରେ ବିଚାରିଲା, 'ସାନ୍ତେ ବାଧିକା ପଡ଼ିଥିବା ବେଳେ ଟିକିଏ ସେବା କରିଥିଲି ବୋଲି ବହୁମୋତି ଦେଉଛନ୍ତି । ମୋ କରିବାର କାମ କରିଛି, ସେଥିପାଇଁ ବହୁମୋତି କିଆଁ ? ହେଉ ହେଉ, ଉତ୍ତୁଣିକା ସାନ୍ତଙ୍କ ମନ ଭାଙ୍ଗିବି ନାହିଁ । ଏଗୁଡ଼ାକ ଉତ୍ତୁଣିକା ତ ମୋ ପାଖରେ ଥାଉ, ପଛକେ ବୁଝାବୁଝି ହେବ ।'

ପୁନର୍ବାର ସାନ୍ତ ଆଜ୍ଞା କଲେ, "ସଇତା ! କାଲି ରାତି ଟିକିଏ ଥାଉଣୁ ତୁ ଘରକୁ ଚାଲି ଯା, ତୋ ମାକୁ ଟଙ୍କା ଦେଇ ମୋ ଆରୋଗ୍ୟ କଥା କହିବୁ । ସେ ମୋ ପୀଡ଼ା କଥା ଶୁଣି ଆକୁଳ ହେଉଥିବ, ତା ମନ ଟିକିଏ ଖୁସି ହେଉ ।"

ଏହି କଥା ଶୁଣି ସଇତାର ମନ ବଡ଼ ଚଞ୍ଚଳ ହୋଇ ପଡ଼ିଲାଣି । 'ସାନ୍ତ ଏକାବେଳକେ ଭଲ ହୋଇ ଯାଇ ନାହାନ୍ତି, ଦଣ୍ଡେ ହେଲେ ସାମୁରୁ ଅନ୍ତର ହେବାକୁ କେତେରୂପେ ତାହାର ମନ ବଳୁ ନାହିଁ । ହେଲେ ସାନ୍ତ ଆଜ୍ଞା କରିଛନ୍ତି, କଥାରୁ ବାହାର ହେଲେ ମନଦୁଃଖ କରିବେ । ନାହିଁ ନାହିଁ, ଏତେବେଳେ ତାଙ୍କ ମନରେ ଦୁଃଖ ଦେବା କେତେରୂପେ ହେଲେ ଉଚିତ ନୁହେ । ମୁକୁନ୍ଦପୁର ବାଟ ପନ୍ଦର କୋଶ ତ । ହରିପୁର ଘାଟରୁ ଗୋଟାଏ ଦୋବାହାଣି ନାଆ ଭଡ଼ା କରି ପକାଇବି, ନାଆ ତଳଆଣି ଛୁଟି ଯିବ – ସୂର୍ଯ୍ୟ ଉଦଉଦ ବେଳେ ଟାଁ ଘାଟରେ ପହଞ୍ଚିବ । ଘାଟ କଡ଼ରୁ ଡାକିଦେଲେ ଆମ ଘରକୁ କଥା ଶୁଭେ, ମୋ ଭୁଣ୍ଡ ବାଉ ମା ବଡ଼ ଖୁସି ହେବ । ରାତିକ ଘରେ ରହି ପିଛିଲା ପହରେ ରାତି ଥାଉଣୁ ଚୂଡ଼ା ଅଧସେରେ ଅଣ୍ଟିରେ ଧରି ବାହାରି ପଡ଼ିଲେ ପର ଦିନ ସଞ୍ଜ ସଞ୍ଜ ଏଠି ଆସି ପହଞ୍ଚିବି, ନ ହେଲେ ରାତି ଘଡ଼ିଏ, ଆଉ କଣ ?'

ସାନ୍ତଙ୍କ ଗୋଡ଼ତଳେ ଦଣ୍ଡବତ କରି ଘରକୁ ଯିବାର ସମ୍ମତି ଜଣାଇଲା ।

———

—୪୮—

## କୁଅଁର ସାନ୍ତ ଗୋବିନ୍ଦଚନ୍ଦ୍ରଙ୍କ ଅନ୍ତର୍ଦ୍ଧାନ

ପ୍ରତିଦିନ ସକାଳେ ସାତଟାବେଳେ ଆସିଷ୍ଟାଣ୍ଟ ସୁକାନ୍ତ ବାବୁ ଡାକ୍ତରଖାନାରେ ପହଞ୍ଚି ସଳଖେ ସଳଖେ ହୋମହଲ୍ ଉପରେ ସାନ୍ତଙ୍କ କୋଠରୀକୁ ଉଠିଯାନ୍ତି । ସାନ୍ତଙ୍କ ଶରୀର ପରୀକ୍ଷା, ପଥ୍ୟାଦିର ବ୍ୟବସ୍ଥା କରୁଁ କରୁଁ ଘଣ୍ଟାଏ କାଳ ବିତିଯାଏ । ତହିଁ ଉତ୍ତାରେ ଆଉ କାମରେ ମନ ଦିଅନ୍ତି । ଏଣିକି ବି ସେହିପରି ତୁଚ୍ଛା ସାକ୍ଷାତ୍ କରିବାପାଇଁ ଯାଉଛନ୍ତି । ତାଙ୍କ ବିନା ଆଉ କେହି ଯାଏ ନାହିଁ, ଯିବାର ଲୋଡ଼ା ବି ନାହିଁ ।

ଆଜି ସକାଳେ ଡାକ୍ତର ବାବୁ ସବୁଦିନ ପରି ସଳଖେ ସଳଖେ ଉପରକୁ ଉଠିଯାଇ ଦୂରରୁ ଅନାଇ ଦେଖିଲେ, କୁଅଁର ବାବୁଙ୍କ କୋଠରୀର କବାଟ ଯୋଡ଼ାକ ଆଉଜା । ଏଟା ତାଙ୍କୁ ନୂଆ ପରି ଲାଗିଲା । ରୋଜ ରୋଜ ଏତେବେଳକୁ ବାବୁଙ୍କ ଦୁଆର ଉଦୁଆଁ, ଆଉ ସଇତା ଦୁଆର ବନ୍ଧ ବାହାର ପଟରେ ବସିଥାଏ । ଏତେ-ବେଳକୁ ସାନ୍ତଙ୍କ ସକାଳଆ ମାଣ୍ଡ ବଢ଼ି ଯାଇଥିବାରୁ ତା ହାତରେ କିଛି କାମ ଥାଏ ନାହିଁ । ଡାକ୍ତର ବାବୁ ଟିକିଏ ବଡ଼ ପାଟି କରି ଇଂରେଜୀ ଭାଷାରେ ଡାକିଦେଲେ, "ଆହେ ଆମ୍ଭର ବନ୍ଧୁ ! ଆଜି ଯେ ଭାରି ଗଭୀର ନିଦରେ ପଡ଼ିଛ, ଦେଖୁଛି ।" କିଛି ଉତ୍ତର ନାହିଁ । ଡାକ୍ତର ବାବୁଙ୍କ ମନକୁ କଥାଟା କି ରକମ ଲାଗିଲା; ଧୀରେ ଅତି ଧୀରେ ଗୋଡ଼ ଚପି ଚପି ଦୁଆର ପାଖକୁ ଚାଲିଗଲେ । ଦୁଇ ହାତରେ ଦୁଇ କବାଟର ଫେଣ୍ଟ ଧରି ଧୀରେ ଧୀରେ ଦୁଆରକୁ ଦରମେଲା କରିଦେଲେ । ଦୁଆରବନ୍ଧ ବାହାରପଟରେ ଛିଡ଼ା ହୋଇଛନ୍ତି । ଭିତରକୁ ଟିକିଏ ମୁଣ୍ଡ ଗଳାଇ ଏକପାଖିଆ ବଙ୍କେଇ ଚାହିଁଲେ, ସାନ୍ତଙ୍କ ବିଛଣାଟା ତୁଚ୍ଛା ପଡ଼ିଛି । ଚାରି-ଆଡ଼କୁ ଟିକିଏ ଆଖି ବୁଲାଇଦେଇ ଭିତରକୁ ପଶିଗଲେ । ଆଉ ଥରେ ଭଲକରି ବିଛଣା, ଘର ଭିତର ସବୁଆଡ଼କୁ ଅନାଇ ଦେଇ ଦେଖିଲେ ସବୁ ଶୂନ୍‌ଶାନ୍ । ବିଛଣା, ପିନ୍ଧିବା ଲୁଗା, ବାସନ କୁସନ ସବୁଗୁଡ଼ାକ ଠିକ୍‌ଠାକ୍ ଜାଗାରେ ଥୁଆ, ଯିମିତିକା ଏହିଲାଗେ ମଣିଷ ଘରୁ ବାହାରି ଯାଇଛି । ଦେଖିଲେ ବିଛଣା ଉପରେ ଟିକିଏ ଆଗକୁ ଯେମନ୍ତ ଘରକୁ ପଶିଗଲେ ଲୋକର ନଜର ପଡ଼ିବ, ମୋଟା କାଗଜର ଗୋଟାଏ ବଡ଼ ଲଫାଫା

ଥିଆ । ଡାକ୍ତର ସେଟା ଉଠାଇ ନେଇ ଦେଖିଲେ, ଲଫାଫା ପିଠି ଗୃହର ପାଞ୍ଚ ଜାଗାରେ ଜଉମୁଦ । ପଢ଼ି ଦେଖିଲେ, ଉପରେ ତାହାଙ୍କ ନିଜ ନାମ ଲେଖା । ଚଞ୍ଚଳ ଉପର କାଗଜଟା ଛିଣ୍ଡାଇ ପକାଇ ଭିତର ଚିଠିଖଣ୍ଡ ପଢ଼ିବାକୁ ଲଗିଲେ ।

ଶ୍ରୀ ଶ୍ରୀହରି ଶରଣଂ

ବନ୍ଧୋ !

ହାତଯୋଡ଼ି ବିନୟରେ ତୁମ୍ଭଙ୍କୁ ନମସ୍କାର କରୁଛି, ଗ୍ରହଣ କରିବ । ଆଜି ଲଗା ଉଣୀ ପୂରି ପାଞ୍ଚ ବରଷ ହେଲା ତୁମ୍ଭ ସହିତ ମିତ୍ରପଣ । ମୋ ବିଷୟ ସମସ୍ତ କଥା ତୁମ୍ଭଙ୍କୁ ଜଣା, ଏବେ ଅଧିକ କଣ କହିବି ? ବର୍ତ୍ତମାନ ତୁମ୍ଭେ ମୋହର କେବଳ ଜୀବନରକ୍ଷକ ନୁହ, ପତିତ ଆତ୍ମାର ସଦ୍‌ଗତିଲାଭର ପଥପ୍ରଦର୍ଶକ । ସତ କଥା, କଟକରେ ମୋହର ଅନେକଗୁଡ଼ିଏ ବନ୍ଧୁ ଥିଲେହେଁ ତୁମ୍ଭେ କେବଳ ଧର୍ମତତ୍ତ୍ୱ ସମ୍ବନ୍ଧରେ ମୋତେ ଅନେକ ଥର ଉପଦେଶ ଦେଇଅଛ । ତୁମ୍ଭେ ଭଲରୂପେ ଜାଣ, ମୁଁ ବିରକ୍ତ ହୋଇ କେତେଥର କହିଅଛି, ନାସ୍ତିକମାନେ ଆପଣାକୁ ସର୍ବଜ୍ଞ ଜ୍ଞାନ କରି କାହାରି ସଦୁପଦେଶ ଶୁଣିବାକୁ ଲୋଡ଼ନ୍ତି ନାହିଁ । ସେତେବେଳେ ତୁମ୍ଭ କଥା ହସି ଉଡ଼ାଇ ଦେଉଥିଲି, ଏବେ ଅନୁକ୍ଷଣ ହୃଦୟରେ ବିନ୍ଧୁଅଛି । କେତେ ଖଣ୍ଡ ମାତ୍ର ଇଂରେଜୀ ଦର୍ଶନଶାସ୍ତ୍ର ପଢ଼ି ଈଶ୍ୱରସଂଶୟୀ ହୋଇ ପଡ଼ିଥିଲି । ପ୍ରଭୁଙ୍କ ଅନନ୍ତ ମହିମା, ଅପାର କରୁଣା ବିଶ୍ୱବ୍ରହ୍ମାଣ୍ଡ ବ୍ୟାପ୍ତ ଏବଂ ପ୍ରତିକ୍ଷଣ ଆମ୍ଭମାନଙ୍କ ଜୀବନରେ ଘଟୁଥିଲେ ମଧ୍ୟ ଅଜ୍ଞାନାନ୍ଧ ନାସ୍ତିକମାନେ ସେଥିପ୍ରତି ଦୃଷ୍ଟି ରଖନ୍ତି ନାହିଁ । ଗୃହ ବର୍ଷ ତଳେ ମୁଁ ବିକାର ଜ୍ୱର ଭୋଗ କରୁଥିଲି, ତୁମ୍ଭ ସୁଚିକିତ୍ସାରେ ରକ୍ଷା ପାଇଅଛି । ସେହି ଦିନଠାରୁ ଈଶ୍ୱରଆରାଧନା ସକାଶେ ମୋତେ ଉପଦେଶ ଦେଇ ଆସୁଅଛ । ମାତ୍ର ଲକ୍ଷ୍ୟହୀନ, ଅବ୍ୟବସ୍ଥିତଚିତ୍ତ, ଅହଙ୍କାରୀ ନାସ୍ତିକମାନେ ଉପଦେଶଟାକୁ ଅସମ୍ମାନ କରିବା ଗୌରବର ବିଷୟ ଜ୍ଞାନ କରିଥାନ୍ତି । ତୁମ୍ଭ ମନରେ ନ ଥାଇ ପାରେ, ଆଜଯାଏ ମୋ ମନରେ ଅଛି—ତୁମ୍ଭେ କହିଥିଲ, ନାସ୍ତିକମାନଙ୍କର ଅବାଧ ପାପ ନାହିଁ, କେବଳ ରାଜବିଧାନ ଭୟରୁ ସେମାନେ ନିବୃତ୍ତ ଥାନ୍ତି ।' ସତକଥା ବନ୍ଧୋ ! ଆତ୍ମସୁଖାଭିଳାଷୀ, ସ୍ୱାର୍ଥପର ନାସ୍ତିକମାନେ ଅନ୍ୟର ହୃଦୟବେଦନା କଣ୍ଠାଗତ ହେଲେ ଅନୁଭବ କରିବାକୁ ଅସମର୍ଥ ବା ଅନିଚ୍ଛୁକ । ମୁଁ ସେ ବିଷୟରେ ଗୋଟିଏ ଜ୍ୱଳନ୍ତ ଦୃଷ୍ଟାନ୍ତ ସ୍ଥଳ । ବୁଝିଲ, ମୁଁ ପିତୃବୈରୀ—ମୁଁ ମାତୃହନ୍ତା—ମୁଁ ଦୋଷ-ମାତ୍ରଶୂନ୍ୟା ଦେବୀତୁଲ୍ୟା ଗୋଟିଏ ସରଳା ବାଳିକାର ମୃତ୍ୟୁର କାରଣ ଅଟେଁ ।

ବନ୍ଧୋ ! ମୋ ମହାପାପରେ ପ୍ରାୟଶ୍ଚିତ୍ତ ନାହିଁ । ଗୋଟିଏ ଗୋଟିଏ ମହାପାତକ ବିଷୟ ସ୍ମରଣ କରି ହୃଦୟ ଜ୍ୱଳନ୍ତ ଅନଳରେ ଦଗ୍ଧ ହୋଇ ଯାଉଅଛି । ଜଗତ୍ ସଂସାର ମୋ ପକ୍ଷରେ ଶୂନ୍ୟମୟ । ମୋ ଜୀବନର ସମସ୍ତ ଗ୍ରନ୍ଥି ଛିନ୍ନ ଭିନ୍ନ ହୋଇ ଯାଇଅଛି । ଏକମାତ୍ର ମୃତ୍ୟୁ ମୋ ପକ୍ଷରେ ବର୍ତ୍ତମାନ ଶାନ୍ତିପ୍ରଦ । ମାତ୍ର ଆତ୍ମଘାତୀ ହୋଇ ଆଉ ଗୋଟିଏ ମହାପାପ ବଢ଼ାଇବି ନାହିଁ । ପ୍ରଭୁଙ୍କ ପଦରେ ମନ ପ୍ରାଣ ସମର୍ପଣ କଲି । ପ୍ରଭୁଙ୍କ ମହାମହିମ ନାମ ଦିବାନିଶି ହୃଦୟରେ ଧ୍ୟାନ କରି ଜୀବନର ଅବଶିଷ୍ଟ କାଳ ପବିତ୍ର ତୀର୍ଥମାନଙ୍କରେ ଭ୍ରମଣ କରିବି । ମୋ ପାପର ସୀମା ଅଛି, ପ୍ରଭୁଙ୍କ କରୁଣା ଅନନ୍ତ, କ୍ଷମା ଲାଭ କରିବାକୁ ଭରସା ଅଛି । ଅଥବା ପ୍ରଭୁ ଯାହା ଇଚ୍ଛା ଦଣ୍ଡବିଧାନ କରନ୍ତୁ, ଏ ପାପଜଡ଼ିତ ଆତ୍ମାକୁ ଖଣ୍ଡ ବିଖଣ୍ଡ କରିଦେଉନ୍ତୁ । ପ୍ରଭୁଙ୍କ ହାତରେ ମୃତ୍ୟୁ ଲଭି ନବ ଜୀବନ ପାଇବି ।

ମିତ୍ରବର ! ତୁମ୍ଭର ସଦୁପଦେଶ ଶ୍ରବଣ ଏବଂ ମୋ ଜୀବନକାଳର ଘଟଣାପରମ୍ପରା ଆଲୋଚନା କରି ଦେଖିଛି, ମାନବ ସ୍ୱାଧୀନ ଜୀବ, ଏପରି ବିଶ୍ୱାସ କରିବା ମୂର୍ଖତା ଏବଂ ଅହଙ୍କାରର ପ୍ରକାଶ ମାତ୍ର । ବେଳେ ବେଳେ

ଅନନ୍ତାରେ ବା ଅଜ୍ଞାତସାରରେ ମାନବ ଜୀବନରେ ଏପରି ଘଟନାମାନ ଆସି ଉପସ୍ଥିତ ହୁଏ, ତାହା ନିବାରଣ କରିବା ସାଧ୍ୟାତୀତ ବିଷୟ ଅଟେ । କେଉଁ ଅଲକ୍ଷ୍ୟ ହସ୍ତ ଆସି ଯେମନ୍ତ ପ୍ରବଳରୂପେ ସେହି ବାଟକୁ କଡ଼ାଇ ନେଇଯାଏ । ମାନବର ପରିମିତ ଜ୍ଞାନ ଏବଂ କ୍ଷୁଦ୍ର ବିବେଚନା ତାହାଠାରେ ହାର ପରାସ୍ତ । ସୁତରାଂ, ପ୍ରକୃତି ଏବଂ ପୁରୁଷ ମିଳିତ ଭାବରେ କଦାଚିତ୍ ପୃଥକ୍ ଭାବରେ ମାନବ ଜୀବନ ଉପରେ ସର୍ବଦା ଆଧିପତ୍ୟ ପ୍ରକାଶ କରୁଅଛନ୍ତି ବୋଲି ଅବଶ୍ୟ ସ୍ୱୀକାର କରିବାକୁ ହେବ । ତେବେ ଏ କଥା ମଧ୍ୟ ଧ୍ରୁବ ସତ୍ୟ, ଈଶ୍ୱରପରାୟଣ, ସତ୍‌ମାର୍ଗଗାମୀ, ଧୈର୍ଯ୍ୟଶୀଳ ଲୋକଙ୍କୁ ସାଂସାରିକ କୌଣସି ପ୍ରକାର ଦୁର୍ଘଟଣା ବିଚଳିତ କରିବାକୁ କ୍ଷମ ହୁଏ ନାହିଁ ।

ଆଉ ଗୋଟିଏ କଥା ବନ୍ଧୋ ! ସଜ୍ଞାନ ବା ଅଜ୍ଞାନକୃତ ପାପ ମୋଚନ ନିମନ୍ତେ ପାପୀ ଯଦି ଏକାନ୍ତ ମନରେ ପ୍ରଭୁଙ୍କ ପାଦପଦ୍ମରେ ଆତ୍ମସମର୍ପଣ କରେ ଏବଂ ଜୀବନ କାଳରେ ସେପରି ପାପ କାର୍ଯ୍ୟରୁ ଯଦି ଦୂରରେ ରହେ, ପ୍ରଭୁଙ୍କ କରୁଣାଯୋଗରେ ନିଶ୍ଚୟ ମୁକ୍ତିଲାଭ କରି ପାରିବ ବୋଲି ମୋହର ଦୃଢ଼ ବିଶ୍ୱାସ ଜାତ ହୋଇଅଛି । ବର୍ତ୍ତମାନ ଏହି ମାତ୍ରମାତ୍ର ମୋହର ଆଶ୍ରୟସ୍ଥଳ ।

ବନ୍ଧୋ ! ଏହି ଚିଠି ମଧ୍ୟରୁ ଦୁଇ ହଜାର ଟଙ୍କାର ନୋଟ ଏବଂ ମାଣିକଚନ୍ଦ୍ର ଦେଢ଼ ହଜାର ଟଙ୍କାର ସୁନା ମୋହର ପାଇବ । ମୁଁ ନିତାନ୍ତ ସଙ୍କୁଚିତ ଭାବରେ ହାତ ଯୋଡ଼ି ଜଣାଉଛି, ଦୁଇ ହଜାର ଟଙ୍କା ଡାକ୍ତରମାନଙ୍କ ମଧ୍ୟରେ ବାଣ୍ଟି ଦେବ । ଆଉ ଦେଢ଼ ହଜାର ଟଙ୍କା ସମସ୍ତ କର୍ମଚାରୀ ଏବଂ ଛାତ୍ରମାନଙ୍କୁ ଯଥୋପଯୁକ୍ତରୂପେ ଦାନ କରିବ । ମୋ ପୀଡ଼ା ସମୟରେ ସେମାନେ ନିତାନ୍ତ କଷ୍ଟ ସ୍ୱୀକାର କରିଛନ୍ତି; ଭୁଲିବାକୁ ଗଲେ ଏହି ଉପହାର ନିତାନ୍ତ ତୁଚ୍ଛ ଅଟେ ।

ଆଉ ଗୋଟିଏ ନିବେଦନ ବନ୍ଧୋ ! ମୋ ଅନ୍ୱେଷଣ ନିମନ୍ତେ ବୃଥା ଯତ୍ନ କରିବ ନାହିଁ । ଇତି ।

ତୁମ୍ଭର ସରଳ ବନ୍ଧୁ
ଗୋବିନ୍ଦ ଚନ୍ଦ୍ର

ଠିକ ସେହି ସମୟରେ ଡାକ୍ତର ସାହେବ ପହଞ୍ଚି ସୁକାନ୍ତ ବାବୁଙ୍କଠାରୁ ସମସ୍ତ ବିଷୟ ଶୁଣିଲେ । ସାହେବଙ୍କ ଆଦେଶ ଏବଂ ଅନ୍ୟ ସମସ୍ତଙ୍କ ସମ୍ମତିରେ ସ୍ଥିର ହେଲା, କୁଅଁର ବାବୁଙ୍କ ଦତ୍ତ ଟଙ୍କାରୁ ଦରିଦ୍ର ଛାତ୍ରମାନଙ୍କ ପୁସ୍ତକ କିଣା ବିଷୟରେ ସାହାଯ୍ୟ କରାଯିବ । କୁଅଁର ବାବୁଙ୍କୁ ଖୋଜି ଆଣିବା ସକାଶେ ସାହେବ କେତେଜଣ ଲୋକ ନିଯୁକ୍ତ କରି ଉପଯୁକ୍ତ ସ୍ଥାନମାନଙ୍କୁ ପ୍ରେରଣ କଲେ ।

---

## -୪୯-

ଜଗତ୍ କ୍ଷଣପରିବର୍ତ୍ତନଶୀଳ । ଆଜି ଯେଉଁ ସ୍ଥାନରେ ମହୋତ୍ସବ, ଆନନ୍ଦକୋଳାହଳ, କି ଅପ୍ରତ୍ୟାଶିତରୂପେ ଅତର୍କିତଭାବରେ କାଲି ସେ ସ୍ଥାନ ଦାରୁଣ ଯନ୍ତ୍ରଣା-ଜନିତ ଦୁଃଖ ହାହାକାରପରିପୂର୍ଣ୍ଣ । ଅସୁରେଶ୍ୱର ଏବଂ ସମସରପୁର ଦୁଇ ବିଖ୍ୟାତ ମଣ୍ଡଳପତିଙ୍କ ଉଆସରୁ ସୁଖ-ସୂର୍ଯ୍ୟ ଏକାବେଳକେ ଅସ୍ତମିତ । ସମସ୍ତ ଦୁଃଖ-ବିଳାପ-ତମିସାଚ୍ଛନ୍ନ ହୋଇ ପଡ଼ିଅଛି । ଦୁଇ କୁଳର ଜ୍ଞାତିବନ୍ଧୁ ପ୍ରଜା ପାଠକ ଦୀର୍ଘକାଳ ପର୍ଯ୍ୟନ୍ତ ହାହାକାର କରୁଥିଲେ । ମାନବମଣ୍ଡଳୀ ପ୍ରତି ସମୟ ସମୟରେ ଯେଉଁ ଦାରୁଣ ଦୁଃଖ ଦୁର୍ଦ୍ଦଶା ସଂଘଟିତ ହୋଇ କୋମଳ ହୃତ୍‌ପିଣ୍ଡକୁ କ୍ଷତବିକ୍ଷତ କରି ପକାଏ, କାଳସ୍ରୋତରେ ବିସ୍ମୃତିରୂପ ପ୍ରଲେପ ଭାସି ଆସି ସେହି କ୍ଷତ ସ୍ଥାନକୁ ଆଚ୍ଛାଦନ କରି ଦେଉ ନ ଥିଲେ ଗୋଟିଏ ମାତ୍ର ଦୁଃଖ ଯନ୍ତ୍ରଣା ବହନ କରି ଦୀର୍ଘକାଳ ଜୀବନ ଧାରଣ କରିବା ମାନବ ପକ୍ଷରେ ସମ୍ଭବପର ନ ଥାନ୍ତା । ଧରିବାକୁ ଗଲେ

ପୁତ୍ରଶୋକାତୁରା ଜନନୀ, ସ୍ୱାମିବିୟୋଗବିଧୁରା ମୃତପ୍ରାୟା ଯୁବତୀମାନେ ଇହଜୀବନରେ ସହଜରେ ଆହାର ବିହାର କରୁଥିବାର ଦେଖାଯାଏ । କଦାଚିତ୍ ସେମାନଙ୍କ ଆନନମଣ୍ଡଳରେ ହାସ୍ୟର ଚିହ୍ନ ଦେଖିବାରେ ଆସେ ।

ଉପଯୁକ୍ତ ତାଲୁକନିବାସୀ ପ୍ରଜାମଣ୍ଡଳୀ କ୍ରମଶଃ ଆପଣା ଆପଣା ଭୂସ୍ୱାମୀମାନଙ୍କୁ ପାସୋର ପକାଉଛନ୍ତି । କଦାଚିତ୍ ଘଟନାବିଶେଷ ଉପଲକ୍ଷରେ ସ୍ଥାନବିଶେଷରେ ସମ୍ମିଳିତ ପ୍ରଜାମଣ୍ଡଳୀ ଆପଣା ଆପଣା ଭୂସ୍ୱାମୀମାନଙ୍କର ସଦାଶୟତା, ନ୍ୟାୟପରତା, ପ୍ରଜାହିତୈଷଣା, ଦାତୃତ୍ୱ ବିଷୟରେ ଆଲୋଚନା କରିଥାନ୍ତି । ସଚରାଚର ଦେଖିବାରେ ଆସେ, କ୍ଷମତାଶାଳୀ ଲୋକମାନଙ୍କର ଦୋଷାବଳୀ ଉଲ୍ଲେଖ କରି ପରୋକ୍ଷରେ ତାହାଙ୍କର ନିନ୍ଦାବାଦ ଓ ସେହି ପ୍ରକାର ପଦବିଶିଷ୍ଟ ମୃତଲୋକଙ୍କର ପ୍ରଶଂସାବାଦ କରିବାକୁ ସ୍ୱଭାବତଃ ସାଧାରଣ ଲୋକଙ୍କର କେମନ୍ତ ଗୋଟାଏ ପ୍ରବୃତ୍ତି ଜାତ ହୋଇଥାଏ । ମୃତ ଲୋକର କଳୁଷିତ କାର୍ଯ୍ୟକଳାପ ନିତାନ୍ତ କ୍ଷୁଦ୍ରମନା ବିପକ୍ଷ ବିନା ଅନ୍ୟ କେହି ପ୍ରକାଶ କରିବାକୁ ଇଚ୍ଛା ପ୍ରକାଶ କରେ ନାହିଁ ।

ଗୋଟିଏ ଚଳିତ କଥା ଅଛି, 'ଦୁଃଖ ଏକାକୀ ଆସେ ନାହିଁ ।' ସମୟ ସମୟରେ ଏକାବେଳକେ ଅନେକ ଗୁଡ଼ିଏ ଦୁଃଖ ନାନା ସୂତ୍ର ଧରି ନାନା ଦିଗରୁ ଆସି ଅପ୍ରତ୍ୟାଶିତରୂପେ ମାନବଆତ୍ମାକୁ ବେଢ଼ି ପକାଏ । କୁଅଁର ଗୋବିନ୍ଦଚନ୍ଦ୍ର ଅକାରଣ ବା ତୁଚ୍ଛ କାରଣରୁ ଶାରୀରିକ ଦାରୁଣ ଦଣ୍ଡ ଭୋଗ ସମୟରେ ଚୌର୍ଯ୍ୟାପରାଧରେ ତାହାଙ୍କର ପବିତ୍ର ନାମ କଳଙ୍କିତ ହୋଇ ଯାଇଥିଲା । ତାହାଙ୍କ ବିଖ୍ୟାତ ନାମ ଉଲ୍ଲେଖ ସମୟରେ ବିପକ୍ଷଦଳ ଆନନ୍ଦ ଉତ୍ସାହ ସହିତ ନିନ୍ଦାବାଦ ଏବଂ ଆତ୍ମୀୟବର୍ଗ ନିତାନ୍ତ ମନଃକଷ୍ଟରେ ମସ୍ତକ ଅବନତ କରୁଥିଲେ । ସତ୍ୟର ବିମଳ ଜ୍ୟୋତିକୁ ଅଳୀକ ଅନ୍ଧକାର ଦୀର୍ଘକାଳ ଆଚ୍ଛାଦନ କରି ରଖି ପାରେ ନାହିଁ । ସମ୍ପ୍ରତି ସର୍ବସାଧାରଣ କୁଅଁର ଗୋବିନ୍ଦଚନ୍ଦ୍ର ବାବୁଙ୍କ ରୂପଲାବଣ୍ୟ, ସରଳତା, ମିଷ୍ଟଭାଷିତା, ନିର୍ମଳ-ଚରିତ୍ର ବିଷୟ ଏବଂ ଅକାରଣ ତାହାଙ୍କର ଦାରୁଣ କଷ୍ଟଭୋଗ ଓ ଦେଶତ୍ୟାଗ କଥାମାନ ସ୍ମରଣପୂର୍ବକ ହାହାକାର କରୁଛନ୍ତି । ଅସୁରେଶ୍ୱର ପ୍ରଗଣାର ଯାବନ୍ତ ଶ୍ରୀକରଣଗୋଷ୍ଠୀ ଏବଂ ଅପର ସାଧାରଣ ପ୍ରଜାମଣ୍ଡଳୀ ଉତ୍ତମରୂପେ ବୁଝିଲେଣି, ଦରିଦ୍ର ଆଜି ସାମନ୍ତ ମହୋଦୟଙ୍କ ଅନ୍ନରେ ପ୍ରତିପାଳିତ ବିଶ୍ୱାସଘାତକ ସଦାନନ୍ଦ ସମସ୍ତ ପ୍ରକାର ଉତ୍ପାତର ମୂଳକାରଣ ଅଟେ । ଶ୍ରୀକରଣଗୋଷ୍ଠୀ ଏତେଦୂର ଉତ୍ତେଜିତ ହୋଇ ଉଠିଅଛନ୍ତି ଯେ, ସେହି ପିଶାଚପ୍ରକୃତି ଲୋକଟା କାବୁରେ ପଡ଼ିଲେ ତାହାକୁ ବଧ କରିବା ସକାଶେ କେଜାଣି ଟିକିଏ ମାତ୍ର ହେଲେ ପାପ କର୍ମ ବୋଲି ବିଚାରିବେ ନାହିଁ । ସଦାନନ୍ଦର ବିଧବା ଜନନୀ ଦିବାନିଶି ହାହାକାର ବିଳାପ ସନ୍ତାପରେ ପ୍ରାଣତ୍ୟାଗ କଲାଣି ।

ସଦାନନ୍ଦ ବର୍ତ୍ତମାନ ଚୌର୍ଯ୍ୟାପରାଧରେ ଜେଲ-ଖାନାରେ ବନ୍ଦୀ । ଲୋକାୟୁତରେ ସମସ୍ତ ବୃତ୍ତାନ୍ତ ଶ୍ରବଣ କରି ସ୍ଥିର କଲାଣି, କଠିନ ଜଲଟାପାକରେ ତାହାପାଇଁ ସ୍ଥାନାଭାବ । ପାପୀ ଦଣ୍ଡଭୋଗ ସମୟରେ ଆପଣା କୃତ କାର୍ଯ୍ୟର ଅନିଷ୍ଟକାରିତା ଅନୁଭବ କରିଥାଏ । ହିତାହିତ-ଜ୍ଞାନଶୂନ୍ୟ ଅଭ୍ୟସ୍ତ ପାପୀମାନଙ୍କ କଥା ଧରୁନ୍ତ; ମାତ୍ର ବୁଦ୍ଧିବୃତ୍ତିସମ୍ପନ୍ନ ନବୀନ ଅପରାଧୀ ଦଣ୍ଡଭୋଗ ସମୟରେ ଭବିଷ୍ୟତ୍ ସୁଖସମ୍ପଦରୁ ନିରାଶ ହୋଇ ଆତ୍ମଶୋଧନ-ପାଇଁ ପ୍ରାୟଶ୍ଚିତ୍ତ କରିବା ନିମନ୍ତେ ମନ ମଧ୍ୟରେ କଳ୍ପନା କରିବା ସ୍ୱାଭାବିକ ଅଟେ ।

———

## –୪୦–

## କୁଞ୍ଜକୁଟୀରେ

ପୃଥିବୀର ସୁଖ ଦୁଃଖ, ଆନନ୍ଦ ଉଲ୍ଲାସ, ହାହାକାର କୌଣସି ବିଷୟ ପ୍ରତି ଦୃଷ୍ଟି ନ ରଖି ସମୟ ସମାନ-

ଭାବରେ ବହି ଯାଉଛି । ଏଥି ମଧ୍ୟରେ ଲଗାଲଗି ଚାରି ବର୍ଷ କାଳ ବିତି ଗଲାଣି ।

ବୃନ୍ଦାବନ ଧାମ ଯମୁନାକୂଳବର୍ତ୍ତୀ ସହର ପ୍ରାନ୍ତ ପ୍ରଦେଶରେ ଗୋଟିଏ ନିତାନ୍ତ କ୍ଷୁଦ୍ର କୁଞ୍ଜ । ସ୍ଥାନଟି ନିରୋଳା, ଅନ୍ୟାନ୍ୟ ବିଖ୍ୟାତ କୁଞ୍ଜ ସହିତ ସମ୍ପର୍କ-ଶୂନ୍ୟ । କୁଞ୍ଜଟି ସାତପାଞ୍ଚ, ଉପରେ ଉପରେ ଭାଗଟାରେ ଗଡ଼ାଣିଆ ମାଟି ଛାଉଣି । ଦ୍ୱାରରେ କେତେଖଣ୍ଡ ପୁରୁଣା ଦରଦରା ପଟାଯୋଡ଼ା କବାଟ, ଏହାକୁ କବାଟ ବା ତାଟି ଯାହା ଇଚ୍ଛା ବୋଲି ପାର । କବାଟରେ ଶିକୁଳୀ ନାହିଁ, ଖଣ୍ଡିଏ ଦଉଡ଼ି ବନ୍ଧା । ସହରରେ, ବିଶେଷରେ ତୀର୍ଥସ୍ଥାନମାନଙ୍କରେ ଚୋରମାନଙ୍କ ଉପଦ୍ରବ ଭୟଙ୍କର । ହେଲେ ଚୋରମାନଙ୍କ ବିଶେଷ ପରିଚିତ ଏ ଅଞ୍ଚଳକୁ କଷ୍ଟ ସ୍ୱୀକାର କରି ଆସିବାର ପ୍ରୟୋଜନ ମଧ୍ୟ ନାହିଁ । କାହିଁ କି, କୁଞ୍ଜ ଭିତରେ ଥିବା ସମ୍ପତ୍ତି ମଧ୍ୟରେ ଭଙ୍ଗା ଦରଦରା କେତେଟା ହାଣ୍ଡି, ଖଣ୍ଡେ ନିହାତି ମଇଳା ଛିଣ୍ଡା ସଉପ, ଗୋଟାଏ ଲାଉ ତୁମ୍ବା, ଗୋଟାଏ ତିନି ଜାଗା ଜଳଜେଗିବନ୍ଧଆ କଣା ସାନ ଲୋଟା, କେତେଖଣ୍ଡ ପୁରୁଣା ତାଳପତ୍ର ପୋଥି ମାତ୍ର । ମାଟିପୂରା ଗୋଟାଏ ବଡ଼ ଠେକରେ ତୁଳସୀ ପୁଦାଟିଏ ରୁଆ ଯାଇ କୋଣିଆ ଥୁଆ ଯାଇଛି ।

ସଞ୍ଜପ୍ରଦୀପ ଲଗେଲଗେ । ଆଳତି ଟିକିଏ ଆଗରୁ ଉକ୍ତ କୁଞ୍ଜ ମଧ୍ୟରୁ ଗୋଟିଏ ବୈରାଗୀ ବାହାରି ଗୋବିନ୍ଦଜୀ ମନ୍ଦିରମୁହାଁ ମୁଣ୍ଡ ପୋତି ଚାଲୁଛନ୍ତି । ବୈରାଗୀଙ୍କ ବୟସ ଊଣା ଅଧିକ ପଞ୍ଚାଶ ଭଳି । ପିନ୍ଧିବାର କୌପୀନ ଉପରେ ଖଣ୍ଡେ ଗେରୁଆ ବହିର୍ବାସ ଗୁଡ଼ିଆ । ଖଣ୍ଡେ ଛିଣ୍ଡା ଗଣ୍ଠିଆ ନାମାବଳୀ ପାଗ ପରି ମୁଣ୍ଡରେ ଗୁଡ଼ାଇଛନ୍ତି । ସର୍ବାଙ୍ଗରେ ଗୋବିନ୍ଦଜୀଉଙ୍କ ନାମ ତିଳକ ଛାପା, ଖଣ୍ଡିଏ ନାମାବଳୀ ଚାଦର ପରି ଘୋଡ଼ିଛନ୍ତି । ବ୍ରଜବାସୀ ବାବାଜୀମାନଙ୍କ ହାତରେ ଗୋଟିଏ ଗୋଟିଏ ମାଳ ଝୁଲି ବା ତୁଳସୀ ଭଜନମାଳୀ ଥାଏ । ଆମ୍ଭମାନଙ୍କ ବୈରାଗୀଙ୍କ ହାତରେ ତାହା କିଛି ନାହିଁ । 'ଗୋବିନ୍ଦ ! ତୋ ଇଚ୍ଛା, ଗୋବିନ୍ଦ ! ତୋ ଇଚ୍ଛା'—ଏହିପରି ଭଜନ କରି କରି ମୁଣ୍ଡ ପୋତି ଚାଲିଛନ୍ତି । ଠିକ୍ ବେଳରେ ପହଞ୍ଚି ପ୍ରଭୁଙ୍କ ଆଳତି ଦର୍ଶନ କଲେ । ତହୁଁ ଉତ୍ତାରେ ପ୍ରଭୁଙ୍କ ସାକ୍ଷାତରେ ଅନେକ ବେଳଯାଏ ଦଣ୍ଡ ପ୍ରଣାମ ସାରି କଣ ଜଣାଉ ଥାନ୍ତି । ପ୍ରଭୁଙ୍କ ଚରଣୋଦକ ପାଦ ତୁଳସୀ ସେବା କଲା ଉତ୍ତାରେ ତାଳି ଦେଇ ଦେଇ ମନ୍ଦିର ପ୍ରଦକ୍ଷିଣ କଲେ । ସେହି ସମୟରେ ଏହି ଭଜନ ଗାଉଥାନ୍ତି— 'ଜୟ ଗୋବିନ୍ଦ ! ଜୟ ଗୋବିନ୍ଦ !

ଭୁବନସୃଜନକାରୀ । ( ଘୋଷା )

ଜୟ ଗୋବିନ୍ଦ ପରମାନନ୍ଦ ଭକତଚିତ୍ତବିହାରୀ ।
ହେ ମଧୁସୂଦନ ଜଗଜ୍ଜନରଞ୍ଜନ ପାପତାପଭୟହାରୀ ।
ଭୁବନପାଳକ ମୁକତିଦାୟକ ଦୁର୍ଜନଦର୍ପସଂହାରୀ ।
ଭବଭୟବାରଣ ମୁକତିକାରଣ ଭବସିନ୍ଧୁ ପାର କାଣ୍ଡାରୀ ।
ନମୋଽଖିଳକାରଣ ନମୋ ନିରଞ୍ଜନ ନମୋ ନମୋ

ବିଶ୍ୱବିହାରୀ ।

ହେ ଭୂତଭାବନ ପତିତପାବନ ଜଗଜ୍ଜନଜୀବନସଞ୍ଚାରୀ ।'

ଏହି ପ୍ରକାର ଭଜନ ଗାଇ ଗାଇ ଗୋପୀନାଥଜୀ, ମଦନମୋହନ, ଶ୍ୟାମସୁନ୍ଦର, ଅନ୍ୟାନ୍ୟ ମଠମାନଙ୍କରେ ଦେବତାମାନଙ୍କୁ ଦଣ୍ଡ ପ୍ରଣାମ କରି ଆପଣା କୁଞ୍ଜକୁ ବାହୁଡ଼ିଲେ ।

ବୈରାଗୀ ଗୋବିନ୍ଦଜୀ ମନ୍ଦିରରୁ ଯେପରି ବାହାରି-ଛନ୍ତି, ଆଉ ଗୋଟିଏ ବୈଷ୍ଣବ ଦଶ ବାର ହାତ ଛଡ଼ା ତାଙ୍କ ପିଛା ଧରି ଚାଲୁଥିବାର ଦେଖାଗଲା । ବୟସରେ, ବେଶରେ ଦୁହେଁଯାକ ସମାନ ଥିବାର ଜଣାଯାଏ । ଅଧିକରେ ନୂଆ ଆସିଥିବା ବୈରାଗୀଙ୍କ କାନ୍ଧ ଉପରେ ଖଣ୍ଡିଏ ପୁରୁଣା କମ୍ବଳ ଚଉତା ହୋଇ ପଡ଼ିଛି । ଗୋଟାଏ ଗେରୁଆ ଝୁଲି ଡେବରି କାଖତଳେ ଝୁଲୁଛି,

ସେଥିରେ ଅଳ୍ପ କିଛି ଦ୍ରବ୍ୟ ଥିବାର ଜଣାଯାଏ । ଖାଇବ ହାତରେ ଖଣ୍ଡିଏ ବାଡ଼ି ଧରି ଆଗ ବୈରାଗୀଙ୍କ ଉପରେ ଆଖି ରଖି ଚାଲୁଛନ୍ତି । ଆଗ ବୈରାଗୀ ଆପଣା କୁଞ୍ଜ ଦୁଆରେ ପହଞ୍ଚ ପହଞ୍ଚ ହେବାକ୍ଷଣି ପଛରେ କେହି ମନୁଷ୍ୟ ଆସୁଥିବା ପରି ତାଙ୍କୁ ଜଣାଗଲା । ପଛକୁ ମୁହଁ ଫେରାଇ ଅନାଇଲେ । ଜହ୍ନ ରାତି, ସଫା ଆଲୁଅ ପଡ଼ିଛି । ପିଲ୍ଲା ଧରି ଆସୁଥିବା ଲୋକଟି ବୈରାଗୀଙ୍କ ଗୋଡ଼ତଳେ ଲମ୍ବ ହୋଇ ପଡଗଲେ । ଦୁଇ ହାତରେ ପାଦଯୋଡ଼ିକ ଆଣ୍ଠେରେ ଧରି ମୁଣ୍ଡ ଲଗାଇ ରଡ଼ି ଛାଡ଼ୁଥିଲେ, "ପ୍ରଭୁ ! ରକ୍ଷା କର, ପ୍ରଭୁ ! ରକ୍ଷା କର ।" ବୈରାଗୀ ଚମକି ପଡ଼ି ତଳକୁ ଚାହିଁ ଦେଖିଲେ, ବେଶରୁ ବୁଝିଲେ, ଜଣେ ବୈଷ୍ଣବ । ଉଡ଼ଟାଏ ଛାଡ଼ି କହିଲେ, "ଆରେ ବୈଷ୍ଣବ ହୋ । ଆରେ ବୈଷ୍ଣବ ହୋ ! ଛାଡ଼, ଛାଡ଼, ଛାଡ଼, ମହାଅପରାଧ ହେଲା ।" ନଇଁପଡି ଗୋଡ଼ତଳେ ପଡ଼ିଥିବା ଲୋକଙ୍କ ଦୁଇ ହାତ ଧରି ଉଠାଉଛନ୍ତି । ପାଦପଡିତ ଲୋକ କହିଲେ, "ଆଜ୍ଞା ନାହିଁ, ନାହିଁ, ମୁଁ ବୈଷ୍ଣବ ନୁହେ, ବୈଷ୍ଣବଙ୍କ ଦାସାନୁଦାସ ଘରେ ଥିବା କୁକୁରର ସ୍ପର୍ଶଯୋଗ୍ୟ ବି ନୁହେ । ମୁଁ ପାପୀ, ମୁଁ ଚଣ୍ଡାଳ, ମୁଁ ନରାଧମ । ମୁଁ ସେଇ ସଙ୍କରା ମହାନ୍ତି, ଆପଣଙ୍କ ଗୋଲାମ ।" ସମସରପୁର ଜମିଦାର ସାମନ୍ତ ସଙ୍କର୍ଷଣ ମହାନ୍ତିଏ ଭେକ ଧରି ଘରୁ ବାହାରି ଯାଇଥିବା ବୈରାଗୀଙ୍କୁ ଜଣା ଥିଲା । ବୈରାଗୀ ତାଙ୍କୁ ପ୍ରେମରେ କୁଣ୍ଢାଇ ପକାଇ କହିଲେ, "ଆସ ଆସ, ସଙ୍କର ଭାଇ, ଆସିବା ହେଉ, ଆସିବା ହେଉ । ଦୁଇଜଣଯାକ କୁଣ୍ଢାକୁଣ୍ଢି ହୋଇ ଛିଡ଼ା । ସଙ୍କର୍ଷଣ ମହାନ୍ତିଏ ରଡ଼ି ଛାଡ଼ୁଥାନ୍ତି । ବୈରାଗୀ ତୁନି, ମୁଖରେ କିଛି କଥା ନାହିଁ । ଏହିପରି ଦଣ୍ଡେକାଳ ବିତି ଗଲା । ସଙ୍କର୍ଷଣ ମହାନ୍ତିଏ ଧକେଇ ଧକେଇ କହିଲେ, 'ଆଜ୍ଞା, ପ୍ରଭୁ ! ମୋତେ କ୍ଷମା କରନ୍ତୁ । ମୋ ଅପରାଧ ଅସୀମ, ମୋ ପାପର ପ୍ରାୟଶ୍ଚିତ୍ତ ନାହିଁ । ପୁରୀଧାମ, ସେତୁବନ୍ଧ ରାମେଶ୍ୱର, ହରିଦ୍ୱାର, ଦ୍ୱାରକା, କାଶୀଧାମ, ତୀର୍ଥମାନଙ୍କରେ ବୁଲି ବୁଲି କାହିଁ ଶାନ୍ତି ପାଇଲି ନାହିଁ । ଉଦ୍ଧାରଣିକା ଶ୍ରୀଚରଣ ଦର୍ଶନ ପାଇ ଜୀବନଟା ଶୀତଳ ହେଲା, କୃତାର୍ଥ ହେଲି ।"

ନଦୀ କୂଠ ଉପରେ କୁଞ୍ଜ । ଦୁଇଜଣଯାକ ନଦୀରେ ହାତ ଗୋଡ଼ ଧୋଇ କୁଞ୍ଜ ଭିତରକୁ ଯାଇ ବସିଲେ । ଏ ଉତ୍ତାରେ ବୈରାଗୀ ଅଳଙ୍ଗ ଦର୍ଶନ ବାହୁଡ଼ା ପ୍ରତିଦିନ ଘଡ଼ିଏଯାଏ ଯେପରି ଭଜନ କରିଥାନ୍ତି, ଆଜି ବି ସେହିପରି କଲେ । ସଙ୍କର୍ଷଣ ମହାନ୍ତିଏ ଆଖି ବୁଜି ହାତ ଯୋଡ଼ି ଭଜନ ଶୁଣୁଥାନ୍ତି । କୌଣସି ମହାତ୍ମାଙ୍କ ବନ୍ଦୋବସ୍ତରେ ଗୋବିନ୍ଦଜୀଉଙ୍କ ମନ୍ଦିର ନିକଟରେ ପ୍ରତିଦିନ ସନ୍ଧ୍ୟା ସମୟରେ ଚଣା ଉଖୁଡ଼ା ବାଲଭୋଗ ଅତିଥିମାନଙ୍କୁ ବିତରଣ କରାଯାଏ । ବୈରାଗୀ କିଛି ବାନ୍ଧି ଆଣିଥିଲେ । ବୈରାଗୀ ଦୁହେଁ ତେତିକ ସେବା ଓ ଜଳପାନ କରି ମାଷ୍ଟମ ହୋଇ ବସିଲା ବାଦେ, ଦଣ୍ଡକ ଉତ୍ତାରେ ବଡ଼ ବୈରାଗୀ କଥା ଆରମ୍ଭ କଲେ--

"ହୁଁ, ସଙ୍କର ଭାଇ ! କଣ ବୋଲୁଥିଲଟି ?" ସଙ୍କର୍ଷଣ ମହାନ୍ତିଏ ହାତ ଯୋଡ଼ି ପୁଣି ଆଉ ଥରେ ଗୋଡ଼ତଳେ ମୁଣ୍ଡ ଲଗାଇ ବ୍ୟାକୁଳ ଭାବରେ କହିଲେ, "ଆଜ୍ଞା ପ୍ରଭୋ ! ଶ୍ରୀଚରଣରେ ଆଉ ଅଧିକ କଣ ଜଣାଣ କରିବେ ? ପ୍ରଭୁଙ୍କୁ ତ ସବୁ ଜଣା, ମୋହର ଅପରାଧରୁ ଶ୍ରୀପ୍ରଭୁ ବିରାଗୀ, ଗୃହତ୍ୟାଗୀ, ମୁଁ ମଧ୍ୟ ଗୋଟିଏ ମାତ୍ର ମୋ କୁଳର ସଙ୍ଖାଳି କନ୍ୟାରତ୍ନଟିକୁ ହରାଇ ବସିଛି । ପ୍ରଭୁ ! ମୋ ପାପର ପ୍ରାୟଶ୍ଚିତ୍ତ ନାହିଁ ?" ବୈରାଗୀ ଦଣ୍ଡେଯାଏ ଆଖି ବୁଜି ତୁନି ହୋଇ ବସି କହିଲେ, "ଭାଇ ସଙ୍କର୍ଷଣ ! ସବୁ ଗୋବିନ୍ଦଙ୍କ ଇଚ୍ଛା । ତାଙ୍କ ଆଜ୍ଞା ବିନା ଜଗତରେ ଗୋଟିଏ ଦୁବପତ୍ର ବି ହଲେ ନାହିଁ । ମୁଁ ଏତେ କାର୍ଯ୍ୟ କଲି, ସେ ମନ୍ଦ କାର୍ଯ୍ୟ କଲା, ଏ ସବୁ ଭୁଆଁଭ୍ରମମାନ । ବିଶ୍ୱ-ବ୍ରହ୍ମାଣ୍ଡର ଅଧିପତି ଗୋବିନ୍ଦଜୀ ସମସ୍ତ କାର୍ଯ୍ୟର ମୂଳାଧାର ଅଟନ୍ତି । ଏକମାତ୍ର ତାହାଙ୍କ ଆଜ୍ଞାରେ ସମସ୍ତ ଘଟନା ପରିଚାଳିତ ହେଉଅଛି । ମାନବଶ୍ରେଣୀ

ଉପଲକ୍ଷ ମାତ୍ର । ଗୀତାଶାସ୍ତ୍ରରେ ସୁସ୍ପଷ୍ଟ ରୂପେ ବ୍ୟକ୍ତ ଅଛି—

'ପ୍ରକୃତେଃ କ୍ରିୟମାଣାନି ଗୁଣକର୍ମାଣି ସର୍ବଶଃ ।
ଅହଙ୍କାରବିମୂଢ଼ାତ୍ମା କର୍ତ୍ତାହଂ ଇତି ମନ୍ୟତେ ।' ପୁଣି
'ଈଶ୍ୱରଃ ସର୍ବଭୂତାନାଂ ହୃଦ୍ଦେଶେଽର୍ଜୁନ ତିଷ୍ଠତି ।
ଭ୍ରାମୟନ୍ ସର୍ବଭୂତାନି ଯନ୍ତ୍ରାରୂଢ଼ାନି ମାୟୟା ।'

ଆହୁରି ମଧ୍ୟ ମହାକବି ତୁଳସୀ ଦାସ ବୋଲିଛନ୍ତି—
'ଶୁନ ଭରତ କାଲ ପ୍ରବଲ ବିଲୋକ କଲେ ମୁନିନାଥ,
ସୁଖ ଦୁଃଖ ଜନମ ମରଣ ଯଶ ଅପଯଶ ବିଧିହାତ ।'

ତୁମ୍ଭେ ତେର ଦେଖିଥିବ, ଦେହରେ ବି ବିତେଇଛ, ଆମ୍ଭେମାନେ ଯାହା ଲୋଡ଼ୁଁ କାହିଁ ଗୁଳିଯାଏ; ଯାହା କେବେ କଳ୍ପନା କରି ନାହୁଁ, କାହୁଁ ଆସି ଘଟିଯାଏ । ଏ ସବୁ ଘଟନାର ମୂଳ କାରଣ କିଏ ? ଆଜି ଗୋଟିଏ କଥା ଭାଇ ! ପ୍ରଭୁ ଦୟାମୟ, ମଙ୍ଗଳମୟ । ଆମ୍ଭେମାନେ ତାହାଙ୍କ ସୃଷ୍ଟ ଜୀବ । ପ୍ରଭୁ କିଣ ଆମ୍ଭମାନଙ୍କପାଇଁ ଅମଙ୍ଗଳ ଭିଆଣ କରିବେ ? ପ୍ରତ୍ୟେକ ଘଟନା ମୂଳରେ ତାହାଙ୍କର ଦୟା ମଙ୍ଗଳମୟୀ ଇଚ୍ଛା ପ୍ରଚ୍ଛନ୍ନ ରହିଥାଏ । ଭବିଷ୍ୟତ୍ ଅନ୍ଧ କ୍ଷୁଦ୍ର ପ୍ରାଣୀ ଆମ୍ଭେମାନେ ଅନେକ ଘଟନାକୁ କଷ୍ଟକର ମଣି ହାହାକାର କରିଥାଉଁ । ଯେବେ ଆମ୍ଭର ବର୍ତ୍ତମାନ ଅବସ୍ଥାର କାରଣ ବୋଲି ତୁମ୍ଭେ ଆପଣାକୁ ଜ୍ଞାନ କର, ତେବେ ତ ତୁମ୍ଭେ ଆମ୍ଭର ପରମ ଉପକାରୀ, ସେଥି ସକାଶେ ଆମ୍ଭର ତୁମ୍ଭଙ୍କୁ ଧନ୍ୟବାଦ ଦେବା ଉଚିତ ।

ଜାଣ ଭାଇ ! ଆମ୍ଭମାନଙ୍କର ଦୁଇଗୋଟି କର୍ତ୍ତବ୍ୟ— ଗୋଟିଏ ଶରୀର ସକାଶେ ଅନ୍ୟଟି ଆତ୍ମା ପ୍ରତି । ସେଥି ମଧ୍ୟରୁ ଜାଣ ଶରୀର କ୍ଷଣବିଧ୍ୱଂସୀ; ମାତ୍ର ଆତ୍ମା ଅନନ୍ତକାଳ ସ୍ଥାୟୀ, ଅବିନାଶୀ । ଏଥିକି ସର୍ବ ସମୟରେ ସର୍ବ ପ୍ରଯତ୍ନରେ ଆତ୍ମୋନ୍ନତି ସକାଶେ ସଚେଷ୍ଟ ରହିବା ସର୍ବତୋଭାବରେ ଉଚିତ ଅଟେ । ଯେତେକାଳ ପର୍ଯ୍ୟନ୍ତ ଶରୀରରେ ସାମର୍ଥ୍ୟ ଥାଏ, ଇନ୍ଦ୍ରିୟଗଣ କାର୍ଯ୍ୟକ୍ଷମ ଥାନ୍ତି, ତେତେଦିନ ପର୍ଯ୍ୟନ୍ତ ସମାଜ ଏବଂ ନ୍ୟାୟ-ମାର୍ଗରେ ଆତ୍ମସୁଖ, ସୌଭାଗ୍ୟ ସଂବର୍ଦ୍ଧନ ବିଷୟରେ ସଯତ୍ନ ହେବା ସମ୍ପୂର୍ଣ୍ଣରୂପେ ଉଚିତ । ଏହାହିଁ ପ୍ରଭୁଙ୍କର ଅଭିପ୍ରାୟ ଏବଂ ଧର୍ମାର୍ଜନମାର୍ଗର ଗୋଟିଏ ସୋପାନ ଅଟେ । ଯେହେତୁ, ପ୍ରଭୁଙ୍କ ନାମ ଭଜନ, ମନ ମଧ୍ୟରେ ସ୍ମରଣ, ତାହାଙ୍କ ପ୍ରିୟକାର୍ଯ୍ୟ ସାଧନ ହିଁ ଧର୍ମ ।

ଇନ୍ଦ୍ରିୟଗଣ ଅବଶ ଓ କାର୍ଯ୍ୟସାଧନରେ ଅକ୍ଷମ ହେଲେ କେବଳ ଆତ୍ମୋନ୍ନତି ବିଷୟରେ ସଯତ୍ନ ହେବାର ଉଚିତ । ଏଥିପାଇଁ ଶାସ୍ତ୍ରୀୟ ବଚନ ଉକ୍ତ ଅଛି—

'ପଞ୍ଚାଶଦ୍‌ଭିର୍ବନଂ ବ୍ରଜେତ୍ ।'
ମହାପୁରାଣ ଭାଗବତରେ ମଧ୍ୟ ପଢ଼ିଥିବେ—
'ପୁତ୍ର କରିବେଣି ପତ୍ନୀ ପାଶେ
ଅଥବା ଚଳିବ ସନ୍ନ୍ୟାସେ ।'

ଇନ୍ଦ୍ରିୟ ବୈକଲ୍ୟ ପ୍ରଭୁଙ୍କର ସୁସ୍ପଷ୍ଟ ଆଦେଶ, ସାଂସାରିକ କାର୍ଯ୍ୟରୁ ନିବୃତ୍ତ ହୋଇ ଆତ୍ମାର ମଙ୍ଗଳ କାର୍ଯ୍ୟ ବିଷୟରେ ମନଃସଂଯୋଗ କର ।

ଜନସମାଜର ବର୍ଦ୍ଧନ ଏବଂ ସଂସ୍ଥାପନ ନିମନ୍ତେ ଜଗନ୍ନିୟନ୍ତା ପରମେଶ୍ୱର ସଂସାରକୁ ଏପରି ମାୟା-ଜାଲରେ ବାନ୍ଧି ରଖିଅଛନ୍ତି, ତାହାକୁ ବିଚ୍ଛିନ୍ନ କରିବା ମାନବ ପ୍ରାଣୀ ପକ୍ଷରେ ସହଜ ନୁହେ । ଭଲରୂପେ ବୁଝିଅଛୁଁ, ସାଂସାରିକ ଧନ ସମ୍ପତ୍ତି, ମାନ ସମ୍ଭ୍ରମ କ୍ଷଣବିଧ୍ୱଂସୀ—ଧର୍ମ ହିଁ ଆତ୍ମାର ପରମ ସହାୟ । ତଥାପି ସଚରାଚର ମାନବସନ୍ତାନ ସାଂସାରିକ ବିଷୟବାସନାରେ ପ୍ରତିନିୟତ ନିମଗ୍ନ, ପରମ ଧନ ଧର୍ମାର୍ଜନ ବିଷୟରେ ତାଦୃଶ ଯତ୍ନଶୀଳ ନୁହେ ।

ଆମ୍ଭ ସହାଧ୍ୟାୟୀ ପଣ୍ଡିତ କୁଳମଣି ବିଦ୍ୟାଭୂଷଣଙ୍କଠାରୁ ଅନେକ ଥର ଶୁଣିଛୁଁ, ସାଂଖ୍ୟ ଦର୍ଶନରେ ସୁସ୍ପଷ୍ଟରୂପେ

ପ୍ରକାଶିତ, 'ବାସନା ହିଁ ମୁକ୍ତିମାର୍ଗର କଣ୍ଟକ ଅଟେ ।' ପ୍ରାଣୀର ଦୁଃଖରେ କାତର ମହାମୁନି ବୁଦ୍ଧଦେବ ମଧ୍ୟ ନିରଞ୍ଜନା ନଦୀତଟରେ ଧ୍ୟାନଯୋଗେ ଅନୁଭବ କରିଥିଲେ, ବାସନା ଯାବନ୍ତ କଷ୍ଟର କାରଣ । ମାନବ ଶ୍ରେଣୀ ଦୈବୀ ମାୟାରେ ଏପରି ଆଚ୍ଛନ୍ନ ଯେ, କଷ୍ଟର ମୂଳ କାରଣ ବାସନାକୁ ସହଜରେ ପରିତ୍ୟାଗ କରିବାକୁ ମନ ବଳାଏ ନାହିଁ । ସେହିପରି ତତ୍ତ୍ୱଦର୍ଶୀ ମହାତ୍ମାମାନେ ବାସନା ପରିତ୍ୟାଗପୂର୍ବକ ଧର୍ମାର୍ଜନ ମାର୍ଗରେ ଅଗ୍ରସର ହୋଇଥାନ୍ତି । ପୁଣି କେହି କେହି ଧର୍ମପିପାସୁ ଲୋକ ପକ୍ଷରେ ଦୈବଗତ୍ୟା ସମୟ ସମୟରେ ଏପରି ଘଟଣା ଉପସ୍ଥିତ ହୋଇପଡ଼େ ଯେ, ସାଂସାରିକ ସମସ୍ତ ବନ୍ଧନ ଛିନ୍ନ କରାଇ ହୃଦୟରେ ପରମ ଧର୍ମଭାବ ବୈରାଗ୍ୟ ଜାତ କରାଇଦିଏ । ମନରେ ବିଚାରି ବୁଝନ୍ତୁ, ଆମ୍ଭମାନଙ୍କ ପ୍ରତି ଯେବେ ଏହି ଘଟନା (ତୁମ୍ଭ ବୋଲିବାରେ ଦୁର୍ଘଟନା ହେଉ ପଛେ) ଉପସ୍ଥିତ ହୋଇ ନ ଥାନ୍ତା, ତେବେ ଆଜି ପର୍ଯ୍ୟନ୍ତ ବିଷୟବାସନାରେ ବିଜଡ଼ିତ ରହି ପ୍ରତି ନିୟତ ସେଥି ମଧ୍ୟରେ ପଡ଼ି ଘାଣ୍ଟି ହେଉଥାନ୍ତୁ । କେତେପ୍ରକାର କଳୁଷକାମନାରେ ଆତ୍ମା କ୍ରମଶଃ ଅଧୋଗତି ଲାଭ କରୁଥାନ୍ତା । ଆମ୍ଭେମାନେ ଜୀବନ କାଳରେ ସାଂସାରିକ ବହୁଳ ବିଷୟରେ ବିଜଡ଼ିତ ଥାଇ ମଧ୍ୟ ପ୍ରଭୁଙ୍କ ପାଦପଦ୍ମସେବା ବିସ୍ମୃତ ହୋଇ ନ ଥିଲୁଁ । ସେହି ସେବା ବୃଥା ଯାଇ ନାହିଁ । ବର୍ତ୍ତମାନ ସମସ୍ତ ତ୍ୟାଗ କରି ଯେ ପ୍ରଭୁଙ୍କ ସେବାରେ ନିଯୁକ୍ତ ଅଛୁଁ, ଏହା ନିଶ୍ଚୟ ତାହାଙ୍କ ଦତ୍ତ ଆଶୀର୍ବାଦର ଫଳ ଅଟେ । ଆସ ଭାଇ ! ଏହି ନିତ୍ୟ ଧାମରେ ପବିତ୍ର ସାଧୁସଂସର୍ଗରେ ମିଳିତ ଥାଇ ଜୀବନର ଅବଶିଷ୍ଟ କେତେଟା ଦିନ ଅତିବାହିତ କରୁଁ, ମନ ପ୍ରାଣ ପ୍ରଭୁଙ୍କ ପାଦପଦ୍ମରେ ସମର୍ପଣ କରୁଁ, ତାହାଙ୍କ ମଙ୍ଗଳମୟୀ ଇଚ୍ଛା ଆମ୍ଭମାନଙ୍କ ଜୀବନରେ ସଫଳ ହେଉ ।''

ସଙ୍କର୍ଷଣ ମହାନ୍ତ—ଆଜ୍ଞା, ମୁଁ ନିତାନ୍ତ ଅଧମ ଜ୍ଞାନହୀନ । ଆପଣ ମୋ ଗୁରୁଦେବ, ମୋତେ ସଦୁପଦେଶ ପ୍ରଦାନ କରନ୍ତୁ । ମୁଁ ଶିଷ୍ୟଭାବରେ ରହି ଦିନ ଯାପନ କରିବି ।

ବଡ଼ ବୈରାଗୀ—ଭାଇ ! ଆମ୍ଭେ ତୁମ୍ଭଠାରୁ ଅଧିକ କଣ ବା ଜାଣୁଁ, କଣ ବା ଉପଦେଶ ଦେବୁଁ ? ଗୋବିନ୍ଦଜୀ ପରମଗୁରୁ, ପ୍ରଭୁ, ଆମ୍ଭମାନଙ୍କର ସର୍ବସ୍ୱ, ଆସ, ଆମ୍ଭମାନଙ୍କ ଧର୍ମାଧର୍ମ, ସୁଖଦୁଃଖ, ମନ ପ୍ରାଣ ସମସ୍ତ ପ୍ରଭୁଙ୍କ ପଦରେ ସମର୍ପଣ କରି ନିଶ୍ଚିନ୍ତ ରହିବା । ପ୍ରଭୁଙ୍କର ଶ୍ରୀମୁଖ ଆଜ୍ଞା --

'ସର୍ବଧର୍ମାନ୍ ପରିତ୍ୟଜ୍ୟ ମାମେକଂ ଶରଣଂ ବ୍ରଜ ।
ଅହଂ ତ୍ୱାଂ ସର୍ବପାପେଭ୍ୟୋ ମୋକ୍ଷୟିଷ୍ୟାମି ମା ଶୁଚଃ ।'
(ଗୀତା)

କ୍ଷିପ୍ରଂ ଭବତି ଧର୍ମାତ୍ମା ଶଶ୍ୱଚ୍ଛାନ୍ତିଂ ନିଗଚ୍ଛତି ।
କୌନ୍ତେୟ ପ୍ରତିଜାନୀହି ନ ମେ ଭକ୍ତଃ ପ୍ରଣଶ୍ୟତି ।'
(ଗୀତା)

---

-୫୧-

## ନୂତନ ସେବକ

ଯମୁନାକୂଳବର୍ତ୍ତୀ କଥିତ କୁଞ୍ଜରେ ଦୁଇଗୋଟି ସାଧୁ ପରମ ସୁଖରେ ବାସ କରୁଅଛନ୍ତି । ସାଂସାରିକ ସର୍ବପ୍ରକାର ବିଷୟରେ ସମ୍ପର୍କଶୂନ୍ୟ, ଦିବା ନିଶି ମୁଖରେ ଇଷ୍ଟଦେବ ନାମ ଭଜନ, ମନ ମଧ୍ୟରେ ପ୍ରଭୁଙ୍କ ଧ୍ୟାନ । ପ୍ରତିଦିନ ପ୍ରାତଃକାଳରେ ସମସ୍ତ ଦେବତାଙ୍କ ଦର୍ଶନ ଉତ୍ତାରେ କୁଞ୍ଜରୁ ବାହାରିବା ସମୟରେ କେବଳ ସାତଗୋଟି ଗୃହରୁ ଯେତିକିମାତ୍ର ମାଧୁକରୀ ଭିକ୍ଷା ଲାଭ ହୁଏ, ତେତିକି ହିଁ ସାୟାହ୍ନରେ ହବିଷ୍ୟାନ୍ନ, ରାତିରେ ଭାଗବତ ଏବଂ ଗୀତା ପାଠ । ଏହା ଛଡ଼ା ଅନ୍ୟ ପ୍ରସଙ୍ଗ ନାହିଁ ।

ଊଣା ଅଧିକ ଦୁଇ ବର୍ଷ ହେଲା ଅଭ୍ୟାଗତ ଗୋଟିଏ କାହୁଁ ଆସି କୁଞ୍ଜରେ ଖଟୁଛି । ଲୋକଟି ପୃଷ୍ଟ ପୁବକ, ସବାବାଲରଖା, ମୁଣ୍ଡରେ ନୁଖୁରା ବାଳ-ଗୁଡ଼ାକ ଫର ଫର ହୋଇ ଉଡ଼ୁଛି, ଗେରୁଆ ବସନ-ଧାରୀ ବୈଷ୍ଣବ ବେଶ । ଅଭ୍ୟାଗତଟି କିଏ, ଉଦ୍ଦେଶ୍ୟ କଣ, କିଛି ଜଣା ନାହିଁ । ବ୍ରାହ୍ମମୁହୂର୍ତ୍ତରେ ବୈରାଗୀ-ମାନେ ଯମୁନାକୁ ସ୍ନାନ ନିମନ୍ତେ ବାହାରି ଗଲେ ଲୋକଟି କାହୁଁ ଆସି କୁଞ୍ଜ ଚତୁର୍ଦ୍ଦିଗ ଝରକା ଝରକା ଏବଂ କୁଞ୍ଜ ଘରରେ ଗୋବରପାଣିରେ ଲିପାପୋଛା କରିଦିଏ ଏବଂ ଯମୁନାରୁ ମାଠିଆଏ ଜଳ ଆଣି କୁଞ୍ଜ ମଧ୍ୟରେ ଥୋଇ ଦେଇ ସାଧୁମାନଙ୍କ ବାହୁଡ଼ିବା ଆଗରୁ ଚାଲି ଯାଇଥାଏ । କଦାଚିତ୍ ବୈରାଗୀମାନଙ୍କ ସହିତ ଭେଟ ହୋଇଗଲେ ଦଣ୍ଡପ୍ରଣାମ ଏବଂ ଉଭୟଙ୍କ ପଦରେଣୁ ମୁଣ୍ଡରେ ଲଗାଇ ଚଞ୍ଚଳ ମୁହଁ ଫେରାଇ ଚାଲିଯାଏ । ବୈରାଗୀମାନେ ମୁହଁ ଚାହାଁଚାହିଁ ହୋଇ ରହନ୍ତି । ବୃନ୍ଦାବନ ଧାମରେ ଥୋକେ ସେବକ ଅଛନ୍ତି, ସେମାନେ ଅଡ଼ାକବାରେ ଆସି ସାଧୁମାନଙ୍କର ସେବା କରିଥାନ୍ତି । ବୈରାଗୀ ଦୁହେଁ ଆପଣା ଆପଣା ମନରେ ବିଚାରିଲେ, ଲୋକଟି ସେହିପରି ଜଣେ ବୈଷ୍ଣବ ସେବକ ହେବ ପରା । ପୁଣି ଦୁଇଜଣଯାକ ମନରେ ବିଚାର କଲେ, ଏପରି ରୂପର ଗୋଟିଏ ମନୁଷ୍ୟ ଯେମନ୍ତ କେଉଁଠାରେ ଦେଖିଛନ୍ତି । ହେଲେ ଆପଣା ଆପଣା ମନର କଥା କେହି କାହାରିକୁ ଫିଟାଇ କହିଲେ ନାହିଁ । ବୈରାଗୀମାନେ ଇଷ୍ଟଦେବତା ଭଜନ ବିନା ବିଶେଷ ପ୍ରୟୋଜନ ବିନା ଅକାରଣ କାହାରି ସହିତ କିଛି କଥାଭାଷା କରନ୍ତି ନାହିଁ; ଏଥିକୁ ପରମେଶ୍ୱରକଟି ଡେରିଅରି ହାବୁଡ଼ରେ ପଡ଼ିଗଲେ ମଧ୍ୟ ତାହାକୁ କିଛି କଥା ପଚାରି ନାହାନ୍ତି; ତେଣୁ ସେ ଲୋକଟି ଅଜଣା-ରୂପେ ରହି ଯାଇଛି । ଲୋକଟି ଅକାରଣ ଏତେ ସେବା କରୁ, ବୈରାଗୀମାନଙ୍କର ଏହା ଇଚ୍ଛା ନୁହେ । ହାତ ଠାରି ଅନେକ ଥର କର୍ମ କରିବାକୁ ନିଷେଧ କଲେ ମଧ୍ୟ, ଲୋକଟି ବୁଝି ନ ବୁଝିଲା ପରି ଚାଲିଯାଏ, ପାଖରେ ରହେ ନାହିଁ ।

---

-୪୨-

ଭାଦ୍ର କୃଷ୍ଣାଷ୍ଟମୀ । ଆଜ ମହାପ୍ରଭୁଙ୍କ ଜନ୍ମତିଥି ଉପଲକ୍ଷରେ ବ୍ରଜଧାମର ପ୍ରତ୍ୟେକ ଦେବାଳୟରେ ଭାରି ମହୋତ୍ସବ ଲାଗିଛି । ବୃନ୍ଦାବନବାସୀ ପ୍ରତ୍ୟେକ ଗୃହସ୍ଥଙ୍କ ଘରେ ପୂଜା ଅର୍ଚ୍ଚନା ଏବଂ ଉତ୍ସବର ଆୟୋ-ଜନ । ନାନା ଦେଶରୁ ନବାଗତ ବିବିଧ ଶ୍ରେଣୀର ବୈଷ୍ଣବ ସମ୍ପ୍ରଦାୟ ଏବଂ ନାନାଶ୍ରେଣୀର ଗୃହସ୍ଥ ଯାତ୍ରୀଦଳଙ୍କ ଉପସ୍ଥିତି ଯୋଗୁ ବୃନ୍ଦାବନଧାମ ବର୍ତ୍ତମାନ ଲୋକଗହଳରେ ପରିପୂର୍ଣ୍ଣ । ଭକ୍ତବୃନ୍ଦ ଦେବଦର୍ଶନ ନିମନ୍ତେ ସହଜରେ ମନ୍ଦିର ମଧ୍ୟକୁ ପଶି ପାରୁ ନାହାନ୍ତି । ଆଜ ସକାଳୁ ସଞ୍ଜଯାଏଁ ଦିନଟାଯାକ ମେଘୁଆ ପାଗ ଧରିଥିଲା । ଏଥି ମଧ୍ୟରେ ଟପର ଟପର, ଝପର ଝପର, ସୁ ସୁ କରି ଭିନ ଭିନ ଅସରା ପାଣି ବରଷି ଗଲାଣି । ସଞ୍ଜବେଳୁଁ ନିହାତି ଘିଟିଘିଟିଆ ଅନ୍ଧାରଟା ପୃଥିବୀ ଘୋଡ଼ାଇ ପକାଇଛି । ବେଳେ ବେଳେ ଟିକିଏ ଟିକିଏ ବିଜୁଳି ଚମକ ଯିବାରୁ ବାଟୋଇମାନେ ଆପଣା ଆପଣା ଯିବା ଜାଗା ଆଡ଼କୁ ଚଞ୍ଚଳ ଚାଲି ଯାଉଛନ୍ତି ।

ମହାପ୍ରଭୁଙ୍କ ଜନ୍ମ ସମୟ ଅର୍ଦ୍ଧରାତ୍ରି; ମାତ୍ର ରାତି ପହରେକ ବେଳୁଁ ମନ୍ଦିରମାନଙ୍କରେ, ସମସ୍ତ କୁଞ୍ଜରେ, ପୁଣି ଗୃହସ୍ଥମାନଙ୍କ ଘରେ ପୂଜା ଅର୍ଚ୍ଚନା ଏବଂ ଭାଗବତ ପାଠ ଆରମ୍ଭ ହୋଇଗଲାଣି ।

ଆମ୍ଭମାନଙ୍କ ପରିଚିତ କୁଞ୍ଜରେ ବୈରାଗୀ ଦୁହେଁ ଦୁଇ ଖଣ୍ଡ ଆସନରେ ବସିଛନ୍ତି । ଆଗରେ ଥିବା ଖଣ୍ଡିଏ ପୀଢ଼ା ପଟା ଉପରେ ଥୁଆ ମହାପୁରାଣ ଭାଗବତ ଦଶମସ୍କନ୍ଧ ଗ୍ରନ୍ଥ ପୁଷ୍ପଚନ୍ଦନ ମଣ୍ଡିତ । ଗ୍ରନ୍ଥ ଗୋସାଇଁଙ୍କ ସମ୍ମୁଖରେ ନାନାପ୍ରକାର ଫଳମୂଳ ଏବଂ ମିଷ୍ଟାନ୍ନ

ଅମଣିଆ ବଡ଼ା । ଆଜ ବୃନ୍ଦାବନ ଧାମରେ ଭିକ୍ଷାର ଅଭାବ ନାହିଁ । ଧନବନ୍ତ ଯାତ୍ରୀ ଏବଂ ବଡ଼ଲୋକ ଗୃହସ୍ଥମାନେ ଆଜକାଲି ଦେବସେବା ଆଉ ଉପବାସୀ ବୈଷ୍ଣବମାନଙ୍କ ପାରଣା ନିମନ୍ତେ ନାନାପ୍ରକାର ମିଷ୍ଟାନ୍ନ ଏବଂ ଫଳମୂଳ ବିତରଣ କରୁଛନ୍ତି । ବିଶେଷ ଲୋକଗହଳ ଯୋଗୁଁ କମ୍ବା ବିଶେଷ ପ୍ରୟୋଜନ ନ ଥିବାରୁ ହେଉ ଆମ୍ଭମାନଙ୍କ ବୈରାଗୀମାନେ ମାଧୁକରୀ ଭିକ୍ଷାକୁ ବାହାରି ନାହାନ୍ତି । ହେଲେ ତୀର୍ଥଯାତ୍ରୀ ରାଜା ଏବଂ ଧନବନ୍ତ ଲୋକେ କୁଞ୍ଜମାନ ଖୋଜି ଖୋଜି ଉପବାସୀ ବୈଷ୍ଣବମାନଙ୍କ ନିକଟରେ ପାରଣା ଦ୍ରବ୍ୟମାନ ପଠାଇ ଦେଉଛନ୍ତି । ସେଥିପାଇଁ ବୈରାଗୀମାନଙ୍କ କୁଞ୍ଜ କୁଟୀର ମଧ୍ୟରେ ଅମଣିଆ ଦ୍ରବ୍ୟ ପରିପୂର୍ଣ୍ଣ ।

ପାଠକମାନଙ୍କୁ ଚିହ୍ନାଇ ଦେବା ନିମନ୍ତେ ଆମ୍ଭେ-ମାନେ କୁଞ୍ଜାଧିକାରୀ ବାବାଜୀଙ୍କୁ ବଡ଼ ବୈରାଗୀ ଏବଂ ନବାଗତ ବାବାଜୀଙ୍କୁ ସାନ ବୈରାଗୀ ବୋଲି ଉଲ୍ଲେଖ କରିବୁଁ ।

ସାନ ବୈରାଗୀ ଦଶମସ୍କନ୍ଧ ମହାଗ୍ରନ୍ଥରୁ ଖେଦାଏ ପାଠ ଧରି ପଢ଼ିବାରେ ନିଯୁକ୍ତ । ବଡ଼ ବୈରାଗୀ ଆଖି ବୁଜି ହାତ ଯୋଡ଼ି ବସି ନିଶ୍ଚଳ ମନରେ ଶ୍ରବଣ କରୁଛନ୍ତି । ପାଠ ଚାଲିଛି—

"ବୃଷ ରାଶିରେ ନିଶାକର ।
ନକ୍ଷତ୍ରଗଣେ ବଳୀଯ୍ୟାର ।"

ଠିକ୍ ଏହି ସମୟରେ ବାହାର ପଟରୁ କିଏ କବାଟରେ ହାତ ମାରି ବିକଳରେ ଡାକିଲା, "ରକ୍ଷା କର, ବଡ଼ ବିପଦରେ ପଡ଼ିଛି, ଜୀବନ ଯାଉଛି, ରକ୍ଷା କର।" ପୁସ୍ତକ ପାଠ ବନ୍ଦ ହୋଇଗଲା । ବୈରାଗୀମାନେ ଦୁଆରଆଡ଼କୁ ଅନାଇଲେ । ପୁଣି ସେହିପରି ବିକଳ ଡାକ ।

ବଡ଼ ବୈରାଗୀ ଚଞ୍ଚଳରେ କହିଲେ, "ସଙ୍କର ଭାଇ ! ଅତିଥି ବିପଦରେ ପଡ଼ିଛନ୍ତି, ବେଗି କବାଟ ଫିଟାଇଦିଅ । ଆମ୍ଭମାନଙ୍କର ବଡ଼ ସୌଭାଗ୍ୟ କଥା, ଉପଯୁକ୍ତ ବେଳରେ ଅତିଥିଙ୍କ ପଦଧୂଳି ଦୁଆରେ ପଡ଼ିଲା ।" କବାଟ ମେଲିଇ ଦିଆଗଲା । ଡାକବାଲା ଅତିଥି ଧୀରେ ଧୀରେ କୁଟୀର ମଧ୍ୟକୁ ପ୍ରବେଶ କଲେ । ବୈରାଗୀ ଦୁହେଁ ଏକ ଧ୍ୟାନରେ ଅତିଥିଙ୍କୁ ଚାହିଁ ରହିଛନ୍ତି । ଅତିଥି ପୂର୍ବ ଯୁବକ, କ୍ଷୀଣ ଶରୀର, ଛିନ୍ନ ମଳିନ ବସ୍ତ୍ର ପରିଧାନ—ଦକ୍ଷିଣ ହସ୍ତରେ କମଣ୍ଡଳୁ, ବାମ ହସ୍ତରେ ଦଣ୍ଡ । ମସ୍ତକର କେଶ ଅଯତ୍ନ ଯୋଗୁ ଜଟିଳ । ବୟସ ଅନୁକ୍ରମରେ ଦାଢ଼ୀ ନିଶ । ହସ୍ତ ଅଙ୍ଗୁଳିମାନଙ୍କରେ ଦୁଇ ଦୁଇ ଅଙ୍ଗୁଳି ପ୍ରମାଣ ନଖ ବାଳ ବଢ଼ିଯାଇଛି । କାନ୍ଧରେ ଖଣ୍ଡିଏ ଛିଣ୍ଡା କମ୍ବଳ । ଅଳ୍ପ କାଳ ପୂର୍ବେ ଅନୁମାନ ହୁଏ ଅତିଥି ବାଟରେ ଭିଜୁଥିଲେ । ମସ୍ତକର ଜଟାଳିଆ କେଶ ଏବଂ କମ୍ବଳରୁ ଟୋପା ଟୋପା ଜଳ ନିଗିଡ଼ି ପଡ଼ୁଛି । ଦେହ-ଗୋଟାକ କାଦୁଅ ଏବଂ ପାଣିରେ ସରପଟ ହୋଇ ଯାଇଛି । ଅତିଥି ମଧ୍ୟ ବୈରାଗୀମାନଙ୍କ ମୁଖକୁ ଅନାଇ ପବନ ଲାଗି ବରଡ଼ାପତ୍ର ପରି ଥରି ଯାଉଛନ୍ତି । ବଡ଼ ବୈରାଗୀ "କହିଲେ, ସଙ୍କର ଭାଇ ! ଅତିଥି ବାଟରେ ଭିଜିଯାଇ ବଡ଼ କଷ୍ଟରେ ପଡ଼ିଛନ୍ତି । ପାଦ ଧୋଇବାପାଇଁ ଜଳ ଆଣିଦିଅ । ଖଣ୍ଡିଏ ବହିର୍ବାସ ଆଣିଦିଅ, ଭିଜା ଲୁଗା ପାଲଟି ପକାଉନ୍ତୁ ।" ତାହାଁଉତ୍ତାରେ ଚିର ଅଭ୍ୟାସ ଅନୁସାରେ 'ଗୋବିନ୍ଦ, ଗୋବିନ୍ଦ' ଭଜନ କରିବାକୁ ଲାଗିଲେ ।

କଟାମୂଳ ଗଛ ପରି ଅତିଥି ଧଡ଼ାସ୍ କରି ବୈରାଗୀ-ମାନଙ୍କ ଗୋଡ଼ତଳେ ପଡ଼ିଯାଇ କାତର ଭାବରେ କହିଲେ, "ଆଜ୍ଞା, ଆଜ୍ଞା, ବାପା ସାଧୁମାନେ ମୁଁ ଅପରିମାନଙ୍କ ସେହି ଅଧମ ଦୁରାଚାରୀ, ପାପିଷ୍ଠ ପୂର୍ବ ଗୋବିନ୍ଦ ।" ବୈରାଗୀ ଦୁହେଁଯାକ ତକ୍ଷଣେ ଅତିଥିକୁ ଚିହ୍ନି ପକାଇଲେ । ବଡ଼ ବୈରାଗୀ ଧୀର, ଗମ୍ଭୀର,

ନିଶ୍ଚଳଭାବରେ ବସି ଅତିଥିଙ୍କୁ ଚାହିଁ ରହିଛନ୍ତି । ଦୁଇ ଟୋପା ଲୋତକ ଆଖିରେ ଟଳ ଟଳ କରୁଛି । ସାନ ବୈରାଗୀ ଚଞ୍ଚଳ ଉଠିପଡ଼ି ଅତିଥିଙ୍କୁ କୁଣ୍ଢାଇ ପକାଇ "ଆରେ ମୋ ବାପାରେ ! ଆରେ ମୋ ଗୋବିନ୍ଦ ରେ" କହି କହି ଖଣ୍ଡିଏ ଗାମୁଛାରେ ଦେହ ପୋଛି ପକାଉଥାନ୍ତି । ବଡ଼ ବୈରାଗୀ ଡାକ ଦେଲେ, "ସଙ୍କର ଭାଇ ! ଗୋବିନ୍ଦକୁ ନେଇଯାଇ ଯମୁନା ଭୁଠ ଦେଖାଇ ଦିଅ, ଗୋଡ଼ ହାତ ଧୂଆଧୋଇ କରି ଆସୁ । କୁଞ୍ଜ ମଧ୍ୟରେ ମାଠିଆଏ ଜଳ ଥୁଆ, ବାବାଜୀମାନେ ସ୍ପର୍ଶ କରିଛନ୍ତି, ଗୋବିନ୍ଦ ଗୋଡ଼ରେ ପଡ଼ିବ ନାହିଁ ।"

ଗୋବିନ୍ଦ ଯମୁନାରୁ ସ୍ନାନ କରି ଆସି ଦୁଇ ଖଣ୍ଡ ଶୁଖିଲା ଲୁଗା ପିନ୍ଧିଲେ । ଇତ୍ୟବସରରେ ସାନ ବୈରାଗୀ ଚୁଲିରେ ନିଆଁ ଜାଳି ଦେଲେଣି । ଗୋବିନ୍ଦ ନିଆଁ ପୁହିଁ ଟିକିଏ ସାଷ୍ଟମ ହେଲେ ।

ପୁନର୍ବାର ପୁରାଣ ପାଠ ଆରମ୍ଭ । ମହାପ୍ରଭୁ ଜନ୍ମଗ୍ରହଣ ଉତ୍ତାରେ ବସୁଦେବଙ୍କ କାନ୍ଧରେ ବିଜେ କରି ନନ୍ଦଙ୍କ ଗୃହକୁ ବିଜେ ହେଲା ଉତ୍ତାରେ ଅଧା ପାଠ ଶେଷ ହେଲା । ଭାଗବତ ଗୋସାଇଁଙ୍କ ଅର୍ଚ୍ଚନା ଉତ୍ତାରେ ଭକ୍ତ ତିନି ଜଣ ପ୍ରସାଦ ସେବା କରି ଶୟନ କଲେ ।

———

—୬ଗ—

## ପରିଚୟ

ରୋଜନା ସକାଳ ପରି ବ୍ରାହ୍ମମୁହୂର୍ତ୍ତରେ ବୈରାଗୀ ଦୁହେଁ ଇଷ୍ଟଦେବତାଙ୍କ ପବିତ୍ର ନାମ ଭଜନ କରି କରି ଦୁଇଗୋଟି କମଣ୍ଡଳୁ ଧରି ଯମୁନାସ୍ନାନକୁ ବାହାରିଗଲେ । ଅଭ୍ୟାଗତଙ୍କ ନିଦ ଏଯାଏଁ ଭାଙ୍ଗି ନାହିଁ । ଗତ କାଲି ଦିନଯାକ ପାଣିରେ ଭିଜି ଦାଣ୍ଡେ ଦାଣ୍ଡେ ବୁଲି ବଡ଼ ଥକା ପଡ଼ିଥିଲେ, ସେଥିପାଇଁ ଏ ଯାଏ ଶୋଇ ପଡ଼ିଛନ୍ତି । ଦିନ ଅନୁମାନ ଦଣ୍ଡକ ବେଳେ ବ୍ରଜଦାସ ଆସି କୁଞ୍ଜ-କୁଟୀର ଦ୍ୱାର ପାଖରେ ଉପସ୍ଥିତ । ରୋଜନା ଅଭ୍ୟସ୍ତ-ରୂପେ ଗୋଟିଏ ଗୁଞ୍ଜୁଣୀ ଧରି ଓଳେଇ ଦେଉଛି । ଠିକ୍ ସେତିକବେଳେ, "ପ୍ରଭୁ ଦୟାମୟ—ପ୍ରଭୁ ଦୟାମୟ ! କ୍ଷମା କର, ରକ୍ଷା କର ।" ଗୋଟିଏ ଶବ୍ଦ ଶୁଭିଲା । ବ୍ରଜଦାସ ଅନନ୍ୟମନରେ ଆପଣା କାମରେ ଲାଗିଥିଲା, ଶବ୍ଦ ଶୁଣି ଚମକି ପଡ଼ି ଛିଡ଼ା ହୋଇଗଲା । ଶବ୍ଦଟି ଯେମନ୍ତ ତାହାର ଜଣାଶୁଣା । ବ୍ରଜଦାସ ଆପଣା କାମରେ ଲାଗିଥିବା ଯୋଗୁଁ ଶବ୍ଦଟି କେଉଁ ଦିଗରୁ ଆସିଲା, ଜାଣି ନ ପାରି ଥାଟକା ହୋଇ ଛିଡ଼ା ହୋଇ ଏଣିକି ତେଣିକି ଅନାଉଛି । ଧୀରେ ଧୀରେ କୁଟୀର ଦ୍ୱାରଟା ମେଲିଗଲା, ଗୋଟିଏ ଭେଣ୍ଡିଆ ବୈରାଗୀ ଭିତରୁ ବାହାରି ଆସି ମେଲାରେ ଛିଡ଼ା ହେଲାକ୍ଷଣି ବ୍ରଜଦାସ ତାଙ୍କ ଗୋଡ଼ତଳେ ପଡ଼ି ଭୋ କରି ରଡ଼ିଟାଏ ଛାଡ଼ିଲା । ବୈରାଗୀଙ୍କ ଗୋଡ଼ ଯୋଡ଼ିକ ଆଣ୍ଠେଇ ଧରିଥାଏ । 'ହାଁ, ହାଁ, ଗୋଡ଼ ଛାଡ଼, ଗୋଡ଼ ଛାଡ଼' କହି ବୈରାଗୀ ଲୋକଟିକୁ ଭଲ କରି ଅନାଇଲେ । ଚଞ୍ଚଳ ହାତ ଧରି ଉଠାଇ ପଚାରିଲେ, "କିଏ ରେ ? ସଇତା ! ତୁ ଏଠାକୁ କାହୁଁ, କେବେ ଆଇଲୁ ?" ଆଜକୁ ପାଞ୍ଚ ବରଷରୁ ଅଧିକ କାଳ ଛଡ଼ାଛଡ଼ି । ହେଲେ ଦେଖିଲାକ୍ଷଣି ଏକକୁ ଆରେକ ଚିହ୍ନାଚିହ୍ନି ହୋଇଗଲେ । ବୈରାଗୀ ଦୁଇ ତିନି ଥର ପଚାରିଲେଣି, ହେଲେ ସଇତାର ଏମନ୍ତ ଗୋଟାଏ କୋହ ଉଠିଛି ଯେ ଧକେଇ ଯାଉଛି; ମନ କଲେ ମଧ୍ୟ ଉତ୍ତର ଦେଇ ପାରୁ ନାହିଁ । ମାତ୍ର ବୈରାଗୀ ଧୀର ଗମ୍ଭୀରଭାବରେ ଛିଡ଼ା ହୋଇଛନ୍ତି । ଚିତ୍ତଚାଞ୍ଚଲ୍ୟର କଷ୍ଟ ହେଲେ ଚିହ୍ନ ଜଣା ଯାଉ ନାହିଁ । ଦଣ୍ଡକ ଉତ୍ତାରେ ବୈରାଗୀ ବସିପଡ଼ି ସଇତାକୁ ପାଖରେ ବସାଇଲେ । ପୁଣି ପଚାରିଲେ, "ବୋଇଲୁ ସଇତା ! ତୁ ଏଠାକୁ କିପରି ଆଇଲୁ ? ଏତେକାଳ କେଉଁଠାରେ, କିପରି ଥିଲୁ ? ତୋ ମା ଭଲ ଅଛି ତ ?" ସଇତା

ଟିକଏ ସାଷ୍ଟମ ହୋଇ ଧୀରେ ଧୀରେ ବୋଲିବାକୁ ଲଗିଲ—

"ଆଜ୍ଞା ! ପ୍ରଥମରେ ମୁଁ ଘରଠାରୁ ବାହୁଡ଼ ଆସି ଶ୍ରୀଗୁରୁଙ୍କ ଦର୍ଶନ ପାଇଲି ନାହିଁ । ତିନି ଗୁରି ଦିନଯାଏ କଟକ ଗୋଟାଯାକ ଅଣ୍ଡାଳ ପକାଇଲି, କିନ୍ତୁ ସନ୍ଧାନ ପାଇଲି ନାହିଁ । ଜଣା ଅଜଣା ଢେର ଲୋକଙ୍କୁ ବି ପଚାରି ଗଲି । ଆସପାଖ ସବୁ ଜଣା ଶୁଣା ଜାଗା, ପୁରୀକ୍ଷେତ୍ର, ଭୁବନେଶ୍ୱର, ଖଣ୍ଡଗିରି, ଉଦୟଗିରି, ଲଳିତଗିରି ସବୁ ଜାଗାରେ ଖୋଜି ପୁଣି ଘରକୁ ବାହୁଡ଼ ଗଲି । ମୋ ମା ମା ମଣିମାଙ୍କ ବିଯୋଗ କଥା ଶୁଣି ଦିନରାତି ବସି କାନ୍ଦୁଥିଲା । ତହିଁ ଉତ୍ତାରେ ଗୁରୁଙ୍କ ଅଦର୍ଶନ ବାର୍ତ୍ତା ପାଇବାକ୍ଷଣି ଯେ ବିଛଣା ଧରିଲା, ଆଉ ଉଠି ନାହିଁ । ଗୁରୁ ତାକୁ ଯେଉଁ ନୋଟଗୁଡ଼ିକ ଦେଇ ଆଜ୍ଞା ହୋଇଥିଲେ, ସେଗୁଡ଼ିକ ବଦଳାଇ ଟଙ୍କା କରି ଦେଇଥିଲି । ଟଙ୍କା ବୁଜୁଲାଟି ମୁଣ୍ଡତଳେ ଦେଇ ଶ୍ରୀଗୁରୁଙ୍କ ଦର୍ଶନ ଆଉ ମଙ୍ଗଳପାଇଁ ଦିନ ରାତି ଠାକୁର ଦେବତା ନାମରେ ମନାସୁଥାଏ । ଯେତେବେଳେ ବାଧିକାଟା ନିହାତି ବଳି ପଡ଼ିଲା, ମୋ ହାତକୁ ସେ ବୁଜୁଲାଟି ବଢ଼ାଇ ଦେଇ କହିଲା, 'କୁଅଁର ବାବୁଙ୍କ ଶ୍ରୀଅଙ୍ଗ କୁଶଳପାଇଁ ସବୁ ଠାକୁର ଦେବତଙ୍କ ଭୋଗ ଲଗା, ବୈଷ୍ଣବ ଗୋସାଇଁଙ୍କୁ ଡାକି ଛାଦା କରିଦେ ।' ଦିନକୁ ଦିନ ବୁଢ଼ୀର ବାଧିକା ବଢ଼ିବାକୁ ଲଗିଲା । ଯୋଡ଼ାଏ ବୈଦ ଲଗାଇ ଥିଲି, କିନ୍ତୁ ଫଳ ହେଲା ନାହିଁ । ଶେଷକୁ କଣ ହେଲା କି, ଔଷଧ ଦେଲେ ମା ମୁଣ୍ଡରେ ଛୁଆଇଁ ତଳେ ଥୋଇ ଦିଏ, ଖାଏ ନାହିଁ । ଆଠ ଦଶ ମାସଯାଏଁ ପାଖରେ ବସି ସେବା କରୁଥାଏ, କାର୍ତ୍ତିକ ବଡ଼ ଏକାଦଶୀ ଦିନ ସକାଳେ ତାହାଙ୍କ ସମସ୍ତ ହୋଇଗଲା ।"

ଗୋବିନ୍ଦଚନ୍ଦ୍ର—"ଠିକ୍ କାର୍ଯ୍ୟ କରିଛୁ, ତୋହର ଯାହା କରିବାର କରିଛୁ । କାହିଁକି ନ କରନ୍ତୁ ? ମୋ ପରି ମାତୃଘାତୀ କେତେ ଜଣ ବା ପୃଥିବୀରେ ଅଛନ୍ତି ?" ବୈରାଗୀ ନିଃଶ୍ୱାସଟାଏ ପକାଇ ତୁନି ହୋଇ ବସିଲେ । ତାହାଙ୍କ ଦୁଇ ଆଖିଡୋଳାରେ ଦୁଇ ବିନ୍ଦୁ ଲୋତକ ଢଳ ଢଳ କରୁଥାଏ । ସଇତା ବୈରାଗୀଙ୍କ ମନକଥା ବୁଝି ପାରି, ଚଞ୍ଚଳ ଆଉ କଥା ପକାଇଲା—

"ମୁଁ ବୁଢ଼ୀର ଶୁଦ୍ଧି କାର୍ଯ୍ୟ ସାରି ଘରେ ବସିଛି ସେତିକିବେଳେ ଭାରି ଗୋଟାଏ ଘଟଣା ଶୁଣି କଟକ ଧାଇଁ ଆସିଲି । ବଡ ସାନ୍ତ ରତନପୁର ଭେଣ୍ଡିଆ ଜମିଦାର ପାଖରେ ନାଏବ ଥିଲେ । ଢେରଗୁଡ଼ାଏ ଟଙ୍କା ପଡ଼ି ଗୋଳମାଳ କରିଦେଲେ । ତହବିଲ ତୋଷରଫ ଦୋଷ ପ୍ରମାଣ ହେବାରୁ ତାଙ୍କର ଦୁଇ ବରଷ ମିଆଦ ହୋଇଗଲା ।

ମୋତେ ତେତେବେଳେ ଦଶ ଦିଗ ଅନ୍ଧାର ଦିଶିଲା । ଗୁରୁଙ୍କୁ ଖୋଜିବାପାଇଁ ବାହାରି ପଡ଼ିଲି । ସେତୁବନ୍ଧ ରାମେଶ୍ୱର, ହରିଦ୍ୱାର, ଆଉ ଆଉ ଢେର ସ୍ଥାନରେ ତିନି ବରଷ ହେଲା ବୁଲୁଛି; କାହିଁ ସନ୍ଧାନ ପାଇଲି ନାହିଁ । ଆଜକୁ ଦଶ ମାସ ତଳେ କାଶୀ ମଣିକର୍ଣ୍ଣିକା ଘାଟ ପାଖରେ ଦିନେ ସକାଳେ ବୁଲୁଛି, ଗଙ୍ଗାକୂଳରେ ଟିକିଏ ଗୋଳମାଳ ଶୁଣି ଅନାଇଲି, ଯୋଡ଼ାଏ ପଠାଣ ନାଉରି ଗୋଟିଏ ସନ୍ନ୍ୟାସୀଙ୍କୁ ଧରି ଟଣା ଓଟରା ଲଗାଇଛନ୍ତି । ଥୋକେ ଯାତ୍ରୀ ରାଜଘାଟ ପାଖରୁ ପଡ଼ି ଖଣ୍ଡିଏ ନାଆ ଭଡ଼ା କରି ମଣିକର୍ଣ୍ଣିକା ଘାଟଯାଏ ଆସିଥିଲେ । ଯାତ୍ରୀମାନେ ନାଉରୀଙ୍କି ଆପଣା ଆପଣା ଭଡ଼ା ପଇସା ଦେଇ ଗ୍ଲଲଗଲେ । ସନ୍ନ୍ୟାସୀ ହାତରେ ପଇସା ନ ଥିଲା, ନାଉରୀମାନଙ୍କୁ କହିଲେ, 'ଆରେ ବାବା ! ମୁଁ ସନ୍ନ୍ୟାସୀ, ପଇସା କାହୁଁ ପାଇବି ?" ଜଣେ ନାଉରୀ ଖପା ହୋଇ ସନ୍ନ୍ୟାସୀଙ୍କୁ ଧକାଏ ମାରିଲା, କହିଲା, 'ଶାଲ୍ ଜୁଆଚ୍ଚୋର ! ତେରା ବାପ୍‌କା

ନାଉ—ତୁରନ୍ତ ଚତୁର୍ବେଦୀ—ଜୟ୍ ଶିବ ବୋଲ ନେହିଁ ? ତାର୍ ଶାଲା ପଇସା ।' ଆଉ ଗୋଟାଏ ଟାଣ ଧକା ମାରିବାରୁ ସନ୍ନ୍ୟାସୀ 'ବାବା ରେ' କହି ଆଣ୍ଠେଇ ପଡ଼ିଲେ । ମୋତେ ବଡ଼ ବିକଳ ଲାଗିଲା । ମୋ ଅଣ୍ଟାରେ ପଇସା ଥିଲା, ଅଣାଏ ପଇସା ଧରି ପାଖକୁ ଧାଇଁଗଲି । ଦେଖିଲି ସନ୍ନ୍ୟାସୀଟି ଅଳ୍ପ ବୟସ, ମୁଣ୍ଡରେ ଜଟା, ଦେହଯାକ ବିଭୂତି ଲେପା, ପିନ୍ଧା ଖଣ୍ଡିଏ ସାନ ଗେରୁଆ ଲୁଗା, ଖାଇବ ହାତରେ ଗୋଟିଏ କାଠର କମଣ୍ଡଳୁ, ଡେବରି କାଖରେ ଛିଣ୍ଡା କନାବନ୍ଧା ଗୋଟିଏ ସାନ ପୁଟୁଳି । ମୋ ମନ କମିତିକା ଛିଟିକେଇଲା, ଭଲ କରି ଅନାଇଲି । ସନ୍ନ୍ୟାସୀ ବି ମୋତେ ଭଲ କରି ଅନାଇ କହିଲେ, 'କିଏ ରେ ସଇତା !' ନାଉଣୀକୁ ଅଣାଏ ପଇସା ଦେଇ ବିଦା କରିଦେଇ ସନ୍ନ୍ୟାସୀଙ୍କ ଗୋଡ଼ତଳେ ପଡ଼ିଗଲି । ବଡ଼ ସାଆନ୍ତଙ୍କର ଆଉ ସେ ବେଶ ନାହିଁ, ଛାତିରେ ପଞ୍ଜରା ଗଣି ହେଉଛି । ଭିଖାରୀ ବେଶ, ଆଗ ପରି ଟାଣ କଥା ନାହିଁ, ଗଣ୍ ଗଣ୍ କରି ଧୀରେ ଧୀରେ କଥା କହୁଛନ୍ତି ।

ମୁଁ ପଚାରିବାରେ ବଡ଼ ସାନ୍ତ କହିଲେ, ଆଉ କାହିଁ ଯିବି ରେ ? ତୋହରି ଆଗରେ ସବୁ କଥା କଣ କହିବି, କଣ ନ ଜାଣୁ ? ମୋହରି ପାପରୁ ରଜାପରି ଯୋଡ଼ାଏ ବଂଶ ଲଣ୍ଡଭଣ୍ଡ ହୋଇଗଲେ । ପିଉସୀ ସାନ୍ତାଣୀ ଆଉ ମୋ ମା'ଙ୍କୁ ନିଜ ହାତରେ ହତ୍ୟା କରିଛି ବୋଲି । ମୋ ପାପର ପ୍ରାୟଶ୍ଚିତ୍ତ ନାହିଁ, ଏହିପରି ଭିକ ମାଗି ପୁଣ୍ୟସ୍ଥାନମାନଙ୍କରେ ବୁଲିବି, ଏହିଟା ମୋହରି ପ୍ରାୟଶ୍ଚିତ୍ତ । ପ୍ରଭୁ ଯାହା କରନ୍ତୁ ।"

ପୃଥିବୀର ସମସ୍ତ ସୁଖରୁ ବଞ୍ଚିତ ହେଲେ ଘୋର ପାପୀ ମନରେ ଚେତନା ପଶେ ।

"ବୁଢ଼ା ସାନ୍ତମାନେ ଏହି ଧାମରେ ବିଜେ ହୋଇ ଥିବାର ବଡ଼ ସାନ୍ତଙ୍କଠାରୁ ଶୁଣିଲି । ସେ କପରି ସନ୍ଧାନ ପାଇଥିଲେ । କୌଣସି ଦିନ ହେଲେ ଶ୍ରୀସ୍ୱାମୀ ଏଠାକୁ ବିଜେ ହେବେ, ଅନୁମାନ କରି ଚାହିଁ ବସିଥିଲି । ପ୍ରଭୁ ଭେଟାଇ ଦେଲେ ।"

— — —

## —୫୪—

## ଆଦେଶ

ଓପରି ଓଳି ତିନି ପହରିଆ ବେଳ । କୁଞ୍ଜ କୁଟୀର ଆଗ ଛାମୁଆ ମେଲାରେ ଆମ୍ଭମାନଙ୍କ ବୈରାଗୀ ଦୁହିଙ୍କ ଆଗରେ ଅଭ୍ୟାଗତ ଭେଣ୍ଡିଆ ବୈରାଗୀ ହାତ ଯୋଡ଼ି ମୁଣ୍ଡ ନୁଆଁଇ ବସିଛନ୍ତି । ବୈରାଗୀମାନଙ୍କ ପଛରେ ସଇତା ହାତ ଯୋଡ଼ି ଛିଡ଼ା ହୋଇଛି । ସମସ୍ତେ ତୁନି । ଆମ୍ଭମାନଙ୍କ ସାନ ବୈରାଗୀ ପଚାରିଲେ, "ଗୋବିନ୍ଦ ! ଏ ଭେଣ୍ଡିଆଟି କିଏ ?"

ଗୋବିନ୍ଦ—ଆଜ୍ଞା, ସଇତା ପରି ।

ବରଷେ କାଳ ହେଲା ସଇତା କୁଞ୍ଜରେ ପ୍ରତିଦିନ ପାଇଟି କରି ଯାଉଛି । ବୈରାଗୀମାନେ ଢେର ଢେର ଥର ତାକୁ ଭେଟିଲେଣି । ହେଲେ ତାହା ମୁହଁକୁ କେବେ ଅନାଇ ନାହାନ୍ତି । ବଡ଼ ବୈରାଗୀଙ୍କର ତ ଅଭ୍ୟାସ, ଦେବଦର୍ଶନ ବିନା ଆଉ କାହାକୁ ମୁଣ୍ଡ ଟେକି ଚାହାନ୍ତି ନାହିଁ, ବାଟରେ ମୁଣ୍ଡ ପୋତି ଚାଲିଯାନ୍ତି । ସାନ ବୈରାଗୀ ଅଇଲା ଦିନରୁ ତାହାଙ୍କ ସହିତ କେବଳ କେତେ ଥର କଥାଭାଷା ହୋଇଛି । ଆଜି କଥାଭାଷା ହେବାର ଲୋଡ଼ା ।

ବଡ଼ ବୈରାଗୀ କହିଲେ, "ଗୋବିନ୍ଦ ! ତୁମ୍ଭ ପ୍ରତି ଆମ୍ଭର ଯେତିକି କରିବାର ଥିଲା, କରି ସାରିଛୁଁ । ଏବେ ତୁମ୍ଭେ ସ୍ୱାଧୀନ, ଆପଣା ଇଚ୍ଛାକୁ ଚାହିଁ ବାଟ

ଧରି ଗଲା । ହେଲେ ଆମ୍ଭଙ୍କୁ ଯେମନ୍ତ ଜଣା ଯାଉଛି, ତୁମ୍ଭ ପ୍ରତି ପ୍ରଭୁଙ୍କ ଆଦେଶ ଅପୂର୍ଣ୍ଣ ରହି ଯାଇଛି ।”

ଗୋବିନ୍ଦଚନ୍ଦ୍ର ଦୁଇ ଜଣଙ୍କ ପାଦତଳେ ପଡ଼ି ହାତଯୋଡ଼ି ଜଣାଇଲେ, “ପିତଃ ! ଦେବତା ! ପରମ-ଗୁରୋ ! ଆପଣମାନେ ମୋହର ତୁଲ୍ୟ ପୂଜନୀୟ । ଉଭୟେ ଗୁରୁଦେବ, ଉପଦେଷ୍ଟା ଉପସ୍ଥିତ । ମୋହର ଧର୍ମଜ୍ଞାନ, କର୍ତ୍ତବ୍ୟବୁଦ୍ଧି କିଛି ମାତ୍ର ନାହିଁ, ବିଶେଷରେ ଆପଣମାନଙ୍କୁ ହରାଇ ସମସ୍ତ ହରାଇ ବସିଛି । ପ୍ରଭୋ ! ମୋହର ସମସ୍ତ ଅପରାଧ କ୍ଷମା କରି ଦୟା ପ୍ରକାଶ କରନ୍ତୁ । ମୋ ପକ୍ଷରେ ବର୍ତ୍ତମାନ କର୍ତ୍ତବ୍ୟ କଣ, ଆଜ୍ଞା ହେଉ ।”

ବଡ଼ ବୈରାଗୀ କହିଲେ, “ବାବା ଗୋବିନ୍ଦ ! ଭଲ କରି ମନରେ ହେଜ, ଧର୍ମର ଦୁଇ ଗୋଟି ଅଙ୍ଗ— ଈଶ୍ୱରଭଜନ, ଆଉ ଈଶ୍ୱରଙ୍କ ପ୍ରିୟକାର୍ଯ୍ୟ ସାଧନ । ଜଗଦ୍‌ବାସୀ ସମସ୍ତ ନରନାରୀ ଈଶ୍ୱରଙ୍କର ପୁତ୍ରକନ୍ୟା । ଏଥିକୁ ଜନସମାଜର ମଙ୍ଗଳକାମନାରେ ଏବଂ ସେମାନଙ୍କର ସୁଖ ଶାନ୍ତି ବର୍ଦ୍ଧନ ସକାଶେ ଆପଣାର ସମସ୍ତ ସାମର୍ଥ୍ୟ, ସମସ୍ତ ସଦିଚ୍ଛା ପ୍ରୟୋଗ କରିବା ପ୍ରଭୁଙ୍କର ପ୍ରିୟକାର୍ଯ୍ୟ ସାଧନ ଅଟେ । ପରମ କରୁଣାମୟ ପରମେଶ୍ୱର ଆମ୍ଭମାନଙ୍କ ମନରେ କେତେଗୁଡ଼ିଏ ସଦ୍‌ବୃତ୍ତି ପ୍ରଦାନପୂର୍ବକ ଯେମନ୍ତ ଆଦେଶ କରୁଅଛନ୍ତି, ‘ସଂସାରର ମଙ୍ଗଳବିଧାନରେ ଆମ୍ଭେମାନେ ନିଯୁକ୍ତ ରହୁଁ ।’ ଏଥିକୁ ଏଥିରେ ଅବହେଳା କଲେ ତାହାଙ୍କ ଆଜ୍ଞା ଅମାନ୍ୟ କରିବାର ହେବ । ପ୍ରଭୁ କରୁଣା କରି ତୁମ୍ଭ ହାତରେ ବିପୁଳ ଅର୍ଥ, ସାମର୍ଥ୍ୟ, ବିଦ୍ୟା, ଜ୍ଞାନ ଦେଇଅଛନ୍ତି । ସେ ସମସ୍ତ ପ୍ରୟୋଗ କରି ତୁମ୍ଭେ ଲୋକସମାଜର ଅନେକ ମଙ୍ଗଳ ସାଧନ କରିବାକୁ କ୍ଷମ ହେବ । ପୁରୁଷାନୁକ୍ରମିକ ଉପାସ୍ୟ ଗୃହଦେବତାଙ୍କର ପୂଜା ଅର୍ଚ୍ଚନା, ଅନେକଗୁଡ଼ିଏ ପ୍ରତିପାଳ୍ୟ ଲୋକଙ୍କୁ ପ୍ରତିପାଳନ କରିବାର ଭାର ତୁମ୍ଭ ହସ୍ତରେ ରହିଅଛି । ପ୍ରଭୁଙ୍କ କରୁଣାରୁ ତୁମ୍ଭେ ବିପୁଳ ଧନର ଅଧିକାରୀ । ସେହି ଅର୍ଥ ପ୍ରୟୋଗରେ ଦେଶ ମଧ୍ୟରେ ଜ୍ଞାନ ବିସ୍ତାର, ପୀଡ଼ିତ ଲୋକଙ୍କୁ ସେବା ଶୁଶ୍ରୂଷା ଏବଂ ଜଳଛତ୍ର, ଅନ୍ନଛତ୍ର ଯୋଗେ ଅନେକ ପ୍ରାଣୀଙ୍କୁ ରକ୍ଷା କରିବାକୁ ସମର୍ଥ ହେବ । ଏହା ମଧ୍ୟ ବୋଲୁଅଛୁଁ, ତୁମ୍ଭେ ସନ୍ନ୍ୟାସାଶ୍ରମରେ ଥାଇ ପ୍ରଭୁଙ୍କ ଅର୍ଚ୍ଚନା ଯୋଗେ ଆତ୍ମୋନ୍ନତି କରିବାକୁ କ୍ଷମ ହୋଇପାର, ମାତ୍ର ଏଥିରେ ତୁମ୍ଭର ସ୍ୱାର୍ଥପରତା ପ୍ରକାଶ ପାଇବ, ପୁଣି ପ୍ରଭୁଙ୍କ କରୁଣାଦତ୍ତ ମଦ୍‌ଗୁଣାବଳୀ ବ୍ୟର୍ଥ ହୋଇଯିବ ।”

ସାନ ବୈରାଗୀ କହିଲେ, “ବାବା ଗୋବିନ୍ଦ ! ଆମ୍ଭମାନଙ୍କର ଗୁରୁଦେବ ପ୍ରଭୁ ଯାହା ଆଜ୍ଞାକଲେ, ମୋହର ମଧ୍ୟ ତୁମ୍ଭଙ୍କୁ ତେତିକି ଅନୁରୋଧ ଜାଣ । ଦୁଇ କୁଳର ଉପାସ୍ୟ ଦେବତାଙ୍କର ସେବାପୂଜା, ଉଭୟ ବଂଶର ପ୍ରତିପାଳ୍ୟ ଲୋକଙ୍କ ରକ୍ଷାବିଧାନ, ଦୁଇ ବଂଶର ସମସ୍ତ ସମ୍ପତ୍ତିର ସତ୍ ପ୍ରୟୋଗ ଭାର ତୁମ୍ଭ ପ୍ରତି ଅର୍ପିତ ଅଛି ଜାଣି କର୍ତ୍ତବ୍ୟମାର୍ଗରେ ଅଗ୍ରସର ହୁଅ ।”

ଗୋବିନ୍ଦଚନ୍ଦ୍ର ଦୁଇ ଜଣଙ୍କ ପଦରେଣୁ ମସ୍ତକରେ ଲଗାଇ ମେଲାଣି ନେଲେ ।

---

–୫୪–

## ଜମିଦାରୀ ପରିଚାଳନର ବ୍ୟବସ୍ଥା

ଦୁଇ ତାଲୁକ ବିଶାଳ ଜମିଦାରୀର କାର୍ଯ୍ୟ ପରିଚାଳନ ବ୍ୟବସ୍ଥା ଏକ ସଙ୍ଗରେ ମିଶା ଯାଇଛି । ତତ୍ତ୍ୱାବଧାନ ନିମନ୍ତେ ଜଣେ ସୁଶିକ୍ଷିତ, ଉପଯୁକ୍ତ କର୍ମଚାରୀ ନିଯୁକ୍ତ । ସମସ୍ତ ଆୟ ଦେବସେବା, ସଦାବର୍ତ୍ତ, ଶିକ୍ଷାବିସ୍ତାର, ସାଧାରଣ ହିତକର ବିଷୟରେ ବ୍ୟୟ ହୁଏ । ସାମନ୍ତ ଗୋବିନ୍ଦଚନ୍ଦ୍ର ବର୍ତ୍ତମାନ ସମସ୍ତ ସମ୍ପତ୍ତିର ଅଧିକାରୀ ହେଲେ ମଧ୍ୟ ଜମିଦାରୀର ଉପସ୍ୱତ୍ୱ ଅର୍ଥ ନିଜ ଇଚ୍ଛାନୁସାରେ ଆପଣା କାର୍ଯ୍ୟରେ ବ୍ୟୟ

କରିବାକୁ ଦେବସ୍ୱ ଅପହରଣସ୍ୱରୂପ ଜ୍ଞାନ କରନ୍ତି । ସମସ୍ତ କାର୍ଯ୍ୟର ତତ୍ତ୍ୱାବଧାନ କରନ୍ତି ବୋଲି ଆପଣା ସକାଶେ ବେତନ ବୋଲି ନିୟମିତରୂପେ ମାସିକ କିଛି ଅର୍ଥ ଗ୍ରହଣ କରିଥାନ୍ତି, ତାହା ମଧ୍ୟ ଅତି ଅଳ୍ପ ମାତ୍ର ଅଟେ । ଉକ୍ତରୂପ ନିର୍ଦ୍ଧାରିତ ଅର୍ଥରୁ ଆପଣା ଆହାର ପରିଧାନ ନିମନ୍ତେ ଯତ୍‌ସାମାନ୍ୟ ବ୍ୟୟ କରି ଉଦ୍‌ବୃତ୍ତ ଅର୍ଥ ଗରିବ, ଦୁଃଖୀ, ଆତୁର, ରୋଗଗ୍ରସ୍ତ ଲୋକମାନଙ୍କ ମଧ୍ୟରେ ବିତରଣ କରି ଦିଅନ୍ତି ।

ସଇତା ପୂର୍ବପରି ସାମନ୍ତଙ୍କ ସେବାରେ ନିଯୁକ୍ତ ଅଛି । ସଇତା ବିଶ୍ୱାସୀ, ଧର୍ମପରାୟଣ, ପ୍ରଭୁଭକ୍ତ ଏବଂ କଟକରେ ଥିବା ସମୟରେ ଲେଖିପଢ଼ି ଶିଖିଥିଲି । ସାମନ୍ତ ଉପଯୁକ୍ତ ଜାଣି ଆପଣାର ପ୍ରତିଭୂସ୍ୱରୂପେ ତାହାକୁ ସମସ୍ତ ବିଷୟରେ ସର୍ବାଧିକାରୀ ପଦରେ ନିଯୁକ୍ତ କରିଅଛନ୍ତି । ଜମିଦାରୀ ଅସୁଲ ତହସିଲ ଏବଂ ଅନ୍ୟାନ୍ୟ କାର୍ଯ୍ୟ ପରିଚାଳନ ନିମନ୍ତେ ବହୁସଂଖ୍ୟକ କରଣ ପାଞ୍ଜିଆ ନିଯୁକ୍ତ ଅଛନ୍ତି । ସଇତା ସମସ୍ତଙ୍କ ହିସାବ ଏବଂ କାର୍ଯ୍ୟର ପରୀକ୍ଷକ । ତାହାର କର୍ମଠତା, ବୁଦ୍ଧିମତ୍ତା, ନ୍ୟାୟପରତା ହେତୁରୁ ସମସ୍ତ କର୍ମଚାରୀ ତାହା ସମ୍ମୁଖରେ ଶଙ୍କି ରହିଥାନ୍ତି । ସଇତାର ତୀକ୍ଷ୍ଣ-ଦୃଷ୍ଟି ହେତୁରୁ କେହି କର୍ମଚାରୀ ପ୍ରଜା ପ୍ରତି ଅତ୍ୟାଚାର କିମ୍ବା ଦେବସ୍ୱ ଉପସ୍ୱତ୍ୱ ଟଙ୍କା ଅପହରଣ କରିବାକୁ ସାହସ କରିପାରେ ନାହିଁ ।

ସଇତା ଉଚ୍ଚ ପଦସ୍ଥ ଥିଲେ ମଧ୍ୟ ଆପଣା ବ୍ୟୟ ନିର୍ବାହ ନିମନ୍ତେ ବେତନସ୍ୱରୂପ କଦାଚିତ୍ କିଛି କିଛି ଅର୍ଥ ଗ୍ରହଣ କରିଥାଏ । ତାହାର ନିଜ ବ୍ୟୟ ମଧ୍ୟରେ ସରକାରୀ ଦାନ ଛଡ଼ା ନିତାନ୍ତ ଅସହାୟା ସମ୍ଭ୍ରାନ୍ତ ଘରର ବିଧବା ବୃଦ୍ଧାମାନଙ୍କୁ ଗୋପନରେ କିଛି କିଛି ଦାନ କରିଥାଏ । ଶୁଣାଯାଏ, ତାହାର ବୃଦ୍ଧା ମାତା ମୃତ୍ୟୁ ସମୟରେ ତାହାର ଗ୍ରାମସ୍ଥା ଗୁଡ଼ିଏ ନିରାଶ୍ରୟା ପତିପୁତ୍ରହୀନା ବୃଦ୍ଧା ସ୍ତ୍ରୀଙ୍କୁ ସାହାଯ୍ୟ କରିବା ସକାଶେ କହିଥିଲି ।

ଅନ୍ନଦାତା ପ୍ରଭୁଙ୍କ ପରି ସଇତା ବର୍ତ୍ତମାନ ଗୈରିକବସନଧାରୀ, ହରିଷ୍ୟାନ୍ନଭୋଜୀ, ବୈରାଗୀ । ସଇତାର ବିଶ୍ୱାସ, ତାହାର ଅସାବଧାନତା ଯୋଗୁ ପ୍ରଭୁ କଷ୍ଟଭୋଗୀ । ଆପଣା ଦୁଷ୍କର୍ମର ପ୍ରାୟଶ୍ଚିତ୍ତ ନିମନ୍ତେ ସେ ସନ୍ନ୍ୟାସ ଗ୍ରହଣ କରିଅଛି ।

ସମସରପୁର ଉଆସ ମଧ୍ୟରେ ଅବସ୍ଥିତା ମରୁଆ ବର୍ତ୍ତମାନ ଅପନୀତକୁନ୍ତଳା, କଷାୟବସନପରିହିତା, ତପସ୍ୱିନୀ । ସାମନ୍ତ ଗୋବିନ୍ଦଚନ୍ଦ୍ର ଆପଣା କର୍ତ୍ତବ୍ୟ-ଜ୍ଞାନରେ ମରୁଆକୁ ଗୃହସ୍ଥା କରାଇବାପାଇଁ ଚେଷ୍ଟା କରି ବୁଝିଲେ, ସେ ଆପଣା ପ୍ରତିଜ୍ଞା ପାଳନ ବିଷୟରେ ସ୍ଥିରନିଶ୍ଚୟା ! ସେ ମଧ୍ୟ ସଇତା ପରି ଆପଣାକୁ ସମସ୍ତ ଉତ୍ପାତର ମୂଳାଧାର ଜ୍ଞାନ କରି ନିଜକୃତ ଅପରାଧ ଖଣ୍ଡନ ନିମନ୍ତେ ସନ୍ନ୍ୟାସବ୍ରତ ଗ୍ରହଣ କରିଅଛି । ସାମନ୍ତଙ୍କର ଅନୁରୋଧ ପୁଣି ଆପଣାର କର୍ତ୍ତବ୍ୟଜ୍ଞାନରେ ଉଆସ ମଧ୍ୟରେ ପ୍ରତିପାଳିତା ଦାସୀମାନଙ୍କର ରକ୍ଷଣା-ବେକ୍ଷଣରେ ମନୋଯୋଗିନୀ ଥାଏ । ଅନ୍ୟ ସମୟ ଗୀତ ପାଠ ଓ ଈଶ୍ୱରାରାଧନାରେ କାଟେ ।

ସାମନ୍ତ ଗୋବିନ୍ଦଚନ୍ଦ୍ର ବହୁ ଅର୍ଥ ବ୍ୟୟରେ ମାତା ମଣିମାଙ୍କର ଏବଂ ଇନ୍ଦୁମତୀର ଦୁଇଗୋଟି ସମାଧି-ମନ୍ଦିର ପ୍ରସ୍ତୁତ କରାଇଅଛନ୍ତି । ପ୍ରତିଦିନ ବ୍ରାହ୍ମ ମୁହୂର୍ତ୍ତରେ ସାମନ୍ତ ନଦୀରେ ସ୍ନାନ ସାରି ମାତାଙ୍କ ସମାଧିମନ୍ଦିର ମାର୍ଜନା କରି ଚନ୍ଦନ ମଣ୍ଡନ ଏବଂ ଇନ୍ଦୁମତୀ ମନ୍ଦିରରେ ପୁଷ୍ପଦାନ କରି ଉଆସକୁ ବାହୁଡ଼ିବାକୁ ଦୁଇ ଦଣ୍ଡ ଦିନ ଅତୀତ ହୋଇଥାଏ । ତହିଁ ଉତ୍ତାରେ ଦେବାର୍ଚ୍ଚନା ଓ ଗୀତା ପାଠରେ ସମସ୍ତ ପୂର୍ବାହ୍ଣ ଅତିବାହିତ ହୁଏ । ଅପରାହ୍ଣରେ ବିଷୟକର୍ମ ତତ୍ତ୍ୱାବଧାନ, ସାୟଂକାଳରେ ସନ୍ଧ୍ୟାବନ୍ଦନାଦି ପରେ ବିବିଧ ଶାସ୍ତ୍ରାଲୋଚନାରେ ରାତ୍ରି ଦ୍ୱିପ୍ରହର ପର୍ଯ୍ୟନ୍ତ କଟିଯାଏ ।

---

# ସୂଚୀ

ବିଷୟ ପୃଷ୍ଠା

# ସୂଚୀ

## ୧ମ ଭାଗ



## ୨ୟ ଭାଗ

# ଗଳ୍ପସ୍ୱଳ୍ପ

---

-୧-

## ରେବତୀ

କଟକ ଜିଲାର ହରିହରପୁର ପରଗନା ମଧ୍ୟରେ ଗୋଟିଏ ମଫସଲ ଗ୍ରାମ, ନାମ ପାଟପୁର । ଗ୍ରାମ ମୁଣ୍ଡାମୁଣ୍ଡିରେ ଗୋଟିଏ ଘର । ଆଟିଳ ପିଣ୍ଡିଳ ଚଉରବଖରା, ଖଞ୍ଜା ପାଖରେ ଚାଳିଆରେ ଢିଙ୍କିଶାଳ, ଅଗଣା ମଧ୍ୟରେ କୂଅ, ଆଗକୁ ଦାଣ୍ଡଦୁଆର, ପଛକୁ ବାଡ଼ିଦୁଆର । ଦାଣ୍ଡଦୁଆର ମେଲଘରେ ଦାଣ୍ଡଲୋକେ ବସା ଉଠା କରନ୍ତି, ପ୍ରଜାମାନେ ଖଜଣା ଦେବାକୁ ଆସି ଏହିଠାରେ ବସନ୍ତି । ଶ୍ୟାମବନ୍ଧୁ ମହାନ୍ତି ଜମିଦାର ତରଫରୁ ଗ୍ରାମର କରଣ, ମାସକୁ ଦରମା ଦୁଇଟଙ୍କା, ଦରମା ଛଡ଼ା ପାଉଣ୍ଡି ବଣେଧଣି, ବାହାଲହଣା ଇତ୍ୟାଦିରୁ ଦୁଇପଇସା ହାତଫେର ହୁଏ । ସବୁ ମିଶାଇଲେ ମାସକୁ ଚାରି ଟଙ୍କାରୁ ଊଣା ହେବ ନାହିଁ, ସଂସାର ଏକରକମ ଚଳେ । ଏକରକମ କଅଣ ? ବୋଇଲେ ଭଲ ଚଳେ । ଏଇଟା ହେଲା ନାହିଁ, ସେଇଟା ଘରେ ନାହିଁ, ଏପରି କଥା ଘରର କାହାରି ମୁହଁରୁ ଶୁଣାଯାଏ ନାହିଁ । ବାଡ଼ିରେ ଶାଗ ମାଗ ଛଡ଼ା ସଜନା ଦୁଇଗଛ । ଘରେ ଲଗାପଡ଼ିଆ ବରଡ଼ାବଣୀ ଗାଈ ଦୁଇଟା ବନ୍ଧା; ଦୁଧ ଟିକିଏ, ଚହ୍ଲା ମନ୍ଦାଏ ହାଣ୍ଡିତଳେ ଲାଗିଥାଏ । ବୁଢ଼ୀ ଚର୍ଖ ମିଶଇ ଘଷି ଛାଡ଼ିଦିଏ, କାଠ କଣା ବାଧେ ନାହିଁ । ଜମିଦାର ସାଢ଼େ ତିନ ମାଣ ଜମି ଚଷିବାକୁ ଦେଇଛନ୍ତି, ଧାନ ବଳେ ନାହିଁ, କି କମେ ନାହିଁ । ଶ୍ୟାମବନ୍ଧୁଟି ବଡ଼ ସିଧା ସଳଖ ଲୋକ, ପ୍ରଜାମାନେ ମାନନ୍ତି, ସୁଖ ପାନ୍ତି । ବାପ ରେ, ଧନ ରେ କହି କହି ଦୁଆର ଦୁଆର ବୁଲି ଖଜଣା ଅସୁଲ କରେ, କାହାରିଠାରୁ ଅନ୍ୟାୟରେ ପଇସାଟିଏ ନିଏ ନାହିଁ । ପ୍ରଜାମାନେ ଖଜଣା ଦେଇ ପାଉତି ମାଗନ୍ତି ନାହିଁ, ସେ ଚଉରଅଙ୍ଗୁଳ ତାଳପତରେ ଖଣ୍ଡେ ପାଉତି ଲେଖି ବଳେ ଚାଳରେ ଗୁଞ୍ଜି ଦେଇଯାଏ । ଜମିଦାର ପିଆଦା ଆସିଲେ ଗାଁକୁ ଛାଡ଼େ ନାହିଁ, ଆପେ ହାତ ଡେଠ ଧରି ଧୂଆଁଖିଆ ଦୁଇପଇସା ଅଣ୍ଟାରେ ଗୁଞ୍ଜି ଦେଇ ବିଦା କରେ । ଶ୍ୟାମବନ୍ଧୁ ଘରେ ଖାଇବାକୁ କୁଟୁମ୍ବ ଚାରିଜଣ, ଆପେ ଦୁଇ ପରାଣୀ, ମା ବୁଢ଼ୀ, ଦଶ ବରଷର ଗୋଟିଏ ଝିଅ । ଝିଅର ନାମ ରେବତୀ । ଶ୍ୟାମବନ୍ଧୁ ସଞ୍ଜବେଳେ ପିଣ୍ଡାରେ ବସି 'କୃପାସିନ୍ଧୁ ବଦନ' ଗାଏ, ଆଉ ଆଉ ଭଜନ ଗାଏ, କେବେ କେବେ କାଠ ଚୁଖାଟି ଉପରେ ବଇଠାଟିଏ ଥୋଇ ଭାଗବତ ପଢ଼େ, ରେବତୀ ପାଖରେ ବସି ଶୁଣୁଥାଏ । ସେ ମୁହେଁ ମୁହେଁ ଢେର ଭଜନ ଶିଖିଗଲାଣି, ତା ଟିକି ମୁହଁକୁ ଭଜନଗୁଡ଼ିକ ଖୁବ୍ ମାନେ ।

ସଞ୍ଜବେଳେ ବାପା ପାଖରେ ବସି ଭଜନ ଗାଇଲେ ଗାଁର କୌଣସି କୌଣସି ଲୋକ ଆସି ଶୁଣନ୍ତି । ରେବତୀ ବାପା ପାଖରୁ ଗୋଟିଏ ଭଜନ ଶିଖିଥିଲା ସେଇଟି ଗାଇଲେ ଶ୍ୟାମବନ୍ଧୁ ବଡ଼ ଖୁସି ହୁଏ । ପ୍ରତିଦିନ ଝିଅକୁ ଗାଇବାକୁ କହେ, ରେବତୀ ଗାଏ—

କା' ଆଗେ କହିବି ଗୁହାରି ?
ତୁମ୍ଭେ ନ ଶୁଣିଲେ ନାଥ କେବେ ଯିବ ସରି ।
କର ବା ନ କର ତ୍ରାଣ, ପଦେ ସମର୍ପିଛି ପ୍ରାଣ,
ହୃଦେ ଅଛି ତବ ନାମ ଧରି ।
ତୁମ୍ଭ ବିନା ଜଗତ ଶୂନ୍ୟ ହେଉ ହରି ।
ଶୀତଳ କର ଜୀବନ ପ୍ରେମାମୃତ ଦାନ କରି ।

ଦୁଇ ବରଷ ତଳେ ସ୍କୁଲ ଡେ଼ଃ ଇନ୍‌ସପେକ୍ଟର ମଫସଲ ଗସ୍ତକୁ ଯିବା ସମୟରେ ପାଟପୁରରେ ରାତିଏ ରହିଯାଇଥିଲେ । ଗ୍ରାମର ମୁଖିଆ ମୁଖିଆ କେତେ ଜଣ ଲୋକ କୁହାପୋଛା କରିବାରୁ ଦିପୋଟିବାବୁ ଓଡ଼ିଶା ବିଭାଗର ଇନ୍‌ସପେକ୍ଟରଙ୍କଠାରୁ ରିପୋର୍ଟ କରି ଗୋଟିଏ ଅପରପ୍ରାଇମେରି ସ୍କୁଲ ବସାଇ ଦେଇଅଛନ୍ତି । ଶିକ୍ଷକ ବେତନ ମାସକୁ ଚାରି ଟଙ୍କା । ଏହି ଚାରିଟଙ୍କା ସରକାରରୁ ମିଳେ । ଏହାଛଡ଼ା ପ୍ରତି ପିଲା ମାସକୁ ଅଣାଏ ଲେଖାଏଁ ଦିଅନ୍ତି । ଶିକ୍ଷକଟି କଟକ ନର୍ମାଲ ସ୍କୁଲର ଅବଧାନବିଭାଗର ଉତ୍ତୀର୍ଣ୍ଣ ଛାତ୍ର, ନାମ ବାସୁଦେବ । ନାମଟି ଯେପରି ବାସୁଦେବ, ଲୋକଟା ମଧ୍ୟ ସେହିପରି ବାସୁଦେବ । ଟୋକାଟାର ଭିତର ବାହାର ସବୁ ସୁନ୍ଦର । ତାଁ ମଝିରେ ବୁଲିଥିବା ବେଳେ ମୁଣ୍ଡ ଟେକି କାହାକୁ ଚାହେଁ ନାହିଁ । ବୟସ ଅନ୍ଦାଜ କୋଡ଼ିଏ । ସୁନ୍ଦର ରୂପ ଯେମିତି ଗୋଟିଏ ଦୃଷ୍ଟିଲରେ ଗଢ଼ା । ପିଲାଦିନେ ପିତ୍ତଳାରୋଗ ହୋଇଥିଲା । ତା ମା ମୁଣ୍ଡରେ ତତଲା ବୋତଲ ମୁହଁ ଚିହ୍ନ ଦେଇଥିଲା । ସେ ଚିହ୍ନ ଅଳ୍ପଯାଏ ଅଛି । ହେଲେ ସେ ଚିହ୍ନ ତାକୁ ମାନେ । ବାସୁଦେବ ପିଲାକାଳରୁ ମା ବାପ ଛେଉଣ୍ଡ, ମାମୁଘରେ ରହି ମଣିଷ ହୋଇଛି । ବାସୁଦେବ ଜାତିରେ କରଣ, ଶ୍ୟାମବନ୍ଧୁ ମଧ୍ୟ କରଣ । କେବେ ଚୂନେଇ ଗୁରୁବାରରେ ଘରେ ପଠାପଣା ହେଲେ ଶ୍ୟାମବନ୍ଧୁ ପାଠଶାଳାକୁ ଯାଇ କହିଆସେ, "ବାପା ବାସୁ ! ସଞ୍ଜବେଳେ ଟିକିଏ ଆମ ଘରକୁ ଯିବ, ତୁମ ମାଉସୀ ଡାକୁଛନ୍ତି ।" ଏହିପରି ଯିବାଆସିବାରେ ସେମାନଙ୍କ ମଧ୍ୟରେ ଗୋଟାଏ ମାୟା ଲାଗିଗଲାଣି । ରେବତୀ ବାସୁକୁ ଦେଖିଲେ କହେ, "ଆହା, ମା ଛେଉଣ୍ଡଟି, କିଏ ଖାଏ—କିଏ ତା ଖାଇବା ଦେଖୁଛି ।" ବାସୁ ପ୍ରତିଦିନ ସଞ୍ଜବେଳେ ଯାଇ ଶ୍ୟାମବନ୍ଧୁ ପାଖରେ ଘଡ଼ିଏ ଅଧେ ବସି ଆସେ । ବାସୁକୁ ଦୂରରୁ ଦେଖିଲେ "ବାସୁଭାଇ ଆଇଲେ, ବାସୁଭାଇ ଆଇଲେ" ବୋଲି ରେବତୀ ପାଟି କରି ବାପକୁ କହେ । ରେବତୀ ସଞ୍ଜବେଳେ ବାପ ପାଖରେ ବସି ପ୍ରତିଦିନ ପଠିତ ପୁରୁଣା ଭଜନଗୁଡ଼ିକ ବାସୁକୁ ଶୁଣାଏ । ବାସୁକୁ ସେହି ଗୀତ ନୂଆ ନୂଆ ପରି ଲାଗେ । ଦିନେ ଏ କଥା ସେ କଥା ପଡ଼ୁ ପଡ଼ୁ ଶ୍ୟାମବନ୍ଧୁ ଶୁଣିଲେ, କଟକରେ ଗୋଟିଏ ଝିଅସ୍କୁଲ ଅଛି, ସେଠାରେ ଝିଅମାନେ ପଢ଼ନ୍ତି, ଲୁଗାସିଆଁ ଶିଖନ୍ତି । ସେହି ଦିନଠାରୁ ରେବତୀକୁ ପାଠ ପଢ଼ାଇବାକୁ ଶ୍ୟାମବନ୍ଧୁର ମନ ହେଲା ଏବଂ ଆପଣା ମନର କଥା ବାସୁଦେବକୁ କହିଲା । ବାସୁ ଶ୍ୟାମବନ୍ଧୁଙ୍କୁ ପିତୃତୁଲ୍ୟ ମାନେ, କହିଲା, "ଆଜ୍ଞା, ମୁଁ ସେହି କଥାଟା କହିବି କହିବି ହେଉଥିଲି ।" ଦୁଇଜଣଙ୍କ ପରାମର୍ଶରେ ରେବତୀକୁ ପାଠ ପଢ଼ାଇବାର ସ୍ଥିର ହେଲା । ରେବତୀ ପାଖରେ ବସି ଶୁଣୁଥିଲା, ଦୁଇ ଡିଆଁରେ ଘର ଭିତରକୁ ଯାଇ ମାକୁ ଆଉ ଜେଜୀକୁ, "ମୁଁ ପାଠ ପଢ଼ିବି, ମୁଁ ପାଠ ପଢ଼ିବି" ଖବର ଦେଲା । ମା କହିଲେ, "ହଉ ହଉ ପଢ଼ିବୁ ।" ଜେଜୀ କହିଲେ, "ପାଠ କଣ ଲୋ ? ମାଇକିନିଆ ଝିଅଟା ପାଠ କଣ ? ରନ୍ଧାବଢ଼ା ଶିଖ, ପିଠାପଣା କରି ଶିଖ, ଖୋଟିଦିଆ ଶିଖ, ଦହିମନ୍ଥା ଶିଖ, ପାଠ କଣ ?"

ରାତିରେ ଶ୍ୟାମବନ୍ଧୁ ପିଣ୍ଡାରେ ଖଣ୍ଡେ ଆମ୍ବକାଠ ପିଢ଼ା ଉପରେ ବସି ଭାତ ଖାଉଛନ୍ତି, ରେବତୀ ସାଙ୍ଗରେ ବସି ଖାଉଛି । ବୁଢ଼ୀ ଆଗରେ ବସି--'ଭାତପୁଞ୍ଜାଏ ଆଣ; ଡାଲପାଣି ଟିକିଏ ପକେଇ ଯା, ଲୁଣ ଟିକିଏ ଦେ' ଇତ୍ୟାଦି କଥା ବୋହୂପ୍ରତି ଆଦେଶ କରୁଛନ୍ତି । କଥାରେ କଥାରେ ବୁଢ଼ୀ କହି ବସିଲେ, "ହଁ ରେ ଶ୍ୟାମ ! ରେବି ପାଠ ପଢ଼ିବ – ପାଠ କଣରେ, ଝିଅଲ-ଝିଅର ପାଠପଢ଼ା କଣ ?" ଶ୍ୟାମବନ୍ଧୁ କହିଲେ, "ହେଉ, କହୁଛି ତ ପଢ଼ୁ । ଝଙ୍କଡ଼ ପଟ୍ଟନାୟକ ଘର ଝିଅମାନେ ଯେ ଭାଗବତ ବୋଲି ପାରନ୍ତି, ବୈଦେହୀଶ ବିଳାସ ଛାନ୍ଦ ଗାଆନ୍ତି ।" ରେବତୀ ଭାରି ଖୁସି ହୋଇ ଯାଇ ଜେଜୀକୁ ଗାଳି ଦେଇ କହିଲା, "ଯା ଲୋ ବୁଢ଼ୀ ଓ୍ୱଗ୍ରଟା ।" ତାହା ବାଦ ଅଳି କରି ବାପାକୁ କହିଲା, "ନାଁ ବାଁପାଁ—ନାଁ ବାଁପାଁ ମୁଁ ପାଁଠ ପଁଢ଼ିବିଁ ।" ଶ୍ୟାମବନ୍ଧୁ କହିଲେ, "ହଁ—ହଁ--ତୁ ପଢ଼ିବୁ ।" ସେଦିନ କଥା ଏତିକି ।

ତହିଁ ଆରଦିନ ଉପରଓଳି ବାସୁଦେବ ସୀତାନାଥ ବାବୁଙ୍କ ପ୍ରଥମପାଠ ଖଣ୍ଡିଏ ନେଇ ରେବତୀକୁ ଦେବାରୁ ସେ ବଡ଼ ଖୁସି ହୋଇ ବାପା ପାଖରେ ବସି କିତାପର ମୂଳ ପୃଷ୍ଠାଠାରୁ ଶେଷ ପୃଷ୍ଠାଯାଏ ଓଲଟାଇ ଓଲଟାଇ ଦେଖିଲା । ସେଥିରେ ହାତୀ, ଘୋଡ଼ା, ଗୋରୁ ଇତ୍ୟାଦିର ଛବି ଦେଖି ଭାରି ଖୁସି ହୋଇଗଲା । ରଜାମାନେ ହାତୀ ଘୋଡ଼ା ବାନ୍ଧି ଖୁସି ହୁଅନ୍ତି, କେହି ହାତୀ ଘୋଡ଼ା ଚଢ଼ି ଖୁସି ହୁଏ, ଆମ ରେବି ଛବିଟା ଦେଖି ଖୁସି । ରେବି ଧାଇଁ ଯାଇ ମା'କୁ କିତାପର ଛବି ସବୁ ଦେଖେଇଲା; ତାହା ବାଦ ଜେଜୀକୁ ଦେଖାଇଲା । ଜେଜୀ କିଞ୍ଚିତ୍ ବିରକ୍ତ ହୋଇ କହିଲେ, "ହଁ—ଯା--ଯା--।" ରେବି ତାଙ୍କୁ 'ଦୂର୍ ଦୂର୍' ଗାଳି ଦେଇ ଫେରି ଆସିଲା ।

ଆଜି ଦିନଟି ଭଲ-- ଶ୍ରୀପଞ୍ଚମୀ । ରେବତୀ ସକାଳୁ ବୁଡ଼ି ମାରି ଗାଧୋଇ ନୂଆ ଲୁଗା ଖଣ୍ଡିଏ ପିନ୍ଧି ଘରୁ ବାହାରି ହେଉଛି, ବାସୁ ଭାଇ ଆସିଲେ କିତାପ ପଢ଼ାଇ ଦେବ । ବୁଢ଼ୀଙ୍କ ଭୟରେ ବିଦ୍ୟାରମ୍ଭର ଆୟୋଜନ କିଛି ହୋଇ ନାହିଁ । ବେଳ ଛ ଘଡ଼ି ସମୟରେ ବାସୁ ଯାଇ ପଢ଼େଇ ଦେଲା, ସ୍ୱରେ—ଅ, ସ୍ୱରେ—ଆ, ହ୍ରସ୍ୱ—ଇ, ଦୀର୍ଘ--ଈ, ହ୍ରସ୍ୱ—ଉ, ଦୀର୍ଘ – ଊ, ଇତ୍ୟାଦି । ପ୍ରତିଦିନ ପଢ଼ା ଚାଲିଲା, ପ୍ରତିଦିନ ସଞ୍ଜବେଳେ ବାସୁ ଯାଇ ପଢ଼େଇଦିଏ । ଦୁଇ ବରଷ ମଧ୍ୟରେ ରେବତୀ ତେର ପଢ଼ିଗଲାଣି । ମଧୁବାବୁଙ୍କ ଛାନ୍ଦମାଳା ପଢ଼ିଯିବା ବେଳେ ତୁଣ୍ଡରେ ବାଟୁଳି ବାଜେ ନାହିଁ ।

ଦିନେ ରାତିରେ ଶ୍ୟାମବନ୍ଧୁ ବସି ଭାତ ଖାଇବା ବେଳେ ମା'ପୁଅ ଦୁଇ ଜଣ କଥାବାର୍ତ୍ତା ହେଲେ । ପୂର୍ବେ ବୋଧକରୁଁ କିଛି କଥା ହୋଇଥିଲା, ଆଜି ସେହି କଥାର ଉପସଂହାର ।

ଶ୍ୟାମବନ୍ଧୁ—କି ମା, ଭଲ ହେବ ନାହିଁ କି ?

ବୁଢ଼ୀ—ହଁ ଭଲ ତ ହେବ; ଜାତି କଥାଟା ବୁଝିଛୁ ନା ?

ଶ୍ୟାମବନ୍ଧୁ—ମୁଁ ଆଜଯାଏ ଆଉ କଣ ବୁଝୁଥିଲି ? ଭଲ କରଣ, ଗରିବପୁଅ ହେଲେ କଣ ହେବ, ଜାତି ଭଲ ।

ବୁଢ଼ୀ— ଧନ ଦଉଲତ ନାହିଁ ବିଚାର,
ଜାତି କଥାଟା ଆଗେ ପଚାର ।

ଘରେ ରହିବ ତ ?

ଶ୍ୟାମବନ୍ଧୁ—ଘରେ ନ ରହି ଆଉ କୁଆଡ଼େ ଯିବ ? ହଜାର ହେଲେ ମାମୁ ମାଈଁ ନା, ଆଉ କଣ ?

ରେବତୀ ପାଖରେ ବସି ଭାତ ଖାଉଥିଲା, ଏହି କଥାର ମର୍ମ ସେ କଣ ବୁଝିଲା ସେ ଜାଣେ; ମାତ୍ର ସେହି ଦିନଠାରୁ ତାହାର ଭାବଭଙ୍ଗୀ ଅନ୍ୟରକମ ଦେଖୁଅଛୁଁ । ତାକୁ ବାପା ଆଗରେ ବାସୁଭାଇ ପଢ଼ାଇଦେଲେ କିପରି ଗୋଟାଏ ଲାଜ ମାଡ଼େ; ଅକାରଣ ସକାରଣ ସବୁବେଳେ

ହସ ମାଡ଼େ, ମୁଣ୍ଡ ତଳକୁ ପୋତି ଦେଇ ଦୁଇ ଓଠ ଚୁକ ହସ ଲୁଚାଏ । ଏଣିକି ବାସୁ ଚିଡ଼ାଇ ଦେଲେ କେତେବେଳେ ଭୁନ ଭୁନ ନଡ଼େ, କେତେବେଳେ ଖାଲି ହୁଁ ହୁଁ କରେ, ପଢ଼ା ସରିଲେ ପାଟି ଚୁକ ହସି ହସି ଘରକୁ ପଳାଇଯାଏ । ପ୍ରତିଦିନ ସଞ୍ଜବେଳେ ଦାଣ୍ଡଦୁଆର କବାଟକୁ ଧରି କାହାକୁ ଚାହିଁଥାଏ, ବାସୁ ଆସିଲେ ଘରକୁ ପଳାଏ, ପାଞ୍ଚ ଡାକରେ ବାହାରେ ନାହିଁ । ଏଣିକି ରେବତୀ ଦାଣ୍ଡକୁ କେବେ ବାହାରିଲେ ବୁଢ଼ୀ ଖପା ହୁଏ ।

ଦେଖୁଁ ଦେଖୁଁ ପଞ୍ଚମୀକୁ ପଞ୍ଚମୀ ଦୁଇ ବରଷ ହୋଇଗଲାଣି । ବିଧାତାଙ୍କର ବିଧାନ, କାହାର ଦିନ ସମାନଭାବରେ ଯିବ ନାହିଁ । ଫଗୁଣମାସିଆ ଦିନ, କାହିଁ କିଛି ନାହିଁ, ଅଚାନକ କାହୁଁ ବାଡ଼ ଆସିଲା—ସକାଳେ ଗ୍ରାମରେ ଶୁଣାଗଲା, ଗୁମାସ୍ତା ଶ୍ୟାମବନ୍ଧୁ ମହାନ୍ତିଙ୍କୁ ବାଡ଼ ଧରିଛି । ମଫସଲ ଗାଁରେ ବାଡ଼ ହେଲେ ଚାଟି କବାଟ ପଡ଼ିଯାଏ । ବାଡ଼ ବୁଢ଼ୀ ହାତେ ଚିରା ଟୋକେଇଟିଏ କାଖେଇ ଦାଣ୍ଡରେ ମନୁଷ୍ୟ ଗୋଟାଉଛି, ଏପରି ସମସ୍ତେ ମଣନ୍ତି । ଦୁଆରକୁ କାହାରି ଆସିବାର ନାହିଁ । ମାଇକିନିଆ ଦୁଇଟା କଣ କରିବେ ? ପିଲାଟା ଉଚ୍ଚା ପାଡ଼ି ଘର ବାହାର ହେଉଛି । ବାସୁଦେବ ଶୁଣି ସ୍କୁଲ ଛାଡ଼ି ଧାଇଁଲା । ଡର ନାହିଁ, ଲଜ୍ଜା ନାହିଁ, ଆପଣା ଶରୀର ପ୍ରତି ଭାବନା ନାହିଁ, ଶ୍ୟାମବନ୍ଧୁ ପାଖରେ ବସି ଗୋଡ଼ରେ ହାତ ବୁଲଉଥାଏ, ପାଣି ଟୋପାଏ ଟୋପାଏ ମୁହଁରେ ଦେଉଥାଏ । ବେଳ ତିନିପ୍ରହର ସମୟରେ ଶ୍ୟାମବନ୍ଧୁ ବାସୁ ମୁହଁକୁ ଚାହିଁ ଖନେଇ ଖନେଇ କହିଲା, "ବାଁ—ସୁଁ ଏଁ—ବଁ ଆଁ—ଗିଁ- ଲା ।" ବାସୁ ଭେ ଭେ କରି ଉଚ୍ଚା ପାଡ଼ିଲା । ଘରେ ଚହଳ ପଡ଼ିଗଲା । ରେବତୀ ଭୂଇଁରେ ପଡ଼ି ଗଡ଼ୁଥାଏ, ଗ୍ରାମର ଲୋକେ ଶୁଣି କହିଲେ, ହୋଇଗଲା ପରା । ଦେଖୁଁ ଦେଖୁଁ ସଞ୍ଜବେଳକୁ କିଛି ନାହିଁ । କଣ କରିବେ—ବାସୁଦେବଟା କାଲିକା ପିଲା, ଅଉ ଦୁଇଟା ଭୁଆସୁଣୀ । ଗ୍ରାମର ବନ ଶେଠି ଧୋବା ଜଣେ ଜାଣିବା ଶୁଣିବା ଲୋକ, ତା ଦେହକରେ ପଚିଶ କି ଷାଠିଏ ପାରି କଲାଣି । କାଲି ହେଲେ ଯିବାକୁ ହେବ, ଆଜି ହେଲେ ଯିବାକୁ ହେବ, ଲୁଗାପଟା ଖଣ୍ଡେ ମଧ୍ୟ ମିଳିବାର ଭରସା । ଚାମୁଗୁଟାଏ ଅଣ୍ଟାରେ ଭିଡ଼ିଦେଇ କୁରାଢ଼ୀଟାଏ କାନ୍ଧରେ ପକାଇ ହାଜର ହୋଇଗଲା । ଗ୍ରାମରେ କରଣ ସେହି ଘରକ; ଶାଶୁ, ବୋହୂ, ବାସୁଦେବ ତିନିଜଣ ଧରାଧରି କରି କର୍ମ ଚଳାଇଲେ । ସେ ସମୟର କଥାଗୁଡ଼ାକ ଲେଖିବାକୁ ଆଉ ହାତ ଚଳୁ ନାହିଁ । ଶ୍ମଶାନରୁ ଫେରି ଆସିବା ବେଳକୁ କୁଆତରା ଉଇଁଲାଣି । ଘରେ ପଶିବା ମାତ୍ରକେ ରେବତୀମା ପୋଖରୀପାଣି ଗଲା, ଦେଖୁଁ ଦେଖୁଁ ଦିନ ଦ୍ୱିପ୍ରହର ବେଳେ ଗ୍ରାମରେ ହାଟ ହେଲା, ରେବତୀ ମା ନାହିଁ ।

ଦିନ ଚାଲିଯାଏ, କାହାରି ଲାଗି ଦିନ ବସି ରହେ ନାହିଁ । କାହାର ପାଲିଙ୍କି ଉପରେ ପାଟଛତା, କାହାର ବେଡ଼ି ଉପରେ କୋରଡ଼ା । ଦିନ ଯାଉଛି ସମସ୍ତଙ୍କର, ଯିବ ସମସ୍ତଙ୍କର । ଦେଖୁଁ ଦେଖୁଁ ତିନିମାସ କଟିଗଲାଣି । ଶ୍ୟାମବନ୍ଧୁ ଘରେ ଦୁଇଗୋଟି ଗାଈ ଥିଲେ, ତହିଁବଳି ବାକି ଟଙ୍କା ସକାଶେ ଜମିଦାରଘର ଲୋକେ ଆସି ବାନ୍ଧି ନେଇଗଲେ । ଆମ୍ଭେମାନେ ଜାଣୁଁ, ଜମିଦାରଘର ଟଙ୍କାକୁ ଶ୍ୟାମବନ୍ଧୁ ଶିବନିର୍ମାଲ୍ୟ ପରି ଜ୍ଞାନ କରେ, ଟଙ୍କାଟିଏ ଅସୁଲ ହେଲେ ଜମିଦାର କଚେରିରେ ପେଠ ନ କରିବାଯାଏ ତାହାର ନିଦ ନାହିଁ । ମାତ୍ର ତାହା ଉପରେ ଟଙ୍କା ଥାଉ ବା ନ ଥାଉ, ଗାଈ ଦିଓଟି ବଡ଼ ଦୁଧିଆଳୀ, ଏ କଥା ପୂର୍ବରୁ ଜମିଦାରଙ୍କୁ ଜଣାଥିଲା । ତାହା ଛଡ଼ା ଜମିଦାର ଚକିରିବାକୁ ଯେ ତିନିମାଣ ଜମି ଦେଇଥିଲେ, ତାହା ଛଡ଼ାଇ ନେଲେଣି । ହଳଆଟା ବା ଘରେ ଆଉ କିଆଁ ରହିବ ? ଦୋଳପୂର୍ଣ୍ଣିମା ଦିନ ସେ ଛାଡ଼ିଗଲା । ବଳଦ ଦୁଇଟା ସାଢ଼େ ସତର ଟଙ୍କାରେ ବିକା ଯାଇଥିଲା, ଦୁଇଜଣଙ୍କ ନିତ୍ୟାରେ ଖରଚ ଯାଇ ଯାହା ବଳିଥିଲା, ପଟାବଟା କରି ମାସେ ଚଳିଲା । **ଆଜି**

ତାଳଟା କାଲି ପିତଳଟା ବିକାବଟା ବନ୍ଧାଛନ୍ଦାରେ ଆଉ ମାସେ ଗଲା । ବାସୁ ଦୁଇ ଓଳି ଦୁଆରକୁ ଆସେ, ରାତି ଘଡ଼ିଏଯାଏଁ ଥାଏ, ଆଈ ନାତୁଣୀ ଶୋଇବାକୁ ଗଲେ ବସାକୁ ଯାଏ । ବାସୁ କିଛି ଟଙ୍କା ପଇସା ଦେଲେ ଆଈ ବା ନାତୁଣୀ କେହି ନିଅନ୍ତି ନାହିଁ । ବଳେଇ ବଳେଇ କିଛି ଦେଲେ ତାହା ଠଣାରେ ପଡ଼ିଥାଏ । ବାସୁ ଜାଣିପାରି ଆଉ କିଛି ଦିଏ ନାହିଁ । ବୁଢ଼ୀ ପାଖରୁ ଗୋଟାଏ ଦୁଇଟା ପଇସା ନେଇ ସଉଦା କିଣିଦିଏ, ସେହି ଦୁଇପଇସାର ସଉଦାରେ ଆଠ ଦଶ ଦିନ ଚଳିଯାଏ । ଘରର ଚାଳ ଉଡ଼ିଗଲାଣି, ଛାଉଣି ଦରକାର । ବାସୁ ଦୁଇ ଟଙ୍କାର ନଡ଼ା କିଣି ବାଡ଼ିରେ ଗଦେଇଅଛି, ଶରଣ ହେବାରୁ ଛପରବନ୍ଧ ହୋଇପାରି ନାହିଁ । ବୁଢ଼ୀ ଏବେ ଆଉ ଦିନ ରାତି ବସି କାନ୍ଦେ ନାହିଁ । କେବଳ ସଞ୍ଜ ହେଲେ ବସି କାନ୍ଦେ । କାନ୍ଦି କାନ୍ଦି ଥକିଲେ ପଡ଼ିଯାଏ, ସେହିଠାରେ ରାତି କାଟେ । ରେବତୀ ଧକେଇ ଧକେଇ ପାଖରେ ପଡ଼ିଯାଏ । ବୁଢ଼ୀ ଆଖିକି ଏବେ ଭଲ ଦିଶୁନାହିଁ; ବାପୁଣୀ ପରି ହୋଇଗଲାଣି । ଏବେ ସେ କାନ୍ଦିବାର ଊଣା କରି ରେବତୀକୁ ଗାଳି ଦେବାକୁ ଆରମ୍ଭ କରିଛି । ଏତେ ଯେ ଦୁଃଖ, ଏତେ ଯେ ଦୁର୍ଦ୍ଦଶା ସବୁର ମୂଳ କାରଣ ରେବତୀ, ଏହା ସେ ମନ ମଧ୍ୟରେ ସ୍ଥିରସିଦ୍ଧାନ୍ତ କରି ସାରିଲାଣି । ରେବତୀ ପାଠ ପଢ଼ିବାରୁ ପୁଅ ମଲା, ବୋହୂ ମଲା, ହଳିଆ ଛାଡ଼ିଗଲା, ବଳଦ ବିକାଗଲା, ଜମିଦାରଘର ଗାଈ ବାନ୍ଧି ନେଇଗଲା । ରେବତୀ କୁଲକ୍ଷଣୀ, ସେ କୁଢ଼ଙ୍ଗୀ, ସେ ଲକ୍ଷ୍ମୀଛାଡ଼ୀ । ବୁଢ଼ୀ ଆଖିକୁ ଯେ ଦିଶୁ ନାହିଁ, ତାହାର କାରଣ ରେବତୀର ପାଠପଢ଼ା । ବୁଢ଼ୀ ଗାଳି ଦେବାବେଳେ ରେବତୀ ଆଖିରୁ ଦୁଇଧାର ବହି ଯାଉଥାଏ, ଡରେ ବୁଢ଼ୀ ପାଖରେ ଛିଡ଼ା ହୋଇପାରେ ନାହିଁ । ବାଡ଼ିଦୁଆରେ, ନୋହିଲେ ଘରକୋଣରେ ମୁହଁ ଯୋଡ଼ାଇ କାଠଟି ପରି ବସିଥାଏ । ବାସୁ ମଧ୍ୟ ଦୋଷୀ; କାରଣ ରେବତୀ ତ ଏତେଦିନଯାଏ ପଢ଼ି ନ ଥିଲା, ସେହି ଆସି ସିନା ପଢ଼ାଇ ଦେଲା । ମାତ୍ର ବୁଢ଼ୀ ବାସୁକୁ କିଛି କହିପାରେ ନାହିଁ, ବାସୁ ନ ହେଲେ ଘର ଦିଣ୍ଡେ ଅଚଳ, ପୁଣି ଜମିଦାରଘର ଲଟ ଛୁଡ଼ ନାହିଁ । ଜମିଦାରଘର ଲୋକ ଆସି ଆଜି ଏ ହିସାବଟା, କାଲି ସେ ହିସାବଟା ମାଗେ । ବାସୁ ନ ହେଲେ ପାଞ୍ଚ ବଡ଼ାରୁ ଚଢ଼ ପତର କାଢ଼ି ଦେବ କିଏ ? ବାସୁ ନ ଥିବାବେଳେ ସେ ସହଜ କଥାରେ କେବେ କେବେ ଆପଣା ମନ୍ତବ୍ୟ ପ୍ରକାଶ କରିଥାଏ । ରେବତୀ ଆଉ ଏଣିକି ସେହି ଗୃହପ୍ରାଙ୍ଗଣସଞ୍ଚାରିଣୀ ଲୀଳାମୟୀ ପ୍ରତିମା ନୁହେଁ, ତାହା ପାଟି ଆଉ କେହି ଶୁଣି ନାହିଁ, ବାପ ମା ଗଲାଦିନୁ ତାକୁ ଦାଣ୍ଡଦୁଆରେ ଆଉ କେହି ଦେଖିନାହିଁ । କେତେ ଦିନଯାଏ ହୋ ହୋ କରି ଡାକ ପାରୁଥିଲା, ଏବେ ଆଉ ପାଟି କରି କାନ୍ଦେ ନାହିଁ; ମାତ୍ର ଦିବାରାତ୍ର ତାହାର ବଡ଼ ବଡ଼ ଆଖି ଦୁଇଟା ସାନ ସାନ ମାଳକଇଁ ପରି ପାଣିରେ ଚଳ ଚଳ ହେଉଥାଏ । ତାହାର କ୍ଷୁଦ୍ର ପ୍ରାଣ—ତହିଁରୁ ଅତି କ୍ଷୁଦ୍ର ମନଟି ଏକାବେଳକେ ଭାଙ୍ଗି ଯାଇଛି । ତା ପକ୍ଷରେ ବର୍ତ୍ତମାନ ଦିନରାତି ସମାନ । ସୂର୍ଯ୍ୟରେ ଆଲୁଅ ନାହିଁ, ରାତିରେ ଅନ୍ଧାର ନାହିଁ, ସମସ୍ତ ଜଗତ୍‌ଶୂନ୍ୟ ! କେବଳ ପିତାମାତାଙ୍କ ମୂର୍ତ୍ତି ହୃଦୟ ପୂର୍ଣ୍ଣ କରିଅଛି । ମା ଏହିଠାରେ ବସିଛନ୍ତି, ବାପା ଚାଲିଯାଉଛନ୍ତି, ତାହା ଆଖିରେ କେବଳ ଏହି ଦୁଇଟା ଦିଶୁଅଛି । ବାପ ମା ମରି ଯାଇଛନ୍ତି, ଆଉ ସେମାନେ ଆସିବେ ନାହିଁ, ଏ କଥା ସେ ବିଶ୍ୱାସ କରି ପାରୁନାହିଁ । ପେଟରେ ଭୋକ ନାହିଁ, ଆଖିରେ ନିଦ ନାହିଁ, ଦିବା ନିଶି ଅନୁକ୍ଷଣ ପିତା ମାତା ଧ୍ୟାନ । କେଜାଣିମା ଡରରେ ଖାଇବାକୁ ବସେ । ଭୂଇଁରୁ ପ୍ରାୟ ଉଠେ ନାହିଁ । ଦେହରେ ହାଡ଼ ଚମ ଦୁଇଖଣ୍ଡ ଧୂଡ଼ୁଧୂଡ଼ୁ ହେଉଛି । କେବଳ ବାସୁଦେବ ଘରକୁ ଆସିଲେ ଉଠି ବସେ, ବଡ଼ ବଡ଼ ଆଖି ଦୁଇଟାରେ ଜଳଜଳ କରି ବାସୁକୁ ଚାହିଁଥାଏ, ବାସୁ ଅନାଇଲେ ସାନ ନିଶ୍ୱାସଟାଏ ପକାଇ ମୁଣ୍ଡ ପୋତିଦିଏ । ବାସୁ ପାଖରେ ଥିବାଯାଏ ତାହାକୁ ଚାହିଁ ରହିଥାଏ । ତେତେବେଳେ ତାହାର

ଆଉ କଛି ଜ୍ଞାନ ନ ଥାଏ—ଆଖିରେ ବାସୁଦେବ, ଶବ୍ଦ ବାସୁଦେବ, ସମସ୍ତ ହୃଦୟଟା ବାସୁଦେବମୟ ।

ଶ୍ୟାମବନ୍ଧୁ ମରିବାର ଆଜକୁ ହାତଗଣତିରେ ପାଞ୍ଚ ମାସ, ଜ୍ୟେଷ୍ଠମାସିଆ ଦିନ, ଠିକ୍ ଦିନ ଦୁଇ ପ୍ରହର ବେଳେ ବାସୁ ଦୁଆରେ ଡାକିଲା । ଏତେବେଳେ ସେ କୌଣସି ଦିନ ଆସେନାହିଁ । ବୁଢ଼ୀ କୁନ୍ଥେଇ କୁନ୍ଥେଇ ଯାଇ ଦୁଆର ଫିଟାଇ ଦେଲା । ବାସୁ କହିଲା—"ଜେଜୀମା, ( ବାସୁ ବୁଢ଼ୀକୁ ଜେଜୀମା ବୋଲି ବରାବର ଡାକେ ) ଡିପୋଟି ଇନ୍‌ସ୍ପେକ୍ଟରର ହରିହରପୁର ଥାନାରେ ବସି ପାଠଶାଳା ପିଲାମାନଙ୍କୁ ପାଠ ପରୁରିବେ, ସବୁ ସ୍କୁଲର ପିଲାମାନେ ଯିବେ, ମୋ ପାଖକୁ ଚିଠି ଆସିଛି, ମୁଁ ପିଲାମାନଙ୍କୁ ନେଇ କାଲି ସକାଳେ ଯିବି, ପାଞ୍ଚଦିନ ଲାଗିବ ।" ରେବତୀ କବାଟକଣରେ ଛିଡ଼ାହୋଇ ଶୁଣୁଥିଲା, ଲଟ୍‌କରି ବସି ପଡ଼ିଲା, ଭାଗ୍ୟ କବାଟ ଧରିଥିଲା, ନୋହିଲେ ପଡ଼ି ଯାଇଥାନ୍ତା । ବାସୁ ପାଞ୍ଚଦିନ ସକାଶେ ଚାଉଳ, ଲୁଣ, ତେଲ, ବାଇଗଣ କିଣି ଆଣି ଅଗଣାରେ ଥୋଇ ଦେଇ ବୁଢ଼ୀକୁ ଜୁହାରଟାଏ ହୋଇ ଶନିବାର ମୁହଁସଞ୍ଜ ବେଳେ ବାହାରିଲା । ବୁଢ଼ୀ କହିଲା, "ବାପା, ଖରାରେ ବୁଲିବୁ ନାହିଁ, ଦେହପାଆକୁ ଚାହିଁବୁ, ବେଳରେ ଦିଟା ଭୁଞ୍ଜିବୁ ।" ଏହା କହି ନିଶ୍ୱାସଟାଏ ପକାଇଲା । ରେବତୀ ଏକଧ୍ୟାନରେ ବାସୁକୁ ଚାହିଁଥାଏ, ଆଜିକା ଚାହାଁଣି ଅନ୍ୟ ରକମ । ଆଗେ ବାସୁ ଚାହିଁଲେ ମୁଣ୍ଡ ତଳକୁ ପୋତି ଦେଉଥିବ, ଆଜ ସେ ଭାବ ନାହିଁ, ଏକଧ୍ୟାନରେ ବାସୁକୁ ଚାହିଁ ରହିଛି । ବାସୁର ମଧ୍ୟ ଆଜି ଆଗକା ଚାହାଁଣି ନୁହେଁ । ଆଗେ ବାସୁର ଯେମନ୍ତ ଖୁବ୍ ଇଚ୍ଛା—ରେବତୀକୁ ଭଲକରି ଦେଖିବ; କିନ୍ତୁ ଅନାଇପାରେ ନାହିଁ । ଆଜି ଚାରି ଚକ୍ଷୁର ମିଳନ, ଆଖି ଫେରାଇବାକୁ କାହାର ଆବୃତ୍ତି ନାହିଁ । ବାସୁ ଚାଲି ଗଲାଣି ଆଉ ଦିନ ନାହିଁ, ଘର ବାହାର ଅନ୍ଧାର ପୂରି ଗଲାଣି । ରେବତୀ ଯେପରି ଚାହିଁଥିଲା, ସେହିପରି ଚାହିଁଅଛି । ବୁଢ଼ୀ ଡାକିବାରୁ ତାହାର ଚେତନା ହେଲା, ଘର ବାହାର ସମସ୍ତ ଅନ୍ଧକାରମୟ ।

ରେବତୀ ବସି ଦିନ ଗଣୁଛି, ଆଜ ଛ ଦିନ । ବାପ ମା ଗଲା ଦିନୁ ଦାଣ୍ଡ ଦୁଆର ଦେଖି ନ ଥିଲା, ଆଜ ସକାଳୁ ଦାଣ୍ଡଦୁଆରେ ଦୁଇ ଥର ମୁହଁମାରି ଗଲାଣି । ବେଳ ଅନ୍ଦାଜ ଛ ଘଡ଼ି, ହରିହରପୁରରୁ ସ୍କୁଲ ପିଲାମାନେ ଫେରି ଆସିବାମାତ୍ରେ ଲୋକେ ବୋଲି ବୋଲି ହେଲେ—ହରିହରପୁରରୁ ଫେରି ଆସିବା ସମୟରେ ଗୋପାଳପୁରର ବରଗଛ ମୂଳରେ ପଣ୍ଡିତଙ୍କୁ ବାଡ଼ି ଧରିଲା, ଚାରିଥର ଡୋଖଝାଡ଼ାଣି ହେଲା, ଅଧରାତି ବେଳେ ଚାଲିଗଲେ । ଗ୍ରାମଲୋକମାନେ ହାୟ ହାୟ କଲେ, ପୁଅ ଝିଅ ମା ମାଇକିନିଆମାନେ ପାଟିକରି କାନ୍ଦି ପକାଇଲେ । କେହି କହିଲା—ଆହା କି ରୂପ ରେ ! କେହି କହିଲା—କି ଧୀର ରେ ! କେହି କହିଲା—ଦାଣ୍ଡରେ ଚାଲିଯାଉଥିବ ଯେ ମାଛିଟିକି ମରି କହିବ ନାହିଁ ।

ରେବତୀ ଶୁଣିଲା, ବୁଢ଼ୀ ଶୁଣିଲା । ବୁଢ଼ୀ କାନ୍ଦି କାନ୍ଦି ତାହା କଣ୍ଠ ରୁନ୍ଧି ହୋଇଗଲା, ଆଉ କାନ୍ଦି ପାରିଲା ନାହିଁ, ଶେଷରେ ଉଠି କହିଲା—"ଆହା ବାପା, ବିଦେଶକୁ ଆସି ଆପଣା ବୁଦ୍ଧିରେ ପ୍ରାଣ ହରେଇଲୁ ରେ !" ଅର୍ଥାତ୍ ସେ ଦୁର୍ବୁଦ୍ଧି କରି ରେବତୀକୁ ପାଠ ପଢ଼େଇବାରୁ ମରିଗଲା, ନୋହିଲେ କେଭେ ମରି ନ ଥାନ୍ତା । ଶୁଣିଲା ବେଳୁ ରେବତୀ ଘରେ ଯାଇ ପଡ଼ିଛି, ସେ ର ଶବ୍ଦ ନାହିଁ । ସେ ଦିନଟା ଗଲା, ତହିଁ ଆରଦିନ ସକାଳେ ବୁଢ଼ୀ ରେବତୀକୁ ପାଖରେ ନ ଦେଖି ପାଟିକରି ଡାକିଲା "ଲୋ ରେବତୀ, ଲୋ ରେବି, ଲୋ ନିଆଁ, ଲୋ ଚୂଲି ।" ବୁଢ଼ୀ ବାୟାଣୀ ପରି ହୋଇ ଗଲାଣି, କାନ୍ଦ ବୋବାଳି ନାହିଁ; କେବଳ ରାଗରେ ଦିନ ରାତି ରେବତୀକୁ ଗାଳି । ପଡ଼ିଶା ଲୋକେ, ଦାଣ୍ଡଗଲା ଲୋକେ ଯେତେବେଳେ ଇଚ୍ଛା ସେତେବେଳେ

ଶୁଣୁଛନ୍ତି, 'ଲୋ ରେବତୀ, ଲୋ ରେବି, ଲୋ ମାଆଁ, ଲୋ ଚାଲି !'' ବୁଢ଼ୀ ଆଖିକୁ ଦିଶୁ ନାହିଁ, ଅଣ୍ଡାଳି ଅଣ୍ଡାଳି ଯାଇ ରେବତୀକୁ ପାଇଲା, ଡାକିଲା, ଜବାବ ନ ପାଇ ତା ଦେହରେ ହାତ ବୁଲାଇ ଦେଖିଲା, ଘୋର ଜର, ଦେହରୁ ନିଆଁ ବାହାରୁଛି, ଜ୍ଞାନ ନାହିଁ । ବୁଢ଼ୀ ଢେର ବେଳଯାଏ ବସି କଣ ପାଞ୍ଚିଲା । କଣ କରିବ, କାହାକୁ ଡାକିବ । ମନ ମଧ୍ୟରେ ଜଗତ ସଂସାର ଖୋଜିଲା, ପାଖରେ କାହାକୁ ଦେଖିଲା ନାହିଁ । କିଛି ସ୍ଥିର କରି ନ ପାରି ଖପା ହୋଇ କହିଲା, "ଯାହା ଆପଣାକିଆ, ତହିଁକି ଇଲାଜ କିଆଁ ?'' ଅର୍ଥାତ୍ ତୁ ପାଠ ପଢ଼ିବାରୁ ଜର ହେଲା, ମୁଁ କଣ କରିବି ?

ଦିନେ ଗଲା, ଦୁଇଦିନ ଗଲା, ତିନିଦିନ ଗଲା, ଚାରିଦିନ ଗଲା, ପାଞ୍ଚଦିନ ମଧ୍ୟ ଗଲା, ରେବତୀ ମାଟିରେ ଲାଗି ଯାଇଅଛି, ଆଖି ଫିଟାଉ ନାହିଁ, ଡାକିଲେ ଉତ୍ତର ନାହିଁ, ହୁଁ ଚୁଁ ହେବାକୁ ମଧ୍ୟ ନାହିଁ । ଆଜି ଛ ଦିନ, ରେବତୀ ସକାଳୁ ଦୁଇ ଚାରି ଥର ପାଟି କଲାଣି, ବୁଢ଼ୀ ପାଟି ଶୁଣି ପାଖକୁ ଗଲା, ଦେହରେ ହାତ ବୁଲାଇ ଦେଖିଲା, ଗୋଡ଼ ହାତ ଶୀତଳ, ଡାକିଲେ ହୁଁ ହୁଁ ଜବାବ ଦେଲା । କଟମଟ କରି ମୁହଁକୁ ଚାହୁଁଅଛି, କିଛି ନ ପଚାରିଲେ ମଧ୍ୟ କେତେ କଥା କହି ପକାଉଛି । କୌଣସି କବିରାଜ ଦେଖିଲେ "ତୃଷ୍ଣା ଦାହଃ ପ୍ରଳାପଶ୍ଚ —''ଇତ୍ୟାଦି ଶ୍ଳୋକ ପଢ଼ି କହନ୍ତେ, "ସନ୍ନିପାତସ୍ୟ ଲକ୍ଷଣଂ ।'' ମାତ୍ର ବୁଢ଼ୀ କିଛି ଖୁସି ହେଲା । ଦେହରେ ତାତି ନାହିଁ; କଥା କହୁ ନ ଥିଲା, ପାଟି ଫିଟାଇଲାଣି, ଚାହୁଁ ନ ଥିଲା, ଆଖି ଫିଟାଇଲାଣି; ପାଣି ପିଇବାକୁ ମାଗିଲାଣି, ଛ ଦିନ ହେଲା କଣ୍ଠରେ ପାଣି ଟୋପାଏ ବାଜି ନାହିଁ, ଚାରିଟା ପଥି ପେଟରେ ପଡ଼ିଲେ ଝିଅଟା ଉଠି ବସିବ । "ତୁ ଶୋଇଥା, ମୁଁ ଚାରିଟା ପଥି ରାନ୍ଧି ଆଣେଁ,'' ଏହା କହି ବୁଢ଼ୀ ବାହାରକୁ ବାହାରି ଆସିଲା । ପଥି ରାନ୍ଧିବ କଣ ? ଘରେ ପାଛିଆ କୁଣ୍ଡେଇ ହାଣ୍ଡି ଆଟିକା ସବୁ ଖୋଜିଲା; ମୁଠାଏ ଚାଉଳ ନାହିଁ । ନିଶ୍ୱାସଟାଏ ପକାଇ ଘଡ଼ିଏ ବସିଲା । ବାସୁ ପାଞ୍ଚ ଦିନକୁ ଚାଉଳ ଡାଲି କିଣି ଦେଇ ଯାଇଥିଲା, ସେଥିରେ ଦଶଦିନ କିଆଁ ଚଳିଗଲା, ବୁଢ଼ୀର ଦୃଷ୍ଟିଶକ୍ତି ଥିଲେ ବୁଝି ପାରିଥାନ୍ତା । ବସି ବିଚାର କଲେ ବୁଦ୍ଧି ଦିଶେ । ଘରେ କଂସାବାସନ କିଛି ନାହିଁ; ହାତରେ ଗୋଟାଏ କଣା ତାଳ ପଡ଼ିଲା, ସେହିଟା ଧରି ହରି ସା ଦୋକାନକୁ ବାହାରିଲା । ହରି ସା ଘର ଗ୍ରାମ ମଝିରେ, ତାହାର ଖଣ୍ଡମତ ଦୋକାନ ନାହିଁ, ଚାଉଳ, ଡାଲି, ଲୁଣ, ତେଲ ରଖିଥାଏ; କୌଣସି ଦିନ ବିଦେଶୀ ଲୋକ ପହଞ୍ଚି ଗଲେ କିଣନ୍ତି କେବେ ହେଲେ ଗ୍ରାମଲୋକଙ୍କର କିଛି ଦରକାର ହେଲେ କିଣନ୍ତି । ବୁଢ଼ୀ ତାଳଟି ଧରି ହରି ସା ଦୁଆରେ ପହଞ୍ଚିଲା । ହରି ସା ବୁଢ଼ୀ ହାତରେ ତାଳଟି ଦେଖି ଅର୍ଥଟା ବେଶ ବୁଝିଗଲା । ବୁଢ଼ୀ ଆପଣାର ଅଭିପ୍ରାୟ ଜଣାଇବାରୁ ହରି ତାଳଟା ହାତରେ ଧରି ଚାରି ପାଖ ଦେଖି କହିଲା; "ନାହିଁ ନାହିଁ ମୋ ଘରେ ଚାଉଳ ନାହିଁ; ଆଉ ଏହି କଣା ତାଳଟା ରଖି କିଏ ଚାଉଳ ଦେବ ?'' ହରି ଘରେ ଯେ ଚାଉଳ ନ ଥିଲା ତାହା ନୁହେ, ଦେବାକୁ ମଧ୍ୟ ଇଚ୍ଛା; ତେବେ ଶସ୍ତାରେ ନେବାର କଥା । ଚାଉଳ ନ ଥିବାର ଶୁଣି ବୁଢ଼ୀ ମୁଣ୍ଡରେ ତ ବଜ୍ର ପଡ଼ିଲା । କଣ କରିବ, ଝିଅଟା ଜରରୁ ଉଠୁଛି, ତା ମୁହଁରେ କଣ ଦେବ ? ଘଡ଼ିଏ ବସିଗଲା; ବେଳ ବୁଡ଼ି ଆସିଲାଣି; ହରିକୁ ଦୁଇ ଥର ଅନାଇଲା । ଯାଏଁ ଝିଅଟା କଣ କରୁଛି ଦେଖେଁ । ତାଳଟି ଧରି ଉଠୁଛି, ହରି କହିଲା, "ଦିଅ ଦିଅ, ତାଳଟା ଦିଅ, ଦେଖେଁ ଘରେ କଣ ଅଛି ।'' ହରି ତାଳଟା ରଖି ଚାରି-ମାଣ ଚାଉଳ, ଅଧମାଣେ ଡାଲି, କିଛି ଲୁଣ ଦେଲା । ବୁଢ଼ୀ ଚାରି ଛ ଜାଗା ବସି ଉଠି ଘରେ ଆସି ପହଞ୍ଚିଲା । ଏ ପର୍ଯ୍ୟନ୍ତ ବୁଢ଼ୀ ଦାନ୍ତରେ ଦାନ୍ତକାଠି ବାଜି ନାହିଁ, ଦେହ ମନ କଥା କଣ କହିବୁଁ ? ଘରେ ପହଞ୍ଚି ରେବତୀକୁ ଡାକିଲା । ତାହାର ବିଶ୍ୱାସ, ରେବତୀ ଭଲ ହୋଇଗଲାଣି, ପାଣି କାଢ଼ି ଦେବ, ସେ ଭାତ ରାନ୍ଧିବ । ରେବତୀ ଜବାବ ନ ଦେବାରୁ ସେ ଘୋର ଖପା ହୋଇ

ଯାଇ ଡାକଲା, "ଲେ ରେବତୀ, ଲେ ରେବ, ଲେ ନଅାଁ, ଲେ ଚୂଲ !" ଜବାବ ନାହିଁ ।

ରାତି ରେବତୀର ସନ୍ନିପାତ ରୋଗ କ୍ରମଶଃ ବଢ଼ୁଛି; ଉତ୍ଥାନଶକ୍ତି ଯନ୍ତ୍ରଣା, ଦେହ କ୍ରମଶଃ ଶୀତଳ ହେଉଛି, କଣ୍ଠ ଶୁଖିଲାଣି, ଭୟଙ୍କର ପିପାସା, କଣ୍ଠଟା ଯେମନ୍ତ ଭିତରକୁ ଭୁଲି ଯାଉଛି । ଥଣ୍ଡା ଜାଗାକୁ ଯିବାର ଇଚ୍ଛା, ଘରଯାକ ଗଡ଼ ଗଡ଼, ବାହାରକୁ ଆସିଲା, ସୁଖ ଲାଗିଲା ନାହିଁ । ବାଡ଼ ଦୁଆରକୁ ଯାଇ ପିଣ୍ଡାରେ ବସିଲା । ଦିନ ଶେଷ ହୋଇ ଆସିଲାଣି, ଖୁବ୍ ପବନ ବହୁଛି, ବାଡ଼କୁ ଆଉଜି ବସିଲା । ବାଡ଼ଯାକ ଅନାଇଲା, ଏହି ବାପା ଗଲା ବରଷ କଦଳୀ ଲଗାଇଥିଲେ, ଘଣ୍ଡା ବାହାରିଲାଣି, ଦୁଇ ବରଷ ତଳେ ମା ଗୋଟିଏ ପିଦୁଡ଼ି ଗଛ ବାଡ଼ରେ ରୋଇଥିଲେ, ରେବତୀ ଧାଇଁ ଧାଇଁ କୂଅରୁ ଢାଳେ ପାଣି ସେ ଗଛରେ ଦେଉଥିଲା, ସେ ଗଛ କେଡ଼େଟାଏ ହେଲାଣି, ଫୁଲ ଧରିଲାଣି । ସେ ଗଛ ଦେଖି ମା ମନରେ ପଡ଼ିଲେ । ବୁଦ୍ଧି ସ୍ଥିର ନାହିଁ, ମନ ଚଞ୍ଚଳ, ଲଗାଲଗି କିଛି କଥା ମନରେ ପଡ଼ୁ ନାହିଁ; ମାତ୍ର ମାତାର ଆନନ୍ଦମୟୀ ମୂର୍ତ୍ତି ଆଉ ମନକୁ ଛାଡ଼ୁ ନାହିଁ । ସଞ୍ଜ ଗଡ଼ି ଗଲାଣି, ଗଛ ମୂଳରୁ ଡାଳ ଉଡ଼ାଳରୁ ଅନ୍ଧାରଗୁଡ଼ାକ ବାହାରି ବାଡ଼ ପୂରି ଗଲାଣି, ଆଉ କିଛି ଦିଶୁନାହିଁ । ଆକାଶକୁ ଚାହିଁଲା, ଚହଟିକିଆ ତାରାଟିରୁ ଧକ ଧକ ହୋଇ କିରଣ ବାହାରୁଛି । ଏକଧ୍ୟାନରେ ରେବତୀ ସେହି ତାରାକୁ ଚାହିଁଅଛି, ଆଖିରେ ଆଉ ପଲକ ପଡ଼ୁ ନାହିଁ । ତାରାର ଆକାର କ୍ରମଶଃ ବଢ଼ି ଯାଉଛି, ଚନ୍ଦ୍ରପରି ଆକାର ହୋଇଗଲାଣି, ଆହୁରି ବୃଦ୍ଧି, କ୍ରମଶଃ ଉଜ୍ଜ୍ୱଳ । ଆହା ! ଏ କି ମୂର୍ତ୍ତି ତାରା ମଧ୍ୟରେ ? ଶାନ୍ତିଦାୟିନୀ ପ୍ରେମମୟୀ ଆନନ୍ଦମୟୀ ମାତାଙ୍କର ଅଭୟା ମୂର୍ତ୍ତି ବସି ସ୍ନେହରେ କୋଳକୁ ନେବା ସକାଶେ ଡାକୁଛନ୍ତି । ମା ଦୁଇଗୋଟି କିରଣ ହସ୍ତ ବଢ଼ାଇ ଦେଲେ । ସେହି କିରଣ ଦୁଇଟି ଆସି ଦୁଇ ଚକ୍ଷୁ ସ୍ପର୍ଶ କରି ହୃଦୟରେ ପ୍ରବେଶ କଲା । ସେହି ଅନ୍ଧକାର ମଧ୍ୟରେ ଆଉ କୌଣସି ଶବ୍ଦ ନାହିଁ, କେବଳ ନିଶ୍ୱାସ ଶବ୍ଦ । ସେ ଶବ୍ଦ କ୍ରମଶଃ ପ୍ରବଳ, ଖୁବ୍ ଦୀର୍ଘନିଶ୍ୱାସ, ଶେଷରେ ମା ମା, ଦୁଇଥର ଅସ୍ପଷ୍ଟ ଶବ୍ଦ ଶୁଭିଲା । ବାଡ଼ ନିସ୍ତବ୍ଧ, ନୀରବ ।

ଏଣେ ବୁଢ଼ୀ ଧୁକୁରି ଧୁକୁରି ଯାଇ ରେବତୀ ଶୋଇବା ଜାଗା ଦେଖିଲା, କେହି ନାହିଁ । ଘରଯାକ, ବାହାର ଅଗଣା, ଢେଙ୍କିଶାଳ, ଢେଙ୍କି ଲଞ୍ଜ କାହିଁ ନାହିଁ । ମନେ କଲା, ଜର ଭଲ ହୋଇ ଗଲାଣି, ବାଡ଼ରେ ବୁଲୁଥିବ । ସେହି ଡାକ—'ଲେ ରେବତୀ, ଲେ ରେବ, ଲେ ନଅାଁ, ଲେ ଚୂଲ !' ବାଡ଼ ଦୁଆରକୁ ଗଲା, ଅଣ୍ଡାଳି ଅଣ୍ଡାଳି ପିଣ୍ଡାକୁ ଉଠିଲା । ପିଣ୍ଡାଟା ଭୂମିଠାରୁ ଦୁଇହାତ ଉଚ୍ଚ, ହାତେ ଚଉଡ଼ା ।

"ମଲା, ତୁ ଏଇଠି ବସିଛୁ ?" ଦେହରେ ହାତ ଦେଇ ବୁଢ଼ୀ ପ୍ରଥମେ ଚମକି ପଡ଼ିଲା, ଆଉ ଥରେ ଭଲ-କରି ଗୋଡ଼ଠାରୁ ମୁଣ୍ଡ ଯାଏ ହାତ ବୁଲାଇଲା, ନାକରେ ହାତ ଦେଇ ଗୋଟାଏ ଉତ୍କଟ ଶବ୍ଦ କଲା, ସଙ୍ଗେ ସଙ୍ଗେ ପିଣ୍ଡା ତଳେ ଦୁଲଦାଲ ଶବ୍ଦ !

ଶ୍ୟାମବନ୍ଧୁ ମହାନ୍ତି ଘରର କୌଣସି ପ୍ରାଣୀକୁ ଜଗତରେ ଆଉ କେହି ଦେଖି ନାହାନ୍ତି । ପଡ଼ୋଶି-ମାନେ ରାତି ପହରକ ସମୟରେ ଶେଷ ଶବ୍ଦ ଶୁଣି-ଥିଲେ—

"ଲେ ରେବତୀ, ଲେ ରେବ, ଲେ ନଅାଁ, ଲେ ଚୂଲ !"

---

## ପେଟେଣ୍ଟ୍ ମେଡିସିନ୍

ସାଆନ୍ତାଣୀଙ୍କର ଠାଣୁଆ ହୁକୁମ ଜାରି, ରାତି ତ ରାତି, ଦିନବେଳେ ବି ବାବୁ ଘରୁ ଗୋଡ଼ କାଢ଼ି କାହିଁ ଯାଇପାରିବେ ନାହିଁ । "କିଁଆ ଯିବ ? କଣ ଲୋଡ଼ା ?

ଯାହା କରିବାକୁ ହେବ, ଘରେ ବସି କର । ଲେଖ, ପଢ଼, ଖବରଦାର ବାହାରକୁ ବାହାରିବ ନାହିଁ ।” ବାବୁଙ୍କ ନିହାତି କୁହାବୋଲା ଆକୁଳ ବିକଳରେ ହୁକୁମ ହୋଇଛି—ସକାଳେ ପା ଘଣ୍ଟା ଲାଗି ଦାଣ୍ଡ ଦୁଆର ପାଖ ସଡ଼କରେ ବୁଲିପାରିବେ । ତା ବି ବହୁତ ଦୂରକୁ ଯାଇ ପାରିବେ ନାହିଁ, କବାଟ ଫାଙ୍କବାଟେ ଅନାଇଲେ ଯେମନ୍ତ ଦିଶୁଥିବ ।

ସକାଳ ସାତଟା ଅନ୍ଦାଜ ବେଳ ହେବ, ବାବୁ ଚନ୍ଦ୍ରମଣି ପଟ୍ଟନାୟକେ ଦାଣ୍ଡଦୁଆର ଆଗ ସଡ଼କରେ ବୁଲୁଛନ୍ତି । ହଠାତ୍ ଅନାଇଦେଇ ଦେଖିଲେ, ଚାରି ପଞ୍ଚାଶ କଦମ ଦୂରରେ ଗୋଟାଏ ଲୋକ ଛିଡ଼ା ହୋଇ ତାଙ୍କୁ ଏକ ଧ୍ୟାନରେ ଅନାଇଛି । ବାବୁଙ୍କ ନଜର ତା ଉପରେ ଯିମିତି ପଡ଼ିଛି, ସେ ହାତ ଠାରି ଡାକିଲା । ବାବୁ ଭଲକରି ଅନାଇ ଦେଖିଲେ, ‘ଓହୋ ! ଏ ତ ସେହି ଭଦରଖିଆ ଟୋକା ରେ !’ ମନ ମଧ୍ୟରେ ଭାରି ଖୁସିଟାଏ ହେଲେ, ପାଖକୁ ଆସିବା ଲାଗି ହାତ ଠାରିଦେଲେ, ଆପେ ବି ଆପଣା ଦୁଆରକୁ ଅନାଇ ଅନାଇ ଅଳ୍ପ ଅଳ୍ପ ଆଗେଇ ଆଗେଇ ଯାଉଥାନ୍ତି । ଯିମିତି ସେ ଟୋକାର ପାଖ ପାଖ ହେଲେ, ଦୁଆର ଆଡ଼କୁ ମୁହଁ କରି ପଛକୁ ଡେଣିକି ହାତଟା ବଢ଼େଇ ଦେଲେ । ଟୋକାଟା ବାବୁଙ୍କ ହାତରେ ଚିଠି ଖଣ୍ଡେ ଯାକଦେଇ ଝଟ୍ ଲେଉଟି ଚଡ଼ି ଚାଲିଗଲା । ବାବୁ ଚିଠିଖଣ୍ଡ ମୁଠେଇ ଧରିଥାନ୍ତି, ତେତେବେଳେ ପଢ଼ିଲେ ନାହିଁ, ଦୁଆର ପାଖିଆ ଆସି ଭଲକରି କବାଟ ଫାଙ୍କକୁ ଅନାଇଲେ । ଚିଠି ଖଣ୍ଡ ପଢ଼ି ଟିକି ଟିକି କରି ଛିଣ୍ଡେଇ ପକେଇ ପବନରେ ଉଡ଼ାଇ ଦେଲେ ।

ଘର ଭିତରକୁ ଆସି ଖୁବ୍ ସ୍ନେହରେ ଖୁବ୍ କଅଁଳରେ ଡାକିଲେ, “ଆଗୋ ! ଆଗୋ ! ଶୁଣୁଛ ନା—ଟିକିଏ ଶୁଣିଗଲ !” ଘର ଭିତରୁ ଗୋଟାଏ ଭାରି ଚଡ଼ା ଗଳା ଶୁଭିଲା, “ଓହୋ ! ଆଜ ଯେ ଭାରି ପ୍ରେମ ଡାକ ! କଥା କଣ ? ମୋର ତ ଭାରି କପାଳ ଦେଖୁଛି ! କଣ କହୁଛ କହ ।”

ବାବୁ କହିଲେ—ଶୁଣିଛ, ଆଜିକି ଚାରିଦିନ ହେଲା ରୋଜ ରୋଜ ରାତିରେ ମୋ ମୁଣ୍ଡ ବୁଲିଏ—ପେଟ ବି ଟାଣେ । ଦେହ ବଡ଼ ଝିମ୍ ଝିମ୍ କରେ, ବଡ଼ କଷ୍ଟ ହୁଏ—ଭାରି କଷ୍ଟ ।

ସାଆନ୍ତାଣୀ କହିଲେ ହେଇ ହେଲା, ଆହୁରି ଗୋଟାଏ କଣ ପ୍ରେମ ବାହାରିଲାଣି । ହେଇ ଯେ ଗଞ୍ଜେଇ—ମଦ—ମଦତ—କଅଁ ପାଉଁଶ ନିଶାଗୁଡ଼ାକ ଖାଉଥିଲ, ତାହାର ଫିସାଦ । ନିଶାଗୁଡ଼ାକର କଣ ଊଣା ଗୁଣ ? ପୃଥିବୀଯାକ ବେମାରି ଦେହରେ । ଏଣେ ତିନି ତିନି ଜାଗା ଚାକରି ହେଲା, ଗଲା । ଲୋକେ କେତେ ଛି ଛାକର କରୁଛନ୍ତି, କେତେ ଟଙ୍କା ବରବାଦ କରିଦେଲ ! ଗଲା ଯାଉ ଚାକରି, ଯାଉ ଟଙ୍କା, ଯାହା ହେବାର ତ ହୋଇଗଲା, ଏଣିକି ଦେହଟା ଭଲ ସୁଧୁରି ଯାଉ । ଚାରି ମାସ କାଳ ଜଗି ଜଗି ଟିକିଏ ଭଲ କରିଥିଲି, ନିଶାଗୁଡ଼ାକ ଛାଡ଼ିବାରୁ ଟିକିଏ ଭଲ ଥିଲ—ପୁଣି ତାହାର କଣ ପୁରୁଣା ଫିସାଦଟାଏ ବାହାରିଲାଣି ?

ଚନ୍ଦ୍ରମଣି ବାବୁ କହିଲେ—ନାହିଁ ଗୋ ନାହିଁ—ସେ କଥା ନୁହେଁ ଯେ, ଆଜ ସକାଳେ ମା[illegible]ଚାର୍ଯ୍ୟ ଖଡ଼ିରତ୍ନଙ୍କ ସଙ୍ଗରେ ଭେଟ ହୋଇଥିଲା । ସେ ମୋ କୋଷ୍ଠି ଗଣି କହିଲେ, ‘ମୋର କକଡ଼ା ରାଶିକୁ ବୃଷ୍ଟ ରାଶି ଶନିସପ୍ତା ହୋଇଛି । ଏଇଟା ତାହାର ଫିସାଦ, କିଛି ପୁଣ୍ୟ କାର୍ଯ୍ୟ କରିଦେଲେ ସବୁ ଦୋଷ କଟିଯିବ ।

ସାନ୍ତାଣୀ—କଣ ପୁଣ୍ୟ କାର୍ଯ୍ୟ କରିବାକୁ ଖଡ଼ିରତ୍ନେ କହିଗଲେ ?

ଚନ୍ଦ୍ରମଣି ବାବୁ—ମୁଁ ଭିନଦିନ ଲାଗି ଯାଇ ଭୁବନେଶ୍ୱର, ଖଣ୍ଡଗିରି, ଉଦୟଗିରିରେ ଯେତେ ମହାଦେବ ଅଛନ୍ତି, ସମସ୍ତଙ୍କୁ ଦର୍ଶନ କରିବି, କିଛି ଟଙ୍କା ଦେଇ ଯାଇଥିବି, ବ୍ରାହ୍ମଣମାନଙ୍କୁ ଦେଲେ ସେମାନେ ଶହେ ମାଠିଆ—ନା ନା, ହଜାରେ କୁମ୍ଭ—ନାହିଁ ନାହିଁ ସହସ୍ର କୁମ୍ଭ ପୂଜା କରିବେ; ସବୁ ଦୋଷ, ସବୁ ଗ୍ରହ ଅବଳ ଏକାବେଳକେ କଟିଯିବ । ଦେହ ଖୁବ୍ ଆଚ୍ଛା ହୋଇଯିବ, ଆଉ ନିଶାପିସା ଖାଇବାକୁ ମନ ବଳିବ ନାହିଁ ।

ସାନ୍ତାଣୀଙ୍କ ମନକୁ ଟିକିଏ କମିତିକା ଧୋକା ଲାଗିଲା । କହିଲେ, "ଖଡ଼ିରତ୍ନେ ଆସିଥିଲେ, କାହିଁ ମୁଁ ଶୁଣିନାହିଁ ?"

ବାବୁ କହିଲେ—ନାହିଁ, ନାହିଁ ସେ ଆସି ନାହାନ୍ତି, ତାଙ୍କ ପୁଅ ଆସିଥିଲା ।

ସାନ୍ତାଣୀ—ତାଙ୍କର ପୁଣି ପୁଅଟାଏ କାହୁଁ ଅଇଲା ?

ବାବୁ—ଓ ନାହିଁ ନାହିଁ ତାଙ୍କର ଗୁରୁକର ହାତରେ କହି ପଠାଇଥିଲେ ।

ସାନ୍ତାଣୀ ବାବୁଙ୍କ ମୁହଁକୁ ଭଲକରି ଅନାଇଲେ, ମନରେ କଲେ ଏ ସବୁ ମିଛ କଥା, ତିନଦିନ ଲାଗିଯାଇ କେଉଁଠି ମଜୁଆଳମାନଙ୍କ ସଙ୍ଗରେ ପଡ଼ି ମଦ ଖାଇବେ, ନୋହିଲେ ତେଲଙ୍ଗାବଜାର କାହା ଓଳରେ ପଡ଼ିବେ । କେତେ ମୁସ୍କିଲରେ ଟିକିଏ ଭଲ ବାଟକୁ ଆସିଛି, ନଜରରୁ ଉହାଡ଼ ହେଲେ କଣ ବୋଲି କଣ କରି ପକାଇବେ । ଖୁବ୍ ଗୋଟାଏ ଦାଟି କରି କହିଲେ, "ନାହିଁ ନାହିଁ, ତୁମେ ଭୁବନେଶ୍ୱର ଫୁବନେଶ୍ୱର କାହିଁ ଯାଇ ପାରିବ ନାହିଁ, ଘରେ ବସିଥାଅ ।"

ବାବୁ କହିଲେ—ହଁ, ସତ—ସତ, ଠିକ୍ କହିଲ, କୁଆଡ଼େ ତିନି ଦିନ ଯାଏ ଯିବ ? ଅଚ୍ଛା, ମୁଁ ଉଚ୍ଚୁଣି ଯାଉଚ୍ଛି, ଠକଲେଶ୍ୱର ମହାଦେବଙ୍କୁ ଦର୍ଶନ କରି ସଞ୍ଜ ସଞ୍ଜ ଲେଉଟି ଆସିବି ।

ସାନ୍ତାଣୀ—ନା—ନା, ତାହା ବି ହେବ ନାହିଁ ।

ବାବୁ—ଆଜ୍ଞା ନ ହେଲା ନାହିଁ, ଗୋଟାକେତେ ଟଙ୍କା ଦେଲ, କଟକ ସହରଭିତରେ ଯେତେ ମହାଦେବ ଅଛନ୍ତି, ପୂଜା କରି ବାହାରି ଆସେଁ ।

ସାନ୍ତାଣୀ—ଆଚ୍ଛା ମହାଙ୍କୁ କହ, ଗୋଟାଏ ବଗି ଡାକି ଆଣୁ, ଦୁହେଁ ଯାଇ ଠାକୁର ଦର୍ଶନ କରିବା, ପୂଜା ଦେବା ।

ବାବୁ ନିଶ୍ୱାସଟାଏ ପକାଇ ଚୁଲିଗଲେ । ଗୋଟାଏ ଜାଗାରେ ବସି ଟିକିଏ ଚିନ୍ତା କଲେ । ଆରେ ! ଭଲ ଫିକରଟାଏ ମନରେ ପଡ଼ିଗଲା ! ବାହାବା ! ଆଚ୍ଛା କଥା ! "ଆଗୋ ! ଶୁଣୁଛ ? ମୋ ଦେହଟା ବି ଭଲ ନାହିଁ; ବାରଆଡ଼େ ବୁଲିଲେ ଫେର କିଛି ଗୋଟାଏ ବେମାରି ବାହାରି ପଡ଼ିପାରେ । ଖଡ଼ିରତ୍ନେ ଏ କଥା ବି କହିଛନ୍ତି, କୁଆଡ଼େ ନ ଯାଇ ମହାଦେବଙ୍କୁ ଧାରଣା କଲେ ସବୁ ରୋଗ ଗୁଡ଼ିଯିବ ।"

ସାନ୍ତାଣୀ—ସେ ଧାରଣା କି ରକମ ?

ବାବୁ—ରକମ କଣ କି, ଜ୍ୟୋତିଷେ କହିଛନ୍ତି, ପୂରା ପାଞ୍ଚ ପହର କାଳ—ଧରି—ପାଞ୍ଚ ପହର ହେଲେ ଏତେବେଳକୁ ରାତି ନା'ଟାଯାଏ, ଖଣ୍ଡେ ବଡ଼ କମ୍ବଳ ଘୋଡ଼ି ହୋଇ ମୁହଁ ମାଡ଼ି ଲମ୍ବ ହୋଇ ଶୋଇ ପଡ଼ିବି । ଆଉ କିଛି କଥା ମନରେ ନ କରି ପୃଥିବୀରେ ଯେତେ ଠାକୁର ଦେବତା ଅଛନ୍ତି, ସମସ୍ତଙ୍କୁ ଧ୍ୟାନ କରୁଥିବି ।

ସାନ୍ତାଣୀ କହିଲେ—ତାହାହେଲେ ସବୁ ଗ୍ରହ ଅବଳ କଟିଯିବ ତ ?

ବାବୁ ମନ ମଧ୍ୟରେ ଖୁସିଟାଏ ହୋଇ କହିଲେ — "ହଁ, ହଁ, ଖଡ଼ରନ୍ତେ କହୁଛନ୍ତି, ବିଲ୍‌କୁଲ ଗ୍ରହ ଅବଳ କଟିଯିବ । ସେ ଆଉରି ବି ଗୋଟାଏ କଥା ବାରମ୍ବାର କରି କହି ଦେଇଛନ୍ତି । ଦଶଟି ଟଙ୍କା ଠାକୁରଙ୍କ ନାମରେ ମନାସି ମୁଣ୍ଡତଳେ ଦେଇଥିବ, ମାସକ ବାଦ ଦେହ ଭଲ ହୋଇଗଲେ ସେଇ ଟଙ୍କାରେ ଠାକୁରପୂଜା ଆଉ ବ୍ରାହ୍ମଣ ବୈଷ୍ଣବଙ୍କୁ ଭୋଜନ ହଆଯିବ ।"

ସାନ୍ତାଣୀ — ଆଜ କଣ କିଛି ଖାଇବ ନାହିଁ ?

ବାବୁ - ରାମ ! ରାମ ! ଠାକୁର ଦେବତା ଧ୍ୟାନ-ବେଳେ କିଛି କଣ ଖାନ୍ତି ? ହନଯାକ ଉପାସ— ଟୋପାଏ ପାଣି ବି ନା ।

ସାନ୍ତାଣୀ ନିଶ୍ୱାସଟାଏ ପକାଇ କହିଲେ—ଆଚ୍ଛା, ତେବେ ଧାରଣା ହଅ ।

ବାବୁ କହିଲେ—ଆଉ ଗୋଟାଏ କଥା, ଧାରଣା ଘର ମଧ୍ୟରେ ହେବନାହିଁ, ପବିତ୍ର ଥାନ ଲୋଡ଼ା । ଘରେ ଆମିଷ ରନ୍ଧାଯାଏ—ଧୂଆଁ ବୁଲି ଅପବିତ୍ର ହୋଇ ଯାଇଛି । ଆଉ ଦେବତା ତ ଜୁହନ୍ତି; ହର ପାବଂଶ କଥା । ଦାଣ୍ଡ ବଙ୍ଗଳା ପାଖରେ ଯେଉଁ ସାନ ଗମ୍ଭୀର ଘର ସେଇଟି ଘରଟି ପବିତ୍ର । ସେ ଘର ନିରୋଳା ହେବ । ଖୁବ ସାବଧାନ ! ସେ ଘରେ ଛର୍ଲୋଲୋକ ଛୁଇ ପଡ଼ିଲେ - ପାଟି ଶୁଭିଲେ ଧ୍ୟାନ ଫଳ ମିଳିବ ନାହିଁ, ସବୁ ଅକାରଣ ହୋଇଯିବ । ସାବଧାନ ! ସେ ପ୍ରସ୍ତରେ କେହି ଛର୍ଲୋଲୋକ ଛୁଇ ପଡ଼ିବ ନାହିଁ—ପାଟି ବି ଶୁଭିବ ନାହିଁ ।

ସାନ୍ତାଣୀ ବାବୁଙ୍କ କଷ୍ଟ କଥା ମନରେ ପକାଇ ଭାରି ମନୋଦୁଃଖ କରି ଘର ଭିତରକୁ ଚାଲିଗଲେ । ତେତିକିବେଳେ ରୋଷେୟା ବ୍ରାହ୍ମଣ ଆସି ପଚାରିଲା, "ଆଜ୍ଞା ! ଆଜ କଣ ରୋଷେଇ ହେବ ?"

ସାନ୍ତାଣୀ— ଆଜ ବାବୁଙ୍କର ଉପାସ, ମୁଁ ଆଉ କଣ ଖାଇବି ? ରୋଷେଇ ସବୁ ବନ୍ଦ ।

ରୋଷେୟା ବ୍ରାହ୍ମଣ ଟିକିଏ ମୁରୁକିହସା ଦେଇ ଚାଲିଗଲା । ମନରେ ବିଚାରିଲା, ଆମ ସାନ୍ତାଣୀ ଗୋଟିଏ ଅଦ୍ଭୁତ ଝିଅ, ସ୍ୱାମୀ ଉପରେ ଭକ୍ତିର ସୀମା ନାହିଁ, ବାବୁ ଟିକିଏ ବାଧକରିଲେ, ଆପେ ନ ଖାଇ ନ ପିଇ ହନଯାକ ପାଖରେ ବସି ସେବା କରୁଥିବେ, ଆଉ ରାଗିଲେ ତ ବାଡ଼ି ପଡ଼ୁ, ଗୁଞ୍ଜୁଣି ପଡ଼ୁ, ଯାହା ହାତରେ ପଡ଼ୁ ବାଡ଼େଇବାକୁ ଧାଇଁବେ—ଯାବତ ଖରାପ କଥାରେ ଗାଳିଦେବେ । ହେଲେ ସାନ୍ତାଣୀଟି ବଡ଼ ଭଲ, ବଡ଼ଲୋକ ଝିଅ, ବଡ଼ଲୋକ ବୋହୂ, ମନ ବି ସେଇପରି ବଡ଼ ; ମାତ୍ର ଟିକିଏ ରାଗୀ, ମୁହଁଟା ବଡ଼ କଡ଼ା ।

ବାବୁ ମକା ଚାକର ଟୋକାକୁ ଦାଣ୍ଡପଟକୁ ଡାକି ଖୁବ୍ ଭୁନ ଭୁନ ଖୁବ୍ ସାକୁଲେଇ ସାକୁଲେଇ କହିଲେ, 'ଶୁଣ ମକରୁ, ଗୋଟାଏ କାମ ମୋ ପାଇଁ କରିବୁ । ଏଇ କମ୍ବଳ ଖଣ୍ଡ ଘୋଡ଼ି ହୋଇ ଗମ୍ଭୀର ଭିତରେ କବାଟକୁ ଆଉଜି ଶୋଇ ଥା । ରାତି ଘଡ଼ିକ ସରିକି ମୁଁ ଲେଉଟି ଆସିବି, ତେତେବେଳ ଯାଏ ଶୋଇଥିବୁ । ଖବରଦାର ! ଘରୁ ବାହାରିବୁ ନାହିଁ ।'

ମକା - ଆଜ୍ଞା ନା, ଆଜ୍ଞା ନା, ମୁଁ ପାରିବି ନାହିଁ, ସାନ୍ତାଣୀ ଗାଳି ଦେବେ, ଖପା ହେବେ ।

ବାବୁ ଖପା ହୋଇ କହିଲେ, "ପାଜି, ଦୁଷ୍ଟ, ଭୂତ । ମୋ କଥା ଶୁଣିବୁ ନାହିଁ ? ଜାଣୁ, ବାଡ଼େଇ ପକାଇବି ।" ଟିକିଏ ବାଦ୍ କହିଲେ, "ନାହିଁରେ ମକରୁ ନାହିଁରେ, ମୁଁ ଭୁଚ୍ଛା ଟାପରା କରୁଥିଲି ! ଦେଖ ମକରୁ, ତୁ କେନ୍ଦ୍ରାପଡ଼ା ମାମୁ ଘରକୁ ଯିବୁ କହୁଥିଲୁ, କାଲି ଯିବୁ । ଚାରିଦିନ ଛୁଟି ଦେଲି, ଏଇ ନେ ଚାରିଟା ଟଙ୍କା

ଖରଚ କରିବୁ, ଆଉ କାଲି ତୋତେ ଗୋଟାଏ ଅଙ୍ଗା କିଣିଦେବ ।”

ମନରୁ ଆଉ କିଛି କଥା ନ କହି କମ୍ବଳ ଘୋଡ଼ି ହୋଇ ଗମ୍ଭୀର ଭିତରେ ଧାରଣା ଦେଇ ଶୋଇ ପଡ଼ିଲା ।

ଏଣେ ସାଆନ୍ତାଣୀଙ୍କ ମନରେ ସୁଖ ନାହିଁ । ଗାଧୋଇ ଆସି ଆପଣା ଶୋଇବା ଘରେ ଖଣ୍ଡେ ଆସନ ପାରି ବସିଲେ, ଯେତେ ଠାକୁର ଦେବତାଙ୍କ ନାମ ମନରେ ପଡ଼ିଲା, ବାବୁଙ୍କ ଗ୍ରହ ଅବଳ ଶାନ୍ତିପାଇଁ ପ୍ରାର୍ଥନା କଲେ । ଧବଳେଶ୍ୱରଙ୍କୁ ସହସ୍ର ପଞ୍ଚାମୃତ ମାନିଲେ । “ହେ ମା କଟକଚଣ୍ଡୀ ! କାଳିଗଳାର କାଳୀ ଠାକୁରାଣୀ ! ବାବୁଙ୍କ ଦେହ ଭଲ ହୋଇଯାଉ, ମୁଁ ଦୁହିଁଙ୍କୁ ଦୁଇଖଣ୍ଡ କଳା କନା ଶାଢ଼ୀ, ଯୋଡ଼ାଏ କଳା ବୋଦା ବଳି ଦେବି ।” ଏପରି ଠାକୁର ଦେବତା ଡାକୁ ଡାକୁ ଦିନ ତିନି ପହର ବିତିଗଲାଣି । ମନରେ କଲେ, ବାବୁ ଧ୍ୟାନରୁ ଉଠି କଣ ଖାଇବେ ? ଅନ୍ନ ତ ଛୁଇଁବେ ନାହିଁ, ଫଳାହାର କରିବେ । ଚାଟଲିକଦଳୀ, ନଡ଼ିଆ, ଛେନା, ଦୁଧ, ଦହି ସବୁ ସଜଳ କରି ଘରେ ଥୋଇଦେଲେ । ଥରକୁ ଥର ବାହାର ଘୁଇକୁ ଅନାଉ-ଛନ୍ତି, ଆଉ ଦିନ ଦୁଇ ଘଡ଼ି ଅଛି—ଖରା ବାହାର ଖରା ବୃକ୍ଷ ଉପରକୁ ଉଠି ଗଲାଣି । ହାତରେ ଆଉ କିଛି ପାଉଛି ନାହିଁ, ଘର ବାହାରେ ନହର ପହର ହେଉଛନ୍ତି । ସନ୍ଧ୍ୟା ହୋଇ ଆସିଲା, ଧୀରେ ଧୀରେ ଗମ୍ଭୀର ଦୁଆର ପାଖକୁ ଗଲେ । ବାବୁ କହିଛନ୍ତି, ତିନିଲୋକ ଘୁଇ ପଡ଼ିବ ନାହିଁ । ତଳେ ଗୃହପାଖକୁ ଅନାଇଲେ, ନାହିଁ ତ, ଘୁଇ ପଡ଼ି ନାହିଁ ! କାଳେ ପାଟିରୁ କଥା ବାହାରି ପଡ଼ିବ, ଆପଣା ପଣତକାନି ପାଟିରେ ଯାକି ଦେଲେ, ଅଳ୍ପ ଟିକିଏ କବାଟ ମେଲେଇ-ଦେଲେ, ଘର ଭିତରଟା ଭଲ ଦିଶୁ ନାହିଁ, ଅନ୍ଧାରିଆ, ବାବୁ ସ୍ଥିରହୋଇ ଧ୍ୟାନରେ ପଡ଼ିଛନ୍ତି ।

“ହାୟ ! ହାୟ ! ବାବୁଙ୍କୁ କେତେ ବାଧୁଥିବ ? ହେ ଠାକୁର ଦେବତାମାନେ ! ମୋ ବାବୁଙ୍କୁ ଭଲ କରିଦିଅ । ଦେବତାମାନେ ସତ ଅଛନ୍ତି, ଦୁଃଖୀର ଗୁହାରି ଶୁଣନ୍ତି, ମୁଁ କେତେ ପ୍ରାର୍ଥନା କଲି, ବାବୁଙ୍କ ନିଶାଖିଆ ଛଡ଼ାଇ ଦିଅ । ମା କାଳି ଠାକୁରାଣୀ ! ବାବୁଙ୍କ ଦେହ ଭଲ କରିଦିଅ । ଗୋଟାଏ କାଳିଆ ବୋଦା, ଆଉ ଗୋଟାଏ କାଳିଆ କୁକୁଡ଼ା ବଳି ଦେବି ।” ଭୂଇଁରେ ମୁଣ୍ଡ ଲଗାଇ ଠାକୁର ଦେବତାଙ୍କୁ ତେର ଥର ଜୁହାର କଲେ ।

ତହିଁବାଦେ ଅଳ୍ପ ଦୁଆର ମେଲାକରି ଭିତରକୁ ଯିମିତି ଗୋଡ଼ ବଢ଼େଇ ଦେଇଛନ୍ତି, ଅନ୍ଧାରିଆ – କମ୍ବଳ ଭଲ ଦିଶୁନାହିଁ, ଏକାବେଳକେ ବାବୁଙ୍କ ମୁଣ୍ଡରେ ଗୋଡ଼ ପଡ଼ିଗଲା । ଜିଭ କାମୁଡ଼ି ପଛକୁ ନେଉଟି ପଡ଼ିଲେ, କାନ୍ଦ ପକାଇଲେ, ‘ହାୟ ! ମୁଁ କେଡ଼େ ଅପରାଧ କଲି ।’ ହାତଯୋଡ଼ି ବାବୁଙ୍କ ଉଦ୍ଦେଶ୍ୟରେ, ଠାକୁର ଦେବତାଙ୍କ ଉଦ୍ଦେଶ୍ୟରେ ତେର ଥର କ୍ଷମା ମାଗିଲେ । ତହିଁ ଉତ୍ତାରେ ଧୀରେ ଧୀରେ ଭଲ କରି ଅନାଇ ଭିତରକୁ ଗଲେ । ବାବୁଙ୍କ ଦୁଇ ଗୋଡ଼ ତିନି ତିନି ଥର ମୁଣ୍ଡରେ ଲଗାଇ ଜୁହାର କଲେ । ଜୁହାର କଲାବେଳେ କମ୍ବଳ ଗୋଟାଯାକ ଥରି ଯାଉଥାଏ । ଜୁହାରବେଳେ ବାବୁଙ୍କ ଗୋଡ଼ରୁ, ହାତରୁ ଝାଳ ଲାଗିଲା । ‘ହାୟ ! ହାୟ ! ବାବୁ ଝାଳରେ ବୁଡ଼ି ଗଲେଣି ।’ ପଣତକାନିରେ ଗୋଡ଼ ପିଠି ଭଲ କରି ପୋଛି ଦେଲେ । ମୁହଁ ପୋଛିବାକୁ ଯାଇ ଦେଖିଲେ, ମୁଛ ହାତକୁ ଲାଗିଲା ନାହିଁ । ‘ଏଁ—ଏ କଅଣ ? ବାବୁଙ୍କ ମୁଛ କାହିଁ ?’ ଦୁଇ ଥର ଅଣ୍ଡାଳିଲେ, ତିନି ଥର ଅଣ୍ଡାଳିଲେ, ‘ନାହିଁ ତ – ମୁଛ କାହିଁ ?’ ଘୋର ସନ୍ଦେହ ହେଲା, କବାଟଟା ଭଲକରି ମେଲାଇ ଦେଇ ଅନାଇଲେ, କମ୍ବଳଟା ଟାଣି ପକାଇଲେ । ଘାରି ଗରିଯାଇ ପଛକୁ ତେଇଁପଡ଼ି ପାଟିଟାଏ କରି କହିଲେ, “ଡାକୁଣୀ-ଖିଆ—ଅଳପଇସିଆ—ନଈଗୁଆ, କ ରେ ମଙ୍ଗା, ତୁ

ଏଠି କିଁଆ ପଡ଼ିଛୁ ରେ ?'' ମନ୍ତା ଆଉ କଣ କହିବ ? ଗ୍ଲେରଟି ପରି ହାତଯୋଡ଼ି କାନ୍ଥକୁ ଆଉଜି ଚୁନ ହୋଇ ଛିଡ଼ା ହୋଇଛି । ସାନ୍ତାଣୀ ଘଡ଼ିଏ ଯାଏ ଗର୍ଜନ କରି ଥକି ପଡ଼ିଲେଣି । ତାହାବାଦେ ମନରେ ବିଚାର କଲେ—"ନାହିଁ ନାହିଁ, ଗୋଳମାଳ କଲେ ଭଲ ହେବ ନାହିଁ । ଅସଲ କଥାଟା କଣ ବୁଝିବାକୁ ହେବ ।' ମନ୍ତାକୁ ସଲରେ ରଖିବାକୁ ହେବ । ଧୀରେ ଧୀରେ କଅଁଳେଇ କଅଁଳେଇ କହିଲେ, "ଆରେ ମକରୁ ! ତୁ ମାମୁ ଘରକୁ ଯିବୁ କହୁଥିଲୁ ପରା ? ଯା— କା'ଲି ଯିବୁ । ଏଇ ନେ ଚାରିଟା ଟଙ୍କା, ବାଟଖରଚ କରିବୁ, ଖଜା କିଣି ଖା'ଇବୁ । କା'ଲି ତୋତେ ଗୋଟାଏ ମାଣିଆବନ୍ଧ ଜଥା ଦେବି, ପିନ୍ଧିବୁ । ଉଚ୍ଛୁଣି କିଛି ପାଟି କରି ନା—ଯା, ଗ୍ରେଷେଇଘର କଣରେ ଚୁନ ହୋଇ ବସିଥିବୁ ।''

ମନ୍ତା ମନେ କରିଥିଲା, ସାନ୍ତାଣୀ ବାଡ଼େଇ ପକା-ଇବେ । ଏ' କଣ, ନଗଦ ସାଙ୍ଗେ ସାଙ୍ଗେ ଚାରିଟା ଟଙ୍କା, ପୁଣି ଯୋଡ଼ାଏ ଲୁଗା ମିଳିବ । ମନର ଆନନ୍ଦଟା ସମ୍ଭାଳି ପାରୁ ନାହିଁ । ସାନ୍ତଙ୍କ ଟଙ୍କା ପୁଞ୍ଜାକ ଅଣ୍ଟିରେ ଖୋଷିଥିଲା, କାଢ଼ି—ଏ ଟଙ୍କା ସାଙ୍ଗରେ ମିଳେଇ ଦୁଇଥର ତିନିଥର ଗଣିଲା । ଆଠଟଙ୍କା ଭଲ-କରି ଅଣ୍ଟିରେ ଖୋଷି ରୋଷେଇଘର କୋଣରେ ଲୁଚିଲା । ସାନ୍ତାଣୀ ଗମ୍ଭୀର ଭିତରେ ମନ୍ତା ଜାଗାରେ ଧାରଣା ଦେଇ ପଡ଼ି ରହିଲେ ।

ରାତି ପହରକ ସରିକି ଚନ୍ଦ୍ରମଣି ବାବୁ ଚୁନ ଚୁନ ଆସି ଗମ୍ଭୀର ଦୁଆରେ ପହଞ୍ଚି ଗଲେ । ପୂରା ନିଶା, ଚାଲିବା ବେଳେ ଗୋଡ଼ ଟଳି ଯାଉଛି, ପାଟି ଖନି ବାଜୁଛି, ଧଡ଼ିକରି କବାଟଟା ମେଲିଇ ଦେଲେ । ମନ୍ତା ଧାରଣା ଦେଇ ପଡ଼ିଛି । ବାବୁ ଭାରି ଖୁସିଟାଏ ହୋଇ ନାଚ ନାଚ ଗୀତ ଆରମ୍ଭ କଲେ ।

'ବାହାବା ମଜାଦାର !
ମଦ ଗଞ୍ଜା ଗୁଣ ଯେ ଜାଣେ ସେଇ ତ ସମଜଦାର ।

"ଉଠ ଭାଇ ମନ୍ତୁ ! ସାବାସ ବାବା ମନ୍ତ୍ ! ମେରି ଦୋସ୍ତ ମନ୍ତାମ୍ ! ଶୁଣ ମନ୍ତା, ଉଠ, ଉଠ । ଏଥର କେଉଁ ଶଳା ଶାଳୀକି ଡର ରେ ? ମନ୍ତା ! ଆଜିକା ମଜା କଥା କେତେ କଣ କହିବ ? ତୋ ସାନ୍ତାଣୀ ପୋଇଲିଟା ହମାସ ହେଲା ଅଟକାଇଛି—ପାଟି ଚଢ଼ି ଯାଇଥିଲା—ହମାସର ମଜା ହନକେ ଫଟେ ! ଆରେ ସେ କଣ ଆଜିକା କଥା ? ତା ସଙ୍ଗରେ ତିନି ବରଷର ଦୋସ୍ତି, ପ୍ରୀତି । ସେଇ ଯେ ଗୋପାଳ ବାବୁ ଦୁଆରକୁ ନାଚିବାକୁ ଆସିଥିଲା, ସେଇ ହନୁ ଦୋସ୍ତି । ସାବାସ ! ମଜେଦାର ! ତା ନାମ କଣ ଜାଣୁ ? ତୋ ସାନ୍ତାଣୀ ନାମଟା ହେଲା, ଫୁଲ—ଚୂନା ! ଫୁଲ କଣ ନା, ପୋଖରୀରେ ଫୁଟେ, ଚୂନା ଚକୁଳି ପିଠା ହୁଏ । ଛି, ଛି, ଛି ! କି ଅପରିଚ୍ଛନିଆ ନାମ ! ତା ନାମ ଉସ୍—ମାନ୍—ତା—ରା ! ବାହାବା ! ମଜେଦାର ! ଜିତେ ରହ ମେରି ଉସ୍‌ମାନ୍ ତାରା ! ନାମଟା ଯିମିତିକା, ଗୁଣ ବି ସେଇ ରକମ । ଗୁଣ ତ ଗୁଣ ଉସ୍‌ମାନ୍ ତାରା—କ୍ୟା ମଜେଦାର ! ଦେଖ ତ ମନ୍ତାମ୍, ତାର କେତେ ବୁଦ୍ଧି, କେତେ ମେହେରବାନ ! ପୁରୁଣା ଦୋସ୍ତି ଭୁଲି ପାରେ ନାହିଁ । କାଲି ଆସି ଯିମିତି କଟକରେ ଗୋଡ଼ ଦେଇଛି, ମୋତେ ଡାକି ପଠାଇଛି । ମୁଁ ତାକୁ ଦେଖି ନିଧି ପାଇଗଲି, ସେ ତ ଆନନ୍ଦରେ ହସି ହସି ଢଳି ପଡ଼ିଲା । ମୁଁ ବିଛଣା ରେ ବସିଛି କି ନା, ଲାଗିଲା ମାଲର ଧୂମ । ସବୁ ଠିକ୍ ଠାକ୍ ସଜିଲ କରି ରଖିଛି । ଚିପା ଗଞ୍ଜେଇ—ମଦତ ହୁକା—ମେରୁ, ସବୁ ଠିକ୍ । ଆଗ ଫିଟିଲା ମାଲ ବୋତଲ । ଆସ୍କା ରମ୍ ନୁହେ, ଅସଲ ବିଲାତି, ନମ୍ବର ଉଆନ୍ ! ତୁ ଯେବେ ଗ୍ଲାସେ ଟାଣି ଦିଅନ୍ତୁ, ଦେଖନ୍ତୁ ମଜା ! ଆମେ ଦିଜଣ ସଙ୍ଗେ ସଙ୍ଗେ ବୋତଲ ଖାଲି କରିଦେଲୁ ! ଖାଲି—ରି—ଲୁଛା—ରି, ଟୋପାଏ ପାଣି ନାହିଁ । ତୋ ସାନ୍ତାଣୀ ରୋଜ ନିଜେ ତିଆରି କରେ ପୁରି, ଦରଭଜା, କ୍ଷୀରି । ଆରେ ଛି ! ସେ ଗୁଡ଼ାକ ତ ବିରାଡ଼ି ଖାଏ । ସେ ଯେ କରି ରଖିଥିଲା ଲୁଣିଆ ବୁଟ-ଭଜା, ଶୁକୁଆ ପୋଡ଼ା, ମାଲ୍

ସଙ୍ଗକୁ ମଜାଦାର, ପେଟେ ମାତେଦେଲ । ଦେ ମଜାଦାର ! ତୋ ସାନ୍ତାଣୀକୁ ଚଡ଼ାଦେଇ କମିଣ୍ଡକା ଦଶ ଟଙ୍କା ମାର ନେଇଥିଲ । ସେ ସବୁ ମଉଜ ଜାଗାକୁ ଛୁଚ୍ଛା ହାତରେ କେହି ଯାଏ ? ତା ଆଗରେ ଟଙ୍କା ସିମିତ ଥୋଇ ଦେଇଛୁ, ଟିକଏ ଗୃହିଁ ଦେଇ ମୁହଁ ମୋଡ଼ ଦେଲ୍ । ମୁଁ ହସିଆର ମଣିଷ, ତୋ ସାନ୍ତାଣୀ ପର କଣ ହେଣ୍ଡା ? ବୁଝି ପାରିଲ, ପସନ୍ଦ ହେଲ ନାହିଁ । କମିନ୍ତ ପସନ୍ଦ ହେବ ରେ ? ଦନ ଘଣ୍ଟରେ ମଜୁରି କଲେ ଶହ ଶହ ପାଏ । ମୁଁ କହି ଆସିଛୁ, କାଲ ଶହେ ଟଙ୍କା ଦେବ । ସେ ହସି ହସି କହିଲା, 'ଟଙ୍କା କଣ ହେବ ? ତୁମେ ଆସିବ ।' ସତ ସତ, ସେ କଣ ଟଙ୍କା ଗୃହେଁ ? ଗୃହେଁ ମୌଜ । ସେ ଟଙ୍କା ଗୃହେଁ ନାହିଁ, ତାର କଣ ଟଙ୍କାର ଅଭାବ ? ହେଲେ ମୁଁ କଣ ଅସତ୍ୟ ହେବ ? ଜବାବ ଦେଇଛୁ ତ, ଟଙ୍କା ଦେଇଛୁ । 'ମରଦ୍‌କ ବାତ୍, ହାତୀକା ଦାଁତ୍ ।' କାଲ ଟଙ୍କା ଶହେ କୋଉଠୁ ଆଣିବ ଜାଣୁ ? ହୋ ହୋ ହୋ ! ବଡ଼ ମଜା । ତୋ ସାନ୍ତାଣୀ ନାଟବନ୍ଧ ଟଙ୍କା ସେହି ସିନ୍ଧୁକରେ ରଖିଛୁ । ଗୋଟାଏ ଲୁହାକଣ୍ଟାରେ ସିନ୍ଧୁକଟା ଫିଟାଇ ପକାଇ ଆଚ୍ଛା କର ଚଟା ଦେବ । ବ ତେନ ଥର ଟଙ୍କା ନେଲଣି । ସାନ୍ତାଣୀ ବୋପା, ତା ଗୋସାଇଁ ବାପା ବ ବୁଝି ପାରିବ ନାହିଁ । ସିନ୍ଧୁକରେ ଢେର ଟଙ୍କା ରଖିଛୁ, ମୋ ହାତରେ ପଡ଼ଗଲେ କଟକର ଫାଙ୍କେ ମଉଜରେ ଉଡ଼ାଇ ଦଅନ୍ତ । ତୋ ସାନ୍ତାଣୀ ଯଦି ଗିଲାସେ ମଦ ଟାଣି ଦଅନ୍ତା, ବୁଝନ୍ତା କେଡ଼େ ମଉଜ । ସେ ମଉଜ ବୁଝିଛୁ ଉସ୍—ମନ୍—ଚାଗା । ଏଇଟା କାଠ ମୂର୍ତ୍ତିଟାଏ ! ଆଜ ମାଲ ସଙ୍ଗରେ ପେଟେ ଗୃନ୍ ଫଟେଇଛୁ । ତୋ ସାଆନ୍ତାଣୀ ବାପ ଶଳା ବ ସାତ ଜନ୍ମରେ ଦେଖି ନ ଥିବ ।''

ସାନ୍ତାଣୀ କମ୍ବଳ ଖଣ୍ଡିକ ପାଞ୍ଚ ହାତ ଦୂରକୁ ଫୋପାଡ଼ ଦେଇ ଡେଇଁ ପଡ଼ଲେ । ଘୋର ଗୋଟାଏ ଗର୍ଜନ କର କହିଲେ, "କଣ କହିଲୁ, କଣ କହିଲୁ ମଦୁଆ, ଯୋଗିନୀଖିଆ ! ମୋ ବାପ ତୋ ଶଳା ! ବନଯାଉ ଯାଇ କେଉଁଠି ପଡ଼ଥିଲୁ ରେ ? ହୁଁ କଣ—ଉସ୍‌ମାନ୍ ଚାଗ ?''

ବାବୁ ତ ଉତ୍ତରରେ ଘୁନ୍‌ଆ ହୋଇଗଲେଣି, ଚଞ୍ଚଳ କହି ପକାଇଲେ, ''ନା—ନା, ମୁଁ କାହିଁ ଯାଇ ନାହିଁ; ଟିକଏ ବାହାରକୁ ପ୍ରସ୍ରାବ କରବାକୁ ଯାଇଥିଲ— ତୁମ ରାଣ, ତୁମ ମୁଣ୍ଡ ଛୁଉଁଛୁ ।''

ସାନ୍ତାଣୀ ତ କ୍ରୋଧରେ ଅଜ୍ଞାନ । ''ହଁ ରେ ମୋ ମୁଣ୍ଡ ଛୁଇଁଲୁ, ମୋ ମରବାକୁ ଗୃହିଁଛୁ ?''

ଘରେ ଗୋଟାଏ ଗୁଞ୍ଚୁଣି ପଡ଼ଥିଲା; ସେଇଟା ଧର ଦେ ପ୍ରହାର—ପ୍ରହାର—ପ୍ରହାର – ମୁଣ୍ଡରେ, ପିଠିରେ, ହାତରେ ଯେଉଁଠି ବାଜ ! ବାବୁ ସମ୍ଭାଳ ପାରଲେ ନାହିଁ, ଦେ ଦୌଡ଼ ! ନିଶା ଝୁଙ୍କରେ ଗୋଡ଼ ଟଳମଳ ହେଉଛୁ । ଦୁଲଦାଲ ପଡ଼ଗଲେ । ତା ଉପରେ ବ ପାଣି ଅସରା ପର ପଡ଼ୁଛୁ ।

ସାନ୍ତାଣୀ ଥକ ଯିବାରୁ ଘର ଭିତରକୁ ଯାଇ ଭୂଇଁରେ ଲଠ୍ କର ଶୋଇ ପଡ଼ଲେ । ଆକୁଳ ହୋଇ କାନ୍ଦୁଛନ୍ତି । କାନ୍ଦୁ କାନ୍ଦୁ ଯେତେ ଠାକୁର ଦେବତା ମନରେ ପଡ଼ଲେ ସମସ୍ତଙ୍କୁ ଡାକ କ୍ଷମା ମାଗିଲେ, "ହେ ଠାକୁର ଦେବତାମାନେ ! ମୋତେ କ୍ଷମାକର, ମୋ ଦେବତା ସ୍ୱାମୀକୁ ବାଡ଼େଇଛୁ, ବଡ଼ ଅପରାଧ କରିଛୁ, ଦୋଷ କ୍ଷମାକର, ଆଉ ମୋ ସ୍ୱାମୀକୁ ସୁବୁଦ୍ଧି ଦଅ ।'' ରାତି ପାହି ଗଲଣି । ସାନ୍ତାଣୀଙ୍କ ରାଗଟା ବ ତୁଲିଗଲଣି । ଧୀରେ ଧୀରେ ଯାଇ ଦେଖିଲେ, ବାବୁ ଠା ଭୂଇଁରେ ପଡ଼ଛନ୍ତି । ନିଶା ଛାଡ଼ଗଲଣି, ସକାଳୁଆ ଶୀତଳ ପବନ ଲାଗି ଘୋର ନିଦଟାଏ ହୋଇଛୁ । ଘଡ଼ ଘଡ଼ କର ନାକ ଡାକୁଛୁ । ସାନ୍ତାଣୀ ଅନାଇ ଦେଖିଲେ, ପିଠି, ହାତ, ଗୋଡ଼ ଜାଗା ଜାଗା ଗୁଞ୍ଚୁଣିମାଡ଼ରେ ଫୁଲି ଯାଇଛୁ । ଗୋଟାଏ ଗୋଟାଏ ଜାଗାରେ ରକ୍ତ ବହି ଶୁଖି ଗଲଣି । ଏ ସବୁ ଦେଖି ଘୋର ଆକୁଳରେ

କାନ୍ଦିଲେ—"ହାୟ ! ମୁଁ କଣ କଲି ! ସ୍ୱାମୀଦେବତାଙ୍କୁ ଗୁଞ୍ଜ୍ ଣିରେ ବାଡ଼େଇଲି ! ହାୟ ! ହାୟ ! ମୋ ଦଶା କଣ ହେବ ?" ଆଉ ଥରେ ଡାକିଲେ—"ଠାକୁର ଦେବତାମାନେ ! ମୋ ଦୋଷ କ୍ଷମା କର ।" ଝର ଝର ହୋଇ ଦୁଇ ଆଖିରୁ ଦୁଇ ଧାର ବହୁଛି । ଗିନାଏ ଗଣି ମାଲପା ଆଣି ଫୁଲି ଜାଗାମାନଙ୍କରେ ଧୀରେ ଧୀରେ ଘଷି ଦେଲେ, ଆଉ ଗିନାଏ ମାଲପା ଆଣି ଦେହଯାକ ଲଗାଇ ଦେଲେ । ଦିନ ଦୁଇ ଘଡ଼ି ସରିକି ବାବୁଙ୍କ ନିଦ ଭାଙ୍ଗିଲା । ଟିକିଏ ଅନାଇ ଦେଲେ, ସାନ୍ତାଣୀ ପାଖରେ ବସିଛନ୍ତି । ମନରେ ଭାରି ଗୋଟାଏ ଡର ପଶିଗଲା, କେଜାଣେ ଆଉ ଥରେ ବା ଗୁଞ୍ଜ୍ ଣିରେ ବାଡ଼େଇ ପକେଇବେ । ଆଉ ନିଦ ତ ନାହିଁ, ଆଖି ବୁଜି ଘାଲେଇ ପଡ଼ିଥାନ୍ତି । ଆଉ ଥରେ ଧୀରେ ଧୀରେ ଅନାଇ ଦେଖିଲେ, ସାନ୍ତାଣୀଙ୍କର ରାଗର ଚିହ୍ନ ନାହିଁ । ଦୁଇ ଆଖିରୁ ଦୁଇଟା ଧାର ବହି ଯାଉଛି, ଧୀରେ ଧୀରେ ଗୋଡ଼ରେ ତେଲ ଘଷି ଦେଉଛନ୍ତି । ସାନ୍ତାଣୀ ବୁଝି ପାରିଲେ, ବାବୁଙ୍କର ନିଦ ଭାଙ୍ଗିଗଲାଣି । ଗରମାଠିଆ ଜଳ ଅଣାଇ ଶୋଇବା ଜାଗାରେ ଥୋଇଲେ—ବାବୁଙ୍କ ହାତ ଧରି ଉଠାଇ ବସାଇଲେ । ମୁଣ୍ଡରେ ଦେହରେ ଜଳ ଢାଳି ଭଲ କରି ସ୍ନାନଟା କରାଇ ଦେଲେ । ବାବୁଙ୍କର ନିଶାର ଖୁଆରିରେ ଦେହଟା ଜଳୁଥିଲା, ଜଳ ପଡ଼ି ବଡ଼ ଆରାମ ଲାଗୁଥାଏ । ଆଖି ବୁଜି ଠାକୁରଟି ପରି ଧୀର ହୋଇ ବସିଥାନ୍ତି । ସାନ୍ତାଣୀ ଶୁଖିଲା ଲୁଗା ପିନ୍ଧାଇ ଦେଲେ । ରୋଷେୟା ଭାତ ପରଷି ଗଲା । ସାନ୍ତାଣୀ ବଳେଇ ବଳେଇ ହିଟା ଭୋଜନ କରାଇଲେ; ତହିଁବାଦେ ଭଲ କରି ଶେଯଟା ପାରି ବାବୁଙ୍କୁ ଶୁଆଇ ଦେଲେ । କାଲିଠାରୁ ସାନ୍ତାଣୀଙ୍କର ଉପାସ, ଅନ୍ନ ବି ଜଳ ସ୍ପର୍ଶ ନାହିଁ । ସ୍ୱାମୀଙ୍କ ଗୋଡ଼-ତଳେ ବସି ହାତ ବୁଲାଉଛନ୍ତି । ଦିନଯାକ ଆଖିରୁ ପାଣି ଶୁଖିବାକୁ ନାହିଁ । ମନ ମଧ୍ୟରେ ଠାକୁର ଦେବତାଙ୍କୁ ଡାକୁଛନ୍ତି—"ହେ ପ୍ରଭୁ, ମୋ ଦୋଷ କ୍ଷମାକର, ମୋ ସ୍ୱାମୀଙ୍କୁ ସୁବୁଦ୍ଧି ଦିଅ ।" ଦିନଯାକ ସ୍ୱାମୀ ସ୍ତ୍ରୀ କାହାରି ମୁହଁରୁ କଥା ବାହାରି ନାହିଁ, ଘରେ ଗୃହକର ଗୃହକରଣୀ ମଧ୍ୟ ସମସ୍ତେ ତୁନି ତାନି । ସ୍ୱାମୀ ସ୍ତ୍ରୀ କେହି କାହାରି ମୁହଁକୁ ଲାଜରେ ଭରସି ଚାହିଁ ପାରୁ ନାହାନ୍ତି । ପରସ୍ପର ଦୁହେଁ ଆପଣା ଆପଣାକୁ ଅପରାଧୀ ମଣି ମନସ୍ତୁଷ୍ଟି ପାଇଁ ସାଧ୍ୟାନୁସାରେ ଚେଷ୍ଟା କରୁଥାନ୍ତି । ବାବୁଙ୍କ ମନ ମଧ୍ୟରେ ପ୍ରତିଜ୍ଞା, ଆଜିଠାରୁ ସବୁ ନିଶା ଗୋରକ୍ତ, ବସ୍ତୁ ।

ଦୁଇମାସ ଗଲା, ଚାରିମାସ ଗଲା, ଛ ମାସ ବି ଗଲାଣି । ସାଇ ପଡ଼ିଶା ଜ୍ଞାତି ବନ୍ଧୁ ବାବୁମାନେ ଦେଖିଲେ, ଚନ୍ଦ୍ରମଣି ବାବୁଙ୍କ ଘରେ ରୋଜ ସଞ୍ଜ ସକାଳ ଯେ ଦୁଇ ଜଣଙ୍କ ମଧ୍ୟରେ ଭେଟ ଭେଟ ଲାଗିଥାଏ, କହୁ ଶୁଣାଶୁଣି ନାହିଁ । ଦୁଇଜଣ ଏକ ଜାଗାରେ ବସି ହସି ଖୁସି କଥାବାର୍ତ୍ତା କରନ୍ତି, କିତାପ ପଢ଼ନ୍ତି । ଉତ୍କଳ ସାହିତ୍ୟ, ମୁକୁର, ଦୀପିକା ଖବରକାଗଜ ପଢ଼ନ୍ତି । ବାବୁ ହେଣ୍ଡନୋଟରେ ଢେର ଟଙ୍କା ଦେଣା କରି ପକାଇଥିଲେ, ବର୍ଷଟା ଭିତରେ ଅଧାଅଧି ଶୁଝି ଗଲାଣି । ବାବୁ ଘରୁ ବାହାରନ୍ତି ନାହିଁ । କେଉଁ ଜାଗାରୁ ନାଚ ତାମସାର ନିମନ୍ତ୍ରଣ ଆସିଲେ, ସାନ୍ତାଣୀ ହେଣ୍ଠାରିଲେ, ପେଲପେଲି କଲେ ବି ବାହାରୁ ନାହାନ୍ତି । ଦିନେ ଦିନେ ସଞ୍ଜବେଳେ ଦୁଇଜଣ ବଗିଟିରେ ବସି ସହର-ଯାକ ବୁଲି ଆସନ୍ତି ।

ସହର ଲୋକେ, ସାଙ୍ଗସୁଙ୍ଗା ବାବୁମାନେ ଦେଖି ଶୁଣି ଆଶ୍ଚର୍ଯ୍ୟ ! ଆରେ କଥା କଣ ? ବାବୁଙ୍କ ବାପେ ଜମିଦାର ଶ୍ୟାମ ପଟ୍ଟନାୟକେ ମାଷ୍ଟର ରଖି ବାବୁଙ୍କୁ ପଢ଼ାଇଲେ । ସ୍କୁଲରେ ବି ପଢ଼ୁଥାନ୍ତି । ଏତେ ପଢ଼ିଲେ କଣ ହେଲା ? ବଦ୍ ସଙ୍ଗରେ ପଡ଼ି ଘୋର ନିଶାଖୋର ହୋଇଗଲେ । କେବଳ ଦିନ ରାତି ବଦ୍‌ଖିଆଲି, ଟଙ୍କା ଏକାବେଳକେ ଗଲା, ରାତିଯାକ ମନ୍ଦ ଯାଗା-ମାନଙ୍କରେ ବୁଲାବୁଲି, ଯେତେ [illegible] ଆ[illegible] ମନ୍ଦଲୋକ ସାଙ୍ଗ । ଭଲ ଲୋକେ ପାଞ୍ଚଜଣ କହୁଲେ, 'ପୁଅ ବଡ଼ ହେଲେ ଚରିତ୍ର ବଦଳି ଯିବ ।' ରାମକୃଷ୍ଣ ମହାନ୍ତିଙ୍କର

ଗୋଟିଏ ଝିଅ, ପରମା ସୁନ୍ଦରୀ,ଖୁବ୍ ଗୁଣବତୀ—ଜମିଦାର ବାବୁ ତାକୁ ବୋହୂ କରି ଆଣିଲେ । ତେବେ ବି ପୁଅ ସୁଧୁରିଲା ନାହିଁ, ଘରୁ ମାଲମତା ନଗଦ ଟଙ୍କା ଚୋରି କରି ଉଡ଼ାଏ, ଦେଣା ପାଞ୍ଚ ଟଙ୍କା ନେଇ କୋଡ଼ିଏ ଟଙ୍କାର ହେଣ୍ଡନୋଟ୍ ଲେଖିଦିଏ । ଏଣେ ଘର କଥା, ଜମିଦାରୀ କଥା କିଛି ବୁଝିବାକୁ ନାହିଁ । ଜମିଦାର ବାବୁ ଦେଖିଲେ, ଆଉ ହେବ ନାହିଁ, କୁଳାଙ୍ଗାରଟା ବିଷୟ ସମ୍ପତ୍ତି ସବୁ ଉଡ଼େଇ ଦେବ । ବୋହୂ ଶ୍ରୀମତୀ ସୁଲୋଚନା ଦେଈ ନାମରେ ଚଳାଚଳ ସମସ୍ତ ସମ୍ପତ୍ତି ଲେଖିଦେଇ ଯାଇଛନ୍ତି । ବାପା ଯେତେ ବୁଝାଇଥିଲେ, ଶ୍ୱଶୁରେ ଆସି ଯେତେ ବୁଝାଇଥିଲେ, କାହିଁରେ କିଛି ହୋଇ ନ ଥିଲା । ହଠାତ୍ ରାତିକ ଭିତରେ ଏତେ ଭଲ ଲୋକ ପାଲଟି ଗଲେ କପରି ? ଗୋପୀବାବୁ ଜଣେ ମସ୍କରିଆ ଭଳିଆ ଲୋକ, ହସି ହସି କହିଲେ "ସେ ଦିନ ରାତିରେ ସାନ୍ତାଣୀ ଯେ ଅର୍ଦ୍ଧଜଳିଆ ଝାଡ଼ୁଣି ବୃଷ୍ଟି କରିଥିଲେ, ଏଇଟା ତାହାରି ଫଳ । ନିଶା, ବଦଖିଆଲ ଯେତେ ଉତ୍କଟ ରୋଗ, ଝାଡ଼ୁଣି ପ୍ରହାର ଔଷଧରେ ସବୁ ଛାଡ଼େ ।'

ଶ୍ୟାମଧନ ବାବୁ ହସି ହସି କହିଲେ, "କାହିଁ ବୈଦ୍ୟଶାସ୍ତ୍ର, ଡାକ୍ତରୀ କିତାବ, କାହିଁରେ ଏ ରୋଗକୁ ଏ ଔଷଧର ତ ବ୍ୟବସ୍ଥା ନାହିଁ ?"

ଗୋପୀ ବାବୁ କହିଲେ, "ଆରେ ତୁମେ ବୁଝିଲ ନାହିଁ, ଏଇଟା ସାନ୍ତାଣୀଙ୍କର ଆବିଷ୍କାର—

"ପେଟେଣ୍ଟ ମେଡିସିନ୍"

ପୁଂବ ଦୁଷ୍ପ୍ରବୃତ୍ତି ହେତୁରୁ ଯଦି କୌଣସି ସୁନ୍ଦରୀଙ୍କ ସେ— ଅର୍ଥାତ୍ ସେମାନେ ଯଦି ଏପରି ରୋଗଗ୍ରସ୍ତ ହୋଇଥାନ୍ତି, ଲେଖକର ବିନୟ ପୁରଃସର ନିବେଦନମିଦଂ, ଏହି ପେଟେଣ୍ଟ ମେଡିସିନ୍‌ଟା ପରେ ପ୍ରୟୋଗ ପୂର୍ବକ ପରୀକ୍ଷା କରି ଦେଖିବେ ।

---

## ରାଣ୍ଡିପୁଅ ଅନନ୍ତା

ସୁବଳ ମହାକୁଡ଼ ଓରଫେ ସୁବଳ ସିଂହର ବାପ ଅମଳରୁ ଗୋଟିଏ ମଇଁଷି ପଲ ଥିଲା । ମହାକୁଡ଼ ହରିଶପୁରର ବଣ ଭିତରେ ପଲରେ ସବୁବେଳେ ଥାଏ । ଘରକୁ ଆସେ ନାହିଁ । ଶୀତ, ବର୍ଷା, ଖରା ସବୁ ତା ପକ୍ଷରେ ସମାନ । ହେଲେ ବର୍ଷା ଦିନଟା ବଡ଼ ଆନନ୍ଦର ଦିନ । ଚରା ଢେର ମିଳେ,ମଇଁଷିଗୁଡ଼ାକ ବଡ଼ ଦୁଧିଆଳୀ ହୁଅନ୍ତି । ତାଳପତ୍ର ଟୋପରଟିଏ ମୁଣ୍ଡରେ ଦେଇ ହାତେ ଲମ୍ବା ବାଉଁଶ ଠେଙ୍ଗାଟାଏ କାନ୍ଧରେ ପକାଇ ଦିନଯାକ ମଇଁଷିଙ୍କ ପଛେ ପଛେ ଧାଇଁ ଥାଏ । କାହିଁ ଆଣ୍ଠୁଏ,କାହିଁ ଅଣ୍ଟେ ପାଣି, ଦେହଯାକ କାଦୁଅ ଲଟପଟ, ଏଟା ତାର ଘାରି ଆନନ୍ଦ । ମହାକୁଡ଼ର ଆଉ ଦିନେ ଘର ଦରକାର ନାହିଁ । ରନ୍ଧାବଢ଼ା ଲାଗି ବର୍ଷା ଦିନେ ଗୋଟିଏ ଚଲା ଦରକାର । କେତେଟା ଡାଳ ପୋତି ତାହା ଉପରେ ବାଡ଼ାକାଟେ ବେଣାଦାସ ପକାଇ ଦେଇ ଗୋଟିଏ ଚଲା ତିଆରି କରେ । ଚଲାଟା ନିହାତି ନୁଆଁଣ । ବସି ବସି ଭିତରକୁ ଯାଏ । ବସି ବସି ଭାତ ରାନ୍ଧେ । ଠିଆହେଲେ ଚଲା ମୁଣ୍ଡରେ ବାଜିବ । ଚଲା ଗୁହାଳପାଖେ ବାଡ଼ ନାହିଁ, କାରଣ ରାତିରେ ଚଲା ଭିତରେ ଶୋଇଥିଲେ ବାହାରୁ ଯଦି କେହିଆ ଆସି ମଇଁଷି ବାଛୁରୀ ନେଇଯାଏ; ଜାଣିବ ନାହିଁ । ରାତିରେ ଚଲା ଭିତରେ ଢେଙ୍କୀ ଲମ୍ବା କଣ୍ଟୋଉ ଯୋଡ଼ାକ ମୁଣ୍ଡତଳେ ଦେଇ ଟୋପରଟାରେ ମୁହଁ ଢାଙ୍କିଦିଏ । ମୁହଁ ଟାରେ ପାଣି ନ ପଡ଼ିଲେ ହେଲା । ତା' ଗୁହାଳପାଖେ ମଇଁଷି ଛୁଆଗୁଡ଼ିକ ଗୋଡ଼ରେ ଦଉଡ଼ି ଲଗାଇ ଖଟାଇ ପକାଏ । ବର୍ଷା ହେଲେ ମଇଁଷି ଛୁଆର ମଇଲା ଓ ମୁତ ଧୋଇ ଆସି ଚଲା ଭିତରେ ଲହଡ଼ି ଖେଳୁଥାଏ । ମହାକୁଡ଼ ତାହାରି ଉପରେ ଚେଙ୍ଗ ମାଛ ପରି ଲଟପଟ ହେଉଥାଏ । ମଇଁଷିଗୁଡ଼ା ବସା ଗୁହାଳପାଖେ ବଣ ଆଡ଼କୁ ମୁହଁ କରି ଶୋଇଥାନ୍ତି । ରାତି ତିନିପହର ସରିକି ମଇଁଷିଗୁଡ଼ାକ ଉଠି ବଣକୁ ଚରିଯାନ୍ତି । ତେତେବେଳକୁ ମହାକୁଡ଼ ଜାଗ୍ରତ ଥାଏ । ଠେଙ୍ଗାଟି ତା'

ପାଖରେ ଚଢ଼ିଥାଏ; କାରଣ ଚେତିକବେଳେ ନେକଡ଼ିଆ ଆସି ବାଛୁରିଟା ନେଇ ପଳାଇ ପାରେ । ବଣ ଭିତରେ ମଇଁଷି ଗୋଟାଏ ନାକଫିଟିକା ଦେଲେ ବାଘ ଆସିଛି ବୋଲି ମହାକୁଡ଼ ଜାଣିପାରେ । ଆରେ ରେ ରେ କୁହାଟଟା ମାରିଦେଲେ ଯେଡ଼େ ବାଘ ହେଉ ଛୁଡ଼ ପଳାନ୍ତି । ବାଘ ଗୁଡ଼ାକ ମହାକୁଡ଼ ଡାକ ବାରି ପାରନ୍ତି । ବଣରେ ଯିମିତି କୁକୁଡ଼ା ଗୁଡ଼ାକ କୁକୁ କୁକୁ କରିବେ ମଇଁଷିପଲ ବସାକୁ ନେଉଟି ଆସନ୍ତି । ଚେତିକ-ବେଳେ ମହାକୁଡ଼ ଦୁହାଁଳୀ ମଇଁଷିଗୁଡ଼ାଙ୍କୁ ଛନ୍ଦି ଦୁହିଁ ପକାଏ । ଦିନ ଘଡ଼ିକ ସରିକି ମହାକୁଡ଼ାଣୀ ଦେବକୀ କାଣ୍ଡିଆ କୁଣ୍ଡା ମିଶା ସେରେ ଚାଉଳର ଗୋଟିଏ ପୋଡ଼ପିଠା, ପାଞ୍ଚ ସେର ଅକାଣ୍ଡିଆ ବରଗଡ଼ା ଚାଉଳ ଆଉ ଧୂଆଁପତ୍ର ଖଣ୍ଡେ ଧରି ଗୋଠରେ ହାଜର । ମହାକୁଡ଼ର ଚେତିକ ମାତ୍ର ଦୈନିକ ଖାଦ୍ୟ । ସକାଳୁ ପିଠାକି ଖାଇ ଦେଇ ସେରେ ନିରୁତା ମଇଁଷି ଦୁଧ ପିଇଦିଏ । ଦିନ ଦୁଇ ପହର ସରିକି ଅଢ଼େଇସେର ଚାଉଳ ଟିକିଏ ଫୁଟାଫୁଟି କରିଦିଏ । ବଣରୁ ଯଦି କଞ୍ଚା କାଙ୍କଡ଼, ଉଙ୍କ, ମଠକା, ଫୁଟଗୁଡ଼ୀ ମିଳି ଥାଏ ତାକୁ ସେଇ ଚାଉଳରେ ପକାଇ ଦେଇ ଥାଏ । ତରକାରି ପାଇଁ ଶୋଚନା ନ ଥାଏ । ବଖତରେ ୨୪ ସେର ଚାଉଳ, ଦୁଇସେର ନିରୁତା ମଇଁଷି ଦୁଧ ମୂଳ ଖାଦ୍ୟ । ବୋଇଲି—

‘ମଇଁଷି ମଣେ ନୁହା ଚଣାଖିଆ,
ଘିଟୁଣ୍ଟି ମଣେ ଧାଈ ।’

ମହାକୁଡ଼ାଣୀ ଚାଉଳ ପିଠା ଚେତିକ ଦେଇ ଘରର ଦୁଃଖ ସୁଖ, ଗାଁର ହାଲଚାଲ, ବନ୍ଧୁ ବାନ୍ଧବ ଖବର-ଅବର କହି ନିତି ଦୁଧ କଳସିଟି ମୁଣ୍ଡରେ ମୁଣ୍ଡେଇ ଘରକୁ ବାହୁଡ଼ ଆସେ । ଗ୍ରୀଷ୍ମକାଳରେ ମହାକୁଡ଼କୁ କଷ୍ଟ ହରବରରେ ପଡ଼ିବାକୁ ହୁଏ । ବଣରେ ନାହିଁ ପାଣି, ଏଣେ ମଇଁଷିଗୁଡ଼ାକ ଦୁଇପହର ଯାଏ ଜଳଜନ୍ତୁ ପରି କାଦୁଅ ପାଣିରେ ବୁଡ଼ିବେ, ନାକଟି ଖାଲି ଦିଶୁଥାଏ । କ'ଣ କରିବେ ? ବଣରୁ ବାହାରି ପାଟକୂଳରେ ଆସି ପଡ଼ନ୍ତି । ସେଠାରେ ପାଣି ଆଉ ଚରିର ଅଭାବ ଥାଏ ନାହିଁ । ମହାକୁଡ଼ ବଡ଼ ଗୋଟାଏ ତାଳପତ୍ର ଛତା ପାଟ କୂଳରେ ପୋତିଦେଇ ତାହାରି ଭିତରେ ରୋଷେଇବାସ କରେ ଓ ରାତିରେ କଠୋଉ ଯୋଡ଼ାକ ମୁଣ୍ଡରେ ଦେଇ ଚେଲଗୁଣି ପୋକପରି ମୋଡ଼ମାଡ଼ ଶୁଏ । ଶୋଇବା ପାଖରେ ଦୁଇ ତିନି ଗଦା ମଇଁଷି ଗୋବର ଘଷିରେ ଧୂଆଁ କରୁଥାଏ । ତେବେ ସୁଦ୍ଧା ପାଟ କୂଳରେ କାଳିଆ କାଳିଆ ଡେଙ୍ଗା ଗୋଡ଼ିଆ ବଡ଼ ବଡ଼ ଏତେ ମଶା ଯେ ସମ୍ଭାଳି ହୁଏ ନାହିଁ । ମହାକୁଡ଼ କଣ କରେ କି ପାଟ ଭିତରୁ ହାଣ୍ଡିଏ ପଙ୍କ ଆଣି ଗୋଡ଼ ଆଙ୍ଗୁଠି ଠାରୁ ଅଣ୍ଟା ଯାଏ ଲେପିଦେଇ— ‘ଯା ଗିହାଳୁ ଖାଇଏ ମଶା’ କହି ଶୋଇପଡ଼େ । ପିଠି ହାତ ପୋଡ଼ ଉଠିଲେ ଚାପଡ଼ା ଚାପଡ଼ାକେ ଦୁଇ ତିନି ପୁଞ୍ଜା ମଶା ଦଳି ହୋଇଯାଏ । ଟିକିଏ ନିଦ ଭାଙ୍ଗିଗଲେ, “ଆଲେ ମାଳତି ! ଆଲେ ଶୁନ୍ଦ୍ରୀ ! ଆଲେ କାଳୀ !” କୁହାଟି ଦିଏ । ମଇଁଷିଗୁଡ଼ାକ ମହାକୁଡ଼ କଥା ବୁଝନ୍ତି, ଦୂରରେ ଥିଲେ ପାଖକୁ ଆସନ୍ତି । ଓଳିଆ ମଇଁଷି ବେକରେ କାଠ ଘଣ୍ଟି ବନ୍ଧା ଥାଏ, ଫାଶ ଫନ୍ଦା ଡାକୁଅ ବଳରେ ପଡ଼ିଲେ ଧାଇଁଯାଇ ବାଡ଼େଇ ଆଣେ ।

ବର୍ଷେ କଣ ହେଲା କି ଅଶୁନିକ କାହୁଁ ଠାକୁରାଣୀ ଆସି ପଲରେ ପଶିଗଲା । ଦିନ ଆଠଟା ଭିତରେ ଅଢ଼େଇ ବୋଡ଼ିଆ ପଲଟା ଏକାବେଳକେ ପଟାରୁଟ୍ । ମହାକୁଡ଼ର ତ ଅଣ୍ଟା ବସି ଗଲାଣି । ଗାଲରେ ହାତ ଦେଇ ବସି ଥାଏ । ମହାକୁଡ଼ାଣୀ ଆସି କହିଲେ, “କରେ ମହାକୁଡ଼ ! ତୁ ଇମିତି ବସି ଭାବୁଛୁ କିଆଁ ? ଅଣ୍ଟା ବସି ଗଲାଣି ! ଓହୋ ! ଏ ଲାଗି ଗୋଟାଏ ଭାବନା ? ଯା ହେବାର ହେଲା । ଆରେ ମୋ ଭାଇ ଗୋଠରୁ, ବୁଢ଼ା ବାରିକ ଗୋଠରୁ ଦୁଧ କାଟ ଆଣି ଲଗାଇ ଦେବା ବେପାର । ବର୍ଷ ଦି'ଟା ଭିତରେ ଯେ ପଲକୁ ସେ ପଲ ଗୋଟି ଗୋଟି ଗଣି ନେ ।”

ମହାକୁଡ଼ କଣ କଲା କି ଠାକୁରାଣୀଦାଢ଼-ବାହୁଡ଼ା ପିଲାପିଲିକା ଯେ ଦୁଇ ବଳିଖଣ୍ଡ ଲଙ୍ଗୁଡ଼ ଥିଲା, ବାଦ ବାକି ହୋଇ ଜମିଦାରର ଗୁରୁ ପଲରେ ସେଠ ହେଲା । ଏତେ ବଡ଼ ଗୁମାସ୍ତା ହେବାରୁ ମହାକୁଡ଼ାଣୀ ତ ବଡ଼ ଖୁସି । ଗାଁରେ ତାକୁ କେହି ସେଠାଣୀ ନ କହିଲେ ଘର କଳି କରେ, ମାଇକିନିଆ ହେଉ ମିଣିପ ହେଉ ବାଡ଼େଇବାକୁ ଧାଏଁ ।

ଶୀତଦିନିଆ ପୁଲିସ ସାହେବ ମହାମପୁର ଫାଣ୍ଡି ତଦାରକ କରିବାକୁ ଯାଇଥିଲେ । ଫାଣ୍ଡି ପାଖ ଛୋଟାରେ ଡେରା ପଡ଼ିଥାଏ । ଡେରା ପାଖକୁ ଅଧକୋଶ ଦୂରରେ ପାଟ । ସରାଳି, କାଜ ମାଣିକ ଯୋଡ଼, ଜଳ ଫିଙ୍ଗି, ପାଣିହଂସ, ଚକୁଆ, ଦା-ବେଙ୍କଆ, ବଗ ଚଢ଼େଇ ଭର୍ତ୍ତି । ସାହେବଙ୍କ ନଜର ଯିମିତି ପଡ଼ିଗଲା, ବନ୍ଧୁକ କାନ୍ଧରେ ପକାଇ ଶିକାରକୁ ବାହାରିଲେ । ପଛରେ ଜଣେ ଗୁରୁ କନେଷ୍ଟବଲ, ଆଠ ଦଶ ଜଣ ଚୌକିଦାର; ମୁଣ୍ଡରେ ଲାଲ, କଳା, ହଳଦିଆ ଛିଣ୍ଡା ପାଗ ଖଣ୍ଡେ ଖଣ୍ଡେ ଗୁଡ଼ାଇ ଟାଣେ ଟାଣେ ବାଉଁଶ ଠେଙ୍ଗା କାନ୍ଧରେ ପକାଇ ଧାଇଁଛନ୍ତି । ସାହେବ ପାଟକୂଳରେ ପହଞ୍ଚି ଯିମିତି ବନ୍ଧୁକଟି ଦୁମ୍‌କରି ଆୱାଜ କଲେ ହଜାର ହଜାର ଚଢ଼େଇ ଚେଁ ଚାଁ କଟର କରି ଆକାଶରେ ଉଡ଼ି ଚକର ଦେଇ ଘୂରିଲେ । ବୋଧହୁଏ ସେମାନେ ତଳକୁ ଅନାଇ ବିଚାର କରୁଥିଲେ, "କାଲେ ଦେଖା ନାହିଁ ଶୁଣା ନାହିଁ, ଆଜି ଏଟା କଣ ? ଏଟା ତ ଧଳା ମଣିଷ ପରି ଦିଶୁଛି, ଏଟା କଣ ?" ସେମାନେ ଆପଣା ଆପଣା ଭିତରେ ଯେଉଁ କଥା ଭାଷା ହେଉଥିଲେ ସେଇଟାକୁ କହୁନ୍ତି 'କେଁ କଟର ।'

ଯୋଡ଼ାଏ କାଜ ଦେହରେ ଛିଟା ବାଜି ଡେଣା ଓ ଗୋଡ଼ ଭାଙ୍ଗି ଗଲା । ହେଲେ କଣ ହେଲା ଠା ନ ପଡ଼ି ଖଣ୍ଡିଉଡ଼ା ଦେଇଯାଇ ପାଟ ମଝିରେ ଯାଇ ପଡ଼ିଲା । ଯଉଁଛି କଏ, ସାହେବ ତ ସମସ୍ତଙ୍କ ମୁହଁକୁ ଅନାଉଛନ୍ତି । ଜଣା ଅଛି ପାଟ ମଝିଟା ତାଳେ ଗହିର । ମଣିଷଖିଆ କୁମ୍ଭୀର ଯୋଡ଼ାଏ ଥିବାର ବି ଶୁଣା ଅଛି । କନେଷ୍ଟବଲମାନଙ୍କର ତ ଡ୍ରେସ ଭିଜି ଯିବ । ଚଉକିଆ ଗୁଡ଼ାକ ଗାଉଁଲିଆ, ପହଁରି ଜାଣନ୍ତି ନାହିଁ । ଅସଲ କଥା, କାହାରି ମନକୁ ଭରସା ଆସୁ ନାହିଁ ଯେ ଯିବ । ସାହେବ ନୋହିଲେ ଜରିମାନା କରିବେ, ନୁହେଁ ଚାକିରି ଛଡ଼ାଇ ଦେବ; ଜାଣି ଶୁଣି ଗୋମୁହାଁ କୁମ୍ଭୀର ମୁହଁକୁ କେ ଯିବ ? ଛେଉକବେଳେ କଣ ହେଲା କି ଆମ୍ଭମାନଙ୍କ ସେଠେ ପଲ ତନଖି କରିବାକୁ ଯାଇ ସେଇଠି ପାରିଧି ଦେଖୁଥିଲେ । କୁହା ନାହିଁ ବୋଲା ନାହିଁ କଅଣ ମନକୁ ଆସିଲା ହୁଡ଼ ହୁଡ଼ କରି ପାଣିରେ ପଶିଗଲେ । ଦଣ୍ଡିକ ଭିତରେ କାଜ ଦୁଇଟାକୁ ଆଣି ସାହେବ ଆଗରେ ଥୋଇ ଦେଲେ । ସାହେବ ତ ମହାଖୁସି । ଗୋଡ଼ରୁ ମୁଣ୍ଡଯାଏ ତିନିଥର ଅନାଇଲେ, ପଞ୍ଚହାତା ମର୍ଦ୍ଦ—ବାହୁଯୋଡ଼ାକ ଗୋଲ ଗୋଲ ମୋଟା ମୋଟା, ଦୁଇହାତରେ ବେଢ଼ା ପାଇବ ନାହିଁ, ମୁଠିଏ ଚଉଡ଼ା ଛାତି, ଚକା ମୁହଁ, ଚଉଡ଼ା ନାକ, ଜଙ୍ଘଗୁଡ଼ାକ ସଳଖ ମୋଟା ଶାଳଗଛପରି । ସାହେବ ଭାରି ଖୁସିହୋଇ ପଚାରିଲେ, "ତୁମ୍ କୋନ୍ ହେ ?" "ମଣିମା ମୁଁ ଜମିଦାର ପଲର ସୁବଲ ସେଠ ।" ସାହେବ—"ତୁମ୍ କନେଷ୍ଟବଲ ନୌକରି କରେଗା ?" ସେଠିଏ ଟିକିଏ ଗୁମ୍‌ମାରି ରହିଲେ । ଦଣ୍ଡିକ ବାଦ କହିଲେ, "ମୁଁ ଘରଆଡ଼େ ନ ବୁଝି କହିପାରୁ ନାହିଁ ।" ସାହେବ ବୁଝିପାରିଲେ ନାହିଁ । ଜମାଦାର ମୁହଁକୁ ଚାହିଁଲେ, ଜମାଦାର ଇଂରେଜ ପଢ଼ୁଆ ବୋଲି ଚୌକିଦାର-ମାନଙ୍କୁ ଜଣା । ଆମ୍ଭେମାନେ ଜାଣୁଁ ସେ ଫାଷ୍ଟବୁକ୍ ଖଣ୍ଡିକ ବିଲକୁଲ ପଢ଼ିଥିଲେ, ଆଉ କାଗଜରେ ଇଂରେଜୀରେ ଦସ୍ତଖତ କରନ୍ତି । ସେ ମହାକୁଡ଼ କଥା ଇଂରେଜୀରେ ସାହେବଙ୍କୁ ବୁଝାଇ ଦେଲେ । "Sir, this guala Mahakur says he ask his wife, If she says, he will constable." ସାହେବ ମନ ମଧ୍ୟରେ ଟିକିଏ

ହସିଲେ । ଅସଲ କଥାଟା ବୁଝିବାକୁ ବି ମିନଟ୍ ଡେର ହେଲା । ପକେଟରୁ ନୋଟ୍‌ବୁକ୍ ବାହାର କରି ଲେଖିଲେ "Subal Singh is fit to be a constable. He seems to be a clever man and knows how to show respect to the fair sex." ହୁକୁମ୍ ଦେଲେ, "ତୁମ୍ କାଲ ଫଜର ଡେରା କା ପାଶ୍ ହାଜର ହୋ ।"

ସୁବଳସିଂହ ସାହେବଙ୍କ ଅର୍ଦ୍ଦଳି । ସାହେବ ତ ଘୋର ଶିକାରପ୍ରିୟ । ଶିକାର ସରଞ୍ଜାମ ତାହା ଜିମା ଥାଏ । ସୁବଳ ସିଂହ ନ ଥିଲେ ସାହେବ ଶିକାରକୁ ବାହାରି ପାରନ୍ତି ନାହିଁ । ସୁବଳ ଉପରେ ସାହେବଙ୍କର ଅନୁଗ୍ରହ ଦେଖି ଭଲ ଭଲ ଲୋକମାନେ ତାହାର ଅନୁସରଣ କରି ଥାଆନ୍ତି । ସେଥିରେ ତାହାର ଦରମା ମାସିକ ଟ ୯ ୲ ଛଡ଼ା ଉପରି ବି ଗୁରପଇସା ବେଶ ରୋଜଗାର ହୁଏ । ହେଲେ ସବୁ ଦେବକୀ ହିସାବ କରି ନିଏ । କେବେ କାଲେ ସିଂହର ଟଙ୍କେ ମଧ୍ୟେ ବେଳାପୁ ଖରଚ ଧରା ପଡ଼ିଲେ ଦେବକୀ ଖପା ହୋଇ ଗାଳିଦିଏ । "କାଠଖିଆ, ତୁ ତ ଟଙ୍କା ଏଇରକମ ଉଡ଼ାଇବୁ, ପର ଘରେ ଗୋଲାମି କରୁଛୁ କିଁ ?" ଆଉ ଗୋଟାଏ କଥା, ମହାକୁଡ଼ ସିଂହ ହେଲାରୁ ଦେବକୀ ନାମ ହେଲା ସିଂହାଣୀ, ଯେ ଆପେ ଗାଁସାକ ଏହି ନାମ କହି ଆସିଲା । ସିଂହଙ୍କର ବି ତିନି ବରଷ ଗୁକରି ବାଦେ ଥରେ ପୁଲିସ ସାହେବ, ମେଜେଷ୍ଟର ସାହେବ ମିଶି ଡୋମପଡ଼ା ବଣକୁ ଶିକାର କରି ଯାଇଥିଲେ । ମେଜେଷ୍ଟର ସାହେବ ଗୋଟେ କେନ୍ଦୁଆକୁ ଯିମିତି ଗୁଳି କରିଛନ୍ତି, ହେଲା ଅଣ୍ଟାଗୁଳି, କେନ୍ଦୁଆଟା ଗୋଟାଏ ଝୁମ୍ପୁଡ଼ିଲଗା ଭିତରେ ପଶି ଗର୍ଜନ କରୁଥାଏ । ସାହେବ ଧଙ୍ଗରେ ଶକଡ଼ା ବେଠିଆ, ଯୋଡ଼ାଏ ହାଣ୍ଡି, ଘାଉଲା କେନ୍ଦୁଆ ପାଖକୁ ଯାଉଛି କିଏ ? ଘାଉଲା ବାଘ, ଧଇଲା ଯମ ଏକା କଥା । ପୁଲିସ ସାହେବ ସୁବଳ ସିଂହ ମୁହଁକୁ ଗୁହିଁଲେ । ସିଂହେ ଉଁ କି ଚୁଁ ନ କରି ପଶିଲେ ବଣରେ । ସିଂହେ ସେଇ ମଲିଷିମଣା ଠେଙ୍ଗା ଆଜଯାଏ ଛାଡ଼ି ନାହାନ୍ତି । ବାଘମୁଣ୍ଡରେ ଗୁରି ପାହାର କଷି ଦେଇ ଲାଞ୍ଜ ଧରି ଭିଡ଼ି ଭିଡ଼ି ଆଣି ମେଜେଷ୍ଟର ସାହେବଙ୍କ ଆଗରେ ଥୋଇଦେଲେ । ସଙ୍ଗେ ସଙ୍ଗେ ନଗଦ ଟ ୨୦ ୲ ଙ୍କା ବକ୍‌ସିସ୍, ଆଉ ଟ ୧୫ ୲ ଦରମାର ଜମାଦାରୀ । ଏତେ ହେଲା ହିଁ, ହେଲେ ସିଂହଙ୍କୁ କାଳ ସହିଲା ନାହିଁ । କାର୍ତ୍ତିକମାସିଆ ଛୁଟି ନେଇ ଘରକୁ ଆସିଛନ୍ତି, କାହୁଁ ଗୋଟାଏ କାଳ-ଜ୍ୱର ଆସି ମାଡ଼ ବସିଲା । ଜର ସଙ୍ଗେ ସଙ୍ଗେ ସନ୍ନିପାତ । ଦିନ ତିନିଟାରେ ଶେଷ ।

ଏଣେ ସିଂହାଣୀଙ୍କର ଦେହରେ ଯିମିତିକା ବଳ, ମନରେ ବି ସେହିପରି ସାହସ; ଘୋର ବିପଦରେ ପଡ଼ି ହଟିବାର ନୁହନ୍ତି । ସ୍ୱାମୀର ଶୁଦ୍ଧିକାର୍ଯ୍ୟ ସାରି ଆପଣା ବେଉସାରେ ଲାଗିଗଲେ । ସିଂହେ ସିଂହାଣୀ ରୂପରେ ଗୁଣରେ ସମାନ । ବିଧାତା ଯେମନ୍ତ ଗୋଟିଏ ଚକରେ ଦୁଇଜଣଙ୍କୁ ଗଢ଼ିଛନ୍ତି; ତେବେ ସିଂହାଣୀ ଉଚାରେ ଅଧଚୌକେ ବେଶି ହେବେ । ନାହି ତଳକୁ ଲୁଗା ପିନ୍ଧିଥିଲେ ପେଟଟି ଛ ନଉତିଆ ଧାନ ଉଛୁନା କଳାହାଣ୍ଡି ପରି ବାହାରି ପଡ଼ୁଥାଏ । ସିଂହାଣୀ ଅଳଙ୍କାରକୁ ବୋଧହୁଏ ବଡ଼ ଭଲ ପାନ୍ତି । ପ୍ରଥମେ ବିଧବା ଦିନ ଦେହରୁ ସବୁ ଅଳଙ୍କାର କାଢ଼ି ପକାଇଥିଲେ । ଶୁଦ୍ଧ ବାସିଦିନ ଫେରି ହାତଗଣ୍ଠିଠାରୁ କହୁଣୀଯାଏ ଦଶବାରଣ ପିତଳବାହି ବଳା ଦୁଇହାତରେ ଲଗାଇ ଦେଲେ । ନାକରେ ତୋଳାଏ ଓଜନର ସୁନାଗୁଣା ରେପଟା ବିଶାଳ ନାକକୁ କାମୁଡ଼ି ଧରିଥାଏ । ବେକରେ ଦଶ ଦଶ ଗଣ୍ଡା ଗୋଡ଼ିଲଗା ଟଙ୍କାମାଳ ନାହିଯାଏ ଲମ୍ବି ପଡ଼ୁଥାଏ । ଦୁଇ ହାତରେ ଦିପୁଞ୍ଜା ଗେଣ୍ଡା ପରି ଗ୍ଲୁପ ମୁଦି । ସିଂହାଣୀଙ୍କ ସାହସ ଊଣା ନୁହେ । ଗାଁ ମୁଣ୍ଡ ନିଛାଟିଆରେ ଘର, ଛୁଆଟାକୁ ଧରି ଏକୁଟିଆ ପଡ଼ିଥାଏ । ସିଂହାଣୀ ହାତରେ ଢେର ଟଙ୍କା, ଏ କଥା ଗାଁଲୋକେ ଜାଣନ୍ତି; ଗୋରଗୁଡ଼ାକ ସନ୍ଧାନ ପାଇ ଦିନେ ଅନ୍ଧାର

ରାତିଆ ସିନ୍ଧକର ତିନଜଣ ଚୋରର ଘରଭିତରେ ପଶିଲେ । ସିଂହାଣୀ ଶୋଇଥିଲେ, ତାଙ୍କୁ ମିମିନ୍ତ ମାଡ଼ ବସିଛନ୍ତି ସେ ତ ହାଣ୍ଡିକଖାଇ ହାତଯୋଡ଼ାକ ଛୁଆଁଇ ଦେଲା । ଚୋରଚୁଡ଼ାକ ଚାରି ଚାରି ହାତ ଦୂରରେ ପଡ଼ଗଲେ । ଯୋଡ଼ାଏ ଚୋର ତ ପଳାଇଲେ; ଗୋଟାକୁ ମାଡ଼ ବସିଲା, ଗଣ୍ଡପଧାରେ ଘର ମଝିଖୁମ୍ବରେ ଭିଡ଼ ବାନ୍ଧି ଦେଲା । ସକାଳୁ ଗାଁ ଲୋକେ ଦେଖି ଧାଇଁଲେ, ଏ ଚୋରଟା କିଏ ମ ? ମଲା ମଲା ! ଏ ତ ଗାଁ ଚଉକିଆ ବାଉରୀ ଝପଟ ସିଂ । ସମସ୍ତେ ପରାମର୍ଶ କଲେ ଚୋରକୁ ଚଲାଣ ଦେବେ । ସିଂହାଣୀ କହିଲା, "ଆଚ୍ଛା ମୁଁ ଚଲାଣ ଦେବି ।" ଦୁଇ ଗାଲରେ କଷି ଲଗାଇଲା ଦୁଇ ଚାପୁଡ଼ା । ଉଆଉଫଡ଼ା ପରି ଗାଲ ଫୁଲିଗଲା, ଚଉକିଆପୁଅ ପନ୍ଦର ଦିନ ଘରୁ ବାହାରି ନାହିଁ, ବିଛଣାରେ ପଡ଼ିଥିଲା । ସିଂହେ ବିଯୋଗ ବେଳକୁ ପୁଅ ଅନନ୍ତାର ହୋଇଥିଲା ଚାରି ବରଷ । ବୟସ ଟଳା ବେଳେ ପୁଅଟିଏ ହେବାରୁ କୋଟିନିଧି ପାଇଥିଲେ । ପୁଅଟିର ଆକାର ବାପ ମା ପରି, ସେହିପରି ଦେହର ବର୍ଣ୍ଣ । ସିଂହାଣୀ ସଞ୍ଜ-ବେଳେ କାମ ପାଇଟି ସାରି ପୁଅଟିକୁ ଘଡ଼ିଏ କୋଡ଼ରେ ବସାଇ ଗେଲ କରନ୍ତି, ଗେଲ କଲାବେଳେ ଗୀତ ଗାଉଥାନ୍ତି—

'ହାତୀ ଝୁଲୁଥାଏ ଲସରପସର
କଅଁଳକନ୍ଦା ଖାଇବାକୁ,
ଅନନ୍ତ ଝୁଲୁଛି ଲସରପସର
ମାଅଦୁଧ ଖାଇବାକୁ ।
ଆକାଶେ ବୁଲୁଛି ଚନ୍ଦ୍ର ଜହ୍ନଅ ରେ
ସଙ୍ଗତେ ବହୁତ ତରା,
ଅନନ୍ତ ଝୁଲୁଛି ମାଆକୋଳେ ବସି
ଦୁଧ ସେ ଖାଇବ ପରା ।
ବାପ ତ ଯାଇଛି ମଲ୍ଲିଡିଗୋଠକୁ
ମାଆ ତ ଦୁହିଁବ ଗାଈ,
ରଜାଙ୍କ ଦୁଆରେ ପାଟହାତୀ ବନ୍ଧା
ଅନନ୍ତ ଚଢ଼ିବ ଯାଇ ।'

ଏହିପରି ଗେଲ କରି ପୁଅକୁ ବସି ଝୁଲଉଥାନ୍ତି । ହାତୁଣୀ କୋଳରେ ହାତୀପିଲାପରି ପିଲାଟି ଝୁଲଲେ ବଡ଼ ମାନେ । ରୋଜ ବଡ଼ସକାଳୁ ଉଠି ପୁଅକୁ ତେଲ ହଳଦୀ ଟିକିଏ ମାଖି ଦେଇ କାଠ ପାନିଆରେ ମୁଣ୍ଡ କୁଣ୍ଡେଇ ମୁଣ୍ଡରେ ଗୋଟାଏ ସାନ ଜଟ ବାନ୍ଧିଦିଏ । ଘଡ଼ିଏଯାଏ ପୁଅ ମୁହଁକୁ ଚାହିଁ ଚା ବାଦ ଆପେ ଜିଭ କାମୁଡ଼ ପକାଇ କୁହେ, "ମା ଡାହାଣୀ ! ସୁନ୍ଦର ଦୁଅଟିକୁ ମୁଁ ଚାହିଁଛି ।" ତାହା ବାଦେ ତୁଳସୀମୂଳରୁ ଟିକିଏ ମାଟି ଆଣି ମୁଣ୍ଡରେ ଟୋପା କରିଦିଏ । ଜଟ ଉପରେ ଟିକିଏ ଗୋବର ଲଗାଇ ଦିଏ । ତାହା ବାଦେ ପୁଅ ଉପରକୁ ଟିକିଏ ଛେପ ପକାଇ ଦିଏ । ଗାଁରେ କେତେ ରକମ ମାଇକିନିଆ ଅଛନ୍ତି, କାହା ନଜର କେମିତି ? ପୁଅକୁ ହାପୁରି କରିଦେବେ । ଏହିଲାଗି ପୁଅ ବେକରେ ଖଡ଼ିଏ ଦକ୍ଷିଣାବର୍ତ୍ତମଣି, ଗୋଟାଏ ତମ୍ବା ତେଉଁରିଆ ଭିତରେ ମହାଦେବ ବେଲପତ୍ରୀ, ଦି'କଡ଼ା କାଣିକଉଡ଼ି, ଚାରିଟା ରୁପା ତେଉଁରିଆ, ମୂଳମୂଳିକା ହାର କରି ପୁଅ ବେକରେ ଲଗାଇ ଦେଇଛି । ବାରଲୋକର ନଜର କଟିଯିବ ବୋଲି ଆପଣା ଗୋଡ଼ରୁ ଟିକିଏ ଧୂଳି ନେଇ ପୁଅ ମୁଣ୍ଡରେ ଲଗାଇ ଦିଏ । ରାତିରେ ସେରେ ଗୁଡ଼ଲରେ ଗୋଟିଏ ପୋଡ଼ପିଠା କରି ରଖିଥାଏ, ସେ'ଟି ପୁଅ ହାତରେ ଦେଇ ଦହି ମୁହାଁଇ ବସେ । ତାହା ବାଦେ ପସରା ଉପରେ ଦୁଇ ତିନିଟା କଳସୀରେ ଚହଲା ପୂରାଇ ଗାଁକୁ ଦହି ବିକିଯାଏ । ମୁଣ୍ଡ ଉପରେ ପସରାରେ ଦୁଇ ତିନି କଳସୀ ଦହି, ତାକୁ ନ ଧରି ଦୁଇ ବାହୁ ଝୁଲାଇ ଗୋହିରୀ ଦାଣ୍ଡରେ ଚାଲିଯିବାବେଳେ ଲୋକମାନେ ଚାହିଁ ରହନ୍ତି । କୁହନ୍ତି, 'ନନ୍ଦଘୋଷ ରଥ !' ସିଂହାଣୀର ତେରଗୁଡ଼ିଏ ନାମ; ଏକ—ଦେବକୀ ଗଉଡ଼ୁଣୀ, ଦୁଇ—ମହାକୁଡ଼ାଣୀ, ତିନି—ତାଡ଼କା ଅସୁରୀ, ଚାରି—ନନ୍ଦଘୋଷ ରଥ, ହେଲେ ସିଂହାଣୀର ଅଜଣାରେ ଲୋକମାନେ ଏହିସବୁ ନାମ ଦେଇଛନ୍ତି । ସିଂହାଣୀ ବୋଲି ଡାକଲେ ସେ ବଡ଼ ଖୁସି ହୋଇଯାଏ । ଗାଁରେ କେତେଗୁଡ଼ିଏ ଅଝିଆଲା ମଣିଷ ଭୁଛାଟାରେ—

‘ଏ ସିଂହାଣୀ ! ଦହି ଦେଇ ଯା’ ବୋଲି ଡାକନ୍ତି । ଦହି କିଣିବାବେଳେ ତାକୁ ଦୁଇ ଚାରିଥର ସିଂହାଣୀ ସିଂହାଣୀ କହିଲେ ସେ ବଡ଼ ଖୁସି ହୋଇ ଦୁଇ ଚାରି ସଢ଼େଇ ଦହି ଲଭ ବୋଲି ଢାଳିଦିଏ ।

ସୁବଳସିଂହ ବିଯୋଗବେଳେ ଅନନ୍ତାର ଚାରିବରଷ ପୂରି ଯାଇଥିଲା । ଦିନ କିଛି କାହାରି ଲାଗି ବସି ରହେ ନାହିଁ । ଅନନ୍ତାର ବୟସ ଏବେ ହେଲାଣି ଦଶବରଷ । ହେଲେ କଣ ହେଲା, ଲୋକେ ତାକୁ କୋଡ଼ିଏ ବରଷର ଭେଣ୍ଡିଆ ବୋଲି ଠଉରିବେ । ରୋଜ ସିଂହାଣୀ ଦହି ବିକି ଆସି ମୋଟା ବରଗଡ଼ା ଚାଉଳ ପାଞ୍ଚସେର ଚୁଲିରେ ବସାଇ ଦିଏ । ସୁବଳସିଂହର ଯେଉଁ ଫରମାସୀ ପିତଳ ବାସନଟା ଥିଲା, ସେଥିରେ ତିନିସେର ଅନ୍ଦାଜ କଡ଼ଫୁଟା ପେଜଆ ଅନ୍ନ ସେ ଚେଲରେ ଢାଳି ପୁଅ ପାଖରେ ପରଷି ଦିଏ । ଅନନ୍ତାର ତରକାରି ପନ୍ତ ଲୋଡ଼ା ନାହିଁ, ହେଲେ ମା ମନ କେତେକେ ମାନେ । ଚୈପାମିଶା ବିରିଡାଲି କଂସାଏ, ନୋହିଲେ ଶାଗ ମାମଡ଼ି ସିଜାସିଜି କରି ପୁଅ ପାଖରେ କଂସାଏ ବଯାଇ ଦିଏ । ଅନନ୍ତା ଭାତ ଖାଇସାରି ଡାଲି ତେତକ ପିଇଦିଏ । ସିଂହାଣୀ ପୁଅ ଲାଗି ଗୋଟିଏ ଗାଈ ବାନ୍ଧିଛି । ଦିନକୁ ଚାରିସେର ଦୁଧ ଦିଏ । ଅନନ୍ତା ଭାତ ଖାଇସାରି ସେ କଞ୍ଚାଦୁଧ-ତକ ପିଇଦିଏ ।

ଏବେ ସିଂହାଣୀ କିଛି ପୁଅଲାଗି ହରବରରେ ପଡ଼ିଲେଣି । ଅସହୁଣୀ ଲୋକଗୁଡ଼ା ଅନନ୍ତାକୁ ଦେଖି ପାରନ୍ତି ନାହିଁ । କିଏ କହିଲା—‘ମୋ ବାଡ଼ିରୁ କାକୁଡ଼ି ଖାଇଗଲା’ କିଏ କହିଲା—‘ମକା ଭାଙ୍ଗି ନେଲା’ ‘ଆମ୍ବ, କମ୍ଭା, କୋଳିଗଛରେ ଚଢ଼ି ଅନନ୍ତା ଖାଇଗଲା’ ବୋଲି ଗାଁଲୋକମାନେ ରୋଜ ସିଂହାଣୀ ପାଖରେ ଗୁହାରି କଲେ । ସିଂହାଣୀ ମନ ମଧ୍ୟରେ ଗୁହାରିଆମାନଙ୍କ ଉପରେ ରାଗେ, ହେଲେ ପୁଅକୁ କିଛି କୁହେ ନାହିଁ । ଆଜିକାଲି କି ସଞ୍ଜବେଳେ ଘଡ଼ିଏ ବସି ପୁଅକୁ ଚେଲିକରେ । ଶେଷରେ ସିଂହାଣୀ ବଡ଼ ଦିକ୍‌ଦାର ହୋଇ ଗାଁରୁ ଆସୁଛି, ବାଟରେ ଦେଖିଲା ବଉଳଗଛ ମୂଳରେ ପିଣ୍ଡିଟି ଉପରେ ବୈଷ୍ଣବ ମହାନ୍ତି ଅବଧାନେ ବେତ ଧରି ଗାଁଟିଲାମାନଙ୍କୁ ପାଠ ପଢ଼ାଉଛନ୍ତି । ମନରେ କଲା, ‘ଏହି ଚାଟଶାଳୀରେ ଅନୁକୁ ବସାଇ ଦେଲେ ପାଠ କି ହେବ ଆଉ ଗାଁ କି ବୁଲି ପାରିବ ନାହିଁ ।’ ତହିଁ ଆରଦିନ ଅବଧାନ ପାଖରେ ଗୁହାରିଦେଇ କହିଲା, “ଅବଧାନେ ! ଅନୁକୁ ଟିକିଏ ଭଲକରି ପାଠ ପଢ଼ାଅ ।” ଅନୁ ଭଲ ପିଲାଟି ପରି ଚାଟଶାଳୀରେ ବସିଗଲା । ସେ ପୃଥିବୀରେ ଏକଲା ମାକୁ ଡରେ, ଆଉ ମା-କଥା ମାନେ ।

ଅବଧାନେ ଭୂଇଁରେ ଅ, ଆ ଲେଖିଦେଲେ, ତା’ ଉପରେ ଖଡ଼ି ମଡ଼ାଇବାକୁ କହିଦେଲେ । ତଳେ ହାତ ବୁଲାଉଛି, ହେଲେ ଉପରେ ବଉଳଗଛରେ କେଉଁଠି କୋଳି ଅଛି, କେଉଁଠି ପାଚିଛି ଅନାଇ ଦେଖୁଥାଏ । ନଜର ପଡ଼ିଲେ ମାଙ୍କଡ଼ ପରି ଡୁପ୍‌କରି ଚଢ଼ି ଯାଇ କୋଳି ଆଣି ପାଟିରେ ପକାଇ ଲେଖିବାକୁ ବସିଯାଏ । ତାର ଗଛ ଚଢ଼ାରେ ଭାରି ଅଭ୍ୟାସ । ତା’ ତେନ୍ତୁଳି-ଗଛକୁ ମାଙ୍କଡ଼ ଆସିଲେ ଉପରକୁ ଉଠଯାଇ ମାଙ୍କଡ଼ ଲାଙ୍ଗୁଡ଼ ଧରି ତଳେ କଚାଡ଼ି ମାରିପକାଏ । ଗଛ ଚଢ଼ାରେ ମାଙ୍କଡ଼ ତା’ ସଙ୍ଗରେ ପାରିବେ ନାହିଁ । ଏଣେ କେତେଟା ଦିନ ଭିତରେ ଅବଧାନେ ଅଥୟ ହୋଇଗଲେଣି, ତା’ ଡରରେ ଚାଟଶାଳୀରୁ ଆଉ ଟିକିଏ ଗୋଡ଼ କାଢ଼ି ପାରୁ ନାହାନ୍ତି । ଟିକିଏ ଅବଧାନେ ପଛ କଲେ, ଚାଟଶାଳୀରେ ଭାରି ଗୋଟାଏ ଚହଳ ପଡ଼ିଯାଏ । କେଉଁ ପିଲାକୁ ପେଲିଦେଲା, କାହାକୁ ଧକା ମାରିଲା, କାହା ଗୋଡ଼ ଧରି ଟାଣିଲା, କାହାକୁ କଚାଡ଼ି ଦେଲା—ଏହିପରି ଲାଗେ । ଅଉ ପିଲେ ତାହାକୁ ବାଡ଼େଇଲେ ତା’ର ଭାରି ଆନନ୍ଦ, ସେ କାହାରିକୁ ବାଡ଼ାଏ ନାହିଁ; ହେଲେ ତାକୁ ଡରରେ ବାଡ଼ଉଛି କିଏ ? ଅବଧାନେ ପହିଲେ ପହିଲେ ସିଂହାଣୀର ଡର, ଆଉ ସେ ଦହି ବିକସାରି ବାହୁଡ଼ାବେଳେ ଅବଧାନଙ୍କ କଂସାରେ ଯେ ଚାରି

ସତେଇ ଚଲ୍ହା ଡାକ ଦେଇଯାଏ ଚେଙ୍କ ଲୋଭରେ ଅନ୍ଧାକୁ କଚ୍ଛି କହୁଥିଲେ ନାହିଁ । ମଣିଷ ଡର ଓ ଲୋଭରେ ଢେର କାର୍ଯ୍ୟରୁ ନିବୃତ୍ତ ହୁଏ । ଆଉ ସମ୍ଭାଳ ପାରିଲେ ନାହିଁ । ଧଇଲେ ବେତ । ପଢ଼ିଲେ ବି ପାହାର ଦୁଇ ପାହାର, ଛ ପାହାର ପଟାପଟ୍ କରି ଦିଅନ୍ତି । ହେଲେ ଅନ୍ଧାର ସେଥିକି ଅନାଇବାକୁ ନାହିଁ । ଅବଧାନେ ପିଟିବାବେଳେ ବଉଳକୋଳକୁ ଅନାଇଥାଏ, କେହି କେହି ଦିନ ହେଲେ ମାଉ ଜାଗାଟା ଆଉଁସିଦିଏ । ଆଉ ଚଟଶାଳୀଟାକୁ କହୁଛି, "ମହାଦେବର ବେଲପତ୍ରୀ ଉଶା, ଅନ୍ଧାର ମାଉର ଉଶା ନାହିଁ ।" ଚଟଶାଳୀରେ ଏତେ ଯେ ମାଉ ତା' ମା ହେଲେ କଚ୍ଛି ଜାଣିପାରେ ନାହିଁ । ଅନ୍ଧା ସବୁ ଭୁଲିଯାଏ । ଚଟଶାଳୀରୁ ବାହାରିବା ବେଳେ ସେ ମାଉ କଥା ତାର ମନେ ଥାଏ ନାହିଁ । ଏଇ ରକମ ଦୁଇ ମାସ ଗଲା, ପାଞ୍ଚ ମାସ ବି ଗଲା, ଅନ୍ଧା ଅ ଅକ୍ଷରଟା ଲେଖି ସାରି ଆ ମଣ୍ଡାଉଛି । କେତେ ଖଣ୍ଡ ବେତ ଛିଡ଼ି ଗଲଣି, ଅବଧାନେ ଆଉ ପାରୁ ନାହାନ୍ତି । ତାକୁ ବାହାର ବି କରିଦେଇ ପାରୁ ନାହାନ୍ତି, ଚଲ୍ହା ମିଳିବା ବନ୍ଦ ହୋଇଯିବ ଯେ ! ଦିନେ ଅବଧାନେ ଆଉ ପାରିଲେ ନାହିଁ । ବେତ ଫୋପାଡ଼ି ଦେଇ ଦି ଚାରିଖଣ୍ଡ ବଛୁଆଡ଼ି ଛଡ଼ି ଆଣିଲେ—ଗୋଡ଼ରେ ହାତରେ ପିଠିରେ ଦଶ କୋଡ଼ିଏ ପାହାର କଷି ଦେଲେ । ସେହିଦିନ ଅନ୍ଧକୁ ଟିକିଏ ବାଧିଲା । ହେଲେ ଆଖିରୁ ପାଣି ପଡ଼େ ନାହିଁ । ଚଟଶାଳୀଙ୍କ ଆଗରେ କହିଲା, "ଶଳା ମାହାନ୍ତକୁ ମୁଁ ଦେଖିବି ।" ତହିଁ ଆରଦିନ କଣ ହେଲାକି ଅନ୍ଧା ଏକଧ୍ୟାନରେ ବସି ଅକ୍ଷର ମଣ୍ଡାଉଛି, କାହାକୁ ଅନାଇବାକୁ ନାହିଁ । ଭରି ତଳେପିଲିଟିଏ । ଅବଧାନେ ଟେରେଇ ଟେରେଇ ଦୁଇ ଚାରିଥର ତାକୁ ଅନାଇଲେଣି । ଭାରି ଖୁସି । ମନରେ କଲେ, 'ଏତେ ସୁନ୍ଦର ଉପାୟ ଥିଲା — ହାୟ ! ହାୟ ! ଆଗରୁ କିଆଁ ନ କଲି ?'

ଦିନ ପହରକ ସମୟରେ ଅବଧାନଙ୍କୁ ପଦାଆଡ଼େ ଚଳିବ ହେଲା । ଡାକ ଦେଲେ, "ଆରେ ! ନିଆଁ ଆଣ ରେ, ଧୂଆଁପତ୍ର ଆଣ ରେ, ନୋଟା ଆଣ ରେ ।" ପୁଞ୍ଜାଏ କ ଛ'ଟା ଚଟଶାଳୀଆ ଧାଇଁ ଯାଇ ସବୁ ଠିକ କରିଦେଲେ । ଅବଧାନଙ୍କର ସବୁ କାମ ପିଲାମାନେ କରନ୍ତି । ଅବଧାନଙ୍କର ଗୋଡ଼ଘଷା, ପାଳଟା ଲୁଗା କଚ୍ଛ, ସଙ୍କୁଡ଼ ଧୂଆ ବିଲକୁଲ କାମ ପିଲାମାନେ କରନ୍ତି । ଯେଉଁ ଲୋକ ପୁଅ ହେଉ ପଛକେ ଅବଧାନଙ୍କ ଗୋଡ଼ ଘଷିବ । ଗୁରୁଙ୍କ ଗୋଡ଼ ଘଷିଲେ ପାଠ ଆସେ । ଅବଧାନେ ପିକାଟିଏ ଭଲ କରି ମୋଡ଼ିଲେ—ନିଆଁଖୁଣ୍ଟାରେ ପକାଇ ଲଗାଇଦେଇ ଦି'କଳ ଭିଡ଼ିଲେ । ଫୁ କରି ଧୂଆଁ ଛାଡ଼ି ଦେଇ କହିଲେ, "କି ବେ ମୁକୁନ୍ଦା । ଧୂଆଁ ଲାଗୁନାହିଁ ଯେ ?"

ମୁକୁନ୍ଦା କହିଲା—ମୁଁ କଣ କରିବି ଅବଧାନେ ? ବାବା ତ କାଲି ହାଟରୁ ଏଇ ଧୂଆଁ ଆଣିଛି ।

ଅବଧାନେ—ବେ ବିଦିଆ ! ତୋ ବାପ କଟକରୁ ଯେ ବାଲେଶ୍ୱରୀ ଧୂଆଁପତ୍ର ଆଣିଥିଲା, ତାକୁ ଆଉ ଆଣିଲୁ ନାହିଁ ତ !

ବିନୋଦ -ମୁଁ କଅଣ କରିବି ଅବଧାନେ, ମା ତାକୁ ବଡ଼ା ବାନ୍ଧି ସିକା ଉପରେ ରଖି ଦେଇଛି; ମୋ ହାତ ପାଇଲା ନାହିଁ ।

ଅବଧାନେ—ଅଚ୍ଛା ତୁ ଗୋଟାଏ କାମ କରିବୁ । ତୋ ମା ଯେତେବେଳେ ଗାଧୋଇ ଯାଇଥିବ ତୁ ଗୋଟାଏ ବଡ଼ ପାଛୁଆ ଓଲଟ଼ି ପକାଇବୁ, ତା ଉପରେ ଚଢ଼ି ସିକାରୁ ଧୂଆଁପତ୍ର କାଢ଼ିବୁ । ସେଥିରୁ ଦୁଇ ଚାରି ଖଣ୍ଡ କାଢ଼ି ନେଇ ବଡ଼ା ବାନ୍ଧି ସିକାରେ ଥୋଇ ଦେବୁ । ଖବରଦାର ! ବେଶିଗୁଡ଼ାଏ ଆଣିବୁ ନାହିଁ । କାଲି ସକାଳେ ଯଦି ନ ଆଣିବୁ, ଅନାଇଥା ଏ ବେତକୁ ।

ଅବଧାନେ ଫେର ଥରେ ଅନ୍ତାକୁ ଅନାଇଲେ । ଅନ୍ତୁ ଧୀରେ ବସି ଖୁବ୍ ମନ ଦେଇ ଅକ୍ଷର ବୁଲଉଛି । ଅବଧାନଙ୍କର ଭାରି ଦୟା ହେଲା । କଅଁଳରେ କହିଲେ, "ରେ ବାପ ଅନ୍ତୁ ! ନେ'ତ—ଟୁକୁଣାଟା ନେଇ ଟୁକୁଣେ ପାଣି ଆଣ ତ, ବହିର୍ଦ୍ଦେଶ ଯିବୁଁ ।" ଅନ୍ତୁ ଭଲ ପିଲାଟି ପରି ଟୁକୁଣା ଧରି ପୋଖରୀକୁ ଜଳ ଆଣିବାକୁ ଗଲା । ଅବଧାନେ ବସି ପିକା ଟାଣୁଥାନ୍ତି । ଅନ୍ତୁ ଆସେ ନାହିଁ—ବଡ଼ ମଠ କଲା । ଅବଧାନେ ଆଉ ସହି ପାରିଲେ ନାହିଁ । ଦୁଇଥର ତିନିଥର ମୋଖରୀତୋଠ ଆଡ଼କୁ ଅନାଇଲେଣି । ସେଠାରୁ ଉଠି ପିକା ଭଡ଼ ଭଡ଼ ତୋଠ ଆଡ଼କୁ ଚାଲିଗଲେ । ଅନ୍ତୁ ଟୁକୁଣାଟି ଧରି ଆଡ଼ ଉହାଡ଼ରେ ଲୁଚି ପଡ଼ି ଅବଧାନଙ୍କୁ ଅନାଉଥିଲା—ଆସୁଥିଲା ନାହିଁ । ଅବଧାନ ଉପରେ ଯେମିତି ନଜର ପଡ଼ୁଛି, ଧୀରେ ଧୀରେ ପାଖକୁ ଚାଲି ଆସିଲା । ଅବଧାନଙ୍କ ହାତକୁ ଟୁକୁଣାଟି ଏମିତି ବଢ଼ାଇ ଦେଲା, ଯେମିତି ଟୁକୁଣାର ପାଣିକୁ ଅବଧାନଙ୍କର ନଜର ନ ପଡ଼େ । ଅବଧାନେ ଡେବିରି ହାତ ପାଞ୍ଚଆଙ୍ଗୁଳିରେ ଟୁକୁଣା ଫନ୍ଦିଟି ଧରି ଡାହାଣ ହାତରେ ପିକା ଭଡ଼ ଭଡ଼ ଗାଁ ଶେଷମୁଣ୍ଡ ଗହୀର ବିଲକୁ ବହିର୍ଦ୍ଦେଶ ଗଲେ । ଅଧଘଣ୍ଟାଏ ହୋଇ ନାହିଁ, ଅବଧାନେ ତ ବିଲରୁ ଚାରି ଚାରି ହାତ ଡେଇଁ-ମାରି ରଡ଼ି ଛାଡ଼ି ଧାଇଁଛନ୍ତି । ଲୁଟା କେଉଁଠି ପଡ଼ିଲାଣି । ଲୁଗା ଖଣ୍ଡ ପଡ଼ିଥାନ୍ତା, ହାତରେ ଜାବୁଡ଼ି ଧରିଛନ୍ତି, ହେଲେ ଅଧା ଲଙ୍ଗଳା, "ରେ ଅଲପାଇସିଆ ରେ ! ରେ ସବନାସିଆ ଅନ୍ତା ରେ ! ମାରି ପକାଇଲା ରେ ।" ଯେମିତି ଚାଟଶାଳୀରେ ପହଞ୍ଚିଗଲେ, ଧରିଲେ ବେତ—"କାହିଁ ଅନ୍ତା ?" ଆଉ ଅନ୍ତା ! ଅନ୍ତା ଅନ୍ତର୍ଦ୍ଧାନ ।

ଅବଧାନେ ଚାଟଶାଳୀର ଏ ମୁଣ୍ଡ ସେ ମୁଣ୍ଡ ଗଡ଼ାଗଡ଼ି କରୁଛନ୍ତି, ପାଣି ପାଣି ରଡ଼ି ଛାଡ଼ିଲେ । ଗୋଟିଏ ପିଲା ଧାଇଁ ଯାଇ ତାଙ୍କ ଘୋଷାଇବାର ମାଠିଆରୁ କଂସାଏ ପାଣି ଆଣି ଦେଲା । ସେହି ପାଣିରେ ହାତ ଧୋଇ ପକାଇ ଯେମିତି ଗୋଟାଏ କୁଳକୁଞ୍ଚା କରିଛନ୍ତି, କଂସା-ଟିଣ୍ଡି ପାଞ୍ଚହାତ ଦୂରକୁ ଫୋପାଡ଼ି ଦେଇ—'ବୋପା ଲୋ ! ମା ଲୋ !' ବୋଲି କହି ଗଡ଼ିଲେ । ଆଉ ରଡ଼ି କରି ପାରୁ ନାହାନ୍ତି, ଖାଲି ଗଁ ଗଁ ଗର୍ଜୁଛନ୍ତି । ମୁହଁ ଭାରି ଫୁଲିଗଲାଣି—ଆଖିପତା ଫୁଲିଯାଇ ମାଡ଼ିହୋଇଲାଣି—ଆଖିକୁ ଦିଶୁ ନାହିଁ । ଗାଁ ଲୋକେ ଉଜାଡ଼ି ପଡ଼ିଲେ । 'କଣ ହେଲା, କଣ ହେଲା' କହି ଦି ଚାରି ଜଣ ଅବଧାନଙ୍କୁ ଧରି ପାଣିରେ ପକାଇଲେ । ସଞ୍ଜବେଳ ସରିକି ଅବଧାନଙ୍କୁ ବଡ଼ ଶୀତ ଲାଗିଲା । ପାଣିରୁ ଟେକି ଆଣି ପାଏ ଖସା ତେଲ ଅବଧାନଙ୍କ ଦେହସାକ ଘଷିଲେ । ତେତେବେଳେ ଅବଧାନଙ୍କ ପାଟିରୁ କଥା ବାହାରିଲା । ହେଲେ, ମୁହଁଟା ଆଟିକା ପରି ଫୁଲିଯାଇଛି । ଭଲ କରି କଥା କହି ପାରୁ ନାହାନ୍ତି । ଅବଧାନେ ଜଣାଇଲେ, 'ଭାରି ଭୋକ ।' ଆଉ ତ କିଛି ଖାଇ ପାରିବେ ନାହିଁ । ଗାଁ ଲୋକେ ଅଧସେରଟାଏ ଗରମ ଦୁଧ ଆଣି ଦେଲେ । ଢୋକେ ଢୋକେ କରି ତେତକ ପିଇ ଦେଇ ଅବଧାନେ ଟିକିଏ ସାବ୍ୟସ୍ତ ହୋଇ ବସିଲେ । ଥଣ୍ଡା ପଡ଼ିଗଲା—ଖସା ତେଲରେ ବାଇଡଙ୍କ ବିଷ ହରେ ! ଅବଧାନେ ଟିକିଏ ସାବ୍ୟସ୍ତ ହେଲେଣି । ଗାଁର ସବୁ ଲୋକେ ଜମା ହୋଇଥିଲେ । ପୁରୁଣା ପାଞ୍ଚଜଣ ଲୋକ ତନଖି କରିବାକୁ ବସିଗଲେ । 'କଥା କଣ ?—କିଆଁ ଅବଧାନେ ଏପରି ହେଲେ ?' ପ୍ରତ୍ୟକ୍ଷ ଏବଂ ପାର୍ଶ୍ୱବର୍ତ୍ତୀ ପ୍ରମାଣ ଏବଂ ଅବଧାନଙ୍କର ପୂର୍ବ ବ୍ୟବହାର ଆଲୋଚନା କରିବାରେ ସାଫ୍ ଜଣାଗଲା, ଏଟା ବାଣ୍ଡିପୁଅ ଅନନ୍ତାର କାମ । ସାଫ୍ ପ୍ରକାଶ ପାଇଲା କି, ଅବଧାନେ ଯେ ବହୁଆଡ଼ି ଛଡ଼ିରେ ପିଟିଥିଲେ, ତା ମନରେ ଥିଲା ରାଗ । ଆଜି ସକାଳେ ଯେମିତି ଅବଧାନେ ଟୁକୁଣାଏ ପାଣି ଆଣିବାକୁ କହିଲେ, ସେ ପୋଖରୀକୁ ଟୁକୁଣା ନେଇ ଯାଇ ଅଧଟୁକୁଣେ ଅଠାଳିଆ କାଦ ଭର୍ତ୍ତି କଲା । ଲୋକେ ଦେଖିଛନ୍ତି, ପୋଖରୀ ଆଡ଼ ବଣ ଉପରେ ଯେ ବାଇଡଙ୍କ ଲତା ମାଡ଼ିଛି ସେଥିରୁ ଦୁଇପୁଞ୍ଜା ଫଳ ଆଣି ଖପରିକାଠି ଚଣ୍ଡିକରେ ଆଁଶୁ

ସବୁ ସୁଝୁଛନ୍ତି । ଚୁଲିକୁଣରେ ଅଧେ ଆଁଶୁ ମିଶାଇ ଦେଇ ଆଉ ଗୁଡ଼ାଏ ପଚ ଖଣ୍ଡରେ ପୋଟଳା କରି ଅଗିରେ ଖୋସିଥିଲି । ଅବଧାନେ ଯେମିତି ପଦା ଆଡ଼େ ଯାଇଛନ୍ତି, ତାଙ୍କ ଭଣ୍ଡାଘରେ ଯେଉଁ ପାଣି କୁମ୍ଭେ ଥିଲି ସେଥିରେ ତାହା ମିଶାଇ ଦେଇ ପଳାଇ ଯାଇଛୁ । ଅବଧାନଙ୍କ ମନରେ ତ ଥିଲି ରାଗ । ବେତ ଧରି ଉଠି ପଡ଼ିଲେ, "ମୁଁ ଆଜ ରାଣ୍ଡିପୁଅ ଅନ୍ଧାକୁ ଦେଖିବି ।" ବାହାରିଲେ ଅନ୍ଧା ଦୁଆରକୁ । ଗାଁ ଲୋକ ସମସ୍ତେ ମନା କରୁଛନ୍ତି—ରାଗବେଳେ ମଣିଷର ଥାନ ଜ୍ଞାନ ଥାଏ ନାହିଁ । ଖଣ୍ଡେ ବାଟରୁ ଡାକୁଛନ୍ତି, "ଲୋ ଦେବକୀ ଗଉଡୁଣୀ ! ଲୋ ଦେବକୀ ଗଉଡୁଣୀ ! ସେ ରାଣ୍ଡିପୁଅ ଅନ୍ଧା ଅଲପାଇସିଆ କାହିଁ ।" ସିଂହାଣୀ ସେତେବେଳକୁ ସବୁ କଥା ଶୁଣିଲେଣି । ପୁଅକୁ ଘର ଭିତରେ ଲୁଚାଇ ଦେଇ ଦାଣ୍ଡପିଣ୍ଡାରେ ବସିଥିଲେ । ଅବଧାନ କଥା କାନରେ ଯେମିତି ପଡ଼ିଛି, ଘରଭିତରୁ ବାହାରି କଲେ ସେଇ ମଇଁଷିମଣା ଠେଙ୍ଗା । କୁହାଟଟାଏ ମାରି ଡାକି ଦେଲେ, "ଆରେ ଅଲପାଇସିଆ ! ମାହାନ୍ତି ଗୋଲାମ ! ଟାକୁଣିଖିଆ, ନଙ୍ଗଳିଆ ! ମୋ ଗିରସ୍ତ ଥିଲି ସାଇବର ଜମାଦାର— ମୁଁ ସିଂହାଣୀ—ମୋତେ କହୁଛୁ ଦେବକୀ ଗଉଡୁଣୀ ? ମୋ ପୁଅକୁ କହୁଛୁ ଅଲପାଇସିଆ ? କିରେ ତୋତେ କିସ ଲାଗିଲାଣି କି ? ରହ ତ ମାହାନ୍ତିଟୋକାକୁ ଦେଖେଁ ।" ସିଂହାଣୀ ମୁଣ୍ଡରେ ଲୁଗା ନାହିଁ— ଝେମ୍ପେ ଝେମ୍ପେ କେତେକେତେ କଞ୍ଚା ପାଚିଲା ବାଳ ଫର ଫର ଉଡ଼ୁଛି । ହାତରେ ଠେଙ୍ଗା । ସେହି ବିକଟାଳ ମୂର୍ତ୍ତି ଦେଖି ଅବଧାନଙ୍କର ତ ପିଳେହି ପାଣି ହେଲାଣି ! ସିଂହାଣୀର ଦେହବଳ ଅବଧାନଙ୍କୁ ଭଲ ଜଣା । ଦିନେ କଣ ହେଲା କି ସକାଳଓଳିଆ ସିଂହାଣୀ ଗାଁକୁ ନଈବନ୍ଧ ଉପରେ ବାଟେ ଦେଇ ବିକି ଯାଉଛି । ତେଣିକିବେଳେ ବିନୋଦବିହାରୀମନ୍ଦିରର ମାରଣା ଷଣ୍ଢଟା ବନ୍ଧିବାକୁ ଚଢ଼ି ଆସିଲା । ସିଂହାଣୀ ଗୁମ୍ କରି ଛିଡ଼ା ହୋଇଯାଇ ଧରିଲା ଷଣ୍ଢ ଶିଙ୍ଗ । ମୁଣ୍ଡ ଉପରେ ପସରାରେ ତିନି ମାଠିଆ ଘୋଳ, ତାକୁ ଧରିବାକୁ ନାହିଁ । ଷଣ୍ଢ ଶିଙ୍ଗ ଧରି କଡ଼େଇ କଡ଼େଇ ବନ୍ଧଧାରକୁ ନେଲେ । ଯେମିତି ପେଲିଦେଇ ଶିଙ୍ଗ ଛାଡ଼ି ଦେଇଛି ଷଣ୍ଢ ତ ପୁଞ୍ଛୋଳ ପରି ଗଡ଼ ଗଡ଼ ଯାଇ ନଈ ଭିତରେ ପଡ଼ିଲା । ସେହିଦିନଠୁଁ ଷଣ୍ଢ ଗ୍ଲେଟା, ମାରଣାପଣିଆ ଛାଡ଼ିଲାଣି । ଏଟା ଅବଧାନଙ୍କ ଆଖି ଦେଖିବା କଥା । ଉପରେ ଅବଧାନଙ୍କ ପଳାୟନ । ବାଘୁଣୀ ମୃଗକୁ ଗୋଡ଼ାଇଲେ ସେ ଯେମିତି ପଳାଏ, ଅବଧାନେ ସେହିପରି ପଡ଼ି ଉଠି ଧାଇଁଛନ୍ତି । ଆଣ୍ଠୁ ଗଣ୍ଠି ଛିଞ୍ଚି ଝର୍ ଝର୍ ରକ୍ତ ବହୁଛି । ସିଂହାଣୀ କାନ୍ଧରେ ଠେଙ୍ଗା, ଭଲୁକୁଣୀପରି ଅବଧାନ ପଛରେ ଧପ୍ ଧପ୍ କରି ଧାଇଁଛନ୍ତି । ଧାଇଁବା ବେଳେ ସେହି ବିଶାଳ ପେଟଟି ଦଲ୍ ଦଲ୍ ଶୁଭୁଛି । ହାତରେ ସେ ପିତଳବାହୁ ବଳାଗୁଡ଼ାକ ପାଏ ବାଟ ଯାଏଁ ଝମ୍ ଝମ୍ ଶୁଭୁଛି । ସିଂହାଣୀଙ୍କର ସେହି ରଡ଼ିରେ ଗାଁ କମ୍ପି ଯାଉଛି । ଅବଧାନେ ଗାଁ ମଝିରେ କେଉଁଠି ଅନ୍ଧାରରେ ମିଶିଗଲେ । ସିଂହାଣୀ ଡାକିଦେଲା, "ଆରେ କାଠିଖିଆ ମାହାନ୍ତି ଗୋଲାମ ! ମୋ ପୁଅକୁ କୁଆଡ଼େ ଲୁଚାଇଛୁ ଆଣି ଦେ । ଜାଣିଥା କାଲି ସକାଳେ ପିତଳବାହୁରେ ତୋ ମୁଣ୍ଡ ଚୂନା କରିବି ।" ହେଲେ ଅବଧାନଙ୍କୁ ତହିଁ ଆରଦିନ ସକାଳଠାରୁ କେହି କେବେ ସେ ଗାଁରେ ଆଉ ଦେଖିନାହିଁ ।

ଆହୁରି ବି ପାଞ୍ଚ ଛ ବରଷ ଗଲାଣି, ଅନ୍ଧା ଲାଗି ଗାଁର ଅନେକ ଲୋକ ଅସ୍ଥିର । ତାର ଆଉ କିଛି ଅତ୍ୟାଚାର ନାହିଁ । ଖାଲି କାହାର ବାଡ଼ିରେ ମକା, କାକୁଡ଼ି, କୋଳି, ଆମ୍ବ, ବେଲ କିଛି ରହିବ ନାହିଁ, ଆଉ ସୁନା ରୂପା ପଡ଼ିଥାଉ ଅନାଇବ ନାହିଁ । ହେଲେ ସେ ଯେପରି ଉତ୍ପାତିଆ, ସେହିପରି ବି ଭଲଲୋକ । ତାକୁ ରଗାଇଲେ ରକ୍ଷା ନାହିଁ । ସେ ଅଗେ ଦୁଷ୍ମନ୍ ଘରର ଖୁମ୍ବ ଆଉ କବାଟ ଭାଙ୍ଗେ । ମା ମନା କରିଛି କାହାର ଦେହରେ ହାତ ଦିଏ ନାହିଁ ! ଏଣେ ଯାକୁଲ୍ ସାକୁଲ ଟେକା ଟେକି କରି ତାକୁ ଏ କଥା କୁହ, ତୁମ

ଗୁହ କାଢ଼ିବ । କାହାର ବାଡ଼ ହଣା ଯାଉଛି ଅନ୍ତା ସେଠି ଦେଖୁଥିଲା—ତାକୁ ଯଦି କହିବ, "ବାପ ଅନ୍ତୁ । ତୁ ନ ହେଲେ କାହାର ଗାଁ ଚଳିବ ?" ଆଉ କିଛି କଥା ନାହିଁ, ଧରିଲା କୋଡ଼ି । ଚାରିଜଣ ମଣିଷ ଦିନଟିକ ଯାହା ପାରିବେ ନାହିଁ, ପହରକ ଭିତରେ ଫୁଟେ ଗହୀରରେ ବାଡ଼ଟାକୁ ତାଡ଼ି ପକାଇବ । ମୂଲିଆ ମିଳୁ ନାହିଁ, କାହାର ଘର ଛପରବନ୍ଧ ହୋଇ ପାରିଲା ନାହିଁ, ଧରିଲା ଅନ୍ତାକୁ—ସାକୁଲସାକୁଲି କରି କହିଲେ, ଦିନେ ଲାଗୁ, ବି ଦିନ ଲାଗୁ ସେ ଏକଲା ଗୋଟାଏ ଘର ଛାଇ ପକାଇବ । ରାମା ଭଣାର ବାପ ମରି ଘରେ ପଡ଼ିଛି । ବାଡ଼ରେ ମରିଛି ବୋଲି ତାକୁ କେହି ଉଠାଇବାକୁ ଆସିଲେ ନାହିଁ । ଅନ୍ତୁ ରାତି ଛ ଘଡ଼ି ବେଳେ ଗାଁ ପାଖ ଦେଇ ଯାଉଥିଲା, ତାକୁ ସବୁ କହିଲେ । ଆଉ କିଛି କଥା ନାହିଁ, ଏକଲା ହେଁସମିଶା କରି ମଡ଼ାକୁ କାନ୍ଧେଇଲା । ଅନ୍ଧାର ରାତି । ସେହି ସମୟରେ ବି ଗାଁରେ ବାଡ଼ ପଡ଼ିଛି । ଅଧକୋଶେ ଦୂରରେ ମଡ଼ାମଶାଣିରେ ମଡ଼ାଟାକୁ ଫୋପାଡ଼ି ଦେଇ ନଈରେ ବୁଡ଼ପଡ଼ି ବାହାରି ଆଇଲା । ଅନ୍ତା ବାଘ, ଭାଲୁ, ଭୂତ, ପ୍ରେତ, ସାପ, ବେଙ୍ଗ କାହାକୁ ଡରେ ନାହିଁ । ଅନ୍ତା ଲୋକଙ୍କ ବାଡ଼ରୁ ଫଳକନ୍ଦ ଲୁଟିପାଟି ଖାଇବ; ହେଲେ ତାକୁ କିଛି ଖାଇବାକୁ ଯାଚ, ରାଗି ଘରଦୁଆର ଭାଙ୍ଗିବ ।

ବନ୍ଧୁଆ ଚନ୍ଦ ଜଣେ ଚନ୍ତ୍ରୀ ମହାଜନ । ଆଠ ଦଶ-ହଜାର ଗଣିଦେବା ଲୋକ । ଲୁଗା କାରବାର କରେ । ଗୋଟାଏ ବଡ଼ ଦୋକାନଘର ତିଆରି କରୁଛି । ଚାରି-ଆଡ଼େ ଚୁଣ୍ଣ ପଡ଼ ଚଉକ ବୁଲି ଗଲାଣି । ମଝି ଖମ୍ବ ଯୋଡ଼ାକ ଅଠର ହାତ । ଭାରି ମୋଟା ଶାଳଗଅଳ । ଦଶଜଣ ଲୋକ କଷାକଷି କରି ମଝି ଖମ୍ବ ଛିଡ଼ା କରି ପାରୁ ନାହାନ୍ତି । ଜଣେ ହସି ହସି କହିଲା, "ଆମେ ଏତେ ପାରୁ ନାହୁଁ, ରଣ୍ଡିପୁଅ ଅନ୍ତା ହେଲେ ଏକଲା ଖମ୍ବଯୋଡ଼ାକ ଉଠାଇ ଛିଡ଼ା କରିଦିଅନ୍ତା ।" ଘଟଣା ଦେଖ, ତେତିକବେଳେ ଅନ୍ତା ଦାଣ୍ଡରେ ଯାଉଥିଲା । ବନ୍ଧୁଆ ଚନ୍ତ୍ରୀ ଡାକଦେଲା; "ଆରେ ଅନ୍ତା ! ଏ ଯୋଡ଼ାଏ ଖମ୍ବ ଉଠାଇ ଦେ, ତୋତେ ଦିଟଙ୍କା ଖଜାଖିଆ ଦେବି ।" ଆଉ ଯାଏ କାହିଁ ? "ହୁଁ ରେ ଶଳା ଚନ୍ତ୍ରୀ ! ମୁଁ ତୋର ଗୋଲାମ ? ତୋର ମୂଲ ଲଗିଛି ?" ଧାଇଁଲା ମାରିବାକୁ । ଚନ୍ତ୍ରୀ ତ ଡରରେ କୁଆଡ଼େ ପଳାଇଲାଣି । ଦଶଜଣଲୋକ କୋଡ଼ିଏ ଦିନ କାମ କରି ଯେତେ ଖମ୍ବ ପୋତି ଛିଡ଼ା କରାଇଥିଲେ, ସବୁଗୁଡ଼ାକ ଘଣ୍ଟାକ ଭିତରେ ଉପାଡ଼ି ପକାଇଲା । ହେଲେ, ଜଣାଶୁଣା ଲୋକେ ଅନ୍ତାଠାରୁ ଢେର କାମ କରାଇ ନିଅନ୍ତି । ରୋଜ ରୋଜ କାହାର ହେଲେ କିଛି ଟାଇଟି କରି ଦେଇ ଆସେ । ବନ୍ଧୁଆ ଚନ୍ତ୍ରୀ ଗାଁର ଭଲଲୋକ ପାଖରେ ଅନନ୍ତା ନାମରେ ଗୁହାରି କରି ଓଲଟା ଗାଳି ଶୁଣିଲା ।

ବିନୋଦରାଏପୁର ସର୍ଗବାନଦୀର ଉତ୍ତର କୂଳରେ । ନଦୀ ଗର୍ଭଠାରୁ ଗାଁଟା ଅତି ଅଳ୍ପ ଉଞ୍ଚା । ବଢ଼ିପାଣିରୁ ଗାଁ ରକ୍ଷା ନିମନ୍ତେ ସରକାର ବାହାଦୁର ଗୋପାଳପୁର କଣ୍ଡରୁ ରାମନଗର ଯାଏଁ ଅଠର ମାଇଲ ଲମ୍ବା କୋଡ଼ିଏ ହାତ ଓସାର ଦଶ ହାତ ଉଞ୍ଚା ଗୋଟାଏ କୂଳବନ୍ଧ ପକାଇଛନ୍ତି । ସେ ବନ୍ଧ ଯୋଗୁ ନଈକୂଳିଆ ଢେର ଗାଁ ଆଉ ବିଲବାଡ଼ି ରକ୍ଷାପାଏ । ବିନୋଦରାଏପୁର ଗୋଟିଏ ବଡ଼ ଧନବନ୍ତ ଗାଁ । ଗାଁ ତଳେ କଳିନ୍ଦବିଲ ଢେର । ଗାଁରେ ପ୍ରାୟ ଦୁଇଶ ଘର ବସ୍ତି । ସମସ୍ତେ ଥିଲା ଲୋକ । କେହି କାହାକୁ ଆଦୁଯଁଆ ହୁଏ ନାହିଁ । ସରକାରୀ ବଡ଼ ବଡ଼ ଅମଲା, ସ୍କୁଲ ମାଷ୍ଟର, କାରବାରିଆ, ମହାଜନ, କଲିକତିଆ ରୁକ୍‌ଟିଆ ଢେର ।

ଆଶିଣ ମାସ । ଦୁର୍ଗାପୂଜା ସମୟ । ବିଦେଶିଆ ସବୁ ଘରକୁ ଆସିଛନ୍ତି । ନାଚ ତାମସା, ଖିଆ ପିଆ ଦିନ ରାତି ଲାଗିଛି । ଗାଁଟା ଆନନ୍ଦରେ ଭାସୁଛି । ଫି ବର୍ଷ

ଏହି ସମୟରେ ଗାଁଟାରେ ବଡ଼ ଜୋର ହୁଏ । ଷଷ୍ଠୀ ବେଲବରଣ । ସକାଳଆ ଉତ୍ତର ଦିଗରୁ ଖଣ୍ଡେ ମେଘ ଦେଖାଗଲା । ସୂର୍ଯ୍ୟ ଉଇଁ ମେଘରେ ଡ଼ୁବିଗଲେ । ମେଘଟା ଦେଖୁଁ ଦେଖୁଁ ଆକାଶଯାକ ଘୋଟିଗଲା । ସଙ୍ଗେ ସଙ୍ଗେ ପବନ । ବୁଢ଼ା ଗୋବିନ୍ଦ ପଣ୍ଡେ କହିଲେ, "ଆରେ ବାପା ! ଡାକରିଷି କହିଛନ୍ତି

"ହସି ପଣେ—ଉଇଁ ନ ଦିଶେ,
ବାପ ବୋଲେ ପୁତା, ନଷ୍ଟେ ବରଷେ ।

ଆଜି ଜାଗ୍ରତ ଥାଅ, ନଷ୍ଟେ ବରଷା ହେବ ।" ପଣ୍ଡାଙ୍କ ମୁହଁ କଥା ମୁହଁରେ ଅଛି—ଟପ୍ ଟପ୍ ଟପ୍‌ର ଟପ୍‌ର କରି ପକାଇଲା ପାଣି; ଯେ ବର୍ଷୁଛି ସେହି ବର୍ଷୁଛି । ଷଷ୍ଠୀ, ସପ୍ତମୀ, ଅଷ୍ଟମୀ, ନବମୀ ସଞ୍ଜ ହେଲା, ପାଣି ଛାଡ଼ିବାକୁ ନାହିଁ, ଯେଉଁଠିକା ମଣିଷ ସେଇଠି ବସିଛନ୍ତି । ଶଏବର୍ଷର ବୁଢ଼ାମାନେ କହୁଛନ୍ତି, ଏପରି ବର୍ଷା କେବେ ଦେଖା ନ ଥିଲା । ଗାଁରୁ ପା ଭାଗ ଘରର କାନ୍ଥ ଧପ୍ ଧାପ୍ କରି ଚଳି ଗଲାଣି, ଦିନରାତି ପାଣି ପବନ ଖାଉଛନ୍ତି । ଦଶରା ଦିନ ସେମିତି ରାତିପାହୁଛି 'ଗାଁ ଗଲା, ଗାଁ ଗଲା, ଗାଁ ଗଲା' ଚହଳ ପଡ଼ିଗଲା । ଆଉ କଣ ଲୋକେ ଘରେ ରହିବେ ? ପାଛିଆ କୋଡ଼ି ଧେନ ବନ୍ଧକୁ ଧାଇଁଛନ୍ତି । ବଡ଼ସାନ ବିଚାର ନାହିଁ । ବ୍ରାହ୍ମଣ ପାଣ ଛୁଆଁ ଛୁଇଁ ହେଉଛନ୍ତି । ପାଛିଆ କୋଡ଼ି ଧରି ସମସ୍ତେ ବନ୍ଧ ଉପରେ ହାଜର । ନଈ ଦକ୍ଷିଣକୂଳକୁ ଅନାଇବା-ବେଳେ ଗୋଟା ସମୁଦ୍ର, ଆଉ କିଛି ନାହିଁ । ବଢ଼ି ପାଣି ବନ୍ଧ କାନେକାନ । ନଈ ଭିତରୁ ପାଞ୍ଚ ହାତ ଉଚ ଗୋଟାଏ ଗୋଟାଏ ଲହରି ଆସି ଝଲକେ ଝଲକେ ପାଣି ବନ୍ଧ ଟପି ପଡ଼ୁଛି । ଯେଉଁଠି ଝଲକେ ପାଣି ଟପି ପଡ଼ୁଛି, କେହି କାହାକୁ କହିବାକୁ ନାହିଁ—ଶଏ ବୋଝ ମାଟି ପଡ଼ିଯାଉଛି । ବନ୍ଧମୂଳଟା କୋରି ଗୋଟାଏ ଗୋଟାଏ ଟୋଖରି କରି ପକାଇଲାଣି । ଆଉ ଏଣେ କଣ ହେଲାକ ବୃତ୍‌କୋଣ ତଳେ ରାମପୁର ମୁହାଣ ବାଟେ ପାଣି ବୁଢ଼ିଆସି ଗାଁ ମୂଳକୁ ଲାଗିଲାଣି । ଗାଁ ତଳ ଗହୀରଗୁଡ଼ାକ ସମୁଦ୍ର ପରି ଜଳମୟ । ବନ୍ଧର ପାଣି ନ ଟପିଲେ ବି ତଳ ପାଣି ଆସି ଗାଁକୁ ଭସାଇ ନେବ । ପାଣିଟା ଯେମିତି ହୁ ହୁ କରି ବଢ଼ୁଛି ଗାଁ ଭିତରେ ପାଣି ପଶିଲା ବୋଲି ! ଘରେ ଆଉ ରହିବାବଡ଼ା କଣ ହେବ ? ଝିଅଲ୍‌ଗୁଡ଼ାକ ଘରୁ ବାହାରି ଆସି ଶଙ୍ଖ ହୁଳହୁଳି ପକାଉଛନ୍ତି । ଗୁଡ଼ାଏ ଝିଅଲୋ କଅଁଳା ଛୁଆଙ୍କୁ କାଖେଇ ରଡ଼ି କରୁଛନ୍ତି । ଶଙ୍ଖ, ହୁଳହୁଳି, ହରିବୋଲ, କାନ୍ଦଣାରେ ଗାଁଟା ଉଛୁଳି ପଡ଼ୁଛି । ସୂର୍ଯ୍ୟ ଡ଼ୁବେ ଡ଼ୁବେ । ଗାଧୁଆ ତୁଠ ବାଟେ ଗାଁକୁ ପଶିଲା ପାଣି । ଦେଖୁ ଦେଖୁ ପାଞ୍ଚହାତ ଗହିର ହୋଇଗଲା । ଚଉଡ଼ାଟା ବି ବେଳକୁବେଳ ବଢ଼ି ଯାଉଛି । ପିଚକାରି ମୁହଁରୁ ପାଣି ବାହାରିଲା ପରି ବେଗରେ ପାଣି ଗାଁକୁ ଧାଉଁଛି । "ହରିବୋଲ, ହରିବୋଲ—ଗଲା, ଗଲା ।" ଆଉ କିଛି କଥା ନାହିଁ । ଉଚ୍ଛୁଣି ସମୁଦ୍ରରେ ସମସ୍ତଙ୍କୁ ଯାକଦେବ । ପାଣିସୁଅ ବନ୍ଦ ପାଇଁ ଶ'କୁ ଶ ବୋଝ ମାଟି ପଡ଼ୁଛି; ମାତ୍ର ମୁଠାଏ ବି ରହୁନାହିଁ, ସୁଅ ଭସାଇ ନେଉଛି । ଏତେ ଯେ କାଣ୍ଡ—ଅନ୍ୟ'ର କାହିଁରେ ଚିନ୍ତା ନାହିଁ । ସକାଳୁ ଭିଜି ଭିଜି ଗାଁର ଚାରିପିଠ ବୁଲୁଛି । ଲୋକମାନଙ୍କ ବାଡ଼ିରୁ ଗଛମିଶା ମକା କାକୁଡ଼ି ଭାସି ଆସୁଛି, ତାହା ସବୁ କେବଳ ଅନ୍ଧାରେ ପୂରାଉଛି । ଯେତେବେଳେ ଗାଧୁଆ ତୁଠ କଡ଼ରେ ଘାଇ ହୁରି ଚଢ଼ିଲା, ସେତେବେଳେ ହସି ହସି କଣ ହେଉଛି ମଜା ଦେଖିବା ପାଇଁ ଧାଇଁଲି । ଦେଖିଲି ଯେ, ଗାଁକୁ ଗୋଟାଏ ଘାଇ ପାଣିସୁଅ ଧାଇଁଛି । ଶୁଣିଲି ଯେ ଗାଁ ଭାସିଯିବ । ଭଲ କରି ଅନାଇ ଧାଇଁଲି ଗାଁ ଭିତରକୁ । ବିନୋଦ-ବିହାରୀ ଠାକୁର ସିଂହଦୁଆର କବାଟଟା ପାଞ୍ଚହାତ ଉଞ୍ଚା, ଚାରିହାତ ଚଉଡ଼ା । ତାକୁ କାଢ଼ି ପକାଇ ମୁଣ୍ଡାଇ ଧାଇଁଛି । ଦାଣ୍ଡପାଖରେ ପାଞ୍ଚଶପାର ମେଳରେ ଗୋଟାଏ ଢେଙ୍କି ପଡ଼ିଛି ତାକୁ ଜଣା । ଢେଙ୍କି କାଢ଼ି କାଖେଇଲି । ମୁହାଣରେ କବାଟଟାକୁ ଆଡ଼ କରି ଠିଆ କରି ଦେଇ ଢେଙ୍କିଟା ଠେକେଇ ଦେଲି । ଆଉ ପିଠି ଡ଼ିଡ଼ିଦେଇ କପାଟଟାକୁ ଠେଲି ଧରିଲି । ତାହା ବାଦ

ପାଟି କଲା, "ପକାଅ ମାଟି, ପକାଅ ମାଟି ।" କେବଳ ଡାକୁଛି, "ପକାଅ ମାଟି, ପକାଅ ମାଟି, ପକାଅ ମାଟି ।" କପାଟ ଦୁଇ ପାଖରୁ ଝ'ଝ' ମାଟି ଝପ୍ ଝପ୍ ପଡ଼ୁଛି, ଅନ୍ଧା ଗୁଡ଼ ଯାଏଁ ମାଟି ହେଲାଣି, ଡାକୁଛି ଅନ୍ଧା, ବେକ ପୋତି ଗଲାଣି; ସେଥିକି ତାର ନଜର ନାହିଁ । ଯେତେବେଳେ ଓଠ କଡରେ ମାଟି ପଡ଼ିଲା— ଦୁଇଥର ଡାକ ଦେଲା, "ହରିବୋଲ, ହଅ, ମାଟି ପକାଅ ।" ଆଉ ଅନ୍ଧା ପାଟି ଶୁଭିଲା ନାହିଁ । ମାଟି ସେହିପରି ପଡ଼ୁଛି । ପାଣି ସୁଅଟା ବନ୍ଦ ହୋଇଗଲା । ଲୋକମାନଙ୍କର ଭରସା ହେଲା, ଟିକିଏ ନିଶ୍ୱାସ ପକାଇଲେ । ତେତେବେଳେ ଖୋଜିଲେ 'ଅନ୍ଧା କାହିଁ ? ଆଉ ଅନ୍ଧା ? ତା ମୁଣ୍ଡ ଉପରେ ବି ହାତ ମାଟି । ଡାକ ପଡଗଲା "ଧନ୍ୟ ଧନ୍ୟ ରାଣ୍ଡିପୁଅ ଅନ୍ଧା !" ପିଲା, ବୁଢ଼ା, ମାଇକିନିଆ, ମର୍ଦ୍ଦ ଗାଁର ହଜାର ଲୋକ ସମସ୍ତେ ହରିବୋଲ ଦେଉଛନ୍ତି, ସମସ୍ତେ କହୁଛନ୍ତି—"ଧନ୍ୟ ଧନ୍ୟ ରାଣ୍ଡିପୁଅ ଅନ୍ଧା !" ଦଇବ ଯୋଗେ କଣ ହେଲା କି ବର୍ଷା ବନ୍ଦ । ନଈରୁ ପୁଟେ ପାଣି ଖସି ପଡ଼ଲାଣି । ଅନ୍ଧା ମା ପିଣ୍ଡାରେ ବସିଥିଲା । ହୁରି ଆନନ୍ଦ ଶୁଣି କହିଲା, "କଣ ହେଲା ଦେଖେ ? ପୁଅଟା କି ଆସିଲା ନାହିଁ, ଡାକି ଆଣ ।" ତା ସ୍ୱାମୀର ଠେଙ୍ଗା କାନ୍ଥରେ ପକାଇଲା । ଘର ଦୁଆରଟା କିଲି ଦେଇ ବାହାରିଲା । ଯେମିତି ଦାଣ୍ଡରେ ଯାଉଛି— ଶୁଣିଲା ଯେ ସମସ୍ତେ କହୁଛନ୍ତି, ଧନ୍ୟ ଧନ୍ୟ ଅନ୍ଧା !" ସମସ୍ତେ ତା ଗୋଡ଼ତଳେ ପଡ଼ି କହୁଛନ୍ତି, "ଧନ୍ୟ ଧନ୍ୟ ତୋ ପୁଅ !" ସିଂହାଣୀ ସଳଖେ ସଳଖେ ଭୁଠ କଡକୁ ଚାଲିଗଲା । ସବୁ ଶୁଣିଲା, କାହାକୁ କିଛି କହିଲା ନାହିଁ । ବନ୍ଧ ଚାରିପାଖ ବୁଲି ଦେଖିଲା । ବନ୍ଧ ମଝିକୁ ଅନାଇଛି, ଚାରିପାଖ ବୁଲୁ ଛି । ଭୁଠ ମଝିକୁ ନଜର ଅଛି; ନଈ ଆଡ଼କୁ ପିଠି । ବନ୍ଧ ତଳେ ଯେ ଦଶହାତ ପାଣି ତାକୁ ତ ସେ କଥା ଅଜଣା । ଯେମିତି ନଈ ଆଡ଼କୁ ବୁଲି ଯାଇଛି, ଧପାସ୍ କରି ଗୋଟାଏ ଶବ୍ଦ ହେଲା । 'ହାଁ କଣ ହେଲା' କହି ଲୋକମାନେ ହଟା ଗୁରିଟା ମଶାଲ ଆଲୁଅ ନଈକୁ ଦେଖାଇଲେ । କୂଳଠାରୁ ପାଞ୍ଚ ହାତ ଦୂରରେ ପାଣି ଭିତରେ ଗୋଟାଏ ଗାତରେ ମେଞ୍ଚାଏ ଫେଣ ଘୂରିବୁଲିଟିଏ ଗୁଲୁଛି, ଦଶ ହାତ ତଳକୁ ଖଣ୍ଡିଏ ବାଉଁଶ ବାଡ଼ ଭସି ଯାଉଛି ।

— — —

## ଗାରୁଡ଼ ମନ୍ତ୍ର

ଏହିଟା ହେଲା ତିରିଶ ଚାଳିଶ ବର୍ଷ ତଳର କଥା । କଟକରେ କଲେଜ ନୂଆ ବସିଛି, ଏଫ୍.ଏ କ୍ଳାସ୍ ପର୍ଯ୍ୟନ୍ତ ପଢ଼ା ହୁଏ । ଉପର କ୍ଲାସରେ ଗୋଟି ପନ୍ଦର ଷୋଳ ଛାତ୍ର । ସେଥିମଧ୍ୟରୁ ଆଠ ଦଶଗୋଟି ମଫସଲିଆ, ସହର ଭିତରେ ନାନା ଜାଗାରେ ବସା କରି ରହିଛନ୍ତି । ସେତେବେଳେ କଲେଜରେ ବୋର୍ଡ଼ିଂ ନ ଥିଲା । କଟକ ଚୌଧୁରୀ ବଜାର ଭିତରେ ଗୋଟିଏ ସାଦା ଦୋମହଲା କୋଠାରେ ବସା—ଛାତ୍ରଟିର ନାମ ମଦନମୋହନ । ନାମଟି ପରି ପିଲାଟି ଦେଖିବାକୁ ମଧ୍ୟ ମଦନମୋହନ, ବୟସ ଜଣାଯାଏ ଷୋଳ ସତର ଭିତରେ । ବସାରେ ପୂଜାହାରୀ, ଗୋଟିଏ ଭଣ୍ଡାରୀ, ଆଉ ସାନ୍ତ ଏହି ତିନୋଟି ଲୋକ । ହେଲେ କଣ, କେହି ଘର କାନ୍ଧେଇ, କେହି ବୋଝ ମୁଣ୍ଡେଇ, କେହି ଛୁଚ୍ଛା ହାତରେ ରୋଜନା ଦୁଇ ତିନି ଜଣ ଧୂଳିଗୋଡ଼ିଆ ଲୋକ ଯା ଆସ କରନ୍ତି । ହନେ ବୋଲି ଉପୁରି ଲୋକର ଛୁଟିଣ ନାହିଁ । ଜନସପକ୍ଷ ଧରି ଉପୁରିଲୋକଙ୍କ ଯା ଆସ କରିବାର ଦେଖି ବସା ଆଖପାଖ ଦୋକାନିଏ ବୁଝିଲେଣି, ଏହି ବାବୁ ପିଲାଟି ମଫସଲର କୌଣସି ଜମିଦାର ଘରର ପୁଅ ହେବ । ଢେର ଧନ ପାଖରେ ଥିବା ଲୋକର ପରିଚୟ ଜାଣିବା-ପାଇଁ ଲୋକଙ୍କର ସହଜରେ ଇଚ୍ଛା ବଳେ—ତା ଉପରେ ପୁଣି ବଡ଼ଲୋକ ହେଲେ ଲୋକେ ଆଗେ ପରିଚୟ ଖୋଜି ବସନ୍ତି । ପାଖଲୋକେ ସମସ୍ତେ ଜାଣିଗଲେଣି ପିଲାଟି

ବଡ଼ନଈ ପରଗନାର ଶାଳପାଳ ତାଲୁକର ଜମିଦାର ଗୋଲାପଲୋଚନ ପଟ୍ଟନାୟକଙ୍କ ପୁଅ । ଏହା ମଧ୍ୟ ଜଣାଗଲାଣି, ଜମିଦାରଙ୍କର ଏହି ଗୋଟିଏ ବୋଲି ପୁଅ । ପୃଥିବୀରେ ଯେତେ ପ୍ରକାର ହତଭାଗ୍ୟ ଲୋକ ଅଛନ୍ତି, ସେମାନଙ୍କର ଯଦି ଶ୍ରେଣୀବିଭାଗ କରାଯାଏ, ଏକପୁଅ ବାପ ମା ନିଶ୍ଚୟ ପ୍ରଥମ ଶ୍ରେଣୀର ପ୍ରଥମରେ ପଡ଼ିବେ –ଏକଥା ଲେଖକ ତମ୍ବା ତୁଳସୀ ଶାଳଗ୍ରାମ ଛୁଇଁ ଦୃଢ଼ରୂପେ ବୋଲିବାକୁ ପ୍ରସ୍ତୁତ ଅଛି । ପୁଅ ଖାଇ ନାହିଁ, ବାପ ମା'ଙ୍କର ଉପାସ –ପୁଅଟିର ବେରାମ, ଆଖିରେ ନିଦ ନାହିଁ, ପେଟରେ ଭୋକ ନାହିଁ । ଦିନରାତି ବିଛଣା ପାଖରେ ଜଗି ବସିଛନ୍ତି । ପୁଅଟି କାହିଁରେ ସୁଖରେ ରହିବ, ଦିନ ରାତି ଭାବନା । ଆପଣାର ତିନିସିଆଁ ଲୁଗା, ପୁଅ ସକାଶେ ଜଥା କଣା ଲାଗିଛି । ଦେହର ରକ୍ତ ପରି ଟଙ୍କାଗୁଡ଼ିକ ପୁଅପାଇଁ ଅକାରଣ ବା ସକାରଣ ପାଣି ପରି ଖରଚ କରିବାକୁ ଟିକିଏ ହେଲେ ହାକିଆ ହୋଇ ପଡ଼ିବେ ନାହିଁ । ପରକାଳ ଗତିପାଇଁ ପ୍ରଭୁଙ୍କ ନାମ ଗୁଣିବାକୁ ବି ବେଳ ମିଳେ ନାହିଁ । ବାପ ମା'ଙ୍କର ଯେତେ କିଛି ଧର୍ମକାର୍ଯ୍ୟ, ସବୁଗୁଡ଼ିକ ପୁଅ ମଙ୍ଗଳ କାମନାରେ । ମଦନ କଟକରେ ପଢ଼ୁଛି, ବାପ ମା'ଙ୍କ ପିଣ୍ଡରେ ଅଛି ପ୍ରାଣ— ମନ ରହିଛି ପୁଅ ପାଖରେ । ରୋଜନା ପୁଅ ଦେହପା'ର ମଙ୍ଗଳ ଖବର ନ ପାଇଲେ ସାଆନ୍ତାଣୀ ଅଥୟ ହୋଇପଡ଼ନ୍ତି । କଟକ ସହର ଦୋକାନର ଗୁଡ଼ଲ-ଗୁଡ଼ାକ ପାଣିପଗା, ବାଲିଗୋଡ଼ମିଶା, ମଳୁଖିଆ । ସାନ୍ତାଣୀ ଉଆସ ମଧ୍ୟରେ ପୋଇଲିମାନଙ୍କୁ ଲଗାଇ ଉଆଖିଆ ସରୁ ଉରଆ କୁଟାଇ ବାହୁଙ୍ଗୀ ବେଠିଆରେ କଟକ ପଠାଇ ଦେଲେ । ତୋଟାରୁ ପାଚିଲା କଦଳୀ କାନ୍ଦିଏ ଅଇଲା । ମା ମନ କେତେକେ ବୁଝେ, ଆଗରୁ ହାଣ୍ଡିଏ ଫୁଲବଡ଼ି ପରା ହୋଇଥିଲା—ସବୁ କଟକକୁ ନେଇ ଯା । ଆଜି ପଠାଇବାକୁ କିଛି ନାହିଁ । ଲୁଚ୍ଛା ହାତରେ ହେଲେ ଜଣେ ନଗଦି ପାଇକ ଧାଇଁଯାଇ ପୁଅକୁ ଦେଖି ଆସୁ । ରୋଜନା ଏହିପରି ଚାଲିଛି ।

ଜମିଦାର ଗୋଲାପଲୋଚନ ପଟ୍ଟନାୟକେ ଆପେ ପାଠୁଆ ନ ହେଲେ କଣ ହେଲା, ପାଠର ମର୍ଯ୍ୟାଦା ବୁଝନ୍ତି, ଏଥି ସକାଶେ ସେ ଆଖି କାନ ବୁଜି ଇଂରେଜୀ ପାଠ ପଢ଼ିବା ସକାଶେ ପୁଅକୁ ବିଦେଶକୁ ପଠାଇ ଦେଇଛନ୍ତି । ମଦନ ଉଚ୍ଚଶିକ୍ଷା କଲେଜର ସବା ଉପର କ୍ଲାସରେ ପଢ଼େ । କଲେଜ ପଢ଼ା ବହି ଛଡ଼ା ବାହାର ବହି ଢେର ପଢ଼ିଗଲାଣି । ଭେଣ୍ଡିଆମାନେ ଉପନ୍ୟାସ ପଢ଼ିବାକୁ ସୁଖ ମଣନ୍ତି । ମଦନ ବି ଢେରଗୁଡ଼ାଏ ଉପନ୍ୟାସ ପଢ଼ିଗଲାଣି । ମଦନ ପିଲାଟା ଖୁବ୍ ଗମ୍ଭୀର, ମନମରା ଲୋକ । ହେଲେ କଣ,

"ଯୋଗୀକା ରୋଗୀକା ଭୋଗୀକା ନିଶାନ
ଆଁଖସେ ଜାନ ଅନ୍ତର ଆଁଖସେ ପହଚାନ ।"

ପାଟି ଫିଟାଇ ନ କହୁ, ମଣିଷ ମନର କଥା ଆଖିରୁ ଧରା ପଡ଼େ । ଦେଖା ଗଲାଣି, ମଦନ ଉପନ୍ୟାସ ବହିଖଣ୍ଡି ହାତରେ ଧରି ଏକଧ୍ୟାନରେ ଭକ୍ ଭକ୍ କରି ଉପରକୁ ଅନାଇ ଢେରବେଳଯାଏଁ କ'ଣ ଭାବେ । ସଞ୍ଜବେଳେ ନଈକୂଳରେ ବସି ଏହିପରି ଭାବୁଥିବାର ଦେଖାଯାଏ । ମଦନ ସାଙ୍ଗ ପଢ଼ୁଆ ହୃଦୟର ବନ୍ଧୁ ଗୋକୁଳ ବାବୁ ମଦନର ଏହିପରି ଭାବ ଦେଖି ପଚାରିଲେଣି, "ମଦନ ! ଏପରି ବସି କଣ ଗୋଟାଏ ଭାବୁ ରେ ?" ବନ୍ଧୁ ପାଖରେ ମନର କଥା ଫେଇ କହିଲେ ମନ ଟିକିଏ ହାଲୁକା ହୁଏ । ଦିନେ ମଦନ ହଠାତ୍ କହି ପକାଇଲା, "ଗୋକୁଳ ! ଏହି ଉପନ୍ୟାସ ଖଣ୍ଡି ପଢ଼ିଲ, ନାୟକ ନାୟିକାଙ୍କର କେମନ୍ତ ମଧୁର ପ୍ରଣୟ ପଡ଼ିଲ !" ଗୋକୁଳ ହସି ହସି କହିଲେ, "ଓହୋ ! ବୁଝିଛି, ତୁମେ ଏହିପରି ନାୟିକାଟିଏ ଖୋଜୁଛ ପରା ?" ଦୁଇ ବନ୍ଧୁ ଖୁବ୍ ହସାହସି ହେଲେ ।

ମନୁଷ୍ୟ କୌଣସି କାର୍ଯ୍ୟରେ ଲାଗିପଡ଼ିବା ଆଗେ ତାହା ମନରେ ତିନୋଟି ଅବସ୍ଥା ଘଟେ । ପ୍ରଥମେ ଅନୁଭୂତି, ଦ୍ୱିତୀୟ ଭାବନା, ତୃତୀୟ ଇଚ୍ଛା । ଗ୍ରନ୍ଥକାର

ମଧ୍ୟ ସେହିପରି କଥାଟାଏ କହିଛନ୍ତି,

"ଧ୍ୟାୟତୋ ବିଷୟାନ୍ ପୁଂସଃ ସଙ୍ଗସ୍ତେଷୂପଜାୟତେ ।"

ତରୁଣବୟସରେ ତରଳ ମନ ପ୍ରଣୟ ଆଡ଼କୁ ସହଜରେ ଢଳି ପଡ଼େ । ମଦନ ଉପନ୍ୟାସରେ ନାୟକ ନାୟିକାଙ୍କ ପ୍ରଣୟ କଥା ପଢ଼ି ପଢ଼ି ସ୍ଥିର କଲାଣି, ଏହିପରି କନ୍ୟାଟିଏ ପାଇଲେ ବିଭା ହେବ । ସଙ୍ଗେ ସଙ୍ଗେ ମନରେ ପଡ଼ିଗଲା,

"କୁମ୍ଭୀ ପରି ନଇଁ ନଇଁ ଗୋଡ଼ ଟିପି ଗମନା,
ମୁଖଚନ୍ଦ୍ର ଆବୃତ, ହାତେ ଲମ୍ବ ଓଢ଼ଣା,
ଚୁ—ଚ୍—କଥା କହେ ହାଉଡ଼ୀ ସମାନା
ଘରକୋଣବାସିନୀ, ବିରସବଦନା,
ମାର୍ଜାର ଶିଶୁ ପରି ମୁଦ୍ରିତନେତ୍ରା,
ତୈଳହରିଦ୍ରାବିଲେପିତଗାତ୍ରା ।"

ହାୟ ହାୟ ! ଦଉଫୁଟିଲା ପଦ୍ମଟିକୁ ବୋଦଖୋଞ୍ଜିରେ ଘୋଡ଼ାଇପକାନ୍ତି ! ଦେଶର କି କୁପ୍ରଥା ! କି କୁସଂସ୍କାର ! ଛି ଛି ଛି ! ଏପରି କାଠ କୁଣ୍ଢେଇଟାକୁ କିଏ ବାହା ହେବ ମ ! ମୁଁ ନ ହେବି ନାହିଁ ପଛକେ ବାହା !

ଗୃହ ଛ ମାସ ଉତ୍ତାରେ ଦିନେ ଫୁଲସଞ୍ଜ ସମୟ, ମୁଣ୍ଡରେ ଗାମୁଛା ଖଣ୍ଡେ ପାଗପରି ଗୁଡ଼ାଇ, ଅଣ୍ଟାରେ ପାଟ୍ଟେଢ଼ଖଣ୍ଡ ଭିଡ଼ା, ଆଣ୍ଠୁ ଯାଏ ଧୂଳି, ଅଳ୍ପ ନଇଁ ନଇଁ ଗୋଟିଏ ବୁଢ଼ା ବାଡ଼ି ଖଣ୍ଡିଏ ଠୁକ୍ ଠୁକ୍ କରି ବସାଘରର ହୋମହାଲ ଉପରକୁ ଉଠିଗଲେ । ହାତରେ ଛାଲଟିଏ ଧରି ପିଠିରେ ସାନ ବୋକରୁଟିଏ ପକାଇ ପଛରେ ଜଣେ ଭଣ୍ଡାରି ଗୁଡ଼ିଛି । ମଦନ ବାବୁ ତାଙ୍କୁ ଦେଖି ଚମକି ପଡ଼ିଲା ପରି ହୋଇ ପଚାରିଲେ, "ଇଏ ଅଜା, ଇଏ ଅଜା ! ଆପଣ କୁଆଡ଼େ ଅଇଲେ ? ଆପଣ କୁଆଡ଼େ ଅଇଲେ ? ଆରେ ଅଜାଙ୍କୁ ଗୋଡ଼ ଧୋଇବାକୁ ପାଣି ଦେ ରେ । ଧାଇଁ ଯା ବଜାରରୁ ଜଳଖିଆ କିଣି ଆଣ୍ ରେ ।"

ବୃଦ୍ଧ—ହେଉ ହେଉ, ସବୁ ହେବ, ତୁ ଏଡ଼େ ବ୍ୟସ୍ତ ହୋଇ ପଡ଼ ନା ।

ନବାଗତ ଏହି ବୁଢ଼ାଟିକୁ ଚିହ୍ନାଇଦେବା ଦରକାର, ନୋହିଲେ ପାଠକ କଷ୍ଟ ଛନ୍ଦ ହେବେ । ବୃଦ୍ଧ ନବଘନ ଦାସେ ସାନ୍ତାଣୀଙ୍କ ମାମୁ, ମଦନର ଅଜା । ଦାସେ ସାନ୍ତଙ୍କ ଘର ଗୁମୁକରଣ । ହେଲେ କଣ ହେଲା ମଦନ ଠିକ୍ ଅଜା ପରି ଭକ୍ତି କରେ, ଅଜା ବି ମୁନିବ ପୁଅ ବୋଲି ତୁମେ, ଆପଣ ନ କହି ତୁ—ଆରେ ବୋଲି ଡାକନ୍ତି, ସେହିପରି ସ୍ନେହ କରନ୍ତି । ଦାସେ ଗୋଡ଼ ହାତ ଧୋଇ ଟିକିଏ ଅଳ୍ପ ଗଡ଼ାଗଡ଼ି କରି ଖଣ୍ଡେ ଆସନରେ ବସିଛନ୍ତି । ଦିନେ ଆସନ୍ତି ନାହିଁ, ଆଜି କିଆଁ ଅଇଲେ । ମଦନର ମନ ଲାଗିଛି । ଯାଇ ପାଖରେ ବସିପଡ଼ି ପଚାରିଲା, "ଅଜା କିଆଁ ଆସିଛନ୍ତି, କଣ ଲୋଡ଼ା ବୋଲନ୍ତୁ, ଉଆସରେ ସବୁ ମଙ୍ଗଳ ତ ?"

ବୃଦ୍ଧ—ଉଆସରେ ସବୁ ମଙ୍ଗଳ, ସମସ୍ତଙ୍କ ଦେହ-ପା' ଭଲ, ଖୁବ୍ ମଙ୍ଗଳ କଥାଟାଏ କହିବାକୁ ଦଶ କୋଶ ବାଟ ଧାଇଁ ଆସିଛି । ବୋଲବି, ତୁ କିଆଁ ଏପରି ଛୁନଆ ହେଉଛୁ ?

ମଦନ ଟିକିଏ ଲାଜ ପାଇଲା ପରି ହେଲା, ମାତ୍ର କପରି ଝାଁ କରି କଥା ମନକୁ ବାଜିଗଲା, ଖୁବ୍ ଭଲ ମଙ୍ଗଳ କଥା । ଏଣେ ଚଞ୍ଚଳ ତ କହୁ ନାହାନ୍ତି, କଥା କଣ ? ସଫା ବୁଝି ନ ପାରିଲେ କଣ ହେଲା; ମାତ୍ର ମନଟା କେମିତିକା ଗୁଡ଼େଇ ଘୁଡ଼େଇ ହେଉଛି, ଉଦାସ ଉଦାସ ପରି ଜଣା ଯାଉଛି । ଉଠି ଯାଇ ପଢ଼ିବାକୁ ବସିଗଲା । ହେଲେ ପଢ଼ାରେ ମନ ଲାଗୁନାହିଁ । ଏ ବହି ଖଣ୍ଡ ସେ ବହି ଖଣ୍ଡ ତୁଙ୍କା ଓଲଟ ପାଲଟ କରୁଛି ।

× × × ×

ଅଜା ନାସ୍ତ ଦୁହେଁ ଖାଇ ବସିଛନ୍ତି । ଅଜା ଟିକିଏ ଗଲା ଖଙ୍କାରି ଦେଇ କଥା ଆରମ୍ଭ କଲେ, "ବୁଝିଲୁ

ମଦନ, ବାପା ସାନ୍ତ ମୋତେ ପଠାଇଛନ୍ତି, ତୋତେ ଘେନି ଗାଁକୁ ଯିବି । ତୋର ବାହାଘର ।" ମଦନ ଅଜା ମୁହଁକୁ ଏକଧ୍ୟାନରେ ଚାହିଁ କଥା ଶୁଣୁଥିଲେ, "ବାହାଘର" ଏହି କଥାଟା ଶୁଣି ତାଙ୍କ ମୁଣ୍ଡ ବୁଲାଇ ଦେଲାଣି । ହାତରୁ ଭାତଗୁଣ୍ଡାଟା କେତେବେଳେ ଖସି ପଡ଼ିଲା, ତାଙ୍କୁ ଜଣା ନାହିଁ । ଅଜା ସାନ୍ତ ଭାତଥାଳିରେ ହାତ ଦେଇ ତଳକୁ ଅନାଇ କଥା ହାଙ୍କି ଯାଉଛନ୍ତି—ମଦନଙ୍କ କାନରେ କଥାଗୁଡ଼ାକ ପଶୁଛି କି ନାହିଁ, ତାଙ୍କୁ ଜଣା । "ମଙ୍ଗଳପୁର ଜମିଦାର ରାମରାମ ଦାମଙ୍କ କନ୍ୟାଟିର ଏହି ମଦର ବରଷ ପଶିଛି । ଖୁବ୍ ଡୌଲ, ଗୋଟିଏ କାଠିରେ ଗଢ଼ା, ଚମ୍ପା ଫୁଲ ପରି ରଙ୍ଗ, ଖୁବ୍ ପାଠୋଈ; ଗୁଡ଼କୁ ଗୁଡ଼ ଗୀତ ମୁହେଁ ମୁହେଁ ହାଙ୍କିଯାଏ । ଦେଖ ମଦନ, ମୁଁ ଢେର ଆଡ଼େ ଲାଗି ଲାଗି ତୋ ପାଇଁ ଏହି କନ୍ୟାଟି ଠିକ୍ କରିଛି । କନ୍ୟାକୁ ଯେତେବେଳେ ଦେଖିବୁ, ଅଜା ସତୁଆ କି ମିଛୁଆ, ଜାଣିବୁ । ମୋ ପାଇଁ ବକସିସ୍ ଦରକାର । ତୋ ଆଡ଼ୁ ଅଲଗା ଗୋଟିଏ ବରମପୁରୀ ପାଟ ଜଥା ପାଇବି । କଣ କହୁଛୁ ମଦନ ?" ମଦନର ଜ୍ଞାନ ଅଛି ଯେ, କଥାର ଉତ୍ତର ଦେବ ? ବୋଧହୁଏ, ମନ ମଧ୍ୟରେ କହୁଛି, 'ଜଥା-ନା ତୋ ମୁଣ୍ଡ ବକସିସ୍ ପାଇବୁ ।' ମଦନ ବାପସାନ୍ତ ବଚନରେ ପଡ଼ି ଭାବୁଛି, ଆଖିରେ ନିଦ ନାହିଁ । ଆଜିକାଲିକା ଇଂରେଜୀ ପଢ଼ୁଆ ଭେଣ୍ଡିଆଙ୍କ ମଧ୍ୟରୁ ଗୋଟିଏ ଗୋଟାଏ ଅଦିନିଆଁ କଣ୍ଟାରୁ ବାହାରି ପଡ଼ନ୍ତି—ତାଙ୍କ ଜାଣିବାରେ ବାପଟା ମୂର୍ଖ, କିଛି ଜାଣେ ନାହିଁ, ସେମାନେ ଆପେ ଔପନ୍ୟାସିକ, କନ୍ୟା ବାଛି ବିଭା ହେବେ । କନ୍ୟାର ରୂପ ଗୁଣ ଘେନି ବାପ ସଙ୍ଗରେ ବୋଲାବୋଲି କରି ବସନ୍ତି । ମଦନ ସେପରି ଶ୍ରେଣୀରୁ ବାହାର । ଆଜଯାଏଁ ବାପର କୌଣସି କଥାରେ ଜବାବ ଦେଇ ନାହିଁ । ସେ ଗୋଟିଏ କଥା ଧରିଛି, ବାପ ପରି ମଙ୍ଗଳକାମୀ ତାହାର ଆଉ ଜଗତରେ କେହି ନାହିଁ । ଅନ୍ୟ ସ୍ୱାର୍ଥପର ଲୋକଗୁଡ଼ାଙ୍କ ପାଖରୁ କିଛି ଦୂରରେ ଥାଏ । ମାତ୍ର ମଦନ ବାହାଘରର କଥା ଶୁଣି ଟିକିଏ ଲାଜ ପାଇଲାଣି, ଅଜା ମୁହଁକୁ ଅନାଇ ପାରୁନାହିଁ, ବାପକୁ ଜବାବ ଦେବ କଣ ? ଢେର ଭାବି ଭାବି ଗୋଟାଏ କଥା ତାହା ମନରେ ପଡ଼ିଗଲା—ମୋତେ ଭଲ କରି ଇଂରେଜୀ ପଢ଼ାଇବା ପାଇଁ ବାପା ଢେର ଥର କହିଛନ୍ତି । ମଦନ ମନ ଟିକିଏ ଖୁସି ହେଲା, ଏହି କଥାଟିକୁ ସଞ୍ଚାଳି କରି ଶୋଇ ପଡ଼ିଲା ।

ତହିଁ ଆରଦିନ ସକାଳେ ଅଜା ନାତି ଦୁହେଁ ଖାଇ ବସିଛନ୍ତି । ବୁଢ଼ା ମନରେ ବିଚାରିଲେ, ପିଲାଟା ତ କିଛି ଜବାବ ଦେଲା ନାହିଁ—କଥା କଣ ? ନାତିର ମନ ବୁଝିବା ପାଇଁ ଅଜା କହି ବସିଲେ, "ବୁଝିଲୁ ରେ ନାତି, ଏପରି ପରମା ସୁନ୍ଦରୀ, ଏପରି ପାଠୋଈ ପାତ୍ରୀ, ଏପରି ଭଲ ଘର ଭାଗ୍ୟକୁ ମିଳେ । ହେବ ନାହିଁ କିଆଁ—ବାପସାନ୍ତ ଯେପରି ପୁଣ୍ୟବନ୍ତ, ତୁ ଯେପରି ପିତୃଭକ୍ତ ଧାର୍ମିକ ପିଲା ତୋତେ ଏ କନ୍ୟା ମିଳିବ ନାହିଁ ଆଉ କାହାକୁ ମିଳିବ ? ଦିନେ ହେଲେ ବାପ ସାନ୍ତଙ୍କ କୌଣସି କଥାରେ ନା-ପଦ ତୋ ମୁହଁରୁ ବାହାରି ନାହିଁ । ଏଥିଲାଗି ଦେଶଯାକ ତୋର ପ୍ରଶଂସା । ତୁ ପିଲାଟା ହେଲେ କଣ ହେଲା, ସବୁ ଶାସ୍ତ୍ର ବୁଝୁ । ଜାଣୁ ! ଶାସ୍ତ୍ରରେ ଲେଖା ଅଛି, 'ବାପ ଯେଉଁ ପୁଅ ପ୍ରତି ସନ୍ତୁଷ୍ଟ, ସବୁ ଦେବତାଠାରୁ ସେ ବର ପାଏ ।' ଆଉ ଗୋଟାଏ କଥା ବୁଝିଥା, ଏପରି ପାତ୍ରୀ ହାତରୁ ଥରେ ବାହାରି ଗଲେ ଆଉ କେବେଁ ମିଳେ ନାହିଁ । ବାପା ସେଥିପାଇଁ ଚଞ୍ଚଳ ହୋଇ ପଡ଼ିଛନ୍ତି । ସ୍ୱୀକୃତ ହୋଇ ଗଲାଣି । ଆସନ୍ତା ମକର ସତର ଦିନ ଶୁକ୍ଳ ଦଶମୀକୁ ଲଗ୍ନ, ତେଣିକି ଲଗ୍ନ ନାହିଁ । ଆଉ ତୋର ଯୋଡ଼ା ବୟସ ପଡ଼ିବ, ବର୍ଷେ ବାହା ବନ୍ଦ । ଯା, ସ୍କୁଲମାଷ୍ଟରଙ୍କୁ କହି ବୋଲି ତୋ ପୋଥିପତ୍ର ଘେନି ଚାଲିଆ । କାଲି ସକାଳେ ଚାଲିଯିବା । ଆଉ ଦିନ ନାହିଁ ମଝିରେ ମାସ ଯୋଡ଼ାଏ ।" ମଦନ ବାବୁ ମୁଣ୍ଡପୋତି ଧୀରେ ଧୀରେ କହିଲେ, "ବାପା

କହୁଛନ୍ତି, ମୁଁ ଭଲକରି ଇଂରାଜୀ ପାଠଟା ପଢ଼ିବି । ବି. ଏ. ପାସ୍‌ପାଏ ପଢ଼ିବାକୁ ମୋର ବି ଇଚ୍ଛା । ବାହା ଯା ହେଲେ ମୋର ଆଉ ପାଠ ହେବ ନାହିଁ ।”

ଅଜା ହଁ ହଁ, ସେ କଥା ବି ଉଆସରେ ପଡ଼ିଥିଲା । ବାପା କହୁଛନ୍ତି, ତୋର ଆଉ ପଢ଼ିବାର ଦରକାର ନାହିଁ । ଆଉ ତୋର ବି.ଏ ଫିଏ ପାସ ଫାସ ଦରକାର କଣ ରେ ? ତୁ କଣ ସରକାର ଘରେ ଚାକିରି କରିବୁ !

ମଦନ ବାବୁଙ୍କ ସଙ୍ଗୀନ ସରିଲା । ଫଁ କରି ନିଶ୍ୱାସଟାଏ ପକାଇ ତୁନି ହୋଇ ବସିଲେ । ଅଜା କଥା ଶୁଣି ଜୋକ ମୁହଁରେ ଲୁଣ ଦେଲା ପରି ତୁନି-ହୋଇ ବସିଲେ ।

ଜମିଦାରଙ୍କ ଉଆସର ଭିତରଟା ପୁର—ବାହା ଦିନଠାରୁ ସାନ ସାନ୍ତଙ୍କ ପୁର ଅଲଗା ହୋଇ ଯାଇଛି । ମଝି ଦୁଆରଟି କିଳିଦେଲେ ଦୁଇ ପୁର ସମ୍ପୂର୍ଣ୍ଣରୂପେ ଅଲଗା ହୋଇଯାଏ । ମଦନ ବାବୁଙ୍କ ବିଭା କାଲି ପରି ଚାରିମାସ ହୋଇଗଲାଣି । ଦିନ ରାତି ପୁର ମଧ୍ୟକୁ ଯା ଆସ କରିବାକୁ ମଦନ ବାବୁଙ୍କର ଇଚ୍ଛା; କିନ୍ତୁ ରାତି ପହରେକ ଆଗରୁ ପୁର ମଧ୍ୟକୁ ଯାଇ ପାରନ୍ତି ନାହିଁ । ବାହାର କଚେରି ଘର ଲଗା ଆପଣା ବୈଠକଖାନାରେ ବସି ପଢ଼ାପଢ଼ି କରୁଥାନ୍ତି । ମଦନମୋହନଟି ବଡ଼ ଲାଜକୁଳିଆ ପିଲା । ଦିନବେଳେ ଭିତର ଉଆସକୁ ଯିବା ସମୟରେ ପୋଇଲୀ ପରିବାରୀଗୁଡ଼ାକ କେହି ହସନ୍ତୁ ନ ହସନ୍ତୁ, ସେ ମନରେ କରନ୍ତି, ଯେମନ୍ତ ପୋଇଲୀଗୁଡ଼ାକ ହସୁଛନ୍ତି । ଆଉ ଆଉ ଜମିଦାରଙ୍କ ଘରପରି ଏହାଙ୍କ ଉଆସରେ ଅକର୍ମା ଅସଂଖ୍ୟ ପୋଇଲୀଗୁଡ଼ାଏ ବି ତେଜୁ । ସେ ଗୁଡ଼ାଙ୍କର ଆଉ ପାଇଟି କଣ ?

ଏ ତ ଗଲା ଗୋଟାଏ କଥା । ବଡ଼ କଥାଟା ଏହି ଯେ, ପଦ୍ମଟା ବୋହୂ, ଧାନଟା ପାଖେ ଜୋକପରି ଲାଗି ରହିଛି । ପଦ୍ମଟା ପୋଇଲୀ ହେଲେ କଣ ହେଲା, ତାହାର ଗୁଣ ଢେର । ଗାଁରେ ତାହାର ନାମ ଡାକ ଅଛି । ଗାଁ ମଧ୍ୟରେ କୌଣସି ସାନ୍ତଙ୍କ ଝିଅ ବଡ଼ଘର, ଦଶ ପନ୍ଦର ଦିନ ଆଗରୁ ମା ସାନ୍ତାଣୀ ପଦ୍ମକୁ ଡାକ-ନେଇ ଝିଅ ପାଖରେ ରଖି ଦିଅନ୍ତି । ଶାଶୁଘରକୁ ଯିବାବେଳେ ଝିଅ କାହାକୁ ଧରି କି କଥା କହି କିପରି କାନ୍ଦିବ—ଶାଶୁଘରେ କେତେ ଓଢ଼ଣା ପକାଇ କିପରି ନଇଁ ନଇଁ ଚାଲିବ, କିପରି ଚୁ—ଚୁ କଥା କହିବ, ଏସବୁ ସଦ୍‌ଗୁଣ ଶିଖାଇବାକୁ ପଦ୍ମକୁ କେହିବଳିଯିବ ନାହିଁ । ନିତାନ୍ତ ପରିତାପର ବିଷୟ, ଶିକ୍ଷାର, ବିଶେଷରେ ସ୍ତ୍ରୀଶିକ୍ଷାର ବହୁଳ ପ୍ରଚାର ଯୋଗୁ ପଦ୍ମ ଶ୍ରେଣୀ ଗୁଣବତୀମାନଙ୍କ ଦାନାପାଣି ପ୍ରାୟ ଉଠିଗଲାଣି । ଝିଅ ବିଭା ହୋଇ ଆସିବା ବେଳେ ମଙ୍ଗଳପୁର ତାଲୁକର ଜମିଦାରାଣୀ ପଦ୍ମକୁ କାନରେ ଆଖି ପୋଛି ପକାଇ କହିଲେ, “ଶୁଣ ପଦ୍ମ, ମନ ତୋତେ ଲାଗିଲା । ବୁଝି ସାବଧାନ ! ଝିଅର ଢଙ୍ଗଢାଙ୍ଗ ଲାଜ ସରମ କଥାରେ ଯେମନ୍ତ କେହି ଖୁଣ ନ ଧରିବ, ଆମ ବଂଶକୁ ନିନ୍ଦା ବୋଲଣା ନ ଆସେ ।” ପଦ୍ମ ଖୁବ୍ ଗର୍ବରେ ମୁରକି ହସଟାଏ ହସି କହିଲା, “ଆଜ୍ଞା ମଣିମା ! ଏକଥା କଣ ଆଜି ଦେଇକୁ ଶିଖାଇ ଦେବେ ?”

କନ୍ୟାଟିର ନାମ ମୋହିନୀ । ରୂପରେ, ଗୁଣରେ ବି ସେହିପରି ମୋହିନୀ । ମଦନ ବାବୁଙ୍କ ମନକୁ ବଡ଼ ଲାଗିଗଲାଣି । ଭାରି ଇଚ୍ଛା, ବୋହୂଟିକୁ ଭଲକରି ପଢ଼ା-ଇବେ, ସବୁବେଳେ ଦୁଇ ଜଣ ବସି କଥାଭାଷା ହେବେ, ସଞ୍ଜବେଳେ ତୋଟାରେ ବୁଲିବେ—ଉପାୟ କଣ ? ପଦ୍ମଟା ତ ସାଙ୍ଗେ ସାଙ୍ଗେ ଲାଗି ରହିଛି । କଣ ମନ୍ତ୍ର ପଢ଼ାଉଛି, ସେହି ମୂର୍ଖ ବୋହୂଟା ବି ଆଖି ଫିଟାଉ ନାହିଁ କି କଥା କହୁ ନାହିଁ । ଦିନେ ମଦନ ବାବୁ ଆପଣା ପଢ଼ା ଘରେ ବସି କଣ ଭାବୁଥିଲେ, ହଠାତ୍ ଖୁସିଟାଏ ହୋଇ ପାଟିକରି କହି ପକାଇଲେ, ବେଶ୍ ଉପାୟ ମନରେ ପଡ଼ୁଛି, ବେଶ୍ କଥା- ବେଶ୍ କଥା ।’

ମଦନ ବାବୁ ପ୍ରତିଦିନ ରାତି ପହରକ ସରକ ଉଆସ ଭିତରକୁ ଆସୁଥିଲେ । ଏଣିକି ଢେର ଥର ମଠ ହୋଇ ଗଲଣି, ଦିନେ ଦିନେ ଦେଡ଼ ପହର ବି ଗଡ଼ିଯାଏ । ଦିନେ ପଦ୍ମ ପଚାରିଲେ, "ହୋଇଲେ ଶୁନ୍ଧି ! ସାନ୍ତ ମଣିମାଙ୍କର ଉଆସ ଭିତରକୁ ବିଜେ ହେବାକୁ ଦିନେ ଦିନେ ଏତେ ମଠ ହୁଏ କିଁଆ ?" ବଡ଼ ଉଆସରେ ଢେରଗୁଡ଼ାଏ ପୋଇଲି; ମାତ୍ର ସାନ ସାନ୍ତଙ୍କ ଉଆସକୁ କେହି ଯାନ୍ତି ନାହିଁ । ପୁଅ ଗୋଲମାଲକୁ ଭଲ ପାଏ ନାହିଁ । ଏଥିପାଇଁ ମା ସାନ୍ତାଣୀଙ୍କର ମନା ? କେହି ପୋଇଲି ସାନ ସାନ୍ତଙ୍କ ଉଆସ ଭିତରକୁ ଯିବେ ନାହିଁ । କେବଳ ଶୁନ୍ଧି ପୋଇଲିକୁ ନମୋଦ କରି ଦେଇଛନ୍ତି- ସବୁବେଳେ ବୋହୂ ପାଖରେ ଥାଏ । ପାଠ ଘରେ ସାନ ସାନ୍ତ ଓ ଶୁନ୍ଧି କବେ଼କାରେ ବସି ଢେର ବେଳଯାଏ କଣ ଫୁସର-ଫାସର ହେଉ ଥିବାର କେତେ ଥର ଦେଖା ଗଲଣି । ପଦ୍ମ ପଚାରିବାରୁ ଶୁନ୍ଧି କହିଲା, "ତୁ ଶୁଣି ନାହୁଁ କି ଲୋ ପଦ୍ମ ଅପା ! ସାନ୍ତ ମଣିମା ଗାରଡ ମନ୍ତ୍ର ଫୁଙ୍କିବାକୁ ଯାନ୍ତି ପରା ।"

ପଦ୍ମ– ଗାରଡ଼ମନ୍ତ୍ର କଣ ଲୋ ?

ଶୁନ୍ଧି—କଣ କି, ଏ ଦେଶରେ ଏହି ଖରାଦିନଆ ଚନ୍ଦ୍ରା ନାଗ ଢେର ବାହାରି ମଣିଷଙ୍କୁ ଦଂଶି ଦିଅନ୍ତି । ସାନ୍ତଙ୍କୁ ଗାଡ଼େ଼ ମନ୍ତ୍ର ଜଣା, ଫୁଙ୍କି ଦେଲେ ବିଷ ଉଡ଼ିଯାଏ । ପଣକୁ ପଣ ରୋଗୀ ଭଲ ହୋଇ ଗଲେଣି । ଆଉ କଣ କହିବି ପଦ୍ମ ଅପା, ଏହି ପାଖ ଗାଁ ମଚ୍ଛପୁରରେ ପୁଞ୍ଜାଏ ବୋହୂ ଠକ ଠକ କରି ମରିଗଲେ । କେଡ଼େ଼ ସୁନ୍ଦର ବୋହୂଗୁଡ଼ିକ ଆହା ! ଆହା !

ପଦ୍ମ– ହଁ ଲୋ ଶୁନ୍ଧି । ସେଗୁଡ଼ାକ ସାନ ସାନ୍ତ ମଣିମାଙ୍କୁ କିଁଆ ବାଡନ ଦେଲେ ନାହିଁ ?

ଶୁନ୍ଧି—ହଁ, ସାନ ସାନ୍ତ ବିଜେ କରିଥିଲେ, ଢେର ଫୁଙ୍କାଫୁଙ୍କି କଲେ, ହେଲେ କଣ ହେଲା, ବୋହୂଗୁଡ଼ାକ ଆପଣା ଦୋଷରୁ ମଲେ ମ ! କଥା କଣ କି, ସାନ୍ତ ଆଗେ ମନ୍ତ୍ର ପାଣିରେ କାଠିମରା ରୋଗୀର ମୁହଁ ଧୋଇ ଦିଅନ୍ତି, ଆଉ ଯୁଡ଼ା ଫିଟାଇ ଦିଅନ୍ତି, ଆଉ ଗାରଡ଼ ମନ୍ତ୍ର ଡାକିବାବେଳେ ରୋଗୀ ମୁହଁରୁ ଲୁଗା କାଢ଼ି ସାନ୍ତଙ୍କ ମୁହଁକୁ ଚାହିଁ ରହିବା ବିଧି । ବୋହୂଗୁଡ଼ାକ ମନ୍ତ୍ର ପଢ଼ିବାବେଳେ ଯେମିତି ମୁହଁ ଢାଙ୍କି ପକାଇଲେ, ଠକ୍ ଠକ୍ କରି ଢଳି ପଡ଼ିଲେ ।

ପଦ୍ମ– ଆହା ! ପାଖରେ କଣ କେହି ପୁରୁଷ ମାଇପେ ନ ଥିଲେ ? ବୋହୂ ମୁହଁ ଢାଙ୍କିବାବେଳେ ତା ହାତ ଧରି ପକାଇଲେ ନାହିଁ କିଁଆ ? ଜୀବନ ବଡ଼ ନା ଲଜ ବଡ଼ ? 'ଆପଣାକଆକୁ ଇଲଜ କ୍ୟା' ! ହଁ ଲୋ ଶୁନ୍ଧି, କାଠିମରା ରୋଗୀର ମୁଣ୍ଡବାଳ ଫିଟାଇ ଦିଅନ୍ତି, ମୁଁ ଜାଣେ ।

ଶୁନ୍ଧି – ପଦ୍ମ ଅପା, ତୁ ତ ରୋଜନା ସଞ୍ଜବାଦେ ମାଛ ବଢ଼ାଇବା ଲାଗି ବୋହୂ ସାନ୍ତାଣୀଙ୍କୁ ଚୋଟାଆଡ଼େ ଘେନିଯାଉ । ହାତରେ ଗୋଟାଏ ଆଲୁଅ ଘେନିଗଲେ ଭଲ ହୁଅନ୍ତା ପରା !

ପଦ୍ମ—କଣ କହିଲୁ ଲୋ ଶୁନ୍ଧି, କଣ କହିଲୁ ! ଏଡ଼େ ମହତ ଘର ପୋଇଲୀଟା ହୋଇ କଣ କଥାଟା ମୁହଁରେ ଧରିଲୁ । ଦେଶରେ ମୂଲକରେ ଗୋଟାଏ ନିନ୍ଦା ଚହଲ ପଡ଼ିଯିବ ଯେ, ହାଣ୍ଡୁଆ ଘର ଝିଅଟା ପରି ମଶାଲ ଜାଳି ବାଡ଼ଆଡ଼େ ଯାଏ । ମା ସାନ୍ତାଣୀଙ୍କ କାନରେ ବାଜିଗଲେ କଣ ମୋ ଚୂଟି ପିଠି ରହିବ ? ଆମ ଉଆସରେ ତ ବୋଡ଼କୁ ବୋଡ଼ ପୋଇଲୀ—ମା ସାନ୍ତାଣୀ ବାଛି ବାଛି ମୋତେ ସଙ୍ଗରେ ଦେଲେ କିଁଆ ? ଆଲୋ ପଦ୍ମ ଯେବେ ସଙ୍ଗରେ ଅଛି, ଆମ ଜେମାଙ୍କର ଡର କ'ଣ ?

ସଞ୍ଜ ଗଡ଼ି ଗଲାଣି । ଘର ଭିତରେ ସବୁ ଅନ୍ଧାର । ବୋହୂଟି ଓଢ଼ଣା ପକାଇ ଚୋଟାଭିତରୁ ଧୀରେ ଧୀରେ ଚାଲିଛି । ପଧୀ ବାହାଟି ଧରି ଚଳାଇ ଆଣୁଛି । ଚୋଟା ଦୁଆର ଦୁଆରବନ୍ଧ ଡେଇଁ ଯେମିତି ଘର ଭିତରକୁ ପଶିବେ, କବାଟକଣରୁ ଦେଢ଼ହାତ ଲମ୍ବ ସାପଟାଏ ବାହାରି ବୋହୂ ଆଉ ପଧୀ ଗୋଡ଼ପାଖ ବାଟେ ହଲହଲ କରି ଚାଲିଗଲା । ପଧୀ ତ ବୋହୂଟାକୁ ଠେଲିଦେଇ 'ବୋପା ଲୋ' ବୋଲି ରଡ଼ିଟାଏ ଛାଡ଼ି ଘରେ ପଶି କବାଟ କିଳି ଦେଲାଣି । ବୋହୂଟା ହାଉଳି ଖାଇ ଠା ପଡ଼ିଗଲା, ଚେତା ନାହିଁ । ଶୁନ୍ଦୀ ଅଳ୍ପ ଦୂରରେ ଥିଲା, ଧାଇଁ ଆସି ବୋହୂଟିକୁ କାଖେଇ ପହଡ଼ି ଘର ଭିତରକୁ ନେଇଗଲା, ମୁହଁରେ ପାଣି ଛିଞ୍ଚିବାରୁ ବୋହୂର ଚେତା ଫେରିଲା । ଶୁନ୍ଦୀ କହିଲା, "ଆପଣ କିଛି ଡରିବେ ନାହିଁ । ସାନ୍ତଙ୍କୁ ଡାକି ଆଣୁଛି, ଏହି ଲଟେ ଭଲ କରିଦେବେ ।"

ସାନ ସାନ୍ତଙ୍କୁ ଦେଖି ବୋହୂଟାର ସାହସ ହେଲାଣି । ବରଡ଼ାପତ୍ର ପରି ଥରୁଥିଲା, ଏବେ ଓଢ଼ଣାଟି ପକାଇ ଚୁନ ହୋଇ ବସିଛି । ସାନ ସାନ୍ତଙ୍କ ତୁଣ୍ଡ ଶୁଣି ପଧୀ ବି ଆସି ପହଞ୍ଚିଗଲା । ମାତ୍ର ଏ ପର୍ଯ୍ୟନ୍ତ ତା ଦେହଟା ଟିକିଏ ଟିକିଏ ଥରୁଛି, ପାଟିରୁ କଥା ବାହାରୁ ନାହିଁ । ଦୁଇଖଣ୍ଡ ଆସନ ପଡ଼ିଲା, ବୋହୂ ଆଉ ସାନ ସାନ୍ତ ମୁହାଁମୁହିଁ ହୋଇ ବସିଲେ । ସାନ୍ତ ପଚାରିବାରୁ ପଧୀ କହିଲା, "ହଁ, ମୁଁ ସାପଟାକୁ ଦେଖିଛି—ତିନି କି ଚାରି ହାତ ଲମ୍ବ, ଦେହଯାକ କଳା ହଳଦିଆ ଡୋରିଡୋରି ଚିହ୍ନହୋଇଛି । ମୁଁ ଯେମିତି ସାପଟାକୁ ଦେଖିଲି, ତାକୁ ବାଡ଼େଇବା ପାଇଁ ଜେମାଙ୍କୁ ବସାଇ ଦେଇ ବାଡ଼ି ଖୋଜିବାକୁ ଧାଇଁଲି ।" ଦୁଷ୍ଟ ଶୁନ୍ଦୀଟା ମୁହଁରେ ଲୁଗା ଦେଇ ଟିକିଏ ହସିଲା ।

ସାପ କାମୁଡ଼ିଛି କି ନାହିଁ, ସାନ୍ତ ବୋହୂ ଗୋଡ଼ ଭିଡ଼ି ଆଣି ପରଖି ବସିଲେ । ବୋହୂଟା ଗୋଡ଼ ଭିଡ଼ି ନେଉଥାଏ । ସାନ୍ତ କହିଲେ, "ହାଁ ହାଁ, ଏପରି କଲେ ମନ୍ତ୍ର କାଟ୍ କରିବ ନାହିଁ । ଦେଖାଗଲା, ବୋହୂ ବାଁ ଗୋଇଠିରେ ଘାଉଡ଼ି ହୋଇଛି । ସାନ୍ତ କହିଲେ, "ହଁ ହଁ ସତ—ପଧୀ କଥା ସତ, ଏଟା ଚିତା ନାଗ, ଦେଖି ନାହଁ, ଗୋଟାଏ ଦାନ୍ତ ବସିଛି । ଏ ନାଗର ଗୋଟାଏ ବୋଲି ଦାନ୍ତ । ଚିନ୍ତା ନାହିଁ । ତି'କଲି ମନ୍ତ୍ର ଡାକି-ଦେଲେ ସବୁ ବିଷ ହରିଯିବ । ଆଲୋ ଶୁନ୍ଦୀ, ଯା, ଢେଙ୍କିର ହାତରେ ପୋଖରିରୁ କଂସାଏ ପାଣି ଆଣ—ଢେଙ୍କିର ଆଖି ବୁଜି ଯିବୁ—ସାପର ଗୋଟାଏ ଦାନ୍ତ ପଶୁ !"

ସାନ୍ତ—'ହଁ, ଏବେ ମୁହଁରୁ ଲୁଗା କାଢ଼ ।' ବୋହୂ ଓଢ଼ଣାଟାକୁ ଆହୁରି ଭିଡ଼ି ଦେଉଛି । ପଧୀ 'ଆଗୋ ମା ! ଓଢ଼ଣା କାଢ଼, ଓଢ଼ଣା କାଢ଼' କହି ଆଗେ ଓଢ଼ଣାଟା କାଢ଼ି ପକାଇଲା । ବୋହୂଟା ଭିଡ଼ି ମୋଡ଼ି ହେଉଥାଏ । ପଧୀ ଆଉ ଶୁନ୍ଦୀ ଦୁହେଁଯାକ ବୋହୂର ଦୁଇବାହୁ ଆଣ୍ଟି କରି ଧରି ବସିଥାନ୍ତି । ସାନ୍ତ ବୋହୂର ଯୁଡ଼ା ଫିଟାଇ ପକାଇଲେ । ଯୁଡ଼ା ଫିଟାଇବାବେଳେ ବୋହୂଟା କଡ଼ ଭିଡ଼ି ମୋଡ଼ି ହେଲା, ପଧୀ ମୁଣ୍ଡରେ ପିଠିରେ ହାତ ବୁଲାଇ ବହୁତ ହେମତ୍ ଦେଉଥାଏ । ବୋହୂଟା ଆଉ କଣ କରିବ, ଯୋଡ଼ାଏ ମାଇକିନିଆ ଆଣ୍ଟି କରି ଧରିଛନ୍ତି, ପଧୀ ପିଠିରେ ହାତ ବୁଲାଇ ହେମତ୍ ଦେଉଥାଏ । ସାନ୍ତ ପାଣି କଂସାକ ମନ୍ତ୍ରି ବୋହୂ ମୁହଁ, ଘାଉଡ଼ି ଜାଗା ତିନି ଥର କରି ଧୋଇ ଦେଲେ । ତାହା ବାଦେ କହିଲେ, "ଏବେ ମୁଁ ଗାରୁଡ଼ି ଡାକିବି, ମୋ ମୁହଁକୁ ଏକଧ୍ୟାନରେ ଚାହିଁ ରହିବାକୁ ହେବ ।' ଏଣେ ଜୀବନବିକଳ କଥା, ତେଣେ ମାଇକିନିଆ ଦୁଇଟାଙ୍କ ପାଟି—'ଚାହଁ ଚାହଁ ।' ବଡ଼ କଷ୍ଟରେ ବୋହୂ ମୁଣ୍ଡଟାକୁ ଟିକିଏ ଓହଳାଇ ସାନ୍ତଙ୍କୁ ଏକଧ୍ୟାନରେ ଚାହିଁ ରହିଲା । ବାବୁ ଗାରୁଡ଼ି ମନ୍ତ୍ର ଡାକିଲେ—

"ଅଂ କାଳନ୍ଦୀ ହ୍ରଦରେ ଥିଲା କାଳି;
କୃଷ୍ଣ ଗଲେ ଦେଲେ ଚୋଳ;
କାଳୀ ଦେଲା କାମୁଡ଼,
ଶ୍ରୀକୃଷ୍ଣ ଗଲେ ଚଢ଼ ।
ଗରୁଡ଼ ଅଇଲା ଉଡ଼ି କରି;
ବିଷ ଗଲା ଦା ମୁହଁରେ ହରି ।"
ଆ—ଫୁ—ଆ—ଫୁ - ଆ—ଫୁ—

ଏହିପରି ସାତଥର ମନ୍ତ୍ର ପଢ଼ିସାରି ରୋଗିଣୀ ବେକରେ ଖଣ୍ଡେ ମନ୍ତ୍ରା ସୂତା ବାନ୍ଧିଦେଲେ । ସାନ୍ତ କହିଗଲେ, 'ଶଙ୍ଖା ନାଗ ସାପ ବିଷ ପାଞ୍ଚଦିନ ରହେ—ପାଞ୍ଚଦିନ ସକାଳ ସଞ୍ଜ ମନ୍ତ୍ର ଫୁଙ୍କାଯିବ ।'

ସାନ୍ତ ଦେଖିଲେ, ରୋଗିଣୀ ଦେହରୁ ଅସଲ ବିଷଟା ଢେର ଛାଡ଼ି ଗଲାଣି । ମନ୍ତ୍ର ଫୁଙ୍କାବେଳେ ବୋହୂଟା ଖୁବ ବଳରେ ଓଠ କାମୁଡ଼ି ରହୁଛି, ହସ ସମ୍ଭାଳି ପାରୁ ନାହିଁ । ପଞ୍ଚମ ଦିନ ସକାଳେ ସାନ୍ତ କହିଲେ, "ବୋହୂ ବେକରେ ଯେଉଁ ସୂତା ବନ୍ଧା ହୋଇଛି, ଶନିବାର ବଡ଼ ସକାଳେ ଜଣେ ବିଧବା ସ୍ତ୍ରୀ ଅଧିଆମୁହଁରେ ଡେବରି ହାତରେ ସେ ସୂତା ଛିଣ୍ଡାଇ ନେଇ ଏକମୁହାଁ ଚାଲିଯିବ, ତିନି ମାସ ତିନି ପକ୍ଷ ତିନି ଦିନ ଦେଖା ଦେବ ନାହିଁ ।" ପଦ୍ମା ଚଞ୍ଚଳ କହି ପକାଇଲା, "ଆଉ କାହା ହାତରେ ହେବ ନାହିଁ, ମୁଁ ସୂତା ଛିଣ୍ଡାଇ ନେଇଯିବି ।" ସାନ୍ତ ତ ସେହି କଥା ଖୋଜୁଥିଲେ, ମନରେ ବଡ଼ ଖୁସି । ପଦ୍ମା ମନରେ ବି ବଡ଼ ଆନନ୍ଦ— 'ଭଲ ହେଲା, ଗାଁକୁ ପଳାଇବା ଏ ସାପୁଆ ମୁଲକରେ କିଏ ରହିବ ମ ?'

ମାସେ ଦୁଇମାସ ବିତି ଗଲାଣି, ସ୍ତ୍ରୀ ପୁରୁଷ ଦୁଇଜଣ ଉଆସ ଭିତରେ ବସି ପଡ଼ାପଢ଼ି କରନ୍ତି । ଉଆସ ପଛ ଚୋଟା ନିତିବୋଳ । ଦୁଇଜଣ ଫୁଲ ବଗିଚାରେ ସଞ୍ଜବେଳେ ବୁଲାବୁଲି କରନ୍ତି । ମୋହିନୀଟି ବୁଦ୍ଧିମନ୍ତ, ଗୁଡ଼ାଏ ପଢ଼ି ଗଲାଣି ।

ଦିନେ ମୋହିନୀ ହସି ହସି କହିଲା, "ହଁ ହେ, ତୁମେ ଏଡ଼େ ଦୁଷ୍ଟ ନା ?" ଖଣ୍ଡେ କାଗଜ ଖଣ୍ଡେ ଡାଙ୍ଗ ପଲଙ୍କ ଚନ୍ଦ୍ର କାଢି ଆଣିଲା—ତିନି ଆଙ୍ଗୁଳି ଅଧାଜ ଚୌଡ଼ା, ଦେଢ଼ହାତ ଲମ୍ବ ଖଣ୍ଡେ କାଗଜ— କଳା ଆଉ ହଳଦିରେ ଚିତ୍ର ହୋଇଛି ଏକ ପାଖ ମୁଣ୍ଡରେ ଖଣ୍ଡେ ଗେଙ୍ଗୁଟି ବନ୍ଧା । ସେହି ଗେଙ୍ଗୁଟିଟା ଧରି ଫୋପାଡ଼ି ଦେଲେ କାଗଜ ଖଣ୍ଡିକ ହଲହଲ ହୋଇ ସାପପରି ଚାଲିଯାଏ । ଆଉ ଖଣ୍ଡେ ବାଉଁଶକାଣି ଆଗରେ ଗୋଟାଏ କଣ୍ଟା ବନ୍ଧା । ମୋହିନୀ ହସି ହସି କହିଲା, "ତୁମେ ଏଡ଼େ ଦୁଷ୍ଟ, କବାଟ କଣରୁ କାଗଜ ଖଣ୍ଡ ଫୋପାଡ଼ି ଦେଇ କଣ୍ଟାଟା ଫୁଟାଇ ଦେଲ ?" ମଦନ ବାବୁ କହିଲେ, "ହୋଇ ଲେ ଶୁଣି, ଯାଙ୍କୁ କହିଦେଲୁ କିଆଁ ? ସାପ ଦେଖାଇଲୁ କିଆଁ ?" ଶୁଣି ହସି ହସି ପଳାଇଲା ।

—

## ଅଧର୍ମ ବିତ୍ତ

ବଜେ ନରହରିପୁର ଶାସନ ମୁଣ୍ଡ ସାହାଲା ଦାଉକୁ ଛାଡ଼ି ପଚିଶ ଷାଠିଏ କଦମ ଦୂରରେ ବଳଦେବଙ୍କ ପୂଜାପିଣ୍ଡି ବା ମଣ୍ଡପ । ଗ୍ରାମ ଦାଗକୁ ଛାଡ଼ି ପିଣ୍ଡିର ଆଉ ତିନି ପଟରେ ପାଞ୍ଚସାଲା, ଦଶସାଲା, ମଧଭଲ ଅତି ପୁରୁଣା ବୁଢ଼ା, ଚଣ୍ଡରେ ଶହେ ସାତ ନଡ଼ିଆ ଗଛ । ଏଗୁଡ଼ିକ ଶାସନ ମହାଜନଙ୍କ କୋଠ ଗଛ । ଫଳ ଏକସଙ୍ଗରେ ତୋଳା ଯାଇ ଭାଗପିଛେ ବାଣ୍ଟ ହୁଏ ।

ସକାଳ ଓଳି ବେଳ ଦଣ୍ଡେକ ସମୟରେ ନଡ଼ିଆଗଛ ମୂଳରେ ଜଣ ପଚିଶ ବ୍ରାହ୍ମଣଗୋସାଇଁ ବଜେ ହୋଇଛନ୍ତି । ପୁରୁଖା ପୁରୁଖା ଭଲଆ ଆଉ ମର୍ଯ୍ୟାଦା-ବନ୍ତ ପୁଣି ଦୂର-ଗାଁରୁ ଆସିଥିବା ବନ୍ଧୁମାନେ ନଡ଼ିଆ-ପତ୍ରବୁଣା ଚଟେଇରେ ବସିଛନ୍ତି, ଆଉ ସମସ୍ତଙ୍କର ଭୂମ୍ୟାସନ । ସାନ ପିଲାଗୁଡ଼ାକ ସକାଳୁ ସଞ୍ଜଯାଏ

ନଡ଼ିଆବୁଦାରେଇ ଚଳେ ଧାଁ ଦଉଡ଼ ହୋ ହା ପାଟିକରି ଖେଳୁଥାନ୍ତି, ହେଲେ ଆଜ ସେମାନଙ୍କ ପାଟିରେ କଥା ନାହିଁ । ଯୋଡ଼ାକୁ ଯୋଡ଼, ପୁଞ୍ଜାକୁ ପୁଞ୍ଜା ପିଲା ଖୁବ ଦୂରରେ ଦୂରେଇ ଭିଡରେ ବୁଲି ବୁଲି ଗୋସାଇଁମାନଙ୍କ ସଭା ଦେଖୁଛନ୍ତି । ସେମାନେ ବି ମନ ମଧ୍ୟରେ ଯେମନ୍ତ ବୁଝିଛନ୍ତି, ଆଜ ଗାରେ ଭାରି ଗୋଟାଏ କଣ ହେବ । ଶାସନ ଗୋସାଇଁମାନଙ୍କୁ ଛାଡ଼ି ଆହୁରି ବି ଆଠ ଦଶ ଜଣ ଦୂରଦୂରାନ୍ତର ଗାଁରୁ ଗୋସାଇଁମାନେ ଆସି ଉପସ୍ଥିତ, ବିପଦ୍‌ଗ୍ରସ୍ତ ବନ୍ଧୁମାନଙ୍କୁ ସଙ୍ଗୁଳିବାପାଇଁ ଆସିଛନ୍ତି । ଭେଣ୍ଡିଆ ଜଗୁ ଚଉଦ ଦୁଇ ଗୋଡ଼ ପାପୁଲିରେ ଗୋଟିଏ ପଥର କୁଣ୍ଡି ଯାକି ଧରି ମୁଣ୍ଡ ପୋତି ଗୋଟାଏ ନାସଘୋଟା ବାଡ଼ିରେ ଘଡ଼ର ଘଡ଼ର କରି ନସ ଘୋଟୁଥିଲେ । ଘୋଟା ହୋଇଗଲା । ଆଗେ ମୁରବିଭଳିଆ ଲୋକଙ୍କ ଆଗରେ, ପଛକୁ ଆଉ ଆଉ ମହାଜନଙ୍କ ଆଗରେ କୁଣ୍ଡି ଦେଖାଇଲେ । ସମସ୍ତେ ଟିପେ ଟିପେ ନାସ ନେଇ ସୁଁ—ସୁଁ କରି ନାକ ଦୁଇ ପୁଡ଼ାରେ ଗୁଞ୍ଜି ଦେଲେ ।

ନାସ ସୁଙ୍ଘାସୁଙ୍ଘି ବାଦେ ପ୍ରଥମେ ଲକ୍ଷ୍ମଣ ମିଶ୍ରେ ପଚାରିଲେ,"ମାମୁ ! କର୍ଜାଟା ତୁମ ଅଙ୍ଗିତା, ନା ଅଜାଙ୍କ ଦେହକର ?" ( ଲକ୍ଷ୍ମଣ ମିଶ୍ରେ ଦିବାକର ଦ୍ୱିବେଦୀଙ୍କ ଭଣଜା, ଏଣ୍ଟ୍ରାନ୍‌ସ ପାସ, ଗୋଟାଏ ମାଇନର ସ୍କୁଲର ହେଡ଼ମାଷ୍ଟର । ମାମୁଙ୍କ ବିପଦ କଥା ଶୁଣି ଆଉ ଆଉ ବନ୍ଧୁଙ୍କ ପରି ସଙ୍ଗୁଳି ଆସିଛନ୍ତି । )

ଦ୍ୱିବେଦୀଏ କହିଲେ, "ନାହିଁ ନାହିଁ ବାପା । ମୋ ଅଙ୍ଗିତା ଯୋଡ଼ାଏ ପଇସା ବି ନୁହେ । ବାପା ତାଙ୍କ ମଝିଆଁ ଝିଅ ତାରି ନାମା ମଙ୍ଗଳକୃତ୍ୟକୁ ସାହୁ ପାଖରୁ ଶହେ ଟଙ୍କା ଖଣ୍ଡେ ତାଳପତ୍ର ଗୁଜା ଲେଖିଦେଇ ଆଣିଥିଲେ । ତହିଁ ଆର ବରଷ ପଞ୍ଚାଶଟି ଟଙ୍କା ନେଇ ସାହୁ ପାଖକୁ ଗଲେ, ମନରେ କରିଥିଲେ, କଳନ୍ତର ଛାଡ଼ାଇ ଦେଇ ମୂଳକୁ ବାକି ପଏଠ କରିଦେବେ । ମହାଜନ ଟଙ୍କା ଦେଖି ଜିଭ କାମୁଡ଼ି ପକାଇ କହିଲା, 'ଏ—ଏ କଣ ଗଦେଇ କଲେଇ ? ଶୁଣିଲ, ତୁମେ ପରା ଧାନ ବିକି ଏ ଟଙ୍କା ରଖିଛ ! ରାମ—ରାମ- ରାମ ! ଏଟା କି କଥା ? କୁଟୁମ୍ବଦାରିଆ ଘର, ଧାନ ହେଉଛି ଜୀବନ, ଧାନ ହେଉଛି ଲକ୍ଷ୍ମୀ, ତାକୁ କଣ ବିକନ୍ତି ? କେତେ ବା ଧାନ ପାଇଛ—ଉଠାଅ, ଉଠାଅ—ଟଙ୍କା ଉଠାଅ । ତୁମେ ମୋ କୁଳପୁରୋହିତ, ସହଜରେ ଧର୍ମର କଲେଇ, ଟଙ୍କାଟା ତୁମ ପାଖରେ ଥିଲେ ଯେ, ମୋ ପାଖରେ ଥିଲେ ସେ । ଯାଅ ଯାଅ, ଏହି ଟଙ୍କାରେ ଧାନ କିଣିପକାଅ । ନାହିଁ ନାହିଁ, ଗାଁରେ ଦଶ ଯଜମାନ ଘରେ ବି ହାନହଣା ପଡ଼ିଗଲା ତ ଏକାଦିନକରେ ଟଙ୍କା ପେଠ ।' ବାପା ତ ଥିଲେ ମରହଟିଆ ସାଦାସିଧା ଲୋକ, ସାହୁର ମିଠା କଥାରେ ଏକାବେଳକେ ତରଳି ଗଲେ । ବାପା କାଁ୍ୟା, ତୁମେ ଯାଅ ନା, ଶୁଣିବ, କେଡ଼େ ମିଠା କଥା କେତେ ନିର୍ମାପୁ କଥା —ମନରେ କରିବ ଏହାପରି ସରଳ, ପରୋପକାରୀ, ଧାର୍ମିକ ଲୋକ ଜଗତରେ ନାହିଁ । ଏଇ ଯେ ତୁମ ଆଗରେ ବସିଛନ୍ତି ରାମ ମହାପାତ୍ରେ, ସଦାଶିବ ମିଶ୍ରେ, ବିଶ୍ୱନାଥ ଶତପଥୀଏ, ରାମ ପାଢ଼ୀଏ, ସମସ୍ତଙ୍କର ଠିକ୍ ଏହିପରି ହାଲ । ଝିଅ ପୁଅ ବିଭାକୁ ଟଙ୍କା ଆଣିଥିଲେ, ସମସ୍ତଙ୍କର ତିରିଶ ତିରିଶ ମାଣ ଶାସନ ଭାଗ ଜମି ଆମ ଜମି ସହିତ ଏକା ତାରିଖରେ କଟକ ଜଜ କୋର୍ଟରେ ନିଲମ ହୋଇ ଯାଉଛି, ଗୋରୁ ଖୋଜରେ ଖୋଜେ ବି ଜମି କାହାରି ନାହିଁ । ଆହୁରି ବି ଛ ଜଣ ମହାଜନଠାରୁ କରଜ ଖାଇଥିଲେ, ମୂଳକଳନ୍ତରରେ ବୁଡ଼ି ରହିଲେଣି । ସେମାନଙ୍କର ବି ଆଉ ବର୍ଷେ ଛ ମାସ ବାଦେ ଜମିବାଡ଼ି ଗଲା ପରି । ତୁଚ୍ଛା ଏହି ଶାସନରେ ? ଏ ଅଞ୍ଚଳ ଦଶଖଣ୍ଡ ଗାଁରେ ଯାହାର ଭଲ ଜମି ଖଣ୍ଡେ ଦେଖିଲା ତ, ଶୁଙ୍ଘି ଶୁଙ୍ଘି ବୁଲୁଥିବ । କାହାରି ଦରକାର ପଡ଼ିଲେ ବାଡ଼ି ଅଧରେ ଟଙ୍କା ଗଣି ଦେବ । ଥରେ ଯଦି ଟଙ୍କା ତା ଘରୁ ଉଠାଇଲ ତ, ତିନିପୁରୁଷରେ କଣ ଶୁଝି ହେଉଛି ? କଳନ୍ତର,

କଲନ୍ତରର କଲନ୍ତର, ତହିଁର କଲନ୍ତର ଲଟ ଲଗି ରହିଛି । କରଣଗୁଡ଼ାକ ବି ସେହିପରି ମିଳି ଯାଇଛନ୍ତି । କଏ ଟାଉଟଙ୍କା ପେଠ କଲା ତ, ପାଞ୍ଜିରେ ବସିଲା ଦେଢ଼ ଟଙ୍କା । ହଁ, କଣ କହୁଥିଲି, ବାପା ତ ତା କଥାରେ ଭୁଲି ଟଙ୍କା ବାହୁଡ଼ାଇ ଆଣି ପୁଣି ଧାନ କିଣି ଥୋଇଲେ । ତହିଁ ଆର ବରଷ କଡରୁ ପାଣି ହେଲା ଛିନଟ୍ଲେଟ, ଧାନ ଭଲ ଫଳିଲା ନାହିଁ । ସେହି ସମୟରେ ପୁଣି ତୁମ ସର ମାଉସୀର ବିଭା ସମୟ ଉପସ୍ଥିତ । ୯ ବର୍ଷ ପୂରି ଯାଉଛି, 'ଦଶବର୍ଷା ତୁ କନ୍ୟକା,' ବିଭା ନ ହେଲେ କନ୍ୟାଦାନ ଫଳ ନାହିଁ । ବାପା ଯାଇ ସାହୁ ଦୁଆରେ ହାଜର । ସାହୁ ତ ଢାଳେଇ ପଣ୍ଡ ବେଳ ଉଣ୍ଡୁଥିଲା, ଦାଉ ପଡ଼ିଗଲା । ସାହୁ କଅଁଳେଇ କଅଁଳେଇ ମୁରକି ମୁରକି ହସି କହିଲା, 'ହେଉ ହେଉ, କକେଇ, ହେନ ଯାଉ—ଏ ଘର ଟଙ୍କା ସେ ଘରକୁ ଯିବ, କଥା କଣ ? ଆହେ ଗୁମ୍ଫକରଣେ, ଅଇଲ, କକେଇ କିଛି ଟଙ୍କା ଧାର ନେବେ । ଆଗ ଟଙ୍କାଟାର ମୂଳ କଲନ୍ତର ହିସାବ କଲ ।' ଗୁମ୍ଫକରଣ ବିଦେଇ ମହାନ୍ତିଏ ହିସାବ କରି କହିଲେ, 'ଆଗ ଟଙ୍କା ମୂଳ କଲନ୍ତର ମିଶି ହେଲା ଅଢ଼େଇଶ, ହାଲକୁ ଶଏ ନେଲେ ହେବ ସାଢ଼େ ତିନିଶ ଟଙ୍କା ।' ଟଙ୍କା ଶୁଣି ବାପା ଚମକି ପଡ଼ିଲେ । ସାହୁ ବାପାଙ୍କ ମନ କଥା ବୁଝି ପାରି କହିଲା, 'ହେଉ—ହେଉ, କକେଇ ଚିନ୍ତା କଣ ? ଦେବା ନେବା ବେଳ ତ ଅଛି । ଆପଣ ମୋ କୁଳ-ପୁରୋହିତ, ଦେବାବେଳେ ଦି'ଶ ଶହେ ଛାଡ଼ି ନେଇ-ଗଲେ ମୋର କଣ ସରିଯିବ ?' ବିଆଲଗ୍ନ ଆଉ ଆଠ ଦିନ, ଟଙ୍କା ନ ହେଲେ ନୁହେ । ବାପା ସାହୁ କଥାରେ 'ହଁ' ଭଣିଲେ, କହିଲେ, 'ହେଉ, ଖତା ଲେଖାଯାଉ ।' ସାହୁ ଦଣ୍ଡେଯାଏ ଗୁମ୍ ମାରି ବସି କହିଲା, 'ବୁଝିଲେ କକେଇ, ଏଇଟା ହେଲା କଳିକାଳ, ଏ ଗୁମାସ୍ତା କରଣଗୁଡ଼ାଙ୍କୁ ପରତେ ନାହିଁ । ଖତା କେତେବେଳେ କଣ କରି ପକାଇବେ, ମୋତେ ପଛକେ ଆପଣ ଦୋଷ ଦେଉଥିବେ । ଟଙ୍କାଟା ଗୋଟାଏ ଟିପ କରି ରେଜେଷ୍ଟରୀ କରି ପକାଇଲେ ଭଲ ହେବ; କାହାରି ଊଁ ଚୂଁ କରିବାର ବାଟ ନ ଥିବ । ଏଥିରେ କେତେ ବା ଖରଚ ? ଖରଚଟା କଣ ଆପଣ ଘରୁ ଆଣି ଦେଉଛନ୍ତି ?" ଟିପ ଲେଖାପଢ଼ା ରେଜେଷ୍ଟରୀ ହୋଇଗଲା । ଯାହା ହେବାର ତ ହେଲା, ଟଙ୍କା ହଅ । ଟଙ୍କା ଗଣି ଦେବାକୁ କଣ ନା ୫୮୭୴ । 'କି ହୋ ଟଙ୍କା ଊଣା କିଆଁ ?' ଗୁମାସ୍ତା ବୁଝାଇଦେଲା, 'ସିନ୍ଦୁକ ପୂଜା ଶତକରା ଯୋଡ଼ାଏ ଟଙ୍କା, ଗୁମାସ୍ତା ଖର୍ଚ୍ଚ ଦୁଇ ଟଙ୍କା, ଲକ୍ଷ୍ମୀନାରାୟଣ ବାଲଭୋଗ ଦୁଇ ଟଙ୍କା, ରେଜେଷ୍ଟରୀ ଖର୍ଚ୍ଚ, ଗୁମାସ୍ତା କଟକ ଖୋରାକି ସବୁ ସବୁ ରକମ ମିଶାଇ ସାଢ଼େ ଛ ଟଙ୍କା । ଗାଏ ପବୁ ପଦକୁ ବାରଟଙ୍କା ଆଠଅଣା । ପୁରୋହିତେ, ଆପଣ ତ ଜଣେ ପଣ୍ଡିତ, ଏତକ ବୁଝି ପାରୁ ନାହାନ୍ତି ? ଆପଣ ତ ରୋଜନା କେତେ କାରବାର ଦେଖୁଛନ୍ତି, ଆପଣଙ୍କ ପାଖରୁ କଣ ଟଙ୍କାଏ ମଷାଏ ହଉ ହୁଡ଼ିକରି ନେଲେ ସାନ୍ତଙ୍କ ଗନ୍ତାଘର ପୂରିଯିବ ?' ତମସୁକ ରେଜେଷ୍ଟରୀ ପାଖରୁ ଗୁରିବର୍ଷ କାଳ ସେଥିର କିଛି ନାମ ଚର୍ଚ୍ଚା ନାହିଁ । ବାପା ତା ଦୁଆରକୁ ଗଲେ ଭକ୍ତି କଣ ଦେଖିବ ! 'କକେଇ ! ଆପଣ ଅଇଲେ, ଓଳଗି — ଓଳଗି, ଆରେ ପିଢ଼ାଟା ଦେ ରେ, ଆରେ ପାଦଧୁଆ ଜଳ ଦେ ରେ' ଡାକ ପଡ଼ିଯିବ । ଗଲା ତେରସ୍ତା ବାପାଙ୍କର ଯେମିତି ବିଯୋଗ ହୋଇ ଯାଇଛି, ମହାଜନଙ୍କୁ ତ ପଡ଼ିଗଲା ପୋ'ବାର । ମୂଳ କଲନ୍ତର ଭିଡ଼ି ଦେଇ ବାରଶ କେତେ ଟଙ୍କା କେତେ ଅଣାରେ କଟକ ଅଦା-ଲତରେ ନାଲିସ୍ ଦାଏର କରିଦେଲା । ମୁଁ ଯାଇ ମହାଜନ ପାଖରେ ପଡ଼ିଲି । କହିଲା, 'ଆରେ ଭାଇ ହବୁ ଗୁମାସ୍ତା-ମାନେ ମୋ ଅଜାଣନ୍ତରେ ନାଲିସ୍ କରି ଦେଇଛନ୍ତି । ଯା ଯା, ତୁ ହାକିମ ପାଖରେ ଟଙ୍କାଟା ମାନି ଆ, ପଛରେ ବୁଝାସୁଝା ହେବ ।' ମୋ ମନଟା ଛିଙ୍କଉଥାଏ । କଟକ ଯିବାକୁ ମନ ବଳୁ ନ ଥିଲା, ଡରରେ ଯାଇ ତା ଓକିଲ କହିବା ପ୍ରମାଣେ ହାକିମ ପାଖରେ ଜବାବ ଦେଇ ଆସିଲି । ଏହିଟା ହେଲା ଗଲା ବରଷ କଥା । ମୁଁ

ଆଉ କିଛି ଜାଣେ ନାହିଁ । କେତେବେଳେ ଡିକ୍ରି ହେଲା, କେତେ ଟଙ୍କା ଡିକ୍ରି ହେଲା, ଆଉ କଣ ହେଲା ମୋତେ କିଛି ଜଣା ନାହିଁ । ଶୁଣିଲି, ଗଲା ମକର ମାସ ସାତ ଦିନରେ ମୋର ଘର ପାଞ୍ଚ ହଜାର ଟଙ୍କାର ସମ୍ପତ୍ତି ସାତଶହ ଟଙ୍କାରେ ନିଲାମ ହୋଇଗଲା । ମହାଜନ ଆପେ ନିଲାମ ଧରିଛି । ତା ଗୁମାସ୍ତା କହେ, ମୋ ଉପରେ ଆହୁରି ଛ ଶହ ଟଙ୍କା ପାଉଣା । ଆମର ଶାସନ ପାଣିଗ୍ରାହୀ ଭାଗ ପଚିଶ ମାଣ, ତା ମଧ୍ୟରେ ଏହି ଯେ ଦକ୍ଷିଣ ଦିଗରେ କିଆ ବଣଟା ଦେଖୁଛ, ସେହିଟା ଏକଚକିଆ ପନ୍ଦରମାଣ ମାଲ ଜମି—ଭାରି କଳନ୍ଦି । ମୁଁ ବୁଝୁଛି, ଏ ଜମିଟା ଉପରେ ଚାରି ଦଶ ପନ୍ଦର ବରଷ ହେଲା ନଜର ପଡ଼ିଲାଣି । ଯେବେ ଏ ଗାଁକୁ ଆସେ, ସେ ଜମିଟା ପାଖକୁ ଯାଇ ଚଉପାଖ ବୁଲି ବୁଲି ଦେଖେ—‘କେତେ ଧାନ ଫଳେ, କି ଧାନ ଦିଅ’, ଦଶ ଥର କରି ପଚାରିବ । ମୋ ମନ ହେଲେ ଛକିଉଥାଏ । ବିଚାରି କରେଁ—କହ, ଭଲରେ ଭଲ କହ, ଏ ଜମିଟା କଥା ତୁହାଇ ତୁହାଇ ପଚାରୁଛ କିଁ ? ଆଉ ପାଞ୍ଚ ଜଣ ମହାଜନଙ୍କର ଠିକ୍ ଆମ ମାମଲା ପରି ଡିକ୍ରି କରି ଜମି-ବାଡ଼ି ସବୁ ନିଲାମ କରି ନେଇଛି ।”

ଲକ୍ଷ୍ମଣ ମିଶ୍ରେ କହିଲେ, “ମୁଁ ଦେଖୁଛି, ଏଇଟା ସାଇଲକ୍ ।” ଭଗବତ ପଣ୍ଡିଏ କହିଲେ, “ନା ନା, ସେଇଟା ଏ ସାଇ ଲୋକ ନୁହେଁ, ତା ଘର ମହାମପୁର —ଏ ଗାଁକୁ ଦେଢ଼କୋଶ ଦୂର ନଈକୂଳରେ ।” ଲକ୍ଷ୍ମଣ ମିଶ୍ରେ କହିଲେ, “ନାହିଁ ନାହିଁ, ମୁଁ ସେ କଥା କହୁନାହିଁ; ବିଲାତରେ ଗୋଟାଏ ଏହି ରକମ କଳନ୍ତର-ଖିଆ ଲୋକ ଥିଲା, ତା ନାମ ସାଇଲକ୍ ।” ତିରେଇ ତିହାଡ଼ିଏ କହିଲେ, ‘ସେ ଯାହାହେଉ, ଏବେ ଉପାୟ କଣ ?” ଲକ୍ଷ୍ମଣ ମିଶ୍ରେ ମହାଜନମାନଙ୍କୁ ଅନାଇ ହାତ ଯୋଡ଼ି ଭୂଇଁରେ ମୁଣ୍ଡ ଲଗାଇ କହିଲେ, “ଗୋସାଇଁ ମହାପ୍ରଭୁମାନେ ! ମୁଁ ପିଲାଟା, ମୋ ଅପରାଧ ଧେନବେ ନାହିଁ; ଗୋଟାଏ କଥା କହିବି, ଏଥିରେ ସାହୁର କିଛି ଦୋଷ ନାହିଁ, ଆପଣମାନଙ୍କ ମୂର୍ଖପଣ । ଆପଣମାନଙ୍କ ପାପରୁ ସବୁ ସାରି ଦରିଦ୍ର ହୋଇ ବସୁଛନ୍ତି ।” ବୁଢ଼ା ଅନନ୍ତ ଚାଡ଼ୀଏ ଟିକିଏ ଉଷ୍ମ ଭାବରେ କହିଲେ, “ହୋଇ ହେ ଲକ୍ଷ୍ମଣ ! ଆମ୍ଭମାନଙ୍କର ପାପ କଣ ? ମୂର୍ଖପଣ କଣ ଦେଖିଲ ?”

ଲକ୍ଷ୍ମଣ ମିଶ୍ରେ ପୁଣି ଦଣ୍ଡବତଟାଏ କରି କହିଲେ, “ଅଜା ସାଆନ୍ତେ ! ମୋ ଉପରେ ଖପା ହେଲେ ପରା ? ଦେଖନ୍ତୁ, କେଉଁ ମହାତ୍ମା ଶାସନ ବସାଇ ଏତେ ନିଷ୍କର ଜମି ଖଞ୍ଜି ଦେଇ କହିଥିଲେ, ‘ଆପଣମାନେ ଶାସ୍ତ୍ର ଅଧ୍ୟୟନ ଅଧ୍ୟାପନା କରିବେ, ଦାତାକୁ ତ୍ରିକାଳ ସନ୍ଧ୍ୟାରେ ଆଶୀର୍ବାଦ କରିବେ ।’ ତାହା କରୁଛନ୍ତି କି ? ବୋଲନ୍ତୁ ଭଲା ଏଡ଼େ ବଡ଼ ଶାସନଟାରେ ଗୋଟାଏ ବୋଲି ଚୌପାଢ଼ୀ ନାହିଁ । ତୁଚ୍ଛା ନାସ ଶୁଙ୍ଘି ଭାଙ୍ଗ ପିଇ ଚୌପଟ ଖେଳ ଦିନ କାଟିବେ ! ଦାତାଙ୍କୁ ତ୍ରିକାଳ ସନ୍ଧ୍ୟାରେ ଆଶୀର୍ବାଦ ଥାଉ, ପବିତ୍ର ବ୍ରାହ୍ମଣ କୁଳରେ ଜାତ ହୋଇ କେତେ ଜଣ ସକାଳ ସନ୍ଧ୍ୟାରେ ଗାୟତ୍ରୀ ଜପ ସନ୍ଧ୍ୟାବନ୍ଦନାଦି ନିତ୍ୟକର୍ମ କରନ୍ତି ? ଏଇଟା କଣ ପାପ ନୁହେ ? ଆଉ ଗୋଟାଏ କଥା, କୁଆଡ଼ୁ ଶୁଝିବେ ଭାବନା ନାହିଁ, ଧାଇଁ ଯାଇ ମହାଜନ ଦୁଆରେ ଗୁଳା ଲେଖି ବସିବେ, ପୁଅ ଝିଅ ବିଭାଘରକୁ ଆପଣା ବଡ଼ପଣ ଦେଖାଇବା ଲାଗି ଅକାରଣ ଟଙ୍କା-ଗୁଡ଼ାଏ ସାରିବେ । ଆପଣା ଅବସ୍ଥାକୁ ଚାହିଁ ଯେ ନ ଚଳେ, ସେ ମୂର୍ଖ ନୁହେ ତ ଅଉ କଣ ? ଏହି ଦେଖନ୍ତୁ, ଅତି ପବିତ୍ର ଶାସନଭାଗ ଭୂମିରେ ବାର ଜାତି ଚେର ଗୋଲା ଅଧିକାରୀ ହୋଇ ବସିଲେଣି । ଏହା ଆପଣ-ମାନଙ୍କ ପାପ ଆଉ ମୂର୍ଖତାର ଫଳ ନୁହେଁ କି ? ଆପଣମାନେ ତ ଦୁଃଖ ଦୁର୍ଦ୍ଦଶାକୁ ଲୋଡ଼ି ଆଣିଛନ୍ତି, ଏଥିପାଇଁ ଲାଗା ହେବ କିଏ ?”

ମାଧ ପାଣିଏ କହିଲେ, “ଲକ୍ଷ୍ମଣ ଯାହା କହିଲେ ସତ, ଷୋଳପଣି ସତ । ହେଲେ ଏଣିକି ଯାହା

ଗୋଟାଏ ବୁଦ୍ଧିସୁଦ୍ଧି କରିପିବ, ବର୍ତ୍ତମାନ ଉଦ୍ଧାର ପାଇବାର ବାଟ କଣ ?”

ଲକ୍ଷ୍ମଣ ମିଶ୍ରେ—ଆପଣମାନେ କଣ ଉପାୟ ସ୍ଥିର କରିଛନ୍ତି ?

ଆନନ୍ଦ ମିଶ୍ରେ—ଆମ୍ଭେମାନେ କଏ, ମାଲ ମାମଲା କଏ ? କମ୍ପି କର୍ମାଣି କଥା ବୋଲ, ଦଶ ଜଣ ବାହାର ପଡ଼ଁବୁ ।

ଲକ୍ଷ୍ମଣ ମିଶ୍ରେ—ମାମୁ । ଜମି ନିଲାମ ବାଦେ ସାହୁ ପାଖକୁ ଯାଇଥିଲେ, କଣ କହିଲା ?

ଦିବାକର ଦ୍ୱିବେଦୀ—ଯାଇଥିଲି । ଦଶଥର ଗଲିଣି, ଭେଟ ମିଳେ ନାହିଁ । ବାଧିକା ପଡ଼ିଛି, କଥା ବୋଲି ପାରିବ ନାହିଁ, ବାହାନା କରି ଶୋଇ ପଡ଼େ—ନୋହିଲେ ବାଡ଼ି ପଛ ବାଟେ ଆଉ ଗାଁକୁ ବାହାରି ଯାଏ । ମୋ କନ୍ଦା କଟା ଦେଖି ସାହୁଆଣୀ କମଳା ଆଉ ତାଙ୍କ ପୁଅ ବିଦ୍ୟାଧର ଦୁହେଁଯାକ କାନ୍ଦି ପକାନ୍ତି । ମୋତେ ବହୁତ ବହୁତ ଆଶ୍ୱାସ ଦେଇ କହିଛନ୍ତି, ମୋ ଜମି ମୋତେ ଦିଆଇ ଦେବେ । କେଜାଣି କପାଳରେ କଣ ଅଛି । ମା ପୁଏ ଦୁହେଁଯାକ ଏକା ଯେପରି ଦୟାଳୁ ସେହିପରି ଧାର୍ମିକ, କାହାରି ଦୁଃଖ ଦେଖି ପାରନ୍ତି ନାହିଁ । କୁବେର ସାହୁଟା ଯେପରି ନିଷ୍ଠୁର ସେହିପରି କୃପଣ—ହାତରୁ ପାଣି ଗଳିବ ନାହିଁ । ହେଲେ ମା ପୁଅଙ୍କ ଆଗରେ କେହି ଓପାସ ରହିପାରେ ନାହିଁ । ସାହୁଟା କରଜା ଟଙ୍କା ଲାଗି କାହାରି ଘର ଦ୍ୱାର ନିଲାମ କରିନେଲେ ଏମାନେ ଲୁଚିଇ ତାକୁ ଟଙ୍କା ଧାନ ଦେଇ ତା କୁଟୁମ୍ବ ପୋଷନ୍ତି ।

ଲକ୍ଷ୍ମଣ ମିଶ୍ରେ—ଗୋଟାଏ ଆଶା ଅଛି ସତ, ହେଲେ ସେଥିକି ନିର୍ଭର କରି ରହିବାଟା ନିରାପଦ କଥା ନୁହେଁ । ଆପଣାର ବି ଗୋଟାଏ ବାଟ କାଟି ରଖିବା ଉଚିତ । ଉକ୍ଟୁଣିକା ତାକୁ କେହି ଜମି ଦଖଲ ଦିଅ ନାହିଁ । ମାମୁଁ ! ତୁମେ କହୁଛ, ପାଞ୍ଚହଜାର ଟଙ୍କାର ମାଲ ସାତଶ ଟଙ୍କାରେ ନିଲାମ କରି ନେଇଛି । ଏହି କଥା ଓଜର କରି ସାନି ନିଲାମ ପାଇଁ ହାକିମଙ୍କ ପାଖରେ ଦରଖାସ୍ତ କର । କିଛି ଖରଚପତ୍ର କଲେ ତେର ଦିନଯାଏ ମାମଲା ତାରିଖ ଗଡ଼ିପିବ । ଏଣେ ତୁମେ ମା ପୁଅ ଦୁହିଙ୍କୁ ଧରି ପଡ଼ିଥାଅ । ଆଜିକା କଥା କାଲିକି ଅନ୍ତର, ଏଥି ମଧ୍ୟରେ ଆଉ ଗୋଟାଏ କିଛି ବାଟ ଫିଟି ଯାଇପାରେ ।

ମିଶ୍ରଙ୍କ କଥା ଶୁଣି ସମସ୍ତ ମହାଜନ ଭାରି ଆନନ୍ଦରେ ଏକାବେଳକେ ପାଟିକରି କହିଲେ, “ଦୀର୍ଘଜୀବୀ ହୁଅ, ରାଜରାଜେଶ୍ୱରୀ ଭବ । ନୋହିଲେ କଣ ଆଞ୍ଜୁଳାକୁ ଆଞ୍ଜୁଳା ଟଙ୍କା ଗଣି ହାକିମ ଘର ପାଠ ପଢ଼ିଛ ? ଦେଖ ତ, ଆମେ ଏତେଗୁଡ଼ାଏ ଲୋକ ଅନ୍ଧାରରେ ଅଣ୍ଡାଳି ହେଉଥିଲେ, କିଛି ବାଟ ଦିଶୁ ନ ଥିଲା, ପିଲାଟି କମିତିକା ଗୋଟାଏ ବାଟ କାଢ଼ି ପକାଇଲା ?

ବୁଢ଼ା ଦନେଇ ମହାପାତ୍ରେ ଟାଣରେ ଦୁଇ ଟିପ ନାସ ଶୁଙ୍ଘିଦେଇ ଖନେଇ ଖନେଇ କହିଲେ, “ବୁଝିବାଁ ହେଲେଁ ମହାଁଜନ ଗୋଁସଇଁମାନେଁ,

ଅଁଧର୍ମଁ ବଡ଼ଁ ବଁଢ଼େଁ ବଁହୁଁ ତଁ ।
ଯିଁ ବାଁବେଁଳେଁ ଯାଏଁ ମୂଁଳଁ ସଁହିଁ ତଁ ।

ସମସ୍ତେ ତ ଜାଣୁଛ, ତାହାର ସବୁ ଧନଗୁଡ଼ାକ ତଣ୍ଟିଚିପା ମଣିଷରକ୍ତ । ମହାଜନିଆଟାରେ ଲକ୍ଷାବଧି ଟଙ୍କାର ମାଲିକ ହୋଇ ବସିଲା । ଯିମିତି ଖିମା ଟଙ୍କାରେ ମାଲିକ ହୋଇଛି, ସେହିଦିନୁ ତ ବଢ଼ି ଯାଉଛି, ଆଉ କଣ ! ଏହି ଯେ କୁଠିଘର ଦେଖୁଛ, ସେଇଟା ତା ନିଜ ଘର ନୁହେଁ । ଖିମସାହୁ ବୋଲି ଜଣକର ଘର । ଖିମାଟା ବି ଥିଲା କୁବ୍ରାକୁ ବଳି ତଣ୍ଟିଚିପା, ଯକ୍ଷ ବୋଲି ସରିଛି । ପୁଅ ଝିଅ ଘରେ କିଛି ନ ଥିଲା,

ଗୋଟାଏ ପୋଷା ପୁଅ କରିଥିଲା ଯେ, ସେଟା ମଦ ଖାଇ ଗଞ୍ଜେଇ ଖାଇ ମଲା । କୁବ୍ରା ତା ଜାତି ପୁଅ ଲଗିକ କେହି ନୁହେଁ, ତା ଘରେ କାରବାରିଆ ଥିଲା । ଶ୍ୟାମାକୁ ଖୁବ୍ ପଟେଇ ରଖିଥାଏ । ଶ୍ୟାମା ଯିମିତି ଆଖି ବୁଜିଛି, କୁବ୍ରା ଗୃହର ବାହାର ସମସ୍ତଙ୍କୁ ହାତ କରି ଓକିଲ ମୁକ୍ତାର ଧରି ପୋଷ୍ୟପୁତ୍ର ବୋଲି ସରକାରରୁ ବାହାଲ ହୋଇ ଆସିଲା । ପାପୀଟାର ଧନ ପାଣି ପରି ବଢ଼ି ଯାଉଛି, ଏବେ ଜାଣ ଠକ୍‌କରି ଛୁଡ଼ ପଡ଼ିବ । ଦେଶଯାକ ସନ୍ତାଇ ମାରିଲଣି, ହଜାର ହଜାର ଲୋକଙ୍କ ଆତ୍ମା କାନ୍ଦୁଛି, ଯାହାର ସେ କିଛି କରି ନାହିଁ, ସେ ବି ଗାଳି ଦେଉଛି । ଏହି ମୋ କଥା ବୁଝ ନା, ପୁଅ ବିଭାକୁ ପଚିଶ ଟଙ୍କା କରଜ ଆଣିଥିଲି, ପନ୍ଦର ବରଷରେ ଭୁଞ୍ଚା କଲନ୍ତର ଅଢ଼େଇଶ ଟଙ୍କା ଶୁଝିଛି, ପାଞ୍ଚ ଥର ଟିପ ବଦଳାବଦଳ କରି ଶେଷରେ ନାଲିଶରେ ପାଞ୍ଚଶ ଟଙ୍କା ଡିଗ୍ରୀ କରି ମୋର ତିରିଶ ତିରିଶ ମାଣ ଜମି ନିଲାମ କରି ନେଲା । ଚେତିକ ଥିଲା କୁଟୁମ୍ବଙ୍କ ଭରସା । ତାଙ୍କ ମୁହଁରେ ପାଣି ଟୋପାଏ ଦେବାକୁ ଭରସା ନାହିଁ, ଦିନ ରାତି ଆତ୍ମାପୁରୁଷ କାଉଳି ହେଉଛି, ଆଖିରୁ ପାଣି ଶୁଖୁ ନାହିଁ । ଏହି ପଞ୍ଚ ପରମେଶ୍ୱର ଶୁଣନ୍ତୁ, ମୁଁ ପଇତା ଛୁଇଁ କହୁଛି, ଆହୁଁ ତିନି ପକ୍ଷ, ତିନି ମାସ, ତିନି ବରଷ ମଧ୍ୟରେ ତାହାର ସର୍ବନାଶ ହେବ । ଏହା ଯଦି ନ ହୁଏ, ମୁଁ ଅବ୍ରାହ୍ମଣ, ଏ ବ୍ରହ୍ମଗଣ୍ଠି ଛିଡ଼ାଇ ପକାଇବି । ସେ ତ ଢେର ଦିନ ଆଗରୁ ଯାଇଥାନ୍ତା, କେବଳ ମା ପୁଅଙ୍କ ଧର୍ମରୁ ବର୍ତ୍ତି ରହିଛି ।"

ଲକ୍ଷ୍ମଣ ମିଶ୍ରେ—ମାମୁ! ସାହୁଆଣୀ ଆଉ ବିଦ୍ୟାଧର ପାଖକୁ ଯିବା ଆସିବା କରୁଛନ୍ତି ତ ? ସେହିମାନଙ୍କୁ ଧରି ପଡ଼ିଥାନ୍ତୁ ।

ମାମୁଁ—ହଁ ବାପା ! ମୋର ଆଉ ଉପାୟ କଣ ? ଦିନେ ଦି'ଦିନ ବାଦେ ସେମାନଙ୍କ ପାଖକୁ ଯାଏଁ । ମୋର ତ ଗୋରୁ ବାଛୁରି ଘରତଳ ଜମି ସୁଦ୍ଧା ନିଲାମ ହୋଇ ଯାଇଛି, ଆଉ ଉପାୟ କିଛି ନାହିଁ । ସାହୁଆଣୀ ମୋ ଦୁଃଖ ଶୁଣି କାନ୍ଦି ପକାଏ । ସେହି ତ କୋଡ଼ିଏ ନଉତି ଧାନ ଆଉ ପାଞ୍ଚଟା ଟଙ୍କା ଦେବାରୁ ଆଜଯାଏ ଚଳୁଛି । କାଲି ରାତିରେ ବି ବିଦ୍ୟାଧର ପାଖକୁ ଯାଇଥିଲି । ସେ ତ ମୋତେ ଟାଣ ଜବାବ ଦେଇ କହିଲା, 'ନନା ! କାନ୍ଦ ନା, ଯେପରି ହେଉ ତୁମ ଜମି ତୁମକୁ ଦେବି । ମୁଁ ବାହାଘରରୁ ବାହୁଡ଼ି ଆସିବାଯାଏ ସବୁର କର । ତୁମେ ତ ଆମ କୁଳ-ପୁରୋହିତ, ସଙ୍ଗରେ ତ ଅବଶ୍ୟ ଯିବ । ଶୁଣିଛି ମୋ ଶ୍ୱଶୁରର ଦଶ ଲକ୍ଷ ଟଙ୍କାର ବିଷୟ, ସେ ବି ତୁମକୁ ଅବଶ୍ୟ ଭଲରୂପେ ମେଲାଣି ଦେବେ ।'

କୁବେର ସାହୁ କହେ, "ମୋର କରଜା କଲନ୍ତରକୁ ଲୋଡ଼େ କିଏ ? ମୋର ଗଡ଼ଜାତ ଥାଉ ।" ଗଡ଼ଜାତ ସୋନପୁରଠାରୁ ଦଶପାଲି ଯାଏ ତାହାର ଦଶ ପନ୍ଦରଟା ଗୋଦାମ । ସେ ଗୋଦାମରେ ଜଣେ ଜଣେ କରଣ, ଜଣେ ଜଣେ କାରବାରିଆ, ତାର ନିଜର କୋଡ଼ିଏ ସରିକ ବାରଗୋଡ଼ିଆ, ପନ୍ଦର ଗୋଡ଼ିଆ କୁଣ୍ଡଳ, ଚକ୍‌ଚକ୍ ନାଆ ଅଛି । ବର୍ଷାଦିନେ ସେଥିରେ ସଉଦା ନେ ଆଣ କରେ । ନା ଗୁଡ଼ ଖରାଦିନରେ ସଉଦା ନେ ଆଣ କରିବା ସକାଶେ ପାଞ୍ଚ ପାଞ୍ଚ ବୋଡ଼ିଆ ଯୋଡ଼ାଏ ଯୋଡ଼ି ବଳଦ ଅଛି ।

ବୌଦ ଏଲାକା ହରିହରପୁର ଗୋଟିଏ ବଡ଼ ମହାଜନୀ ଗାଁ—ଠିକ୍ ମହାନଦୀ କୂଳରେ । ଗ୍ରାମର ସମସ୍ତେ ପ୍ରାୟ କାରବାରିଆ ବେପାରୀ । ପ୍ରଧାନ ମହାଜନଙ୍କ ନାମ ଯୁଧିଷ୍ଠିର ସାହୁ । ନାମର ଉପଯୁକ୍ତ ମଧ୍ୟ ଗୁଣ । ଲୋକଟି ବଡ଼ ଧାର୍ମିକ, ସତ୍ୟବନ୍ତ । ପାଞ୍ଚ ସାତ ଲକ୍ଷ ଟଙ୍କାର ବିଷୟ, ଘରେ ଠାକୁର ବାଡ଼ି, ସଦାବର୍ତ୍ତ । ସାହୁ ବୁଢ଼ା ହୋଇ ପଡ଼ିଲାଣି; ଆଉ ଏବେ ବେପାର ବଣିଜରେ ମନ ନାହିଁ । ସବୁବେଳେ ପୂଜା ପାଠ ହରିନାମ ଭଜନରେ ଲାଗିଥାଏ । ସାହୁ ଅପୁତ୍ରକ;

ଗୋଟିଏ ବୋଲି ଝିଅ, ନାମ ପଦ୍ମାବତୀ—ବୟସ ପନ୍ଦର ଯାଇ ଷୋଳ ପଶିଛି । ପାଠକ ଜାଣନ୍ତିରେ ଏତେ ବଡ଼ ଅଭିଆଡ଼ୀ କନ୍ୟା ଘରେ ରଖିବାକୁ ମନା । ସାହୁର ଇଚ୍ଛା ଗୋଟିଏ ଘର-ଜୁଆଁଇ ରଖିବ । ପାତ୍ର ଖୋଜୁ ଖୋଜୁ ଦିନ ଗ୍ଲଲଗଲା, କନ୍ୟା ଘରେ ରହିଛି । କନ୍ୟାଟି ସମସ୍ତ ସମ୍ପତ୍ତିର ଉତ୍ତରାଧିକାରିଣୀ । କୁବେରର ନଜର ପଡ଼ିଲା, ଯୁଧିଷ୍ଠିର ଧନଟା କମିତି ଘରେ ପଶେ । ସେ ଭଲକରି ଜାଣେ ଯୁଧିଷ୍ଠିର ଘରଜୁଆଁଇ ରଖିବ, ଅନ୍ୟଆଡ଼େ କନ୍ୟାକୁ ବାହା ଦେବ ନାହିଁ । ତା ମନକଥା ମନରେ ଥାଏ ।

କୁବେର ବର୍ଷକୁ ଥରେ ସୋନପୁରଆଡ଼କୁ କୋଟି ତନଖି କରିବାକୁ ଯାଏ । ଦୁଇବର୍ଷ ଭିତରେ ଦୁଇ ତିନଥର କରି ଯା ଆସ କରୁଛି । ସୋନପୁର ଯିବାବେଳେ ନାଆ ହରିହରପୁର ଗାଁ ତଳବାଟରେ ଯାଏ । ଦୈବାତ୍ ସେହି ଗାଁ ପାଖରେ ସଞ୍ଜ ହୋଇ ପଡ଼େ । କୁବେର ଗାଁ ପାଖ ନଦୀର ଆର କୂଳରେ ନାଆ ଲଟାଇ ବୋଝେଇ ବାସ କରେ । କୁବେର ଘରେ କେବେ ସନ୍ଧ୍ୟା କି ହରିନାମ କରିବାର କେହି ଦେଖି ନାହିଁ । ଗୋଟାଏ ବଡ଼ କୋଥଳି ସଙ୍ଗରେ ଘେନି ଯାଇଥାଏ, ନଦୀକୂଳରେ ମେଲାଇ ଦେଇ ରାତି ଛ ଘଡ଼ିଯାଏ ଆଖି ବୁଜି ବସି ଜପ କରେ । ଦେଖିକ-ବେଳେ ବୃରିଆଡ଼କୁ ଅନାଇ ଗୁନ ଗୁନ କାରବାରିଆଙ୍କ ସଙ୍ଗରେ ମାଲ କିଣାବିକା କଥା ଚଳେ । ହରିହରପୁରକୁ ଶୁଭୁ, ଏଥିପାଇଁ କୁବେର ବେଳେ ବେଳେ ଘଣ୍ଟା ବଜାଉ ଥାଏ ।

ଯୁଧିଷ୍ଠିର ସାହୁ କୁବେର ସାହୁର ନାମ ଶୁଣିଥିଲେ, ଦେଖା ସାକ୍ଷାତ୍ ନ ଥିଲା । କୁବେର ସାହୁ ନଦୀ କୂଳରେ ଅଛନ୍ତି ଶୁଣି ଯୁଧିଷ୍ଠିର ଡଙ୍ଗା ଖଣ୍ଡିକରେ ବସି ନଦୀ ପାର ହୋଇ ଗଲେ । କୁବେର ଖବର ନେଉଥାଏ, ଯୁଧିଷ୍ଠିରଙ୍କ ପହଞ୍ଚିବାବେଳକୁ କୁବେର ସାହୁଏ ଧ୍ୟାନରେ ବସିଛନ୍ତି । ଘଣ୍ଟାଏ ଦି'ଘଣ୍ଟା ବିତିଗଲା, ଧ୍ୟାନ ଭାଙ୍ଗୁନାହିଁ । ଧ୍ୟାନ ଦେଖି ଯୁଧିଷ୍ଠିର ତ ତରଳି ଗଲେଣି । ଧ୍ୟାନ ଭାଙ୍ଗିଲା । କୁବେର ସାହୁ ଯିମିତି ଖବର ପାଇଛି, ଧାଇଁ ଯାଇ ଯୁଧିଷ୍ଠିରଙ୍କ ଗୋଡ଼ତଳେ ପଡ଼ିବାକୁ ଯାଉଥିଲା, ଯୁଧିଷ୍ଠିର କହିଲେ, "ହାଁ ହାଁ ! ଏ କଣ କରୁଛନ୍ତି—ଏ କଣ କରୁଛନ୍ତି ? ଆପଣ ଧର୍ମପରାୟଣ, ମୁଁ ପାପୀ, ମୋ ଗୋଡ଼ତଳେ ପଡ଼ିବେ ?" କୁବେର କହିଲେ, "ଏ କଣ ? ଆପଣ ସ୍ୱଜାତିର ମଉଡ଼ମଣି । ଘଣ୍ଟାଏ ହେଲା ବସିଲେଣି, ମୋର ଅପରାଧ କ୍ଷମା କରନ୍ତୁ ।" ଯୁଧିଷ୍ଠିର କହିଲେ, "ନାହିଁ, ମୁଁ ଆପଣଙ୍କର ଧ୍ୟାନଭଙ୍ଗ କରାଇଲି ପରା ? ମୋତେ କ୍ଷମା କରନ୍ତୁ ।" ଦୁଇଜଣ କୁଣ୍ଠିଆକୁଣ୍ଠେଇ ହୋଇ ଏ କହୁଛି ମୋତେ କ୍ଷମା କରନ୍ତୁ, ସେ କହୁଛି ମୋତେ କ୍ଷମା କରନ୍ତୁ । ଦୁଇଜଣ ସାଷ୍ଟାଙ୍ଗ ହୋଇ ଖଣ୍ଡିଏ କମ୍ବଳରେ ବସିଲେ । ଯୁଧିଷ୍ଠିର ପ୍ରସ୍ତାବ କଲେ, "ଆଜ୍ଞା, ଆପଣ ହେଲେ ଆମ ଜାତିର ମଉଡ଼ମଣି । ମୋ କୁଡ଼ିଆ ପାଖରେ ପଦାରେ ମାଡ଼ି ବଢ଼ାଇବେ, ମୋର ଯେ ମହାପାପ ହେବ । ଉଠି ଆଜ୍ଞା ହେଉ—ଦୟା କରନ୍ତୁ—ମୋ କୁଡ଼ିଆରେ ପାଦଧୂଳି ଦେଉନ୍ତୁ । ମୋ କୁଡ଼ିଆଖଣ୍ଡି ପବିତ୍ର ହେଉ ।"

ଦୁଇ ସାହୁ ଯାଇ ଠାକୁର ମେଲାରେ ବସିଲେ । ଠାକୁର ଆଗରେ ଆସନରେ ବସିବାକୁ ମନା, ଦୁହେଁ ଯାକ ଭୂଇଁରେ ବସିଲେ । ରାତି ଅଧଯାଏଁ ଦୁଇ ସାହୁଙ୍କ ମଧ୍ୟରେ କଥାଭାଷା ଚାଲିଲା । ଏ କଥା, ସେ କଥା, ବେପାର ବଣିଜ କଥା ହେଉଁ ହେଉଁ ବାହା ପ୍ରସଙ୍ଗ ପଡ଼ିଗଲା । କୁବେର କହିଲେ, "ମୁଁ ବାପାଙ୍କ ମୁହଁରୁ ଢେରଥର ଶୁଣିଛି, ଆଗେ ଗଡ଼ଜାତ ମୋଗଲ-ବନ୍ଦି ମଧ୍ୟରେ ବି ନେଣ ଦେଣ ଚଳୁଥିଲା । ଦୁଇ କି ତିନି ବୋଡ଼ ସରିକ ଗଡ଼ଜାତ କନ୍ୟା ମୋଗଲବନ୍ଦିରେ ଥିଲେ, ମୋଗଲବନ୍ଦି କନ୍ୟା ବି ଗଡ଼ଜାତରେ ଥିଲେ । ନହାତି ଦୁରଦୃଷ୍ଟ ବୋଲି ଉଣା ଅଧିକ ପଚାଶ ବର୍ଷ ହେଲା ବାହା, ନେଣଦେଣ ବନ୍ଦ ।" କଥା ଚଳୁ ଚଳୁ

ପଦ୍ମାବତୀ ସଙ୍ଗରେ ବିଦ୍ୟାଧରର ବିଭା ପ୍ରସଙ୍ଗ ସ୍ଥିର ହୋଇଗଲା । କୁବେର କହିଲା, "ଆଜ୍ଞା, ମୁଁ ମୋଗଲବନ୍ଦି କାମ ଚଳାଇବି, ବିଦ୍ୟାଧର ବର୍ଷପାକ ଏଠିଠାରେ ରହି କାମ ଚଳାଇବ । ବିବେଇ ତ ଆପଣଙ୍କ ପୁଅ ହେଲା । ପିଲାଲୋକ, ଜାତି ବେବସା ବୁଝି ନାହିଁ । ଆପଣଙ୍କ ଚରଣ ଧୂଳି ତା ମୁଣ୍ଡରେ ଲଗିଲେ ସବୁ ଶିଖିଯିବ ଯେ ।" ବିଭା ବିଷୟରେ ଆଉ କିଛି ସନ୍ଦେହ ନାହିଁ । ଏକାବେଳକେ ଦିନ ଠିକ୍ ହୋଇଗଲା, ଆସନ୍ତା ମକର ଶୁକ୍ଳ ସପ୍ତମୀ । ବଡ଼ ଘର କଥା ବଡ଼ ବାଜେ, ଦିନକ ମଧ୍ୟରେ କଲ୍ଲାର ଅଧାଅଧି ଲୋକ ଜାଣିଗଲେ, କୁବେର ସାହୁ ପୁଅ ବିଦ୍ୟାଧର ସଙ୍ଗରେ ଯୁଧିଷ୍ଠିର ସାହୁ ଝିଅ ପଦ୍ମାବତୀର ବିଭା ।

ବିଭା ପ୍ରସଙ୍ଗ ଛିଡ଼ିବା ବାସି ଦିନ ସନ୍ଧ୍ୟାବେଳେ ଦୁଇ ସମ୍ବନ୍ଧୀ ଦେବତାଙ୍କ ନାଟମନ୍ଦିରରେ ବସିଛନ୍ତି । କୁବେର ସାହୁ ଏ କଥା ସେ କଥା ଉତ୍ତାରେ କହିଲେ, "ସମୁଧିଏ ! ସୋନପୁରରେ ମୋର ଢେର କାମ ଥିଲା, ଦେଖୁଛି ମୋର ଯିବାର ହେଉ ନାହିଁ । ଏଇ ବୁଝନ୍ତୁ, ମକର ମାସ ତ ମକର ମାସ, ଚୂଡ଼ି ଦେଉନ୍ତୁ, କକଡ଼ାଟା ଚଳୁଛି, ଏଇଟା ବି ଧର୍ମୋଟ ଭିତରେ ନୁହେଁ । ବାକି ରହିଲା ସିଂହ କଣ୍ଠରୁ ଧନୁଯାଏ ମଝିରେ ପାଞ୍ଚଟା ମାସ । ଏହି ମଧ୍ୟରେ ସବୁ ଆୟୋଜନ, ଠିକ୍ ଠିକଣା କରିବାକୁ ହେବ । ତା ପୁଣି ନାଆ ଉଠାଣି ମାମଲା, ବାଟରେ ଉଣା ପୂରା ମାସେ କାଳ ଗୁଡ଼ି ଦେଉନ୍ତୁ । ମାସ ଗୁରିଟା ରହିଲା ହାତରେ । ମୁଁ କହୁଛି, କାଲି ସକାଳେ ଗୁଲିଯାଏଁ । ଆଜ୍ଞା ! କଣ ଆଜ୍ଞା ହେଉଛି ?" ଯୁଧିଷ୍ଠିର ସାହୁଏ ଦଣ୍ଡେ ଆଖିବୁଜି ବସି କହିଲେ, "ଆଉ ଯୋଡ଼ାଏ ଦିନ ରହିଗଲେ ଭଲ ହୁଅନ୍ତା ପରା । ହେଉ, ଅପଣ ଯେପରି ଭଲ ବୁଝନ୍ତି, କରନ୍ତୁ ।"

ମହାମପୁରରେ ଚହଳ ପଡ଼ି ଯାଇଛି, ସାହୁଙ୍କର ପୁଅ ବିଦ୍ୟାଧରର ବିଭା । ହେଲେ, ଗୋଟାଏ ଶ୍ରେଣୀ ଲୋକଙ୍କ ଘରେ ରଡ଼ି ପଡ଼ିଛି । କୋଡ଼ିଏ ଖଣ୍ଡି ଗାଁରେ ସାହୁର ଦୁଇ ତିନି ଶ ଭଲ ଖାତକ । ଧାନ ବୋଲ, ଟଙ୍କା ବୋଲ, ତା ଘରୁ ନ ଖାଇଛି କିଏ ? ସାହୁ ସମସ୍ତଙ୍କୁ ଧରି ବସିଛି, ପୁଅର ବିଭା, ନ ଦେଲେ ନୁହେ । ନୋହିଲେ ମୂଳଟା ଥାଉ, କଲନ୍ତରଟା ଛିଡ଼ାଇ ଦିଅ । ପଇସାଏ ବି କଲନ୍ତର ରଖିବ ନାହିଁ । ଅଜ ଶ୍ରାବଣ ମାସ, ଲୋକଙ୍କ ଘରେ ଟଙ୍କା ତ ଟଙ୍କା, ପୀତାନଳତା ମଞ୍ଜି ନାହିଁ ଯେ ଦେବେ । ଜଣ ଜଣଙ୍କ ଘରେ ଯୋଡ଼ା ଯୋଡ଼ା ପିଆଦା । ସମସ୍ତେ ସାହୁ ଦୁଆରେ ଓପାସ ଭୋକରେ ପଡ଼ି ଉକା ଗୁଡ଼ୁଛନ୍ତି, ଶୁଣୁ ଛି କିଏ ? ଥୋକେ ଖାତକ ଦଶ ବାର ବରଷର ପୁରୁଣା କରଜାର ମୂଳ କଲନ୍ତର ହିସାବ କରି ତମସୁକ ରେଜିଷ୍ଟ୍ରି କରାଇଦେଇ ଖଲାସ ପାଇଲେ । ତମସୁକରେ ବିଲବାଡ଼ି ଘର ଦୁଆର ସବୁ ବନ୍ଧା ରହିଲା । ସାହୁଆଣୀ ସବୁ ଶୁଣୁଥିଲେ । ଦୁଇଦିନ ହେଲା ଅନ୍ନ ଛାଡ଼ି ବସିଲେଣି । ଗୋଟିଏ ବୋଲି ପୁଅ, ତାଙ୍କ ଇଚ୍ଛା, ଶୁଭ କାର୍ଯ୍ୟଟା ମଙ୍ଗଳରେ ହେଉ । ନା, କିଛି ନୋଉଣୁ ଶହକୁ ଶହ ଲୋକ ରଡ଼ି ଗୁଡ଼ୁଛନ୍ତି, ଧର୍ମ ଏତେ ସହିବ କିଁଆ ? ବେକରେ ପଟକା ପକାଇ ସାହୁ ଗୋଡ଼ତଳେ ପଡ଼ିଗଲେ, ଢେର କାକୁତି କଲେ, ଢେର କାନ୍ଦିଲେ, ଫଳ ହେଲା କଣ ନା, ସ୍ୱାମୀ ପାଖରୁ କଣ୍ଟକିଆରେ ଗାଳି ଗୁଲଜ ଗୁଡ଼ାଏ । ମାଇପି ଲୋକ କଣ କରିବେ, ମାଚ ତୁନି ହେଲେ ନାହିଁ । କରଣମାନଙ୍କୁ ଡାକି ମାଆ ପୁଅ କଥଁ ଲରେ, କେତେକ ହାକମି ବୋଲରେ ବୁଝାଇଦେଲେ, "ଖବରଦାର ! କାହାକୁ କଷ୍ଟ ଦେଇ ଟଙ୍କା ଅସୁଲ କର ନାହିଁ ।" ସାହୁ କରଣଙ୍କୁ ଗାଳି ଫଜତ କରୁଛି, କାହିଁକି ଟଙ୍କା ଅସୁଲ ହେଉ ନାହିଁ ? ହଁ ହିସାବ ହେଉଛି, ହଁ ଟିପା ଲେଖାଯାଉଛି—ଏମିତି କରି ଦିନ କାଟିଲେ । ଯେଉଁ ଜାଗାରେ ସାହୁ ନିତାନ୍ତ ଜଗିବସେ, ସାହୁଆଣୀ ତୁନି ତୁନି ଟଙ୍କା ଗଣି ଦିଅନ୍ତି ।

ଏଣେ ବଡ଼ ସରଞ୍ଜାମ କଣାକଣି ଧୂମ ଲଗିଛି । ବାଣବାଲ ଆଗତୁରା ବଇନା ଧଇଲ୍, ଲୁଗା ମୋଟକୁ ମୋଟ କଟେଇ ଘରେ ଜମା, ମଶଲମଶଲ କଣିବା ଲଗି ଯୋଡ଼ାଏ କରଣ କଟକ ଧାଇଁଲେ । ହେଲେ; ସାହୁକୁ ଏଷା ଭଲ ଲଗୁନାହିଁ । ତାହାର ଇଚ୍ଛା, ପୁଅ ବଡ଼ ବାହାନାରେ ଖାତକଙ୍କ ପାଖରୁ ଟଙ୍କା ରୁଣ୍ଡାଇ ନେବ । ସାହୁଆଣୀ ବାପ ଜଣେ ଧନବନ୍ତ ଲୋକ ଥିଲା—ସେ ନିର୍ବଂଶ, ତାହାର ସବୁ ସମ୍ପତ୍ତି ସାହୁଆଣୀ ପାଇଛନ୍ତି । ସାହୁଆଣୀଙ୍କର ଇଚ୍ଛା, ନିର୍ବଂଶିଆ ଧନ ଘରେ ରଖିବେ ନାହିଁ, ଦାନପୁଣ୍ୟରେ ଖରଚ କରିବେ । ତାଙ୍କ ଦାନ ଦିଆନିଆ ପୁଅ ବି ଜାଣେ ନାହିଁ । ସାହୁଆଣୀଙ୍କର ଇଚ୍ଛା, ପୁଅର ମଙ୍ଗଳକୃତ୍ୟ ଖୁବ୍ ଆଡମ୍ବରରେ ହେଉ, ସମସ୍ତେ ଖାଇ ପିଇ ଆନନ୍ଦ ଉତ୍ସବ କରନ୍ତୁ । ବାକ୍ସ ଏକାବେଳକେ ହିଦୁଆଁ । ସାହୁ ଏକଥା ସବୁ ଜାଣେ । ପୁଅ ବଡ଼କୁ ପଇସାଏ ବି ଛାଡ଼ୁନାହିଁ, ପୁଣି ବଳକା ଖରଚ ଦେଖି ଭାରି ବିକ୍‌ଦାର ।

ପନ୍ଦର ଖଣ୍ଡ ସରକ ଚକଚକିଆ ନାଆ, ଗୁଡ଼ାଏ କାଠୁଆ ସଜ ହେଲା । ପୁରୋହିତ ବ୍ରହ୍ମା, ଜ୍ୟୋତିଷ, କରଣ, ଟାଣୁଆ ଟାଣୁଆ କେତେ ଜଣ ଦେଶ ଲୋକ, ଭଣ୍ଡାରୀ, ଗଉଡ଼, ଷାଠିଏ ସତୁରି ଜଣ ସରକ ଲୋକ ବରଗହଣରେ ଯିବେ । ନଈରେ ଉଚ୍ଛୁଣିକା ପାଣି ଛିନ୍ ଛୋଟ – ହିରଣି ଖୋଳିବା କାଠୁଆ ହତା ଯନ୍ତ୍ର ଧରି କୋଡ଼ିଏ ସରକ ମୂଲିଆ ବି ସଙ୍ଗରେ ଯାଉଛନ୍ତି । ଉଠାଣି ଯିବାକୁ ଚବିଶ ପଚିଶ ଦିନରୁ ଊଣା ଲଗିବ ନାହିଁ । ହେଲେ, ସାହୁଆଣୀ ଦେଢ଼ ମାସର ଖୋଷେଇ ସରଞ୍ଜାମ, ଜଳଖିଆ ସରଞ୍ଜାମ ଦେଲେ । ଖଞ୍ଜ ଅଖଞ୍ଜ ଅଛି, କେଜାଣି ବାଟରେ ମଠ ବହାଇଯିବ ।

ସାହୁଆଣୀ ଯେପରି ଦାନଶୀଳା, ଦୟାବନ୍ତୀ—ସେହିପରି ସବୁ କାମକୁ ଆଗ । କାଉ କା କରିବାରୁ ଅଧରାତି ଯାଏ ଚରଖି ପରି ଘୂରୁଥିବେ, ଟିକିଏ ହେଲେ ହାଲିଆ ହୋଇ ପଡ଼ିବାକୁ ନାହିଁ । ଘର ଖଦାରେ ଦୁଇ ଓଳି ଶହେ ଖଣ୍ଡ ଯାଏଁ ପତ୍ର ପଡ଼େ । ହାଣ୍ଡିଆଣୀ, ପାଲୁଣୀ-ଗୁଡ଼ା ପାଛୁଆ ଗୋଟିଏ ଗୋଟିଏ ଧରି ବାଡ଼ିଦୁଆର ପଟରେ ବସିଥାନ୍ତି । ସାହୁଆଣୀ ସମସ୍ତଙ୍କ କଥା ବୁଝନ୍ତି । ସମସ୍ତଙ୍କୁ ଦେଇ ଥୋଇ ଆପେ ଖାଆନ୍ତି । ସାହୁଆଣୀ କଥା କେହି ବୁଝିବାକୁ ନାହିଁ; ମାତ୍ର ପୁଅ ବିଦ୍ୟାଧର, ମା ଖାଇଲା ନ ଖାଇଲା ବୁଝେ—ବାଧିକା ପଡ଼ିଲେ ପାଖରେ ବସି ଗୋଡ଼ ହାତରେ ହାତ ବୁଲାଏ ।

ଆଜି ପୁଷ୍ୟ ୧୫ ଦିନ; ବରଯାତ୍ରା ପାଇଁ ଠିକ୍ ହୋଇଛି । ନଈକୂଳରେ ଅଧକୋଶଯାଏଁ ନାଆ କାଠୁଆ ଧାଡ଼ିକ ଧାଡ଼ି ଖଞ୍ଜା । ନାଉରିଆମାନେ ଆହୁଲା, କାତ, ନା-ଟଣା ଦଉଡ଼ି, ହରିଣିଖୋଳା ହତା ଯନ୍ତ୍ର ଧରି ହାଜର । କୋଡ଼ିଏ ଖଣ୍ଡ ସରକ ଗାଁରୁ ପିଲାପିଲି ଧରି ମାଇକିନିଆ ମରଦ ନଈ ଦୁଇ କୂଳରେ କାତାର ଦେଇ ଛିଡ଼ା ହୋଇଛନ୍ତି । କିଛି ଦୂର ନଈବାଲିରେ ଢୋ ଢୋ କରି ଗଛବାଣ ଫୁଟିଲା । ସଙ୍ଗେ ସଙ୍ଗେ ଶଙ୍ଖ ହୁଳହୁଳି ଉଚ୍ଛୁଳି ପଡ଼ିଲା । ସମସ୍ତେ ବିଦ୍ୟାଧରକୁ ଦୁଃଖ ପାନ୍ତି, ମନ ମଧ୍ୟରେ ତାହାର ମଙ୍ଗଳକାମନା କଲେ । ବରଯାତ୍ରା ଆଗରୁ ଘର ଅଗଣା ଭିତରେ ପିଣ୍ଡି ଉପରେ ନାନ୍ଦୀମୁଖୀ ଶ୍ରାଦ୍ଧ ବଢ଼ିଲା । ବିଦ୍ୟାଧର ବେଦୀରୁ ଉଠି ମା ପାଖରୁ ମେଲାଣି ନେବାକୁ ଯାଇ ଗୋଡ଼ତଳେ ପଡ଼ିଲା, ମା ପାଦରୁ ଧୂଳି ନେଇ ମୁଣ୍ଡରେ ଲଗାଇଲା । ମା ତୁଳସୀ ମୂଳରୁ ମାଟି ନେଇ ତା ମୁଣ୍ଡରେ ଚିତା କରିଦେଲେ । ତେତିକ-ବେଳେ ବିଦ୍ୟାଧର ମା ମୁହଁକୁ ଅନାଇ ଦେଖିଲା, ମୁହଁଟି ସିଠୁଆ କଳା ପଡ଼ିଯାଇଛି । ଆଖି ଡୋଳା ଯୋଡ଼ାକ ଭିତରକୁ ପଶିଗଲାଣି । ବିଦ୍ୟାଧର ଚମକି ପଡ଼ି କହିଲା, "ଏ କଣ ମା ! ତୁ ଇମିତିକା ଦିଶୁଛୁ କିଆଁ ? ଜର ହେଲାଣି କି ? ମୁଁ ଶୁଣୁଛି, ବୃହଦିନ ହେଲା ତୁ ଖୁଁ ଖୁଁ କାଶୁଛୁ । ନା, ନା, ତୋତେ ଛାଡ଼ି ଯିବାକୁ ମୋ ମନ ବଳୁ ନାହିଁ ।"

ମା—ଏ କଣ ରେ ବାପ ! ଏ କି କଥା ? ଏତେବେଳେ କଣ ଏପରି କଥା କହନ୍ତି ? ବାଟରେ ତୋତେ ଗ୍ରାମଦେବତୀ ରକ୍ଷା କରିବେ, ଜଗନ୍ନାଥ ମହାପ୍ରଭୁ କଲ୍ୟାଣ କରିବେ । ମୋର କିଛି ହୋଇନାହିଁ । ଏହି କେତେ ଦିନ ଘର ଭିଡ଼ ପାଇଁଟିରେ ଲାଗିଥିଲି, ଖିଆ ପିଆ ଠିକ୍ ନ ଥିଲା । ଗ୍ରାମ-ଦେବତୀଙ୍କୁ ଦଣ୍ଡବତ କରି ଦହିମାଛ କରି ଯା ।

"ମଙ୍ଗଳଂ ଭଗବାନ୍ ବିଷ୍ଣୁଃ"—

ମନ୍ତ୍ର ପଢ଼ି ପୁରୋହିତ ବରଅନୁକୂଳ କରାଇ ଦେଲେ ।

ହରିପୁରରେ ପହଞ୍ଚିବାକୁ ହାତଗଣିଲା ଠିକ୍ ପଚିଶ ଦିନ ଲାଗିଲା । ସଙ୍ଗରେ ଦିଫେ ଗୋଟିପୋ ଗାଆଣିଆ ଥିଲେ । ଭଲ ଜାଗା ପାଇଲେ ଦିନେ ଦିନେ ସଞ୍ଜବେଳେ ନାଟ ଗାଆଣ ହୁଏ । ନଦୀକୂଳ-ପାଖିଆ କୋଶକ ବାଟରୁ ଲୋକେ ଧାଇଁଆସି ଗାଆଣ ଶୁଣନ୍ତି ।

ଯୁଧିଷ୍ଠିର ସାହୁଙ୍କ ଘର କୋଶକ ଦୂରରୁ ସଞ୍ଜବେଳୁ ରୋଷନାଇ ଲାଗିଲା । କଟକୀ ଭୂଇଁଚମ୍ପା, ଚନ୍ଦ୍ରଉଦିଆ, ଗଛ ବାଣ ସଙ୍ଗରେ ଯାଇଥିଲା । ଯୁଧିଷ୍ଠିର ସାହୁ ବି ଢେର ବାଜା, ବାଣ ଠିକ୍ କରିଥିଲେ । ଦଶ କୋଶ ବାଟରୁ ଲୋକେ ଚୂଡ଼ା ଗୁଡ଼ିଲ ବାନ୍ଧି ରୋଷନାଇ ଦେଖିବାକୁ ଆସିଥିଲେ । ବାହୁଡ଼ିବା ବେଳେ ବୋଲବୋଲ ହୋଇ ଗଲେ, ଗୋଟାଏ ରଜାପୁଅ ବାହାରେ ବି ଏତେ ଆଟୋପ ହେବ ନାହିଁ ।

ବିଭା ବଢ଼ିଲା, ଅଷ୍ଟମଙ୍ଗଳା ବି ହୋଇଗଲା । ଏବେ ବର କନ୍ୟା ବିଦା କଥା ! ହିଁ ଆଜି, ହିଁ କାଲି, ହିଁ ଆସନ୍ତା ଶୁକ୍ରବାର—ରବିବାର ଏହିପରି କରୁଁ କରୁଁ ମାସେ କାଳ ବିତି ଗଲାଣି । ଶେଷରେ ଦିନେ ଯୁଧିଷ୍ଠିର ସାହୁ କୁବେର ସାହୁଙ୍କୁ କହିଲେ, "ସମୁଧିଏ ! ନଈରେ ନାହିଁ ଜଳ—ଢେର ଜାଗା ହରିଣି ଖୋଳିବାକୁ ହେବ—ଢେର ବିଳମ୍ବ ହେବ । ଏଣେ ଖରା ପଡ଼ି ଆସିଲାଣି । ତୁମ ଆମ କଥା ଯାହାହେଉ, ପିଲାଯୋଡ଼ାକ ଯାଉଛନ୍ତି, ପୋଇଲି ପରିବାରୀ ଦି ଜଣ ସଙ୍ଗରେ ଥିବେ, ସେମାନଙ୍କର ବଡ଼ କଷ୍ଟ ହେବ । ମୁଁ କହୁଛି, ଗହଣ ଲୋକଙ୍କୁ ବିଦା କରି ଦେଉନ୍ତୁ, ପିଲାଟି ଆଉ ଆପଣ ଦୁଇଜଣ ରହନ୍ତୁ । ପହିଲୁ ଆଷାଢ଼, ଯିମିତି ନଈରେ ପିଛାପାଣି ପଡ଼ିବ, ନାଆ ମେଲି ଦେବେ । ଆପଣ କଣ ଏବେ ପରଲୋକ ଯେ ଜଗିଜାଗି କଥା କହିବ ? ଏହି ଦେଖନ୍ତୁ, ଚଞ୍ଚଳ ସବୁ ଆୟୋଜନ କରିବାକୁ ପଡ଼ିଲା, ପିଲାମାନଙ୍କୁ ତ ଦିଖଣ୍ଡି ହେଣାଗାଣ୍ଡି ଦେବାକୁ ହେବ । ଦେଖୁଛନ୍ତି ତ ପୁଞ୍ଜାଏ ବଣିଆ ଦିନ ରାତି ପାଇଁଟିରେ ଲାଗିଛନ୍ତି । ଚଞ୍ଚଳର କାମ ନୁହେଁ—ଟିକିଏ ମଠ ନ ହେଲେ ସବୁ ଠିକ୍ ହୋଇ ପାରିବ ନାହିଁ । ଆଉ ଆଉ ପାଞ୍ଚ ଚିଜ ତ ଦେବାକୁ ହେବ । ଆଠଖଣ୍ଡି ନାଆ ଗହଣରେ ଦେବି, ତିଆରି ସରି ନାହିଁ । ନଈକୂଳରେ ଯାଇ ଦେଖନ୍ତୁ, ଅଧାଅଧି ବି ହୋଇ-ନାହିଁ ।" କୁବେରସାହୁ ମନ ମଧ୍ୟରେ ଭାବିଲା, 'ଏହି ତ ଷୋଳଗୋଡ଼ିଆ ସାତଖଣ୍ଡି ନାଆ ତିଆରି ଲାଗିଛି, ଗହଣାଗାଣ୍ଡି ବି ତିଆରି ଲାଗିଛି, ପିଲାଟା ଘରକୁ ଚଞ୍ଚଳ ଯାଇ କଣ କରିବ ? ପଇସାର ଫନ୍ଦି ଫିକିରରେ ମନ ନାହିଁ, ମା ପୁଏ ଯୋଡ଼ାକଯାକ ଯାଙ୍କୁ ଦିଅ, ତାଙ୍କୁ ଦିଅ, ଘରୁ ଚିଜବସ୍ତୁ ବାଣ୍ଟିରେ ଲାଗିଥିବେ । ଉଚ୍ଛୁଣିକା ଏତିକି ଲାଭ, ବୁଢ଼ା ଆଖି ବୁଜିଲେ ସବୁ ମୋର । ନା ନା, ବୁଢ଼ାର ମନ ଭାଙ୍ଗିବା ଭଲ ନୁହେଁ ।' ଘର ପାଖରେ କୁବେର ସାହୁ ମୁହଁରୁ କେବେ କେହି ଠାକୁର ନାମ ଶୁଣିନାହିଁ, ସବୁବେଳେ କଳନ୍ତର ଲାଭ ହିସାବ । ହରିହରପୁରକୁ ଆସିବାଦିନୁ ସବୁବେଳେ ମୁହଁରେ 'ଜଗନ୍ନାଥେ—ଜଗନ୍ନାଥେ—ନୀଳାଚଳନାଥ' ଲାଗି ରହିଛି । କୁବେର ଆଖି ବୁଜି କହିଲା, "ହେଉ ହେଉ, ସମୁଧିଏ ! ଆପଣ ଯାହା ଆଜ୍ଞା କରିବେ, କିଏ ଅନାସ୍ଥା କରିବ ? ଆପଣ ତ ସବୁ ଜାଗାର ମାଲିକ ।" ଗହଣର ସବୁ ଲୋକଙ୍କୁ ବିଦା କରି ଦିଆଗଲା, କେବଳ ବାପେ ପୁଏ ଆଉ କେତେଟା ଚାକର ରହିଲେ ।

କୁବେର ସୋନପୁର, ବୌଦ ସବୁ କୋଠିର କରଣ କାରବାରଆଙ୍କୁ ଲେଖି ଦେଲା, "ମଫସଲରେ କିଛି ପାଉଣା ରଖିବ ନାହିଁ । ସବୁ ନାଆରେ ସଉଦା ବୋଝାଇ କରି ଚହ୍ଲୁ ଆଷାଢ଼ରେ, ଯିମିତି ନଈରେ ପିଚାପାଣି ଚଢ଼ିବ, ହରିହରପୁର ଘାଟରେ ନାଆ ଧରି ହାଜର ହୋଇଯିବ ।" ଏଣେ ଘରଠାରେ ସାହୁଆଣୀ ବିଛଣା ଧରିଲେଣି । କବିରାଜ କହିଲା, "ଏଇଟା ରାଜଯକ୍ଷ୍ମା—ଶିବଙ୍କ ଅସାଧ । କରଣମାନଙ୍କୁ ଡାକି ସାହୁଆଣୀ ସାବଧାନ କରାଇଦେଲେ, "ଖବରଦାର ! ହରିହରପୁରକୁ ମୋ ବେମାରି କଥା ଲେଖିବ ନାହିଁ, ପୁଅ ଶୁଣିଲେ ଧାବରିଯିବ ।"

ବିଦ୍ୟାଧର ଶ୍ୱଶୁର ଘରେ ରାଜଭୋଗରେ ଅଛି । କନ୍ୟାଟି ଯେମନ୍ତ ସୁନ୍ଦରୀ, ଗୁଣବନ୍ତୀ, ସେହିପରି ପତିବ୍ରତା । ତେବେ ବି ଆଠଦିନକୁ ଆଠଦିନ ଘରପାଖରୁ ମା'ଙ୍କ ସମ୍ବାଦ ନ ପାଇଲେ ଆକୁଳ ହୋଇ ପଡ଼େ । ଶେଷ ଥରିରୁ ଶୁଣିଲା, ମାଙ୍କ ବେମାରି ଭଲ ହୋଇଗଲାଣି, ଏବେ ସେ ନିଶ୍ଚିନ୍ତ । ତେବେ ମା ବୋଉକୁ ଦେଖି, ଏହି କଥା ମନରେ କରି ବେଳେ ବେଳେ ଚଞ୍ଚଳ ହୋଇପଡ଼େ ।

ସୁଖର ଦିନ ଘୋଡ଼ା ଛୁଟିଲା ପରି ଧାଇଁଛି । ଯୁଧିଷ୍ଠିର ସାହୁ ଘରେ ଆନନ୍ଦ ଉତ୍ସବରେ ଗୃହ ଗୃହ ଗୃହମାସ ଗଲାଗଲା । କନ୍ୟା ବିଦା ପାଇଁ ଯାହା ଯାହା ଲୋଡ଼ା, ସବୁ ଠିକ୍ ଠାକ୍ ହୋଇଗଲାଣି । ଦଶଖଣ୍ଡ ନୂଆ ତିଆରି ନାଆ ଭୁଠରେ ଧାଡ଼ି କରି ଖଟା ହୋଇଛି । ସବୁ ନାଆ ଚିତ୍ର ବିଚିତ୍ର ମଣ୍ଡପ, ଦୁଇ ମଙ୍ଗରେ ଫର ଫର ହୋଇ ପତାକା ଉଡ଼ୁଛି । ଏଗୁଡ଼ିକ ଯୌତୁକ ନାଆ । ସେଥିମଧ୍ୟରେ ଯୋଡ଼ାଏ ନାଆ ସୁନ୍ଦର ମଣ୍ଡପ । ଖଣ୍ଡିକରେ ଝିଅ, ଆଉ ଖଣ୍ଡିକରେ ଜୁଆଁଇଁ ବସି ଯିବେ । ଆଷାଢ଼ ମାସ ଯିମିତି ପଶିଛି, ନାଆସବୁ ବୋଝାଇ ଲାଗିଲା । ବାସନ ପେଡ଼ି, ଆଉଖିର, ଲୁଗା ପେଡ଼ି, ଶିଳ, ଶିଳପୁଆ, ଝାଞ୍ଜ ଲିମୁଠା ଯାଏ ଘରକରଣା ଜିନିଷ, ଦୁଇ ବରଷ ଚଳିବା ମାଫିକ ଦାନ୍ତକାଠି ଖଣ୍ଡିକ ଯୁକ୍ତା ଛଖଣ୍ଡ ନାଆରେ ବୋଝାଇ ହେଉଛି । ଯୁଧିଷ୍ଠିର ସାହୁର ତାକିଦ୍—'ଖବରଦାର, ବୁଝି ସୁଝି ଦିଅ, ଝିଅ ଦୁଇ-ବରଷଯାଏ ଶ୍ୱଶୁର ଘରେ ପାଣି ମନ୍ଦାକ ଗୁଡ଼ ଯେମନ୍ତ ଆଉ କିଛି ଛୁଇଁବ ନାହିଁ ।' ଲୋକେ ବୋଲନ୍ତି, ଯୌତୁକ ଜିନିଷର ଦାମ ପଚିଶ ହଜାର ଟଙ୍କାରୁ ଊଣା ନୁହେ ।

କୁବେର ସାହୁର ଦୂରଦୂରାନ୍ତର କୋଠିମାନଙ୍କରୁ ତିରିଶଖଣ୍ଡ ସରକ ନାଆ ସରକ ବୋଝାଇ କରି ସେଠାରେ ଉପସ୍ଥିତ । ନାଆସବୁ ପୂରା ବୋଝାଇ, ପାଣିଲହଡ଼ି ଗୃଲକୁ ଛୁଇଁ ଦେଉଛି । କୋଶେଯାଏ ସବୁ ନାଆ ଖଟା ହୋଇଛି । ଆଜହୁଁ ଦେଖଣାହାରିମାନେ ମଫସଲରୁ ଆସି କୂଳରେ କାତାର ଦେଲେଣି ।

ଆଷାଢ଼ କୃଷ୍ଣ ଦଶମୀ ଦିନ ଯାତ୍ରା ଠିକ୍ ହେଲା । ରଥ କାଠ ମେଲାଣି ଭଳିଆ ପାଣିକୁ ଗୃହିଁ ବସିଛନ୍ତି—ନୋହିଲେ ନାଆସବୁ ଖୁଣ୍ଟ ପାରି ହୋଇ ପାରିବ ନାହିଁ । ଠିକ୍ ପୂରା ପାଣି ବି ହୋଇଗଲା । ଆଜ ଯାତ୍ରାର ଦିନ । ହଜାର ହଜାର ଦେଖଣାହାରି ନଈ ଦୁଇ କୂଳରେ କାତାର ଦେଇ ଛିଡ଼ା ହୋଇଛନ୍ତି । ଗୋଟାଏ ଗୋଟାଏ ନାଆରେ ଗୃରି ଗୃରିଜଣ ଆହୁଲା ଧରି ଛିଡ଼ା ହୋଇଗଲେ । ପଛରେ ମଙ୍ଗଧରା । ଆଗ ମଙ୍ଗ ଉପରେ ବାଟ-କଡ଼ାଣିଆ ଛିଡ଼ା । ଏହି କଡ଼ାଣିଆ ନ ହେଲେ ନାଆ ଖୁଣ୍ଟ ପାର ହୋଇପାରିବ ନାହିଁ ।

ଆଠମଲ୍ଲିକ ଉପରକୁ ମୁଣ୍ଡାପଡ଼ା ଗାଁଠାରୁ କଇଁଶା ଗଡ଼ଯାଏ ଷୋଳ ସତର ମାଇଲ ଭିତରେ ଖୁଣ୍ଟ ପଡ଼େ । ବଡ଼ ବଡ଼ ପଥର ସବୁ ମୁଣ୍ଡ ଟେକି ନଦୀମଧ୍ୟରେ ସଭା କରି ବସିଲା ପରି ବସିଛନ୍ତି । ବଢ଼ିପାଣିରେ ସେହି ପଥର ସବୁ ବୁଡ଼ିଗଲେ ତା ଉପର ଦେଇ ନାଆ ସବୁ ଭସିଯାଏ । କେତେ ପଥର ବୁଡ଼େ ନାହିଁ । ଗୁଡ଼ାଏ ପଥର ଉପରେ ଗୃଖଣ୍ଡେ, ଗୃରି ଆଙ୍ଗୁଳ ଜଳ । ନାଉରୀକୁ ପଥର ଦିଶେ ନାହିଁ । ଏ ଖୁଣ୍ଟ ଜାଗାଟାରେ

ନଈ କମ୍ ଓସାର ଯୋଗୁଁ ପାଣିର ଘର ଚୋଡ଼, ଘଞ୍ଚାକ ମଧ୍ୟରେ କୋଡ଼ଏ ମାଇଲ ବାଟ ନାଆ ଭସିଯାଏ । ସେହି ଖୁଷ୍ଟ ମଧ୍ୟରେ ଅଙ୍କା ବଙ୍କା ସାପଚଲ ପରି ବାଟ । ନାଆ ସେହିବାଟେ ଯାଏ । ସେ ବାଟଟା କଡ଼ାଣିଆକୁ ଜଣା । ସେ ଜାଗାରେ ପାଣିର ଘର ଚୋଡ଼, ପଥରରେ ବାଜି ଏପରି ଶବ୍ଦ କରେ ଯେ, କଡ଼ାଣିଆ କଥା ପଛ ମଙ୍ଗଧରକୁ ଶୁଭେ ନାହିଁ । କଡ଼ାଣିଆ ଦୁଇ ହାତରେ ବାଟ ଠାରି ଦେଉଥାଏ । ଖୁଷ୍ଟ ପାରି କରି ଦେଇ ବାଟକଡ଼ା କଇଁଖାଗଡ଼ଠାରେ ନାଆରୁ ଓହ୍ଲାଇ ପଡ଼େ । ତା କାମ ଛୁଟିଗଲା । ତିନଦିନ ହେଲା ଶ୍ରବଣା ପଶିଥିଲା, ଘର ପାଣି, ଘର ଝଡ଼ । କାଲି ସଞ୍ଜରୁ ପାଣି ଛାଡ଼ିଛି । ସକାଳେ ଆକାଶ ନିର୍ମଳ, ସୂର୍ଯ୍ୟଦେବତା ଜ୍ୱଳନ୍ତସୁନା ପେଣ୍ଡ ପରି ଉଇଁ ଆସିଲେ । ଫେର ଥରେ ସାହି ଘର ଭିତରୁ ଘର କାହାଣୀ ଶଙ୍ଖ ହୁଳହୁଳି ଶୁଭିଲା । ବର କନ୍ୟା ନାଆରେ ବସିଲେ । 'ଜେ ଜେ ଗଙ୍ଗାମାତା' କହି କହି ନାଉରିମାନେ ଆଗେ ବରକନ୍ୟା ନାଆ ମେଲି ଦେଲେ, ତା ପଛକୁ ତା ପଛକୁ ସବୁ ନାଆ ମେଲି ଗଲା । ଦୁଇ କୂଳରୁ ହଜାର ହଜାର ଲୋକ 'ହରିବୋଲ' ପକାଉଅଛନ୍ତି ।

ଆଗ ନାଆ ଭସି ଯାଇ ଦୁଇକୋଶ ଦୂର ଶ୍ୟାମପୁର ଗାଁ ସଳଖରେ ଯିମିତି ପହଞ୍ଚିଛି, ସୂର୍ଯ୍ୟ ଦେବତା ବୁଡ଼ିଗଲେ । ନାଉରିଏ ଜାଣନ୍ତି, "ଉଇଁ ନ ଦିଶେ, ହସି ପଶେ, ବାପ ବୋଲେ ପୁତା-ନଷ୍ଟେ ବରଷେ ।" ନଈ ଦୁଇ କୂଳ ଲୋକେ ଛିଡ଼ା ହୋଇ ଅନାଇଛନ୍ତି, ନାଉରିଏ ଘର ଆନନ୍ଦରେ 'ହରିବୋଲ' ଦେଇ ନାଆ ବାହି ଯାଉଛନ୍ତି । ଯୋଡ଼ାଏ ନାଆ ଖଜା ପିଠା ବୋଝାଇ, ନାଆ ଲଟାଇ ଖାଇବେ । ଏତିକିବେଳେ ଉତ୍ତର ପଶ୍ଚିମ କୋଣରୁ ଚହଁସଖଣ୍ଡ ପରି ଖଣ୍ଡେ ସାନ ଧୂଳିଆ ମେଘ ଉଇଁ ଆସିଲା । ସିଲସିଲ ପବନ ଝିଲକଲା । ନାଉରିଏ ଡରିଗଲେ । ଆଉ ସମସ୍ତେ ବାହାଣରେ ଲଗିଛନ୍ତି । 'ଜେ ଜେ—ଗଙ୍ଗାମାତା କି ଜେ' ଗୀତ ଗାଇ ଆହୁଲା ବାହୁଛନ୍ତି । ନାଆ ଯିମିତି ମୁଣ୍ଡପଡ଼ା ଗାଁ ମୁଣ୍ଡ ଛୁଇଁଛି, କଥା ପଦକେ ଗୋଟା ଆକାଶ ମେଘ ଘୋଡ଼େଇ ପକାଇଲା, ସଙ୍ଗେ ସଙ୍ଗେ ପବନ, ତା ପଛକୁ ପାଣି । ପବନ ତ ପବନ, ଏପରି ଘୂଙ୍ଗୁଡ଼ିଆ ପବନ କାଳେ ସକାଳେ ଦେଖିବାର ନାହିଁ । ବେତନାସି ଗୋଗ୍ରାଟରେ ବାଡ଼େଇଲା ପରି ନାଉରିମାନଙ୍କ ଦେହକୁ ପାଣି ଛାଟ ମାରୁଛି । ଦିନଯାକ ବରଷା ଖାଇ ଯେଉଁମାନେ ନାଆ ବାହିଯାନ୍ତି, ଦଣ୍ଡକ ମଧ୍ୟରେ ସେ ନାଉରିଗୁଡ଼ାକ ହାଲିଆ ହୋଇ ଢଳିଲେଣି । ଦୁଇ କୂଳରୁ ଡାକ ପଡ଼ୁଛି, "ନାଉରି, କୂଳ ଭିଡ଼ା, କୂଳ ଭିଡ଼ା ।" ବାଟକଡ଼ା ଡାକୁଛି, "ମଙ୍ଗୁଆଲ କୂଳ ଦେଖା—ଆରେ କୂଳକୁ ଦେଖା ।" ନାଆ କିଏ ମଙ୍ଗ ମାନୁଛି । ଘୂଙ୍ଗୁଡ଼ିଆ ପବନ ନାଆର ଆଗ ମଙ୍ଗ ପଛକୁ କରି ଦେଉଛି, କେବେ ନାଆକୁ ଚକ ପରି ବୁଲାଇ ଦେଉଛି । ନଈ କୂଳର ଘର ପୁରୁଣା ଆମ୍ବ, ବର, ଓସ୍ତ ଗଛଗୁଡ଼ାକ ମାରିଷଗଛପରି ଉପୁଡ଼ି ପଡ଼ୁଛି । ପ୍ରବାଳ ଗୋଟାଏ ଘର ଦମକା ପବନ ବାଡ଼େଇ ଦେଲା । ନାଆ ଉପର ମଙ୍ଗଧରା, ବାହାଣିଆ, ବାଟକଡ଼ା, ସବୁ ଗୁଡ଼ାକ ଝୁପ୍ ଝାପ୍ କରି ନଈରେ ପଡ଼ିଗଲେ । ତଣ୍ଟିଆ ଦେଇ ସେମାନଙ୍କୁ କିଏ ଯେମନ୍ତ ପାଣିରେ ମାଡ଼ିଦେଲା । ନାଆଗୁଡ଼ାକ ଗୋଟାକ ଉପରେ ଗୋଟାଏ ବାଡ଼େଇ ହେଉଛନ୍ତି, ଗୁଡ଼ାଏ ଠୋକର ଖାଇ ଭାଙ୍ଗି ଗୁଣ୍ଡା ହୋଇଗଲଣି । ଆଉ ଦଣ୍ଡେ ସତାର କରିଥିଲେ ନାଆ ସବୁ ସୁଅ ପାଣିରେ ପଡ଼ି ଭସି ଯାଇଥାନ୍ତା; ମାତ୍ର କଇଁଖାଗଡ଼ ମୁଣ୍ଡରେ ନଈ ମଝିରେ ଗୋଟାଏ ବଡ଼ ଖୁଷ୍ଟ ମହାକାଳଦୂତପରି ଛିଡ଼ା ହୋଇଥିଲା, ସବୁ ନାଆ ତା ଉପରେ ବାଡ଼େଇ ହୋଇ ଭାଙ୍ଗି ଚୂନା ହୋଇଗଲା । ଖଣ୍ଡେ ନାଆ ବର୍ତ୍ତି ପାରିଲା ନାହିଁ । ମନୁଷ୍ୟ ବା ବୋଝାଇ ଜିନିସ କାହାରି ଚିହ୍ନବର୍ଣ୍ଣ ନାହିଁ, ଗୁଡ଼ାଏ ପଟା ଭସି ଭସି ଯାଉଛି ।

ଆଜକୁ ଠିକ୍ ହାତ ଗଣନ୍ତା ହେଲା ବରଷେ । ଯୋଗ ଦେଖ, ଆଜ ବ ମିଥୁନ କୃଷ୍ଣ ଦଶମୀ । ମହାନଦୀ ଦୁଇକୂଳ ଖାଉଛି, ଉଛୁଳ ପଡ଼ିଲାଭଳି । ଲଙ୍ଗଳକଣ୍ଟା ଗାଁତଳେ କୂଳ ଉପରେ ଯୋଡ଼ାଏ କୁସୁମ ଗଛରେ ଯୋଡ଼ାଏ ଲମ୍ବ ଲମ୍ବ ଦଉଡ଼ରେ ଯୋଡ଼ାଏ ଝାଡ଼ୁଆ ନାଆ ଆଗ ମଙ୍ଗ ଖଞ୍ଜା ହୋଇଛି । ଟାଣ ସୁଅରେ ନାଆ ପଛ ମଙ୍ଗ ଅଳ୍ପ ଅଳ୍ପ ବଙ୍କ ହେଉଛି । ବେଳେ ବେଳେ ନାଆ ଯୋଡ଼ାକ ନାଚ ଉଠୁଛନ୍ତି । ନାଉରିଗୁଡ଼ାକ ଦିନଯାକ କାତ ପେଲ ଥକ ଯାଇଥିଲେ । ଯିମିତ ପଡ଼ ଯାଇଛନ୍ତି,ନଦୋଡ଼ ନଦ, ଘୁଙ୍ଗୁଡ଼ ମାରୁଛନ୍ତି । ଆକାଶରେ ଗୋଟିଏ ବୋଲି ତାରା ନାହିଁ, ଘୋର ଅନ୍ଧାର । ବେଳେ ବେଳେ ଲତାବିଜୁଳି ଚମକ ଯାଉଛି । ଗୋଟିଏ ଭେଣ୍ଡିଆ ଖଣ୍ଡେ ନାଆ ପଛମଙ୍ଗରେ ଗାଲରେ ହାତ ଦେଇ ବସି କଣ ଚିନ୍ତା କରୁଛି । ରାତି ଅଧାଅଧି ଗଡ଼ିଗଲାଣି, କାଁଆ ଶୋଇବାକୁ ଯାଇ ନାହିଁ । ତପସ୍ୟା କଲାପରି ଆଖି ବୁଜ ଉଇହୁଙ୍କାଟି ପରି ତୁନି ହୋଇ ବସିଛି । ମଙ୍ଗଟା ଠିକ୍ ଗାଧିଆତୁଠରେ ଅଣ୍ଟାଏ ସରିକି ପାଣିରେ ଘସୁଛି । ଏତିକବେଳେ ତୁଠର କିଛି ଦୂରରୁ 'ହେ ଠାକୁରେ ! ହେ ଗଙ୍ଗାମାତା ! ମୋ ଧର୍ମ ରଖ !' ବିକଳ ରଡ଼ ଶୁଣି ମୌନୀ ଭେଣ୍ଡିଆଟି ଚମକ ପଡ଼ିଲା । ଯେମନ୍ତ ଦେଖା ପ୍ରତିମାଟିଏ ଧାଇଁଛି, ତା ପଛରେ ଯେ ଗୋଟାଏ କାଳିଆ ଭୂତ ମହୁଆଳ ମଣିଷପରି ଟଳ ଟଳ ହେଇ ଉଠି ଗୋଡ଼ାଉଛି । ନିତାନ୍ତ କର୍କଶ ଭାଷାରେ ପାଟି କରି କହୁଛି, "ଏ ବରଷକୁ ତା ତୋ ପିଛା ଲାଗିଛି, କଥା ଶୁଣୁ ନ ଥିଲୁ ପରା ? ଆଜ ଅଚ୍ଛା ବେଳେ, ଅଚ୍ଛା ଜାଗାରେ ଆପେ ଆପେ ଭେଟ ମିଳିଗଲୁ । ଡାକଲୁ ମୋ ମା'କୁ, ତା ବୋପା ଆସି ରଖୁ । ମୋ ବୋହୂ ତୋତେ ଜଗି ବସିଥିଲା ପରା ? କେହି ତୋ ପିଠିରେ ପଡ଼ୁ ନାହିଁ ?" ଯୁବତୀଟି ଆକୁଳରେ ରଡ଼ ଛାଡ଼ୁଛି, "ମହାପ୍ରଭୁ ! ମୋ ଧର୍ମ ରକ୍ଷା କର ! ମା ଗଙ୍ଗା ! ମୋତେ କୋଳକୁ ନିଅ । ମୋ ସ୍ୱାମୀ—ମୋ ମୁଣ୍ଡର ମଣି—ମୋ ପ୍ରାଣର ଦେବତାକୁ କୋଳକୁ ନେଇଛ, ମୋତେ ନିଅ ।"

ନାଆ ମଙ୍ଗପାଖକୁ ଘଟଣା ଜାଗା ପାଞ୍ଚ ଛ ହାତ ଛଡ଼ା । ଯୁବତୀ ଆଉ ଆଗନ୍ତୁକ ଭିଡ଼ାଭିଡ଼ ଲାଗିଛନ୍ତି । ମଙ୍ଗ ଉପର ଲୋକ ଯୁବତୀର ସ୍ୱର ଶୁଣି ଚମକ ପଡ଼ିଲା । ତେତିକବେଳେ ବିଜୁଳିଟାଏ ଚମକ ଗଲା । ଯୁବକ ଆଖିକୁ ଝକ ଝକ ପଦ୍ମାବତୀ ରୂପ ପରି ଦିଶିଗଲା । ଆଉ ସମ୍ଭାଳି ପାରିଲା ନାହିଁ । ଆଗରେ ଗୋଟାଏ କାଠୁଆ ଆହୁଲା ପଡ଼ିଥିଲା, ତାକୁ ଧରି ମଙ୍ଗଠାରୁ ସାତ ଆଠ ହାତ ଦୂରକୁ ହୁଙ୍କାର ଦେଇ ଯିମିତ ଡେଇଁ ପଡ଼ିଛି, ସେହି ଉଦଣ୍ଡ ରାକ୍ଷସଟାର ମୁଣ୍ଡରେ ଟାଣ ଏକ ପ୍ରହାର । ଲୋକଟା 'ବାପା ରେ' ବୋଲି କହି ନଈ ଭିତରେ ସାତ ଆଠ ହାତ ଦୂରକୁ ଛିଟିକି ପଡ଼ିଲା । ପାଣିଟା ଟିବ୍ କରି ଯାହା ଶୁଭିଛି, ତେତିକି । ଯୁବକ ଆଉ ପାହାରେ ବାଡ଼େଇବାକୁ ଆହୁଲା ଉଞ୍ଚାଇଲା— ମଣିଷର ଚିହ୍ନ ନାହିଁ । ଯୁବତୀ ବିଜୁଳି ଆଲୁଅରେ ଏତିକି ମାତ୍ର ଦେଖିଲା, ଯେମନ୍ତ ଆକାଶରୁ ଗୋଟିଏ ଦେବତା ଖସି ପଡ଼ି ପାଷାଣ୍ଡ ହାତରୁ ତାକୁ ରକ୍ଷା କଲେ । ଆକୁଳରେ 'ମୋ ପ୍ରଭୁ ! ଦେବତା' ଏତିକି କହି ଯୁବକକୁ କୁଣ୍ଢାଇ ପକାଇଲା, ଆଉ ତାହାର ଜ୍ଞାନ ନାହିଁ ।

ଯୁବକ ବଡ଼ କଷ୍ଟରେ ଯୁବତୀଟିକୁ ନାଆ ମଙ୍ଗ ଉପରକୁ ଟେକ ନେଇ ନାଉରିମାନଙ୍କୁ ଉଠାଇଲା । ନାଆ ଘର ଟେକ ଦେଇ ଅତି କଷ୍ଟରେ ଯୁବତୀକୁ ନାଆ ଭିତରେ ଶୁଆଇଲା । ବିଦ୍ୟାଧର ଦେଖିଲା, ଯୁବତୀର ଚେତା ନାହିଁ, ମୁଣ୍ଡ ଲମ୍ବବାଳରୁ ଝର ଝର କରି ପାଣି ବହିପଡ଼ୁଛି, ଦେହ ଗୋଟାକ କାଦୁଅ ଲଟ୍‌ପଟ୍, ଲୁଗା ଚିପୁଡ଼ ଦେଲେ ପାଣି ବୋହି ପଡ଼ିବ । ବିଦ୍ୟାଧର ବଡ଼ ହରବରରେ ପଡ଼ିଲା । ଭଲ କରି ଚାହିଁଲାଣି ସତ, ତେବେ ବି ଡର ମାଡ଼ୁଛି । ପାଖରେ କେହି ନାହିଁ,

ଯୁବତୀଟି କିପରି ଲୁଗା ପାଲଟିବ ? ହଠାତ୍ ହାତରେ ନଜର ପଡ଼ିଗଲା, ଆଙ୍ଗୁଳିରେ ମୁଦି । ଆପଣା ମୁଦି ବୋଲି ଚିହ୍ନିଲା, ଆଉ ସନ୍ଦେହ ନାହିଁ । ଲୁଗା କାହିଁ ? ଆପେ ତ ହ' ଚୁଟିଆ—ଆପଣା ପାଛୁଡ଼ା ଖଣ୍ଡ ଯୁବତୀକୁ ପିନ୍ଧାଇ ଦେଇ ତା ଦେହର କାଦୁଅ ପାଣି ପୋଛି ପକାଇଲା ।

ଶ୍ୟାମ ସାହୁ ବିଦେଇର ନିଘନ ମଳାଶୁର । ଘର ଜୋରମେ ଇଲାକା ଖାଲପାଳ । ସାହୁ ଜଣେ କାର-ବାରିଆ ମଧ୍ୟବିତ୍ତ ଲୋକ । ବିଭା ସମୟରେ ବିଦ୍ୟାଧର ତାକୁ ଚିହ୍ନିଥିଲା, ଘର ଠିକଣା ଜାଣିଥିଲା । ଯୁବତୀର ଚେତା ବସୁ ନାହିଁ । ନାଆରେ ସବୁବେଳେ ଉହ୍ଲେଇରେ ନିଆଁ ଥାଏ । ଲୁଗା ପେଣ୍ଡୁଳା କରି ବିଦ୍ୟାଧର ଯୁବତୀକୁ ସେକୁଥାଏ । ରାତି ଆଉ ପିଛିଲା ପହରେ ସରିକ ଅଛି, ବିଦ୍ୟାଧର ନାଉରିମାନଙ୍କୁ ଡାକି କହିଲା, "ତୁମ୍ଭେମାନେ ଯେବେ ଦିନ ପହରକ ଭିତରେ ନାଆ ନେଇ ଖାଲପାଳ ଘାଟରେ ଭିଡ଼ାଇ ପାରିବ, ଜଣକା ପାଞ୍ଚ ପାଞ୍ଚ ଟଙ୍କା ବକ୍‌ସିସ୍ ଦେବି ।" ନାଉରିମାନେ ବିଚାରି କଲେ ଖାଲପାଳ ଏଠାରୁ ଚାରିକୋଶ ବାଟ—ଏବେବେଳେ ନାଆ ମେଲି ଦେଲେ କସ୍ତାକସ୍ତିରେ ନାଆ ପହଞ୍ଚିବ । ଆକାଶରେ ଆଉ ମେଘ ନାହିଁ, ଟିକିଏ କାଳିଜହ୍ନିଆ ପଡ଼ିଗଲା । ନାଆଟା ଦକ୍ଷିଣ କୂଳ ଧରି ଯାଉଥିଲା । ଖାଲପାଳ ହେଉଛି ଉତ୍ତର କୂଳରେ । ଯିମିତି ରାତି ପାହିଛି, ନାଉରିଏ ନାଆ ମେଲି ଦେଲେ ।

× × × ×

ଯୁବତୀ ଗୋଟିଏ କୋମଳ ବିଛଣାରେ ପଡ଼ିଛି, ଚେତା ନାହିଁ । ନାକରେ ତୁଳା ଦେଇ ଦେଖାଗଲା, ଅଳ୍ପ ଅଳ୍ପ ପବନ ଚାଲିଛି । ଗ୍ରାମର ପୁରୁଣା ବୈଦ୍ୟ ବନେଇ ବାହାଣୀପତି ଭଲରୂପେ ନାଡ଼ି ଚିପି କହିଲେ, "କେବଳ ଇନ୍ଦ୍ରିୟଦୌର୍ବଲ୍ୟ—ବିପଦର ଆଶଙ୍କା ନାହିଁ ।" ଲଗ ଲଗ ତିନିପାନ କସ୍ତୁରୀଭୂଷଣରସ, ଅଦାରସ ମହୁ ଅନୁପାନରେ ପିଆଇଦେଇ କହିଲେ, "ଏହି ଔଷଧର କ୍ରିୟା ଆରମ୍ଭ ହେଲେ ଚେତନା ବସିବ ।" ଘଣ୍ଟାର ଦୁଇଟାଯାଏ ଦିନ ଉପରଓଳି ଯୁବତୀ ଟିକିଏ ଆଖି ମେଲି ଚାହିଁଲା । ଘରବାଡ଼ି ସବୁଆଡ଼କୁ ଆଖିବୁଲାଇ ଅନାଇଲା—ଦେଖିଲା, ଗୋଟିଏ ପ୍ରୌଢ଼ା ସ୍ତ୍ରୀ ପାଖରେ ବସି ଧୀରେ ଧୀରେ ତା ଦେହରେ ହାତ ବୁଲାଉଛି । ଯୁବତୀର ଚେତା ବସିଗଲାଣି । ଅତି କ୍ଷୀଣ ସ୍ୱରରେ ତାକୁ ପଚାରିଲା, "ମୁଁ କେଉଁଠି ଅଛି ?" ପ୍ରୌଢ଼ା ଅତି ଧୀରେ, ଅତି କୋମଳରେ କହିଲା, "ମା ପଦ୍ମାବତୀ ! ମୁଁ ପରା ତୋ ମାଉସୀ ରେ—ମୋତେ କଣ ଚିହ୍ନିପାରୁ ନାହୁଁ ?" ପଦ୍ମା ଉଠି ବସିଲାଣି । କାନ୍ଥବାଡ଼ ଧରି ସକାଳ ସଞ୍ଜ ଟିକିଏ ଟିକିଏ ଚାଲିବୁଲି ହୁଏ । ବୈଦ୍ୟରାଜଙ୍କ ବ୍ୟବସ୍ଥା ଟିକିଏ ଟିକିଏ ଦୁଧ ଦିଆ ଯାଉଛି, ଅନ୍ନ ପଥ୍ୟ ଦିଆ-ଯାଇ ନାହିଁ ।

ଝିଅ ଜୁଆଇଁ ପହଞ୍ଚିବା କ୍ଷଣି ସାହୁ ଚାରିଜଣ ଭେଣ୍ଡିଆ ପାଇକ ହାତରେ ଯୁଧିଷ୍ଠିର ସାହୁ ପାଖକୁ ଖବର ଚାଲି ଦେଇଥିଲା । ଆଜି ଦଶମ ଦିନ । ତିରିଶ ଜଣ ବର୍ଣ୍ଣିଆ ଆପଟ ଚାରିଖଣ୍ଡ ପାଲିକି ଧରି ହରିହରପୁରରୁ ଆସି ଉପସ୍ଥିତ । ଯୁଧିଷ୍ଠିର ସାହୁ ଲେଖିଛନ୍ତି, "ବାଟରେ ଆଠ ଜାଗା ଟପା ଆପଟ ବସିଲା । ତଡ଼େଦମ୍ ଝିଅ ଜୁଆଇଁଙ୍କୁ ଧରି ମଉସା ମାଉସୀ ଆସିବ । ଚାରି ଦିନ ବାଟ ଦୁଇ ଦିନରେ ଆସିବ । କିଛି ମଠ କରିବ ନାହିଁ ।" ମହା ଆନନ୍ଦରେ, ଉତ୍ସବରେ ଯୁଧିଷ୍ଠିର ସାହୁ ଝିଅ ଜୁଆଇଁଙ୍କୁ ଘରକୁ ନେଲେ । କେତେଦିନପର୍ଯ୍ୟନ୍ତ ମନ୍ଦିରରେ ହରିଲୁଟ, କୀର୍ତ୍ତନ, ବୈଷ୍ଣବଖିଆ, ପ୍ରସାଦ ସେବା ଚାଲିଲା ।

ଘୋର ଦୁର୍ଯୋଗ, ଘୋର ଦୁର୍ଦ୍ଦିନ ଉତ୍ତାରେ ତରୁଣାରୁଣ ଆଲୋକ ବଡ଼ ପ୍ରୀତିକର, ବଡ଼ ଆନନ୍ଦ-ଦାୟକ ଜଣାଯାଏ । ବିଦ୍ୟାଧର, ପଦ୍ମାବତୀ ଦୁଇ ଜଣ

ଦିନ ଗଡ଼ି ଚକୁଆ ଚକୋଇ ପରି ଉଆସ ଭିତର ପଦ୍ମାବତୀ ଖଞ୍ଜାରେ ବସି ଆନନ୍ଦ ଉତ୍ସବରେ ଦିନ କାଟୁଥାନ୍ତି । ନାଆ ଭଙ୍ଗାଠାରୁ ବରଷେ କାଳ କିଏ କପରି ଥିଲା, ସେହି ଦୁଃଖକାହାଣୀ କେହି କାହାକୁ ପଚାରି ନାହାଁନ୍ତି । ଆଜ କଥା କଥାକେ ସେହି କଥା ଫିଟିଗଲା । ବିଦ୍ୟାଧର କହିଲା, "ନାଆ ଯିମିତି ଭାଙ୍ଗିଗଲା, ମୁଁ ଖଣ୍ଡେ ପଟା ଉପରେ ପେଟେଇ ପଡ଼ି ଭାସୁଥାଏଁ । ତୁମେ କୁଆଡ଼େ ଗଲ, ଅନାଇଲି । ତୁମେ ବି ଖଣ୍ଡେ ପଟା ଉପରେ ପଡ଼ି ଭାସୁଥିଲ, ଥରେ କେବଳ ଦେଖିଥିଲି । ପଛକେ ଶୁଣିଲି, ତହିଁ ଆରଦିନ ସକାଳେ ନଦୀ ମଧ୍ୟରେ ଭାସି ଭାସି ଯାଉଥିଲି, ଖଣ୍ଡେ ନାଆର ନାଉରିମାନେ ଦେଖି ମୋତେ ଉଠାଇନେଲେ । ଚାରି ଦିନ ବାଦେ ମୋର ଚେତା ବସିଲା, ଅନାଇ ଦେଖିଲି, ଗୋଟାଏ ବଡ଼ ଘରେ ଶୋଇଛି । ପଛକେ ଶୁଣିଲି, ସେଇଟା ଗୋବିନ୍ଦପୁର ଗାଁର ଗୋପାଳଜୀ ମଠ, କଟକଠାରୁ ଦୁଇକୋଶ ତଳକୁ । ବୁଢ଼ା ମହନ୍ତ ଲଳିତା ଦାସ ବାବାଜୀ ମୋତେ ବଞ୍ଚାଇବା ପାଇଁ ଖୁବ୍ ଯତ୍ନ କରୁଥାନ୍ତି । ମାସକ ବାଦେ ଚାଲିବୁଲି ପାରିଲି । ତୁମ ବାପା ଯେଉଁ ସୁନା ଗବତାରିଟା ଦେଇଥିଲେ, ଅଣ୍ଟାରେ ଥିଲା, ମହନ୍ତଙ୍କୁ ଦେଲି । ବିକି ମୋ ପିଛେ ଖରଚ କରିବାକୁ କହିଲି । ମହନ୍ତ ନାହିଁ ନାହିଁ କରି ନେଲେ । ମୋର ଟିକିଏ ବଳ ଆସିଥାଏ, ତୁମ କଥା, ବାପାଙ୍କ କଥା ମନରେ ପଡ଼ିଲେ ପୁଣି ଦଶ ପନ୍ଦର ଦିନ ପଡ଼ିଯାଏଁ । ଏହିପରି ଆଠ ଦଶ ମାସ କାଳ ବିତିଗଲା । କଟକ ଜିଲ୍ଲାରେ ବାପାଙ୍କର ନାମଡାକ । ଲଳିତା ଦାସେ ବାପାଙ୍କ ନାମ ଶୁଣି ମୋତେ ଆହୁରି ଅଧିକ ଯତ୍ନ କଲେ, ଆମ ଘରଠାକୁ ଖବର ପଠାଇଲେ । ଲୋକେ ବାହୁଡ଼ି ମୋ ମାତାଙ୍କ ବିଯୋଗ କଥା କହିଲେ । ମୁଁ ଆହୁରି ବି ମାସେପାଏ ବିଛଣାରେ ପଡ଼ି ରହିଲି । ତହିଁ ଉତ୍ତାରେ ସ୍ଥିର କଲି, ଘରକୁ ଯିବି ନାହିଁ ସନ୍ନ୍ୟାସୀ ହୋଇ ତୀର୍ଥରେ ବୁଲିବି । ଦେହରେ ବଳ ହେବାରୁ ବୁଲି ବୁଲି ଘରକୁ ଗଲି । ଘରେ ଯାଇ ଯାହା ଦେଖିଲି, ଦଣ୍ଡେ ରହିବାକୁ ଇଚ୍ଛା ବଳଲା ନାହିଁ । ପୁରୋହିତ ଦିବାକର ଦ୍ୱିବେଦୀ, ଶାସନର ଆଉ ଆଉ ଯେଉଁମାନଙ୍କର ଜମି ବାପା ନଲାମରେ ଧରି ନେଇଥିଲେ, ଡକାଇ ସମସ୍ତ ଜମି ଫେରାଇ ଦେଲି । ରେଜେଷ୍ଟରି, ଅରେଜେଷ୍ଟରି ଗୁଜା ଯେତେ ଦଲିଲ ଥିଲା, ଆଉ ଧାନ କରଜା ପାଞ୍ଜି, ସବୁ ପୋଡ଼ିପକାଇ ଖାତକମାନଙ୍କୁ ଖବର ଦେଲି, ଆଉ ସେମାନଙ୍କୁ ଟଙ୍କା ଦେବାକୁ ହେବ ନାହିଁ । ଧାନ, ଗୋରୁ, ବାସନକୁସନ ଯାହା କିଛି ଥିଲା, ଦେଶ ଲୋକଙ୍କୁ ବାଣ୍ଟି ଦେଇ ଦିନେ ରାତିରେ କାହାକୁ କିଛି ନ କହି ଘରୁ ବାହାରି ଆସିଲି । ମନରେ କଲି, ଆଉ ତ ଗୁରୁଜନ କେହି ନାହାଁନ୍ତି, ଶ୍ୱଶୁରଙ୍କୁ ଶେଷ ଦର୍ଶନ କରି ତାଙ୍କ ପାଦଧୂଳି ମୁଣ୍ଡରେ ଦେଇ ବାହାରି ଯିବି । କଟକଯାଏ ଆସିଲି । ଝାଡ଼ ମୂଲକରେ ବାପାଙ୍କୁ ସମସ୍ତେ ଜାଣନ୍ତି । ମହାନଦୀକୂଳ ଗଡ଼ଗଡ଼ିଆ ପାଖ ଘାଟରେ ଖଣ୍ଡେ ସୋନପୁରି ନାଆରେ ଉଠି ବସିଲି । ଆସୁ ଆସୁ ଲଙ୍ଗଳକଣ୍ଠାଠାରେ—" ପଦ୍ମାବତୀ ପଣନ୍ତକାନରେ ବିଦ୍ୟାଧର ମୁହଁ ବୁଜି ଧରି କହିଲା, "ଆଉ କିଛି କହ ନା ।" ବିଦ୍ୟାଧର ଆତ୍ମକାହାଣୀ ବର୍ଣ୍ଣନ ସମୟରେ ପଦ୍ମା ଆଖିରୁ ଦୁଇଧାର ଲୋତକ ବହୁଥାଏ ।

ବିଦ୍ୟାଧର କହିଲା, "ଏବେ ତୁମ କଥା କହ ।" ପଦ୍ମା ମୁହଁ ପୋଛି ଆତ୍ମକାହାଣୀ କହିବାକୁ ଲାଗିଲା; "ମୁଁ ଲଙ୍ଗଳକଣ୍ଠା ଦଳେଇ ଘରେ ଥିଲି । ଦଳେଇ ଗାଁ ମଧ୍ୟରେ ଥିଲାବାଲା ଲୋକ । ଗ୍ରାମର ସମସ୍ତ ଲୋକ ମାନନ୍ତି । ଘର ଆଗରେ ଗୋଟିଏ ଠାକୁର ମନ୍ଦିର କରିଛି, ସଦାବର୍ତ୍ତ ଦିଏ । ଶୁଣିଲି, ମୁଁ କୂଳରେ ଅଚେତ ହୋଇ ପଡ଼ିଥିଲି । ଦଳେଇଘର ମାଇପେ ମୋତେ ଗୋଟାଇ ଘେନି ଯାଇଥିଲେ । ଦଳେଇ ଅଉ ତା ଭାର୍ଯ୍ୟା ମୋତେ ବଡ଼ ଆଦରରେ ରଖିଥିଲେ, ଝିଅଠୁ ବଳି ସ୍ନେହ କରନ୍ତି । ମୋ ପାଇଁ ମନ୍ଦିରରୁ ପ୍ରସାଦ ଆସେ । ମୁଁ କାନ୍ଦିଲେ ଦଳେଇ ଭାର୍ଯ୍ୟା ସାନ୍ତ୍ୱନା ଦିଏ,

ମୋତେ ବାଘ ପାଖକୁ ପଠାଇ ଦେବାକୁ କହେ । ଦଳେଇ ସିମିତ ଧାର୍ମିକ, ତା ପୁଅଟା ସେହିପରି କୁଳାଙ୍ଗାର, ପାଷଣ୍ଡ । ମଦ, ଆପୁ, ଗଞ୍ଜେଇ କିଛି ନିଶା ତାକୁ ଅଣ୍ଟେ ନାହିଁ । ଘରେ ଯୁବତୀ ବୋହୂ, ତାକୁ ଅନାଏ ନାହିଁ । ଗାଁ ବୋହୂ ଝିଅ ତା ଡରରେ ଘରୁ ବାହାରନ୍ତି ନାହିଁ । ମୋ ଉପରେ ଅତ୍ୟାଚାର କରେ, ନାନା କୁକଥା କହେ । ଦଳେଇ ଘରଯାଏ ସେଥିଲାଗି ମୋତେ ଜାକଗଣ୍ଡି କରି ରଖିଥାଏ । ମୁଁ ବି ତା ଶରଣ ପଶିଥାଏଁ । ତଥାପି ଟିକିଏ ବେଳ ପାଇଲେ ମୋତେ ନାନା କୁକଥା କହେ । ଆଉ ସହି ପାରିଲି ନାହିଁ । ସେ ଦିନ ରାତିରେ ବୁଡ଼ି ମରିବାପାଇଁ ଆସିଥିଲି । ଦୁଷ୍ଟଟା ବାଟରେ ଧରିଥିଲା, ତୁମେ ରକ୍ଷା କଲ । ସେତେବେଳେ ତୁମକୁ ଚିହ୍ନି ନ ଥିଲି । ମନରେ କଲି, ପ୍ରଭୁ ସ୍ୱର୍ଗରୁ ଓହ୍ଲାଇ ଆସି ମୋତେ କୋଳ କରି ନେଲେ ।”

ଯୁଧିଷ୍ଠିର ସାହୁ ଆଜି ବିଷୟ ଅଶୟ କିଛି ବୁଝେ ନାହିଁ । ଝିଅ ଜୋଇଁଙ୍କୁ ସବୁ ସମ୍ପତ୍ତି ଦେଇ ଦିନ ରାତି ବସି ହରିନାମ ଜପୁଥାଏ ।

---

## ସଭ୍ୟ ଜମିଦାର

ବାବୁ ବଳରାମ ବଳ କଲିକତା ବଡ଼ ବଜାରର ଜଣେ ଗଦିଆନ ମହାଜନ । ଉତ୍କଳର ସମସ୍ତ ବେପାରୀଙ୍କର ଦଣ୍ଡିଦାର । ସମସ୍ତ ମାଲ ଆମଦାନି ରପ୍ତାନି ତାଙ୍କ ହାତ ବାଟେ ହେଉଥିଲା । ଲକ୍ଷ ଲକ୍ଷ ଟଙ୍କାର କାରବାର । ଢେର ବର୍ଷ ତଳର କଥା । ରେଳ ନାମ ତ କେହି ଶୁଣି ନ ଥିଲେ, ଷ୍ଟିମର ମଧ୍ୟ ଚଳୁ ନ ଥିଲା । ବାଲେଶ୍ୱର ଜାହାଜରେ ମାଲ ଆମଦାନି ରପ୍ତାନି ହୁଏ । କଲିକତା ଆମଦାନି ମାଲ ମଧ୍ୟରେ ଧୂଆଁପତ୍ର ପ୍ରଧାନ । କଲିକତାରୁ ମାଲ ଆସି ବାଲେଶ୍ୱର ବନ୍ଦରରେ ଜାହାଜରୁ ଘାଟ ଉଠେ । ସେ ସ୍ଥାନରୁ ଶଗଡ଼ରେ ସମସ୍ତ ଉତ୍କଳକୁ ଚଲାଣ ହୁଏ, ଏଥିପାଇଁ ସମସ୍ତ ଉତ୍କଳରେ କଲିକତା ଧୂଆଁପତ୍ରର ନାମ ବାଲେଶ୍ୱରୀ । ହେଲେ ବାଲେଶ୍ୱରୀ ଲୋକେ ଧୂଆଁପତ୍ର ଗଛ କେବେ ଦେଖି ନାହାନ୍ତି ।

ଧୂଆଁପତ୍ର କାରବାର ବଡ଼ କଠିଣ । ଘୋଡ଼ାଚଢ଼ା ମହାଜନ କଥା ପଦକେ ଘାସ କାଟେ—ଘାସକଟା ଘୋଡ଼ା ଚଢ଼େ । ମହାଜନେ ବୋଲନ୍ତି, ‘ଦୋକ୍ତା କାରବାର ଆଉ ଗୋଖର ସାପ ଖେଳାଇବା ଏକା କଥା ।’ ବାସନାରେ, ରଙ୍ଗରେ ମାଲ ସମାନ । ସେହି ମାଲ ମହଣ କୋଡ଼ିଏ ତ ‘ସେହି ମାଲ ମହଣ ଶହେଶ ଟଙ୍କା । ଚିହ୍ନାରି ଦଣ୍ଡିଦାର ନ ଧରି ଲୋକେ ଧୂଆଁପତ୍ର କିଣିବାକୁ ଭରସନ୍ତି ନାହିଁ । ବଳରାମ ବଳେ ଜଣେ ଭଲ ଚିହ୍ନାରି, ଏଥିପାଇଁ ଓଡ଼ିଶାରେ ନାମଡାକ ।

ମହାଜନଙ୍କ ଘର ଯାଜପୁର ଅଞ୍ଚଳରେ । ଗ୍ରାମ ନାମ ଜଣା ନାହିଁ । ମହାଜନ ଥରେ ଗ୍ରାମକୁ ଆସିଥିଲେ । ଦଶ ବାର ବର୍ଷର ଛେଉଣ୍ଡ ପିଲା ଗୋପାଳଆ ଗାଁରେ ବୁଲୁଥିଲା । ଜାତିପୁଅଟା ଅନାଥ ହୋଇ ବୁଲୁଛି, ଦୟା କରି ସାଙ୍ଗରେ ନେଇଗଲେ । ଗୋପାଳ ଗଦିରେ ଥାଏ । ଖାଉଛି ତ ଖାଉଛି, ଅଛି ତ ଅଛି, ତାକୁ ଦେଖୁଛି କିଏ—ପଚରାପଚରିର ଦରକାର କଣ ? ଦିନେ ରାତିରେ କଣ ହେଲା କି, ମହାଜନ ଜଣେ ସଉଦାଗର ପାଖରୁ ପାଞ୍ଚଟା ଆକବରୀ ମୋହର କିଣିଲେ । ବାବୁଙ୍କ ମନ ଭାରି ଖୁସି । ମିଳିବା ପଦାର୍ଥ ନୁହେ, ବାକସରେ ରଖି ପୂଜା କରିବେ । ମୋହର ପୁଟୁଳାଟି ଧରି ବସିଥାନ୍ତି, କେତେବେଳେ ତଳେ ରଖି ଦେଲେଣି । ପାଇକାର, ମହାଜନ, ମୋଟିଆ, ମଜୁରିଆ ହିସାବପତ୍ର ଛୁଡ଼ିବାକୁ ରାତି ଛ ଘଡ଼ି । ବାବୁଙ୍କର ହୋଷ ନାହିଁ, ଗଦି ବନ୍ଦ କରି ଉଠିଗଲେ । ତହିଁ ଆରଦିନ ସକାଳେ ଗୋପାଳ ଯିମିତି ଉଠିଛି, ଗଦିରେ ମୋହର ପୋଟଳା ଉପରେ ନଜର ପଡ଼ିଗଲା, ହାତରେ ଧରି ବାବୁଙ୍କ

ପାଖକୁ ଧାଇଁଲା । କୁକୁଡ଼ା ଡାକ ଆଗରୁ କଲିକତାରେ ଯିମିତି ତୋପ ପଡ଼େ, ଦେଖିଅନ୍ ଧାର୍ମିକ ହିନ୍ଦୁ ମହାଜନ-ମାନେ ଗଙ୍ଗାସ୍ନାନକୁ ବାହାରିଯାନ୍ତି । ଢେର ଜାଗାରେ ଠାକୁର ଠାକୁରାଣୀ ଦର୍ଶନ କରି ଫେରୁ ବାହୁଡ଼ିବାକୁ ବେଳ ଦୁଇ ଘଡ଼ି । ନେମିକାର୍ଯ୍ୟ କରିବାକୁ ସେଇଟା ହେଲା ଅସଲ ବେଳ । ଫୁରସତ୍ ବା କାହିଁ ? ବାବୁଙ୍କୁ ନ ଭେଟି ଗୋପାଳ ତାଙ୍କ ପଲଙ୍କ ତକିଆ ତଳେ ପୋଟଲାଟି ଥୋଇ ଦେଲା । ତାହାର କି ସେ କଥା ଆଉ ମନରେ ନାହିଁ । ବାବୁ ସ୍ନାନ ସାରି ଆସିବା ବେଳକୁ ଚାକର ବନ୍ଧିଆ ବାରିକ ଗଦି ଝାଡ଼ଝୁଡ଼ କରି ଗଙ୍ଗାଜଳ ଛିଞ୍ଚି ଧୂପ ଗୁଗ୍‌ଗୁଳ ଧୂଆଁ ଜାଳିଦେଇ ସାରିଛି । ବାବୁ ବଡ଼ ମାଣ୍ଡିଟାକୁ ଆଉଜି ବସି ରୂପାବନ୍ଧା ହୁକାରେ ଭଡ଼ର ଭଡ଼ର କରି ଗୁଡ଼ାଖୁ ପିଇବାକୁ ବସିଲେ । ଆଗରେ ଦୁଇକୋଡ଼ା କଣା କଉଡ଼ି ବନ୍ଧା ବ୍ରାହ୍ମଣ ହୁକା, କାୟସ୍ଥ ହୁକା, ନବଶାଖ ହୁକା କଂସା ବଇଠକରେ ଥୁଆ ହୋଇଛି । ଏଇଟା ହେଲା କଲିକତା ସବୁ ଗଦିର ଦସ୍ତୁର ।

ବେଳ ଛ ଘଡ଼ି ବେଳେ ହଠାତ୍ ବାବୁଙ୍କର ମନରେ ପଡ଼ିଗଲା ମୋହର କଥା । ହଁ ମୋହର କାହିଁ ? ବାବୁ ଛିଡ଼ା ହୋଇ ପଡ଼ିଲେ, ହୁକାଟା ହାତରୁ ଖସି ପଡ଼ି ନିଆଁ ପାଣି ଗଦିଯାକ ବୁଣି ପଡ଼ିଲାଣି, ଦେଖୁଛି କିଏ ! ପାଞ୍ଚଟା ମୋହର । ବଡ଼ କଥା ନୁହେଁ, ଏ ଯେ ହେଲା ଆକବରୀ ମୋହର । ସେହିପରି କପାଳିଆ ଲୋକକୁ ଲକ୍ଷ୍ମୀ ଆଲିଙ୍ଗନ କରନ୍ତି, ଆକବରୀ ମୋହର ମିଳେ । ସେ ମୋହର ଗଲେ ଲକ୍ଷ୍ମୀ ଛାଡ଼ିଯାଏ । ବାବୁ ତ ମୁଣ୍ଡରେ ହାତ ଦେଇ ଗୁମ୍ ମାରି ବସିଗଲେ । ଗୋପାଳ ରୋଷେଇ ଘରେ ବସିଥିଲା, ମୋହର ଖୋଜା ଶୁଣି ଧାଇଁ ଆସିଲା । ବାବୁଙ୍କୁ ହସି ହସି କହିଲା, "ଆଜ୍ଞା ! ଆଜ୍ଞା ! ମୋହର ଅଛି ।" ବାବୁ ଧାଇଁ ଆସି ଗୋପାଳକୁ କୁଣ୍ଢେଇ ପକାଇଲେ । ଗୋପାଳ ମୋହର କାଢ଼ି ଦେଇ ପାଇବାର ହାଲ ସବୁ କହିଲା, ବାବୁ ଦଣ୍ଡେଯାଏ ତାକୁ ଅନାଇ ନିଶ୍ୱାସଟାଏ ପକାଇଲେ ।

ସେହି ଦିନ କତିରୁ ତୁଚ୍ଛାଟାରେ ହେଲେ ବାବୁ ଦଶ ଥର 'ଗୋପାଳ ରେ, ଗୋପାଳ ରେ', ଡାକ ପକାଉ-ଥିବେ । ଭୋଜନ ବେଳେ ଥାଳୀ ପାଖରେ ଗୋପାଳ ଅବଖୁରାରେ ଜଳ ଥୋଇ ନ ଦେଲେ ବାବୁଙ୍କୁ ଆଉ ଜଳ ଭଲ ଲାଗେ ନାହିଁ । ବାବୁଙ୍କ ହିଡ଼ିଆ ଗୋପାଳ ଖାନ୍‌ଗି ବ । ସେଥ ପରିଟା ଗୋପାଳ ଜମା । ବାବୁଙ୍କ ଶ୍ରଦ୍ଧା ଦେଖି ଗଦିର ଆଉ ପାଞ୍ଚଜଣ ବି ତାକୁ ମାନି-ଲେଣି । ବାବୁଙ୍କ ଇଚ୍ଛା, ବଡ଼ ଗୋଟାଏ କିଛି ପାଇଟିରେ ତାକୁ ଲଗାଇବେ । ହେଲେ ଓଡ଼ିଆ ପିଲା; ମଫସଲଗାଁରେ ଘର, ଏଣେ ତ କଲିକତାଟା ଠକ, ଗଣ୍ଡିକଟା ଖଣି କଣ ବୋଲି କଣ ହୋଇଯିବ, ହେଉ, ଆଉ ଟିକିଏ ପାରି ଯାଉ ।

ଦିନ ବେଳ ଛ ଦଣ୍ଡଯାଏ ଚୁଲିରେ ଲଣ୍ଡା ପଡ଼ି ନାହିଁ । ରୋଷେଇଆ ବାହ୍ମଣ କାହିଁ ? ହିଁ, ଦେଖ ଦେଖ, ବାବୁଙ୍କ ଟଙ୍କା ସିନ୍ଦୁକ ଚାବି ଭଙ୍ଗା, ପାଞ୍ଚ ଶହ ଟଙ୍କାର ଥଳିଟା ନାହିଁ । ଢେର ଖୋଜ ତଲାସ ହେଲା, ଥାନାରେ ଏତଲା ଦିଆଗଲା, ଆଉ ପୂଝାରୀ ଏକା-ବେଳକେ ଗୁମ୍ ! ଗୋଳମାଳରେ ବେଳ ଗଡ଼ିଗଲାଣି, ବାବୁ ଉପାସ ବସିଛନ୍ତି । ବଙ୍ଗାଳୀ ବାହ୍ମଣ ହାତରୁ ତ ଖାଇବେ ନାହିଁ, ଏତେ ଚଞ୍ଚଳ ଓଡ଼ିଆ ବ୍ରାହ୍ମଣ ବା କାହୁଁ ଘଟୁଛି ? ଗୋପାଳ ହାତ ଯୋଡ଼ି କହିଲା, "ଆଜ୍ଞା ! ମୁଁ ତେବେ ଦିଟା ଚଢ଼େଇ ଦିଏଁ ?" ବାବୁ କହିଲେ, "ତୁ ପାରିବୁ ରେ ? ଆଚ୍ଛା ହେଉ, ଏ ଓଳିଟା ଚଳିଯାଉ ।" ବାବୁ ଠା ପିଢ଼ାରେ ବସି ଦେଖିଲେ, ଏତେ ଚଞ୍ଚଳ ପାଞ୍ଚ ତିଅଣ, ପୁଣି ବଡ଼ ଭଲ । ପଚାରିଲେ, "ଆରେ ଗୋପାଳ, ତୁ କିମିତି ରାନ୍ଧି ଶିଖିଲୁ ରେ ?" "ଆଜ୍ଞା ପୂଝାରୀ ରାନ୍ଧା ଦେଖି ଦେଖି ଶିଖିଛି । ସେ ରାନ୍ଧୁଥିବାବେଳେ ମୁଁ ବସି ଦେଖୁଥାଏ ।"

ବାବୁ ଏଣିକି ଗୋପାଳ ହାତ ଛଡ଼ା ଆଉ କାହାରି ହାତରୁ ଜଳ ଛୁଅଁନ୍ତି ନାହିଁ । ପୁଣି ଦେଖିଲେ, ବଜାର

ସଉଦା ଖର୍ଚ୍ଚ ଅଧାଅଧି ଊଣା, ମଣବାପର ଦୁଇଗୁଣ ବେଶି, ପୁଣି ବଡ଼ ସୁନ୍ଦର ରନ୍ଧା । ବାବୁଙ୍କ ମନ ଜାଣି ବେଳ ମାଫିକେ ଗୋପାଳ ରନ୍ଧା ବଢ଼ାରେ ଲାଗିଥାଏ । ପୁଝାରୀ ତ ବଜାର ସଉଦା ଘିଅ ତେଲ ସବୁଥିରୁ ରେଷା କାଟିବ; ସବୁବେଳେ ଆପଣା ରୋଜଗାରରେ ଲାଗି-ଥାଏ । ବାବୁ ଭଲ ଖାଇଲେ, ମନ୍ଦ ଖାଇଲେ, ତାର କଣ ଯାଏ ? ବାବୁ ଥରେ ଗାଁକୁ ଯାଇ ଗୋପାଳକୁ ଗୋଟିଏ ଘର ବନାଇ ଦେଇ ବାହା କରାଇ ଦେଲେ । କନ୍ୟାଟି ଯେମିତ ଦେଖିବାକୁ ଢୌଲ ଡାଉଲ, ସେମିତ ଗୁଣ । ପଦ୍ମର ପଡ଼ିବା ଦିନରୁ ଦିନକୁ ଦିନ ଗୋପାଳର ଘର ବଢ଼ୁଛି । ଗୋପାଳ ରନ୍ଧାବଢ଼ା ସାରି ସବୁବେଳେ ଗଦିରେ ବାବୁଙ୍କ ପାଖେପାଖେ ଥାଏ । ଛୁଚ୍ଛା ବସି ଥାଏ ନାହିଁ, କେତେବେଳେ କଣ୍ଟା ଧରିଛି ତ, କେତେବେଳେ ମାଲ ସାଇତାରେ ଅଛି ।

ମାଲ କିଣା ବିକା ଛକପଞ୍ଜ ଗୋପାଳ ବେଶ ଜାଣିଗଲାଣି । ବାବୁ ତେର ଥର ବଢ଼ିଲେଣି, ଆପେ ଏତେ ପୁରୁଖା ଲୋକ ହେଲେ ବି ଥରେ ଥରେ ଗୋପାଳ ବଳପଡ଼େ, ତା କଥାରେ ଚାଲିଲେ ଠକିବାକୁ ହୁଏ ନାହିଁ, ବେଶ ଦି ପଇସା ଲାଭ ହୁଏ । ଗୋପାଳ ଆଉ ରୋଷେଇଆ ନୁହେ, ବେପାରରେ ବାବୁଙ୍କ ଡାହାଣ ହାତ । ବାବୁ ବୁଢ଼ା ହେଲେଣି, ପାଞ୍ଚ ଜାଗାକୁ ଯାଇ ଆସି ପାରନ୍ତି ନାହିଁ । ଧାଁ ଦଉଡ଼ କାମ ଗୋପାଳ ଜିମା । ଏବେ ଆଉ ସେ ଗୋପାଳ ନୁହେଁ, ଗଦିରେ ଡାକନାମ ସାନ ବାବୁ । କାଗଜପତ୍ରରେ ଗୁମାସ୍ତା ଲେଖେ, 'ବାବୁ ଗୋପାଳଚନ୍ଦ୍ର ମହାପାତ୍ର ।'

ବାବୁ ଗୋପାଳଚନ୍ଦ୍ର ମହାପାତ୍ରେ ସନ୍ଧାନ କରି ବୁଝିଲେ, ଯଶୋର, ମୋତିହାରି, ପାବନା ଅଞ୍ଚଳରୁ ଯେଉଁ ସବୁ ହଳଦୀ, ଧୂଆଁପତ୍ର, ସରକ * ଆସେ, ପ୍ରଥମେ ଚାଷୀଠାରୁ କିଣେ ବୁଲା ବେପାରୀ, ସେ ବିକେ ପାଇକାରକୁ, ପାଇକାର ହାତରୁ କିଣେ ଗୋଦାମ ବାଲା, ଦର୍ଣ୍ଣିଦାର ତା ପାଖରୁ ମାଲ କିଣି ଚାଲାଣ ଦିଏ । କଲିକତାରେ ମାଲ ପହଞ୍ଚିବା ବେଳକୁ ତିନିଟା ହାତରେ ଲାଭ ଲାଗିଯାଏ । ମହାପାତ୍ରେ ଦିନେ ବେଳ ଉଣ୍ଡି ମହାଜନଙ୍କୁ ଜଣାଇଲେ, "ଆଜ୍ଞା ବେପାରର ଲାଭ ବିକା ଜାଗାରେ ନୁହେ, କିଣା ଜାଗାରେ । ଏହି ଯେ ଧୂଆଁ ପତ୍ର, ହଳଦୀ, ସରକ ଆସୁଛି, ମୁଁ ଥରେ ଯାଇ ଠିକଣା ଜାଗାଟା ବୁଝିଆସେଁ ।"

ମହାଜନଙ୍କ ଅନୁମତି ନେଇ ସାନବାବୁ ସଳଖେ ସଳଖେ ଠିକଣା ଜାଗାକୁ ଚାଲିଗଲେ । ମଝିରେ ଆଉ କାହାରିକୁ ନଗା ନ ରଖି ଚାଷମୁଣ୍ଡରେ ଚାଷୀମାନଙ୍କ-ଠାରୁ ସଉଦା କଲେ । ଦୁଇବର୍ଷ ଏହିପରି କାମ ଚାଲିବାରୁ ଦେଖାଗଲା, ପୂର୍ବଠାରୁ ଦୁଇଗୁଣ ଲାଭ ବେଶି । ମହାପାତ୍ରେ ଏବେ ବଲଙ୍କର ଚାକର ନୁହନ୍ତି, ଲାଭରେ ଚାରିପଣୀ ଅଂଶଭାଗୀ ।

ପାଞ୍ଚ ସାତ ବର୍ଷ ଏହିପରି କାମ ଚାଲିଲାଣି—ମହାପାତ୍ରେ ବର୍ତ୍ତମାନ ଲକ୍ଷପତି । ସେ ମନା କରୁଁ କରୁଁ ମହାଜନ ବଲେ ଗ୍ରାମରେ ଦଶ ବାର ହଜାର ଟଙ୍କା ଲଗାଇ ଗୋଟାଏ ବଡ଼ ଦୋମହଲା ଘର ବନାଇ-ଦେଲେ । ଖଣ୍ଡେ ତାଲୁକ ବି କିଣି ଦେଲେଣି । ମହାଜନଙ୍କର ଇଚ୍ଛା, ଗୋପାଳ ଖୁବ୍ ବଡ଼ ଲୋକ ହେଉ । ହେଲେ, ଗୋପାଳର ବଡ଼ଲୋକୀ ଚାଲିଚଳଣି ନାହିଁ, ଦିନ ରାତି କାମରେ ଲାଗିଥିଲେ ଆନନ୍ଦ । ଗଦିର ସବୁ ମାମଲତ ତହବିଲ ଚାବି ମହାପାତ୍ରଙ୍କ ହାତରେ । ବଲେ ଏବେ ଭୁନ ହୋଇ ଗଦିରେ ମାଲ ଗଡ଼ାଉ-ଥାନ୍ତି ।

ବାବୁ ଗୋପାଳଚନ୍ଦ୍ର ମହାପାତ୍ରଙ୍କର ଗୋଟିଏ ବୋଲି ପୁଅ, ନାମ ରାଜୀବଲୋଚନ । ପୁଅଟି ତାର

* ବାଣିଜ୍ୟ ସକାଶେ ଦ୍ରବ୍ୟମାନ ।

ଗଲଣି, ଚଉଦ ପୂରି ପନ୍ଦର ଚାଲିଛି । ଗୋପାଳ ବାବୁ ଗ୍ରାମକୁ ଯାଇଥିଲେ, ଅବଧାନେ ଦେଖା କରି ଆସି କହିଲେ, "ସାନ ବାବୁ ଖୁବ୍ ବୁଦ୍ଧିଆ, ଭାରି ପାଠୁଆ । ଖଡ଼ିପାଠ, ପୋଥିପାଠ ସବୁ ଛିଡ଼ିଲଣି । ଆଉ ତାଙ୍କୁ ପଢ଼ାଇବାକୁ ପାଠ ନାହିଁ ।" ଅସଲ କଥା, ରାଜୀବଟା ଭାରି ଦୁଷ୍ଟ । ଚାଟଶାଳୀରେ ବଡ଼ ଉତ୍ପାତ କରେ, ଅବଧାନଙ୍କ ହାତରେ ବି ଚୋଖଡ଼ି ମୋଖଡ଼ି ଲଗାଇଲଣି । ବଡ଼ଲୋକ ପୁଅ, ଜମିଦାର ପୁଅ ବୋଲି ଅବଧାନେ ଶଙ୍କି ରହିଥାନ୍ତି, କିଛି କହି ପାରନ୍ତି ନାହିଁ । ବାବୁ ପୁଅର ପ୍ରଶଂସା ଶୁଣି ଭାରି ଖୁସି । ଅବଧାନେ ଗୋଟିଏ ଜଥା, ପାଞ୍ଚୋଟି ଟଙ୍କା ପୁରସ୍କାର ପାଇ ଦଣ୍ଡବତଟା କରି ମେଲଣି ନେଲେ । ସାନ୍ତାଣୀ ( ରାଜୀବଙ୍କ ମାତା ) ସାନ୍ତଙ୍କୁ କହିଲେ, "ରାଜୀବ ମୋ ବୋଲ ମାନେ ନାହିଁ, ଦିନଯାକ ଗାଁ ଟୋକାଙ୍କ ସାଙ୍ଗରେ ଦାଣ୍ଡରେ ବୁଲୁଥାଏ । ତାକୁ ସାଙ୍ଗରେ ନେଇ ଯାଅ ।" ରାଜୀବକୁ କଲିକତା ନେଇଯାଇ କାମ ଶିଖାଇବାପାଇଁ ବାବୁଙ୍କର ବି ଇଚ୍ଛା ଥିଲା ।

କଲିକତା ବଡ଼ବାବୁ ମହାଜନ ଗଦି ସାଙ୍ଗରେ ବଡ଼ ବଡ଼ ଇଂରେଜ ସଉଦାଗର ହାଉସମାନଙ୍କର କାରବାର । ମହାପାତ୍ର ବାବୁ କୋଠିର ବଡ଼ ବଡ଼ ସାହେବଙ୍କ ପାଖକୁ ଗଲେ, ଗୋଟାଏ ଦୋଭାଷୀ ଜରିଆରେ କଥା ଚଳେ । ବାବୁ ଇଂରେଜୀ ଜାଣନ୍ତି ନାହିଁ—ସାହେବ ବି ଓଡ଼ିଆ ବୁଝନ୍ତି ନାହିଁ । ବାବୁ ତେର ଥର ବଡ଼ଲେଣି ମଝିରେ ଦୋଭାଷୀ ଖାଇଲେ ମାରିନିଏ । ରାଜୀବ ଯେବେ ଇଂରେଜୀ ପାଠ ପଢ଼ି କାମରେ ଲାଗିବ, କେହି ଠକାଇ ପାରିବ ନାହିଁ । ଗଦର ସରକାର କେଲ୍‌କାଟା ଏଣ୍ଡ୍ରୁ ଏକାଡେମିରେ ରାଜୀବ ବାବୁଙ୍କ ନାମ ଲେଖାଇ ଦେଇ ଆସିଲା । ପଢ଼ା ଚାଲିଛି ତ ଚାଲିଛି । ମାସକୁ ଥରେ ସ୍କୁଲ ଦରମା ଓ କିତାପର ଦାମ ନେବା ବେଳ ବାପା ପୁଅଙ୍କର ଭେଟ । ବାପେ ପାଠ ସଇ ନେବେ କଣ, କିପରି ପଢ଼ୁଛି ପଚାରିବାକୁ ବି ବେଳ ନାହିଁ । ତିନି ଚାରି ବର୍ଷ ବିତି ଗଲାଣି, ମାସକୁ ମାସ ସ୍କୁଲ ଦରମା ଆଉ କିତାପର ଦାମ ପଚିଶ ଟଙ୍କାରୁ ବଳିଲାଣି । ଦିନେ ବାପେ ପଚାରିଲେ, "କରେ ରାଜୀବ, ଏବେ ଏତେ ଖରଚ କାହିଁ ?" ରାଜୀବ ବାବୁ ଜବାବ ଦେଲେ, "ବାପା, ମୁଁ କ୍ଲାସ ତେର ଉପରକୁ ଉଠି ଗଲିଣି, ସେଥିପାଇଁ ଏତେ ଖରଚ ।" ବାପେ କହିଲେ, "ତେବେ ଆଉ ପଢ଼ ନା, ଆ କାମରେ ଲାଗ ।" ରାଜୀବ ବାବୁ କହିଲେ, "ନା ବାପା, ପାସ୍ ନ କଲେ ଇଂରାଜୀ ପାଠ ହୁଏ ନାହିଁ ।" ମହାପାତ୍ରେ ବି ଶୁଣିଥିଲେ, ଇଂରାଜୀରେ ଗୋଟାଏ ପାସ ହୁଏ । କହିଲେ, "ହଁ ରେ, ସେ କଥା ମତେ ଜଣା ଅଛି, ତୁ ବେଶି ବେଶି ପାସ୍ କରି ପକା, ଯେତେ ଟଙ୍କା ଲାଗିବ ଲାଗୁ ।" ବାପା ପୁଅ ଦୁହିଙ୍କ ମନ ଖୁସି ।

ଚାରି ପାଞ୍ଚ ବର୍ଷ ମଧ୍ୟରେ ବାବୁଙ୍କ ଇଂରାଜୀ ପଢ଼ା କେତେଦୂର ହେଲା, ସେ କଥା ଜଣା ନାହିଁ; ମାତ୍ର ତେର ତେର ସଭା ସମିତିରେ ଉପସ୍ଥିତି, ଥିଏଟର ଆଉ ସୁସ୍ଥାନ କୁସ୍ଥାନ-ଭ୍ରମଣ ବିଷୟରେ ବାବୁ ପକ୍କା ହୋଇଗଲେଣି । ସ୍ୱଦେଶର ଉନ୍ନତି ସାଧନ ନିମନ୍ତେ କେତେଜଣ ବନ୍ଧୁ ମିଳି ଏକାବେଳକେ ଯୋଡ଼ିଏ ସମିତି ସ୍ଥାପନ କଲେ । ମଙ୍ଗଳବାର ଦିନ 'କୁସଂସ୍କାର-ବିମର୍ଦ୍ଦିନୀ' ଶନିବାର 'ନାରୀସ୍ୱାଧୀନତା-ବିବର୍ଦ୍ଧିନୀ' ସଭାର ଅଧିବେଶନ ହୁଏ । ଦୁଇ ସଭାର ସମ୍ପାଦକ ନିଜେ ବାବୁ । ସଭାର ସମସ୍ତ ବ୍ୟୟ ବହନ କରିବା ତ ସମ୍ପାଦକ ପକ୍ଷରେ ଉଚିତ, ଏଇଟା ହେଲା କଲିକତାର ନିୟମ । ସଭାରେ ତେର ତେର ବକ୍ତୃତା ହୁଏ । ସମ୍ପାଦକ ତେର ଥର ବକ୍ତୃତା କଲେଣି । ତାଙ୍କ ବକ୍ତୃତାରେ ଯେଉଁଦିନ ବେଶି ହାତତାଳି ପଡ଼େ, ସେଦିନ ହୋଟେଲବାଲାର ବେଶ ଆୟ ।

ଆକସ୍ମିକ ଗୋଟାଏ ସନ୍ନିପାତ ବେମାରୀ ଆସିଲା, ଦିନ ତିନିଟା ଭିତରେ ସଜ୍ଞାନରେ ବାବୁ ଗୋପାଳଚନ୍ଦ୍ର

ମହାପାତ୍ରଙ୍କ ଗଙ୍ଗାଲାଭ । ପିତାର ମୃତ୍ୟୁରେ ଡକା ପକାଇ କାନ୍ଦିବା ଗୋଟାଏ କୁସଂସ୍କାର । ଶୋକ ପ୍ରକାଶ ଲାଗି ସଭାରେ ଡନନ୍ଦନ ବକ୍ତୃତା ହୋଇଗଲାଣି । ବାବୁ ଖଣ୍ଡେ କଳା କନା ହାତରେ ବାନ୍ଧିଲେ । ସ୍ଥିର ହେଲା, ବ୍ରାହ୍ମଣ ଡାକି ଶ୍ରାଦ୍ଧ କରିବାଟା କୁସଂସ୍କାର, କେବଳ ସଭାଗୃହରେ ଭୋଜି ଆଉ ଦରିଦ୍ରମାନଙ୍କୁ ଅର୍ଥ ବିତରଣ, ଡାକ୍ତରଖାନାମାନଙ୍କୁ ଚନ୍ଦା ଦିଆଯିବ । ମାତ୍ର ମହାଜନ ବଳ ବାବୁଙ୍କ ଉପରେ ଏ ସମସ୍ତ ପ୍ରସ୍ତାବ କାର୍ଯ୍ୟରେ ପରିଣତ ହୋଇପାରିଲା ନାହିଁ ।

ମହାଜନ ବଳ ବାବୁ ପିଲାଟିକୁ ଯତ୍ନରେ ପାଖରେ ରଖିଲେ । ଇଚ୍ଛା, ପିତୃକାର୍ଯ୍ୟରେ ଉତ୍ତରାଧିକାରୀ ହେଉ । ମାତ୍ର ସେ ଇଂରେଜୀ ପାଠ ପଢ଼ିଛି ସତ, ବେପାର ବଣିଜ କାମ କିଛି ଶିଖି ନାହିଁ । ଆଶା, କାମରେ ବାପଠାରୁ ବଳି ପଡ଼ିବ, ଗୋପାଳ ଯେ ଅକ୍ଷର ଜାଣି ନ ଥିଲା । ତେର ବର୍ଷଯାଏ ସ୍କୁଲପାଠ ପଢ଼ିଛି । ମହାଜନ ପାଖରେ ବସାଇ କାମ ଶିଖାଇବାକୁ ଲାଗିଲେ, ମଧ୍ୟ ଶିଖାଇବାପାଇଁ କର୍ମଚାରୀମାନଙ୍କୁ ଉପଦେଶ ଦେଲେ । ଏଣେ ରାଜୀବବାବୁର ଗଦିରେ ବସିବାକୁ ମନ ନାହିଁ । ମହାଜନେ ଧରାଧରି କରି ବସାଇଲେ । କାମରେ ମନ ନାହିଁ, କଣଟାଏ ବସି ଭାବୁଥାଏ, ମଙ୍ଗଳବାର ଶନିବାର ରାତିରେ କୁଆଡ଼େ ଚାଲିଯାଏ । ବଳ ବାବୁ ମନରେ କଲେ, ହାତରେ ପାଇଟି ପଡ଼ିଲେ ବା ବାଟକୁ ଆସିବ । ଯେ କାମ ଦେଲେ, ଲାଭ ଥାଉ ମୂଳରୁ ତ୍ରୁଟି କରି ବସେ ।

ଲାଗ ଲାଗ ଯୋଡ଼ାଏ ସଭାରେ ସମ୍ପାଦକ ଅନୁପସ୍ଥିତ ହେବାରୁ ସଭ୍ୟମାନେ ବଡ଼ ଖପା ହୋଇ ଗଲେଣି । ଅନୁପସ୍ଥିତିର କାରଣ ସନ୍ଧାନ କରି ଦିନେ ଜଣେ ସଭ୍ୟ ସ୍ୱାଧୀନତା ବିଷୟରେ ଭାରି ଗୋଟାଏ ବକ୍ତୃତା କଲେ । ସେଥିର ମର୍ମ—'ଶିକ୍ଷିତ ଜମିଦାର ସନ୍ତାନ ପକ୍ଷରେ ପର ଅଧୀନରେ ଚାକିରି କରିବା ଉଚିତ ନୁହେଁ ।' ବକ୍ତୃତା ସଙ୍ଗେ ସଙ୍ଗେ ଗୋଟିଏ କବିତା ପାଠ କରିଥିଲେ ।

'ଯାହାର ଅଛି ଧନ ଜ୍ଞାନ ଅଧିକ,
ଚାକିରି କଲେ ତା ଜୀବନେ ଧିକ ଧିକ ।'

ସଭାରେ ଖୁବ୍ ହାତତାଳି ପଡ଼ିଲା । ରାଜୀବ ବାବୁଙ୍କ ମନରେ କଥାଟା ଲାଗିଗଲା ।

ତହିଁ ଆରଦିନ ଦିନଯାକ ରାଜୀବ ବାବୁଙ୍କୁ ତେର ଖୋଜତଲାସ୍ ହେଲା, ଭେଟ ମିଳିଲା ନାହିଁ । ମହାଜନ ଆଗରୁ ଭାରି ଖପା ହୋଇଥିଲେ, କେବଳ ଗୋପାଳକୁ ମନରେ କରି କିଛି କହିପାରୁ ନ ଥିଲେ । ସଞ୍ଜବେଳେ ଭେଟ ପାଇବାରୁ ତାକୁ କାରବାରରୁ ଜବାବ ଦେଲେ । ରାଜୀବ ବାବୁ ତ ତାହି ଲୋଡ଼ୁଥିଲେ । ଇଚ୍ଛା ଥିଲା, ଅନ୍ୟ ଜାଗାରେ ବସା କରି ସଭା ସମିତି ଚଳାଇବେ, ମାତ୍ର ପାରିଲେ ନାହିଁ । ମହାଜନ ବଳ ବାବୁ ଧରାଧରି କରି ଗ୍ରାମକୁ ପଠାଇ ଦେଲେ ।

ପାଞ୍ଜିଆ ଗୁମାସ୍ତା ପ୍ରଜାପାଟକଙ୍କ ମନ ଭାରି ଖୁସି । ନୂଆ ଜମିଦାରଙ୍କୁ ଅଧବାଟରୁ ପାଛୋଟି ନେଲେ । ଶୁଣିଥିଲେ, ନୂଆ ଜମିଦାର ସରକାରୀ ସ୍କୁଲରେ ତେର ପାଠ ପଢ଼ି ତାଲିମ ହୋଇଛନ୍ତି । ଭେଟିବାପାଇଁ ତହିଁ ଆରଦିନ ସକାଳେ ଗୋଟିଏ ସଭା ହେବାର ସ୍ଥିର ହେଲା । ସଭା ନାମ ଶୁଣି ଜମିଦାରଙ୍କ ମନ ଭାରି ଖୁସି । ଠିକ୍ ନିରୂପିତ ବେଳରେ ପୁରୁଣା ବୁଢ଼ା ପାଞ୍ଜିଆ ଗଙ୍ଗାଧର ମହାନ୍ତି ଜମିଦାରଙ୍କୁ ଗଦିରେ ବସାଇ ଦେଲେ । ତାଲୁକ କିଣା ଦିନଠାରୁ ମହାନ୍ତି ଏଠେ ପାଞ୍ଜିଆ କାମରେ ଅଛନ୍ତି । ଲୋକଟି ବଡ଼ ବିଶ୍ୱାସୀ, କାମଦାର ଲୋକ, ସାନ୍ତାଣୀଙ୍କ ଡାହାଣ ହାତ । ତାଙ୍କ ଯତ୍ନରେ ଜମିଦାରୀ ଆୟ ଖୁବ୍ ବଢ଼ିଛି । ଜମିଦାର ତ ସବୁଦିନେ କଲିକତାରେ । ଏହାଙ୍କୁ ଧରି ସାନ୍ତାଣୀ ସବୁ ମାମଲତ ବୁଝାସୁଝା କରୁଥିଲେ ।

ତାଲୁକ ମଧ୍ୟରେ ଶାମପୁର ଗ୍ରାମଟି ସବୁଠାରୁ ବଡ଼, ଥିଲାଲୋକ ତେର । ଗୋପାଳ ବାବୁ ଗ୍ରାମରୁ ତେର ଲୋକଙ୍କୁ କଲିକତାରେ ନାନା କାମରେ ଲଗାଇ

ଦେଇ ରୋଜଗାର କରାଇ ଦେଇଥିଲେ । ବାବୁଙ୍କ ସାହାଯ୍ୟ ଓ ଯତ୍ନରେ ଢେର ପିଲା କଟକରୁ ଶିକ୍ଷିତ ହୋଇ ଆସିଛନ୍ତି । ବଡ଼ ବଡ଼ ଚାଷୀ, ସରକାରୀ ଚାକରିଆ, ମହାଜନ ଲୋକେ ଗୁଣା ଅଧିକ ଚାଳଣ ପଞ୍ଚାଶ ସରକ ବାହାର ପାରିବେ । ନୂଆ ଜମିଦାର ବାବୁ ଖୋଜ ବସିଲେ ଗ୍ରାମ ମଧ୍ୟରେ ଶିକ୍ଷିତ କୁସଂସ୍କାର-ବର୍ଜିତ ଲୋକ ଅଛନ୍ତି କି ନାହିଁ । ପ୍ରାଇମେରୀ, ଅପର ପ୍ରାଇମେରୀ ପାସ୍, ଛାତ୍ରବୃତ୍ତି ଫେଲ ଢେର ଶିକ୍ଷିତ ସ୍ୱାଧୀନମନା ଲୋକ ଗ୍ରାମରେ ବୁଲୁଥିଲେ । ଜମିଦାରଙ୍କ ଆହ୍ୱାନରେ ତୁରନ୍ତ ହାଜର ହୋଇଗଲେ । ଜମିଦାରୀ କଚେରି ଘରେ ସନ୍ଧ୍ୟା ସମୟରେ ପ୍ରଥମ ସଭା ବସିଲା । ନିଜେ ଜମିଦାର ବାବୁ ଢେର ବକ୍ତୃତା କଲେ । ସେଥିର ସାରମର୍ମ, 'ହେ ସଭ୍ୟ ମହୋଦୟଗଣ ! ଏ ଦେଶର ଦୁଃଖ ଦୁର୍ଦ୍ଦଶାର କାରଣ ଲୋଡ଼ିଲେ ଦିନ ଆଲୁଅ ପରି ଜଣାଯିବ । ମୂର୍ଖତା, କୁସଂସ୍କାର, ଅବଳା, ଭଗିନୀମାନଙ୍କୁ ଘର ଭିତରେ ଲୁଚାଇ ରଖିବା ସମସ୍ତର ମୂଳ । ଏ ସମସ୍ତ ଦୂର କରିବା ସର୍ବାଗ୍ରେ ଉଚିତ ।' ଆଉ ସମସ୍ତେ କିଛି ନ ବୁଝି ପାରି ମୁହଁ ଚାହାଁଚାହିଁ ହେଲେ । ବାବୁ ହରିବୋଲ ପଟ୍ଟନାୟକ ଚଞ୍ଚଳ ଛିଡ଼ା ହୋଇ ପଡ଼ି କହିଲେ, "ସୁଶିକ୍ଷିତ ଜମିଦାର ମହୋଦୟଙ୍କ ପ୍ରସ୍ତାବ ଦୃଷ୍ଟାନ୍ତ କରୁଛି । ଉଚିତ, ଖୁବ୍ ଉଚିତ, ନିଶ୍ଚୟ ଉଚିତ, ଶୀଘ୍ର ଉଚିତ ।" ଜମିଦାର ବାବୁ ଭାରି ଖୁସି ହୋଇ ବାବୁଙ୍କର ପରିଚୟ ପଚାରିଲେ । ହରିବୋଲ ବାବୁଙ୍କ ଘର ଏହି ଗ୍ରାମରେ, ଇଂରାଜୀ ମାଇନର ପାସ୍ । ବିଦୁପୁର ପୋଷ୍ଟ ଅଫିସରେ ସବ୍ ପୋଷ୍ଟମାଷ୍ଟର ଥିଲେ, ଅନ୍ୟାନ୍ୟ କର୍ମଚାରୀ ଅର୍ଥାତ୍ ପିଅନମାନେ ବଡ଼ ଖରାପ ଓ ଅଯୋଗ୍ୟ ଲୋକ ଥିଲେ । ବାବୁ ସେମାନଙ୍କୁ ଶାସନ କରିବାରୁ ସେମାନେ ସରକାରୀ ତହବିଲ ଟ ୧୭୨୪୮ ଚୋରି କରି ବାବୁଙ୍କ ନାମରେ ଗଡ଼ାଇ ଦେଲେ । ମେଜେଷ୍ଟର ସାହେବ ତାଙ୍କୁ ଛ ମାସ କଟକରେ ଅଟକାଇ ରଖିଲେ ସତ୍ୟ; ମାତ୍ର ପଛେ ଅସଲ ହାଲ ଜାଣିପାରି ନିର୍ଦ୍ଦୋଷ ବୋଲି ଛାଡ଼ ଦେଇଥିଲେ । ବାବୁ ବିରକ୍ତ ହୋଇ ପର ଅଧୀନରେ ଚାକରି ଛାଡ଼ି ଦେଇଛନ୍ତି ।

ଜମିଦାର ବାବୁ ଭାରି ଖୁସି । ଗ୍ରାମ ମଧ୍ୟରେ ତାଙ୍କୁ ଯୋଗ୍ୟ ଲୋକ ବୋଲି ସ୍ଥିର କଲେ । ଆପାତତଃ ଜ୍ଞାନବର୍ଦ୍ଧିନୀ ଓ ସ୍ତ୍ରୀସ୍ୱାଧୀନତାବର୍ଦ୍ଧିନୀ ଯୋଡ଼ାଏ ସଭା ବସିବାର ସ୍ଥିର ହେଲା । ଦୁଇ ସଭାର ସମ୍ପାଦକ ହରିବୋଲ ବାବୁ । ପ୍ରତିଦିନ ନିୟମିତରୂପେ ସଭାକାର୍ଯ୍ୟ ଚାଲିଲା । ସଭାକାର୍ଯ୍ୟ ଶେଷ ହେବାକୁ ଅଧିକ ରାତି ହୋଇଯାଏ । ସଭ୍ୟମାନେ ଘରକୁ ଯାଇ ପାରନ୍ତି ନାହିଁ, କଚେରି ଘରେ ସେମାନଙ୍କ ଭୋଜନ ପାନର ବନ୍ଦୋବସ୍ତ ହୁଏ । ଗୋଟିଏ ବାଳିକା ବିଦ୍ୟାଳୟ ଓ ଜନାନା ସ୍କୁଲ ବସିବାର ବନ୍ଦୋବସ୍ତ ହେଲା ।

ରୋଜ ରୋଜ ଟଙ୍କା ଦାଖଲ କରି କରି ବୁଢ଼ା ପଟ୍ଟନାୟକ ହୟରାଣ । ଟିକିଏ ବିଳମ୍ବ ବା ମୋଡ଼ ମୋଡ଼ ହେଲେ ବାବୁ ଭାରି ଖପା । ଟଙ୍କା ଗୁଡ଼ାକ କୁଆଡ଼େ ଯାଏ, କି କାରବାର ହୁଏ, ଇଦମତ୍ଥ ନାହିଁ । ଦିନେ ସନ୍ଧ୍ୟାବେଳେ ମା ସାନ୍ତାଣୀ ଓ ପଟ୍ଟନାୟକଙ୍କ ମଧ୍ୟରେ କଥା ହେଲା ।

ପଟ୍ଟନାୟକେ—ଆଜ୍ଞା, ସବୁ ବୁଡ଼ ବସିଲା !

ମା ସାନ୍ତାଣୀ—ରହିବ ପରା, ନିଜେ ମୂର୍ଖ, କିଛି ବୁଝିବାର ନାହିଁ, ମୁଲକର ଚୋର ଗୁଣ୍ଡା, ଟିକିଏ ଧର୍ମଭାବ ଭଲା ଥାନ୍ତା ! ଏହି ଘରେ ପୁଣି ମଦ ମାଂସ ! ରାଧେକୃଷ୍ଣ ରାଧେକୃଷ୍ଣ ! ପଟ୍ଟନାୟକେ ତୁମେ ଅଲଗା ହୋଇଯାଅ ।

ପଟ୍ଟନାୟକେ ନିଶ୍ୱାସଟାଏ ପକାଇଲେ ।

ପଟ୍ଟନାୟକଙ୍କୁ କିଛି କହିବାକୁ ହେଲା ନାହିଁ । ରାତି ସଭାରେ ସ୍ଥିର ହୋଇଗଲା, 'ବୁଢ଼ାଟା ଅଯୋଗ୍ୟ, କୁସଂସ୍କାରୀ, ସଭାର ବିଘ୍ନକାରୀ—ସେ ବରଖାସ୍ତ । ହରିବୋଲ ବାବୁ ଭାରି ଯୋଗ୍ୟ ଲୋକ, ସଭା ଏବଂ

ଜମିଦାରୀ ଦୁଇ କାର୍ଯ୍ୟ ଚୁଲେଇ ପାରିବେ ।' ଏଣିକ ସୁନ୍ଦର କାର୍ଯ୍ୟ ଚଳିଲା, ଟଙ୍କାର ଅଭାବ ନାହିଁ, ବାଧା ଦେବାକୁ କେହି ନାହିଁ । ଅମଲା ପଧାନମାନଙ୍କ ପ୍ରତି ସାଫ ହୁକୁମ, ଟଙ୍କା ଦାଖଲ । ପ୍ରଥମ ପ୍ରଥମ ସେମାନଙ୍କୁ ଅଡୁଆ ଲାଗୁଥିଲା, ଏଣିକ ସାଫ ବୁଝିଲେଣି । ଦଶ ଖମାର ଧାନ,ଚୁ ସାତଟା ଗୋରୁ ମଇଁଷି ପଲ, ପଞ୍ଚବାଟୀ ହାତଗୃଷ, ସେଣିକି ଅନାଇଲେ ଟଙ୍କା; ରୋଜଗାରର ଦାଁଓ କିଏ ଛାଡ଼େ ?

ବାବୁ ଗୋପାଳଚନ୍ଦ୍ର ମହାପାତ୍ରେ ଉଆସ ଆଗରେ ଗୋଟିଏ ପକା ମନ୍ଦିର ତିଆରି କରାଇ ରାଧାକୃଷ୍ଣ ଯୁଗଳ ମୂର୍ତ୍ତି ପ୍ରତିଷ୍ଠା କରାଇଥିଲେ । ମା ସାନ୍ତାଣୀ ବର୍ତ୍ତମାନ ଘରୁ ବାହାରି ଯାଇ ସେହି ମନ୍ଦିରଟିରେ ଅଛନ୍ତି, ପ୍ରତିଦିନ ସନ୍ଧ୍ୟା ସମୟରେ ବକଟେ ଠାକୁର ପ୍ରସାଦ ହବିଷ୍ୟାନ୍ନ । ବୁଢ଼ା ଛାମୁକରଣ ବି ସେହିଠାରେ ଥାନ୍ତି । ପ୍ରତିଦିନ ସନ୍ଧ୍ୟାଠାରୁ ଅଧରାତିଯାଏଁ ଭାଗବତ ପାଠ ହୁଏ । ମା ସାନ୍ତାଣୀ ଦିନସାକ ଠାକୁର ଆଗରେ ଆଖି ବୁଜି ବସି ମାଳ ଗଡ଼ାଉଥାନ୍ତି । ଦିନେ ପଟ୍ଟନାୟକେ ସାନ୍ତାଣୀଙ୍କୁ କହିଲେ, "ଆଜ୍ଞା, ଶୁଣିଛନ୍ତି, ବାବୁଙ୍କ ମଙ୍ଗଳକୃତ୍ୟ କରିବାର ସମ୍ଭାରେ ସ୍ଥିର ହେଲା । ମୁଁ କହୁଛି, ହେଉ, ବୋହୂ ସାନ୍ତାଣୀ ଆସିଲେ ଅବା ଘରକରଣାଟା ସମ୍ଭଳା-ସମ୍ଭଳି କରିବେ ।" ମା ସାନ୍ତାଣୀ ଆଁ ଟା କରି ପଟ୍ଟନାୟକ ମୁହଁକୁ ବେଢ଼ଏଯାଏ ଚାହିଁଲେ, ତହିଁ ଉତ୍ତାରେ ପଚାରିଲେ, "—ଆ—କନ୍ୟା, ?" ପଟ୍ଟନାୟକେ କହିଲେ, "ଆଜ୍ଞା, ମୁଁ ନିଜେ ସେ କଥା ବୁଝିବାକୁ ଯାଇଥିଲି, ବାବୁ ଜବାବ ଦେଲେ, ଦେଶୀ କନ୍ୟାଗୁଡ଼ିକ ଅଶିକ୍ଷିତା, କୁସଂସ୍କାର ଅସଭ୍ୟତାରେ ବୁଡ଼ିଛନ୍ତି, ଲୁଗା ଖଣ୍ଡେ ପିନ୍ଧି ଜାଣନ୍ତି ନାହିଁ, ଅଧାଲଙ୍ଗଳା ହୋଇଥାନ୍ତି, ମୁହଁ ଢାଙ୍କି ମୂଷା ପରି ଗାତରେ ଲୁଚିଥାନ୍ତି ! କଲିକତାରେ ପରୀ କନ୍ୟା ଠିକ୍ ହେଲାଣି ।" ମା ସାନ୍ତାଣୀ ପାଟି କରି 'ରାଧେକୃଷ୍ଣ, ରାଧେକୃଷ୍ଣ' କହି ତୁନି ହେଲେ । ହାତ ଯୋଡ଼ି ଠାକୁରଙ୍କୁ ଅନାଇଥାନ୍ତି, ଦୁଇ ଆଖିରୁ ଯୋଡ଼ାଏ ଧାର ବହି ଯାଉଛି । ପଟ୍ଟନାୟକେ ପୁନର୍ବାର କହିଲେ, "କଲିକତାକୁ ବରଯାତ୍ରୀ କିଏ କିଏ ଯିବେ, କି କି ବେଶନ କେତେ ତିଆରି ହେବ, ପଚାରିଥିଲି । ବାବୁ ଠୋ ଠୋ ହସି ଉଠି କହିଲେ, 'ଅସଭ୍ୟତା, ଅସଭ୍ୟତା, କୁସଂସ୍କାର ! ତୁମେ ତ ଇଂରାଜୀ ଜାଣ ନା, ଦେଖି ବି ନାହିଁ, ସଭ୍ୟ ବିବାହ କଥା କିପରି ଜାଣିବ ? ବେଶନ ଆଉ ଆଉ ଖରଚ କଥା ଯେ କହିଲ, ତୁମ୍ଭମାନଙ୍କ ପରି ଅଶିକ୍ଷିତ ଲୋକେ କେତେ ଜମିଦାର ଘର ବୁଡ଼ାଇଲେଣି । ବିବାହର ବିବାହ-ବ୍ୟୟ-ସଂକ୍ଷେପଣୀ ସଭାକୁ ଇଂରାଜୀ ଅଫିସିଏଲ ଚିଠି ଯାଇଛି, ସେଠାରୁ ଯେପରି ବ୍ୟବସ୍ଥା ଆସିବ, ସେହିପରି ବିଭା ହେବ ।' ମୁଁ ଆଉ କିଛି କହିଲି ନାହିଁ, ସବୁବେଳେ ମିଜାଜଟା ଚଢ଼ି ରହୁଛି, କାଚ କୁମ୍ଭାଗୁଡ଼ାକ ଓଳି ତଳେ ଗଣ୍ଡା ଗଣ୍ଡା ଗଡ଼ୁଛି ।"

ସଭାର ସଭ୍ୟମାନଙ୍କ ସାଙ୍ଗରେ ଧରି ବାବୁ କଲିକତା ଚାଲି ଗଲେଣି । କଲିକତା ଗୋଟିଏ ବିଚିତ୍ର ଜାଗା । ଟଙ୍କା କାଢ଼, ମା ବାପ ଛଡ଼ା ସବୁ ମିଳିବ । ଖିଦିରପୁର ଗାଡ଼ନରିଚରେ ଗୋଟାଏ ବଡ଼ ଦୋତଲା ଘରେ ଝାଡ଼ ଲଣ୍ଠନ ଦେବାଲଗିରି ଶତହଖଣ୍ଡ ଦିନ ଆଲୁଅ ପରି ଜଳୁଛି, ତଳେ ଗାଲିଚା, ଶତରଞ୍ଜି ବିଛଣା । ଦ୍ୱାରରେ ଦୁଇ ତରଫା ଖେମଟା ନାଚ । ଦୀୟତାଂ—ପୀୟତାଂ ଲାଗିଛି ! ଆଖପାଖ ବଜାର ଲୋକେ ଜାଣିଲେ, ଓଡ଼ିଶାର ଗୋଟିଏ ରଜାପୁଅର ବିଭାଘର ।

କନ୍ୟାଟିର ନାମ ନୟନତାରା-ଦୁଃଖପାସୋରା । ବାବୁ ଶୁଣିଥିଲେ, ମଧ୍ୟ ପ୍ରତ୍ୟକ୍ଷ ଦେଖିଲେ—କନ୍ୟା ସୁନ୍ଦରୀ, ସଭ୍ୟା, ସ୍ୱାଧୀନା, ଶିକ୍ଷିତା । ଜମିଦାର ବାବୁ ବିମୋହିତ ହୋଇ ଗଲେଣି । ମନେ କଲେ, ସ୍ୱର୍ଗରୁ ଦେବକନ୍ୟାଟିଏ ଓହ୍ଲାଇ ଆସିଛି । ଦିନ ରାତି ଗିଲାସ ହାତରୁ ଛାଡ଼ ନାହିଁ । ଶୁଭଦିନ ହେଲା ବର କନ୍ୟା

ମଧ୍ୟରେ ପୂର୍ବାଳାପ ଅର୍ଥାତ୍ Courtship ଚାଲିଛି । ବଗି ଚଢ଼ି କେତେ ଜାଗା ବୁଲି ଆସିଲେଣି । କନ୍ୟା ବାପ ମା'ଙ୍କୁ ଏଇଟା ଭଲ ଲାଗୁନାହିଁ । କାଳେ ଜମି-ଦାର ପୁଅଟା ହାତରୁ ଖସିଯିବ, ସେହି ଡରରେ କିଛି କହି ପାରୁନାହାନ୍ତି । କନ୍ୟାର ଜାତି କୁଳ ଘର ବିଷୟ କେହି ସନ୍ଧାନ କରି କିଛି ଠିକଣା ପାଇଲେ ନାହିଁ ।

ଗଳ୍ପ ଲେଖକମାନଙ୍କୁ ସମସ୍ତ ବିଷୟ ସନ୍ଧାନ କରି କେବଳ ସତ୍ୟ କଥାଗୁଡ଼ିକ ଲେଖିବାକୁ ହୁଏ । ଆମ୍ଭେ-ମାନେ ବହୁତ ଅନୁସନ୍ଧାନ ଯୋଗରେ ଏହିପରି ପରିଚୟ ପାଇଅଛୁଁ—ଆସାମ ଚା ବଗିଚା ମେନେଜର ସାହେବ ଗୋଟାଏ କୁଲି ଟୋକାକୁ ବବୁର୍ଚି କାମରେ ବାହାଲ କରିଥିଲେ, ତା ନାମ ମହା ମଲିକ । ସେ ବଢ଼ି ବଢ଼ି ପଦୋନ୍ନତିରେ ହେଲା ଖାନସମା । ସେହି ବଗିଚାରେ ୩୦।୪୦ ବର୍ଷ ହେଲା ସାହେବମାନଙ୍କ ପାଖରେ ଅଛି । ଗ୍ରାମ ଘର ଜାତି କୁଳ କିଛି ଜଣା-ନାହିଁ—କୁଆଡ଼େ ବା ଯିବ ? ସେହିଠାରେ ଗୋଟିଏ କୁଲିଆଣୀକୁ ବାହା ହେଲା । ବାହା ହେଲା ହଁ, ଢେର ଦିନଯାଏ ସନ୍ତାନ ମୁଖ ଦେଖିଲା ନାହିଁ । ତ୍ରିନାଥ-ମେଳା, ସୁକୁଟ୍ନପୂଜା, ଗ୍ରାମଦେବତୀ ମାନସିକ, ଦୁଇ-ଜଣଯାକ ଢେର ଢେର ଧର୍ମ କାର୍ଯ୍ୟ କଲେ । ଦରବୁଢ଼ା ବୟସରେ ଗୋଟିଏ କନ୍ୟା ଜାତ ହେଲା, ବୁଢ଼ାବୁଢ଼ୀ ଭାରି ଖୁସି । ମା ଝିଅର ନାମ ଦେଲେ, ନୟନତାରା—ବାପ ଡାକିଲେ ଦୁଃଖପାସୋରା—ଶେଷରେ ନାମ ହେଲା ନୟନତାରା-ଦୁଃଖପାସୋରା । କନ୍ୟାଟି ଦିନକୁ ଦିନ ବଢ଼ିଲା । ଚା ବଗିଚା ପାଖରେ ଗୋଟିଏ ବ୍ରିଟିଶ୍ ବ୍ୟାପ୍‌ଟିଷ୍ଟ ଅର୍ଫେନ ବାଳିକା ସ୍କୁଲ ଥିଲା । ମିସ୍ ଡଗ୍‌ଲସ ମିଷ୍ଟ୍ରେସ୍ । ମା ବାପ ଦିହେଁ ଶ୍ରଦ୍ଧା, ଭାରି ଖୁସିରେ କନ୍ୟାଟିକୁ ମୋଜା ଜୋତା ସେମିଜ୍ ଜାକେଟ୍ ପିନ୍ଧାଇ ଦେଇ ସ୍କୁଲ ଛାଡ଼ିଲେ । କନ୍ୟାଟି ବଢ଼ି ବଢ଼ି ପାଠ ପଢ଼ି ପଢ଼ି ତେର ବା ଚଉଦ ବର୍ଷ ହେଲାଣି । କନ୍ୟାଟି ସ୍କୁଲରୁ ଆସି ମା ବାପ ପାଖରେ ଢେର ଇଂରାଜୀ କଥା କହେ, ମୋଜା ବୁଣା ଦେଖାଏ, ଗୀତ ଗାଏ, ନାଚେ । ଖୁବ୍ ସ୍ୱାଧୀନା । ପୁରୁଷଗୁଡ଼ାଙ୍କୁ ଖାତର କରେ ନାହିଁ । ଏଣେ ମା ବାପ ମୁଣ୍ଡରେ ଉକୁଣି କାମୁଡ଼ିଲାଣି, କମିତି ବାହା ଦେବେ । ଛୁଟି ନେଇ କଲିକତା ଆସିଲେ, ଢେର ଖୋଜାଖୋଜି କଲେ; ମାତ୍ର ବାପ ମାର ଜାତି କୁଳ, ଦେଶର ପତ୍ତା ନ ଲାଗିବାରୁ ବର ଯୁଟିଲା ନାହିଁ । ପ୍ରଜାପତି ଘଟଣାକ୍ରମେ, ଜଣେ ଦଲାଲ ଠିକଣା ଲଗାଇ ଦେଲା । ସେହି ଦଲାଲ ବାବୁଙ୍କୁ ଜଣାଇଲା, "ଆପଣ ଜମିଦାର, କଲିକତା ସହରରେ ଭାରି ନାମ ଡାକ । ସେହିପରି ମର୍ଯ୍ୟାଦାରେ ବିଭାଘର ହେବ । ବାବୁ ଝିଙ୍କି ଝିଙ୍କି କହିଲେ, "ଅବଶ୍ୟ, ଅବଶ୍ୟ, ନିଶ୍ଚୟ ।" ମେନେଜର ବାବୁ କହିଲେ, "ଟଙ୍କା ନାହିଁ ଯେ ।" ଦଲାଲ କହିଲା, "ଏ କଣ ଗୋଟାଏ କଥା ? ବାବୁଙ୍କର ପୁଣି ଟଙ୍କାର ଅଭାବ ? ବାବୁ ଆଜ୍ଞା କରନ୍ତୁ, ଏଇଲାଗେ ଦଶ ହଜାର ଟଙ୍କା ଆଣି ଦେବ ।" ଟଙ୍କା ନାମ ଶୁଣି ବାବୁଙ୍କର ଟିକିଏ ହୋସ୍ ହେଲା, ଶୁଣି ମନ ଖୁସି, ସଳଖି ବସିଲେ । କଲିକତାରେ ମହାଜନ ଅଭାବ କଣ ? ଖୁବ୍ କାଏଦା କଟକଣାରେ ଜମିଦାରୀ ଲେଖି ନେଇ ଦଶ ହଜାର ଟଙ୍କା ଦେବାକୁ କହିଲା । ଦଲାଲ ରେଜେଷ୍ଟ୍ରୀ କରିବାକୁ ତର ସହୁ ନାହିଁ, ଜଲଦି ଟଙ୍କା ଆଣ । କଲିକତାରେ ଅନେକ ବାବୁ ଅର୍ଥାତ୍ ପୂର୍ବ ସହରର ସଭ୍ୟମାନେ, ଆଉ ଖିଦିରପୁର ବଜାରର ଛୁଟ-କୁରିଆ ବଢ଼ିଆ ସମସ୍ତ ଦୋକାନୀ ନିମନ୍ତ୍ରିତ ହୋଇ-ଗଲେ । ନାନାପ୍ରକାର ମିଷ୍ଟାନ୍ନ, ନାନାପ୍ରକାର ପେୟ, ଆସନ, ଦାନ୍ତଖୁଣ୍ଟା ପର୍ଯ୍ୟନ୍ତ ଧରି ଠିକାଦାର ହାଜର । ତିନି ଦିନଯାଏ ନାଚ ତାମସା ପିଆର ଖୁବ୍ ଧୂମ ଲାଗିଛି ।

କରଜ ଦଶ ହଜାର ଟଙ୍କାରୁ କାହିଁରେ କେତେ ଟଙ୍କା ଖରଚ ହେଲା, ଆମ୍ଭେମାନେ ସେଥିର ହିସାବ ଦେଇ ପାରିବୁ ନାହିଁ, କାରଣ ସେଥିର କିଛି ଲେଖା-

ଲେଖି ନାହିଁ । ମେନେଜର ହରିବୋଲ ବାବୁଙ୍କ ହାତରେ ତହବିଲ । ନାନା କାର୍ଯ୍ୟରେ ବ୍ୟସ୍ତ ଏବଂ ଜମିଦାରଙ୍କ ସ୍ୱାସ୍ଥ୍ୟ ନିମନ୍ତେ ସଭ୍ୟଦେଶ ନିୟମାନୁସାରେ ପାନର ମାତ୍ରା କିଛି ବଳି ପଡ଼ିବାରୁ ଖର୍ଚ୍ଚ ଟଙ୍କାର ହିସାବ ରଖିବାକୁ ବେଳ ପାଇ ନାହାନ୍ତି ।

ବିବାହ ଶେଷ । ଜମିଦାର ଜମିଦାରଣୀ ଦେଶସ୍ଥ ସଭ୍ୟମାନଙ୍କୁ ଧରି ଦେଶକୁ ବାହୁଡ଼ିଲେ । ବର କନ୍ୟା ଉଆସ ମଧ୍ୟକୁ ପ୍ରବେଶ ବେଳେ ଉଆସର ପୋଇଲି ପଞ୍ଝା, ଗ୍ରାମର ଭଲ ଭଲ ଲୋକ ଘର ବୋହୂ ଝିଅମାନେ ଗୋଟିଏ ନୂଆ କୁଲାରେ ସେରେ ଅରୁଆ ଚାଉଳ, ଦୂବ, ବରକୋଳି ପତ୍ର ଦେଇ ତାହା ଉପରେ ଘିଅ ଦୀପଟିଏ ଥୋଇ ବର କନ୍ୟା ବନ୍ଦାଇ ନେବାକୁ ଆସିଲେ । ଶଙ୍ଖ ହୁଳହୁଳି ଶୁଣି ଜମିଦାର ଭାରି ରାଗି ଯାଇ "କୁସଂସ୍କାର, କୁସଂସ୍କାର, ଅସଭ୍ୟତା" କହି ଭାରି ଗୋଟାଏ ପାଟି କଲେ । ସ୍ୱାମୀଙ୍କ ଦେଖାଦେଖି କନ୍ୟା ମଧ୍ୟ "ଏହା ନିତାନ୍ତ ବଡ଼ କୁସଂସ୍କାର ଅଛି, ଏହା ଅସଭ୍ୟତା" କହି ଠୋ ଠୋ କରି ହସି ଉଠିଲେ । ଗାଁ ଭୂଆସୁଣୀ ଗୁଡ଼ାକ ଏ ସବୁ ଦେଖି ଶୁଣି ଲଜ୍ଜିଆରେ ଡରରେ ଅଗଣାରେ କୁଲାଟା ତଳେ ଥୋଇ ଦେଇ ଯେ ଯାହା ଘରକୁ ପଳାଇଲେ ।

ପୁଅ ବୋହୂ ହାତ ଧରାଧରି ହୋଇ ମା ସାନ୍ତାଣୀଙ୍କ ସହିତ ସାକ୍ଷାତ୍ କରିବାକୁ ବାହାରିଲେ । ମା ତେତେବେଳେ ଠାକୁରଙ୍କ ଆଗରେ ମାଳଟି ହାତରେ ଧରି ଆଖି ବୁଜି ବସି ଫୁସ୍ ଫୁସ୍ 'ହରେ କୃଷ୍ଣ' ନାମ ଜପୁଛନ୍ତି । ବୋହୂର ଗୋଡ଼ରେ ଲେଡ଼ିଯୋତା ଏଡ଼ର ଠକ୍ ଠକ୍ ଶବ୍ଦ ଶୁଣି, ଚମକି ପଡ଼ି ଠିଆ ହୋଇଗଲେ । ବୋହୂ ଟିକିଏ ହସି ହସି 'ଓ ଆମ୍ଭର ପ୍ରିୟ ଶାଶୁ ! ନମସ୍କାର— ନମସ୍କାର । କେମନ୍ତ କରି ଆପଣ କରି' କହି ହାତ ବଢ଼ାଇ ଯେମନ୍ତ ଶାଶୁ ପାଖକୁ ଚାଲିଗଲେ, ବୁଢ଼ୀ ତ 'ଛୁଁ—ନା—ଛୁଁ—ନା—ଛୁଁନା—ଆରେ କିଏ ଅଛୁ ରେ, ମନ୍ଦିର ଅପ୍ରତିଷ୍ଠା ହେଲା ରେ, ବାହାର କରି ଦିଅ ରେ, ବାହାର କରି ଦିଅ ରେ' ବୋଲି ରଡ଼ି ଛାଡ଼ିଲେ । ଜମିଦାର ବାବୁ ମିସେସ୍ ମହାପାତ୍ରଙ୍କ ହାତ ଧରି ଭିଡ଼ି ନେଲେ । ଭାରି ଖପା ଟାଏ ହୋଇ କହିଲେ, "ଅସଭ୍ୟତା, ମୂର୍ଖତା, ଘୋର କୁସଂସ୍କାର ! ଓହୋ ! ଲେଡ଼ିଙ୍କୁ ଇନ୍‌ସଲ୍‌ଟ୍ !" ସେହି ମୁହୂର୍ତ୍ତରେ ମା ସାନ୍ତାଣୀ ବିଶ୍ୱାସୀ ପୋଇଲୀ ରାଧୀ ଆଉ ଗୋଟିଏ ପୁଟୁଳି ଧରି ଘରୁ ବାହାରି ଗଲେ ପୁରୀ । ମାତାମଠରେ ରହିଥିବାର ଆଠ ଦିନ ବାଦ ସମ୍ବାଦ ଆସିଲା ।

କେହି ବାଧା ଦେବାକୁ ନାହିଁ, କେହି କିଛି କହିବାକୁ ନାହିଁ, ସ୍ୱାଧୀନ ଭାବରେ କୁସଂସ୍କାର ନିବାରଣ ଆଉ ଦେଶ ଉଦ୍ଧାର ବିଷୟରେ ଲାଗି ପଡ଼ିଛନ୍ତି । ରାତି ମାରି ବକ୍ତୃତା ଓ ପାନାହାରରେ କଟିଯାଏ, ଶୋଇବାକୁ ବେଳ ନାହିଁ ? ମିସେସ୍ ମହାପାତ୍ର ବି ସଭାରେ ଛିଡ଼ା ହୋଇ କେତେଥର ବକ୍ତୃତା କଲେଣି । ଦିନଯାକ ଶୋଇଥାନ୍ତି, ପ୍ରଜା ପାଠକ କେହି ଗୁହାରିଆ ଆସିଲେ ଭେଟ ପାଏ ନାହିଁ । ଯଦି ଭେଟ ମିଳେ, ଏକ ଜବାବ, "ମେନେଜର ପାଖକୁ ଯାଅ ।"

କେହି ବୋହୂ ସାଆନ୍ତାଣୀ ବୋଲି କହିଲେ ଜମିଦାର ବାବୁ ଭାରି ଖପା ହୋଇଯାଆନ୍ତି । ନାମ ହୋଇଛି, ମିସେସ୍ ମହାପାତ୍ର । ମାତ୍ର ପୋଇଲିମାନେ ଆଉ ମୂର୍ଖ ଚାକରଗୁଡ଼ାକ ଠିକ୍ ନାମ ଧରି ଡାକି ପାରନ୍ତି ନାହିଁ । କେହି କହେ କିସ୍ ମିସ୍ ମହାପାତ୍ର— କେହି କହେ ମିସ୍ତ୍ରୀ ମହାପାତ୍ର—କେହି ଡାକେ ଫିସ୍ ଫିସ୍ ମହାପାତ୍ର । କିନ୍ତୁ ସେଥିରେ ମନା ନାହିଁ, ବରଞ୍ଚ ମିସେସ୍ ମହାପାତ୍ର ହସି ପକାଇ ବଡ ଖୁସି ହୁଅନ୍ତି ।

ମିସେସ୍ ମହାପାତ୍ର ପ୍ରାତଃକାଳରେ ଚା ଖାଇଲା ବାଦ ପୋଷାକ ପିନ୍ଧି ଉଆସ ଚଉପିଠି ବଗିଚା ଆଉ ଆଗ ଦାଣ୍ଡରେ ପ୍ରାତଃଭ୍ରମଣ କରି ଆସନ୍ତି । ଦିନେ ବବୁର୍ଚ୍ଚି-ଖାନା ତଦାରକ କରିବାକୁ ଚାଲିଗଲେ । ତେତେ-

ବେଳେ ପୋଇଲା ଘର ହାଣ୍ଡିଏ ଗୋବର ପାଣି ଧରି କନା ଖଣ୍ଡିକରେ ଚୂଲି ଲିପୁଥିଲା, ଯୋଚାର ଠକ ଠକ ଶବ୍ଦ ଶୁଣି ଯିମିତି ମୁହଁ ବଙ୍କାଇ ପଛକୁ ବୁଲିଁ ଦେଇଛି, ଘର ପାଟିଟାଏ କଲା,"ଆଲୋ ମୋ ମା ଲୋ ! ଆଲୋ ମୋ ବାପା ଲୋ ! ଯୋଚା ମାଡ଼ ହାଣ୍ଡିଶାଳରେ ପଶିଲା ଲୋ ! ହାଣ୍ଡିଶାଳ ମାରୁ ଗଲା ଲୋ !" କନା ଖଣ୍ଡ ଫୋପାଡ଼ି ଦେଇ ଏକମୁହାଁ ଧାଇଁଛି । ଆଉ ଉଆସରେ ତାକୁ କେହି କେବେ ଦେଖି ନାହିଁ । ଏଣେ ମିସେସ୍ ମହାପାତ୍ର 'ଉଆ ଉଆ, ଉଆ' କହି ଅନ୍ୟ ଆଡ଼କୁ ଧାଇଁଛନ୍ତି, ମୁହଁରେ ରୁମାଲ ଯାକ ନ ଥିଲେ, କେଜାଣି ବାନ୍ତି କରି ପକାଇଥାନ୍ତେ । ଏକାବେଳକେ ଶିଶିଏ ଲେଭେଣ୍ଡର ଦେହଯାକ ଢାଳି ହେବାରୁ ଟିକିଏ ସାବ୍ଧାନ ହେଲେ । ଗୋରୁଗୁହ ବବର୍ଚ୍ଚିଖାନାରେ ଢଳା ହୋଇଛି, ଜମିଦାର ଶୁଣି ଘର ଖପା । ମୂର୍ଖତା, ଅସଭ୍ୟତା, କୁସଂସ୍କାର ! ସେ ଘରେ ରୋଷେଇ ହେଲେ ଲେଡ଼ିଙ୍କୁ ଖାନା ରୁଚିବ ନାହିଁ, ବାନ୍ତି କରିପକାଇବେ । ଗୃହ ବୋତଲ ଫେନାଇଲ ଘରସାରା ଢଳାଗଲା ।

ଏହି ପରି ଆଠ ଦଶ ମାସ ଗଲା ବାଦେ ଦିନେ କରଣମାନେ ମେଳ ବାନ୍ଧି ଆସି ମେନେଜରଙ୍କ ପାଖରେ ଜଣାଇଲେ, "ଖମାର ସବୁ ଖାଲି ପଡ଼ିଛି, ଗୋରୁ ମଇଁଷି ଚଲରେ ଲଙ୍ଗଳ଼ ଖଣ୍ଡେ ବି ନାହିଁ, ପାଞ୍ଚ ବାଟି ହାତ ଗୃନ୍ତ ପ୍ରଜା ଲଗାଇ ଦେଇ ଯେଉଁ ସଲାମୀ ମିଳିଥିଲା ତାହା ଆସି ସରିଲାଣି, ଆଉ ଏବେ କାହୁଁ ଖରଚ ଯୋଗାଇବୁଁ ?" ମେନେଜର ତୁରନ୍ତ ଜବାବ ଦେଲେ, "ମାରପିଟି ପ୍ରଜାଙ୍କଠାରୁ ଆଗତୁରା ବର୍ଷକର ଖଜଣା ଅସୁଲ କର ।" 'କୁମ୍ଭୀର ଖୋଜେ ଗୋଳିଆ ପାଣି', ଅମଲାମାନେ ଆନନ୍ଦରେ 'ଆଜ୍ଞା' କହି ଦଣ୍ଡବତ ହୋଇ ଚାଲିଗଲେ ।

ଆଉ ଦୁଇ ମାସ ବାଦେ କାର୍ତ୍ତିକ କିସ୍ତି ଟଙ୍କା ଦାଖଲ ନ ହେବାରୁ ତାଲୁକ ନିଲାମରେ ଚଢ଼ିବାର କଟକରୁ ଜବାବ ଆସିଲା । ଠିକ୍ ସେହିଦିନ କଲିକତା ମହାଜନ ଦଶ ହଜାର ଟଙ୍କା ମୂଳକୁ କଳନ୍ତର ଖର୍ଚ୍ଚା ଓଗେର ଭିଡ଼ି କୋଡ଼ିଏ ହଜାର ଟଙ୍କାପାଇଁ ଡିକ୍ରିଜାରି ପିଆଦା କଲିକତା ହାଇକୋର୍ଟରୁ ଆସି ଚଳନ୍ତି ଅଚଳନ୍ତି ଘରାସନ ସମସ୍ତ କ୍ରୋକ କରି ପକାଇଲା ।

ସକାଳୁ ଉଠି ମିଷ୍ଟର ଓ ମିସେସ୍ ମହାପାତ୍ର ବଟଲି ବଗଲି ପରି ବସିଛନ୍ତି; ଜନ ପ୍ରାଣୀ ପାଖରେ ନାହିଁ । ସଭାର ସଭ୍ୟମାନେ ଆଗରୁ ଏକଘରିଆ ହୋଇଥିଲେ, ଗୋବରପାଣି ପିଇ ଜାତିରେ ଉଠିଛନ୍ତି । ଆଉ କି ଆସିବେ ? ବେଳ ବୁଡ଼ିବାକୁ ବସିଲାଣି । ମିଷ୍ଟର ଓ ମିସେସ୍ ଦୁଇଜଣ ଭୋକରେ ଛଟପଟ ହେଉଛନ୍ତି । ସଞ୍ଜ ଲାଗିଲାବେଳକୁ ମିସେସ୍ ମହାପାତ୍ର ବହୁ କଷ୍ଟରେ ଖଣ୍ଡେ ଅଳଙ୍କାର କାଢ଼ିଦେଲେ, ବିକିବାକୁ ଯାଇ ଦେଖିଲେ ପିତଳ ଗିଲ୍ଟି । ଖଣ୍ଡିଏ, ଆଉ ଖଣ୍ଡିଏ ଦେଖାଗଲା, ସବୁଗୁଡ଼ାକ ଗିଲ୍ଟି ! ବିଭାଘର ସମୟରେ ଅଢ଼େଇ ହଜାର ଟଙ୍କାର ଗହଣା କଣା ଯାଇଥିଲା, ସବୁଗୁଡ଼ାକ ଗିଲ୍ଟି ! ଏତେବେଳେ ଦୁଇ ଜଣଙ୍କର ଚେତା ବସିଲା । ଆଉ ଡିକ୍ରିଜାରି ପିଆଦା ଜୁଲମରେ ଘରେ ରହିପାରିଲେ ନାହିଁ । ରାତି ଅନ୍ଧାରରେ କାହିଁ ଅନ୍ତର୍ଦ୍ଧାନ !

ପାଞ୍ଚ ଛ ବର୍ଷ ବାଦେ ଜମିଦାର ବାବୁ ତାଙ୍କ ଶ୍ୱଶୁର କାମରେ ଆସାମରେ ଖାନସମାଗିରି କାମ କରୁଥିବାର ଦେଶରେ ଶୁଣାଗଲା ।

— — —

## ବୀରେଇ ବିଶାଳ

ମୁକୁନ୍ଦପୁରରେ ନନ୍ଦ ବିଶାଳ ଆଉ ତା ଭାର୍ଯ୍ୟା ବୁଢ଼ୀ ସନ୍ନିପାତ ବେମାରୀରେ ଆଗ ପଛ ମାସକ ଭିତରେ ଚାଲି ଯିବାବେଳେ ଗୋଟିଏ ମାତ୍ର ପୁଅ ବୀରେଇର ବୟସ ହୋଇଥିଲା ପାଞ୍ଚ ବର୍ଷ । ଲଙ୍ଗଳା ପିଲାଟା କିଛି

ଶୁଝେ ନାହିଁ । ବାପ ମାଙ୍କ କୋଳେଇରେ ଯେନ ଯିବା ବେଳେ ବାଣ୍ଡରେ ଭୂଇଁରେ ଚଡ଼ 'ବାପା ଲୋ' "ମା ଲୋ' ବୋଲି ଡକା ପାରୁଥାଏ । ଘରେ କେହି ନାହିଁ, କିଏ ବା ପିଲାଟାକୁ ସମ୍ଭାଳି ନେଉଛି ? ବାର ମାସିଆ ମୂଲିଆ ତିନି ଜଣ ଥିଲେ ସତ; ହେଲେ ସେମାନେ କଣ ଜାଣନ୍ତି, କଣ କରିବେ ? ତେବେ କଣ ବାରେଇ ଅନାଥ ହୋଇଯିବ ? ନାହିଁ ନାହିଁ, ତିନି ପୁରୁଷର ଭିନେ ହେଲି ଘର, ଲେଖାରେ ବାରେଇର ଖୁଡୁତା ଜେଜୁତା ଆଉ ମଉସା ପିଉସାମାନେ ଶୁଣି ଧାଇଁ ଆସିଲେ । ସେମାନଙ୍କର ଦସ୍ତୁର ଶବ୍ଦର, ବାରେଇର ବିକଳ କାନ୍ଦଣା ଶୁଣି ଧାଇଁ ଆସିଲେ । ସମସ୍ତେ ଏକାବେଳକେ ପିଲାକୁ ଝାଡ଼ଝୁଡ଼ ଦେଇ କାଖେଇ ନେବା ଲାଗି ଟଣାଟଣି କଲେ । ଟଣା ଓଟରାରେ ପିଲାକୁ ବାଧିଲାଣି, ଆହୁରି ଅଧିକ ବିକଳ ହୋଇ ଡକା ପକାଉଥାଏ । ସେ କଥା ଶୁଣୁଛି ବା କିଏ ? ଦାଦି ପିଉସା ମଉସା ମଧ୍ୟରେ ବୋଲାବୋଲି ହୋଇଗଲା । ସମସ୍ତେ କହୁଛନ୍ତି, "ମୁଁ ଥାଉଁ ଥାଉଁ ପିଲାକୁ ପାଳିବାର ଆଉ କାହାର ଅଧିକାର ?" ଗୋଳମାଳ ଶୁଣି ଗାଁ ଲୋକେ ବି ରୁଣ୍ଡ ହୋଇ ଗଲେଣି । ଛୁଆଟା ସମସ୍ତଙ୍କ ମୁହଁକୁ ଚାହୁଁଛି — ସମସ୍ତେ ତ ଅଛନ୍ତି, ମା ବାପା କାହାନ୍ତି ? ଏତିକିବେଳେ ଟହଞ୍ଚିଗଲେ ପୀତେଇ ପାଢ଼େ, ମାମୁ । ଧଇଁ ସଇଁ ହୋଇ ଧାଇଁଛନ୍ତି । ଦୂରରୁ ଡାକ ଦେଲେ, "ଛାଡ଼ ଛାଡ଼, ଅଲଗା ହୋଇ ଯାଅ, ଛେଉଣ୍ଡକୁ ପାଳେ କିଏ ? ପାଳେ ତ ବାପର ମା, ନୋହିଲେ ପାଳେ ତ ମାର ମା । ମାର ମା ଆଈ ନାହିଁ ସତ; ମାଈଁ ତ ଅଛି ! ଯେଉଁ ପିଲାର କେହି ନାହିଁ, ତାକୁ ପାଳିବ ମାଈଁ ! ତା ମାଈଁ ତିନି ଦିନ ହେଲା ଅନ୍ନ ଜଳ ଛୁଇଁ ନାହିଁ । ପିଲାଟା ଲାଗି ଡକା ପକାଇଛି । ଦୁଖ ଅପା ଘଟିବା ବେଳେ ବାର ବାର କହି ଯାଇଛି, ବାରେଇକୁ ତା ମାଈଁ ପାଳିବ । ଗୋଟାଏ କାମରେ ଆଉ ଗୋଟାଏ ଗାଁକୁ ବାହାରି ଯାଇଥିଲି, ଏଣେ ଏତେ କଥା ହୋଇ ଗଲାଣି, ମୋତେ ଜଣା ନାହିଁ । ନୋହିଲେ ସମସ୍ତଙ୍କୁ ମୁକାବିଲା କରାଇ ଦେଇଥାନ୍ତି ।" ପଞ୍ଚ ଆଉ ବସିଲା, ସମସ୍ତେ ରଫା କରି ଦେଲେ । ପିଲାକୁ ପାଳିବା ମାମୁର ଅଧିକାର । ଲୋକଙ୍କ ମୁହଁରୁ କଥା ବାହାରିଛି କି ନାହିଁ, ମାମୁ ତ ଚିଲ ପରି ଝାମ୍ପ ମାରି ପିଲାକୁ କାଖେଇ ଘରକୁ ଧାଇଁଲେ । ବାରେଇ ମାମୁକୁ କେବେ ଦେଖିନାହିଁ । ନୂଆ ମଣିଷଟା କାହିଁ ନେଇଯିବ ବୋଲି 'ମା ଲୋ' 'ମା ଲୋ' କରି ଆହୁରି ଡକାପାରୁଥାଏ । ମାମୁ ବାରେଇକୁ ନେଇ ଯାଇ ମାଈଁ ଗୁରୁବାରୀ ଜିମା କରିଦେଲେ, ଭୁନି ଭୁନି ଢେରଗୁଡ଼ାଏ କି କଥା କହିଲେ । ମାଈଁ ମୁରୁକି ମୁରୁକି ହସି ହସି କହିଲେ, "ଆରେ ବାରେଇ ଆ, ଚଣ୍ଡୀ ହଙ୍ଗରେ ଖେଳିବୁ ।" ଖଣ୍ଡିଏ ପୋଡ଼ପିଠା, ଚମୁଟାଏ ଭଜା ଚଣା ଗୁଡ଼ ହାତକୁ ବଢ଼ାଇ ଦେଲେ । ବାରେଇ ଢେର ବେଳୁଁ ଖାଇ ନ ଥିଲା, ବଡ଼ ଭୋକିଲା ଥିଲା, ତେତିକି ଖାଇ ଦେଇ ଗୁଡ଼ାଏ ପାଣି ପିଇଦେଲା ।

ମାମୁ ପୀତେଇ ପାଢ଼ଙ୍କ ଘର ମାକଲପୁର । ମୁକୁନ୍ଦପୁରଠାକୁ ଅଧ କୋଶେ ଖଣ୍ଡେ ହେବ । ଛେଉଣ୍ଡ ପିଲାଟି ଜାଣି ମାମୁ ଘରେ ପରମ ସୁଖରେ ରହିଲା, ତା ମାଲମତା ହେପାଜତ କରୁଛି କିଏ ? ପୀତେଇ ପାଢ଼େ ଘରକରଣା ଲୋକ । ତାଙ୍କ ନିଜ ବିଷୟ ତାଙ୍କୁ ଅସମ୍ଭାଳ । ଅଧକୋଶେ ଦୂରକୁ ଆସି ପିଲାର ମାଲମତା, ଘରକରଣା ଦେଖିଯିବାକୁ ବେଳ ନାହିଁ ? ପାଢ଼େ ନିହାତି ବ୍ୟାକୁଳ ହୋଇ ଗାଁ ଲୋକଙ୍କ ପାଖରେ ସବୁବେଳେ କହି ବୁଲୁଛନ୍ତି, "ଏହି ଦିନ କେତୋଟା ଭିତରେ ପିଲାଟାର ମାଲ ଗାଁ ଲୋକେ ଶୋଷେଇ ନେଇ ଗଲେଣି । ସବୁ ମାଲଗୁଡ଼ିକ ଆପଣା ଘରକୁ ନେଇ ଯାଇ ନଜରରେ ନ ରଖିଲେ ସବୁ ବରବାଦ ହୋଇଯିବ ।" ସମ୍ପତ୍ତି ମଧ୍ୟରେ କେତେ ଗୌଣି ଧାନ, ହଡ଼ାହଡ଼ ଦି' ପୁଞ୍ଜା ! ଏ ସବୁ ନଜରରେ ରଖିବାର କଥା । ବୋଇଲା, 'ଜୋରୁ, ଗୋରୁ, ଧାନ---ଏ ତିନି ନଜର ଗୁଜରାଣ ।'

ପାପଙ୍କୁ ଦିନବେଳେ ଡର କାହିଁ ? ଅଧ ରାତିରେ ଗାଁ ଲୋକେ ଖାଇ ଶୋଇଲା ବାଦେ ପାପଙ୍କୁ ବେଳ ମିଳେ । ନିଜର ଥୋରି ବଳଦରେ ଲଦି ପିଲାର ମାଲ-ଗୁଡ଼ିକ ଆପଣା ଘରକୁ ନେଇ ଆସନ୍ତି । ଗାଁ ଦିଗବାର କହି ବୁଲେ, "ପାପେ ଦଶଗୋଟା ବଳଦରେ କୋଡ଼ିଏ ଦିନ ପର୍ଯ୍ୟନ୍ତ ଧାନ ଚାଉଳ, ଲୁଗାପଟା, କଂସା ବାସନ ଚିଜବସ୍ତୁ ସବୁ ବୋହିଥିଲେ ।" ଗାଁ ଲୋକେ ସେ କଥାକୁ ସତ ମଣିଲେ । ବିଶାଳର ଘରପରି ଘରଟାଏ ଥିଲା । ତାହାର ଚାରିଟା ମରେଇରେ ଚାଳିଶ ପଚାଶ ଭରଣ ଧାନ ମଜୁଦ ଥିଲା, ଏ କଥାଟା ସମସ୍ତଙ୍କୁ ଜଣା । ଏ ବାଦ ମଧ୍ୟ ବିଶାଳ ଖାତକମାନଙ୍କୁ କୋଡ଼ିଏ ପଚିଶ ଭରଣ ସରିକି ଧାନ କରଜ ଦେଇଥିଲେ । ପାପେ ମୂଳ କାଗଜର ଅସୁଲ କରିନେଲେ, ବିଶ୍ୱାଏ ଧାନ କାହାରିକୁ ଛାଡ଼ ଦେଇନାହାନ୍ତି । ସେ କହନ୍ତି, "ଛେଉଣ୍ଡି ମାଲ କିମିତି ଛାଡ଼ିବ ? ନିଜର ହେଲେ ଦଶ ଗୌଣୀ ଛାଡ଼ି ଦିଅନ୍ତେ ।"

ଆଉ ପାପେ ଗାଁ ଲୋକମାନଙ୍କ ଆଗରେ ସବୁ-ବେଳେ କହି ବୁଲନ୍ତି, "ବିଶାଳଟା ବଡ଼ ସାହାଖର୍ଚ୍ଚି ଲୋକ ଥିଲା । ସବୁ ଖାଇ ପିଇ ଉଡ଼ାଇ ଦେଇ ଯାଇଛି, ଛେଉଣ୍ଡିଟି ଲାଗି କିଛି ରଖି ଯାଇ ନାହିଁ । ଘରକରଣା ଭିତରେ ଯାହା ଥିଲା ପଲଣ ପାଞ୍ଚି ଦିଖଣ୍ଡି, ମୁଁ ତାକୁ ସଙ୍ଗାନରେ ଉଠାଇ ରଖିଛି । ପିଲାଟା ପାରିଲେ ତା ଜିମା କରିଦେବି । ମୁଁ କଣ ସେ ପଲଣରେ ବାହିବି ? ରାମ ରାମ ।" ମାଈଁ ପାଞ୍ଚ ମାଇକିନିଆଙ୍କ ଆଗରେ କହି ବୁଲନ୍ତି, "ମୋ ସାରେଇ ଆଗ ତ, ଚଣ୍ଡୀ ପଛ । ତା ବାପର କିଛି ନ ଥିଲା ନାହିଁ, ମୋର କଣ ଊଣା ଅଛି ? ବସି ବସି କୋଡ଼ିଏ ବରଷ ଖାଉ ।"

ଦିନ ପାଣିସୁଅ ପରି ବହି ଯାଉଛି । ଦେଖୁ ଦେଖୁଁ ଚାରି ବର୍ଷ ପୂରିଗଲାଣି । ଆସନ୍ତା ତୁଳା ଛ ଦିନରେ ସାରେଇର ଜନ୍ମଦିନ, ଆଠ ବର୍ଷ ପୂରି ଯାଇ ନ ବର୍ଷ ପଶିବ । ସାରେଇ ଆଉ ମାମୁପୁଅ ଚଣ୍ଡିଆ ଅବଧାନଙ୍କ ଚାଟଶାଳୀରେ ବସିଛନ୍ତି । ସାରେଇଟି ଧୀର, ପଢ଼ାରେ ବି ଖୁବ ମନ । ଖଡ଼ିପାଠ ମିଶାଣ ଫେଡ଼ାଣ ହରଗୁଣ ଛାଡ଼ି ଇ ରାସ ପୋଥି ଧରିଛି । ଚଣ୍ଡିଆର ତେର ବର୍ଷ ପୂରିଗଲାଣି, ହେଲେ କଣ, ଆଜଯାଏ ଖଡ଼ିପାଠ ଓଡ଼ାଙ୍କ ବି ଛାଡ଼ିଲା ନାହିଁ । ମାଈଁର ଗୋଟିଏ ବୋଲ ଆଖି, ବଡ଼ ଗେଲ କରନ୍ତି । ମା ମୁହଁ ପାଇ ବଡ଼ ଉପାଣ୍ଡିଆ ହୋଇଗଲାଣି, ଘରୁ ବାହାରିଲା ତ ପାଞ୍ଚଘରୁ ଦଶ ବୋଲଣା ଆଣିବ—ଚାଲିଲା ଶଗଡ଼ରେ ହାତ ଦିଏ । ତା ନାମରେ କେହି କିଛି ଆସି ଗୁହାରି କଲେ ମା ପୁଅକୁ ଦାଣ୍ଡିବା ଥାଉ, ଓଲଟା ଗାଁ ଲୋକଙ୍କ ସଙ୍ଗରେ କଳି କରିବେ । ମାଙ୍କର ବିଶ୍ୱାସ, ଚଣ୍ଡିଆଟି ଦେଖିବାକୁ ବଡ଼ ସୁନ୍ଦର ବୋଲି ଗାଁ ମାଇକିନିଆଏ ହିଂସାରେ ସହି ପାରନ୍ତି ନାହିଁ । ଚଣ୍ଡୀ ଚାଟଶାଳୀରେ ବି ବଡ଼ ଗୋଳମାଳ କରେ । ଆପେ ତ ପଢ଼େ ନାହିଁ, ପିଲାମାନଙ୍କ ସଙ୍ଗରେ ଛୁଞ୍ଚାଟାରେ କଳି ଲଗାଏ, ମାରି ଧରି କରେ । ଦିନେ ଅବଧାନେ ସହି ନ ପାରି ବେତରେ ଖୁବ ପ୍ରସ୍ତେ ବାଡ଼େଇ ଗଲେ, ପିଠିରେ ଲମ୍ବ ଲମ୍ବ ନୋଳା ବସିଗଲା । ମା ତା ଦେଖି ଖୁବ ଡକା ପାରି କାନ୍ଦିଲେ । ଅବଧାନଙ୍କ ଚୌଦପୁରୁଷଙ୍କ ସକାଶେ ନିତାନ୍ତ କୁତ୍ସିତ ଦ୍ରବ୍ୟ ଖାଦ୍ୟବ୍ୟବସ୍ଥା, ଆଉ ନରକ ନାମକ ସ୍ଥାନକୁ ଯିବା ସକାଶେ ଆଦେଶ କଲେ । କହିଲେ, "ମୋର କଣ ନାହିଁ ଯେ ପୁଅ ପାଠଟାଏ ପଢ଼ିବ ? ଆରେ ମୋର ଯେ ବିଷୟ ଅଛି, ତିନ ପୁରୁଷ ବସି ଖାଉ !" ଚଣ୍ଡୀର ପଢ଼ା ବନ୍ଦ । ସେ ତ ତାହା ଖୋଜୁଥିଲା । ଚଣ୍ଡୀ ଗାଁର ବାଉରି, ଧୋବା ଟୋକା-ମାନଙ୍କ ସଙ୍ଗରେ ଦିନ ରାତି ବୁଲେ । ବାପେ କିଛି କାମ ପାଇଟିରେ ଲଗାଇଲେ, ମା ବାଘୁଣୀ ପରି ଗର୍ଜନ କରି କହନ୍ତି, "ମୋର ଦୁଧଖିଆ ଛୁଆଟା କାମ ପାଇଟି କରିବ କଣ ମ ? ନଅଟା ନା ଛଅଟା; ଗୋଟାଏ ବୋଲ ଆଖି, ସେ କଣ ଭିଡ଼ କାମ କରିପାରିବ ? ବୁଲୁଥାଉ ।" ସାରେଇର ବି ପଢ଼ା ବନ୍ଦ । ମାଈଁ ଖପାଟାଏ ହୋଇ କହିଲେ, "ଏ ଅବଧାନଟା କିଛି ବୁଝେ । କଣ ବା

ପଢ଼ାଏ, ମାସ ନ ପୂରୁଣୁ ଦୁଇ ଅଣା ପଇସା ଗଣ । ଫେର କଣ ନା, ଆଜ ପଣକଆ ଲେଖିବ, ପୂଜା ଲୋଡ଼ା—ସେଥିରେ ଚାଉଳ ଗୁଆଟିଏ । ଦିନ ପନ୍ଦରଟା ଯାଇ ନାହିଁ ତ, ଓଡ଼ାଙ୍କ ଲେଖିବ, ଫେର୍ ପୂଜା ! ନା ନା, ତା ହେବ ନାହିଁ ।" ଦୁଇ ଚାରି ଦିନ ବାଦେ ମାଈଁ ଦିନେ ମାମୁଙ୍କୁ ଡାକି କହିଲେ, "ଦେଖ ତ, ଭେଣ୍ଡିଆଟା ଦିନକୁ ତିନି ବେଳ ଠୁଙ୍କିବ, ଭୁକ୍ତାଟାରେ ଗାଁରେ ବୁଲିବ କଁ୍ୟା ? ଗାଈରଖା ଟୋକାଟାକୁ ବାହାର କରି ଦିଅ, ଖାଇଆ ଗାଈ ଜଗୁ ।" ମାମୁ ଟିକିଏ ମୋଡ଼ି ମୋଡ଼ି ହେଉଥିଲେ, ଡରରେ ପାଟି ଫିଟାଇ ପାରିଲେ ନାହିଁ । ଖାରେଇକୁ ଡାକି କଅଁଳେଇ କଅଁଳେଇ କହିଲେ, "ଆରେ ବାପ ଖାରେଇ ! ଏହି ଯେ ଗୋରୁପାଲ ଦେଖୁଛୁ ଏଗୁଡ଼ିକ ସବୁ ଚୋର । ପର ଲୋକ ଭଲ ଚରାଉ ନାହାନ୍ତି, ଗାଈ ବଳଦଗୁଡ଼ାକ ହାଡ଼ା ହୋଇ ଗଲେଣି । ପର ଲୋକର କଣ ମାୟା ଥାଏ ? ତୁ ଯା, ଥଣ୍ଡେ ଥଣ୍ଡେ ଗଛ ମୂଳରେ ବସି ଗୋରୁ ଦିଟା ଦେଖିବୁ । କିଛି ମେହେନତ ନାହିଁ, ଖାଲି ଅଡ଼ାଇ ଦେନନିବୁ, ସଞ୍ଜବେଳେ ଆଣି ଗୁହାଳରେ ପୂରାଇଦେବୁ ।" ଖାରେଇ ପାଞ୍ଚଣ ଖଣ୍ଡେ ଧରି ଗୋରୁ ଚରାଇ ବାହାରିଲା । ଗାଁ ଲୋକେ କିଛି କହିଲେ, ମାମୁ ଜବାବ ଦିଅନ୍ତି, "ଆଛା ଛେଉଣ୍ଡର ଲାଞ୍ଜ ଦିଖଣ୍ଡ ପର ହାତରେ ପଡ଼ି ବୁଡ଼ିବାକୁ ବସିଲା, ତା ନିଜ ମାଲ ନିଜେ ଦେଖୁ ।" ସତକୁ ସତ ଗୋରୁପଲଟା ଏକା ଖାରେଇର । ତାହା ବାପ ମରିବାବେଳେ ମାଈ ଅଣ୍ଡିରା—ଛଡ଼ା—ଦାମୁଡ଼ି ଦୁଇ ବୋଡ଼ି ଭଲ ଗୋରୁ ମାମୁ ଗାଁ । ମଝି ଗୋହିରିରେ ଅଡ଼ାଇ ଆଣୁଥିବା ଗାଁ । ଲୋକ ସମସ୍ତେ ଦେଖିଛନ୍ତି ।

ଆହୁରି ବି ଆଠ ନ ବର୍ଷ ଗଲଣି, ଖାରେଇର ଉଚ୍ଛୁଣିକା ଅଠର ବର୍ଷ ବୟସ । ପିଲାଟା ନା ଆଉ କଣ ? ହେଲେ କାମ ପାଇଟି କି ବଡ଼ ପାରିଲା । ମାମୁର ବାଟି ଫଖ୍ୟା ଚାଷ, ଯୋଡ଼ାଏ ବାରମାସିଆଙ୍କୁ ଧରି ସବୁ ସମ୍ଭାଳୁଛି । ଏବେ ମାମୁ ଚାଷକାର୍ଯ୍ୟଟା ଭୁକ୍ତା ଉପରେ ଉପରେ ଦେଖନ୍ତି । ଖାରେଇ ଦେଖିବାକୁ ଯେମିତି ଡୌଲ, କଥାଗୁଡ଼ିକ ବି ଖୁବ୍ ମଧୁର । ଦେହରେ ବାଘ ପରି ବଳ । ଦିନେ ପାଣ୍ଡେଇ ପାଖ ସାନ ଝିଅ କମଳୀକୁ ଗୋଟାଏ ମାରଣା ବଳଦ ବିନ୍ଧିବାକୁ ଗୋଡ଼ାଇଥିଲା—ଖାରେଇ ବଳଦର ଲାଞ୍ଜ ଧରି ଭିଡ଼ି ରଖିଲା । ଗାଁର କି ପୁରୁଷ କି ସ୍ତ୍ରୀ ସମସ୍ତେ ଖାରେଇକୁ ଭଲ ଚାଆନ୍ତି, ଖୁବ୍ ପ୍ରଶଂସା କରନ୍ତି । ହେଲେ ସେ ପ୍ରଶଂସାଟା ମାଈଁ ଶୁଣିଲେ ଖପା ହୋଇଯାନ୍ତି, ଲୋକଙ୍କ ସାଙ୍ଗରେ କଳି କରନ୍ତି । ଚଣ୍ଡୀର ପ୍ରଶଂସା କଲେ ମାଈଁ ମନ ବଡ଼ ଖୁସି ।

ଚଣ୍ଡୀ ସଞ୍ଜ ସକାଳ ଘରେ ପଶେ ନାହିଁ, ପାଞ୍ଚ ସାତଟା ବୁଲା ଟୋକା ସଙ୍ଗରେ ଦିନ ରାତି ବୁଲୁଥାଏ । ସେମାନଙ୍କ କାମ ଗଛଚଢ଼ା, ବାଗୁଡ଼ିଖେଳ, ଚୌପଟ ଖେଳ, ଗଞ୍ଜେଇ ଭିଡ଼ା ! ହାଲକୁ ଗୋଟାଏ ମଦଭ ଖଟି ଜାରି କଲଣି । ଅଳି କରି କାନ୍ଦି ଉରାଇ ହରାଇ ମା ପାଖରୁ ଟଙ୍କା ପଇସା ନିଏ, ଆପଣା ଗୋଠରୁ କୋଡ଼ିଏ ପଚିଶ ଟଙ୍କାର ଦାମୁଡ଼ି ଗୁଡ଼ାକ ଗୁଆଲଙ୍କୁ ଦୁଇ ଚାରି ଟଙ୍କାରେ ବିକି ଦିଏ । ଚାକରଆମାନଙ୍କ ସଲାରେ ଆପଣା ଘର ମରେଇରୁ ଧାନ ଚୋରି କରି ବିକିଦିଏ । ମା ଜାଣି ପାରି ବି ପୁଅ ଦୋଷ ଲୁଚାଏ । ମା ଡରରେ ବାପ କିଛି କହିପାରେ ନାହିଁ । ମା ଆଗେ ଲୁଚା ଚୋରା କରି ଚଣ୍ଡୀକୁ କିଛି କିଛି ଟଙ୍କା ପଇସା ଦେଉଥିଲେ । ଏବେ ହାତ ଖାଲି । ଚଣ୍ଡୀ ଟଙ୍କା ପଇସା ନ ପାଇ ମାକୁ କେତେଥର ମାଡ଼ ଦେଲଣି । ହେଲେ ମା ମାଡ଼ ଖାଇ ତୁନି ହୋଇ ରହେ, ବାପା ଆଗରେ କିଛି କହେ ନାହିଁ ।

ଗାଁ । ଲୋକ ପାଞ୍ଚ ଜଣ ଖାରେଇକୁ କହିଲେ, "ଆରେ ଖାରେଇ ! ତୁ କଣ ମାମୁ ଘରେ ସବୁଦିନେ ପେଟ ଭାତରେ ରହିଥିବୁ, ଆପଣାର ସଂସାର କରିବୁ ନାହିଁ ?" କଥାଗୁଡ଼ାକ ଖାରେଇ ମନକୁ ଭଲ ପାଇଲା । ସେ ଏବେ ସବୁ କଥା ବୁଝିଲାଣି । ମାମୁ ମାଈଁ କାମର ପିଆରି । ଖିଆପିଆ ସବୁ କଥାରେ ପୁଅ ଉପରେ ମାମୁ ମାଈଁଙ୍କର

ଯେ ଶ୍ରଦ୍ଧା, ତା ଉପରେ ତାର କଣିକାଏ ବି ନାହିଁ । ଦେଡ଼ ହଜାର ଟଙ୍କା ଖରଚ କରି ପୁଅକୁ ବାହା କଲେ, ତାହା ବାବଦର ନାମ ଚର୍ଚ୍ଚା ନାହିଁ । ଦିନ ରାତି ହାଡ଼ ଭାଙ୍ଗି ଯାହା ଅର୍ଜି ଆଣୁଛି, ଚଣ୍ଡୀ ଗଞ୍ଜେଇ ମଦ ଖାଇ ସବୁ ଉଡ଼ାଇ ଦେଉଛି । ମାମୁ ମାଈଁ କିଛି ବୋଲିବାକୁ ନାହାନ୍ତି । ନିଶ୍ଚେ ସେ ଘରକରଣା ଉଜାଡ଼ ଦେବ ।

ଦିନେ ସଞ୍ଜବେଳେ ମାମୁ ମାଈଁ ପିଣ୍ଡାରେ ବସିଛନ୍ତି, ଷାରେଇ କାମ ଧନ୍ଦା ସାରି ଯାଇ ପାଖରେ ବସିଲା । ମାମୁ ମାଈଁ ଦିନବେଳର କାମ ପାଇଟି କଥା ପଚାରିଲେ । କାମ ପାଇଟି କଥା ଛଡ଼ା ମାମୁ ମାଈଁ ସାଙ୍ଗରେ ଷାରେଇର ଆଉ କିଛି କଥା ଭାଷା ହୁଏ ନାହିଁ । ଷାରେଇ ଜବାବ ଦେଇ ପାଖରେ ବସିଥାଏ । ମାମୁ ପଚାରିଲେ, "କି ରେ ଷାରେଇ ! ଆଉ କିଛି କଥା ଅଛି ?" ଷାରେଇ ଦଣ୍ଡେ ଗୁମ୍ ମାରି ବସି ଦୁଇଟା ହାଇ ମାରି କହିଲା, "ମାମୁ ମୁଁ ଏବେ ଆପଣା ଘରକୁ ଯିବି ।" ମାମୁ ମାଈଁ ତ ଶୁଣି ଚମକି ପଡ଼ିଲେ, ତାଙ୍କ ମୁଣ୍ଡରେ ଯେମନ୍ତ ବଜ୍ରଟାଏ ଭାଙ୍ଗି ପଡ଼ିଲା । ମାମୁ ମାଈଁ ଦୁଇ ଜଣଙ୍କର ଦୁଇ ବର୍ଷ ହେଲା ଶ୍ୱାସ ବେମାରି । ସଞ୍ଜବେଳେ ଟିକି ଅଣ୍ଡର ଟେଳାଏ ଟେଳାଏ ଆପୁ ଗିଳି ପକାଇଲେ ଟିକିଏ ଚୁଲବୁଲ ହୋଇ ପାରନ୍ତି । ମାମୁ ତ ପିଣ୍ଡାରୁ ଓହ୍ଲାଇବାକୁ ନାହିଁ, ଚଣ୍ଡିଆର ତ ଏହି ଦଶା, ଷାରେଇ ବାହାରିଗଲେ ଆଉ କିଏ ଘରକରଣା ରହିବ ? ମାମୁ ଦୁଇ ଚାରିଟା ନିଶ୍ୱାସ ପକାଇ କଅଁଳେଇ କଅଁଳେଇ କହିଲେ, "ହଁ ରେ ବାପ ଘରକୁ ଯିବୁ ନାହିଁ କଣ ? ରହ, ମୁଁ କନ୍ୟାଟିଏ ଖୋଜା ଖୋଜି କରୁଛି, ବାହାଘର କରାଇ ଦେବି, ଦି' ପ୍ରସ୍ଥ ଘର ବନାଇ ଦେବି । ତୁ ଉଛୁଣିକା ପିଲାଟା, ଅଲଗା ଏକୁଟିଆ ହୋଇ କଣ ରହି ପାରିବୁ ? ଏ ଗାଁ ଲୋକଙ୍କ କଥା ବୁଝି ନାହୁଁ ? ମୁଁ ବୁଝି ବୁଝି ବୁଢ଼ା । ସବୁ ତୋ ପାଖରୁ ଛଡ଼ାଇ ନେବେ, ଭିକୁଆ ହୋଇ ବସିଥିବୁ । କଣ କହୁଛୁ ରେ ବାପ ? ହେଉ ହେଉ, ଆଉ ଯୋଡ଼ାଏ ବର୍ଷ ରହିଯା । କଣ କହୁଛୁ ରେ, ରେ ବାପ ?" ଷାରେଇ କହିଲା, "ନା, ମୁଁ ଘରକୁ ଯିବି ।" ମାଈଁ ଟିକିଏ ରାଗୀ—ଚଣ୍ଡୀ ହଜାର ଦୋଷ କରୁ, କିଛି କହିବେ ନାହିଁ, ଆଉ କେହି ତାଙ୍କ କଥା ଟିକିଏ ଅମାନ୍ୟ କଲେ ଘଡ଼ିଏ ଯାଏ ଗର୍ଜୁଥିବେ । ଟିକିଏ ରାଗିଯାଇ କହିଲେ, "କି ରେ ଷାରେଇ ! ମାମୁ ସେ, ମୁରବି, ତାଙ୍କ କଥା ଅମାନ୍ୟ କରୁଛୁ ? ଗାଁ ଲୋକଙ୍କ ବୁଦ୍ଧିରେ ପଡ଼ିଲୁଣି କି ରେ ? ଆରେ କହିବାକୁ ଢେର, ବହିବାକୁ କିଏ ରେ ? ଯୋଗମୋଖିଆ ଘରଭଙ୍ଗା ଲୋକଙ୍କ ବୁଦ୍ଧିରେ ପଡ଼ ନା । ପାଞ୍ଚ ବର୍ଷର ଛେଉଣ୍ଡ ଲଙ୍ଗଳା ହୋଇ ଦାଣ୍ଡରେ ପଡ଼ିଥିଲୁ, ଏଇ ମାମୁ ଥିଲେ ବୋଲି ଅଣ୍ଟାଟିରୁ ଭେଣ୍ଡିଆ ହୋଇ ଆଜ କଥା କହୁଛୁ । ଏହି ଯୋଗମୋଖିଆଏ ସମସ୍ତେ ତ ଥିଲେ, ତୋ ତୁଣ୍ଡରେ ପେଜ ମନ୍ଦାଏ କେହି ଦେଲେ ନାହିଁ ? ନଣନ୍ଦେ ମରିବା ବେଳେ ମୋ ହାତ ଧରି ବାରବାର କହି ଯାଇଛନ୍ତି, 'ଖବରଦାର ! ମୋ ଷାରେଇକୁ କାହିଁ ଛାଡ଼ିଦେବ ନାହିଁ ବରାବର ଘରେ ରଖିବ । ଅଲପାଇ-ସିଆ ଗାଁ ଲୋକେ ତାକୁ ଫୁସୁଲାଇଲେ ଶୁଣିବାକୁ ଦେବ ନାହିଁ ।' ତୁ ମା କଥା, ବାପ ବଦଳରେ ମାମୁ କଥା ଯଦି ନ ଶୁଣିବୁ, ଆପେ ପୋଡ଼ି ଉଡ଼ି ଯିବୁ, କାହାର କଣ ଯିବ ?" ମାମୁ କହିଲେ, "ଥାଉ ଥାଉ, ସେ ସବୁ କଥା ପଛେ ହେବ, କଥା କଣ ଲାଗିଛି ? ଦିଅ ଦିଅ, ବୋହୂକୁ ଡାକିଦିଅ, ଛୁଆଟା କାମ ପାଇଟି କରି ଥକିଛି, ଆଗେ ତାକୁ ଭାତ ଦିଅ, ଚଣ୍ଡିଆ ନ ଆସିଲା ନାହିଁ ।" ଷାରେଇ ମନ ମଧ୍ୟରେ ବଡ଼ ହସିଲା, 'ଓହୋ, ଆଜ ଯେ ମାମୁଙ୍କର ବଡ଼ ଦୟା !' ରୋଜ ତ ଚଣ୍ଡୀ ନ ଆସିଲେ ଖିଆପିଆ ହୁଏ ନାହିଁ । ଚଣ୍ଡୀ ଗାଁ ବୁଲି ବାହୁଡ଼ିବାକୁ ରାତି ଛ ଘଡ଼ି । ମାମୁ ମାଈଁଙ୍କର ଶ୍ୱାସରୋଗ, ତାହା ଉପରେ ଆପୁର ନିଶା, ରାତିସାରା ନିଦ ହୁଏ ନାହିଁ, ଖୁଁ ଖୁଁ ହୋଇ କାଶୁଥାନ୍ତି, ପାହାନ୍ତିଆ ପହର ଥଣ୍ଡା ପବନ ଲାଗିଲେ ଟିକିଏ ନିଦ ମାଡ଼େ, ଚିନ୍ତା ଭାବନାରେ ଆଜ ସେ ନିଦ ବି ନାହିଁ ।

ତହିଁ ଆର ଦିନ ସଖାଳେ ଖରେଇ ଆଣ୍ଠୁ ଯୋଡ଼ିକ କୁଣ୍ଢେଇ ପିଣ୍ଡାରେ ତୁନି ହୋଇ ବସିଛି । ଖଣ୍ଡ ପିଢ଼ା ଉପରୁ ମଣି ବାହାରକୁ ଗଡ ପଡ଼ିଲାଣି, ମାମୁ ଉଠି ଆସି ଖରେଇକୁ ଦେଖି କହିଲେ, "କି ରେ ବାପ ! ତୁନି ହୋଇ ବସିଛୁ ? ଯା ଯା ବେଙ୍ଗଲା ଖେଳାଇ ଦେ ଯା । ଭଙ୍ଗା ପୁଞ୍ଜିଟା ଋଣବଣ ହୋଇ ପଡ଼ୁଛି ।" ଖରେଇର ଏକା ପଦେ କଥା, "ନା, ମୁଁ ଘରକୁ ଯିବି ।" ମାମୁ ଆଜ ବି ଢେର ବୁଝାଇଲେ । ଟେକାଟେକ କରି କଥା କହିଲେ । ଖରେଇର ସେହି ଉତ୍ତର, "ଘରକୁ ଯିବି ।" ମାଈଁ ବିଛଣାରୁ ଉଠି ଆସି ଆଖି ମଳ ମଳ ସବୁ କଥା ଶୁଣୁଥିଲେ, ଏକାବେଳକେ ଖପାଟା ହୋଇ କହିଲେ, "ଯିବୁ ତ ଚାଲି ଯା । ଯିବି–ଯିବି ଭଜନମାଳି ଧରିଛୁ ଯେ !" ଖରେଇ କହିଲା, "ମୋ ବାପର ଯାହା ସବୁ ଚଳବସ୍ତ ଆଣିଥିଲ, ଫେରାଇ ଦିଅ ।" ମାଈଁ ସେହିପରି ତେଜରେ କହିଲେ, "ଚଳବସ୍ତ କଣ ରେ ? ପାଣ୍ଡି ପଲାଣ ଦିଖଣ୍ଡ ଆଣିଥିଲେ; ଯା, ଯା, ଉଇ ଖାଇଯାଇ ପଡ଼ିଛି ମୁଣ୍ଡାଇ ନେଇ ଯା । ବରଷେ ନୁହେଁ, ଦି ବରଷ ନୁହେଁ, କୋଡ଼ିଏ କୋଡ଼ିଏ ବର୍ଷକାଳ ଖୁଆଇ ପିଆଇ ଭେଣ୍ଡିଆଟିଏ କରିଦେଲୁଁ, ଏଣିକି ମୁଣ୍ଡକୁ ହାତ ପାଇଲା କି ନା ? ମୁଁ ତାଙ୍କୁ ବାରବାର ଚେତିକିବେଳେ କହିଥିଲି–'ପରପୁଅ ଗୁଞ୍ଜାବୁଅ' ସେ ବଟଲଇରେ ପଶ ନା । ଶୁଣିଲେ ନାହିଁ, ଏବେ ଭୋଗ ।" ଖରେଇ ତୁନି ହୋଇ ଏକକାନିଆ ପାଞ୍ଚଣ ଖଣ୍ଡି ଧରି ଉଠିଗଲା ।

ମଧୁ ବିଶାଳର ସରବରି ପନ୍ଦର ମାଣ ଚାଷ ଜମି ଥିଲା । ଜମିଟା ବଡ଼ ଭଲ, ମଟାଳିଆ, ଏକଚକିଆ, କଳନ୍ଦ । ପୀତେଇ ପାଢ଼ୀ ସେ ଜମିଟା ଆପଣା ନାମରେ କରିନେବା ଲାଗି ଢେର ଫନ୍ଦି ଫିକର କରିଥିଲେ । ଜମିଦାର ଶ୍ୟାମ ସ୍ୱାଇଁଙ୍କୁ ଲାଞ୍ଚ ଉପଢ଼ୌକନ ଯାଚିଥିଲେ । ମାତ୍ର ସ୍ୱାଇଁଏ ବଡ଼ ବିବେକୀ ଲୋକ, ପୁଣି ଗାଁର ପାଞ୍ଚ ଜଣଙ୍କ ଉପରରେ ସେହି ମଧୁ ବିଶାଳ ନାମରେ ରଖି ଦେଇଛନ୍ତି । ଖରେଇ ଗାଁରେ ମୂଳ ଲାଗେ । ଚାଷ ସଜ ନାହିଁ, ଜମିଗୁଡ଼ିକ ବନ୍ଧା ଲଗାଇ ଦେଲା ।

ଖରେଇଟି ବଡ଼ କାମିକା, ପର ନ–ଚ୍ଛରେ ନ ଥାଏ, ଆପଣା ଦୁଃଖ ଧନ୍ଦାରେ ଲାଗିଥାଏ । ସଞ୍ଜବେଳେ ପାଇଟିରୁ ଫେରିଆସି ମୁଡ଼ିମୁଡ଼ା ପୁଞ୍ଜାଏ ପାଟିରେ ପକାଏ । କୋଡ଼ିଟାଏ କାନ୍ଧରେ ପକାଇ ବାହାରି ପଡ଼େ । ଆପଣା ଉଦ୍ୟମରେ ବର୍ତ୍ତମାନ ରହିବା ଭଳି ଗୋଟିଏ ସାନ ଘର ବନାଇଲା । କାନ୍ଥ ଯିମିତି ଛିଡ଼ା କରିଛି, ମଉସା ପିଉସା ଗାଁର ଆଉ ଆଉ ପାଞ୍ଚ ଜଣ ଡାକରା ନାହିଁ, ହାକରା ନାହିଁ, ଖରେଇ କାହାରିକୁ କିଛି କହି ନାହିଁ, ଧାଇଁ ଆସିଲେ, ଆପଣା ଆପଣା ଘରୁ କାଠ କୁଟା ବାଉଁଶ ଆଣି ଘରଟାଏ ଛିଡ଼ା କରାଇ-ଦେଲେ । ଖରେଇର ଅଉଲ ବଳ—ଖାର କଳନ୍ଦ । ଧାନ ପାଚିବାରୁ ଭରଣ ଭରଣ ସତକ ଭାଗ ପାଇଲା । ବର୍ଷକ ଖାଇବା ଭଳି କିଛି ରଖି ସବୁ ଧାନଗୁଡ଼ିକ ବିକି ପକାଇଲା । ସେହି ଟଙ୍କାରେ ହଳଆ ବଳଦ, ଚାଷ ସରଞ୍ଜାମ କିଣି ଆପଣା ଚାଷରେ ଲାଗିଗଲା । ବର୍ଷଗୁଟାଏ ଭିତରେ ଖରେଇ ବାପ ଅମଳକା ଘର ଛିଡ଼ା କରି ଦେଲାଣି । ସେହିପରି ତିନି ପ୍ରସ୍ତ ଘର, ମାଣ୍ଡ ଅଣ୍ଡିରା ଦେଢ଼ ବୋଡ଼ ଗୋରୁ, ପଣ୍ଡା ଧାନ ପାଞ୍ଚ ଛ'ଟା ମଟେଇ ଛିଡ଼ା ।

ବନ୍ଧୁ ବାନ୍ଧବ ହାମଦରଦୀ ପାଞ୍ଚ ଜଣ କେତେ ଥର କହିଲେଣି, "ଆରେ ଖରେଇ ! ତୁ କି ସବୁ ଦିନେ ଡାଙ୍ଗୁଆ ମାଙ୍ଗୁଆ ହୋଇ ରହିଥିବୁ ? ଏଣିକି ପିତୃଲୋକ ପାଣି ମୁଠାଏ ପାଇବାର ବାଟ କର ।" ଖରେଇ ବି ବୁଝିଲାଣି, ବିଭାଟାଏ ନ ହେଲେ ନୁହେଁ । କାମଯାଇଟିରୁ ଆସି ରନ୍ଧାବଢ଼ା କରିବାଟା ଏଣିକି ବଡ଼ ଦିକ୍ ଲାଗିଲାଣି । ବାଧିକା ପଡ଼ିଲେ ପାଣି ମୁନ୍ଦାଏ ଦେବାକୁ, ଗୋଡ଼ ହାତରେ ହାତ ବୁଲାଇ ଦେବାକୁ କେହି ଭରସା ନାହିଁ । ବିଭା କରିବାକୁ ମନ କଲା ସତ, ହେଲେ ଏତେ ଟଙ୍କା କାହିଁ ? ଆଉ ପାଟକ ନୁହେଁ ଯେ, ମନ କଲା ତ ବିଭା

ହୋଇ ପଡ଼ିଲା । କପାଇଁ କେଜାଣି, ବଳରାମଗୋଷ୍ଠୀ ପଞ୍ଚାରେ କନ୍ୟାର ବଡ଼ ଅଭାବ, ପୁଣି ଦର ଭାରି ଚଡ଼ା । ଗୋଟିଏ ଗୋଟିଏ କନ୍ୟା ପାଞ୍ଚଶ ଠାରୁ ହଜାରେ ଦୁଇ ହଜାର ଟଙ୍କାରେ ବିକ୍ରି ହେବାର ଏ ଲେଖକଙ୍କୁ ଜଣା । ଅଜଣା ପାଠକ ଆପଣେ ପଚାରିବେ, "କନ୍ୟାର ଦାମ ଏତେ ଗୁଣା ଅଧିକ କିଆଁ ? କନ୍ୟାଗୁଡ଼ିକ ଫୁଟ ଗଜରେ ମାପ ବା ଦଣ୍ଡି ତରାଜୁରେ ଓଜନ ହେଉଥିବ, ମାପ ବା ଓଜନ ଗୁଣା ଅଧିକରେ ଦର ଗୁଣା ଅଧିକ ହୁଏ ।" ନାହିଁ ନାହିଁ, ତାହା ନୁହେଁ, ଆମ୍ଭମାନଙ୍କୁ ଭିତରିଆ କଥା ଭଲ ଜଣା । ସେଥିର ଅସଲ ହାଲ ଚୁମ୍ବକରେ ଦୁଇ ଚାରି କଥାରେ କହିବୁଁ । ବଳରାମଗୋଷ୍ଠୀ ପଞ୍ଚାରେ ନ ଥିଲା ଲୋକ ନାହାନ୍ତି ବୋଲନ୍ତୁ, ସେମାନେ ଭାରି ପରିଶ୍ରମୀ ଏବଂ ଖରଚପତ୍ରରେ ଭାରି ଚପା । ବଳେ ସମସ୍ତଙ୍କ ହାତରେ କିଛି କିଛି ଟଙ୍କା ଜମିଯାଏ । କନ୍ୟାର ବୟସ ବା ରୂପ ଗୁଣ ବିଷୟରେ କିଛି ଚିନ୍ତା ନାହିଁ—ବରର ବୟସକୁ ଧରି କନ୍ୟାର ଦର ଦାମ କଷାଯାଏ । ବରର ବିବାହର ବୟସ ହେଲା । ଏଣେ ଘରେ ତେତେ ଟଙ୍କା ନାହିଁ, ଆପେ ପରିଶ୍ରମ କରି ଟଙ୍କା ଜମାଏ । ଟଙ୍କାଟା ଠିକ୍ ହେଉଁ ହେଉଁ ବରର ବୟସ ହୋଇ ଗଲାଣି ପଚାଶ, କମ୍ଭା ଧନବନ୍ତ ଲୋକ ଦୋଜବର ଓ ତେଜବର ବୟସ ଷାଠିଏ । ଏଣେ କନ୍ୟାଟିର ବୟସ ୧୦।୧୧ ଭିତରେ । ସେହି ସମସ୍ତ ଜାଗାରେ କନ୍ୟାର ଦର ବଢ଼ିଯାଏ । ଦରର ଏହିପରି ହାଲ ଜାଣିବ । ବାରେଇ ବିଭା ହେବା ଲାଗି ଟଙ୍କାଏ ମସାଏ ଯାହା ହାତରେ ପଡ଼େ ଥୋଇ ଦିଏ । ଘରକଣରେ ଅନ୍ଧାରିଆ ଗୋଟିଏ ଠେକ ପୋତିଛି, ସେଥିରେ ପକାଇ ଦିଏ ।

ଆହୁରି ପାଞ୍ଚବର୍ଷ ଗଲାଣି । ବାରେଇର ଉଣ୍ଟୁଣିକା ବୟସ ତିରିଶ ଭିତରେ, ବିଭା ହେବା ଭଳି ଟଙ୍କା ଜମି ଗଲାଣି ବୋଲି ମନରେ ଠିକ୍ କଲା । ବିଭାପାଇଁ ସଜ ହେଲା, ହେଲେ ସେ କଣ ଆପେ କନ୍ୟା ଖୋଜି ଯିବ ? ପୁରୋହିତ ଖୁମେଇ ମିଶ୍ରଙ୍କୁ ମଧ୍ୟସ୍ଥ କଲା । ମିଶ୍ରେ ଚୂଳଅଡ଼େ ଢେର ଆଖି ଫେରାଇଲେ । ବାରେଇ ଦିନେ ମିଶ୍ରଙ୍କୁ କମଳୀ କଥା ଇଶାରାରେ କହିଲା । ରାଘବ ପାଣ୍ଡର ସାନ ଝିଅର ନାମ କମଳୀ, କନ୍ୟାଟି ବେଶ ଡୌଲ, ଲାଜକୁଳୀ, ଦିନ ରାତି ଘର କାମରେ ଲାଗିଥାଏ, ବାପର ଢେର ସେବା କରେ । ଗାଁ ମାଇକିନିଆମାନେ ତାହାର ଢେର ପ୍ରଶଂସା କରନ୍ତି । ବାରେଇ ପିଲା ଦିନରୁ କମଳୀକୁ ବଡ଼ ଭଲ ପାଏ । ରୋଜ ଦୁଇଓଳି ବିଲକୁ ଯିବା ଆସିବା ବେଳେ କନ୍ୟାଟିକୁ ଚୁହିଁ ଚୁହିଁ ଦେଖେ । ବାରେଇ ବିଲ ବାହୁଡ଼ା ବେଳେ କମଳୀ କଳସୀଟିଏ କାଖେଇ ପାଣି ଆଣି ଯାଉଥିବାର ଦେଖେ । କମଳୀର ଠିକ ସେଇଟା ପାଣିଅଣା ବେଳ, ଘରେ ମାଠିଆରେ ପାଣି ଥିଲେ ବି ସେ ପାଣିଗୁଡ଼ାକ ନାଳରେ ଢାଳଦେଇ କଳସୀ କାଖେଇ ବାହାରି ପଡ଼େ । ଚୂଳଆଡ଼କୁ ଚୁହେଁ; କେହି କୁଆଡ଼େ ନ ଥିଲେ କଣେଇ କଣେଇ ବାରେଇକୁ ଦେଖୁଥାଏ ।

ପାଞ୍ଜିରୁ ଭଲ ଦିନଟିଏ ଦେଖି ମିଶ୍ରେ ରାଘବ ପାଣ୍ଡଙ୍କ ପାଖରେ ପହଞ୍ଚିଲେ । ପାଣ୍ଡ ବୋଧ କରୁଁ କିଛି ଗନ୍ଧ ପାଇ ଗଲେଣି । ଅଖାପାଲି ଖଣ୍ଡେ ପାରି ଦେଇ ମିଶ୍ରଙ୍କୁ ବହୁ ଆଦର ସମ୍ମାନରେ ବସାଇଲେ । ନାସ ଶୁଙ୍ଘାଶୁଙ୍ଘି ଦୁଃଖ ସୁଖ ଚାରି ପଦ ହୋଇଗଲା ଉତ୍ତାରେ ମୂଳକଥା ଆରମ୍ଭ ହେଲା ।

ମିଶ୍ରେ କହିଲେ, "ପାଣ୍ଡେ ! ତୁମ କମଳୀଟିକୁ ବାରେଇକୁ ଦେଲେ ଭଲ ହୁଅନ୍ତା ନାହିଁ ?"

ପାଣ୍ଡେ—ହେଉ ହେଉ, ମୋର ମନା ନାହିଁ ।

ମିଶ୍ରେ—ପାତ୍ରଟି ବଡ଼ ଭଲ, ଖୁବ୍ ଦୁଃଖବୁଝିଆ ।

ପାଣ୍ଡେ—ହେଉ ହେଉ, ମୋର ମନା ନାହିଁ ।

ମିଶ୍ରେ—ଝିଅଟି ଖୁବ୍ ସୁଖରେ ରହିବ ।

ପାଣ୍ଡେ—ହେଉ ହେଉ, ମୋର ମନା ନାହିଁ ।

ମିଶ୍ରେ—ତେବେ ଖର୍ଚ୍ଚପତ୍ର କଥା ।

ପାଣ୍ଡେ—ହଁ ହଁ, ସେଇ ଅସଲ କଥାଟା ଆଗେ ହେଉ । ମୁଁ ସାଫ କହିଦେଉଛି; କନ୍ୟାସୁନା ନଗଦ ହଜାରେ ଟଙ୍କା, ଏଥିରୁ ପାଇସାଏ ମଧ୍ୟାଏ କଡ଼ାଏ ଊଣା ଅଧିକ ନାହିଁ, ବୁଝିଲେ ମିଶ୍ରେ ! ମୁଁ ନ-ନ୍ଥ ଜାଣେ ନାହିଁ, ଯାହା କହିବାର ସଫା କହିଦିଏଁ, ଏଁ, କଣ କହୁଛନ୍ତି ମିଶ୍ରେ ?

ମିଶ୍ରେ ଟିକିଏ ଗୁମ୍ ଖାଇ କହିଲେ, "ଟିକିଏ ବୁଝିସୁଝି ବୋଲନ୍ତୁ, ବାରେଇ ବିଚରା ଏତେ ଦେଇ ପାରିବ କିଁଆ ? ସେ ପାଞ୍ଚଶହ ତକ ଯାଇ ପାରେ ।"

ପାଣ୍ଡେ ଟିକିଏ ତେଜରେ କହିଲେ, "ମୋର ଆଉ ଦୁଇ କନ୍ୟା ସକାଶେ ରୋକଠୋକ ଦୁଇ ହଜାର ପାଇଛି, ସେଇଟା ତ ତୁମ ଆଗର କଥା ଫେର ଏପରି ଅନ୍ୟାୟ କଥା କିଁଆ କହୁଛ ?

ମିଶ୍ରେ କହିଲେ, "ସେ କଥା ଏ କଥା ଢେର ତଫାତ୍ । ସେ ବର ଯୋଡ଼ାକର ବୟସ ଷାଠିଏ ଷାଠିଏ ହୋଇଥିଲା, ଦୁହେଁଯାକ ଥିଲେ ଦୋଜବର । କନ୍ୟା ଯୋଡ଼ିକ ରାଣ୍ଡ ହୋଇ କିପରି ଦୁଃଖରେ ଅଛନ୍ତି, ଦେଖୁ ନାହାନ୍ତି ? ଏଣେ ଦେଖନ୍ତୁ, ବାରେଇ କାଲିକା ପିଲା ।"

ପାଣ୍ଡେ ଖପାଟା ହୋଇ କହିଲେ, "ହୋଇ ହେ ମିଶ୍ରେ ! ତୁମେ ପାଠୁଆ ଲୋକଟା ହୋଇ ଏପରି ଅନ୍ୟାୟ କଥା କିମିତି କହିଲ ହେ ? ଆରେ ସେମାନଙ୍କ କପାଳରେ ଥିଲା, ରାଣ୍ଡ ହେଲେ । ମୁଁ କଣ କହି ଦେଇଥିଲି, ରାଣ୍ଡ ହୁଅ ? ବାପ ଜନ୍ମ ଦେଇଛି ବୋଲି କଣ କର୍ମ ଦେଇଛି ?"

ମିଶ୍ରେ—ଯାଉ ସେ କଥା, ଆପଣଙ୍କ ସାଙ୍ଗରେ ବୋଲବୋଲ କରିବ କିଏ ? ଆପଣ ଛେଉଣ୍ଡିଟିକୁ ଟିକିଏ ଦୟା କରନ୍ତୁ, ସେହି ପାଞ୍ଚଶରେ ମଙ୍ଗି ଯାନ୍ତୁ ।

ପାଣ୍ଡେ—ହକ୍ ବେବହାରରେ ଦୟା ମାୟା କଣ ମିଶ୍ରେ ? ହଁ, ଆଉ ଗୋଟାଏ କଥା ବୁଝ, ମୋର ଆର ଦି ଝିଅଙ୍କର ୯ ବର୍ଷ ଲେଖାଁଏ ହୋଇଥିଲା, ଏ ତ ଚଉଦ ବର୍ଷର ଝିଅ, ଯିମିତି ଯିବ, ଶ୍ମଶାଣରେ ପଶିବ । ଆମ ପନ୍ଥାରେ ଏତେ ବଡ଼ କନ୍ୟା କାହିଁ ? ଯା ପିଛେ ଭାତ ଲୁଗାରେ କେତେ ଟଙ୍କା ସାରିଲଣି ? ପାଞ୍ଚଶ କହୁଛ—ଶିବପୁରର ଧନୁ ପରିଡ଼ା ଓ ଗୋବିନ୍ଦପୁରର ଶାମ ମହାପାତ୍ର ଟଙ୍କା-ଥଳୀ ଧରି ମାସକୁ ତା ଦୁଆରେ ବସି ଗଲେ, ତେତେବେଳେ ପାଞ୍ଚଶରେ ନ ଦେଇ ଏବେ ଦେବି କିଁଆ ? ଆଉ ଗୁଡ଼ାଏ ବଜର ବଜର କର ନା ମିଶ୍ରେ । ହଜାରେ ହେଲା ତ ବସ, ନୋହିଲେ ସିଧା ଦାଣ୍ଡ ଚଢ଼ୁଛି ।

କମଳୀ କବାଟ କଣରେ ବସି ସବୁ କଥା ଶୁଣୁଥିଲା । ସେ ଏତେବେଳେ ସବୁ କଥା ବୁଝିଲାଣି, ଭଉଣୀମାନଙ୍କ ଅବସ୍ଥା ଆଖିରେ ଦେଖୁଛି, ଆଉ ଜଣାଯାଏ, ବାରେଇକୁ ବଡ଼ ଭଲ ପାଏ । ଟଙ୍କା ଦରଦାମ ନ ପଟିବାରୁ ମିଶ୍ରେ ଉଠିଗଲେ । କମଳୀ ଭୁନ ଭୁନ ହୋଇ କାନ୍ଦିଲା । ଦୁଇ ତିନି ଦିନ ହେଲା ଖିଆପିଆ ଛାଡ଼ିଲାଣି, କେବଳ କାନ୍ଦୁଛି । ମା ନାହିଁ, ତା ମନ କଥା ବା କିଏ ବୁଝୁଛି ? ଶେଷରେ ଖୁବ ଗୋଟାଏ ହେମତ ବାନ୍ଧିଲା । ଗାଁର ଲେଖାଯୋଖା ଅପି ଆଈକୁ ଧରିଲା । ମନର କଥା ଫିଟାଇ କହିଲା, "ଆଈ ! ବାପା ଟଙ୍କା ଲୋଭରେ ଗୋଟାଏ ବୁଢ଼ା ବରକୁ ମୋତେ ଦିଅନ୍ତି ଦେଲେ ମୁଁ ପୋଖରୀକୁ ଡେଇଁ ପଡ଼ିବି ।" ଅପି ଆଈ ଆସି ରାଘବ ପାତ୍ରଙ୍କୁ କମଳୀ କଥା କହିବାରୁ ପାଣ୍ଡେ ଖୁବ୍ ଗୋଟାଏ ଖପା ହୋଇ ଝିଅକୁ ଢେର ଗାଳି ଦେଲେ । "ମୁଁ ତୋତେ ଚଉଦ ବରଷ କାଳ ଖୁଆଇ ପିଆଇ

ବତାଇଲା—ଆଜ କଣ ନା ପାଣିକି ଡେଇଁ ପଡ଼ିବୁ ? ମର, ଦେଖେଁ ଭଲ କମିତି ମରିବୁ ? ଚଉଦ ବରଷ-କାଳ ଖାଇଚୁ ପିଇଚୁ, ଘର ଲୁଗା ଦାମ ପାଞ୍ଚଶ ଟଙ୍କା ଗଣି ଥୋ—ତା ବାଦେ ମରିବୁ ତ ମର ଯା, ମୋର ମନା ନାହିଁ ।”

ପାଢେ ରାଗ ମୁହଁରେ ଝିଅଟାକୁ ଗାଳିଗୁଲଜ କଲେ ସିନା, ହେଲେ ରାତିରେ ବସି ଢେର ଚିନ୍ତା କଲେ । ଝିଅଟାର ଖିଆ ପିଆ ନାହିଁ, ମଲାଟା ପରି ପଡ଼ିଚି । ସତକୁ ସତ ମନ ଦୁଃଖରେ ଯେବେ ବୁଡ଼ି ମରିବ, ତେବେ ମୂଳ ବୁଡ଼ିବ ସିନା ! ଖୁବ ଆଖି ଫେରାଇ ଦେଖିଲେ, ଜାତି ଭିତରେ ଦୋଜବର ବା ଅଭିଆଡ଼ା କେହି ନାହିଁ । ଏଣିକି ଝିଅଟାକୁ ପୋଷିବା ଖର୍ଚ୍ଚାନ୍ତ କଥା । ତହିଁ ଆରଦିନ ସକାଳେ ମିଶ୍ରଙ୍କୁ ଡାକି ପଠାଇଲେ । ଆଜି ପାଢେଙ୍କ କଥା ଖୁବ କଅଁଳ—ସାକୁଲ ସାକୁଲି ଭଳି । ଦୁଇଜଣ ବସି ଦରଦାମ ଠିକି କରି ନେଲେ । ସାତଶ ଟଙ୍କାରେ କଥା ଛିଡ଼ିଲା । ବର୍ତ୍ତମାନ ଗାଆଁ ପାଞ୍ଚ ଭଲଲୋକ ଆଗରେ ଷାରେଇ ଦେବ ଦୁଇଶ ଟଙ୍କା, ବାକି ପାଞ୍ଚଶ ବେଦିମୁଣ୍ଡରେ ।

ଷାରେଇ ହିସାବ କରି ଦେଖିଲା, କନ୍ୟା ସୁନା ପଡ଼ିବ ସାତଶ, ବିଭା ଖର୍ଚ୍ଚ ତିନିଶରୁ ଊଣା ନୁହେଁ, ଗାଏ ଦୁଇପଦକୁ ହଜାରେ । ଘର ଭିତରେ ପୋତା ପୋତି କରି ଯାହା ରଖିଥିଲା, ଖୋଳାଖୋଳି କରି କାଢ଼ିଲା, ଟଙ୍କା ପଇସା ମିଶାଇ ୬୭ ୭୪/୭ । ମଲା ଯା, ଆହୁରି ଯେ ତିନିଶ ଲୋଡ଼ା । ଦୁଇଶ ଟଙ୍କା ଘରୁ କାଢ଼ି ଦେଲଣି, ବିଭା ବନ୍ଦ କଲେ ସେ ଦୁଇଶର ଆଶା ଛାଡ଼ିବାକୁ ହେବ । ହେଉ, ପଛକେ ବୁଝାବୁଝି । ଘରେ ଖିହନ ଭାଗ ରଖି ଧାନ ସବୁ ବିକି ଦେଲା । ଭୁଞ୍ଜା ହଳିଆ ବଳଦ ହଳେ ରଖି ଗୋରୁଗୁଡ଼ାକ ବିକି ପକାଇଲା ।

ଆଜି ବିଭା ଦିନ । ବାଜା ପାଲିଙ୍କି କରି ଷାରେଇ ସଞ୍ଜବେଳେ ଶଶୁର ଦୁଆରେ ହାଜର । ବର ପାଲିଙ୍କିରେ ବସିଚି, ପାଢେ ପିଣ୍ଡାରେ ବସି ନାସ ଶୁଙ୍ଘୁଥିଲେ । ଘଡ଼ିଏ ବିତିଗଲା, ପୁରୋହିତ ତିନି ଚାରି ଥର ଡାକିଲେଣି, “ଆସ ପାଢେ ! ବରକୁ ବାଟବରଣ କରି ନିଅ ।” ପାଢେଙ୍କ ମୁହଁରେ କଥା ନାହିଁ । ବୁଢ଼ିଆ ମିଶ୍ରେ କଥାଟା ବୁଝିଗଲେ, କହିଲେ, “ପାଢେ ! ଷାରେଇ ହାତରେ ଟଙ୍କା, ବାଟବରଣ କରି ଘରକୁ ଆଣ, ଟଙ୍କା ଗଣିଦେବ ।” ପାଢେ ଧଡ଼ପଡ଼ ହୋଇ ଉଠି ବରକୁ ବାଟବରଣ କରି ନେଲେ । ଟଙ୍କା ଗଣାଗଣି ପରଖା ପରଖିରେ ଘଡ଼ିଏ ବିତିଗଲା । ମଲା ଯା ! ଛଅଟା ଟଙ୍କା ଚଉଲ ଭେଣ୍ଡି ! ଗାଁ ଲୋକେ ଢେର କୁହାବୋଲା କଲେ, ଜାମିନ୍ ହେଲେ – ବର୍ତ୍ତମାନ ଶୁଭ-କାର୍ଯ୍ୟଟା ସମାଧା ହୋଇଯାଉ, କାଲି ଟଙ୍କା ବଦଳା-ବଦଳି ହେବ । ପାଢେ ଠୋଳରେ ବସିଲେ ନାହିଁ । ଷାରେଇର ଆଉ ବାଟ ନାହିଁ, ସେହିଠାରେ ବରବେଶରେ ବସି ଘରର ପଲଣ ପାଣ୍ଡି ହଳ ସରଞ୍ଜାମ ସବୁ ଗାଁର ମଧୁ ମହାନ୍ତିଙ୍କୁ ଛ ଟଙ୍କାରେ ବିକି ଦେଲା । କୁଆ କା କରିବାକୁ ହାତ ଗଣ୍ଠି ଫିଟିଲା । ପାଢେ ବର ବିଦା କରିବା ପାଇଁ ଦାଣ୍ଡ ଦୁଆରେ ଲହର ପହର ହେଉଛନ୍ତି, ଘରେ ପଶିବାକୁ ନାହିଁ, ଯଦି ବେଳ ଉଛୁର ହୋଇଯାଏ, ବାଜାବାଲା ବେହେରା ଜଳଖିଆ ମାଗିବେ ।

ଷାରେଇ ତ ଘରକୁ ଡାଙ୍ଗୁଆ ମଣିଷ, ବର କନ୍ୟାକୁ ବଧାଇ ନେଉଚି କିଏ ? ଷାରେଇ ଖୁଡ଼ୀ, ମାଉସୀ, ଅପା ପାଞ୍ଚଜଣ ଅଣିଅଙ୍କୁ କହି ଆସିଥିଲା । ଅଢ଼ୁକରାରେ ଗାଁ ମାଇକନିଆମାନେ ବି ଧାଇଁ ଆସି ଷାରେଇ ଘରେ ଭର୍ତ୍ତି ହୋଇ ଯାଇଛନ୍ତି । କନ୍ୟାଟି ଦୋଳମୁକୁଟ ମୁଣ୍ଡରେ କଜଳପାତିଟି ଧରି ନଇଁ ନଇଁ ଆଗରେ ଚାଲିଚି, ଖିଲିକାତିଟିଏ ନଡ଼ିଆଟିଏ ଧରି ବର ପଛରେ । ଭଣ୍ଡାରୁଣୀଟା ଆଗେ ଦେଖି ପକାଇଲା, କନ୍ୟାର ପେଟଟା ବାହାରି ପଡ଼ିଚି, ନସରପସର

ହୋଇ ଗୃଲୁଛି, ଭଲ କର ଗୃଲ ପାରୁନାହିଁ । ଭଣ୍ଡାରୁଣୀ ଆଉ ପାଞ୍ଚ ମାଇକିନିଆଙ୍କ ବାହୁ ଚିପି ଦେଇ ଖାଇଲା ହାତ ଆଙ୍ଗୁଳ ବଢ଼ାଇ କଣ ଦେଖାଇ ଦେଲା । ସବୁ ଅହିଅଯାକ କନ୍ୟାକୁ ଘୁଞ୍ଚି ଅଲଗା ହୋଇଗଲେ, ଟୋକାଗୁଡ଼ାକ ହସି ହସି କେହି ହାପୁ ହାପୁ କର ଆପଣା ଘରକୁ ପଳାଇ ଗଲେ । କେହି କହୁଥାଏ ପାଞ୍ଚ ମାସ, ଜାଣିବା ମାଇକିନିଆମାନେ ଠିକ୍ କରନେଲେ, ସାତ ମାସରୁ ଊଣା ନୁହେ । ହାମଦରଦୀ ମାଉସୀ ପିଉସୀମାନେ ଘରକୁ ଯାଇ କାନ୍ଦିବାକୁ ବସିଗଲେ । ହାପୁ ! ହାପୁ ! କୁଆଡ଼ା ଅଭିଆଡ଼ା ଥିଲା ତ ଥିଲା, ସବସ୍ୱ ସାର ସାତପୁରୁଷକୁ ନରକକୁ ଦେଲା । ଘର ଶୂନଶାନ, ବୀରେଇ ଗାଲରେ ହାତ ଦେଇ କାନ୍ଥକୁ ଆଉଜି ବସିଛି । କମଳୀ କବାଟ ଉହାଡ଼ରୁ ଭିତରେ ଚୁଁ—ଚୁଁ କର ବୀରେଇକୁ ହାତ ଠାର ପାଖକୁ ଡାକିଲା । ପେଟ ଉପରେ ମୁଣିଏ ଟଙ୍କା, ତା ଉପରେ ଯୋଡ଼ାଏ ବେଡ଼ାଣ ଖଦୀ କଷି ଗୁଡ଼ିଆ ହୋଇଛି, ଫିଟାଇ ପକାଇ ଝୁଣ କର ଥଳିଟା ତଳେ ପକାଇ ଦେଲା । ବୀରେଇ ଯେମନ୍ତ ସ୍ୱପ୍ନ ଦେଖୁଛି ସ୍ୱର୍ଗରୁ ଦେବୀଟିଏ ଓହ୍ଲାଇ ଆସିଲେ । ପଗ୍ଚରଲା, "ଏ କଣ ?" କମଳୀ କହିଲା, "ଏ ତୁମ ଟଙ୍କା, ବଳଦ ଗାଈ ପାଣ୍ଠି ପଲଣ ଯାହା ବିକିଛ, ଟଙ୍କା ଦେଇ ଆଗେ ଫେରାଇ ଆଣ, ତା ବାଦେ ଏ ଘରେ ପାଣି ଛୁଇଁବ ।" ବୀରେଇ ଗଣି ଦେଖିଲା, ପୂରା ହଜାରେ ଟଙ୍କା । ପଗ୍ଚରଲା, "ଆଉ ତିନିଶ କଣ ?" କମଳୀ କହିଲା, "ଦୁଇ ଅପାଙ୍କୁ ବିକ ଯେ ଟଙ୍କା ବାପା ପାଇଥିଲା, ଦଶ ମାଣ ବିଲ କିଣିଛି, ବାକି ତିନିଶ ଅଛି । ଅପାମାନେ ବଡ଼ ଦୁଃଖରେ ଅଛନ୍ତି, ଏତକ ଟଙ୍କା ଉଚ୍ଛୁଣିକା ସେମାନଙ୍କ ପାଖକୁ ପଠାଇ ଦିଅ ।"

ଉପର ଓଳି ଗାଁ ଗୋହିରୀ ମଝିରେ ଗ୍ରଡବ ପାଢେ ଡକା ପକାଇ ବାଘୁଆ ପର ଧାଇଁଛନ୍ତି । ବୀରେଇ ଦୁଆରେ ଡକା ପକାଇ ପରସ୍ତେ ଗଡ଼ଲେ, ଖାଲି କହୁଛନ୍ତି, "କମଳୀ ମୋ ବେକରେ ଛୁରୀ ମାରିଲା, ମୋ ଟଙ୍କା ଦେ ।" କମଳୀ କହିଲା, "ବାପା ! ତୋର କି ଟଙ୍କା ? ମୋ ଟଙ୍କା ମୁଁ ଆଣିଛି ।" ଗାଁ ଲୋକେ ଶୁଣି ଧାଇଁଲେ । ସେମାନେ ଗ୍ରଡବ ପାଢ ଉପରେ ଆଗରୁ ବଡ଼ ଖପା ହୋଇଥିଲେ । ତିନି ତିନିଟା ଝିଅ ତିନି ହଜାରରେ ବିକିଲା, ସେମାନଙ୍କ ମୁହଁରେ ମୁଡ଼ି ଗୁଣ୍ଡିଟାଏ ବି ବାଜି ନାହିଁ । ବିଭାବେଳେ ନାନ୍ଦୀମୁଖୀ ଆଉ ତିଳକାଞ୍ଚନ ଦକ୍ଷିଣା ବିଷୟରେ ପୁରୋହିତଙ୍କ ସାଙ୍ଗରେ କିଛି ବୋଲାବୋଲି ହୋଇଥିଲା । ସେ ତ ଆଗରୁ ନିଆଁ ହୋଇଥିଲେ । ପଦଞ୍ଜାଇ ହୁକୁମ ଦେଲେ, "ମାର ଚଣ୍ଡାଳ ମାଉଁସବିକାକୁ ।" ପାଢେ ଦେଖିଲେ ଗ୍ରାମ ଲୋକେ ସମସ୍ତେ ମାର ମାର କହି ଧାଇଁଛନ୍ତି, ତାଙ୍କ ପଟକୁ କେହି ନାହିଁ । ଯୋଡ଼ାଏ ତିନିଟା ଧକା ବିଧା ଗୁମୁଡ଼ା ବି ବାଜିଗଲାଣି । ଟଙ୍କା ମାଗିବେ କଣ, ଘରମୁହାଁ ଧାଇଁଛନ୍ତି । ପିଲାଗୁଡ଼ାକ ହାତତାଳି ଦେଇ ପଛରେ ଧାଇଁଛନ୍ତି, ପାଢଙ୍କ ଉପରେ ଢେଲା ଧୂଳି ବୃଷ୍ଟି ହେଉଛି, ତିନି ଜାଗା ହାବୁଡ଼ ପଡ଼ି ଆଣ୍ଠୁ ଗଣ୍ଠି ଛିଡ଼ି ଗଲାଣି । ପାଢଙ୍କୁ ଦିନବେଳେ ଆଉ କେହି କେବେ ଗାଁ ଦାଣ୍ଡରେ ଦେଖିନାହାଁନ୍ତି । କମଳୀ ନାମରେ ଧନ୍ୟ ଧନ୍ୟ ପଡ଼ିଗଲା ।

ବୀରେଇ ବାହାର ଆସିବା ଦିନଠାରୁ ମାମୁ ମାଈଁ ବଡ଼ ବେହାଲରେ ପଡ଼ିଲେଣି । ଆଗେ ବୀରେଇ ଡରରେ ଚଣ୍ଡୀ ଗୋଠରୁ ଗୋରୁ ବା ମରେଇରୁ ଧାନ ଲୁଚି ଚୋରି କର ବିକୁଥିଲା, ଏବେ ଡାକଫୁକାର ଦିନ-ବେଳେ ବିକି ଦେଉଛି । ବାପ ମା କିଛି କହିଲେ ବାଡ଼େଇବାକୁ ଧାଏଁ, ସେମାନେ ଡରରେ କିଛି କହି ପାରନ୍ତି ନାହିଁ । ପୁଅଟା କଥା କାହାକୁ ବା କହିବେ, ତୁନି ହୋଇ ପଡ଼ିଥାନ୍ତି । ବର୍ଷ ଦୁଇଟା ଭିତରେ ଅଡ଼େଇ ବୋଡ଼ିଆ ପଲଟାରେ ଛଡ଼ା ଲାଞ୍ଜ ଖଣ୍ଡେ ବି ନାହିଁ । ଗଛ ପର ତିନିଟା ମରେଇ ଝାଡ଼ଝୁଡ଼ । ଏଣେ ଗୃଷଟା ବି ସେହିପର । ଶ୍ୱାସ ବେମାରଟା ପାଢଙ୍କୁ ବଳ

ପଡ଼ଲାଣି, ପିଣ୍ଡାରୁ ଓହ୍ଲାଇବାକୁ ନାହିଁ, ବଲବାଡ଼ ଯିବେ କଣ ? ଚଣ୍ଡୀ ତ ମୌଜରେ ଲଗିଛୁ, ବଲକୁ ଯିବ କଣ ? ଗୃଷଗୁଡ଼କ ମୂଲଆଙ୍କ ଜମା, ମୂଲଆ ଦଶ ଗୌଣୀ ବୁଣିବାକୁ ଘେନଗଲେ ତ ପାଞ୍ଚଗୌଣୀ ପଡ଼ଲା ବଲରେ, ଆଉ ପାଞ୍ଚ ଗୌଣୀ ମୂଲଆଣୀର ଢେଙ୍କି-ଶାଳରେ । ପାବଙ୍କ ପାଖରୁ ମୂଲ ନେଇ ଆପଣାର ବଲ ବାହୁ ଯାନ୍ତ । ଏଥିରୁ ଯାହା ଗୃଷ ହେବ, ସମସ୍ତଙ୍କୁ ଜଣା । ବୋଇଲା—

"ଆପେ ଚଷିବୁ ପୂର ଗୃଷ
ଛଡା ଯୋଡା ଅଧା ଗୃଷ,
ମୂଲଆ ଗୃଷ ଫସରଫାସ ।"

ଯେ କେତେ ପୂଞ୍ଜା କଲେଇ ଖଳାକୁ ଆସେ, ଖଜଣାକୁ ନଅଣ୍ଟ ।

ଏତକବେଳେ କଣ ହେଲା କ ଗାଁରୁ ଢେର ବଳଦ ଗାଈ ଗ୍ଚୋର ଗଲା । ଆଜ ଶୁଣାଗଲା ଶାମଲଘର ବଳଦ ଚ୍ଚୋର ତ, କାଲି ପରଡ଼ାଘର ଯୋଡ଼ାଏ ଗାଈ ମିଳୁ ନାହାନ୍ତ । ମାସ ଛଅଟା ମଧରେ ଦଶ ପାଞ୍ଚ ଗଣ୍ଡା ଗୋରୁ ଚ୍ଚୋର ଗଲାଣି । ଗାଁଯାକ ଡକା ପଡ଼ଗଲା । ଚ୍ଚୋର ଧରବା ଲଗି ଗାଁଯାକ ଭୁନ ଭୁନ ବଗ୍ଚୁର କର ଛକଗୁକରେ ରହଗଲେ ।

ଦନେ ଅଧରାତ ବେଳେ ପାଣ୍ଡିଆ ପାବ ପୁଅ ଚଣ୍ଡିଆ ଆଉ ଗ୍ଚର ଜଣ ବାଉର ଟୋକା ଯୋଡ଼ାଏ ବଳଦ ବାନ୍ଧ ଘେନ ବଲ ମଝିରେ ଯାଉଥିଲେ, ଗୋଟାଏ ଜେକ କୁହାଟଟାଏ ମାରଦେଲା, କୋଡ଼ଏ ତରଶ ଜଣ ଗ୍ଚର ପଟରୁ ବେଢ଼ି ଗଲେ । ଆଉ ଚ୍ଚୋର କାହିଁ ଯିବେ ? ଲଙ୍ଗଳ ଦଉଡ଼ାରେ ବାହୁକୁ ବାହୁ ଛନ୍ଦ କାଠମୁଠିଆ କର ବାନ୍ଧ ପକାଇଲେ । ମାଡ଼ ତ ମାଡ଼, ଚ୍ଚୋରଗୁଡ଼ାଙ୍କ ଚେତା ବୁଡ଼ଗଲାଣି । ଚୌକିଆ ଗୋରୁ ସହତ ଚ୍ଚୋରମାନଙ୍କୁ ଥାନାକୁ ଘେନଗଲା । 'ଚ୍ଚୋର ମା ଲାଜରେ ନ କାନ୍ଦେ', ପାବ ପାବାଣୀ ବୁଢ଼ା ବୁଢ଼ୀ ଯୋଡ଼ାକ କବାଟ ଦେଇ ଘର ଭିତରେ ଧକେଇ ଧକେଇ କାନ୍ଦୁଛନ୍ତ । ଗାଁ ଗୋଟାକ ବାଡ଼େ, ହେଲେ ସାରେଇ ମାମୁ ମାଙ୍କଙ୍କର ଝକଳ ସହପାରଲା ନାହିଁ । ସଦର କଚେରକୁ ଧାଇଁଲା, ଟାଣୁଆ ଟାଣୁଆ ଓକଲ ମୁକ୍ତାର ଯୋଡ଼ାଏ ଦେଲା, ଖୁବ୍ ଲଢ଼ିଲା । ବମାଲ ଗ୍ରେପ୍ତାର, ଆଉ କଣ ରକ୍ଷା ଅଛୁ, ଚଣ୍ଡିଆର କଠିନ ପରଶ୍ରମ ସହତ ମିଆଦ ଦେଢ଼ ବର୍ଷ ।

ବପଦ ଯେ ସଞ୍ଜୁଆ ଅନ୍ଧାରପର ଗୃରଆଡ଼ୁ ମାଡ଼-ଆସେ । ଚଣ୍ଡୀ ବସ୍ତାଦରକୁ ପାବେ ମଧୁସାହୁ ମହାଜନକୁ ଗୁଜା ଲେଖିଦେଇ ପାଞ୍ଚଶ ଟଙ୍କା କରଜ ଆଣିଥିଲେ । ପାବଙ୍କ ମରେଇରେ ଢେର ଧାନ ଥିଲା, ପାବେ ସେ ଧାନ ବକଦେଇ ଦେଣା ଶୁଝିବାକୁ ବସିଥିଲେ, ପାବାଣୀ କରବାକୁ ଦେଲେ ନାହିଁ । କହୁଲେ, "ସାରେଇ ବଲରୁ ଯେ ଧାନ ଆସିବ, ଅଲଗା ଅଲଗା ଖଳା ମୁଣ୍ଡରେ ବକ ଦେଇ ଦେଣା ଶୁଝଟ ହେବ । ସାରେଇ ତ ତାହାର ବଲ ଘେନଗଲା, ଗୃଷରୁ ତ ଧାନ ମିଳଲା ନାହିଁ, ଦେଣାଟା ବଢ଼ିଗଲା । କଲନ୍ତର ଆଗରେ ଘୋଡ଼ା ଦଉଡ଼ ପାରେ ନାହିଁ । ମହାଜନ ମୂଳ କଲନ୍ତର ମାମଲା ଖର୍ଚ୍ଚା ବାରଣ ଟଙ୍କାତକ ଡଗ୍ରୀ କର ରଖିଥିଲା, ଏତକବେଳେ ପାବଙ୍କ ଘରଦୁଆର ସହତ ବଲବାଡ଼ ନଲମ କର ନେଇ ପାବ ପାବାଣୀଙ୍କୁ ଘରୁ କାଢ଼ି ଦେଲା । ମଳଆ ଶରକୁଟ ଲୁଗା, ଦେହରେ ଅଧଆଙ୍ଗୁଳଏ ବହଳ ମଳ, ଖଡ଼ଗାର କାଟି ଯାଉଛୁ, ଗେଧ ଗେଧୂଣି ପର ଯୋଡ଼ାକଯାକ ଦାଣ୍ଡ ବରଗଛ ମୂଳରେ ପଡ଼ଛନ୍ତ ।

ସାରେଇ ଶୁଣି ଧାଇଁଲା । ଦେଖିଲା, ମାଙ୍କର ଚେତା ନାହିଁ, ମାମୁ ବେକ ଭଙ୍ଗି ଆଣ୍ଠୁକୁଣ୍ଡେଇ ବସିଛନ୍ତ । ସାରେଇ କାହାରକୁ କଛୁ ନ କହ ମାଙ୍କୁ କୁ ଲାଉ କଲା, ମାମୁ ହାତ ଧର ଧୀରେ ଧୀରେ ଆପଣା ଘରକୁ ଘେନ

ଆସିଲା । ବାରେଇ କମଳୀ ଦୁଇ ଜଣ ଦୁଇ ଗିନା ତେଲ ଲଗାଇ ଦେଇ ଦୁଇଜଣଙ୍କୁ ଗାଧୁଆ ପାଧୁଆ କରାଇ ଦେଇ ଦୁଇଖଣ୍ଡ ଧୋବ ଲୁଗା ପିନ୍ଧାଇ ଦେଲେ । ମାଈଁ ଛଣ୍ଟିରେ ଭାତ ଗଳୁ ନାହିଁ । କମଳୀ ଅଧସେରେ ସରକ ଦୁଧରେ ମୁଠାଏ ଭାତ ଚକଟି ପିଆଇ ଦେଲା ।

———

## ଡାକ ମୁନ୍‌ସି

ହରି ସିଂହ ସରକାରୀ କର୍ମରେ ବାହାଲ ହେବା ଦିନଠାରୁ ମଫସଲର ସାନ ବଡ଼ ଅନେକ ପୋଷ୍ଟଅଫିସକୁ ବଦଳି ହୋଇ କର୍ମ ଇଲ୍ଲାମ କରି ଆସିଲେଣି । ଆଜକୁ ଦଶ ବରଷ ହେଲା କଟକ ସଦର ପୋଷ୍ଟ ଅଫିସରେ ବରାବର ରହି କର୍ମ କରୁଛନ୍ତି । ଭଲରୂପେ କର୍ମ କରିବାରୁ ପ୍ରମୋଶନ ପାଇଲେଣି । ବର୍ତ୍ତମାନ ସେ ହେଡ୍ ପିଅନ, ଦରମା ମାସକୁ ନଅ ଟଙ୍କା । କଟକ ସହରରେ ସବୁ ଜିନିଷ କିଣା । ନଆଁ ଟିକିକପାଇଁ ଦିଆସିଲାଇଟା ମଧ୍ୟ ନ କିଣିଲେ ନୁହେ । ଅତି କଷ୍ଟରେ ଚଳି ସୁଦ୍ଧା ମାସକୁ ପାଞ୍ଚ ଟଙ୍କାରୁ ଊଣା ଖରଚ ପଡ଼େ ନାହିଁ । କୌଣସିରୂପେ ଘରକୁ ଚାରିଟଙ୍କା ନ ପଠାଇଲେ ନୁହେ । ଘରେ ସ୍ତ୍ରୀ ଆଉ ଆଠ ବରଷର ପୁଅ ଗୋପାଳ । ମଫସଲ ଜାଗା, ଚାରି ଟଙ୍କାରେ କୌଣସିରୂପେ ଟାଣ ଟୁଣ ହୋଇ ଚଳିଯାଏ । ସେଥିରୁ ପଇସାଏ ଊଣା ହେଲେ ଅଚଳ । ଗୋପାଳ ଅପର ପ୍ରାଇମେରୀ ସ୍କୁଲରେ ପଢ଼େ । ସ୍କୁଲରେ ଦରମା ମାସକୁ ଦୁଇଅଣା । ସ୍କୁଲ ଦରମା ଛଡ଼ା ଆଜି ବହି ଖଣ୍ଡେ, କାଲି ସ୍ଲେଟ କାଗଜ ଏ ସବୁ ଜିନିଷ କିଣିବାକୁ କେବେ କେବେ କିଛି କିଛି ବେଶି ଖରଚ ପଡ଼େ । ଏପରି ଉପୁରି ଖରଚ ପଡ଼ିଗଲେ ସେ ମାସରେ ଭାରି କଷ୍ଟ । ଦିନେ ଦିନେ ବୁଢ଼ାକୁ ଉପାସ ରହିଯିବାକୁ ହୁଏ । ଉପାସ ହେଉ ପଛେ, ମୋ ଗୋପାଳଟି ପଢ଼ୁ ।

ଦିନେ ପୋଷ୍ଟମାଷ୍ଟର ସର୍ଭିସ୍ ବୁକ୍ ଦେଖି କହିଲେ, "ହରି ସିଂହ, ତୁମ୍ଭର ପଞ୍ଚାବନ ବର୍ଷ ବୟସ ହୋଇ ଗଲା, ପେନ୍‌ସନ୍ ନେବାକୁ ହେବ, ଆଉ ଚାକିରି କରି ପାରିବ ନାହିଁ ।" ସିଂହଙ୍କ ମୁଣ୍ଡରେ ତ ବଜ୍ର ଭାଙ୍ଗି ପଡ଼ିଲା । କଣ କରିବେ, ସଂସାର ଚଳିବ କିପରି ? ସଂସାର ଯାହାହେଉ, ଗୋପାଳର ଯେ ପଢ଼ା ବନ୍ଦ । ଗୋପାଳ ଜନ୍ମଦିନଠାରୁ ସିଂହେ ମନ ମଧ୍ୟରେ ଭାରି ଗୋଟାଏ ଉଚ୍ଚ ଆଶା ପୋଷିଛନ୍ତି—ଗୋପାଳ ମଫସଲ ପୋଷ୍ଟଅଫିସରେ ସବ୍‌ପୋଷ୍ଟମାଷ୍ଟର ହେବ—ଅନ୍ତ ନିକୁଛରେ ଭିଲେଜ୍ ପୋଷ୍ଟମାଷ୍ଟର ହେବ । ମାତ୍ର ଟିକିଏ ଇଂରାଜୀ ନ ଜାଣିଲେ ଛୋଟବଡ଼ ଚାକିରିଟା ମିଳିବା ମୁସ୍କିଲ । ମଫସଲରେ ସୁବିଧା ନାହିଁ, କଟକ ଆଣି ଇଂରାଜୀ ପଢ଼ାଇବାକୁ ହେବ । ଚାକିରୀ ଗଲେ ଛୋଟବଡ଼ ଆଶାରୁ ଏକାବେଳକେ ନିରାଶ । ସବୁ ବେଳେ ସେହି କଥା ଭାବି ଭାବି ଦେହଟା କଳାକାଠ ପଡ଼ିଗଲାଣି । ଦିନେଦିନେ ରାତିରେ ନିଦ ହୁଏ ନାହିଁ, ଭାବି ଭାବି ରାତି ପାହିଯାଏ ।

ସିଂହଙ୍କ ଉପରେ ପୋଷ୍ଟମାଷ୍ଟର ବାବୁଙ୍କର ଭାରି ମେହେରବାନ । ବସାରେ ନୂକରି ଚାକର ଥିଲେ ମଧ୍ୟ ସରକାରୀ କାମ ସାରି ସଞ୍ଜବେଳେ ସିଂହେ ବାବୁଙ୍କ ବସାରେ ଦୁଇ ଚାରିଟା କାମଦାମ କରିଦେଇ ଆସନ୍ତି । ସଞ୍ଜବେଳେ ଗୋଟାଏ ଆରାମ୍ ଚୌକିରେ ପଡ଼େ ବାବୁ ଇଂରାଜୀ ଖବରକାଗଜ ପଢ଼ିବାବେଳେ ସିଂହେ ଯେଉଁ ମିଠା କଡ଼ା ଗୁଡ଼ାଖୁ ଚିଲମେ ସାଜି ଦିଅନ୍ତି, ସେପରି କେହି ଜାଣେ ନାହିଁ । ଦିନେ ସଞ୍ଜବେଳେ ସିଂହେ ଭଲ କରି ଗୁଡ଼ାଖୁ ଚିଲମେ ସାଜି ଆଣି ଭଲ କରି ଚିଲମଟା ଫୁଙ୍କି ଦେଲେ । ବାବୁଙ୍କ ମୁହଁରୁ ଇଞ୍ଜିନ୍ ପାଇପରୁ ବାହାରିଲା ପରି ଧୂଆଁ ଗୁଡ଼ାକ ଭକ୍ ଭକ୍ କରି ବାହାରୁଛି, ଟିକିଏ ଟିକିଏ ଆଖି ବୁଜି ଆସିଲାଣି । ସିଂହେ ବୁଝି ନେଲେ ଏହିଟା ଠିକ୍ ସମୟ । ସିଂହେ ବାବୁଙ୍କ ଗୋଡ଼ତଳେ ଦଣ୍ଡବତ ହୋଇ ହାତ ଯୋଡ଼ି ଖୁବ୍

ଭକ୍ତିରେ, ଖୁବ୍ ବିନୟରେ, ଖୁବ୍ ଧୀରେ, ଖୁବ୍ ମିଠା କଥାରେ ଆପଣାର ଦୁଃଖ ହାଲ ଚୁମ୍ବକ ଚୁମ୍ବକ ସମସ୍ତ କଥା ଜଣାଇଲେ । ଗୋପାଳ ସମ୍ବନ୍ଧରେ ତାଙ୍କର ଯେଉଁ ଉଚ୍ଚ ଆଶା, ତାହା ମଧ୍ୟ ଜଣାଇବାକୁ ପାସୋରିଲେ ନାହିଁ । ବାବୁ ସେହିପରି ନୟନ ମୁଦ୍ରିତାବସ୍ଥା—ଧୀର ଗମ୍ଭୀର ଭାବରେ କହିଲେ, "ଆଚ୍ଛା, ଦରଖାସ୍ତ ଖଣ୍ଡେ ଲେଖି ଆଣ ।" ବାବୁଙ୍କର ସାହସ ଥିଲା, କାରଣ ପୋଷ୍ଟେଲ ଇନ୍‌ସ୍ପେକ୍ଟର ବା ସୁପରିଣ୍ଟେଣ୍ଡେଣ୍ଟ୍ ବାବୁମାନେ ଆସିଲେ ପୋଷ୍ଟମାଷ୍ଟର ବାବୁଙ୍କ ବସାରେ ରହନ୍ତି । ଉପର ହାକିମମାନଙ୍କ ମନସ୍ତୁଷ୍ଟି ପାଇଁ ଖାଦ୍ୟ-ପେୟ ବିଷୟରେ ଯେପରି ଆୟୋଜନ ହେବାର ଉଚିତ, ସେଥିର ତ୍ରୁଟି ହୁଏ ନାହିଁ । ସେ ସବୁରେ ପୋଷ୍ଟମାଷ୍ଟର ବାବୁ 'ହରି ସିଂ,ହରି ସିଂ' କରି ଦଶଥର ପାଟି କରୁଥିବାର ଶୁଣାଯାଏ । ହରି ସିଂହେ, ପୁରୁଣା ଲୋକ, ଢେର ଢେର ହାକମହୁକୁମା ଅମଲ କଲେଣି । କାହାର କି ରକମ ମିଜାଜ, କିଏ କାହିଁରେ ଖୁସି, ଜାଣନ୍ତି । ସେ ଦିନ ଅଧରାତିଯାଏ ସିଂହଙ୍କୁ ବାବୁଙ୍କ ବସାରେ ରହିବାକୁ ହୁଏ । କାରଣ ଓଡ଼ିଶାର କଦର୍ଯ୍ୟ ହାଓ୍ୱା ହେତୁରୁ କେହି ବାବୁ ହଠାତ୍ ପୀଡ଼ିତ ହୋଇ ବାନ୍ତିଫାନ୍ତି କରି ପକାଇଲେ ହରି ସିଂହେ ସୋଡ଼ା କାଗଜଲେମ୍ବୁ ପ୍ରଭୃତି ହାଜର କରାଇ ବାବୁଙ୍କୁ ସମ୍ଭାଳି ନିଅନ୍ତି । ବାବୁମାନେ ଆରାମରେ ଶୟନ କଲା ଉତ୍ତାରେ ସିଂହେ ଅଧରାତିରେ ବସାକୁ ଯାଇ ଆପଣା ପାଇଁ ରୋଷେଇ କରନ୍ତି । ଏହି ସୂତ୍ରରେ ସିଂହେ ଉପରିବାଲା ହାକିମମାନଙ୍କ ଠାରେ ପରିଚିତ ।

ହରି ସିଂହଙ୍କ ଦରଖାସ୍ତ ପିଠିରେ ପୋଷ୍ଟମାଷ୍ଟର ବାବୁ ଭଲ ରୂପେ ସୁପାରିସ କରି ସଦରକୁ ପଠାଇ ଦେଲେ, ଅଳ୍ପଦିନ ମଧ୍ୟରେ ଏକଷ୍ଟେନ୍‌ସନ୍ ହୁକୁମ ପହଞ୍ଚିଲା । ସିଂହେ ତ ମହାଖୁସି, ଏହି ଖୁସି ଖବରଟା ଗାଁକୁ ଲେଖି ପଠାଇଲେ । ବର୍ତ୍ତମାନସର୍ବସ୍ୱ ଲୋକ ଉପସ୍ଥିତ ସୁଖ ବା ଦୁଃଖରେ ବିମୋହିତ ହୋଇ ପଡ଼-ଆନ୍ତି । ଭବିଷ୍ୟତ୍ ବିଧାତା ତାଙ୍କ ପାଇଁ କଣ ବିଧାନ କରୁଛନ୍ତି, ଟିକିଏ ଥିରେ ହେଲେ ଅନାଇବା ଦରକାର ମଣନ୍ତି ନାହିଁ । ସିଂହଙ୍କର ଏତେ ବଡ଼ ଆନନ୍ଦଟା ପାଣିଫୋଟକା ପରି ଫାଟିଗଲା । ଘରଠାରୁ ଚିଠି ଆସିଲା, ଗୋପାଳ ମାଆର ସନ୍ନିପାତ ରୋଗ, ଜୀବନର ଆଶା ନାହିଁ । ସିଂହେ ପୋଷ୍ଟମାଷ୍ଟର ବାବୁଙ୍କୁ ଚିଠିଖଣ୍ଡ ଦେଖାଇଲେ । ବାବୁ ବଡ଼ ଦୟାଳୁ ଲୋକ, ତତ୍-କ୍ଷଣାତ୍ ଛୁଟି ଦେଲେ । ସିଂହେ ଏକନିଶ୍ୱାସରେ ଘରକୁ ଧାଇଁଲେ, ଘରେ ପହଞ୍ଚି ଯାହା ଦେଖିଲେ, ତାଙ୍କ ଆଖିର ଜ୍ୟୋତି ହଜିଗଲା । ଜଗତଟା ଯେମନ୍ତ ଅନ୍ଧକାରମୟ । ବୁଢ଼ୀର କଥା ଶେଷ ପ୍ରାୟ ହେଲାଣି । ସ୍ୱାମୀଙ୍କୁ କ୍ଷୀଣ ଦୃଷ୍ଟିରେ ଭଲକରି ଅନାଇଲେ, ଦୁଇ ହାତ ଅଳ୍ପ ଉଠାଇ ଦଣ୍ଡବତ କଲେ, ସ୍ୱାମୀଙ୍କ ଗୋଡ଼-ଧୂଳି ନେବାକୁ ଠାରିଲେ । ସେହି ଧୂଳି ଟିକକ ପାଇଁ କି ଅନାଇ ରହିଥିଲେ ? ସବୁ ଶେଷ ହେଲା ! ସିଂହଙ୍କର ପ୍ରକୃତ ଗୃହ ଭଗ୍ନ ହେଲା । ସେ ଘରର ମାଲମତା ଦୁଇ ଖଣ୍ଡ ବିକି ପିଲାଟିକୁ ଧରି କଟକ ଚାଲିଆସିଲେ ।

ଗୋପାଳ ମାଇନର ପଢ଼େ । ସିଂହଙ୍କର ବର୍ତ୍ତମାନ ଭାରି କଷ୍ଟ, ପେନ୍‌ସନ୍ ହୋଇ ଗଲାଣି, ଭାରି ଅଚଳ । ଘରେ ଲୋଟାକଂସା ଯାହା ଦୁଇଖଣ୍ଡ ଥିଲା, ବିକିବାକି ଖାଉଛନ୍ତି; ଚାକିରିରେ ଥିବାବେଳେ ଅତି କଷ୍ଟରେ ମାସକୁ ଦୁଇ ଚାରି ଅଣା ସଞ୍ଚି ସେଭିଂସ୍ ବେଙ୍କରେ କିଛି ରଖିଥିଲେ, ଗୋପାଳ ପଛରେ ମାଇନର ପଢ଼ାରେ ସବୁ ସାରିଲେ । ସିଂହଙ୍କର ପ୍ରବଳ ଆଶା, ଗୋପାଳ ପାସ କଲେ ସବୁ କଷ୍ଟ ମେଣ୍ଟିବ । ଗୋପାଳ ମଧ୍ୟ କେତେଥର ଭରସା ଦେଇ କହିଲାଣି, "ବାପା, ଧାର କରଜ କରି ମୋତେ ପଢ଼ାଅ, ଚାକରି କରି ଶୁଝିବି ।"

ହରି ସିଂହଙ୍କର ଆର୍ତ୍ତ ପ୍ରାର୍ଥନା ଦୀନବନ୍ଧୁ ପ୍ରଭୁ ଭଗବାନ୍ ଶୁଣିଲେ । ଗୋପାଳ ମାଇନର ପାସ କଲା । ସିଂହଙ୍କର ଆନନ୍ଦର ସୀମା ନାହିଁ । ସେହି ପୁରୁଣା

ପୋଷ୍ଟମାଷ୍ଟର ବାବୁ ଅଛନ୍ତି, ସିଂହେ ତାଙ୍କୁ ଧରି ବହୁତ ନିବେଦନ କଲେ । ଉପରି ହାକମମାନଙ୍କର ମଧ୍ୟ କିଛି ଅନୁଗ୍ରହ ଥିଲା, ଗୋପାଳ ଏକାବେଳକେ ମଫସଲ ମହାମପୁର ପୋଷ୍ଟ ଅଫିସରେ ସବ୍ ପୋଷ୍ଟମାଷ୍ଟର ନିଯୁକ୍ତ ହେଲେ, ବେତନ ମାସକୁ କୋଡ଼ିଏ ଟଙ୍କା । ବର୍ତ୍ତମାନ ସଦର ପୋଷ୍ଟଅଫିସରେ ଚାରିମାସ କାମ ଶିଖି ମଫସଲ ଯିବେ ।

ହରି ସିଂହଙ୍କର ଆନନ୍ଦର ସୀମା ନାହିଁ; ଅନବରତ ପ୍ରଭୁଙ୍କୁ ଅନାଇ ମୁଣ୍ଡିଆ ମାରି ମାରି ଜଣାଉଛନ୍ତି, "ଧନ୍ୟ ପ୍ରଭୁ ତୁମ୍ଭର କରୁଣା, ଦୁଃଖୀର ଗୁହାରି ଶୁଣିଲ ।" ଚାକିରି ଖବର ଆସିବା ଦିନ ରାତିରେ ବୁଢ଼ା ସିଂହେ ନିରୋଳାରେ ବସି ଢେର କାନ୍ଦିଲେ । ହାୟ ! ଆଜି ବୁଢ଼ୀ ଥିଲେ କେଡ଼େ ଆନନ୍ଦଟାଏ ହୁଅନ୍ତେ, ତାଙ୍କ ଗୋପାଳ ହାକମି ଚାକିରି ପାଇଲା, ଆନନ୍ଦ ଉତ୍ସବରେ ଗଡ଼ି ଯାଉଥାନ୍ତେ । ହାୟ ! ଅଭାଗୀ କପାଳରେ ଦେଖିବାକୁ ନାହିଁ । ହେଉ ହେଉ, ଗୋପାଳ ତ ହାକମ ହେଲା । ପ୍ରଭୁ ଗୋପାଳଟିକୁ ରକ୍ଷାକରନ୍ତୁ ।

ଗୋପାଳ ପ୍ରଥମ ମାସ ଦରମାଟା ପାଇ ବୁଢ଼ା ହାତରେ ଦେଲେ । ବୁଢ଼ାର ଆନନ୍ଦ କହିଲେ ନ ସରେ, ଗୋଡ଼ ତଳେ ପଡ଼ୁ ନାହିଁ । ପୁଅ ହାକମ; ଏତେ ଗୁଡ଼ାଏ ଟଙ୍କା ମାସକ ମଧ୍ୟରେ ଆଣିଲା । ଟଙ୍କା-ଗୁଡ଼ାକ ଚାରି ପାଞ୍ଚ ଥର ଗଣି ଅଣ୍ଟିରେ ବାନ୍ଧି ଶୋଇଲେ । ଆରଦିନ ସକାଳେ ଲଣ୍ଡଭଣ୍ଡ ହୋଇ ବଜାରକୁ ଧାଇଁଲେ । ଜୋତା, କୁରୁତା, ଲୁଗା ଯେତେ ଯାହା ଦରକାର କିଣାଗଲା । ଗୋପାଳ ଯେ ହାକମ ହେଲଣି, ସେ କଣ ଯେ·ସେ ଲୁଗା ପିନ୍ଧିବ ? ଭେକ ଦେଖି ସିନା ଭିକ । ସେହିପରି ପୋଷାକ ଲୋଡ଼ା ।

ଏଣେ ଗୋପାଳବାବୁ ଅଫିସରେ ପାଞ୍ଚଜଣ ବାବୁଙ୍କ ସାଙ୍ଗରେ ବସି ଇଂରାଜୀ ଲେଖନ୍ତି । ବାବୁମାନଙ୍କ ସହିତ ସବୁବେଳେ କାରବାର, ସମସ୍ତେ ଡାକନ୍ତି 'ଡାକ ମୁନସି ବାବୁ', ପ୍ରକୃତ ନାମ ଗୋପାଳଚନ୍ଦ୍ର ସିଂହ । ଏଣେ ବସାରେ ଆସି ଦେଖନ୍ତି କଣ, ନା ବୁଢ଼ାଟା ଧୂଳିଆ ଲୁଗା ଖଣ୍ଡେ ପିନ୍ଧି କାମରେ ଲାଗିଛି; ଗୋପାଳ କିମିତି ଭଲ କରି ଦିଟା ଖାଇବ—ଗୋପାଳ ଗାଧୋଇ ଗଲା, ଓଦା ଲୁଗା ଶୁଖି ନାହିଁ—ପିଲାଟା କାମ କରି କରି ଧନ୍ଦି ଗଲାଣି, ଏହି ସମସ୍ତ ଦିନ ରାତି ଚିନ୍ତା । ଆଗେ ବୁଢ଼ା ସିଂହେ ବେଳେ ବେଳେ ହରିନାମ କରୁ-ଥିଲେ, କିଛି କିଛି ଧର୍ମ କର୍ମ କରୁଥିଲେ, ଏବେ ଗୋପାଳ ବାବୁଙ୍କ ପାଇଁ ସବୁ ଭୁଲିଗଲେଣି । ବୋଧ କରୁ, ହରି ଏ ସବୁ ଦେଖି ବୁଢ଼ା ଉପରେ ଖପା ହୋଇ ଗଲେଣି—ଧମକାଇ କହିଲେ, 'ଅରେ ନିର୍ବୋଧ ଏ କଣ ରେ ! ଆଚ୍ଛା ବୁଝିବୁ !'

ଏଣିକି ଗୋପାଳ ବାବୁଙ୍କର ଭାବ କିଛି କିଛି ବଦଳି ଗଲାଣି । ଏବେ ବାପକୁ ଦେଖିଲେ ମିଛଟାରେ ହେଲେ ରଗି ରଗି ସିଂ ସିଂ ହୁଅନ୍ତି । ଏଟା ମୂର୍ଖ, ଇଂରାଜୀ ଜାଣେ ନାହିଁ—ମୂଳିଆ—ମଇଳା ଲୁଗା ପିନ୍ଧିଥାଏ, ଏଟାକୁ ବାପ ବୋଲି ଡାକିବି, ଲୋକେ କଣ କହିବେ ! ସେ ଦିନ ଶିକ୍ଷିତା କେତେ ଜଣ ସ୍ତ୍ରୀଲୋକ ସେମିଜ ପିନ୍ଧି ପୋଷାକ ପିନ୍ଧି ଠିଆ ହୋଇଥିଲେ—ବୁଢ଼ାଟା ଦେହରେ କୁରୁତା ନାହିଁ, ସେମାନଙ୍କ ଆଗ ଦେଇ ଚାଲିଗଲା । କି ଲଜ୍ଜା, କି ଲଜ୍ଜା ! ଏଟାକୁ ବସାରୁ ନ ତଡ଼ିଲେ ଆଉ ଇଜ୍ଜତ ରହିବ ନାହିଁ ।

ଦିନେ ଡାକ ମୁନସି ବାବୁ ବାପକୁ କହିଦେଲେ, "ଦେଖ, ତୁମେ ମୋର କିଛି ଉପକାର କରି ନାହିଁ, ଇଚ୍ଛା ହେଲେ ବସାରେ ରହ, ନୋହିଲେ ଚାଲିଯାଅ । ଆଉ ଦେଖ, ବାବୁମାନେ ଆମ ଦୁଆରକୁ ଆସିଲେ ତୁମେ ଘରୁ ବାହାରିବ ନାହିଁ ।" ଗୋପାଳ କଥା ଶୁଣି ବୁଢ଼ାର କାନ ମୁଣ୍ଡ ଭାଁ ଭାଁ କଲା, ଗୁମ୍ ହୋଇ ବସି ପଡ଼ିଲା । କାହାକୁ କହିବ ? ଘୂଅ କଥା; ଅଜାଗା ଘା ଦେଖି ହୁଏ ନାହିଁ, ଦେଖାଇ ହୁଏ ନାହିଁ । ଯାହାକୁ ମନର କଥା କହନ୍ତା, ସେ ଯାଇଛି । ବୁଢ଼ୀ

କଥା ମନରେ ପଡ଼ିଲା, ତେବେ କାନ୍ଦିଲା, ଗୁରୁଆଡ଼କୁ ଅନାଇଲା କେହି ଭରସା ନାହିଁ । ବୁଢ଼ା ଦୁଃଖ ବେଳେ ବୁଢ଼ୀ କଥା ମନରେ କରେ, ସୁଖ ବେଳେ ମନରେ କରେ । ମୁହିଁ ପୋଷିଲା, ଆଉ କାନ୍ଦିଲା ନାହିଁ, ଗୋପାଳର କାଳେ ଅମଙ୍ଗଳ ହେବ ।

ଗୋପାଳ ବାବୁ କାଲି ସକାଳେ ମଫସଲର କାମ ଜାଗାକୁ ଯିବେ, ବୁଢ଼ାକୁ ଜଣାଇ ନାହାନ୍ତି । ସକାଳୁ ଉଠିଲେ, ଅବଜ୍ଞାଭାବରେ କହିଲେ, "ଏ ବାବା, ମୁଁ ମଫସଲ ବାହାରିଲି । ଏହି ଜିନିସପତ୍ର ସବୁ ନେଇ ଆସ । କେତେ ବା ଜିନିସ, ବୁଝି ଖବରଦାର, ମୁଲିଆ କରିବ ନାହିଁ, କଲେ ତୁମେ ଜାଣ, ମୁଁ ପଇସା ଦେବି ନାହିଁ ।" ବାବୁ ପୋଷାକ ପିନ୍ଧି କାଖରେ ଛତା ଯାକି ବାଡ଼ି ଧରାଇ ଧରାଇ ଚାଲିଗଲେ । ବୁଢ଼ା କଣ କରିବ, ସବୁ ଜିନିସ ଠୁଳାଇ ପୁଳାଇ ଗୋଟାଏ ଗଣ୍ଠିରି ବାନ୍ଧି ମୁଣ୍ଡାଇଲା । ଚାଲି ପାରୁ ନାହିଁ, ଦେହରେ ବଳ ନାହିଁ, ଆଖିରୁ ବେଳେ ବେଳେ ପାଣି ବହି ପଡ଼ୁଛି, ଦଶ ଜାଗା ବସି ଉଠି ସଞ୍ଜ ସରିକି ନିଜାମପୁରରେ ପହଞ୍ଚିଲା । ଡେରି ହେବାରୁ ବାବୁ ଗାଳିଗୋଟାଏ କଲେ, ବୁଢ଼ା ଗୁମ୍ ହୋଇ ବସି ଥକା ମେଣ୍ଟାଉଥାଏ ।

ବାବୁ ସକାଳ ସଞ୍ଜ ଅଫିସକୁ ଯାନ୍ତି, ବୁଢ଼ାଟା ମୁହିଁ ବୁଜି ବସାରେ କାମ ପାଇଟିରେ ଲାଗିଥାଏ । ବାପ ପୁଅ ଦୁଇଜଣ ଏକ ଜାଗାରେ ବସି ଦୁଇଟା ସୁଖ ଦୁଃଖ କଥା ହେଉଛନ୍ତି, ଏ କଥା କେହି କେବେ ଦେଖିନାହିଁ । ଡାକମୁନସି ହେଲେ ମଫସଲର ଗୋଟାଏ ହାକିମ । କେତେ ଲୋକ ଆସି ଦଣ୍ଡବତ କରି ଯାଉଛନ୍ତି, ମୂର୍ଖ ବୁଢ଼ାଟା କଣ ଜାଣେ ଯେ ତା ସାଙ୍ଗରେ କଥା କହିବେ !

ବୁଢ଼ା ଦେହରେ ମଫସଲର ପାଣି ଚଳିଲା ନାହିଁ, ଜର ହେଲେ ଖୁଁ ଖୁଁ କରି କାଶେ, ସେ କାଶଟା ରାତିକି ବେଶି ହୁଏ । ବାବୁ ଶୋଇବାରେ ହରକତ ହେଲେ । ପିଅନକୁ ହୁକୁମ ଦେଲେ, "ବୁଢ଼ାଟାକୁ କଅାବାଡ଼ରେ ଫୋପାଡ଼ି ଦେଇ ଆସ ।" ସେ ପିଅନଟା ମୂର୍ଖ; ଇଂରାଜୀ ପଢ଼ି ନାହିଁ, ତାର ଗୋଟାଏ ଦେଶୀ ହୃଦୟ ଅଛି, ଭାବିଲା—'କଣ ଏ ? ବୁଢ଼ା-ରୋଗୀଟିକୁ କଅା-ବାଡ଼ରେ ଶୁଆଇ ଦେବ ?' ଦିନେ ବୁଢ଼ାର ଭାରି ଜର, ତିନିଦିନ ଖାଇ ନାହିଁ, ଅଧରାତି, ଅନ୍ଧାର, ଥଣ୍ଡା ପାଇ ବୁଢ଼ାର କାଶ ବଳି ପଡ଼ିଲା । ବାବୁ ତ ଭାରି ଖପା, ବୁଢ଼ା ମୁଣ୍ଡରେ ଦୁଇଟା ଇଂରାଜୀ ଧକ୍କି ମାରିଲେ, ବିଛଣାପତ୍ର ବାହାରକୁ ଫୋପାଡ଼ି ଦେଲେ । ବୁଢ଼ା ଗାଁକୁ ପଳାଇଲା ।

ପାଖରେ ଥିବା ଖୁବ୍ ଭଲ ଲୋକଙ୍କଠାରୁ ଶୁଣା ଯାଉଛି, ଗୋପାଳ ବାବୁଙ୍କ ମନ ସେହିଦିନଠାରୁ ବଡ଼ ଖୁସି । ଆଉ ଏଣେ ବୁଢ଼ା ଗାଁକୁ ଆସି ତାହାର ଯେଉଁ ଦୁଇ ମାଣ ଜମି ଥିଲା ଭାଗରେ ଲଗାଇଦେଲା, ଘରେ ବର୍ଷି ଧାନ ପାଏ । ପେନସନ୍ ଟଙ୍କାରେ ଲୁଗା-ପଟା, ଲୁଣ ତେଲ ଖର୍ଚ୍ଚ ଚଳେ । କାଶ ହେଲା ଦିନଠୁଁ ବୁଢ଼ା ଟିକିଏ ଟିକିଏ ଅଫିମ ଧରିଛି । ସବୁ ଖର୍ଚ୍ଚ ଚଳେ, ଘରଠାରେ ପିଣ୍ଡାରେ ବସି ହରିନାମ କରେ । ଉଭୁଣି ବାପ ପୁଅ ଦୁହେଁ ଖୁସି । ପରର ସୁଖ ଦେଖି ପାଠକ ମହାଶୟ ଖୁସି ହୁଅ ।

———

## ସୁନା ବୋହୂ

ରାମହରି ପଟ୍ଟନାୟକେ ଥିଲେ ପୋଲିସର ଦାରୋଗା । ସାଲେପୁର ପ୍ରଗନା ଗୋପୀନାଥପୁର ଗାଁରେ ଜଣେ ଜଣାଶୁଣା ଲୋକ । ଭଲ ମନ୍ଦ କଥା ପଡ଼ିଲେ ଆଖପାଖ ଦଶଖଣ୍ଡ ଗାଁ ଲୋକ ପରାମର୍ଶ ଲୋଡ଼ିବାକୁ ତାଙ୍କ ପାଖକୁ ଧାଇଁ ଆସନ୍ତି । ପଞ୍ଚାୟତ ଲୋକେ ଚାହିଁ ବସିଥାନ୍ତି, ରାମହରି ବାବୁ ଆସିବେ, ତେବେ କଥା ପଡ଼ିବ । ବାବୁ ପେନସନ୍ ପାଇ ପାଞ୍ଚ ବର୍ଷଯାଏ ଘରେ

ବସିଥିଲେ । ତାଙ୍କ ବିଯୋଗ ବେଳକୁ ପୁଅ ଶିବଚନ୍ଦ୍ରର ବୟସ ଦଶ । କନ୍ୟା ଚମ୍ପା ଦେଈକୁ ପାଞ୍ଚ ବର୍ଷ ପଶିଥିଲା । ବିଧବା ବିମଳା ଦେଈ ବଡ଼ ଦୟାବନ୍ତୀ, ବଡ଼ ହେଙ୍ଗୁଳୀ, ବଡ଼ ସରଳା ଥିଲେ । ଏବେ ବଡ଼ ଦୁଃଖରେ ପଡ଼ି ବଡ଼ ଘରଣୀ ହୋଇ ପଡ଼ିଲେଣି । ପିଲା ଦିଓଟି ଆଉ ଘରକରଣା ସମ୍ଭାଳିସୁମ୍ଭାଳି ରଖିଥିଲେ । ରାମହରି ବାବୁଙ୍କର ଦରମା ଉପୁରି ସୁପୁରି ମିଶାଇ ବେଶ ଦଶଟଙ୍କା ରୋଜଗାର ଥିଲା । ହେଲେ କଣ ହେଲା, ମଣିଷଟା ଥିଲେ ବଡ଼ ଯାହାଖର୍ଚ୍ଚୀ, ଶୁଖିଲା ହାତରେ ମରିଛନ୍ତି । ବିମଳା ଦେଈ ଲୁଚିଛପି କରି ହାତରେ ଯେ ଦଶଟଙ୍କା ରଖିଥିଲେ, ଆଉ ଦେହର ଗହଣାଗାଣ୍ଠି ଦିଖଣ୍ଡ ବିକାବିକି କରି ଆଜଯାଏଁ ଘର ଚଳାଇ ନେଲେ । ଆଉ ଆଉ ଖରଚ ଟାଣଟୁଣ କରି ପୁଅଟିର ପାଠ ପଢ଼ାରେ ସବୁ ସାରିଛନ୍ତି । ସବୁବେଳେ ବୋଲୁଥାନ୍ତି, "ଶିବୁ ଦି'ଅକ୍ଷର ପଢ଼ୁ, ଦେହରେ ଗୁଣ ଥିଲେ କାଲି ସକାଳେ ଘରକରଣା କରି ବସିବ ସେ ।"

ଝିଅ ଚମ୍ପାଟି ଦେଖିବାକୁ ବେଶ ଢୌଲଡାଉଲ । ନାକଟି ଖଣ୍ଡାଧାର ପରି ସିଧା । କଳା କଳା ବଡ଼ ବଡ଼ ଆଖି ଯୋଡ଼ିକ ଢଳ ଢଳ ଦିଶୁଥାଏ । ମୁଣ୍ଡର ଅଳକା ଆଉ ଦାନ୍ତଗୁଡ଼ିକ ସୁନ୍ଦର, ମୁହଁଟିକୁ ସୁନ୍ଦର ମାନେ । କୁଙ୍କୁମ ବୋଳି ହେଲା ପରି ଦେହଟିର ରଙ୍ଗ । ଯିମିତି ରୂପ, ସିମିତି ଗୁଣ । ମା ପାଖରୁ ବେଶ ରନ୍ଧାବଢ଼ା ଶିଖିଛି । ଆଉ ଆଉ ଗୁଣରେ ତାକୁ କେହି ବାରି ପାରିବ ନାହିଁ । ଶିବୁଭାଇ ଶ୍ରଦ୍ଧା କରି କିଛି ପାଠ ପଢ଼ାଇ ଦେଇଛନ୍ତି । ହାତରେ କାମ ପାଇଟି ନ ଥିଲେ ସଞ୍ଜବେଳେ ମା ପାଖରେ ବସି 'କୃପାସିନ୍ଧୁ ବଦନ' ଆଉ ଛାନ୍ଦମାଳାରୁ କେତେ ଗୀତ ବୋଲେ ।

ଶିବୁ ବାବୁ କଚେରିରେ କରାଣୀଗିରି କାମ କରନ୍ତି । ଚାକିରି ଖଣ୍ଡିକ ପାଇଲା ଦିନରୁ ତାଙ୍କର ଇଚ୍ଛା, ଅଳ୍ପସଳ୍ପ ଦରମା ଦେଇ ପିଲାଭଲଆ ଗୋଟିଏ ରୋଷେୟା ରଖିଲେ ମା ଟିକିଏ ଆରାମରେ ରହିବେ । ବିମଳା ଦେଈ ଶୁଣି ନିହାତି ନାରାଜ । ଗୃହଜଳ ଅଧସେରେ ଫୁଟାଇ ଦେଲେ ପାଇଟି ଛୁଟିଗଲା, ପିଲାଟା କେତେ ଦରମା ପାଏ ଯେ ଖର୍ଚ୍ଚ ଟାଏ ବଢ଼ାଇ ବସିବ ?

ଦିନ ପାଣି ପରି ବହି ଯାଉଛି । ଆସନ୍ତା ବିଶ୍ରୁ ଛ ଦିନକୁ ଚମ୍ପାର ବାର ପୂରି ଯାଇ ତେର ବର୍ଷ ପଶିବ । ତେଣିକି ଚଉଦ ଯୋଡ଼ା ବୟସ ପଶିଲେ ବାହା ମନା । ଏହି ବର୍ଷ ବିଭା ନ ହେଲେ ନୁହେଁ । କରଣ ଘର ବୋଲି ଝିଅଟାକୁ ଧିବୁଡ଼ୀ କରି ଘରେ ରଖିବା, ସେଇଟା ନିହାତି ନାଲଜପଣିଆ କଥା । ଘର ଭଲ, କନ୍ୟାଟି ସୁଲକ୍ଷଣୀ, ଭଲ ଭଲ ଜାଗାରୁ ଜବାବ ଆସିଲାଣି । ବିମଳା ଦେଈଙ୍କର ତୁରନ୍ତ ଜବାବ, ନା । ଯେ ଯେତେ ବୁଝାଉ, ଏକା ସ—ନା ।

ଦିନେ ସଞ୍ଜବେଳେ ବିମଳା ଦେଈ ଅମା ପିଉସୀ ଆଉ ଶିବୁ ବାବୁଙ୍କୁ ପାଖରେ ବସାଇ ଆପଣା ମନ କଥା ଫିଟାଇ କହିଲେ, "ଦେଖ ପିଉସି, 'ଝିଅକୁ ନିଆଁ ନେଲେ ଗଲା, ଯମ ନେଲେ ମଲା ।' ବଡ଼ ଲୋକ ଦେଖି ଦୂରଦୂରାନ୍ତରକୁ ଝିଅଟାକୁ ପେଲି ଦେବି, ଆଉ ତ ଆଖିସୁଲଭ ଦେଖି ପାରିବି ନାହିଁ । କରଣକୁଳ, ଯେ ଗଲା, ଏକମୁହାଁ । ସେହି ଗଲା । ମୋର ଦିଓଟି ଆଖି; ଗୋଟିଏ ଗଲେ କାଣୀ ହୋଇ ମରିଯିବି ସେ । ଇମିତି ଆଖପାଖରେ ଦେବି ଯେ ଯିମିତି ଡାକଦେଲେ 'ଓ' କରୁଥିବ । ଏ ତ ଗଲା ଗୋଟାଏ ବାଡ଼ । ଅସଲ କଥା ମୁଁ ସତ୍ୟ ଲଙ୍ଘିବି ନାହିଁ । ବାବୁମାନେ ଆଉ ବଉଳ ଗୃହ ଯାଇ ସ୍ୱର୍ଗରେ ଅଛନ୍ତି, ମୁଁ ନରକରେ ଘାଣ୍ଟି ହେଉଛି । ସତ୍ୟ ଲଙ୍ଘିଲେ ମୋତେ ନରକରେ ବି ଠାବ ହେବ ନାହିଁ ।"

ରାମହରି ବାବୁଙ୍କ ଘରି ଘର ଛଡ଼ା ପଡ଼ୋଶୀ ନବଘନ ଦାସେ ପୋଲିସର ଜମାଦା'ର ଥିଲେ । ଗୋଟିଏ ଥାନାରେ ଏକ ସଙ୍ଗରେ ଚାକିରିରେ ଢେର ଦିନ ବିତ

ପାଇଥିଲା । ନବଘନ ବାବୁଙ୍କ କୁଟୁମ୍ବ ମଧ୍ୟରେ ଭାର୍ଯ୍ୟା କମଳା ଦେଈ ଆଉ ଗୋଟିଏ ପୁଅ ଦିବାକର । ଦୁଇ ବାବୁଙ୍କ ମଧ୍ୟରେ ଯିମିତି ମନ ମିଳେ, ଖୁବ୍ ଭାବ, ଏଣେ ଏରଆଡ଼େ ବିମଳା ଦେଈ ଆଉ କମଳା ଦେଈଙ୍କ ମଧ୍ୟରେ ସିମିତି ମିଳାପ, ସିମିତି ଏକ ମନ । ଦୁଇଜଣ ଯେତେବେଳେ ଝିଅସୁଣୀ ଥିଲେ, ରୋଜ ସକାଳେ ବାଡ଼ଆଡ଼େ ପୋଖରୀ କୂଳରେ ଘଡ଼ିଏଯାଏ ବସି ଦାନ୍ତ ଘଷନ୍ତି, ଆଉ ଦୁଃଖ ସୁଖ କଥା, ହସି ଖୁସି କଥା, ରନ୍ଧାବଢ଼ା କଥା, ଘରକରଣା କଥା ହୁଅନ୍ତି । ଦୋଳପୂର୍ଣ୍ଣିମୀ ଦିନ ଦୁଇ ଜଣ ଆମ୍ବ ବଉଳ ବସିଲେ । ଚମ୍ପା ଯେତେବେଳେ ପେଟରେ ଥାଏ, କମଳା ଦେଈ କହିଲେ, "ବଉଳ, ତମର ଯେବେ ଗୋଟିଏ ଝିଅ ହେବ, ମୋ ଦିବୁକୁ ଦେବ ।" ବିମଳା ଦେଈ କହିଲେ, "ହଁ ବଉଳ, ଦେବ ।" କମଳା ଦେଈ, 'ସତ୍ୟ ?' ବିମଳା, 'ସତ୍ୟ ।' କମଳା, 'ସତ୍ୟ ?' ବିମଳା, ସତ୍ୟ ।' କମଳା, 'ସତ୍ୟ ?' ବିମଳା, 'ସତ୍ୟ ।' ତିନ ସତ୍ୟ ଉପରେ ଆଉ କଣ କଥା ଥାଏ ? ନବଘନ ବାବୁ, କମଳା ଦେଈ ଚାଲି ଯାଇଛନ୍ତି । ପୁଅ ଦିବାକର ଘରକୁ ଏକୁଟିଆ, ପିଲାଟା ଯୋଗ୍ୟ, ଇଂରାଜୀ ବି ଦି ଅକ୍ଷର ଜାଣେ, ଯୁବା ବୟସ, ଦେଖିବାକୁ ସୁନ୍ଦର, କାକଟପୁର ଜମିଦାର ସିରସ୍ତାର ନାଏବ । ବିମଳା ଦେଈ ସେ ସତ୍ୟକୁ ହୃଦରେ ଲେଖି ରଖିଛନ୍ତି । କହିଲେ "ମୁଁ ସତ୍ୟ ଲଙ୍ଘିବ ନାହିଁ, ଛେଉଣ୍ଡ ପିଲାଟିକି ଥାଏ କରିବ ।" ବିଭା ହୋଇଗଲା । ଦିବାକର ଚମ୍ପା ମାଣିକଯୋଡ଼ା ପରି ପରମ ସୁଖରେ ଘରେ ଥାନ୍ତି । ଦୁଇ ଜଣଙ୍କର ଏକ ମନ, ଏକ କଥା, ଏକ ଇଚ୍ଛା । ପୃଥିବୀରେ ସ୍ୱର୍ଗୀୟ ସୁଖ ଯଦି କିଛି ଥାଏ, ସେହିଟା ହେଲା ଦାମ୍ପତ୍ୟପ୍ରେମ ।

ମା ବିମଳା ଦେଈ ଏଣିକି ଅଡ଼ ବସିଲେଣି, ଘରକୁ ବୋହୂଟିଏ ଆଣିବାକୁ ହେବ । ଦିନେ ରବିବାର, କଚେରି ବନ୍ଦ, ପୁଅ ଘରେ ଅଛି । ଶିବୁ ବାବୁ ବସି ଖଣ୍ଡିଏ ପୋଥି ପଢ଼ୁଥିଲେ । ବୁଢ଼ୀ ଧୀରେ ଧୀରେ ଯାଇ ପାଖରେ ବସିଲେ । କଅଁଳେଇ କଅଁଳେଇ କହିଲେ, "ଆରେ ବାପା ଶିବୁ ! ଆଜକୁ ପାଞ୍ଚ ବରଷ ହେଲା ତୋ ସାଙ୍ଗରେ ଲାଗିଛି, କେତେ ଥର କହିଲି; ଶୁଣିଲୁ ନାହିଁ । ପଢ଼ିଲୁ ପଢ଼ିଲୁ କହିଲୁ, ପାଠ ଚଢ଼ି ସାରିଲେ ବାହା ହେବୁ । ପଢ଼ା ସରିଲା । ଫେର ଧରିଲୁ, ଚାକିରି କଲେ ବାହାଘର ହେବ । ଚାକିରି ବି ହେଲା । କାହିଁ, ବାହାଘରର ନା-ଚର୍ଚ୍ଚା ବି ନାହିଁ । ମୋର କଣ ଆଉ ବାଳ ବୟସ ଆସୁଛି ରେ ? ମୁଁ କଣ ଆଉ କାମ ପାଇଟି କରିପାରିବି ? ବିଦ୍ୟା ମା ସିନା ବାହାରଘର କାମ ପାଇଟି କରି ଦେଇଗଲା, ଭିତର ପାଇଟି ରନ୍ଧାବଢ଼ା କରୁଛି କିଏ ? ଏଣିକି ସଞ୍ଜ ହେଲା ତ ଆଖିକି କିଛି ଦିଶିବ ନାହିଁ, ପାଞ୍ଚ ଜାଗା ହାବୁଡ଼ ପଡ଼ିବି, କାମ ପାଇଟି ହାତକୁ ଲାଗିବ ନାହିଁ । ଦିନେଦିନେ ଦିହପାକୁ ଲାଗିଲେ ଚମ୍ପା ଆସି ଦିଟା ସିଝାସିଝି କରି ଦେଇଯାଏ, ସେ କଣ ସବୁଦିନେ ଆସୁଥିବ ? ଯେତେ ହେଲେ ସେ ହେଲା ପରଘରୀ, ତାର ଫେର ଘରକରଣା ଅଛି ନା ? ପୁଣି ଘରକୁ ଏକୁଟିଆ, ଶାଶୁ ନଣନ୍ଦ କେହି ନାହିଁ ବୋଲି ସିନା ଯେତେବେଳେ ପାରେ ଧାଇଁ ଆସେ, ନୋହିଲେ କଣ ଆସି ପାରନ୍ତା ? ଆଉ ଦେଖ, ତିନି ପ୍ରସ୍ତ ଘର, ମୁଁ ଗୋଟାଏ କଣରେ କେଉଁଠି ପଡ଼ି ରହିଥାଏଁ, ତୁ କଚେରିକୁ ବାହାରିଗଲେ ଘରଗୁଡ଼ାକ କମିଛିକା ଖାଁ ଖାଁ ଗୋଡ଼ାଏ । ଏଇ ଘର କଣ ଥିଲା, କଣ ହେଲା । ହାଇରେ—ହା ! ମୁଁ ଆଉ କେତେ କାଳ ବଞ୍ଚି ରହିବି ରେ ! ମତେ ଟିକିଏ ଥନା ରେ ଭଲା ! ସେ ନାହାନ୍ତି ବୋଲି ସିନା, ତୁ କଣ ଆଜଯାଏ ଅଭିଆଡ଼ା ବସିଥାନ୍ତୁ ?" ବୁଢ଼ୀ ଆଉ କିଛି କହି ପାରିଲେ ନାହିଁ, ଧକେଇ ଧକେଇ କାନ୍ଦି ବସିଲେ, ସୁଁ ସୁଁ କରି ନାକ ପୋଛି ପକାଉଥାନ୍ତି ।

ମା'ଙ୍କ ଦୁଃଖ ଦେଖି ଶିବୁ ବାବୁଙ୍କ ମନରେ ଭାରି ଦୁଃଖ ହେଲା, ପୋଥି ଖଣ୍ଡିକ ମେଜ ଉପରେ ଥୋଇ

ଦେଇ ଅମ୍ମା ଆଈ ଦୁଆରକୁ ଚାଲିଗଲେ । ଅମ୍ମା ଆଈ ଲେଖାଯୋଖାରେ ବିମଳା ଦେଈଙ୍କ ପିଉସୀ, ଶିବୁ ଆଉ ଚମ୍ପାକୁ କୋଳରେ କାଖରେ କରି ବଡ଼ାଇଛନ୍ତି । ବିମଳା ଦେଈ ତାଙ୍କୁ ମା ପରି ମାନନ୍ତି, ଅମ୍ମା ବି ବିମଳା ଦେଈଙ୍କୁ ଝିଅ ପରି ମଣେ, ଭଲ ପାଏ, ସବୁ କଥାରେ ସାହା ହୁଏ । ଅମ୍ମା ଘର ଆଉ ବିମଳା ଦେଈଙ୍କର ପାଚେରି ଲଗାଲଗି, ଦୁଆର ଅଲଗା ଅଲଗା । ଅମ୍ମା ଆଈ ବଂଶଲତା ଆମ୍ଭେମାନେ ପାଇ ନାହୁଁ, ଏଥିକୁ ଉପ୍ରର ପୁରୁଷର କାହାରି ପରିଚୟ ଦେବାକୁ ଅକ୍ଷମ । ବିଭାପ୍ରସଙ୍ଗରେ ଆଈ ନାତି ମଧ୍ୟରେ ଢେର କଥାଭାଷା ହେଲା । ଆଈ କହିଲେ, "ଆଚ୍ଛା ଶିବୁ, ତତେ ଗୋଟିଏ ଭଲ ସୁନ୍ଦରୀ ବୋହୂ ଆଣି ଦେବି,ମାଣିଆବନ୍ଧ ଲୁଗାଟିଏ ପିନ୍ଧାଇବୁ ଏକା ।"

ବୟସ ଥିବାବେଳେ ଅମ୍ମା ଆଈ ବଡ଼ କଳହୁଡ଼ି ଥିଲା । ପର ଉପକାର କରିବାକୁ, ଭାବ କରିବାକୁ ବି ଆଗ । ବୁଦ୍ଧିମନ୍ତୀ, ଦରକାର ପଡ଼ିଲେ ଗୋଟାଏ ଠିକ ବୁଦ୍ଧି ଫାନ୍ଦ ଦେବାକୁ ବି ଖୁବ୍ ପାରେ । ରାଣ୍ଡ ମାଇ-କିନିଆଟିଏ ହେଲେ କଣ ହେଲା, ଭୁଲ ଭଟକାରେ ଗାଁ ଲୋକେ ତାକୁ ପରାମର୍ଶ ପଚାରନ୍ତି । ଉଚ୍ଛୁଣି ଆଈ ବଡ଼ ବୁଢ଼ୀ ହୋଇ ଗଲାଣି । ବାଡ଼ି ଖଣ୍ଡିଏ ଧରି ଠୁକୁର ଠୁକୁର କରି ବାହାରିଲା । ଦାଣ୍ଡ ଦୁଆରୁ "ରେ ବିମଳା ! ରେ ମା ବିମଳା !" ଡାକ ଡାକ ଯାଇ ଝିଅଆରି ପାଖରେ ବସିଲା । ଏ କଥା, ସେ କଥା, ଦୁଇଟା କଥା ବାଦେ କହିଲା, "ଆରେ ମା ! ଶିବୁ କହୁଛି, ବାହା ହେବ । ହଁ, ଭଲଲୋକ ଘର ଝିଅଟିଏ ହୋଇଥିବ, ଦି ଅକ୍ଷର ପଢ଼ିଥିବ, ଇମିତିକା କନ୍ୟାଟିଏ ପାଇଲେ ବାହା ହେବ ।" ଶିବୁ ବାବୁଙ୍କର ଆଉ ଗୋଟିଏ କଥା, କନ୍ୟାଟି ସୁନ୍ଦରୀ ହୋଇଥିବ; ଆଈ କିନ୍ତୁ ଏ କଥାଟା ଝିଅଆରିକୁ କହିଲେ ନାହିଁ । ଏକା ଶିବୁ ବାବୁ କିଁଆ, ସୁନ୍ଦରୀ କନ୍ୟା ବିଭା ହେବାକୁ କାହାର ଇଚ୍ଛା ନ ହେଲେ ? ପାଠକ ପାଠିକା ବୋଲନ୍ତୁ ଭଲା, କଥାଟା କଣ ମିଛ ? ବିମଳା ଦେଈ ଆନନ୍ଦରେ ପିଉସୀକୁ କୁଣ୍ଢାଇ ପକାଇ କହିଲେ, "ପିଉସି, ତୁ ଟିକିଏ ଲାଗି ଯା, ମୋର ଆଉ କିଏ ଅଛି ? ବାପଛେଉଣ୍ଡଟି ଲାଗି କିଏ ଧାଇଁବ ? ସାହା କରିବେ ଜୁଆଇଁ ବାବୁ । ମୁଁ ତ କହିବି ନାହିଁ, ତୁ ଯା ତାଙ୍କୁ କହିବୁ, ସେ ଖୋଜା ଲୋଡ଼ା କରି ଘଟଣା କରି ଦିଅନ୍ତୁ । ଚମ୍ପାକୁ କହିବି, ସେ ବି ଜୁଆଇଁ ବାବୁଙ୍କୁ କହିବ । ଯେତେ ହେଲେ ସେଇଟା ହେଲା ପିଲାଲୋକ । କହି ଜାଣିବ ନାହିଁ, ତୁ ଯା, ତାଙ୍କୁ ବୁଝେଇ ବନେଇ ବାନେଇ କହିବୁ ।"

ହରିବାବୁ ବର୍ତ୍ତମାନ ମହା ହାଇରାଟରେ ପଡ଼ି-ଲେଣି । ଉଠିଣୁ ବସୁଣୁ ଚମ୍ପା ତାଙ୍କ ସଙ୍ଗରେ ଲାଗିଛି "ମୋ ଭାଇପାଇଁ ଗୋଟିଏ କନ୍ୟା ଠିକଣା କରିଦିଅ ।" ହରି ବାବୁ ବାହାରୁ କୁଆଡ଼ୁ ବୁଲି ଆସି ଘରେ ଗୋଡ଼ ଦେଇଥିବେ କି ନାହିଁ, ଚମ୍ପା ଧାଇଁ ଆସି ପଚାରିବ "କଣ, କନ୍ୟା ଠିକଣା ହେଲା ?" "ମଲା ଯା ! କନ୍ୟା-ଟାଏ କଣ ପଡ଼ିଆରେ ପଡ଼ିଛି ଯେ ଧାଇଁ ଯାଇ ଗୋଟାଇ ଆଣିଲେ ହେଲା ?" ଚମ୍ପାଟା ଯୋକ ପରି ଲାଗି ରହିଛି ।

ହରିବାବୁ ଜମିଦାର ନାଏବ । ମଫସଲର ଖବର ଜଣା । ପାଞ୍ଚ ଜାଗାକୁ ଖବର ପଠାଇଲେ । ଦୁଇପକ୍ଷରୁ ଲୋକ ଯା ଆସ କଲେ । କଥା ପଟିଲା ନାହିଁ, ଭାଙ୍ଗିଗଲା । ଶେଷରେ ପ୍ରସଙ୍ଗ ଚଳିଲା । ଦୁମଦୁମପୁରରେ କନ୍ୟାଟି ଘରଯୋଗା ହେଲାଣି । ବୟସ ସତର ବରଷ ଚାଲିଛି । ବିଧବାର ଝିଅ, ବଡ଼ଭାଇ ବଳରାମ ଦାସେ ଗାଁର ଅବଧାନ ।

ସବୁ ପ୍ରସଙ୍ଗ ଶୁଣି ଶିବୁ ବାବୁ ଟିକିଏ ମୋଡ଼ା ମାଡ଼ି ହେଉଥିଲେ । କନ୍ୟାଟି ବଡ଼ ଲୋକର ଝିଅ, ଆଉ ସୁନ୍ଦରୀ ହୋଇଥିବ, ଏଇଟା କିଏ ନ ଲୋଡ଼େ ? ହେଲେ, ସେଇଟା କଣ ସମସ୍ତଙ୍କ କପାଳକୁ ଘଟିଥାଏ ? ବିଭା କଥାଟା ଜାଣ ପ୍ରଜାପତି ଘଟସୂତ୍ର କଥା, ତାଙ୍କ ନିବନ୍ଧକୁ

କିଏ ମେଣ୍ଟିବ ? କନ୍ୟା ସେ ଈଶାଣରେ ଗୃହକ ଦେଇଛି, ଧରି ବାନ୍ଧି ସେଇଠିକି ଯିବ । ଶିବୁ ବାବୁ ଆଖି ଫେରାଇ ଦେଖିଲେ, ଆଉ କେଉଁଠି ଠିକଣା ନାହିଁ । ଏଣେ ମା ହେଲେଣି ଅଥୟ । କଣ କରିବେ, ରାଜି ହୋଇଗଲେ । ବିମଳା ଦେଈଙ୍କ ଆନନ୍ଦ ଦେଖେ କିଏ, ଭୋକିଲା ଲୋକକୁ ପେଜ ମନ୍ଦାକ ବି ଅମୃତ । ବୋହୂ ବୋହୂ ଭଜି ହେଉଥିଲେ, ବୋହୂ ଠିକଣା ହେଲା, ଆଉ କଣ ? ଚମ୍ପା ମନରେ କଲା, 'ପାଇଲା ବୋହୂ ଆସିବ, ଏକାବେଳକେ ହାଣ୍ଡିଶାଳରେ ପଶିଯିବ, ମା ଖଲାସ ପାଇଲେ, ଭଲ ହେଲା ।'

ଶିବୁ ବାବୁ ଖବର ଆଣିଲେ, କନ୍ୟା ଦେହ ବର୍ଣ୍ଣ ଟିକିଏ କଳା, ନାମ—କମା । ନାମଟା ଖଟକଟିଆ କିଆଁ, ସେଥିର ମଧ୍ୟ ଖବର ଆସିଲା । କନ୍ୟାର ଉପର ଦୁଇ ଭାଇ ଲଗାଲଗ ବାହୁଡ଼ିବା ବାଦେ କନ୍ୟାଟି ଜନ୍ମ ହେଲା । ମା ଦେଖିଲେ, କନ୍ୟାଟି ବଡ଼ ସୁନ୍ଦର, ଚମକି ପଡ଼ିଲେ, ଉପର ଦିଓଟି ସୁନ୍ଦର ପୁଅଙ୍କୁ ଯମ ନେଇ ଯାଇଛି, ଏ କନ୍ୟାଟିକୁ କାଳେ ନେଇଯିବ, ନାମ ଦେଲେ କମା । ଅର୍ଥାତ୍ କମ ଭାଗ ଦିଓ, ଯମକୁ ରୁଚିବ ନାହିଁ ।

ସେ ସବୁ କଥା ଯାଉ, କମା ସଙ୍ଗରେ ଶିବୁର ବିଭା ହୋଇଗଲା । ବଡ଼ ପ୍ରେମରେ, ବଡ଼ ଆନନ୍ଦରେ ଶାଶୁ ବୋହୂଟିକୁ ଘରକୁ ନେଲେ ।

ନୂଆବୋହୂଟି ଘରେ ପଶିଛି, ତାକୁ ହଠାତ୍ କମିତି କିଏ କହିବ, ତୁ ଏ କାମ କର, ସେ କାମ କର । ବୋହୂଟି ଡାଙ୍କିଡୁଙ୍କି ହୋଇ ଘରେ ପଶିଥାଏ । ଚମ୍ପା ଆପଣା ଘର ବାସିପାଇଟି ସାରି ଆସି ବୋହୂକୁ ଉଠାଏ । ସାଙ୍ଗରେ ନେଇ ଯାଇ ଗାଧୁଆପାଧୁଆ କରାଇ ଆଣେ । ବିମଳା ଦେଈ ରନ୍ଧାବଢ଼ା କରି ଭାତ ପରଷି ଦିଅନ୍ତି, ବୋହୂ ଖାଇ ହାତ ଧୋଇ ଶୋଇପଡ଼େ । ବିଦାମା ଆସି ସଙ୍ଗୁଡ଼ି ବାସନ ଖଣ୍ଡ ଧୋଇ ପକାଏ ।

ପନ୍ଦର ଦିନ ଗଲା, ମାସେ ଗଲା, ଦି ମାସ ବି ଗଲାଣି । ନାହିଁ, ବୋହୂ ତ ଗମ୍ଭୀରିରୁ ବାହାରୁ ନାହିଁ ? କାମ ପାଇଟି କିଛି କରୁ ନାହିଁ ? ଚମ୍ପା ଦିଥର, ଚାରିଥର କହିଲାଣି, "ବୋହୂ ଉଠ, କାମ ପାଇଟିରେ ଲାଗ, ରନ୍ଧାବଢ଼ା କର, ଢୁଙ୍କାଟା ବିଛଣାରେ ପଡ଼ିଛୁ କିଆଁ ?'' ବୋହୂ ଢାଳେଇ ଦିଏ, ଶୁଣି ନ ଶୁଣିଲା ପରି କିଛି କଥା କହେ ନାହିଁ । ମନରେ କଲା, "କଣ ! ମା କହିଛି, ମୋ ଗେରସ୍ତ ରୋଜଗାରିଆ, ମୁଁ ଏ ଘରେ ସାନ୍ତାଣୀ । ଏ ଗୁଡ଼ାକ ମୋ ଘରେ ଖାଇବେ, କାମ ପାଇଟି କରିବେ ସିନା, ମୁଁ କିଆଁ ଗତର ଖଟାଇବି ?'' ମା ଯେତକ ଉପଦେଶ ଦେଇଥିଲା, ବୋହୂ ଭଲ କରି ମନରେ ରଖିଛି । ମା କହିଛି, ଶାଶୁକୁ ଅନାଇ କଥା କହିବୁ ନାହିଁ, ଠାରି ଠାରି ଦେବୁ । ବୋହୂ ଖାଇ ବସିଥାଏ, ଭାତ ତିଅଣ ଲୋଡ଼ା ହେଲେ କଂସା କି ଗିନାଟା ମାଟିରେ ଠୁକ୍ ଠୁକ୍ ମାରି ଠାରି ଦିଏ । ବୋହୂଟି ଟିକିଏ ଭୋକ କାଉଳ, ଭାତ ରନ୍ଧାରେ ଶାଶୁ ଟିକିଏ ଡେରି କଲେ ବୋହୂ ରୋଷେଇ ଘରକୁ ଯାଇ ହୁଁ ହୁଁ କରି ପେଟରେ ହାତ ବୁଲାଇ ଠାରିଦିଏ । ବିମଳା ଦେଈ ବି ବୁଝି ପାରନ୍ତି ବୋହୂଟିକୁ ଭୋକ ଲାଗିଲାଣି ।

ଚମ୍ପା ଆଉ ସହି ପାରିଲା ନାହିଁ । ବୋହୂକୁ ବକାବକି କଲାଣି । ବୋହୂ ବି କେତେ ସହିବ ? କିଆଁ ସହିବ ? ସେ ଯେ ଘରର ସାନ୍ତାଣୀ । ପହିଲୁ ପହିଲୁ ରାଗରେ ଗୁଇଁ ଗାଇଁ ହେଉଥିଲା, ଏଣିକି ସାଫ ଜବାବ୍ ଦେଲାଣି । ଦିନେ ଚମ୍ପା ଭାରି ରାଗିଯାଇ ବୋହୂକୁ ଗାଳିଦେଲା । ବୋହୂ ବି ଗାଳି ଆରମ୍ଭ କଲା । ବିମଳା ଦେଈ ଧାଇଁ ଆସି କହିଲେ, ''ନା ରେ ମା ଚମ୍ପା ! ଛୁଆଟା ମାକୁ ଛାଡ଼ି ଆସି ମନ ଦୁଃଖରେ ଅଛି, ସବୁ କାମ ପାଇଟି ପଛେ କରିବ ଯେ । ଢୋଲ କାନ୍ଧରେ ପଡ଼ିଲେ ଆପେ ବଜାଇବ ।'' ଚମ୍ପା କହିଲା, ''ନାହିଁ ମା ! ଯେ ବୋହୂ ଦେଖୁଛି, ଢୋଲ ତ ଢୋଲ, ଢେଙ୍କି କାନ୍ଧରେ ପଡ଼ିଲେ ବି ହଲଚଲ ହେବାର ନୁହଁ ।''

ଦିନେ ଅମା ଆଈ ନାତୁଣୀକୁ ପଚାରିଲା, "କି ଲୋ ଚମ୍ପି ! ତୁ ତ ବୋହୂକୁ ଏତେ ବୁଝାଉଛୁ, ଏଣିକି ଉଠି କାମ ପାଇଁ କଲାଣି ନା ?"

ଚମ୍ପା କହିଲା, "ନାହିଁ ଲୋ ଆଈ, ତୁ ଯେତେ ମାଠିକୁ ମାଠ, ସେ ତ ସେଇ ଦରପୋଡ଼ା କାଠ !"

ରନ୍ଧା ବଢ଼ାରେ ଟିକିଏ ଉନ୍ନତି ହେଲେ ବା ଆଉ କିଛି କଥାରେ ବୋହୂଟା ଶାଶୂ ସଙ୍ଗରେ ଭଟ୍ ଭଟ୍ ଲଗାଇଲାଣି । ହେଲେ, ବୋହୂ ତା ମା କଥା ଭୁଲି ନାହିଁ । ଶାଶୂ ମୁହଁକୁ ଗୁହାଁ ଗାଳି ଦିଏ ନାହିଁ; ଓଢ଼ଣା ପକାଇଥାଏ, ପଛ କରି ବଡ଼ବଡ଼ କରି ବକୁଥାଏ ।

ବୋହୂର ଯେ ଏତେ ଗୁଣ, ଶିବୁ ବାବୁ ସବୁ ଜାଣନ୍ତି ନାହିଁ । ମା ତ କିଛି କହିବେ ନାହିଁ, ଚମ୍ପା ବି କିଛି କହେ ନାହିଁ । ହେଲେ ଘର କଥା ବାବୁ କଣ ବୁଝି ପାରିବେ ନାହିଁ ? ସବୁ ନ ଶୁଣିଲେ, କେତେ କେତେ କଥା ବୁଝିଲେଣି । ଏଣିକି ଚମ୍ପାକୁ ବଳେଇଲାଣି । ଭାଇଙ୍କୁ ସବୁ କଥା ନ କହିଲେ ନୁହେ । ଘରେ ଯେବେ କହେ, ମା ଧାଇଁ ଆସି ପାଟି ବନ୍ଦ କରାଇବ, ସବୁ କଥା କୁହାଇ ଦେବ ନାହିଁ ।

ଦିନେ ସଞ୍ଜବେଳେ ଅମା ଆଈ ଦୁଆରେ ନାତି ନାତୁଣୀ ଆଈ ତିନିହେଁ ବସି ଢେର ବେଳଯାଏ କଣ ପରାମର୍ଶ କଲେ । ଅର୍ଥାତ୍ ସାଧୁଭାଷାରେ ଲେଖା ଯିବ, କମିଟି ବସିଲା । ଏତେ ଭିନ୍ନ ଭିନ୍ନ କଥା ହେଲେ ଯେ, କେହି କିଛି ଜାଣି ପାରିଲେ ନାହିଁ । ଶେଷରେ ଶିବୁ ବାବୁ କହିଲେ, ଅର୍ଥାତ୍ ରିଜଲ୍ୟୁଶନ୍ ପାସ ହେଲା— "ଦେଖ ଚମ୍ପା ! ଆସନ୍ତା ଶୁକ୍ରବାର କଚେରୀରୁ ସୋମବାର ଯାଏ ଗୁଡ଼ଫ୍ରାଇଡେ, ବୃନ୍ଦାବନ କଚେରି ବନ୍ଦ ହେବ, ସେହି ସମୟରେ ସବୁ କଥା ଠିକ୍ ଠିକଣା କରିବା ।"

ଆଜି ଶୁକ୍ରବାର । ଜୁଆଇଁ ଶିବୁବାବୁ ସକାଳୁ ଉଠି କାକଟପୁର ଜମିଦାର ଘରକୁ ଗଲେଣି, ଦୁଇ ଦିନ ଆସିବେ ନାହିଁ । ଚମ୍ପା ଦୁଆରେ କଞ୍ଚି ଲଗାଇ ଦେଇ ମା ଘରକୁ ଅଇଲା । ଭାଇ ପିଣ୍ଡାରେ ବସିଥିଲେ, ଚମ୍ପାକୁ ଦେଖି ଟିକିଏ ହସିଦେଲେ ଦାଣ୍ଡ ପଟକୁ ଚାଲିଗଲେ ! ଚମ୍ପା ଏକାବେଳକେ ବୋହୂ ବିଛଣା ପାଖକୁ ଚାଲିଗଲା । ବୋହୂର ନିଦ ଭାଙ୍ଗିଲାଣି, ଭୁଲାଟାରେ ବିଛଣାରେ ପଡ଼ି ଏକଡ ସେକଡ଼ ଗଡ଼େଇ ପଡ଼େଇ ହେଉଛି । ଚମ୍ପା ଭାରି ଖପା ହେଲାପରି ଗର୍ଜନ କରି କହିଲା, "କି ଲୋ ବୋହୂ ! କମ୍ଭୀରଟା ପରି ପେଟେ ଖାଇ ବିଛଣାରେ ପଡ଼ି ଗଡ଼ଉଛ ହେଉଛୁ, ଘରେ ପାଇଟି କରିବ କିଏ ଲୋ ? ତୁ ସାଙ୍ଗରେ କଣ ଗୋଟାଏ ଚୋଇଲି ଆଣିଛୁ କି ଲୋ ?" ଆଉ କଣ ସମ୍ଭଳା ଯାଏ ? ବୋହୂଟା ତ ସହଜରେ ଥିଲା ବଦ୍‌ରାଗୀ; ପୁଣି ତାର ବିଶ୍ୱାସ, ସେ ହେଲା ଘରେ ସାନ୍ତାଣୀ, ଏମାନେ କେହି ନୁହନ୍ତି । ଏଇଟା ପୁଣି ଆସି ଗାଳି ଦବ ? କୋପରେ ଧଡ଼ପଡ଼ ହୋଇ ଉଠିଲା, ଲୁଗାଖଣ୍ଡ ସଜାଡ଼ି ପିନ୍ଧିବାକୁ ବେଳ ନାହିଁ, ମୁଣ୍ଡ ମୁକୁଳା, ଗର୍ଜନ କରି ଏକାବେଳକେ ଆରମ୍ଭ କରିଦେଲା, "ପୋଇଲି ! ନିଆଁ ଲଗି, ଦୂର ହୋ ! ମୋ ଘରୁ ଦୂର ହୋ ! ମୁଁ ତ ସାନ୍ତାଣୀ, ତୁ କିଏ ଲୋ ?' ଗାଳି ଦେଉଛି ତ ଦେଉଛି, ସେଇ କଥା ସେଇ କଥା ବାରବାର କହୁଛି ! ଏଣେ ଚମ୍ପା ହସି ହସି ଯାଇ ମା ହାତରୁ ଗୁଞ୍ଜୁଣିଟା ଛଡ଼ାଇ ନେଇ ଘର ପହଁରା ବସିଲା ।

ବିମଳା ଦେଈଙ୍କୁ କିଛି ଜଣା ନାହିଁ । କଳି ଶୁଣି ଅଥୟ ହେଲେ । କଳିକୁ ସେ ବଡ଼ ଡରନ୍ତି, କଳି ଜାଗାରୁ ପଳାନ୍ତି । ଦାଣ୍ଡରେ କେହି କଳି କଲେ କବାଟ କିଳି ପକାନ୍ତି । ବୋହୂକୁ ଭିନ୍ନ କରାଇବାକୁ ଆସୁଥିଲେ, ଚମ୍ପା ହାତ ଧରି ଭିଡ଼ି ନେଇଗଲା ।

ବୋହୂଟା ଗର୍ଜି ଗର୍ଜି ଥକା ଯାଇ ଦୁଲକରି ବଛଣାରେ ପଡ଼ିଗଲା । କେତେକ ବେଳେ ଚମ୍ପା ପାଇଟି ଛାଡ଼ି ହସି ହସି ଆସି ଖୁବ୍ ଗୋଟାଏ କ୍ରୋଧ କଲା ପରି କହିଲା, "କାହିଁ ଗଲା ସେ ସେ ପୋଇଲି କଅାଁ ଲଗୀ ? ଗୁଞ୍ଜୁଣିରେ ତା ମୁଣ୍ଡରେ ଦଶ ପାହାର ପିଟିବି ! ଅଲପାଇସିଆ କଅାଁ ଲଗା ତା ଭାଇକୁ ଧରି ଆଣି ଗୋଟି ଗୋଟି ଗଣି ଗଣି ତା ମୁଣ୍ଡରେ ବୋଡ଼ିଏ ଗୁଞ୍ଜୁଣି ପିଟିବି !" ପୁଣି ବୋହୂ ରାଗି ଉଠିଲି, ଚମ୍ପାକୁ ଗାଳି ଦେବାକୁ ଲାଗିଲା । କମଳା ଦେଈ ଧାଇଁ ଆସି କହିଲେ, "ନାହିଁ ରେ ମା, ନାହିଁ ରେ, ତାକୁ ଗାଳି ଦେ ନା ରେ ମା, ତା ମା କତରେ ନାହିଁରେ, ଶୁଣିଲେ କାନ୍ଦିବ ରେ ।" ଚମ୍ପା କହିଲା, "ତା ମା କାନ୍ଦୁ, ଏ କଅାଁ ଝିଅକୁ କିଆଁ ମାରି ନ ପକାଇ ଏଠିକି ପଠାଇଛି ? ଏଇ ଗୁଞ୍ଜୁଣିରେ ଏ ପୋଇଲୀଟାକୁ ମାରି ପକାଇବି । ଗୋଟିଏ ବଡ଼ ସୁନ୍ଦର ବୋହୂ ଠିକ୍ ହେଲଣି, ଆଜ ବାହାଘରର ସବୁ ଠିକ ହୋଇଯିବ ।"

ଶିବୁ ବାବୁ ଦାଣ୍ଡ ପଟରେ ଥିଲେ, ଧାଇଁ ଆସି ଚମ୍ପା ହାତ ଧରି ଭିଡ଼ ଭିଡ଼ି ନେଇ ଚାଲିଗଲେ, "ଆ, ଚମ୍ପା ଆ, ମା ତାଙ୍କ ସୁନାବୋହୂକୁ ନେଇ ଘରେ ଥାନ୍ତୁ, ଆମେ ଦୁଇ ଜଣ ଘରୁ ବାହାରିଯିବା ।" ଦୁଇ ଜଣ ମୁହଁରେ ଲୁଚା ଦେଇ ଟିକିଏ ହସି ହସି ଦାଣ୍ଡକୁ ଚାଲି ଅଇଲେ । ବୁଢ଼ୀ ନସରପସର ହୋଇ ପଛରେ ଧାଇଁଛନ୍ତି, "ଆରେ ତୁମ୍ଭେମାନେ ଯାଅ ନାହିଁ ରେ, ଆରେ ଶିବୁ, ଢେର ବେଳ ହେଲାଣି ରେ, ଚମ୍ପା ଭାତ ବସାଇଛି, ହଟା ମୁହଁରେ ଦେଇ ଯା ରେ ।"

ଶିବୁ—ଆଚ୍ଛା, ତୁ ଏଇ ଝିଅ ରାଣ ପକା, କିଛି କହିବୁ ନାହିଁ । ନୋହିଲେ, ଆମେ ଦୁହେଁ ଖାଇବା ପିଇବା ନାହିଁ, ଘରୁ ବାହାରିଯିବା ।

କମଳା ଦେଈ—ମୋ ମା ରାଣ ପକାଉଛି, ଅଖି ଛୁଉଁଛି, କିଛି କହିବି ନାହିଁ ।

ଏଣିକି ପୁଅ ଝିଅ ଉପରରେ କମଳା ଦେଈ କିଛି କହି ପାରୁନାହାନ୍ତି, ଖାଲି ବାଡ଼ଘର ହେଉଛନ୍ତି । ପୁଅ ଝିଅ ନ ଥିବା ବେଳେ ଟିକିଏ ବୋହୂ ଦୁଆରକୁ ଚାହିଁ ଦେଉଛନ୍ତି ।

ଚମ୍ପା ଭାତ ଗାଳି ପକାଇ ଫେରି ବୋହୂ ଦୁଆରକୁ ଗଲା । ପୁଣି ଗାଳି ଆରମ୍ଭ କଲା । ଦେଖିଲା, ବୋହୂର ଆଉ ଉଠିବାର ଶକ୍ତି ନାହିଁ । ବାଛୁରୀ ତତଲା ଲୁହା ଦାଗ ଦେବାବେଳେ ଯିମିତି ଗାଁ, ଗାଁ ଗର୍ଜେ, ସେହିପରି ଗର୍ଜୁଛି ।

ବୋହୂ ବଛଣାରେ ପଡ଼ି ପଡ଼ି ମନରେ କଲାଣି, "ମୁଁ ଆଉ କଣ ସାନ୍ତାଣୀ ? ନଣନ୍ଦଟା ଏତେ ଗାଳି ଦେଉଛି, ମୋ ଲାଗି କେହି ପଦେ କହୁ ନାହାଁନ୍ତି । ପୁଣି ଭାଇ ଭଉଣୀ ମିଳି ଗଲେଣି ! କଣ, ସେ ପୁଣି ଆଉ ଗୋଟାଏ ବିଭା ହେବେ ? ମୋ ଦଶା କଣ ହେବ ? ଶାଶୁ ତ ପାଖ ପଶୁ ନାହାନ୍ତି । ମୁଁ କଣ କରିବି ?' ତୁନି ହୋଇ ବଛଣାରେ ପଡ଼ିଥାଏ, ବାହାରେ କଣ କଥା ହେଉଛି, କାନ ଡେରି ଶୁଣୁଥାଏ ।

କେତେକବେଳେ ଚମ୍ପା ଭେଁ, ଭେଁ କରି ଶଙ୍ଖଟାଏ ବଜାଇ ଦେଲା । ଆଲୋ ବାରକାଣି ! ଯା, ଦୁବ ବରକୋଳପତ୍ର ଚନ୍ଦନ ସିନ୍ଦୂର ଆଉ ଆଉ ଚଜ ସବୁ ସଜାଡ଼ି କରି ରଖି ଦେ । ଏ ବାରକପୁଅ, ବଡ଼ ଘରେ ଝାଡ଼ିଝୁଡ଼ି ଆସନ ପକାଇ ରଖ, ପାଣିପଣା ସବୁ ଠିକ କର, ଆଉ କଣ ବେଳ ଅଛିଛି ? ସେତେବେଳକୁ ସାନ୍ତମାନେ ଆସିଗଲେ କଣ କରିବୁ ? ( ଭେଁ, ଭେଁ, ଭେଁ ଶଙ୍ଖ ବାଜିଲା ) ଆରେ ଶାମା ! ମିଠାଇ ଥାଳଟା ଭିତରେ ରଖିଦେ । କଣ କହିଲୁ ରାଧିକା ? ଦହି ସର ବିଲେଇ ଖାଇଗଲା ? ମଲା ଯା ! ସାନ୍ତମାନେ ଜଳଖିଆ କରିବେ କଣ ?

ଚମ୍ପା ରନ୍ଧା ବଢ଼ା କରି ଭାଇଙ୍କୁ ମା'ଙ୍କୁ ଖୁଆଇଲା । ମା କହିଲେ, "ତୁ ବସି ଖା, ଆଜି ବୋହୂ—" ପୁଅ ଉପରେ ନଜର ପଡ଼ିଗଲା—ଡରି ଯାଇ କହିଲେ, "ନାହିଁ, ନାହିଁ ମୁଁ କହୁଛି, ଚମ୍ପୀ ଏକା ଖାଇବ ।" ଶିବୁବାବୁ କହିଲେ, "ହଁ ଖବରଦାର, ବୋହୂ ନାମ ଧର ନା !" ମା ବାଡ଼ ଦୁଆରକୁ ପଳାଇଲେ ।

ବେଳ ବୁଡ଼ ବୁଡ଼ ହେଲାଣି । ଅମା ଆଈ ବାଡ଼ ଖଣ୍ଡିଏ ଧରି ଅଇଲେ । ବୋହୂକୁ ଶୁଣାଇ ଶୁଣାଇ କହିଲେ, "କଲୋ ଚମ୍ପି ! କଣ ହେଉଛି ? ଏ ଫୁଲ-ମାଳ ଚନ୍ଦନ ସିନ୍ଦୂର ସବୁ କଣ ହେବ ?"

ଚମ୍ପା—ଏଇ ଦେଖୁନାହୁଁ, ଭାଇ ସାନ୍ତ ଆଉ ଗୋଟିଏ ବାଘ ହେବେ ପରା ! ଆଜ ମହାପ୍ରସାଦ ଉଠା ପରା । ତୁ ଯା, ସେଇ ଘରେ ମିଠାଇ ଦହି ଅଛି, ଆଣ, ଖା ଯା, ତତେ ବାଡ଼ି ଦେବାକୁ ମୋର ବେଳ ନାହିଁ ।

ଭେଁ—ଭେଁ—ଭେଁ ଶଙ୍ଖ ବାଜଲା ! ସାଙ୍ଗେ ସାଙ୍ଗେ ହୁଳହୁଳି ।

ଆଈ—ଆଚ୍ଛା, ନୂଆବୋହୂ ଆସିବ, ଏ ବୋହୂଟା କଣ କରିବ ?

ଚମ୍ପା—ମଲା ଯା ! ଏଇଟା କି ବୋହୂ ମ ! ଘର ଦୁଆର ପାଇଟି କରିବ, ରନ୍ଧାବଢ଼ା କରିବ, ଏଇଥିଲାଗି ସିନା ଭାଇ ଏଟାକୁ ଆଣିଥିଲେ—ଏଟା ତ କଛି କଲା ନାହିଁ, ବୋହୂ କଣ ?

ଆଈ—ଆଚ୍ଛା ଏ ବୋହୂଟା ଖାଇବ କଣ ?

ଚମ୍ପା—କଣ ଖାଇବ ? ସେ ବୋହୂ ଖାଇଲେ ଯାହା ଗୁଡ଼ ଯିବ, ଏଟା ତା ଅଇଁଠା ଖାଇ ବାସନ ମାଜି ପକାଇବ ।

ଅ.ଈ—ଆଚ୍ଛା, ମୁଁ ଟିକିଏ ବୋହୂଟାକୁ ଦେଖି ଅ.ସେ ।

ଚମ୍ପା—ନା ଲୋ ଆଈ, ନା—ନା, ତା ପାଖକୁ ଯା ନା । ସେଟା ସିମିଣ୍ଟ ପଡ଼ ପଡ଼ ଉପାସରେ ମରି ଯାଉ ।

ଚମ୍ପା ମୁରୁକି ମୁରୁକି ହସି କଣ ଠାରି ଦେଲା । 'ଆଚ୍ଛା ଆଚ୍ଛା ଥରେ ଦେଖେଁ' କହି ଅମା ଆଈ ସିମିଣ୍ଟ ପାଖକୁ ଯାଇଛି, ବୋହୂ ଉଠିପଡ଼ି ବୁଢ଼ୀର ଦୁଇ ଗୋଡ଼ ଜାବୁଡ଼ି ଧରିଲା । କଥା କହି ପାରୁ ନାହିଁ, ଗୋଡ଼ ଯୋଡ଼ାକ ଧରି ଧକେଇ ହେଉଛି । ବହୁତ କଷ୍ଟରେ କହିଲା, "ଆଈ—ତା—ଙ୍କୁ—କ—ଅ—ବା—ଏ—ବେ—ନା—ଇଁ ।"

ଅମା ଆଈ—ମୋ କଥା କଣ ସେ ଶୁଣିବ ? ତୁ ତ ଘରେ କଛି କାମ ପାଇଟି କରିବୁ ନାହିଁ, ଭାତ ରାନ୍ଧିବୁ ନାହିଁ, ସବୁ କଥାରେ କଳି କରିବୁ, ସେଥିଲାଗି ଆଉ ଗୋଟାଏ ବୋହୂ ଆସୁଛି ।

ବୋହୂ—ମୁଁ—ସ—ବୁ—କ—ରି—ବି ।

ଅମା ଆଈ—ଆଚ୍ଛା, ତୁ ଶିବୁକୁ କହି । "ଆରେ ଶିବୁ, ଏଠିକି ଆ'ତ, ବୋହୂ କଣ କହୁଛି, ଶୁଣ ।"

ଶିବୁ ନା, ନା, ମୁଁ ଯାଇ ପାରିବି ନାହିଁ ।

ଏଣେ ବୋହୂର ଯେତେ ବଳ, ଅମା ଆଈର ଗୋଡ଼ ଜାବୁଡ଼ି ଧରିଛି । କେଜାଣି ଗୋଡ଼ ଯୋଡ଼ାକ ଭାଙ୍ଗି ପକାଇବ । ସେହି ଆଈ ପଦ୍ମପାଦ ଛଡ଼ା ଯେ ବର୍ତ୍ତମାନ ନମା ଦେଈଙ୍କର ସଂସାରରେ ଆଉ ଭରସା ନାହିଁ । ଅମା ଆଈ ପାଟି କରି ଡାକଲେ, "ଆରେ ଶିବୁ, ଆ, ମୋ ଗୋଡ଼କୁ ବଡ଼ କାଟିଲାଣି ରେ !"

ଶିବୁ ବାବୁ ସିମିଣ୍ଟ ପାଖକୁ ଆସିଛନ୍ତି, ଅମା ଆଈ ତ ତାଙ୍କ ଗୋଡ଼ ଯୋଡ଼କ ବୋହୂ ଜିମା କରି-ଦେଇ ଅଲଗା ହୋଇଗଲେ । ବୋହୂ ଭଲ କରି

ସ୍ୱାମୀର ଗୋଡ଼ ଜାବଡ଼ ଧରିଲା । ଗୋଡ଼ ଛାଡ଼ିଲେ ସିନା କୁଆଡ଼େ ଯିବ ? ସଂସାରଯାକ ସବୁ ଅନ୍ଧାର— 'ପଦ୍ମପାଦ ଯୋଡ଼କ ଭରସା ।' ଅମ୍ମା ଆଈ ବୋହୂଲାଗି ସୁପାରସ କରି କହିଲା, "ଆରେ ଶିବୁ ! ବୋହୂ ଏଣିକି ଘର କାମ ପାଇଟି ସବୁ କରିବ, ତୁ ବାହା ହୋ ନା ।" ଶିବୁ ବାବୁ କହିଲେ, "କାହିଁ ସେ ତ ଆପେ କହୁ ନାହିଁ ?" ଏହି କଥା ପଦେକ ଶୁଣି ବୋହୂର ବଡ଼ ଭରସା ହୋଇଗଲାଣି । ଚଞ୍ଚଳ କହି ପକାଇଲା, ହୁଁ— ହୁଁ—ହଁ—ଉଁ ।"

ଶିବୁ ବାବୁ କହିଲେ, "ମୁଁ ହୁଁ—ହୁ—ଉଁ—ଉଁ ବୁଝେ ନାହିଁ ।" ସଫା କରି ଗୋଟି ଗୋଟି କଥା କହୁ । ଶିବୁ ବାବୁ ଯେମିତି କହିଲେ, "ବୋହୂ ଠିକ୍ ସିମିତି ଗୋଟି ଗୋଟି କରି ସବୁ କଥା ଜବାବ କଲା ।"

ଶିବୁ ବାବୁ ତାହା ବାଦେ କହିଲେ, "ଆଚ୍ଛା ଆଈ, ସେ କିଆଁ ଚମ୍ପୀ ସାଙ୍ଗରେ କଳି ଲଗାଇଲା ? ଘଷୁ ଭୂଇଁରେ ନାକ ।" କିଛି ଓଜର ନାହିଁ—ବୋହୂ ଭୂଇଁରେ ନାକ ଘଷିଲା । ଚମ୍ପା ଠିଆ ହୋଇ ହସୁଥିଲା, ବୋହୂ ନାକଘଷା ବେଳେ ପଳାଇଲା । ବୋହୂ ଆଈ ପାଖରେ ବି ନାକ ଘଷିଲା । ଶିବୁ କହିଲେ—"ଆଚ୍ଛା ଆଈ, ମାଙ୍କ ପାଖରେ ଏହିପରି କହୁ ।" ଗଲେ ସମସ୍ତେ ମା'ଙ୍କ ପାଖକୁ; ବୋହୂ ଗୋଟି ଗୋଟି କରି ସବୁ କଥା କହିଲା । ମାଟିରେ ନାକ ଘଷିବାବେଳେ ମା ଟିକିଏ ଦୁଃଖ କରି କହିଲେ, "ହଁରେ ହେଲାଣି ରେ, ବୋହୂ ସବୁ କରିବ ରେ ।" ଶିବୁ ବାବୁ କଟମଟ କରି ଚାହିଁ- ବାରୁ 'ନା ରେ—ନା ରେ, କହି ବିମଳା ଦେଈ ବାଡ଼ିଆଡ଼କୁ ପଳାଇଲେ ।'

ଶିବୁ ବାବୁ କହିଲେ, "ଆଚ୍ଛା, ଏଥର ଚମ୍ପା ଗୋଡ଼ ଧରୁ ।" ଚମ୍ପା ଧାଇଁଆସି ବୋହୂକୁ କୁଣ୍ଢାଇ ପକାଇଲା । "ନା ନା, ଯେତେହେଲେ ମୋ ବଡ଼ ଭାଉଜ, ମା ପରି, ମୁଁ ସିନା ତା ଗୋଡ଼ତଳେ ପଡ଼ିବ ।" ଚମ୍ପା ବୋହୂକୁ ଜୁହାରଟିଏ କରି କୁଣ୍ଢେଇ ପକେଇଲା । ନଣନ୍ଦ ଭାଉଜ ଦୁହେଁ ଟିକିଏ କନ୍ଦାକନ୍ଦି ହେଲେ । ଚମ୍ପା କିଆଁ କାନ୍ଦିଲା ? ମାତ୍ର ସେ କାନ୍ଦୁଛି । ଚମ୍ପା ବୋହୂକୁ ବାଡ଼ିଆଡ଼କୁ ଭିଡ଼ି ନେଇଗଲା । ଅଧଗିନାଏ ମାଳପା ଲଗାଇ ଦେଇ ଗାଧୋଇ ଆଣିଲା । ଚମ୍ପା ରନ୍ଧାବଢ଼ା କରି ମା ଭାଇଙ୍କୁ ଖୁଆଇଲା । ବୋହୂଟା ଉପାସ ଅଛି, କେଜାଣି କେମିତି ଖାନ୍ତା ? ନଣନ୍ଦ ଭାଉଜ ଏକ ସାଙ୍ଗରେ ବସି ଖାଇଲେ । ବୋହୂ ଟୁକୁଣାଏ ପାଣି ପିଇ ଲଠକରି ଭୂଇଁରେ ପଡ଼ିଗଲା ।

ତହିଁ ଆରଦିନ କାଉ କା କରିବାବେଳକୁ ବୋହୂ ବାସି ପାଇଟି ସାରି ବସିଛି । ଟିକିଏ ଖରା ଉଠିଲା ବେଳକୁ ଚମ୍ପା ଆସି ଦେଖିଲା, ସବୁ ବାସି ପାଇଟି ସରିଲାଣି । ମନ ମଧ୍ୟରେ ଟିକିଏ ଖୁସି ହେଲା । ନଣନ୍ଦ ଭାଉଜ ଦୁହେଁ ସାଙ୍ଗସୁଙ୍ଗା ହୋଇ ଗାଧୋଇ ଗଲେ । ପ୍ରଥମ ପ୍ରଥମ ବୋହୂ ରାନ୍ଧି ଜାଣୁ ନ ଥିଲା, ଚମ୍ପା ଶିଖାଇ ଦେବାରୁ ଏବେ ବେଶ୍ ରାନ୍ଧେ । ଶାଶୁ କିଛି ପାଇଟି କରିବାକୁ ଗଲେ ବୋହୂ ହାତରୁ ଛଡ଼ାଇନିଏ । ପୁଅ ଝିଅ ଉପରେ ବି ବୁଢ଼ୀ କିଛି ପାଇଟିରେ ହାତ ଦିଅନ୍ତି ନାହିଁ । ଏକ ଜାଗାରେ ବସି ବୋହୂକୁ କହି ଦେଉଥାନ୍ତି ।

ବିମଳା ଦେଈ ଏକ ଜାଗାରେ ବସି ଦିନ ରାତି ମାଳାଟିଏ ଗଡ଼ାଉଥାନ୍ତି । କେହି ଲୋକ ଗାଁରୁ ଆସିଲେ ତା ପାଖରେ ଖାଲି ବୋହୂର ପ୍ରଶଂସା । ଦିନକୁ କୋଡ଼ିଏ ଥର ଯାହା ତାହା ପାଖରେ ଖାଲି ବୋହୂର ପ୍ରଶଂସା । ଦିନକୁ କୋଡ଼ିଏ ଥର ଯାହା ତାହା ପାଖରେ କହନ୍ତି "ମୋର ତ ସୁନା ବୋହୂ ।"

———

## ଧୂଳିଆ ବାବା

ହେ ଗାଁର ହନୁମାନ୍ ଜୀ ପ୍ରତ୍ୟକ୍ଷ ଦେବତା । ସେ ତ କଣ୍ଟୁ ଆଜକାଲିକା କଳିଯୁଗର ଦେବତା ନୁହନ୍ତି; ସତ୍ୟଯୁଗରୁ ବିରାଜିଛନ୍ତି । ମହନ୍ତ ମହାରାଜଙ୍କ ନାମ ହନୁମାନ୍ ଦାସ । ତାଙ୍କର ବି ସେହିପରି ମହିମା । ବଡ଼ ବଚନସିଦ୍ଧ ପୁରୁଷ ଥିଲେ । ଯାହାକୁ ଯାହା ଆଜ୍ଞା କରୁଥିଲେ, ତୁରନ୍ତ ଫଳ ଯାଉଥିଲା । ତାଙ୍କ ମହିମା କଥା ପୃଥିବୀଯାକ ଜାରି । ନାଗପୁର ମରହଟ୍ଟା ଫୌଜଦାର ସବୁ କଥା ଶୁଣି ପାରି ତାଙ୍କୁ ଦର୍ଶନ କରିବାକୁ ଆଇଲା । ସକାଳଓଳିଆ ମହନ୍ତ ମହାରାଜ ଗୋଟାଏ କାନ୍ଥଡ଼ା ଉପରେ ବସି ଗଞ୍ଜେଇ ଟିପୁଥିଲେ । ଦୂରକୁ ଅନାଇ ଦେଲେ ଯେ ଗୋଟାଏ ଖୁବ୍ ବଡ଼ ଦନ୍ତା ହାତୀ ଉପରେ ଅମାରି କସା, ତା ଉପରେ ପାଟଛତା ଉଡ଼ୁଛି, ଫୌଜଦାର ତା ଉପରେ ବସି ଆସୁଛି । ମହନ୍ତ ମହାରାଜ ଖାଲି ଏତିକି କହିଲେ, "ହୁଁ - ଚେଲ୍ ବାବା କାନ୍ଥଡ଼ା ଚେଲ୍ ।" ଆଉ କଣ କାନ୍ଥଡ଼ା ରହିପାରେ, ଚାଲିଲା । ଚେଣୁ ଆସୁଛି ହାତୀ, ଏଣୁ ଯାଉଛି କାନ୍ଥଡ଼ା, ଅଧବାଟରେ ଭେଟାଭେଟି । ଫୌଜଦାର ଯିମିତି ଅନାଇ ଦେଇଛି, ଆଉ କଣ ହାତୀରେ ବସିପାରେ ! ଖପ୍‌କରି ହାତୀରୁ ଡେଇଁପଡ଼ି ଲମ୍ ତମ୍ ଗୋଡ଼ତଳେ ପଡ଼ିଗଲା । ମହନ୍ତ ମହାରାଜ କଲ୍ୟାଣ କଲେ, "ଜୀତେ ରହୋ—ଜୀତେ ରହୋ - ବଚ୍ଚା, ଉଠ—ଉଠ ।" ଫୌଜଦାର କିମିତି ଉଠିଛି, ସାଙ୍ଗେ ସାଙ୍ଗେ ତମ୍ବା ପାଟିଆରେ ବାରବାଟୀ ଜମି ଅଜଗରି ସନନ୍ଦ କରିଦେଲା । ଏହି ମହନ୍ତ ଗାଦିରେ ବସିଥିଲେ—ବାର ଶ ବାର ମାସ ବାର ଦିନ । ସେ ତ ଥିଲେ ଇଚ୍ଛାମୃତ୍ୟୁ ପୁରୁଷ, ଆଉ ପୃଥିବୀରେ ରହିବାକୁ ମନ ବଳିଲା ନାହିଁ । ଅଯୋଧ୍ୟାକୁ ଖବର ଗଲା । ହନୁମାନ ଗାଦିରୁ ଜଣେ ଚେଲା ଆସିଲେ । ଏହାଙ୍କ ହାତରେ ଗାଦି ଦେଇ ସ୍ୱର୍ଗକୁ ଚାଲିଗଲେ । ଏ ଚେଲାଙ୍କ ନାମ ମର୍କଟ ଦାସ ମହନ୍ତ ମହାରାଜ । ଗାଦିର ମହିମା—ଏ ମହନ୍ତ ବି ସେହିପରି । ଏହାଙ୍କ ସମୟରେ ପଡ଼ିଲା ଫିରଙ୍ଗୀ ଅମଲ ଜାରି । କଟକ ସାହେବ କହିଲା, "କ୍ୟାଁ, ହିନ୍ଦୁ ଫକୀରଟା ଖଜଣା ନ ଦେଇ କେଉଁ ଏତେଗୁଡ଼ାଏ ଜମି ମାଡ଼ିବସିଛି ଖାଏଗା ? ବୋଲାଓ ଉସ୍କୋ, ହାମ୍ ଦେଖେଗା ।" ପରୁଆନା ପାଇ ମହନ୍ତ ଘୋଡ଼ାରେ ଚଢ଼ି ବାହାରିଲେ । ଆଗରେ ବାନା ବୈରଖ ଉଡ଼ୁଛି, ହରିବୋଲ ପଡ଼ୁଛି, କୀର୍ତ୍ତନ ଲାଗିଛି, ଯାଇ ହଜେ ହୋଇଗଲେ ମହାନଦୀ କୂଳରେ । ଶ୍ରାବଣ ମାସିଆ ଦିନ, ମହାନଦୀ ଏ କୂଳ ସେ କୂଳ ଖାଉଛି, ବର୍ଷା ତୋଫାନ ବୋଲେ ମୁହିଁ— ନାଉରୀ କହିଲା, ନାଆ ଫିଟାଇବ ନାହିଁ । ପାରି ହେଉଛନ୍ତି କିମିତି ? ମହନ୍ତ ମହାରାଜ ଆଜ୍ଞା କଲେ "ପରବା ନାହିଁ !" କାଖରେ ଯେ ବାଘ ଛାଲ ଥିଲା, ପାଣିରେ ପାରି ଦେଲେ—ଆପେ ହଜେ ହୋଇଗଲେ, ଅଧିକାରୀ ଟହଲିଆ ସୁଆର ଚଳିବା ଭଳି ଲୋକଙ୍କୁ ପାଖରେ ବସାଇ ନେଲେ । ଜଣେ ଛଡ଼ିଆ ମହନ୍ତଙ୍କ ମୁଣ୍ଡ ଉପରେ ପାଟ ଛତା ଟେକିଥାଏ । ଦୁଇ ଜଣ ବାହିଆ ଛାଲ ବାହି ଯାଉଥାନ୍ତି । ଏଣେ ମହାନଦୀ ଆର କୂଳରେ ସାହେବ ଗଉଟି ପକାଇ ବସିଥିଲା । ଦୂର୍‌ବୀନରେ ଚାହିଁ ଦେଲା, ପାଖ ଲୋକଙ୍କୁ ପଚାରିଲା, "ଏ କ୍ୟା ?" ଲୋକେ କହିଲେ, "ହିନ୍ଦୁ ଫକୀର ହଜେ ହୋଇ ଅସୁଛନ୍ତି ।" ସାହେବ ଆଉ କଣ ଚୌକିରେ ବସିବ, ନଈ କୂଳକୁ ଧାଇଁ ଅଇଲା । ମୁଣ୍ଡରୁ ଟୋପି ତଳେ ରଖି ତିନ ସଲାମ କଲା । କହିଲା—ହାଲେ ଫକୀର, ତୁମାରି ଜମିନ୍ ବାହାଲ ।"ଏ ମହନ୍ତ ଦେଢ଼ ହଜାର ବର୍ଷ ଗାଦିରେ ବସିଥିଲେ । ତାଙ୍କ ଉତ୍ତାରେ ଗାଦିରେ ବସିଲେ ଜମ୍ବୁବାନ୍ ମହନ୍ତ ମହାରାଜ । ମଠର ପଛପଟରେ ଯେଉଁ ହଫାଙ୍କୁଡ଼ିଆ ବୁଢ଼ା ସାହାଡ଼ା ଗଛ ଦେଖୁଛ, ଏଇଟା କଣ ଜାଣ ? ମହନ୍ତ ଦିନେ ସାହାଡ଼ା ଦାନ୍ତ କାଠିରେ ଦାନ୍ତ ଘଷୁଥିଲେ, [illegible]ଠିଖଣ୍ଡ ଦାନ୍ତରେ ଚିରି ଜଉ ଛେଳିପକାଇ ଦୁଇଟା କାଠି ଯୋଡ଼ ମାଟିରେ ପୋତି ଦେଲେ । ତା ଉପରେ ଯିମିତି ଟୋପାଏ ପାଣି ପକାଇଛନ୍ତି, ସିମିତି ଗଜେଇ ଗଲା ।

ଏଇଟା ସେଇ ଗଛ । ବର୍ତ୍ତମାନ ମହନ୍ତଙ୍କ ନାମ ବାନ୍ଦର ଦାସ ମହନ୍ତ ମହାରାଜ । ଏପରି ପୁରୁଷ କାହିଁ ଦେଖା ନାହିଁ, ନ ଥିବ । ଝୋଅହଟା ମର୍ଦ୍ଦ, ଗାଲ ୬୦ ଗୁଣ୍ଡରେ ଲାଗିଯାଇଛି, ବେକ ଦିଶେ ନାହିଁ । ବାହୁ ଆଉ ଲୋକଙ୍କ ଜଙ୍ଘ ପରି ମୋଟା, ପେଟଟି ଗୋଟିଏ ଦଶ ନୌଡିଆ ଘୁମା । ଅଜଣା ଲୋକେ ଦେଖି କହିବେ, ମହନ୍ତ ଲଙ୍ଗଳା । ନାହିଁ, ନାହିଁ ଗୃଖଣ୍ଡେ ଚୌଡ଼ା ଦେଢ଼ ହାତ ଲମ୍ବ ଖଣ୍ଡେ କନା କୌପୀନ ମାରିଥାଆନ୍ତି । ଜଙ୍ଘକୁ ଜଙ୍ଘ ଲାଗିଯାଇଛି, ପେଟଟି ଝୁଲିପଡ଼ିଛି, କୌପୀନ ଦିଶେ ନାହିଁ । ଏ ମହନ୍ତଙ୍କର ବି ମହିମା ଅପାର । ମନ୍ଦିରରେ ଏତେ ଖଟ ପଲଙ୍କ, କାହିଁରେ ଶୋଇବେ ନାହିଁ, ସବୁବେଳେ ଧୂଳିରେ ଗଡ଼ୁଥାନ୍ତି । ଦେହଯାକ ଧୂଳି-ଧୂସର । ସ୍ନାନ କେବେ କରନ୍ତି ନାହିଁ, ପାଣି ଛୁଅନ୍ତି ନାହିଁ । ଏଥିପାଇଁ ଲୋକମାନେ ମହନ୍ତ ମହାରାଜାଙ୍କୁ ଧୂଳିଆ ବାବା ବୋଲି ଡାକନ୍ତି । ମନ୍ଦିରରେ ଏତେ ଧନ ଦୌଲତ, ଏତେ ପିଠା ଖଜା କିଛି ଛୁଇଁବେ ନାହିଁ । ଦଶ ସେର ନିରୁତା ଦୁଧ ଆଉଟି ଆଉଟି ପାଞ୍ଚ ସେର ରହିବ । ଅଲଟା ଫଡ଼ା ଟିକି ଉପରେ ସର ପଡ଼ିବ । ଦିପହର ଧୂପରେ ଠାକୁରଙ୍କ କଟିରେ ଭୋଗ ଲାଗେ । ମହନ୍ତ ମହାରାଜ ତେତିକ ସେବା କରନ୍ତି । ଆଉ ତୋଳାଏ ଆପୁ, ପାଏ ଗଞ୍ଜେଇ ଖଞ୍ଜା । ଦିନରାତି ଗଞ୍ଜେଇ ଚିଲମ ହାତରୁ ଛୁଟେଣି ନ ଥାଏ । ଆଖି ଯୋଡ଼ିକ ସାନ ସାନ ସିନ୍ଦୂର ବିନ୍ଦୁ ପରି ଲାଲ । ସବୁବେଳେ ମିଞ୍ଜି ମିଞ୍ଜି କରି ଚାହାନ୍ତି । ତାଙ୍କ ଗଞ୍ଜେଇ ଚିଲମଟା ହାତେ ଲମ୍ବ । ଦଶ ପନ୍ଦର ଜଣ ଭକତ-ଚେଲା ସବୁବେଳେ ବେଢ଼ି ବସି-ଥାନ୍ତି । ଗଞ୍ଜେଇଟିପା କାମ ପାଞ୍ଚ ଛ ଜଣଙ୍କ ହାତରେ ଲାଗିଥାଏ । ମନ୍ଦିରରୁ ପ୍ରସାଦ ସେବା କରି ସବୁବେଳେ ଏମାନେ ପାଖରେ ହାଜର ।

ଆଗ ଆଗ ମହନ୍ତ ମହାରାଜମାନଙ୍କ ମହିମା କଥା ଦେଶ ଲୋକଙ୍କୁ ଜଣା । ପୁଣି ସେ ସବୁ କଥା ଭୂର୍ଜପତ୍ରରେ ଦେବନାଗର ଅକ୍ଷରରେ ରକ୍ତଚନ୍ଦନରେ ଲେଖା ହୋଇ ଦେଉଙ୍କ ସିଂହାସନ ତଳେ ଅଛି । ଏ ଧୂଳିଆ ବାବା ସେ ସବୁ ପଢ଼ି ଆସି ବିଶ୍ୱାସୀ ଭକ୍ତମାନଙ୍କ ପାଖରେ ଗୋପନରେ କହନ୍ତି । "କେହି କେହି ଅବିଶ୍ୱାସୀ ଭକ୍ତ ଲୋକଙ୍କ ପାଖରେ ପ୍ରକାଶ କରି ପକାଏ ।"

ଧୂଳିଆ ବାବା ସବୁଦିନେ ଚେଲାମାନଙ୍କ ଆଗରେ କହନ୍ତି, ଏହି ପୃଥିବୀରେ ଯେ ଜଗନ୍ନାଥ ଦେଉଳ ଦେଖୁଛ, ତିଆରି ହେଲା ବାଦ ପ୍ରତିଷ୍ଠାକୁ ଅଯୋଧ୍ୟାରୁ ହଜାରେ ଆଠ ମୂରତି ସାଧୁ ମହନ୍ତ ଭୋଜି ଖାଇବାକୁ ଆସିଥିଲେ । ଏ ବି ସେମାନଙ୍କ ମଧ୍ୟରେ ଆସିଥିଲେ । ଚେଲାମାନଙ୍କ ଭକ୍ତି ଏଡ଼ି ନ ପାରି ରହି ଯାଇଛନ୍ତି*—ଆଉ ଏ ମିଛୁଆ ଦେଶଟା ଭଲ ଲାଗୁ ନାହିଁ, ଅଯୋଧ୍ୟା ହନୁମାନ ଗାଦିକୁ ଫେରିଯିବେ । ପ୍ରାସାଦସେବାକାଂକ୍ଷୀ ଚେଲାମାନେ ଗୋଡ଼ତଳେ ପଡ଼ି ଗଡ଼ନ୍ତି । ସେମାନଙ୍କ ଉପରେ କୃପା କରି ଧୂଳିଆ ବାବା ରହି ଯାଇଛନ୍ତି । ଏପରି ଘଟଣା ଶହକୁ ଶହ ଥର ହୋଇ ଗଲାଣି ।

ମହନ୍ତଙ୍କର ଧନ ଦୌଲତ ଅମାପ । ଗାଈ ମଇଁଷି ପଲକୁ ପଲ, ଧାନ ଟଙ୍କାର ସୀମା ନାହିଁ । ଆପୁ ଢେର । ଆପୁ ମଧ୍ୟରୁ ଗୋଟିଏ ବିଶେଷ ଆପୁ ଏହି, ଦେଶ ମଧ୍ୟରେ ମାଲି ମକଦ୍ଦମା ଉପସ୍ଥିତ ହେଲେ ମୁଦେଇ ମୁଦାଲା ଦୁଇ ପକ୍ଷ ପ୍ରଭୁଙ୍କ ପାଖରେ ମନାସି ଯାନ୍ତି, ମାମଲା ଡିକ୍ରୀ ହେଲେ କିଏ କେତେ ଟଙ୍କା ଦେବେ, ପାଞ୍ଜିଆ ଲେଖି ରଖେ । ଯାହାର ମାମଲା ଡିକ୍ରୀ ହୁଏ ଜଣେ ସାଧୁଙ୍କୁ ପଠାଇ ତାଠାରୁ ଟଙ୍କା ଅସୁଲ କରାଯାଏ ।

---

* ଏହିଭଳି ଜଣେ ମହନ୍ତ ଲେଖକର ପ୍ରତିବାସୀ ଥିଲେ । ଲେଖକ ସେହି ମହନ୍ତଙ୍କ ଶ୍ରୀମୁଖରୁ ତାହାଙ୍କ ବୟସ ସମ୍ବନ୍ଧରେ ଏଇକଥା ଶୁଣିଛି ।

ରାମ ସାଉ ଶାମ ସାଉ ଦୁଇ ଭାଇ । ଭାଗଭାଗ ବଣ୍ଟା ଆଉ ପାଇଁ କଟକ ଅଦାଲତରେ ମକଦ୍ଦମା ଦାଏର ହେଲା । ରାମ ସାଉ ପ୍ରଭୁଙ୍କଠାରେ ମନାସି ଗଲା, ମାମଲା ଡିକ୍ରୀ ହେଲେ କେତେ ଟଙ୍କା ଦେବ, ପାଞ୍ଜିଆ ପାଖରେ ଲେଖି ଦେଇଗଲା । ଶାମ ସାଉ ଆସେ ନାହିଁ । ବୁଝି ବୁଝି ଶାମା କିଆଁ ଅଇଲା ନାହିଁ । ଜଣେ ଚେଲା ବୁଝି ଆସି ଜଣାଇଲା, "ପ୍ରଭୁ ! କଣ କହିବି, କହିବାକୁ ଡର ମାଡୁଛି । ଆଜ୍ଞା, ଶାମାର ଏଡ଼େ ବଢ଼ପ, ପାଞ୍ଚ ଜଣଙ୍କ ଆଗରେ ସାଫ ଫଟେଇ କହିଲା, କଳିକାଳରେ ମହନ୍ତଙ୍କ କରାମତି କାହିଁ ଯେ ମୁଁ ମନାସିବାକୁ ଯିବି ?" ମହନ୍ତ ତେତେବେଳେ ଗଞ୍ଜେଇ ଭିଡୁଥିଲେ, ରାଗରେ ଖୁବ୍ ବଳରେ ଚିଲମଟା ଭିଡି ନେଲେ, ଦପ୍ କରି ଜଳି ଉଠିଲା । ମହନ୍ତ ଅଳ୍ପ ଅଳ୍ପ ଭକ୍ ଭକ୍ କରି ପାଟିରୁ ଧୂଆଁ ଛାଡୁ ଥାଆନ୍ତି, କଥାଟା ଚପି ଚପି କହିଲେ, "ଦେଖ ଚେଲାମାନେ, ଆମେ ହୁକୁମ କରିବୁଁ, ଏହି ଚିଲମ ନିଆଁ କଥା କହିବ ।" ଚେଲାମାନଙ୍କର ତ ଆନନ୍ଦର ସୀମା ନାହିଁ । ସେମାନଙ୍କର ଦୃଢ଼ ବିଶ୍ୱାସ, ମହନ୍ତଙ୍କ ଆଜ୍ଞା ମେଣ୍ଟିବା ହେବାର ନୁହେଁ । ସେହି ଦିନ ମଧ୍ୟରେ ଦେଶଯାକ ହାଟ ହୋଇଗଲା, "ଧୂଳିଆ ବାବାଙ୍କୁ ପ୍ରଭୁଙ୍କର ସ୍ୱପ୍ନ ହୋଇଛି, ସେ ସିଦ୍ଧ ପୁରୁଷ ହୋଇଗଲେଣି, ତାଙ୍କ ଗଞ୍ଜେଇ ଚିଲମ କଥା କହିବ ।" ଥୋକେ ଚେଲା ପ୍ରକାଶ କଲେ, "ନାହିଁ ନାହିଁ ଚିଲମ ନୁହେଁ, ଚିଲମ ନିଆଁ କଥା କହୁଛନ୍ତି ।" ଦଶଜଣଙ୍କୁ ଆଜ୍ଞା ହେଲା, ସେ ନିଜେ ଶୁଣି ଆସିଲା, ଆଉ ଯାଏ କାହିଁ ? ତହିଁ ଆର ଦିନ ସକାଳୁ ସଞ୍ଜଯାଏ ଶହକୁ ଶହ ଲୋକ ଧାଇଁଛନ୍ତି ।

କାହାକୁ ବେମାରି ଛାଡୁ ନାହିଁ, କାହାର ବଳଦ ହଜିଛି ମିଳୁ ନାହିଁ, କାହାର ମାମଲା ଦାଏର ଅଛି, ଡିକ୍ରୀ ହେଉ । ଢେର ଢେର ତରଲା ପା'ପୂଜା ପଠାଇଛନ୍ତି, ସେମାନଙ୍କର ପୁଅ ହେଉ ନାହିଁ, ଚିଲମପ୍ରଭୁ ବର ଦେଉନ୍ତୁ । ଲୋକେ ପାଦପୂଜା ଟଙ୍କା ଅଧୁଲି ସୁକି ମହନ୍ତଙ୍କ ପାଦତଳେ ଦେଇ ଅଧା ପଡ଼ୁଛନ୍ତି ।

ମହନ୍ତ ମହାରାଜ ଆଜ୍ଞା କଲେ, "ଉଠ ଉଠ ବାବାମାନେ ! ଆମେ କଷ୍ଟ କହିବୁ ନାହିଁ, ଏହି ଯେ ଆମ ଗଞ୍ଜେଇ ଚିଲମରେ ଅଗ୍ନି ଦେଖୁଛ, ସେଥିରେ ଧୂନି ଥାପନା ହେବ, ସେହି ଧୂନିରେ ଅଗ୍ନି ଦେବତା ବିଜେ କରିବେ, ସମସ୍ତଙ୍କ ଗୁହାରି ଶୁଣି ବର ଦେବେ । ଆସନ୍ତା ଅଗିରପୂନେଇ ଦିନ ଅଗ୍ନି ଦେବତା ସ୍ୱର୍ଗରୁ ବିଜେ ହୋଇ ପୃଥିବୀରେ ଭ୍ରମଣ କରିବେ । ଆମ୍ଭଙ୍କୁ ସ୍ୱପ୍ନରେ ଆଜ୍ଞା କରିଛନ୍ତି, ଆମେ ଧୂନି ଥାପି ତାଙ୍କୁ ବିଜେ କରାଇ ରଖିବୁଁ, ଯାହାର ଯାହା ଗୁହାରି ଥିବ ପୂଜା ଦେଇ ଜଣାଇଲେ ତତ୍‌କ୍ଷଣାତ୍ ବର ମିଳିଯିବ ।" ପୂଜାର ବିଧାନ ସମସ୍ତଙ୍କୁ ଶୁଣାଇ ଦେଲେ, ଧୂନିରେ ଶଏ ଆଠ ଆହୁତି ଦିଆଯିବ, ସେଥି ସକାଶେ ଖଣ୍ଡିଏ ନବ ବସ୍ତ୍ର, ପାଞ୍ଚପା ଘିଅ, ପଞ୍ଚ ବର୍ଣ୍ଣି ଭୋଗ, ପଞ୍ଚ ବର୍ଣ୍ଣି ପୁଷ୍ପ । ଗାଦି ପୂଜା ଦକ୍ଷିଣା ଯାହାର ଯାହା ଶକ୍ୟ; କିନ୍ତୁ ପାଞ୍ଚ ସୁକାରୁ ଊଣା ନୁହେଁ ।

ଅଗିରପୂର୍ଣ୍ଣିମା ଅଧରାତିଠାରୁ ଧୂନି ପୂଜା ଆରମ୍ଭ ହେଲା । ମହନ୍ତ ମହାରାଜ ଆହୁତି ଦେବାରୁ ଅଗ୍ନି ଦେବତା ବିଜେ ହୋଇଗଲେ । ଧୂ-ଧୂ—ହୋଇ ଜଳୁଛନ୍ତି । ଯାହାର ଯାହା ପ୍ରାର୍ଥନା, ହାତ ଯୋଡ଼ି ଜଣାଇଲେ ଧୂନି ଭିତରୁ ଅଗ୍ନି ଦେବତା ଗମ୍ଭୀର ସ୍ୱରରେ "ହୁଁ—ନା—ହେବ" ଏହିପରି ଆଜ୍ଞା କରୁଛନ୍ତି । ପ୍ରତ୍ୟକ୍ଷରେ ଅବିଶ୍ୱାସ କଣ ? ଲୋକମାନେ ଶୁଣି ତାଟକା, ଭକ୍ତିରେ ଭୂଇଁରେ ପଡ଼ି ଗଡ଼ି ଯାଉଛନ୍ତି । ହରିଧ୍ୱନିରେ ମଠ ଉଛୁଳି ପଡୁଛି ।

ଶାମ ସାଉ ସବୁ କଥା ଶୁଣିଲା, ଘର ମଧ୍ୟରେ ଡକା ପାରି ମୁଣ୍ଡ ବାଡ଼େଇ ହେଉଛି । ଲୋକମାନେ ଧୂନି ପୂଜା କରି ବର ନେଇ ଯାଉଛନ୍ତି । ରାମା ଭାଇ ବି ପୂଜା ଦେଇ ବର ପାଇବ, ମୋହର ସର୍ବନାଶ ହେବ । ଇଜମାଲି ଧନ ଊଣା ନୁହେ, ଲକ୍ଷକରୁ ବଳି ପଡ଼ିବ, ସବୁ ରାମା ଭାଇ ନେଇ ଯିବ । ମହନ୍ତ ମହାରାଜ ଖପା ହୋଇ ଆଜ୍ଞା

କହୁଛନ୍ତି, "ଆଚ୍ଛା, ସେ ଚେଲା ଟୋକାକୁ ଦେଖିବୁଁ ।" ଏ କଥା ଶୁଣିଲାବେଳୁଁ ଶାମାର ପାକାଣି ଉଡ଼ିଲାଣି । କଣ କରିବ, ଭାଳୁଁ ଭାଳୁଁ ଗୋଟାଏ ବୁଦ୍ଧି ଦିଶିଗଲା । ମହନ୍ତ ମହାରାଜଙ୍କ ଗଞ୍ଜେଇ ପ୍ରସାଦସେବକମାନଙ୍କୁ ଯାଇ ଧରିଲା । କାହାକୁ ଦଶ, କାହାକୁ ପାଞ୍ଚ ଦେଇ ସମସ୍ତଙ୍କ ଗୋଡ଼ ତଳେ ପଡ଼ିଲା, ସମସ୍ତେ ଅଭୟ ଦେଇ ମହନ୍ତଙ୍କ ଗୋଡ଼ତଳେ ପଡ଼ିବାକୁ ଉପଦେଶ ଦେଲେ ।

ବେଳ ଛ ଘଡ଼ି, ସେବକମାନେ ବେଢ଼ି ବସିଛନ୍ତି । ମହନ୍ତ ଧୂନିଟାରେ ବସି ଗଞ୍ଜେଇ ଭିଡ଼ୁଛନ୍ତି, ଜାଗାଟା ଧୂଆଁମୟ । ଶାମ ଛାତି ଦାଉଁ ଦାଉଁ ପଡ଼ୁଛି । ଡର ଡର ଯାଇ ମୁଠାଏ ଟଙ୍କା ପାଦପୂଜାପାଇଁ ଝୁଣ କରି ମହନ୍ତଙ୍କ ପାଦ ତଳକୁ ଫୋପାଡ଼ି ଦେଇ ଲମ୍ବ ଲମ୍ବ ଗୋଡ଼ତଳେ ପଡ଼ିଗଲା । "ପ୍ରଭୁ ! ମୁଁ ମିଳ, ମୁଁ ମହାପାପୀ, ମୋ ଅପରାଧ କ୍ଷମା କରନ୍ତୁ ।" ମହନ୍ତ ଆଖି ବୁଜି ବସି ଗଞ୍ଜେଇ ଭିଡ଼ୁଛନ୍ତି, କିଛି ଆଜ୍ଞା ହେଲା ନାହିଁ । ସମସ୍ତ ସେବକ ଏକାବେଳକେ ମହନ୍ତ ମହାରାଜାଙ୍କ ଗୋଡ଼ତଳେ ପଡ଼ି ପ୍ରାର୍ଥନା କଲେ—"ହେ ମହାପ୍ରଭୁ ! ଆମ୍ଭେମାନେ ମହାପାପିଷ୍ଠ, ଅପରାଧୀ, ପ୍ରଭୁ କ୍ଷମା ନ କଲେ ଆଉ କିଏ ଜଗତରେ ଅଛି ?" ଦୟାମୟ ପ୍ରଭୁ ଏକାବେଳକେ ଆଜ୍ଞା କଲେ, "ଯାଓ ବେଟା, ପୂଜା ଲେଆଓ ।" ଶାମ ସାଉର ଆନନ୍ଦର ସୀମା ନାହିଁ, ପୂଜା ଆୟୋଜନରେ ଧାଇଁଛି । ଯେଡ଼େ ମହାଜନ, ପୂଜା ଆୟୋଜନ ସେହିପରି । ଘିଅ ପାଞ୍ଚପା ଜାଗାରେ ପାଞ୍ଚ ସେର, ଆଉ ଆଉ ସରଞ୍ଜାମ ତା ମାପିକେ । ସମସ୍ତେ ଖଣ୍ଡେ ଖଣ୍ଡେ ସୂତା ଶାଢ଼ୀ ଆହୁତି ଦିଅନ୍ତି । ଶାମ ସାଉ କୁମ୍ଭକର୍ଣ୍ଣୀ କନାର ସତା ଜରିମୁହିଁଆ ଖଣ୍ଡେ ବରମ୍ପୁରୀ ପାଟ ଶାଢ଼ୀ ଆହୁତି ଦେବାଲାଗି ଆଣିଛି । ଶାମ ସାଉର ଭାରି ବଡ଼ ପୂଜା ହେବ । ଗାଁରେ ସେ ଦୁଇ ଭାଇ ବଡ଼ ଟାଣୁଆ ମହାଜନ । ଅଗ୍ନିଦେବ ତାକୁ କି ବର ଦେବେ ଶୁଣିବାପାଇଁ ଆଖପାଖ ପାଞ୍ଚ ଛଅ ଗାଁରୁ ମଣିଷ ଧାଇଁଛନ୍ତି । ଢେର ଅଧିକ ପାଞ୍ଚ ଶହ ଲୋକ ଜମା ହୋଇ ଗଲେଣି । ବେଢ଼ା ଭିତରେ ଜାଗା ନାହିଁ ।

ମନ୍ଦିର ବେଢ଼ା ପାଚେରିଲଗା ଧାଡ଼ିଏ ଘର ଅଛି । ଗୋଟାଏ ଘରେ ମେଳା ମଉଛବରେ ପିଠା ଖଜା ତିଆରି ହୁଏ, ତା ପାଖଟା ସରଘର । ସେହି ପିଠା ତିଆରି ଘରେ ଧୂନି ଥାପନା ହୋଇଛନ୍ତି । ରାତି ଅନ୍ଦାଜ ଛ ଘଡ଼ି ସମୟରେ ମହନ୍ତ ମହାରାଜ ମନ୍ଦିର ପାଖ ଗମ୍ଭୀରରୁ ବାହାରିଲେ । ଆଜି ପ୍ରଭୁଙ୍କ ମନରେ ଭାରି ଆନନ୍ଦ । ଅନେକ ଟଙ୍କା ରୋଜଗାର ମାମଲା । ତୋଳାଏ ଆପୁ ଉପରେ ସଞ୍ଜବେଳେ ଆହୁରି ତୋଳାଏ ପକାଇଛନ୍ତି । ଗଞ୍ଜେଇ ବି ବେଶି କରି ଭିଡ଼ିଛନ୍ତି । ଚାଲିବା ବେଳେ ଗୋଡ଼ ଟଳି ଯାଉଛି, ଚାରି ଜଣ ଚେଲା ଧରାଧରି କରି ନେଉଛନ୍ତି । ମହନ୍ତ ବାବାଙ୍କୁ ଦର୍ଶନ କରି ସମସ୍ତ ଦେଖଣାହାରୀ ହରିବୋଲ ପକାଇ ଗୋଡ଼ତଳେ ପଡ଼ିଗଲେ । ପୂଜା ଆରମ୍ଭ ହେଲା, ପାଞ୍ଚ ସେର ଘିଅ ଆହୁତି, ଖୁବ୍ ମୋଟା ମୋଟା ଡେର ଗୁଡ଼ିଏ କାଠ ଧୂନିରେ ଲଦି ଦେଲେ । ଆହୁତି ପାଇ ଚାରି ହାତ ଉଚ ଶିଖା ଟେକି ନିଆଁ ଧୂ—ଧୂ ଜଳୁଛି । ଘର ଭିତରେ ମହନ୍ତ ଏକାକୀ । ପ୍ରଭୁଙ୍କର ସେହିପରି ମହିମା, ନୋହିଲେ ନିଆଁ ତେଜରେ ଆଉ କିଏ ସେ ଘରେ ପଶି ପାରିବ ? "ଶାମ ସାଉ ବେକରେ ପଟକା ପକାଇ ହାତ ଯୋଡ଼ି ଦୁଆରବନ୍ଧ ବାହାରେ ଛିଡ଼ା ହୋଇ ଧୂନି ମହାପ୍ରଭୁଙ୍କୁ ଅନାଇ ପ୍ରାର୍ଥନା କରୁଛି ।" ମହନ୍ତ ଆଖି ବୁଜି ଖୁବ୍ ପାଟି କରି ପ୍ରାର୍ଥନା କଲେ, "ଧୂନି ଜୀ ! ଶାମା ବେଟାକୁ ବର ଦିଅ – ବର ଦିଅ— ବର ଦିଅ, ତା ମାମଲା ଫତେ ହେଉ ।" ଧୂନି କିଛି ଜବାବ ଦେଲେ ନାହିଁ । ମହନ୍ତ ଆପଣାର କରମତ ଲୋକଙ୍କୁ ଦେଖାଇବା ପାଇଁ ଛିଡ଼ା ହୋଇଗଲେ, ହାତରେ ଯେଉଁ ଦଶ ସେରିଆ ଲୁହା ଚିମୁଟା ଥିଲା, ଖୁବ୍ ବଳରେ ପାହାରେ ବାଡ଼େଇଲେ । ଭୁଷ କରି ଭାରି ଗୋଟାଏ ଶବ୍ଦ ହେଲା । ଶାମ ସାଉ ଚମକପଡ଼ି ଅନାଇଲା, ଘର ଭିତରେ ଛୁଣ୍ଡିଏ ଚହ୍ଲାର ଗୋଟାଏ ଗାତ । ଗାତ ଅଧାଅଧି ପୂରି ନିଆଁ ଜଳୁଛି, ତା ମଧ୍ୟରେ ଦୁଇଜଣ ଲୋକ ଭାରି ଗୋଟାଏ ଧରାପରା

ଲାଗିଛନ୍ତି । ଶାମ ପ୍ରଥମରେ କିଛି ବୁଝି ପାରିଲା ନାହିଁ । ମୁହୂର୍ତ୍ତିକ ବାଦ ଭକ୍ତିବଳରେ ବୁଝିଗଲା, ଧୂମ୍ର ଦେବତା ଦେହ ଧରି ବିରାଜମାନ ହୋଇ ଗଲେଣି, ମହନ୍ତଙ୍କ ସଙ୍ଗରେ କୋଳାକୋଳି ହେଉଛନ୍ତି । ତାହାର ଭାଗ୍ୟ ଫିଟିଲା, ବର ମିଳିଯିବ । ମୁହୂର୍ତ୍ତିକ ମଧ୍ୟରେ ଏତେ କଥା ବୁଝି ନେଲା । ଖୁବ୍ ପାଟି କରି ହରିବୋଲ ପକାଇ କହିଲା, ଧୂମ୍ର ଦେବତା ରୂପ ଧରି ବିଜେ ହେଲେଣି । ଯେତେ ଲୋକ ଥିଲେ, ଆନନ୍ଦରେ ହରିବୋଲ ପକାଉଛନ୍ତି । ମନ୍ଦିରରୁ ଘଣ୍ଟ କାହାଳି ଝାଞ୍ଜ ବାଜୁଛି, ସମୁଦ୍ର ଗର୍ଜନ ପରି ଶବ୍ଦ ଉଠୁଛି । ଅଗ୍ନି ଦେବତାଙ୍କ ଦର୍ଶନ କରିବାକୁ ଲୋକେ ଧାଇଁଲେ । ଗୋଟିଏ ବୋଲି ଦୁଆର, ଘର ଭିତରଟା ଧୂଆଁରେ ପୂରିଛି । ଦୁଆର ପାଖରେ ଧରାପରା ହୋଇ କେତେ ଲୋକ ମଡ଼ା ଦଳାରେ ଆଣ୍ଠୁ ଛୁଡ଼ ଘାଉଲା ହୋଇଗଲେଣି ।

ପହରେ ବିତି ଗଲାଣି, ଲୋକେ ନାଚ କୁଦ ହରିବୋଲ ଦେଇ ହାଲିଆ ହୋଇ ପଡ଼ିଲେଣି । ଏ କଣ ? ମଡ଼ା ପୋଡ଼ାର ଉତ୍କଟ ଗନ୍ଧ, ଲୋକେ ନାକରେ ଲୁଗା ଯାକୁଛନ୍ତି । କେତେ ଜଣ ଜଣାଶୁଣା ଲୋକ ଦୁଆର ପାଖକୁ ଯାଇ ଭଲକରି ଅନାଇଲେ—"ଆରେ ମହନ୍ତ ମହାରାଜ ପୋଡ଼ି ମଲେଣି ରେ ।" ବାକେ ଲୋକ ବୁଝିଲେ, ଅଗ୍ନି ଦେବତା ବିଜେ ହୋଇ ମହନ୍ତ ବାବାଙ୍କୁ ଖାଇ ଗଲେଣି—କାଲେ ଧାଇଁ ଆସି ଆଉ ସମସ୍ତଙ୍କୁ ଖାଇଯିବେ । ପଳା—ପଳା—ପଳା ! ପଡ଼ି ଉଠି ଗୋଟାକ ଉପରେ ଗୋଟାଏ ପଡ଼ି ଧାଇଁଛନ୍ତି । ଶେଷକୁ ମନ୍ଦିରର ପୂଜାହାରୀ ଟହଲିଆ ଚାକରମାନେ ବି ଗୁଡ଼ି ପଳାଇଲେଣି । ଦଣ୍ଡକ ମଧ୍ୟରେ ଏଡ଼େ ମନ୍ଦିରଟା ନିଶୂନ । ଖାଲି ଧୂମ୍ର ଘରୁ ପଡ଼୍ ପଡ଼୍ ଶବ୍ଦ ଶୁଭୁଛି, ଦୁର୍ଗନ୍ଧ ବାହାରୁଛି ।

ଦେଗାଁ ପାଖକୁ ଗୋପାଳପୁର ସରକାରୀ ଥାନା ପ୍ରାୟ ଅଢ଼େଇ କୋଶ ବାଟ । ସକାଳୁ ସକାଳୁ ସେଠାରେ ଖବର ପହଞ୍ଚିଗଲା । ଦାରୋଗା ସାହେବ ପାଞ୍ଚ ଛ ଜଣ ବରକନ୍ଦାଜ, ଆଠ ଦଶ ଜଣ ଚୌକିଦାର ଧରି ଧାଇଁଲେ । ( ଢେର ଦିନ ତଳ କଥା, ସେତେବେଳେ କନେଷ୍ଟବଲ ନ ଥିଲେ । ) ଦାରୋଗା ପହଞ୍ଚି ଦେଖିଲେ, ମନ୍ଦିର ତ ମନ୍ଦିର, ଗାଁ ଗୋଟାକରେ ଜଣେ ମଣିଷ ବି ନାହିଁ, ସମସ୍ତଙ୍କ ଘରେ ତାଟି କବାଟ ବନ୍ଦ । ଚଉକିଆମାନେ ବହୁତ ଡକାହକା କରିବାରେ ଭିତରୁ ମାଇକିନିଆମାନେ ଜବାବ ଦେଲେ, "ପୁରୁଷ କେହି ଘରେ ନାହିଁ । କେହି ଯାଇଛି ଗୋରୁ ଖୋଜି, କେହି ଯାଇଛି କୁଣିଆ ଘରି, କେହି ଜାଉଆଣ ଭୋଜି ଖାଇ, ଢେର ଲୋକ ଯାଇଛନ୍ତି କଟକ ମାମଲାରେ ।' ବହୁତ ଖୋଜ ତଲାସରେ ମନ୍ଦିର ପୂଜାହାରୀ ଆଉ କେତେଜଣ ଚାକର ବାହାରିଲେ । ଦାରୋଗା ସରଜମିନ ତଦାରଖ କରି ବୁଝିଲେ ଯେ, ସରୁ ଘର ଭିତରୁ ଧୂମ୍ର ମଝିଯାଏ ମନୁଷ୍ୟ ଗୋଟାଏ ଗଳି ଯିବା ଭଳି ବିଲ ଖୋଳା ଯାଇଛି । ଧୂମ୍ର ତଳେ ଅଢ଼େଇ ଅଢ଼େଇ ହାତ ଲମ୍ବା ଚଉଡ଼ା, ଅଢ଼େଇ ହାତ ଗମ୍ଭୀର ଗୋଟାଏ ଗହ୍ୱର ଖୋଳା ହୋଇଛି, ତା ଉପରେ ଚାଖଣ୍ଡେ ମୋଟା ମାଟ ମାଟି ଅଛି । ସେହି ମାଟି ଉପରେ ଧୂମ୍ର ଜଳେ । ସେ ଘର ଭିତରୁ ବିଲ ବାଟରେ ମଣିଷ ଗଳି ଆସି ଧୂମ୍ର ତଳେ ବସିଥାଏ, ମହନ୍ତ କିଛି ପଚାରିଲେ ଲୋକଟା ଭିତରୁ ଜବାବ ଦିଏ । ଘଟଣା ରାତିରେ ଗୋଟାଏ ଗଞ୍ଜୋଡ଼ି ଚେଲା ଧୂମ୍ର ତଳେ ବସିଥିଲା, ତା ନାମ ହୁଣ୍ଡା ଦାସ । ସେଦିନ ମହନ୍ତଙ୍କର ଭାରି ନିଶାରେ ଜ୍ଞାନ ଲୋପ ହୋଇଥିଲା । ଲସ ଭରି ମଣିଷ, ଭାରୀ ଚାମ୍ଠାଟାରେ ଖୁବ ବଳରେ ପାହାରେ ମାରିବାରୁ ଉପରେ ମାଟି ଆଉ ନିଆଁ ସବୁ ଗାତରେ ପଡ଼ିଗଲା । ଦୁଇଟା ଲୋକ ଧରା-

ଫଗ୍ ହୋଇ ପୋଡ଼ିମଲେ । ବାହାରେ ବଡ଼ ଗୋଳମାଳ ହେଉଥିବାରୁ ସେମାନଙ୍କ ଆକୁଳ ଚିତ୍କାର କେହି ଶୁଣିପାରିଲେ ନାହିଁ ।

ଦାରୋଗା ସାହେବ ରିପୋର୍ଟ ଲେଖି ମାଇନା ସକାଶେ ଅଧପୋଡ଼ା ଲାସ ଯୋଡ଼ାକ ସଦରକୁ ପଠାଇ ଦେଲେ । *

---

* ଘଟଣାଟି ଆଂଶିକ ସତ୍ୟ—ଘଟଣା ସ୍ଥାନ ଦଶପଲ୍ଲା । ସେ ମହାନ୍ତ ପୋଡ଼ି ମରି ନ ଥିଲେ, ଗୁଡ଼ାଏ ଟଙ୍କା ଉପାର୍ଜ୍ଜନ କରି ଧରା ପଡ଼ିଥିଲେ ।

# ଗଳ୍ପସ୍ୱଳ୍ପ

## ଦ୍ୱିତୀୟ ଭାଗ

### ଅଜା ନାତି କଥା

( ସତ୍ୟ ଘଟଣାମୂଳକ )

ଅଜା ରାମ ଦ୍ୱିବେଦୀଏ—ଆରେ ଗଣି ! ଆମ ଜମିର ରୋଡ଼ସେସ୍ ଟଙ୍କା ଦାଖଲ କରିବା ଲାଗି କଚେରିକୁ ଯାଇଥିଲି । କାଲି ସଞ୍ଜବେଳେ ଘରକୁ ଫେରି ଆସିଛି । ଆମ ମୁକ୍ତାର ରାମ ମିଶ୍ରେ ଆଉ ଦି ଚାରି ଜଣ ଓକିଲଙ୍କୁ ପଚାରିଲି, କାହିଁ, କେହି ତ ସେ ମକଦ୍ଦମା କଥା ଶୁଣିଥିବାର କହିଲେ ନାହିଁ ? ପୁରୀ ସହର ଭିତରେ ବି କେତେ ଲୋକଙ୍କ ସାଙ୍ଗରେ ଦେଖା ହେଲା । ଯାହାକୁ ପଚାରିଲି, ସମସ୍ତେ କହିଲେ, ପୁରୀରେ ଏ କଥା ଶୁଣା ନାହିଁ । ଏ କମିତିକା କଥା ରେ ?

ନାତି ଗଣପତି—କେଉଁ ମକଦ୍ଦମା କଥା ଅଜା ?

ଅଜା—ଆରେ ତୁ ସେଦିନ ପରା ଗେଜେଟ୍‌ରେ ପଢ଼ି ଶୁଣାଉଥିଲୁ, ଗୋଟିଏ ମାଇକିନିଆ ଗୋଟିଏ ପୁରୁଷ ଦୁଇଜଣ ଚୋର ଚୋରଣୀ ମଉନା ମଉଣୀ ବାବାଜି ସାଜି ଖଣ୍ଡଗିରିର ଗୋଟାଏ ଗୁହା ଭିତରେ ବସି ମିଛରେ ତପସ୍ୟା କରୁଥିଲେ । ପୁଲିସ ସେମାନଙ୍କୁ ଚଲାଣ ଦେଲା । ମେଜେଷ୍ଟର ସାହେବ ଦି ଦି ବରଷ ମିଆଦ ଦେଲେ ।

ଗଣପତି—ହୋଃ ହୋଃ ହୋଃ ! ଏଇ କଥା । ନାହିଁ ନାହିଁ ଅଜା, ସେଇଟା ଗେଜେଟ୍ ନୁହେଁ, ସେଇଟା "ସାହିତ୍ୟ" ମାସିକପତ୍ରିକା । ସେଥିରେ ମଉନା ମଉଣୀ ବୋଲି ଗୋଟିଏ ଗଳ୍ପ ଲେଖାଥିଲା, ସେଇଟା ପଢ଼ି ଶୁଣାଉଥିଲି ।

ଅଜା—ଆରେ ଗେଜେଟ୍‌ରେ କଣ ମିଛ କଥା ଲେଖା ହୁଏ ? ସେଗୁଡ଼ାକ ତୁ କ୍ୟାଁ ପଢ଼ୁ ? ମଲା ଯା ! ମୁଁ ଜାଣିଥିଲି ସରକାରରୁ ଯେତେ ଛପା ଗେଜେଟ୍ ଆସେ, ସେଥିରେ ସବୁ ସତ କଥା ଲେଖା ଥାଏ । ତେବେ ଏଇଭଳି ମିଛକଥା ଗୁଡ଼ାଏ ଥାଏ ? ସେ ଗୁଡ଼ାକ ତୁ କ୍ୟାଁ ପଢ଼ୁ ରେ ? ତୁମ ଇସ୍କୁଲରେ କଣ ଏଇ ମିଛ କଥାଗୁଡ଼ାକ ପଢ଼ା ହୁଏ ? ହବ ନାହିଁ ? ମ୍ଳେଚ୍ଛ ପାଠ ତ !

ଗଣପତି—ନାହିଁ ଅଜା, ସେ ଗୁଡ଼ାକ ମିଛ ନୁହେଁ; ମନୁଷ୍ୟ କେତେ ରକମ କାର୍ଯ୍ୟ କରିପାରେ, କଥା ଛଳରେ ସେହି ତରହ ବର୍ଣ୍ଣନା କରାଯାଇଛି ।

ଅଜା—କ୍ୟାଁ ? ମିଛ କଥା ଗୁଡ଼ାଏ ଲେଖି ବର୍ଣ୍ଣନା କରିବା ଦରକାର କଣ ? ପଢ଼ିଲୁ, ଆମର ଏତେ ପୁରାଣ ଅଛି, ପଢ଼ିଲୁ, ପଦେ ମିଛ ପାଇବୁ କି ?

ଗଣପତି—ଆଚ୍ଛା, ସେ କଥା ପଛେ ହେବ । ଆଉ କଥା ହେଉ ଅଜା, ଏହି କାନ୍ଥବାଡ଼ରେ କି ଚିତ୍ର ? କଣ ଲେଖା ହୋଇଛି ?

ଅଜା– ଆରେ ଏତିକି ବୁଝି ପାରୁ ନାହୁଁ ? ତୋ ଆଈ ଗେରୁ, ହରିତାଳ, କଳାରଙ୍ଗ, ନଡ଼ିଆ ସଢ଼େଇରେ ଗୋଳେଇ କନାତୂଳିରେ ଏ ସବୁ ଚିତ୍ର କରିଛି । ସେ ଖୁବ୍ ଚିତ୍ର କରି ଜାଣେ । ଏଇ ଦେଖ, ଏଇଟା ହେଲା କଦମ୍ବଗଛ, ଫୁଲ ଫୁଟିଛି, ତା ମୂଳରେ ଶ୍ରୀକୃଷ୍ଣ ରାଧିକା ଯୁଗଳ ମୂର୍ତ୍ତି ଛିଡ଼ା ହୋଇଛନ୍ତି । ଶ୍ରୀକୃଷ୍ଣ ବଇଁଶୀ ବଜାଉଛନ୍ତି ।

ଗଣପତି - କାହିଁ ଅଜା, ବଇଁଶୀ ତ ଶୁଭୁ ନାହିଁ ?

ଅଜା—ହୋଃ ହୋଃ ହୋଃ ! ତୁ କମତିକା ଓଲୁ ଠୋକାଠା ରେ ! ହବ ନାହିଁ କିଁଆ ? ମ୍ଳେଚ୍ଛ ପାଠ ପଢ଼ି ତୁମମାନଙ୍କ ବୁଦ୍ଧି ବିଗିଡ଼ି ଯାଇଛି ! ଆରେ ଏ କଣ ସତକୁ ସତ ଶ୍ରୀକୃଷ୍ଣ ବଇଁଶୀ ବଜାଉଛନ୍ତି ? ଇଏ ହେଲା ଛବି ।

ଗଣପତି—ତେବେ ଏ ସତ କୃଷ୍ଣ ନୁହେଁ, ମିଛ କୃଷ୍ଣ କହ ।

ଅଜା—(ଟିକିଏ ଖପା ହୋଇ ତେଜରେ) ରାମ ! ରାମ ! ରାମ ! ମିଛ କୃଷ୍ଣ କଣ ରେ ? ଏ ହେଲା କୃଷ୍ଣଙ୍କ ଚିତ୍ର ।

ଗଣପତି—ତେବେ ଅଜା ଶୁଣନ୍ତୁ । କଥା କଣ କି, ଚିତ୍ର ବିଦ୍ୟା ଗୋଟିଏ ଲଳିତ କଳା । ସେ ଦୁଇ ରକମ—ଗୋଟିଏ ଚିତ୍ର ବାହାରର ଜଡ଼ ଦେହର, ଆଉ ଗୋଟିଏ ମାନସିକ କ୍ରିୟାର । ଆଚ୍ଛା, ଆପଣଙ୍କ ବୁଝିବାପାଇଁ ମୁଁ ଗୋଟାଏ କଥାରେ କହେଁ—ଗୋଟିଏ ଆଧିଭୌତିକ ଚିତ୍ର, ଆଉ ଗୋଟିଏ ଆଧ୍ୟାତ୍ମିକ ଚିତ୍ର । ଚିତ୍ରକର ଯେ, ସେ ତୂଳି ଗୋଟାଏ ଧରି ମନୁଷ୍ୟ ଶରୀର ଚିତ୍ର କରେ; କବି କଣ କରେ କି, ମନୁଷ୍ୟ ମନର ଗତି, କାର୍ଯ୍ୟପ୍ରଣାଳୀ, କ୍ରିୟା ଇତ୍ୟାଦି କଲମରେ ଲେଖେ । ଏଇଟାକୁ ମାନସିକ ଚିତ୍ର ବୋଲଯାଇ ପାରେ । ଲୋକଶିକ୍ଷାପାଇଁ କିମ୍ବା ଲୋକମନର ରଞ୍ଜନ-ପାଇଁ କବି ଆଉ ଚିତ୍ରକରମାନେ ଏହିପରି ଚିତ୍ର କରିଥାନ୍ତି ।

ଅଜା—ଆଚ୍ଛା, ଆମ ପୂର୍ବ ପୂର୍ବ ମହର୍ଷିମାନେ ଲୋକଶିକ୍ଷାପାଇଁ ଏତେ ପୁରାଣ ଗ୍ରନ୍ଥ ରଚନା କଲେ, ଗୋଟିଏ ହେଲେ ତ ମିଛ କଥା ଲେଖି ନାହାନ୍ତି । ଜ୍ଞାନ ପାଇଁ ସେ ସବୁକୁ ପଢ଼ । ଏପରି ମିଛ କଥାଗୁଡ଼ାକ କିଁଆ ପଢ଼ିବ ?

ଗଣପତି—ଆଚ୍ଛା ଅଜା, ମୁଁ ଯାହା କହୁଛି, ଧୀର ହୋଇ ଶୁଣନ୍ତୁ । ଖପା ହୋଇ ଯିବେ ନାହିଁଟି ? ଆପଣ ତ ମହାଭାରତ ବନପର୍ବରେ ପଢ଼ିଥିବେ, ଅଜଗର ସାପଟାଏ ଭୀମସେନଙ୍କୁ ଗିଳିବ ବୋଲି ଖୁବ୍ ଆଣ୍ଠି କରି ଧଇଲା । ଭୀମ ଭାରି ବଳୁଆ କି ନା ! ପଳେଇ ଯିବାପାଇଁ ଖୁବ୍ ଗୁଡ଼ାଏ ଟଣାଓଟରା କଲେ; ସାପ ତ ନ ଛାଡ଼େ । ତା ବାଦ ଭୀମ ଢେର ରକମ କଥା କହି ନେହୁରା ହେଲେ । ଅଜଗରକୁ ଦାତାରାମ । ଏତେଦିନ ଭୋକିଲା ପଡ଼ିଥିଲା, ଆଜ ମୋଟା ମଣିଷଟାଏ ପାଇଛି, ସେ କି ଛାଡ଼େ ? ଏତିକିବେଳେ ଯୁଧିଷ୍ଠିର ପହଞ୍ଚିଗଲେ । ଅଜଗର ଯୁଧିଷ୍ଠିର ଭିତରେ ଢେର କଥା-ଭାଷା ଚଳିଲା । ଆଚ୍ଛା ଅଜା, ଅଜଗର ସାପ କଣ କଥା କହୁଥିଲା ?

ଅଜା—ହୋଃ ହୋଃ ହୋଃ ! ଆରେ ତୁମେ ପିଲା-ଗୁଡ଼ାକ ତ ଧର୍ମଗ୍ରନ୍ଥ ପୁରାଣ ଆଦି ପଢ଼ିଲ ନାହିଁ, ତୁଚ୍ଛା ମିଛ ଗେଜେଟ୍‌ଗୁଡ଼ାକ ପଢ଼ିବ, ମୂଳଜ୍ଞାନ କଥା କାହୁଁ ଜାଣିବ ? ଆରେ ଜାଣୁ, ଏ ହେଲା ଦ୍ୱାପର-ଯୁଗର ପୁରାଣର କଥା । ଇଏ କଣ ଆଜକାଲିକାର କଥା ? ତୁ ତ ଜ୍ଞାନଶାସ୍ତ୍ର ପଢ଼ି ନାହୁଁ, ଜାଣିବୁ

କେଉଁଠୁ ? ତୁ ଯାହାକୁ ଅଜଗର ସାପ କହୁଛୁ, ସେ ସାପ ନୁହେ—ସୂର୍ଯ୍ୟବଂଶର ରାଜା ନହୁଷ । ବ୍ରାହ୍ମଣମାନଙ୍କୁ ଆପଠ କରି ତାଙ୍କ କାନ୍ଧ ଉପରେ ଚଢ଼ିଥିଲା । ବ୍ରାହ୍ମଣମାନେ ବି ସିମିତି ଖପା ହୋଇ ଅଭିଶାପ ଦେଲେ । ରାଜା ସାଙ୍ଗେ ସାଙ୍ଗେ ଅଜଗର ସାପ ପାଲଟି ଗଲା । ଦେଖିଲୁ ଆଗେ କମିତି ବ୍ରାହ୍ମଣମାନଙ୍କର ତେଜ ଥିଲା ?

ଗଣପତି—ଆଜି ବି କଣ ତେଜ ନାହିଁ ? ଯଜମାନଙ୍କୁ, ପାପୀଙ୍କୁ ଗୁଣିଆ କରି ପକାଉଛନ୍ତି ।

ଅଜା—( ଟିକିଏ ରାଗିଯାଇ କହିଲେ ) କଣ ? ବ୍ରାହ୍ମଣ ନିନ୍ଦା କରୁଛୁ ?

ଗଣପତି—ନାହିଁ ନାହିଁ ଅଜା, ମୁଁ ଥଟ୍ଟା କରି କହିଲି । ଆଚ୍ଛା, ମହାଭାରତର ଆଉ ଗୋଟିଏ କଥା ଶୁଣନ୍ତୁ । ଗୋଟିଏ ଶୁଆ ଚଢ଼େଇ ବଣ ଭିତରେ ବସା ବାନ୍ଧିଥିଲା । ସଞ୍ଜବେଳେ ଜଣେ ଅତିଥି ତା ଦୁଆରେ ପହଞ୍ଚିଲେ । ଶୁଆଟି ବଡ଼ ଅତିଥି ସେବା କରେ । ସେ କଣ କଲା ନା, ଧାଇଁ ଯାଇ ଚଞ୍ଚଲ ଅତିଥିଙ୍କୁ ଗୋଡ଼ ଧୋଇବାକୁ ପାଣି ଦେଲା, ଆସନ ଖଣ୍ଡିଏ ପକାଇଦେଲା, ଆଉ ଭୋଜନପାଇଁ କିଛି ଗୁଡ଼ୁଲ ଆଣି ଦେଲା । ଅତିଥି ଭାତ ରାନ୍ଧିଲେ । ମଲା ଯା ! ତିଅଣ ଯେ ନାହିଁ ! ଅତିଥି କଣ କଲେ କି, ଲୁଚି ଯାଇ ଶୁଆ ବେକ ମୋଡ଼ି ଦେଲେ । ତା ମାଉଁସ ତରକାରି କରି ସୁନ୍ଦର ଭୋଜନ କଲେ । ଆଚ୍ଛା ଅଜା, ଶୁଆ ଯେ ଗୁଡ଼ୁଲ ଆଣି ଦେଲା, ତା ଘରେ ସେ ଗୁଡ଼ୁଲ କିଏ କୁଟି ଦେଲା ? ଶୁଆଣୀ କୁଟିଦେଲା ପରା ?

ଅଜା ତ ଟିକିଏ ହଇରାଣରେ ପଡ଼ିଗଲେ— । ଅଣ୍ଟାରୁ ନାସଦାନି କାଢ଼ି ଲଗି ଲଗି ତିନି ଥର ଟିପା ନାସ ଶୁଙ୍ଘି ଦେଲେଣି । ତହିଁ ଉତ୍ତରରେ ଖନେଇ ଖନେଇ କହିଲେ, "ଆଚ୍ଛା ଗଣି, ମୁଁ ଉଚ୍ଚୁଣି ଭଲ ବୁଝି ପାରୁନାହିଁ । କାଲି ମୁଁ ତତେ ବେଶ କରି କହିବି, ବେଶ ବୁଝି ପାରିବୁ । ମୁଁ ଟୀକା ପଢ଼ି ନାହିଁ । ରାମ ମିଶ୍ରେ ବେଶ ସଂସ୍କୃତ ଜାଣନ୍ତି । ସେ ଟୀକା ପଢ଼ିଛନ୍ତି—ସେ ବୁଝାଇ ଦେବେ ।"

ଗଣପତି—ଆଚ୍ଛା ଅଜା, ଆଉ ଦିନେ ଦୁଇଜଣ ସାଙ୍ଗସୁଙ୍ଗା ହୋଇ ମିଶ୍ରଙ୍କ କତିକି ବୁଝାବୁଝି କରିବାଲାଗି ଯିବା । ଆଉ ଗୋଟିଏ କଥା ମୋତେ ବୁଝାଇ ଦେଉନ୍ତୁ, ଦେଖେଁ । ପିଲା ଶ୍ରୀକୃଷ୍ଣ ଗୋପପୁରେ ଥିଲେ । ତାଙ୍କୁ ମାରି ପକାଇବାପାଇଁ କଂସ ପୂତନା ରାକ୍ଷସୀକୁ ପଠାଇ ଦେଲା । ସେ ପୂତନା କଣ କଲା କି, ନାରୀ ବେଶ ଧରି ଆପଣା ସ୍ତନରେ ବିଷ ଭର୍ତ୍ତିକରି ଗୋପପୁରକୁ ଆସିଲା । ଶ୍ରୀକୃଷ୍ଣ ବିଷ ମିଶା କରି ତା ସ୍ତନ ଚିଁ କରି ଟାଣି ଦେଲେ, ପୂତନା ରଡ଼ିଟାଏ କରି ମରି ପଡ଼ିଗଲା । ସେ କଥା ମହାଭାରତରେ ବି ଲେଖା ଅଛି । ଶ୍ରୀକୃଷ୍ଣ ଜନ୍ମବେଳେ ଗୋଟାଏ ଶକୁନି ଗ୍ରାମରେ ଆସି ବସିଲା । ଶକୁନି ଅର୍ଥ ପୂତନା । ମହାଭାରତରେ ପୂତନା କଥା ଏହିପରି ଲେଖା । ଆଉ ଗୋଟାଏ ପୁରାଣରେ ଲେଖା ଅଛି ପିଲାବେଳେ ଶ୍ରୀକୃଷ୍ଣଙ୍କୁ ପିଛୁଡ଼ା ରୋଗ ହୋଇଥିଲା । ପିଛୁଡ଼ା ରୋଗ ପୂତନା । ବୋଇଲି ଅଜା, କେଉଁ ପୁରାଣଟା ସତ ? ଆଚ୍ଛା ଅଜା ! ଆହୁରି ଗୋଟାଏ କଥା କହନ୍ତୁ ତ ? ପୂତନା ତ ଊଣେଇଶ ଯୋଜନ ମାଡ଼ି ପଡ଼ିଲା, ତେବେ ଗୋପପୁରରେ ଯେତେ ମଣିଷ, ଗୋରୁ, ପଶୁ, ପକ୍ଷୀ ଥିଲେ, ସବୁ ତ ଚୂପା ଚଡ଼ି ମରିଗଲେ—ଗୋପପୁରର ସବୁ ଗଉଡ଼ ବଂଶ ବି ମରିଗଲେ ? କାହିଁ, ସେ କଥା ତ କେଉଁ ପୁରାଣରେ ହେଲେ ଲେଖା ନାହିଁ ।

ଅଜା ତ ବଡ଼ ହଇରାଣରେ ପଡ଼ିଲେଣି । କିଛି ଉତ୍ତର ନ ଦେଇ ପାରି କେବଳ ନାସ ଶୁଙ୍ଘୁଛନ୍ତି । ଶେଷରେ କହିଲେ, "ହଇ ରେ ଗଣି, ମୁଁ ତ ବୃନ୍ଦାବନ ଯାଇଥିଲି । ସତ, ଗୋପପୁରଟା ତ ଏତେ ବଡ଼

ନୁହେଁ । ପୃଥ୍ବୀ ମଣ୍ଡଳଟା ଊଣେଇଶ ଯୋଜନ ମାତ୍ର ଗୋପପୁରରେ କମିତି ପଡ଼ିଲା ? ପୁଣି ପୁରାଣରେ ଲେଖା ଅଛି, ସେ ଗୋପପୁରରେ ପଡ଼ିଲା । କଥା କଣ ?”

ଗଣପତି – ଜାଣ ତ ଅଜା, ପୁରାଣ ବୋଲ, କି ଉପନ୍ୟାସ ବୋଲ, କି ଗଳ୍ପ ବୋଲ, ଲୋକଶିକ୍ଷା ଲାଗି କବିମାନେ ଏହିପରି ଲେଖି ଯାଇଛନ୍ତି ! ପୁରାଣ ଅର୍ଥ କଣ ନା, ପୁରୁଣା କଥା । ଆଜିକାଲି ଯେ ଉପନ୍ୟାସ ସବୁ ବାହାରୁଛି, ତାକୁ ହଜାର ବରଷ ଉତ୍ତାରେ ଲୋକମାନେ ପଢ଼ିଲେ, କେହି କେହି ସତ ବୋଲି ମଣିବା ଆଶ୍ଚର୍ଯ୍ୟ ନୁହେ ।

ଅଜା – ନାହିଁ ରେ ଗଣି ! ମୋ ମନ ମାନୁନାହିଁ । ଆଚ୍ଛା ମୁଁ ପଣ୍ଡିତ ରାମମିଶ୍ରଙ୍କୁ ଏ କଥା ପଚାରି ତତେ କହିବି ।

---

## ବାଲେଶ୍ୱରୀ ରାହାଜାନୀ

### ( ସତ୍ୟ ଘଟନା )

ରେଲ ତ କାଲିକା କଥା, କଲିକତାଠାରୁ ପୁରୀ ପର୍ଯ୍ୟନ୍ତ ଯେଉଁ ଉପଯୁକ୍ତ ବହୁଳ ଶଙ୍ଖବିଶିଷ୍ଟ ସମତଳ, ପରିଷ୍କୃତ ସଡ଼କଦାଣ୍ଡ ବିସ୍ତୃତ ଅଛି, ପୂର୍ବକାଳରେ ସେଥିରେ ଚିହ୍ନ ସୁଦ୍ଧା ବିଦ୍ୟମାନ ନ ଥିଲା । ସେ ସମୟରେ ବଙ୍ଗଦେଶୀୟ ବା ଉତ୍ତରପଶ୍ଚିମାଞ୍ଚଳସ୍ଥ ଜଗନ୍ନାଥଦର୍ଶନାର୍ଥୀ ଯାତ୍ରୀମାନେ ଭୁଜଙ୍ଗଗତିବତ୍ କୁଟିଳ ଶ୍ୱାପଦସଙ୍କୁଳ, ଅରଣ୍ୟମୟ, ବନ୍ଧୁର, କଦାଚିତ୍ ପ୍ରାନ୍ତରମଧ୍ୟଗତ ଅପ୍ରସ୍ତୁତ ସଂକୀର୍ଣ୍ଣ ମାର୍ଗରେ ଗତାୟାତ କରୁଥିଲେ । ବର୍ଷାକାଳରେ ଅସଂଖ୍ୟ ନଦୀ ନାଳ ଜଳ-ବହୁଳତା ପ୍ରଯୁକ୍ତ ଉକ୍ତ ମାର୍ଗମାନ ଜନଶୂନ୍ୟ ଅବସ୍ଥାରେ ପଡ଼ିଥାଏ । ଚୈତନ୍ୟ ଦେବଙ୍କ ସମୟରେ ନବଦ୍ୱୀପବାସୀ ଯାତ୍ରୀମାନଙ୍କୁ ପୁରୀରେ ଉପସ୍ଥିତ ହେବା ସକାଶେ ତିନିମାସ କାଳ ଲାଗୁଥିଲା । ବର୍ତ୍ତମାନ ଅଷ୍ଟ ପ୍ରହରରୁ ଅଧିକ ନୁହେ ।

ଇଷ୍ଟ୍-ଇଣ୍ଡିଆ-କୋମ୍ପାନି କଲିକତାବାସୀ ରାଜା ସୁଖମୟଙ୍କଠାରୁ କେତେ ଲକ୍ଷ ଟଙ୍କା ଋଣ ଗ୍ରହଣ କରିଥିଲେ । କୋମ୍ପାନି ଋଣ ପରିଶୋଧ କରିବାରୁ ରାଜା ମହୋଦୟ ତାହା ଗ୍ରହଣ ନ କରି କଲିକତା-ଠାରୁ ଶ୍ରୀକ୍ଷେତ୍ର ଧାମ ପର୍ଯ୍ୟନ୍ତ ଗୋଟିଏ ମାର୍ଗ ପ୍ରସ୍ତୁତ କରିବା ସକାଶେ କୋମ୍ପାନି ହସ୍ତରେ ତାହା ପ୍ରତ୍ୟର୍ପଣ କଲେ । ସେହି ଟଙ୍କା ବଳରେ ବର୍ତ୍ତମାନ ସଡ଼କ ନିର୍ମାଣର ସୂତ୍ରପାତ ହୋଇଥିଲା । ସଡ଼କ ଉପରେ ଅନେକ ପ୍ରସ୍ତରମୟ ସେତୁ ନିର୍ମିତ ହୋଇଥିଲା । କାଳକ୍ରମେ ସରକାର ବାହାଦୁର ସେହି ସମସ୍ତ ସେତୁ ଭଗ୍ନ କରି ତାହା ପରିବର୍ତ୍ତରେ ବୃହଦାକାର ଇଷ୍ଟକମୟ ସେତୁ ନିର୍ମାଣ କରି ଦେଇଅଛନ୍ତି । ବର୍ତ୍ତମାନ ମଧ୍ୟ ଅନେକ ସ୍ଥାନରେ ପୁରାତନ କ୍ଷୁଦ୍ର କ୍ଷୁଦ୍ର ସେତୁ ବିଦ୍ୟମାନ ଅଛି । ସୋର ସମୀପବର୍ତ୍ତୀ କାଂଶବାଂଶ କ୍ଷୁଦ୍ର ନଦୀ ଉପରେ ନିର୍ମିତ ବୃହଦାକାର ସେତୁର ପ୍ରସ୍ତରାଂଶ ‘ସୁଖମୟୀ’ ଅଟେ । କଲିକତାଠାରୁ ପୁରୀ ପର୍ଯ୍ୟନ୍ତ ନବନିର୍ମିତ ମାର୍ଗ ପାର୍ଶ୍ୱରେ ପ୍ରତ୍ୟେକ ଦଶକ୍ରୋଶ ଅନ୍ତର ଇଷ୍ଟକମୟ ଖିଲାଣଯୁକ୍ତ, ପ୍ରାୟ ଚାରି ଶତ ଲୋକଙ୍କ ବାସୋପଯୋଗୀ ଦୁଇ ସାହାଲି ପାନ୍ଥନିବାସ (ଧର୍ମଶାଳା) ନିର୍ମିତ ହୋଇଥିଲା । ଉକ୍ତ ଧର୍ମଶାଳା ନିକଟରେ ଦୁଇଗୋଟି ଲେଖାଏଁ ସୁଗଭୀର କୂପ ମଧ୍ୟ ଖୋଳା ହୋଇଥିଲା । କାଳକ୍ରମରେ ସେହି ସମସ୍ତ ପାନ୍ଥନିବାସ ଜୀର୍ଣ୍ଣ ଓ ଅନାବଶ୍ୟକ ବୋଧ ହେବାରୁ ସରକାର ବାହାଦୁର ସେ ସମସ୍ତ ଭଗ୍ନ କରି ଇଷ୍ଟକରାଶି ସଡ଼କରେ ପକାଇଅଛନ୍ତି । ଭଦ୍ରକ, ବସ୍ତା ବ୍ରାହ୍ମଣୀକୂଳ ଓ କଟକରେ ସେହି ସମସ୍ତ ଧର୍ମଶାଳା ଅଦ୍ୟାବଧି ବିଦ୍ୟମାନ ଅଛି ।

ରାସ୍ତା ପ୍ରସ୍ତୁତ, କେତେକ ପରିମାଣରେ ପାନ୍ଥନିବାସର ଅଭାବ ମଧ୍ୟ ଦୂରୀଭୂତ ହେଲା; ମାତ୍ର ଯାତ୍ରୀମାନଙ୍କର ଖାଦ୍ୟାଦି ସଂଗ୍ରହ କରିବାର ଉପାୟ ନାହିଁ । ଜନ୍ ବିଚର ନାମକ ଜଣେ ସାହେବ ସରକାର ବାହାଦୁରଙ୍କ ଠାରୁ କେତେକ ଭୂମି ନିଷ୍କର ରୂପେ ଗ୍ରହଣ କରି ବାଲେଶ୍ୱରରେ ବିଚରଗଞ୍ଜ, ବସ୍ତାରେ ମୂଳଦା, ବାଁଲଗା, ମାର୍କଣା, ଝାଙ୍ଗି, କଟକ ପ୍ରଭୃତି ସ୍ଥାନରେ ସରେଇ ଘର ନିର୍ମାଣ ଓ ଦୋକାନ ବସାଇ ଦେଲେ । ସୁଖମୟ ଧର୍ମଶାଳାରେ ସର୍ବଜାତିର ଲୋକ ବାସ କରୁଥିବାରୁ ହିନ୍ଦୁଧର୍ମାବଲମ୍ବୀ ତୀର୍ଥଯାତ୍ରୀମାନେ ସେ ସ୍ଥାନରେ ପାକାଦି କରିବାକୁ ଅନିଚ୍ଛୁକ ହୋଇ ବିଚର ସାହେବଙ୍କ ସରେଇ ଘରେ ବାସ କରିବାକୁ ଲାଗିଲେ । ସ୍ଥାନୀୟ ଲୋକମାନେ ମଧ୍ୟ ଆବଶ୍ୟକ ସ୍ଥାନମାନଙ୍କରେ ଚଟି ଘର ନିର୍ମାଣ ଓ ଦୋକାନ ବସାଇ ସମସ୍ତ ଅଭାବ ଦୂର କଲେ । ରେଲମାର୍ଗ ଫିଟିବାରୁ ସେ ସମସ୍ତ ଚଟି ଘର ଉଠିଗଲାଣି । ଜନ୍ ବିଚର ସାହେବ ସରକାର ବାହାଦୁରଙ୍କଠାରୁ ଯେଉଁ ନିଷ୍କର ଭୂମି ଗ୍ରହଣ କରିଥିଲେ, ତାହା କଲିକତାବାସୀ ଉତ୍ତରାଧିକାରୀଠାରୁ ସେଥିର ସ୍ୱତ୍ୱାଧିକାର କ୍ରୟ କରି ଭଦ୍ରକନିବାସୀ ବାବୁ ବ୍ରଜ ଗୁପ୍ତ ଭୋଗ ଦଖଲ କରୁଅଛନ୍ତି ।

ପାନ୍ଥମାନଙ୍କର ସମସ୍ତ ଅଭାବ ଦୂର ହେଲା । ଶ୍ୱାପଦ ଜନ୍ତୁମାନଙ୍କ ହସ୍ତରୁ ଅନେକ ପରିମାଣରେ ରକ୍ଷା ପାଇଲେ । ମାତ୍ର ନର-ରାକ୍ଷସ ଡକାଏତମାନଙ୍କ ଅତ୍ୟାଚାର ସେମାନଙ୍କୁ ଦୀର୍ଘକାଳ ପର୍ଯ୍ୟନ୍ତ ଭୋଗ କରିବାକୁ ହୋଇଥିଲା । ମେଦିନୀପୁର ଠାରୁ ଭଦ୍ରକ ପର୍ଯ୍ୟନ୍ତ ରାଜମାର୍ଗ ଡକାଏତମାନଙ୍କର ଲୀଳାକ୍ଷେତ୍ର । ମାର୍ଗର ପଶ୍ଚିମ ଦିଗ ନିବିଡ଼ ଜଙ୍ଗଲମୟ ଥିବାରୁ ସେମାନେ ମାନବ ନେତ୍ରାନ୍ତରାଳ ଜଙ୍ଗଲ ମଧ୍ୟରେ ଖଟି ସ୍ଥାପନ କରି ଆପଣାର ନୃଶଂସ ନାରକୀୟ ବ୍ୟବସାୟ ସୁଚାରୁରୂପେ ଚଳାଇବାକୁ କ୍ଷମ ହୋଇଥିଲେ । ସରକାର ବାହାଦୁର ଦୀର୍ଘକାଳ ପର୍ଯ୍ୟନ୍ତ ବିଶେଷ ଚେଷ୍ଟା କରି ମଧ୍ୟ ସେମାନଙ୍କୁ ଶାସନ କରିବାକୁ ସମର୍ଥ ହୋଇ ନ ଥିଲେ । ଡକାଏତମାନଙ୍କର ଗୋଟିଏ ପ୍ରଧାନ ଘାଟି ଥିଲା 'ନାରସୂଣଗଡ଼ ।' ଉକ୍ତ ଗଡ଼ର ବାଉଁଶ ବଣ ମଧ୍ୟରେ ଶତ ଶତ ନିର୍ଦ୍ଦୋଷ ମହାପ୍ରାଣୀଙ୍କ ମସ୍ତକ ବଳିକୃତ ହୋଇଥିବାର ଆମ୍ଭେମାନେ ଶତସହସ୍ର ଥର ଶୁଣିଅଛୁଁ । ତ୍ରିଂଶବର୍ଷପୂର୍ବେ ଲେଖକ ଗୋ-ଶକଟରେ କଲିକତା ଗମନାଗମନ ସମୟରେ ଶକଟ-ଚାଳକ ଓ ଅନ୍ୟାନ୍ୟ ପଥିକମାନେ ଅଙ୍ଗୁଳି ନିର୍ଦ୍ଦେଶ କରି ଉକ୍ତ ଭୟଙ୍କର ସ୍ଥାନମାନ ନିର୍ଦ୍ଦେଶ କରାଇ ଦେଉଥାନ୍ତି । ଦେଶ ମଧ୍ୟରେ ଗୋଟିଏ ଚଳିତ କଥା ବହୁକାଳ ପର୍ଯ୍ୟନ୍ତ ଶୁଣା ଯାଉଥିଲା ।

"ହଳଦି ମଖାମଖି,
ନାରସୂଣଗଡ଼ ପାର ହେଲେ କୁଟୁମ୍ବ ଦେଖାଦେଖି ।"

ପୂର୍ବେ ନିତାନ୍ତପକ୍ଷେ ଯାତ୍ରୀମାନେ ନାରସୂଣଗଡ଼ ସୀମା ମଧ୍ୟରେ ସୂର୍ଯ୍ୟାସ୍ତ ଉତ୍ତାରେ ( ଦିବା ଭାଗରେ ମଧ୍ୟ) ଦଳବଦ୍ଧ ନ ହୋଇ ଗତାୟାତ କରୁ ନ ଥିଲେ । ଅଜଣା ଯାତ୍ରୀମାନଙ୍କର ରକ୍ଷା ନ ଥିଲା । ପୂର୍ବେ ଅବସ୍ଥାପନ୍ନ ଯାତ୍ରୀମାନେ ଗୋ-ଶକଟରେ ଗତାୟାତ କରୁଥିଲେ । ଭାଗ୍ୟବନ୍ତ ଲୋକମାନଙ୍କ ସକାଶେ ପାଲିଙ୍କି ଡାକର ବନ୍ଦୋବସ୍ତ ଥିଲା । କଟକ ପଦ୍ମପୁର ପ୍ରଭୃତି ଅଞ୍ଚଳର ସହସ୍ର ସହସ୍ର ଗୋ-ଶକଟ ଯାତ୍ରୀ ତଥା ବାଣିଜ୍ୟ ଦ୍ରବ୍ୟ ବହନରେ ନିଯୁକ୍ତ ଥିଲେ । ରେଲ ଓ ଷ୍ଟୀମାର ପ୍ରଭାବରୁ ହତଭାଗ୍ୟମାନଙ୍କର ଦାନା ପାଣି ଉଠି ଯାଇଅଛି ।

ଈଶ୍ୱରଙ୍କ ପବିତ୍ର ରାଜ୍ୟରେ ପାପୀ ଦଳର ପତନ ଅନିବାର୍ଯ୍ୟ । ଡକାୟତମାନେ ଖୁବ୍ ସତର୍କତା ସହିତ ବ୍ୟବସାୟ ଚଳାଇ ଆସୁଥିଲେ ମଧ୍ୟ ଏତେଦିନ ଉତ୍ତାରେ ସେମାନଙ୍କ ବିନାଶର କାରଣ ଉପସ୍ଥିତ ହେଲା ।

ବାଲେଶ୍ୱର ଜିଲ୍ଲାର ଆସିଷ୍ଟାଣ୍ଟ ମେଜେଷ୍ଟର (ପରେ ହାଇକୋର୍ଟର ଜଜ ) ମିଷ୍ଟର ରେମିନ ସାହେବ ପାଲିଙ୍କି ଡାକରେ ବାଲେଶ୍ୱରରୁ କଲିକତା ଯାଉଥିଲେ । ବସ୍ତା

ଓ ହଲଦିପଦା ଦୁଇଟି ମଧ୍ୟବର୍ତ୍ତୀ ସ୍ଥାନରେ ଡକାଏତ ପଡ଼ି ତାହାଙ୍କ ପାଲିଙ୍କି ଲୁଟି ନେଲେ । ଡକାଏତମାନେ ପାରତ ପକ୍ଷେ ଇଂରେଜଙ୍କ ଉପରେ ଡକାଏତି କରନ୍ତି ନାହିଁ । ସେମାନେ ଜାଣନ୍ତି, ଦେଶୀୟ ରାଜା ମହାରାଜାଙ୍କୁ ହତ୍ୟା କଲେ କାଳେ ରକ୍ଷା ପାଇ ପାରିବେ; ମାତ୍ର ପବିତ୍ର ଶ୍ୱେତଚର୍ମ ସ୍ପର୍ଶ କଲେ ରକ୍ଷା ନାହିଁ । ଡକାଏତ-ମାନେ ଭ୍ରମରେ ପଡ଼ି ରେମିନ ସାହେବଙ୍କ ପାଲିଙ୍କି ଲୁଣ୍ଠନ କରିଥିଲେ । ସେହି ସମୟରେ ବାଲେଶ୍ୱରର ଜଣେ ତେଲିଙ୍ଗ ମହାଜନ ଥିଲେ । ନାମ ନାରିକେଲ ମେଲି ଯୋଗେୟା । ଏ ଜଣେ ସାମାନ୍ୟ ଅବସ୍ଥାର ଲୋକ । ପ୍ରଥମେ ଲବଣର କଣ୍ଟ୍ରାକ୍ଟରୀ କରି ବିପୁଳ ଅର୍ଥ ଉପାର୍ଜ୍ଜନ କରିଥିଲେ । ଯୋଗେୟା ବାବୁଙ୍କର ଡାକ ବସିଥିବାର ଡକାୟତମାନେ ସନ୍ଧାନ ପାଇଥିଲେ । ଦୈବଗତ୍ୟା ତାହାଙ୍କ ଯିବା ରହିତ ହେବାରୁ ସେହି ଡାକରେ ରେମିନ ସାହେବ କଲିକତା ଯାଉଥିଲେ । ସାହେବ ଉପରେ ଡକାଏତି ତୁଚ୍ଛ କଥା ନୁହେ । ହାକିମ ମହଲରେ ଚହଳ ପଡ଼ିଗଲା । ପୋଲିସ ଦଳ ଯାଇ ବସ୍ତାଥାନା ଇଲାକାଟା ଓଲଟ ପାଲଟ କରି ପକାଇଲେ । କେତେ ବଣ ଜଙ୍ଗଲ ଖୋଜାଗଲା; ସରକାରୀ ଖରଚରେ କେତେ ପୋଖରୀ ପାଣି ବୁହାଗଲା, କେତେ ନିର୍ଦ୍ଦୋଷ ଲୋକ ଫେଣା ଦୋଷରେ ପଡ଼ିଲେ, କାହିଁରେ କିଛି ହେଲା ନାହିଁ । ଡକାଏତଗୁଡ଼ାକ ଯେମନ୍ତ ଆକାଶରୁ ଆସିଥିଲେ, ମାଲଗୁଡ଼ାକ ପବନରେ ମିଶି ଯାଇଛି । ଏହି ଡକାଏତି ତଦନ୍ତ ରହିତ ହେବା ମାତ୍ରକେ ଉପର୍ଯ୍ୟୁପରି ଆଉରି ତିନି ଗୋଟି ଡକାଏତି ହୋଇଗଲା । ବାଲେଶ୍ୱର ନିବାସୀ ଜମିଦାର ବାବୁ ମଦନମୋହନ ଦାସଙ୍କର ବସ୍ତା ଥାନା ଇଲାକାରେ ଖଣ୍ଡେ ତାଲୁକ ଅଛି । ନାଟବନ୍ଧ ଖଜଣା ଅସୁଲ ହୋଇ କଚେରି ଘରେ ପ୍ରାୟ ବାର ଶତ ଟଙ୍କା ଜମା ଥିଲା, ଡକାଏତ ପଡ଼ି ନେଇଗଲେ । ସେହି ସମୟରେ ଯେଉଁ ସମସ୍ତ ଡକାଏତି ହୋଇଥିଲା, ଗୋଟିଏ ଡକାଏତି ଉଲ୍ଲେଖଯୋଗ୍ୟ । ବସ୍ତା ଥାନାଠାରୁ ପ୍ରାୟ ଚାରି କୋଶ ଦୂର ଗୁରଗାଁ ନାମକ ଗ୍ରାମରେ ଜଣେ ସଙ୍ଗତିସମ୍ପନ୍ନ ଲୋକର ବାସ; ନାମ ବାଥାନ ଭୂୟାଁ । ଡକାଏତ ଦଳ ଏହା ଘରେ ଭୟଙ୍କର ଅତ୍ୟାଚାର କରିଥିଲେ । ତାହାର ଦୁଇ ସ୍ତ୍ରୀ, ଗୋଟିଏ ସ୍ତ୍ରୀ ପୂର୍ଣ୍ଣଗର୍ଭା । ନିଷ୍ଠୁର ଡକାଏତ-ମାନଙ୍କ ଦାରୁଣ ପ୍ରହାରରେ ତାହାର ଗର୍ଭପାତ ଏବଂ ସୂରଦିନ ଉତ୍ତାରେ ଜୀବନପାତ ହୋଇଥିଲା । ଦ୍ୱିତୀୟା ସ୍ତ୍ରୀ ପଳାୟନ ଦ୍ୱାରା ଆତ୍ମରକ୍ଷା କଲା । ବାଥାନ ଭୂୟାଁକୁ ଡକାଏତମାନେ ଅନେକ ପ୍ରହାର କରି ତାହାର ବେକ ମୋଡ଼ି ଦେଇ ଯାଇଥିଲେ । ତାହାର ମୁଖ ପୃଷ୍ଠ ଦିଗକୁ ବୁଲି ଯାଇଥିଲା । ବାଥାନ ଭୂୟାଁ ମଧ୍ୟ ଡକାଏତମାନଙ୍କୁ ସହଜରେ ଛାଡ଼ି ଦେଇ ନାହିଁ, ଦୁଇ ତିନି ଜଣଙ୍କୁ ଅସ୍ତ୍ରାଘାତ ଓ ଜଣେ ଡକାଏତକୁ ହତ୍ୟା କରିଥିଲା । ସଙ୍ଗୀ ଡକାଏତମାନେ ହତ ଡକାଏତର ଶବ ନେଇ ପଳାଇ ଯାଇଥିଲେ ।

ଅଳ୍ପ ଦିନ ପୂର୍ବେ ପୁରାତନ ପୋଲିସ ଉଠି ଯାଇ ନୂତନ ବେଙ୍ଗଲ ପୋଲିସ ସ୍ଥାପିତ ହୋଇଛି । ବାଲେଶ୍ୱର ଜିଲ୍ଲାର ପ୍ରଥମ ପୋଲିସ ଡିଷ୍ଟ୍ରିକ୍ଟ୍ ସୁପରି-ଣ୍ଟେଣ୍ଡେଣ୍ଟ ମିଷ୍ଟର ସଟେଲଓୟାର୍ଥ ସାହେବ ପ୍ରାଣପଣେ ଯତ୍ନ କରି ମଧ୍ୟ ବସ୍ତା ଇଲାକାରୁ ଫେରି ଆସିଲେ ଏବଂ ଡକାଏତ ଦଳ ଆବିଷ୍କାର ନିମନ୍ତେ ସବ୍ ଇନ୍‌ସ୍ପେକ୍ଟର ବାବୁ ରାଜକିଶୋର ଚୌଧୁରୀଙ୍କୁ ନିଯୁକ୍ତ କଲେ । ଚୌଧୁରୀ ମହାଶୟ ପୋଲିସ ଇଲାକାରେ ଜଣେ ସୁଯୋଗ୍ୟ କର୍ମଚାରୀ ବୋଲି ତାଙ୍କର ଖ୍ୟାତି ଥିଲା । ରାଜଘାଟ ଥାନା ମୁନ୍‌ସି ବାବୁ ଦିଗମ୍ବର ଦାସ, ଜଳେଶ୍ୱର ଥାନା ମୁନ୍‌ସି ବାବୁ କଣାରାମ ପ୍ରଧାନ ତାଙ୍କୁ ସାହାଯ୍ୟ କରିବାକୁ ଗଲେ ।

ଉପରସ୍ଥ ହାକିମଙ୍କ ଆଦେଶାନୁସାରେ ବାବୁ ରାଜକିଶୋର ଚୌଧୁରୀ ପୋଲିସ ଦଳ ବଳ ସହିତ ଉକ୍ତ ଡକାଏତି ଉକ୍ତ ସ୍ଥାନ ଗୁରଗାଁରେ ବାସ କରିବାକୁ ଲାଗିଲେ । ବହୁତ ଦିନ ପର୍ଯ୍ୟନ୍ତ ବୃଥା ପରିଶ୍ରମ କରି

ଅକୃତକାର୍ଯ୍ୟତା ବିଷୟ ରିପୋର୍ଟ କରିବାରୁ ସୁପରିଣ୍ଟେଣ୍ଡେଣ୍ଟ ସାହେବ ତାଙ୍କୁ ଉତ୍ସାହ ଦେଇ ଲେଖିଲେ, "ତୁମ୍ଭର ଅନୁସନ୍ଧାନ ପ୍ରଣାଳୀ ସନ୍ତୋଷ-ଜନକ, ଯେ ପର୍ଯ୍ୟନ୍ତ ଡକାଏତ ଦଳ ଧରା ଯାଇ ନାହାନ୍ତି, ସେ ପର୍ଯ୍ୟନ୍ତ ତୁମ୍ଭେ ଗୃହଗାଁ ତ୍ୟାଗ କରିବ ନାହିଁ ।" ଏହାହିଁ ଇଂରେଜ ଚରିତ୍ରର ବିଶେଷତ୍ୱ; ଏଥିସକାଶେ ଆମ୍ଭେମାନେ ଜିତ ଓ ଇଂରେଜ ଜାତି ଜେତା । କୌଣସି ବିଷୟରେ ଅକୃତକାର୍ଯ୍ୟ ହେଲେ ଆମ୍ଭେମାନେ ହତୋଦ୍ୟମ ଓ ନିରାଶ ହୋଇ ପଡ଼ୁଁ । ମାତ୍ର ଇଂରେଜ ଜାତିର କାର୍ଯ୍ୟପ୍ରଣାଳୀ ସ୍ୱତନ୍ତ୍ର ପ୍ରକାର ଅଟେ । ପ୍ରକୃତ ସେମାନେ 'ଆଫଳୋଦୟକର୍ମା' ଅଟନ୍ତି । ଲୋକେ କଥାରେ ବୋଲନ୍ତି, "ଲଗିଥିବା ଲୋକ ମାରି ଖାଏ ନାହିଁ"—ଉପସ୍ଥିତ ଘଟନା ସେଥିର ଗୋଟିଏ ଦୃଷ୍ଟାନ୍ତସ୍ଥଳ ଅଟେ । ରାଜକିଶୋର ବାବୁଙ୍କ ଅନୁସନ୍ଧାନପ୍ରଣାଳୀ ଏହିପରି ଥିଲା କି, ସନ୍ଧ୍ୟା ଉତ୍ତାରେ ଦୁଇ ତିନି ଜଣ ପୋଲିସ କର୍ମଚାରୀ ସଙ୍ଗରେ ନେଇ ଗୃହଗା ଚତୁଷ୍ପାର୍ଶ୍ୱସ୍ଥ ତିନି ଚାରି କୋଶ ଦୂରବର୍ତ୍ତୀ ଗ୍ରାମମାନଙ୍କରେ ପ୍ରଚ୍ଛନ୍ନ ଭାବରେ ଭ୍ରମଣ କରନ୍ତି । ଯାହିରେ ଗ୍ରାମବାସୀମାନଙ୍କ କଥୋପକଥନ ଶୁଣିବା ଓ ସେମାନଙ୍କ କାର୍ଯ୍ୟ ଦେଖିବା ତାଙ୍କର ଉଦ୍ଦେଶ୍ୟ ଅଟେ । ମଫସଲର ପାଣମାନେ ପ୍ରାୟ ଚୋରି କାର୍ଯ୍ୟରେ ଲିପ୍ତ ଥାନ୍ତି । ସେଥି ସକାଶେ ପାଣ ଗ୍ରାମମାନଙ୍କରେ ଅଧିକାଂଶ ରାତି କ୍ଷେପଣ କରିବାକୁ ହୁଏ । ପ୍ରାୟ ପ୍ରତ୍ୟହ ପାଣ ସାହି ଓଳରେ ବସି ଘର ମଧ୍ୟସ୍ଥ କଥୋପକଥନ ଶୁଣନ୍ତି । ଏହା ଭଦ୍ର ଲୋକ ପକ୍ଷରେ ଯେ କେତେଦୂର କଷ୍ଟସାଧ୍ୟ କାର୍ଯ୍ୟ, ପାଠକ ସହଜରେ ବୁଝି ପାରିବେ । ପାଣମାନଙ୍କ ପଲଘର ପଛ ଓଳ ଏତେ ନୁଆଁଣ ଯେ, ବସିଲେ ମଧ୍ୟ ଚୂଳ ମୁଣ୍ଡରେ ବାଜେ । ଓଳତଳ ଅପରି-ଷ୍କାର, କଦର୍ଯ୍ୟ, ଦୁର୍ଗନ୍ଧମୟ । ସହସ୍ର ସହସ୍ର ମଶକ ବେଢ଼ି ଭଣ ଭଣ କରି ଖାଉଛନ୍ତି, ଘଉଡ଼ିବାର କ୍ଷମତା ନାହିଁ । ସର୍ପ ଭଲ୍ଲୁକର ମଧ୍ୟ ଭୟ ନ ଥିଲା, ଏମନ୍ତ ନୁହେ । ପୁଣି ଗ୍ରାମସ୍ଥ ପାଣମାନେ ଜାଣି ପାରିଲେ ଉଭୟଙ୍କର ବିପଦ ଘଟିବାର ସମ୍ଭାବନା । କଣ କରିବେ, ଚାକିରି ଖଣ୍ଡ ତ ରକ୍ଷା କରିବାକୁ ହେବ ।

ଏକ ଦିବସ ଅର୍ଦ୍ଧ ରାତ୍ର ସମୟରେ ଗୋଟିଏ ପାଣ ଓଳରେ ବସିଛନ୍ତି, ଘର ମଧ୍ୟରୁ ଶୁଣିଲେ, ଗୋଟିଏ ଯୁବତୀ ସ୍ତ୍ରୀ କାନ୍ଦି କାନ୍ଦି ତାହାର ମାତାକୁ ଅନୁଯୋଗ କରୁଅଛି,—

"ସେ ଯିବାକୁ ରାଜି ନ ଥିଲେ, ବାବା ଜୋର କରି ନେଇ ଗଲା । ଅକାରଣେ ପ୍ରାଣଟା ଯିବା ଗଲା । ମୁଁ ଏବେ କରେଁ କଣ ?"

ଆର ଦିନ ପ୍ରାତଃକାଳରେ ପୋଲିସ ଦଳବଳ ସହିତ ସବ୍ ଇନସ୍ପେକ୍ଟର ରାଜକିଶୋର ବାବୁ ଗ୍ରାମରେ ଉପସ୍ଥିତ । ତଦନ୍ତରେ ଜଣାଗଲା, କ୍ରନ୍ଦନକାରିଣୀ ସ୍ତ୍ରୀର ସ୍ୱାମୀ ଓ ପିତା ଡକାଏତ । ତାହାର ସ୍ୱାମୀ ଡକାଏତି ସମୟରେ ହତ ଓ ପିତା ଆହତ । ଅନ୍ୟ ଦୁଇ ଜଣ ଆହତ ଡକାଏତ ମଧ୍ୟ ଧରାଗଲେ । ଡକାଏତି ମାଲ ମଧ୍ୟ ବରାମଦ ହେଲା । ସେସନକୋର୍ଟ ବିଚାରରେ ପ୍ରାୟ ପନ୍ଦର ଜଣ ଡକାଏତ ଗୁରୁତର ଦଣ୍ଡ ପ୍ରାପ୍ତ ହେଲେ । ବୋଧ କରୁଁ, ସେମାନଙ୍କୁ ଆଉ ସ୍ୱଶ୍ୱଶୁରଙ୍କୁ ବାହୁଡ଼ିବାକୁ ହୋଇ ନ ଥିବ ।

ଏହି ଡକାଏତ ଦଳ ଦଣ୍ଡ ପ୍ରାପ୍ତ ହେଲେ ମଧ୍ୟ ହାକିମମାନେ ନିଶ୍ଚିନ୍ତ ହୋଇ ପାରିଲେ ନାହିଁ । କାରଣ ପ୍ରକାଶ ପାଇଲା ରେମ୍ନିଙ୍କ ପ୍ରତି ଯେଉଁମାନେ ଅତ୍ୟାଚାର କରିଥିଲେ, ସେ ସ୍ୱତନ୍ତ୍ର ଓ ପ୍ରଧାନ ଡକାଏତ ଦଳ ଅଟନ୍ତି । ମୟୂରଭଞ୍ଜର ଘୋର ଜଙ୍ଗଲ ମଧ୍ୟରେ ସେମାନଙ୍କର ଖଟି । ଏହି ପ୍ରଧାନ ବା ମୂଳ ଦଳର ଡକାଏତ ସଂଖ୍ୟା ପ୍ରାୟ ପଞ୍ଚାଶ ଜଣ । କଦାଚିତ୍ ଏକତ୍ର କେବେ ବା ଭିନ୍ନ ଭିନ୍ନ ରୂପେ ଦଳବଦ୍ଧ ହୋଇ ଡକାଏତି କରିଥାନ୍ତି ।

ବାଲେଶ୍ୱର ସଦର ଥାନାରେ ଇନ୍‌ସ୍ପେକ୍‌ଟର ବାବୁ ଶାରଦାପ୍ରସାଦ ଘୋଷ ପୋଲିସ ବିଭାଗରେ ଜଣେ ସୁନିପୁଣ କର୍ମଚାରୀ ବୋଲି ଉପରିସ୍ଥ କର୍ମଚାରୀମାନଙ୍କର ବିଶ୍ୱାସ ଥିଲା । ଡକାଏତ ଦଳର ଆବିଷ୍କାର ଓ ଗ୍ରେପ୍ତାର ନିମନ୍ତେ ତାହାଙ୍କୁ ନିଯୁକ୍ତ କରାଗଲା । ବହୁକାଳ ପରିଶ୍ରମ ଉତ୍ତାରେ ଶାରଦା ବାବୁ ଡକାଏତ ଦଳର ଖଟି ସ୍ଥାନ ମାତ୍ର ସନ୍ଧାନ ପ୍ରାପ୍ତ ହେଲେ ।

ମୟୂରଭଞ୍ଜର ବାରିପଦା ଗଡ଼ଠାରୁ ଜଳେଶ୍ୱର ପର୍ଯ୍ୟନ୍ତ ନିବିଡ଼ ଅରଣ୍ୟ ମଧ୍ୟରେ ଗୋଟିଏ ସଂକୀର୍ଣ୍ଣ ବନ୍ୟ ମାର୍ଗ ଅଛି । ଦିନେ ପୂର୍ବାହ୍ନ ଦଶ ପ୍ରହରକ ସମୟରେ ତିନି ଜଣ ଭଦ୍ରଲୋକ ଅର୍ଦ୍ଧ କୋଶ ଅନ୍ତର ଆଗ ପଛ ହୋଇ ବାରିପଦା ଆଡ଼ୁ ଜଳେଶ୍ୱର ଆଡ଼କୁ ଯାଉ ଅଛନ୍ତି । ସବା ପଶ୍ଚାତ୍‌ରେ ଜଣେ ଜ୍ୟୋତିଷ । ଚେହେରା ଦେଖିଲେ ଜଣେ ସମ୍ଭ୍ରାନ୍ତ ଲୋକ ବୋଲି ବୋଧ ହୁଏ; ମାତ୍ର ବେଶ ନିତାନ୍ତ ଦାରିଦ୍ର୍ୟବ୍ୟଞ୍ଜକ । ପରିଧାନ ଖଣ୍ଡେ ଆଣ୍ଠୁଲୁଚ୍ଚ ଲୁଗା, ମୋଟା ମଳିନ ତନ୍ତ ବୁଣା ଖଦି । ମୁଣ୍ଡରେ ଖଣ୍ଡେ ଛିଦ୍ରବିଦ୍ଧ ମଳିନ ଗାମୁଛା ପାଗ, ଅନ୍ୟ ଖଣ୍ଡିଏ ଗାମୁଛାରେ ସେରେ ଦୁଇ ଅନ୍ଦାଜ ଚାଉଳ ଓ କେତେ ଅଣା ପଇସା ବନ୍ଧା । କାଖରେ ଲିଖନଗୁଞ୍ଜା ତାଳପତ୍ର-ପାଞ୍ଜି । ହସ୍ତରେ ଖଣ୍ଡିଏ ବଂଶ-ଯଷ୍ଟି । କାନ୍ଧରେ ତାଳପତ୍ର ଛତା । ( ସେ ସମୟରେ କନା ଛତାର ବିରଳ ବ୍ୟବହାର ଥିଲା ) ଦୁର୍ଭାଗ୍ୟବଶରୁ ବା ସୌଭାଗ୍ୟବଶରୁ ଜ୍ୟୋତିଷେ ଦୁଇ ଜଣ ବନ୍ୟ ଦସ୍ୟୁ ହାତରେ ପଡ଼ିଲେ । ଜ୍ୟୋତିଷ ବହୁତ ଅନୁନୟ ବିନୟ କରି ଆପଣାର ହୀନଦଶା ଏବଂ ଆପଣା ବିଦ୍ୟାବୁଦ୍ଧି ବିଷୟ ଦସ୍ୟୁମାନଙ୍କୁ ଜଣାଇଲେ । ଜ୍ୟୋତିର୍ବିଦ୍‌ଙ୍କ ବକ୍ତୃତାର ସାରାଂଶ—ସେ ଜଣେ ଭଲ ଜ୍ୟୋତିଷୀ, ତାଙ୍କର ଗଣନା ବଡ଼ ଠିକ୍, ମୟୂରଭଞ୍ଜ ମହାରାଜ ତାଙ୍କୁ ଖୁବ୍ ଖାତିର କରନ୍ତି, ଇତ୍ୟାଦି ।

ଦସ୍ୟୁ ଦୁଇ ଜଣ ପରସ୍ପର କଣ ପରାମର୍ଶ କରି କହିଲେ, "ତୁ ଆମ ସର୍ଦ୍ଦାର ନିକଟକୁ ଚାଲ । ଯେବେ ଠିକ ବୁଝି ଦେବୁ, ତୋ ଚାଉଳ ଲୁଗା କିଛି ନେବୁଁ ନାହିଁ ।" ଜ୍ୟୋତିଷ ଅନିଚ୍ଛାସତ୍ତ୍ୱେ ସମ୍ମତ ହେବାରୁ ଦସ୍ୟୁଦ୍ୱୟ ତାହାର ଆଖି ବାନ୍ଧି ହାତ ଧରି ନିବିଡ଼ ଜଙ୍ଗଲମୟ, କୁଟିଳ, ବନ୍ଧୁର ମାର୍ଗରେ ନେଇଗଲେ । ଯିବା ସମୟରେ ଜ୍ୟୋତିଷ ଅତି ସତର୍କତା ସହିତ ମାର୍ଗ ପାର୍ଶ୍ୱସ୍ଥ କ୍ଷୁଦ୍ର କ୍ଷୁଦ୍ର ବୃକ୍ଷ ଡାଳ ଭାଙ୍ଗି ଦେଇ ଯାଉଥାଏ । ଅନୁମାନିକ ଦୁଇ ତିନି କୋଶ ଭ୍ରମଣ ଉତ୍ତାରେ ଡକାଏତ ଦଳର ଖଟି ସ୍ଥାନରେ ଉପସ୍ଥିତ ହେଲେ । ଆଖିର ପଟି ଫିଟାଇ ଦିଆଯିବାରୁ ଖଟି ସ୍ଥାନର ଅବସ୍ଥା ଦେଖି ଜ୍ୟୋତିଷଙ୍କ ଅନ୍ତରାତ୍ମା ଶୁଷ୍କ ହୋଇଗଲା । ନିତାନ୍ତ ସାହସୀ ପୁରୁଷ ବିନା ସେ ସ୍ଥାନରେ ଧୈର୍ଯ୍ୟାବଲମ୍ବନ କରି ରହିବା ନିତାନ୍ତ କଠିନ କଥା ।

ନିବିଡ଼ ଜଙ୍ଗଲ ମଧ୍ୟରେ ଅଳ୍ପ ପରିସର ଭୂମିଖଣ୍ଡ ପରିଷ୍କୃତ । ଦୁଇ ତିନିଟା ଧୂନି ଲାଗିଅଛି, ଚାରି ଛଅଟା ଭାତରନ୍ଧା ହାଣ୍ଡି ଏକ ସ୍ଥାନରେ ପଡ଼ି ରହିଅଛି । ପର୍ଯ୍ୟୁଷିତ ମାଂସ ଓ ଶୁଷ୍କ ମାଂସରେ ସ୍ଥାନଟା ନିତାନ୍ତ ଦୁର୍ଗନ୍ଧମୟ । ଟାଙ୍ଗି, ବର୍ଚ୍ଛା, ତରବାରି, ଶର, ଧନୁକ ପ୍ରଭୃତି ଭୟଙ୍କର ଅସ୍ତ୍ରମାନ ଗଛ ଡାଳମାନଙ୍କରେ ଝୁଲୁଅଛି । ମଦମତ୍ତ ବିକଟାଳ ନରରୂପୀ କେତେଟା ରାକ୍ଷସ-ପ୍ରକୃତି ପ୍ରାଣୀ ଧୂଳିରେ ପଡ଼ି ଗଡ଼ୁଅଛନ୍ତି । ସମସ୍ତଙ୍କର ପରିଧାନ କୌପୀନ, ମହିଷବସ୍ତ୍ର ବଳସ୍ତ୍ର । କେହି କର୍କଶଭାଷାରେ ଅକାରଣ ଅନ୍ୟ ଜଣକୁ ଗାଳି ଦେଉଅଛି, କେହି ବା ବିକୃତ ସ୍ୱରରେ ସଙ୍ଗୀତ ଆରମ୍ଭ କରିଅଛି । ଜ୍ୟୋତିଷକୁ ସମସ୍ତେ କଟମଟ କରି ଅନାଇଲେ, ବିଶେଷରେ ସର୍ଦ୍ଦାର ଅନେକ କ୍ଷଣ ପର୍ଯ୍ୟନ୍ତ ଆପାଦ-ମସ୍ତକ ଅନାଇ ଆଗନ୍ତୁକ ଦସ୍ୟୁ ଦୁଇଜଣଙ୍କୁ କର୍କଶ ଭାଷାରେ ପଚାରିଲା, "ଏଟା କିଏ, କାହିଁକି ଆଣିଲ ?" ଆଗନ୍ତୁକ ଦୁଇଜଣ ଜ୍ୟୋତିଷର ପରିଚୟ ଦେଲେ । ଏହି ସର୍ଦ୍ଦାରର ପରିଚୟ ଆବଶ୍ୟକ । ସେହି ସମୟରେ

ଡକାଏତ ଦଳରେ ଦୁଇଜଣ ସର୍ଦ୍ଦାର ଥିଲେ । ପ୍ରଥମ ନାଲୁ ମିର୍ଦ୍ଧା, ଦ୍ୱିତୀୟର ନାମ ବୈଦ୍ୟ ଶେଠୀ । ନାଲୁ ମିର୍ଦ୍ଧା ଦୀର୍ଘାକାର, ଖୁବ୍ ବଳିଷ୍ଠ । ଚକ୍ଷୁ ଦୁଇଟା କାକଡ଼ମ୍ବ ପରି ବୃହତ୍ ଓ ରକ୍ତବର୍ଣ୍ଣ । ରାକ୍ଷସବତ୍ ଆକୃତି, ଭୟଙ୍କର । ଅଦ୍ୟ ନାଲୁ ମିର୍ଦ୍ଧା ଉପସ୍ଥିତ ଥିଲା ।

ନାଲୁ ଓ ଜ୍ୟୋତିଷ ମଧ୍ୟରେ ଏହିପରି କଥୋପକଥନ ହେଲା ।

ନାଲୁ—ତୁ ଜ୍ୟୋତିଷ ?

ଜ୍ୟୋତିଷ – ଆଜ୍ଞା ହଁ ।

ନାଲୁ—ବୋଇଲୁ, ମୋ ମନରେ କି କଥା ଅଛି ?

ଜ୍ୟୋତିଷ—ଖଡ଼ି ଚକାଇ ଅନେକ ଶ୍ଳୋକ ପଢ଼ିଲେ । ସେଥିରେ କେବଳ ଗ୍ରହ ନକ୍ଷତ୍ର ନାମ ଛଡ଼ା ଆଉ କିଛି ନ ଥିଲା । କହିଲେ, "ପାଠ କହିଲା, ଶନିଗ୍ରହ—ଏହି ଗ୍ରହରେ ଠଙ୍କା କଉଡ଼ି ଦ୍ରବ୍ୟାଦି ଲାଭକଥା ।"

ନାଲୁ—ବୋଇଲୁ, ସେ ଦ୍ରବ୍ୟ କେଉଁ ଦିଗରେ ?

ପୁନର୍ବାର ଶ୍ଳୋକ ପାଠକରି ଜ୍ୟୋତିଷ କହିଲେ, "ପୂର୍ବ ଦିଗରେ ।" *

ସବୁ ଡକାଏତ ଏକାବେଳକେ ଚିତ୍କାର କଲେ, "ସାବାସ ସାବାସ, ନୋହିଲେ କି ମୟୂରଭଞ୍ଜ ରାଜା ଦରବାରକୁ ଯାଏ ।

ନାଲୁ—ବୋଇଲୁ, କେଉଁ ଦିନ, କେତେବେଳେ ଗଲେ ସେ ଦ୍ରବ୍ୟ ସବୁ ମିଳିବ ?

ଜ୍ୟୋତିଷ—ଆସନ୍ତା କୃଷ୍ଣପକ୍ଷ ଦ୍ୱାଦଶୀ ଶନିବାର ସନ୍ଧ୍ୟା ସମୟରେ ଯାତ୍ରା କରି ଗଲେ କାମ ଫତେ—ଅର୍ଥ ମିଳିବ ।

ସବୁ ଡକାଏତ ଏକାବେଳକେ ଚିତ୍କାର କରି କହିଲେ, "ଭଲ ଭଲ, ସଞ୍ଜବେଳେ ଏଠାରୁ ବାହାରିଲେ, ଅଧରାତିବେଳେ ସେଠାରେ ପହଞ୍ଚିବା ।" ଜ୍ୟୋତିଷ ବିଦାୟ ଗ୍ରହଣ କଲେ, ପୁନର୍ବାର ଆଖି ବନ୍ଧାଗଲା, ପୂର୍ବକଥିତ ଦସ୍ୟୁ ଦୁଇ ଜଣ ବାଟରେ ଛାଡ଼ି ଦେଇଗଲେ ।

ନିରୂପିତ ଦିବସ ଉପସ୍ଥିତ । ପୁଲିସ ଦଳ ବଳ ସଜ ହୋଇ ଡକାଏତ ଧରିବା ସକାଶେ ଗୋଟିଏ ଗ୍ରାମରେ ସଜ୍ଜିତ ହୋଇ ରହିଲେ । ଜ୍ୟୋତିଷର ଗଣନା ଠିକ ହେଲା; କିନ୍ତୁ ଅନ୍ୟ ଗ୍ରାମରେ । ଯେଉଁ ଗ୍ରାମରେ ଡକାଏତି ହେବାର ଜ୍ୟୋତିଷ ଅନୁମାନ କରି ସଜ ହୋଇ ବସିଥିଲେ, ସେ ଗ୍ରାମକୁ ଡକାଏତମାନେ ଗଲେ ନାହିଁ । ଡକାଏତି କରି ଡକାଏତମାନେ ସ୍ୱଚ୍ଛନ୍ଦରେ ଚାଲିଗଲେ । ପାଠକ ମହାଶୟ ଅନୁମାନରେ ବୁଝିଥିବେ, କଥିତ ଜ୍ୟୋତିଷ ଅନ୍ୟ କେହି ନୁହେ, ପୋଲିସ ଇନ୍‌ସପେକ୍‌ଟର ସ୍ୱୟଂ ବାବୁ ଶାରଦା ପ୍ରସାଦ ଘୋଷ ।

କ୍ରମଶଃ ଦୁଇ ଚାରି ମାସ ଗତ । ଏଥି ମଧ୍ୟରେ ଆହୁରି ଦୁଇ ଚାରିଟା ଡକାଏତି ଉପର୍ଯ୍ୟୁପରି ହୋଇଗଲଣି । ହାକିମ ଓ ପୋଲିସ ଦଳ ଅସ୍ଥିର । ଶାରଦା ବାବୁ ଡକାଏତମାନଙ୍କ ଘାଟି ସ୍ଥାନର ଯେପରି ଅବସ୍ଥା ଦେଖି ଆସିଥିଲେ, ସେଥିରେ ପୋଲିସଦଳ ଯାଇ

---

* ଜ୍ୟୋତିଷଙ୍କ ସହିତ ଲେଖକର ଦିନେ ଏହିପରି କଥୋପକଥନ ହୋଇଥିଲା । ମୁଁ ପଚାରିଲି, "ପୂର୍ବ ଦିଗ କିପରି ସାହସରେ କହିଲେ ?" ଜ୍ୟୋତିଷ ଅର୍ଥାତ୍ ଶାରଦା ବାବୁ କହିଲେ, "ଗ୍ରେଶ ଡକାଏତ ଧନଚାଲ୍ୟା ଛଡ଼ା ଆଉ କିଏ ହୋଇପାରେ ? ଆଉ ତିନି ଦିଗ ଅରଣ୍ୟ । ପୂର୍ବ ଦିଗରେ କେବଳ ଗ୍ରାମ, ସେ ଦିଗରେ ଡକାଏତି ହେବ ।"

ସେମାନଙ୍କୁ ଗ୍ରେପ୍ତାର କରିବା ସହଜ କଥା ନୁହେ । ଡକାଏତଦଳ ଯେପରି ଭାବରେ ସର୍ବଦା ଅସ୍ତ୍ରଶସ୍ତ୍ରରେ ସଜ୍ଜିତ ଓ ଉନ୍ମତ୍ତଭାବରେ ଥାନ୍ତି, ଧରିବାକୁ ଗଲେ ଅନେକ ଲୋକଙ୍କ ପ୍ରାଣନାଶର ସମ୍ଭାବନା ।

ଅନେକ ଅନୁସନ୍ଧାନ ଉତ୍ତାରେ ବସ୍ତା ଇଲକାର ଜଣେ ଜମିଦାରଙ୍କର ଗୋଟିଏ ଗୃହକର ଡକାଏତ ଦଳରେ ଲିପ୍ତ ଥିବାର ପ୍ରକାଶ ପାଇଲା । ଶାରଦା ବାବୁ ଉକ୍ତ ଜମିଦାରଙ୍କ ସହାୟତାରେ ଗୃହକରଟାକୁ ହସ୍ତଗତ କଲେ । କେତେକ ନଗଦ ଟଙ୍କା ଦେଇ ପ୍ରଲୋଭନ ଦେଖାଇ ଅଭୟ ଦେଇ ଗୃହକରଠାରୁ ସମସ୍ତ ସନ୍ଧାନ ପ୍ରାପ୍ତ ହେଲେ । ଶାରଦା ବାବୁଙ୍କ ଉପଦେଶ ଅନୁସାରେ ଉକ୍ତ ଗୃହକର ଡକାଏତ ଦଳର ସର୍ଦ୍ଦାର ନାଲୁ ମିର୍ଦ୍ଧାଠାରେ ଜଣାଇଲା ଦୁଇଜଣ ଡକାଏତ ବର୍ଦ୍ଧମାନ ଜେଲଖାନାରୁ ପଳାଇ ଆସି ଏକ ଗ୍ରାମରେ ଲୁଚିଅଛନ୍ତି । ସର୍ଦ୍ଦାର ସମ୍ବାଦ ପାଇ ଆଗ୍ରହସହିତ ସେମାନଙ୍କୁ ଡାକି ପଠାଇଲା । ଉକ୍ତ ଗୃହକର ସହିତ ପଳାତକ ଡକାଏତ ଦୁଇ ଜଣ ଖଟି ସ୍ଥାନରେ ଉପସ୍ଥିତ ହେଲେ । ପ୍ରଥମେ ସର୍ଦ୍ଦାର ଓ ଅନ୍ୟାନ୍ୟ ଡକାଏତମାନେ ସନ୍ଦେହ-ନେତ୍ରରେ ଦେଖୁଥିଲେ । ମାତ୍ର ନବାଗତ ଡକାଏତ-ମାନଙ୍କ ଆକାର ପ୍ରକାର ଓ କଥୋପକଥନ ଶୁଣି ସେମାନଙ୍କ ସନ୍ଦେହ ଦୂର ହେଲା । ଏହି ଦୁଇଜଣ କେଉଁ କେଉଁ ସ୍ଥାନରେ ଡକାଏତି କରିଥିଲେ, ଡକାଏତି ପୂର୍ବେ କପରି ସନ୍ଧାନ ନେବାକୁ ହୁଏ, କି କୌଶଳରେ ଡକାଏତି କରାଯାଏ ଓ ବିପଦ ପଡ଼ିଲେ କିପରି ପଳାଇବାକୁ ହୁଏ ଓ ଜେଲଖାନା ଭାଙ୍ଗି କିପରି ପଳାଇ ଆସିବାକୁ ହୁଏ, ଇତ୍ୟାଦି ବିଷୟ ଏପରି ଭାବରେ ବ୍ୟାଖ୍ୟା କଲେ ଯେ, ନାଲୁ ମିର୍ଦ୍ଧା ଏମାନଙ୍କୁ ପକ୍କା ଓସ୍ତାଦ ବୋଲି ଜ୍ଞାନ କଲା, ବହୁତ ସମାଦର କରି ନିକଟରେ ରଖିଲା । ନବାଗତ ଡକାଏତମାନେ ଅନେକ ଦିନ ପର୍ଯ୍ୟନ୍ତ ଖଟି ସ୍ଥାନରେ ରହିଲେ । ସେମାନଙ୍କ ସମ୍ବାଦ ଚଳାଚଳ ଉକ୍ତ ଜମିଦାର ଗୃହକର-ଦ୍ୱାରା ହେଉଥାଏ ।

ଦିନେ ନବାଗତ ଡକାଏତମାନେ ସର୍ଦ୍ଦାର ନିକଟରେ ପ୍ରସ୍ତାବ କଲେ, ଆମ୍ଭେମାନେ କ୍ଷୁଦ୍ର କ୍ଷୁଦ୍ର ଡକାଏତି କରୁ ନାହୁଁ; ଆସନ୍ତୁ ସମସ୍ତେ ମିଳି ଜଣେ ଲକ୍ଷପତି ଘରେ ଡକାଏତି କରିବା । ବରଷେ ପର୍ଯ୍ୟନ୍ତ ଯେପରି ନିଶ୍ଚିନ୍ତରେ ବସି ମଜା କରିବା । ସର୍ବଦା କାମରେ ଲାଗିଲେ ମଜା କରିବୁ କେଉଁଦିନ ? ଆଉ ବାରମ୍ବାର ଡକାୟତି କରିବାକୁ ଗଲେ ଧରା ପଡ଼ିବାର ସମ୍ଭାବନା । ସର୍ଦ୍ଦାର ଓ ସଙ୍ଗୀମାନଙ୍କର ଏହି ସାଧୁ ପ୍ରସ୍ତାବଟି ମନୋମତ ହେଲା । ସମସ୍ତେ 'ସାବାସ୍ ସାବାସ୍' କରିବାକୁ ଲାଗିଲେ । ଏହି ବିଷୟ ସ୍ଥିର କରିବା ନିମନ୍ତେ ଗୋଟିଏ ଦିନ ନିରୂପିତ ହେଲା ଓ ନିର୍ଦ୍ଧାରିତ ଦିବସ ରାତିରେ ଉପସ୍ଥିତ ହେବା ନିମନ୍ତେ ଭଦ୍ରକଠାରୁ ମେଦିନୀପୁର ପର୍ଯ୍ୟନ୍ତ ସମସ୍ତ ଦଳକୁ ସମ୍ବାଦ ଦିଆଗଲା । ସେହି ସମୟରେ ଅନେକ କ୍ଷୁଦ୍ର କ୍ଷୁଦ୍ର ଦଳ ସ୍ଥାନେ ସ୍ଥାନେ ବାସ କରୁଥିଲେ; ମାତ୍ର ସମସ୍ତ ଦଳର ସର୍ଦ୍ଦାର ନାଲୁ ମିର୍ଦ୍ଧା ଓ ବୈଦ୍ୟ ଶେଠୀ । ଏମାନେ ସମସ୍ତ ଡକାଏତିରୁ ସର୍ଦ୍ଦାରି ଭାଗ ପାଇଥାନ୍ତି ।

ଆଜି ପୂର୍ବୋକ୍ତ ଡକାଏତି ଖଟିରେ ଭାରି ଜାରି । ମେଦିନୀପୁରଠାରୁ ଭଦ୍ରକ ପର୍ଯ୍ୟନ୍ତ ସମସ୍ତ ଡକାଏତ ଠୁଳ ହୋଇଅଛନ୍ତି । ଗୋଟାଏ ବଡ଼ ଡକାଏତିର ବନ୍ଦୋବସ୍ତ କରାଯିବ । ତିନି ପାଞ୍ଚ ଭାର ତାଡ଼ି, ତରଲି ମଦ ଗଞ୍ଜେଇ ଅଣା ଯାଇଅଛି । ଯାହାର ଯେତେ ଇଚ୍ଛା ଖାଉ, ମାଗିବାକୁ ନାହିଁ । ଆଠ ଦଶଟା ଛେଳି ମେଣ୍ଢା ଗ୍ରାମମାନଙ୍କରୁ ଚୋରି କରି ଅଣାଯାଇଥିଲା । କେତେ ଜଣ ମାଂସ ଓ ରୁଟି ପ୍ରସ୍ତୁତ କରିବାରେ ଲାଗି ଯାଇଅଛନ୍ତି । ଆଜିକା ସମସ୍ତ ଖରଚ ନବାଗତ ଡକାଏତ ଦୁଇଜଣଙ୍କ ଜିମା । ଅତିରିକ୍ତ ମାଦକ ସେବନରେ ଅନେକ ଡକାଏତ ଟଳେ ପଡ଼ିଗଲେଣି । ନୃତ୍ୟ ଗୀତ ଓ ଆମୋଦ ପ୍ରମୋଦର ଧୂମ ଲାଗିଅଛି । ଘୋର ଜଙ୍ଗଲ ମଧ୍ୟରେ ଖଟି ଗୃହପାଖ ତିନି ଗୃହ

କ୍ରୋଶ ପର୍ଯ୍ୟନ୍ତ ଗ୍ରାମର ଚିହ୍ନ ନାହିଁ । ରାତି ପ୍ରାୟ ଏକପ୍ରହରର ସମୟରେ ଖଟି ଚତୁର୍ଦ୍ଦିଗରେ ମୁହୂର୍ମ୍ମୁହୁ ବନ୍ଧୁକ ଉଆଜ ହେଲା । ଘୋର ଚିତ୍କାର କରି ପ୍ରାୟ ପାଞ୍ଚଶ ଜଣ କନଷ୍ଟବଲ ଓ ଦେଢ଼ଶତ ପାଇକ ଚୌକିଦାର, ପୋଲିସ ଇନ୍‌ସ୍ପେକ୍ଟର, ସବଇନ୍‌ସ୍ପେକ୍ଟର ଡକାଏତମାନଙ୍କ ଉପରେ ପଡ଼ିଲେ । ଡକାଏତମାନେ ନିଶାରେ ଅଚେତନ ହୋଇଥିଲେ ମଧ୍ୟ ସମୟରେ ସାବଧାନ । ଅନ୍ଧକାର ମଧ୍ୟରେ ପ୍ରାୟ ଏକ ଘଣ୍ଟା ପର୍ଯ୍ୟନ୍ତ ଖୁବ ମାରଧର ଘୋର ବାହୁଯୁଦ୍ଧ ହେଲା । ଅବଶେଷରେ ଡକାଏତମାନେ ବନ୍ଧନରେ ପଡ଼ିଲେ ।

ସର୍ବଶେଷରେ ଆଲୋକ ଜଳା ଯିବାରୁ ଦେଖାଗଲା, ସରଦାର ନାଲୁମିର୍ଦ୍ଧା ଓ ବୈଦ୍ୟ ଶେଠୀ ପଳାଇ ଯାଇଅଛନ୍ତି । କେତେଗୁଡ଼ିଏ ଡକାଏତ ମଧ୍ୟ ନାହାନ୍ତି, ଡକାଏତ ଭ୍ରମରେ କେତେଜଣ କନେଷ୍ଟବଲ ଓ ପାଇକ ପ୍ରହାରିତ ଓ ବନ୍ଧନ ଦଶାରେ ପଡ଼ିଅଛନ୍ତି । ନବାଗତ ବର୍ଦ୍ଧମାନୀ ଡକାଏତ ଦୁଇ ଜଣ ଅର୍ଥାତ୍ ଛଦ୍ମବେଶୀ କନେଷ୍ଟବଲ ଦୁଇଜଣ ମଧ୍ୟ ବନ୍ଧନରେ ପଡ଼ିଅଛନ୍ତି ।

ଅଧିକାଂଶ ଡକାଏତ ଦ୍ୱୀପାନ୍ତରିତ । କେତେଜଣ ଦୀର୍ଘକାଳ ପର୍ଯ୍ୟନ୍ତ କାରାବାସଦଣ୍ଡ ପ୍ରାପ୍ତ ହେଲେ । ସେହି ଦିନଠାରୁ ବାଲେଶ୍ୱର ଜିଲ୍ଲାର ଉତ୍ତରାଞ୍ଚଳରେ ବଡ଼ ଡକାଏତି ହେବାର ଶୁଣା ଯାଇନାହିଁ ।

---

## ପାଠୋଇ ବୋହୂ

ତେର ବର୍ଷ ତଳର କଥା । ବାଲେଶ୍ୱର ସହର ଦକ୍ଷିଣାଧାର ସରଗଡ଼ିଆ ପଡ଼ାର ଉତ୍ତର ଦକ୍ଷିଣ ଲମ୍ବା ସଡ଼କର ଦୁଇ ତରଫ ଲମ୍ବାଲମ୍ବି ଦୁଇ ସାହାଲି ଘର । ସବୁଗୁଡ଼ିକ ଅମଲା ମୁକ୍ତାର ଓକିଲମାନଙ୍କ ବସା । ଗିରସ୍ତି ଘର ଗୋଟିଏ ବୋଲି ନାହିଁ । କଟକ, ପୁରୀ, ଯାଜପୁର ବାସିନ୍ଦା ବିଦେଶୀ ଅମଲାମାନେ ସେହି ପଡ଼ାରେ ବସା କରି ରହନ୍ତି ।

ମୁକ୍ତାର ବାବୁ ଗୋପାଳଚରଣ ପଟ୍ଟନାୟକଙ୍କ ବସା ପଶ୍ଚିମ ପଟ ସାହାଲିର ମଝିରେ । ବସାରେ କୁଟୁମ୍ବ ବୋଇଲେ ବୁଢ଼ୀ ମାଆଟି, ଆଉ କେହି ନାହିଁ । ପାଖ ପଡ଼ିଶା ପେସ୍କାର ରାଜକିଶୋର ବାବୁ । ତାଙ୍କ ବସ ରେ ବୁଢ଼ିମା, ସ୍ତ୍ରୀ ଆଉ ଆଠ ବର୍ଷରେ ଝିଅଟି ରାଧୀ । ପେସ୍କାର ଅଉ ମୁକ୍ତାର ବାବୁଙ୍କ ମାଆମାନଙ୍କର ଖୁବ୍ ମନ ମିଳେ । ତାହା ତ ମିଳିବ, ଦୁହେଁ ଏକ-ବୟସୀ, ପୁଣି ବୁଢ଼ୀ । ବିଦେଶରେ ସାଙ୍ଗସୁଙ୍ଗ ଆଉ କେହି ନାହିଁ । ଦୁଇ ବୁଢ଼ୀ ଭିତରେ ଏ ତା ବସାକୁ, ସେ ୟା ବସାକୁ ଦିନମାନରେ ଦୁଇ ତିନି ଥର ଯିବା ଆସିବା କରନ୍ତି । ପେସ୍କାର ମା କିନ୍ତୁ ମୁକ୍ତାର ବସାକୁ ଦିନଭିତରେ ତେର ଥର ଆସନ୍ତି । ବୋହୂଟା କିଛି ପାଇଟି କରିବାକୁ ଦିଏ ନାହିଁ, ତୁଚ୍ଛା ବସାଟାରେ ବସି କଣ କରିବେ ? ପଛ ବାଡ଼ିପଟ ଓଳିଏ ଓଳିଏ ବାଟ, ସେ ପଟରେ ମଣିଷ ନାହିଁ । ଯେତେବେଳେ ଇଚ୍ଛା ଯା ଆସ କରନ୍ତି । ଆଉ ବେଳେ ଯାହାହେଉ— ବେଳବୁଡ଼, ଚଉଦ ଘଡ଼ିଆ ବୁଢ଼ୀ ଦୁଇଟା ଚମ ଧୂଡ଼ୁ ଧୂଡ଼ୁ ହାଡ଼ୁଆ ଗୋଡ଼ ପୁଞ୍ଜାକ ମେଲେଇ ଦେଇ ବସି ତେର ସୁଖ ଦୁଃଖ କଥାଭାଷା ହୁଅନ୍ତି । ଦିନେ ଏଣୁ ତେଣୁ କଥା ଲୁହାକୁହା ହେଉଁ ହେଉଁ ନା' ପଚରାପଚରି ହେଲେ । ମୁକ୍ତାର ମା କହିଲେ, "ମୋ ନା' ପଦ୍ମା ।" ପେସ୍କାର ମା ହସି ହସି କହିଲେ, "ମଲି ଯା—ମୋ ବଡ଼ ଅପା ନା' ଯେ ପଦ୍ମାବତୀ । ତୁମେ ଯେ ମୋ ଅପା ହେଲ, ମୁଁ ଏବେ ଅପା ବୋଲି ଡାକିବି । ମୋ ନା' ସୀତା, ମତେ ତୁମେ ସୀତା ବୋଲି ଡାକିବ । କଣ ଏଇ କଥା ହେଲା ନା ?" ପଦ୍ମା ଦେଈ ହସି ହସି କହିଲେ, "ହେଉ ତାହିଁ ହେବ ।"

ମୁକ୍ତାରବାବୁ ପାଞ୍ଚ ବରଷ କାଳୁଁ ବାପ ଛେଉଣ୍ଡିଆ । ତାଙ୍କ ବାପେ କମଳଲୋଚନ ପଟ୍ଟନାୟକେ ବରଷକୁ ବାରଶ ଟଙ୍କା, ଦୁଇ ଯୋଡ଼ ଖଦି, ଯୋଡ଼ାଏ ଗାମୁଛା ଦରମାରେ ଜଣେ କାପୁଡ଼ିଆର ଗୁମାସ୍ତା ଥିଲେ । ଯାହା ଦରମା ଗଣ୍ଡାକ ପାଉଥିଲେ, ପେଟ ପିଠିକୁ ନଅଣ୍ଟ, ବିଧବା ଲାଗି ଦାଇତି ଦିବେ କଣ ?

ବିଧବା ପଦ୍ମା ଦେଈ ଗ୍ରାମର ପୁଣି ତା ଘରେ ଢେଙ୍କି ମାଡ଼ ପାଞ୍ଚ ପାଇଟି କରି ବଡ଼ କଷ୍ଟରେ ପୁଅଟିକୁ ମଣିଷ କରାଇଥିଲେ । ପିଲା ଗୋପାଳଟି ବି ଖୁବ୍ ବୁଦ୍ଧିଆ ଥିଲା; ପାଠରେ ଖୁବ୍ ମନ ରଖିଥାଏ, ଏଥିପାଇଁ ମଣିଷ ହୋଇଥିଲା । ପିଲାଦିନୁ ଆପଣା ଅବସ୍ଥା ବୁଝିଲାଣି ! ମାଆର ଦୁଃଖ ଦେଖି ଉହାଡ଼ରେ ଯାଇ କାନ୍ଦେ । ମନରେ କହେ, ମୁଁ ରୋଜଗାର କଲେ ମାକୁ ଖୁବ୍ ସୁଖରେ ରଖିବି ।' ଗୋପାଳବାବୁ ମୁକ୍ତାରି ପାସ୍ କରି ବାଲେଶ୍ୱରକୁ ଆସିଲେ, ସୁଖରେ ରଖାଇବେ ବୋଲି ମାଙ୍କୁ ଗାଁରୁ ଅଣାଇ ବସାରେ ରଖାଇଥିଲେ, ମାତ୍ର ପାରିଲେ ନାହିଁ । ବାବୁଙ୍କର ଇଚ୍ଛା, ମା ଭଲ ଖାଇ ଭଲ ଖଣ୍ଡେ ପିନ୍ଧି ବସାରେ ତୁନି ହୋଇ ବସିଥାନ୍ତୁ, ମା ସେ କଥା ଶୁଣିବେ କିଆଁ ? ବସାରେ ସବୁ ପାଇଟି କରିବେ, ପିନ୍ଧିବାକୁ ସେଇ ମୋଟା ଖଦିଟାଏ । ଭଲ ଲୁଗା ଆଣିଲେ 'କହିବେ, ଆରେ ଗୋପାଳ ଏଡ଼େ ପାତଳ ଲୁଗା କିଆଁ ରେ—ମାସ ଦିଟାରେ ଚିରି ଫାଳ ଫାଳ ହୋଇଯିବ, ଦେହକୁ କନା ପରି ଲାଗିବ, ଲୁଗା ପିନ୍ଧିଲା ପରି ଜଣାପଡ଼ିବ ନାହିଁ । ମଲା ଯା—କେତେ ଓସାର ମ ! ଗୋଡ଼ରେ ଛନ୍ଦି ହେବ, ଚାଲିବି କମିତି ରେ ?' ବୁଢ଼ୀର ଇଚ୍ଛା, ମୋ ଛୁଆଟା ପିଲାଦିନେ ବଡ଼ ଦୁଃଖ ପାଇଛି, ଭଲ ଖାଇ ନାହିଁ, ଭଲ ପିନ୍ଧି ନାହିଁ,ମୋର ତ ଚଳି ଯାଉଛି, ତା ଅର୍ଜନ ଟଙ୍କାଗୁଡ଼ାକ ଖର୍ଚ୍ଚ କରିବି କିଆଁ ? ଯେତେ ଗୋଡ଼ ହାତ ଧରି ନେହୁରା କଲେ ବି ଶୁଣି-ବାକୁ ନାହିଁ । 'ତୁ ଯେତେ ମାଗିବୁ ମାଗ, ମୁଁ ସେଇ ଦର-ଯୋଡ଼ା କାଟ ।' ଗୋପାଳବାବୁ କଚେରି ବାହୁଡ଼ା ସଞ୍ଜବେଳେ ମା'ପାଖରେ ଘଡ଼ିଏ ବସି ଦୁଃଖ ସୁଖ କଥା କହନ୍ତି । ଯେଉଁଦିନ ଯେତେ ରୋଜଗାର ହୁଏ, ମା ପାଖରେ ଥୋଇ ଦିଅନ୍ତି । ଟଙ୍କା ଦେଖି ବୁଢ଼ୀ ଛାତି କୁଣ୍ଢେ ହୋଇଯାଏ । ଭଲ କରି ଓଲଟା ଓଲଟି କରି ଦେଖେ, ଠାକୁର ଦେବତା ନାମ ଡାକି ଟଙ୍କାଗୁଡ଼ିକ ଛ ଥର ମୁଣ୍ଡରେ ମାରେ; ଗଣି ପୋଟ୍ଟଳି ଭଲକରି ବାନ୍ଧି ପେଡ଼ିରେ ରଖେ । ନିଜପାଇଁ ପଇସାଏ ବି ଖରଚ କରେ ନାହିଁ । ପୁଅ ପାଇଁ ହେଲେ ପାଞ୍ଚଟା ଜିନିସ ଅଣାଇ ପାଞ୍ଚ ତିଅଣ କରି ଖୁଆଏ । ପୁଅ ବି ଚେତିକବେଳେ ଅଡ଼ି ବସେ —"ନା, ମା, ତୁ ନ ଖାଇଲେ ମୁଁ ଖାଇବି ନାହିଁ ।"

ଗୋପାଳବାବୁ ଦିନେ ସଞ୍ଜବେଳେ ବହୁତ ସାକୁଲସାକୁଲି କରି କହିଲେ, "ମା ତୁ ତ ରାନ୍ଧି ପାରିବୁ ନାହିଁ, ଗୋଟାଏ ପୂଝାରି ଆଣି ରଖିବି ।"

ମା—ପୂଝାରି କଣ ରେ ? କି ବାହ୍ମଣ ବୋଲି କି ବାହ୍ମଣ—ସୂତା ଗୋଛାଏ ବେକରେ ପକାଇଲେ ହେଲା ପରା ? ସେ ମୋ ଈଶାଣରେ ପଶି ହାଣ୍ଡି ଛୁଇଁବ, ତା ହାତରୁ ଖାଇବି ? ତିନି କାଳ ଗଲା, ଏବେ ଯଥା-କାଳକୁ ବିଦେଶରେ ଜାତିପତି ହରେଇବି ପରା ?

ଗୋପାଳବାବୁ ତୁନି । ଆଉ ଦିନେ ଗୋଟାଏ ମାଇକିନିଆ ବସାରେ ଉପସ୍ଥିତ ।

ମା—ଏ କିଏ ରେ ଗୋପାଳ ?

ଗୋପାଳ - ମା, ଏ ଗୋଟିଏ ଦାସୀ । ଆସିଛି ବାହାର ପାଇଟି କରିବ ।

ମା—ବାହାର ପାଇଟି କଣ ରେ ? ଆରେ ଅଇଣ୍ଠା ବାସନ ଦିଖଣ୍ଡ ପିଛୁଳି ପକାଇଲେ ଗଲା । ଘର ବାହାରଟା ଖର୍କାଖର୍କି କରି ଦେଇ ଝୁଞ୍ଜକିନାଟା ବୁଲେଇ ଆଣିଲେ ପାଇଟି ଛିଡ଼ିଲା । ଦାସୀ କଣ ରେ ? ଦେ, ଦେ ବିଦାକରି ଦେ ।

ଏ କଥା ବି ସତ, ଏପରି ଅଭ୍ୟାସ ହୋଇ ଯାଇଛି ଯେ, ବୁଢ଼ୀ କାମ ପାଇଁଟିକୁ କଷ୍ଟ ମଣେ ନାହିଁ, କାମ ନ କରି ରହିବାରେ ନାହିଁ ।

ଗୋପାଳ ବାବୁଙ୍କର ବାଇଶ ତେଇଶ ବର୍ଷ ପାରି ହୋଇଗଲାଣି, ଏହି ତ ବଡ଼ ବୟସ । ମା ବାହାକଥା କେତେଥର କହିଲେଣି । ମାଆଙ୍କ କୌଣସି କଥା ତଳେ ପଡ଼େ ନାହିଁ, ହେଲେ ବାହାକଥା ଶୁଣି ଗୋପାଳବାବୁ ଶୁଣି ନ ଶୁଣିଲା ପରି ପିଠେଇ ଚାଲିଯାନ୍ତି । ଶେଷକୁ ପୁରୁଣା ପୋଷ୍ଟମାଷ୍ଟର ବାବୁଙ୍କୁ ଧରିଲେ, ତାଙ୍କ କଥା ବି ଶୁଣିବାକୁ ନାହିଁ । ଗୋପାଳବାବୁ ମନରେ ସ୍ଥିର କରିଛନ୍ତି, ମା ତ ବୁଢ଼ୀ ହେଲାଣି, ବସାରେ ତ ଆଉ କେହି ନାହିଁ । କଚେରୀ ଦରବାରରୁ ଆସି କାହା ସାଙ୍ଗରେ ବସି ଦି'ଟା କଥାବାର୍ତ୍ତା ହେବେ ? ବସା ଖର୍ଚ୍ଚ ପତ୍ର ହିସାବ ବୁଝିପାରିବ, ଚିଠିପତ୍ର ଖଣ୍ଡେ ଲେଖି ପାରୁଥିବ, ଏପରି ପାଠୋଇ କନ୍ୟାଟିଏ ପାଇଲେ ଭଲ ହେବ । ମୂର୍ଖ କନ୍ୟାଟାଏ ଭଲ ହେଲେ କଣ ହେବ ?

ବୁଢ଼ୀ ଏବେ ଗୋଟାଏ ଫିକର ବାହାର କଲାଣି । ପୁଅକୁ ଶୁଣାଇ ଶୁଣାଇ ଭୁଣ୍ଡାଟାରେ ହେଲେ କହେ "ଓହୋ ଚାଲି ପାରୁ ନାହିଁ, ପାଣି ଆଣି ପାରୁ ନାହିଁ, ଆଜ ରାତିରେ କମିତି ଦି'ଟା ଫୁଟାଫୁଟି କରି ଦେବ ।"

ଗୋପାଳ—ମୁଁ ତ ସେହି କଥା କହୁଛି ମା, ଏବେ ହେଲେ ଗୋଟାଏ ରାନ୍ଧୁଣୀ ଆଣେ ?

ମା -- କଣ ଯଥାକାଳକୁ ଧର୍ମ ନଷ୍ଟ କରିବ ?

ଗୋପାଳବାବୁ ଏବେ ଅଥୟ । ଲାଗିଲା କନ୍ୟା ଖୋଜାଖୋଜି । ଏ ବିଷୟରେ ପୋଷ୍ଟମାଷ୍ଟର ବାବୁଙ୍କର ଭାରି ତନଘନ ଲାଗିଛି । ଢେର ଖୋଜାଖୋଜିରେ କନ୍ୟାଟିଏ ଠିକଣା ହେଲା, ମାଳଗିରି ଇଲାକା ମୟୂରଭଞ୍ଜ ଦୋସମାଳୀ ଭାଲୁକପୋଷି ଗାଁରେ । ଭାଲୁକପୋଷି ଗୋଟାଏ ପାହାଡ଼-ମୂଳଆ ବଣଭିତରିଆ ଗାଁ, ଆଖପାଖ ଦୁଇ ତିନ କୋଶ ଭିତରେ ଆଉ ଗାଁ ନାହିଁ । ଗାଁରେ ସାନ୍ତାଳ ଚାଳିଶ କ ପଚାଶ ଘର । ବେପାରୀ ତେଲି ମହାଜନ ଦୋହରା ଘର ଯୋଡ଼ାଏ । ରାଜାଙ୍କ ଗଡ଼ ପାଖରୁ ଗାଁଟା ଢେର ଦୂର, ଖଜଣା ଅସୁଲ କରିବାପାଇଁ ପିଆଦା ପଇଦଳ ବାଘ ଭାଲୁ ଡରରେ ଏକୁଟିଆ ଯିବାକୁ ମଙ୍ଗନ୍ତି ନାହିଁ । ଦୁଇ ତିନି ଜଣ ସାଙ୍ଗସୁଙ୍ଗା ହୋଇ ଗଲେ ସାନ୍ତାଳ-ଗୁଡ଼ାକ ବଣରେ ପଶିଯାନ୍ତି । ପିଆଦାମାନେ ଭେଟି ପାରନ୍ତି ନାହିଁ । ଦେବାକୁ ମରିବାକୁ କଏ ସହଜରେ ରାଜି ହୁଏ ? ବଣୁଆଗୁଡ଼ାକ ଖଜଣା ଗଣ୍ଡାକ ଦେବାକୁ ନାରାଜ, ଠିକଏ ଟାଣ କଲେ ଗାଁ ଛାଡ଼ି ପଳାଇବେ, ନୋହିଲେ ଅମାନିଆ ହୋଇ ଗଣ୍ଡି ଫେଣ୍ଟାଇ ଦେବେ । ସେ ଗୁଡ଼ାକୁ କରଗତ ରଖିବା ଲାଗି ରାଜାଙ୍କ ସ୍ମାମୁରୁ ଦଶମାଣ ହେତା ଜମି ଦେଇ ସେହି ଗାଁରେ ସବୁଦିନେ ରହିବାପାଇଁ ଜଣେ ପଧାନ ରଖିଲେ । ସେହି ହେତା ଜମି ଲୋଭରେ ଏବେକା ପଧାନ ଘନଶ୍ୟାମ ମହାନ୍ତିଙ୍କ ବାପେ ରାମ ମହାନ୍ତିଏ ଦୋହରା ଘର କରୁଁ କରୁଁ ସେ ଜାଗାରେ ରହି ଯାଇଛନ୍ତି ।

ଘନଶ୍ୟାମଙ୍କ ପରିବାର ବୋଇଲେ ମାମୁ ମାଇଁ ଦି' ପ୍ରାଣୀ, ଆଉ ପନ୍ଦର ବର୍ଷ ବୟସର ଗୋଟିଏ ଅଭିଆଡ଼ୀ ଝିଅ, ନାମ ସରସ୍ୱତୀ । ଗାଁଟା ବଡ଼ ବଣୁଆ, ସଞ୍ଜ ବାଜିଲା ତ ବାଘ ଭାଲୁ ମେଳା ମେଳା, ଦିନ ଥାଉଁ ଥାଉଁ ଲୋକମାନେ ଖାଇ ପିଇ ତାଟି କବାଟ କଲି ଶୋଇ ପଡ଼ନ୍ତି । ସେହିଠାରେ କନ୍ୟା ଠିକଣା ହେଲା । ବୋଇଲା ବାରି କଥାରେ ବାହା, ଢେର ଥର କଥାବାର୍ତ୍ତା ଚଳିଲା, ଶେଷକୁ ଧାଇ ଦେଖି ଆସି କହିଲା "କନ୍ୟାପରି କନ୍ୟାଟାଏ ଏକା, ନାମ ସରସ୍ୱତୀ, ଦେଖିବାକୁ ଲକ୍ଷ୍ମୀ ମୂର୍ତ୍ତିଟିଏ, ଗୋଟିଏ ଛାଞ୍ଚରେ ଗଢ଼ା, ଗୁଣର ସୀମା ନାହିଁ ।"

କନ୍ୟା କଥା ଶୁଣି ବୁଢ଼ୀ ତ ଅଥୟ । ରୂପ ଗୁଣ ଶୁଣି ଗୋପାଳବାବୁଙ୍କ ମନ ଟିକିଏ ତରଳିଲା, ବିଚାର କଲେ, ନ ପଢ଼ିଛି ତ ନାହିଁ, କଣ କରାଯିବ, ତାକୁ ନ ହୁଏ ବସାରେ ବସି ପଢ଼ାଇବ ।

ବିଭା ହୋଇଗଲା । ବସାରେ ହେଲେ ଚାରି ଜଣ । ଗୋପାଳବାବୁ ବାର ଚଉଦ ବର୍ଷର ଗୋଟିଏ ଭଣ୍ଡାରି ପିଲାକୁ ଡାକହାକ ଶୁଣିବା, ବଜାରହାଟ ସଉଦା କରି ଦେବାଲାଗି ରଖି ଦେଇଛନ୍ତି । ଗୋପାଳବାବୁଙ୍କ ଇଚ୍ଛା, ବୋହୂ ସାଙ୍ଗରେ ଯେଉଁ ଦାସୀଟା ଆସିଛି, ତାକୁ ସବୁଦିନେ ବସାରେ ରଖିବେ । ମା ଉପରେ ରଖିଲେ ନାହିଁ । ବୁଢ଼ୀ ଏତେ ଚମଚମାଳ ବୁଝେ ନାହିଁ । କହିଲେ, "ଆଜି ଜାଣି ଟଙ୍କା ଯୋଡ଼ାଏ ଘରେ ପଶୁଛି, ଦାସୀଟାଏ ରଖି ପକାଇବା, କାଲି ଟଙ୍କା ନ ମିଳିଲା ! ନାହିଁ ରେ ବାପା, ଟଙ୍କା ଯୋଡ଼ାକ ସାଇତି ରଖିଥିଲେ ବେଳରେ ଓ କରିବ ।"

ବୋହୂର ରୂପ ଗୁଣ ଦେଖି ବୁଢ଼ୀ ଦିନ ରାତି ତାହାର ପ୍ରଶଂସା ଗାଉଛି, ମୁହଁରେ ସବୁବେଳେ ହାତେ ଲମ୍ବ ଓଢ଼ଣା, ନଇଁ ନଇଁ ଚାଲେ, ପନ୍ଦର ଦିନ ହେଲା ଆସିଲା, ପଦେ ବୋଲି କଥା କେହି ଶୁଣି ନାହିଁ । ଭଲ ଘର ଝିଅଟିଏ ଏକା, ମା ଭଲ ଗୁଣଗୁଡ଼ାଏ ଶିଖାଇଛି, ଇତ୍ୟାଦି ଇତ୍ୟାଦି ।

ବୁଢ଼ୀଟା ଯେମନ୍ତ ବୋହୂକୁ ଚାହିଁ ବସିଥିଲା, ବିଭାଦିର ଅଷ୍ଟମଙ୍ଗଳା ଯାଇ ନାହିଁ, ବୁଢ଼ୀ ବାଧିକା ପଡ଼ିଲା ଯେ, ବିଛଣା ଧରିଛି; ଆଉ ଉଠିବାକୁ ନାହିଁ । ଦିନ ପନ୍ଦରଟା ମଧ୍ୟରେ ଆପଣା ନିଜ ଜାଗାକୁ ଚାଲିଗଲା ।

ମରିବା ଦି'ଦିନ ଆଗରୁ ପୁଅକୁ ପାଖରେ ବସାଇ ଢେର ଉପଦେଶ ଦେଲା । "ବାପା ! ବେଳ ମାପିକେ ଖାଇବୁ, ଟଙ୍କାକଉଡ଼ି ସାଇତିବୁ, ବୋହୂକୁ ଭଲ ପାଇବୁ, ମୋର ଢେର ଦିନରୁ ମନ, ଗୋଟିଏ ସୁନା ଅଳଙ୍କା ବନାଇ ଦେବୁ, ବୋହୂ ମୁଣ୍ଡରେ ଲଗାଇବ ।" ସୀତା-ଦେଈଙ୍କୁ ଡକାଇ କହିଲା, "ଆଲୋ ସୀତା, ବୋହୂଟା ତତେ ଲଗିଲା, ପିଲାଟା କିଛି ଜାଣେ ନାହିଁ ।" ବୁଢ଼ୀର ପାଟି ପଡ଼ିଗଲା, ଆଉ କିଛି କହିପାରିଲା ନାହିଁ । ମାଉସୀ ପୁତୁରୀ ଦି'ଜଣ ଗୋଡ଼ ପାଖରେ ବସି ଢେର କାନ୍ଦିଲେ ।

ବୁଢ଼ୀର ତ କ୍ରିୟାକର୍ମ ସବୁ ଛୁଟିଗଲା । ଗୋପାଳବାବୁ ଏବେ ବୋହୂଟିକୁ ପାଠ ପଢ଼ାଇବାକୁ ଆରମ୍ଭ କରି-ଦେଲେ । ରୋଜ ସଞ୍ଜବେଳୁଁ ପାଖରେ ବସାଇ ରାତି ଦୁଇଘଡ଼ି ଯାଏ ପଢ଼ାନ୍ତି । ଅ ଅକ୍ଷରଟା ଲେଖି ଶିଖିବାକୁ ମାସେ କାଳ ବିତିଗଲା । ମାସ ଦି'ଟା ଭିତରେ ବୋହୂ ଅ - ଆ ଦିଟା ପୂରାପୂରି ଶିଖିଗଲାଣି, ଇ ଅକ୍ଷରଟା କିନ୍ତୁ ସହଜରେ ହେଉନାହିଁ, ହ୍ରସ୍ୱଇ ଟା ଶିଖିବାକୁ ଛ ସାତ ଦିନ ଗଲା, ଲେଖି ଆସୁ ନାହିଁ । ବୋହୂ କହୁଛି, " ଏ ଅକ୍ଷରଟା ବଡ଼ ମୋଡ଼, ଲେଖି ଆସୁନାହିଁ ।" ପନ୍ଦର ଦିନକାଳ ମେହନତ କରି ଶିଖାଇ ନ ପାରିବାରୁ ଗୋପାଳ ବାବୁ ବଡ଼ ଦିକ୍‌ଦାର ହେଲେଣି । ବୋହୂଟା ବି ଠାଁ ଏକ ଜାଗାରେ ଦୁଇ ଘଣ୍ଟାକାଳ ବସି ପଢ଼ି ପଢ଼ି ଦିକ୍‌ଦାର । ଗୋପାଳବାବୁ ମନରେ କଲେ—ବୁଢ଼ୀ ଶାଗୀକୁ ରାମ ରାମ ଶିଖାଇବା ସହଜ କଥା ନୁହେ ।

ସରସ୍ୱତୀ ଦେଈ ମନରେ କଲେ—ସେ ଏତେ ମେହନତ କରି କିଆଁ ପାଠ ପଢ଼ିବେ, ବାବୁଙ୍କୁ ପଚାରିବେ ପଚାରିବେ ମନରେ କରନ୍ତି, ହେଲେ ଭରସା ଖଟେ ନାହିଁ । ଆଜି ଖୁବ୍ ସାହସ କରି ପଚାରିଲେ, "ହଁ ହେ, ତୁମେ ସିନା କଚେରି ଦରବାରକୁ ଯିବ, ପାଠ ପଢ଼ିବ, ମୁଁ କିଆଁ ପାଠ ପଢ଼ିବି ?"

ଗୋପାଳ—"କଚେରୀ ଦରବାର ନାହିଁ, ତୁମେ ପାଠ ପଢ଼ିଲେ ବୁଦ୍ଧି ହେବ।" ଏ କଥା ଶୁଣି ସରସ୍ୱତୀ ଦେଈ ତ ଖୁବ୍ ଗୋଟାଏ ହସିଲେ । ଗୋପାଳବାବୁ ମନରେ କଲେ, ତାଙ୍କ କଥା ମନକୁ ନ ପାଇବାରୁ ବୋଧେ, ଅବଜ୍ଞା କରି ହସିଲେ । ହେଲେ ଗୋପାଳବାବୁଙ୍କର ଏଟା ଭୁଲ, ପୂରାପୂରି ଭୁଲ । ଅସଲ କଥା କଣ କି, ସରସ୍ୱତୀ ଦେଈ ଭଲ କରି ଜାଣନ୍ତି, ତାଙ୍କର ବୁଦ୍ଧି ଢେର । ରୂପରେ ଗୁଣରେ ତାଙ୍କ କଥାରେ ମୁଲକରେ କେହି ନାହିଁ, ତେବେ ଆଉ ପାଠ ପଢ଼ିବେ କିଆଁ ? ତାଙ୍କର ଯେ ବୁଦ୍ଧି ଢେର, ତାହା ଗାଁ ସାନ୍ତାଳ ମାଇକିନିଆମାନଙ୍କ କଥାରୁ କେତେ ଥର ଶୁଣିଛନ୍ତି । ତାଙ୍କ ବୋଉ ବି ଢେରଲୋକ ପାଖରେ କହିଛନ୍ତି, "ବୁଦ୍ଧିରେ ମୋ ଝିଅ କନ୍ୟାରେ ଆଉ ଗୋଟାଏ ଝିଅ ମୁଲକରୁ କାଢ଼ିଲ ଭଲା ? ଭାତ ରନ୍ଧାରେ କିଏ ବାଛିବ ? ଶାଗ ଶନ୍ତୁଳିଲେ ଗାଁ ଗୋଟାଏ ମହକି ଯାଏ । ସବୁ ଗୁଣରେ ମୋ ଝିଅ ଫରକିତ । ଖଇଉପିଠା କରିବାରେ ତା ଆଗରେ କେଉଁ ଝିଅଟା ଠିଆ ହେବ ହେଉ ତ ଦେଖେଁ । ଦୁଆରେ ଝୋଟି ଦେଇଥିଲେ ଦାଣ୍ଡଗଲା ଲୋକ ରହିଁ ରହିଁ ଯାନ୍ତି ।" ସେ ମନରେ କଲା, ବାବୁଙ୍କୁ ମୋ ବୁଦ୍ଧିକଥା ଅଜଣା, ସେଇଥି ଲାଗି ପାଠ ପଢ଼ିବାକୁ କହୁଛନ୍ତି । ସବୁ କାମ ଦାମ ଛାଡ଼ି ମୁଁ ତ ଆଉ ହର୍ସଇ ହର୍ସଇ ଦି ଘଣ୍ଟା ବସି କହି ପାରିବି ନାହିଁ ।

ଏଣିକି ବାବୁ ପାଠ ପଢିବାଲାଗି ଡାକିଲେ, "ମୋ ହାତରେ ପାଇଟି ଅଛି" କହି ମୁହଁ ବୁଲାଇ ଚାଲିଯାନ୍ତି । ଗୋପାଳବାବୁ ଏଥିପାଇଁ ବଡ଼ ବିରକ୍ତ ।

ଗୋପାଳବାବୁ ମନରେ କଲେ, ଏଟା ତ ପଢ଼ିଲା ନାହିଁ, ତୁଚ୍ଛାରେ ବସାଟାରେ ବସି ବସି କଣ କରିବି ? ଗାଁ ମୁଣ୍ଡରେ ରାଧେ ବାବାଜୀ ମଠ—ଅମଲାମାନେ ମିଳି ସେଠାରେ ଗୋଟିଏ ସଭା କରିଛନ୍ତି, ନାମ 'ଭକ୍ତିଦାୟିନୀ ସଭା' । ସଭାରେ ପୁରାଣ ପାଠ ଓ ଧର୍ମ ବିଷୟ ଚର୍ଚ୍ଚା ହୁଏ । ସଞ୍ଜ ବାଜିଗଲେ ବାବୁ ସେହି ସଭାକୁ ଚାଲିଯାନ୍ତି ।

ସରସ୍ୱତୀ ଦେଈ ପ୍ରଥମରୁ ବିରକ୍ତ ଥିଲେ । "ସଞ୍ଜ ବାଜିଲା, ଖାଇ ପିଇ ଶୋଇ ପଡ଼ିବ, ସ୍ୱାଙ୍କ ଘରେ ଗଣ୍ଡ ପହରକେ ଭାତ ଖାଇବେ, ଏଟା କଣ ମ ?" ସରସ୍ୱତୀ ଦେଈଙ୍କର ଏଣିକି ମନ ମଧ୍ୟରେ ଭୟାନକ ଚିନ୍ତା ।

ପ୍ରଥମ ଚିନ୍ତା—ଗାଁରେ ତ ସମସ୍ତେ ଛାଟି କବାଟ ଦେଇ ଶୋଇ ପଡ଼ିଲେଣି, ବାବୁ ଆଉ ଏକୁଟିଆ କୁଆଡ଼େ ଯାନ୍ତି ? ବାଘଟାଏ ଭାଲୁଟାଏ ବାହାରି ପଡ଼ିଲେ କଣ ହେବ ? ସବୁବେଳେ ଯୋଡ଼ହାଡ଼ ହୋଇ କୋଣରେ ବସିଥିବେ, କାହାରି ସାଙ୍ଗରେ ତ କଥା କହିବେ ନାହିଁ । ଦାଣ୍ଡ ଲୋକ ତ ଘର ଭିତରକୁ କେହି ଆସନ୍ତି ନାହିଁ, ଏ ଗାଁ ହାଲ କାହୁଁ ଜାଣିବେ ?

ଦ୍ୱିତୀୟ ଚିନ୍ତା—ବାବୁ ଏଣିକି ମତେ ଆଉ ଭଲ ପାଉ ନାହାନ୍ତି—ନିଶ୍ଚେ ଆଉ କାହାକୁ ଭଲ ପାଉଛନ୍ତି—ସେ କିଏ ?

ତୃତୀୟ ଚିନ୍ତା ବାବୁ କଣ ରୋଜ ତାହାରି ପାଖକୁ ଯାନ୍ତି ? ଅବଶ୍ୟ ତାହାରି ପାଖକୁ ଯାନ୍ତି ।

ସବୁବେଳେ ଚିନ୍ତାରେ ଦେହ ଶୁଖି ଗଲାଣି । ଶେଷରେ ସ୍ଥିର କଲେ, ବାବୁଙ୍କୁ ପଚାରିବେ, କୁଆଡ଼େ ଯାନ୍ତି । ହେଲେ, ପଚାରିବାକୁ ଭରସା ଆଣ୍ଟୁ ନାହିଁ ।

ଶାଶୁ ମଲା ଦିନ ପାଖରୁ ମଉସୀଶାଶୁ ରୋଜ ବେଳବୁଡ଼େ ବୋହୂକୁ ଦେଖିବାକୁ ଆସନ୍ତି । ଏବେ ରୋଜ ଥରେ ବୁଝାନ୍ତି, "ଶାଶୁ ଲାଗି ଏତେ ଚିନ୍ତା

କର ନା; ତୋ ଦେହ ଶୁଖି ଗଲାଣି ରେ । ଶାଶୂ ବୁଢ଼ୀ ହୋଇଥିଲା, ମରିଗଲା, କଣ କରିବୁ ? ଶାଶୂ ଶଶୁରଙ୍କୁ ଯେକି କଣ ବୋହୂମାନେ ସବୁଦିନେ ଘର କରନ୍ତି ? ଯା ମା, ଆଉ ଚିନ୍ତା କର ନା ।" ବୁଢ଼ୀ ମନରେ କଲା, ବୋହୂ ଶାଶୂ ଲାଗି ଭାବି ଭାବି ଶୁଖିଗଲାଣି ।

ଆଜ ମାସର ଶେଷ ଶନିବାର । ବାବୁ ଚଞ୍ଚଳ କଚେରିରୁ ଆସିଥିଲେ । ସଞ୍ଜ ନ ବାଜୁଣୁ ସଭାକୁ ବାହାରିଛନ୍ତି । ସରସ୍ୱତୀ ଦେଈ ଖୁବ୍ ହେମତ କରି ପାଖକୁ ଯାଇ ପଚାରିଲେ, "ହୋଇ ହେ, ରୋଜ ରାତିରେ ତୁମେ କାହା ପାଖକୁ ଯାଅ ?"

ବାବୁ—ଭକ୍ତି-ଦାୟିନୀ ସଭାକୁ ।

ସରସ୍ୱତୀ—କଣ—କଣ କହିଲେ ? ଭଗବତୀ ଡାହାଣୀ ?

ବାବୁ ହସି ହସି କହିଲେ—ହଁ ହଁ, ଭଗବତୀ ଡାହାଣୀ !

ସରସ୍ୱତୀ—ଶୋଭା କଣ କହିଲ, ସେ କଣ ବଡ଼ ଶୋଭାକାର ।

ବାବୁ ଠାହୁଲି କରି କହିଲେ—ହଁ, ହଁ, ଭାରି ଶୋଭାକାର ।

ବାବୁ ହସି ହସି ଚାଲିଗଲେ, ମନମଧ୍ୟରେ ଭାରି ବାହାଦୁରଟା ବି ହେଲେ । ବଣ ସାନ୍ତାଳ ଗାଁରୁ କ ବଣଜନ୍ତୁଟାଏ ଆଣିଛି, ଭକ୍ତିଦାୟିନୀ କଥାଟା କହି ଆସୁନାହିଁ, କହୁଛି କଣ ନା, ଭଗବତୀ ଡାଆଣୀ । କଣ ଖୋଜୁଥିଲି, କଣ ପାଇଲି - କପାଳ କଥା ! ସରସ୍ୱତୀ ଦେଈ ଯେ ଜାଗାରେ ଛିଡ଼ା ହୋଇଥିଲେ, ଠିକ୍ ସେହି ଜାଗାରେ ଖୁମ୍ବଟିପରି କଣ୍ଠକୁ ଆଉଜି ଛିଡ଼ା ହୋଇଛନ୍ତି । ରାତି ଘଡ଼ିଏ ହୋଇଗଲାଣି, ଅର୍ଜୁନା ଡାକଦେଲା, "ମା ଇମିତିଟା ହୋଇ ଛିଡ଼ା ହୋଇଛନ୍ତି କିଁଆ ? ହାଣ୍ଡିଶାଳ ଦୁଆରେ ବସି କୁହୁଳା ଥୋଇ ଦେଇଛି, ପାଣି ବି ମାଠିଆ ରଖି ଦେଲିଣି, ଯାଉନ୍ତୁ, ଭାତ ରାନ୍ଧିବେ ଯାଉନ୍ତୁ ।" ଅର୍ଜୁନାର ଦୁଇ ତିନି ଡାକରେ ସରସ୍ୱତୀ 'ହୁଁ' ବୋଲି କହି ହାଣ୍ଡିଶାଳକୁ ବାହାରିଲେ, ଚୁଲିରେ କୁହୁଳାଟା ପକାଇ ଦେଇ ହାଣ୍ଡି ବସାଇ ଦେଲେ । ଭୋଜନା ତିନି ଜଣ ପାଇଁ ରନ୍ଧା ସେରେ ଚାଉଳ । ସରସ୍ୱତୀ ଦେଈ ଅମପା ଅପୋଗ୍ଯ ଚାଉଳ ଧୂଆଏ ଚାଉଳ ଆଣି ହାଣ୍ଡିରେ ଢାଳିଦେଲେ । ଚାଉଳଟା ଅଧୁଆ । ଲୋଟାଏ ପାଣି ଢାଳିଦେଇ ଚୁଲ୍ଲୀ ଜଳା ଲଗାଇଛନ୍ତି । ଅର୍ଜୁନା ଅନାଇ ଥାଏ । ଦେଖି ଦେଖି ମନରେ କଲା, ଆଜ ଏ କଣ ହେଉଛି । ଦଣ୍ଡିକ ବାଦେ ଅର୍ଜୁନା ଡାକଦେଲା, "ମା ମା, ଦେଖନ୍ତୁ— ଦେଖନ୍ତୁ ଭାତ ତଳ ଲାଗିଗଲା ପରା – ଚାଉଳ ପୋଡ଼ା ଗନ୍ଧାଉଛି ।" 'ହୁଁ' ବୋଲି କହି ସରସ୍ୱତୀ ଦେଈ ଆଉ ଅଧ ମାଠିଆଏ ପାଣି ଗବ ଗବ କରି ହାଣ୍ଡିରେ ଢାଳି ଦେଲେ । ଦଣ୍ଡିକ ବାଦେ ମେଞ୍ଚାଏ ହଳଦି ଓ ମୁଠାଏ ଲୁଣ ହାଣ୍ଡିରେ ପକାଇ ଦେଇ ଘାଣ୍ଟି ବସିଲେ । ଅର୍ଜୁନା ଡାକିଲା, "ମା ମା, ଭାତରେ ହଳଦି ପକାଇଲେ କିଁଆ ?" ଅର୍ଜୁନାର କଥା କଣ କାନରେ ପଶୁଛି ? ଆକାଶ ପାତାଳ ଭାବନା, ଚିନ୍ତାର ସୀମା ନାହିଁ । ଆଖି ଆଗରେ ପୃଥିବୀଟା ଯେମନ୍ତ ଘୂରି ଯାଉଛି, ଭଗବତୀ ଡାହାଣୀ ନାଚି ନାଚି ତାଙ୍କ ପାଖକୁ ଧାଇଁ ଆସୁଛି ।

ସରସ୍ୱତୀ ମନରେ କଲେ, ଭଗବତୀ ଡାହାଣୀ କଥା ଅର୍ଜୁନାକୁ ପଚାରି ବୁଝିବେ । ସ୍ୱାମୀ କଥା— ଅସୁନ୍ଦର କଥା । ଟୋକାଟାକୁ ପଚାରିବାକୁ ବଡ଼ ଲାଜ ମାଡ଼ୁଛି । ଅର୍ଜୁନାକୁ ଦୁଇ ତିନି ଥର ଅନାଇଲେ, ପଚାରି ପାରୁ ନାହାନ୍ତି । ଆଉ ସମ୍ଭାଳି ହୋଇ ପାରିଲେ ନାହିଁ, ପଚାରିଲେ, "ହୋଇ ରେ ଅର୍ଜୁନା, ତୁ ଭଗବତୀ ଡାହାଣୀକୁ ଦେଖିଛୁ ?"

ଅର୍ଜୁନା—କୋଉଁ ଡାହାଣୀ, ମା ?

ସରସ୍ୱତୀ—ଆରେ ସେଇ ଭଗବତୀ—ସେ କଣ ବଡ଼ ଶୋଭକାର ?

ସରସ୍ୱତୀ ମନରେ କରୁଛନ୍ତି, ଅର୍ଜୁନା ସବୁ ଜାଣେ, ଅବଶ୍ୟ ଜାଣେ । ଅର୍ଜୁନା ଦଣ୍ଡେପାଏ ତୁନି ହୋଇ ରହିଲା, ସେ ଚଲାକ ଭଣ୍ଡାର ପିଲା, ଆପଣା ଅଜଣାପଣିଆ କାହିଁକି ପ୍ରକାଶ କରିବ ? ଖୁବ୍ ପାଟିଟା କରି କହିଲା, "ହଁ ମା, ଦେଖିଛି, ଦେଖିଛି ।" ନଷ୍ଟପୁଅ ସେ ଜାଣିଶୁଣି ମିଛ କହିବ ନାହିଁ । କଥା କଣ କି, ସେ ବାବୁଙ୍କ ସାଙ୍ଗରେ ଦିନେ ରାତିରେ ଶ୍ୟାମସୁନ୍ଦର ମନ୍ଦିରକୁ ଝୁଲଣ ଯାତ୍ରା ଦେଖିବାକୁ ଯାଇଥିଲା । ଗୋଟିଏ ସୁନ୍ଦରୀ ମାଇକିନିଆ ଠାକୁର ଆଗରେ ନାଚି ନାଚି ଗୀତ ଗାଉଥିଲା, ଦେଖି ଆସିଛି । ଅର୍ଜୁନା ଘର ତାମର ଘୋର ଲମ୍ବା ଦଣ୍ଡି ସମୁଦ୍ରକୂଳ ମଫସଲ—ମାଇକିନିଆ ନାଚନ୍ତି, ଆଉ ଏଡ଼େ ସୁନ୍ଦର ମାଇକିନିଆ ତାହାର କୌଣସି ପୁରୁଷରେ କେହି ଦେଖି ନାହିଁ । ମନରେ କଲା, ତାହାରି କଥା ମା ପଚାରୁଛନ୍ତି ।

ସରସ୍ୱତୀ—ବାବୁ କଣ ତା ପାଖରେ ବସିଥିଲେ ?

ଅର୍ଜୁନା—"ହଁ, ତା ପାଖରେ ବସିଥିଲେ ।" ତାହା ବାଦେ ଆପଣାର ଜାଣନ୍ତାପଣିଆ ପ୍ରକାଶ କରିବା ଲାଗି ବର୍ଣ୍ଣନା କଲା, "ସେ ଭଗବତୀ ଡାହାଣୀ କେଡ଼େ ସୁନ୍ଦର, କିମିତି ବଡ଼ ସୁନ୍ଦର ଲୁଗା ପିନ୍ଧିଛି, ଦେହରେ ମୁଣ୍ଡରେ କେତେ ସୁନା ଅଳଙ୍କାର ଲଗାଇଛି ।"

ସାନ୍ତାଣୀ ଗୋଟାଏ ଲମ୍ବା ଚଟୁ ଧରି ଭାତ ଘାଣ୍ଟୁ ଥିଲେ, ମୁହଁ ଫେରାଇ ଅର୍ଜୁନାକୁ ପଚାରିଲେ, "କଣ କଣ, ସେ ମୁଣ୍ଡରେ ସୁନା ଅଳକା ଲଗେଇଛି ?"

ଅର୍ଜୁନା—ହଁ ମା ସୁନା ଅଳକା ଲଗେଇଛି, ମୁଁ ଦେଖିଛି ପରା !

ସରସ୍ୱତୀଙ୍କ ମୁଣ୍ଡରେ ଯିମିତି ନିଆଁ ପାହୁଲାଏ କିଏ ଅଜାଡ଼ି ଦେଲା । ଚଟୁଟାଏ ଛାଡ଼ି ଛିଡ଼ା ହୋଇ ପଡ଼ିଲେ, "ଏଁ କଣ ? ମୋ ଶାଶୁ କହି ଯାଇଥିଲେ, ମୁଁ ସୁନା ଅଳକା ମୁଣ୍ଡରେ ଲଗାଇବି, ତାକୁ ଡାହାଣୀ ମୁଣ୍ଡରେ ଲଗାଇ ସାରିଲାଣି ? ମୁଁ ଜୀବନ ରଖିବି ନାହିଁ, ଆଜି ଜୀବନ ହାରିକି ଦେବି ।" ହାତରେ ଲମ୍ବା ଚଟୁ ଥିଲା, ଦୁମାଦୁମ୍ ଭାତ ହାଣ୍ଡିରେ ବାଡ଼େଇଲେ । ଗୁଡ଼ାକିଆ ଭାତ ମେଜ ଖପରାରେ ଚୁଲି ପୂରିଗଲା, ନିଆଁ ଗୁଡ଼ାକ ନିଭିଯାଇ ସେଁ—ସେଁ କରୁଛି, ତାତଲା ପେଜ ଛିଟିକି ଗୋଡ଼ ହାତରେ ପଡ଼ି ଗୁଆ ପରି ଗୋଟା ଗୋଟା ଫୋଟକା ବାହାରି ପଡ଼ିଲାଣି । ସେଥିକି ନଜର ନାହିଁ । ଘରେ ଯେତେ ପାଣିକଳସୀ, ତରକାରି ହାଣ୍ଡି, ଗୁଡ଼ଲ ହାଣ୍ଡି ଥିଲା, ଚଟୁରେ ବାଡ଼େଇ ଗଲେ, ହାଣ୍ଡିଶାଳ ଗୋଟାଯାକ ଖପରା, ପାଣି, ଗୁଡ଼ଲ, ପେଜରେ ପୂରି ଗଲାଣି । "କଣ ହେଲା, କଣ ହେଲା" କହି ଅର୍ଜୁନା ରଡ଼ି ଛାଡ଼ୁଛି । ବାହାରକୁ ବାହାରି ଆସି ଅର୍ଜୁନା ଧରୁ ଧରୁ ଭୂଇଁରେ ମୁଣ୍ଡ ବାଡ଼େଇ ହେଲେ । ମୁଣ୍ଡ ଫାଟିଯାଇ ରକ୍ତଧାର ଛୁଟିଛି, ପିଣ୍ଡାରେ ବସିପଡ଼ି ବାହୁନିବାକୁ ଲାଗିଲେ—

"ବୋଉ ଲୋ ! ମତେ କିଏସେଇ ଖୁଣ୍ଟରେ ବାନ୍ଧି ଦେଇଛୁ ମୋ ବୋଉ ଲୋ ! ମୁଁ ମରିବାବେଳେ ତୋ ମୁହଁ ଦେଖିଲି ନାହିଁ, ମୋ ବୋଉ ଲୋ ! ମତେ ନିଆଁ ଖାତକୁ ପେଲି ଦେଲୁ, ମୋ ବୋଉ ଲୋ !"

ଅର୍ଜୁନା ଦୁଇ ହାତରେ ବାହୁଟା ଯାବଡ଼ି ଧରି ବସି ଡକା ପାରୁଛି । ଦଣ୍ଡେ ଯାଏ ବାହୁନି ବାହୁନି ହାଲିଆ ହୋଇ ପଡ଼ିଲେଣି । କିଏ ଅଚେତ ହୋଇ ଯିମିତି ଢଳେ ପଡ଼ି ଯାଇଛନ୍ତି, ଅର୍ଜୁନା ଧୀରେ ଧୀରେ ହାତ ଛାଡ଼ି ଦେଇ ଗଧେ ବାବାଜି ମଠକୁ ଧାଇଁଲା । ଅଧବାଟରୁ ପାଟିକରି ଧାଇଁଛି—"ସାନ୍ତେ, ଦଉଡ଼ି ଆସ, ଘର ବୁଡ଼ିଲା, ଘର ବୁଡ଼ିଲା, ମା ସରିଗଲେଣି ।"

ସଭାରେ ପୁରାଣପାଠ ଚର୍ଚ୍ଚା ଲାଗିଛି । ଅର୍ଜ୍ଜୁନାର ପାଟି ଖନ ବାଜଗଲାଣି, ଭଲକରି କଥା କହି ପାରୁନାହିଁ । ସମସ୍ତେ ବୁଝିଲେ, ମୁକ୍ତାର ଘର ପୋଡ଼ିଗଲା, ସାଆନ୍ତାଣୀ ମରିଗଲେଣି । ମୁକ୍ତାରଙ୍କୁ ତ ବାଟ ଦିଶୁ ନାହିଁ, ଧାଇଁଛନ୍ତି । ଅଉ ଅମଲା, ଓକିଲ, ମୁକ୍ତାର ଯେତେ-ଟିଲେ, ସମସ୍ତେ ଧାଇଁଛନ୍ତି; ପୁରାଣପଣ୍ଡା ବୁଢ଼ା ହରି ମିଶ୍ରେ ପୁରାଣ ଖେଦା ତଳେ ପୋପାଡ଼ି ଦେଇ ସମସ୍ତଙ୍କ ପଛରେ ନହରେପସର ହୋଇ ଧାଇଁଛନ୍ତି । ଦଣ୍ଡକ ମଧ୍ୟରେ ବାଟୋଇ, ଆଉ ଆଉ ପାଖ ପଡ଼ିଶା ଶହକଡ଼ା ଲୋକ ଘରର ଚଉପିଠି ବେଢ଼ି ଗଲେଣି । ସମସ୍ତେ ପଚାରୁଛନ୍ତି, "କଣ ହେଲା ?" ଭିତର କଥା ଜାଣୁଛି କିଏ, ଜବାବ ଦେଉଛି କିଏ ?

ମୁକ୍ତାର ବାବୁ ଘର ଭିତରକୁ ଯାଇ ଦେଖିଲେ, ସରସ୍ୱତୀ ଦେଈ ଭୂଇଁରେ ପଡ଼ି ଗଁ ଗଁ ଗର୍ଜୁଛନ୍ତି । ହାଣ୍ଡିଶାଳର ହାଲ ଦେଖିଲେ, ଅର୍ଜ୍ଜୁନାକୁ ଢେର କଥା ପଚାରିଲେ, ବସାକୁ କିଏ ଆସିଥିଲା, କିଏ କଣ କହିଲା, ସାନ୍ତାଣୀ କଣ ଖାଇଲେ ଇତ୍ୟାଦି ଢେର କଥା ପଚାରିଲେ । ଗୋଟିଏ ଉତ୍ତର, "ନା, ମୁଁ କିଛି ଜାଣେ ନାହିଁ ।"

ବାବୁ—ତୋତେ କିଛି କଥା କହିଥିଲେ ?

ଅର୍ଜ୍ଜୁନା ଟିକିଏ ହେଟ ଡୋକ କହିଲା, 'ନା' । ଅର୍ଜ୍ଜୁନା କିନ୍ତୁ କଥାଟା ଜାଣୁ ଜାଣୁ ମିଛ କହିଲା, ଭଗବତୀ ଡାହାଣୀ କଥା, ସୁନା ଅଳଙ୍କା କଥା, କହିଲେ କେଜାଣି ଉପରକୁ କିଛି ବଟା ଆସିବ ।

ଚୋପାଳବାବୁ ବାହାରକୁ ବାହାରି ଯାଇ ଭିତରର ହାଲ ସବୁ କହିଲେ । ବାବୁମାନେ ବିଚାର କରି ସ୍ଥିର କଲେ, ଏଟା ଏକରକମ ବ୍ୟାଧି । 'ଚଞ୍ଚଳ ଚାରିଜଣ ଧାଅଁ—ଯେଉଁଠି ଯେଉଁ ଡାକ୍ତରକୁ ପାଇବ, ଧରି ନେଇଆସ ।' ହରି ମିଶ୍ରେ ଟିକିଏ ଖପ୍‌ପା ହୋଇ କହିଲେ, "କଣ କହେ, ଆମକୁ ନ ପଚାରି ଡାକ୍ତର ଆଣି ଧାଇଁଛ; ଏ ରୋଗକୁ ଡାକ୍ତର ତ ଡାକ୍ତର, ଡାକ୍ତରର ବାପା ! ପିତାସୁଣୀ ପବନ ଲାଗିଛି । ଡାକ, ଗୁଣିଆ ଶୁନିଆ ମୁଖୀଙ୍କୁ, ସାଙ୍ଗେ ସାଙ୍ଗେ କାନରେ ବାନ୍ଧି ପକେଇବ । ଦଶଜାଗା ଆମର ଏ ଅଙ୍ଗେ ନଭେଇବା କଥା ।" ହରି ମିଶ୍ରେ ପୁରୁଣା ପୁରୁଖା ଲୋକ, ଭାଷା ଭାଗବତର ଭଲ ଅର୍ଥ ଜାଣନ୍ତି, ତାଙ୍କ କଥା କଣ ତଳେ ପଡ଼ିବ ? କାହାରକୁ ନ କହି ମୁକ୍ତାରବାବୁ ଗୁଣିଆକୁ ଡାକିବା ଲାଗି ଏକ-କାନିଆ ଆପେ ଧାଇଁଲେ । ଅନ୍ଧାର ରାତି ଦଶ ଜାଗାରେ ହାଣ୍ଡୁଡ଼ି ଆଣ୍ଠୁ ଗଣ୍ଠି ଛିଡ଼ି ଝରଝର ରକ୍ତ ବହି ପଡ଼ୁଛି । ପଛ ସାଙ୍ଗ ମଣିଷ ଧରି ଉଠାଇ ନେଉ ନ ଥିଲେ କେଜାଣି କି ହାଲ ହୁଅନ୍ତା !

ଶୁନିଆ ମୁଖୀ ଏ ଅଞ୍ଚଳରେ ଜଣେ ଡାକନାମ ଗୁଣୀ । ଲୋକଟା ବାଙ୍ଗରା, ଥୋଥମା ଥୁଥମୀ, ବାହୁ ଯୋଡ଼ାକ ଦେହକୁ ରୁହିଁ ବେଶି ଲମ୍ବା ମୋଟା, କହୁଣୀ କତିରୁ ହାତ ପାପୁଲି ଯାଏ କିଛି ସାନ ଜଣାଯାଏ । ମୁହଁଟି ଖୁବ୍ ଚେପଟା, ବସନ୍ତ ଦାଗ ପୂରା, ନାକଟି ବେଶି ଚେପା ଆଉ ମୋଟ । ଚାଲିବାବେଳେ ଜଙ୍ଘକୁ ଜଙ୍ଘ ଘଷିଯାଏ, ମୁଣ୍ଡରେ ଗୋଟାଏ ଅଧୁଲିଟା ପରି ସିନ୍ଦୂର ଟିପା । ଆଖିରେ ମଲ୍ଲା କଜ୍ଜଳ କଳା, ହେଲେ ଦେହ ରଙ୍ଗ ସହିତ ମିଶି ଯାଇଛି, ଜଣା ପଡ଼େ ନାହିଁ । ମୁଣ୍ଡରେ ସାନ ପେଣ୍ଡା ବାଳରେ ଅଷ୍ଟଲୋହ ଚେର ବୁଟି ପୂରା ପାଞ୍ଚଟା ଡେଉଁରିଆ । ଟାଣ ଗୁଣିଆ କି ନା, ଆଉ ଗୁଣିଏ ସହି ନ ପାରି ବାଣ ମାରନ୍ତି, କେହି ଜଣେ ବାଣ ମାରିଲେ ଗୋଟାଏ ଡେଉଁରିଆ ଫଟ୍‌କରି ଫାଟିଯାଏ । ଶୁନିଆ ମୁହଁରୁ ଏହା ଶୁଣିବା କଥା । ଖଣ୍ଡେ ମଇଳା ଜସ୍ତାଖଦି ପିନ୍ଧି ଅଣ୍ଟାରେ ମଇଳା ଗାମୁଛା ଭିଡ଼ି ବାନ୍ଧିଛି, ବାଁ କାନ୍ଧରେ ମୂଳମୂଳକାପୂରା ଗୋଟାଏ ଲମ୍ବା ମୁଣି, ଏଥିରେ ଖଣ୍ଡେ କାଉଁରି ହାଡ଼ ଅଛି, ଯେପରି ଟାଣ ଭୂତ ପ୍ରେତ ଡାହାଣୀ ଚିରଗୁଣୀ ବେଲକୁ କାଢ଼େ, ହାତରେ ଗୋଟାଏ ମୋଟା ବାଉଁଶ ବାଡ଼ି ।

ଗୁଣିଆ ଲୋକମାନଙ୍କୁ ଶୁଣାଇ ଖୁବ୍ ଟାଣରେ କହିଲା, "କିଛି ଚିନ୍ତା ନାହିଁ । ଦେଖନ୍ତୁ, ଏହିକ୍ଷଣେ ଡାହାଣୀ ଚିରଗୁଣୀ ଯାହାଥିବ ବାନ୍ଧି ହୋଇଯିବ ।" ମୁଠାଏ ମନ୍ତ୍ରା ସୋରିଷ ଘର ଚାରିପିଠି ବୁଣି ଦେଇ ଘର ଚାରି କୋଣରେ ଚାରିଟା ଲୁହା କଣ୍ଟା ପୋତି ଦେଲା । ଅଧିକା ଆଉ କେଉଁ ଭୂତ ପ୍ରେତ ଘର ଭିତରକୁ ପଶି ପାରିବେ ନାହିଁ । "ଚାଲନ୍ତୁ, ଏବେ ରୋଗୀ ଦେଖାନ୍ତୁ !"

ଘର ଭିତର ପିଣ୍ଡାରେ ପଣତ କାନିଟାରେ ଭଲ କରି ମୁଣ୍ଡ ପିଠି ଘୋଡ଼ାଇ ହୋଇ ଆଣ୍ଠୁ ଯୋଡ଼ିକ କୁଣ୍ଢେଇ ଆଣ୍ଠୁ ଉପରେ ମୁଣ୍ଡ ଥୋଇ ସରସ୍ୱତୀ ଦେଈ ବସିଛନ୍ତି, ଟିକିଏ ଢୁଳଇ ନିଦ ଲାଗିଲା ପରି ଜଣାଯାଏ । ଅର୍ଜୁନା ଏକ ଧ୍ୟାନରେ ତାଙ୍କୁ ଅନାଇ ବସିଛି । ଗୁଣୀ ଯାଇ ପାଞ୍ଚହାତ ଦୂରରେ ଛିଡ଼ାହେଲା, ରୋଗିଣୀକୁ ତରାଟି-ମରାଟି ଭଲ କରି ଦଣ୍ଡେଯାଏ ଅନାଇଲା, ଘର ଚାଳ-ବାଉଁଶକୁ ବି ଅନାଇଲା, ତାହା ବାଦେ ଗୋପାଳବାବୁଙ୍କୁ ଚାହିଁ ଏଣ୍ଡୁଅ ପରି ଖୁବ୍ ଗର୍ବରେ ମୁଣ୍ଡ ହଲାଇ କହିଲା, "ହୁଁ, ଅନେଇ ଥାଆନ୍ତୁ ବାବୁ, ମୁଁ କଣ କରୁଛି ଦେଖିବେ ।" ଜଣାଯାଏ କଥାଟା ଅଳ୍ପ; ମାତ୍ର ସରସ୍ୱତୀ ଦେଈଙ୍କ କାନକୁ ବାଜି ଯାଇଥିବ । ଟିକିଏ ତାଙ୍କ ଦେହ ହଲିଗଲା । ତହିଁ ଉତ୍ତରରେ ଗୁଣିଆ ପାଞ୍ଚହାତ ଦୂରରେ ବାଆଁ ଆଣ୍ଠୁ ମାଡ଼ି ବସି ଆସ୍ତେରେ ମନ୍ତ୍ର ଡାକିଲା—

"ବୀର ବୀର ହନୁମାନ ମହାବୀର ତୁ ବୀର ଥିଲୁ କାହିଁ, ମୋ ଡାକ ଶୁଣି ଅଇଲୁ ଧାଇଁ, ବାନ୍ଧ ବାନ୍ଧ ଭୂତ ବାନ୍ଧ, ପ୍ରେତ ବାନ୍ଧ, ଡାହାଣୀ ବାନ୍ଧ, କାହାର ଆଜ୍ଞା, କାଉଁରୀ କାମଚଣ୍ଡୀ, ଭଗବତୀ ବାଶୁଳୀଙ୍କ କୋଟି କୋଟି ଆଜ୍ଞା । ଆ—ଫୁଃ, ଆ—ଫୁଃ, ଆ—ଫୁଃ" ତିନିଥର ଫୁଙ୍କି ମୁଠାଏ ମନ୍ତ୍ରା ସୋରିଷ ସରସ୍ୱତୀ ଦେଈ ଉପରକୁ ଛାଟି ମାରିଲା ।

ସରସ୍ୱତୀ ମନ୍ତ୍ର ସବୁ ଶୁଣିଲେ । ଆଉ କିଛି ବୁଝିଲେ ନାହିଁ, ନାମ ଶୁଣିଲେ ଭଗବତୀ ଡାହାଣୀ – ଆଉ ସୋରିଷ-ଗୁଡ଼ାକ ଝର ଝର କରି ଉପରେ ପଡ଼ିବାରୁ ଚମକି ପଡ଼ି ଚାହିଁ ଦେଲେ, ପାଖରେ ଭୂତଟାଏ, ଠେଙ୍ଗାଟାଏ କାନ୍ଧରେ ପକାଇ ବାନ୍ଧିବ କହୁଛି । ଘୋର ରଡ଼ିଟାଏ କଲେ, "ଆଲୋ ମୋ ବୋଉ ଲୋ, ଭୂତ ମତେ ଖାଇଗଲାଲୋ, ଡାହାଣୀ ମୋତେ ବାନ୍ଧିବ କହୁଛି ଲୋ" ରଡ଼ି ଛାଡ଼ି ପଡ଼ିଗଲେ । ଗୁଣିଆ ବାବୁଙ୍କୁ କହିଲା, "ଆଜ୍ଞା, ଘୋର ଛନ୍ଦୁଆ ଭୂତ, ଆଉ ଡାହାଣୀ ଯୋଡ଼ାଏ ବିଶ୍ରାମ କରିଛନ୍ତି । ଶୁଣିଲେ ନାହିଁ, ସାଆନ୍ତାଣୀ ଭୂତ ଆଉ ଡାହାଣୀ ଯୋଡ଼ାଏ ନାମ କହିଲେ ।" ନିଶରେ ହାତ ବୁଲାଇ ( ନିଶ କିଛୁ ନାହିଁ ) ଖୁବ୍ ଆସ୍ତେରେ କହିଲା, "ସାଆନ୍ତ କିଛି ଚିନ୍ତା ନାହିଁ; ଗୁଣିଆକୁ କଣ ବଳେଇବ ? ଯୋଡ଼ାକୁ ଯୋଡ଼ା ବାନ୍ଧି ( ମୁଣି ଟେକି କହିଲା ) ଏହା ଭିତରେ ପୂରାଇ ହୋଇଯିବ । ଆପଣ ଅଢ଼ାଇଟା ଅପୁଟା ମନ୍ଦାର ଫୁଲ, ଗୋଟାଏ ଅପୁଟା କଦଳୀ ମଞ୍ଜା, କିଛି ପଞ୍ଚୁବର୍ତ୍ତି ଶୀଘ୍ର ବେଗି ବେଗି ଅଣାନ୍ତୁ । ମୁଁ ଯାଉଛି, ଅମୁହାଁ ପୋଖରୀରୁ ଲୋଟାଏ ପାଣି ଆଣିବି । ଦେଲେ ଦେଲେ, ପୁଞ୍ଜାଏ ପଇସା ଦେଲେ, ସେଇଆଡ଼ୁ ଯୋଡ଼ାଏ ଡାକୁଣୀ ଫଳ ନେଇ ଆସିବି ।"

ସରସ୍ୱତୀ ଦେଈ ଏତିକି ଶୁଣି ପାରିଲେ, ବାନ୍ଧି ମୁଣିରେ ପୂରାଇ ହୋଇଯିବ । ରଡ଼ିଟାଏ ଛାଡ଼ି ଝାମ ଯାଇ ପଡ଼ି ଗଲେ, ଚେତା ମୋଷ ।

ଏତିକି ବେଳେ ରାଧୀ ଦୀପଟାଏ ଧରିଛି, ପେସ୍କାର ବାବୁଙ୍କ ବୁଢ଼ୀମା ନଇଁ ନଇଁ ବାଡ଼ି ଟେକି ଟେକି ବାହାରି ପହଞ୍ଚି ଗଲେ । ସରସ୍ୱତୀଙ୍କୁ ଭଲ କରି ଅନାଇ ରଡ଼ିଟାଏ ଛାଡ଼ିଲେ, "ଅରେ ମୋ ଝିଅକୁ ସାରି ଦେଲେଣି, ଅରେ ମୋ ଝିଅଟିକୁ ମାରି ପକାଇଲେଣି ରେ ।" ବୁଢ଼ୀ ରଡ଼ି ଛାଡ଼ି—"ଆରେ ଗୋପାଳ, ସବୁ ମଣିଷ ପିଲାଏ ବାହାରି ଯାଅ — ଆରେ ଅର୍ଜୁନା, କବାଟ କିଳି ଦେ ।"

ସରସ୍ୱତୀଙ୍କର ଚେତା ନାହିଁ । ପାଖରେ ବସି ଧୀରେ ଧୀରେ ମୁଣ୍ଡରେ ହାତ ବୁଲାଇଲେ । "ହାତକୁ ଚଟ୍ ଚଟ୍ କଣ ଲାଗୁଛି ରେ ? ଆଲୋ ରାଧି ! ପାପଠା ତେଜ ଦେଲୁ । ଏଁ—ଏ କଣ, ଆରେ ରକ୍ତ ଭାସି ଯାଉଛି ରେ—ମଲ ମଲ ମଲ, ମୁଣ୍ଡ ଫାଟି ଯାଇଛି ରେ !" ଚୂନ କନାଟୋପା ମୁଣ୍ଡରେ ପଟି ବାନ୍ଧିଦେଲେ, "ଏଁ—ଦେହସାକ ଫୋଟକା କଣ ରେ !" ଫୋଟକା ସବୁରେ ଧୀରେ ଧୀରେ ନଡ଼ିଆ ତେଲ ଲଗାଇ ଦେଲେ । ଠାକୁମା କାନ୍ଦଣା ଦେଖି ରାଧୀ କାନ୍ଦିକାନ୍ଦି ଖଡ଼ି ଦେହରେ ହାତ ବୁଲାଉଛି । ଅର୍ଜୁନା ପଙ୍ଖା ପକାଉଥାଏ । ବୁଢ଼ୀ ଖଣ୍ଡେ ଭିଜା ଗାମୁଛାରେ ଦେହର ରକ୍ତ, ଧୂଳି, କାଦୁଅ ସବୁ ପୋଛି ପକାଇ, ରକ୍ତ ପେଜଲଗା ପିନ୍ଧିଲା ଲୁଗା ପାଲଟାଇ, ଖଣ୍ଡେ ବାସିକରା ଶାଢ଼ୀ ପିନ୍ଧାଇ ଦେଲେ । ସରସ୍ୱତୀଙ୍କର ଟିକିଏ ଚେତା ବସିଲାଣି । ଦେଖିଲେ, ମାଶାଶୁ, ରାଧୀ, ଅର୍ଜୁନା ବେଢ଼ି ବସିଛନ୍ତି । ଘରର ସବୁଆଡ଼କୁ ଅନାଇ ଦେଖିଲେ, ଭୂତ ପଳାଇଲାଣି ।

ବୁଢ଼ୀ—"ଆରେ ମୋ ମା ରେ ଆରେ ମୋ ସୁନା ରେ—ଆରେ ମୋ ଚାନ୍ଦ ରେ—ଆରେ ମୋ ମାଣିକ ରେ" ସାକୁଲେଇ ସାକୁଲେଇ ଢେର ଗେଲ କଲେ । ଥଣ୍ଡା ପବନ, ରାଧୀର ହାତ ବୁଲା ଓ ବୁଢ଼ୀର କଅଁଳ କଥାରେ ସରସ୍ୱତୀଙ୍କ ଚେତା ବସିଲାଣି, ଆଉ ଡର ନାହିଁ । ବୁଢ଼ୀ ଖାଲି ମନରେ ବିଚାରୁଛି, କଥା କଣ ? ଚୋପାଳ ତ ମାଡ଼ ନାହିଁ, କଳକଜିଆ ନାହିଁ, କଣ ହେଲା ? ବୁଢ଼ୀ ପଚାରିଲେ, "କହ ନା ରେ ମା, କଣ କହୁଛୁ ?" ଶାଶୁ କଥାରେ କଣ ଜବାବ ଦେବେ ? ରାଧୀକୁ ପାଖକୁ ଟାଣି ନେଇ କାନରେ ଛୁନ ଛୁନ କହିଲେ, "ମୁଁ ବୋଉ ପାଖକୁ ଯିବି ।"

ବୁଢ଼ୀ—ହଁ ଅବଶ୍ୟ ଯିବୁ । ମୋର ବି ତୋ ବୋଉକୁ ଦେଖିବାକୁ ବଡ଼ ମନ ଅଛି । ଭଲୁକ-ପୋଡି ଟାଁଣା ବି ଦେଖି ଆସିବି । କାଲି ସକାଳେ ଯୋଡ଼ାଏ ଡୋଲି କରି ଦୁଇ ଜଣ ବସି ଯିବା ।

ରାଧୀ—ଉଁ ଉଁ ଠାକୁରମା, ମୁଁ ବି ତୋ ସାଙ୍ଗରେ ଯିବି ।

ବୁଢ଼ୀ—ନାହିଁ ନାହିଁ, ମୋ ଡୋଲିରେ ଜାଗା ହେବ ନାହିଁ, ତୋ ଖୁଡ଼ି ସାଙ୍ଗରେ ନେବ କି ପଚାର ?

ରାଧୀ ନ ପଚାରୁଣୁ ଖୁଡ଼ି ତା ହାତ ଚିପିଦେଲେ—ଅର୍ଥାତ୍, ହଁ ସାଙ୍ଗରେ ନେବେ ।

ରାଧୀ—ଏଁ—ଏଁ ଖଡ଼ି ! ତୁମ ଗାଁରେ କଣ ଭାଲୁ ପୋଷା ଥାନ୍ତି, ମତେ କାମୁଡ଼ିବ ?

ଖୁଡ଼ି ଟିଆଣି ହାତ ଧରି ହଲାଇ ଦେଲେ—ଅର୍ଥାତ୍, ଭାଲୁ କାମୁଡ଼ିବ ନାହିଁ ।

"ଆରେ ଅର୍ଜୁନା, ବସାରେ କିଛି ଜଳଖିଆ ଅଛି ?" ଅର୍ଜୁନା ଡାଲିଆଟିରେ ଯୋଡ଼ାଏ ମିଠାଇ, ଗିଲାସେ ପାଣି ପାଖରେ ଥୋଇଦେଲା । "ଆଲୋ ରାଧି' ଖୁଡ଼ିକୁ ଖିଆ" - ଏତିକ କହି ମେଲାକୁ ଉଠିଗଲେ ।

ରାଧୀ—ଠାକୁର ମା, ଖୁଡ଼ି ଖାଉ ନାହାନ୍ତି ।

"ଏଁ, କଣ ଖାଉ ନାହାନ୍ତି ? ତେବେ ତ ତା ବୋଉକୁ ଦେଖିବାକୁ ଯିବ ନାହିଁ । ଆଲୋ ରାଧି, ଖୁଡ଼ି ନ ଖାଇଲେ ତୁ ବି ଯିବୁ ନାହିଁ ।" ଆଉ ଖୁଡ଼ି କୁଆଡ଼େ ଯାଏ । ରାଧୀ ତ ଜୋକ ପରି ଲାଗିପଡ଼େ ହେଣ୍ଟେରେଇ ହେଣ୍ଟେରେଇ ମିଠାଇ ଯୋଡ଼ାକ ଖିଆଇଲା, ଗିଲାସେ କଣ, ଖଡ଼ି ଚିଁ ଚିଁ କରି ଏକ ନିଶ୍ୱାସକେ ତିନି ଅଞ୍ଜୁଳି ପାଣି ପିଇଗଲେ ।

ବୁଢ଼ୀ ପାଖରେ ଆସି ବସିଲେ । ଧୀରେ ଧୀରେ ବୋହୂ ମୁଣ୍ଡରେ ପିଠିରେ ହାତ ବୁଲାଉଥାନ୍ତି । ଖାଲି ତାଙ୍କ ମନ ଧାନ୍ଧି ହେଉଛି, କଥା କଣ ? ଏତେ

କାଣ୍ଡ କ'ଁଣ ହେଲା ? ହେଲେ, ଝିଅଟାକୁ ଟାଉଳର ପଚାରି ଦେଲେ ତ କିଛି କହିବ ନାହିଁ, ସବୁ ଭଣ୍ଡୁର ହେବ ।

ବୁଢ଼ୀ ପାଖରେ ବସି କଅଁଳେଇ କଅଁଳେଇ ତେର କଥା କହି ବୋହୂର ମନ ବହଲାଉଥାନ୍ତି । ଶେଷରେ ବେଳ ଉଣ୍ଡି କହିଲେ, "ହଁ—ସତ କଥା, ଆରେ ମା ! ଗୋପାଳ ପଚାରିବ, କ'ଁଣ ଭାଲୁ କପୋଷି ଯିବ ? ସତ କଥାଟା ତାକୁ ନ କହିଲେ ତ ସେ ଯିବାକୁ ଦେବ ନାହିଁ—କଥା କଣ, କହିଲୁ ରେ ମା ?" ସରସ୍ୱତୀ ତ ମହାତ ସନ୍ତପନ୍ତରେ ପଡ଼ିଗଲେଣି—ସ୍ୱାମୀ କଥା ଅସୁନ୍ଦର କଥା, ଶାଶୁଟାକୁ କମିତ କହିବେ । ବୁଢ଼ୀ ବୁଝିପାରି ବାହାରକୁ ଉଠିଗଲେ—"ଆଚ୍ଛା ମା, ତୁ ରାଧୀକୁ କହ ।"

ରାଧୀ - ଠାକୁରମା, ଖୁଡ଼ି କିଛି କହୁନାହିଁ ।

ବୁଢ଼ୀ—ତେବେ, କଥା ଫେଇ ନ କହିଲେ ଗୋପାଳ ତ ଛାଡ଼ି ଦେବ ନାହିଁ । ରାଧି, ତୁ ଆଉ ତୋ ଅଈକୁ ଦେଖିବାକୁ ଯାଇ ପାରିବୁ ନାହିଁ ।

ରାଧୀ ତ ଚମଚଟା ପରି ଖୁଡ଼ି ସାଙ୍ଗରେ ଲାଗିଛି—"ଖୁଡ଼ି, କହ—ହଁ କହ—ଦାଦା ପଠେଇବେ ନାହିଁ, ତୁ କହ !"

ରାଧୀ ଡାକ ଦେଲା "ଠାକୁର ମା, ଖୁଡ଼ି କହୁଛି ଡାହାଣୀ ।"

ବୁଢ଼ୀ ପଚାରିଲେ—କିଏ ଡାହାଣୀଟିରେ ?

ରାଧୀ ବୁଝି କହିଲା—ସେଇ ଭଗବତୀ ଡାହାଣୀ ।

ବୁଢ଼ୀ ଅର୍ଜୁନାକୁ ପାଖକୁ ଡାକ ପଚାରିଲେ—ତେର କଥା ପଚାରିଲେ, ସବୁ କଥାରେ ଉତ୍ତର—"ନା" । ସେ ଯେପରି ସନ୍ତପନ୍ତ ହୋଇ 'ନା' କରୁଥାଏ ବୁଢ଼ୀ ବୁଝିଲେ ଏ ସବୁ କଥା ଜାଣେ, ଡରରେ କହୁନାହିଁ । ତାକୁ ଖୁବ୍ ଡରେଇଲେ, ଖୁବ୍ ଭରସା ଦେଲେ । ଅର୍ଜୁନା ଗୋଟାଏ କଥା ଲୁଚଉଥିଲା—ହେଲେ, ବୁଢ଼ୀ ଜେରାରେ ପଡ଼ିଗଲା ।

ସବୁ କଥା ମଧ୍ୟରୁ ବୁଢ଼ୀ ଏହି କେତୋଟି ସାର-କଥା ବାଛି ନେଲେ । ଗୋପାଳ ରୋଜ ସଞ୍ଜବେଳେ ଭଗବତୀ ଡାହାଣୀ ପାଖକୁ ଯାଆନ୍ତି, ବୋହୂକୁ ଆଗପରି ଭଲ ପାଆନ୍ତି ନାହିଁ; ସେଥିପାଇଁ ଏତେ କାଣ୍ଡ ।

ବୁଢ଼ୀ ଗୋପାଳ ବାବୁଙ୍କୁ ଦାଣ୍ଡ ଘରରୁ ଡାକ ପଠେଇଲେ । ପୁଅଟାକୁ ଏଡ଼େ ଅସୁନ୍ଦର କଥା କପରି କହିବେ—ଟିକିଏ ଆଡ଼େଇ ଛାଡ଼ା ହେଲେ । ବୁଢ଼ୀ କହିଲା ପରି ଅର୍ଜୁନା ବାବୁଙ୍କୁ ଏହିପରି କହିଲା—

"ଆପଣ ଆଗପରି ମା'କୁ ଭଲ ପାଉ ନାହାନ୍ତି, ରୋଜ ସଞ୍ଜବେଳେ ଭଗବତୀ ଡାହାଣୀ ପାଖକୁ ଯାଆନ୍ତି, ତାକୁ ସୁନା ଅଳଙ୍କା ଦେଇଛନ୍ତି, ସେଥିପାଇଁ ମା ମନରେ ଦୁଃଖ, ଏତେ କାଣ୍ଡ ।"

ଗୋପାଳ ବାବୁ ଭଗବତୀ ଡାହାଣୀ ନାମ ଚଟ୍ ବୁଝିଗଲେ । ସେ ଏବେ ହସିବେ, ନା ମୁଣ୍ଡ ବାଡ଼େଇ ହେବେ ? କି ବଣ ପଶୁଟାଏ—କି କଥାକୁ କ'ଣ କରି ପକାଇଲା । ଦଶ ଭଲଲୋକରେ କଥାଟା ହଟହଟା ହେଲା, ଏଥିଲାଗି ଘର ମନ ଦୁଃଖ ।

ବୁଢ଼ୀ ଆଉ ରାଧୀ ଦୁଇ ଜଣ ଦୁଇ ପାଖରେ ଶୋଇ ବୋହୂକୁ ମଝିରେ ଶୁଆଇଲେ । ସେ ରାତିରେ ଗୋପାଳ ବାବୁଙ୍କ ବସାରେ ସମସ୍ତଙ୍କର ନିଶାପାଳନ ।

ବୋହୂ ଭଲ ହୋଇଗଲାଣି ଶୁଣି ଦାଣ୍ଡଲୋକେ ସମସ୍ତେ ଖୁସି ହୋଇ ଆପଣା ଆପଣା ଘରକୁ ଚାଲି-ଗଲେ । ହେଲେ ଭିତରର କଥାଟା କଣ, କେହି ବୁଝିଲେ ନାହିଁ । ଗୋପାଳବାବୁ ଗୃହକାର୍ଯ୍ୟରେ ପଢ଼ି-ଥିଲେ, ଘର ଛିଦ୍ର କଥା ଦାଣ୍ଡରେ ପକାଇବ ନାହିଁ ।

ପ୍ରଥମରେ ଡାକ୍ତର ଡାକିବାର ପ୍ରସ୍ତାବ ହୋଇଥିଲା । ଶେଷରେ ଡାକ୍ତରଙ୍କୁ ଆସିବାକୁ ହେଲା । ବୋହୂର ମୁଣ୍ଡଧୁଆ ଆଉ ଗୋଡ଼ ହାତ ଫୋଟକା, ଆଉ ଗୋପାଳ ବାବୁଙ୍କ ଦୁଇ ଆଣ୍ଠୁ ଘା ଶୁଖାଇବାକୁ ଡାକ୍ତରବାବୁ ଊଣା ପୂରା କୋଡ଼ିଏଟା ଭିଜିଟ୍ ପକେଟରେ ପକାଇଲେ ।

---

## ବାଲେଶ୍ୱରୀ ପଙ୍ଗା ଲୁଣ

( ସତ୍ୟ ଘଟଣା )

ଆବହମାନ କାଳରୁ ବାଲେଶ୍ୱରରେ ପଙ୍ଗାଲୁଣ ପ୍ରସ୍ତୁତ ହୋଇ ଆସୁଥିଲା । ସରକାର ବାହାଦୁର କେଉଁ ସମୟରୁ ଏହି ବ୍ୟାପାରରେ ହସ୍ତକ୍ଷେପ କଲେ, ତାହା ନିର୍ଣ୍ଣୟ କରିବା ସହଜ କଥା ନୁହେ । ତେବେ, ଏକଥା ଅନୁମାନ କରାଯାଇ ପାରେ ଯେ, ୧୮୦୩ ଖ୍ରୀଷ୍ଟାବ୍ଦରେ ଇଷ୍ଟ ଇଣ୍ଡିଆ କୋମ୍ପାନୀ ଦେଶାଧିକାର କରିବା ପୂର୍ବରୁ ଏହି ବ୍ୟବସାୟରେ ଲିପ୍ତ ଥିଲେ; କାରଣ ତତ୍ପୂର୍ବେ ଇଂରେଜମାନେ ବାଲେଶ୍ୱରୀ ବାଣିଜ୍ୟ ସମ୍ପର୍କରେ ଥିବାର ନିଷ୍ଟସ୍ୱରୂପେ ଜଣାଯାଏ । ଦେଶାଧିକାର ସମୟରୁ ପୋକ୍ତାନ କାର୍ଯ୍ୟ ସାକ୍ଷାତ୍ ସମ୍ବନ୍ଧରେ ବନ୍ଦୋବସ୍ତ କରିଥିବେ ।

୧୮୬୧ ଖ୍ରୀଷ୍ଟାବ୍ଦଠାରୁ ପୋକ୍ତାନ କାର୍ଯ୍ୟ ରହିତ ହୋଇଯାଇଅଛି । ଲେଖକ ଅଳ୍ପବୟସରେ ସରକାର ତରଫ ଲବଣ ମାହାଲ ସିରସ୍ତାରେ ଅଳ୍ପ କାଳ ମାତ୍ର କର୍ମଚାରୀ ଥିଲା । ପୋକ୍ତାନ ସମ୍ବନ୍ଧରେ ତାହାର ଯେଉଁ ଅଭିଜ୍ଞତା ଅଛି, ବର୍ତ୍ତମାନ ସ୍ମରଣ ଶକ୍ତି ପ୍ରତି ନିର୍ଭର କରି ସେଥିର ସଂକ୍ଷିପ୍ତ ବିବରଣ ଲିପିବଦ୍ଧ କରୁଅଛି ।

ଲବଣ ମାହାଲର ସରକାର ତରଫର ପ୍ରଧାନ କର୍ମଚାରୀଙ୍କ ଉପାଧି ସଲ୍ଟ ଏଜେଣ୍ଟ । ଏହି କର୍ମଚାରୀ ସ୍ୱତନ୍ତ୍ର ବ୍ୟକ୍ତି ନୁହନ୍ତି । ଜିଲ୍ଲାର କଲେକ୍ଟର ସାହେବ ସଲ୍ଟ ଏଜେଣ୍ଟ । ତାହାଙ୍କ ଅଧୀନରେ ଆଉ ଦୁଇ ଜଣ ଇଂରେଜ ଆସିଷ୍ଟାଣ୍ଟ ସଲ୍ଟ ଏଜେଣ୍ଟ ରୂପେ ନିଯୁକ୍ତ ଥିଲେ । ପୋକ୍ତାନ ରହିତ ହେବା ବର୍ଷରେ ( ବୋଧକରୁଁ ) ମିଷ୍ଟର କର୍ଣ୍ଣେଲ ସଲ୍ଟ ଏଜେଣ୍ଟ, ମିଷ୍ଟର ବଣ୍ଡ ଓ ମିଷ୍ଟର ମୁଫଟ ଆସିଷ୍ଟାଣ୍ଟ ସଲ୍ଟ ଏଜେଣ୍ଟ ଥିଲେ ।

ଏଜେଣ୍ଟ ସାହେବଙ୍କ ଅଧୀନରେ ସଦର କଚେରିରେ ଦୁଇ ଗୋଟି ସିରସ୍ତା ଥିଲା—ପ୍ରଥମ ମୁନସିଖାନା, ଦ୍ୱିତୀୟ ହିସାବ ଖାନା । ମୁନସିଖାନାରେ ନିଯୁକ୍ତ ( ହମନମ୍ ) କର୍ମଚାରୀମାନଙ୍କ ଉପାଧି ଦେବାନ, ପେସ୍କାର, ମୁନସୀ, ରୋଜନାମଚା-ନବିସ୍, ପରବାନା-ନବିସ, ନକଲ-ନବିସ୍, ନାଜର ଏବଂ ଏମାନଙ୍କ ସହକାରୀ ମୋହରରମାନେ । ହିସାବଖାନାରେ ନିଯୁକ୍ତ କର୍ମଚାରୀମାନଙ୍କ ଉପାଧି—ସିରସ୍ତାଦାର, ମୁନସୀ ଓ ମୋହରରମାନେ । ଆମ୍ଭେମାନେ ଦେଖିଅଛୁଁ, ସଦର କଚେରିରେ ଅନ୍ୟାନ୍ୟ ମହକୁମାର ନିଯୁକ୍ତ କର୍ମଚାରୀଠାରୁ ନିମକି ମହାଲରେ ନିଯୁକ୍ତ ଅମଲା ସଂଖ୍ୟା ଅଧିକ । ନିମକି ମହାଲ କଚେରି ସର୍ବଦା ଜନତାରେ ପୂର୍ଣ୍ଣ ଥାଏ ।

ନିମକ ପୋକ୍ତାନ ସ୍ଥାନରେ ସରକାର ତରଫରୁ ନିଯୁକ୍ତ କର୍ମଚାରୀଙ୍କ ଉପାଧି—ଦାରୋଗା, ପେସ୍କାର, ଜିଲ୍‌ଦାର, ଚପରାସୀ, ଜାଲ ଚୌକିଆ, ଖୁଣ୍ଟି ପାଇକ, ଚପାଦାର ଓ କୟାଲ । ନିମକ ବନ୍ଦୀ ସ୍ଥାନରେ ନିଯୁକ୍ତ ଥିବା କର୍ମଚାରୀ—ଦାରୋଗା ଓ ପେସ୍କାର । ପୋକ୍ତାନ ସ୍ଥାନରେ ପ୍ରହରୀ ପୋଲିସ କର୍ମଚାରୀ—ଜମାଦାର, ମୁନସୀ ଓ ଚପରାସୀ ।

ପ୍ରତିବର୍ଷ ଆଶ୍ୱିନ ମାସରେ ପୋକ୍ତାନକାରୀମାନଙ୍କୁ ସରକାର ତରଫରୁ ଦାଦନ ଦିଆଯାଉଥିଲା । ଦାଦନ ଟଙ୍କା ଗ୍ରହଣକାରୀର ଉପାଧି-ଗୁଳିଆ । ଗୁଳିଆମାନେ ସରକାରଙ୍କୁ କବୁଲିୟତ ଲେଖିଦେଇ ଦାଦନ ଗ୍ରହଣ କରନ୍ତି । ଏହି ଦାଦନ ସମସ୍ତଟା ବାଲେଶ୍ୱର ସହର

ମଧ୍ୟରେ ଉତ୍ସବ ସ୍ୱରୂପ ଥିଲା । ଅନେକ ଟଙ୍କା କାରବାର ହୁଏ । ସହର ମଧ୍ୟରେ ଦୋକାନୀମାନେ ଦୋକାନ ସଜେଇ ବସିଥାନ୍ତି । ବଜାର, ହଟାର, ଭକାସ୍ତ, ଅମଲ ଫଏଲା ସମସ୍ତଙ୍କର ଆଚ୍ଛା ଦୁଇ ପଇସା ହାତଗତ ହୁଏ । ଲକ୍ଷାବଧି ଟଙ୍କା ଦାଦନ ଦିଆ ଯାଉଥିଲା । ମଫସଲବାସୀ ସାଧାରଣ ଶ୍ରେଣୀ ଲୋକଙ୍କ ହାତରେ ଥୋକ କେତେଗୁଡ଼ାଏ ଟଙ୍କା ପଡ଼ିଗଲେ ଆନନ୍ଦ ମନରେ ସ୍ତ୍ରୀ ପୁତ୍ର ପରିବାରମାନଙ୍କ ସକାଶେ ନାନା ପ୍ରକାର ଦ୍ରବ୍ୟ କ୍ରୟ କରି ଘେନି ଯାନ୍ତି ।

ଗୁଳିଆ ଦାଦନ ଘେନି ଗୃଟିକୁ ଚାଲିଯାଏ । ଲବଣ ପୋକ୍ତାନ ସ୍ଥାନର ନାମ ଗୃଟି । କେତେଗୁଡ଼ାଏ ଗୃଟିର ଏକତ୍ରରେ ସାଧାରଣ ନାମ ଅଡ଼ଂ । ଅବଶ୍ୟ ଗୃଟି ଓ ଅଡ଼ଂଗୁଡ଼ିକ ସମୁଦ୍ରକୂଳବର୍ତ୍ତୀ ସ୍ଥାନରେ ଅବସ୍ଥିତ ।

ଗୁଳିଆ ସ୍ୱହସ୍ତରେ ଲବଣ ପ୍ରସ୍ତୁତ କରେ ନାହିଁ । କାର୍ଯ୍ୟନିର୍ବାହ ନିମନ୍ତେ କେତେଗୁଡ଼ାଏ ଲୋକ ନିଯୁକ୍ତ କରେ । ସେ ( ଗୁଳିଆ ) କେବଳ କର୍ତ୍ତା ସ୍ୱରୂପ ହୋଇଥାଏ ।

ଉପଯୁକ୍ତ ସ୍ଥାନ ନିର୍ବାଚନ କରି ପାତ୍ରୀ ଉପାଧିଧାରୀ ଲୋକ ଚୁଲ୍ଲି ପ୍ରସ୍ତୁତ କରେ । ଏହି ଚୁଲ୍ଲି ସଚରାଚର ଭାତ-ରନ୍ଧା ଚୁଲ୍ଲୀ ପରି ନୁହେ । ପାଠକମାନଙ୍କ ମଧ୍ୟରୁ ଯେଉଁ-ମାନେ ପୁରୀକ୍ଷେତ୍ରରେ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ରୋଷ-ଚୁଲ୍ଲୀ ଦେଖିଅଛନ୍ତି, ସେମାନେ ସହଜରେ ବୁଝିପାରିବେ । ପୋକ୍ତାନ ଚୁଲ୍ଲୀଗୁଡ଼ିକ ସେହିପରି ପିରାମିଡ଼ ଆକାର ଅଟେ, ମାତ୍ର ପ୍ରଭୁଙ୍କ ରୋଷ ଚୁଲ୍ଲିଠାରୁ ଅନେକ ବଡ଼ । କୌଣସି କୌଣସି ଚୁଲ୍ଲୀର ନିମ୍ନ ପରିଧି ୨୦।୩୦ ହାତ ପର୍ଯ୍ୟନ୍ତ ହୋଇଥାଏ । ଉଚ୍ଚତା ପ୍ରାୟ ୩।୪ ହାତ । ବଡ଼ ବଡ଼ ଚୁଲ୍ଲିରେ ଏକାବେଳକେ ଦୁଇ ତିନି ଶତ ପର୍ଯ୍ୟନ୍ତ ହାଣ୍ଡି ବସେ । ହାଣ୍ଡିଗୁଡ଼ିକ ମଧ୍ୟ ସଚରାଚର ଭାତରନ୍ଧା ହାଣ୍ଡିର ସମାନ ନୁହେ । ମହାପ୍ରସାଦ କୁଡ଼ୁଆ ସମାନ ଅଟେ । ଚୁଲ୍ଲୀ ପ୍ରସ୍ତୁତ ହେବା ମାତ୍ରକେ କୁମ୍ଭାର ହାଣ୍ଡି ଯୋଗାଇ ଦିଏ । ଗୋଟିଏ ଗୋଟିଏ ଚୁଲ୍ଲୀରେ ଏକ ଜାଳକରେ ୨୦।୨୫ ମହଣ ଲବଣ ପୋକ୍ତାନ ହୁଏ । ଦିନମାନରେ ତିନି ଜାଳ ହୁଏ । କେହି କେହି କର୍ମଠ ପାତ୍ରୀ ଚାରି ଜାଳ ପର୍ଯ୍ୟନ୍ତ କରିପାରେ ।

ଚୁଲ୍ଲୀ ପ୍ରସ୍ତୁତ ହେବା ମାତ୍ରକେ ମଲଙ୍ଗୀ ଉପାଧିଧାରୀ କର୍ମଚାରୀ ପଟାଳରୁ ମାଟି ଚାଞ୍ଛିବାକୁ ଆରମ୍ଭ କରେ । ସମୁଦ୍ର ବେଳାଭୂମି ଉପରେ ଯେଉଁ ଅଳ୍ପ ଗଭୀର ପ୍ରାନ୍ତର ମଧ୍ୟରେ ଜୁଆର ସମୟରେ ସମୁଦ୍ର ଜଳ ପ୍ରବେଶ କରେ, ଭଟା ସମୟରେ ଶୁଖିଲା ପଡ଼େ, ତାହାର ନାମ ପଟାଳ । ମଲଙ୍ଗୀ ମାଟି ଚାଞ୍ଛି ଆଣି ଏକ ସ୍ଥାନରେ ବାଡ଼ି ପକାଏ । ମାଟି ସଂଗ୍ରହ ସ୍ଥାନର ନାମ ବାଡ଼ି । ବାଡ଼ି ଉପରେ ପୁନର୍ବାର ସମୁଦ୍ର ଜଳ ଢାଳି ଗୋଡ଼ରେ ଚକଟି ତରଳ କରାଯାଏ । ବାଡ଼ି ନିକଟରେ ଗୋଟିଏ ଗର୍ତ୍ତ ଖୋଳା ହୋଇଥାଏ, ସେ ଗର୍ତ୍ତର ନାମ କୁଣ୍ଡି । ବାଡ଼ିର ତରଳ ମାଟି ଦେହରୁ କୁଣ୍ଡି ପର୍ଯ୍ୟନ୍ତ କେରାଏ କୁଟା ଗୁଞ୍ଜି ଦିଆଯାଏ । ତାଡ଼ିକଟା ଚମାର ଖେଜୁରି ଗଛ ଦେହରୁ ଠେକାକୁ ଯେପରି ଖଣ୍ଡେ ଖେଜୁରି ପତ୍ର ଗୁଞ୍ଜି ଦିଏ, ଏଠା ସେହିପରି । କୁଟା କେରାକୁ ଅବଲମ୍ବନ କରି ବାଡ଼ି ଦେହରୁ କୁଣ୍ଡିକୁ ସମସ୍ତ ଜଳ ନିଗିଡ଼ି ଆସେ, ବାଡ଼ିରେ ମାଟି ସବୁ ରହିଯାଏ । ସେହି ଲବଣାକ୍ତ ଜଳର ନାମ ଦହିପାଣି । ଦହିପାଣିକୁ ହାଣ୍ଡିରେ ପକାଇ ମାରିଲେ ପଙ୍କା ଲୁଣ ପ୍ରସ୍ତୁତ ହୁଏ । ଚୁଲ୍ଲୀ ଜାଳ ସମୟରେ ଆଠ ଠାରୁ ଷୋଳ ଜଣ ପର୍ଯ୍ୟନ୍ତ କର୍ମଚାରୀ ନିଯୁକ୍ତ ଥାନ୍ତି । ବାଲେଶ୍ୱର ଜିଲ୍ଲାରେ ଏପ୍ରକାର ସହସ୍ରାଧିକ ଚୁଲ୍ଲୀ ଥିଲା । ଲୁଣମାରି ଚୁଲ୍ଲୀରେ କାଠ ଜଳେ ନାହିଁ । ସମୁଦ୍ର କୂଳରେ ୩।୪ ହାତ ଉଚ୍ଚ ଏକ ପ୍ରକାର ଘାସ ଜାତ ହୁଏ, ସେହି ଘାସ ଜାଳଣିରେ ପ୍ରୟୋଜନ ହୁଏ । ଭଗବାନ ଯେମନ୍ତ ଲୁଣ ପୋକ୍ତାନର ସୁବିଧା ନିମନ୍ତେ ସେଠାରେ ଏହି ଘାସ ଥୋଇ ଦେଇଥିଲେ । ଜାଲୁଆ ନାମକ କର୍ମଚାରୀ ଘାସ କାଟିବାରେ ନିଯୁକ୍ତ ହୁଏ । ଜବ ନାମକ ଏକ

ପ୍ରକାର ତୀକ୍ଷ୍ଣଧାର ଅସ୍ତ୍ର ଦୁଇ ହାତରେ ଧରି ଅଭ୍ୟାସ ବଶତଃ ନଇଁ ପଡ଼ି ଅଳ୍ପ ସମୟ ମଧ୍ୟରେ ଅନେକ ଘାସ କାଟିପକାଏ । ଘାସ ଶୁଖିଗଲେ ନିଯୁକ୍ତ ବଳଦଆମାନେ ଭଉଁରା ବାନ୍ଧି ବଳଦରେ ଚୁଲି ପାଖକୁ ନେଇ ଆସନ୍ତି । ସେହି ଘାସ ରକ୍ଷା ନିମନ୍ତେ ସରକାର ତରଫରୁ ଜାଳ-ଚଉକିଆ ନିଯୁକ୍ତ ଥାନ୍ତି । ସହସ୍ର ସହସ୍ର ବଳଦ ଓ ବଳଦଆ ଏହି କାର୍ଯ୍ୟରେ ନିଯୁକ୍ତ ଥିଲେ ।

ପାଡ଼ୀ ଲୁଣ ମାରି ଜମା କଲେ ଜିଲ୍ଲାଦାର ଆସି ଓଜନ କରେ ଓ ନିମ୍ନଲିଖିତ ପ୍ରକାର ଫାରମରେ ଅଡ଼ଙ୍ଗ-ପେସ୍କାର ନିକଟକୁ ରିପୋର୍ଟ କରେ ।

ଜିଲାଦାର ଫାରମ ।

| ନାମ ଅଡ଼ଂ | ନାମ ଚୁଲି | ନାମ ଚୁଲିଆ | କେତେ ଜାଳ | ଲୁଣପରିମାଣ .. |
|---|---|---|---|---|
| ଗୁନୁଆ | କୁଳଗାଁ । | ହରି ମଲିକ | ତିନି ଜାଳ | ୮୦ ମହଣ |

ଅଡ଼ଂ ପେସ୍କାର ଜିଲ୍ଲାଦାରର ହିସାବ ପ୍ରାପ୍ତ ହୋଇ ଆପଣା ଖାତାରେ ଲୁଣର ପରିମାଣ ପ୍ରଭୃତି ଜମା କରି ନିଏ ଓ ସେଥିର ଏକ ପ୍ରସ୍ଥ ନକଲ ସଦର କଚେରିକୁ ପଠାଇଲେ ହିସାବ ମହକୁମା ଖାତାରେ ଜମା ହୁଏ ।

ସଦର କଚେରି ମୁନସୀଖାନାରେ ଲୁଣର କିଛି ହିସାବ ରହେ ନାହିଁ, ସବୁପ୍ରକାର ବନ୍ଦୋବସ୍ତର ଲେଖା ପଢ଼ା ହୁଏ । ଅଡ଼ଙ୍ଗର ପେସ୍କାର ଚୁଲିରୁ ଲୁଣ ବୁହାଇ ନେଇ ସାଧାରଣ ଗୋଲରେ ଜମା କରି ନିଏ । ପୁନର୍ବାର ଓଜନ କରି ଗୋଲା ଜାତ ହେଲେ ଅମଲଦାର ତାହା ଉପରେ ଅମଲ ମାରିଦିଏ । ସରକାର ନିଯୁକ୍ତ କୟାଳ ଲୁଣ ଓଜନ କରେ ।

ଅଡ଼ଙ୍ଗର ଦାରୋଗା ସିରସ୍ତାର କିଛି କାର୍ଯ୍ୟ କରେ ନାହିଁ । କେବଳ ଚୁଲିମାନଙ୍କରେ ଭ୍ରମଣ କରି ଚୁଲୀର କାର୍ଯ୍ୟ ତଦନ୍ତ କରେ ଓ ଚୁଲିଆମାନଙ୍କ ହାରି ଗୁହାରି ଶୁଣେ । ଦାରୋଗା ପାଲିଙ୍କି ବହିବା ନିମନ୍ତେ ସରକାର ତରଫରୁ ଆଠ ଜଣ ବେହେରା ନିଯୁକ୍ତ ଥାନ୍ତି । ଦାରୋଗା ଗସ୍ତ ସମୟରେ ତାହାଙ୍କ ପାଲିଙ୍କି ଉପରେ ଗୋଟା ପାଟଛତା ଧରାଯାଏ, ସେଥିସକାଶେ ସ୍ୱତନ୍ତ୍ର ଛତାଧରା ଚାକର ବନ୍ଦୋବସ୍ତ ଥାଏ ।

ପୋକ୍ତାନ ଲୁଣ ପରିମାଣ ଲିହାଜରେ ଚୁଲିଆ-ମାନେ ନିର୍ଦ୍ଦିଷ୍ଟ କିସ୍ତି ଦାଦନ ବୈଶାଖମାସରେ ପ୍ରାପ୍ତ ହୁଅନ୍ତି । ଏହି ଦାଦନ ଟଙ୍କା ଅଡ଼ଙ୍ଗ ମୁକାମରେ ଦିଆଯାଏ । ବର୍ଷାକାଳ ଆରମ୍ଭ ହେଲକ୍ଷଣି ପୋକ୍ତାନ କାର୍ଯ୍ୟ ବନ୍ଦ ହୋଇଯାଏ; ଚୁଲିଆ ପ୍ରଭୃତି କର୍ମଚାରୀ-ମାନେ ଚୁଲି ଛାଡ଼ି ଆପଣା ଆପଣା ଘରକୁ ଚାଲିଯାଆନ୍ତି । ଏଥି ଉତ୍ତାରେ ସେପ୍ଟେମ୍ବର ମାସରେ ସଦର କଚେରିରେ ହିସାବ ନିକାଶି ହେଲେ ଚୁଲିଆମାନେ ଅବଶିଷ୍ଟ ମୂଲ୍ୟ ପ୍ରାପ୍ତ ହୁଅନ୍ତି । କେହି କେହି ଚୁଲିଆ ସରଫ ବେଶି ବାବଦରେ ମଧ୍ୟ କିଛି କିଛି ପ୍ରାପ୍ତ ହୁଅନ୍ତି । ସରଫ ବେଶି ଅର୍ଥ, ଚୁଲିଆମାନଙ୍କଠାରୁ ଚୁଲିରୁ ଲୁଣ ଓଜନ ନେବା ସମୟରେ କଞ୍ଚା ଲୁଣ ଓଜନରେ କିଛି କିଛି ମାଲ ବେଶି ନିଆ ଯାଇଥାଏ । ଅଡ଼ଙ୍ଗ ଗୋଲା ନିକାଶି ସମୟରେ ସେହି ମାଲ ବଳକା ହୋଇ ପଡ଼େ, ସେହି ବଳକା ଲୁଣର ଅର୍ଥ ସରଫ ବେଶି । ଏହା କିଛି ଊଣା ନୁହେ, ପାଞ୍ଚ ଦଶ ହଜାର ମହଣ ପର୍ଯ୍ୟନ୍ତ ମାଲ ବେଶି ହୋଇ ପଡ଼େ । ଏହି ଲବଣର ମୂଲ୍ୟ ଅଡ଼ଙ୍ଗର ସମସ୍ତ ଚୁଲିଆଙ୍କୁ ବାଣ୍ଟିଦିଆଯାଏ; ମାତ୍ର ପ୍ରତ୍ୟେକ ଅଡ଼ଙ୍ଗରେ ସରଫ ବେଶି ହେଲେ ମଧ୍ୟ ଦାରୋଗା, ପେସ୍କାର, ମୁହୁରି ପୋଲିସ, ଅମଲ ପ୍ରଭୃତି କର୍ମଚାରୀ-ମାନେ ଚୋରାଇ ଭାବରେ ସଉଦାଗରେ ବିକି କରି ମୂଲ୍ୟ ବାଣ୍ଟି ନିଅନ୍ତି । ଏହି ଚୋରାଇ ଲୁଣ ନୀଳଗିରି ଓ ମୟୂରଭଞ୍ଜ ଗଡ଼ଜାତକୁ ଚାଲିଯାଏ ।

ପ୍ରତି ବର୍ଷ ବାଲେଶ୍ୱର ଜିଲ୍ଲାରେ ନ ଲକ୍ଷ ମହଣ ଲୁଣ ପୋକ୍ତାନ ହେଉଥିଲା । ଏଥି ମଧ୍ୟରୁ ନିଜ ବାଲେଶ୍ୱର ଜିଲ୍ଲାରେ ଖରଚ ସକାଶେ ଦେଢ଼ ଲକ୍ଷ ମହଣ; ନିଜ ବାଲେଶ୍ୱର ଓ ଭଦ୍ରକ ଗୋଲାରେ ଗୋଲା-ଜାତ କରାଯାଇ ବାକି ସାଢ଼େ ସାତଲକ୍ଷ ମହଣ ଲୁଣ ବଙ୍ଗଦେଶରେ ବ୍ୟବହାର ନିମନ୍ତେ କଲିକତା ନିକଟ-ବର୍ତ୍ତୀ ଗଙ୍ଗାନଦୀ ପଶ୍ଚିମ କୂଳସ୍ଥ ସାଲିକା ନାମକ ଗୋଲାକୁ ଚାଲାଣ ଦିଆଯାଏ । ଅଡ଼ଙ୍ଗ ଗୋଲାରୁ ସାଲିକା ଗୋଲାକୁ ଲୁଣ ଚାଲାଣ ନେବା ନିମନ୍ତେ ପ୍ରାୟ ତିନି ଶତ ବାଲେଶ୍ୱରୀ ଜାହାଜ ନିଯୁକ୍ତ ଥିଲା । ଦୁଇ ଡୁଲିଆ ବଡ଼ ଜାହାଜର ନାମ ଗୋରାପ, ଏକ ଡୁଲିଆ ସାନ ଜାହାଜର ନାମ ଶ୍ଳୋପା । ଖଣ୍ଡେ ଖଣ୍ଡେ ଗୋରାପ ଆଠ ଦଶ ହଜାର ମହଣ ପର୍ଯ୍ୟନ୍ତ ମାଲ ବୋଝାଇ ନିଏ । ଖଣ୍ଡିଏ ଖଣ୍ଡିଏ ଜାହାଜ ଚଳାଇବା ନିମନ୍ତେ ଦଶ କୋଡ଼ିଏ ଜଣ କର୍ମଚାରୀ ନିଯୁକ୍ତ ଥିଲେ । ଜାହାଜ-ଚାଳକର ଉପାଧି ମାଝି, ତାହାର ସରକାରୀ ତଣ୍ଡେଲ, ଅନ୍ୟାନ୍ୟ କର୍ମଚାରୀଙ୍କ ଉପାଧି ଖଲାସୀ । ଯଦି ପ୍ରତ୍ୟେକ ଜାହାଜରେ ହାରାହାରି ପନ୍ଦର ଜଣ କର୍ମଚାରୀ ଧରାଯାଏ, ତେବେ ସେମାନଙ୍କ ସଂଖ୍ୟା ପ୍ରାୟ ସାଢ଼େ ଚାରି ହଜାର । ଏହା ଛଡ଼ା ଜାହାଜନିର୍ମାଣକାରୀ ବଢ଼ାଇ, କମାର, କଳାପିଟିଆ, ସଢ଼ସିଲାଇ, ଦରଜୀ ଓ ଅନ୍ୟାନ୍ୟ ଚାକର ସଂଖ୍ୟା ପ୍ରାୟ ପାଞ୍ଚ ହଜାର । ସମସ୍ତେ ବାଲେଶ୍ୱର ଜିଲ୍ଲାନିବାସୀ; ଜାହାଜର ଅଧିକାରୀ ମହାଜନମାନେ ମଧ୍ୟ ବାଲେଶ୍ୱରୀ । କେବଳ ଲବଣ ରହିବାରେ ଯେ ଜାହାଜ ସବୁ ନିଯୁକ୍ତ ଥିଲା, ତାହା ନୁହେ । ସେ ସମୟରେ କି ଅନ୍ତର୍ବାଣିଜ୍ୟ, କି ବହି-ର୍ବାଣିଜ୍ୟ ସମସ୍ତ ବାଲେଶ୍ୱରବାସୀମାନଙ୍କ ହସ୍ତରେ ଥିଲା । ବାଣିଜ୍ୟ ଉପଲକ୍ଷରେ ବାଲେଶ୍ୱରୀ ଜାହାଜ ସବୁ ଗୋପାଳପୁର, ବିଶାଖପଟ୍ଟନ, ମାନ୍ଦ୍ରାଜ, ରେଙ୍ଗୁନ ଓ ଅନ୍ୟାନ୍ୟ ଦ୍ୱୀପକୁ ଗତାୟାତ କରୁଥିଲେ ।

ବାଲେଶ୍ୱରବାସୀମାନଙ୍କର ଦୁଇଗୋଟି ବସ୍ତୁ ପ୍ରଧାନ ଉପଜୀବ୍ୟ—ଲବଣ ଓ ଧାନ୍ୟ । ଜିଲ୍ଲାର ପ୍ରାୟ ଏକତୃତୀୟାଂଶ ଲୋକ ପ୍ରତ୍ୟକ୍ଷ ଓ ପରୋକ୍ଷଭାବରେ ଲବଣ ବ୍ୟବସାୟରେ ନିଯୁକ୍ତ ଥିଲେ । ବାଲେଶ୍ୱର ଉପକଣ୍ଠସ୍ଥ ବୁଢ଼ାବଳଙ୍ଗ ନଦୀ ଜାହାଜ ଓ ନଦୀକୂଳ ଜନତାରେ ପରିପୂର୍ଣ୍ଣ ଥିଲା । ବର୍ତ୍ତମାନ ଶ୍ମଶାନକ୍ଷେତ୍ରବତ୍ ପଡ଼ି ରହିଅଛି । ବାଲେଶ୍ୱରୀ ଜାହାଜର ଚିହ୍ନ ମାତ୍ର ନାହିଁ । ଯେଉଁମାନେ ଜାହାଜ ଚାଳନ ଓ ନିର୍ମାଣ କାର୍ଯ୍ୟରେ ପୁରୁଷାନୁକ୍ରମରେ ନିଯୁକ୍ତ ଥିଲେ (ଅନ୍ୟାନ୍ୟ କାର୍ଯ୍ୟରେ ଅନଭ୍ୟସ୍ତ ) ସେ ବଂଶ କାହାନ୍ତି ? ଗତ ନଅଙ୍କ ଦୁର୍ଭିକ୍ଷ ଅନୁଗ୍ରହ କରି ସେ ସମସ୍ତ ଲୋକଙ୍କୁ ସବଂଶରେ ଶାନ୍ତି ନିକେତନକୁ ନେଇ ଯାଇଅଛି । ଅନ୍ୟଥା ସେଗୁଡ଼ିକ କି କଲବଲ ହୋଇଥାନ୍ତେ ।

୧୮୬୧ ଖ୍ରୀଷ୍ଟାବ୍ଦରେ ସରକାରୀ ପୋକ୍ତାନ କାର୍ଯ୍ୟ ବନ୍ଦ ହୋଇଗଲା । ତହିଁ ଉତ୍ତାରେ କେତେକ ବର୍ଷ ବାଲେଶ୍ୱରବାସୀ କେତେ ଜଣ ମହାଜନ ଯୌଥରୂପେ ବାଲେଶ୍ୱରର ବ୍ୟୟ ସକାଶେ ସରକାରଙ୍କ ଅନୁମତି ଅନୁସାରେ ପୋକ୍ତାନ କାର୍ଯ୍ୟ ଚଳାଇଥିଲେ । କି କାରଣ ଆମ୍ଭମାନଙ୍କୁ ଅଗୋଚର, ଭୟଙ୍କରରୂପେ କ୍ଷତିଗ୍ରସ୍ତ ହୋଇ ଛାଡ଼ି ଦେଇଅଛନ୍ତି । କେତେ ଜଣ ମହାଜନ ସର୍ବସ୍ୱାନ୍ତ ମଧ୍ୟ ହୋଇଅଛନ୍ତି ।

ଲାଭ ନ ହେବାରୁ କି ସରକାର ପୋକ୍ତାନ କାର୍ଯ୍ୟ ରହିତ କରାଇ ଦେଲେ ? ସରକାର ଚୂଲିଆମାନଙ୍କ ନିକଟରୁ ପ୍ରତି ମହଣ ଟ° ।/ ହିସାବରେ ଗ୍ରହଣ କରୁଥିଲେ; ବିକ୍ରୀ ମହଣକୁ ଦୁଇ ଟଙ୍କା । ଫି ମହଣରେ ଟଙ୍କାଏ ଏଗାର ଅଣା ଲାଭ । କେବଳ ବାଲେଶ୍ୱର ଜିଲ୍ଲାର ନ ଲକ୍ଷ ମହଣର ଲାଭ ହିସାବ କରି ନିଅ । କଟକ ପୁରୀ ଜିଲ୍ଲା କଥା ଥାଉ ।

“ଷୀରାବ୍ଧିତନୟା ମେ” । ଲକ୍ଷ୍ମୀଙ୍କର ପିତୃଭବନ ସମୁଦ୍ର କୂଳରେ ଅବସ୍ଥିତ ଥିବାରୁ ଚିରଦିନ ଲକ୍ଷ୍ମୀ ଏହି ଜିଲ୍ଲାରେ ବିରାଜିତା ଥିଲେ । ସମୁଦ୍ର କୂଳବର୍ତ୍ତୀ ବାଣିଜ୍ୟ-ସ୍ଥାନର ନାମ ବନ୍ଦର, ଏଥିପାଇଁ ଏହାର ନାମ ବନ୍ଦରବାଲେଶ୍ୱର । ତିନି ଶତ ବର୍ଷ ପୂର୍ବେ ବଙ୍ଗ ଦେଶକୁ ଯିବା ପୂର୍ବେ ଓଲନ୍ଦାଜ, ଫରାସି, ଦିନେମାର ଓ ଇଂରଜ ବଣିକମାନେ ଏଠାରେ ଦୋକାନ ମେଲିଥିଲେ ।

ବାଲେଶ୍ୱର ଯେପରି ଲକ୍ଷ୍ମୀବନ୍ତ ସ୍ଥାନ, ଦୁଇ ଚାରି ବର୍ଷ ଅକାଳ ପଡ଼ିଲେ ମଧ୍ୟ ସମ୍ଭାଳି ଯିବାର କଥା; ମାତ୍ର ଏହି ଦୁର୍ଭିକ୍ଷ ସମୟରେ ସମ୍ପୂର୍ଣ୍ଣରୂପେ ଶସ୍ୟ ଜନ୍ମିଥିଲେ ମଧ୍ୟ ସହରବାସୀ ସାଧାରଣ ଲୋକ ମଧ୍ୟରେ ଦଶପଣ ଲୋକଙ୍କ ଘରେ ଦୁଇବେଳ ଚୁଲ୍ଲୀ ଜଳେ କି ନା, ସନ୍ଦେହ । ମଧ୍ୟବିତ୍ତ ଲୋକଙ୍କ ଅବସ୍ଥା ପ୍ରାୟ ତଥୈବଚ । ଏକମାତ୍ର କାରଣ—ଅର୍ଥାଭାବ । କେବଳ ଲବଣ ପୋକ୍ତାନ ଉଠି ଯିବାରୁ ସମସ୍ତ ଯାଇଅଛି, କାରିଗର ବଂଶ ତ ନିର୍ମୂଳ ହୋଇଅଛନ୍ତି । ବାଣିଜ୍ୟକ୍ଷେତ୍ରରେ ଉଲ୍ଲେଖଯୋଗ୍ୟ ମହାଜନ ଜଣେ ମଧ୍ୟ ନାହିଁ । ବିଦେଶୀୟ ମାରୁଆଡ଼ି, କଚ୍ଛୀ, ଭାଟିଆ, ନାଖୋଦାମାନେ ମାଡ଼ି ବସିଲେଣି । ହାତରେ ଅର୍ଥ କାହିଁ ଯେ, ଧନବନ୍ତ ବିଦେଶୀ ମହାଜନଙ୍କ ସହିତ ଟକ୍କର ଦେଇ ପାରିବେ ।

ଏହି କ୍ଷୁଦ୍ର ଜିଲ୍ଲାରୁ ପ୍ରତିବର୍ଷ ପ୍ରାୟ କୋଟିସଂଖ୍ୟକ ଟଙ୍କାର ଧାନ ଚାଉଳ ବିଦେଶକୁ ରପ୍ତାନି ହୁଏ । ରେଳ-ଷ୍ଟେସନ ଚାଉଳବସ୍ତାରେ ପରିପୂର୍ଣ୍ଣ । ସଡ଼କମାନଙ୍କରେ ଦିବାରାତ୍ର ଚାଉଳ ଗାଡ଼ି ଚାଲିଅଛି, ଅଥଚ ସହରବାସୀ ଅଧିକାଂଶ ଲୋକ କାତର ନୟନରେ, ଖାଲି ପେଟରେ ଭକଭକ କରି ଚାହିଁ ବସିଛନ୍ତି ।

ଧାନ ଚାଉଳ ବିକ୍ରିରେ ମଫସଲବାସୀ କୃଷି-ମାନଙ୍କର ଦୁଇ ଟଙ୍କା ହାତଫେଠ ହେଉଅଛି ସତ୍ୟ; ମାତ୍ର ଖୋଜନ୍ତୁ, ଘର ଶୂନ୍ୟ ଦେଖିବେ । ଟଙ୍କା ହାତଫେଠ ହେବା ମାତ୍ରକେ ଲୋକେ ଲୋଭ ସମ୍ଭାଳି ନ ପାରି ଜର୍ମାନୀ ଝୁଣ୍ଟାରେ ରେପାର ଛିଟା ପ୍ରଭୃତି କିଣି ନେଇ ଘରେ ପୂରାଉ ଅଛନ୍ତି । ବର୍ଷେ ଅକାଳ ପଡ଼ୁ, ଦେଖିବେ, ଲୋକଗୁଡ଼ାକ ଲମ୍ବ ଲମ୍ବ ଧଣ୍ଡ ପରି ଶୋଇଯିବେ ।

ଆଗେ ଦେଶବାସୀ ସମୁଦ୍ରକୂଳ ମାଟି ବିକ୍ରି କରି ଟଙ୍କା ପାଉଥିଲେ, ବର୍ତ୍ତମାନ ଚାଉଳ ବିକ୍ରୀକରି ଜର୍ମାନୀ-ମାଟି କିଣୁ ଅଛନ୍ତି । ରେପାର ଫେପାର ଗୁଡ଼ାକୁ ଆମ୍ଭେମାନେ ମାଟି ବୋଲୁ ଅଛୁଁ । ଆମ୍ଭେମାନେ ବୋଲଅଛୁଁ, ପୂର୍ବେ ବାଲେଶ୍ୱର ଜିଲ୍ଲାରେ ପ୍ରତି ବର୍ଷ ନ ଲକ୍ଷ ମହଣ ଲୁଣ ପୋକ୍ତାନ ହେଉଥିଲା । ଆଜଯାଏ ସେହି କାର୍ଯ୍ୟ ଚଳୁଥିଲେ ବ୍ୟବସାୟ ଉନ୍ନତି ଲାଭ କରି ପ୍ରତି ବର୍ଷରେ ଅତି ନକୁଛରେ କୋଡ଼ିଏ ଲକ୍ଷ ମହଣ ପୋକ୍ତାନ ହେଉଥାନ୍ତା । ସୁତରାଂ ଅଲ୍ପବପକ୍ଷେ ଦଶଲକ୍ଷ ଟଙ୍କା ଦେଶରେ ପଶୁଥାନ୍ତା । ହଜାର ବର୍ଷ ପୂର୍ବ ସମୁଦ୍ରଗାମୀ ନୌଚାଳକ, ସମୁଦ୍ରକୂଳବାସୀ କୈବର୍ତ୍ତବଂଶ ଆଜି ବିଜ୍ଞାନଚର୍ଚ୍ଚା ସମୟରେ କେଉଁ ଉନ୍ନତି ଲାଭ କରିଥାନ୍ତେ ।

ଆଜିକାଲି ବାଲେଶ୍ୱରର ଯାହା କିଛି ଚାକଚକ୍ୟ ବିଦେଶୀମାନଙ୍କ ସକାଶେ । ମହାଜନ ବିଦେଶୀ, କଚେରିର ବଡ଼ ବଡ଼ ଚାକର ପ୍ରାୟ ବିଦେଶୀ । ରେଲ-ଷ୍ଟେସନରେ କର୍ମ ପାଇବା ଓଡ଼ିଆଙ୍କ କପାଳରେ ଲେଖା ନାହିଁ । ଜମିଦାରଗୁଡ଼ାକ ତ ହାତ ବାନ୍ଧି ରହିଲେଣି । ଏବେ ଚାଷ ଏକମାତ୍ର ଅବଲମ୍ବନ । ହେଲେ ଜମି କାହିଁ ?

ହେ ଭଗବାନ୍ ! ଆମ୍ଭମାନଙ୍କ ଦୟାଳୁ ଗଭର୍ଣ୍ଣ-ମେଣ୍ଟଙ୍କ କର୍ଣ୍ଣରେ ବିରାଜିତ ହେଉନ୍ତୁ । ବାଲେଶ୍ୱର ଜିଲ୍ଲାରେ ପୂର୍ବବତ୍ ଲୁଣ ପୋକ୍ତାନ କାର୍ଯ୍ୟ ଆରମ୍ଭ ହେଉ ।

---

## ମାଧ ମହାନ୍ତିଙ୍କ କନ୍ୟାସୁନା

ମାଧ ମହାନ୍ତି ଘର ମଧୁପୁର । ଜାତିରେ ବଳରାମ-ଗୋତ୍ରୀ । ବୟସ ସତୁରିକ ଭିତରେ । ଘରେ ଖାଇବାକୁ କୁଟୁମ୍ବ ବୋଇଲେ ଊଣା ପୁରା ପନ୍ଦର ବର୍ଷର ଝିଅଟିଏ. ନାମ ମାଲତୀ । ମହାନ୍ତିଏ ଷାଠିଏ ବର୍ଷ ବୟସରୁ ରାଣ୍ଡୁରା ହୋଇ ବସିଛନ୍ତି । ବୁଢ଼ୀ ଚାଲି ଯିବାବେଳେ ଆଉ ଗୋଟିଏ ହାତଛନ୍ଦା କରିବାକୁ ତାଙ୍କର ବୟସ ଥିଲା ବୋଲି ମହାନ୍ତିଙ୍କ ମୁହଁରୁ ଥରେ ଦି'ଥର ଶୁଣା ଯାଇଥିଲା, ତାଙ୍କ ଦରଦୀ ଲୋକେ ମଧ କହି ବୁଲୁଥିଲେ । ଦୁଇତିନି ବର୍ଷଯାଏ ତାଙ୍କ ମନ ବି ବିବାହ ହେବା ଲାଗି ସକସକ ହୋଇଥିଲା, କେବଳ କନ୍ୟାସୁନା ବାଡ଼ଟା ବଡ଼ ଟାଣ ପଡ଼ିବାରୁ ପଛଘୁଞ୍ଚା ଦେଲେ । ଦୁଇ ତିନି ବର୍ଷଯାଏ କହି ବୁଲିଲେ, "ନାହିଁ ରେ ବାପା ନାହିଁ, କାହୁଁ ଗୋଟାଏ ଆସି ମୋ ଛୁଆକୁ ହେଟାଦର କରିବ, ମା ଛେଉଣ୍ଡିଟି କାନ୍ଦିବ, ତା ବିକଳ ସହିପାରିବି ନାହିଁ ।" ମା ମଲା ଦିନରୁ ସେଇ ସାତ ବର୍ଷର ଝିଅ ମାଲତୀ—ବାପା ଝିଅ ଦୁଇଜଣଙ୍କର ଭାତ ରାନ୍ଧେ, ସଙ୍ଖୁଡ଼ି ବାସନ ମାଜେ । ଘରର ଆଉ ଆଉ ପାଇଟି ବି ତା ଜିମା ।

ମହାନ୍ତିଙ୍କର ଆଉ ଗୋଟିଏ ଝିଅ ଥିଲା, ନାମ ମାଧବୀ । ବୁଢ଼ୀ ମରିବା ଚାରି ମାସ ଆଗେ ମହାନ୍ତିଏ ସାତଶହ ଟଙ୍କା କନ୍ୟାସୁନାରେ ଷାଠିଏ ବର୍ଷର ଗୋଟିଏ ବୁଢ଼ାବରକୁ ସାଢ଼େ ଆଠ ବରଷର କନ୍ୟା ଟେକି ଦେଇ ଗୌରୀଦାନର ଫଳ ଷୋଳପଣି ଅର୍ଜିଥିଲେ । ସେ କନ୍ୟାଟି ଏଗାରବର୍ଷ ବୟସରୁ ବିଧବା । ସେ ବିଭା ହୋଇ ଯାଇଚି, ବାପ-ଘରମୁହାଁ କେବେ ହୋଇନାହିଁ ।

ମୁଲକର ଆଉ ଝିଅଙ୍କ ପରି ମାଲତୀଟି ବି ଦିନକୁ ଦିନ ବଢ଼ି ବଢ଼ି ପନ୍ଦରବର୍ଷରେ ପାଦ ଦେଲାଣି । ରୂପରେ, ଗୁଣରେ ମାଲତୀର ସମକକ୍ଷ ଝିଅଟିଏ ମଧୁପୁର ତ ମଧୁପୁର, ଦଶଖଣ୍ଡ ଗାଁରେ ହେଲେ ଗୋଟିଏ ଖୋଜି ପାଇବ ନାହିଁ । ଲୋକେ କହନ୍ତି, ଗୋବରଗଡ଼ିଆରେ ପଦ୍ମଫୁଲ ଫୁଟିଛି । ମାଲତୀ ଗାଁ ଝିଅଙ୍କ ପରି ଆଉ ଆଉ ସମବୟସୀ ଝିଅଙ୍କ ସାଙ୍ଗରେ ହେଁ ହେଁ, ଫେଁ ଫେଁ ହେବାର କେହି ଦେଖି ନାହିଁ । କବାଟଟି କିଳିଦେଇ ଘରେ ଆପଣା ପାଇଟିରେ ଲାଗିଥାଏ । ପାଣି ଆଣିବା ପାଇଁ ପୋଖରୀକୁ ଯିବା ବାଟରେ । ମୁଣ୍ଡରେ ସାନ ଓଢ଼ଣାଟି ଟାଣି ଦେଇ, ମାଠିଆଟି କାଖେଇ ଗାଁ ଗୋହିରୀ ଏକପାଖିଆ ଧୀରେ ଧୀରେ ଚାଲିଯାଏ । ଗାଁର ପାଞ୍ଚ ମାଇପେ କହନ୍ତି, ମାଲତୀର ଚାଲିଟି କେଡ଼େ ସୁନ୍ଦର । ପନ୍ଦର ବର୍ଷର ଅଡ଼ିଆଡ଼ୀ ଝିଅଟାକୁ ଘରେ ରଖିଛି, ଗାଁରେ ଜାତିରେ ମହାନ୍ତିଙ୍କୁ ବଡ଼ ଧିକାରିଲେଣି । ଆଉ ଏଣିକି ମହାନ୍ତିଏ ସମ୍ଭାଳି ହୋଇ ପାରୁ ନାହାନ୍ତି । ଝିଅଟି ଯେ ଆଜଯାଏ ବିଭା ହୋଇ ଯାଇ ନାହିଁ । ସେଥିର କାରଣ, ଝିଅ ବିଭା ହୋଇ ଗଲେ ଭାତ ଦି'ଟା ଫୁଟାଫୁଟି କରି ଦେବ କିଏ ? ଆଉ ଏପରି ଗୁଣବତୀଟିଏ ବା କାହୁଁ ପାଇବେ ? ମହାନ୍ତିଏ ସକାଳୁ ଉଠି ଦୁଇ ଜଣ ମାଳିଆ ଚାଉଳ ମାଣରେ ଠିକ କଣ୍ଠରେ ମାପି ଦେଇ ଯାନ୍ତି । ମାଲତୀ ଆପଣା ପେଟରୁ କାଟି ସେଥିରୁ ମୁଠିଏ ଚାଉଳରେ ବାପା ସଞ୍ଜବେଳେ ଜଳବାହୁଡ଼ା ଖାଇବ ବୋଲି ଗୋଟିଏ ସାନ ପୋଡ଼ା-ପିଠା, ନୋହିଲେ ପଖାଳ ମୁଠିଏ କରି ରଖି ଦେଇଥାଏ । ମହାନ୍ତିଏ ଚାଉଳ ମାପି ଦେବାବେଳେ ଗୋଟିଏ ଖୁବ ସାନ ଶାମୁକାରେ ଲୁଣ ମାପି ଦିଅନ୍ତି । ବାଡ଼ିର କଖାରୁ ଗଛଟିରେ ବର୍ଷକ ତରକାରି ଚଳେ । କଖାରୁ ପାଚିଲେ ମହାନ୍ତିଏ ନିଜେ ଗଛରୁ ପାରି, ଖୋଷା ଛଡ଼ାଇ, ପାରୁ କାଢ଼ି, ମାଠିଆ ମାଠିଆ ପୂରାଇ କୋଠରି-ଘରେ ରଖି ଦେଇଥାନ୍ତି । ସେଥିରୁ ବାପ ଝିଅଙ୍କ ପାଇଁ ଠିକ ଦୁଇ ଫଡ଼ କାଢ଼ି ଦିଅନ୍ତି । ମାଲତୀଟି ବଡ଼ ଦୟାବତୀ, ବାପାକୁ ବଡ଼ ଭଲ ପାଏ । ଏକା ବାପା କାହିଁ, ସମସ୍ତଙ୍କୁ ଭଲ ପାଏ । ଗୋଟିଏ ବିରାଡ଼ି ପିଲା ପୋଷିଛି, ସେଇଟି ତାହାର ନିର୍ଜନ ଘରେ ସଙ୍ଗିନୀ—ସବୁବେଳେ

ଲଞ୍ଜ ଟେକି ମ୍ୟାଉଁ ମ୍ୟାଉଁ କରି ଗୋଡ଼ରେ ଘଷି ହେଉଥାଏ । ମାଳତୀ ସେଟାକୁ ଆପଣା କଂସାରେ ଖୁଆଏ, ପାଖରେ ଶୁଆଏ । ବାପା କଞ୍ଚା ଲଙ୍କାମରିଚ ଭଲ ପାଏ । ଯୋଡ଼ାଏ ଲଙ୍କାମରିଚ ଗଛ ମୂଳଆ ପଠାଇ କୁଆଡ଼ୁ ଅଣାଇ ମଝି ଅଗଣାରେ ପୋତିଛି । ଖରାଦିନେ ଗାଁ ମଝି ପୋଖରୀରୁ ପାଣି ଆଣି ଗଛ ମୂଳରେ ଢାଳେ । ମାଳତୀ ଉପର ଓଳି ମାଣିପାଇଁ ଯାଇ ପୋଖରୀକୂଳରୁ ମଦରଙ୍ଗା, ସୁନୁସୁନିଆ, ହିଡ଼ମିଚୁ, କଳମ୍ବ, ପିତା ଶାଗ ଯେଉଁ ଦିନ ଯାହା ହାତରେ ପଡ଼େ, ମୁଠିଏ ତୋଳି ଆଣେ, ଖାଲି ବାପାପାଇଁ ସିଝାସିଝି କରି ରଖେ ।

ମଫସଲ ଗାଁରେ ଯାହାକୁ ଥିଲାବାଲା ଲୋକ କହନ୍ତି, ମାଧ ମହାନ୍ତିଏ ବି ସେହିଭଳିଆ ଜଣେ । ସରବରି ଦୁଇ ବାଟିଯାଏ ହାତରୁଣ୍ଡ, ଭାଗରେ ବି ବାଟିଏ ଖଣ୍ଡେ ଦେଇଛନ୍ତି । ଛଅଟା ହଳ, ମାଈ ଗୋରୁ ବି ଚାରି ଯୋଡ଼ ସରିକି । ଗାଈ ଦୁହାଁଳ ହେଲେ ଦୁଧପାକ ଗଉଡ଼ କାଟରେ ଢେନଯାଏ ।

ମହାନ୍ତଙ୍କର ଖରଚ ବୋଇଲେ, ଧାନ ବିକି ଖଜଣା ଗଣ୍ଡାକ ଚଳାଇ ଦିଅନ୍ତି । ଆଉ ପଇସା କଉଡ଼ିର ଖରଚ ନାହିଁ । ବାଡ଼ରେ ଖଣ୍ଡେ କପା କରିଛନ୍ତି, ବାପ ଝିଅଙ୍କର ଲୁଗାବାଡ଼ିଟା ଚଳିଯାଏ । ବେଜାପୁ ଖରଚ ମଧ୍ୟରେ ପିଲାଦିନରୁ ପିକା ଟଣାଟା ଅଭ୍ୟାସ, ଛାଡ଼ିପାରୁ ନାହାନ୍ତି । ରୋଜିନା ଅଧ ସେର ଧାନରେ ଧୂଆଁପତ୍ର ଗୋପିଆ ଦୋକାନ ପାଖରୁ ଆସେ । ସବୁବେଳେ ପିକାଟା ମୁହଁରେ ଲାଗିଥାଏ । ଗୋଟାଏ ଲମ୍ବ ମୋଟା ନିଆଁ ବଉଡ଼ିଆ ପାଖରେ ପଡ଼ିଥାଏ । କୁଆଡ଼କୁ ଗଲେ ବଉଡ଼ିଆଟି କାଖେଇ ବାହାରନ୍ତି । ମାଳତୀଟା ଏବେ ବଳେଇଲାଣି । ଏଣିକି ବିଭା ନ ଦେଲେ ନୁହେଁ । ପାଞ୍ଚ ଜାଗାରୁ ଜବାବ ଆସିଲାଣି, ହେଲେ ଦର ପଟୁନାହିଁ । ତିନିଶ ଟଙ୍କାରୁ ଉପରକୁ କେହି ଯିବାକୁ ନାହିଁ । ମହାନ୍ତିଏ ବଡ଼ ସତ୍ୟବାନ୍ ଲୋକ, ଏକା ରା ଧରିଛନ୍ତି, ସାତ ଶହରୁ ପଇସାଏ ବି ଊଣା ହେବ ନାହିଁ । ନ' ବର୍ଷରେ ବଡ଼ ଝିଅଟା ହେଲା ସାତ ଶହ, ପନ୍ଦର ବର୍ଷରେ ଝିଅ-- ଦେଖ ତ, କେଡ଼େ ସୁନ୍ଦରୀ, କମିତି ପାଇଟିକୁ ଯୋଗା । ଦେଖି ଶୁଣି ବୁଝି ସମଜ କଥା କହିଲେ ସିନା ହେବ । ଯେଉଁମାନେ ବିଭା ପ୍ରସଙ୍ଗରେ ଆସନ୍ତି ସେମାନଙ୍କୁ ଏହି ଏକା ଜବାବ ।

ମହାନ୍ତିଏ ବୁଝିଲେଣି, ଦୋହଲା ତେହଲା କେହି, ଖୁବ୍ ବୁଢ଼ା ବର ନ ହେଲେ ଦର ପଟିବ ନାହିଁ । କନ୍ୟାପାଇଁ ଏହିପରି ଯୋଗା ବର ସକାଶେ ବାଟ ଚାହିଁ ବସିଛନ୍ତି ।

ମଧୁପୁର ଗାଁଟା ଗୋପାଳଜୀଉଙ୍କର ଦେବୋତ୍ତର । ମଠଟି ଗାଁ ମଝିରେ । ଆଉ ଆଡ଼େ ବି ଜମିଜମା ଅଛି । ସେ ସବୁ ଜମିର ଖଜଣା, ଫାଉ ଫୌରାତ, ଶିଷ୍ୟ ସେବକ ସବୁ ସବୁ ରକମରୁ ବର୍ଷକୁ ଦଶହଜାର ଟଙ୍କା ସରିକି ଆୟ । ଏଟା ନିଅଙ୍ଗ ମଠ, ଗୋଟାଏ ମହନ୍ତ ନାରାୟଣ ପାଇଲେ ତାଙ୍କ ଚେଲା ଗାଦିରେ ବସନ୍ତି ।

ମହନ୍ତ ରଘୁବର ଦାସ ନାରାୟଣ ପାଇବାରୁ ତାଙ୍କ ଚେଲା ଲଛମନ ଦାସେ ବର୍ତ୍ତମାନ ଗାଦିର ମାଲିକ । ନୂଆ ମହନ୍ତ ଖୁବ୍ ଦାତା, ଦୟାଳୁ । ଆଗ ମହନ୍ତଙ୍କର ସବୁ ଭଲ ଗୁଣ ଅଛି । ଚରିତ୍ରଟି ବି ଖୁବ୍ ଭଲ । ହେଲେ ଟୋକାଳିଆ ବୁଦ୍ଧିଟା ଛାଡ଼ି ନାହିଁ । ଆଗ ପୋଷା ପାରା ଗୋବରା ଟେଢ଼େଇ-ଗୁଡ଼ାକ ରହି ଯାଇଛନ୍ତି । ମହନ୍ତ ମଠରେ ଗୋଟାଏ ଆଖଡ଼ା ଜାରି କରିଛନ୍ତି । ସଞ୍ଜ ବାଜିଲା ତ, ଗାଁର ଯେତେ ଭେଣ୍ଡିଆ ପିଲା ରୁଣ୍ଡ । କୃଷ୍ଣଲୀଳା, ରାମଲୀଳା ଯାତ୍ରା ହୁଏ । ଆଖଡ଼ା ମଧ୍ୟରେ ବଛା ବଛା ଦଶଜଣ ଭେଣ୍ଡିଆ ଅଛନ୍ତି । ରାତି ଛଅ ଦଣ୍ଡ ସରିକି ମହାପ୍ରଭୁଙ୍କ ଠା ଘଣ୍ଟା ବାଜେ, ଆଖଡ଼ା ଭଙ୍ଗେ । ପ୍ରସାଦ ସେବା କରି ଯେ ଯାହା ଘରକୁ ଚାଲିଗଲା ବାଦ ମହନ୍ତ ସେହି ବଛା ସାଙ୍ଗୀ ଦଶ ଜଣଙ୍କୁ ଧରି ମଠ ପଛ ବଗିଚା ମଝିରେ ଥିବା

ଚୋଖଣ୍ଡି ଘାଟରେ ବସି ଅଧଗଣ୍ଡାଏ ଗୁଡ଼ାଖନ୍ଦ * ମୌଜ କରନ୍ତି, କୋଡ଼ିଏ ମୁଲକର ହାଲଚାଲ କଥା ପଡ଼େ ।

ମହାନ୍ତ ହେଉଛନ୍ତି ଗାଁର ଜଜ୍, ମେଜେଷ୍ଟର, ମହାଜନ ସବୁ । ଏ ଗାଁରୁ ଗୋଟାଏ ବୋଲି ମାଲ-ମାମଲା ସରକାରକୁ ଯାଏ ନାହିଁ ।

ମହାନ୍ତଙ୍କର ଗୋଟିଏ କୋଠଚାକର ଅଛି, ନାମ ବନୋଦିଆ—ବୟସ ବାଇଶ କି ତେଇଶ । ଦେଖିବାକୁ ବେଶ ଉଜଳ ଡାଉଳ । ବନୋଦିଆ ମହାନ୍ତଙ୍କର ଘରବିଶ୍ୱାସୀ ଚାକର । ମହାନ୍ତଙ୍କ ନିଜ କୋଠଘର କଞ୍ଚି, ମନ୍ଦିର ସରଘର, ଗନ୍ତାଘର, କାରବାରି ଘର, ସବୁଘର କଞ୍ଚି ତା ହାତରେ । ଗୋଟାଏ ସରୁ ଲମ୍ବା ଶିକୁଳିରେ ଗୁନ୍ଥା ବେକାଏ କଞ୍ଚି ସବୁବେଳେ ତା' ଅଣ୍ଟାରେ ଝୁଲୁଥାଏ । ସବୁ ବିଷୟରେ ମହାନ୍ତଙ୍କର ବନୋଦିଆ ଉପରେ ଷୋଳପଣି ବିଶ୍ୱାସ । ଯେପରି ମାଲମାମଲା ହେଉ ବନୋଦିଆକୁ ନ ଧରିଲେ କେହି ମହାନ୍ତଙ୍କଠାରୁ ବେଗି ବେଗି କାମ ହାସଲ କରିପାରେ ନାହିଁ । ଶ୍ରୀଜୀଉଙ୍କ ଅଳଙ୍କାର, ନଗଦାନ୍ତ ଟଙ୍କା, ଚିପ ତମସୁକ ମହାନ୍ତଙ୍କର ନିଜ ତହବିଲ, ସବୁ ସବୁ ରକମରେ ବନୋଦିଆ ଜମାରେ ଲକ୍ଷାବଧି ଟଙ୍କା । ନେଇ ବସିଲେ ମାଲମାମଲାରୁ ବି ଢେର ଢେର ଟଙ୍କା ପାନ୍ତା । ମାତ୍ର ତାହାର ଦରମା ମାସକୁ ଯୋଡ଼ାଏ ଟଙ୍କା ଛାଡ଼ି ଆଉ ଯୋଡ଼ାଏ ପଇସାରେ ବି ହାତ ଦିଏ ନାହିଁ । ଏଣେ ମହାନ୍ତଙ୍କର ଯେପରି ଅକାରଣ ପଇସାଏ ନଷ୍ଟ ନ ହେବ ଖୁବ୍ ଜଗିଥାଏ । ପ୍ରଜା ଖାତକ ଉପରେ ହକ ପାଉଣା ପଇସାଏ ଛାଡ଼ିବ ନାହିଁ, ମହାନ୍ତ ହୁକୁମ କଲେ ବି, ନା । ବନୋଦିଆ ଘର ହାଟଗାଁ, ମନ୍ଦିରଠାରୁ ଚାରି କୋଶ ଦୂର । ସେ ଗାଁଟା ବି ମହାନ୍ତଙ୍କର ଦେବୋତ୍ତର ବାହେଲ । ମା ବାଧିକା ପଡ଼ୁଛି ଶୁଣି ବନୋଦିଆ ମହାନ୍ତ ମହାରାଜଙ୍କଠାରୁ ଚାରିଦିନର ଛୁଟି ନେଇ ଘରକୁ ଯାଇଥିଲା । ଆଜି ସକାଳୁ ଘରୁ ଆସି ଭୁନଟି ହୋଇ ବସିଛି, କାମ ପାଇଟିରେ ମନ ଦେଉ ନାହିଁ । ମହାନ୍ତ ପଚାରିଲେ, "କି ରେ ବନୋଦିଆ, ଇମିତି ହୁଙ୍କାଟା ପରି ବସିଛୁ କିଆଁ ? ଯା ଯା, ତୋଟାଳିଆ ସବୁ ଆସି କାମରେ ଲାଗିଗଲେଣି କି ନା, ଦେଖ ଯା ।"

ବନୋଦିଆ ମହାନ୍ତଙ୍କ ଗୋଡ଼ ଯୋଡ଼ିକ କୁଣ୍ଢେଇ ଧରି ଭେଁ ଭେଁ କରି ରଡ଼ି ଛାଡ଼ିଲା, କଥା କହି ପାରୁ ନାହିଁ ।

ମହାନ୍ତ—ଆରେ କଥା କଣ କହ, ଇମିତିକାଟା କାନ୍ଦୁଛୁ କିଆଁ ?

ବନୋଦିଆ—ଆଜ୍ଞା ! ମୁଁ ଆଉ ଚାକରି କରିବି ନାହିଁ । ଆମ ଗାଁର ଢେର ଟୋକା ରେଙ୍ଗୁନିଆ ରେଲବାଇରେ କାମ କରି ଢେର ଢେର ଟଙ୍କା ଆଣୁଛନ୍ତି । ମା କହିଲା, ମୁଁ ସେଇପରି କାମ କରି ଟଙ୍କା ଆଣି ବାହା ହେବି । ମା କହିଲା, ସେ ବାଧିକା ପଡ଼ିଲାଣି, ମଲେ ଯିବ—ବୋହୂ ଦେଖିବ ।

ମହାନ୍ତ ହୋଃ ହୋଃ ହୋଃ—ଏଇ କଥା ! ଅଚ୍ଛା ମୁଁ ବାହା କରେଇ ଦେବି । ଖୁବ୍ ଭଲ କନ୍ୟାଟିଏ ବାହା କରେଇ ଦେଲେ ତ ହେଲା ?

ବନୋଦିଆ - ଆମ ଜାତିରେ କନ୍ୟାସୁନା ଢେର ଟଙ୍କା ପଡ଼େ, ମୁଁ ଟଙ୍କା କାହୁଁ ଆଣିବି ?

ମହାନ୍ତ—ଆରେ ବାପୁ ! ତୁ ତ ବାହା ହେବୁ ଗଲା, ଟଙ୍କାରେ କଣ ଅଛି ? ଅଚ୍ଛା ଯେତେ ଟଙ୍କା ଲାଗିବ, ମୁଁ ଦେବି ।

* ଗଞ୍ଜାଇ—ଖିପା ।

ବନୋବଦଆ ଘର ଛୁଟିଟାଏ ହୋଇ ଆପଣା କାମରେ ଲଗିଗଲା ।

ପଦ୍ମ ଭଣ୍ଡାରୁଣୀ ବିଧବା—ଘରକୁ ଏକୁଟିଆ । ଗୋଟିଏ ବୋଲି ଝିଅ ଥିଲା, ପାଞ୍ଚ ବର୍ଷହେଲା ବାହା ହୋଇ ଯାଇ ଶାଶୁଘରେ ଅଛି । ଗାଁ ମଝିରେ ଘର । ହେଲେ ତାର ବଡ଼ ଗୁଣ, ଘରେ ଏକୁଟିଆ ଥାଏ, କାହାରକୁ ଡରେ ନାହିଁ । ଗାଁ ଗୋଟାକ ଖଟେ । ମାଇକିନିଆମାନଙ୍କ ନଖ କାଟେ, ଗୋଡ଼ରେ ଅଳତା ଲଗାଇ ଦିଏ । ପଦ୍ମର ବୁଦ୍ଧି ଖୁବ ଟାଣ, ପୁଣି ପାଞ୍ଚ ମାଇକିନିଆଙ୍କ ସଙ୍ଗରେ ରଙ୍ଗଢଙ୍ଗ ଥିବାରୁ ସେ ସାର ପଟୁ ହୋଇ ଯାଇଛି । ସାକୁଲ ସାକୁଲ କରି ଗାଁ ଗୋଟାକ ମାଇକିନିଆଙ୍କୁ ଚଟେଇରଖିଛି । ତାକୁ ସମସ୍ତେ ଭଲ ପାନ୍ତି । ଆଉ କଥା ଯାହା ହେଉ, ତାର ମନ୍ଦ ଆଚରଣ ବୋଲି କେହି କେବେ ପଦେ ବୋଲି କହି ନାହିଁ ।

ଆଜିକି କେତେ ଦିନ ହେଲା ସଞ୍ଜ ସକାଳ ସବୁ-ବେଳେ ମଠକୁ ଯା ଆସ କରୁଥିବାର ଦେଖା ଯାଉଛି । ମାଧ ମହାନ୍ତ ଘରେ ନ ଥିବାବେଳେ ପଦ୍ମ ତାଙ୍କ ଘରକୁ ପଶିଯାଏ । ମହାନ୍ତଙ୍କ ଘର ଭିତରେ କେହି ଯେମନ୍ତ ତାକୁ ଗୁହିଁ ବସିଥାଏ. କବାଟରେ ହାତ ମାରିବାକ୍ଷଣି ଉଦୁଆଁ ହୋଇଯାଏ ।

ପଦ୍ମ ମାଳତୀକୁ କୁଣ୍ଢେଇ ପକାଇ "ମା ରେ-ସୁନା ରେ—ମୃଦମଣି ରେ—ମୋ ଝିଅଖଣ୍ଡ ଶାଶୁଘରକୁ ଗିବା ଦିନରୁ ଅନ୍ଧୁଣୀ ହୋଇ ବସିଥିଲି ରେ—ଦାଣ୍ଡ ଘାଟରେ ତତେ ଦେଖି ନେହ ପଦନ କରୁଥିଲି ରେ । ଗାଁରୁ ଶୁଣିଲି, ତୁ କୁଆଡ଼େ ବାହା ହୋଇ ଯାଉଛୁ, ତତେ ଥରେ ଦେଖିବାକୁ ଅଇଲି ରେ ।" ମାଳତୀ ହାତରେ ମୁଠାଏ ଅନ୍ନ ମହାପ୍ରସାଦ ଗୁଞ୍ଜି ଦେଇ କହିଲା, "ଆଜି କତରୁ ତୁ ମୋ ଝିଅ, ମୁଁ ତୋ ମା ।"

ମାଳତୀ ଆଦର କଥା, ସ୍ନେହ କଥା, କଅଁଳ କଥା ପଦେ ହେଲେ କେବେ ଶୁଣି ନାହିଁ । ଏତେ ସ୍ନେହ କଥା ଶୁଣି ସମ୍ଭାଳ ହୋଇ ପାରୁ ନାହିଁ । ପଦ୍ମାକୁ କୁଣ୍ଢେଇ ପକାଇ ଭୋ ଭୋ ରଡ଼ ଗୁଡ଼ୁଛି । ଫିକ୍ତକ ବାନ୍ଦ ଧକେଇ ଧକେଇ କହିଲା, "ମା, ମୁଁ ଆଉ କିଛି ମାଗୁ ନାହିଁ, ତୁ ବେଳେ ବେଳେ ମୋ ପାଖକୁ ଆସୁଥିବୁ, ପଦେ ପଦେ କଥା କହି ଯାଉଥିବୁ । ବାପା କେବେ ହେଲେ ମତେ ପଦେ ଭଲ କଥା କହେ ନାହିଁ, ଟିକିକ କଥାରେ ଭୁକ୍ଷା ରାଗି ଯାଇ, 'ଦୂର ଦୂର ! ପୋଡ଼ାମୁହିଁ, ବେଲ୍ଏ ବେଲ୍ଏ ଠାକୁ ଥିବୁ ବସିଥିବୁ' ଏମିତି ଗାଳି ଦିଏ । କାଲି ତେର ଗାଳି ଦେଲା, ଧୂଆଁପତ୍ର କିଣିବା ଲାଗି ଧାନ କାଢ଼ି ଦେଲି ନାହିଁ, ଖଳାରେ ଯେ ଅଗାଡ଼ି ଜମା ହୋଇଛି ତାକୁ ପାଛୁଡ଼ି ଧାନ କାଢ଼ି ଧୂଆଁପତ୍ର ଦୋକାନରୁ ଆଣିବାକୁ କହି ଯାଇଥିଲା । ଅଗାଡ଼ି ତିନି ଥର ପାଛୁଡ଼ିଲଣି, କାଲି ତେର ପାଛୁଡ଼ିଲି, ମୁଠାଏ ବି ଧାନ ବାହାରିଲା ନାହିଁ । ବାପା ଆସି ତେର ଗାଳିଦେଲା ।" ଏଇ କଥା କହି ସାରି ମାଳତୀ ଧକେଇ ଧକେଇ ତେର କାନ୍ଦିଲା ।

ପଦ୍ମ ମୁହଁ ପୋଛି ଦେଇ କହିଲା, " ମା, ଆଉ କାନ୍ଦ ନା, ଗୋପାଳଜୀ ମହାପ୍ରଭୁ ତତେ ଗ୍ରଣୀ କରିବେ । ମୁଁ ରୋଜ ସଞ୍ଜବେଳେ ତୋ କଥା ପ୍ରଭୁଙ୍କୁ ଜଣାଉଛି । ତୁ ଦେଖି ନାହୁଁ, ମୁଁ ଏବେ ମଠକୁ ଏତେ ଯା— ଆସ କରୁଛି କିଆଁ ? ତୁଚ୍ଛା ତୋ ଲାଗି ।"

ମାଳତୀର ବାହା ଲାଗି ମହାନ୍ତଏ ଏବେ ଅଥୟ ହେଲେଣି । ଏଡ଼େ ଝିଅଟାକୁ ଘରେ ରଖିଛି, ସମସ୍ତେ ଛି ଛାକର କରୁଛନ୍ତି । ତେର ଜାଗାରୁ ବାହନ ଆସିଲାଣି । ହେଲେ ଦର ପଟୁ ନାହିଁ । ମହାନ୍ତଏ ମନରେ ବିଚାର କଲେ, ପନ୍ଦର ବର୍ଷର ଝିଅଟା ତ ଅତି କଳଙ୍କରେ ପାଞ୍ଚ ଛ ଶହ ଟଙ୍କା ଖାଇ ଗଲାଣି, ତିନି ଶହ ଟଙ୍କାରେ ଦେଲେ ଲାଭ ଥାଉ, ମୂଳରୁ

ଝୋକ୍ ଚୋକ୍ ବ ତନ ଶହ ଟଙ୍କା ଲୋକସାନ ! ମନରେ ସ୍ଥିର କଲେ, ସାତ ଶହ ଟଙ୍କାରୁ ଊଣା କନ୍ୟାସୁନା ହେଲେ ଝିଅକୁ ଛାଡ଼ବେ ନାହିଁ ଝିଅ ପଛକେ ବରବୁଡ଼ୀ ହୋଇ ଘରେ ବସିଥାଉ । ଘର କାମ ପାଇଁଟିପାଇଁ ଆଉ ଗୋଟାଏ ଆସିଲେ ଖାଆନ୍ତା, ନୋହଲା ଏଇଟା ଖାଇଲା । ଲୋକେ ନିନ୍ଦା କରୁଛନ୍ତ, କରନ୍ତୁ, ଲୋକ କଥାରେ କଣ ଅଛି ? ସେଥିଲାଗି କଣ ଏତେ ଟଙ୍କା ଲୋକସାନ ସହବ ?

ମହାନ୍ତଙ୍କର ଏବେ ଦନ ରାତ୍ତି ଚନ୍ତା । କେବେ ସାତ ଶହ ଟଙ୍କା ଘରେ ପଶିବ । ଦନେ ତାଙ୍କ ମନ ଡାକଲା, ମାଳତୀ ମୁହଁଟା ଟିକଏ ଅଧିକ ସୁନ୍ଦର ଦଶିଲେ କନ୍ୟାସୁନା ବାଡ଼ ବଢ଼ିବ ପରା । ପାଟି କର ଡାକଲେ, 'ଆଲୋ ମାଳତୀ । ଶୁଣ ଶୁଣ, ଏହ ନେ ମାଣେ ଧାନ, ଗୋପୀ ସାଉ ଦୋକାନରୁ ହଳଦୀ ତେଲ କଣି ଆଣ । ହଳଦୀ ବାଟି ରଖିଥିବୁ, ଅଳ୍ପ ବୁନ୍ଦାଏ ତେଲ ମିଶାଇ ଦେବୁ, ଦାଣ୍ଡକୁ ବାହାରଲା- ବେଳେ ସେହ ହଳଦୀ ଟିକଏ ମୁହଁରେ ମାର ଦେଇ ବାହାରବୁ । କେହ ବାହା ବାଛନଆ ଆସିଲେ ମୁହଁରେ ଟିକଏ ବେଶି କର ହଳଦୀ ବୋଳ ହେବୁ । ବୁଝି ଖବରଦାର ! ଆଇଞ୍ଚ ସାଇଞ୍ଚ ଖରଚ କରବୁ, ଏଇ ହଳଦୀ ତେଲ ଯେମନ୍ତ ପୂର ମାସେ ଯାଏ ।"

ମାଳତୀ ମୁଣ୍ଡ ପୋତି ଦେଇ ବାପା କଥା ସବୁ ଶୁଣିଲା—କଣ ତା ମନକୁ ଆସିଲା, ଘର ଭିତରେ ଅନ୍ଧାର କୋଣିଆ ବସି ମା ! ମା ! କହ ଢେର ବେଳ- ଯାଏ କାନ୍ଦଲା । ମାଳତୀ ଢେର ଥର ଏହପର ବସି କାନ୍ଦେ, ଆପେ ତୁନ ହୁଏ ।

ସକାଳ ଓଳ ଦନ ଘଡ଼କ ବେଳେ ମହାନ୍ତଏ ଆଗ ଦାଣ୍ଡ ପିଣ୍ଡାରେ ବସି ପିକା ବଳୁଛନ୍ତ, ହଳ କାମ ଦେଖିବାକୁ ବାହାରଲେ । ଟିକଏ ଆଡ଼େଇ ଅନାଇ ଦେଲେ, ଯୋଡ଼ଏ ବାଟୋଇ ବୁଡ଼ା ବେଡ଼ା ଉପରକୁ ଉଠୁଛନ୍ତ । ବାଟୋଇମାନେ ଧୋବଧାବଳଆ ଭଲଲୋକ ପର ଦଶିଲେ । ମହାନ୍ତଏ ମନରେ କଲେ, କେଜାଣି ଧୂଆଁପତ୍ର ମାଗିବେ ପରା ? ପାଖରେ ଟିକଏ ଧୂଆଁପତ୍ର ପଡ଼ଥିଲା, ଚଞ୍ଚଳ ଅଣ୍ଟାରେ ଖୋସିଦେଲେ ।

ଆଗ ବାଟୋଇ—ଆହେ ! ଏଇଟା କଣ ମାଧ ମହାନ୍ତଙ୍କ ଘର ?

ମହାନ୍ତଏ—କିଂଆ ? କଣ ବୋଲି ଯାଉନ୍ତୁ ।

ବାଟୋଇ—ଆମ୍ଭେମାନେ ମଙ୍ଗଳକୃତ୍ୟ ପ୍ରସଙ୍ଗରେ ଆସିଛୁଁ—ଆପଣ କଣ ମାଧ ମହାନ୍ତଏ ?

ମହାନ୍ତଏ – ଆସିବାହେଉ, ବସିବା ହେଉ । ଚଞ୍ଚଳ ଘର ଭିତରୁ ଆଣି ଦୁଇଖଣ୍ଡ ପଲାଣ ତାଟ ପାରଦେଲେ । ବାଟୋଇମାନେ ବସିବାରୁ ମହାନ୍ତଏ ଏକାବେଳକେ କଥା ଆରମ୍ଭ କର ଦେଲେ । ବୁଝିବାହେଲେ, ଢେର ଢେର ଆଉ, ଢେର ଢେର ଲୋକ ଅଇଲେ - ଗଲେ, କଥା ପଟିଲା ନାହିଁ । ବୁଝିବା ହେଲେ—ଏଁ— ବୁଝିବା ହେଲେ—ନାହିଁ, ନାହିଁ, ଆଗେ କନ୍ୟାଟି ଦେଖନ୍ତୁ, ମନ ମାନେ, ପଛକେ ଦେବା ନେବା କଥା । ଆଲୋ ମାଳତୀ ! ଏହ ଭଲଲୋକ ଆସିଛନ୍ତ, ଅଗଣାରେ ଛିଡ଼ା ହୋଇଯା ତ । ଆଲୋ, ମୁଁ ଯାହା କହୁଛି – ଏଁ, ବୁଝିଲୁଟିକ ?

ଭଲଲୋକେ—ନାହିଁ ନାହିଁ ମହାନ୍ତଏ, ଦେଖିବା ଲୋଡ଼ା ନାହିଁ—ତୁମ କନ୍ୟାର ରୂପ ଗୁଣ କଥା ଭଲ ଜଣା ଅଛି । ସେଇଥିଲାଗି କୁଆଡ଼େ ନ ଯାଇ ସଳଖେ ସଳଖେ ତୁମ ଦୁଆରକୁ ଅଇଲୁଁ ପରା !

ମହାନ୍ତଏ—ତେବେ ଗୁଡ଼ାଏ ବକର ବକର ହେଲେ କଣ ହେବ, ଆମର ତ ସାଫ ଏକା କଥା । ଗୋଟିଏ ସ—ବୁଝନ୍ତୁ, କନ୍ୟାସୁନା ଠିକ୍ ସାତଶହ ଟଙ୍କା । ପଇସାଏ, ଅଧଲାଏ, ଛଦାମ ବ ଊଣା ନୁହେଁ ।

ଭଲଲୋକେ—ଅନ୍ୟାୟଟା କଣ କହିଲେ ? କନ୍ୟା ରୂପ ଗୁଣକୁ ଅନାଇଲେ ଠିକ୍ ଦରଦାମ ହୋଇଛି । ଆମ ଜମିଦାର ବି କହିଥିଲେ, ଆପଣ ବିଚାର କରି ଯାହା କହିବେ, ସେଥିରୁ ସେ ବାହାର ହେବେ ନାହିଁ ।

ମାଧ ମହାନ୍ତ—ଏଁ —ଏଁ ବର କଣ ଜମିଦାର ? କେଉଁଠି ତାଙ୍କ ଜମିଦାରୀ ?

ଭଲଲୋକ—ବରଙ୍କ ନାମ ଶ୍ରୀ ଶ୍ରୀ ବିନୋଦବିହାରୀ ଗନ୍ଧାଧରସିଂହ । ତାଙ୍କ ଘର ମିଛିପୁର, ଜମିଦାରୀ ତାଲୁକେ ଆକାଶପୁର ।

ମାଧ ମହାନ୍ତ—ଦଣ୍ଡେଯାଏଁ ଗୁମ ମାରି ବସି ବିଚାର କଲେ—ହାୟ ହାୟ ! ଏ ବରଟା ବଡ଼ଲୋକ, ହଜାରେ ଟଙ୍କା ଧରିଥିଲେ ଦେଇ ପକାଇଥାନ୍ତା । କାହିଁକି ହଜାରେ ଡାକଦେଲି ନାହିଁ ? ପ୍ରକାଶ୍ୟରେ କହିଲେ—ଆମ ଜାତିଆଣ ବେଭାରଟା ତ ଜାଣନ୍ତି, ବିଭାଲଗୁଡ଼ ଉଣା ପୁରା ତିନଶ ଟଙ୍କା । ଆପଣ ତ ବିବେକୀ ଲୋକ, ଜାଣନ୍ତି । ଏଇଟା ବର ପିଠିରୁ ଦେବାକୁ ହେବ ।

"ଅବଶ୍ୟ ଅବଶ୍ୟ, ଏ କଥାଟା କଣ କହିବାକୁ ହେବ ? ସେଇଟା ତ ବର ପିଠିରୁ ଦେଣ ।"

ମାଧ ମହାନ୍ତ—କଥା ଛିଡ଼େଇ ରଖିବା ଭଲ । ଏହି ଦେଖନ୍ତୁ, କନ୍ୟାସୁନା ଆଉ ବିଭାଲଗୁଡ଼ ଦୁଇ ପଦକୁ ହେଲା ହଜାରେ ବର ଯିମିତି ପଡ଼ିଞ୍ଚିବେ, ଆଗେ ଟଙ୍କା ଗଣିଦେବେ, ପଛନ୍ତେ ବାଟବରଣ ହେବ । କଥାଟା ଭଲ କରି ମନରେ ରଖିଥିବେ ।

ଭଲଲୋକ—ଏଇଟା ତ ମାମଲତି କଥା, ସଂସାର ବିଧି ଆପଣଙ୍କୁ କହିବାକୁ ହେବ ନାହିଁ । ଦଶ ଜାଗାରେ ଏହିପରି ହେଉଛି, ଆଜି କଣ ନୂଆ ଗୋଟାଏ କଥା ହେବ ?

ମାଧ ମହାନ୍ତ—ଠିକ୍ ଠିକ୍, ଆପଣ ବିବେକୀ ଲୋକ, ମାମଲତକାର, ଆପଣଙ୍କୁ ବଳି ମାମଲତକାରି ଆଉ କଏ କରୁ ? ଆଉ ଗୋଟିଏ କଥା—ବିଭାଘର ଆୟୋଜନ କରିବାକୁ ହେବ, ଗୋଟା କୋଡ଼ିଏ ଟଙ୍କା ଚଞ୍ଚଳ ଲୋଡ଼ା । ଏଁ ଏଁ—ଆପଣଙ୍କୁ କଣ କହିବି—ଏଁ—ଏଁ ।

ମହାନ୍ତଙ୍କ ମୁହଁକଥା ମୁହଁରେ ଅଛି, ଭଲଲୋକ ଅଣ୍ଟାରୁ କାଢ଼ି ଅଗଣା ଅପୋଚ୍ଛ ମୁଠାଏ ଟଙ୍କା ଝଣ କରି ମହାନ୍ତଙ୍କ ଆଗକୁ ଫୋପାଡ଼ ଦେଲେ । ଏଁ—ଏଁ କହି ମହାନ୍ତଏ ଚଞ୍ଚଳ ଦୁଇ ହାତରେ ଟଙ୍କାଗୁଡ଼ାକ ଗୋଟାଇ ପକାଇଲେ, ଲୁଗା ଭିତରେ ଏକ ଦୁଇ କରି ଗଣିଗଲେ କୋଡ଼ିଏ ପାଞ୍ଚ । ଆନନ୍ଦଟା ମନରେ ସମ୍ଭାଳି ହେଉ ନାହିଁ । ମନରେ କଲେ, ଏତେଦିନେ କପାଳ ଫିଟିଲା । ଏଣୁତେଣୁ ପାଞ୍ଚ କଥା ଉତ୍ତାରେ ଏକାବେଳକେ ବିଭାଦିର ଦିନ ସ୍ଥିର ହୋଇଗଲା । ଆସନ୍ତା ମକର ସତରଦିନ, ଶୁକ୍ରବାର, ଶୁକ୍ଳ ସପ୍ତମୀ ।

ଭଲଲୋକ ଅନାଇ ଦେଖିଲେ, କବାଟ ତଳ ଫାଙ୍କ ଭିତରକୁ ଯୋଡ଼ିଏ ପାଦ ସ୍ଥିର ହୋଇ ରହିଛି । ପାଦ ଯୋଡ଼କର ଉପର ପାପୁଲି ଏବଂ ଚମ୍ପାକଢ଼ି ପରି ଗୌରବର୍ଣ୍ଣ ଦଶଟି ଆଙ୍ଗୁଳି ଦିଶୁଛି ।

ଭଲଲୋକ ଟିକିଏ ବଡ଼ ପାଟି କରି କହିଲେ— ବୁଝିବା ହେଲେ ମହାନ୍ତଏ, ଆମେ ତ କନ୍ୟା ରୂପ ଗୁଣ କଥା ସବୁ ବୁଝିଗଲୁଁ, ଗାଁରେ ଯାଇ କହିବୁଁ । ଆପଣ ତ ବରଙ୍କ କଥା କିଛି ଶୁଣିଲେ ନାହିଁ ? ଆମର କହିଦେବା ଉଚିତ ହେଉଛି । ବରଙ୍କର ପ୍ରଥମ ଦୁଇ ବିଭା ସ୍ତିରୀ ମରିଛନ୍ତି, ଏଇଟା ହେବ ତେହଲା ବିଭା । ବରଙ୍କ ବୟସ ଏହି ମାଘରେ ପଞ୍ଚଷଠି ପଶିବ ।

ଭଲଲୋକେ କବାଟ ପଛରୁ ଫଁ କରି ଗୋଟିଏ ନିଶ୍ୱାସ ଶବ୍ଦ ଶୁଣିଲେ—ପାଦଯୋଡ଼କ ଆଉ ଦିଶିଲା ନାହିଁ ।

ମାଧ ମହାନ୍ତିଏ କହିଲେ, ଏତେ କଥା କିଏ ପଚାରୁଛି ହେ ? ପୁରୁଷ ପୁଅର ବୟସ କଣ ଧରାବନ୍ଧା ଭିତରେ ? ଅଶୀ ବର୍ଷର ପୁରୁଷ ବି ବିଭା ହୋଇ ପାରେ । ମୂଳ କଥାଟା ବୋଲନ୍ତୁ—ମୁଁ ଏବେ ଆପଣଙ୍କ କଥାରେ ଖାତିରଜମା ହୋଇ ରହିଲିଟି ?

ମଧ୍ୟସ୍ଥ – ମହାନ୍ତିଏ, ଆପଣ ଏଡ଼େ ମାମଲତକାର ବୁଦ୍ଧିମନ୍ତ ଲୋକ ହୋଇ କେମନ୍ତ ଗୋଟାଏ ଅଖାଡ଼ୁଆ କଥା ବୋଲି ବସିଲେଣି ? ଆମ ଜମିଦାର ଘରେ କଣ ଜାଗା ନ ଥିଲା ଯେ, ତୁମ ଆଗରେ ଟଙ୍କାଗୁଡ଼ାଏ ଓଜାଡ଼ି ଦେଇଗଲି ?

ମହାନ୍ତିଏ ଟିକିଏ ସଟ୍‌ପଟି ଯାଇ କହିଲେ,"ନାହିଁ ନାହିଁ, ମୁଁ କହୁଥିଲି କଣ କି, ବିଭାଦିନ ଟିକିଏ ଚଞ୍ଚଳ ବରଙ୍କୁ ଅନୁକୂଳ କରାଇ ଦେବେ, ଯେମନ୍ତ ଠିକ ଲଗ୍ନ ବେଳେ ହାତଗଣ୍ଠି ପଡ଼ିବ ।"

ଭଲଲୋକ ଦୁହେଁ ଘାରି ଭକ୍ତିରେ ଯୋଡ଼ାଏ ଦଣ୍ଡବତ କରି ଗୁଲିଗଲେ ।

ଆଜି ମାଲତୀର ଆଦର ଦେଖେ କିଏ ! ତୁଚ୍ଛାଟାରେ ହେଲେ 'ଆ ରେ ମା, ଯା ରେ ମା,' କହି ମହାନ୍ତିଏ ଦଶଥର ଝିଅକୁ ଆଦର କରି ଡାକୁଛନ୍ତି । ମହାନ୍ତିଙ୍କର ଷୋଳପଣି ବିଶ୍ୱାସ, ପୂରା ହଜାରେ ଟଙ୍କା ତାଙ୍କ ଘରେ ପଶିବ । ମହାନ୍ତିଏ ଯେତେ ଆଦର କରି ଡାକୁଛନ୍ତି, ମାଲତୀ ମନରେ ତେତେ କୋହ ଉଠୁଛି । ମହାନ୍ତିଏ ଖୁବ ମନଫୁଲଣାରେ ଖଣ୍ଡେ ସାନ ଅଖା, ଡାମଣି ଛଣିସୂତା ହେନ ବଳକୁ ବାହାରିଲେ । ହାଡ଼ ଉପରେ ବସି ମୂଲିଆମାନଙ୍କ କାମ ତନଖି କରିବେ, ଆଉ ଟଙ୍କାରଖା ମୁଣିଟିଏ ସିଲିବେ ।

ଆଜି ମାଲତୀର ଆଉ ଘର ପାଇଟିରେ ମନ ନାହିଁ । ଦାଣ୍ଡଦୁଆର କିଳି ଦେଇ କବାଟମୂଳରେ ତୁନି ହୋଇ ବସି କାନ୍ଦୁଛି । କବାଟ ବାହାରୁ ଠୁକ୍ ଠୁକ୍ ଶବ୍ଦ ହେଲା, ହାତ ବାଡ଼ି କବାଟ ଫିଟାଇ ଦେଲା । ପଦ୍ମା ଯିମିତି ଘର ଭିତରେ ପା ଦେଇଛି, ମାଲତୀ ତା ଦୁଇ ଗୋଡ଼ ଧରି ଡକା ପାରୁଛି, କାନ୍ଦି କାନ୍ଦି ଅଥୟ ହୋଇଗଲାଣି । ପଦ୍ମା ତାକୁ ଯେତେ ତୁନି କରାଉଛି, ଶୁଣୁଛି କିଏ ?

ହାମଦରଦୀ ଲୋକ ପାଖରେ କାନ୍ଦି ମନକଥା କହିଲେ ମନକଷ୍ଟ ଟିକିଏ ଊଣା ପଡ଼େ । ମାଲତୀ ଯିମିତି ଟିକିଏ ଧୈର୍ଯ୍ୟ ଧରିଛି, ପଦ୍ମା କହିଲା, "ଆରେ ବାୟାଣି ! କଥା ନ ବୁଝି କାହିଁ ଡକା ପାରୁଛୁ ? ଆଜି ଭଲଲୋକ ଆସିବା—ଯେ ସବୁ କଥା ହେଲା, ମୁଁ ସବୁ ଜାଣେ । ସେ ସବୁ କଥା ଗୋଡ଼ରେ ଘଷି ଦେ ମ, ସବୁ ମିଛ, ତୁଚ୍ଛା ମିଛ । ମୁଁ ଯାହା କହୁଛି, ଶୁଣି ଯା । ଆଜିକି ସାତ ଦିନ ହେଲା, ମୁଁ ଠାକୁରଙ୍କ ପାଖରେ ତୋ ଲାଗି ଅଧା ପଡ଼ୁଥିଲି । ମହନ୍ତ ପୂଜା କରୁଥିଲେ, କାଲି ଅଧରାତିରେ ମହାପ୍ରଭୁଙ୍କ ପାଖରୁ ବର ମିଳିଲା । ମହାପ୍ରଭୁ ମହନ୍ତଙ୍କୁ ସ୍ୱପ୍ନରେ କହିଲେ, 'ତୁ ମଠ ସରଘରିଆ ବିନୋଦକୁ ବିଭା ହେବୁ ।" ପୃଥିବୀ ଟଳିଯିବ, ଠାକୁରଙ୍କ ହୁକୁମ ଅନ୍ୟଥା ହେବ ନାହିଁ । ତୁ ନିଶ୍ଚିନ୍ତରେ ଥା ।"

ଆଁ—ଆଁ କହି ମାଲତୀ ପଦ୍ମା ମୁହଁକୁ କଟାଣଟି ପରି ଅନାଇଛି, ତା ମୁହଁରୁ କଥା ବାହାରୁ ନାହିଁ । ଶେଷରେ ଧୈର୍ଯ୍ୟ ଧରି କହିଲା, "ମା, ଜାଣିଥା—ସେ ବର ଆସିଲେ ମୁଁ ଦଉଡ଼ି ଦେବି ।"

"ମା ! ଆଉ ଗୋଟାଏ କଥା, ମୋ ଆତ୍ମାଟା କମିତିକା ଧାନ୍ଦି ହେଉଛି, ଥରେ ମାଧୀ ଅପାକୁ ଦେଖନ୍ତି ।"

ପଦ୍ମା—ତୋ ବାପାକୁ କହ, ସେ ଡାକି ଆଣନ୍ତୁ ।

ମାଲତୀ—ଡାକି ଆଣିବେ ହଁ ! ସେ ଓଷା ବରତ କରିବ ବୋଲି ଯୋଡ଼ାଏ ପଇସା ମାଗି ପଠାଇଥିଲା,ସେ ମାଗି ଆସିଥିଲା ଦୂର ଦୂର କରି ବାପା ତାକୁ ତଡ଼ିଦେଲା ।

ଆଜ ଥରେ ବାପା ବାଧିକ ପଡ଼ିଥିଲା, ଅପା ଦେଖିବାକୁ କହି ପଠାଇଲା । ବାପା କହିଲା,"ମୋର ଜରଗୁଡ଼ଯାଉ ନାହିଁ, ସେ ଦେଖିବ କଣ ? ଆରେ ରେ ଆସିବ ତ, ଆଠ ଦଶ ଦିନଯାଏ ଘରୁ ବାହାରିବ ନାହିଁ, ବସି ବସି ଭୁଲ୍ଲାଟାରେ ସେଟେସେଟେ ଠୁକିବ ।" ମା ! ମୋ ଅପାଟି ବଡ଼ ଦୁଃଖରେ ଅଛି । କୁଟୁମଦାଣ୍ଡିଆ ଘର, ଛୁଆପିଲା ଫଳେ, ସବୁ ଛୁଆଙ୍କର ଗୁହକନା ମୁତକନା କାଚିବ, ଘରର ସବୁ ଫକୁଡ଼ ବାସନ ମାଜିବ । ବାଧିକାରେ ଛ ଦିନ ନ ଦିନ ପଡ଼ିଥିଲେ ବି ତା ମୁହଁରେ ଟୋପାଏ କେହି ପାଣି ଦେବାକୁ ନାହିଁ । ଆହା ! ସେଇଟା କମିତି ଶୁଖିଲାଟା ହୋଇଗଲାଣି,ଆଉ ବଞ୍ଚିବ ନାହିଁ । ମୁଁ ତାକୁ ଦେଖିପାରିବି ନାହିଁ ।

ମାଳତୀ ଅପାପାଇଁ ଢେର କାନ୍ଦିଲା । ପଦ୍ମା ତାକୁ ଭୁଲା କରାଇ କହିଲା, "ଆଚ୍ଛା ଆଚ୍ଛା, ମାଧୀ ସାଙ୍ଗରେ ତୋର ଭେଟ କରାଇ ଦେବି ।"

ମହାନ୍ତଙ୍କ ବାହୁଡ଼ା ବେଳ ହେଲା ଜାଣି ପଦ୍ମା ଚଞ୍ଚଳ ଚାଲିଗଲା ।

ଦିନ ଦୁଇପହରିଆ, ଖିଆପିଆ ବେଳ ଟିକିଏ ଗଡ଼ ଯାଇଛି, ପଦ୍ମ ମହାନ୍ତଙ୍କ ଦାଣ୍ଡଦୁଆର କବାଟରେ ଧଡ଼ ଧଡ଼ ଧୁପୁଡ଼ା ମାରି ଡାକୁଛି—"ଏ ସାନ୍ତେ - ଏ ମହାନ୍ତ ସାନ୍ତେ । ଘରେ ଅଛନ୍ତି ? ଏ ମାଧୀ ବାପା ! ଘରେ ଅଛନ୍ତି ? କବାଟ ଫିଟାନ୍ତୁ ।"

ପଦ୍ମା ସେଜକନା ଉପରଓଳି ଆସି କବାଟରେ ଟିକିଏ ଠୁକ୍ ଠୁକ୍ ଟିପ ମାରିଦେଲେ ଧୀରେ ଧୀରେ କବାଟ ଉଦୁଆଁ ହୋଇଯାଏ । ଅଜ ଏତେ ପାଟି କରୁଛି, କବାଟ ଫିଟୁ ନାହିଁ ।

ମାଧ ମହାନ୍ତଏ ଏଇଲାଗେ ଘଞ୍ଚ ଗୁରିଟା ସାରି ମଲଣିସିଆଁ ଛଣି ଚାଗପାଇଁ ବସି ବାଟିଆ କାଟୁଛନ୍ତି । ମହାନ୍ତଏ ବଡ଼ ବୁଦ୍ଧିମନ୍ତ ଲୋକ - ତାଙ୍କର ମୂଳିଆ-ପାନିଆ ଢେର, ହେଲେ ଆପେ ବାଟିଆ କାଟନ୍ତି । ମୂଳିଆ ହାତକୁ ଦେଲେ କାଳେ ନେଞ୍ଜାଏ ଛଣି ଅଣ୍ଟିରେ ଗୁଞ୍ଜି ଦେବ, ସେଥିଲାଗି କାହାରି ହାତକୁ ଦିଅନ୍ତି ନାହିଁ ।

ପଦ୍ମା ମହାନ୍ତଙ୍କ ଗୋଡ଼ ପାଖରେ ଉପକରି ମୁଣ୍ଡିଆଟାଏ ମାରି ଦେଇ ବସିପଡ଼ି କହିଲା, "ଏ ସାନ୍ତେ ! ଗାଁଯାକ ଚହଳ ପଡ଼ୁଛି, ସାନ ଝିଅ ମାଳତୀର ବାହାଘର—କାହିଁ, ମତେ ଖବର ଦେଇ ନାହଁ ? ଦରଲପା, ଚୁଞ୍ଚ ଦିଆ, ଝୋଟିଦିଆ ଟାଁଯାକ ସବୁ ମୁଁ କରେଁ । ହେଉ ହେଉ, କାଲି ସକାଳେ ଆସି କରି ଦେଇଯିବି ।"

ମହାନ୍ତଏ ସେହିପରି ବାଟିଆ କାଟୁ କାଟୁ କହିଲେ, "ନାହିଁ ନାହିଁ,କଣ କେତେ ବା ଚୁଞ୍ଚଦିଆ, ଝିଅଟା ଆପେ କରି ଦେଇବ ସେ । ତୋର ଆସିବା ଲୋଡ଼ା ନାହିଁ ।"

ପଦ୍ମ ସେ କଥା ଶୁଣି ନ ଶୁଣିଲା ପରି କଥା କହି ଯାଉଛି—"ଏ ସାନ୍ତ ! ଗାଁଯାକ ଲୋକେ କହୁଛନ୍ତି, ଅପଣଙ୍କର ବଡ଼ କପାଳ, ଭଲ ମନମାଫିକେ ବନ୍ଧୁଟିଏ ପାଇଗଲେ । ଏଣେ ଜମିଦାରୀ—ଘରେ ଟଙ୍କା ସୁନା ଭରତି, ମରେଇକୁ ମରେଇ ଧାନ ବସିଛି, ଦଶ ବାଟି ଚଷ । ଆପଣ ଉଚ୍ଛୁଣିକା କଣ ପାଇବେ କି ! କୁଆଁଇଁଟି କେମନ୍ତ ଦେବା ନେବାକୁ ଷଣ୍ଢ । ଆପଣ ଝିଅକୁ ସଞ୍ଜ୍ଞିଲେ ବାଟଖରଚ ବୋଲି କଣ ଦଶ ପାଞ୍ଚଶହ ବାନ୍ଧି ନ ଆଣିବେ ?"

ମହାନ୍ତଏ ବାଟିଆଟା ଥୋଇ ଦେଇ ହସି ହସି ପଚାରିଲେ, "ସତ ନା ଲୋ ପଦ୍ମା, ସତ ନା ?"

ପଦ୍ମା—ସବୁବେଳେ ଗାଁ ଲୋକେ ଦେଖି ଆସି କହୁଛନ୍ତି ପରା ? ବାହାଘର କଥା ସେଠି ଧୁମ୍ ପଡ଼ୁଛି, କନ୍ୟାସୁନା ଟଙ୍କା ପରା ଗଣାଗୋଛା ହୋଇ ଥୁଆ

ହୋଇଗଲାଣି । ଏତେ ଲୋକ ସାଙ୍ଗରେ ବନ୍ଧୁପଣ – ଅପଣକଂ ର ନାମ ଚର୍ଚ୍ଚା ନାହିଁ ।

ମହାନ୍ତ୍ରଏ—ଏ ପଦ୍ମା ! କାଲି ରାତିରୁ ଜ୍ଵର ଲାଗିଯା— କାଲି ସକାଳେ ଭୁ ଖାଇ ପିଇ ଆସି ଘର ଲିପା ପୋଛା କରିଦେଇ ମୋର ନବାଡ଼ ଦେ ।

ପଦ୍ମ—ଏ ମାଇଟ୍ରେ ! ତୁମ୍ଭ ବନ୍ଧୁବାନ୍ଧବ ଘରେ ନିମନ୍ତ୍ରଣ ଦେଇ ଆସିବ ନା ?

ମହାନ୍ତ୍ରଏ—ନା—ନା—ନା—ନା, ସେ ପାଜିଙ୍କ ମୁହଁ ପୋଡ଼ି ଦେ । ଯେ ଆସିବ, ଆଗେ କହିବ ବହିବ ଖାଇବାକୁ ଦେ, ପିଠା ଖଜା ଦେ । କଁ୍ୟା ରେ ବାବୁ ! ମୁଁ ଝିଅକୁ ଖୁଆଇ ପିଆଇ ବଡ଼ାଇଛି, ଯେ କନ୍ୟାସୁନା ଯୋଡ଼ାଏ ଠଙ୍କା ମିଳିବ, ମୁଁ ନେବ, ତୁମକୁ ଦେଖାଇବ କଁ୍ୟା ?

ପଦ୍ମ ମହାନ୍ତଙ୍କ ଘରୁ ବାହାରି ଗାଁରେ ଯେତେ ବଳରାମଗୋସାଇଁ ଘର ଅଛି, ଦୁଆର ଦୁଆର ବୁଲିଲା ।

ଗାଁଟା ଖୁବ୍ ବଡ଼, ଶକଡ଼ା ଘର, ସେଥିରୁ ଅଧାଅଧି ବଳରାମଗୋସାଇଁ । ମହାନ୍ତଙ୍କ କହିଥିବା କଥା ପଦ୍ମା ଜଣ ଜଣ କରି ଭୁନ ଭୁନ ସବୁ କହିଲା । ଆହୁରି ବ କିଛି ଲଗେଇ ଦେଇ କହିଲା—ମହାନ୍ତ କହୁଛି, ଝିଅ ବାହାଘରେ ଦିନ ଜାତି ଲୋକ ଯେ ତା ଦାଣ୍ଡ ଆଗ ଦେଇ ଗଲାଯିବ, ସମସ୍ତଙ୍କ ପିଠିରେ ଯୋଡ଼ାଏ ଯୋଡ଼ାଏ ପାଣ୍ଡୋଇ ବାଡ଼େଇବ । ମୂଲିଆ ଯୋଡ଼ାଏ ପାଣ୍ଡୋଇ ଧରି ବସିଥିବେ ।

ଜାତିଭାଇ ସମସ୍ତେ ଶୁଣି ନିଆଁବାଣ ହୋଇ ଗଲେଣି । କଥାଟା ସତ କି ମିଛ, କେହି ବୁଝିବାକୁ ନାହିଁ । ବଡ଼ଝିଅ ମାଧୀ ବାହାଘରବେଳେ ମାଧ ମହାନ୍ତ ଜାତିଭାଇଙ୍କୁ ସଙ୍ଗୁଳି ନାହିଁ, ବଡ଼ ହେଟାଦର କରିଛି, ସେହି ରାଗଟା ସମସ୍ତଙ୍କ ମନରେ ଥିଲା । ସମସ୍ତେ କମ୍ପୁ-
ଛନ୍ତି । ମହାନ୍ତିଙ୍କୁ ହାବୁଡ଼ରେ ପାଇଲେ ଉପାଡ଼ିଲକୁ ଦେବେ ।

ପଦ୍ମା ବାହାରି ଗଲେ ବାଦେ ମାଧ ମହାନ୍ତ ଏ ଝିଅକୁ କହିଲେ, "ଆଲୋ ମାଳତି ! କାଲି ଭଣ୍ଡାରୁଣୀ ଆସିଲେ ତା ହାତରେ ଘରଦ୍ୱାର ଲିପାପୋଛା କରାଇ ନେବୁ । ଅନା, ଏହି ଯେ କାନ୍ଥ ଝଡ଼ି ପଡ଼ିଛି, ତା ହାତରେ କାଦୁଅ ଛଟାଇ ନେବୁ । ଶୁଣ, ଖବରଦାର ! ସକାଳୁ ତାକୁ ପାଇଟିରେ ଲଗାଇବୁ ନାହିଁ । ଗାଧୁଆବେଳ ହେଲେ ତ ଟାଧୋଇ ପଡ଼ି କହିବ, ଦେଲୁ ଭାତ ଖାଇବାକୁ । ଏ ଗାଁ ଲୋକଗୁଡ଼ାକଙ୍କ କଥା ଦେଖିଲେ ବଡ଼ ଚଲ ମାଡ଼େ । ଟିକିଏ କିଛି କାମ କରିଦେଲେ ତ, କହି ବସିବେ, ଦେଲୁ ମାଣେ ଧାନ ।

ଆଜିକାଲି ମହନ୍ତ ବାହାରକୁ ବାହାରନ୍ତି ନାହିଁ । ସାଙ୍ଗ ଲୋକଗୁଡ଼ିକଙ୍କୁ ଘେନି ସବୁବେଳେ ତୋଟାରେ ବସିଥାନ୍ତି । ଯେତେ ଲୋକ ହେଉ, ଯେତେ କାମ ଥାଉ ତୋଟା ଭିତରକୁ ଯିବା ବାରଣ । ଆଜିକାଲି ରାତିରେ ଆଖଡ଼ା ବନ୍ଦ । କେବଳ ପଦ୍ମା ଭଣ୍ଡାରୁଣୀ ସଞ୍ଜ ସକାଳ ସବୁବେଳେ ତୋଟା ଭିତରକୁ ଯା ଆସ କରେ ।

ମାଧ ମହାନ୍ତଏ ରୋଜନା ପରି ସକାଳୁ ଉଠି ପଦାଆଡ଼େ ଯାଇଥିଲେ, ଫେରି ଆସି ଦେଖିଲେ,, ପଦ୍ମା ପିଣ୍ଡାରେ ବସିଛି । "କି ଲୋ ପଦ୍ମା ! ତୁ ଏତେ ସକାଳୁ ଆସି ବସିଲୁଣି ଯେ ?"

ପଦ୍ମ—ମଲି ଯା !

"ଯାହାର ବାହା ସେ ଖେଳୁଛି ପଶା
ଧାଇଁ ବୁଲୁଛନ୍ତି ସାଇ ପଡ଼ିଶା ।"

ପିଛିଲା ରାତି ଘଡ଼ିଏ ଥିଲା, ମୁଁ ଉଠି ପଡ଼ି ଘରେ ବାସିପାଇଟି ଚଞ୍ଚଳ ସାରିଦେଇ ଧାଇଁଛି । ଆଜି ଯେ ସାନ ଅଭିଆଡ଼ୀ ମଙ୍ଗୁଳା, କନ୍ୟା ଦେହରେ ହଳଦୀ ପଡ଼ିବ ।

ମାଧ ମହାନ୍ତ—ନାହିଁ ନାହିଁ ପଘା, ଯାହା ଯାହା ହେବାର; ସେଇ ବାହାଘର ଦିନ ସବୁ ହେବ ।

ପଘା—ନାହିଁ ସାନ୍ତ ! ମୁଲକରେ ଇମିତିକା ହୁଏ ନାହିଁ । ଶୁଣିଚ୍ଛି, ବରଘର ବାହାଲଗୁଡି ଆପଣଙ୍କୁ ତିନଶ ଟଙ୍କା ଦେବ, ଆପଣ ଇମିତିକା ଅଶାସ୍ତ୍ରର କାମ କଲେ ସେ ଲଗୁଡି ଟଙ୍କା ଉଣା କରିଦେବ ।

ମହାନ୍ତ—ଆଚ୍ଛା, ତୁ ମାଣେ ଧାନ ଧରି ଯା, ହଳଦୀ ତେଲ ଶମ୍ଭୁଆ ଦୋକାନରୁ କିଣି ଆଣ । ଧାନ ଦର ଚଡ଼ିଚ୍ଛି, ମାଣେ ଧାନର ଦାମ ଦେଢ଼ ପଇସା । ପଇସାଏ ଦେଲେ ଭଲ ହୁଅନ୍ତା—କଣ କରିବି ଲୋ, ହାତରେ ପଇସା ନାହିଁ ।

ପଘା—ଟଙ୍କାଟାଏ ଦେଉନ୍ତୁ, ଭଙ୍ଗାଇ ଆଣେ ।

ମହାନ୍ତ—ନାହିଁ ଲୋ ବାପା । ଟଙ୍କା ଭଙ୍ଗେଇଲେ ତ ଉଡ଼ିଲା, ଆଉ ତାକୁ ପାଇବ ନାହିଁ ।

ପଘା—ଏ ସାନ୍ତ ! ଗାଁରୁ ପାଞ୍ଚଜଣ ଅହିଅ ମାଇକିନିଆ ଆସିବେ, ସେମାନେ ତ ହଳଦୀ ତେଲ ଲଗାଇବେ, ତେଣ ହଳଦୀ ଯେ ଲୋଡ଼ା ।

ମହାନ୍ତ—ନାହିଁ ନାହିଁ, ପାଞ୍ଚ ଜଣ ଅହିଅ ମାଇକିନିଆ କଣ କରିବେ ? ତୁ ଏକା ଝିଅକୁ ହଳଦୀ ଲଗାଇଦେ । ଆଉ ଜାଣୁ ! ପାଞ୍ଚଟା ମାଇକିନିଆ ଆସିଲେ କହିବେ, ଜଳପାନ ଖାଇବାକୁ ଦେ ।

ପଘା ସକାଳୁ ଆଟିକାଏ ବଟା ହଳଦୀ, ଆଟିକାଏ ତେଲ, ପାଚ୍ଛିଆଏ ଭଜା, ପାଚ୍ଛିଆଏ ଉଖୁଡ଼ା ଆଣି ମାଳତୀ ଘରେ ଥୋଇ ଦେଇଥିଲା, ସବୁ କାହାର କରି ମହାନ୍ତଙ୍କ ଆଗରେ ଥୋଇଦେଲା ।

ମହାନ୍ତ ଏ ସବୁ ପଦାର୍ଥ ଦେଖି କାବା ହୋଇ ଛୁଡ଼ା ହୋଇଛନ୍ତି, ପାଟିରୁ କଥା ବାହାରୁ ନାହିଁ । ଦଣ୍ଡକ ବାଦେ କହିଲେ—"ଏଁ—ଏଁ—ପଦ୍ମ ! ପଦ୍ମ ! ଏ ସବୁ କଣ ? ଏ ସବୁ କାହୁଁ ଅଇଲା ?"

ପଘା ପଣନ୍ତ କାନିଟା ମୁହଁରେ ଦେଇ ଟିକିଏ ସକ୍ ସକ୍ କରି କାନ୍ଦିଲା । ମୁହଁ ପୋଛିପାରି ଦେଇ କହିଲା—"ବୁଢ଼ୀବା ହେଲେ ସାନ୍ତ ! ମୋ ହାତରେ କିଛି ବଡ଼ ଅଛି—ମୋର କିଏ ଅଛି, କିଏ ଖାଇବ ? ଆପଣ ସେ ଦିନ କହିଲେ. ମାଳତୀ ମୋ ଝିଅ । ଏଇ ଝିଅ ବାହାଘରେ ସବୁ ସାରିବି ମନରେ କରିଚ୍ଛି ।"

ମହାନ୍ତ—ହିଁ—ହିଁ, ଭଲ କଥା, ଭଲ କଥା ପାଞ୍ଚିଚ୍ଛୁ । ତୋର ମୁଲକଯାକ ଖୁବ ପ୍ରଶଂସା ହେବ, ତେଣ ଧର୍ମ ହେବ । ଆଲୋ ମାଳତି ! ନେ ନେ, ତୋ ମା ଦେଇଚ୍ଛି. ଏ ସବୁ ପଦାର୍ଥ ଉଠାଇ ନେ, ସାଇତି ରଖ, ବୁଝି ଖବରଦାର ! ଫକାଡଲା କରିବୁ ନାହିଁ ।

ପଘା ଝିଅ ଲାଗି ଖଣ୍ଡ ପାଞ୍ଚ ଶାଢ଼ୀ ଆଣିଛନ୍ତି ତ ? ଏଇଲାଗେ ଯେ କୋଇଲବୁଡ଼ି ପାରି ପିନ୍ଧିବ ?

ମହାନ୍ତଏ କହିଲେ—ହଁ ହଁ ପଦ୍ମ, ସେଇ କଥା କହୁଚ୍ଛି ପରା, ବାହା ଲୁଗାଗୁଡାକ ଏଡ଼େ ଦାମ ! ଖଣ୍ଡେ ନ' ହାତି ବାହା ପାଞ୍ଚ ଶଣ୍ଡୀର ଦାମ ଦୋକାନି ଧରିଚ୍ଛି ସାଢ଼େ ଆଠଅଣା । ମୁଁ ପାଞ୍ଚଅଣାରୁ ଉଠି ଆଠଅଣା ଯାଏ ଗଲିଣି, ତେବେ, ସେ ନା, ସେଇ ସାଢ଼େ ଆଠଅଣା । ତା ପୁଣି କାଲି ବାସି ରଖିବ ନାହିଁ, ନଗଦ ରୋକ ଠୋକ୍ । ଯାଏ ଯିମିତି ହେଉ ଆଉ ଅଧଲାଏ ଖଣ୍ଡେ ଦାମ ଚଡ଼େଇ ଆଣିବାକୁ ହେବ, ନ ହେଲେ ତ ନୁହେ ।

ପଘା—ନା ନା ସାନ୍ତ ! ପନ୍ଦର ବରଷର ଝିଅକୁ ନଅ ହାତି ଶାଢ଼ୀ ପାଇବ ନାହିଁ । ଆଚ୍ଛା ସାନ୍ତ ! ମୁଁ ତ ମୋ ଝିଅକୁ ମଙ୍ଗଳଲତା ପିନ୍ଧାନ୍ତି, ସେହି ଶାଢ଼ୀ ଖଣ୍ଡ ପାଞ୍ଚ ଶାଢ଼ୀ ହେଉ । ମହାନ୍ତଏ ଘର ଝୁସିଟାଏ ହୋଇ କହିଲେ, "ହଁ ହଁ ପଦ୍ମ, ଭଲ କହିଲୁ, ଭଲ କହିଲୁ । ଦଶ ଲୋକରେ ତୋ ନା ବ ପଡ଼ିବ, ତୋର ତେଣ ପୁଣ୍ୟ ହେବ । ଯା ଯା, ଭଲ ଦେଖି ଖଣ୍ଡିଏ ବାରହାତି ଶାଢ଼ୀ

କଣ ଆଉ । ଆଉ ଗୋଟାଏ କଥା ପଦ, ବେଦି ଉପରେ କନ୍ୟା ସମର୍ପିବା ବେଳେ ମୋତେ ନୂଆ ଲୁଗା ପିନ୍ଧିବାକୁ ହେବ ଟିରେ ? ତୁ ତ ଯାଉଚୁ, ମୁଁ ଆଉ ଯିବି କୁଁଆ ? ମୋ ପାଇଁ ଯୋଡ଼ାଏ ଭଲ ଦେଖି ଲୁଗା କାଳି କରି ଘେନି ଆ । ତୋ ନାମରେ କାଳି ଆଣିବୁ, ବାହାଘର ବାଦେ ମୁଁ ଦାମ ଦେବି ଯେ, କଡ଼ା ଗଣ୍ଡା ଛୁଣ୍ଡାଇ ଦେବି ।"

ପଦ୍ମ ଲୁଗା କିଣିବା ପାଇଁ ବାହାରି ଗଲା, ମହାନ୍ତେ ଡାକ ଦେଇ କହିଲେ, "ଆଲୋ ମାଲତୀ ! ଯା ଯା, ଚଞ୍ଚଳ କବାଟ କିଳି ଦେଇ ଆ । ଖବରଦାର ! ସବୁବେଳେ କବାଟଟି କିଳି ଦେଇଥିବୁ । ଆଉ ଶୁଣ, ପଦ୍ମ ଯେ ତେଲ ଜଳପାନ ଆଣିଛି, ଅଳ୍ପ ବାହାରେ ରଖ, ଆଉ ସବୁ ଆଣ, ମୁଁ କଣ୍ଟ ଘରେ ରଖିଦିଏଁ । ଆଉ ଗୋଟାଏ କଥା ଶୁଣ, ଯେଉଁ ଅଜ୍ଞାଅ ମାଇକିନିଆ-ମାନେ କୋଇଲିବୁଢ଼ି ପାରି ଦେଖିବାକୁ ଆସିବେ, ସମସ୍ତଙ୍କୁ ଜଳଖିଆ କରିବାକୁ କହିବୁ, ଚଞ୍ଚଳ ଦେବୁ ନାହିଁ । ଭାତରନ୍ଧା ବେଳ ମଠ ଦେଖିଲେ ସବୁ ପଳାଇଯିବେ । ଖାଲି ପଦ୍ମକୁ ମୁଠାଏ ଖାଇବାକୁ ଦେବୁ ।

ମଧୁପୁର ଗାଁ ଗୋଟାକରେ ଚହଳ ପଡ଼ି ଯାଇଛି, ଆଜି ମାଧ ମହାନ୍ତ ଝିଅ ମାଳତୀର ବିଭା । ମାତ୍ର ମହାନ୍ତଙ୍କ ଦୁଆରକୁ ଅନାଅ, ବିଭାଘରର ଚିହ୍ନ ବର୍ଣ୍ଣ ନାହିଁ, ସବୁଦିନ ପରି ଆଜି ବି କବାଟ କିଳା । ପିଲାଠାରୁ ବୁଢ଼ାଯାଏ ମହାନ୍ତଙ୍କ ଦୁଆରକୁ କେବେ କେହି ଯାଏ ନାହିଁ । ଭୁଲି ଭଟକାରେ କେହି କେବେ ଗଲେ ମହାନ୍ତେ ତା ପିଛୁ ଧରି ବୁଲିଥିବେ, କିଛି ଗୋଟାଏ ଘେନି ପଳାଇବ ପରା ! ଦୁଆର ତ ବନ୍ଦ, ଭାଟଭିକାରୀ ବା କଏ ଯାଉଛି ?

ସଞ୍ଜ ବାଜିଗଲାଣି, ମହାନ୍ତେ ସକାଳ ସିଆଁ ଠେଙ୍ଗାଥିଲାଟି ସଜ କରି ରଖିଦେଲେ, ତେତେବେଳେ ଚଞ୍ଚଳରେ କାଳେ ହାତରେ ନ ପଡ଼େ । ଝିଅ ମୋଟ ବଳିତା କରି ଗୁଡ଼ାଏ ତେଲ ଢାଳିଦେବ ବୋଲି ଆପେ ଗୋଟାଏ ସରୁ ବଳିତରେ କେତେ ଟୋପା ତେଲ ପକାଇ ବେଦି ଉପରେ ଦୀପଟିଏ ବସାଇ ଦେଲେ । ମହାନ୍ତଙ୍କ ଘରେ କେବେ ଦୀପ ଜଳେ ନାହିଁ; ଦିନ ଥାଉଁ ଥାଉଁ ଖିଆପିଆ ପାଇଟି ଛୁଟିଥାଏ ।

ପଦ୍ମ ମାଳତୀକୁ ଗୋଟିଏ ଘରେ ବସାଇ କନ୍ୟା-ବେଶ କରାଇ ଦେଉଛି, ଦୁଇଜଣ କଣ ଘୁସୁର ଫୁସର କଥା ହେଉଛନ୍ତି । ମାଳତୀ ବେଳେ ବେଳେ କାନ୍ଦି ପକାଇଲା ପରି ଆକୁଳରେ ପଚାରୁଛି, "ମା ! କଣ ହେବ ?" ପଦ୍ମ କହିଲା, "ତୁନି ହୋଇ ବସିଥା ଝିଅ । ଖବରଦାର ! ମୋ କଥାରୁ ଟିକିଏ ଆଡ଼ ଅନ୍ତର ହୋ ନା, ସବୁ ଭଣ୍ଡୁର ହେବଟି ? ସବୁବେଳେ ଠାକୁରଙ୍କୁ ଡାକୁଥା ।" ମାଳତୀ ଠାକୁରଙ୍କ ଆଡ଼କୁ ଅନାଇ ହାତଯୋଡ଼ି ଦଣ୍ଡବତଟା କଲା ।

ରାତି ପହରେ ବି ଗଡ଼ିଗଲାଣି, କାହିଁ ବର ? ମହାନ୍ତେ ଘର ବାହାର ହଉଛନ୍ତି, ବେଳେ ବେଳେ ବାହାରକୁ ବାହାରି ଚଢ଼ି ଦାଣ୍ଡକୁ ଅନାଉଛନ୍ତି ।

ମିଛୁପୁର ଗାଁରୁ ଯୋଡ଼ାଏ ମଣିଷ ଧାଇଁ ଧାଇଁ ଆଇଲେ, ମୁଣ୍ଡରେ ଦେହରେ ଗୋଟାଝାଳ, ନିଶ୍ୱାସ ବନ୍ଦ ପଡ଼ୁଛି । ମହାନ୍ତଙ୍କୁ ଖବର ଦେଲେ ବାହା ଲଗୁଡ ତିନିଶ ଟଙ୍କାରୁ ପଞ୍ଚାଶ ଟଙ୍କା ଉଣା ପଡ଼ି ଯାଇଛି, ଆଜି ରାତିରେ ଟଙ୍କା ସଜିଲ କରି ଶେଷ ରାତିରେ ଅନୁକୂଳ କରି ଦେଲେ ଦିନ ଦେଢ଼େ ସରିକି ବର ଏଠାରେ ପହଞ୍ଚିବ ।

ମହାନ୍ତେ ପଦ୍ମକୁ ଡାକି କହିଲେ, "ଆଲେ ! ବର କାଲି ସକାଳେ ପହଞ୍ଚିବ, ତୁଛାଟାରେ ରହି ବସିଲେ କଣ ହେବ ? ମୁଁ ଶୋଇବାକୁ ଯାଉଛି, ତୁ ଝିଅକୁ ଧରି ଶୋ ଯା । ବୁଝିଲୁ ଖବରଦାର !

ଜାଗ୍ରତ ହୋଇ ଶୋଇଥିବୁ, ଜନସପଟ ତେଣେର ବାହାରେ ପଡ଼ୁଛି ।"

ବେକ ଉପରେ ଘାଟି ନଗାଇ ଦେଇ ମହାନ୍ତିଏ ଶୋଇବାକୁ ଗଲେ ।

ରାତି ଅଧାଅଧି ବାଜିଗଲାଣି, ମହନ୍ତେ ତୋଷା ଭିତରେ ଢେଜେ ହୋଇଛନ୍ତି, ପାଖଲୋକେ ବେଢ଼ି ବସିଛନ୍ତି । ଆଜି ରାତିରେ ଗଞ୍ଜେଇ ମୁଣି ମେଲା, ଶଲମ ଶୀତଳ ହେବାକୁ ନାହିଁ ।

ମହନ୍ତେ ଡାକ କହିଲେ, "ଆରେ ଖ୍ୟମା ! ଆରେ ନକୁଲା ! ସବୁ ଠିକଠାକ କର ଦେଇ ଅଇଲ ତ ?" ଖ୍ୟମା ନକୁଳା ଦୁହେଁଯାକ କହିଲେ—ଆଜ୍ଞା ପ୍ରମାଣେ ସବୁ ଠିକ ।

"ପଦ୍ମକୁ ଭଲକରି ବୁଝାଇ ଦେଇଛ ?"

"ଆଜ୍ଞା—ପ୍ରଭୁ ! ପଦ ପଦ କର ସବୁ କଥା କହିଛୁ ।".

"ଟୋକୀଟା କଣ କରୁଛି ?"

"ଭାରି ଆକୁଳ ହେଉଛି, ବେଳେ ବେଳେ କାନ୍ଦି କାନ୍ଦି କହୁଛି, ମା ! କଣ ହେବ ? ବାପା କଣ କହିବ ?"

"ପଦ୍ମ ତାକୁ ବୁଝାଉଛି ତ ?"

"ଆଜ୍ଞା ! ଆଜ୍ଞା !"

"ଭିତରକୁ କପରି ଗଲ ରେ ?"

ଆଜ୍ଞା ବାଡ଼ିଦୁଆର କବାଟରେ ଠୁକ୍ ଠୁକ୍ ମାରିଲୁ, ପଦ୍ମ ଫିଟାଇ ଦେଲା ।"

ତେତିକବେଳେ ଶଙ୍କର ପାଖଲୋକ ଧାଇଁ ଆସି କହିଲ, "ଆଜ୍ଞା ! ବାଜା ପାଲିକି ମଶାଲ ବରଯାତ୍ରୀ ଗମ୍ଭାରି ବାଲରେ ବସିଛନ୍ତି, ଆଜ୍ଞାପ୍ରମାଣେ ହାଜର ହୋଇଯିବେ ।"

"ଆଚ୍ଛା, ଏବେ ଯାଇ ବିନୋଦିଆକୁ ବରବେଶ କରାଇ ପକାଅ, ବାହା ଖଦି ଲୁଗା ପିନ୍ଧାଇ ଦିଅ ।"

ରାତି ପାହା ପାହା, ଟିକିଏ ଝିଲିଝିଲିଆ ଅନ୍ଧାର ଅଛି, ମାଧମହାନ୍ତିଙ୍କ ଦୁଆରେ କୋଡ଼ିଏ ତିରିଶଟା ଢୋଲ, ତାସା ନାଗରା ବାଜା ଏକାବେଳକେ ଉଚ୍ଛୁଳି ପଡ଼ିଲା, ପାଲିକି ଟିଏ ଦୁଆର ଆଗରେ ଥୁଆ, ବର ଖଣ୍ଡିଏ ଖରଡ଼ିରେ ପିଣ୍ଡାରେ ଡୁନ ହୋଇ ବସିଛି । ଚଟକର ମହାନ୍ତିଙ୍କ ନିଦ ଭାଙ୍ଗିଲେ, ଟଙ୍କା ଥଳିଟି କାଖରେ ଯାକ ଭାରି ମନ ଫୁଲଣାରେ ଧାଇଁଲେ । ଆଗେ ଟଙ୍କା ଗଣିନେବେ, ପଛେ ବାଟବରଣ ହେବ । ଚଞ୍ଚଳ ଧାଇଁଛନ୍ତି, ଦୁଆର ବନ୍ଧଟା ଧଡ଼୍ କରି ମୁଣ୍ଡରେ ବାଜିଲା, ଏକାବେଳକେ ଓଲଟି ଚିତ୍‌ପଟାଙ୍ଗ୍, ତଳେ ପଡ଼ିଗଲେ । ହାତ ଦେଇ ଦେଖିଲେ, ରକ୍ତ ଧାର ଗୋଡ଼ଯାଏ ବହି ପଡ଼ୁଛି । ଏତେବେଳେ ଆଉ ତାକୁ ଅନାଇଲେ ହେବ ? ଆଗେ ଟଙ୍କା ଗଣିନେଇ ସାରି ରକ୍ତ ପୋଛାପୋଛି କରିବେ । ତୋଷ୍ଟ ଖଣ୍ଡ ଭଲକରି ମୁଣ୍ଡରେ ଗୁଡ଼ାଇ ଦେଲେ, ବାହାରକୁ ବାହାରି ପଡ଼ି—"ଆସିବା ହେଉ, ବସିବା ହେଉ," ବରଯାତ୍ରୀଙ୍କୁ ଡାକୁଛନ୍ତି । ବର ମାମୁ ଆଗେଇ ଆସି କହିଲେ, "ଏ ସମୁଧିଏ ! ଆଉ ବସିଲେ କଣ ହେବ, ଚଞ୍ଚଳ ବର କନ୍ୟା ବିଦା କରନ୍ତୁ; ଖରା ଉଠିଯିବ ।" ମାଧ ମହାନ୍ତିଏ କହିଲେ, "ଏଁ - ଏଁ— ବର ଏଇଲାଗେ ପହଞ୍ଚିଲା, ବିଭା ହୋଇ ନାହିଁ, ବିଦା କଣ ହେବ ?"

ବରମାମୁଁ—ହାତଗଣ୍ଡି ପଡ଼ିଗଲା । ବିଭା ହୋଇଗଲା; ଆଉ ବ କଣ ।"

ମହାନ୍ତି—କନ୍ୟାସୁନା ଟଙ୍କା ?

ବର ମାମୁ—ଟଙ୍କା ଗଣି ନେଲ ପରା ?

ମହାନ୍ତିଙ୍କ ଫଟା ମୁଣ୍ଡ ପୋଡ଼ୁଥିଲା, ତା ଉପରେ ଜଳନ୍ତା ଅଙ୍ଗାର ପାଛିଆଏ କିଏ ଅଜାଡ଼ି ଦେଲା । ଏଁ—ଏଁ – ଏ କଣ ଡକାଏତି ! ବଦମାଏସ୍ ଗ୍ରେର କେଉଁଠିକାର । ଲାଗିଗଲା ତୋଖଡ଼ା ମୋଖଡ଼ା । ଏଣେ ମହାନ୍ତିଏ ଏକା—ତେଣେ ତିରିଶ ପଚିଶ ଲୋକ ।

ମହାନ୍ତଏ କ୍ରୋଧରେ ଅଜ୍ଞାନ, ମୁହଁ ଚକ୍ଷୁ ଚକ୍ଷୁ ହାତ ଚଳବାଭଳ ହେଲାଣି । ହେଲେ ବକ୍ଷରେ କ୍ରୋଧ ନାହିଁ, ଭଲକର ଅନାଅ, ସମସ୍ତଙ୍କ ମୁହଁରେ ମୁରକ ହସ; ସମସ୍ତ ଦେହ ଝିପାଝିପି ହେଉଛନ୍ତି । ଏତିକବେଳେ ଆଠଦଶଟା ଢୋଲିଆ ମହାନ୍ତଙ୍କୁ ବେଢ଼ି ଯାଇ ଅର୍ଦ୍ଧାକଆ ଢୋଲ ପିଟୁଛନ୍ତି, ମହାନ୍ତ ସାନ୍ତଙ୍କ ବଲବଲ ହେ—ଜଲ ଜେଲ ହେ—ଆପଣଙ୍କ ଝିଅ ବାହାଘର ହୋଇଗଲା, ଆମକୁ ଦାରୁପିଆ ପଇସା ମିଳିଯାଉ । ମହୁରିଆଟା ବେଳେ ବେଳେ ମହାନ୍ତଙ୍କ କଣ୍ଠ ପାଖରେ ପେଁ—ପେଁ କର ମହୁରିଟା ବଜାଇ ଦେଉଛି । ଗାଁ ମଙ୍ଗଳା ପୂଜା ବେଳେ ବାଜା ମଧ୍ୟରେ କାଳସି ଯିମିତି ନାଚେ, ମହାନ୍ତଏ ସେହିପରି ନାଚ ନାଚ ଅଥୟ ହେଲେଣି । ମହାନ୍ତଏ ରଡ଼ି ଛୁଡ଼ି କଣ କହୁଛନ୍ତି, ବାଜାରେ କଣ ଲୋକଙ୍କୁ ସେ କଥା ଶୁଭୁଛି ? ମହାନ୍ତଙ୍କୁ ହାଲିଆ କର ପକାଇବାର ଏ ଗୋଟାଏ ଫିକର । ଏତିକବେଳେ କଏ ଗୋଟାଏ ଦୁଷ୍ଟଲୋକ ମହାନ୍ତଙ୍କ ପଛଆଡ଼େ ଗୋଟାଏ ଜଳନ୍ତା ଭୁଇଁଚମ୍ପା ବସାଇ ଦେଲା, ତାଙ୍କ ପିଠିରେ ନିଆଁ ପଡ଼ି ସାନ ବଡ଼ ଢେର ଗୁଡ଼ାଏ ଫୁଟକା ହୋଇ ଜଳୁଛି ।

ଗାଁ ଗୋଟାକର ପିଲାଠାରୁ ବୁଢ଼ାଯାଏ ବଳକୁଳ ଲୋକ ଜମା ହୋଇଗଲେଣି । ମହାନ୍ତ ଦୁଆରେ ବଶ ମୁଠାଏ କେହି ବୁଣି ଦେଲେ ମଣିଷ ମୁଣ୍ଡରେ ଅଟକ ଯିବ, ତଳେ ପଡ଼ିବ ନାହିଁ ।

ମହାନ୍ତ ଦେଖିଲେ, ତାଙ୍କ ମୁଖାଳାପ ଲୋକେ ବେଢ଼ିଯାଇ ଠୋ ଠୋ ହସୁଛନ୍ତି । ଏତିକବେଳେ ଗୁଡ଼ାଏ କହାତ ଦୁଷ୍ଟପିଲା—

"କନ୍ୟା ସୁନାର ବଡ଼ ମଜା,
ମହାନ୍ତ ଖାଇବେ ନବାତ ଖଜା ।"

ଗୀତ ଗାଇ ତାଳି ମାର ନାଚୁଛନ୍ତି ।

ମହାନ୍ତ ଦେଖିଲେ, ଆଉ ସମ୍ଭାଳ ହେବନାହିଁ । ସମସ୍ତେ ଗୋଟାଏ ବାଉଁ, କାହାକୁ କଣ କହିବେ, କହିଲେ ବା ଶୁଣୁଛି କଏ ? କୌଣସି ରୂପେ ଗୋଳମାଳ ଠେଲି ମଠ ଭିତରକୁ ପଳାଇଲେ । ମହନ୍ତ ଏତିକାବେଗେ ଶେଯରୁ ଉଠି ବଜେ ହୋଇଛନ୍ତି । ମହାନ୍ତଙ୍କୁ ଆସିବାର ଦେଖି ମହନ୍ତ ଗୋଟାଏ ପାଟି କର କହିଲେ, "ସକାଳଟାରେ ଦାଣ୍ଡରେ କଏ ପାଟି କରୁଛି କୁହିଁ ଆସ ତ ?" ମହାନ୍ତ ଯାଇ ମହନ୍ତଙ୍କ ଗୋଡ଼ତଳେ ଧଡ଼ାସ କର ପଡ଼ି ରଡ଼ି ଛୁଡ଼ଉଛନ୍ତି । "ଉଠ ଉଠ ମହାନ୍ତଏ, କଣ, କଥା କଣ ବୋଲ ।" ମହାନ୍ତଙ୍କ ମୁହଁରୁ ତାଡ଼ଠେକା ମୁହଁ ପର ଫେଣ ଗାଜୁଛି । ଆଉ କଥା କହି ପାରୁ ନାହାନ୍ତି, କି କାନ୍ଦ ପାରୁ ନାହାନ୍ତି । ହାତରେ ଠାରିଦେଲେ—ପାଣି । ମୁହଁ ଅଧିଆ, ଦାନ୍ତ ଅଧଷା ଢକଢକ କର ତାଲେ ପାଣି ପିଇ ଦେଇ ଟିକଏ ସାଷ୍ଟମ ହୋଇ ବସିଲେ । ମହନ୍ତ ବଡ଼ ଦୟାବନ୍ତ, ବହୁତ ଆଶ୍ୱାସନା କର ମହାନ୍ତଙ୍କ ପିଠିରେ ହାତ ବୁଲାଇଲେ । ଏତିକାବେଳେ ବରମାମୁ, ପର ପଇଡ଼ା ଆଉ ଗୁର ଜଣଙ୍କୁ ସାଙ୍ଗରେ ଧର ମହନ୍ତଙ୍କ ଗୋଡ଼ତଳେ ଲମ୍ବ ହୋଇ ପଡ଼ିଗଲା ।

ମହନ୍ତ ଆଜ୍ଞା କଲେ—ଆରେ କଣ ତୁମ କଥା କହ, ଉଠ ଉଠ—ବୋଲ ବୋଲ କଥା କଣ ?

ପର ପଇଡ଼ା ହାତଯୋଡ଼ି କହିଲା—ଆଜ୍ଞା ଆମେମାନେ ବିଦେଶୀ ଲୋକ, ଆମ ଉପରେ ଅନ୍ୟାୟ ହୋଇଛି । ଶ୍ରୀମହାପ୍ରଭୁ ଏ ଗାଁ ହାକମ, ଆମ ମାମଲା ନ୍ୟାୟ ବିଗୁର ହେଉ । ଏଇ ଯେ ବସିଛନ୍ତି । ମାଧ ମହାନ୍ତଏ ଏ ଆମ ସମୁଧି । ମାଧ ମହାନ୍ତ କ୍ରୋଧରେ କହିଲେ, "ଚୋର କି ସମୁଧି ବେ—ଡକାଏତ ଜୁଆଚ୍ଚୋର !" ମହନ୍ତ କହିଲେ, "ରୁହ ରୁହ ମହାନ୍ତଏ । ସେ କଣ କହୁଛି କହିପାଉ, ତା ବାଦେ ତୁମ କଥା ଶୁଣିବୁଁ ।"

ପରି ପରିଡ଼ା—ଆଜ୍ଞା, ଏହି ମହାନ୍ତ ଏ ମୋ ପାଖରୁ କନ୍ୟାସୁନା ସାତ ଶହ ଟଙ୍କା ନେଇ ତାଙ୍କ ଝିଅ ମାଳତୀକୁ ମୋ ଭଣଜାକୁ ବାହା ଦେଲେ, ହାତ ଗଣ୍ଠି ବି ପଡ଼ିଗଲା, ବାହା ବାଦେ କହିଲେ, ଆଉ ତିନିଶ ଟଙ୍କା ଲଗିବ ଦେ, ମୁଁ ଆଉ କିଁଏ ଦେବିଟି ? ଏବେ ଜୁଆରେଗ୍ରା କରି କନ୍ୟାକୁ ଛାଡୁ ନାହାନ୍ତି ।

ମହନ୍ତ—ଆଚ୍ଛା, ଠାକୁର ମନ୍ଦିରରେ ସତ ବୋଲ, ଏକ ଦୁଇ କରି ଟଙ୍କା ଗଣି ଦେଇଛ ତ ?

ପରି ପରିଡ଼ା—ଆଜ୍ଞା ସତ କହିବି, କୋଡ଼ି କୋଡ଼ି ଟଙ୍କା ଗଣି ଦେଇଛୁ ।

ମହନ୍ତ—ଏ କଥା ବିଶ୍ୱାସ ହେଉନାହିଁ । ମହାନ୍ତ କିଛି ପିଲାପିଚିକା ନୁହନ୍ତି, ବୁଢା ପୁରୁଖା, ଟଙ୍କା ନେଇ ମାନିବେ ନାହିଁ, ଏ କି କଥା ?

ମାଧ ମହାନ୍ତ ମହନ୍ତଙ୍କ ଗୋଡ଼ତଳେ ପଡି କହିଲେ, "ଆଜ୍ଞା ଧର୍ମ ଅବତାର ! ନ୍ୟାୟବିଚାର, ନ୍ୟାୟ ବିଚାର । ଏ ଡକାଏତମାନଙ୍କୁ ଲୋକ ଲଗାଇ ତଡ଼ି ଦିଅନ୍ତୁ ।"

ମହନ୍ତ—ଦେଖ ଏମାନେ ବିଦେଶୀ ମଣିଷ, ଦେଶରେ ଯାଇ ପାଟି କରିବେ, ଏ ଗାଁରେ ନ୍ୟାୟ ବିଚାର ନାହିଁ । ଦୁଇ ପକ୍ଷରୁ ପ୍ରମାଣ ନେଇ କଥାଟା ବିଚାର କରିବାକୁ ହେବ । ହୋଇ ହେ ପରିଡ଼ା ! ତୁମେ ଯେ ମାଧ ମହାନ୍ତିଙ୍କୁ ସାତ ଶହ ଟଙ୍କା ଗଣିଦେଲ, କେହି ଗୁହା ଅଛି ?

ପରି ପରିଡ଼ା ହାତଯୋଡ଼ି ଛିଡ଼ା ହୋଇ କହିଲା, "ଆଜ୍ଞା ମହାପ୍ରଭୁ, ଶହେ ଜଣ ଗୁହା । ଆସ ତ ଖେମା, ନକୁଳା, ମଙ୍ଗା, ଶଙ୍କରା, ଚନ୍ଦା, ମଧୁ ମହାନ୍ତ, ସାଧୁଚରଣ, ଧର୍ମୁ ପାତ୍ର ।" ମହନ୍ତେ ଜଣ ଜଣକର ସବୁ ଗୁହାଙ୍କର ଜବାନବନ୍ଦ ଶୁଣିଲେ, ଜେରା ଜେରା କଲେ, ସଫ୍ ସାବ୍ୟସ୍ତ ସାତ ଶହ ଟଙ୍କା ଗଣିଦେବା, ମହାନ୍ତଙ୍କ କାଖରେ ଥିବା ଏହି ଥଳିରେ ଟଙ୍କା ପୂରାଇ ନେଇ ଘରେ ଥୋଇ ଆସିବା, ସବୁ ଠିକ୍ । ସତକୁ ସତ, ମାଧ ମହାନ୍ତଙ୍କ କାଖରେ ଟଙ୍କା ଥଳିଟି ଥିବାର ଦେଖାଗଲା । ମାଧ ମହାନ୍ତଏ ଗୋଟାଏ କଥାରେ କାଟିଦେଲେ—ଏ ଗୁଡ଼ାକ ଡକାଏତ ।

ମହନ୍ତେ—ଆଚ୍ଛା ଏ ଗାଁର କେହି ଗୁହା ଅଛି ?

କେହି ନ ଡାକୁଣୁ ମହାନ୍ତ ଜାତିଭାଇ ଗାଁର ଦଶ ଜଣ ସାକ୍ଷ ଦେବା ଲାଗି ଛିଡ଼ା ହୋଇଗଲେ । ମହାନ୍ତଏ ସେମାନଙ୍କ ମୁହଁକୁ ଅନାଇ ଦେଇ କହିଲେ, "ଆଜ୍ଞା ଏଗୁଡ଼ାକ ମୋ ମୁଖାଲାପ ଲୋକ, ଏମାନଙ୍କ କଥା ନାମଞ୍ଜୁର ।" ମହନ୍ତେ କହିଲେ, "ଗୁହା କଥା ଛାଡ଼ିଦିଅ, ଆମେ ନିଜେ ଯାଇ ମହାନ୍ତଙ୍କ ଘର ଭିତର ଦେଖିବୁଁ । ଗଲା ରାତିରେ ବିଭା ହୋଇ ଯାଇଥିଲେ ସେଥିର କିଛି ଚିହ୍ନ ତ ଥିବ ।" ବରପକ୍ଷ ମହନ୍ତଙ୍କ କଥାରେ ନିତାନ୍ତ ନାରାଜ । "ଅଜ୍ଞା ! ଅଧ ରାତିରୁ ବିଭା ଛାଡ଼ିଲାଣି, ଆଉ ଚିହ୍ନ କଣ ଥିବ ? ଆପଣ ସରଜମିନକୁ ଯିବେ ନାହିଁ ।"

ମାଧ ମହାନ୍ତ ଭାରି ଆନନ୍ଦରେ, ଭାରି ଉତ୍ସାହରେ ମହନ୍ତଙ୍କ ଗୋଡ଼ ଧରି ଟାଣୁଛନ୍ତି । "ଆସି ଆଜ୍ଞା ହେଉ, ମୋ ଘର ଦେଖି ଆଜ୍ଞା ହେଉ ।"

ବରପକ୍ଷ ମୁହଁ ଶୁଖାଇ କହିଲେ, "ଆଜ୍ଞା ନା, ଆପଣ ସେ ଜାଗାକୁ ବିଜେ ହେବେ ନାହିଁ ।"

ମହନ୍ତ କହିଲେ, "ନାହିଁ ନାହିଁ, ସେ କଥା ହେବ ନାହିଁ, ମହାନ୍ତଙ୍କ କଥା ଶୁଣିବାକୁ ହେବ ।"

ମହନ୍ତେ ଦୁଇପକ୍ଷ ଧରି ସରଜମିନ ତଦାରଖ କରିବାକୁ ବାହାରିଲେ ।

ପ୍ରଥମ ପିଣ୍ଡା ଉପରେ ବରକୁ ଦେଖାଗଲା—ହାତରେ କଉଡ଼ିକସୂତ୍ର ଦୂବ ବରକୋଳି ପତ୍ର ବନ୍ଧା, ମୁଣ୍ଡରେ ମୁକୁଟ, ହାତରେ ଗୁଆକାତି, ଆଉ ବେଦି ଉପରେ ନଡ଼ିଆ ଗୋଟିଏ ।

ପର ପରଡ଼ା ହାତ ଯୋଡ଼ ମହାନ୍ତଙ୍କୁ କହିଲେ, "ଆଜ୍ଞା ଦେଖି ଆଜ୍ଞା ହେଉ, ବାହା ହେଲା ବର କ ନାହିଁ ।"

ମହନ୍ତ - ଆଚ୍ଛା ଆଚ୍ଛା, ଭିତରକୁ ଚାଲ, ଆଉ କିଛି ଚିହ୍ନ ବର୍ଣ୍ଣ ଅଛି କ ନାହିଁ, ଦେଖାଯାଉ ।

ପର ପରଡ଼ା ହାତଯୋଡ଼ ମହନ୍ତଙ୍କୁ କହିଲେ, "ଏଇ ଦେଖି ଆଜ୍ଞା ହେଉ, ବେଦି ଉପର କଥା, ଏହି ଦେଖିବା ହେଉ, କନ୍ୟା ଆଠ କଳସ ମାଡ଼ୁଛି, ଏହି ଦେଖନ୍ତୁ, ଲାଜାଞ୍ଜଳି ଖଇ ପଡ଼ିଛି, କଳସ ଉପରେ ପୁଷ୍ପାଞ୍ଜଳି ପଡ଼ିଛି । ଏଣେ ଦେଖି ଆଜ୍ଞା ହେଉ, ଏହି-ଠାରେ ବ୍ରାହ୍ମଣ ଭୋଜନ ହୋଇଥିଲା, ଦହି ଗୁଡ଼ ଉଚ୍ଛିଷ୍ଟ ଭୂଜା ପଡ଼ିଛି । ଏହି ଦେଖି ଆଜ୍ଞାହେଉ, ଏହିଠାରେ ଆମେ ଜାତିଭାଇମାନେ ଭୋଜନ କରିଥିଲୁଁ । ସଙ୍କୁଡ଼ି ଉଠିନାହିଁ, ସବୁଆଡ଼େ ଅଇଁଠା ପତ୍ର ପଡ଼ିଛି ।"

ମାଧମହାନ୍ତି କୁନ୍ଥେଇ କୁନ୍ଥେଇ କହିଲେ, "ନାହିଁ, ନାହିଁ, ମୋ ଘରେ କାଲି ଚୂଲି ଲଗିନାହିଁ ।"

ମହନ୍ତେ ରୋଷେଇଶାଳ ପାଖକୁ ଚାଲି ଯାଇ ହାତବାଡ଼ରେ କବାଟଟା ଉଦୁଆ କରି ଦେଲେ, ଚୂଲିରେ ରଡ଼ ନିଆଁ ଗରଗର ହେଉଛି, ପୁଞ୍ଜାଏ ବଡ଼ ବଡ଼ ଭାତହାଣ୍ଡି, ଡାଲି ହାଣ୍ଡି, ତିଅଣ ହାଣ୍ଡି ଗଡ଼ୁଛି । ମାଧ ମହାନ୍ତଙ୍କ ଜ୍ଞାନ ହଜି ଗଲାଣି —ପିଠି ପୋଡ଼ୁଛି, ମୁଣ୍ଡ ପୋଡ଼ୁଛି, ମନ ପୋଡ଼ୁଛି । ମନରେ କଲେ, ଏ କଣ ଏ । କଣ ରାତିରେ ଭୂତ ଆସି ସବୁ କରିଗଲା ? ବସିବା ଜାଗାରେ ଠାଁ ତଳ ପଡ଼ିଲେ । କିଛି କଥା ଶୁଭୁ ନାହିଁ; କିଛି ଦିଶୁ ନାହିଁ, ଭାଲୁଜର ମାଡ଼ ବସିଲାଣି, କୁନ୍ଥୋଉଛନ୍ତି, କମ୍ପୁଛନ୍ତି ।

ମହନ୍ତ ପଚାରିଲେ, "ମହାନ୍ତିଏ ! ଏବେ ତୁମର ଜବାବ କଣ ?"

ମାଧ ମହାନ୍ତି କହିଲେ, "ଆଜ୍ଞା, ମୋ ଝିଅ ବାହା ହୋଇନାହିଁ ।"

ଜାତିର ମୁଖ୍ୟା ବଳରାମ ନାୟକେ ହାତଯୋଡ଼ କହିଲେ, "ଆଜ୍ଞା ! ଆପଣ ଆମ ରଜା, ସହଜରେ ହାକମ, ଆମମାନଙ୍କ ଦୁଃଖ ହାଲ ସବୁ ବୁଝିବେ, ହେଲେ ଜାତିଆଣ କାମଟା ଜାତି ବୁଝିବେ, ହାକମଙ୍କର କିଛି ଅକ୍ତିଆର ନାହିଁ । ବୁଝି ଆଜ୍ଞା ହେଉନ୍ତୁ, ମାଧ ମହାନ୍ତି ମଙ୍ଗଳା ଝିଅଟାକୁ ବାହା ନ ଦେଇ ଘରେ ରଖିଛି, ଆଜ ସୂର୍ଯ୍ୟ ବୁଡ଼ିବାଯାଏ ଯେ ଯଦି ଝିଅକୁ ବାହା ନ ଦିଏ, ସେ ଏକଘରିଆ ହେବ, ତାକୁ ନିଆଁ ପାଣି ଧୋବା ଭଣ୍ଡାରୀ ସବୁ ବାସନ୍ଦ, ସେ ଝିଅଟାକୁ ଆଉ କେହି ବାହା ହେବେ ନାହିଁ ।"

ମହନ୍ତେ କହିଲେ, "ମହାନ୍ତିଏ ହେଲେ ବା ଏକ ଘରିଆ, ନିଆଁ ବଡ଼ଆଟିରେ ଘରେ ନିଆଁ ରଖିଦେବେ, ଚାରି ମାଠିଆ ପାଣି ଘରେ ଥୋଇ ଦେଇଥିବେ, କିଁଏ କାହାକୁ ମାଗିପିବେ ?"

ବଳରାମ ନାୟକେ କହିଲେ,"ଆଜ୍ଞା ସେପରି କଣ ? ମହାନ୍ତିଘର ମାଠିଆ ଯେଉଁ ପୋଖରୀରେ ବୁଡ଼ିବ, ସେ ପୋଖରୀ ଅପ୍ରତିଷ୍ଠା ହେବ, ଦଶ ଟଙ୍କା ଖରଚ କରି ପ୍ରତିଷ୍ଠା କରି ଦେବାକୁ ହେବ । ଏହିପରି ଯେତେ ମାଠିଆ ପାଣି ଆଣିବେ, ତେତେ ଦଶ ଟଙ୍କା ଖରଚ ଲଗିବ । ଆଉ ଗୋଟାଏ କଥା, ଗୋହିରୀରେ ଚାଲି-ଗଲେ ଦାଣ୍ଡ ଅପ୍ରତିଷ୍ଠା ହେବ, ଜଣେ ପାଣି ହାଣ୍ଡିଏ ଗୋବରପାଣି ଧରି ପଛେ ପଛେ ଛିଞ୍ଚି ଛିଞ୍ଚି ଚାଲୁଥିବ ।"

ମହନ୍ତେ କହିଲେ, "ନାହିଁ ନାହିଁ, ସେ ବୁଢ଼ା ହୋଇ ଗଲେଣି, ଭଲ ମନ୍ଦ ବେଳକୁ ତମେମାନେ ସାହା ହେବ, ଏକା ।"

ମଦନ ନାୟକେ—ଆଜ୍ଞା, ଗୋଳମାଳିଆ କଥା କିଁଏ—ସଫା କଥା, ସେ ମରିଗଲେ ଆମ୍ଭେମାନେ କଣ

ଛୁଇଁବୁ ? ହାଡ଼ ଘୋଷାର ନେବେ । ଏଇ ମରେଇ-ମାନଙ୍କରେ ଯେତେ ଧାନ ଅଛୁ, ଯେତେ ଦ୍ରବ୍ୟ ଅଛୁ, ହାଡ଼ିଏ ନେବେ, ସେ ମାରୁ ଜିନିସ କିଏ କେହି ଛୁଇଁବ ?

ମାଧି ମହାନ୍ତ ପଡ଼ି ପଡ଼ି ସବୁ ଶୁଣିଲେ । ବିଚାର କଲେ ଦେଶ ମେଳ ହେଲାଣି, ମହନ୍ତ ବି ସେମାନଙ୍କ ପଟରେ, ମୋର ତ ଏହି ହାଲ, ଉଚ୍ଛୁଣିକା ଯେବେ ସବୁ ବିତ୍ତ ଖୋଲାଖୋଲି କରି ଘେନିଯିବେ, କଅଣ କରିବ ? କାହିଁ ମାମଲି କରିବ—ଗୁହା କିଏ ହେବ ? ବଳରାମ ନାୟକଙ୍କୁ ପାଖକୁ ଡାକି ତାଙ୍କ ହାତଯୋଡ଼ିକ ଧଇଲେ । କହିଲେ, "ତୁମେ ଆମ ଜାତିରେ ମଉଡ଼ମଣି, ମୁଁ ତୁମ ହାତ ଧରୁଛି, ସମସ୍ତଙ୍କ ଗୋଡ଼ତଳେ ପଡ଼ୁଛି ମୋର ସବୁ ଦୋଷ କ୍ଷମା କର, ମୋ ଝିଅଟିକୁ ବିଭା କରେଇ ଦିଅ । ମୋ ହାଲ ତ ଦେଖୁଛ, ତା ମାମୁ କନ୍ୟା ସମର୍ପି ଦେବ ।"

ମହାନ୍ତଙ୍କ ମୁହଁରୁ ଯିମିତି ଏହି ପଦକ ବାହାରିଛି, ମହନ୍ତ କିଏ ଆଖି ଠିପି ଦେଲେ, ପଧି କନ୍ୟାକୁ ଘେନି ବର ପାଖରେ ଉପସ୍ଥିତ । ବ୍ରାହ୍ମଣ ଭଣ୍ଡାରି ହାଜର ଥିଲେ, ସାଙ୍ଗେ ସାଙ୍ଗେ ମନ୍ତ୍ରପାଠ, ବିଭା ଆରମ୍ଭ, ମାମୁ ସପନ ପାଙ୍ଗେ କନ୍ୟା ସମର୍ପି ଦେଲେ, ଘଣ୍ଟାକ ମଧ୍ୟରେ ବିଭା ସମାପ୍ତ ।

ବର କନ୍ୟା ମେଳାଣି ହେବେ—ମାଲତୀ ବାପା ଗୋଡ଼ ଧରି ବାହୁନି ବସିଲା, ମହାନ୍ତଏ ରାଗରେ ଗୋଡ଼ ଛାଟି ଦେଲେ ଯେ କନ୍ୟା ଦୂର କରି ପଡ଼ିଗଲା । ମାଲତୀର ସେଥିକି ଚିନ୍ତା ନାହିଁ, ପୁଣି ବାପା ଗୋଡ଼ ଧରି କହିଲା—"ବାପା, ତୁ ଉଚ୍ଛୁଣିକା ବାଧିକା ପଡ଼ୁଛୁ, ମୁଁ ତୋ ପାଖରେ ରହି ସେବା କରିବି, ତୁ ଭଲ ହେଲେ ଯିବି ।" ମାଧି ମହାନ୍ତ—"ଦୂର୍ ! ଦୂର୍ ! ପନ୍ଦର ବରଷ କାଳ ବସି ଖୁଆଇଲି, ଏବେ ଜଣକୁ ଦି'ଜଣ ବସି ଖାଇବ ପରା ?"

ପଧି ପାଖରେ ଛିଡ଼ା ହୋଇ ସବୁ ଶୁଣୁଥିଲା, ମାଲତୀକୁ କୁଣ୍ଢେଇ ଉଠାଇ ନେଇ ପାଲିଙ୍କିରେ ବସାଇ ଦେଲା । ବର ତ ଆଗରୁ ଯାଇ ବସିଥିଲା, ଉଠାଅ ପାଲିଙ୍କି । ବାଜାବାଲା ଆଉ ବରଯାତ୍ରିଏ ସଜବାଜ ହେଉଁ ହେଉଁ 'ହୁଁ ମେର ଭାଇ ରେ' ଡାକ ଛାଡ଼ି ପାଲିଙ୍କି ଗାଁ ବାହାର ଗଡ଼ିର ବାଲରେ ଦାଖଲ ।

ପାଞ୍ଚ ଛ ଦିନ ଉତ୍ତାରେ ମହନ୍ତ ଦିନେ ପାଖଲୋକଙ୍କୁ ଡାକି କହିଲେ, "ହୋଇ ରେ ! ବିଭାଦିନରୁ ଗଲାଠାରୁ ମାଧି ମହାନ୍ତ ତ ଦାଣ୍ଡରେ ଦିଶୁ ନାହିଁ ? ତାର ଜର ହୋଇଥିଲା, ବୁଝ ତ କଣ ହେଲା ?" ପୋଡ଼ାଏ ପାଖ ଲୋକ ଧାଇଁଲେ, ଦାଣ୍ଡ ଦୁଆରେ, ବାଡ଼ି ଦୁଆରେ ଢେର ଡାକିଲେ, କବାଟରେ ଧଡ଼ ଧଡ଼ କରି ମାରିଲେ, କେହି ଶୁଣିବାକୁ ନାହିଁ । ସେମାନେ କଣ କଲେ କି, ଗୋଟାଏ ନିଶୁଣି ପାଚିରିରେ ଲଗାଇ ଦେଇ ଭିତରକୁ ଡେଇଁପଡ଼ିଲେ, ସଦର କବାଟ ଫିଟାଇ ଦେଲେ । ଭିତର କାଣ୍ଡ ଦେଖି କାବା ହୋଇ ଗଲେଣି । ମହାନ୍ତ ଘର ଦିଡ଼ରଆଡ଼କୁ ମୁଣ୍ଡ ଦେଇ ବାହାରକୁ ଗୋଟାଯାକ ଗୋଟାଏ ବଡ଼ ମୋଟା ଢୋଲ ପରି ଦୁଆରବନ୍ଧ ପାଖରେ ପଡ଼ିଛି । ଅଧା ଲଙ୍ଗଳା—ମୁଣ୍ଡ ଘାଆଟା ମୁହଁର ଅଧାଅଧି ମାଡ଼ିଗଲାଣି । ପଣ ପଣ ମାଛି ଭୁଣଭୁଣ କରୁଚନ୍ତି । ମେଞ୍ଚାକୁ ମେଞ୍ଚା ପୋକ ଘାଆରୁ ଝଡ଼ି ପଡ଼ୁଚନ୍ତି । ଜଣାଯାଏ, ବର ବିଦା ବାଦେ ମହାନ୍ତ ବାହାର ସବୁ କବାଟ ଭଲକରି କିଳି ଦେଇ ଘରକୁ ଶୋଇବାକୁ ଯାଉଥିଲା, ଯାଇ ପାରି ନାହିଁ । ଦୁଆରବନ୍ଧ ପାଖରେ ପଡ଼ିଯାଇଛି । ଟଙ୍କା ଥଳିଟା ଯାହା ସିଇଁ ରଖିଥିଲା ପାଖରେ ପଡ଼ିଛି ।

ଜାତି ଭାଇମାନେ, ପୁରୋହିତ ସମସ୍ତେ ମଠରେ ମହନ୍ତଙ୍କ ପାଖରେ ବସିଛନ୍ତି । ସତ୍କାରର ବିଚାର ଲାଗିଛି । ମାତ୍ର ଗୋଟାଏ କଥା ଉଠିଲା, ମାଛିଆ ପାତକ ହୋଇଅଛି, ଛୁଇଁବ କିଏ ? ଯେ ଛୁଇଁବ, ସେ ପ୍ରାୟଶ୍ଚିତ୍ତ

କରିବ । ତେର ତର୍କ ବିତର୍କ ଉତ୍ତାରେ ସ୍ଥିର ହେଲା, ପ୍ରାୟଶ୍ଚିତ୍ତ ଖର୍ଚ୍ଚ ସକାଶେ ମହନ୍ତଙ୍କ ଲୋକ ମହାନ୍ତି ମରେଇରୁ ଦୁଇ ପୌଟି ଧାନ କାଢ଼ି ଦେବ, ପୁରୋହିତ ମହାଦେବପ୍ରଭୁ ପାଦୋଦକ ମନ୍ତ୍ରି ଦେବ, ସେହି ତିବେଣି ପାଣି ଛିଞ୍ଚି ଦେଲେ ମଡ଼ା ଉପରୁ ସବୁ ପାପ ଧୋଇ ଯିବ । ମହନ୍ତେ ପୁରୋହିତ ବିଶୁ ରଥଙ୍କୁ ପଚାରିଲେ, "ହୋଇ ହୋ,ମହାନ୍ତିଙ୍କୁ ମାଛିଆ ପାତକ ଲାଗିଲା କିଁୟା ? ରଥେ କହିଲେ, ଆଜ୍ଞା ! ପୁରାଣ ଶାସ୍ତ୍ରରେ ଲେଖା ଅଛି—

"ବୁଢ଼ା ବରେ ଝିଅ ଦିଏ ଯେ ଲୋକ,
ସେ ଲୋକ ମୁଣ୍ଡରେ ପଡ଼ଇ ପୋକ ।"

ଆଜ୍ଞା, ପ୍ରମାଣ ଦେଖନ୍ତୁ—ଠିକ ମୁଣ୍ଡରେ ମାଛିଆ ପାତକ ଗୋଡ଼ରେ ନୁହେ, ହାତରେ ନୁହେ, ପିଠିରେ ନୁହେ—ଠିକ ମୁଣ୍ଡରେ । ଶାସ୍ତ୍ର କଥା କଣ ଅନ୍ୟଥା ହେବ ?

ଆଠ ଜଣ ଜାତପୁଅ ନାକରେ ଲୁଗା ଗୁଡ଼ାଇ ଭିତରକୁ ଗଲେ । କାଳେ ମଡ଼ା ଦେହରେ ଆଉ କିଛି ପାତକ ଲାଗି ରହିଥିବ, ସେ ପାପ ଧୋଇ ଯିବା ଲାଗି ହାଣ୍ଡିଏ ଗୋବର ପାଣି ମଡ଼ା ମୁଣ୍ଡଠାରୁ ଗୋଡ଼ଯାଏ ଛିଞ୍ଚିଦେଲେ ।

ଗାଁ ଗୋହରି ମଝିରୁ 'ହରି ବୋଲ ! ରାମନାମ ସତ୍ୟ ହେ !' ଗୋଟାଏ ଉତ୍କଟ ରଡ଼ି ସମସ୍ତେ ଶୁଣିଲେ ! ସବୁ ଶେଷ ! ଏତେ ପଚା ମଡ଼ା, ପୋଡ଼ିବ୍ଧ କିଏ ? ମଶାଣି କିଆବାଡ଼ ତଳେ ଥୋଇ ଦେଇ ଆସିଲେ ।

"ଝିଅ ଜୁଆଇଁ ଆସି ବୁଢ଼ାର ବିପ୍ରାକ୍ଷା ଭଲକରି କଲେ । ଗାଁ ଜାତ ଅଜାତ ସମସ୍ତଙ୍କୁ ନିମନ୍ତ୍ରଣ ଦେଇ ଖଜା, କାକରା, ପିଠା, ପାଲୁଅ ଚସିଁ କରି ଦୁଇ ତିନି ଥର ଖୁଆଇଲେ । ଗାଁରେ ଝିଅ ଜୁଆଁଇଙ୍କର ଖୁବ୍ ପ୍ରଶଂସା ଉଠିଲା ।"

ମଠ ସରିଗଲା। ବିନୋଦିଆର ନାମ ଏବେ ଜମିଦାର ବାବୁ ବିନୋଦବିହାରୀ ମହାନ୍ତି । ଗୋପାଳ-ପୁର ତାଲୁକ ଜମିଦାରୀଟା କିଣିଲାଣି, ସଦର ଗୁମାସ୍ତା ଯୋଡ଼ିଏ, ସଦର ପାଇକ ଅଠ ଦଶଟା । ସ୍ଥିର ଖଞ୍ଜା ଧୂଳିଆ ଘର ବନାଇ ପକାଇଲାଣି । ବାହାରୁ ଦେଖିଲେ ଗୋଟାଏ ବଡ଼ ଜମିଦାର ଘର ବୋଲି କିଏ ନ କହିବ ?

ବାହାର ଲୋକେ ଅନୁମାନ କରନ୍ତି, ମାଧ ମହାନ୍ତି ଘରେ ଟଙ୍କା ଦୁଇ ଲକ୍ଷ ପୋତା ଥିଲା ।

"ଅରଜ ଛିଞ୍ଚି କୃପଣ ମରେ
ଗୁଡ଼ମାଟିଆ ମାଛିଆ ମାରେ ।"

---

## କାଳିକା ପ୍ରସାଦ ଗୋଟିପ

ବାବୁ ଶିବପ୍ରସାଦ ଚୌଧୁରୀଏ କହିଲେ, "ଆଜ ଦିନ ଦୁଇ ପ୍ରହର ବେଳେ ସଭା ବସିବା କଥା, କାଲି ଓପର ଓଳିଠଁ ମହାଜନମାନଙ୍କୁ ଜଣାଇ ଦିଆଯାଇଛି— ଦେଖନ୍ତୁ, ଉଚ୍ଛୁଣିକା ଚଉଦ ଘଡ଼ି ବେଳ ଟଳିବାକୁ ବସିଲାଣି । ସମସ୍ତଙ୍କର ଦେଖାସାକ୍ଷାତ ନାହିଁ, ଭାରି ଦରକାରି କାମରେ ଏପରି ମଠ କଲେ କି ଚଳେ ?"

ବାବୁ ଜଗବନ୍ଧୁ ମଲ୍ଲେ କହିଲେ, "ହେଲେ, ହେଉ, ଆହେ ମାଗୁଣି ମହାନ୍ତିଏ ଲେଖି ପକାଉନ୍ତୁ ତ ! କିଏ କିଏ ବାବୁ ଆସିଲେ, ଖଣ୍ଡେ କାଗଜରେ ସେମାନଙ୍କ ନାମ ଟିପିଯାଆନ୍ତୁ ।"

ଗୁମାସ୍ତା ମାଗୁଣି ମହାନ୍ତିଏ ଫର୍ଦ୍ଦେ ବାଲେଶ୍ୱରୀ ଛଣି କାଗଜ ଗାର କାଟିଲା ପରି ଆଠ ଭାଙ୍ଗ କରି ଚୌତିଲେ । ପାଖରେ ଗୋଟାଏ ମାଟି ଦୁଆତରେ ଅଧେ କଳା ଅଧେ କାଳ ପୂରି ଥିଲା, ଗୋଟାଏ ଶରକାଠି କଲମ ଧରି ଲେଖିବାକୁ ଲାଗିଲେ ।

ଶ୍ରୀ ଶ୍ରୀ ଶାମରାଏ ମହାପ୍ରଭୁ ଚରଣେ ଶରଣ ।

ତୁଲ ଷୋଳ ଦିନ ଶୁକ୍ଳ ଦୁତିଆ ଗୁରୁବାର ବାବୁ ରଘୁନାଥ ଦେଙ୍କ ଘଟୋରେ ସଭା ବସିଲା, ଏହି ବାବୁମାନେ ସଭାରେ ବିରାଜମାନ କଲେ ।

୧ । ଶ୍ରୀ ଶ୍ରୀ ବାବୁ ରଘୁନାଥ ଦେ
୨ । ଏଜ୍ନ ଶିବପ୍ରସାଦ ଚୌଧୁରୀ
୩ । ଏଜ୍ନ ଜଗବନ୍ଧୁ ମଲ୍ଲେ
୪ । ଏଜ୍ନ ରାମଦାସ ମହାପାତ୍ରେ
୫ । ଏଜ୍ନ ନାକଫୋଡ଼ ନାୟକେ
୬ । ଏଜ୍ନ ନବଘନ ଶ୍ୟାମସୁନ୍ଦର ପ୍ରସାଦ ରାଉତେ
୭ । ଏଜ୍ନ ପରମ ପଟ୍ଟଜୋ
୮ । ଏଜ୍ନ ଚରଣ ଦାସେ

ଗୁମାସ୍ତା ନାମ ଲେଖି ସାରି ଯେଉଁ ଯେଉଁ ଅକ୍ଷରରେ ବହଳ କାଳି ଲାଗି ଶୁଖି ନ ଥିଲା, ଖଣ୍ଡେ ସଫା ଘରୁ କନାରେ ସରୁ ବାଲି ବନ୍ଧା ପୁଟଳା ସେଥିରେ ଥାପି ଦେଇ ନାମ ଡାକଦେଲେ ।

ବାବୁ ଚରଣ ଦାସେ କହିଲେ, "ହେଲା—ହେଲା, ଯେଉଁମାନଙ୍କର ଆସିବାର ନିହାତି ଦରକାର, ସେମାନେ ତ ଆସିଗଲେ, ଆଉ କାହାର ଆସିବାର ଥିଲେ ପଛରେ ଆସୁଥାନ୍ତୁ । ଆଉ ବସିବାର ଲୋଡ଼ା ନାହିଁ ।

ବାବୁ ପରମ ପଟ୍ଟଜୋ କହିଲେ, "ଅହେ ଚୌଧୁରୀ ସାହେ ! ଆଜି ସଭାରେ କଣ କଥା ଅଛି ପକାନ୍ତୁ, ଆଉ ମଠ କ୍ୟାଁ ?"

ବାବୁ ଶିବପ୍ରସାଦ ଚୌଧୁରୀଏ କହିଲେ, "ଆଉ କହିବୁ କଣ ? ସମସ୍ତେ ତ ଏକା ନାରେ ବସିଛୁଁ— ଯେଉଁ ଗଜବନ୍ଦିନୀ ଚଢ଼ିଲାଣି, ଜାହାଜାତି କାରବାର ଏଣିକି ଇତି । ସମସ୍ତେ ତ ଦେଖୁଛନ୍ତି, ଆଜକୁ ବର୍ଷ ଦିଟା ଭିତରେ ପଟ୍ଟଜୋ ବାବୁଙ୍କର ରାଜରାଜେଶ୍ୱରୀପ୍ରସାଦ, ମଲ୍ଲଙ୍କର ଦୁର୍ଗାପ୍ରସାଦ, ଧରନ୍ତୁ ମୋର ଲକ୍ଷ୍ମୀପ୍ରସାଦ, ନାୟକ ବାବୁଙ୍କର ରାମପ୍ରସାଦ, ଏବେ ଦେଖନ୍ତୁ ଦେ ବାବୁଙ୍କର କାଳିକାପ୍ରସାଦ । ପାଣି ନାହିଁ, ପବନ ନାହିଁ ଲାଗଲାଗ ପାଞ୍ଚ ଖଣ୍ଡ ବାହାର ଦରିଆରେ ଗୁମ୍ ! ଆମ୍ଭେମାନେ ମନରେ କରିଥିଲୁ, ଡୁବ ପାହାଡ଼ରେ ଠୋକର ବାଜି ଯାଉଛି । ଦରିଆ ଭିତରେ ଢେର ଢେର ପାହାଡ଼ ଡୁବି ରହିଛି, ଭଟା ବେଳେ ଟିକିଏ ଟିକିଏ ମୁଣ୍ଡ ଦିଶେ, ଜୁଆର ବେଳେ ଲୁଚି ଥାଏ । ଏଣେ ଜାହାଜ ତ ଘୋଡ଼ା ପରି ଧାଇଁଥାଏ, ମାଝି କଳି ପାରେ ନାହିଁ, ପାହାଡ଼ ଛୁଇଁଲା ତ ଛତୁ ! ଏବେ ସବୁ ପ୍ରସଙ୍ଗ ସାଫ ଧରା ପଡ଼ିଗଲା । "ଆହେ ଦେ ସାହେ, ଆପଣଙ୍କ ତଣ୍ଡେଲକୁ ଡାକନ୍ତୁ ତ, ବାବୁମାନଙ୍କ ଆଗରେ ସବୁ ହାଲ ବୟାନ କରି ଯାଉ ।"

ବାବୁ ରଘୁନାଥ ଦେ ଡାକଲେ—"ଆରେ ହରି ତଣ୍ଡେଲ ! ମୂଳରୁ ଶେଷଯାଏଁ କଣ ଘଟିଲା, ବାବୁମାନଙ୍କ ଆଗରେ ବୟାନ କରିଯା ତ । ଖବରଦାର ! ପଦେ ବି ଛାଡ଼ିବୁ ନାହିଁ ।"

ହରି ତଣ୍ଡେଲ ଗାମୁଛା ଖଣ୍ଡ ବେକରେ ପକାଇ ବାବୁମାନଙ୍କୁ ଜଣ ଜଣ କରି ଭୂଇଁରେ ମୁଣ୍ଡ ଲଗାଇ ଦଣ୍ଡବତ କଲା । ତହିଁ ବାଦେ ବାବୁମାନଙ୍କ ମୁହଁକୁ ଅନାଇ କହିବାକୁ ଲାଗିଲା—

"ଆଜ୍ଞା, ଗଲା ବରଷ ମକର କୃଷ୍ଣ ଦୁତିଆ ଦିନ ଦିପହରିଆ ଭଟାରେ ଆମ୍ଭେମାନେ ଗୁରିଖଣ୍ଡ ଜାହାଜ ବନ୍ଦର ଘାଟରୁ ଗଡ଼ିଗଲୁଁ । ନଈ ଭିତରେ ଭଟା ଧରି ଯାଉଁ ଯାଉଁ ତିନଦିନ ଦିନ ଓପର ଓଳ ମୁହାଣ ଟପି ସଞ୍ଜବେଳେ ଦରିଆରେ ଲଙ୍ଗର କଲୁଁ । ଗୁରି ଜାହାଜ-ଯାକ କୋଣକୋଣକ ଛଡ଼ା ଲଙ୍ଗର କରିଥାଉଁ । ତହିଁ ଆରଦିନ ଝୁବ୍‌ସକାଳେ ପୂବଦିଗରେ ଯିମିତିସୁନ୍ଦରୀଫାଟିଛି, ସମସ୍ତେ ଏକ ସଙ୍ଗରେ ଲଙ୍ଗର ହାବସ କଲୁଁ । ଦୁଇଖଣ୍ଡ ଗୋରାପ ବାଉଟା ହଲାଇ ଆମ୍ଭମାନଙ୍କୁ ଦଣ୍ଡବତ କଲେ ।

ଆମ୍ଭମାନଙ୍କ ମାଝି ବି ସେହିପରି ବାଉଟା ବାନ୍ଧିଲେ । ସେ ଗୋଟାପ ଦିଗଣ୍ଡ ଦକ୍ଷିଣମୁହାଁ ହକାରିଲେ । ଖଣ୍ଡେ ଗଲା ଲକଡ଼ି ଦ୍ୱୀପ, ଆଉ ଖଣ୍ଡେ ଗଲା କଲମ୍ବୋ ବନ୍ଦର । ଲକଡ଼ି ଦ୍ୱୀପ ଜାହାଜ ବୋଝେଇ ଥିଲା ଚୁଡ଼ା ଆଉ ଘିଅରନ୍ଧା ହାଣ୍ଡି । (*) କଲମ୍ବୋ ଜାହାଜରେ ମାଲ ଥିଲା ଭୁଞ୍ଜା ଗୁଡ଼ । ଆଉ ନାୟକ ବାବୁଙ୍କର ଦୁର୍ଗାପ୍ରସାଦ ସୁଲୁପ ଉତ୍ତରମୁହାଁ ଗଙ୍ଗା ନଈ ମୁହାଣ ବାଟରେ ସୂତାନୁଟି (କ) ହାଟ ଆଡ଼େ ଗଲା । ଆମ୍ଭେମାନେ ଯବଦ୍ୱୀପ—ବଟାଭି ବନ୍ଦର ଦିଗକୁ ପୂର୍ବମୁହାଁ ହକାରିଲୁଁ । ସେତେବେଳେ ପଚ୍ଛିମା ସୁଲସୁଲିଆ ପବନ ମାରୁଥାଏ । ସଲଖରେ ମଙ୍ଗଟା ଧରିଥାଉଁ, ଦିନ ନାହିଁ, ରାତି ନାହିଁ, ଜାହାଜ ଧାଇଁଛି । ବାହାର ଦରିଆରେ ଦିନ ରାତି ସବୁ ସମାନ । ରାତିରେ ଉତ୍ତରପଟ ଧୋବତାରା ଆଉ ଶେଷ ରାତିଆ ପୂର୍ବଦିଗ ପୋଆତାରା ଦିଶିଲେ ବାଟ ଦିଶିଯାଏ । ଗୁରୁବାର ଦିନ ବଡ଼ ସକାଳେ ପୂର୍ବ ଦିଗ ସମୁଦ୍ର ଭିତରେ ସୂର୍ଯ୍ୟଦେବତାଙ୍କ ଫେନ୍ଦ ଯିମିତି ଦିଶିଲା, ସେଇ ଦିଗରେ ଦଶ କୋଶ ହେବ ଦୂରରେ ଖଣ୍ଡେ ଜାହାଜର ଶେଉଡ଼ ଦିଶିଲା । ଜାହାଜଖଣ୍ଡ ଆମ୍ଭମାନଙ୍କୁ ଲକ୍ଷ୍ୟ କରି ଧାଇଁଥାଏ । ତାହାବାଦେ ଦିଶିଲା ଜାହାଜର ବାହୁଟିଆ କୁନ୍ଦା (୧) ଆଉ ସଫରଦାଣ୍ଡି ରସି (୨) ଉପରେ ଦୁଇଟା ବଡ଼ବଡ଼ ଲାଲ ପତାକା ଉଡ଼ୁଛି । ମୁଁ ନାବରି ଦଉଡ଼ି (୩) ଧରି ଚଉକି (୪) ଉପରକୁ ଉଠି ଯାଇ ଦୁ ବୀଣ କଷିଦେଲି । ଏତିକବେଳେ ଦୁମ୍ ଦୁମ୍ କରି ସେଇ ଜାହାଜରୁ ଗୁରି ପାଞ୍ଚଟା ବୋମ୍ ଫାଏର ହେଲା । ଆମ ମାଝି ଶୁଣିଆ ହେଲା ପରି ଚଞ୍ଚଳ ଡାକ ଦେଲା; ଗାମଦ (୫)—ଗାମଦ—ପୂବ—ପୂବା ଆମ କାଳିକା ପ୍ରସାଦ ବାଟ ବଦଳି ପୂବ ହେଉଥା ବସିଲା । ସେ ଜାହାଜ ବି ଆମ ଆଡ଼କୁ ଧାଇଁଥାଏ । ଦିନ ପହରକବେଳେ ଦୁଇ ଜାହାଜ ଭେଟାଭେଟି, ଠୋକର ଲାଗେ ଲାଗେ ।"

ଚୌଧୁରୀବାବୁ କହିଲେ—ଆରେ ତୁମେମାନେ ନ ବୁଝି ନ ସୁଝି କିଆଁ ସେ ଜାହାଜ ପାଖକୁ ଧାଇଁଲ ?

ମିସ୍ତ୍ରି ଉତ୍ତରିଲେ—ଆଜ୍ଞା, ଖଣ୍ଡେ ଜାହାଜରେ ବିପଦବାଉଟା ଉଡ଼ିଲେ, ଆଉ ରକମ ବିପଦ ହେଲେ, ଆଉ ଜାହାଜ ତା ପାଖକୁ ଧାଇଁବେ, ଦରିଆଠାକୁରାଣୀଙ୍କର ଏଇ ରକମ ହୁକୁମ ।

ତା ବାଦେ କଣ ହେଲା କି, ସେ ଜାହାଜ ଉପରେ ବାଳୁଆ କଳାକନା ପିନ୍ଧା ଆଠ ଦଶ ଜଣ ଭୁରକ ଛୁଡ଼ା ହୋଇଥିଲେ, ଯାବତ ଗଲା ପରି ଚଞ୍ଚଳ ଡାକଲେ, ପାଗଡ଼—ପାଗଡ଼—ପାଗଡ଼ (୬) ଖଲାସିମାନେ ଗୁରିଖଣ୍ଡ

---

* ବାଲେଶ୍ୱରରେ ପ୍ରବାଦ ଲକ୍ଷାଦ୍ୱୀପପୁଞ୍ଜ ମାଟିରେ ହାଣ୍ଡି ପ୍ରସ୍ତୁତ ହୁଏ ନାହିଁ, ବାଲେଶ୍ୱରରୁ ଘିଅ ରନ୍ଧା ହାଣ୍ଡି ସେଠାକୁ ଯାଉଥିଲା । ଲେଖକ ପିଲାକାଳରେ ଦେଖିଛି, ଖଣ୍ଡିଏ ମାଛା-ହୁଡ଼ି (ସେ ଦେଶ ଜାହାଜକୁ ହୁଡ଼ି ବୋଲାଯାଏ) ଆସିଲେ ଗୁରିପାଖେ ଗୃହ କୋଣ ମଧ୍ୟରେ ଯେତେ ଶ୍ମଶାନକଳସୀ ଆଉ ବାଇଜ ହାଣ୍ଡି ପଡ଼ିଥାଏ, ପାଣ ମେହେନ୍ତରମାନେ ସେ ସବୁ ରୁଣ୍ଡାଇ ହୁଡ଼ିକୁ ବିକନ୍ତି—ସେମାନେ ପଇସା ନ ଦେଇ ନଡ଼ିଆ ଦିଅନ୍ତି । ସେ ଜାହାଜରେ ନଡ଼ିଆ ପୂର୍ଣ୍ଣ ହୋଇ ଆସିଥାଏ ।

(କ) ସୂତାନୁଟି ସ୍ଥାନ ଜଙ୍ଗଲମୟ ଥିଲା । ୧୬୯୦ ଖ୍ରୀଷ୍ଟାବ୍ଦରେ ଇଂରେଜମାନେ ଜଙ୍ଗଲ କାଟି ହାଟ ବସାଇଲେ । ଏହି ସ୍ଥାନରେ କାଳୀ ଦେବୀଙ୍କର କୋଠା ମନ୍ଦିର ଅଛି, ଏଥିପାଇଁ ଏହାର ନାମ ସୂତାନୁଟି ହାଟ ବା କାଳୀ କୋଠା । କାଳକ୍ରମରେ ଏହାର କାଳୀକୋଠା ନାମ ଅପଭ୍ରଂଶରେ କଲିକତା ହୋଇଅଛି ।

(୧) ବାହୁଟିଆ କୁନ୍ଦା—ଜାହାଜର ପଶ୍ଚାଦ୍‌ଭାଗରେ ପତାକା ଉଡ଼ିବାର ସ୍ତମ୍ଭ ।

(୨) ସଫରଦାଣ୍ଡି ରସି—ଜାହାଜର ସମ୍ମୁଖ ସଫର ଦରିଆଠାରୁ ତୋଲ ମୁଣ୍ଡକୁ ବନ୍ଧା ଦଉଡ଼ି ।

(୩) ନାବରି ଦଉଡ଼ି—ଜାହାଜ ଦୁଇ ପାଖରେ ତୋଲ ମସ୍ତକ ପର୍ଯ୍ୟନ୍ତ ନିଶୁଣି ପରି ବନ୍ଧା ଛନଟା ଦଉଡ଼ି ।

(୪) ଚଉକି—ତୋଲ ଉପରେ କର୍ମଚାରୀମାନଙ୍କ ବସିବାର କପିକଲ ଝୁଲିବା ସ୍ଥାନ ।

(୫) ଗାମଦ—ଜାହାଜତଳ କଣା ହୋଇ ପାଣି ପଶିବା ।

(୬) ପାଗଡ଼—ଜାହାଜ ବନ୍ଧା ଦଉଡ଼ି ।

ପାଗଡ଼ ପିମିଡ଼ ଫୋଫାଡ଼ ଦେଇଛନ୍ତି, ଭୁରକମାନେ ମୁଦୁଇ ଜାହାଜକୁ ସଙ୍ଗଡ଼ ପକାଇଲେ । ଆମ ଖଲସି-ମାନେ ବ ଦୁଇ ଜାହାଜ ପେରଗ୍ଥ (୧) ଆଉ କାଛରେ (୨) ସଙ୍ଗଡ଼ୁଥାନ୍ତି । ଦୁଇ ଜାହାଜ ପିମିଡ଼ ସଙ୍ଗଡ଼ା ଯାଇଛି, ସେ ଜାହାଜ ଚାପଦାର (୩) ଆଉ ଖୋଲ (୪) ଭିତରୁ ଅନ୍ଦାଜ ଦୁଇ କୋଡ଼ିରୁ ବଳବେ ଖପ୍ ଖପ୍ କରି ଆମ ଜାହାଜକୁ ଡେଇଁ ପଡ଼ିଲେ । ସେମାନଙ୍କ ରୂପ ଦେଖି ଆମ୍ଭେମାନେ ଛାଟଙ୍ଗା ହୋଇ ଗଲୁଣି, କାହାରି ଗୋଡ଼ ହାତ ଚକ୍ଷୁ ନାହିଁ, କାଠିଟି ପରି ଛୁଡ଼ା ହୋଇଥାଉଁ । ଲୋକଗୁଡ଼ାକ ପଞ୍ଚହାତୀ ମର୍ଦ୍ଦ, ସେଇ ରକମ ମୋଟା, ରାକ୍ଷସ ପରି ବଳୁଆ, ଫିରଙ୍ଗୀ ପରି ମୁହଁ ରଙ୍ଗା ରଙ୍ଗା । ସେହିପରି ଏକ ରକମ ପୋଷାକ, ମୁଣ୍ଡରେ ଟୋପି, ମନ୍ଦାରଫୁଲ ପରି ଆଖି ଲାଲ । ମୁହଁରୁ ମଦଗନ୍ଧ ଭକ ଭକ ବାହାରୁଛି । ସବୁଗୁଡ଼ାକ ମତୁଆଲା, ଧାଡ଼ୁଆ ମାଙ୍କଡ଼ ପରି ଆମ ଜାହାଜ ଉପରେ ଧାଁ ଦଉଡ଼ ଲଗାଇଥାନ୍ତି । ହାତରେ ବଙ୍କା ବଙ୍କା ଲମ୍ବା ତରବାରି, ଅଣ୍ଟାପଟି ଏକ ପାଖରେ ତରବାରି ଖାପ, ଆର ପାଖରେ କଡ଼ାବିନ (୫) ଝୁଲୁଥାଏ । ହୁପ୍ ହୁପ୍ ଶବଦ କରି ପାଟି କରୁଥାନ୍ତି । ଆମ୍ଭେମାନେ ତ କାବା ହୋଇ ଛୁଡ଼ା ହୋଇଥିଲୁ, ହଲ ହଲ କରି ବାନ୍ଧି ପକାଇଲେ । ଆମ ମାଝି ଖପା ହୋଇ କଣ କରିବାକୁ ଯାଉଥିଲା, ଗୋଟାଏ ରାକ୍ଷସ ତରବାରିରେ ଯେ ଗ୍ରେଟେ ଦେଇଛି, ମୁଣ୍ଡଟା ପାଞ୍ଚହାତ ଦୂରରେ ଠିକରି ପଡ଼ିଲା, ଗଣ୍ଡିଟା ତଳେ ପଡ଼ି ଛଟପଟ ହେଉଥାଏ । ସେଇ ରାକ୍ଷସଟା ମାଝି ମୁଣ୍ଡଟା ଆମ୍ଭମାନଙ୍କୁ ଦେଖାଇ କଣ ବର୍ ବର୍ କରି କହିଲା, ବୁଝିପାରିଲୁ ନାହିଁ । ଆଉ ଗୋଟାଏ ରାକ୍ଷସ ହସି ହସି ମାଝି ଗୋଡ଼ ଧରି ଗଣ୍ଡିଟା ଦରିଆକୁ ଫୋପାଡ଼ି ଦେଲା । ତାବାଦେ ଆମ୍ଭମାନଙ୍କୁ ଘେନି ଯାଇ ତାଙ୍କ ଜାହାଜ ଚାପଦାର ଭିତରେ ଭର୍ତ୍ତି କରି ଦେଇ ଗୋଟାଏ କୋଲପ ଲଗାଇଦେଲେ । ଆମ୍ଭେମାନେ ମଲା ପରି ପଡ଼ିଥାଉଁ । ରୋଜ ସକାଳେ ଅଧ ଅଧ ସେରେ ଅନ୍ଦାଜ ଚୂଡ଼ା ଆଉ ଗାଲେ ଗାଲେ ପାଣି ଦେଇଯାଏ—କିଏ ଖାଇଲା, କିଏ ନ ଖାଇଲା । ଶଙ୍କର ବେହେରା ମିର୍ଦ୍ଧା (୬) ପେଟରେ ଗୋଟାଏ ରାକ୍ଷସ ଯୋତାମିଶା ଯୋଡ଼ାଏ ଗୋଇଠା ମାରିଥିଲା, ସେ ଧଡ଼ ପଡ଼ ହ ହେନେ ମରିଗଲା । ଆମ୍ଭେମାନେ ତାକୁ ଦରିଆକୁ ଫୋପାଡ଼ିଦେଲେ, ସେ ହାଡ଼ଗୁଡ଼ାକୁ ଛୁଇଁବାକୁ ଦେଲୁ ନାହିଁ । ତିନଦିନ ଦିନ ଓପର ଓଳି ବେଳ ରତରତ ଗୋଟାଏ ମୁଲକରେ ଜାହାଜ ଲଙ୍ଗର କଲା । ପଛକେ ଜାଣିଲୁ, ସେଇଟା ମୁଲକ ନୁହେ, ଦରିଆ ଭିତରେ ଗୋଟାଏ ଟାପୁ । ତା ନାମ ଛଣଦ୍ୱୀପ । ଆମ୍ଭମାନଙ୍କୁ ଘେନିଯାଇ ଗୋଟାଏ ଜେଲଖାନାରେ ବନ୍ଦୀ କଲେ । ଆହୁରି ବ ଢେର ବନ୍ଦଆଣ ସେ ଘରେ ବନ୍ଦୀ ହୋଇ ପଡ଼ିଛନ୍ତି । ମାସକ ବାଦେ ଆମ୍ଭମାନଙ୍କୁ ଘରୁ କାଢ଼ି ଅଲଗା ଅଲଗା କରିଦେଲେ । କେହି କାହାରି ମୁହଁ ଦେଖିବାକୁ ନାହିଁ । ଘରୁ କାଢ଼ି ଗୋଟାଏ ଭୁରକ ଆମ୍ଭମାନଙ୍କୁ ତା କଥାରେ ବୁଝାଇ ଦେଲା, ହୁକୁମ ନ ମାନି ପଳାଇବାକୁ ଚେଷ୍ଟା କଲେ ମାଝି ଦଶା ହେବ । ସେ ଦେଶରେ ଗୋଟାଏ ରଜା ଅଛି, ସେଇଟା ଭଲ ରଜା ନୁହେ, ଡକାଇତ ରଜା । ସେଟାର ନାମ ଗଞ୍ଜାଲିଶ (Ganjalish) । ଆହୁରି ବ ସେ ରଜାର କେତେ ଜଣ ସରଦାର ଅଛନ୍ତି ପଛକେ ସେମାନଙ୍କ ନାମ ଜାଣିଲୁ, କପ୍ତାନ ମାଲଫିକା ( Captain Malpica ),ଜୁକରଥା (Jucarte), ହରିଗ୍ରୀ ବୁସ

(୧) ପେରଗ୍ଥ—ଜାହାଜର ବାଡ଼ ।

(୨) କାଛ—ଜାହାଜ ଉପରେ ଥିବା ସବୁ ଦଉଡ଼ି ।

(୩) ଚାପଦାର – ଜାହାଜ ଭିତରେ ମନୁଷ୍ୟ ରହିବା ଘର ।

(୪) ଖୋଲ—ଜାହାଜ ଭିତରେ ମାଲ ରଖାଯିବା ଜାଗା ।

(୫) କଡ଼ାବିନ୍—ସାନ ସାନ ମୋଟା ବନ୍ଧୁକ ।

(୬) ମିର୍ଦ୍ଧା-ଜାହାଜର ଖଲସିମାନଙ୍କ ଉପରେ ସରଦାର ଏବଂ ଗୋଦାମ ରକ୍ଷକ ।

(Haxary Buse), ମେଷ୍ଟର ଢକସ୍ଟ (Mister Decsta)। ଆହୁରି ବି ସରଦାର ଅଛନ୍ତି, ସେମାନଙ୍କ ନାମ ପାସୋର ଗଲଶି । ଫିରଙ୍ଗୀ ପାଇକ, ଭୁରକ ପାଇକ ବି ଢେର ଅଛନ୍ତି ।

ବାବୁ ନାକଫୋଡ଼ ମଲ୍ଲେ ପଚ୍ଚରିଲେ—ସେ ରଜା ଜାତିରେ କଣ ? ସେ କଣ ଫିରଙ୍ଗୀ ?

ହଗ୍ରୁ ଚଣ୍ଡେଲ—ଆଜ୍ଞା, ସେମାନେ ଫାଟୁଆଗାଛ ଜାତି (Portuguese); ଏଇ ଫିରଙ୍ଗୀମାନଙ୍କ ପରି ।

ବାବୁ ନାକଫୋଡ଼ ମଲ୍ଲେ—ସେ ରଜା କଣ ଆପେ ଡକାଏତି କରିବାକୁ ଯାଏ ?

ହଗ୍ରୁ ଚଣ୍ଡେଲ—"ଆଜ୍ଞା ନାହିଁ, ସରଦାରମାନେ ଡକାଏତି କରିବାକୁ ଯାନ୍ତି, ବଡ଼ ବଡ଼ ଡକାଏତି-ବେଳେ ରଜା ଆପେ ଯାଏ । ରଜାର ଜାହାଜ ଢେର; ଡକାଏତି କରି ବି ଢେର ଜାହାଜ ଆଣିଛି । ସେଇ ଅସୁର ପାଇକମାନେ ଜାହାଜ ଚଢ଼ି ଡକାଏତି କରିବାକୁ ଯାନ୍ତି ।" ହଁ, ଗୋଟାଏ କଥା କହିବାକୁ ଭୁଲି ଯାଇଛି । "ହନେ ଆମ ଖୁମା ଝଲସିକୁ ଦେଖିଥିଲି – ତା ଉପରେ ଯିମିତି ନଜର ପଡ଼ୁଛି, ଧାଇଁ ଆସି ମତେ କୁଣ୍ଢେଇ କୋଇଲା । ଦୁଇଜଣଯାକ କୁଣ୍ଢିଆକୁଣ୍ଢେଇ ହୋଇ ଡକା ପାରୁଥାଉଁ, ଗୋଟାଏ ଫିରଙ୍ଗୀ ଧାଇଁ ଆସି ଅମ୍ଭମାନଙ୍କୁ ବେତରେ ବାଡ଼େଇ ଅଲଗା କରିଦେଲା, ମୁଁ ଆଉ ତାକୁ ଦେଖିନାହିଁ ।"

ବାବୁ ରଘୁନାଥ ଦେ ପଚ୍ଚରିଲେ ତୁ ଆସିଲୁ କପରି ?

ହଗ୍ରୁ ଚଣ୍ଡେଲ—ଢାକା ବୋଲି ଗୋଟାଏ ମୁଲକ, ସେ ଦେଶରେ ଗୋଟାଏ ବଡ଼ ଧନବନ୍ତ ଜମିଦାର ଅଛି, ଗଞ୍ଜାଲଶ ସନ୍ଧାନ ପାଇ ଦଶ ଖଣ୍ଡ ଜାହାଜରେ ଚାରି ପାଞ୍ଚଶ ପାଇକ ଧରି ଡକାଏତି କରିବାକୁ ବାହାରିଲା, ମୁଁ ଜାହାଜରେ ଜଣେ ଖଲସି ଥିଲି । ଢାକାରେ ପହଞ୍ଚି ପାଇକମାନେ ଯିମିତି ଜାହାଜରୁ ଓହ୍ଲାଇଗଲେ, ସଞ୍ଜସଞ୍ଜିଆ ମୁହଁ ଅନ୍ଧାରିଆ ହୋଇଥାଏ ମୁଁ ପଳାଇ ଆସିଲି । ଛ ମାସ କାଳ ଢେର ଢେର ଜଙ୍ଗଲ, ଢେର ଢେର ମୁଲକ ବୁଲି ବୁଲି ଲୋକଙ୍କୁ ପଚ୍ଚାରି ପଚ୍ଚାରି ଆସିଲି ।

ବାବୁ ରାମରାମ ପାଣେ କହିଲେ—ଆପଣମାନେ ତ ସବୁ କଥା ଶୁଣିଲେ । ଏବେ ସବୁ କଥା ପଦାରେ ପଡ଼ିଗଲାଣି । ଏତେଗୁଡ଼ାଏ ଜାହାଜ ଦରିଆରେ କୁଆଡ଼େ ଯାଉଛି । କିଏ କେତେ ରକମ କହୁଥିଲେ, ସବୁ ସନ୍ଦେହ ମେଣ୍ଟିଗଲା । ଦରିଆରେ ଏପରି ବୋମ୍ବାଟିଆ ଲାଗିଲେ ଆଉ କଣ ଜାହାଜାତି କାରବାର ଚଳିବ ? ଏଇ ଧରନ୍ତୁ ନା—ଦେ ବାବୁଙ୍କର ଦଶଖଣ୍ଡ ଅଛି ବୋଲି ସିନା ତାଙ୍କୁ ବାଧିଲା ନାହିଁ, ଛୁଟକୁରିଆ ମହାଜନ ହୋଇଥିଲେ ତାର ହାଲ କଣ ହୁଅନ୍ତା ?

ବାବୁ ରଘୁନାଥ ଦେ କହିଲେ—କଣ କହୁଛନ୍ତି ଆପଣ ଦଶଖଣ୍ଡ ଜାହାଜ । କାଳିକାପ୍ରସାଦ ମୋ ଅଣ୍ଟା ବସେଇ ଦେଇ ଯାଇଛି । ଅରଖ ନୂଆ ଗୋରାପ, ପୁରା ବୋଝେଇ, ଧରନ୍ତୁ ନା କେତେ ଟଙ୍କା ଗଲା ?

ବାବୁ ଚରଣ ଦାସ କହିଲେ—ଦେ ଆପଣେ ! ଗଲା ଅଙ୍କ ମାଘ ମାସରେ ସେଉଁ ଗୋରାପ ଖଣ୍ଡ କାମ୍ୟାର ହୋଇଥିଲା, ଏ କଣ ସେହି ଗୋରାପ ? ଅର୍ଜ୍ଜୁନ ମହାରଣା ମିସ୍ତ୍ରୀ ହାତଗଢ଼ା ଭଲ ଜାହାଜ ଖଣ୍ଡେ ଉତ୍ତୁରିଥିଲା ଏକା—କଣ ବୋଝେଇ ଦେଇଥିଲେ ?

ବାବୁ ରଘୁନାଥ ଦେ—ସତ—ସତ, ଜାହାଜ ପରି ଜାହାଜ ଥିଲା, ଚାଲି ବି ସିମିତିକା—ମୁହାଁଣ ପାର ହୋଇଗଲେ ହନକେ ସୂତାନୁଟି ଖେପ ମାରି ଦେଉଥିଲା । ହଁ—କଣ ପଚ୍ଚରିଲେ ? ବୋଝେଇ ମାଲ ? ଥିଲା ଛ ହଜାର ମହଣ ଚାଉଳ, ଦି ହଜାର

ମହଣ ଲେଖା, ଦ୍ୱ ହଜାର ଟଙ୍କାର ଲୁଗା । ବଟାଭି ବନ୍ଦରେ ଇଂରେଜ ଗହକମାନେ ସଫା ଗୃଭଲ ଗୃହାନ୍ତା କରନ୍ତ । ତେତେବେଳେ ଗୃଭଲ ଦର ଥିଲ ମହଣକୁ ଏଗାର ଅଣା ଦ୍ୱ ପଇସା । ମୁଁ ଦ୍ୱ ପଇସା ବଢ଼େଇ ଦେଇ ବାର ଅଣାରେ ସଫା ଧଳା ମାଲଟକ କିଣି ପଠାଇଥିଲ । ଧରନ୍ତୁ କେତେ ଟଙ୍କା ଗଲ । ଘରେ ପିଲଗୁଡ଼ାକ ସେ ଜାହାଜ ଖଣ୍ଡକୁ ବଡ଼ ଭଲ ପାଉଥିଲେ । ସେହ୍ମାନଙ୍କ କଥାରେ ଜାହାଜରେ କାଠ ବଦଲରେ ଇସ୍ପାତର କପି କଲ ସବୁ ଦେଇଥିଲ । ସେମାନେ ଜାହାଜ ବାହାର ସବୁ ଚିଜ କର ରଙ୍ଗ ବେରଙ୍ଗ ପତାକା ମଣ୍ଡେଇଥିଲେ । ମୁଁ ଖାଲ ଗୋବନ୍ଦା ପିଲା ବୁଦ୍ଧିରେ ପଡ଼ ବଟାଭି ବନ୍ଦରକୁ ପଠାଇଲ, ନୋହିଲେ ବୈଶାଖପଟଣାକୁ ପଠାଇଥାନ୍ତ ।

ବାବୁ ଚରଣ ଦାସ କହିଲେ—ହେଲେ କଣ, ଆଜ କାଲ ବଟାଭି ବନ୍ଦରରେ ଦ୍ୱ ପଇସା ଅଛି ।

ବାବୁ ପରମ ପଣ୍ଡା କହିଲେ · ସେ ସବୁ କଥା ଥାଉ, ଏବେ ତ ସବୁ କଥା ହାଟରେ ପଡ଼ ଦାଣ୍ଡରେ ଗଡ଼ଲାଣି—ମୋ ଜାଣିବାରେ ଗୋଟାଏ ଭଲ ରକମ କଟକଣା ନ କରି ଜାହାଜ ଦରିଆକୁ କାଢ଼ିବା ଠିକ୍ ହେଉ ନାହିଁ ।

ବାବୁ ଗ୍ରମଗ୍ରମ ପାଣ୍ଡେ କହିଲେ—ଜାହାଜ ଦରିଆକୁ ନ କାଢ଼ି ଗୃଦରେ* ବାନ୍ଧି ରଖିବୁଁ ? ଗ୍ରେର ହେଉ, ଡକାଏତି ହେଉ, ଜାହାଜ ଦରିଆକୁ ପଠାଇବାକୁ ହେବ । ମୁଁ କହୁଛି, ଉତ୍ତର ପୂର୍ବ ଦାଣ୍ଡି ଗ୍ରଡ଼ ଦେଇ ଖାଲ ଦକ୍ଷିଣ ଖେପ ମାରିବା । ଏ ଦଗକୁ ସେ ବୋମ୍ବାଟିଆଗୁଡ଼ାକ † ଆସି ନାହାନ୍ତି ।

ବାବୁ ଚରଣଦାସ କହିଲେ—ଉଁ—ହୁଁ, ସେ କଥା ନୁହେ । ଦକ୍ଷିଣ ଦାଣ୍ଡିରେ ଆଜ ନାହାନ୍ତି, କାଲ ଆସିବାକୁ କେତେ ମଠ ? ସେଗୁଡ଼ାକଙ୍କର ତ ଆଉ କିଛି ପାଇଟି ନାହିଁ, ଦରିଆସାକ ବୁଲି ଡକାଏତି କରୁଛନ୍ତି, ଉତ୍ତରେ ନ ପାଇଲେ ଦକ୍ଷିଣକୁ ଧାଡ଼ ଦେବେ ।

ବାବୁ ନବଘନ ଶ୍ୟାମସୁନ୍ଦର ଗ୍ରଉତେ କହିଲେ—ଆପଣମାନେ ଚଣ୍ଡେଲ ମୁହଁରୁ ତ ଶୁଣିଲେ, ଗ୍ରେରଗୁଡ଼ାକ ଫିରିଙ୍ଗୀ ଜାତି—ତେବେ ଆସ, ଫିରିଙ୍ଗୀମାନଙ୍କ ସାଙ୍ଗରେ କାରବାର ବନ୍ଦ କରିବା । ଗ୍ରେରଗୁଡ଼ାକ ତ ଏମାନଙ୍କ ଜାତି ଭାଇ, କାରବାର ବନ୍ଦ ହେଲେ ଦେଶରୁ ଦରିଆରୁ ସବୁଆଡ଼ୁ ଗ୍ରଡ଼ ପଳାଇବେ ।

ବାବୁ ଚରଣଦାସେ କହିଲେ—ନାହିଁ, ନାହିଁ । ଏ କଥାଟା ମ ମନକୁ ପାଇଲ ନାହିଁ । ଚଣ୍ଡେଲ କଣ୍ଠରୁ ଶୁଣିଲେ ନାହିଁ, ସେ ଯେ ଗଞ୍ଜେଇକଣା, ଛଣଦ୍ୱୀପରେ ଗ୍ରେର ମାଡ଼ ବସିଲାଣି, ସେ କ ଆଉ ଉଠୁଛି ? ଛଣଦ୍ୱୀପଟା ଦରିଆ ମଝାମଝି ଘାଟି ଜାଗା, ଦରିଆସାକରେ ତାର ଅଧିକାର । ଆଉ ଗୋଟାଏ କଥା, ଫିରିଙ୍ଗିମାନଙ୍କୁ ତ ତଡ଼ ଦେବେ, କାରବାର କରିବେ କାହା ସାଙ୍ଗରେ ? ସେମାନେ ଜାତିରେ ମ୍ଲେଚ୍ଛ ସିନା—ମଦ ମାଉଁସ ଖାନ୍ତି, ଯେତେ ହେଲେ ସେମାନେ ହେଲେ ଲକ୍ଷ୍ମୀପୁତ୍ର । ମୋଟା କାରବାର, ରଗଡ଼ ଝଗଡ଼ ନାହିଁ; କଥା ପଦ ପଦକେ ସଉଦା । ଆହୁରି ଦ୍ୱ ଗୋଟାଏ କଥା, ଦେଶରୁ ତଡ଼ ଦେଲେ ସମସ୍ତେ ମିଳି ଦରିଆରେ ଡକାଏତି କରିବେ । ତେତେବେଳେ ଉପାୟ ?

*ଗୃଦ—ଜାହାଜରଖା ସ୍ଥାନ, ଇଂରେଜୀରେ କହନ୍ତି—ଡକ୍ ।
† ବୋମ୍ବାଟିଆ—ଜଳଦସ୍ୟୁ ।

ବାବୁ ରାମରାମ ପାଣେ କହିଲେ—ଭୁଚ୍ଛା କଥାଟାରେ ଏତେ ବକ୍ ବକ୍ କାହିଁକି ? ଶୁଣିଲେ ନାହିଁ, ଓଲନ୍ଦାଜମାନେ ଫିରିଙ୍ଗୀ ନୁହନ୍ତି, ଫାଟୁଆଗାଣ୍ଡି ଜାତି ।

ବାବୁ ପରମ ପରିଜା ଟିକିଏ ଖପା ହୋଇ ପରି କହିଲେ—ଆପଣମାନେ ଭିତର କଥା ସବୁ ନ ଜାଣି କାହିଁକି କଥା କହନ୍ତି ? ଆମ୍ଭଙ୍କୁ ଅସଲ କଥା ଜଣା । ଫିରିଙ୍ଗୀ ଖଲାସୀମାନଙ୍କ ମୁହଁରୁ ଢେର ଥର ଶୁଣିଛୁ—ଏଇ ଯେ ଦରିଆ ଦେଖୁଛ, ଠିକ ପୂର୍ବଦିଗରେ ଆର କୂଳକୁ ଲାଗି ଗୋଟାଏ ଟାପୁ ଅଛି, ସେଇଟାର ନାମ ବିଲାଇତି । ସେଇଟା ଢେର ବାଟ । ବାଲେଶ୍ୱର ନଈ ମୁହାଣ କତିରୁ ଠିକ୍ ପୂର୍ବମୁହାଁ ଜାହାଜ ଛାଡ଼ିଦେଲେ ଦେଡ଼ ବରଷରେ ସେ ଦେଶରେ ଜାହାଜ ପହଞ୍ଚିବ । ଆମ ଦେଶରେ ଯିମିତିକା ଛତିଶ ପାଟିକ ଅଛନ୍ତି, ସେ ଦେଶରେ ବି ସେହିପରି ଓଲନ୍ଦାଜ, ଡିଙ୍ଗେମାର, ଇଂରେଜ, ଫରାସି ନାନା ଅଲଗା ଅଲଗା ଜାତି ଅଛନ୍ତି । ଦେଖ୍ ନାହାନ୍ତି, ଏଇ ବନ୍ଦରରେ ସେମାନଙ୍କ ଘର ଅଲଗା ଅଲଗା । ଫାଟୁଆଗାଣ୍ଡିମାନେ ବି ଫିରିଙ୍ଗୀ ସତ, ହରି ଡଣ୍ଡେଲ ମୁହଁରୁ ଶୁଣିଲେ ନାହିଁ, ସେହି ଫାଟୁଆ-ଗାଣ୍ଡିମାନେ ରବିବାର ଦିନ କିଛି କାମ ପାଇଟି କରନ୍ତି ନାହିଁ, ଗୀର୍ଜାକୁ ଯାଇ ଠାକୁର ପୂଜା କରନ୍ତି । ସେମାନଙ୍କ ପୁରୋହିତମାନେ ବି ପାଲ ଗାଆଣିଆଙ୍କ ପରି କଳା କନା ଝାଗରା ପିନ୍ଧନ୍ତି, ଦିନଟାରେ ମହମବତି ଜାଳନ୍ତି, ଆଣ୍ଠେଇ ପଡ଼ି ପାଣି ଛିଞ୍ଚନ୍ତି ।

ବାବୁ ରାମରାମ ପାଣେ କହିଲେ, "ସତ ପରା ହୋ ! ଅଲଗା ଜାତି ନୁହନ୍ତି । ସେଦିନ ରାତିରେ ଫରାସି ସେଁନ୍ଟିମି ଭୌଁ ସାହେବ ଡିଙ୍ଗେମାର ବଡ଼ ସାହେବ ଘରେ ବସି ଖାଉଥିଲା, ମୁଁ ଦେଖିଛି । ନିଶ୍ଚୟ ଏକା ଜାତି । ଟୋପିମୁଣ୍ଡିଆ ଗୋଟାଏ ଜାତି ।"

ବାବୁ ରଘୁନାଥ ଦେ କହିଲେ, "ନାହିଁ ହୋ, ସେମାନେ ଅଲଗା ଅଲଗା ଜାତି । ଦେଖୁନାହଁ, ଗୋଦାମ ଘର—ଗଦି—ଜାହାଜ—କାରବାର ସବୁ ଅଲଗା । ଆଉ ଖାଇବା କଥାଟା ଯାହା କହିଲେ, ସ୍ୱଦେଶରେ କିଏ କାହାକୁ ଦେଖିଛି ? ଆଉ ଯାହା କହ, ଇଂରେଜ ଫିରିଙ୍ଗୀ ହେଲେ କଣ ହେଲା, ସେମାନେ ଏମାନଙ୍କ ମଧ୍ୟରେ ଶ୍ରେଷ୍ଠ ଜାତି; ବ୍ରାହ୍ମଣ ହେବେ ପରା । ଦେଖ୍ ନାହାନ୍ତି, ସମସ୍ତେ ବନ୍ଦରରେ ବଡ଼ ବଡ଼ କୋଠି ବନେଇ ରହିଛନ୍ତି । ଇଂରେଜ ଏମାନଙ୍କ ଭିତରକୁ ଆସିଲେ ନାହିଁ । ବଳରାମଗଡ଼ି (୧) ମୁହାଣ କଡ଼ରେ ଉଠା ଦୋକାନ ପକାଇଛନ୍ତି । ଆଉ ଏମାନଙ୍କ ଦେହ ରଙ୍ଗା, ସେମାନଙ୍କ ଦେହ ଶେତଆ ।"

ବାବୁ ଚରଣଦାସେ ପଚାରିଲେ, "ହୋଇ ହେଦେ ସାନ୍ତେ । ଇଂରେଜ ଫିରିଙ୍ଗୀର ଦୁଇଖଣ୍ଡ ବଡ଼ ବଡ଼ ଜାହାଜ ରବଗାଁ ଗଦରେ ବରଷେ ହେଲା ବନ୍ଧା ହୋଇ ପଡ଼ିଛି, ବିଲାଇତି ଯାଉ ନାହିଁ କାହିଁକି ? ସେ ଜାହାଜ ଦୁଇଖଣ୍ଡର ନାମ କଣଟି ? ହଁ—ହଁ, ଖଣ୍ଡକର ନାମ ଡାହାଣୀ ମୁଣ୍ଡ (୨) ଆଉ ଖଣ୍ଡକର ନାମ ନାଲି (୩)।"

ବାବୁ ରଘୁନାଥ ଦେ—ହୋ—ହୋ ! ସେ କଥା ଶୁଣି ନାହାନ୍ତି ଦାସେ ? ବିଲାତରେ ଫିରିଙ୍ଗୀଗୁଡ଼ାକ ଆପଣା ଭିତରେ ବାଡ଼ିଆବାଡ଼େଇ ଲାଗିଛନ୍ତି । ସବୁ ଫିରିଙ୍ଗୀ ଏକପଟ, ଆଉ ଇଂରେଜ ଫିରିଙ୍ଗୀ ବାଡ଼େ । ଦରିଆରେ ଇଂରେଜ ଜାହାଜ ଦେଖିଲେ ବାଡ଼େଇ ନେବେ ।

ଆଉ କେତେକାଳ ଜାହାଜଖଣ୍ଡି ବନ୍ଦରରେ ପଡ଼ି ରହିବ ?

---

(୧) ନଦୀ ସମୁଦ୍ର ସଙ୍ଗମ ସ୍ଥାନରେ ଗୋଟାଏ ଜାଗାର ନାମ ।   (୨) Diamond.   (୩) Lily.

ବାବୁ ରଘୁନାଥ ଦେ—ଆଉ ଜାହାଜ ଯାଉଥିଲା, ଡାହାଣୀମୁଣ୍ଡ ଏଇଠି ଗଡ଼ିଲା ବୋଲି ଜାଣ । ମଣିଷ କାହାନ୍ତି ଯେ, ଜାହାଜ ବାହି ନେବେ ? କଥା କଣ କି, ସବୁ ଦେଶର ଖଲାସିଗୁଡ଼ାକ ଶ୍ଲେଚ୍ଛ ଜାତି, ଘର ମଦୁଆ । ଜାହାଜ ତ ବନ୍ଧା ହୋଇ ପଡ଼ିଲା, ହାତରେ କାମ ପାଇଟି ନାହିଁ, ଲଗେଇଲେ ମଦପିଆ । କଳା ମରିଚ, ବାଖର, ଗୁଡ଼ଜଳ ଦେଇ ଏକ ରକମ ମଦ ତିଆରି କଲେ, ଦିନ ରାତି ତାକୁ ବସି ପିଇଲେ । କଳାମରିଚ ଆଉ ବାଖର ହେଲା ନିଆଁ ପରି ଗରମ । ସେଗୁଡ଼ାକ ହେଲେ ଶୀତଳ ଦେଶ ଲୋକ, ସହିବ କିଆଁ ? ଲମ୍ବ ଲମ୍ବ ଧଣ୍ଡ ପରି ଶୋଇ ଗଲେ । ଜାହାଜ ଚଳାଉଛି କିଏ ?

•

ପରମ ପରିଜା—ସେଗୁଡ଼ାଙ୍କ ଉପରେ ଇଂରେଜ ଫିରିଙ୍ଗୀ ବି ଡର ମରି ରହୁଛି, ଆମ୍ଭମାନଙ୍କୁ କଣ ରଖିବେ ? ଆସନ୍ତୁ ଆଜି କତିରୁ ଖାଲି ଇଂରେଜମାନଙ୍କ ସାଙ୍ଗରେ ବଳରାମଗଡ଼ି ଆଉ ସୂତାନୁଟି ହାଟରେ କାରବାର କରିବା । ସେ ଗୁଡ଼ାକ ସାଙ୍ଗରେ ଆଜି କତିରୁ କାରବାର ବନ୍ଦ ।

ବାବୁ ରଘୁନାଥ ଦେ—ଏଇ ଯେ ସୂତାନୁଟି ହାଟ କଥା କହିଲେ, ତାର ହାଲ ଜାଣନ୍ତି ? ସେ ଜାଗା ଅଡ଼ତଦାର କତିରୁ ସବୁ ହାଲ ବୁଝିଛି । ଇଂରେଜ ଫିରିଙ୍ଗୀ ଭିତରେ ଗୋଟାଏ ସାହେବ ଅଛି, ସେ ଲୋକଟି ବଡ଼ ଧାର୍ମିକ । ମଦ ମାଉଁସ କିଛି ଖାଏ ନାହିଁ, ରୋଜ ରୋଜ ଗଙ୍ଗାସ୍ନାନ କରେ, କାଳୀଘାଟରେ ପୂଜା ଦିଏ, ଖାଲି ଯଅ ଛତୁ ଆଉ ଚଣା ଖାଏ । ଦେଶ ଭିତରେ ତା ନାମଡାକ ଘରି, ତାକୁ ଯବଚଣାଖିଆ ସାହେବ ବୋଲି ଡାକନ୍ତି । ଏଇ ଯେ ସୂତାନୁଟି ହାଟ ଦେଖୁଛ, ଆଗେ ସେଇଟା ଘର ଜଙ୍ଗଲ ଥିଲା । ସେଇ ଯବଚଣାଖିଆ ସାହେବ ବଣ କାଟି ହାଟ ବସେଇଛି । ତାହାର କାରବାର ବଡ଼ ଠିକ—ସୋକଠୋକ । ଦେଶ ଲୋକେ ତାକୁ ଠାକୁର ପରି ମାନନ୍ତି । ଦେଶ ଭିତରୁ ଖୁବ ଦୂରଦୂରାନ୍ତରୁ ମହାଜନ ଜମିଦାରମାନେ ଆସି ସୂତାନୁଟିରେ ଘର ବନେଇଲେଣି, ଉଞ୍ଚା ଉଞ୍ଚା କୋଠାଘର ଭର୍ତ୍ତି ହୋଇ ଗଲାଣି । ମାହେବର ତେଲଙ୍ଗା ପାଇକମାନେ ହାଟରେ ପହରା, ଚୋର ଚହଟର ନାମ ନାହିଁ । ଆଉ ସେ ସାହେବ କଣ କରିଛି କି, ହାଟର ଉତ୍ତର ପଟରେ ଘର ଗୋଟାଏ ନାଳ ଖୋଳିଛି । ମରହଟ୍ଟା ପଶି ପାରିବ ନାହିଁ, ଆଉ ଡର କାହାକୁ ? ହାଟରେ ମାଲ ପଦାରେ ପଡ଼ିଥାଉ, କେହି ଅନାଇ ଦେବାକୁ ନାହିଁ ।

ବାବୁ ଜଗଦ୍‌ବନ୍ଧୁ ମଲ୍ଲ କହିଲେ, "ତେବେ ଏତେ କଥାରେ ଲାଭ କଣ ? ଆସ ଆଜିଠାରୁ ଆଉ ଫିରିଙ୍ଗୀମାନଙ୍କ ସାଙ୍ଗରେ କାରବାର କରିବା ନାହିଁ—ଖାଲି ଇଂରେଜ ବଣିଆଙ୍କ ସାଙ୍ଗରେ ଲେଣ୍ ଦେଣ୍ । ସବୁ ଜାହାଜ ସୂତାନୁଟି ହାଟକୁ ପଠାଇବା ।"

ମଲ୍ଲ ବାବୁଙ୍କ କଥା ସମସ୍ତଙ୍କ ମନକୁ ହେଲା । ସମସ୍ତଙ୍କର ଏକରାଏ । ହରିବୋଲ ଦେଇ ସଭା ଭାଙ୍ଗି ସମସ୍ତେ ଆପଣା ଆପଣା ଘରକୁ ଗଲେ ।

---

## ବଗଲା ବଗୁଲୀ

ବଦଆ ପାଣ୍ଡ ଭୂଷଣ୍ଡପୁର ଗାଁର ଚୌକିଆ । ଏଡ଼େ ବଡ଼ ଗାଁଟା, କଣ୍ଡରା ବୋଇଲେ ବଦଆ ଏକୁଟିଆ । ଅଛବ ଲୋକଟା, ସେ କଣ ଭଲଲୋକଙ୍କ ଘର ଲଗାଲଗିରେ ଘର କରିବ ? ଗାଁମୁଣ୍ଡ ବ୍ରାହ୍ମଣ ଜମି ଗୁଡ଼ ପଦା ଉପରେ ଗୋଟିଏ ପଲାଘର । ଜାତିରେ ତ କଣ୍ଡରା—ଚୌକିଆ ବାପୁଡ଼ା ବୋଲି ପୁଞ୍ଜି ନୁହେ । ହେଲେ, ଗାଁ ଲୋକେ ତାକୁ ମାନନ୍ତି । ସେ ଆଉ ଗାଁ ଚୌକିଆ ପରି

ମୁହେଁ । ଚିତାଏ ଉଞ୍ଚା ମୂଳମାର୍କଣ ଠେଙ୍ଗାଟାଏ କାନ୍ଧରେ ପକାଇ "ଏ ଗ୍ରାମ ଚଇତେଡ଼େ—ଜାଗଛା, ଏ ନାଇକ ଘର—ହୁସିଆର", ଏହିପରି ଡାକ ଡାକି ଦୁଆର ଦୁଆର ରାତିସାରା ବୁଲୁଥିବ । ବିଦିଆ ପାଣ ଚୌକିଦାରୀ କଲା ଦିନରୁ ଗାଁରେ କାହାର ଘର ପିଢ଼ାରୁ ପୋଇଡଙ୍କଟାଏ ବି ଚୋର ପାଇ ନାହିଁ । କଥା କଣ କି, ମଫସଲ ଗାଁରେ ଚୋରମାନେ ଚୌକିଆ ଡରେ ନ ଧରିଲେ ଗାଁ ଭିତରେ ପଶି ପାରନ୍ତି ନାହିଁ । ଫେର ତା ବାଦ ବିଦିଆ ଗୋଟାଏ ପଞ୍ଚହାତା ମରଦ । ଠେଙ୍ଗାଟାଏ ଧରିଥିଲେ ଦଶ ଜଣ ଭେଣ୍ଡିଆ ପାଖ ପଶି ପାରିବେ ନାହିଁ । ଏଥିଲାଗି ଚୋରଯାକ ଭରସି ଭୂଷଣ୍ଡ-ପୁର ଗାଁ ମୁହାଁ ହୋଇ ପାରନ୍ତି ନାହିଁ ।

ବିଦିଆର ବର୍ତ୍ତମାନ ମାଣେ ଦିଗବାର ଜାଗିର । ତା ବାଦ ଫସଲ ଅମଳ ବେଳେ ଗାଁର ସାନ ବଡ଼ ସମସ୍ତେ ବିଲ ମୁଣ୍ଡରେ ତାକୁ ଗୋଟାଏ ଗୋଟାଏ କଳେଇ ଦିଅନ୍ତି । ପାଣପୁଅ ସବୁବେଳେ ମନ ଆନନ୍ଦରେ ଥାଏ, ସବୁବେଳେ ହରେକୃଷ୍ଣ ହରେକୃଷ୍ଣ ଭଜୁଥାଏ । ଥିଲା ନ ଥିଲାକୁ ତାର ଶୋଚନା ନାହିଁ । ଘରେ ଅଛି, ଖାଇଲା—ନାହିଁ, ଉପାସ ରହିଲା । ଜୀବନଟାଯାକ କାହାରିକୁ କିଛି ମାଗିନାହିଁ, କାହାର ଦୁଆରେ ଆଦୁର୍ଯ୍ୟ ହୋଇ ନାହିଁ । କିଛି ଦୁଃଖରେ ପଡ଼ିଲେ ହାତ ଯୋଡ଼ି ଉପରକୁ ଅନାଇ ଜଣାଏ, 'ହରି ତୋ ମରଜି !'

ବୁଢ଼ୀଟି ମଲା ଦିନରୁ ବିଦିଆ ପାଣ ସଞ୍ଜ ସଞ୍ଜ ତୋରଟା ଖାଇ ଦେଇ ପୁଅଟିକୁ ଧରି ଘରୁ ବାହାରିଯାଏ । ଭାଗବତ ଘର ଆଗ ପିଣ୍ଡାତଳେ ଖଣ୍ଡେ ଛିଣ୍ଡା ଚାଟି ପାରି ଦେଇ ପୁଅଟିକୁ ଶୋଇଦିଏ । ଭାଗବତ ଘରେ ପୁରାଣ ଗାଦି ବସେ । ଗାଁର ପୁରୋହିତ ବିଷ୍ଣୁ ପଣ୍ଡାଏ ପୁରାଣପଣ୍ଡା । ତାଙ୍କର ସେଥିକି କିଛି ବର୍ତ୍ତନ ନାହିଁ । ପୁରାଣ ବଢ଼ା ଦିନ ଗାଁର ସାନ ବଡ଼ ସମସ୍ତଙ୍କୁ ସଙ୍ଗୁଳା ହୁଏ । ପୁରାଣ ଶୁଣ ନ ଶୁଣ, ଆପଣା ମଗଦୁର ଭରି କିଛି କିଛି ଦେବାକୁ ପଡ଼ିବ । ଟଇସା ନାହିଁ ତ, କେହି ଦିମାଣ ଧାନ କାନିରେ ବାନ୍ଧି ଆଣି ଥାଳି ଦେଇ ଚଳି । ସବୁଦିନେ ପୁରାଣ ହୁଏ । ଖାଲି ଉଆଁସ, ପୁନେଇ, ସଂକ୍ରାନ୍ତି, ଗୁରୁବାର ବନ୍ଦ । ପଣ୍ଡାଏ ଉଖୁଡ଼ା ମୁଣ୍ଡାଏ ନୋହିଲେ ଗୁଡ଼ ଟୋପାଏ ଭୋଗ ଦେଇ ହାତ ତାଳି ମାରି ଗୁଳସାନ୍ତି । ସେ ସବୁଦିନରେ ଗାଁର ମୁଣ୍ଡିଆ ମୁଖିଆ ଲୋକେ ଅଧରାତିଯାଏ ବସି ଗାଁର ଭଲ ମନ୍ଦ, ହାରି ଗୁହାରି କଥା ବୁଝାବୁଝି କରନ୍ତି ।

ଗାଁର ବୁଢ଼ା ଭଲଆ ଲୋକେ ରୋଜ ରୋଜ ପୁରାଣ ଶୁଣିବାକୁ ଆସନ୍ତି । ଦେହ ବାଧିକା ଅବା ହାତରେ କିଛି ଟାଇଟି ଥିଲେ, ଦିନେ ଅଧେ ଆସି ପାରନ୍ତି ନାହିଁ । ମାତ୍ର ଭେଣ୍ଡିଆଟି ଦିନରୁ ଆଜିଯାଏ ଚାଳିଶ ପଚାଶ ବର୍ଷ ମଧ୍ୟରେ ବିଦିଆ ପାଣ ହାଜର ହେବାର ଦିନେ ବି ଛୁଟିଣ ନାହିଁ, ବାଧିକ ପଡ଼ିଲେ କୁନ୍ଥେଇ କୁନ୍ଥେଇ ବେଳେ ଆସିବ । ପୁରାଣ ଆରମ୍ଭ 'ଶ୍ରୀ ଶୁକ ଉବାଚ' କଥାରୁ ଶେଷ 'ଶ୍ରାମସ୍ୟାପି' ଯାଏ ହାତ ଯୋଡ଼ି ବସି ମନ ଦେଇ ଶୁଣୁଥାଏ । ପୁରାଣ ପାଠ ବେଳେ କୌଣସି ସ୍ଥାନରେ ଅର୍ଥର କିଛି ଅଖଞ୍ଜି ହେଲେ ସମସ୍ତେ ଅନାଇ କହନ୍ତି, "ପାଣପୁଅ, ଏ ଜାଗାରେ ପାଠ କଣ ହେଲା ?" ପାଣ ହାତ ଯୋଡ଼ି 'ଆଜ୍ଞା ସାନ୍ତମାନେ' କହି ଗୀତର ଏମନ୍ତ ସୁନ୍ଦର ଅର୍ଥ କରିଦିଏ ଯେ, ସମସ୍ତଙ୍କ ମନ ଖୁସି । ପାଣକୁ ଭାଗବତର ଢେର ଜାଗା ପେଟେ । ଅଧାକୁ ଅଧା ପାଠ ମୁହଁ ମୁହେଁ କହିଯିବ । କଥା କହିବା ବେଳେ ଭାଗବତରୁ ଢେର ଢେର ପଦ ଦାଇକା ଦେଇ କହେ । ସାନ୍ତମାନେ ତାକୁ ପ୍ରଶଂସା କଲେ, ଦୁଇ ହାତରେ ଧୀରେ ଧୀରେ ଗାଲରେ ଚାପୁଡ଼ା ମାରିହୋଇ କହେ, "ଆଜ୍ଞା ସାନ୍ତେ, ମୁଁ କଣ୍ଡରା ବାପୁଡ଼ା କଣ ଜାଣେ, ସାନ୍ତମାନଙ୍କ ଚରଣରେଣୁ ସେବା କରି ଯା ଦିପଦ ଶିଖିଛି ।"

ବହିଆ ପାଟର ପୁଅ ସନ୍ନାର ବାହା ଲାଗି ଢେର ଢେର ଜାଗାରୁ କନ୍ୟାର ବାର୍ତ୍ତା ଆସିଲାଣି । ଏଡ଼େ ବଡ଼ ଗାଁର ଚୌକିଆ, ତା ପୁଅ ଲାଗି କଣ କନ୍ୟାର ଅଭାବ ? ସନ୍ନା ପିଲାଟା ଯେମିତି ଦେଖିବାକୁ ଉଜଳ ଡାଉଲ, ଗୁଣ ବି ସେମିତି, କାମ ପାଇଁଟିକୁ ସଜ । ବାପାକୁ ଖୁବ୍ ମାନେ, ବାପ କଥା ତଳେ ପଡ଼ିବ ନାହିଁ । ବାପ ବାଧିକା ପଡ଼ିଲେ ଦିନ ରାତି ପାଖରେ ଜଗି ବସି ସେବାରେ ଲାଗିଥିବ । ମହାମପୁର ଚୌକିଆ ଦଣ୍ଡିଆ ପାଟ ଝିଅ ଟେମିକୁ ଦେଖି ବୁଢ଼ାର ମନ ମାନିଗଲା । ତାହାର ସାଙ୍ଗରେ ସନ୍ନାକୁ ବାହା କରିଦେବା କଥା ଠିକ କଲା । ଯେମିତି ହେଉ ଏଇ ବର୍ଷ ବାହା କଲେ ବନେ । ଉଛୁଣି ପୁଅର ସତର ବର୍ଷ ଗଲାଣି, ଆଏଦାକୁ ଯୋଡ଼ା ବୟସ ପଶିବ, ବାହା ହେବ ନାହିଁ । ବାହା କରାଇବ — ହଁ — ବୋଇଲା, ରଙ୍କ ଭରଣା । ଯେତେ ଟାଣିଟୁଣି ଖରଚ କର, ତିରିଶ ଟଙ୍କାରୁ ଊଣା ନୁହେ । ଜାତି ଭାଇମାନେ କଣ ଛାଡ଼ିବେ ? ଏଡ଼େ ବଡ଼ ଚୌକିରିଟାରେ ଅଛି, ନାମ ଡାକ, ନାହିଁ ବୋଲିଲେ କିଏ ଶୁଣେ ? ଅତି ନକୁଛ ଦିବେଳ ତ ଜାତି ଗୋସେଇଁମାନଙ୍କୁ ମୁଖଧଉତ କରାଇବ । ହାତରେ ନାହିଁ ପଇସାଏ, ଯାହା କରିବେ, ଯାହା ଦେବେ ହରି । ଢେର ବେଳଯାଏ ହାତ ଯୋଡ଼ି ପ୍ରଭୁଙ୍କୁ ଡାକିଲା, "ପ୍ରଭୁ ! ତୁମ ଇଚ୍ଛା ହେଲେ ପୁଅଟି ଦିହାତକୁ ଚାରିହାତ ହେବ ।"

ଦିନେ ରାତିରେ ପୁରାଣପାଠ ସରିଲା ବାଦ ଗାଁର ମୁଖଣ୍ଡ ମୁଖଣ୍ଡ ସାନ୍ତମାନେ ବସିଥାନ୍ତି, ବହିଆ ପାଟ ହାତ ଯୋଡ଼ି ଜଣାଇଲା, "ଆଜ୍ଞା, ସାନ୍ତମାନଙ୍କ ହୁକୁମ ହେଲେ ପଦେ ଗୁହାରି ଜଣାଇବ । ଆଜ୍ଞା, ଆପଣମାନଙ୍କ ଚରଣଧୂଳି ଲାଗି ପୁଅଟି ପାଚିଲାଣି । କନ୍ୟାଟିଏ ଠିକ୍ କରିଛି, ଆଜ୍ଞା ହେଲେ ହାତଛନ୍ଦା କରେଇ ଦେବ ।"

ସବୁ ସାନ୍ତ ବସି ମୁହଁ ଚାହାଁଚାହିଁ ହେଉଛନ୍ତି, କାହାରି ପାଟି ଫିଟୁନାହିଁ । ଜମିଦାର ବଳରାମ ନାୟକେ ଗୋଟାଏ କାମ ବାହାନା କରି ବହିଆ ପାଟକୁ ଆଉଆଡ଼େ ପଠାଇ ଦେଲେ । ତହିଁ ବାଦ୍ ସମସ୍ତଙ୍କ ମୁହଁକୁ ଚାହିଁ କହିଲେ, "ଦେଖନ୍ତୁ, ଗ୍ରାମର ସମସ୍ତ ମୁରବି ଲୋକ ତ ଅଛନ୍ତି । ବହିଆ ଊଣା ପୁରା ପଚିଶ ବର୍ଷ ହେଲା ଗାଁଟାକୁ ଆଗୁଳିଛି । ତା ବାହା-ଦୌଲତରେ ଚୋର ଚପାଟି କିଛି ଶୁଭୁନାହିଁ । କେବେ ସେ କିଛି ମାଗିନାହିଁ । ମାଗିବା ଲୋକ ନୁହେଁ । ଲୋକଟି ଯେମିତି ସତ୍ୟବାଦୀ, ସେମିତି ଧାର୍ମିକ । ତା ହାତରେ ପଇସାଏ ଥିବ ନାହିଁ ଜାଣ । ଆସନ୍ତୁ ଆମେମାନେ ତା ପୁଅକୁ ବାହା କରେଇ ଦେବା ।"

ସମସ୍ତେ ଏକାବେଳକେ କହି ପକାଇଲେ, "ଆଜ୍ଞା ! ଆଜ୍ଞା ! ସାନ୍ତ ଯାହା ଆଜ୍ଞା କଲେ ଠିକ କଥା । ଆମେମାନେ ମନ ନ ଦେଲେ ସେ କେମିତି ଚଳିବ ?"

ଜମିଦାରଙ୍କ ଆଜ୍ଞାରେ ଅବଧାନେ ରଙ୍ଗାଧର ମହାନ୍ତିଏ ଧାଇଁ ଯାଇ ଲେଖନ ପଟ ଘେନିଆସିଲେ । ବାହାଘରକୁ ଯାହା ଲୋଡ଼ା — ବସ୍ତ୍ର, ଚାଉଳ, ତେଲ, ଲୁଣ, ସୋରିଷ, ଖଲିପତ୍ର ଖଣ୍ଡିକ ସୁଦ୍ଧା ତାଲିକା ହେଲା । ପୁରୋହିତ କଣ୍ଡରା ବୈଷ୍ଣବ, ତାପାଇଁ ମୂର୍ତ୍ତିଏ ଲୁଗା, ଚାରିଅଣା ଦକ୍ଷିଣା ସବୁ ତାଲିକାରେ ବସିଲା । ମଣିଷ ଚିହ୍ନି ସବୁ ଗାଁଯାକ ଭେଦା ହୋଇଗଲା ।

ଆଜି ଅଭଡ଼ା ମଙ୍ଗଳ । ବାହା ଆଉ ଦୁଇଦିନ ଅଛି । ସକାଳ ଦିନ ପହରକ ସମୟରେ ଜମିଦାରଙ୍କ ଦୁଆରୁ ଭାର ଯାଇ ପାଟ ଦୁଆରେ ଜମା ହେଲା । ଜମିଦାରଙ୍କ ଗାଁର ସମସ୍ତଙ୍କ ଘରୁ ରୁଣ୍ଡେଇ ଘରେ ଠୁଳକରି ରଖିଥିଲେ । ପାଟର ତ ସାତ-ପାଞ୍ଚ ଗୋଟିଏ ପଲାଘର, ପଦାର୍ଥ ସବୁ ରଖୁଛି କାହିଁ ? ଦୂରଦୂରାନ୍ତରରୁ କୁଣିଆ କୁଟୁମ୍ବ ଆସି ରହିବାଲାଗି ବାପପୁଅ ଲାଗି ଖଜୁରି

ପିଞ୍ଚାରେ କେତେ ବଖର ଗ୍ରୁମ୍ଫୁଣ୍ଡିଆ କର ପକାଇଥିଲେ, ସେଥିରୁ ଗୋଟାଏ ଘରେ ସବୁ ଜିନସ ରଖି ଦେଲେ । କାଲି ବିଭା । ମଙ୍ଗନରାତିରେ ସବୁ କୁଣିଆ ପହଞ୍ଚିଗଲେ । ଖନ୍ଦା ଲଗିଗଲା । ସେହି କୁଣିଆ ଭିତରୁ ଗୃହ ଜଣ ବ୍ରାହ୍ମଣୀ ପରଷିଣୀ ବାହାରି ପଡ଼ିଲେ । ବୁଢ଼ା ପାଣ ସାନ କଣ୍ଠରୁ ବଡ଼ପାଏ ସବୁ ଜାତିପୁଅଙ୍କ ହାତ ଧରି, ଗୋଡ଼ ଧରି କହୁଥାଏ, "ସାନ୍ତମାନେ ! ଗୋସେଇଁ-ମାନେ ! ପଞ୍ଚ୍ ଠାକୁରମାନେ ! ଏ କାମ ଆପଣ-ମାନଙ୍କର, ପୁଅ ଆପଣମାନଙ୍କର, କାମ ତୁଲେଇ ନେଉନ୍ତୁ ।" ସତକୁ ସତ ସମସ୍ତ କାମ ତୁଲେଇ ନେଲେ, ବିଭା ହୋଇଗଲା । ଜାତିପୁଅମାନେ ଖୁସି ହୋଇ ବିଦା ହୋଇଗଲେ । ଯିବାବେଳେ ବାଟରେ କୁହାକୁହି ହୋଇ ଯାଉଥାନ୍ତି, "ଜାତି ଭିତରେ ଏତେ କାର୍ଯ୍ୟଟା କେହି କରି ନାହିଁ । ସବୁ ଜାତିପୁଅଙ୍କୁ କିଏ ବରଣିଥାଏ ? ଖୁଆଇ ପିଆଇ ଭୋର କରି ଦେଲା । ଛାଟିଆକୁ ଛାଟିଆ ବରା ଡାଲି, ବାଳୁସ ପରି ବଡ଼ ବଡ଼ ପୁଞ୍ଜାଏ ଗାରଡ଼ ବାନ୍ଧି ଦେଲା, ଗୃହ ମାଠିଆ ଛାଡ଼, କେତେ ପିଇବ ପିଅ ! ଧନ୍ୟ ଧନ୍ୟ । ସିମିତିକା ସାନ୍ତମାନଙ୍କୁ ଖଟିଛି ଏକା ।"

ବହୂଟି ଘରକୁ ଆସିଲା, ଦେଖିବାକୁ ବେଶ ଉଜ୍ଜଳଡାଉଲ, କିଏ କହିବ କଣ୍ଡରଘର ଝିଅ ? କରଣ ଖଣ୍ଡାଇତ ଘର ଝିଅ ପରି ଦିଶେ । ଗୁଣ ବି ସିମିତି, ତା ହାତ ରନ୍ଧା ମଦରଙ୍ଗା ଶାଗ ଖରଡ଼ା, ଚେଙ୍ଗ ମାଛ ଅଣ, କଙ୍କଡ଼ା ସିଝା ଯିଏ ଖାଇଛି, ପାସୋରି ପାରିବ ନାହିଁ । ଏ କଥାଗୁଡ଼ାକ ଏକା ବୁଢ଼ା ପାଣ ମୁହଁରୁ ଶୁଣି ଲେଖିଛୁଁ । ଘଷି ସାଉଁଟିବା, ଗୁଣ୍ଡିକାଠ ଗୋଟେଇବା, ଗାଡ ଭିତରୁ କଙ୍କଡ଼ା ଧରି ଆଣିବା, ସବୁ ଗୁଣରେ ପୂରା । ସଞ୍ଜବେଳେ ବୁଢ଼ା ଗାଁରୁ ବୁଲି ଆସିଲେ ବହୂ ଠେକିଏ ପାଣିରେ ଗୋଡ଼ ଧୋଇଦିଏ । ସାଙ୍ଗେ ସାଙ୍ଗେ ତିନି ପୁରୁଷର ବାସନ ଭଙ୍ଗା ପଥିଟିରେ ଭାତ, ଗୃକୁନ୍ଦା ଶାଗ ଖରଡ଼ା, କଙ୍କଡ଼ା ପୋଡ଼ା, ଚେଙ୍ଗ କୁଟ୍ଟିସ ଅଣ, ତିନି ତିଅଣ କରି ପରଷି ଦିଏ । ବୁଢ଼ା ଏତେ ତିଅଣ କେବେ ଖାଉଥିଲା ? ତେନ୍ତୁଳି ଫୁଟେ ଲୁଣଟିକକୁ ଭାତ ନଅଣ୍ଟ । ବହୂର ଏ ସବୁ ଗୁଣ ଦେଖି ବୁଢ଼ା ଦିନେ ମଝୋଲାରେ ବସି ଢେର 'ହାୟ ! ହାୟ' କରି କାନ୍ଦିଲା । ଏଡ଼େ ଭାଗ୍ୟଟା ହୀନକପାଳୀ ବୁଢ଼ୀ ଦେଖି ପାରିଲା ନାହିଁ ।

ବିଭା ପୂରି ଛ ମାସ ବାଦ । ଦିନ ପହରେ ହେଲାଣି, ବୁଢ଼ା ବିଛଣାରୁ ଉଠି ନାହିଁ ! ସପ୍ନା ପଗ୍ଭରିଲା, "କାଲେ ବାପା, ଏତେବେଳଯାଏ ଶୋଇଛୁ ?" ବୁଢ଼ା ପୁଅ ବହୂଙ୍କୁ ପାଖରେ ବସାଇ କହିଲା, "ଆରେ ସପ୍ନ, ମୋ ସାଙ୍ଗରେ ଯାଇ ପିଲାଦିନୁ ପୁରାଣ ଶୁଣିଛି, ଢେର କଥା ମୁଁ ବି ଶିଖେଇଛି, ମନରେ ରଖିବୁ—

ପରର ନାରୀ ଛୁଇଁ—ନ କରି ଯହିଁ ଯା ପୁଣି ।
ଲୋଭ ନ କରିବୁ ପର ଧନେ—
ମିଛ ନ କହିବୁ କଦାଚନେ ।

ବହୂ ଲୋ, ଏହି ସପ୍ନି ହେଲା ତୋ ଖାଉନ୍ଦ— ତୋ ଠାକୁର ଦେବତା - ଯା କଥା ଏଡ଼ିବୁ ନାହିଁ । ମୋ ଦେହଟା କମିତିକା ଦେଖୁଛି, ଆଉ ବଞ୍ଚିବ ନାହିଁ ।"

ପୁଅ ବହୂ ଦୁହେଁ ଢେର କାନ୍ଦିଲେ । ଗୃହ ପାଞ୍ଚ ଦିନ ଝିଅ ଶୁଆ ଛାଡ଼ି ବୁଢ଼ାର ଢେର ସେବା କଲେ । ବଡ଼ ବୁଢ଼ା ହୋଇଥିଲା, ଦିନ ଛଅଟା ଜରରେ 'ହରି ହରି' କହି ଗୃଲିଗଲା । ପୁଅ ବହୂ ଢେର କାନ୍ଦିଲେ । ଗାଁ ଲୋକେ 'ହାୟ ! ହାୟ !' କହିଲେ, ମାଝ କୁଳରେ ଇମିତିକା ସତ୍ୟବନ୍ତ ଧାର୍ମିକ ଦେଖା ନାହିଁ ।

ବୁଢ଼ାର ଶୁଦ୍ଧ ବାଦ ଗଲାଣି । ଦିନେ ସପ୍ନା ଚେମୀ ବସି ବିଗ୍ଭରି କଲେ—

ସପ୍ନା—ହଇ ଲୋ ବଉ ! ମୁଁ ଚୁକିର ଇସ୍ତଫା ଦେବ । ତତେ ଏକୁଟିଆ ଘରେ ପକାଇ ରାତିରେ କମିତି କରି ଗାଁ ବୁଲି ଯିବ?

ସପ୍ନା ଯା କହେ, ସବୁ କଥାରେ ଚେମୀର 'ହଁ' । ହେଲେ ଚାକିରି ଛାଡ଼ି ଦେବାଟା ତା ମନକୁ ମାନିଲା ନାହିଁ । କହିଲା, "ଏ ଖାଉନ୍ଦ ! ତମେ ତ ଚାକିରି ଛାଡ଼ିବ, କମିତି ଖାଇବା ପିନ୍ଧିବା ?

ସପ୍ନା—ମୁଲକରେ ଏତେ ବିଲ—ଗାଁରେ ଏତେ ପୋଖରୀ ଗଡ଼ିଆ—ଭାତ ଲୁଣ କଣ ଉଣା ହେବ ?

ଚେମୀ – ତମ ମନକୁ ଯା ଲାଗେ କର ।

ରାତିରେ ଗାଁର ସାନ୍ତମାନେ ଭାଗବତ ଘରେ ବସିଛନ୍ତି, ସପ୍ନା ବେକରେ ଗାମୁଛା ଖଣ୍ଡି ପଟକା ପକାଇ ହାତ ଯୋଡ଼ି କହିଲା, "ଆଜ୍ଞା ସାନ୍ତମାନେ ! ମୋ ସାତ ପୁରୁଷ ଆପଣମାନଙ୍କ ଚରଣରେଣୁ ଗୋଲାମ—ଚରଣ-ରେଣୁ ନୁଣ ଖାଇଲେ—ମୁଁ ଏଣିକି ଚାକିରି କରି ପାରିବ ନାହିଁ । ଆପଣମାନଙ୍କ ଚରଣରେଣୁରେ ଇସ୍ତଫା ଦେଲି ।" ସାନ୍ତମାନେ ଆପଣା ଆପଣା ମଧ୍ୟରେ ଢେର ବେଳଯାଏ ବିଚାର କଲେ, ଶେଷରେ ଜମିଦାର ବଳରାମ ନାୟକେ କହିଲେ, "ନାହିଁରେ, ତୋ ଇସ୍ତଫା ନିଆଯିବ ନାହିଁ । ଯିମିତି ଚୌକିଆ ଥିଲୁ, ସିମିତି ଥିବୁ । ହେତା ହଳା ସବୁ ପାଇବୁ । ଗାଁ ବୁଲି ନ ଆସିବୁ ପଛକେ ।"

ସପ୍ନା ଆସି ବହୂକୁ ସବୁ କଥା କହିଲା । ଚେମୀ ମନ ତ ଭାରି ଖୁସି; "ଏ ଖାଉନ୍ଦ ! ଭଲ କଲ, ଚାକିରି ଥାଉ, ମୁଁ ଇମିତି ସାନ ହେଲି—ଡର ଗଲା । ବଡ଼ ହେବି, ଡରିବ ନାହିଁ, ତମେ ଗାଁ ବୁଲି ଯିବ । ମୁଁ ପଲାରେ ଶୋଇଛି, ଡର ମାଡ଼ିଲା, ପାଟି କଲି, ଧାଇଁ ଆସିଲ । ବାଘ ନା ଭାଲୁ, କଅଁ ଡରିଲ ? ମୋ ମା କହିଲା—

"ଡର କାହାକୁ ଭୟ କାହାକୁ,
ଠାକୁରେ ଅଛନ୍ତି ଚୂଡ଼ି ବାହାକୁ ।"

ହଁ ଖାଉନ୍ଦ ! ଆମ ଗାଁରେ ବୁଢ଼ୀ ମଙ୍ଗଳା ଠାକୁରାଣୀ ଅଛନ୍ତି, ସେ ମଣିଷ ଦୁଃଖ ଶୁଣନ୍ତି । ତମେ ଠାକୁର ହରି ହରି ବୁଦ, ବୁଢ଼ା ଶଶୁରେ ସବୁଦିନେ କହୁଥିଲେ, ହରି କାହିଁ ? ଅଚ୍ଛା, ଗାଁରେ ବାଡ଼ ପଡ଼ିଲେ ତାକୁ ପୂଜା ଦେଲେ ଯୋଗମା ପଳେଇବ ନା ?

ସପ୍ନା—ନାହିଁ ଲୋ ବଉ—ହରି ଯେ ବଡ଼ ଠାକୁର, ସେ ଖାଇବାକୁ ପିଇବାକୁ ସବୁ ଦେଉଛନ୍ତି, ଆମର ସବୁ କାମ ଦେଖୁଛନ୍ତି, ମନ କଥା ଜାଣୁଛନ୍ତି । ଆମେ ଭଲ କାମ କରିବା, ତାଙ୍କୁ ଭଜିବା, ସେ ସୁଖ ଦେବେ । ମନ୍ଦକାମ କଲେ, ତାଙ୍କୁ ଅମାନ୍ୟ ହେଲେ, ସେ ଦୁଃଖ ଦେବେ ।

ଚେମୀ—ସବୁକଥା ତ ହରି ଦେଖିବ, ଅଳିଆ କାମ କଲେ ଦୁଃଖ ଦବ, ବାପ ଲୋ ! ମୁଁ ସିମିତି କାମ କରିବ ନାହିଁ, ସବୁବେଳେ ତମ ପରି ହରିକୁ ଡାକିବ । ଏ ଖାଉନ୍ଦ ! ମତେ ଭଲ ପାଇଟି ଶିଖେଇ ଦିଅ । ମା କହିଛି, ତମ କଥା ମାନିବ—ତେମେ ଯା କହିବ, ସବୁ ଶୁଣିବ ।

ଗେରସ୍ତ ଭାରିଯା ଦୁଇଟି ପ୍ରାଣୀ ସବୁବେଳେ ଏକ ସାଙ୍ଗରେ ଥାନ୍ତି, ଛାଡ଼ବାଡ଼ ଥାଏ ନାହିଁ, ଜଣକୁ ନ ପଚାରି ଆର ଜଣ କିଛି ପାଇଟି କରେ ନାହିଁ । ଜଣକ ମନରେ ଦେହରେ ଦୁଃଖ ହେଲେ ଆଉ ଜଣକ କାନ୍ଦ ପକାଏ । ସପ୍ନା ସାନ୍ତ ଘର ପାଇଟିକୁ ଗଲେ ଚେମୀ ଟୋକେଇଟିଏ କାଖେଇ ପଛେ ପଛେ ଯାଏ । ସପ୍ନା ବିଲରେ କାମ କରୁଥିବାବେଳେ ଚେମୀ ଘଷି ସାଉଣ୍ଟେ । ହୁଡ଼ ଚଳୁ ପିଠାଶାଗ, ମଦରଙ୍ଗା ଶାଗ ତୋଳେ, ଗାତରୁ କଙ୍କଡ଼ା ଧରେ ।

ସପ୍ନା ଏକୁଟିଆ ଅଲଗା ପାଇଟି କରେ, ପାଞ୍ଚ ଜଣ ମୂଲଆଙ୍କ ସାଙ୍ଗରେ ଥାଏ ନାହିଁ । କେହି ଦୁଷ୍ଟ ଲୋକ ଟାପରା କରି କଥା ପଦେ କହିଦେବ ପରା ! ଆଉ ଦୁଇ ଜଣ ମନ ଫିଟେଇ କଥା ଭାଷା ହୋଇ ପାରିବେ ନାହିଁ ।

ସପ୍ନା ପାଞ୍ଚ ମାଣ ଧାନ ମୂଲ ପାଏ । ବୁଢ଼ା ଅମଳରୁ ଘରେ ଗୋଟାଏ ଭଙ୍ଗା ମାଣ ଅଛି, ଚେମୀ ମାପି ପକାଏ । ଆଗେ ମାଣେ ମାପି ବୁଢ଼ା ଅମଳର ଗୋଟାଏ ଭଙ୍ଗାମୁଣ୍ଡି ମାଠିଆରେ ପୂରାଇ ରଖିଦିଏ । "ଏ ଖାଉନ୍ଦ ! ଦେହ ଅଛି, ପା ଅଛି, ଆଜ ପାଇଟି ନମିଳିଲା—କାହିଁ କାହାକୁ ମାଗିବା, ଘରେ ବସି ଖାଇବା । ମାଣେ ଧାନ ଦେଇ ତେଲ ପାହୁଲିକର, ଲୁଣ ପାହୁଲିକର, ଧୂଆଁ-ପତର ଅଧପାହୁଲିଏ, ହଳଦୀ ଅଧପାହୁଲିଏ ହିସାବ କରି ଦେଇ ଶାମ ସାହୁ ତେଲି ମହାଜନ ଦୋକାନକୁ ସପ୍ନାକୁ ପଠାଇଦିଏ । ଆଉ ତିନି ମାଣ ଧାନ ହାତ ପାହାରଣାରେ କୁଟି ପକାଏ । ଗୁଣ୍ଡଳ ବାହାର କରି ନେଇ ତଷୁଗୁଡ଼ିକ ଗୋଟାଏ ଭଙ୍ଗା ଟୋକେଇରେ ଜମା କରି ରଖିଥାଏ, ଦୁଇ ଚାରି ଦିନ ବାଦ ସେହି ତଷୁ କୁଟି ସେଥିରୁ କୁଣ୍ଡା କାଢ଼ିନିଏ । ମୁଠାଏ ଗୁଣ୍ଡଳ ପକାଇ ସେ କୁଣ୍ଡା ମିଶାଇ ପିଠଉ ବାଟି ଦେଇ ଗୋଟାଏ ପୋଡ଼ପିଠା କରିଦିଏ । ତଷୁରେ ଗୋବର ଲଗାଇ ଘଷି ପାରେ । ସପ୍ନା କହେ, "ଚେମୀ ସବୁ ଗୁଣରେ ଫସିକାରୁ । ତା ପରି ଗୁଣ୍ଡଳ କୁଟିବ କିଏ ?"

ସପ୍ନା ଦୋକାନରୁ ବାହୁଡ଼ିବାବେଳକୁ ଚେମୀ ଭାତ ରାନ୍ଧି ରଖିଥାଏ । ଦୋକାନ ସଉଦା ଭଲକରି ଦେଖି ସାଇତି ରଖେ । ତାହା ବାଦ ଟୋପାଏ ତେଲ ପକାଇ ଶାଗଟା ଖରଡ଼ି ପକାଏ, କଙ୍କଡ଼ା ଛେଚି ଦେଇ ଟୋପାଏ ତେଲ ଲୁଣ ଗୋଳାଇ ଦିଏ, ମାଛ ଥିଲେ ଟୋପାଏ ତେଲ ପକାଇ ଅଣ କରିଦିଏ । ବୁଢ଼ା ଭଙ୍ଗା ପଥୁରିରେ ସପ୍ନାକୁ ଭାତ ପରଷି ଦେଇ ପାଖରେ ବସେ । ରାଣ ନିୟମ ଦେଇ ବଳେଇ ବଳେଇ ଦୁଇ ଗୁଣ୍ଡା ଅଧିକ ଖୁଆଏ । ଚେମୀ ବଡ଼ ଘରଣୀ । ଖ୍ୱୋଟ ଅମଳ ବେଳେ ସାନ୍ତମାନଙ୍କ ଦୁଆରୁ ନଳିତା କାଠି ଆଣି ବିଡ଼ା ବାନ୍ଧି ରଖିଛି, ଖାଉନ୍ଦ ଭାତ ଖାଇବାବେଳେ ଗୋଟାଏ କାଠି ଜାଳି ଆଲୁଅ ଦେଖାଏ । ସପ୍ନାର ଖିଆ ହୋଇଗଲେ ସେ ଅଇଣ୍ଠାପଥିରିରେ ଆପଣା ଭାତ ବାଢ଼ି ଖାଏ । ଭଲମନ୍ଦ ଘରକୁ ଯେ ପଦାର୍ଥ ଆସୁ, ସପ୍ନା ଆଗେ ନ ଖାଇଲେ ଚେମୀ ଖାଇବ ନାହିଁ । ବି ଜଣଙ୍କ ଖିଆପିଆ ହୋଇଗଲେ ବାକି ଭାତଗୁଡ଼ାକ ପଖାଳ ତିଅଣ ଆର ଦିନକୁ ରଖିଦିଏ । ଓଳିଏ ରାନ୍ଧେଇ, ଦୁଇ ଓଳିକୁ ଜାଳ କାହିଁ ? ଆହୁରି ଗୋଟାଏ କଥା, ସକାଳ ଓଳି ପାଇଟିରୁ ଆସିବାକୁ ଦିନ ବି ପହର, ଭୋକ ବେଳେ କିଏ ରନ୍ଧାକୁ ତର ସହିବ ? ବର୍ଷାଦିନେ ଜାଳ ମିଳିବ ନାହିଁ ବୋଲି ଖରାଦିନେ ଘଷି ପାରି ଓଳି ଚାଳୋଡ଼ରେ ଟାଙ୍ଗି ରଖି ଦେଇଛି ।

ସପ୍ନା ଚେମୀ ଦୁଇଟି ପ୍ରାଣୀ ଖୁବ ମନ ଆନନ୍ଦରେ ଅଛନ୍ତି । ସାହୁର ଦେଣା ନାହିଁ, କି ରଜାର ଖଜଣା ନାହିଁ । ଦିନେ ସୁଦ୍ଧା ଘରେ ଅନ୍ନ କ୍ଷୁଣ ନାହିଁ । ମନରେ କିଛି ଭାବନା ନାହିଁ, ଖାଇବା କଥା ପଡ଼ିଲେ ଦିଜଣଯାକ କହନ୍ତି, ମୁଲକରେ ଏତେ ବିଲ ଗଡ଼ିଆ ପୋଖରୀ ଥାଉଁ ଥାଉଁ କିଏ ଦିଟା ପ୍ରାଣୀ ପେଟ ପୂରିବ ନାହିଁ ? ଚେମୀ କହେ, 'ଏ ଖାଉନ୍ଦ ! ତମେ କାହିଁକି ପର ପାଇଟିକି ଯିବ, ବାଳୁଙ୍ଗା ଝାଡ଼ ଆଣିଲେ ତ ଆମର ଛ ମାସ ମେଣ୍ଟିଯିବ ।" ବେଳ ଜାଣି ଚେମୀ କୁଲଟାରେ କାଠି ଖଣ୍ଡେ ବାନ୍ଧି ଢେର ବାଳୁଙ୍ଗା ଝାଡ଼ ଆଣି ଘରେ ରଖେ । ଖାଉନ୍ଦକୁ ବାଧିବ ବୋଲି ଚେମୀ ରୋଜ ରୋଜ ତାକୁ ପାଇଟିକୁ ପଠାଏ ନାହିଁ, ବାଳୁଙ୍ଗାରେ ଅନ୍ନ ଚଳାଏ । ଯେଉଁ ଦିନ ସପ୍ନା ସାନ୍ତ ଘର ପାଇଟିକୁ ନ ଯାଏ, ସେ ଦିନ ଦୁଇ ଜଣ ପୋଖରୀ ପୋଖରୀ ବୁଲି ବୁଲି କଛିମ, କଙ୍କଡ଼ା, ମାଛ ଧରି ଆଣନ୍ତି, ସେ ଦିନ ଚେମୀ ଢେର ରକମ ତିଅଣ ରାନ୍ଧେ, ଦୁଇ ଜଣଙ୍କର ଭାରି ଆନନ୍ଦ ।

ରାତରେ ଚେମୀ ରନ୍ଧାବଢ଼ା କରୁଥିବାବେଳେ ସପ୍ନା ହରିଣୀସୁତ, ଗଜସୁତ ଗାଏ । ଭାଗବତ ବି ଢେର ପଦ ଶିଖିଛି, ଏଠୁ ସେଠୁ ଢେର ପଦ ଗାଏ । ଚେମୀ କାନ ଡେରି ଶୁଣୁଥାଏ । ପଡ଼ାପଡ଼ି ସରିଲେ, ଠାକୁର —ହରି, ଦୟା କର', କହି ହାତଯୋଡ଼ି ଭୂଇଁରେ ତପ ତପ କରି ତିନି ଥର ମୁଣ୍ଡିଆ ମାରେ, ତା ବାଦ ସପ୍ନା ଗୋଡ଼ତଳେ ତିନି ଥର ଜୁହାର ହୋଇ ତା ପାଦରୁ ଧୂଳି ନେଇ ମୁଣ୍ଡରେ ମାରେ । ପ୍ରତିଦିନ ସଞ୍ଜବେଳେ ଏହିପରି କରେ । ଯେଉଁଦିନ ହାତରେ କିଛି ପାଇଟି ନାହିଁ, ଦୁଇଜଣ ଦୁଇଜଣଙ୍କୁ ଅନାଇ ପିଣ୍ଡାଟିରେ ବସିଥାନ୍ତି ।

ବୁଢ଼ା ରାମ ପରିଡ଼ାକୁ ସପ୍ନା ଅଜା ସାନ୍ତ ବୋଲି ଡାକେ, ତାଙ୍କରି ଘରେ ଢେର ଦିନ ପାଇଟି କରେ । ପରିଡ଼ା ବୁଢ଼ା ଦିନେ ଦିନେ ସପ୍ନାକୁ ଡାକିବାକୁ ଆସି ଦେଖେ, ଦୁଇଜଣ ଏକା ଜାଗାରେ ବସିଛନ୍ତି - ଟାପରା କରି କହେ, "କି ରେ ସପ୍ନା, ତୁମେ ଦୁଇଟା ଯେ ବଗଲା ବଗୁଲି ପରି ବସିଛ !" ରୋଜ ରୋଜ ଟାପରା କରି ବଗଲା ବଗୁଲି ବୋଲି କହୁଁ କହୁଁ ପରିଡ଼ାର ଅଭ୍ୟାସ ହୋଇ ଗଲାଣି । ସବୁବେଳେ ଡାକେ, "ଆରେ ବଗଲା, ଆଲୋ ବଗୁଲି !" ତା ଶୁଣାଶୁଣି ଗାଁ ଲୋକେ ବି ଡାକିଲେଣି ବଗଲା ପାଏ । ଗାଁ ମାଇକିନିଆମାନେ ବି ଚେମୀକୁ ଟାପରା କରି କହନ୍ତି, "ଆଲୋ ବଗୁଲି, ତୋ ବଗଲା ଲାଗି କଣ ରାନ୍ଧିଥିଲୁ ?" ସତକୁ ସତ ସମସ୍ତେ ଦେଖୁଛନ୍ତି, ସବୁଦିନେ ସବୁବେଳେ ବଗଲା ବଗୁଲି ପରି ଦୁଇ ଜଣ ଏକା ସାଙ୍ଗରେ ଅଛନ୍ତି । ଶେଷକୁ ଗାଁରେ ନାମ ହୋଇଗଲାଣି—ବଗଲା ବଗୁଲି ।

ବର୍ଷାଦିନରେ ବଗଲା ବଗୁଲିର ଭାରି ଆନନ୍ଦ । ବିଲ ବଛାବେଳେ ଦୁଇ ଜଣଙ୍କୁ ପାଇଟି ମିଳେ । ସପ୍ନାର ମୂଲ ପାଞ୍ଚମାଣ, ଚେମୀର ଚାରି ମାଣ; ଖାଇ ପିଇ ପାଞ୍ଚମାଣ ଧାନ ବଳିପଡ଼େ ।

ଏଇଟା ବଡ଼ ଭଲ ବର୍ଷ । ଅର୍ଜ୍ଜନ ଚାରିଆଡ଼େ । ପଛପାଣିଆ ଯୋଗୁଁ ସମସ୍ତଙ୍କ ବିଲବଛା ଏକ ସାଙ୍ଗରେ, ମୂଲିଆ ମିଳୁ ନାହାନ୍ତି । ମୂଲ ବଢ଼ି ଯାଇଛି, ସପ୍ନାର ମୂଲ ଛ ମାଣ, ଚେମୀର ପାଞ୍ଚ ମାଣ । ଘରେ ଧାନ ଗୋଟାଏ ମାଠିଆ, ଯୋଡ଼ାଏ ଗାଡ଼ିଆ ଭର୍ତ୍ତି ହୋଇ ସପ୍ନା ଗୋଟାଏ ସାନ ଓଳିଆ ବାନ୍ଧି ଦେଲାଣି । ଲକ୍ଷ୍ମୀ ଆଲିଙ୍ଗନ କଲାବେଳେ ଚାରିଆଡ଼ୁ ଅର୍ଜ୍ଜନ ମିଳେ । ବିଲ ବଛାବେଳେ ହାତରେ କଙ୍କଡ଼ା ଗେଙ୍ଗ ପଡ଼ିଯାଏ, ହିଡ଼ମୂଳରେ ମଦରଙ୍ଗା କାନଶିରି ଶାଗ ବଲ୍‌ବଲ୍; କାମ ଉଠାଣି ହାତ ବୁଲେଇ ଦେଲେ ଦିନତମାମ ଚଳିଲା । ଏ ବାଦେ ଚେମୀ ବିଲ ହିଡ଼ର ମୂଳରୁ କାଇଁଶ କାଟିଆଣି ଗୋଟାଏ ଖଇଞ୍ଚି ବୁଣିଛି । ଚେମୀକୁ ଢେର ପାଇଟି ଆସେ । କାଇଁଶ ପାଛିଆ ବୁଣି ଗାଁ ବୋହୂ-ଝିଅଙ୍କୁ ବିକି ଚାଉଳ ଧାନ ଆଣେ । ଦୁଇ ଜଣ ବିଲବଛା ପାଇଟିରେ ଲାଗି ଥିବାବେଳେ ଖଇଞ୍ଚିଟି ପାଣିମାହାଳ ହିଡ଼ମୂଳରେ ବସାଇ ଦେଇଥାନ୍ତି । ପାଇଟି ଉଠାଣି ବେଳକୁ ଚେଙ୍ଗ କୁଟିଏ, କଉ ଝିପିରି ଶେଉଳ ପହଣା ଖଇଞ୍ଚିରେ ଭର୍ତ୍ତି । ଦିନେ ଦିନେ ଦୁଇ ତିନଥର ଖଇଞ୍ଚିଟା ଝାଡ଼ି ପକାନ୍ତି ।

ଆଜିକାଲି ସଞ୍ଜବେଳେ ଦୋକାନୀ ଦୁଆରକୁ ଧାନ ନେଇ ଯିବାକୁ ହୁଏ ନାହିଁ, ମାଛ ଦି ହତା ନେଇ ଗଲେ ତେଲ ଲୁଣ ଧୂଆଁପତ୍ର ସବୁ ମିଳିଗଲା । ଚେମୀ ଦି ନଉତି ସରିକି ପିତା ଶୁଖୁଆ ଶୁଖାଇ ଚାରିମାସ ତିଅଣକୁ ଆଉ ବାନ୍ଧି ସାରିଲାଣି । ଭଲ କରି ଶୁଖାଇ ଶୁଖୁଆଗୁଡ଼ିକ ଗୋଟାଏ ପାଛିଆରେ ପୂରାଇ ଘର ଶେଣୀରେ ଟଙ୍ଗା ଶିକାଟିରେ ଥୋଇ ଦେଇଛି । ଆଜିକାଲି ଦି ପ୍ରାଣୀ ଭିତରେ ଆନନ୍ଦର ସୀମା ନାହିଁ ।

ଅଶିଣମାସିଆ ଦିନେ ରାତି ଘଡ଼ିକ ବେଳେ ଦି ଜଣଙ୍କର ଖିଆ ପିଆ ସରିଲାଣି । ଚେମୀ ଗୁଡ଼ାଏ ବିଲ ମାଛ ବୁଢ଼ୀ ପଣ୍ଡାଣୀଙ୍କୁ ଦେଇ ମାଟିକୁମ୍ଭାରେ କୁମ୍ଭାଏ

କରଞ୍ଜତେଲ କିଣି ଆଣି ଘରେ ଥୋଇ ଦେଇଛୁ । ମଫସଲ ଗୃହସ୍ଥ ଘରେ ସମସ୍ତେ ଖରାଦିନେ ତେଲି ଦୁଆରୁ କରଞ୍ଜ ପେଡ଼ ଆଣି ବର୍ଷା ଦିନ ଲାଗି ତେଲ ପାଇକରି ରଖିଥାନ୍ତି । ଦିନଯାକ ପାଣି କାଦୁଅରେ ବୁଲି ବୁଲି ଗୋଡ଼ ଯୋଡ଼ାକ ପାଣି ଖାଇ ସିଠିଆ ପଡ଼ଯାଏ, ଆଙ୍ଗୁଳି ସନ୍ଧି ସବୁ ଘା ହୋଇଯାଏ । ରାତିରେ କରଞ୍ଜ ତେଲ ଲଗାଇ ଦେଲେ ତହିଁ ଆର ଦିନ ସକାଳକୁ କିଛି ନ ଥାଏ । ଖଣ୍ଡେ ଛିଣ୍ଡା କନ୍ଥା ପାରି ଦେଇ ସପ୍ନା ଶୋଇ ପଡ଼ିଛି । ଚେମ୍ନୀ ଗୋଡ଼ର ପାଣିଖିଆଜାଗା ଆଙ୍ଗୁଳି ସନ୍ଧିମାନଙ୍କରେ କରଞ୍ଜ ତେଲ ଲଗାଇ ଦେଉଛି । ଚେମ୍ନୀ କଥା ଆରମ୍ଭ କଲା, "ଏ ଖାଉନ୍ଦ ! ତେମେ ଦେଖ, ଘରେ ଶୋଇ ପଡ଼ିବାକୁ ଆଉ ଜାଗା ନାହିଁ । ବାତୁଙ୍ଗା ଯାଚଲାଣି, ମୁଁ କାଲି ଧକାଳୁ ଝାଡ଼ି ଯିବି । ଆଉ କେଉଁଠି ରଖିବା ? କଣ କରିବା ?

ସପ୍ନା – ହଁ ଲୋ ବଉ ! ମୁଁ ସେଇ କଥା ଉତୁଣିକା ମନରେ ପକାଇ ଥିଲି । ଆଚ୍ଛା, ଧାନ ବିକ ଦେଇ ଟଙ୍କା ପଇସା ଆଣି ଘରେ ରଖିବା ।

ଚେମ୍ନୀ— ନାହିଁ, ଏ ଖାଉନ୍ଦ – ସେ ବଡ଼ ଅଳିଆ କଥା । କେତେ ଧାନକୁ କେତେ ପଇସା ଗଣି ଜାଣିବା ନାହିଁ, ଆଉ ଟଙ୍କା ପଇସା ଦେଖିଲେ ଚୋର ଟପ୍‌କର ଦୁଆରକୁ ଆସିବେ । କେଉଁଠି ପୋତି ପକାଇବା, ଭୁଲି ଗଲେ ଗଲା । ମୋ ମା ଥରେ ଗୁରିଟା ପଇସା ପୋତି ପକାଇ ଥିଲା—ପାଇଲା ନାହିଁ, ତେର କାନ୍ଦିଲା ।

ସପ୍ନା—ତେବେ ଧାନ ସବୁ ରାମ ମାସନ୍ତ ତନ୍ତୀକୁ ଦେବା, ସେ ତୋ ଲାଗି ଖଣ୍ଡେ ରଙ୍ଗ କସ୍ତା ଶାଢ଼ୀ ବୁଣି ଦେବ ।

ଚେମ୍ନୀ— ନାହିଁ, ଖାଉନ୍ଦ ! ମୁଁ ପିନ୍ଧି ଜାଣିବି ନାହିଁ, ଚିରି ଯିବ । ମୁଁ କହୁଛୁ, ଅଜା ପଣ୍ଡା ସାନ୍ତ ଶୀତଦିନେ ଯିମିତକା କଳା ଅଙ୍ଗା ଲଗାନ୍ତି, ତେମେ ବାଲିସର ହାଟକୁ ଯାଇ ସିମିତକା ଗୋଟାଏ କିଣି ଆଣ । ଶୀତ ହେଲେ ଲଗାଇବ, ବଡ଼ ସୁନ୍ଦର ଦିଶିବ ।

ସପ୍ନା—ତୁ ନାଲି ରଙ୍ଗ ଶାଢ଼ୀ ପିନ୍ଧିଲେ ସୁନ୍ଦର ଦିଶିବ ।

ଚେମ୍ନୀ—ତେମେ ଅଙ୍ଗା ଲଗାଇଲେ ସୁନ୍ଦର ଦିଶିବ ।

ଦୁଇ ଜଣଙ୍କ ଭିତରେ ତେର ବେଳଯାଏ କଥା ଚଳିଲା । ଶେଷରେ ସପ୍ନା ପ୍ରସ୍ତାବରେ କଥା ସ୍ଥିର ହେଲା, କାବୁଲି ପଠାଣ ଆସିଲେ ତାକୁ ସବୁ ଧାନ ଦେଇ ଗୋଟାଏ ରଙ୍ଗ କମ୍ବଳ କିଣିବେ, ଶୀତ ଦିନରେ ଖଡ଼କା ହେଁସ ଘୋଡ଼ି ହେବେ ନାହିଁ, ସେଇ କମ୍ବଳ ଘୋଡ଼ି ହେବେ । କଥା ଭାଷା ହେଉ ହେଉ ଦୁଇ ଜଣଯାକ ଶୋଇ ପଡ଼ିଲେଣି ।

ଦିନ ଘଡ଼ିଏ ହେଲାଣି, ଦି ଜଣଯାକ ଶୋଇଛନ୍ତି । ରୋଜ ରୋଜ ଚେମ୍ନୀ ଆଗରେ ଉଠେ, ଆଜି ଉଠି ନାହିଁ । ସପ୍ନା କହିଲା, "କି ଲୋ ବଉ, ତୋ ଦିହ ତାତିଲା ପରି ଲାଗୁ ଛି, ଜର ହେଲା କି ଲୋ ?"

ଚେମ୍ନୀ—ହଁ, ଦିହଟା କିମିତିକା କସମସ କରୁଛି । ଏ ଖାଉନ୍ଦ, ତମ ଦିହଟା ତାତି ଲାଗୁଛି, ଜର ହେଲା କି ? ଆଲୋ ମା ଲୋ ! ଆଲୋ ବୋପା ଲୋ ! କଣ କରିବି ଲୋ ! ଠାକୁର ହରି ! ମୋ ବାପଗାଁ ମଙ୍ଗଳା ! ମୋ ଖାଉନ୍ଦକୁ ଭଲ କରି ଦେ ।

ସପ୍ନା—ନାହିଁ ଲୋ ବଉ, ଡର ନା, ଠାକୁରେ ଭଲ କରି ଦେବେ । ତୁ ଯା ପଥି ରାନ୍ଧ, ମଠ ମାଣେ ଧାନ ଦେ, ସାଭ ଦୁଆରୁ ରସୁଣ ଘେନି ଆସେ ।

ଗରମ ଗରମ ପେଜମିଶା ଭାତରେ ପାଣି ଢାଳି ରସୁଣ ଦେଇ ଦୁଇ ଜଣ ପଥି କଲେ ।

ଚାରି ଦିନ ଗଲା, ପାଞ୍ଚ ଦିନ ଦିନ ସପନାର ଜର ବଳ ବଢ଼ିଲା, ପଥ୍ୟ ଛାଡ଼ିଲା। ରେମୀର ଜର ଟିକିଏ ଭଲ ହେଲାଣି। ରେମୀର ଖାଇବାର ନାହିଁ, ଶୋଇବାର ନାହିଁ। ସପନାର ତ ବଟେ ନିଦ ନାହିଁ, ରେମୀ ଗୋଡ଼ ତଳେ ବସି ଦିନ ରାତି ଖାଲି ଠାକୁର ହରି ଆଉ ବାପ ଗାଁ ମଙ୍ଗଳାଙ୍କୁ ଡାକୁଛି। ରେମୀ ଆଉ ଧୈର୍ଯ୍ୟ ଧରି ରହିପାରିଲା ନାହିଁ। ଖାଉନ୍ଦକୁ କହି ଗାଁ ବୈଦ୍ୟରାଜ ନକୁଳ ନାୟକ ଦ୍ୱାରକୁ ଧାଇଁଲା। ସେ ଏକୁଟିଆ କେବେ ଘରୁ ବାହାରି ନାହିଁ। ଆଜି ଗାଁ ଗୋହିରି ମଝି ବାଟେ ଚାଲିଛି। ଗୋଡ଼ ପୋତି ପଡ଼ୁଛି, ଆଖିରେ ପାଣି ଭର୍ତ୍ତି, ବାଟ ଦିଶୁ ନାହିଁ—ବୈଦ୍ୟ ଘରକୁ ଧାଇଁଛି। ରେମୀ ପାଞ୍ଚ ଛ ବର୍ଷ ହେଲା ଶଶୁର ଗାଁକୁ ଆସିଲାଣି, କାହାରି ମୁହଁ ଦେଖି ନାହିଁ, କାହାରିକୁ ଅନାଏ ନାହିଁ, ଖାଉନ୍ଦ ଛଡ଼ା ଆଉ କାହାରି ସାଙ୍ଗରେ କଥା ନାହିଁ। ଠାକୁର ଦେବତାଙ୍କୁ ମନ ମଧ୍ୟରେ ଡାକି ଡାକି ଖୁବ ହେମତ ଧରି ଗଲା। ହେମତ ଧରି ବୈଦ୍ୟରାଜଙ୍କୁ ସପନା ଜର କଥା କହିଲା। ବୈଦ୍ୟ ନକୁଳ ନାୟକେ ବଟୁଆ ଫିଟାଇ ଗୋଟାଏ ଚସର କୁଆ ଭିତରୁ ଚାରିଟା ଜ୍ୱର-ରାଘବ ବଟିକା କାଢ଼ି ଦେଲେ; କହିଲେ, "ତୁ ତ ମହୁ ପାଇବୁ ନାହିଁ, ତୁଳସୀ ରସ ଜରପାପଡ଼ା ରସ ଗୋଳି ଦେଇ ଚାରି ପହରରେ ଚାରି ପାନ ଦେବୁ, ଜ୍ୱର ନ ଛାଡ଼ିଲେ ପାଣି ଧରି ଆସିବୁ।" ଛ ଦିନ ଦିନ ଜ୍ୱର ବଳି ପଡ଼ିଲାଣି। ରେମୀ ସାଙ୍ଗରେ କଥାନାହିଁ କେତେବେଳେ ଗୀତ ଗାଉଛି, ଭାଗବତ ପଦ ପଢ଼ୁଛି, ବାଳି କଥା କହୁଛି, ଆଖି ଯୋଡ଼ାକ କୋଚିଆରକ୍ତପରି ଲାଲ। ରେମୀ ସାରୁ ପତ୍ରଟାରେ ପାଣି (ମୁତ) ଧରି ଖାଉନ୍ଦକୁ କିଛି ନ କହି ବୈଦ୍ୟ ଦୁଆରକୁ ଧାଇଁଲା। ବୈଦ୍ୟରାଜ ଦୂବ ଘାସ କେରାକରେ ପାଣିରେ ଟୋପାଏ ତେଲ ପକାଇଲେ, ତେଲ ବୁନ୍ଦା ଧରି ରହିଲା ମେଳିଲା ନାହିଁ। ରୋଗୀର ବୃତ୍ତାନ୍ତ ସବୁ ଶୁଣି କହିଲେ, "ଘୋର ସନ୍ନିପାତ, କସ୍ତୁରୀ ଭୈରବବଟିକା ଲୋଡ଼ା, ଚାରି ଟଙ୍କା ଦାମ ଆଣ।" ରେମୀର ପାଟି ପ୍ରାୟ ପଡ଼ିଗଲାଣି; ଖୁବ କଷ୍ଟରେ କହିଲା, "ମୁଁ ଟଙ୍କା କାହୁଁ ପାଇବି, ଘରେ ଧାନ ଅଛି, ସବୁ ଆଣି ଦେବି।" ରେମୀ ଘରକୁ ଧାଇଁଧାଇଁ ଆସିଲା, ଖାଉନ୍ଦକୁ ଅନାଇଲା, କିଛି କଥା କହିଲା ନାହିଁ। କହିବ କଅଣ—ଖାଉନ୍ଦ କଥା ଶୁଣୁଛି, ନା କହୁଛି ଖାଲି ଉଠ ବସ ହେଉଛି, ପାଟି କରୁଛି। ରେମୀ ପାଛୁଆଟିରେ ପାଛୁଆଏ ଅମପା ଧାନ ପୂରାଇ କାଖେଇ ବୈଦ୍ୟ ଦୁଆରକୁ ଧାଇଁଲା। ବୈଦ୍ୟ ଆଗରେ ଧାନ କୁଢ଼େଇ ଦେଲା—ରେମୀମା ବାହାବେଳେ ଅଢ଼େଇ ମସା ରୂପାର ଗୋଟାଏ ମୁଦି ଦେଇ ଥିଲା, ଘୋରି ଯିବ ବୋଲି ରେମୀ ସବୁ ଦିନେ ଲଗାଏ ନାହିଁ, ସେହି ମୁଦିଟା ବୈଦ୍ୟଙ୍କୁ ଦେଲା। ତାଙ୍କ ପାଖରୁ ଔଷଧ ନେଇ ଧାଇଁଛି। ରେମୀ ଚାରି ଦିନ ହେଲା ଟୋପାଏ ପାଣି ମୁହଁରେ ଦେଇ ନାହିଁ, ତା ଜ୍ୱର ବି ଭଲ ଛାଡ଼ି ନାହିଁ, ଭିତରେ ଭିତରେ ଜ୍ୱର ଅଛି। ସକାଳୁ ଦିନ ଦିପହର ଯାଏ ଧାଇଁଛି। ରେମୀ ଘରକୁ ଯାଇ ଦେଖିଲା, ସପନା ପାଟି ଆଁ କରି ପଡ଼ି ଯାଇଛି। ରେମୀ 'ଏ ଠାକୁର ମଙ୍ଗଳା!' କହି ସପନା ଗୋଡ଼ ତଳେ ଦୁଲ୍ କରି ପଡ଼ିଗଲା। ସପନାର ଟିକିଏ ଟିକିଏ ଜ୍ଞାନ ଥିଲା। ରେମୀ ମୁହଁକୁ ଏକ ଧ୍ୟାନରେ ଅନାଇଛି। ଦୁହେଁ ଦୁହିଙ୍କୁ ଦେଖୁଛନ୍ତି।

ତହିଁ ଆରଦିନ ଗାଁରେ ଚହଳ ପଡ଼ିଗଲା—ବଗଲା ବଗୁଲୀର ଜ୍ୱର ହୋଇଥିଲା, ଦୁଇ ଦିନ ହେଲା ତାଟି ଫିଟି ନାହିଁ। ଗାଁ ଲୋକେ ଭାଙ୍ଗିଲେ। ସମସ୍ତେ ହାୟ ହାୟ କରୁଛନ୍ତି। ଜମିଦାର ବାବୁ ସପନା ଶଶୁର ଗାଁକୁ ଧାଉଡ଼ିଆ ପାଇକ ପଠାଇଦେଲେ।

ଗାଁର ସମସ୍ତ ସ୍ତ୍ରୀ ରେମୀ ଲାଗି ହାୟ ହାୟ କଲେ, ଯିବାବେଳେ ସମସ୍ତେ ହୁଳହୁଳି ପକାଇଲେ। ଗାଁର ସମସ୍ତଙ୍କ ମୁହଁରେ ଏକ କଥା—ଧନ୍ୟ ଧନ୍ୟ ସ୍ୱାମୀ ସ୍ତ୍ରୀ ପ୍ରେମ! ନୀଚ କୁଳରେ ବି ଏମନ୍ତ ଧର୍ମ, ଏମନ୍ତ ପ୍ରେମ ଥାଏ!

———

## କମଳା ପ୍ରସାଦ ଚୋରାପ

ଏତେଡ଼ ବଡ଼ କାରବାରି ଘର, କୁଆ କା କଲୁ କରୁ ଅଧରାତିଯାଏ ଗହଳ ଚହଳ ଲାଗିଥାଏ । ଆଜ ସବୁ ତୁନି ତାନ । ବାଟ ଗଲା ଲୋକେ ବୁଝିବେ, ଏତେବଡ଼ ଦୋତାଲା ଘରଟାରେ କେହି ମଣିଷ ନାହିଁ, ଭୁଛା ପଡ଼ିଛି । ସ୍ୱରୂପ ମାଝି ଭୋର ଭୋର ପହଞ୍ଚିଲା ବେଳୁଁ ବାବୁଙ୍କ ଘର ଉପରେ ଯେମନ୍ତ ଚଡ଼କଟାଏ ପଡ଼ି ଯାଇଛି । ଭିତର ପ୍ରସ୍ତରେ ମାଇକିନିଆ-ଗୁଡ଼ାଙ୍କର କବର କାବର ପାଟି, ସାନ୍ତାଣୀଙ୍କ କଡ଼ା ହୁକୁମ, ପିଲା-ଗୁଡ଼ାଙ୍କର ଧାଁ ଦୌଡ଼ ଗହଳ ଚହଳ, ବାସନ କୁସନର ଝମଝାମ ଶବ୍ଦ କିଛି ଶୁଭୁ ନାହିଁ । ତାରିମା ଦାସୀ 'ହାୟ ହାୟ' କରି କାନ୍ଦ ପକାଉଛି, ତାହାର ପାଞ୍ଚ ମାସର ଦରମା ସାଢ଼େ ସାତ ଟଙ୍କା ଆଗତୁରା ନେଇ ବଟମ ଦେଇଥିଲା । ଖିମା ଆଈ ଜୀବନଯାକ ଛଅ ଛଅ ବେକରେ ଗୋଟାଏ ସୁନାମାଳୀ ଲଗାଇଥିଲା, କୋଡ଼ିଏ ଟଙ୍କାରେ ବନ୍ଧା ଦେଇଛି । ବଡ଼ ଆଶା କରିଥିଲା, ବଟମରେ ବଡ଼ ତରିଶ ଟଙ୍କା ହେଲେ ଟଙ୍କାଏ ପାଞ୍ଚ ସୁକା କଲନ୍ତର ଫୋପାଡ଼ ଦେଇ ମୁଠାଏ ଟଙ୍କା ଅଧିକା ପାଇଯିବ । ସେଇଟା ନହାତି ସମ୍ଭାଳି ନ ପାରି ବାଡ଼ ଦୁଆରେ ବସି ବାହୁନି ବାହୁନି କାନ୍ଦୁଛି । ସାନ୍ତାଣୀଙ୍କ ଡରରେ ଘର ମଧ୍ୟରେ କେହି ପାଟି କରିପାରୁ ନାହିଁ । ମନୋଦୁଃଖରେ ବାବୁଙ୍କର ଅଣ୍ଟା ବସିଗଲାଣି, ଭେକା ମାରିଗଲା ପରି ତୁନି ହୋଇ ବ ଛନ୍ତି । ଘରେ ଗୋଳମାଳ ହେଲେ ସେ ହକଦାର ହେବେ, ଏଥିପାଇଁ ସାନ୍ତାଣୀଙ୍କର ମନା, କେହି ପାଟି କରିବେ ନାହିଁ ।

ନିଜେ ବାବୁ ରାମହରି ନାୟକେ କଚେରି ଘରେ ଆପଣା ଗାଦିରେ ବଡ଼ ମାଣ୍ଡିଟାକୁ ଆଉଜି ତୁନି ହୋଇ ବସି ହୁକା ଟାଣୁଛନ୍ତି । କାହାରି ସାଙ୍ଗରେ କଥା ନାହିଁ । କେହି ଭରସି ପାଖ ପଶି ପାରୁନାହିଁ । ହୁକାଟି ବୈଠକରେ ଥୋଇ ଦେବା ମାତ୍ରକେ ରାମା ଭଣ୍ଡାରି ପିଲା ଚିଲମ ବଦଳାଇ ଦେଉଛି । ତା ମନରେ ବି ସୁଖ ନାହିଁ । ସେ ବି ଏଣୁ ତେଣୁ ରୁନ୍ଧିଇ ରାନ୍ଧିଇ ସାଢ଼େ ଦଶ ଟଙ୍କା ବଟମ ଦେଇଥିଲା । ଘରେ ବୋହୂ, ଝିଅ, ଖୋଦ ସାନ୍ତାଣୀ, ସମସ୍ତେ ମଗଦୁର ଭରି କିଛି କିଛି ବଟମ ଦେଇଥିଲେ । ଗଣ୍ଡ ଛୁଆ ନାମରେ ବି ମାମାନେ ବଟମ ଦେଇଥାନ୍ତି ।

କଚେରି ଘର ଅଗଣାରେ ଗୋଟିଏ କଣରେ ମାଝି ସ୍ୱରୂପ ବେହେରା ପାସ୍ତୁ ମୂଳରେ ଗାଲରେ ହାତ ଦେଇ ମୁହଁ ପୋତି ବସିଛି । ତାହାର ଦୁଇ ତିନି ହାତ ଛଡ଼ାରେ ରାମ ବେହେରା ଓ ମଦନ ବେହେରା ଦୁଇ ଜଣ ଖଲସି (୧) । ସମସ୍ତେ ମୁଣ୍ଡ ପୋତି ବସିଛନ୍ତି, କାହାରି ମୁହଁରେ କଥା ନାହିଁ । ପହରଣ ସମସ୍ତଙ୍କର ଏକ ଗେଟିଆ, ମଇଳା ଚିରୁକୁଟ ଚିରା ଖଣ୍ଡେ ଖଣ୍ଡେ ଲୁଗା । ଖାଲି ମାଝି ବେକରେ ଖଣ୍ଡେ ମଇଳା ଗାମୁଛା ପଟକା ପରି ପଡ଼ିଛି । ସମସ୍ତଙ୍କ ଦେହଯାକ ଧୂଳି କାଦୁଅ ବୋଳା । ମୁଣ୍ଡରେ ଚକେ ଚକେ ରୂଢ଼ ।

କଚେରି ଘରୁ ବାବୁ ଡାକ ଦେଲେ, "ମାଝି !" ସ୍ୱରୂପ ମାଝି, 'ଆଜ୍ଞା ହଜୁର' ଉତ୍ତର ଦେଇ ବାବୁଙ୍କ ଆଗରେ ଛିଡ଼ା ହୋଇଗଲା । ବାବୁ ମାଝିକୁ ଅନାଇ ଦେଲେ—'ହୁଁ' ବୋଲି କହି ଗୁଡ଼ାଖୁ ଟାଣିବାକୁ ଲାଗିଲେ । ପୂର୍ବ ଚଳନେ ଗୁଡ଼ାଖୁ ଉଡ଼ି ଗଲାଣି, ମାଝି ମୁଣ୍ଡ ପୋତି ଛିଡ଼ାହୋଇଛି । ପା ଘଣ୍ଟା ବାଦେ ବାବୁ ମାଝିକୁ ଆଉଥରେ ଅନାଇ କହିଲେ, "କଣ ହେଲା ମାଝି, ଅସଲ କଥାଟା ଆଉ ଥରେ ଠିକେ ଠିକେ ବୋଲଯା ତ ।" ବାବୁଙ୍କ କଅଁଳ କଥା ଶୁଣି ମାଝି ପ୍ରଥମେ କାନ୍ଦ ପକାଇଲା । ତହିଁ ବାଦେ ସମ୍ଭାଳି

(୧) ଖଲସି—ଜାହାଜର ନିମ୍ନଶ୍ରେଣୀର ଚାକର ।

ଯାଇ ସକେଇ ସକେଇ ଧୀରେ ଧୀରେ କହିବାକୁ ଲାଗିଲା, "ଆଜ୍ଞା—ଗଲା ଉଆଁସ ବାସି ପ୍ରତିପଦା ଦିନ ଅଡ଼ତଦାର ଆପୁଡ଼ୁ ସ୍ଵାମୀ ପାଖରୁ ଭୋର ଭୋର ଟଙ୍କାଟୋକର ଗଣି ନେଇ ଦିନ ଦୁଇପହର ସରିକି ଚିନାପାଟଣା ହାର୍ବ ବାହାରୁ (୨) ଲଙ୍ଗର ଉଠାଇ ଦେଲୁଁ ।" ବାବୁ ପଚାରି ଦେଲେ, "ଅଡ଼ତଦାର ହିସାବ ଛିଣ୍ଡାଇ ସବୁ ଟଙ୍କା ଦେଇଛି, ନା ଆଉ କିଛି ଅଛି ?

ମାଝି—ଅଡ଼ତଦାର ମତେ ନଗଦ ବାରହଜାର ଟଙ୍କା ଗଣିଦେଲା । ହିସାବ ଡାକରେ ପଠାଇବ ବୋଲି କହିଲା ।

ବାବୁ ବାକ୍ସ ଫିଟାଇ ଗଲା କାଲି ଡାକରେ ଆସିଥିବା ମୋଟା ଚିଠି ଖଣ୍ଡି ବାହାର କଲେ, ତାହା ଭିତରୁ ନାଲିରଙ୍ଗ ପାତଳ କାଗଜରେ ତେଲଙ୍ଗୀ ଲେଖା ଏକକୋଣିଆ ସୂତାରେ ଗୁନ୍ଥା ଗୋଛାଏ ଚିଠି କାଗଜ ବାହାର କଲେ, ଏପାଖ ସେ ପାଖ ଓଲଟ-ପାଲଟ କରି ସୀରେଶ ଲିଙ୍ଗମ୍‌କୁ ଡାକି ପଠାଇଲେ । ସୀରେଶ ଲିଙ୍ଗମ୍ ତେଲଙ୍ଗୀ ଗୁମାସ୍ତା । ଦକ୍ଷିଣ ଅଞ୍ଚଳରୁ ଆସୁଥିବା ଚିଠିମାନ ପଢ଼ି ବାବୁଙ୍କୁ ଓଡ଼ିଆରେ ବୁଝାଇ ଦିଏ । ପିଆଦା ଗୁମାସ୍ତାକୁ ଡାକିବାକୁ ଧାଇଁଲା । ଇତି-ଉତ୍ତାରେ ବାବୁ ମାଝିକୁ ଅନାଇ କହିଲେ, "ହୁଁ—"

ସ୍ଵରୂପ ମାଝି—ଲଙ୍ଗର ଉଠାଇ ଶେଢ଼ ଯେ ହକାରିଛି, ସେଇ ହକାରିଛି । ପୂରା ଆଠ ଦିନ ଦିନ ରାତି ଜାହାଜ ଧାଇଁଥାଏ । ଦକ୍ଷିଣା ପିଛୁଡ଼ି ପବନ —ଆକାଶ ନିର୍ମଳ -ଦରିଆଟା ପୋଖରୀ ପାଣି ପରି ଧୀର । ଜାହାଜ ସୁକାନରେ ଖାଲି ହାତ ପଡ଼ିଥାଏ, ସଳଖ ଜାହାଜ ଧାଇଁଛି । ନଅ ଦିନ ରାତି ପହରକ ସରିକି କଟକ ବାଗ ଫଲସାପେଣ୍ଟ ବତି * ମିଟିମିଟି ନଜର ପଡ଼ୁଛି, ପଛ ପଟରୁ ଟିକିଏ ପବନ ଝିଙ୍କିକି ଦେଲା, ବେଳକୁ ବେଳ ଟିକିଏ ଟିକିଏ ବଢ଼ିବାକୁ ଲାଗିଲା । ବଢ଼ିଲାପରି ବଢ଼ିଲା—ସମାଳ, ସମାଳ— ରାତି ଅଧ ବେଳକୁ ଅଥୟ । ଦରିଆ ଆକାଶ ଏକାକାର, ତାଳଗଛ ପ୍ରମାଣ ଢେଉ । ଆଗ ଦୁଇ ନଙ୍ଗର ପଛ ଲଡ଼ାଡ଼ି ପକାଇ ଦେଲି, ପଟାପଟ ଛିଡ଼ିଗଲା । ରାତିଯାକ ଏକ ହାଲ, ଆଉ ସମ୍ଭାଳି ହେଲା ନାହିଁ । ଅଧରାତି ସରିକି ଜାହାଜ ଗାମଦ ହେଲା, ସମସ୍ତେ ମିଶି ପାଣି-ମରାରେ ଲାଗିଥାଉଁ । ଭୋର ଭୋର ଜାହାଜ ବସିଗଲା । ଦିନ ହେଲା, ଦେଖିଲୁଁ, ଧାମରା ଢଡ଼ିଆଲି ମୁହାଣ । ଆଉ ଭୟ ନାହିଁ, ବତାଳକୁ † ଓହ୍ଲାଇ ଆସିଲୁଁ ।

ବାବୁ ପଚାରିଲେ—ଟଙ୍କା ?

ମାଝି ଖାଲି କାନ୍ଦିଲା, କିଛି କହି ପାରିଲା ନାହିଁ ।

ବାବୁ କହିଲେ, "କାହିଁ, ଏଠାରେ କିଛି ମେଘ ଅଳ୍ପ ତୋଫାନ ହୋଇଥିଲା ସତ, ତେଡ଼େ ତୋଫାନ ତ ନାହିଁ ?"

ମାଝି ଆଜ୍ଞା, ଏଟା ତୋଫାନ ନୁହେଁ, ଦରିଆ ଖଣ୍ଡିଆ ଭୂତ, ଏପରି ଭୂତ ଦରିଆରେ ଥାନ୍ତି । କଲିକତା, ବାଲିତି, ରେଙ୍ଗୁଣୀ ଛ ଖଣ୍ଡ ଜାହାଜ ଏକାସାଙ୍ଗରେ ଶେଢ଼ ହକାରିଥିଲୁଁ । ସବୁଗୁଡ଼ାକ କୁଆଡ଼େ ଉଡ଼ି ଗଲେ, କାହାରି ପତା ନାହିଁ ।

ଜେଂାନ୍ତିଓ କମଳଲୋଚନ ନାୟକଙ୍କୁ ବାବୁ ଡକାଇଥିଲେ । ମାଝି ସଙ୍ଗରେ କଥୋପକଥନ ସମୟରେ

(୨) ଚିନାପାଟଣା ହାର୍ବ ବାହାରୁ—ମାନ୍ଦ୍ରାଜ ହାରବର ।

* False point Light-house,

† Life-boat

ଜ୍ୟୋତିଷ ପହଞ୍ଚି ଗଲେ, ପାଞ୍ଜିବିଡ଼ାଟି ଧରି ପଢ଼ିବାକୁ ଲାଗିଲେ —

"ମଙ୍ଗଳଂ ଭଗବାନ୍ ବିଷ୍ଣୁ,"

"ମଙ୍ଗ —

ବାବୁ ଗୋଟାଏ ଭାରି ଖପା ହୋଇ କହିଲେ, "ହିଁ ହିଁ, ତୁମ ପାଞ୍ଜିବିଡ଼ା ବାନ୍ଧି ରଖ । ଭାରି ଦିନଟାଏ ଧରି ଦେଇଥିଲ, ନା ! ଗଲା ଗୁରୁବାର ଦିନ ଖଡ଼ି ପକାଇ କହିଥିଲ ପରା, ପୂର୍ଣ୍ଣିମା କଟାଳ ଜୁଆର ବେଳରେ କମଳାପ୍ରସାଦ ଘାଟ ଭିଡ଼ିବ ? ଆଚ୍ଛା ପାଠ ପଢ଼ିଛ ଏଣା ।"

ଶ୍ରୀ ନାୟକେ ଫୁଁ କରି ନିଶ୍ୱାସଟାଏ ଟେକାଇଲେ, ଟାଟି ନ ଫିଟାଇ ପଛଦୁଆଁ ଦେଲେ । କଚେରିଘର ବାରନ୍ଦା ଏକପାଖିଆ ବସି ଅଣ୍ଟାରୁ ଖଡ଼ି ଗୋଟାଳିଟି କାଢ଼ିଲେ, ରାଶିଚକ୍ର କାଟି ଢେର ପାଠ ଲେଖିଲେ । ଖଡ଼ି ଗୋଟାଳିଟା ଦୋରବସ୍ତ ଛିଡ଼ିଗଲାଣି । ତହିଁ-ଉତ୍ତାରେ ଗୁମ୍ ମାରି ବସି ତୁଚ୍ଛା ଭାବୁଛନ୍ତି । ବେଳ ପ୍ରାୟ ତିନି ପହର ଗଡ଼ିଗଲାଣି । ବାବୁ କଚେରିରୁ ଉଠି ନାହାନ୍ତି, ଗୁମାସ୍ତା ଆଉ ଆଉ ଚାକରମାନେ ବା କିମିତି ଉଠିଯିବେ ? ଗାଧୁଆ ବେଳ ଗଡ଼ି ଗଲାଣି । ସମସ୍ତେ ଆପଣା ଆପଣା ଜାଗାରେ ଗୁମ୍ ମାରି ବସିଛନ୍ତି । ଘର ଭିତରୁ ତିନି ଥର ଡାକରା ଆସିଲାଣି । ଶେଷରେ ଗୁରୁବାରି ପୋଇଲି ଆସି କହିଲା, "ସାନ୍ତାଣୀ ଆଜ୍ଞା କଲେ, ଯା ହେବାର ତ ହେଲାଣି, ଭିତରେ ପିଲାଛୁଆଗୁଡ଼ାକ ଉପାସରେ କାଉଳ ହେଉଛନ୍ତି ଯେ ।"

ବାବୁ ଯେଉଁ ବାଟରେ ଭିତର ପରସ୍ତକୁ ଯିବେ, ଅବଧାନ ସେହି ବାଟ ପାଖରେ ବସିଥିଲେ, ବାବୁଙ୍କୁ ଦେଖି ଛିଡ଼ା ହୋଇ ଯାଇ କହିଲେ, "ଆଜ୍ଞା ! ଏ କପରି ହେଲା ?" ବାବୁ ଟିକିଏ ଖପା ହେଲା ପରି ହୋଇ କହିଲେ, "କପରି ହେଲା, ମାଝିକୁ ପଚାର ।"

ବାବୁ ପଛେ ପଛେ ଗୁମାସ୍ତାମାନେ ଖାତାପତ୍ର ବାନ୍ଧି ଘରକୁ ବାହାରିଲେ । ଶ୍ୟାମ ଦାସ ଗୁମାସ୍ତା ଜ୍ୟୋତିଷଙ୍କୁ ଟିକିଏ ଠାଟ୍ଟାଳି କରି କହିଲେ, "କି ହୋ ଅବଧାନେ ! ତୁମ ପାଠ ଛାଡ଼ି ନାହିଁ ପରା ? ଯାଅ— ଯାଅ, ସ୍ନାନପ୍ରକାର କରି ପକାଅ ପାଠଟା ଫଟକିରି ଛୁଡ଼ିଯିବ ।"

ଶ୍ରୀ ନାୟକେ କହିଲେ, "ଗୁମାସ୍ତା ବାବୁ, ଆପଣ ଖେଷ୍ଟାଙ୍ଗ କରିବେ ନାହିଁ, ଆପଣ ଟିକିଏ ମୋ କଥା ଶୁଣନ୍ତୁ । ଏହି ଦେଖନ୍ତୁ ବାବୁଙ୍କର କକଡ଼ା ଲଗ୍ନ— ଲଗ୍ନରେ ବୃହସ୍ପତି, ବର୍ତ୍ତମାନ ପୁଣି ବୃହସ୍ପତି ମହାଦଶା ଏବଂ ପଞ୍ଚମାଧିପ ଲାଭାଧିପ ଯେ ମଙ୍ଗଳ ତାହାର ହୋଇଛି ଅନ୍ତର । ଆହୁରି ବି ଦେଖିବା ହେଉ, ଘରଆଡ଼େ ଠାକୁରାଣୀଙ୍କର ମେଷ ଲଗ୍ନ—ଦ୍ୱିତୀୟ ଧନ ସ୍ଥାନରେ ଚନ୍ଦ୍ର ତୁଙ୍ଗୀ, ତାହାର ପୁଣି ମହାଦଶା । କଣ ବୋଲୁଛ ଗୁମାସ୍ତା ବାବୁ, ଏ ଅବସ୍ଥାରେ କି ବିପଦ ଘଟି ପାରେ ? କେଭେଁ ନୁହେ— କେଭେ ନୁହେ—ଜାହାଜ କେଭେଁ ବୁଡ଼ିବ ନାହିଁ ।

ଆମ୍ଭେମାନେ ଯେଉଁ ଘଟଣା ବିଷୟ ଲେଖିବାକୁ ବସିଅଛୁଁ, ତାହା ଷାଠିଏ ବର୍ଷ ତଳର କଥା । ସେ ସମୟରେ ବାଲେଶ୍ୱରର ଜାହାଜ କାରବାର ବିଷୟ ନ ଜାଣିଲେ ପ୍ରକୃତ ଘଟଣା ବିଷୟ ବୁଝିବାକୁ ପାଠକମାନଙ୍କ ପକ୍ଷରେ ବଡ଼ ଅସୁବିଧା ହେବ, ଅଥବା ମୂଳରୁ ବୁଝି ପାରିବେ ନାହିଁ । ଏଥିକୁ ସେ ସମୟର ବୃତ୍ତାନ୍ତ ଅତି ସଂକ୍ଷେପରେ କିଞ୍ଚିତ୍ ବ୍ୟାଖ୍ୟାନ କରିବାକୁ ଇଚ୍ଛା କରୁଁ !

ଭାରତବର୍ଷର ପୂର୍ବ ଉପକୂଳସ୍ଥ ବନ୍ଦରମାନଙ୍କ ମଧ୍ୟରେ ଅତି ପୂର୍ବକାଳରୁ ବାଲେଶ୍ୱର ପ୍ରସିଦ୍ଧି ଲାଭ କରିଥିଲା । ସମୁଦ୍ରଗାମୀ ସହସ୍ରାଧିକ ଜାହାଜ ନଦୀ ଜଳକୁ ଆଚ୍ଛାଦନ କରି ମଉସମ ସମୟରେ ବାଲେଶ୍ୱର ବନ୍ଦର ଘାଟରେ ଭାସୁଥିଲେ । ନାନା ଶ୍ରେଣୀର ପ୍ରାୟ

ଦଶ ହଜାର କାଙ୍ଗାଲ କାମରେ ଲଗିଥାନ୍ତି । ସହର-ପାଖିଆ ନଦୀକୂଳ ପ୍ରାୟ ଦୁଇ କୋଶ ପର୍ଯ୍ୟନ୍ତ ହାଟ ବସିଲା ପରି ଲୋକଙ୍କ ଗହଳ ଚହଳ ଲାଗିଥାଏ । ରେଙ୍ଗୁନ, ଜାଭା, ବର୍ଣ୍ଣିଓ, ବିଶାଖାପତ୍ତନ, ଚିନା-ପାଟନା, ସିଂହଳ, ମାଲଦ୍ୱୀପ, ଲକ୍ଷାଦ୍ୱୀପ ଅଭିମୁଖରେ ଯାଉଥିବା ଶତ ଶତ ଜାହାଜ ସମୁଦ୍ର ମଧ୍ୟରେ ହେଣିଆ* ଖେଳୁଥିଲେ । ସେ ସମୟରେ ରେଲ ବା ଷ୍ଟିମରର ନାମ ଶୁଣା ନ ଥିଲା । ସମସ୍ତ ଉତ୍କଳର ବିଦେଶୀ ମାଲ ଆମଦାନି ରପ୍ତାନି ବାଲେଶ୍ୱର ବନ୍ଦର ବାଟେ ହେଉଥିଲା । ବଙ୍ଗଳା ଦେଶର ପ୍ରାୟ ଅର୍ଦ୍ଧାଂଶ ଜିଲ୍ଲା ଲୋକଙ୍କ ଖୋରାକି ଲୁଣ ବାଲେଶ୍ୱରୀ ଜାହାଜ ବହନ କରୁଥିଲେ । ବଙ୍ଗ ଦେଶ ନାମ ଜାଣିବା ପୂର୍ବରେ ପାଶ୍ଚାତ୍ୟ ଜାତି ଦିନାମାର, ଓଲନ୍ଦାଜ, ଫରାସି, ଇଂରେଜ ବେପାରୀମାନେ ବାଲେଶ୍ୱର ବନ୍ଦରରେ ଦୋକାନ ମେଲିଥିଲେ । ବର୍ତ୍ତମାନ ବନ୍ଦର ନଦୀ ଘାଟକୁ ଯାଅ, କଣ ଦେଖିବ ? ନଦୀକୂଳ ଶ୍ମଶାନ ପରି ନିର୍ଜନ—ବୁଢ଼ାବଳଙ୍ଗ ନଦୀଟି ଯେମନ୍ତ କଳକଳ-ସ୍ୱନରେ କାନ୍ଦି ସମୁଦ୍ରକୁ ଯାଉଅଛି ।

ବାଲେଶ୍ୱର ବନ୍ଦରର ଦୁର୍ଭାଗ୍ୟର ମୂଳକାରଣ, ଲୁଣକ ପୋକ୍ତାନ ବନ୍ଦ; ଦ୍ୱିତୀୟ କାରଣ ଷ୍ଟିମର ଓ ରେଲର କାରବାର; ତୃତୀୟ କାରଣ ଅଥବା ବିଶେଷ କାରଣ, ବାଲେଶ୍ୱର ନଦୀ ମୁହାଣ ପୋତା ପଡ଼ି ଗଲାଣି, ଅମାବାସ୍ୟା ପୂର୍ଣ୍ଣିମା କଟାଳ ଜୁଆର ସମୟ ବିନା ଅନ୍ୟ ସମୟରେ ସମୁଦ୍ରରୁ ଜାହାଜ ନଦୀ ଭିତରକୁ ପଶି ପାରୁ ନାହିଁ ।

ବାଲେଶ୍ୱରୀ ଜାହାଜ ସବୁ ତିନି ଶ୍ରେଣୀର ଥିଲା । ବଡ଼ ଜାହାଜର ନାମ ଗୋରାପ, ମଧ୍ୟଭଲା ଜାହାଜର ନାମ ସୁଲୁପ, ଅତି ସାନ ଜାହାଜର ନାମ ଦୁଉଣୀ । ସୁଲୁପ ଆଉ ଦୁଉଣୀ କଲିକତାକୁ ଯାତାୟାତ କରେ, ଗୋରାପ ସବୁ ସମୁଦ୍ର ମଧ୍ୟରେ ଦୂର ଦେଶକୁ ଯାଏ । ପ୍ରତ୍ୟେକ ଜାହାଜର ଗୋଟିଏ ଗୋଟିଏ ନାମ ଥାଏ; ଯଥା—କମଳାପ୍ରସାଦ, ଉମାପ୍ରସାଦ, ଦୁର୍ଗାପ୍ରସାଦ, ଈଶ୍ୱରୀପ୍ରସାଦ ଇତ୍ୟାଦି ।

ବାଲେଶ୍ୱରରେ ଅନେକଗୁଡ଼ିଏ ଜାହାଜିଆ ମହାଜନ ଥିଲେ । ଯାହାଙ୍କର ଜାହାଜ ସଂଖ୍ୟା ବେଶି, ସେ ବଡ଼ ମହାଜନ, ସମାଜରେ ତାଙ୍କର ସମ୍ମାନ ବେଶି ।

ବାବୁ ରାମହରି ନାୟକ ଜଣେ ଛୋଟକୁଟିଆ ମହାଜନ । ଚାରି ଖଣ୍ଡି ମାତ୍ର ଜାହାଜ । କମଳାପ୍ରସାଦ ଗୋରାପ ମାନ୍ଦ୍ରାଜ, କଲମ୍ବୋ, ରେଙ୍ଗୁନ କ୍ଷେପଣରେ, ଆଉ ତିନି ଖଣ୍ଡ ସୁଲୁପ ।

ସ୍ୱରୂପ ବେହେରା କମଳାପ୍ରସାଦ ଗୋରାପର ମାଝି । କୋଡ଼ିଏ ବର୍ଷର ଚାକର, ଖୁବ ବିଶ୍ୱାସୀ, ଖୁବ୍ ନିମକ-ହଲା । ଖୁବ ବିଶ୍ୱାସୀ ଲୋକ ନ ହେଲେ ମାଝିଗିରି ଚାକିରି ପାଏ ନାହିଁ । କାରଣ, ତାହା ହାତ ବାଟେ ଅନେକ ନଗଦ ଟଙ୍କାର କାରବାର ହୁଏ ।

ସ୍ୱରୂପ ମାଝି କମଳାପ୍ରସାଦ ଗୋରାପରେ ମାଲ ନେଇ ମାନ୍ଦ୍ରାଜ ଯାଇଥିଲା, ଫେରନ୍ତା ଜାହାଜ ବୁଡ଼ି ଯାଇଥିବା କଥିତ ହୁଏ । ଜାହାଜ ବୁଡ଼ିଯିବାରୁ ମହାଜନଙ୍କ ଛଡ଼ା ଆହୁରି ଢେର ଲୋକଙ୍କର ଲୋକସାନ ହୋଇଛି । ଚିରକାଳ ଏପରି ଦସ୍ତୁର ଚଳି ଆସୁଛି କି, ମାଝି ଦୂର ଦେଶକୁ ମାଲ ବୋଝାଇ ଜାହାଜ ନେଇ ଯିବାବେଳେ ସେ ଜାହାଜର ଦୁଇ-ପଣି ବୋଝାଇ ମାଲ ବିନା ଭଡ଼ାରେ ନେଇ ଯାଏ । ମନେ କରନ୍ତୁ, ଗୋଟିଏ ଜାହାଜରେ ଆଠ ହଜାର ମହଣ ମାଲ ବୋଝାଇ ହେବ, ସେଥିରୁ ହଜାରେ ମହଣ ମାଝିର । ସେହି ହଜାରେ ମହଣ ମାଲ ସକାଶେ

* ହେଣିଆ—ସମ୍ମୁଖକୁ ପବନ ଠେଲି ସର୍ପାକାରରେ ଜାହାଜର ଗତି ।

ମହାଜନ ଜାହାଜ ଭଡ଼ା ପାଇବେ ନାହିଁ, ସେ ବୋଝେଇ ମାଲର ବିକା କଣା ଲାଭ ମାଝି ପାଇବ । ମାଝିର ଦୁଇପଣି ମାଲ ନେବାର ଅଧିକାର ଅଛି ସତ୍ୟ; ମାତ୍ର ତା ହାତରେ ଏତେ ଟଙ୍କା କାହିଁ ? ବାବୁଙ୍କ ଘରେ ଚାକର ଚାକରାଣୀ ବନ୍ଧୁ ଝିଅ ଗୁମାସ୍ତା ପାଇକ ଯେତେ ଲୋକ ଥାନ୍ତି, ମାଝି ସେମାନଙ୍କ ପାଖରୁ ଟଙ୍କା ନଏ । ଏହି ଟଙ୍କାକୁ ବଟମ ବୋଲାଯାଏ । ମାଝି ସେହି ବଟମ ଟଙ୍କାରେ ମାଲ କିଣି କାରବାର କରେ, ସେଥିରୁ ଯେଉଁ ଲାଭ ହୁଏ, ବଟମ ଦାର ଅଧେ ଆଉ ମାଝି ଅଧେ ପାଏ । କମଳାପ୍ରସାଦ ଗୋଷ୍ଟପରେ ଢେର ଟଙ୍କାର ବଟମୀ ମାଲ ଥିଲା ।

ଆଜି ପୂର୍ଣ୍ଣିମା—ସହଜରେ କଟାଳ ଜୁଆର ଦିନ । ବାରଟା ବେଳେ ଜୁଆର ଛୁଟିବ, ଠିକ ତେଡିକବେଳେ ପଡ଼ୁଛି ଅମୃତ ଯୋଗ । ଆଜି ଢେର ଜାହାଜ ଗଡ଼ସିବାର * ସ୍ଥିର ହୋଇଛି । ଚାରି ପାଞ୍ଚ ଦିନ ହେଲା ମାଝି ଖଲସିମାନେ କାମରେ ଭିଡ଼ି ଲାଗି ଯାଇଥିଲେ । ଜାହାଜଟିକୁ ସଫା ସୁତରା କରି ଡୋଲ ଉପରେ ସବର, ଗଭର, ଟଭର—ପଛକୁ କଲମି ଡୋଲ ଆଉ ବରଗା-ମାନ ଟେକ ଦେଇ ଶେଡ଼ ଗୁଡ଼ାଇ ଠିକ କରି ରଖି ଦେଇଛନ୍ତି । ଆଗରେ ପଛରେ ଡୋଲର ସବା ଉପରେ ଲାଲ ଧଳା ହଳଦିଆ ପତାକାମାନ ଫର ଫର ହୋଇ ଉଡ଼ୁଛି । ଅଡ଼ିକୁ ଜାହାଜଟି ବଡ଼ ସୁନ୍ଦର ଦିଶୁଛି । ବେଳ ପ୍ରହରକ ସରକ ଖୋଦ ବାବୁ ସ୍ନାନସାରି ତସର ପେଡ଼ି ପିନ୍ଧି ଜାହାଜ ଉପରେ ପହଞ୍ଚିଲେ । ଜାହାଜ ଆଗ ମୁଣ୍ଡଠାରେ ହୋମ ଆଉ ପୂଜା ବଢ଼ିଲା—ମାଝି ବି ସ୍ନାନପ୍ରକାର ସାରି ମୁଣ୍ଡରେ, ବେକରେ, ଦୁଇ ବାହୁ ଆଉ ଗୁଣ୍ଡିରେ ଚିତା କରି ପୂଜା ପାଖରେ ବସିଥିଲା । ପୁରୋହିତ ପୂଜା ସାରି ବାବୁଙ୍କ ମୁଣ୍ଡରେ ଆଉ ମାଝି ମୁଣ୍ଡରେ ଅକ୍ଷତ ପକାଇ ବେକରେ ଫୁଲମାଳ ଲମ୍ବାଇ ଦେଲେ । ପଣ୍ଡିତ ନରସିଂହ ମିଶ୍ରେ ଜାହାଜ କୁଶଳରେ ବାହୁଡ଼ି ଆସିବାପାଇଁ ଚଣ୍ଡୀପାଠ ନିମନ୍ତେ ବାବୁଙ୍କ ହାତରୁ ସଂକଳ୍ପ ଗୁଆ ଟେକି ନେଇ ଓହ୍ଲାଇ ଆସିଲେ । ମାଝି ଡାକ ଦେଲା, 'ତୟାରରହ' । ଖଲସିମାନେ ଆଉ ସୁକାନ ଆପଣା ଆପଣା ଜାଗାରେ ଛିଡ଼ା ହୋଇଗଲେ । ତଣ୍ଡେଲ ଆଗ ଲଙ୍ଗର କପିକଳକୁ ଅନାଇ ଆଉ ଛ ଜଣ ଲଙ୍ଗର ଉଠା ଦାଉର କଳର ଛଅଟା ଖୋ ଧରି ଛିଡ଼ା ହୋଇଛନ୍ତି ।

ବାବୁ, ପୁରୋହିତ, ଜ୍ୟୋତିଷେ ନଙ୍ଗକୂଳରେ ଜାହାଜକୁ ଅନାଇ ବସିଛନ୍ତି । ମାଝି ଜାହାଜ ବାଡ଼ ଉପରେ ପେଟେଇ ପଡ଼ି ବାବୁଙ୍କ ମୁହଁକୁ ଅନାଇଛି । ଜ୍ୟୋତିଷେ ସୂର୍ଯ୍ୟକୁ ଆଉ ପାଞ୍ଜିକୁ ବାରମ୍ବାର ଚାହୁଁଛନ୍ତି । ଠିକ ୧୨ ଟା ବେଳ ହେଲା । ବାବୁ ଆଉ ଜ୍ୟୋତିଷେ ଛିଡ଼ା ହୋଇ ଡାକଦେଲେ, "ମାଝି !"

ମାଝି ଜାହାଜ ଆଡ଼କୁ ମୁହଁ କରି ଡାକଦେଲା, "ହା-ବିସ୍ ।"

ତଣ୍ଡେଲ ଡାକିଲା—ଓ—ହୋଓ ।

ବାଉର ପଖାବାଡ଼ ଧରିଥିବା ଛ ଜଣ ଖଲସି ଡାକଲେ, ଓ—ହୋଓ ।

ତଣ୍ଡେଲ—ଓ—ହୋଓ ।

ଖଲସି—ଓ· ଭାଇ ।

ତଣ୍ଡେଲ—ଦରିଆପୀର ।

ଖଲସିମାନେ—ଏଁ—ୟୁଁ ।

ତଣ୍ଡେଲ – ଲାଗେ ଶିର ।

ଖଲସି—ଏଁ—ୟୁଁ ।

ତଣ୍ଡେଲ—ପୀର କେରାମତ୍ ।

ଖଲସି—ଏଁ—ମୁଁ ।

* ସମୁଦ୍ରକୁ ଯାତ୍ରା କରି ଯିବାର ।

ଚଣ୍ଡେଲ—ସାହେବ ସଲାମତ୍ ।
ଖଲାସି—ଏଁ—ୟାଁ ।
ଚଣ୍ଡେଲ—ଜୁଆନ ଜଞ୍ଜିର୍ ।
ଖଲାସି—ଏଁ—ୟାଁ ।
ଚଣ୍ଡେଲ—କାମେ ଖବର ।
ଖଲାସି—ଏଁ—ୟାଁ ।

ଚଣ୍ଡେଲ ଡାକଲେ ଖଲାସି ମାନେ 'ଏଁ—ୟାଁ' କହି ଏକସଙ୍ଗରେ ଖୁବ ବଳରେ ବାଜର ଯନ୍ତ ପଖା ବାଡ଼ରେ ଏକ ଝିଙ୍କା ମାରନ୍ତି—ଲଙ୍ଗର ପାଣି ଭିତରୁ ଟିକଏ ଉଠିଆସେ ।

ଚଣ୍ଡେଲ ପାଟି କରି ଡାକ ଦେଲା, "ଏରିଆ—ଏରିଆ—ଏରିଆ !" ଲଙ୍ଗର ଉଠିଗଲା—ଭଟା ପାଣିରେ ଜାହାଜ ଖୁବ ଧୀରେ ଧୀରେ ଗଡ଼ି କଲା ।

ଠିକ ଏତିକବେଳେ ନଦୀକୂଳରେ ଭାରି ଗୋଟାଏ ଚହଲ ପଡ଼ିଗଲା । ଦରିଆରୁ ଗୋଟାଏ ବଡ଼ ଜାହାଜ ଭାସି ଆସୁଛି, ସେଥିରେ କେହି ମଣିଷ ନାହିଁ । 'ସମ୍ଭାଳ—ସମ୍ଭାଳ' ଲଙ୍ଗରୀ ଜାହାଜମାନଙ୍କରେ ମଣିଷ ଚହରି ରହିଗଲେ । ସେ ଜାହାଜ ଭାସି ଆସି ଆଉ ଗୋଟାଏ ଜାହାଜ ଉପରେ ପଡ଼ିଗଲେ ଦୁଇ ଜାହାଜ ଜଖମ ହୋଇଯିବ । ବୃକ୍ଷଖଣ୍ଡ ବତାକାରେ ଛ ଛ ଜଣ ଖଲାସି ବସି ଥାଉଁଲେ, ଭସାଣି ଜାହାଜଟାକୁ ବାଟରେ ଓଗାଳି ରଖିବେ ।

ଜାହାଜ ନଦୀ ବାଟରେ ଧରାଗଲା । ଦେଖ ଦେଖ, କାହା ଜାହାଜ ? ଆରେ ଏଇଟା ତ ରାମହରି ବାବୁଙ୍କ କମଳାପ୍ରସାଦ । ରାମହରି ବାବୁ ଖବର ପାଇ ଠାଁ ଜାଗାରୁ ଉଠି ଲଣ୍ଡଭଣ୍ଡ ହୋଇ ଧାଇଁଛନ୍ତି, କଚ୍ଛ ଫିଟି ଗଲାଣି, କେଜାଣି ଲୁଗା ଖଣ୍ଡ ଖସି ପଡ଼ିବ । ରାମା ଭଣ୍ଡାରି ଟୋକା ସାଙ୍ଗରେ ନ ଥିଲେ ନିଶ୍ଚୟ ଲୁଗାଖଣ୍ଡ ବାଟରେ ପଡ଼ି ଯାଇଥାନ୍ତା । ଦେଖ, ଦେଖ—ଜାହାଜରେ ସବୁ ଠିକଠାକ ଅଛି ନାହିଁ କେବଳ ବାବୁଙ୍କ ଟଙ୍କାଗୁଡ଼ିକ ଆଉ ମାଝି ଖଲାସିଙ୍କ ଆସବାବ କାହିଁଗଲା ସ୍ୱରୂପ ମାଝି ? ଆରେ ଆଉ ମାଝି ! ମାଝି ଅନ୍ତର୍ଦ୍ଧାନ !

ଘାଟ କପ୍ତାନ ସାହେବଙ୍କ ପାଖରୁ ଚିଠି ପାଇ ମେଜେଷ୍ଟର ସାହେବ ପୋଲିସ ନିଯୁକ୍ତ କଲେ । ଆଠ ଦଶ ଦିନ ବାଦେ ଦେଖାଗଲା ବାଲେଶ୍ୱର ସହର ଶଗଡ଼ ଦାଣ୍ଡରେ ପୋଲିସ ଦାରୋଗା ପୋଷାକ ପିନ୍ଧି ଗୋଟାଏ ଘୋଡ଼ାରେ ଚଢ଼ି ଭାରି ଫର୍ତ୍ତିରେ କଚେରିମୁହାଁ ଚାଲିଛନ୍ତି । ତାଙ୍କ ପଛରେ ମାଝି ଖଲାସି ଚଣ୍ଡେଲ ମେଟ୍ ଜାହାଜର ଚାକର ଷୋଳ ଜଣ ହାଳକୁ ହାଳ ବାହାକୁ ବାହା ଛନ୍ଦା । ଜଣ ଚାକଣ ପଞ୍ଚାଶ ଚପରାସି ଚୌକିଦାର ତାଙ୍କ ଚାରି ପାଖ ବେଢ଼ି ଚାଲିଛନ୍ତି । ସମସ୍ତଙ୍କ ମଝିରେ ଛ'ଟା ଟଙ୍କା ଭାର । ପୋଲିସ ପହଞ୍ଚିବାରୁ ମାଝି ଖଲାସିମାନେ ମହାଜନର ଯେଉଁ ଟଙ୍କା ବାଣ୍ଟି ବଖରା କରି ନେଇଥିଲେ, ସୁନାପୁଅ ପରି ସେ ସମସ୍ତ ଦାରୋଗା ଆଗରେ ଗଣି ଦେଇଥିଲେ ।

ପୋଲିସ ଦାରୋଗା ମେଜେଷ୍ଟର ସାହେବଙ୍କଠାରେ ଯେଉଁ ରିପୋର୍ଟ ଦାଖଲ କରିଥିଲେ, ସେଥିର ସାରାଂଶ ଏହିପ୍ରକାର—

"ଚଳିତ ମଇ ମାସ ୧ ତାରିଖ ସ୍ୱରୂପ ମାଝି ମାନ୍ଦ୍ରାଜ ହାରବାରରୁ କମଳାପ୍ରସାଦ ଗୋରାପକୁ ବାଲେଶ୍ୱର ବନ୍ଦରକୁ ନେଇ ଆସୁଥିଲା—୯ ତାରିଖ ସନ୍ଧ୍ୟା ସମୟରେ ଧାମରା ନଦୀ ମୁହାଣ ପାଖରେ ପହଞ୍ଚିଲା । ସେହି ଶେଷ ରାତି ସରିକି ବାଲେଶ୍ୱର ବାରରେ ପହଞ୍ଚିଥାନ୍ତା । ମାତ୍ର ଆକାଶମେଘାଚ୍ଛନ୍ନ, ଆଉ ଅଳ୍ପ ଅଳ୍ପ ତୋଫାନ ହେବାରୁ ମାଝି ସମୁଦ୍ର ମଧ୍ୟରେ ଜାହାଜ ଚଳାଇବାକୁ ସାହସ କଲା ନାହିଁ, ନିରାପଦରେ ରହିବାପାଇଁ ଘଡ଼ିଆମାଳ ନଦୀ ଭିତରକୁ ନେଇ ଯାଇ

ଲଙ୍ଗର ପକାଇଲା । ସେଠାରୁ ମାଝି ଖଲସି ସମସ୍ତଙ୍କ ଗ୍ରାମ ମହାମପୁର ଅଧ କୋଶେ ବାଟ ଦୂର । ଅନେକ ଦିନ ପିଲାପିଲିଙ୍କୁ ଦେଖି ନ ଥିବାରୁ ଘରକୁ ଯିବାପାଇଁ ସମସ୍ତେ ବଡ଼ ବ୍ୟସ୍ତ ହେଲେ । ଚାରି ଜଣ ମାତ୍ର ଖଲସି ଜାହାଜରେ ପହରା ରହିଲେ, ଆଉ ସମସ୍ତେ ଓହ୍ଲାଇ ଘରକୁ ଚାଲିଗଲେ । ରାତି ପାହାନ୍ତି ଖୁବ୍ ଭୋର ଭୋର ଜାହାଜକୁ ଫେରି ଆସିବାର କଥା ରହିଲା ।

"ଅଧରାତି ସରିକି ତୋଫାନ ଆଉ ବୃଷ୍ଟି ପ୍ରବଳ ହେଲା । ଚାରି ଜଣ ଲୋକ ଜାହାଜ ସମ୍ଭାଳି ରଖି ପାରିଲେ ନାହିଁ, ଗୋଟାଏ ବାଲି ଚଡ଼ାରେ ଲାଗିଗଲା । ସକାଳ ସକାଳ ମାଝି ଖଲସି ଧାଇଁଛନ୍ତି ଜାହାଜ ଅବସ୍ଥା ଦେଖି ମୁଣ୍ଡ ବାଡ଼େଇ ହେଲେ । ତେତେବେଳେ ପଡ଼ିଆଣି ଜୁଆର, ଜାହାଜ ନିହାତି ବାଲି ଚଡ଼ାରେ ବସି ଯାଇଛି । ଆଉ ଉପାୟ ନାହିଁ । ଘଡ଼ିଆମାଳ ନଦୀଟା ଅତି ଭୟଙ୍କର, ଜାହାଜ ଚଡ଼ାରେ ଲାଗିଲେ ଉଠେ ନାହିଁ । ତେର ତେର ଜାହାଜ ମାଡ଼ ଖାଇଛନ୍ତି । ମାଝିମାନେ ଏ ନଦୀକୁ ବଡ଼ ଡରନ୍ତି ।

ମାଝି ଖଲସି ସମସ୍ତେ ବସି ବିଚାର କଲେ, ଜାହାଜ ତ ଗଲାଣି, ଚାକିରି ତ ରହିବ ନାହିଁ, ଶୁଣାଶୁଣିରେ ଜାହାଜାଡି କାରବାର ବାଲେଶ୍ୱରରୁ ଉଠିଯିବ । ସ୍ଥିର କଲେ, ଟଙ୍କାଗୁଡ଼ିକ ବାଣ୍ଟିନେଇ ନିଶ୍ଚିନ୍ତରେ ରହିବେ, ଜାହାଜବୁଡ଼ି ଖବର ମହାଜନଙ୍କୁ ଦେବେ । ମାତ୍ର ସେମାନେ ଯତ୍ନ କରିଥିଲେ ଜାହାଜ ଉଠିଥାନ୍ତା ଇତ୍ୟାଦି ।

ଚାରି ଛ ଦିନ ବାଦେ ପୂର୍ଣ୍ଣିମା ତିଥି କଟାଳ ଜୁଆର ପହଞ୍ଚିବାରୁ ଜାହାଜ ଯେଉଁ ଚଡ଼ାରେ ବସିଥିଲା, ତାହା ଜଳପୂର୍ଣ୍ଣ ହୋଇଗଲା । ଦୈବାତ ଗୋଟାଏ ଟାଣ ପବନ ହେବାରୁ ଜାହାଜ ଭାସି ଉଠି ଜଳସ୍ରୋତରେ ଏକାବେଳକେ ଦରିଆରେ ପଡ଼ିଲା । ଯେପରି ଭାବରେ ଭାସି ଯାଉଥିଲା, ଗଙ୍ଗା ନଦୀ ଭିତରକୁ ଯାଇଥାନ୍ତା । ମାତ୍ର ବାଲେଶ୍ୱର ବାରି ବାହାର ବୟା * ପାଖରେ ପହଞ୍ଚିଛି, ପୂର୍ଣ୍ଣିମା ପ୍ରାତଃକାଳ, ସମୁଦ୍ରରେ ଜୁଆର ଆରମ୍ଭ ହୋଇଛି, ଜଳସ୍ରୋତ ଧରି ବାଲେଶ୍ୱର ବୁଢ଼ାବଳଙ୍ଗ ନଦୀ ଭିତରେ ପଶିଗଲା ।

ପଶ୍ଚାତ୍ ଶୁଣାଗଲା, ମାଝି ଖଲସିମାନେ ଚାରି ଚାରି ବରଷ ମିଆଦ ଗଲେ । ଆଉ ଜ୍ୟୋତିଷ କମଲଲୋଚନ ନାୟକେ ତେତେବେଳେ ଖରା କାଳରେ ପାଟଜଠା ପିନ୍ଧି ଯୋଡ଼ ଶାଲ ହୋଡ଼ ହୋଇ, ହାତରେ ସୁନାବଳା ନାଇ ମାସେ ଯାଏ ସହର ମଧ୍ୟରେ ସବୁ ବଡ଼ ଲୋକଙ୍କ ଦ୍ୱାରେ ବୁଲୁଥିବାର ଦେଖାଗଲା ।

---

## ମୌନା ମୌନୀ

ପ୍ରାୟ ଅର୍ଦ୍ଧଶତ ବର୍ଷ ପୂର୍ବେ ଖଣ୍ଡଗିରି ଓ ତହିଁ ଚତୁର୍ଦ୍ଦିଗସ୍ଥ ଉପତ୍ୟକା ଭୂମି ବିବିଧ ଜାଙ୍ଗଲବୃକ୍ଷ ଓ ଲତା ଜାଲରେ ବେଷ୍ଟିତ ଥିଲା । କେବଳ ଗୁମ୍ଫା ଓ ସମୀପବର୍ତ୍ତୀ ସ୍ଥାନ ଉଦ୍ଭିଦଶୂନ୍ୟ, ପରିଷ୍କୃତ ପରିଚ୍ଛନ୍ନ, ସାଧୁ ସନ୍ନ୍ୟାସୀମାନଙ୍କ ଆଶ୍ରମରେ ପରିପୂର୍ଣ୍ଣ । ବିଭୂତିଭୂଷଣ କୌପୀନଧାରୀ ସାଧୁମାନେ ଧୂନି ଲଗାଇ ବସିଛନ୍ତି, ବସ୍ତ୍ରଧାରୀ ସାଧୁମାନେ ନିର୍ଧୂନିକ । ସାଧୁ ନାନା ଶ୍ରେଣୀର - ସନ୍ନ୍ୟାସୀ, ନାଗା, ରାମାଉତ, କେହି ବା ଉପାଧିରହିତ । ପ୍ରାୟ ପ୍ରତିଦିନ ସାଧୁମାନଙ୍କ ଗତାୟାତ ଲାଗିଥାଏ । ଥୋକେ ଚାଲିଯିବା ମାତ୍ରେ ନବାଗତ ସାଧୁମାନେ ଶୂନ୍ୟସ୍ଥାନ ଅଧିକାର କରି ବସୁଥାନ୍ତି । ମୁଦ୍ରିତନେତ୍ର ଥୋକେ ସାଧୁ ଧ୍ୟାନନିମଗ୍ନ । ତୁଳସୀ ବା ରୁଦ୍ରାକ୍ଷ ମାଳାହସ୍ତ ଥୋକେ ଭଜନରେ ନିଯୁକ୍ତ । କେହି

* ଦରିଆ ମଧ୍ୟରେ ମାର୍ଗରେ ସାଙ୍କେତିକ ଚିହ୍ନ ।

ଚଣ୍ଡେଲ—ସାହେବ ସଲାମତ୍ ।

ଖଲସି—ଏଁ—ୟୁଁ ।

ଚଣ୍ଡେଲ—ଜ୍ ଆନ ଜଞ୍ଜର୍ ।

ଖଲସି—ଏଁ—ୟୁଁ ।

ଚଣ୍ଡେଲ—କାମେ ଖବର ।

ଖଲସି—ଏଁ—ୟୁଁ ।

ଚଣ୍ଡେଲ ଡାକଲେ ଖଲସି ମାନେ 'ଏଁ—ୟୁଁ' କହି ଏକସଙ୍ଗରେ ଖୁବ୍ ବଳରେ ବାଉର ଯନ୍ତ୍ର ପଖା ବାଡ଼ରେ ଏକ ଝିଙ୍କା ମାରନ୍ତି—ଲଙ୍ଗର ପାଣି ଭିତରୁ ଟିକିଏ ଉଠିଆସେ ।

ଚଣ୍ଡେଲ ପାଟି କରି ଡାକ ଦେଲା, "ଏରିଆ—ଏରିଆ—ଏରିଆ !" ଲଙ୍ଗର ଉଠିଗଲା—ଭଟା ପାଣିରେ ଜାହାଜ ଖୁବ୍ ଧୀରେ ଧୀରେ ଗଡ଼ି କଲା ।

ଠିକ ଏତିକବେଳେ ନଦୀକୂଳରେ ଭାରି ଗୋଟାଏ ଚହଳ ପଡ଼ିଗଲା । ଦରିଆରୁ ଗୋଟାଏ ବଡ଼ ଜାହାଜ ଭାସି ଆସୁଛି, ସେଥିରେ କେହି ମଣିଷ ନାହିଁ । 'ସମ୍ଭାଳ—ସମ୍ଭାଳ' ଲଙ୍ଗରି ଜାହାଜମାନଙ୍କରେ ମଣିଷ ଚହଳି ହେଲେ । ସେ ଜାହାଜ ଭସି ଆସି ଆଉ ଗୋଟାଏ ଜାହାଜ ଉପରେ ପଡ଼ିଗଲେ ଦୁଇ ଜାହାଜ ଜଖମ ହୋଇଯିବ । ଘୃଖେଣ୍ଡେ ବଡ଼ାକିରେ ଛ ଛ ଜଣ ଖଲସି ବସି ଧାଇଁଲେ, ଭସାଣି ଜାହାଜଟାକୁ ବାଟରେ ଯୋଗାଡ଼ି ରଖିବେ ।

ଜାହାଜ ନଦୀ ବାଟରେ ଧରାଗଲା । ଦେଖ ଦେଖ, କାହା ଜାହାଜ ? ଆରେ ଏଇଟା ତ ରାମଦାସ ବାବୁଙ୍କ କମଳାପ୍ରସାଦ । ରାମଦାସ ବାବୁ ଖବର ପାଇ ଠାଁ ଜାଗାରୁ ଉଠି ଲଣ୍ଡଭଣ୍ଡ ହୋଇ ଧାଇଁଛନ୍ତି, କଚ୍ଛ ଫିଟି ଗଲଣି, କେଜାଣି ଲୁଗା ଖଣ୍ଡ ଖସି ପଡ଼ିବ । ରାମା ଭଣ୍ଡାରି ଟୋକା ସାଙ୍ଗରେ ନ ଥିଲେ ନିଶ୍ଚୟ ଲୁଗାଖଣ୍ଡ ବାଟରେ ପଡ଼ି ଯାଇଥାନ୍ତା । ଦେଖ, ଦେଖ—ଜାହାଜରେ ସବୁ ଠିକଠାକ ଅଛି ନାହିଁ କେବଳ ବାବୁଙ୍କ ଟଙ୍କାଗୁଡ଼ିକ ଆଉ ମାଝି ଖଲସିଙ୍କ ଆସବାବ କାହିଁଗଲା ସ୍ୱରୂପ ମାଝି ? ଆରେ ଆଉ ମାଝି ! ମାଝି ଅନ୍ତର୍ଦ୍ଧାନ !

ଘାଟ କପ୍ତାନ ସାହେବଙ୍କ ପାଖରୁ ଚିଠି ପାଇ ମେଜେଷ୍ଟ୍ରର ସାହେବ ପୋଲିସ ନିଯୁକ୍ତ କଲେ । ଆଠ ଦଶ ଦିନ ବାଦେ ଦେଖାଗଲା ବାଲେଶ୍ୱର ସହର ଶଗଡ଼ ଦାଣ୍ଡରେ ପୋଲିସ ଦାରୋଗା ପୋଷାକ ପିନ୍ଧି ଗୋଟାଏ ଘୋଡ଼ାରେ ଚଢ଼ି ଭାରି ଫର୍ତ୍ତିରେ କଚେରିମୁହାଁ ଚାଲିଛନ୍ତି । ତାଙ୍କ ପଛରେ ମାଝି ଖଲସି ଚଣ୍ଡେଲ ମୋଟ୍ ଜାହାଜର ଚାକର ଷୋଳ ଜଣ ହାଲକୁ ହାଲ ବାହାକୁ ବାହା ଛନ୍ଦା । ଜଣ ଚାରିକଣ ପଞ୍ଚାଶ ଚପରାସି ଚୌକିଦାର ତାଙ୍କ ଚାରି ପାଖ ବେଢ଼ି ଚାଲିଛନ୍ତି । ସମସ୍ତଙ୍କ ମଝିରେ ଛ'ଟା ଟଙ୍କା ଭାର । ପୋଲିସ ପହଞ୍ଚିବାରୁ ମାଝି ଖଲସିମାନେ ମହାଜନର ଯେଉଁ ଟଙ୍କା ବାଣ୍ଟି ବଖରା କରି ନେଇଥିଲେ, ସୁନାପୁଅ ପରି ସେ ସମସ୍ତ ଦାରୋଗା ଆଗରେ ଗଣି ଦେଇଥିଲେ ।

ପୋଲିସ ଦାରୋଗା ମେଜେଷ୍ଟ୍ରର ସାହେବଙ୍କଠାରେ ଯେଉଁ ରିପୋର୍ଟ ଦରପେସ କରିଥିଲେ, ସେଥିର ସାରାଂଶ ଏହିପ୍ରକାର—

"ଗଲାତ ମଇ ମାସ ୧ ତାରିଖ ସ୍ୱରୂପ ମାଝି ମାନ୍ଦ୍ରାଜ ହାରବାରରୁ କମଳାପ୍ରସାଦ ଗୋରାପକୁ ବାଲେଶ୍ୱର ବନ୍ଦରକୁ ନେଇ ଆସୁଥିଲା—୯ ତାରିଖ ସନ୍ଧ୍ୟା ସମୟରେ ଧାମରା ନଦୀ ମୁହାଣ ପାଖରେ ପହଞ୍ଚିଲା । ସେହି ରାତ୍ରି ଶେଷ ରାତି ସରକ ବାଲେଶ୍ୱର ବାରରେ ପହଞ୍ଚିଥାନ୍ତା । ମାତ୍ର ଆକାଶମେଘାଛନ୍ନ, ଆଉ ଅଳ୍ପ ଅଳ୍ପ ତୋଫାନ ହେବାରୁ ମାଝି ସମୁଦ୍ର ମଧ୍ୟରେ ଜାହାଜ ଚଳାଇବାକୁ ସାହସ କଲା ନାହିଁ, ନିରାପଦରେ ରହିବାପାଇଁ ଘଡ଼ିଆମାଲ ନଦୀ ଭିତରକୁ ନେଇ ଯାଇ

ଲଙ୍ଗର ପକାଇଲା । ସେଠାରୁ ମାଝି ଖଲସି ସମସ୍ତଙ୍କ ଗ୍ରାମ ମହାମପୁର ଅଧ କୋଶେ ବାଟ ଦୂର । ଅନେକ ଦିନ ପିଲାପିଲାଙ୍କୁ ଦେଖି ନ ଥିବାରୁ ଘରକୁ ଯିବାପାଇଁ ସମସ୍ତେ ବଡ଼ ବ୍ୟସ୍ତ ହେଲେ । ଚାରି ଜଣ ମାତ୍ର ଖଲସି ଜାହାଜରେ ପହରା ରହିଲେ, ଆଉ ସମସ୍ତେ ଓହ୍ଲାଇ ଘରକୁ ଚାଲିଗଲେ । ଯାତ୍ରା ପାହାନ୍ତି ଖୁବ୍ ଭୋର ଭୋର ଜାହାଜକୁ ଫେରି ଆସିବାର କଥା ରହିଲା ।

"ଅପରାତ୍ର ସରକ ତୋଫାନ ଆଉ ବୃଷ୍ଟି ପ୍ରବଳ ହେଲା । ଚାରି ଜଣ ଲୋକ ଜାହାଜ ସମ୍ଭାଳ ରଖି ପାରିଲେ ନାହିଁ, ଗୋଟାଏ ବାଲି ଚଡ଼ାରେ ଲାଗିଗଲା । ସକାଳ ସକାଳ ମାଝି ଖଲସି ଧାଇଁଛନ୍ତି ଜାହାଜ ଅବସ୍ଥା ଦେଖି ମୁଣ୍ଡ ବାଡ଼େଇ ହେଲେ । ତେତେବେଳେ ପଡ଼ଆଣି ଜୁଆର, ଜାହାଜ ନିହାତି ବାଲି ଚଡ଼ାରେ ବସି ଯାଇଛି । ଆଉ ଉପାୟ ନାହିଁ । ଘଡ଼ଆମାଲ ନଦୀଟା ଅତି ଭୟଙ୍କର, ଜାହାଜ ଚଡ଼ାରେ ଲାଗିଲେ ଉଠେ ନାହିଁ । ଢେର ଢେର ଜାହାଜ ମାଡ଼ ଖାଇଛନ୍ତି । ମାଝିମାନେ ଏ ନଦୀକୁ ବଡ଼ ଡରନ୍ତି ।

ମାଝି ଖଲସି ସମସ୍ତେ ବସି ବିଚାର କଲେ, ଜାହାଜ ତ ଗଲାଣି, ଚାକିରି ତ ରହିବ ନାହିଁ, ଶୁଣାଶୁଣିରେ ଜାହାଜାତି କାରବାର ବାଲେଶ୍ୱରରୁ ଉଠିଯିବ । ସ୍ଥିର କଲେ, ଟଙ୍କାଗୁଡ଼ିକ ବାଣ୍ଟିନେଇ ନିଶ୍ଚିନ୍ତରେ ରହିବେ, ଜାହାଜଡୁବି ଖବର ମହାଜନକୁ ଦେବେ । ମାତ୍ର ସେମାନେ ଯତ୍ନ କରିଥିଲେ ଜାହାଜ ଉଠିଥାନ୍ତା ଇତ୍ୟାଦି ।

ଚାରି ଛ ଦିନ ବାଦେ ପୂର୍ଣ୍ଣିମା ତିଥି କଟାଳ ଜୁଆର ପହଞ୍ଚିବାରୁ ଜାହାଜ ଯେଉଁ ଚଡ଼ାରେ ବସିଥିଲା, ତାହା ଜଳପୂର୍ଣ୍ଣ ହୋଇଗଲା । ଦୈବାତ ଗୋଟାଏ ଟାଣ ପବନ ହେବାରୁ ଜାହାଜ ଭାସି ଉଠି ଜଳସ୍ରୋତରେ ଏକା-ବେଳକେ ଦରିଆରେ ପଡ଼ିଲା । ଯେପରି ଭାବରେ ଭାସି ଯାଉଥିଲା, ଗଙ୍ଗା ନଦୀ ଭିତରକୁ ଯାଇଥାନ୍ତା । ମାତ୍ର ବାଲେଶ୍ୱର ବାଗ ବାହାର ବୟା * ପାଖରେ ପହଞ୍ଚିଛି, ପୂର୍ଣ୍ଣିମା ପ୍ରାତଃକାଳ, ସମୁଦ୍ରରେ ଜୁଆର ଆରମ୍ଭ ହୋଇଛି, ଜଳସ୍ରୋତ ଧରି ବାଲେଶ୍ୱର ବୁଢ଼ାବଳଙ୍ଗ ନଦୀ ଭିତରେ ପଶିଗଲା ।

ପଶ୍ଚାତ୍ ଶୁଣାଗଲା, ମାଝି ଖଲସିମାନେ ଚାରି ଚାରି ବରଷ ମିଆଦ ଗଲେ । ଆଉ ଜ୍ୟୋତିଷ କମଳଲୋଚନ ନାୟକେ ତେଡ଼େବଡ଼ ଖରା କାଳରେ ପାଟଜଥା ପିନ୍ଧି ଯୋଡ଼ ଶାଲ ଯୋଡ଼ ହୋଇ, ହାତରେ ସୁନାବଳା ନାଇ ମାସେ ଯାଏ ସହର ମଧ୍ୟରେ ସବୁ ବଡ଼ ଲୋକଙ୍କ ଦ୍ୱାରେ ବୁଲୁଥିବାର ଦେଖାଗଲା ।

———

## ମୌନା ମୌନୀ

ପ୍ରାୟ ଅର୍ଦ୍ଧଶତ ବର୍ଷ ପୂର୍ବେ ଖଣ୍ଡଗିରି ଓ ତତ୍ ଚତୁର୍ଦ୍ଦିଗସ୍ଥ ଉପତ୍ୟକା ଭୂମି ବିବିଧ ଜାତୀୟବୃକ୍ଷ ଓ ଲତା ଜାଲରେ ବେଷ୍ଟିତ ଥିଲା । କେବଳ ଗୁମ୍ଫା ଓ ସମୀପ-ବର୍ତ୍ତୀ ସ୍ଥାନ ଉଦ୍ଭିଦଶୂନ୍ୟ, ପରିଷ୍କୃତ ପରିଚ୍ଛନ୍ନ, ସାଧୁ ସନ୍ନ୍ୟାସୀମାନଙ୍କ ଆଶ୍ରମରେ ପରିପୂର୍ଣ୍ଣ । ବିଭୂତିଭୂଷଣ କୌପୀନଧାରୀ ସାଧୁମାନେ ଧୂନି ଲଗାଇ ବସିଛନ୍ତି, ବସ୍ତ୍ରଧାରୀ ସାଧୁମାନେ ନିର୍ଦ୍ଧନିକ । ସାଧୁ ନାନା ଶ୍ରେଣୀର - ସନ୍ନ୍ୟାସୀ, ନାଗା, ରାମାଉତ, କେହି ବା ଉପାଧିରହିତ । ପ୍ରାୟ ପ୍ରତିଦିନ ସାଧୁମାନଙ୍କ ଗତାୟାତ ଲାଗିଥାଏ । ଯୋକେ ଚାଲିଯିବା ମାତ୍ରେ ନବାଗତ ସାଧୁ-ମାନେ ଶୂନ୍ୟସ୍ଥାନ ଅଧିକାର କରି ବସୁଥାନ୍ତି । ମୁଦ୍ରିତ-ନେତ୍ର ଯୋକେ ସାଧୁ ଧ୍ୟାନନିମଗ୍ନ । ତୁଳସୀ ବା ରୁଦ୍ରାକ୍ଷ ମାଳାହସ୍ତ ଯୋକେ ଭଜନରେ ନିଯୁକ୍ତ । କେହି

* ଦରିଆ ମଧ୍ୟରେ ମାର୍ଗରେ ସାଙ୍କେତିକ ଚିହ୍ନ ।

ଗ୍ରନ୍ଥ ପାଠ, କେହି ବା ଗ୍ରନ୍ଥ ଶ୍ରବଣ କରୁଅଛନ୍ତି । କେହି ଗଞ୍ଜିକା ଟିପ୍ପନ-ସେବନରେ ନିଯୁକ୍ତ । କେହି କେହି ସାଧୁ ଖଟୂଳିଟିରେ ପୁଷ୍ପମଣ୍ଡିତ ଦେବତା ବିଜେ କରାଇ ଦେଇ ତୀର୍ଥଯାତ୍ରୀମାନଙ୍କଠାରୁ ଅର୍ଥ ସଂଗ୍ରହରେ ମନୋଯୋଗୀ । ବାସ୍ତବରେ ଏହା ଗୋଟିଏ ବିଚିତ୍ର ଦୃଶ୍ୟ । ଏହି ପବିତ୍ର ସ୍ଥାନ ଦର୍ଶନ କଲେ ନିତାନ୍ତ ପାଷାଣ ହୃଦୟ ମଧ୍ୟ ଭକ୍ତିରସରେ ଆପ୍ଲୁତ ହୋଇଯାଏ ।

କେବେ କେବେ ଜମାଉତ ଦଳର ମଧ୍ୟ ଏ ସ୍ଥାନକୁ ଶୁଭାଗମନ ହୋଇଥାଏ । ଏମାନେ କିନ୍ତୁ ଗୁମ୍ଫା ନିକଟକୁ ଯାନ୍ତି ନାହିଁ । ଖଣ୍ଡଗିରି ପାଦଦେଶରେ ଦୁଇ ଚାରି ଧୂନି ସ୍ଥାପନ କରି ଅନ୍ୟତ୍ର ଚାଲିଯାନ୍ତି । ଜମାଉତ ଦଳର ସନ୍ନ୍ୟାସୀ ସଂଖ୍ୟା ଚାଳିଶ ପଚାଶଠାରୁ ହଜାରେ ବାରଶ ପର୍ଯ୍ୟନ୍ତ । ସନ୍ନ୍ୟାସୀମାନଙ୍କ ସାମାନ ବହିବା ନିମନ୍ତେ ଓଟ ଓ ଘୋଡ଼ା ଥାନ୍ତି । କଦାଚିତ୍ ହାତୀର ମଧ୍ୟ ଅଭାବ ନ ଥାଏ । ଗାଈ ବୃଷଭ ମଧ୍ୟ କାହାରି କାହାରି ଦଳରେ ଥିବାର ଦେଖାଯାଏ । ଜମାଉତର ଅଧିକାରୀଙ୍କର ଉପାଧି ମହନ୍ତ ବାବା । ଏହି ମହନ୍ତ ବାବାଙ୍କ ଆଜ୍ଞାରେ ଜମାଉତ ଚାଲେ । ଜଣେ କୋଠାରୀ ଓ ଜଣେ ଭଣ୍ଡାରି ଥାଏ । କୋଠାରୀ ଧନ ରକ୍ଷକ, ଭଣ୍ଡାରୀ ଜିମାରେ ଖାଦ୍ୟ ଓ ଅନ୍ୟାନ୍ୟ ଦ୍ରବ୍ୟ ଥାଏ । ଅଧିକାଂଶ ଜମାଉତ ନିୟତ ଯାଯାବର, ଭାରତର ସର୍ବତ୍ର ଭ୍ରମଣ କରି ରାଜା, ଜମିଦାର ଓ ଧନବନ୍ତ ଲୋକମାନଙ୍କଠାରୁ ଅର୍ଥ ସଂଗ୍ରହରେ ନିଯୁକ୍ତ ଥାନ୍ତି । ସଞ୍ଚିତ ଅର୍ଥ ଚାରି ଛ ମାସକୁ ଥରେ ସନ୍ନ୍ୟାସୀମାନଙ୍କ ମଧ୍ୟରେ ବଣ୍ଟନ କରାଯାଏ । ଅବଶ୍ୟ ମହନ୍ତ ବାବାଙ୍କ ଭାଗରେ ଅଧିକାଂଶ ପଡ଼ିଥାଏ । ସନ୍ନ୍ୟାସୀମାନଙ୍କୁ ଏକତ୍ର ଆବଦ୍ଧ କରି ରଖିବାର ଏହା ଗୋଟିଏ ଉପାୟ ଅଟେ । ଅନେକ ଜମାଉତଙ୍କର ସ୍ଥାନେ ସ୍ଥାନେ ମଠ ଓ ବିପୁଳ ଭୂସମ୍ପତ୍ତି ଅଛି, କେହି କେହି ମହାଜନୀ ମଧ୍ୟ କରିଥାନ୍ତି । ମଫସଲ ଗ୍ରାମମାନଙ୍କରେ ଏମାନଙ୍କର ଭୟଙ୍କର ଜୁଲମ ଥିଲା, ଜମାଉତର ଶୁଭାଗମନ ହେଲେ ଗ୍ରାମବାସୀମାନେ ବ୍ୟତିବ୍ୟସ୍ତ ହୋଇ ପଡ଼ନ୍ତି । ଭେଦାଦ୍ୱାରା ସାଧୁମାନଙ୍କର ଟହଲ ଚଳାଇବାକୁ ହୁଏ । ଜମାଉତଙ୍କ ସାଧୁସେବା ରାଜବିଜେ ବିଶେଷ । ଧୂନି ସକାଶେ ଉପଯୁକ୍ତ ଗଡ଼ କାଠ ସଂଗୃହୀତ ନ ହେଲେ ଗରିବ ପ୍ରଜାମାନଙ୍କ ଘରର ସ୍ତମ୍ଭ ଶେଣୀ ଲୁଣ୍ଠିତ ହେଉଥିଲା । ଗ୍ରାମରେ ଜମାଉତ ବିଜେ ହେବା ମାତ୍ରକେ ପ୍ରଥମେ ବାଲଭୋଗ, ସାଧୁଙ୍କ ଗଞ୍ଜେଇ ଖର୍ଚ୍ଚ ଓ ଦେବତା ଦର୍ଶନୀ ଦେବାର ନିୟମ । କେହି ବଡ଼ଲୋକ ବା ରାଜା ପ୍ରଥମେ ଉପଯୁକ୍ତରୂପେ ଦେବତାଙ୍କଠାରେ ଭେଟି ଦାଖଲ ନ କଲେ ସାଧୁମାନେ ଦୁଇ ତିନି ଦିବସ ପର୍ଯ୍ୟନ୍ତ ଉପବାସରେ ପଡ଼ିରହନ୍ତି । ପ୍ରକୃତରେ ଉପବାସରେ ରହନ୍ତି କି ନାହିଁ, ଲୋକନେତ୍ରର ଅଗୋଚର, ସଙ୍ଗରେ ଜମା ଥିବା ମଇଦା ରାଶି ଯୋଗେ ଧୂନିରେ ଚଢ଼ି ପୋଡ଼ପିଠାରେ ପରିଣତ ହୁଏ । ଧର୍ମପ୍ରାଣ ନିରୀହ ଗ୍ରାମବାସୀ ହିନ୍ଦୁ ପ୍ରଜାମାନେ ନୀରବରେ ସମସ୍ତ ସହ୍ୟ କରୁଥିଲେ । ପ୍ରକୃତ ସାଧୁ ଜମାଉତର ମଧ୍ୟ ଅଭାବ ନ ଥିଲା, ମାତ୍ର ବ୍ୟବସାୟୀ ଅଧିକାଂଶ । ବଙ୍ଗଳାରେ ଡକାଇତ, ପୂର୍ବ ସମୁଦ୍ରଠାରୁ ଦିଲ୍ଲୀ ପ୍ରାଚୀର ପର୍ଯ୍ୟନ୍ତ ସମସ୍ତ ଆର୍ଯ୍ୟାବର୍ତ୍ତରେ ଲୁଣ୍ଠନକାରୀ ପିଣ୍ଡାରୀ ଏବଂ ସମସ୍ତ ଭାରତବ୍ୟାପୀ ନାଗା ଜମାଉତଙ୍କ ଉତ୍ପାତରେ ପ୍ରଜାମଣ୍ଡଳୀ ନିତାନ୍ତ ଉତ୍ତ୍ୟକ୍ତ ହୋଇ ପଡ଼ିଥିଲେ । ଧନ୍ୟ ଇଂରେଜ ଗବର୍ଣ୍ଣମେଣ୍ଟ ! ସେମାନଙ୍କ ହସ୍ତରୁ ରକ୍ଷା କରିଅଛନ୍ତି ।

ଖଣ୍ଡଗିରିବାସୀ ସାଧୁମାନେ ପ୍ରାତଃସ୍ନାୟୀ । ପ୍ରାତଃକାଳରେ ଦେବତାଙ୍କ ଠାରେ ଯେଉଁ ବାଲଭୋଗ ଲାଗେ, ତାହା ସେବା କରି ଭଜନ ପୂଜନରେ ନିଯୁକ୍ତ ହୁଅନ୍ତି । ଅପରାହ୍ଣ ସମୟରେ ଥରେ ମାତ୍ର ପଙ୍ଗତ ହୁଏ । ସନ୍ଧ୍ୟା ଆଳତି ସମୟରେ ଘଣ୍ଟାଭେରୀ ତୁରୀ ଶବ୍ଦରେ ଖଣ୍ଡଗିରି କମ୍ପିତ ହୋଇ ଉଠେ । ଆଳତି ଉତ୍ତାରେ ରାତି ପ୍ରହରେକ ପର୍ଯ୍ୟନ୍ତ ଭଜନ—କାହିଁବା ଖଞ୍ଜଣୀବାଦନ, ଗଞ୍ଜିକାସେବନ ଇତ୍ୟାଦି । ତଦନନ୍ତର ଗିରି ନିସ୍ତବ୍ଧ ।

ବର୍ଣ୍ଣିତ ସମୟରେ ଝଣ୍ଡାଗିରିରେ ଯେଉଁ ସମସ୍ତ ସାଧୁ ସନ୍ନ୍ୟାସୀ ବାସ କରୁଥିଲେ, ସେଥିମଧ୍ୟରୁ ଗୋଟିଏ ଦଳର ବିଷୟ ଉଲ୍ଲେଖଯୋଗ୍ୟ । ହାଣ୍ଡିଗୁମ୍ଫା ସମ୍ମୁଖରେ ଏହି ଦଳର ମହନ୍ତ ମହାରାଜ ଧୂନି ଥାପି ବସିଛନ୍ତି । ଧୂନିର ପଶ୍ଚାତ ଭାଗରେ କିଞ୍ଚିତ୍ ଦୂରରେ ଗୋଟିଏ କ୍ଷୁଦ୍ର ସିଂହାସନରେ ମହନ୍ତଙ୍କ ସମ୍ମୁଖରେ ମହାବୀରଜୀ ଦେବତା ବିରାଜିତ । ଦେବତାଙ୍କ ଅଳଙ୍କାର, ତୈଜସପତ୍ରାଦି ଆଡ଼ମ୍ବରଯୁକ୍ତ । ପ୍ରତିଦିନ ପ୍ରାତଃକାଳରେ ଦେବତାଙ୍କଠାରେ ମୋହନଭୋଗ ବାଲଭୋଗ ଓ ସାୟାହ୍ନ ସମୟରେ ପକ୍କମାଲ ଅର୍ଥାତ୍ ପୁରି, କଚୁରି, କ୍ଷିରି, ଖେଚୁଡ଼ୀ ଭୋଗ ଲାଗେ । ଦେବତାଙ୍କ ସେବାରେ ଏତେ ବ୍ୟୟ; ମାତ୍ର କାହାରିକୁ କିଛି ମାଗନ୍ତି ନାହିଁ, ମହାବୀର ମହାପ୍ରଭୁଙ୍କ ମହାମହିମା ବଳରେ ସବୁ ଚଳିଯାଏ । ମହନ୍ତ ମହାରାଜ ନିତାନ୍ତ ନିର୍ଲୋଭ, କେହି ଭକ୍ତ ଦେବତାଙ୍କୁ କିଛି ପ୍ରଣାମୀ ଦେଲେ ଟଙ୍କା ପଇସା ସେହିଠାରେ ପଡ଼ି ରହିଥାଏ, ମହନ୍ତ ମହାରାଜ ଥରେ ସୁଦ୍ଧା ଗୃହାନ୍ତି ନାହିଁ । ସାଧାରଣରେ ପ୍ରକାଶ ଯେ, ଦୈନିକ ଦେବସେବାର ଉପଯୁକ୍ତ ବ୍ୟୟ ସକାଶେ ମହନ୍ତଙ୍କ ଧୂନିରୁ ସୁନା ବା ରୁପା ବାହାରି ଥାଏ । ବାହାରର ବିଶ୍ୱାସୀ କେହି କେହି ଭକ୍ତ ଏହା ପ୍ରତ୍ୟକ୍ଷ ଦେଖିଅଛନ୍ତି । ଭୁବନେଶ୍ୱର ପ୍ରଭୃତି ସ୍ଥାନରୁ ବଣିଆମାନେ ଯାଇ ତାହା କିଣି ଆଣନ୍ତି । କିଣା ବିକା ବେଳେ ଦର ଦାମ ନାହିଁ । ସାଧୁଲୋକ କି କଷାକଷି ଦର ଦାମ କରିବେ ? କେବଳ ମହନ୍ତ ବାବା ଏତିକ କଥା ବୋଲି ଭୁନି ହୁଅନ୍ତି, "ଦେଓକା ମାଲ, ଦେଓ ଦାଆ । ଦେଓତାକା ସେବା, ତୁମାର ଧରମ ।" ବଣିଆର ଯାହା ଇଚ୍ଛା ଦେଇ ସୁନା ରୁପା ନେଇ ଯାଏ; ଏକଥା ମଧ୍ୟ ଶୁଣା ଅଛି; ପ୍ରତିଦିନ ଧୂନିରୁ ଯାହା ବାହାରିବ, ପ୍ରତିଦିନ ବ୍ୟୟ କରିବାକୁ ହେବ, ବାସି ରହିଲେ ଆଉ ବାହାରିବ ନାହିଁ । ମହାବୀରକା ଏସା ହୁକୁମ୍ । ବ୍ୟୟ ଊଣା ନୁହେ—କେବଳ ଗଞ୍ଜେଇ ପ୍ରତିଦିନ ଅଧସେର ଆଉ ସେଥିର ଉପଯୁକ୍ତ ଧୂଆଁପତ୍ର । ପ୍ରସାଦ ସେବା ନିମନ୍ତେ ଅନେକ ଗାଉଁଲି ଲୁଣ୍ଡ ହୁଅନ୍ତି । ମହନ୍ତ ବାବାଙ୍କ ଆସନ ପାଖରେ କଦାଚିତ୍ ଭିଡ଼ିରେ ବୋତଲ (କାଚକୁମ୍ଭା) ଦେଖାଯାଏ । ସେଥିରେ ଗଙ୍ଗାଜଳ ଆସିଥାଏ । ସନ୍ଧ୍ୟା ଆଳତି ଉତ୍ତାରେ ମହନ୍ତ ବାବା ଓ ଚେଲାମାନେ କିଞ୍ଚିତ୍ କିଞ୍ଚିତ୍ ଗଙ୍ଗୋଦକ ସେବା କରନ୍ତି । ଗୋଟାଏ ବଡ଼ ଗୁମ୍ଫାରେ ସାଧୁମାନଙ୍କ ସାମାନ ପୂର୍ଣ୍ଣ ଥାଏ । ସ୍ୱୟଂ ମହନ୍ତ ଓ ତାହାଙ୍କ ବିଶ୍ୱାସୀ ଦୁଇ ଜଣ ଚେଲା ଛଡ଼ା ସେ ଗୁମ୍ଫା ମଧ୍ୟକୁ ଯିବାର ଅନ୍ୟ କାହାର ଅଧିକାର ନାହିଁ ।

ମହନ୍ତ ବାବାଙ୍କ ନାମ ମହାବୀର ଦାସ—ଦୀର୍ଘାକୃତି, ବ୍ୟାୟାମସାଧିତ ପ୍ରାୟ ମାଂସପେଶୀ ସୁଦୃଢ଼, ବଳୀବର୍ଦ୍ଦବତ୍ ବଳିଷ୍ଠ । ମସ୍ତକରେ ଦୀର୍ଘାକାର ଜଟାଭାର ଅହିରାଜ ଶିଶୁବତ୍ କୁଣ୍ଡଳୀକୃତ ଓ ବେଣୀଦ୍ୱାରା ସୁଦୃଢ଼-ରୂପେ ଆବଦ୍ଧ । ଶ୍ମଶ୍ରୁ ଓ ନିଶ ମାତ୍ରା ଅନୁପାତରେ ଦୀର୍ଘାକାର ନୁହେ । ଦେହର ବର୍ଣ୍ଣ ବୋଲିଯାଇ ନ ପାରେ; କାରଣ ସ୍ଥୂଳରୂପେ ବିଭୂତି ମଣ୍ଡିତ । ନେତ୍ର ଗଞ୍ଜିକା ଧୂମରେ ଜବାକୁସୁମସଙ୍କାଶ ରକ୍ତବର୍ଣ୍ଣ ଏବଂ ଚଞ୍ଚଳ । ଦୃଷ୍ଟି ନିତାନ୍ତ ତୀବ୍ର ଓ ଭୟପ୍ରଦ । କେହି ନବାଗତ ଯାତ୍ରୀ ବା ଭକ୍ତ ଉପସ୍ଥିତ ହେଲେ ତାହାକୁ ତୀବ୍ର ଦୃଷ୍ଟିରେ ଆପାଦମସ୍ତକ ନିରୀକ୍ଷଣ କରିଥାନ୍ତି । ସର୍ପବେଷ୍ଟିତ ଅର୍ଦ୍ଧ ହସ୍ତ ପରିମିତ ଗଞ୍ଜେଇ ଚିଲମଟାଏ ମହନ୍ତଙ୍କ ହସ୍ତରେ ସର୍ବଦା ଶୋଭା ପାଉଥାଏ । ମହନ୍ତ ବାବାଙ୍କ ବୟସ ଅନୁମାନରେ ପଞ୍ଚାଶ ଲଗାଲଗି; ମାତ୍ର ତପସ୍ୟାରେ ସିଦ୍ଧ ସାଧୁମାନଙ୍କ ବୟସ କଳା ହୁଏ ନାହିଁ । ଚେଲାମାନଙ୍କ ମୁଖରୁ ଶୁଣାଯାଏ, ବୟଃକ୍ରମ ଅଢ଼େଇଶ ବରଷ । ମହନ୍ତ ବାବା ମଧ୍ୟ ଭକ୍ତମାନଙ୍କଠାରେ ସେହି ଭାବରେ କଥାବାର୍ତ୍ତା କରିଥାନ୍ତି । ହଜାରେ ବରଷ ବୟସର ସାଧୁ ଦର୍ଶନ କରିବାକୁ ଯଦି କାହାର ଇଚ୍ଛା ଥାଏ, ତେବେ ବାଲେଶ୍ୱର ସହର ମଧ୍ୟରେ ଦୁଧପିଆ ବାବାଜୀଙ୍କୁ ଦେଖିବାକୁ ଯାଉନ୍ତୁ । ଏହି ବାବାଜୀ ସ୍ୱୟଂ ସର୍ବଦା ଲୋକମାନଙ୍କଠାରେ ପ୍ରକାଶ କରିଥାନ୍ତି, ସେ

ପୁଷ୍ପ ମନ୍ଦିର ପ୍ରତିଷ୍ଠାରେ ଭୋଜନ ଖାଇଥିଲେ । ମୁଗଲିଆ ଅମଳରେ ସେ ଦିଲ୍ଲୀରେ ଥିଲେ । ମାତ୍ର ଦେଖିଲେ ବୟସ ଷାଠିକରୁ ଊର୍ଦ୍ଧ୍ୱ ବୋଧ ହୁଏ ନାହିଁ । ଏହି ବାବାଜୀଙ୍କର ଘୋର ମହିମା ଥିଲା । ଦିବା ନିଶି ଗଞ୍ଜେଇ ଆଉ ଦୁଧ ଛଡ଼ା ଅନ୍ୟ ଦ୍ରବ୍ୟ ସେବା କରୁ ନ ଥିଲେ । ସହରମଧ୍ୟରେ ବିଶ୍ୱାସୀ ଭକ୍ତବୃନ୍ଦଙ୍କର ଅଭାବ ନାହିଁ । ଦଳ ଦଳ ଅମଲା, ମୁକ୍ତାର, ମହାଜନ, ଜମିଦାର ବାବାଜୀଙ୍କ ପଦତଳେ ଲୁଣ୍ଠିତ ହେଉଥିଲେ । ରାଜ-ଭୋଗରେ ମଠର ସେବା ଚଳୁଥିଲା; ମାତ୍ର ଆଜକୁ କେତେକ ବରଷ ହେଲା ଶକ୍ତି ପ୍ରଭାବରେ ବାବାଜୀ ବାଳଗୋପାଳ ଯେଣି ଗୃହସ୍ଥାଶ୍ରମ ଅବଲମ୍ବନ କରିଅଛନ୍ତି । ଭକ୍ତବୃନ୍ଦ ଅନ୍ତର୍ଦ୍ଧାନ । କଥିତ ଅଛି,ସନ୍ନ୍ୟାସୀ ଓ ମୋଗଲମାନଙ୍କ ବୟସ ଜାଣିବା ନିତାନ୍ତ କଠିନ । ଏମାନେ ନିଷ୍ପ୍ରୟ ବୟସ ସଂଖ୍ୟାରେ ଯୋଗ ବିଯୋଗ କରିଥାନ୍ତି । ଯେଉଁ ସାଧୁର ବୟସ ପଞ୍ଚାଶ, ସେ ଆଉ ଏକଶତ ସଂଖ୍ୟା ଯୋଗକରି ଦେଢ଼ଶତ କହିବେ । ମୋଗଲଙ୍କର ବୟସ ବିଯୋଗ । ଯାହାର ବୟସ ପଞ୍ଚାଶ, ପଚାରିଲେ ସେ ପଚିଶ ବିଯୋଗ କରି ବାକି ପଚିଶ ରଖିବେ । ଗୋଟାଏ ପୁରୁଣା କଥା ମନରେ ପଡ଼ିଲା, ପାଠକ ମହାଶୟ ବିରକ୍ତ ହୁଅ ନାହିଁ, ସେ କଥାଟା କହୁ ନ ବୋଲି ରହିପାରୁ ନାହୁଁ । "କୌଣସି ସ୍ଥାନରେ ଦୁଇଜଣ ବୃଦ୍ଧ ଓ ଜଣେ ବିଂଶତି ବର୍ଷବୟସ୍କ ଯୁବା ମୋଗଲ ବସିଥିଲେ । କଥାପ୍ରସଙ୍ଗରେ ପରସ୍ପର ବୟସ ବିଷୟରେ ପ୍ରଶ୍ନ ହେଲା । ଯାହାର ସତୁରି ବରଷ ବୟସ, ସେ କହିଲେ, ତାଙ୍କର ବୟସ ତିରିଶ । ଦ୍ୱିତୀୟ ବୃଦ୍ଧର ବୟସ ଷାଠିଏରୁ ଊର୍ଦ୍ଧ୍ୱ, ମାଧ ପ୍ରଶ୍ନର ଉତ୍ତର ଦେଲେ—ସାହେବ, ମେରା ଉମର ମୁଜକୁ ମାଲୁମ୍ ନେହିଁ ହେ, ଲେକିନ୍ ମେରା ବଡ଼ା ଭାଇକା ଉମର ତିରିଶକେ ନଜଜ୍ । ଯୁବା ମୋଗଲଙ୍କୁ ବୟସ ବିଷୟରେ ପ୍ରଶ୍ନ ହେବାରୁ ସେ ଉତ୍ତର ଦେଲା-- ହଜୁର ଲୋଗ୍ ଉମରକା ଯୋ ହିସାବ ଲଗାଏଁ ହେଁ; ମେରା ପଏଦା ହି ହୁଆ ନେହିଁ । ଅର୍ଥାତ୍ ତାହା ବୟସ ସଂଖ୍ୟାରୁ କୋଡ଼ିଏ ବାଦ ଦେଲେ ବାକି କିଛି ରହୁ ନାହିଁ ।" ଯାଉ ସେ ଅଲଣା କଥାଗୁଡ଼ାକ ଛାଡ଼, ଏବେ ପ୍ରକୃତ କଥା ଧରିଯାଉ ।

ମହନ୍ତ ବାବାଙ୍କ ଦଳର ସାଧୁ ସଂଖ୍ୟା ପ୍ରାୟ ଶତ । ସେଥି ମଧ୍ୟରୁ ମଧ୍ୟ ସମୟ ସମୟରେ ଆଠ ଦଶ ଜଣ ନୂଆ ପୁରୁଣା ହୋଇଥାନ୍ତି; ଅର୍ଥାତ୍ ଥୋକେ ସାଧୁ ବାହାରି ଯିବା ମାତ୍ରେ ନୂତନ ସାଧୁ ଆସି ସେହି ସ୍ଥାନ ପୂର୍ଣ୍ଣ କରନ୍ତି । ଆଶ୍ଚର୍ଯ୍ୟର ବିଷୟ, ପ୍ରାୟ ସମସ୍ତ ସାଧୁ ସମାନ ବୟସ୍କ, ସମାନ ଆକାର, ତୁଲ୍ୟରୂପେ ବେଶ ଭୂଷଣ । ସମସ୍ତେ ବନ୍ୟ ବରାହବତ୍ ବଳିଷ୍ଠ ଓ ନିରଳସ । ମସ୍ତକ ନିର୍ଜଟ, କ୍ଷୁଦ୍ର ବା ବାବୁରିକେଶମଣ୍ଡିତ । କ୍ଷୁଦ୍ରାକାର ଶ୍ମଶ୍ରୁବିଶିଷ୍ଟ, ସମସ୍ତଙ୍କ ଦେହରେ ଗୈରିକ ଅଙ୍ଗା ଆକଣ୍ଠ ପଦଲମ୍ବିତ । ସ୍ୱଭାବ ଓ କଥୋପକଥନ ନିତାନ୍ତ କର୍କଶ । ଦୃଷ୍ଟି ତୀବ୍ର ଓ ଭୟବିଭ୍ରମବ୍ୟଞ୍ଜକ । ସାଧୁମାନଙ୍କ କଥିତ ଭାଷା ହିନ୍ଦି । ୟୁରୋପ ଖଣ୍ଡରେ ଫରାସୀ ଯେପରି ସାର୍ବଭୌମ ଭାଷା, ଭାରତରେ ସେହିପରି ହିନ୍ଦିଭାଷା ସର୍ବସ୍ଥାନବ୍ୟାପୀ । ସାଧୁ ସନ୍ନ୍ୟାସୀମାନେ ଭାରତର ସର୍ବ ସ୍ଥାନରେ ଭ୍ରମଣ କରନ୍ତି; ସୁତରାଂ ବାଧ୍ୟ ହୋଇ ହିନ୍ଦି ବୋଲିବାକୁ ହୁଏ । ଯାହାର ମାତୃଭାଷା ହିନ୍ଦି, ତାହାକୁ ଅସୁବିଧା ଭୋଗ କରିବାକୁ ହୁଏ ନାହିଁ ।

ଆମ୍ଭମାନଙ୍କ ସାଧୁଦଳର ଭାଷା ନୀଚଶ୍ରେଣୀ କଥିତ ବଙ୍ଗଳା ଅଥବା ବଙ୍ଗହିନ୍ଦି ଭାଷାର କଦର୍ଯ୍ୟ ବିମିଶ୍ରଣ । ଏହି ସାଧୁଦଳ ଭଜନ ପୂଜନ ବିଷୟରେ ନିଯୁକ୍ତ ଥିବାର କଦାଚିତ୍ ଦେଖାଯାଏ । ଗଞ୍ଜିକା ଟିପନ, ସେବନ ଓ ପଙ୍ଗତ ସାମଗ୍ରୀ ଆୟୋଜନରେ ସର୍ବଦା ବ୍ୟସ୍ତ ଥାନ୍ତି । ସମସ୍ତ ସାଧୁ ମହନ୍ତ ବାବାଙ୍କର ନିତାନ୍ତ ଅନୁଗତ ।

ହାଣ୍ଡି ଗୁମ୍ଫା ସମୀପବର୍ତ୍ତୀ ଆଉ ଗୋଟିଏ କ୍ଷୁଦ୍ର ଗୁମ୍ଫାରେ ଗୋଟିଏ ସାଧୁ ଦମ୍ପତି ଆଶ୍ରମ ସ୍ଥାପନ

କରିଥିଲେ । ବାବାଜୀଙ୍କ ବୟସ ଆନୁମାନିକ ତିରିଶ ବା ବତିଶ । ଦେହ ସୁସ୍ଥ ଓ ସବଳ । ଯେପରି ଗଠନ ହେଲେ ଲୋକେ ସୁନ୍ଦର ପୁରୁଷ ବୋଲନ୍ତି, ଏହାଙ୍କ ଦେହ ସେହିପରି । ଦୃଷ୍ଟିପାତ ବ୍ୟାଧ-ଖ୍ୟାତ ମୃଗବତ୍ ଚକିତ ଓ ଖିନ୍ନବ୍ୟଞ୍ଜକ । ସର୍ବଦା ଲୋକନେତ୍ର ଅନ୍ତରାଳରେ ଗୁମ୍ଫା ମଧ୍ୟରେ ଆସୀନା, ସ୍ୱପତ୍ନାବୃତବସନା ମାତାଜିଙ୍କର ବୟସ ବା ରୂପକାନ୍ତି ନିର୍ଣ୍ଣୟ କରିବା କିଞ୍ଚିତ୍ ଅସାଧ୍ୟ ବ୍ୟାପାର । ମାତ୍ର ତାଙ୍କର ପୃଷ୍ଠବ୍ୟାପୀ ନିତମ୍ବସ୍ପର୍ଶୀ ନବୀନ ନୀରଦ ସଦୃଶ କେଶରାଶି ଓ ସଙ୍କୀର୍ଣ୍ଣ ମଧ୍ୟଭାଗ ଏବଂ ପଦଯୁଗଳର ବର୍ଣ୍ଣ ଓ ଗଢ଼ଣ ଠାଣି ଦେଖିଲେ ଜଣାଯାଏ, ମାତାଜି ପରମା ସୁନ୍ଦରୀ ଓ ପୂର୍ଣ୍ଣଯୌବନବିଶିଷ୍ଟା । ଏହି ସାଧ୍ୱୀଦମ୍ପତି ପଦାକୁ ବାହାରନ୍ତି ନାହିଁ, ସର୍ବଦା ଗୁମ୍ଫା ମଧ୍ୟରେ ରହିଥାନ୍ତି । କାହାରି ସହିତ କିଛି ମାତ୍ର କଥା ବୋଲନ୍ତି ନାହିଁ, ଏଥି ସକାଶେ ଲୋକମାନେ ଏହାଙ୍କୁ ମୌନବାବାଜୀ ଓ ମୌନୀ ମାତା ବୋଲନ୍ତି । ସାଧୁ ଅନ୍ୟ ସାଧୁର ସହାୟ । ଆମ୍ଭମାନଙ୍କ ଉଲ୍ଲିଖିତ ମହନ୍ତ ବାବା ମୌନୀ ମୋମାଙ୍କ ଆବଶ୍ୟକ ଦ୍ରବ୍ୟାଦି ସଂଗ୍ରହ କରି ଦେବାର ଦେଖାଯାଏ ।

ସାଧୁ ଦର୍ଶନାର୍ଥୀ ଯାତ୍ରୀମାନେ ଖଣ୍ଡଗିରିକୁ ଆସି ସେହି ଦିନମାନରେ ଚାଲିଯାନ୍ତି, କେହି ରାତିବାସ କରେ ନାହିଁ । ମାତ୍ର ଆଜକୁ ମାସାବଧି ଗତ ହେଲା ଦୁଇ ଜଣ ବଙ୍ଗଦେଶୀୟ ସାଧୁସେବାପରାୟଣ ଯାତ୍ରୀ ବାସ କରି ରହିଅଛନ୍ତି । ସାଧୁମାନେ କେବଳ ଧୂନିର ବିଭୂତି ଦେଇ ଲୋକମାନଙ୍କର ଅନେକ ଉତ୍କଟ ପୀଡ଼ା ଆରୋଗ୍ୟ କରିଥାନ୍ତି । ଆମ୍ଭମାନଙ୍କର ମହନ୍ତ ବାବା ମଧ୍ୟ ନେତ୍ର ମୁଦ୍ରିତ କରି ଅନେକ ଲୋକଙ୍କୁ ବିଭୂତି ବିତରଣ କରିବାର ଦେଖାଯାଏ । ଆମ୍ଭମାନଙ୍କ ଭକ୍ତଯୁଗଳ ଅନିର୍ଦ୍ଦିଷ୍ଟ ଉତ୍କଟ ପୀଡ଼ାରେ ପୀଡ଼ିତ । ଆରୋଗ୍ୟ କାମନାରେ ମହନ୍ତ ବାବା ଓ ଅନ୍ୟାନ୍ୟ ସାଧୁଙ୍କ ସେବାରେ ପ୍ରାତଃକାଳଠାରୁ ରାତ୍ର ଦ୍ୱିପ୍ରହର ପର୍ଯ୍ୟନ୍ତ ନିଯୁକ୍ତ ଥାନ୍ତି । ନିଜ ବ୍ୟୟରେ ଭୁବନେଶ୍ୱର ବଜାରରୁ ଭଲ ଭଲ ଗୋଲ ଗୋଲ ଜଟାବାଲା ଗଞ୍ଜେଇ କ୍ରୟ କରି ଆଣି ସାଧୁମାନଙ୍କୁ ସେବନ କରାଇ ଥାନ୍ତି । ଭଲ ଗଞ୍ଜେଇ ସଂଗ୍ରହ କାମନାରେ ସେମାନଙ୍କୁ କେବେ କେବେ ପୁରୀ ମଧ୍ୟ ଯିବାକୁ ହୁଏ । ମୌନୀ ମୌନୀ ସାଧ୍ୱୀଦମ୍ପତି ପ୍ରତି ମଧ୍ୟ ଏମାନଙ୍କର ଅଚଳା ଭକ୍ତି । ସେମାନେ ମୌନାବଲମ୍ବନ କରି ରହିଥିଲେ ମଧ୍ୟ ସେମାନଙ୍କୁ ଗୁମ୍ଫାଦ୍ୱାର ନିକଟରେ ଗୁହାଁ ବସିଥାନ୍ତି, କଦାଚିତ୍ ବାଲଭୋଗ ସକାଶେ ମିଷ୍ଟାନ୍ନ ବା ଫଳ ମୂଳ କିଣି ଆଣି ଦେଇ ସାଧୁ ଦମ୍ପତିଙ୍କୁ ଦଣ୍ଡବତ କରି ଚାଲି ଆସନ୍ତି ।

ଅଦ୍ୟ ପ୍ରାତଃକାଳରେ ଖଣ୍ଡଗିରିରେ ଭାରି ହୁଲସ୍ଥୁଲ ପଡ଼ି ଯାଇଅଛି । ପୁରୀ ଜିଲ୍ଲାର ସ୍ୱୟଂ ମେଜେଷ୍ଟର ସାହେବ ଉପସ୍ଥିତ । ରାତି ନ ପାହୁଣୁ ଖଣ୍ଡଗିରି ସମ୍ମୁଖରେ ଚାରି ପାଞ୍ଚଟା ତମ୍ବୁ ଠିଆ ହୋଇଗଲାଣି । ଗୋଟିଏ ବଡ଼ ତମ୍ବୁରେ ମେଜ କୁର୍ସି ଲଗାଇ ସାହେବ କଚେରି କରି ବସିଅଛନ୍ତି । ସାଙ୍ଗରେ ଚାରିଜଣ ପୋଲିସ ଦାରୋଗା, ଆଠଜଣ ମୁନ୍‌ସୀ; ଗୁଡ଼ିଏ ଭଲ ଜମାଦାର, ଶହେ ପର୍ଯ୍ୟନ୍ତ ବରକନ୍ଦାଜ, ଦୁଇ କି ତିନି ଶ' ଲମ୍ବ ଲମ୍ବ ବାଉଁଶ-ଠେଙ୍ଗାଧାରୀ ଚୌକିଦାର । ପୋଲିସ କର୍ମଚାରୀମାନେ ହାତ ଧରି ଜଗତବେଢ଼ ପରି ଖଣ୍ଡଗିରିଟାକୁ ଘେରି ଅଛନ୍ତି, ବାହାରିବାର କାହାରି ଅଧିକାର ନାହିଁ । ସାଧୁ ସନ୍ନ୍ୟାସୀମାନେ ଧରାହୋଇ ଆସି ମେଜେଷ୍ଟର ସାହେବଙ୍କ ତମ୍ବୁ ସମ୍ମୁଖରେ ଠିଆ ହେଲେ । ଦିନଯାକ ତଦନ୍ତ ହେଲା, ଅପରାହ୍ଣ ସମୟରେ ଆମ୍ଭମାନଙ୍କ କଥିତ ଭକ୍ତ ଯୁଗଳଙ୍କ ସନାକ୍ତ ଦେବା ମୁତାବକ ପୂର୍ବ ବର୍ଣ୍ଣିତ ମହନ୍ତ ବାବା ମହାବୀର ଦାସ ଓ ତାହାଙ୍କ ସଙ୍ଗୀ ପଚିଶ ଜଣ ସନ୍ନ୍ୟାସୀ, ସେମାନଙ୍କୁ ଛାଡ଼ି ଅନ୍ୟ ଦଶ ଜଣ ସାଧୁ ହାତରେ ହାତକଡ଼ି ଦିଆଯାଇ ତୁରଙ୍ଗରେ ଠୁଙ୍କି ଦିଆଗଲା । ଆମ୍ଭମାନଙ୍କ ମୌନୀ ବାବାଜୀଙ୍କର ମଧ୍ୟ ସେହି ଦଶା । ମୌନୀ ମାତା ପୋଲିସ ହେପାଜତରେ

ରହିଲେ । ମୌନା ବାବାଙ୍କ ଗୁମ୍ଫା ଓ ହାତଗୁମ୍ଫାରୁ ଅନେକ ସୁନା ରୂପା ଅଳଙ୍କାର ଓ ଜହରତ୍ ଅନେକ ମୂଲ୍ୟବାନ୍ ଲୁଗା ଶାଲ ପ୍ରଭୃତି ବରାମଦ ହେଲା । ମେଜେଷ୍ଟର ସାହେବଙ୍କ ହୁକୁମ ଅନୁସାରେ ଅନ୍ୟାନ୍ୟ ସାଧୁ ସନ୍ନ୍ୟାସୀ ଜଡ଼ିତ ହେଲେ । ଉତ୍କଳର ନୈମିଷାରଣ୍ୟ ଖଣ୍ଡଗିରି ସେହି ଦିନଠାରୁ ସାଧୁଶୂନ୍ୟ ହୋଇଅଛି ।

ପରଦିନ ପ୍ରାତଃକାଳରେ ମେଜେଷ୍ଟର ସାହେବ ବନ୍ଦୀମାନଙ୍କୁ ଉପଯୁକ୍ତ ପୋଲିସ ହେପାଜତରେ କଲିକତା ଚାଲାଣ ଦେଇ ପୁରୀ ରମାନା ହେଲେ ।

ପଶ୍ଚାତ୍ ପ୍ରକାଶ ପାଇଲା, ଉଲ୍ଲିଖିତ ମହାବୀର ଦାସ ମହନ୍ତ ବଙ୍ଗଦେଶର ପ୍ରସିଦ୍ଧ ଜଗା ଗୁଆଲା ଡକାଏତ ସର୍ଦ୍ଦାର, ଅନ୍ୟାନ୍ୟ ସାଧୁମାନେ ସଙ୍ଗୀ ଡକାଏତ । ଅନ୍ୟ ଦଶଜଣ ସାଧୁ ଅନ୍ୟାନ୍ୟ ଜିଲ୍ଲାର ଫେରାରି ଆସାମୀ । ମୌନା ବାବାଜୀ କଲିକତାର ଜଣେ ପ୍ରସିଦ୍ଧ ବଡ଼ଲୋକଙ୍କ ଗୁମାସ୍ତା । ମୌନୀ ମାତା ତାହାଙ୍କ ପରିବାରସ୍ଥ ବିଧବା ବଧୂ । ଉକ୍ତ ବଡ଼ଲୋକଙ୍କ ଘରୁ ଚୋରୀ ଯାଇଥିବା ଅନେକ ଅଳଙ୍କାର ଓ ବଙ୍ଗଦେଶର ଅନେକ ସ୍ଥାନର ଡକାଏତି ଅନେକ ମାଲ ବରାମଦ ହୋଇଅଛି । କଥିତ ଭକ୍ତଯୁଗଳ ଠଗି କମିଶନରଙ୍କ ଡିଟେକ୍ଟିଭ ପୋଲିସ ଅଫିସର ଅଟନ୍ତି ।

———

## ପୁନର୍ମୂଷିକୋଭବ

ଆଜକୁ ଚାଳିଶ ବର୍ଷ ପୂର୍ବ କଥା । ବାଲେଶ୍ୱର ଜିଲ୍ଲାରୁ ଲୁଣ ପୋକ୍ତାନ ଉଠିଗଲା । ଲୁଣାଦାଣ୍ଡୀ ଲୋକମାନଙ୍କର ସର୍ବନାଶ ଉପସ୍ଥିତ । ବାଲେଶ୍ୱର ଜିଲାର ପୂର୍ବାଞ୍ଚଳ ଉତ୍ତର ସୁବର୍ଣ୍ଣରେଖା କୂଳଠାରୁ ଦକ୍ଷିଣ ଧାମରାନଦୀ କୂଳ ପର୍ଯ୍ୟନ୍ତ ସମୁଦ୍ର ଉପକୂଳବର୍ତ୍ତୀ ସ୍ଥାନର ନାମ ଥିଲା ଲୁଣାଦାଣ୍ଡୀ । ଏ ଅଞ୍ଚଳବାସୀ ଅର୍ଦ୍ଧଲକ୍ଷାଧିକ ଲୋକର ଜୀବନାବଲମ୍ବନ ଏକମାତ୍ର ଲବଣ ପୋକ୍ତାନ । କେହି ଲୁଣ ମାରେ, କେହି ତହିଁରେ ନାନାପ୍ରକାର ସହାୟତା କରେ, ଥୋକେ ବ୍ୟବସାୟୀ, ଅନେକ ସରକାରୀ ଚାକର, କେହି କିଛି ନ ପାରିଲା ସେ ଚୋର । ଲୁଣ ଚୋରି ଓ ଚୋରର ପଇକାର ଅସଂଖ୍ୟ । ଚୂଲିଆ ଲୁଣ ମାରି ଜମା କରନ୍ତି, ତାହା ସଂଖ୍ୟା ନେବେ ଓ ବିକି କରିବେ ସରକାର । ତାହାର (ଚୂଲିଆର) ଯୋଗ ସାଲସରେ ଯେବେ କେହି ସେ ଲୁଣ ନେଇ ଘର ଭିତରେ ଗଡ଼ଜାତକୁ ଚଲାଣ ଦେଇ ଶସ୍ତାରେ ବିକି କରେ, ସେ ଚୋର ନୁହେ ତ ଆଉ କଣ ? ସମସ୍ତଙ୍କର ଉପାୟ ଏକାବେଳକେ ବନ୍ଦ । ତହିଁ ଉପରେ ପୁଣି ଭୟଙ୍କର ବିପଦ ଉପସ୍ଥିତ, ଲୁଣ କିଣି ଖାଇବାକୁ ହେବ । ମଫସଲର ସାଧାରଣ ଲୋକ ପକ୍ଷରେ ପନ-ପରିବା ସୁଲଭ ନୁହେ । ଶାଗ ପିତାପାଣି ଭରସା, ଲବଣ ମାତ୍ର ସହାୟ, ସେହି ଲବଣର ଅଭାବ । ଅଭାବ କିଆଁ ? ବିଲାତି ଲିଫି ଲୁଣ ଢେର ହାଟରେ ଜମା ଅଛି । ହେଲେ ତାହା ତ ଭିକ୍ଷା ମିଳିବ ନାହିଁ, ପଇସା ଦେଇ କିଣିବାକୁ ହେବ । ପଇସା କାହିଁ ? ଆଉ ଗୋଟିଏ ବିପଦ, ହାଟ ଅନେକ ଗ୍ରାମଠାରୁ ଦୁଇ କୋଶ ଅଢ଼ାଇକୋଶ ଦୂର । ହାଟକୁ ଯାଉଛି କିଏ ? "ନିତି ଆଣି ନିତି ଖାଏ, ସେ ଲୋକ କି ବନ୍ଧୁଘର ଯାଏ ?" ସବୁ ବାଟ ବନ୍ଦ, ଉପାୟ କଣ ? ଅନ୍ୟ ଉପାୟ ଜଣା ନାହିଁ । ଏଣେ ଲୁଣ ବିନା ପ୍ରାଣ ଯାଏ । ସୁତରାଂ ଚୋରୀ ବାଟ ମେଲା । "ନଷ୍ଟସ୍ୟ କାନ୍ୟା ଗତିଃ ?" ନଷ୍ଟସ୍ୟ କିଆଁ ? ତୁମ୍ଭେ ଆମ୍ଭେ ଏପରି ଲଣ୍ଡଭଣ୍ଡରେ ପଡ଼ିଲେ କଣ କରନ୍ତୁ ବେଳେ ବିଚାରି କରି ଦେଖିବାର କଥା । ଲୁଣ ବିନା ପ୍ରାଣ ଯାଏ, ମିଳିବା ବାଟ ଏକପ୍ରକାର ବନ୍ଦ । ଏଣେ ଭଗବାନ ଘର ଦ୍ୱାର ପାଖରେ କୋଟି କୋଟି ମହଣ ଲୁଣ ଢାଳି ଦେଇ ଅଛନ୍ତି । ଓଲପଦାଢ଼ରୁ ମାଟି ମୁଠାଏ ଆଣି ପାଣିରେ ଗୋଳାଇ ମାରି ଦେଲେ ଲୁଣ । ଖୁବ୍ ସହଜରେ, ଅତି ଅଳ୍ପ ସମୟରେ ପିଲାଝିଲା ଯେ ସେ ଲୁଣ ମାରି ପାରେ । ମାତ୍ର ସରକାରରୁ ମନା,

ଲୁଣ ମାରି ଖାଇଲେ ପେଟରେ ଚଳାଣ ହେବ । ଏଥିକୁ ଲୋକମାନେ ସରକାରୀ ହୁକୁମ କେତେଦୂର ମାନି ଚାଲୁଥିଲେ କଥାଟା ସହଜରେ ସମସ୍ତେ ବୁଝିପାରିବେ ।

ଆଜି ବାଲେଶ୍ୱର ସଦର କଚେରି ଘର ଜାରି । ଲୁଣାଦାଣ୍ଡିର ଲୁଣ ଚୋରି ଜଗିବା ସକାଶେ ପୋଲିସ ଅମଲା ବାହାଲ ହେବେ । ଯେଉଁ ପୋଲିସ ବସିବ, ତାହାର ନାମ ନିମକି ପୋଲିସ । ପୁରୁଣା ଏବାଲିସ ନିମକି ଅମଲାମାନେ ଜମାଦାରଠାରୁ ଇନ୍‌ସପେକ୍ଟର ପର୍ଯ୍ୟନ୍ତ କର୍ମରେ ବାହାଲ ହେଲେ । ନୂଆ ବାହାଲ ହେବେ କେବଳ କନେଷ୍ଟବଳ । ମିଶଲ କୋଠରି ମଧ୍ୟରେ ଘରି ଭିଡ଼ ହେବାରୁ ମାଜିଷ୍ଟ୍ରେଟ ସାହେବ କଚେରି ବାରନ୍ଦାରେ ଗୋଟାଏ କୁର୍ଚ୍ଚି ପକାଇ ବସି-ଅଛନ୍ତି । ସାହେବଙ୍କ ଚୌକି ପଛରେ ଦୁଇଜଣ ଅର୍ଦ୍ଦଳୀ ଛିଡ଼ା ହୋଇ ବାରମ୍ବାର ପାଟି କରି 'ଚୁପ, ଚୁପ' କହି ଆପଣାମାନଙ୍କର ଅସ୍ତିତ୍ୱର ଏବଂ କର୍ମଦକ୍ଷତାର ପରିଚୟ ଦେଉଅଛନ୍ତି । ସାହେବଙ୍କ ସମ୍ମୁଖ ପାଞ୍ଚ ଛ' ହାତ ଦୂରରେ ପେସ୍କାର ଉମେଦୁଆରମାନଙ୍କର ଓଡ଼ିଆ ଦରଖାସ୍ତ ଗୁଡ଼ାକ ପଢ଼ିଯାଉଅଛନ୍ତି । ଜଣ ଜଣ କରି ଉମେଦୁଆରଙ୍କୁ ଡାକରା ହେଉଛି । ଯେଉଁଟା ମାଇନାରେ ଟେକିଲା, ସାହେବଙ୍କ ସଙ୍କେତରେ ପେସ୍କାର ତାହା ନାମ ଟିପି ପକାଇଲେ । ବାହାଲ କନେଷ୍ଟବଳ ଆଭୂମି ଶିର ସଂଲଗ୍ନ ହସ୍ତରେ ସଲାମ କରି ଚାଲି ଯାଉଅଛି । ଯେଉଁଟା ମାଇନାରେ ନ ଟେକିଲା ଶୁଖିଲା ମୁହଁରେ ପଛଦୁଆ ଦେଇ ଚାଲି ଯାଉଅଛି । ଏ ଉମେଦୁଆରଟା ନାମ ପେସ୍କାର ଟିପି ପକାଇଲେ, ଏ ଜଣକ କିଏ ? ଏ ଯେ ପେସ୍କାରଙ୍କ ଚାକରିଆ କଣା ବାରିକ, ଜାତି ଭଣ୍ଡାରି । କଣୁର କିଛି ବିଶେଷ ଗୋଟିଏ ପରିଚୟ ଆବଶ୍ୟକ । 'ହରି ବିନା କୀର୍ତ୍ତନ ନାହିଁ ।' କଣୁ ଆମ୍ଭମାନଙ୍କର ଏହି କାହାଣୀର ମୂଳ ପାଣ୍ଠି । କଣା ପେସ୍କାରଙ୍କ ଘରର ଚାକର । ପେସ୍କାରଙ୍କ ଘର ବୋଧ କରୁଁ ମଫସଲ ଗ୍ରାମରେ, କାରଣ ଶନିବାର ସଞ୍ଜଠାରୁ ସୋମବାର ସକାଳ ଯାଏ ତାହାଙ୍କ ସହରସ୍ଥ ବସାଘର ଦୁଆରେ କୋଲପ ପଡ଼ିଥାଏ । ରବି ବୁଧବାରେ ଗ୍ରାମକୁ ଯିବା ଆସିବା ସକାଶେ ଜଣେ ମନୁଷ୍ୟ ସଙ୍ଗରେ ଥିବା ଲୋଡ଼ା, ପୁଣି ସେ ଜଣେ ସରକାରୀ ଅମଲା । ବସାରେ ଜଣେ ଭଣ୍ଡାରି ଚାକର ନ ରହିଲେ ଅଚଳ, ଏଥି ସକାଶ ନିଜ ଗ୍ରାମର ଭଣ୍ଡାରି କଣାକୁ ପାଖରେ ରଖି ଅଛନ୍ତି । କଣା ବାବୁଙ୍କ ବସାରେ ସବୁ କାର୍ଯ୍ୟ କରେ, କଚେରିକୁ ବସ୍ତାନି ନେବା ଆଣିବା କରେ । ପେସ୍କାରଙ୍କ ଖେଷେଇରେ ଚଳେ, ପେସ୍କାରଙ୍କଠାରୁ ସେ ଅଲଗା କିଛି ଦରମା ପାଏ କି ନାହିଁ ଏ କଥା କାହାକୁ ଜଣା ନାହିଁ । କଚେରିରେ ଛ ମାସ ପଙ୍ଖା ଟଣା କାର୍ଯ୍ୟ କରେ, ସେ ଦରମାଟା ପାଏ । ପୁଣି ପେସ୍କାରଙ୍କ ବସାକୁ ଯେଉଁ ସବୁ ମଉକଲ ଯିବା ଆସିବା କରନ୍ତି, କାହାରି ମାମଲା ଡିକ୍ରୀ ବା କାହାରି କିଛି କର୍ମ ହାସଲ ହେଲେ, କାହାରି କାହାରିଠାରୁ ବକ୍‌ସିସ ବୋଲି ଦୁଇପଇସା ହାତ ପଏଠ କରେ । କଚେରିଆ ବୋଲି ଗାଁ ଲୋକେ ତାହାକୁ ମାନନ୍ତି, ଗଣନ୍ତି । 'ନଗ୍ରାଣାଂ ନାପିତୋ ଧୂର୍ତ୍ତଃ' । ପୁଣି କଚେରି ଯିବା ଆସିବାରେ ଆହୁରି କିଛି ବୁଦ୍ଧି ଫେରିଛି । ଦେଖିବାକୁ ମଧ୍ୟ ପଞ୍ଚହାତିଆ ମର୍ଦ୍ଦ । ବୟସ ଅନୁମାନରେ ପଚିଶ ତିରିଶ ମଧ୍ୟରେ । ଲୋକ ପାଞ୍ଚଟା ବକାରରେ ମର୍ଯ୍ୟାଦା ପାଇ ଥାଆନ୍ତି । ବିଦ୍ୟା, ବପୁ, ବାକ୍ୟ, ବସ୍ତ୍ର ଓ ବିଭବ । କଣା ଦେଖିବାକୁ ମଣିଷଟା ପରି ମଣିଷ, ଦୁଇ କଥା କହି ପୋଛି ପାରେ । ସର-କାରରୁ କନେଷ୍ଟବଳ ଦରମା ମାସକୁ ଟ ୬ ୮ ଙ୍କା, ସୁତରାଂ, ଉଣା ଅଧିକରେ ତାହାର ତିନି ଗୋଟା ବକାରରେ ଅଧିକାର ଥିଲା, ଏଥିକୁ ଦରକାର ବେଳେ ସ୍ଥାନ ବିଶେଷରେ ସେ ଯଦି ଛାତି ଫୁଲାଇ ବାଟ ଚାଲେ, ତାହା ପକ୍ଷରେ ଅସୁନ୍ଦର ଦିଶିବ ନାହିଁ । ଆଜିକା ବେଶଟା କଣାର କିଛି ସ୍ୱତନ୍ତ୍ର । ନଅହାତି ବାଲିଝରି ଦେଶୀ ସୂତାବୁଣା ଖଦଖଣ୍ଡେ ପିନ୍ଧିଛି (ସେ ସମୟରେ ବିଲାତି ଗୋଷ୍ଟମାରକା ଧୋତି ଦେଶକୁ ଆସିନାହିଁ ) । ଦେହରେ ବନ୍ଧଲଗା ଗୋଟାଏ ଅଙ୍ଗା, ଦୋମୁହାଁ

ଖଟେଣ୍ଡି ମୁଣ୍ଡରେ ପଗଡ଼ି । ଆଜି ଅମୃତବେଳରେ କଣ୍ଟୁ ମୁଣ୍ଡରେ ପାଗ ବାନ୍ଧିଥିଲା, ସେହି ପାଗ ବଜାଏ ରହିଲା, ଅଧିକନ୍ତୁ ସରକାରରୁ ମିଳିଥିବା ଶାଲ୍ ଲୁଗା ଲାଲପାଗ ସେ ସ୍ଥାନ ଅଧିକାର କଲା । କଣା ବାରିକର ନାମ ସରକାରୀ କାଗଜରେ ଦରଜ ହେଲା, କଣାରାମ ସିଂ ।

ପରଦିନ ସକାଳେ କଣାରାମ ସିଂ ଡ୍ରେସ ପିନ୍ଧି କାନ୍ଧରେ କନେଷ୍ଟବଲ ବେଗ୍ ଝୁଲାଇ କର୍ମସ୍ଥାନକୁ ବାହାରିଲେ । କର୍ମ ସ୍ଥାନରେ ପହଞ୍ଚିବାକୁ ସଞ୍ଜ ସଞ୍ଜ । ତାହାଙ୍କ ବିଟରେ ଚାରି ଖଣ୍ଡ ଗ୍ରାମ, ସେଥି ମଧ୍ୟରେ ମହାମପୁର ଗ୍ରାମଟା ସବୁଠାରୁ ବଡ଼ । କଣ୍ଟୁ ସିଂ ସେହି ଗ୍ରାମ ମଝି ଭାଗବତ ଘରେ ଫାଣ୍ଡି ଠିକ କଲେ । ସେତେବେଳେ ସରକାରୀ ଫାଣ୍ଡି ନ ଥିଲା । ସେ ଆପେ ଭାଗବତ ଘରକୁ ଫାଣ୍ଡି ନାମକରଣ କଲେ । ସରକାରୀ କଥା, ପାଟି ଫିଟାଇବାକୁ ସାଧ କାହାର ? କଣାରାମ ସିଂ ମଫସଲରେ ଆଜି ଗୋଟିଏ ନାମ ପାଇଲେ 'ପୋଲିଶ ଜମାଦାର ।'

ମେଜେଷ୍ଟର ସାହେବଙ୍କ ଗସ୍ତ ସମୟରେ ପେସ୍କାର ହିମତରାଏ କଣ୍ଟୁ ମଫସଲ ଯିବା ଆସିବା କରିବାରୁ ଅମଲାଗିରି ଘାତଘାତ ତାହାକୁ କିଛି କିଛି ଜଣା । ଜମାଦାର ଗ୍ରାମରେ ପହଞ୍ଚି ଚୌକିଦାରମାନଙ୍କୁ ତଲବ କରି ଦେଲେ । ଡାକହାକରେ ଚାରିଖଣ୍ଡି ଗ୍ରାମରେ ଚହଳ ପଡ଼ିଗଲା । ନୂଆ ହାକିମ ହାଜର, ଆଉ କି କେହି ଘରେ ରହି ପାରେ ? ମୁଖ୍ୟା ମୁଖ୍ୟା ଲୋକ ହାଜର ହୋଇଗଲେ । ଦେଖଣାହାରୀ ମଧ୍ୟରେ ପିଲାଗୁଡ଼ାକ ବେଶି । ଘର ମାଇକିନିଆମାନେ ତାଟି କବାଟ ଦର-ଆଉଜା କରି ଘର ଭିତରୁ ଚାହିଁଛନ୍ତି । ଜମାଦାରେ ପାଟି କରି ସମସ୍ତଙ୍କୁ ଅନାଇ ସରକାରୀ ହୁକୁମ ଶୁଣାଇ ଦେଲେ । ସେଥିର ସାରକଥା ଏହିପରି ବୁଝାଗଲା, 'ଚାରି ଖଣ୍ଡ ଗ୍ରାମରେ ସେ ମଫସଲ ହାକିମ ।' କଚେରି ଲାଗିବାକୁ ବେଳ ଚଢ଼ିଗଲାଣି । ଗ୍ରାମର ବୁଢ଼ା ଦିଗବାର ଜଣେ ପୁରୁଖା ଲୋକ । ଢେର ହାକିମ ହୁକୁମା ଅମଳ କଲାଣି । ନାମ ଶଙ୍କର ମଲିକ । ଛିଡ଼ା ହୋଇ ଗ୍ରାମ ଲୋକଙ୍କୁ ଅନାଇ କହିଲା, "ଆଉ ବସିଲେ କଣ ହେବ, ବେଳ ଗଡ଼ି ଗଲା, ଏପର୍ଯ୍ୟନ୍ତ ହାକିମଙ୍କ ଚର୍ଚ୍ଚା ହେଲା ନାହିଁ ।" ଦିଗବାର କଥା ଶୁଣି ଗୋଟି ଗୋଟି ହୋଇ ସମସ୍ତେ ଉଠିଗଲେ । ଆଉ ଏକ ସ୍ଥାନରେ ବସି ବିଚାର କଲେ । ଗ୍ରାମଯାକ ଭେଦା ହୋଇଗଲା, କାହା ଘରୁ ଚାଉଳ, କାହା ଘରୁ କାଠ, ଲୁଣ, ବାଇଗଣ ଇତ୍ୟାଦି ପହଞ୍ଚି ଗଲା । ନାଥ ମହାକୁଡ଼ ଗଉଡ଼ ଗୋଟାଏ ଠେକରେ କିଛି ନରୁଡ଼ା ଗାଈଦୁଧ, ଦିଶୁ ଘିଅ ପହଞ୍ଚାଇ ଦେଲା । ଚାରିଜଣ ପାଣଟୋକା ଧାଇଁ ଯାଇ ବିଲ ମଧ୍ୟରୁ ଗୋଟାଏ ପାଣି ଖାଲ ବୋହି ଦେଇ ଗଡ଼ିଇ, ଚେଙ୍ଗ, କଉ, ଟିପିରି ଇତ୍ୟାଦି ଦୁଇ ଗଣ୍ଡା ଭଳି ଚିପି ନେଇ ଆସିଲେ । ପ୍ରଥମ ଦିନ ଜମାଦାରଙ୍କ ଭୋଜନ ବଢ଼ିବାକୁ ରାତି ଅଧାକ ଘଡ଼ିକ ସରିକି । ସେଦିନ ଏକାହାର । ଏହିପରି ଦୁଇଦିନ, ପାଞ୍ଚଦିନ ଦଶ ଦିନ ମଧ୍ୟ ସ୍ୱଚ୍ଛନ୍ଦରେ କଟି ଗଲା । ଦିନ ଯେପରି ଯାଏ ସେହିପରି ବହି ଯାଉଛି । ଜମାଦାରଙ୍କ ଭୋଜନ ବିଷୟରେ କୌଣସି ଚିନ୍ତା ଭାବନା ନାହିଁ । ପ୍ରତିଦିନ କାହୁଁ ସିଧା ଚାଲି ଆସୁଛି । ଦୁଧ ମାଛ ଘିଅର ଅଭାବ ନାହିଁ । ଏଟା କିଛି ଗ୍ରାମ-ବାସିଙ୍କ ଧର୍ମ ବୁଦ୍ଧିଯୁକ୍ତ ଅତିଥେୟ ନୁହେ, ଏହାର ମୂଳ କାରଣ ଭୟ ଓ ଜମାଦାରଙ୍କ ମନୋରଞ୍ଜନ କରିବା ଅଟେ । କେତେବେଳେ କଣ ଅଛି, ଗ୍ରାମ ଗୋଟାଯାକ ତ ରୈତ, ଜମାଦୀରଟା ମୁଠାରେ ଥାଉ, ଜମାଦାରଙ୍କୁ ହାତ ପୋଡ଼ିବାକୁ ହୁଏ ନାହିଁ, ଗ୍ରାମର ପୁରୋହିତ ନରହରି ପଣ୍ଡା ଦୁଇଓଳି ରୋଷାଇ କରି ଦେଇଯାଏ । ବେଠିଆ ଭଣ୍ଡାରି ରମା ବସାରେ ରୋଷାଇ ତୋଳି, ବସା ଲିପା ପୋଛା, ସକୁଡ଼ି ବାସନମଜା ଇତ୍ୟାଦି କର୍ମ କରି ଦିଏ । ଦିନେ ଦିନେ ଜମାଦାର ଗସ୍ତରୁ ବାହୁଡ଼ି ଆସିଲେ ଗୋଡ଼ ହାତରେ ତେଲ ଟୋପାଏ ମାରିଦିଏ । ଏହିପରି ଆହୁରି ଦୁଇ ପାଞ୍ଚଦିନ କଟିଗଲା । ଦିନେ ଜମାଦାରେ ବସି ବସି ବିଚାର କଲେ, ଏପରି ବସିବସି

ଖାଇଲେ ଚଳିବ ନାହିଁ ତ, ସରକାରୀ କାମ ବଜାଇବାକୁ ହେବ । ଲୁଣଗୁଡ଼ିକ ଯେ ଘରେ ଘରେ ଚାଲିଛି । ଜମାଦାର କେତେଦିନ ଗ୍ରାମରେ ରହି ବେଶ୍ ବୁଝିଲେଣି; ମାତ୍ର ଧରିବେ କିପରି ? ଗ୍ରାମ ଲୋକେ ହାଟରୁ ଦୁଇ ପଇସାର ବିଲାତି ଲୁଣ୍ କିଣି ଆଣି ରଖିଥାନ୍ତି, ଜମାଦାରଙ୍କ ସିଦାରେ ସେହି ଲୁଣ ଦିଅନ୍ତି । ଜମାଦାରେ ଏ କଥାଟା ମଧ୍ୟ ବୁଝିଲେଣି । ଦିନଯାକ ଜମାଦାର ପାଖରେ ଲୋକ ଛୁଟନ୍ତି ନାହିଁ । ରାତି ଛଅ ଘଡ଼ି ଯାଏ ପାଖରେ ରହି ଏଣୁ ତେଣୁ କହି ଭୁଲାଉଥାନ୍ତି; ଅର୍ଥାତ୍ ଜମାଦାର କେତେବେଳେ କଣ କରୁ ଅଛନ୍ତି ସମସ୍ତେ ଜାଣୁ ଥାଆନ୍ତି । ଗ୍ରାମର ଅବଧାନେ ବନମାଳୀ ଓଝା ସଞ୍ଜବେଳେ ଦୁଇ ଘଡ଼ି ଫାଣ୍ଡିରେ (ଭାଗବତଘରେ) ବସି ଜମାଦାରଙ୍କୁ ଛାନ୍ଦ ଶୁଣାଏ । ହାତ ମୁଣ୍ଡ ହଲାଇ 'ବକେ ବସିଥିଲା ଧ୍ରୁବ ଉପରେ' ଗୀତର ଅର୍ଥ କରେ । ଗ୍ରାମର ଲୋକ ଏକଯୋଟ, ଆଉ ସରକାରୀ ଲୋକ ଦଫାଦାର, ସେ ତ ଗ୍ରାମବାସୀ ମଧ୍ୟରେ ଜଣେ । ଜମାଦାରେ ବର୍ତ୍ତମାନ କିଛି ଚିନ୍ତାରେ ପଡ଼ିଲେଣି ।

ଆଜି ଜମାଦାରଙ୍କ ମିଜାଜ ଭାରି ବିଗିଡ଼ିଛି । ସବୁ କଥାରେ ଖପା, ସମସ୍ତଙ୍କ ଉପରେ ଖପା । ରାଗରେ ଗୁମ୍ ମାରି ଫାଣ୍ଡିରେ ବସିଛନ୍ତି, କାହାରି ସହିତ କିଛି କଥା ନାହିଁ । ଦଫାଦାର ଶଙ୍କୁ ମଲିକ ଚୁରି ହାତିଆ ବାଉଁଶ ଠେଙ୍ଗାଟା କାନ୍ଧରେ ପକାଇ ପିଣ୍ଡାତଳେ କୋଡ଼ିଏ ହାତ ଦୂରରେ ବସିଛି । ଜମାଦାରେ ଖୁବ ଖପାହୋଇ ଦଫାଦାରକୁ ପଚାରିଲେ, "କି ରେ ? ସେ ଆସିଲା ନାହିଁ ?" ଦଫାଦାର ଛିଡ଼ା ହୋଇ ହାତ ଯୋଡ଼ି କହିଲା, "ହଜୁର, ଏଥର ଲଗା ତା ପାଖକୁ ପାଞ୍ଚଥର ଗଲି; ଆସିଲା ନାହିଁ । କହିଲା, ମୁଁ କଣ ଜମାଦାର ସକ୍କୁଡ଼ି ଉଠାଇ ତିନି ପାଞ୍ଚିରୁ ଯିବି ? ଜଣା ଅଜଣା ଗ୍ରାମ ସାଆନ୍ତଙ୍କ ବୋଲରେ ପଡ଼ି ଯାହା କରି ଯାଇଛି— ଯାଇଛି; ଆଉ ଏଣିକି ପାରିବି ନାହିଁ ।"

ସଞ୍ଜବେଳେ ଗ୍ରାମର ମୁଖିଆ ମୁଖିଆ ଲୋକମାନେ ଭାଗବତଘରଠାରେ ହାଜର ହୋଇ ରାମ ବାରିକ ଭଣ୍ଡାରିକୁ ଡକାଇଲେ । ରାମା ହାଜର ହୋଇ ଜମାଦାରଙ୍କୁ ଗୋଟାଏ ଦଣ୍ଡବତ କରି ହାତ ଯୋଡ଼ି ଛିଡ଼ା ହେଲା । ଗ୍ରାମର ପଧାନ ଗୋପାଳ ଘଡ଼େଇ ପଚାରିଲେ, "କିରେ ରାମା, ତୁ ଆଜି ଜମାଦାରଙ୍କ ବସାରେ କିଆଁ ହାଜର ହେଲୁ ନାହିଁ ?" ରାମା ଦୁଇ ଥର ଗଳା ଖଙ୍କାରି ଦେଲା, ଦୁଇ ଥର ଗୁଇଁ ଗାଇଁ ହେଲା, କଣ ବଡ଼୍ ବଡ଼୍ କରି କହିଲା । ଘଡ଼େଇ ଆଉ ଥରେ ଧମକାଇ ପଚାରିଲେ, "ରେ, କଣ କହୁଛୁ ସଫା କରି କହ ।"

ରାମା କହିଲା, "ଆଜ୍ଞା ଆଜି ସକାଳେ ନରସିଂହପୁରରୁ ଆମ ଜାତି ପରମାଣିକ ଆସିଥିଲେ । ମୋତେ ମନା କରିଗଲେ । ଏଣିକି ଆଉ ଜମାଦାରଙ୍କ ସକ୍କୁଡ଼ି ଉଠାଇଲେ ମୁଁ ଏକଘରିଆ ହେବି । ଆଜ୍ଞା, ଆପଣମାନେ ନିଶାପ କରନ୍ତୁ, ଜାତିପାଟକ କଥା, ମୁଁ କି ପରମାଣିକ କଥା ହେଲି ପାରେଁ ?" ସମସ୍ତେ ଚୁପ ଚାପ, କଥାଟା ଫିଟିଲା ନାହିଁ; ମାତ୍ର ସମସ୍ତେ ବୁଝିଗଲେ ଜମାଦାରେ ଜାତିରେ ଭଣ୍ଡାରି । ରାମା ଜାତି ଭାଇ ସେବା କରିବାକୁ ନାରାଜ । ଜମାଦାରେ ରାଗରେ କମ୍ପୁଛନ୍ତି; ମାତ୍ର ଲୋକଟା ଖୁବ ସିଆଣା କିନା, ବଳୁରି କରି ରାମା ଉପରେ ଜୁଲୁମ କଲେ କଥାଟା ଫିଟିଯିବ । ତୁନି ତାନି ହୋଇ ରହିଲେ । ରାତି ହେଲା, ଗୋଟି ଗୋଟି ହୋଇ ସମସ୍ତେ ଘରକୁ ଚାଲିଗଲେ । ସେଥି ପଛେ ପଛେ ରାମା ମଧ୍ୟ ଚାଲିଗଲା ।

ଜମାଦାରଙ୍କ ସାତ ପୁରୁଷର କାମ ଝଇଣ୍ଟା ଉଠା । ଦେଷ୍କାରଙ୍କ ବସାରେ ମଧ୍ୟ ସେହି କାମରେ ବାହେଲ ଥିଲେ । ଆଟଣା ସକ୍କୁଡ଼ି ବାସନଟା ମାଜି ପାରିବେ ନାହିଁ ? ତେବେ କଥା କଣ କି ଏଠାରେ ମର୍ଯ୍ୟାଦାକୁ ଜଗି ଚାଲିବାକୁ ହେବ ତ ! କଣ କରିବେ, କାମ ଚାଲିଗଲା; ମାତ୍ର ରାମା ଉପରେ ରାଗଟା ରହିଗଲା ।

ହିନ୍ଦୁ ପୁରାଣ କଥାସବୁ ଜାଣନ୍ତି ବୋଲି ଜଣେ ବୁଡ଼ା ମୁସଲମାନ ମୌଲବିଙ୍କର କିଛି ଦେମାକ ଥିଲା । ସେ ବୋଲନ୍ତି, "ମହାଭାରତ ଆଉର କୁଛ ନେହିଁ । ଭାଇ ଭାଇୟୋଁକା ତକରାର କେସ୍‌ସା ଆଉର ରାମାୟନ୍ ଯୋ ହେ, ଭାଇକା ଚୁଗଲ ଖୋରମେ ରାବଣକା ଖୁନଆନ୍ଦ ବରବାଦ ।" ମୌଲବି ସାହେବଙ୍କ କଥା ଯାହା ହେଉ ଆମ୍ଭେମାନେ କିନ୍ତୁ ସଚରାଚର ଏଡ଼ିସନଲ ମୁନସଫି ଦୁଆରଠାରୁ ହାଇକୋର୍ଟ ଦରଜା ପର୍ଯ୍ୟନ୍ତ ଭାଇ ଭାଇ ତକରାରରେ ଅନେକ ଖାନଦାନ ଖିନ୍ ଖରାପ ହେବାର ଦେଖିଅଛୁଁ । କ୍ଷୁଦ୍ରାଦପି କ୍ଷୁଦ୍ର ରାମ ବାରିକର ମଧ୍ୟ ନିଷ୍କୃତି ନାହିଁ । ରାମବାରିକର ଭାୟାଭାଇ ମଧ୍ୟରେ ଜଣକ ସଙ୍ଗରେ ତାହାର ତକରାର ଥିଲା । ରାମା ଉପରେ ଜମାଦାରେ ଭାରି ଖପା ହୋଇଥିବା ଗ୍ରାମଯାକ ଜଣା, ତା କାନରେ ମଧ୍ୟ କଥା ପଡ଼ିଲା । ରାମାକୁ ଜବଦ୍ କରିବାପାଇଁ ଦିନେ ନିରୋଳାରେ ଜମାଦାର ପାଖରେ ହାଜର ହୋଇ ରାମା ଘର ମଧ୍ୟରେ ଚୋରିଲୁଣ ମାରୁଥିବାର କଥା କହିଗଲା । ଜମାଦାରେ ଭାରି ଖୁସି, ନିଧିଟାଏ ପାଇଗଲେ । ଗୋଟାଏ ଟେକାରେ ଯୋଡ଼ାଏ ଆମ୍ବ ଝଡ଼ିବ; ଅର୍ଥାତ୍ ବଦମାଏସ ରାମା ଜବଦ୍ ହେବ, ଆଉ ଏକ ନମ୍ବର ମାମଲା ଦାଏର ହେବ ।

ତହିଁ ଆରଦିନ ସକାଳେ ପ୍ରହରକ ବେଳେ ଜମାଦାରେ ତିନି ଚାରି ଦଫାଦାରଙ୍କୁ ସଙ୍ଗରେ ଧରି ରାମା ଦାଣ୍ଡ ଦୁଆରେ ହାଜର । ଜମାଦାର ଠିକ୍ ସନ୍ଧାନ ପାଇଥିଲେ । ରାମା ତାହାର ଘର ପାଚେରିବୁଲା ମଝି ଅଗଣାରେ ଅଧ ହାଣ୍ଡିଏ ଦହିପାଣି ଦେଇ ଧାନଉଁଷା ଚୁଲୀରେ ଲୁଣ ମାରିବାକୁ ଯାଉଥିଲା । ଜମାଦାର ଏକାବେଳକେ ଅଗଣା ମଧ୍ୟରେ ତାହା ଆଗରେ ହାଜର । ରାମା ପରଖା ଲୋକ, ଜମାଦାର ଦେଖିବା ମାତ୍ର ସବୁ କଥା ବୁଝିଗଲା, ଲଣ୍ଡଭଣ୍ଡ ହୋଇ ପାଣିଯାକ ମଳା ମୁହଁରେ ଢାଳିଦେଲା । ଜମାଦାରେ ଟୋଖେ ଦେଖୁଛନ୍ତି, ଆଉ କଣ ? ରାମା ତତ୍‌କ୍ଷଣାତ୍ ଗ୍ରେପ୍ତାର । ଯେଉଁଠାରେ ଲୁଣପାଣି ଢଳା ହୋଇଥିଲା ସେଇଠାରୁ ଅଧହାଣ୍ଡିଏ ମାଟି ରାମ ହାତରେ ପୂରାଇ ଦାଣ୍ଡକୁ ଭିଡ଼ି ଆଣିଲେ । ଜମାଦାର ହୁକୁମରେ ଦଫାଦାର ରାମକୁ ଡେଣା ବାନ୍ଧି ପକାଇଲା । ଦଫାଦାର ବାଁ କାନ୍ଧରେ ଠେଙ୍ଗା ଡାହାଣ ହାତରେ ରାମ । ହାତବନ୍ଧା ରସି ଧରି ଗ୍ରାମ ମଝିଦାଣ୍ଡରେ ଭିଡ଼ ଭିଡ଼ ଫାଣ୍ଡିକୁ ଘେନି ଗଲା । ଜମାଦାରଙ୍କ ହୁକୁମରେ ଆଉ ତିନିଖଣ୍ଡ ଗ୍ରାମର ତିନି ଜଣ ଦଫାଦାର ହାଜର ହୋଇଗଲେ । ସେମାନଙ୍କ ହେପାଜତରେ ଚୋର ରାମା ବନ୍ଧା ହୋଇ ଫାଣ୍ଡିରେ ସେଦିନକ ପଡ଼ି ରହିଲା ।

ଗ୍ରାମଯାକ ଚହଲ ପଡ଼ିଗଲା । ସହର ଜାଗାରେ ଏପରି କଥାକୁ କେହି ଅନାଏ ନାହିଁ, ମାତ୍ର ମଫସଲରେ ଏହା ଗୋଟିଏ ଭାରି କାଣ୍ଡ । ବିଶେଷରେ ପୋଲିସ ଜମାଦାର ଲୁଣଚୋର ଧରିଲାଣି । ଗ୍ରାମ ଯାକ ସମସ୍ତଙ୍କ ମୁହଁରେ ସେହି କଥା, ସମସ୍ତଙ୍କର ସବୁ ପ୍ରକାର କାର୍ଯ୍ୟ ବନ୍ଦ । କାହାରି ମନରେ ସୁଖ ନାହିଁ, ମାତ୍ର ଗାଁ ପିଲା-ଗୁଡ଼ାକର ଭାରି ଆନନ୍ଦ, ଅବଧାନେ ଚାଟଶାଳୀ ଛାଡ଼ି ଯାଇଅଛନ୍ତି । ପିଲାଗୁଡ଼ାକ ପଲପଲ ହୋଇ ରାମାକୁ ଦେଖିବା ପାଇଁ ଭାଗବତ ଘରକୁ ଧାଇଁଛନ୍ତି । ଗୋଳମାଳ କଲେ ଦଫାଦାର ପାଟିକରି ଧମକାଇ ତଡ଼ି ଦେଉଛି । ଭୟରେ ପଳାଇ ଆସି ପୁନର୍ବାର ଧୀରେ ଧୀରେ ଭାଗବତ ଘର ପାଖରେ ଜମା ହେଉଛନ୍ତି, ଏହିପରି ସେମାନଙ୍କର କାର୍ଯ୍ୟ ଲାଗିଛି । ମାଇକିନିଆମାନେ ଘରଧନ୍ଦା ଛାଡ଼ି ତୁନି ହୋଇ ବସିଛନ୍ତି । ଗ୍ରାମରେ ଯେମନ୍ତ ବଜ୍ରପାତ ହୋଇଅଛି । ଆଜି ରାମା ଧରାଗଲା, କାଲି କାହା କପାଳରେ କଣ ଅଛି କିଏ କହିପାରେ, ଲୁଣ ମରା ତ ସମସ୍ତଙ୍କ ଘରେ । ସରକାରଙ୍କୁ ବଳ କାହାର ? ସେଦିନ ଦିନଓଳି ଖିଆ ପିଆଟା ଅନେକ ଲୋକ ଘରେ . ସଞ୍ଜ-ବେଳେ ହେଲା । ରାମା ଘରେ ତ ଅରନ୍ଧା ଅବଢ଼ା ।

ଗ୍ରାମମୁଣ୍ଡ ବରଗଛମୂଳରେ ମୁରୁଖୀ ପୁରୁଖା ଆଠ ଦଶ ଜଣ ଲୋକ ବିଚାର କରିବାକୁ ବସିଗଲେ, ଅନେକ କଥା ଅନେକ ତର୍କବିତର୍କ ଉତ୍ତାରେ ସ୍ଥିର ହେଲା— ଯେପରି ହେଉ ଯେତେ ଟଙ୍କା ଲାଗୁ ଗ୍ରାମାକୁ ଖଲାସ କରାଇବାକୁ ହେବ । ସମସ୍ତଙ୍କ ପରାମର୍ଶରେ ଗ୍ରାମର ପୁରୋହିତ ବୃଦ୍ଧ ବ୍ରାହ୍ମଣ ନାରାୟଣ ମିଶ୍ରେ ନିରୋଳାରେ ଜମାଦାର ସଙ୍ଗରେ ସାକ୍ଷାତ କଲେ । ଜମାଦାରେ ଓଳଗି ହେବା ଆଗରୁ ମିଶ୍ରେ ଦୁଇହାତ ଆଞ୍ଜୁଳା କରି କଣ୍ଠିତ ନଇଁପଡ଼ି, "ଅଶ୍ୱତ୍ଥାମା ବଳୀ ବ୍ୟାସ ହନୁମାନ ବିଭୀଷଣ" ଇତ୍ୟାଦି ଶ୍ଳୋକ ପଢ଼ି ଜମାଦାରଙ୍କ ଶରାୟୁ, ଗୋପଲକ୍ଷ୍ମୀ, ଧନଧାନ୍ୟ ଇତ୍ୟାଦି ନିଶ୍ଚୟ ପ୍ରାପ୍ତିର ସୂଚନା କରି ଧୀରେ ଧୀରେ ପାଖରେ ବସିଲେ । ଜମାଦାରେ ପରଖା ଲୋକ, ମିଶ୍ରଙ୍କ ଆଗମନ ଅଭିପ୍ରାୟଟା ବୁଝିଗଲେ । ଅନ୍ୟ ଦିନେ ମିଶ୍ରଙ୍କ ସଙ୍ଗରେ ଢେର କଥା କହନ୍ତି; ଆଜି ପାଟି ଫିଟିବାର ନାହିଁ, ତୁନି ହୋଇ ଗମ୍ଭୀରଭାବରେ, ହାକିମି ଧରଣରେ ବସିଛନ୍ତି । ମିଶ୍ରେ କଣ୍ଠିତ୍କ୍ଷଣ ବସି ଜମାଦାଙ୍କର ଢେର ପ୍ରଶଂସା କଲେ । ସେ ଯେ ଗୁରଖଣ୍ଡ ଗ୍ରାମରେ ହର୍ତ୍ତାକର୍ତ୍ତା ବିଧାତା, ସମସ୍ତଙ୍କ ମାନ ମହତ ତାଙ୍କ ହାତରେ, ସେ ମାରି ପାରନ୍ତି, ତାରି ପାରନ୍ତି ଇତ୍ୟାଦି ଇତ୍ୟାଦି ଢେର ପ୍ରଶଂସା କଲେ । ଜମାଦାର ନୀରବ । ମିଶ୍ରଙ୍କୁ ମଧ ମାମଲତ କିଛି ଜଣା । ଦୁଇ ଚାରିଥର ହାଇ ମାରି ଚାରିଆଡ଼କୁ ଅନାଇ ଗ୍ରାମାକୁ ଛାଡ଼ିଦେଲେ ଦଶଟଙ୍କା ଇଶାରାରେ ଶୁଣାଇଲେ । ( ଆଉ ମାମଲା ହୋଇଥିଲେ ଜମାଦାରେ କଣ କରିଥାଆନ୍ତେ, ଆମ୍ଭେମାନେ କିଛି କିଛି ଅନୁମାନ କରିପାରୁଁ ; ମାତ୍ର ଏ ଯେ ଗ୍ରାମା କଥା— ବଦମାଏସ ଉଣା କାର୍ଯ୍ୟ କରିଛି, ମହତ ଉପରେ ବିଟୀ । ) ଜମାଦାର ଭାରି ଖପା ହୋଇ ରଙ୍ଗା ଆଖିରେ ମିଶ୍ରଙ୍କ ଆଡ଼କୁ ଅନାଇ କହିଲେ, "ତୁ କି ରକମ ଗୋସେଇଁରେ ? ମୋତେ କି ଆଉ ହାକିମ ପାଇଛୁ ?" ମିଶ୍ରେ ତ ଏକାବେଳକେ ବସିଗଲେ—ସରକାରୀ ଲୋକ କେଜାଣେ କଣ କରି ପକାଇବ ରେ ବାପା । କିଛିକ୍ଷଣ ବସି ଖୁବ ଗୋଟାଏ ନିଶ୍ୱାସ ପକାଇ ଧୀରେ ଧୀରେ ଉଠି ଚାଲିଗଲେ ।

ପରଦିନ ଖୁବ ସକାଳେ ଗ୍ରାମା ଡାହାଣ ଡେଣାରେ ରସିଲଗା, ବାଁ କାନ୍ଧରେ ଝୋଟ ଲୁଣହାଣ୍ଡି । ହିଂଗବାର ଶଙ୍କ ମଳିକ ଡାହାଣ କାନ୍ଧରେ ଠେଙ୍ଗା, ବାଁ ହାତରେ ଗ୍ରାମା ବନ୍ଧା ଦଉଡ଼ିମୁଣ୍ଡ । ଜମାଦାରେ ତ୍ରେଶ ପିନ୍ଧି ଗୁଡ଼ି ଫୁଲାଇ ଗାଁ ମଝି ଗୋହିରୀରେ ବାଲେଶ୍ୱର ସଦର କଚେରିକୁ ରବାନା ହେଲେ । ଜମାଦାରଙ୍କ ମନରେ ଖୁବ ଫୁର୍ତ୍ତି, ଚଞ୍ଚଳ ଚଞ୍ଚଳ ଗୋଡ଼ ପଡ଼ୁଛି, ହିଂଗବାର କିଛି ପଛରେ ପଡ଼ିଗଲେ ତାହାକୁ ଧମକାଇ କହୁ ଅଛନ୍ତି, "ଚଞ୍ଚଳ ଚାଲ, ପହିଲା କଚେରିରେ ହାଜର ହେବାକୁ ପଡ଼ିବ ।"

ମହାମପୁରଠାରୁ ସଦର କଚେରି ଉଣା ଅଧିକରେ ସାତକୋଶ ଦୂର; ମାତ୍ର ଜମାଦାରେ ଆସାମୀକୁ ଧରିବାର ଉପରେ ଯୋଡ଼ାଏ ବାଜେ କଚେରିରେ ପହୁଞ୍ଚିଗଲେ । ମନ ଦଙ୍ଗରେ ଗୋଡ଼ର କିପରି ସମ୍ବନ୍ଧ ଅଛି ଆମ୍ଭମାନଙ୍କୁ ଅଜଣା । ଯେହେତୁ ମନୋବିଜ୍ଞାନ ଶାସ୍ତ୍ରରେ ଆମ୍ଭେମାନେ ନିପଟ—ଇତ୍ୟାଦି, ହେଲେ ଦାର୍ଶନିକ ଲୋଡ଼ିବାର ଦରକାର ନାହିଁ । ଜମାଦାରଙ୍କ ପଦଯୁଗଳର ଚାଞ୍ଚଲ୍ୟ ପ୍ରତ୍ୟକ୍ଷରେ ତାହାଙ୍କ ମନର ଚାଞ୍ଚଲ୍ୟ, ଫୁର୍ତ୍ତି ଅନୁମାନ କରି ନେଲୁଁ । ଜମାଦାରେ କଚେରିରେ ପହୁଞ୍ଚି ଶହା ଅଣହା ଢେର ଅମଲା ଫଏଲାଙ୍କୁ ନମସ୍କାର କରିଗଲେ । ପେସ୍କାରଙ୍କୁ ଜୁହାରଟାଏ କରି ମାମଲା ଆସାମୀର ହାଲ ଚୂମ୍ବକ ଚୂମ୍ବକ ସବୁ ଜଣାଇ ଦେଲେ । ମେଜେଷ୍ଟର ସାହେବଙ୍କ ନିକଟରେ ରିପୋର୍ଟ ପେଶ ହେଲା । ଆସାମୀ ନାଜରଖାନା ବାଟେ ହାଜତକୁ ଚାଲାଣ ହେଲା । ବରାମଦି ମାଲ ନାଜରଖାନାରେ ଦାଖଲ ରହିଲା । ମାମଲା ଡେପୁଟି ମାଜିଷ୍ଟର ମୌଲବୀ ଅବଦୁଲ ମିଆଁଙ୍କୁ ସମ୍ପ୍ରୋଦ ହେଲା । ତାରିଖ ପଡ଼ିଲା ଆସନ୍ତା ପାଞ୍ଚ ତାରିଖ ଶୁକ୍ରବାର ।

କଟେଚର ବାହୁଡ଼ା ଜମାଦାରେ ଆସି ପେସ୍କାରଙ୍କ ବସାରେ ରହିଲେ, ଦଫାଦାର ମଧ୍ୟ ରହିଲା । ମାମଲା ତାରିଖ ଆଜଲଗାଏତ ବାରଦିନ । ଆଜ ଦିନଟା ତ ଗଲା—ତାରିଖ ଦିନ ମାମଲା ପଡ଼ିବ, ମଝିରେ ଯୋଡ଼ାଏ ଦିନ, ଫାଣ୍ଡିକୁ ଯାଇ ଆସି ହେବ ନାହିଁ । ଜମାଦାରେ ପେସ୍କାରଙ୍କ ବସାରେ ଥାଆନ୍ତି । ଭୁକ୍ତାଟାରେ ହେଲେ ଦଶରଥ ଡାକ ହାକିମି ବୋଲରେ ଦଫାଦାରକୁ ନାନା ଫରମାସ ବତାଉ ଥାଆନ୍ତି; ଅର୍ଥାତ୍ ଜମାଦାର ଡାକିଲେ ଦଫାଦାର ଯେ 'ଆଜ୍ଞା ହଜୁର୍' କହେ, ତାହା ଲୋକେ ଶୁଣନ୍ତୁ, ଆଉ ତାହାଙ୍କ ତାବେ ଯେ ଲୋକେ ଅଛନ୍ତି, ଏହା ସମସ୍ତେ ଜାଣନ୍ତୁ ।

ରାତି ଅନ୍ଦାଜ ଏକ ପ୍ରହର । ପେସ୍କାରେ ଗମ୍ଭୀର ଭିତରେ ଗୋଟାଏ ସଉଚମସିଣା ମେଲାଇ ବସିଛନ୍ତି । ଆଗରେ ଗୋଟାଏ ଢିପରଖା । ଉପରେ ମାଟି ଢିପଟାରେ ବଳିତାଟା ମିଟି ମିଟି କରି ଜଳୁଛି । ପେସ୍କାରଙ୍କ ଆଗରେ ନଥିପତ୍ର କାଗଜଗୁଡ଼ାଏ ବୁଣି ପଡ଼ିଛି । ପେସ୍କାରେ ନଥିର ଫେରସ୍ତ ଖୁବ ମନୋଯୋଗୀ ହୋଇ ସଜାଡ଼ିବାରେ ବ୍ୟସ୍ତ । ଜମାଦାର କଣାରାମ ସିଂ ପିଣ୍ଡାରେ ଚକାମାଡ଼ି ତୁନି ହୋଇ ବସିଛନ୍ତି । ଦଫାଦାରଟା ଓଳିତଳେ ବସି ଜମାଦାରଙ୍କୁ ଚାହିଁଛି, କେତେବେଳେ କଣ ହୁକୁମ ହେବ । ରୋଷେଇଆ ପିଲା ଚୁଲି ଲଗାଇବାରେ ବ୍ୟସ୍ତ, ଚୁଲିମୁହଁରେ ଲୁଣ୍ଡା ପକାଇ ଫୁଙ୍କୁଛି, ଠିକ୍ ଏହି ସମୟରେ ଶବ୍ଦ ହେଲା, "ହରିବୋଲ - ହରିବୋଲ ପେସ୍କାର ବାବୁଙ୍କର ମଙ୍ଗଳ ହେଉ, ଜୟ ଜୟକାର ହେଉ ।"

ପେସ୍କାରେ ତୁଣ୍ଡି ବାରି ଘରୁ ବାହାରି ପଡ଼ିଲେ । "ଆସିବା ହେଉ ରଥେ, ଆସିବା ହେଉ," କହି ଓଳଗିଟାଏ କଲେ । ଗାଁର କୁଶଳ ମଙ୍ଗଳ ପଚାରିଲେ । ଆଗନ୍ତୁକ ଲୋକର ନାମ ପୁରୁଷୋତ୍ତମ ରଥେ, ପେସ୍କାର ବାବୁଙ୍କ ପୁରୋହିତ, ଏକା ଗାଁରେ ଘର । ରଥଙ୍କ ପୁଅ ଭିକା ପେସ୍କାର ବାବୁଙ୍କ ରୋଷେଇଆ । ପୁଅ ଦେଖାହେବ, ବଜାର ସଉଦା ହେବ, ଆଉ ରୋଜଗାରିଆ ଯଜମାନ, କେବେ କେବେ କିଛି ପ୍ରାପ୍ତିର ଆଶା ମଧ୍ୟ ଥାଏ । ଏଥି ସକାଶେ ରଥେ ମାସକୁ ଥରେ ଦୁଇ ଥର ସହରକୁ ଆସି ଥାଆନ୍ତି । ପେସ୍କାରଙ୍କ ସହିତ କଥା ସମାପ୍ତ ଉତ୍ତାରେ ରଥେ ଚାରିଆଡ଼କୁ ଚାହିଁଲେ । ଆଜ କିଛି ନୂଆ ନୂଆ ଜଣାଗଲା, ଆଗେ ପହଞ୍ଚିବା ମାତ୍ର କଣା ଭୂଇଁରେ ମୁଣ୍ଡିଆଟାଏ ମାରି ଗୋଡ଼ ଧୋଇବାକୁ ପାଣି ଢାଳେ ଆଣି ଦିଏ—ଆଜ ଉଠୁ ନାହିଁ କିଆଁ ? ଆଉ ସମ୍ଭାଳି ନ ପାରି ହାକଟାଏ ଦେଲେ, "ରେ କଣା ! ରେ କଣା ।" କଣ୍ଣୁ କିନ୍ତୁ ନିରୁତ୍ତର । ବ୍ରାହ୍ମଣ ମନ ନିକିତିକି ଅଳପକେ ତାତି ଯାଏ । କିଛି ଖପା ବୋଲିରେ ଡାକିଲେ, "ରେ କଣା !" ଉପସ୍ଥିତ କ୍ଷେତ୍ରରେ ରଥଙ୍କ କ୍ରୋଧ କରିବା ଖୁବ୍ ଅନ୍ୟାୟ । କାରଣ ରଥଙ୍କ ଆବିର୍ଭାବ ବିଷୟ କଣାରାମ ସିଂହଙ୍କର ଅଜ୍ଞାତବ୍ୟ, ଏକଥା ଆମ୍ଭେମାନେ ଦୃଢ଼ରୂପେ ବୋଲିପାରୁଁ । ସିଂହେ ସେ ସମୟରେ ନାନା ଚିନ୍ତାରେ ମନ ସଂଯୋଗ କରିଥିଲେ । କିପରି ରାମ ବାପୁଡ଼ା ଜେଲ ଯିବ, ଫାଣ୍ଡିକୁ ବାହୁଡ଼ି ଯାଇ କିପରି ନୂଆ ରକମ ଜାରି କରିବେ, ସରକାରରୁ କିପରି ଖୁସ୍‌ନାମ ମିଳିବ, ଆଉ ଦୁଇ ଚାରି ନମ୍ବର ମାମଲା ଚାଲାଣ ଦେଲେ କିପରି ଜମାଦାରୀ ପାଇବେ ଇତ୍ୟାଦି ନାନା ଭାବନାରେ ମନ ଫୁଲି ଉଠିଥିଲା । ମନୋବିଜ୍ଞାନ ଦାର୍ଶନିକ ପଣ୍ଡିତେ ବୋଲନ୍ତି, ମନ ଗୋଟାଏ ବିଷୟରେ ସଂଲଗ୍ନ ଥିଲେ ଅନ୍ୟ ବିଷୟ ଧାରଣା କରିପାରେ ନାହିଁ । ସିଂହଙ୍କ ମନ ବର୍ତ୍ତମାନ ଗୋଟାଏ ନୁହେ; ପୁଞ୍ଜାଏ ପାଞ୍ଚଟା ବିଷୟରେ ସଂଲଗ୍ନ—ଏଥିକୁ ସେ ରଥଙ୍କ ଡାକରା ଶୁଣି ପାରିଲେ ନାହିଁ ବୋଲି ତାହାଙ୍କୁ ଦୋଷୀ କରାଯାଇ ନ ପାରେ; ମାତ୍ର ବ୍ରାହ୍ମଣ ବାପୁଡ଼ା ତାହା ବୁଝିଲା ନାହିଁ । ପୁନର୍ବାର—"ରେ କଣା, ରେ କଣା ! ପାଣି ଢାଳେ ଦେ" ଗୋଡ଼ ଧୋଇବି । ସିଂହେ ଚମକି ପଡ଼ି ରଥଙ୍କୁ ଚାହିଁଲେ, ପୁଣି ଦଫାଦାର ଉପରେ ନଜର ପଡ଼ିଗଲା ।

'ରେ କଣା, ପାଣି ଢାଳେ ଦେ ଗୋଡ଼ ଧୋଇବ ।' ଅବଶ୍ୟ ଦ୍ୱିତୀୟବାର ଶୁଣିଲ । ରଥଙ୍କ କ୍ରୋଧର କାରଣ ଯେପରି ଅହେତୁକ ସିଂହଙ୍କର କ୍ରୋଧ ସେହିପରି କାରଣ-ସଙ୍କୁଳ ଅଟେ । ସିଂହେ ମଧ୍ୟ ସେହିପରି ଖପାଇ ସ୍ୱରରେ ଜବାବ ଦେଲେ, "କିପରି ଅଖାଡ଼ୁଆ ଗୋସେଇଁ ହେ, ଟିକିଏ ତର ସହୁନାହିଁ ?"

"କଣ ବୋଇଲୁ ? କଣ ବୋଇଲୁ ? ଅଖାଡ଼ୁଆ !" ରଥଙ୍କର ତ ଅକ୍ଷି ଫାଟିବାକୁ ବସିଲାଣି । ପେସ୍କାରେ ସବୁ ଶୁଣୁଥିଲେ, ଧାଇଁ ଆସି ଥାମ ଥୁମ କରି ଦେଲେ । ନକଚଲ ତାତ ବେଶି ବେଳଯାଏ ରହେ ନାହିଁ । ରଥେ ଗୋଡ଼ ଧୋଇ ପେସ୍କାରଙ୍କ ବିଛଣାରେ ବସିଲେ । ମନଟାକୁ ଥଣ୍ଡା କରିବା ପାଇଁ ଅଣ୍ଟିରୁ ନାସଦାନିଟା ବାହାର କଲେ । ପେସ୍କାରଙ୍କ ସହିତ କଥୋପକଥନ ଆରମ୍ଭ, ଏଣୁ ତେଣୁ କଥା ଉତ୍ତାରେ କଣା ବାରିକର କନଷ୍ଟବଲୀ, ଗ୍ରେଫ୍ତାରି ଚାଲାଣ ଇତ୍ୟାଦି କଥା ଶୁଣିଲେ । ରଥେ ଶୁଣି ସାରି କହିଲେ, "ଓଃ ଏହିକି ଏତେ ?—ପୁନର୍ମୂଷିକୋଭବ ।"

ରାମ ବାରିକ ଚାଲାଣ ହୋଇ ଆସିବା ଦିନଠାରୁ ଗୋପାଳପୁର ପ୍ରଭୃତି ଚାରିଖଣ୍ଡି ଗ୍ରାମରେ ମାଟିଟି ମରି ଯାଇଛି । ସବୁ ପାଇଟି ବନ୍ଦ, କାହାରି ମନରେ ସୁଖ ନାହିଁ । ଘରପିଛା ଭେଦା ଉଠିଲା । ଗୋପାଳ ଘଡ଼େଇ ଠଙ୍କା ଟୁଙ୍କରି ଧରି ଅଣ୍ଟା ଭିଡ଼ ବାହାରିଲେ । ସଙ୍ଗରେ ରାମର ମାଉସୀପୁଅ ଭାଇ ମଧା ବାରିକ ଆଉ ହରୁ ସାମଲ ଏହି ଦୁଇଜଣ । ଗୋପାଳ ଘଡ଼େଇ ଜଣେ ମାମଲତକାର ଲୋକ, ଚାରିଖଣ୍ଡ ଗାଁରେ ତାହାର ନାମ ଡାକ । ଆଗେ ତାହାର ତିନିଖଣ୍ଡ ଟୋଲି ଥିଲା । ଚାରି ହଳ ଜମି ଚାଷ, ଶକଡ଼ା ଠଙ୍କା ଫେର ଫାର ଚଳେ । ସଦରକୁ ଯିବା ଆସିବ ରେ ଆଇନ କାନୁନ କଥା ତାହାକୁ ଭଲ ଜଣା; ତଥାପି ସେ ରଓ୍ୱାନା ସମୟରେ ତାଙ୍କ ପଛରେ ଚାରିଜଣ ମୁରବିଭଳିଆ ଲୋକ ଅଧ କୋଶ ଯାଏ ଗୋଡ଼ାଇଯାଇ ନାନା-ପ୍ରକାର ଉପଦେଶ ଦେଲେ । ବାହୁଡ଼ି ଆସିବା ସମୟରେ ଅବଧାନେ ବନମାଳୀ ଓଝା କହିଲେ, "ଯାଅ ଘଡ଼େଇପୁଅ, 'ଶ୍ରୀ ମଧୁସୂଦନ ଶ୍ରୀ ମଧୁସୂଦନ' କହି ଚାଲି ଯାଅ । ମୁଁ ଯେ ଦିନ ଧରି ଦେଇଛି, ତାହା ନ ମେଣ୍ଟନ ।"

ଆଜି ମାମଲାର ତାରିଖ । ଜେଲଖାନା ହାଜତ ଆସାମୀ ସବୁ ଚାଲାଣ ହୋଇ ଆସି ନାଜରଖାନାରେ ବସିଛନ୍ତି । ଗୋପାଳ ଘଡ଼େଇ କିଛି ଅଣ୍ଟାଗୁଞ୍ଜା ବଳରେ ହାଜତ ଜାଏଗା ଦୁଆର ପର୍ଯ୍ୟନ୍ତ ଗଲା । ଡାହାଣ ହାତ ବୁଢ଼ା ଆଙ୍ଗୁଳି ଓ ମୁଣ୍ଡ ନାନା ଭଙ୍ଗିରେ ସଞ୍ଚାଳନ କରି ରାମାକୁ ଇଶାରା କଲା । ରାମା ହାଜତରେ ରହି ଧାବରେଇ ଯାଇଥିଲା, ତାହାକୁ ସେହି ଅବସ୍ଥାରେ ହାକିମଠାକୁ ଆଣିଥିଲେ କଣ କରିଥାଆନ୍ତା କଥା ଅଜଣା । ମାତ୍ର ରାମା ମଫସଲ ଭଣ୍ଡାରି ହେଲେ କଣ ହେବ, ପରି ପରି ଗସ୍ତିହାକିମମାନଙ୍କୁ ବେଠିରେ ଖିଅର କରି କରି ମୁଣ୍ଡବାଳ ପାଚିଲାଣି । ଘଡ଼େଇକୁ ଦେଖି ଖୁବ ହିମ୍ମତ ବାନ୍ଧିଲା । ମୁଣ୍ଡ ହାତ ହଲାଇ ଘଡ଼େଇ କଥାରେ ଜବାବ ଦେଲା । ଘଡ଼େଇ କାମ ସାରି ଚାରି ଛ'ହାତ ଚାଲି ଆସିବା ଉତ୍ତାରେ ପହରାବାଲା କନେଷ୍ଟବଲ ଡାକ ଦେଲା, "ତଫାତ୍, ତଫାତ୍ ।" ଅର୍ଥାତ୍ ନାଜର ଜାଣନ୍ତୁ ସେ ବାହାରିଆ ମଣିଷକୁ ହାଜତ ଆସାମୀ ପାଖ ପୂରାଇ ଦେଉ ନାହିଁ । ଘଡ଼େଇ ନାଜର-ଖାନାରୁ ଆସି ଉକିଲ ଅବଦୁଲ ଶୋଭନ ଖାଁଙ୍କୁ ଆସାମୀ ପକ୍ଷରୁ ଓକାଲତନାମା ଦେଲେ ।

ପ୍ରଥମ ଶ୍ରେଣୀ ଡେଃ ମାଜିଷ୍ଟ୍ରେଟ ମୌଲବୀ ଅବଦୁଲ୍ଲା ଖାଁଙ୍କ ମିସଲରେ ପଚିଶି ନମ୍ବର ଏହି ମାମଲା ଡାକରା ହେଲା । ମୌଲବୀ ସାହେବଙ୍କର କିଛି ପରିଚୟ ଦେବାର ଆବଶ୍ୟକ । ବିନା କାରଣରେ ଆମ୍ଭେମାନେ ଏହି ପରିଚୟ ଦେଉ ନାହୁଁ, ଆପଣମାନେ ଏକଥା

ବୁଝି ପାରିବେ । ଆଜକାଲ ସରକାର ଯେପରି ହାକମ-ଗୁଡ଼ାଙ୍କୁ ବଦଲେଇ ପିଲାପରି ଘରଆଡ଼େ ବୁଲାଇ ମାରୁଛନ୍ତି, ଆଗେ ସେପରି ନ ଥିଲା । ଜଣେ ଜଣେ ହାକମ ଗୋଟାଏ ଗୋଟାଏ ଜିଲାରେ ଆଠ ଦଶ ବରଷ ରହି ଯାଉଥିଲେ । ମୌଲବୀ ଅବଦୁଲା ଖାଁ ଆଜକୁ ଊଣା ଅଧିକ ଦଶ ବରଷ ହେଲା ଏହି ଜିଲାରେ ଅଛନ୍ତି । ଘର ଦୁଆର ବାଗ ବଗିଚା ଜାରି କରି ଦେଲେଣି; ସହରର ସମସ୍ତେ ମାନନ୍ତି । ମଫସଲରେ ମୌଲବୀ ଧଡ଼ପୋଡ଼ି ବୋଲି ନାମ ଡାକ । ଉକିଲ, ମୁକ୍ତାର ବୋଲନ୍ତି ମୌଲବୀ ଦରବାରରେ ପାଣି ଗଳିବ ନାହିଁ । ହେଲେ ଆମ୍ଭେମାନେ କିନ୍ତୁ ମୌଲବୀଙ୍କ ଗୋଟାଏ ଭାରି ଦୋଷ ବା ଗୁଣ କଥା ଜାଣୁ, ସେ ପୋଲିଶ ଉପରେ ସବୁଦିନ ଗୋସ୍‌ସା, ତାହାଙ୍କର କେମନ୍ତ ଗୋଟିଏ ଧାରଣା ହୋଇ ଥିଲା ଯେ, ପୋଲିଶ ଅନେକ ସ୍ଥଳରେ ସଜାସଜି କରି ନିର୍ଦୋଷ ଆସାମୀଙ୍କୁ ଚାଲାଣ ଦିଏ, ଏଥି ପାଇଁ ଚାଲାଣି ମାମଲାରେ କିଛି ଟିକିଏ ବାଟ ପାଇଲେ ଆସାମୀଙ୍କୁ ଖଲାସ କରି ଦିଅନ୍ତି ।

ହାକମ ମିସଲରେ ବସିବା ମାତ୍ର ପେସ୍କାରେ ବାଁ ହାତରେ ବଡ଼ାଏ ନଥି ଡାହାଣ ହାତରେ ଦୁଆତ କଲମ ଧରି ମିସଲ ଆଗ ବେଞ୍ଚ ପାଖରେ ପହୁଞ୍ଚି, ଆଗବେଞ୍ଚରେ କାଗଜପତ୍ର ଥୋଇ ଦେଲେ । ହାକମଙ୍କୁ ଖୁବ୍ ମୁଣ୍ଡ ନୁଆଁଇ ସଲାମ କରି ବେଞ୍ଚରେ ବସିଲେ ।

ହାକମ—ମାମଲା ପେଶ୍ କର ।

ପେସ୍କାର—ହଜୁର, ପହିଲା ନମ୍ବର ମାମଲା ନିମକୀ ପୋଲିଶ ଚାଲାଣି । ସରକାର ତରଫ ମୁଦେଇ କନଷ୍ଟବଲ କଣାରାମ ସିଂ । ମୁଦାଲା ରାମ ବାରିକ ।

ଚପରାସୀ ପାହି କରି ତିନଥର ଡାକ ଦେଲା, "କଣାରାମ ସିଂ କନଷ୍ଟବଲ ହାଜର ହୋ ।"

କଣାରାମ ସିଂ ହାକମଙ୍କୁ କନଷ୍ଟବଲୀ ସଲାମ ବଜାଇ ସାକ୍ଷୀ ବାକସ ଭିତରେ ଛିଡ଼ା ହେଲା । ନାଜରଖାନା କନେଷ୍ଟବଲ ଆସାମୀଙ୍କୁ ହାଜର କରି ଦେଲା ।

ପେସ୍କାରଙ୍କ ପଢ଼ାଇବା ମାଫିକେ କଣାରାମ ସିଂ ସତ୍ୟପାଠ କରି ଇଜାହାର ଦେବାକୁ ଲାଗିଲେ ।

ହାକମ ମୁଦେଇର ନାମ, ବାପର ନାମ, ବୟସ ଇତ୍ୟାଦି ଦସ୍ତୁର ମୁତାବକ ଲେଖିସାରିଲା ଉତ୍ତାରେ ମୁଦେଇ ମାମଲାର ସମସ୍ତ ହାଲ ହାକମଙ୍କ ସଓ୍ୱାଲ ମୁତାବକ ବୟାନ କରିଗଲା । ଜବାନବନ୍ଦି ଲେଖିସାରି ହାକମ ମୁଦାଲା ତରଫ ଉକିଲକୁ ପଚାରିଲେ, "ଜେରା କରିବ ?"

ଉକିଲ ସଲାମ କରି କହିଲେ, "ହଁ ହଜୁର ।"

ସଓ୍ୱାଲ ଉକିଲ—ଆସାମୀ ଯେ ଲୁଣ ପାଣି ଛାଳି ଦେଲା, କିଏ ଦେଖିଛି ?

ଜବାବ ମୁଦେଇ—ମୁଁ ଦେଖିଛି, ସେ ହାଣ୍ଡିରେ ପାଣି ପୂରାଇ ଚୂଲାମୁଣ୍ଡ—

ଉକିଲ—ବସ ବସ, ମୁଁ ଯାହା ପଚାରିବି ସେଥିର ଜବାବ ଦିଅ, ଅଧିକ ଗୁଡ଼ାଏ ବକ ନାହିଁ । ମୁଁ ପଚାରୁଛି ଆଉ କେହି ଦେଖିଛି କି ନାହିଁ ? 'ହଁ' କି 'ନା' ଏତିକି ବୋଲ ।

ଜବାବ କଃ—ନା, ଆଉ କେହି ଦେଖି ନାହିଁ ।

ଉକିଲ ସଓ୍ୱାଲ—ସେ ଲୁଣ ଦିଆପାଣି ଛାଳି ଦେଲା କି ଭଲ ପାଣି ଛାଳି ଦେଲା, କିପରି ଜାଣିଲ ?

ଜବାବ କଃ—ମୁଁ ଗୁଇନ୍ଦାଠାରୁ ସନ୍ଧାନ ପାଇ ଯାଇ ଧରିଛି ।

ସଓ୍ୱାଲ ଓକିଲ—ଧରିଛ ତ, ହଁ—ଲୁଣପାଣି ଛାଳିଲା ବୋଲି କିପରି ଜାଣିଲ ?

ଜବାବ କଃ—ମୁଁ ମାଟି ଚାଖି ଦେଖିଛି; ଲୁଣିଆ ଲାଗିଲା ।

ଉକୀଲ —ବର୍ତ୍ତମାନ ଥରେ ଚାଖ ।

କନେଷ୍ଟବଲ ବଗମଦ୍ଧ ମାଟି କଞ୍ଚା ହାଣ୍ଡିରୁ ଉଠାଇ ଚାଖିଲେ, କହିଲେ, "ଦେଖନ୍ତୁ ଲୁଣିଆ ଲାଗୁଛି ।"

ଉକୀଲ—ଆଉ ଥରେ ବେଶି କରି ଚାଖ ।

କନେଷ୍ଟବଲ—କଞ୍ଚା ଗୋସା ହୋଇ ଖୁବ ବୁନ୍ଦାଏ ମାଟି ପାଟିରେ ପୂରାଇ ଦେଲେ । ମିସଲରୁ ଓହ୍ଲାଇ ଯାଇ ଥୁ ଥୁ କରି ବାହାରେ ପିଙ୍ଗି ଦେଲେ । ମିସଲକୁ ଆସି ଉକୀଲଙ୍କୁ ଖୁବ ହେମତରେ କହିଲେ, "ଦେଖ, ମାଟି ଖୁବ୍ ଲୁଣିଆ ।"

ଉକୀଲ ମୁହଁରେ ରୁମାଲ ଦେଇ ହସିଲେ, ଆଉ କିଛି ପଚାରିଲେ ନାହିଁ ।

ମୁଦେଇ ତରଫ ସାକ୍ଷୀ ହରବାର ଶଙ୍କୁ ମଲିକଙ୍କର ନାମ ଧାମ ହାକିମ ଲେଖିବା ଉତ୍ତାରେ, ପେସ୍କାରେ ସତ୍ୟପାଠ ପଢ଼ାଇଲେ ।

ସଓ୍ୱାଲ—କନେଷ୍ଟବଲ ଆସାମୀକୁ ଗ୍ରେପ୍ତାର କରିବାବେଳେ ତୁ ପାଖରେ ଥିଲୁ ?

ଜବାବ ଶଙ୍କୁ ମଲିକ—ହଁ, ମୁଁ ପାଖରେ ଥିଲି ।

ସଓ୍ୱାଲ—ଆସାମୀ ରାମା ଲୁଣ ମାରିବା ପାଇଁ ହାଣ୍ଡିରେ ଦହପାଣି ରଖିଥିଲା, ତୁ ଜାଣୁ ?

ଜବାବ - ହଁ, ମୁଁ ଜାଣେ ।

ସଓ୍ୱାଲ—ଆସାମୀ ନାଳ ମୁହଁରେ ପାଣି ଢାଳି ଦେଲା, ତୁ ଦେଖିଛୁ ?

ଜବାବ—ଆଜ୍ଞା ଆଜ୍ଞା, ହୁଁ ହୁଁ, ରାମା ପାଣି ଫୋପାଡ଼ି ଦେଲା । ସେ ଲୁଣ ମାରେ ।

ମୁଦାଲା ତରଫ ଉକୀଲ ସଓ୍ୱାଲ—ରାମା ପାଣି ଢାଳି ଦେବାବେଳେ ତୁ ପାଖରେ ଛିଡ଼ା ହୋଇ ଦେଖିଛୁ କି ନା ?

ଜବାବ—ନା ମୁଁ ଦାଣ୍ଡରେ ଛିଡ଼ା ହୋଇଥିଲି । ଜମାଦାରେ କହୁଥିଲେ ମୁଁ ଶୁଣିଛି ।

ହାକିମ କଣାରାମ ସିଂକୁ ପଚାରିଲେ, "ତୁମର ଆଉ କେହି ଗୁହା ଅଛି ?"

କଣାରାମ କହିଲେ—ମୁଁ ସରକାରୀ ପୋଲିସ—ନିଜେ ଆଖିରେ ଦେଖି ଅଛି । ଆଉ ଗୁହା କଣ ?

ହାକିମ ଏ କଥା ଶୁଣି ମୁରକି ହସିଲେ ।

ମାମଲା ପ୍ରମାଣ କରାଇବା ପାଇଁ ସାକ୍ଷୀ ପ୍ରୟୋଜନ, ଏ କଥା କଣାରାମଙ୍କୁ ଜଣା ନ ଥିଲା ।

ଏ ଉତ୍ତାରେ ଆସାମୀର ଜବାବ ନିଆଗଲା ।

ଆସାମୀ ରାମ ବାରିକର ନାମ ଧାମ ହାକିମ ଲେଖି ନେଲା ଉତ୍ତାରେ, ତାହା ବିଷୟରେ ଅଣା ଯାଇଥିବା ଅଭିଯୋଗ ସଂକ୍ଷେପରେ ବୁଝାଇ ଦିଆଗଲା ଉତ୍ତାରେ ହାକିମ ପଚାରିଲେ, "ତୁ ଦୋଷୀ କି ନିର୍ଦ୍ଦୋଷ ।"

ଜବାବ ଆସାମୀ ରାମ ବାରିକ—ମୁଁ ନିର୍ଦ୍ଦୋଷ

ହାକିମ—ତେବେ କି ସକାଶେ ପୋଲିସ ତୋତେ ଚାଲାଣ ଦେଲା ?

ଜବାବ—ଆଜ୍ଞା ମୁଁ ଜମାଦାରଙ୍କର ବେଠି ନ କରିବାରୁ ସେ ମୋ ହାତରେ ଅଧ ହାଣ୍ଡିଏ ମାଟି ଦେଇ ବାନ୍ଧି ନେଇ ଆସି ଅଛନ୍ତି ।

ସଓ୍ୱାଲ—ତୋତେ କପରି ବାନ୍ଧି ଆଣିଲେ ?

ଜବାବ—ଆଜ୍ଞା ମୁଁ ଘରେ ଶୋଇଥିଲି । ମୋ ଘରେ ପଶି ଖୁବ ମାରିଲେ ଓ ମାରି କରି ବାନ୍ଧି ଆଣିଲେ ।

ସଓ୍ୱାଲ—ତୁ ଦିନବେଳେ ଶୋଇଥିଲୁ ?

ଜବାବ—ଆଜ୍ଞା ମୋତେ ଜ୍ୱର ହୋଇଥିଲା—ନା ନା ମୋ ପେଟ ଟାଣୁ ଥିଲା, ମୁଁ ଶୋଇଥିଲି ।

ସଓ୍ୱାଲ – ତୋହର ସଫାଇ ଗୁହା ଅଛୁ ?

ଆସାମୀ ରାମବାରକ ଜବାବ ଦେବାପୂର୍ବରୁ ଉକିଲ ଚନ୍ଦ୍‌କର କହି ପକାଇଲେ, "ଆଜ୍ଞା ହଜୁର ! ଦୁଇଜଣ ସଫାଇ ଗୁହା ଅଛନ୍ତି ।"

ଆସାମୀ ତରଫ ପ୍ରଥମ ସାକ୍ଷୀ ।

ମକର ବାରିକ, ତାଙ୍କ ନାମ ମନ୍ତ୍ର, ବାରିକର ନାମ ଧାମ ଫାରମ ପୂର୍ଣ୍ଣ କରି ପେସ୍କାର ହଲପ୍ ଦେଲେ ।

ସଓ୍ୱାଲ—ତୁ ଏ ମାମଲାରେ କଣ ଜାଣୁ ?

ଜବାବ ମକର ବାରିକ—ଆଜ୍ଞା ମୁଁ ଜାଣେ, ରାମ ଲୁଣ ମାରି ନାହିଁ । ତାହାର ଝାଡ଼ା ହେଉଥିଲା, ଘରେ ଶୋଇଥିଲା, ଲୁଣ ମାରିଲା କେତେବେଳେ ?

ମୁଦାଲା ତରଫ ଉକିଲ ସଓ୍ୱାଲ—ତୁମ୍ଭ ଗ୍ରାମ ଲୋକ ଲୁଣ କେଉଁଠାରୁ ଆଣି ଖାଅ ?

ଜବାବ—ଆଜ୍ଞା ହାଟରୁ ବରେବର ବଲେଇତ ଲୁଣ କଣି ଆଣି ଖାଉଁ ।

ସଓ୍ୱାଲ—ରାମା ହାଟରୁ ଲୁଣ କଣେ କି ନାହିଁ ?

ଜବାବ—ବରେବର ।

ସଓ୍ୱାଲ—ବରେବର କଣ ରେ ? ଆରେ ରାମା ହାଟରୁ ଲୁଣ କଣି ଆଣେ, ତୁ ଆଖିରେ ଦେଖିଛୁ କି ନା ?

ଜବାବ—ରମା ହାଟରୁ ବରେବର ଲୁଣ କଣି ଆଣେ, ମୁଁ ଆଖିରେ ଦେଖିଛି !

ସଓ୍ୱାଲ—କନଷ୍ଟବଲ ରାମା ଉପରେ ରାଗିଥିଲା କି ନା ?

ଜବାବ—ଆଜ୍ଞା ହଜୁର, ବରେବର ରାମା ଜମାଦାର ଅଇଣ୍ଠା ବାସନ ନ ମାଜିବାରୁ ତା ଉପରେ ଆଜକୁ ଆଠଦିନ ତଳେ ବଡ଼ ରାଗିଥିଲେ । ତାକୁ ଜେଲ ଦେବାକୁ କହିଥିଲେ । ରାମାକୁ ବାନ୍ଧିପକାଇ ଢେର ମାରିଲେ । ରାମା 'ବାପରେ ମାରେ' ପାଟି କରୁଥାଏ ।

ସରକାର ତରଫ କୋର୍ଟ ଇନ୍‌ସ୍ପେକ୍ଟର ସଓ୍ୱାଲ—

ରାମାକୁ କନଷ୍ଟବଲ ମାରିବା ତୁ ଦେଖିଛୁ ?

ଜବାବ—ଆଜ୍ଞା ନା, ମୁଁ ଶୁଣିଛି ।

ଦୁସରା ନମ୍ବର ସାକ୍ଷୀ ହଗ୍ରୁ ସାମଲ ପ୍ରଥମ ସାକ୍ଷୀ ଯାହା କହିଥିଲା, ଠିକ୍ ସେମିତି ସମସ୍ତ କଥା ବୟାନ କଲା ।

ନଥି ପ୍ରସ୍ତୁତ ହେଲା ଉତ୍ତାରେ ଆସାମୀ ତରଫ ଉକିଲ ଅବଦୁଲ ଶୋଭାନ ଖାଁ ହାକିମଙ୍କୁ ଗୃହିଁ ଯେଉଁ ବକ୍ତୃତା କରିଥିଲେ, ସେଥିର ସାରମର୍ମ—

"ଉକିଲର ବକ୍ତୃତା—

"ହଜୁର ଏ ମାମଲା ତମାମ ଝୁଠା ଓ ଫରେବ । ମୁଦେଇ କଣାରାମ ସିଂ ଜାତିରେ ଭଣ୍ଡାରି; ଆସାମୀ ମଧ୍ୟ ଭଣ୍ଡାରି, ଆସାମୀ ତାହାର ସକୁଡ଼ି ନ ମାଜିବାରୁ ସେ (ମୁଦେଇ) ବଡ଼ ରାଗିଥିଲେ, ଆସାମୀକୁ ଜବଦ କରିବା ଓ ହଇରାଣ କରିବା ମତଲବରେ ଏହି ମାମଲା ରଞ୍ଜନା କରିଅଛି ।

୨ୟ । ନଥିରୁ ସଫା ପ୍ରକାଶ ମୁଦାଲା ହାଟରୁ ଲୁଣ କଣି ଖାଏ; ସୁତରାଂ ତାହାର ଲୁଣ ମାରିବା ଦରକାର ନ ଥିଲା ।

୩ୟ । ଗ୍ରେପ୍ତାର ସମୟରେ ଆସାମୀ ବେମାର ହାଲତରେ ବିଛଣାରେ ଶୋଇଥିଲା । ବେମାର ଲୋକ କେବେ ଲୁଣ ମାରି ନ ପାରେ ।

୪ର୍ଥ । ସରକାରୀ ଦଫାଦାର କନଷ୍ଟବଲ ସଙ୍ଗରେ ଥିଲା, ଆସାମୀ ଲୁଣ ମାରିଥିଲେ ସେ ଦେଖି ଥାଆନ୍ତା ।

୫ମ । ଆସାମୀ ଯେଉଁ ବରାମଦ ମାଟି ଦାଖଲ କରି ଅଛି, ତାହା ମୁହାଣ ନାଳ ମୁହଁରୁ ଆଣି ଥିବା ସତ୍ୟ ଅଟେ । ସେ ମାଟି ଯେ ଲୁଣିଆ ଲାଗୁଅଛି ସେଥିର କାରଣ ଏହି କି ଯେ ମଫସଲ ଡିଲର୍‌ମାନେ ଗ୍ରାମରେ ଉପୁରେ ଦାଣ୍ଡିକୁ ବାହାରନ୍ତି ନାହିଁ । ମାଟି ବାହାର ନାଳ ଦୁଆରର—ଇତ୍ୟାଦି, ଇତ୍ୟାଦି । ସେହି ପାଣି ପଡ଼ି ପଡ଼ି ମାଟି ଲୁଣିଆ ହୋଇ ଯାଇଅଛି । ଏ କଥା ସତ୍ୟ କି ମିଥ୍ୟା ମୁଦେଇ କଣାରାମ ଆଉଥରେ ମାଟି ଗୃଖି ଓ ସୁଙ୍ଘି ସେପରି ଉଷମୁଳିଆ ଗନ୍ଧ ଅଛି କି ନାହିଁ, ସଫା ଜଣାଯିବ ।

ଉକିଲ ବକ୍ତୃତା ଶୁଣି ହାକିମ ଠୋ ଠୋ କରି ହସିଲେ । ପେସ୍କାରେ ହାକିମ ଆଡ଼କୁ ନଥି ଉହାଡ଼ କରି ଖୁବ ଗୋଟିଏ ହସିଲେ, ଆଉ ସମସ୍ତେ ମଧ୍ୟ ମୁହଁରେ ଲୁଗା ଦେଇ ହସିଲେ । ତହିଁ ଉତ୍ତରେ ଉକିଲ ଛିଡ଼ା ହୋଇ ହାକିମଙ୍କୁ ଅନାଇ କହିଲେ, "ହଜୁର ମା ବାପ ଖାମିନ୍ଦ; ଆସାମୀ ନିହାତି ଗରିବ ନିର୍ଦ୍ଦୋଷ, ତାହାକୁ ଖଲାସ ଦିଆଯାଉ ।"

ହାକିମ ଦୁଇ ଫର୍ଦ୍ଦ ଫୁଲସ୍କେପ୍ କାଗଜରେ ଏକ ଲମ୍ବା ରାୟ ଲେଖିଲେ—ଉକିଲ ଯେଉଁ ସମସ୍ତ କାରଣ ଦର୍ଶାଇ ଥିଲେ, ରାୟରେ ସେ ସମସ୍ତ କାରଣ ଉଲ୍ଲେଖ କରି ଆସାମୀକୁ ଖଲାସ ଦେଲେ, ଅଧିକନ୍ତୁ ଲେଖିଲେ ମୁଦେଇ କଣାରାମ ସିଂ ପୋଲିସ କର୍ମର ଅଯୋଗ୍ୟ ।

ରାୟର ଏକ ପ୍ରସ୍ତ ନକଲ ଶ୍ରୀଯୁକ୍ତ ମାଜିଷ୍ଟ୍ରର ସାହେବଙ୍କ ହଜୁରରେ ପେଶ ହେଲା । ଏ ଯାତ୍ରା କଣାରାମଙ୍କର ନୌକରି ରକ୍ଷା ପାଇବା କଠିନ ଥିଲା; ମାତ୍ର ପେସ୍କାର ହାକିମଙ୍କୁ ସମଜାଇ ଦେଲେ, "ହଜୁର ପୋଲିସ ନୂଆ, ଗ୍ରାମ ଲୋକ ଏକଯୋଟ, ସମସ୍ତେ ବଦମାଏସ, ସର୍ବଦା ଲୁଣ ଚୋରି କରି ସରକାରଙ୍କ ଲୋକସାନ କରୁଅଛନ୍ତି, ପୋଲିସକୁ ଡିସ୍‌ମିସ୍ କଲେ ସରକାରୀ ଲୁଣ ବରବାଦ ହୋଇଯିବ । ଏହି ପୋଲିସ କନଷ୍ଟବଲ ଖୁବ୍ ହୁସିଆର, ଚାଲାକ ଗ୍ରାମ ଲୋକମାନଙ୍କ ଫାନ୍ଦରେ ଏ ମାମଲା ସାବୁତ୍ ହେଲା ନାହିଁ ଇତ୍ୟାଦି, ହାକିମ କିଛି ଖୋସନାମାଇ କରି କଣୁକୁ ଛାଡ଼ି ଦେଲେ ।

ଆମ୍ଭମାନଙ୍କ ଜମାଦାରେ ଭାରି ଫୂର୍ତ୍ତିରେ ଆସାମୀକୁ ଧରି ମଫସଲରୁ ଆସିଥିଲେ । ମାମଲାର ହାଲ ଦେଖି ତାହାଙ୍କ ଅଣ୍ଟା ବସିଗଲାଣି । ସାମାନ୍ୟ ଲୋକମାନଙ୍କର ଅବସ୍ଥା ଏହିପରି । ଅଳ୍ପ ଆନନ୍ଦରେ ଫୁଲି ଉଠନ୍ତି, ସେହିପରି ଅଳ୍ପ ଟିକିଏ ଧକ୍କା ଖାଇଲେ ବସି ପଡ଼ନ୍ତି । କଟେର ବାହୁଡ଼ା ସିଙ୍ଗେ ପେସ୍କାରଙ୍କ ବସାଘର କୋଣରେ କାନ୍ଥା ମେଲାଇ ଦେଇ ଲଠ କରି ଶୋଇ ପଡ଼ିଲେ । କାହିଲ ବାହାନାରେ ସେ ରାତିରେ କିଛି ମୁହଁରେ ଦେଲେ ନାହିଁ । ରାତିରେ ଜମାଦାରଙ୍କୁ କିପରି ନିଦ ହୋଇଥିଲା, ଏଥିର ଠିକ ସମ୍ବାଦ ଆମ୍ଭେମାନେ ପାଇ ନାହୁଁ । ମାତ୍ର ମୁହଁ ଅନ୍ଧାର ଥାଉଣୁ ଦଗବାରକୁ ଧରି ଫାଣ୍ଡିକୁ ରବାନା ହୋଇଗଲେ । ଆଉ ଆଉ ଦିନେ ଦିନ ପହରେ ଥାଉଁ ଫାଣ୍ଡିରେ ପହଞ୍ଚନ୍ତି; ମାତ୍ର ଆଜି ପହଞ୍ଚିବାକୁ ରାତି ପହରେ ଗଡ଼ି ଗଲା । ରୋଷେଇର କିଛି ବନ୍ଦୋବସ୍ତ ହେଲା ନାହିଁ, ଦଗବାର ଗାଁରୁ କିଛି ଜଳଖିଆ ଅଣାଇ ଦେଲା ।

ସକାଳବେଳେ ଜମାଦାରେ ଫାଣ୍ଡି ପିଣ୍ଡାରେ ବସି ମନ ମଧ୍ୟରେ ଭାବୁଛନ୍ତି, ଗାଁ ଲୋକେ ଏଣିକି ତାହାଙ୍କୁ ହେଟାଦର କରିବେ, କେହି ଅବା ଟାପରା କରିବ । କାହାରି ମୁହଁକୁ ଭଲ କରି ଅନାଉ ନାହାନ୍ତି । ଗାଁର ମୁଖ୍ୟା ମୁଖ୍ୟା ଲୋକମାନେ ଦ୍ୱାରରେ ହାଜର ହୋଇ ଗୋଟାଏ ଗୋଟାଏ ଦଣ୍ଡବତ୍ କଲେ । ଜମାଦାରଙ୍କ ଆଗମନ ସମ୍ବାଦ ସମସ୍ତଙ୍କୁ ଜଣା, ମାତ୍ର ଜଣା ନ ଥିବାର ଏବଂ ରାତିରେ ଉପାସ ଥିବାର କହି ଭାରି ଦୁଃଖ ପ୍ରକାଶ କଲେ ଏବଂ ଚଞ୍ଚଳ ରୋଷେଇର ତଦ୍ବିର କରି ଦେଲେ ।

ଦିନ ପାଣି ପରି ବହିଯାଉଛି । ଜମାଦାରେ ଆଗ ପରି ବେଶି ଗାଁ ଗସ୍ତକୁ ବାହାରୁ ନାହାନ୍ତି । ଆଗପରି ଆପଣା ଆପଣା ଦୁଃଖ ଧନ୍ଦା ସାରି ପାଞ୍ଚ ସାତ ଜଣ ସନ୍ଧ୍ୟାବେଳେ ଜମାଦାର ପାଖରେ ବସନ୍ତି । ଏଣୁ ତେଣୁ ଢେର କଥାବାର୍ତ୍ତା ହୁଏ । ଓଟେ ପହୁଞ୍ଚିଗଲେ ଘୁଦମାଦ ବୋଲ ବୋଲ ହୁଏ, ମାତ୍ର ବର୍ତ୍ତମାନ ଦୁଇ ପକ୍ଷରେ ଭାବନା, ଦୁଇ ପକ୍ଷରେ ଜଗାଜଗି । ଜମାଦାରେ ଅନେକ ଉପାୟ ଭାବିଲେଣି, କିଛି କଥା କିନାରା ଲଗାଇ ପାରୁ ନାହାନ୍ତି । ଗ୍ରାମ ଲୋକେ ନିରୋଳାରେ ବସି ବିଚାର କଲେ—ରାମା ତ ଖଲାସ ହୋଇ ଆସିଲା ହଁ; ମାତ୍ର ଏଣିକି କଣ କରାଯିବ ? ସରକାରୀ ପୋଲିଶ ମାଡ଼ ବସିଲାଣି, ଆଉ କି ରକ୍ଷା ଅଛି । ରାମା ମାମଲାରେ କିଣି କରି ମଧ୍ୟ ହାରି । ହିସାବରେ ଦେଖାଗଲା, ରାମା ମାମଲାରେ ଖରଚ ସବୁ ସବୁ ରକମରେ ସତେଇଶ ଟଙ୍କା ଚଉଦ ଅଣା ଦୁଇପାହି । ଏଣିକି ଆଉ ମାମଲା ଝିଙ୍କିଲେ ଟଙ୍କା କାହୁଁ ଆସିବ ? ଏଥର ଭେଦା ଟଙ୍କାଟା ଯେପରି ଅସୁଲ ହେଲା, ତ ହା ମନ ଜାଣେ । ଟଙ୍କା ବା କାହା ହାତରେ ଅଛି । ଦିନେ ଅଧରାତି ଯାଏ ଗୋପାଳ ଘଡ଼େଇ ପିଣ୍ଡାରେ ବସି ଖୁବ୍ ପରାମର୍ଶ କଲେ । ଶେଷକୁ ଅବଧାନ ଯେଉଁ ଉପାୟଟା ବାହାର କଲେ, ସମସ୍ତଙ୍କ ମନ ମାନିଗଲା । କାଲି ଖୋଦ ଅବଧାନେ ଜମାଦାରଙ୍କ ପାଖରେ କଥା ପକାଇବେ, ସ୍ଥିର ହେଲା ।

ସଞ୍ଜବତି ଲାଗି ଗଲାଣି । ଜମାଦାରେ ଭାଗବତ ଘରେ ବସିଥାନ୍ତି । ହିଗବାରଟା ମଧ୍ୟ ନାହିଁ, କାହାକୁ ଡାକବାକୁ ଯାଇଛି । ଓଝା ଅବଧାନେ ଧୀର ଧୀର ହୋଇ ପହୁଞ୍ଚିଲେ । ଜମାଦାରଙ୍କୁ ଦଣ୍ଡବତଟାଏ କରି ପାଖରେ ବସିଲେ । ଖୁବ୍ ନିରୋଳା, କେହି ପାଖରେ ନାହିଁ । ଦୁଇ ଘଡ଼ିଟା ଏଣୁ ତେଣୁ କଥା ଉତ୍ତାରେ ଅବଧାନେ ଘରି ଆଡ଼କୁ ଅନାଇ ଦୁଇ ଚାରି ଥର ଗଲା ଖଙ୍କାରି ଦେଇ ଥରେ ହାଇ ମାରି ଏକାବେଳକେ କଥାଟା ପକାଇଲେ । ସେ କଥାର ସାରମର୍ମ ଏହି—

"ଜମାଦାରଙ୍କ ବସା ଖର୍ଚ୍ଚ ଗାଁ ଲୋକେ ଚଳାଇବେ । ଏ ସିବାଏ ମାସକୁ ପାନ ଖର୍ଚ୍ଚ ବୋଲି ଯୋଡ଼ାଏ ଟଙ୍କା ଦେବେ ଏବଂ ଫି ମାସ ଏକ ନମ୍ବର ଗ୍ରେପ୍ତ ଆସାମୀ ଧରିଦେବେ ।"

ଜମାଦାରେ ତ କୋହିନୂରଟାଏ ପାଇଗଲେ, ଏକାବେଳକେ ରାଜା । ସମସ୍ତ ଭାବନାରୁ ମୁକ୍ତ ହେଲେ ।

ତହିଁ ଆରଦିନ ଗୃହଖଣ୍ଡ ଗ୍ରାମର ମୁଖ୍ୟା ମୁଖ୍ୟା ଲୋକ ସଭା କରି ବସିଲେ, କଥା ଛିଡ଼ିଲା । ଜମାଦାରଙ୍କ ଖର୍ଚ୍ଚ ବରୁଣିରେ ଗୃହଖଣ୍ଡ ଗ୍ରାମରୁ ଉଠିବ । ଏ ସିବା ଜଣେ ପାଣ ହାତରେ କିଛି ଲୁଣ ଦେଇ ଚୋର ବୋଲି ଧରାଇ ଦେବେ; (ଅବଶ୍ୟ ପାଣର ରାଜିକରାରରେ କଥା ହେବ ) । ସେ ପାଣ ଯେତେଦିନ ବନ୍ଦରେ ରହିବ, ତାହାର ପିଲା ଝିଲା ଖର୍ଚ୍ଚ ସବୁ—ସବୁ—କଥା ଗ୍ରାମ ଲୋକେ ତୁଲାଇବେ ।

ବେଶ କାମ ଚଳିଲା । ଜମାଦାରେ ନାମ ମାତ୍ର ଗାଁ ଗସ୍ତକୁ ବାହାରନ୍ତି, ଚଉପଟ ଖେଳନ୍ତି, ଗାଁ ବୁଲନ୍ତି ଓ ଅବଧାନଠାରୁ ଛାନ୍ଦ ଶୁଣି ସୁନ୍ଦର ଭୋଜନଟାଏ ପକାନ୍ତି । ଦୁଇ ଚାରି ନମ୍ବର ମାମଲା ମଧ୍ୟ ଚଲାଣ ହେଲେଣି । ମାମଲା ସାଫ ସାବିତ- ଆସାମୀମାନେ ସଜା ପାଇ ଗଲେଣି ।

"ଅଧର୍ମବିତ୍ତ ବଢ଼େ ବହୁତ,
ଯିବାବେଳେ ଯାଏ ମୂଳ ସହିତ ।"

ଜମାଦାରେ ଅଚ୍ଛା ଦୁଇଟଙ୍କା ରୋଜଗାର କରିଥିଲେ । "ରାଜା ପର୍ଯ୍ୟନ୍ତ କର୍ଣ୍ଣାଭ୍ୟାଂ ।" ଅନ୍ୟାୟଟା କେତେଦିନ ଛପିବ । କଥାଟା ସରକାର କାନରେ

ବାଜିଲା । ଏ ବରଷ ଲାଟସାହେବଙ୍କ ଦରବାରରୁ ଯେଉଁ ନମକ୍ ସାଲତମାମି ରିପୋର୍ଟ ବାହାରିଲା, ସେଥିରେ ଏହି ଠକାଠକ ମାମଲା ପ୍ରସଙ୍ଗ ଦରଜ ଥିବାର ଦେଖାଗଲା । ଜିଲ୍ଲା ହାକମମାନେ ଦେଖି କାବା । ଖୁବ ହୁସିଆର ହୋଇଗଲେ । ଜଗାଜଗି କଲେ; ମାତ୍ର ଫଳ ନାହିଁ ।

ଜିଲା ହାକମମାନେ ପୋଲିଶ କାରସାଦ ଧରିବା-ପାଇଁ ଖୁବ ଚେଷ୍ଟାକଲେ; ମାତ୍ର କିଛୁ କରିପାରିଲେ ନାହିଁ । କିପରି ବା ପାରିବେ, ମଫସଲ ଚୌକିଆ ଠାରୁ ସଦର ଜ୍ରେମ୍ରାଦାର ପର୍ଯ୍ୟନ୍ତ ଚୋର । "ଚୋର ମାଉସୀ ପୁଅଭାଇ, ଯାହା ମିଳିଲା ବାଣ୍ଟିକୁଣ୍ଟି ଖାଇ ।" କୌଣସି ଗୋଳମାଳ ନାହିଁ, କାମ ବେଶ ଚଳୁଛି । ଲୁଣ ଚୋର ପାଣଗୁଡ଼ାକ ବେଶ କବୁଲ ଜବାବ ଦେଇ ଜେଲ-ଖାନାକୁ ଯାଉଅଛନ୍ତି । ପୋଲିଶ କନେଷ୍ଟବଲ ଗାଁରେ ପହରା—ଆଉ ଜାତି ଲୋକ କି ଲୁଣ ଚୋରି କରିବେ ?

ଆଜି ସଦର କଚେରିରେ ଖବର ଗୋଟାଏ ଚହଲ ପଡ଼ିଛି । ଅମଲା ଫଇଲା ମକ୍ତାର୍‌କେଲି ସମସ୍ତଙ୍କ ମୁହଁରେ ସେହି କଥା । ବରଗଛ ମୂଳ ମୁକ୍ତାରଖାନାରେ ଆନ୍ଦୋଳନଟା କିଛି ବେଶି । କଥା କଣ ? ଜଣାଗଲା ନମକ୍ ମାହାଲର ପୋଲିଶ କର୍ମଚାରୀମାନଙ୍କ ଠକପଣ ଧରିବା ସକାଶ ସଦରରୁ ଗୁଇନ୍ଦା ପୋଲିଶ ବାହାରି ହୋଇ ଆସିଥିଲେ । କେତେକ ମାସ ହେଲା ବେଶ ବଦଳାଇ ମଫସଲରେ ବୁଲୁଥିଲେ । ପୋଲିଶର କେତେଜଣ କନଷ୍ଟବଲର ଠକପଣିଆ ପ୍ରମାଣ କରାଇ ସାକ୍ଷୀ ସାବୁତ ସହିତ ଆସାମୀ ଚଲାଣ ଦେଇ ଅଛନ୍ତି । ଆସାମୀମାନଙ୍କ ମଧ୍ୟରେ ଏ କିଏ ? ଆମ୍ଭ କଣାବାମ ସିଙ୍ଗେ ! ମାମଲା ଖୁବ୍ ଗୋଳଘାଣ୍ଟ ଲାଗିଲା । ଆଉ ଆଉ ଆସାମୀମାନଙ୍କ କଥା, ମାମଲାର ଆଉ ଅଉ କଥା-ଗୁଡ଼ାକ ଲେଖିଲେ କଣ ହେବ । ଶେଷରେ ମେଜେଷ୍ଟର ସାହେବଙ୍କ ହୁକୁମ ଶୁଣା ଗଲା । 'କନେଷ୍ଟବଲ କଣାବାମ ସିଙ୍ଗର କଠିନ ପରିଶ୍ରମ ସହିତ ଦୁଇ ମାସ ମିଆଦ ଅଉ କୋଡ଼ିଏଟଙ୍କା ଜରିମାନା । ଜରିମାନା ନ ଦେଲେ ଅଧିକ ମିଆଦ ତିନିମାସ ।'

ମେଜେଷ୍ଟର ସାହେବଙ୍କ ହୁକୁମୀ ତାରିଖଠାରୁ ଆଜକୁ ଊଣା ପୂରା ଛ ମାସ ବିତିଗଲାଣି । ଶୁଣାଶୁଣିରେ କଣା ଭଣ୍ଡାରି ଆଜକୁ ଚାରିମାସ ହେଲା ଆସି ଗାଁଆରେ ଅଛି । ଘରୁ ବାହାରେ ନାହିଁ, ଗାଁ ଲୋକେ କେହି ଦେଖନ୍ତିନାହିଁ । କଣା ଅାଚ୍ଛା ଦୁଇପଇସା ଗୁଡ଼ିଏ ଆଣିଥିଲା । ଭଣ୍ଡାରି ବାପୁଡ଼ା ଶକଡ଼ା ଟଙ୍କା ମୁଣ୍ଡ ଛୁଇଁଲେ ତାକୁ ଡେର । ହେଲେ ବସି ଖାଇଲେ ସମୁଦ୍ର ବାଲି ନଅଣ୍ଟ । ପଇସାର ଖେଞ୍ଚଖାଞ୍ଚ ହୋଇ ପଡ଼ିଲାଣି, କେତେଦିନ ବା କୋଣରେ ପଶି ରହିବ ? ଧୀରେ ଧୀରେ ଦାଣ୍ଡକୁ ବାହାରିଲା । ଏଣିକ ଗାଁ ନ ଖଟିଲେ ଅଚଳ । ପେଷ୍କାର ଖପା ହୋଇ ବସାରୁ କାଢ଼ି ଦେଇଅଛନ୍ତି । ହାକମ ହୁକୁମା ଲୋକ,ଚୋରଟାକୁ କିପରି ପାଖରେ ପୂରାଇବେ ? ବିପଦ ଅନ୍ଧାର ଆସିବା ବେଳେ ଚାରିଆଡ଼ୁ ମାଡ଼ ଆସେ । ଗାଁ ଖଟିବା ଥାଉ ପୁରୋହିତେ ପୁରାଣ ଫିଟାଇ ଗାଁ ଲୋକଙ୍କୁ ଶୁଣାଇ ଦେଇଛନ୍ତି—"କଣା ପାଣ ନାହିଁ ହାଡ଼ ନାହିଁ, ଜେଲଖାନାରେ ଛତିଶ ପାଟକ ଭାତ ଖାଇ ଆସିଅଛି, ସେ ପତିତ । ଆଉ ତାକୁ ଯେ ଛୁଇଁବ, ନିଆଁ ପାଣି ଦେବ, ସେ ମଧ୍ୟ ପତିତ ।" କଣା ତ ସାତ ପାଞ୍ଚିରୁ ଗଲାଣି । ଦୁଃଖ କହିଲେ ନ ସରେ । ଦୁଇ ମାସ କାଳ କଣା ପୁରୋହିତ ଦୁଆରେ ଧାରଣା ଦେଇ ଶୋଇଲା । ବଂଶପାକ ପୁରୋହିତଙ୍କ ଗୋଡ଼ତଳେ ମୁଣ୍ଡିଆ ମାରି ମାରି ଚୁନ୍ଦ ଉଡ଼ିଗଲାଣି । ପୁରୋହିତ ଦୟାଳୁ ଲୋକ । ଦୁଇମାସ

ଉତ୍ତରେ ଗାଁ ବରଗଛ ମୂଳରେ ସଭା ବସିଲା । ପୁରୋହିତ ପୁରାଣ ଫିଟାଇ ବ୍ୟବସ୍ଥା ଦେଲେ—"ପଞ୍ଚଗବ୍ୟ, ପଞ୍ଚଦାନ—ପୁରୋହିତ ବଂଶଯାକ ସକାଶେ ନୂତନ ବସ୍ତ୍ର ପଞ୍ଚଶମୂର୍ତ୍ତି ବ୍ରାହ୍ମଣ ଭୋଜନ ଆଉ ଦକ୍ଷିଣା, ଜାତିମାନଙ୍କୁ ତିନବେଳ ଭାତ ।" ପ୍ରାୟଶ୍ଚିତ୍ତ ହେବା ଦିନ ପୁରୋହିତ ସଭାରେ ସମସ୍ତଙ୍କୁ ଶୁଣାଇ ଶୁଣାଇ କହିଲେ, "ବ୍ରହ୍ମ-ଶାପରେ ଯଦୁବଂଶ ନାଶ—ସ୍ୱୟଂ ବିଷ୍ଣୁ ମେଣ୍ଟେଇ ନ ପାରିନାହାନ୍ତି ।"

କଣ୍ଟା ଯାହା କହୁଛି ବଳବାଡ଼ି ଦୁଇମାଣ ଓ ଘରେ କଂସା ବେଲ ଦୁଇ ଖଣ୍ଡ କରିଥିଲା, ସରକାରୀ ଜରିମାନା ଟଙ୍କା ଅସୁଲ ସକାଶ ପୋଲିସ ଜମାଦାର ସବୁ ମାଲ ନିଲାମ କରି ନେଇ ଗଲା । ସବୁ ଯାଇଛି ଟାଁ ଖଟି ଖାଏ ।

କଣ୍ଟା ସଙ୍ଗରେ କାହାର ବୋଲ ବୋଲ ହେଲେ, ସେ ଠାପର କରି କହେ:—'ପୁନର୍ମୂଷିକୋଭବ ।"

# ପରିଶିଷ୍ଟ

( ବିଭିନ୍ନ ପତ୍ରପତ୍ରିକାରୁ ସଂଗୃହୀତ )

( କାଳାନୁକ୍ରମେ ସଜ୍ଜିତ )

---

## ଯୋଗଶାସ୍ତ୍ର

( ପାତଞ୍ଜଳ ଦର୍ଶନ )

ଅତି ପ୍ରାଚୀନ କାଳରୁ ଭାରତବର୍ଷରେ 'ଯୋଗ' ଏହି ଶବ୍ଦ ପ୍ରଚଳିତ ଅଛି । ହିନ୍ଦୁ ମାତ୍ରକେ ଯୋଗର ମାହାତ୍ମ୍ୟ ବିଶ୍ୱାସ କରନ୍ତି । ଯୋଗବଳରେ ପୂର୍ବତନ ମହର୍ଷିମାନେ ଯେ ସହସ୍ର ସହସ୍ର ବର୍ଷ ଜୀବିତ, ଗଗନଗାମୀ ପ୍ରାଣୀମାନଙ୍କ ସହ ମିଳିତ ଏବଂ ଅନ୍ୟ ଲୋକର ହୃଦ୍‌ଗତ ଭାବ ଜାଣିବାକୁ ସକ୍ଷମ ହେଉଥିଲେ ଏଥିର ପ୍ରଚୁରପ୍ରମାଣ ବିଦ୍ୟମାନ ରହିଅଛି । ଆଜିକାଲି କୌଣସି କୌଣସି ଯୋଗୀ ବିନା ଅନ୍ନ ଜଳରେ ମାସେଯାଏ ମାଟିତଳେ ରହିବାର ଶୁଣାଯାଏ । ଲାହୋର ସହରରେ ଏପରି ଜଣେ ଫକୀରକୁ ଅନେକ ବଡ଼ ବଡ଼ ସାହେବମାନେ ପ୍ରତ୍ୟକ୍ଷ କରିଥିବାର ଆମ୍ଭେମାନେ ସମ୍ବାଦ ପତ୍ରିକାରେ ପାଠ କରିଅଛୁଁ । ବଙ୍ଗଦେଶର ପୂର୍ବପ୍ରାନ୍ତସ୍ଥିତ ସୁନ୍ଦରବନ ଜମି ଆବାଦ ସମୟରେ ମାଟି ମଧ୍ୟରୁ ଜଣେ ଯୋଗୀ ବାହାରିଥିଲେ; ତାହାଙ୍କୁ କଲିକତା ଉପକଣ୍ଠ ଖିଦିରପୁର ନାମକ ସ୍ଥାନକୁ ଅଣାଯାଇଥିଲା । ସେ ସ୍ଥଳରେ ଉକ୍ତ ମହାତ୍ମା ତିନିଦିନ ମାତ୍ର ଜୀବିତ ଥିଲେ । ଅନେକ ଯତ୍ନରେ ତାହାଙ୍କର ଯୋଗ ଭଗ୍ନ କରିଗଲା ଉତ୍ତାରେ ପ୍ରାଣତ୍ୟାଗ କଲେ । ଆମ୍ଭେମାନେ ଗୋଟିଏ ଯୋଗୀଙ୍କୁ ଦେଖିଅଛୁଁ ସେ ଏକମାସ କାଳ ଅତି ସଂକୀର୍ଣ୍ଣ ଗୁମ୍ଫା ମଧ୍ୟରେ ବିନା ଅନ୍ନଜଳରେ ବାସ କରୁଥିଲେ । ସତୁରି ବର୍ଷ ସମୟରେ ସେ ଯୁବକ ସମାନ ପ୍ରଫୁଲ୍ଲମାନ ହେଉଥିଲେ । ମୟୂରଭଞ୍ଜର ସୀମାନ୍ତ ସ୍ଥାନ କାନ୍ଥି ମଠରେ ବୋଧକରୁଁ ଅଦ୍ୟାବଧି ତାହାଙ୍କର ମଠ ବିଦ୍ୟମାନ ଅଛି ।

ଯୋଗୀମାନେ ଅନ୍ୟ ଲୋକର ମନର ଭାବ ଜାଣିବାକୁ ସକ୍ଷମ ହୁଅନ୍ତି, ଏହା ଅସମ୍ଭବ ବୋଲି ଆମ୍ଭମାନଙ୍କୁ ଜଣାଯାଉ ନାହିଁ । ସଚରାଚର ଆମ୍ଭେମାନେ ଅନ୍ୟ ଲୋକର ନେତ୍ର ଦେଖି ସେହି ଲୋକର ମନର ଭାବ ଜାଣିବାକୁ ସକ୍ଷମ ହେଉଁ । ଜଣେ ହିନ୍ଦୁସ୍ଥାନୀ ପଣ୍ଡିତ ବୋଲି ଯାଇ ଅଛନ୍ତି—

"ଯୋଗୀକା ଭୋଗୀକା ରୋଗୀକା ନିଶାନ୍
ଆଁଖସେ ଜାନ ଆଉ ଆଁଖସେ ପହ୍ଚାନ ।"

ସେହିପରି ଜଣେ ଇଂରେଜ ପଣ୍ଡିତ ମଧ୍ୟ କହିଅଛନ୍ତି । "The face is an index of the mind". ଅପରିଚିତ ଲୋକର ନୟନ ଭଙ୍ଗି ଦେଖି ସେହି ଲୋକର

ମନର ଭାବ ଅଳ୍ପାଧିକ ପରିମାଣରେ ସମସ୍ତେ ବୁଝିବାକୁ ସକ୍ଷମ ହୁଅନ୍ତି । ଏମନ୍ତ କି ଗୋଟିଏ ଶିଶୁକୁ ଆଖି ତରାଟି ଚାହିଁ, ସେ କାନ୍ଦି ପକାଇବ । ଏମନ୍ତ ଅବସ୍ଥାରେ ମନୋବିଜ୍ଞାନବିତ୍ ଯୋଗୀମାନେ ହୃଦ୍‌ଗତ ଭାବ ଯେ ବିଶେଷ ରୂପେ ଜାଣିବାକୁ ସକ୍ଷମ ହେବେ, ଏଥିରେ ବିଚିତ୍ର କଣ ଅଛି ? ଆମ୍ଭେମାନେ ଏ ସମ୍ବନ୍ଧରେ ଦୁଇଗୋଟି ପୌରାଣିକ ଉପାଖ୍ୟାନ ଏଠାରେ ଉଲ୍ଲେଖ କରୁଅଛୁଁ ।

"ଯୋଗିନୀ ସୁଲଭା ଶୁଣିଲେ ରାଜର୍ଷି ଜନକ ଜଣେ ମୁକ୍ତ ପୁରୁଷ ଓ ପରମ ଯୋଗୀ । ଏହା ପ୍ରତ୍ୟକ୍ଷ କରିବା ନିମନ୍ତେ ସେ ସ୍ୱୟଂ ମିଥିଳାନଗରୀରେ ଉପସ୍ଥିତ ହେଲେ । ତହିଁ ଉତ୍ତାରେ ଆପଣାର ବୁଦ୍ଧି ସତ୍ତ୍ୱ ଯୋଗେ ରାଜାଙ୍କ ଅନ୍ତଃକରଣରେ ପ୍ରବେଶ କଲେ । ଅର୍ଥାତ୍ ଆପଣାର ଦୁଇ ନେତ୍ର ରାଜାଙ୍କ ଦୁଇ ନେତ୍ର ଅଭିମୁଖରେ ଠିକ୍ ସମ ସମ୍ପାତରେ ସ୍ଥାପନ କରି ଉଭୟ ନେତ୍ର ରଶ୍ମି ସଂଯୋଗ ଦ୍ୱାରା ତାହାଙ୍କ ଆତ୍ମାକୁ ଯୋଗବଳରେ ବନ୍ଧନ କରିବାକୁ ଲାଗିଲେ । ରାଜର୍ଷି ଜନକ ମଧ୍ୟ ଏହା ଦେଖି ସୁଲଭାଙ୍କ ଅଭିପ୍ରାୟ ଜାଣିବାକୁ ଉତ୍ସୁକ ହେଲେ । ଆଉ ଗୋଟିଏ ଘଟଣା ଏହିକି—ପୂର୍ବକାଳରେ ଜଣେ ଋଷି ଶିଷ୍ୟ ପ୍ରତି ଅଗ୍ନିସେବାର ଭାର ଅର୍ପଣ କରି ପ୍ରବାସ ଯାତ୍ରା କରିଥିଲେ । କିଛିକାଳ ଉତ୍ତାରେ ଅଗ୍ନିଦେବ ସନ୍ତୁଷ୍ଟହୋଇ ଶିଷ୍ୟକୁ ବ୍ରହ୍ମଜ୍ଞାନ ଉପଦେଶ ଦେଲେ । ତହିଁ ଉତ୍ତାରେ ଗୁରୁଦେବ ଗୃହାଗତ ହୋଇ ଦେଖିଲେ ଶିଷ୍ୟର ମୁଖଜ୍ୟୋତି ଓ ନେତ୍ରକାନ୍ତିରେ ଆଉ ଅଜ୍ଞାନ ଭାବ ନାହିଁ । ଋଷି ବିସ୍ମୟଯୁକ୍ତ ହୋଇ ଶିଷ୍ୟକୁ ପଚାରିଲେ ।

"କଥଂ ସୌମ୍ୟଂ ବ୍ରହ୍ମବିଦୈବ
ଭାସତେ ତେ ମୁଖଂ ।"

ମନୁଷ୍ୟ ଅନ୍ତଃକରଣର ଭାବ ଓ ଇଚ୍ଛାଶକ୍ତି ସକଳ ନେତ୍ରମାର୍ଗ ଦ୍ୱାରା ବହିର୍ଗତ ହୁଏ । ସେଥି ସକାଶେ ବିଜ୍ଞଲୋକମାନେ ନେତ୍ର ମାତ୍ର ଦେଖି ହୃଦ୍‌ଗତ ଭାବ ସକଳ ଜାଣିବାକୁ ସକ୍ଷମ ହୁଅନ୍ତି ।

ଯେଉଁ ବିଦ୍ୟାଦ୍ୱାରା ନେତ୍ର ନିରୀକ୍ଷଣ କରି ମନୁଷ୍ୟ ମନର ଭାବ ଜଣାଯାଏ ତାହାର ନାମ ଗୃଧ୍ରୀ-ବିଦ୍ୟା । ଯୋଗୀମାନେ ଉକ୍ତ କ୍ଷମତା ଲାଭ ନିମନ୍ତେ ଦୃଷ୍ଟି ବିଜ୍ଞାନ; ଅର୍ଥାତ୍ ଗୃଧ୍ରସୀ ବିଦ୍ୟା ଶିକ୍ଷା କରି ଥାଆନ୍ତି । ଯୋଗ-ଶାସ୍ତ୍ରରେ ତ୍ରାଟକ ନାମକ ଯେଉଁ ଯୋଗର ଉଲ୍ଲେଖ ଅଛି, ତାହା ଏହି ଦୃଷ୍ଟି ବିଜ୍ଞାନ ବା ଗୃଧ୍ରୀ ବିଦ୍ୟାର ଗୋଟିଏ ଶାଖା ଅଟେ । ଦୃଷ୍ଟିଶକ୍ତି ପ୍ରସାରଣ ସୂକ୍ଷ୍ମତମ ବସ୍ତୁ ଦର୍ଶନ, ସିଦ୍ଧ ଗନ୍ଧର୍ବାଦି ଅମାନବ ପ୍ରାଣୀମାନଙ୍କ ସାକ୍ଷାତ୍ ଏବଂ ଗୃକ୍ଷ୍ମ ଜ୍ୟୋତି ସ୍ୱାୟତ୍ତ କରିବା ନିମନ୍ତେ ଯୋଗୀମାନେ ପ୍ରଥମରେ ତ୍ରାଟକ ଯୋଗ ଶିକ୍ଷା କରି ଥାଆନ୍ତି । ତ୍ରାଟକ ଯୋଗ ଶିକ୍ଷା ନିମନ୍ତେ ଶାସ୍ତ୍ରକାରମାନେ ଏହିପରି ଉପଦେଶ ଦେଇଅଛନ୍ତି କି, "ଗୋଟିଏ ନେତ୍ର-ତୃପ୍ତିରେ ଜ୍ୟୋତିବିଶିଷ୍ଟ ( ଧାତୁ କିମ୍ବା ପାଷାଣ ନିର୍ମିତ ) ପଦାର୍ଥକୁ ସମ୍ମୁଖରେ ରଖିବ ଏବଂ ଯୋଗାସନରେ ବସି କେବଳ ଏକଧ୍ୟାନରେ ସେହି ପଦାର୍ଥକୁ ଚାହିଁ ରହିବ । ଚକ୍ଷୁରେ ଜଳ ପୂର୍ଣ୍ଣ ହେବା ପର୍ଯ୍ୟନ୍ତ ଚାହିଁ ରହିଥିବ, ଯେମନ୍ତ ଶରୀର ଦୋହଲିବ ନାହିଁ, ପଲକ ପଡ଼ିବ ନାହିଁ, ମନ ବିଚଳିତ ହେବ ନାହିଁ । ଏହି ନିୟମରେ କିଛିକାଳ ଲକ୍ଷ୍ୟ ପଦାର୍ଥକୁ ଚାହିଁ ରହିଲେ ଦୃଷ୍ଟିଶକ୍ତି ବୃଦ୍ଧିପ୍ରାପ୍ତ, ଚକ୍ଷୁର ଦୋଷ ସମସ୍ତ ନଷ୍ଟ ଏବଂ ନିଦ୍ରା ତନ୍ଦ୍ରାଦି ସ୍ୱାଧୀନ ହୁଏ । ଯୋଗୀମାନେ ଦୀର୍ଘକାଳ ପର୍ଯ୍ୟନ୍ତ ଅନିଦ୍ରାରେ ରହିପାରନ୍ତି । ଅର୍ଜୁନ ଗୁଡ଼ାକେଶ; ଅର୍ଥାତ୍ ନିଦ୍ରାବିଜୟୀ ଥିଲେ । ପରମଯୋଗୀ ଲକ୍ଷ୍ମଣ ବନବାସ କାଳରେ ଚତୁର୍ଦ୍ଦଶ ବର୍ଷ ଶୋଇ ନ ଥିଲେ । ଏ କଥା ଅବିଶ୍ୱାସ କରିବାର ଆମ୍ଭେମାନେ କାରଣ ଦେଖୁନାହୁଁ । ଶାଳଗ୍ରାମ ଶିଳା ଓ ଧାତୁନିର୍ମିତ ମୂର୍ତ୍ତି ଆଗରେ ରଖି ପୂଜା କରିବାର ପଦ୍ଧତି ଯେ ପ୍ରଚଳିତ ଅଛି ସେଥିର ମୂଳକାରଣ ତ୍ରାଟକ ଯୋଗ ଶିକ୍ଷା ।

ମାତ୍ର ମୂଳକାରଣ ଲୋକମାନେ ପାସୋରି ସାରିଲେଣି । ଉଦ୍ଦେଶ୍ୟ ଜ୍ଞାନ ନ ଥିବାରୁ ଶାଳଗ୍ରାମ ଶୀଳା ଏବଂ ଧାତୁମୟ ମୂର୍ତ୍ତି ପୂଜା ସମସ୍ତେ କରୁଅଛନ୍ତି । ଆଜିକାଲି ପୂଜା ମଧ୍ୟ ଯାଦୃଶ ଫଳରୁ ବଞ୍ଚିତ ହେବା ଅବଶ୍ୟ ପରିତାପର କଥା । ହାଟକ ଯୋଗ ଶିକ୍ଷା ନିମନ୍ତେ ଆହୁରି ମଧ୍ୟ କେତୋଟି ବିଧି ଯୋଗଶାସ୍ତ୍ରରେ ଉଲ୍ଲିଖିତ ଥିବାର ଦେଖାଯାଏ । ପ୍ରଚଣ୍ଡ ଖରାବେଳେ ଆପଣା ଛାୟାକୁ ଲକ୍ଷ୍ୟକରି ଆକାଶକୁ ଚାହିଁ ରହିବ । ଏହିପରି କିଛିଦିନ କଲା ଉତ୍ତାରେ ଭୂମିରେ ଯେମନ୍ତ ଆପଣାର ଛାୟା ପଡ଼ିଥାଏ, ଆକାଶରେ ମଧ୍ୟ ସେହିପରି ଛାୟା ଦେଖି ପାରିବ । ଏହି କ୍ରିୟା ସିଦ୍ଧ ହେଲେ ଯୋଗିମାନେ ଗଗନଗୃହୀ ସିଦ୍ଧ ପୁରୁଷମାନଙ୍କୁ ଦେଖିବା ନିମନ୍ତେ ସକ୍ଷମ ହୁଅନ୍ତି । ଦୃଷ୍ଟିର ସ୍ଥିରତା ନିମନ୍ତେ ଆହୁରି ମଧ୍ୟ ଏପରି ବିଧି ନିର୍ଦ୍ଦେଶ ଅଛି କି ସର୍ବଦା ନାସାଗ୍ର, ଭ୍ରୂମଧ୍ୟ ଏବଂ ଲଲାଟବିନ୍ଦୁ ଦର୍ଶନ କରିବ । ଏଥିରେ ହାଟକ ବିଦ୍ୟାଲାଭ ଛଡ଼ା ମନ ମଧ୍ୟ ସ୍ଥିର ହୁଏ । ଏଥି ସକାଶେ ନାସାଗ୍ର, ଭ୍ରୂମଧ୍ୟ ଓ ଲଲାଟରେ ତିଳକ ଧାରଣ କରିବାର ପ୍ରଥା ପ୍ରଚଳିତ ଅଛି; ଅର୍ଥାତ୍ ରେଖାର ଲକ୍ଷ୍ୟ ସ୍ଥିର ରଖିବା ନିମନ୍ତେ ଉକ୍ତ ସ୍ଥାନମାନଙ୍କରେ ବିନ୍ଦୁ ଧାରଣ କରିବ । ଏହାର ଉଦ୍ଦେଶ୍ୟ କେହି ଅନୁସନ୍ଧାନ କରିବାକୁ ନାହିଁ, ଏଣେ ତିଳକ ଉନ୍ନତି ଲାଭ କରି ବାହୁ, ଛାତି, ପୃଷ୍ଠ ପର୍ଯ୍ୟନ୍ତ ଅଧିକାର କରି ବସିଲାଣି । ତିଳକ ଚର୍ଚ୍ଚିତ, ଶ୍ୟାମ-କଳେବର ନେକଡ଼ା ବାଘର ( ? ) ଅନୁରୂପ ଭକମଗା ବୈଷ୍ଣବ ହାଣ୍ଡି କେବେ ହେଲେ ପାଠକ ମହାଶୟ ଉତ୍ତ୍ୟକ୍ତ ହୋଇଥିବେ । ଆଜିକାଲି ଶିକ୍ଷିତ ନବ୍ୟ ସମ୍ପ୍ରଦାୟଙ୍କ ମସ୍ତକରୁ ତିଳକ କ୍ରମଶଃ ଅଧିକାରଚ୍ୟୁତ ହେଉଅଛି । ଅସଭ୍ୟତାର ଚିହ୍ନ ବୋଲି ହେଉ ଅଥବା ପ୍ରକୃତ ମର୍ମ ଜାଣି ଶିକ୍ଷିତ ସମ୍ପ୍ରଦାୟ ତିଳକ ଲଗାଉ ନାହାନ୍ତି । ଅବଶ୍ୟ ଏହା ସହିତ କ୍ଷତିବୃଦ୍ଧିର ସମ୍ବନ୍ଧ ନାହିଁ । ମାତ୍ର ଯୋଗର ମହାତ୍ମ୍ୟ ଯେ ଦିନକୁ ଦିନ ହିନ୍ଦୁ ସମାଜରୁ ଲୁପ୍ତ ହେଉଅଛି ଏହା ହିଁ ପରିତାପର କଥା । ଅଥବା ଆଜିକାଲି ଇଂରେଜ-ପ୍ଲାବିତ ଦେଶରେ ଇଂରାଜୀ ଶିକ୍ଷିତ ଲୋକମାନଙ୍କର ଏପରି ଗତିମତି ହେବା ବିଚିତ୍ର ନୁହେଁ । ପାଞ୍ଚଜଣ ମିଳିମିଶି ( କମ୍ପାନି ହୋଇ ) କର୍ମ କରିବା ଇଂରେଜମାନଙ୍କର ମୂଳମନ୍ତ୍ର ଅଟେ । ଆମ୍ଭେମାନେ ଇଂରେଜମାନଙ୍କୁ ଅନୁକରଣ କରିବାକୁ ଯାଇ ଧର୍ମଚର୍ଚ୍ଚା ନିମନ୍ତେ ସଭା କରି ବସୁଅଛୁଁ । ମାତ୍ର ଆମ୍ଭମାନଙ୍କ ଶାସ୍ତ୍ରକାରମାନେ ବୋଲି-ଅଛନ୍ତି "ଏକୋଧ୍ୟାନତ" ଏକାକୀ ବସି ଆତ୍ମଚିନ୍ତା କରିବ । ଭଗବାନ୍‌ରୂପୀ ଶ୍ରୀକୃଷ୍ଣ ଅର୍ଜ୍ଜୁନଙ୍କୁ ବୋଲି ଅଛନ୍ତି —

"ଯୋଗୀ ଯୁଞ୍ଜୀତ ସତତ ମାତ୍ମାନଂ ରହସି ସ୍ଥିତଃ"
"ଏକାକୀ ଯତ ଚିତ୍ତାତ୍ମା ନିରାଶୀର ପରିଗ୍ରହଃ ।"

"(ଭଗ ଗୀ-ଷଷ୍ଠ ଅ; ୧୦ ଶ୍ଳୋକ )"

ଯୋଗାରୂଢ଼ ବ୍ୟକ୍ତି ନିର୍ଜ୍ଜନରେ ଏକାକୀ ବସି ଦେହ ଓ ମନକୁ ବଶୀଭୂତ କରି ଆଶା ଓ ପରିଗ୍ରହ ତ୍ୟାଗକରି ସମାଧିରେ ମନକୁ ଲଗାଇବେ ।

ଅଧ୍ୟାତ୍ମ-ଚିନ୍ତା ତ ବିଶେଷ ଗୁରୁତର ବିଷୟ । ଅନ୍ୟାନ୍ୟ ବିଷୟରେ ଦେଖ । ଯୋଗୀ ନ ହେଲେ କାହାରି ଦ୍ୱାରା ପାର୍ଥିବ ସାମାନ୍ୟ କାର୍ଯ୍ୟ ସିଦ୍ଧ ହେବା ମଧ୍ୟ ଅସମ୍ଭବ । ଏହି ଯେ ମହାରଣା କାଠ ରନ୍ଧା କରୁଅଛି ସେ ଯୋଗୀ । ଲୁଗାବୁଣା ତନ୍ତି ଯୋଗୀ । ଯୋଗୀ ନ ହେଲେ ସ୍କୁଲ ପିଲା କ୍ଷେତ୍ରତତ୍ତ୍ୱ ପ୍ରତିଜ୍ଞା ସାଧି ନ ପାରେ । ତେବେ ଅତି ମହାବିଦ୍ୟା ଯେ ଅଧ୍ୟାତ୍ମ ବିଜ୍ଞାନ ତାହା ବିନା ଯୋଗରେ କି ସାଧିତ ହୋଇ ପାରେ ?

ଯୋଗ—ଏହି ଶବ୍ଦଟିକୁ ଆମ୍ଭେମାନେ ସାଧାରଣତଃ ଦୁଇ ଅର୍ଥରେ ବ୍ୟବହାର କରୁଅଛୁଁ । ଭୌତିକ ଯୋଗ

ଏବଂ ଅଧ୍ୟାତ୍ମ ଯୋଗ । ଆମ୍ଭେମାନେ ରେଲ, ଟେଲିଗ୍ରାଫ ପ୍ରଭୃତି ଯେଉଁ ଅଦ୍ଭୁତ ପଦାର୍ଥମାନ ଦେଖୁଅଛୁଁ ସେ ସମସ୍ତ ଜଡ଼ଯୋଗିମାନଙ୍କର ଉଦ୍‌ଭାବିତ ଫଳ ଅଟେ; ଅର୍ଥାତ୍ ଜ୍ଞାନୀ ଲୋକମାନେ ଜଡ଼ ପଦାର୍ଥର ଗୁଣାଗୁଣ ଆଲୋଚନା ଦ୍ୱାରା ସେମାନଙ୍କ ଶକ୍ତି ବିଷୟରେ ଅବଗତ ହୋଇ ଉଲ୍ଲିଖିତ ଅତ୍ୟାଶ୍ଚର୍ଯ୍ୟ ଯନ୍ତ୍ରମାନ ସୃଷ୍ଟି କରି ଯାଇ ଅଛନ୍ତି । ଗଛରୁ ପାଚିଲା ଫଳ ଖସି ପଡ଼ିବାର କିଏ ଅବା ନ ଦେଖି ଅଛି ? କିନ୍ତୁ ନିଉଟନ ତାହା ଦେଖି ବିଶାଳ ବିଜ୍ଞାନଶାସ୍ତ୍ରର ମୂଳଦୁଆ ବାନ୍ଧି ଦେଲେ । ନିଉଟନ ବଡ଼ ଯୋଗୀ । ମାତ୍ର ଅଧ୍ୟାତ୍ମ ଯୋଗ ସ୍ୱତନ୍ତ୍ର ବିଷୟ ଅଟେ । ଜଡ଼ଜଗତ ସହିତ ଏହାର ସମ୍ପର୍କ ନାହିଁ । ଆମ୍ଭାହିଁ ଏହାର ଆଲୋଚ୍ୟ ବିଷୟ ଅଟେ । ଜଡ଼ଯୋଗ ସାଧନ ନିମନ୍ତେ ଆମ୍ଭମାନଙ୍କର ଦୁଇ ଚର୍ମ ଚକ୍ଷୁର ମଧ୍ୟ ଦୃଷ୍ଟି ଆବଶ୍ୟକ । ମାତ୍ର ଅଧ୍ୟାତ୍ମ ଯୋଗ ସାଧନ ନିମନ୍ତେ ଚର୍ମଚକ୍ଷୁ ନିଷ୍ପ୍ରୟୋଜନ । ଯୋଗୀମାନେ କହନ୍ତି, ମନୁଷ୍ୟମାନଙ୍କ ଚର୍ମଚକ୍ଷୁ ଛଡ଼ା ଆଉ ଗୋଟିଏ ଚକ୍ଷୁ ଅଛି, ସେ ଚକ୍ଷୁ ପ୍ରଜ୍ୱଳିତ ନ ହେଲେ ତାହା ଥିବା ନ ଥିବା ପରି । ସେହି ଚକ୍ଷୁର ନାମ ଦିବ୍ୟଚକ୍ଷୁ ବା ଜ୍ଞାନଚକ୍ଷୁ । ଆମ୍ଭେମାନେ ଚର୍ମଚକ୍ଷୁରେ ସମ୍ମୁଖବର୍ତ୍ତୀ ପଦାର୍ଥମାନ ଦେଖିପାରୁଁ; ମାତ୍ର ଜ୍ଞାନଚକ୍ଷୁରେ ସୂକ୍ଷ୍ମ, ଦୂରବର୍ତ୍ତୀ ଏବଂ ଅଭ୍ୟନ୍ତରସ୍ଥ ପଦାର୍ଥମାନ ଦୃଷ୍ଟିଗୋଚର ହୁଏ । ଏହି ନେତ୍ରର ଅବସ୍ଥିତ ସ୍ଥାନ ଭ୍ରୂସନ୍ଧି ଉପରସ୍ଥ ଲଲାଟର ଅଭ୍ୟନ୍ତର ଅଟେ । ଲଲାଟ ଅଭ୍ୟନ୍ତରରେ ତୃତୀୟ ଚକ୍ଷୁ ଅଛି, ଏହା ଜଣାଇବା ନିମନ୍ତେ ଆମ୍ଭମାନଙ୍କର ପରମ ଯୋଗୀ ସଦାଶିବ ତ୍ରିନେତ୍ର ଏବଂ ଶିବାଣୀ ତ୍ରିନେତ୍ରା । ଜ୍ଞାନଚକ୍ଷୁ ଉନ୍ମୀଳିତ ହେଲେ ଆମ୍ଭମାନଙ୍କର ଚର୍ମଚକ୍ଷୁର ଦୃକ୍‌ଶକ୍ତିବୃତ୍ତି ଅର୍ଥାତ୍ ଦର୍ଶନେଚ୍ଛା ଆଉ ରହେ ନାହିଁ । ତେଣୁ ଯୋଗୀମାନଙ୍କର ଚର୍ମଚକ୍ଷୁଦ୍ୱୟ ସର୍ବଦା ଶକ୍ତିହୀନ ଓ ଢଳ ଢଳ ଅବସ୍ଥାରେ ଥାଏ । ଚର୍ମଚକ୍ଷୁ ଦ୍ୱାରା ଦେଖିବା ଓ ଦିବ୍ୟଚକ୍ଷୁରେ ଦେଖିବା ପ୍ରଣାଳୀ ସମାନ ନୁହେ । ଯୋଗୀମାନେ କୌଣସି ଇନ୍ଦ୍ରିୟାତୀତ ବସ୍ତୁ ଦେଖିବାକୁ ଇଚ୍ଛାକଲେ ପ୍ରଥମେ ଇଚ୍ଛାଶକ୍ତିରେ ସମସ୍ତ ଇନ୍ଦ୍ରିୟଦ୍ୱାରା ନିରୋଧଦ୍ୱାରା ସମସ୍ତ ଦୃକ୍‌ଶକ୍ତିବୃତ୍ତି ପୁଞ୍ଜୀକୃତ କରି ଲଲାଟ ଅଭ୍ୟନ୍ତରସ୍ଥିତ ଦିବ୍ୟଚକ୍ଷୁ ପ୍ରତି ନିର୍ଦ୍ଦିଷ୍ଟ କରନ୍ତି । ସେଥିରେ ଚିତ୍ତ ଏକତାନ ହୁଏ ଏବଂ ଚର୍ମଚକ୍ଷୁର ସମସ୍ତ ଶକ୍ତି କେନ୍ଦ୍ରୀଭୂତ ହୋଇ ସେଥିର ସମସ୍ତ ଶକ୍ତି ଲଲାଟ ଅଭ୍ୟନ୍ତରସ୍ଥ ଦିବ୍ୟନେତ୍ରରେ ପତିତ ହୁଏ ଏବଂ ନିରୁଦ୍ଧ ଇନ୍ଦ୍ରିୟମାନଙ୍କର ସମସ୍ତ ବଳ ମଧ୍ୟ ତାହା ସହିତ ସମ୍ମିଳିତ ହୋଇ ତହିଁରେ ସମସ୍ତ ଶକ୍ତି ଅର୍ପିତ ହେବା ମାତ୍ର ଜ୍ଞାନନେତ୍ର ହଠାତ୍ ଜଳି ଉଠେ, ଅର୍ଥାତ୍ ସେ ସ୍ଥାନରୁ ଏକ ସ୍ୱର୍ଗୀୟ ଆଲୋକ ବହିର୍ଗତ ହୁଏ । ଯୋଗୀମାନେ ସେହି ଆଲୋକ ବଳରେ ଦୂରବର୍ତ୍ତୀ ପଦାର୍ଥମାନ ଦେଖିବାକୁ ସକ୍ଷମ ହୁଅନ୍ତି । ପୃଥିବୀରେ ପ୍ରାନ୍ତସ୍ଥିତ ପଦାର୍ଥ ଦେଖିବାର ପ୍ରୟୋଜନ ହେଲେ ସେମାନଙ୍କୁ ସେଠାକୁ ଯିବାକୁ ହୁଏ ନାହିଁ । ସ୍ୱସ୍ଥାନରେ ବସି ଅବନୀମଣ୍ଡଳ ଏବଂ ଗଗନାସ୍ଥିତ ଯାବତୀୟ ପଦାର୍ଥ ନଖ ଦର୍ପଣ ପରି ଦେଖନ୍ତି । ଭୂତ ଭବିଷ୍ୟତ ଘଟନାମାନ ମଧ୍ୟ ସେମାନଙ୍କ ଠାରେ ବର୍ତ୍ତମାନ ପରି ଜଣାଯାଏ । ଯୋଗୀମାନେ ଧ୍ୟାନ ବଳରେ ସମସ୍ତ ପଦାର୍ଥ ଦେଖୁଥିବା ଓ ମନୁଷ୍ୟର ହୃଦ୍‌ଗତ ଭାବ ଜାଣୁଥିବା ବିଷୟ ପାଠକମାନେ ସହସ୍ର ସହସ୍ର ସ୍ଥାନରେ ପାଠ କରିଥିବେ । ଏହା ଯେ କଳ୍ପନା ପ୍ରସୂତ ନୁହେଁ, ଧ୍ରୁବ ସତ୍ୟ, ପାଠକମାନେ କିଞ୍ଚିତ ଅନୁଧାବନ କଲେ ସହଜରେ ହୃଦୟଙ୍ଗମ କରି ପାରିବେ । ଆମ୍ଭେମାନେ ନାନାସ୍ଥାନ ଓ ନାନା ଘଟନାରେ ଦେଖୁଅଛୁଁ ବହୁବିସ୍ତୃତ ସ୍ଥାନ ବ୍ୟାପୀ କୌଣସି ପଦାର୍ଥ ବା ବଳ ପୁଞ୍ଜୀକୃତ ଓ କେନ୍ଦ୍ରୀଭୂତ ହେଲେ ତାହାର ଶକ୍ତି ବହୁ ଗୁଣରେ ବୃଦ୍ଧିପ୍ରାପ୍ତ ହୁଏ । ଦୃଷ୍ଟାନ୍ତସ୍ୱରୂପ ଆମ୍ଭେମାନେ କେତୋଟି କଥା ବୋଲୁଅଛୁଁ । ଖଣ୍ଡିଏ ସୂର୍ଯ୍ୟକାନ୍ତ ମଣି ବା ଆତସ ପ୍ରସ୍ତର ଖରାରେ ଧରି ତାହା ତଳେ ତୂଳା ରଖ; କିଞ୍ଚିତ ସମୟ

ଉତ୍ତରେ ଯେହ୍ନ ତୂଳା ପୋଡ଼ି ଯାଉଥିବାର ଦେଖିବ । ତାହାର କାରଣ ସୂର୍ଯ୍ୟ ରଶ୍ମିର ଉଷ୍ଣତା ସ୍ଥୂଳୀକୃତ ହୋଇ ଅଗ୍ନି ରୂପରେ ପରିଣତ ହେବା ଅଟେ ।

୨ୟ—କିଛି ବାରୁଦ ତଳେ ରଖି ତାହା ଉପରେ ଗୋଟିଏ ସୀସକ ଗୋଳ ଥୋଇଦିଅ । ବାରୁଦରେ ନିଆଁ ଲଗାଇ ଦେଲେ ସେହି ଅଗ୍ନି ବଳରେ ଗୁଳିଟା ୨।୪ ହାତ ମାତ୍ର ଉଡ଼ିଯିବ । ମାତ୍ର ସେହି ପରିମାଣ ବାରୁଦ ଯଦି ଗୋଟିଏ ନଳଯନ୍ତ୍ର ଅର୍ଥାତ୍ ବନ୍ଧୁକ ମଧ୍ୟରେ ରଖି ଅଗ୍ନିସଂଯୋଗ କରିଯାଏ ତେବେ ସେହି ଗୁଳିଟି ସହସ୍ର ସହସ୍ର ହସ୍ତ ଦୂରକୁ ନିକ୍ଷିପ୍ତ ହେବ । ବାହ୍ନିର ସମସ୍ତ ବଳ ପୁଞ୍ଜୀକୃତ ହୋଇ ମୁଗ୍ଦର ମୁଣ୍ଡରେ ଅର୍ପିତ ହେଲେ ଗୁଳିକୁ ସହସ୍ର ସହସ୍ର ହସ୍ତ ଦୂରରେ ନିକ୍ଷେପ କରେ ।

ସେହିପରି ଇନ୍ଦ୍ରିୟ ମାର୍ଗ ଦ୍ୱାରା ନିର୍ଗତ ନାନା ବିଷୟରେ ବିକ୍ଷିପ୍ତ ଏବଂ ବହୁସ୍ଥାନ ବ୍ୟାପୀ ବୁଦ୍ଧିସତ୍ତ୍ୱକୁ ଯତ୍ନରେ ନିରୋଧ କଲେ ତାହା କ୍ରମଶଃ ସଙ୍କୋଚ ପ୍ରଣାଳୀରେ ପୁଞ୍ଜୀକୃତ ଏବଂ କେନ୍ଦ୍ରୀଭୂତ ହୋଇ ତାହାର ଲକ୍ଷ୍ୟବସ୍ତୁକୁ ଭେଦ କରିଯାଏ; ଅର୍ଥାତ୍ ତାହାକୁ ପ୍ରକାଶ କରିଦିଏ । ଏହି କାରଣରୁ ଯେ ସମସ୍ତ ବିଷୟ ସହଜରେ ବୁଝା ନ ଯାଏ ତାହା ବୁଝିବା ନିମନ୍ତେ ଲୋକେ ଏକାଗ୍ର ଚିତ୍ତ ହୁଅନ୍ତି । କିଛିକାଳ ଏକାଗ୍ରଚିତ୍ତ ହୋଇ ଭାବନା କଲେ କଠିନ ବିଷୟମାନଙ୍କର ମର୍ମ ସହଜରେ ପ୍ରକାଶ ହୋଇପଡ଼େ । ତେବେ ଯୋଗିମାନେ ଆଜୀବନ ପରିଶ୍ରମ ଓ ଜୀବନବ୍ୟାପୀ ଏକାଗ୍ରତା ଦ୍ୱାରା ଯେ ଅସାଧାରଣ କାର୍ଯ୍ୟମାନ ସାଧନ କରିବାକୁ ସକ୍ଷମ ହେବେ, ଏଥିରେ ବିଚିତ୍ର କଣ ଅଛି ?

ପାଶ୍ଚାତ୍ୟ ବୈଜ୍ଞାନିକ ପଣ୍ଡିତମାନେ ଜଡ଼ବିଜ୍ଞାନ ବିଦ୍ୟାରେ ଯେ ପରାକାଷ୍ଠା ଲାଭ କରିଅଛନ୍ତି ସେଥିର ଦୃଷ୍ଟାନ୍ତ ଶତ ସହସ୍ର ଆମ୍ଭମାନଙ୍କ ନେତ୍ରଗୋଚର ହେଉଅଛି । ମାତ୍ର ଅଧ୍ୟାତ୍ମ ବିଦ୍ୟାରେ ହିନ୍ଦୁମାନେ ଜଗତର ଗୁରୁଆସନ ଅଧିକାର କରିବାର ଯୋଗ୍ୟ, ଆମ୍ଭେମାନେ ଏହା ସାହସ କରି କହିବାକୁ ସକ୍ଷମ ଅଟୁଁ ।

ଗଣିତ, ଜ୍ୟୋତିଷ, ଜଡ଼ବିଜ୍ଞାନ ସମସ୍ତ ପ୍ରକାର ବିଦ୍ୟା ଅଧ୍ୟାତ୍ମ ବିଦ୍ୟାଠାରେ ଅକିଞ୍ଚିତ୍କର ପ୍ରଥମୋକ୍ତ ବିଦ୍ୟାମାନଙ୍କର କେବଳ ଜଡ଼ଦେହ ସହିତ ସମ୍ପର୍କ । ମାତ୍ର ଆତ୍ମତତ୍ତ୍ୱ ବିଦ୍ୟା ଆମ୍ଭମାନଙ୍କ ଅବିନାଶୀ ଆତ୍ମାର ଇହ ପରକାଳର ଶୁଭଦାୟୀ ଅଟେ । ସର୍ବବ୍ୟାପୀ ପରମେଶ୍ୱର ଆମ୍ଭମାନଙ୍କ ଚର୍ମଚକ୍ଷୁର ବିଷୟୀଭୂତ ନୁହନ୍ତି; ଜ୍ଞାନବଳରେ ଆମ୍ଭେମାନେ ତାହାଙ୍କ ସତ୍ତା ଅନୁଭବ କରିବାକୁ ସକ୍ଷମ ହେଉ । ସେହି ପରମାତ୍ମାଙ୍କୁ ନିଜ ଆତ୍ମାରେ ଧାରଣ କରି ନ ପାରିଲେ ତତ୍ପ୍ରାପ୍ତି ସମ୍ଭାବନା ନିତାନ୍ତ ବିରଳ । ତୃଷାର୍ତ୍ତ ଲୋକ ଲକ୍ଷ ଲକ୍ଷ ଥର ଜଳ ନାମ ଉଚ୍ଚାରଣ କଲେ ମଧ୍ୟ ତାହାର ତୃଷ୍ଣା ଦୂର ହୋଇ ନ ପାରେ । ସେହିପରି ଶ୍ରୀହରିଙ୍କୁ ଯଦି ନିଜ ଆତ୍ମାରେ ଧାରଣ କରି ନ ପାରି, କେବଳ ନାମ ଉଚ୍ଚାରଣରେ ଫଳ କଣ ? ଯୋଗ ବିନା ଭଗବତ୍ପ୍ରାପ୍ତିର ସମ୍ଭାବନା ନାହିଁ, ଏହା ସର୍ବଶାସ୍ତ୍ରସମ୍ମତ ଅଟେ । ଏମନ୍ତ କି ପୂଜାପଟଳ ସର୍ବସ୍ୱ ପୌତ୍ତଳିକ ମଧ୍ୟ କାର୍ଯ୍ୟାରମ୍ଭ ପୂର୍ବେ ଆସନ ଶୁଦ୍ଧି, ଭୂତଶୁଦ୍ଧି, ପ୍ରାଣାୟାମ, ଅଙ୍ଗନ୍ୟାସ, କରନ୍ୟାସ ପ୍ରଭୃତି ଯୋଗାନୁଷ୍ଠାନର କ୍ରିୟାକଳାପମାନ ଆଚରଣ କରିଥାନ୍ତି । ଭଗବାନ୍ ଶ୍ରୀକୃଷ୍ଣ ବୋଲି ଅଛନ୍ତି—

"ଯେ ତୁ ସର୍ବାଣି କର୍ମାଣି ମୟି ସନ୍ନ୍ୟସ୍ୟ ମତ୍ ପରାଃ
ଅନନ୍ୟେନୈବ ଯୋଗେନ ମାଂ ଧ୍ୟାୟନ୍ତ ଉପାସତେ ।
ଅଥ ଚିତ୍ତଂ ସମାଧାତୁଂ ନ ଶକ୍ନୋଷି ମୟି ସ୍ଥିରଂ
ଅଭ୍ୟାସ ଯୋଗେନ ତତୋ ମମିଚ୍ଛାପ୍ତୁଂ ଧନଞ୍ଜୟ ।

ସୁତରାଂ, ମୁମୁକ୍ଷୁ ଲୋକମାନଙ୍କ ପକ୍ଷରେ ଆତ୍ମତତ୍ତ୍ୱ ବିଦ୍ୟା ଅନୁଶୀଳନ ବିନା ଗତ୍ୟନ୍ତର ନାହିଁ । ସେହି ପରମା

ବିଦ୍ୟାଲାଭ ନିମନ୍ତେ ଯୋଗାଭ୍ୟାସ ଏବଂ ତତ୍ତ୍ୱ ସମ୍ବନ୍ଧୀୟ ଗ୍ରନ୍ଥ ଅଧ୍ୟୟନ କରିବା ନିତାନ୍ତ ଆବଶ୍ୟକ । ପୂର୍ବେ ବୋଲିଅଛୁଁ ଆମ୍ଭମାନଙ୍କ ପ୍ରାଚୀନ ମହର୍ଷିମାନେ ଅଧ୍ୟାତ୍ମ ବିଦ୍ୟାର ଶିକ୍ଷାଗୁରୁ ଅଟନ୍ତି । ସେମାନେ ତତ୍-ସମ୍ବନ୍ଧରେ ବିବିଧ ପ୍ରକାର ଉପଦେଶ ଦେଇ ଅଛନ୍ତି । ସେମାନଙ୍କ ମଧ୍ୟରୁ ଯୋଗୀବର ହିରଣ୍ୟଗର୍ଭ, ମହେଶ୍ୱର ଶିବାମି, ମହର୍ଷି କପିଳ, ତାହାଙ୍କ ଶିଷ୍ୟ ପଞ୍ଚ ଶିଖ ମୁନି, ରାଜର୍ଷି ଜନକ, ବ୍ରହ୍ମର୍ଷି ବଶିଷ୍ଠ, ଯୋଗୀବର ଦତ୍ତାତ୍ରେୟ, ଜୈଗୀଷବ୍ୟ ଯୋଗୀଶ୍ୱର ଯାଜ୍ଞବଲ୍‌କ୍ୟ ଏବଂ ପତଞ୍ଜଳି ପ୍ରଭୃତି ଯୋଗିମାନେ ଯୋଗଶବ୍ଦର ବହୁପ୍ରକାର ଅର୍ଥ କରି ତତ୍ ସମ୍ବନ୍ଧରେ ନାନାପ୍ରକାର ଉପଦେଶ ଦେଇ ଯାଇ ଅଛନ୍ତି । ସେମାନଙ୍କ ପ୍ରକାଶିତ ଅର୍ଥ ଏହି;—

୧ । ଆତ୍ମାକୁ ଆତ୍ମାରେ ସଂଯୋଗ କରିବାର ନାମ ଯୋଗ ।

୨ । ବସ୍ତୁ ବିଷୟକ ଚିନ୍ତାପ୍ରବାହ ଉତ୍‌ଥାନ କରିବାର ନାମ ଯୋଗ ।

୩ । ସମସ୍ତ ମନୋବୃତ୍ତି ନିରୋଧର ନାମ ଯୋଗ ।

୪ । ଚିତ୍ତକୁ ଏକତାନ ବା ଏକାଗ୍ର କରିବାର ନାମ ଯୋଗ ।

ଯୋଗିବର ପତଞ୍ଜଳି ଏ ସମ୍ବନ୍ଧରେ ଯେଉଁ ସୂତ୍ରମାନ ପ୍ରକାଶ କରି ଯାଇଅଛନ୍ତି ଆମ୍ଭେ ଅନୁବାଦ ସହିତ ତାହା ପ୍ରକାଶ କରିବାକୁ ପ୍ରବୃତ୍ତ ହେଉଅଛୁଁ । ମହାତ୍ମା ପତଞ୍ଜଳିଙ୍କ ପ୍ରକାଶିତ ଗ୍ରନ୍ଥର ନାମ ପାତଞ୍ଜଳ ଦର୍ଶନ । ଏହା ତତ୍ତ୍ୱଦର୍ଶନର ଅତ୍ୟୁତ୍ତମ ଦର୍ଶନ ଅଟେ । ଆମ୍ଭେମାନେ ଯୋଗୀ ନୋହୁଁ, ମଧ୍ୟ ଯୋଗଶାସ୍ତ୍ରରେ ଆମ୍ଭମାନଙ୍କର ଜ୍ଞାନ ନିତାନ୍ତ ଅଭାବ । ପରି ସ୍ଥଳରେ ଆମ୍ଭେମାନେ ଏହି ଗୁରୁତର ବିଷୟରେ ହସ୍ତକ୍ଷେପକରି ନିତାନ୍ତ ଅଦୂରଦର୍ଶିତା ଓ ଅସମ ସାହସିକତାର କାର୍ଯ୍ୟ କରୁଅଛୁ, ସନ୍ଦେହ ନାହିଁ ତେବେ ଏହି ପାତଞ୍ଜଳ ଦର୍ଶନ ପାଠ କରି ଏତେଦୂର ଆନନ୍ଦିତ ହୋଇଅଛୁଁ ଯେ ତାହା ଦେଶୀୟ ଭ୍ରାତାମାନଙ୍କଠାରେ ପ୍ରକାଶ ନ କରି କ୍ଷାନ୍ତ ହୋଇ ପାରିଲୁଁ ନାହିଁ ।

ପାତଞ୍ଜଳ ଦର୍ଶନ ୪ ଭାଗରେ ବିଭକ୍ତ । ଗୋଟିଏ ଗୋଟିଏ ଭାଗର ନାମ ପାଦ । ଆମ୍ଭେମାନେ ପାଦସ୍ଥିତ ମୂଳସୂତ୍ର ଓ ତାହାର ଅନୁବାଦ ଓ ସରଳ ବ୍ୟାଖ୍ୟା ପ୍ରକାଶ କରିବାକୁ ପ୍ରବୃତ୍ତ ହେଉଅଛୁଁ ।

(ଉ: ସା. ୧ମ ଖଣ୍ଡ ୭ମ ସଂଖ୍ୟା, ଶ୍ରାବଣ ୧୩୦୪)

## ସମାଧିପାଦ

"ଯାଦୃଶୀ ଭାବନା ଯସ୍ୟ ସିଦ୍ଧି ର୍ଭବତି ତାଦୃଶୀ ।"

ଯାହାର ଯେମନ୍ତ ଭାବନା ସେ ତଦନୁରୂପ ସିଦ୍ଧିଲାଭ କରେ; ଅର୍ଥାତ୍ ଯେ ଯାହାଭାବେ ସେ ତାହାହିଁ ପାଏ । ଏ କଥାର ଅର୍ଥ କଅଣ ? ପରୀକ୍ଷା ଏବଂ ଘଟନାବଳୀ ସଙ୍ଗରେ ମିଳାଇ ନ ଦେଖିଲେ ଭଲ ବୁଝାଯିବ ନାହିଁ ।

ଭାବନାର ମୂଳକାରଣ ଇଚ୍ଛା । ଇଚ୍ଛାର ଉଦ୍ରେକ ନ ହେଲେ ଭାବନା ପ୍ରବାହ ଉତ୍ପନ୍ନ ହୁଏ ନାହିଁ । ଏଥିକୁ ଏହାର ମୂଳ କାରଣ ଇଚ୍ଛା ବୋଲି ମାନିବାକୁ ହେବ । ଇଚ୍ଛାର ଯେ କେତେ ବଳ ଭାବନାପ୍ରବାହର ଯେ କି ପ୍ରକାର ଅସାଧାରଣ ମହିମା ସାଧାରଣ ମନୁଷ୍ୟ ତାହା ଜାଣନ୍ତି ନାହିଁ । ବାହ୍ୟ ଜଗତର ଶିଳ୍ପ ସମସ୍ତ ମନଃ ପ୍ରସୂତ ଅଟେ । ଆର୍ଯ୍ୟମାନେ ଯାହାକୁ ଯୋଗ ବୋଲି ବ୍ୟାଖ୍ୟା କରନ୍ତି ତାହା ମଧ୍ୟ ମନଃ ପ୍ରସୂତ ଶିଳ୍ପ ବିଶେଷ । "ଯୋଗଃ କର୍ମସୁ କୌଶଳମ୍" ଅର୍ଥାତ୍ କାର୍ଯ୍ୟ କୌଶଳର ନାମହିଁ ଯୋଗ । ବାହ୍ୟ ଜଗତର କାର୍ଯ୍ୟ କୌଶଳ ଯେମନ୍ତ ଯୋଗ, ଅନ୍ତର୍ଜଗତର କାର୍ଯ୍ୟ କୌଶଳ ମଧ୍ୟ ସେହିପରି ଯୋଗ । ଉପସ୍ଥିତ ଗ୍ରନ୍ଥରେ ଏହି ଯୋଗ ବିଷୟ ବ୍ୟାଖ୍ୟା କରାଯିବ । ଯୋଗିମାନେ

ବୋଲନ୍ତି ଯୋଗ; ଅର୍ଥାତ୍ ମାନସ ଶିଳ୍ପର କ୍ଷମତା ବା ପ୍ରଭାବ ଏତେ ଅଧିକ ଯେ ତାହା ଯୋଗାବସ୍ଥା ବ୍ୟତୀତ ବୋଧଗମ୍ୟ ହୋଇ ନ ପାରେ । ଲୌକିକ ଜଗତରେ ଯୋଗ ନାମକ ମାନସ ଶିଳ୍ପର ଅସାଧ କିଛି ନାହିଁ । ଏହି ଅସାଧ ସାଧକ ଅଦ୍ଭୁତ ମାନସଶିଳ୍ପର ଅର୍ଥାତ୍ ଯୋଗର ଆଦିବକ୍ତା ହିରଣ୍ୟଗର୍ଭ ( ବ୍ରହ୍ମା ) । ଯୋଗୀଶ୍ୱର ଯାଜ୍ଞବଲ୍କ୍ୟ ଏବଂ ପତଞ୍ଜଳି ପ୍ରଭୃତି ଯୋଗିମାନେ ତାହାଙ୍କ ଉପଦେଶ ଅନୁସାରେ କାର୍ଯ୍ୟକରି ସିଦ୍ଧି ଲାଭ କରିଥିଲେ ଏବଂ ତାହାଙ୍କ ଉପଦେଶସମୂହ ବିଶଦ କରି ବୁଝାଇବା ନିମନ୍ତେ ବିବିଧ ଗ୍ରନ୍ଥ ରଚନା କରି ଯାଇଅଛନ୍ତି । ସେହି ସମସ୍ତ ଗ୍ରନ୍ଥ ମଧ୍ୟରେ ପତଞ୍ଜଳିଙ୍କ ରଚିତ ଗ୍ରନ୍ଥ ଉତ୍କୃଷ୍ଟ ଅଟେ । ଆମ୍ଭେମାନେ ବର୍ତ୍ତମାନ ଏହି ଗ୍ରନ୍ଥ ପ୍ରକାଶ କରୁଅଛୁ । ଦର୍ଶନଶାସ୍ତ୍ରର ଅନ୍ତର୍ଗତ ଥିବାରୁ ଏହା 'ପାତଞ୍ଜଳ ଦର୍ଶନ' ନାମରେ ଖ୍ୟାତ ଅଟେ ।

ଏହି ଦର୍ଶନଶାସ୍ତ୍ରର ପ୍ରଥମ ସୂତ୍ର;—

୧ । ଅଥ ଯୋଗାନୁଶାସନମ୍ ।

ଯୋଗଶାସ୍ତ୍ର ଆରମ୍ଭ କରାଯାଉଅଛି ।

୨ । ଯୋଗଶ୍ଚିତ୍ତବୃତ୍ତିନିରୋଧଃ ।

ମନର ବୃତ୍ତି ସମୂହକୁ ରୁଦ୍ଧ କରିବାର ନାମ ଯୋଗ । ଯୋଗ ନାମକ ମାନସଶିଳ୍ପ ବିଷୟ ଜାଣିବାକୁ ହେଲେ ସର୍ବାଗ୍ରେ ମାନସବୃତ୍ତି କଅଣ ଜାଣିବା ନିତାନ୍ତ ଆବଶ୍ୟକ । ମନୋବୃତ୍ତି ଅସଂଖ୍ୟ ଏବଂ ଅଶେଷ ପ୍ରକାର; ମାତ୍ର ସେମାନଙ୍କର ଅବସ୍ଥା ଅଶେଷ ପ୍ରକାର ନୁହେଁ । ଯୋଗିମାନେ ସେହି ଅବସ୍ଥାକୁ ପାଞ୍ଚ ଭାଗରେ ବିଭକ୍ତ କରିଅଛନ୍ତି । ସେହି ପାଞ୍ଚ ଭାଗର ନାମ-କ୍ଷିପ୍ତ, ମୂଢ଼, ବିକ୍ଷିପ୍ତ, ଏକାଗ୍ର ଏବଂ ନିରୁଦ୍ଧ । ମନୁଷ୍ୟମାନଙ୍କର ସମସ୍ତ ପ୍ରକାର ମନୋବୃତ୍ତି ଏହି ପାଞ୍ଚ ଅବସ୍ଥାର ଅନ୍ତର୍ଗତ ଅଟନ୍ତି । ସେହି ପାଞ୍ଚ ଅବସ୍ଥାର ସଂକ୍ଷିପ୍ତ ବ୍ୟାଖ୍ୟା ଏହି—

୧ । କ୍ଷିପ୍ତ—ମନର ଅସ୍ଥିରତା ଅର୍ଥାତ୍ ଚଞ୍ଚଳାବସ୍ଥାର ନାମ କ୍ଷିପ୍ତାବସ୍ଥା । ମନ ଯେତେବେଳେ ସ୍ଥିର ନ ଥାଏ, କୌଣସି ଗୋଟିଏ ବିଷୟରେ ଦୀର୍ଘକାଳ ସଂଲଗ୍ନ ହୋଇ ନ ପାରେ, ନୋକ ପରି ଗୋଟିଏ ବିଷୟ ଛାଡ଼ି ଆଉ ଗୋଟିଏ ଧରୁଥାଏ ଏବଂ କୌଣସି ଗୋଟିଏ ବିଷୟରେ ସନ୍ତୁଷ୍ଟ ହୋଇ ରହି ନ ପାରେ, ତାହାର ନାମ କ୍ଷିପ୍ତାବସ୍ଥା ।

୨ । ମୂଢ଼- ମନ ଯେତେବେଳେ କର୍ତ୍ତବ୍ୟାକର୍ତ୍ତବ୍ୟ ଆଗ୍ରାହ୍ୟ କରି କାମକ୍ରୋଧାଦିର ବଶୀଭୂତ ହୁଏ ଏବଂ ନିଦ୍ରା ତନ୍ଦ୍ରାଦିର ଅଧୀନ ହୁଏ ଏବଂ ଆଳସ୍ୟାଦି କିମ୍ବା ଅଜ୍ଞାନମୟ ଅବସ୍ଥାରେ ଥାଏ ତାହାର ନାମ ମୂଢ଼ାବସ୍ଥା ।

୩ । ବିକ୍ଷିପ୍ତ—କ୍ଷିପ୍ତ ଅବସ୍ଥା ସହ ବିକ୍ଷିପ୍ତ ଅବସ୍ଥାର କିଞ୍ଚିତ ପାର୍ଥକ୍ୟ ଅଛି । କ୍ଷିପ୍ତାବସ୍ଥାରେ ମନ ସଦା ଚଞ୍ଚଳ ଥାଏ; ମାତ୍ର ବିକ୍ଷିପ୍ତାବସ୍ଥାରେ କ୍ଷଣେ ଚଞ୍ଚଳ କ୍ଷଣେ ସୁସ୍ଥିର ହୁଏ, ସଚରାଚର ଦୁଃଖ ବିଷୟ ତ୍ୟାଗ କରି ସୁଖରେ ମଗ୍ନ ହୋଇଯାଏ ।

୪ । ଏକାଗ୍ର—ଚିତ୍ତ ଯେଉଁ ସମୟରେ କୌଣସି ବାହ୍ୟବସ୍ତୁ ଅଥବା ଆଭ୍ୟନ୍ତରିଣ ବସ୍ତୁ ଅବଲମ୍ବନ କରି ନିର୍ବାତ ସ୍ଥାନର ଦୀପଶିଖା ପରି ସ୍ଥିର ହୋଇଥାଏ କିମ୍ବା ରଜସ୍ତମୋବୃତ୍ତି ପରିତ୍ୟାଗପୂର୍ବକ କେବଳ ସାତ୍ତ୍ୱିକ ବୃତ୍ତି ଅବଲମ୍ବନ କରି ସ୍ଥିର ହୋଇଥାଏ, ତେତେବେଳେ ତାହା ଏକାଗ୍ର ଅବସ୍ଥାରେ ଅଛି ବୋଲି ଜାଣିବାକୁ ହେବ ।

୫ । ନିରୁଦ୍ଧ—ଚିତ୍ତ ଯେଉଁ ସମୟରେ ନିରବଲମ୍ବନ; ଅର୍ଥାତ୍ କୌଣସି ବସ୍ତୁ ଅବଲମ୍ବନ ନ କରି ଆପଣା

ଭିତରେ ଆସେ ମନ୍ ହୋଇ ନିଶ୍ଚିନ୍ତ ହୋଇଥାଏ ସେ ସମୟରେ ଅବସ୍ଥାକୁ ନିରୁଦ୍ଧାବସ୍ଥା ବୋଲାଯାଏ ।

ଚିତ୍ତର ଯେଉଁ ପାଞ୍ଚପ୍ରକାର ଅବସ୍ଥାର ବିଷୟ ଉପରେ ଉଲ୍ଲେଖ କରାଗଲା ସେଥିମଧ୍ୟରୁ ୧ମ, ୨ୟ, ୩ୟ ଏହି ତିନି ଅବସ୍ଥା ସହିତ ଯୋଗର କୌଣସି ପ୍ରକାର ସମ୍ପର୍କ ନାହିଁ । ଏକାଗ୍ର ଏବଂ ନିରୁଦ୍ଧ ଏହି ଦୁଇ ଅବସ୍ଥା ଯୋଗସାଧନର ଉପଯୋଗୀ ଅଟେ । ଏହି ଦୁଇ ଅବସ୍ଥା ମଧ୍ୟରୁ ପୁଣି ରୁଦ୍ଧ ଅବସ୍ଥାହିଁ ଯୋଗାବସ୍ଥା ବୋଲି ବୁଝିବାକୁ ହେବ । ଚିତ୍ତ ସହଜରେ ନିରୁଦ୍ଧାବସ୍ଥାକୁ ଆସେ ନାହିଁ । ଯୋଗିମାନେ ଯତ୍ନଦ୍ୱାରା ଅନ୍ୟାନ୍ୟ ଅବସ୍ଥା ଚିତ୍ତ ମଧ୍ୟରୁ ଦୂର କରି ଏହି ଅବସ୍ଥାକୁ ପ୍ରାପ୍ତ ହୁଅନ୍ତି ।

୩ । ତଦା ଦ୍ରଷ୍ଟୁଃ ସ୍ୱରୂପେଽବସ୍ଥାନମ୍ ।

୪ । ବୃତ୍ତି ସ୍ୱରୂପ୍ୟ ମିତରତ୍ର ।

ସେହି ସମୟରେ, ଅର୍ଥାତ୍ ଚିତ୍ତ ନିରୁଦ୍ଧାବସ୍ଥା ପ୍ରାପ୍ତ ହେଲେ ଆତ୍ମା ସ୍ୱକୀୟ ରୂପରେ ଅବସ୍ଥାନ କରନ୍ତି । ଏଥିର ତାତ୍ପର୍ଯ୍ୟ ଏହିକି ସେ କାଳରେ ଆତ୍ମା କେବଳ ଆପଣାକୁ ଆପେ ଅବଲମ୍ବନ କରି ରହନ୍ତି । ଅନ୍ୟ ଅବସ୍ଥାରେ ଆତ୍ମା ସହିତ ଜ୍ଞାନବୃତ୍ତିର ସଂଯୋଗ ଥିବା ହେତୁରୁ ବହୁ ବିଷୟ ପ୍ରସାରୀ ଜ୍ଞାନ ଚଞ୍ଚଳ ଜଳରେ ପ୍ରତିବିମ୍ବ ପରି ଆତ୍ମାକୁ ବହୁ ବିଷୟରେ ଖଣ୍ଡିତ କରୁଥାଏ । ସେହି କାରଣରୁ ମନୁଷ୍ୟ ଅଯୋଗୀ ଅବସ୍ଥାରେ ଥାଇ ଆତ୍ମଜ୍ଞାନରୁ ବଞ୍ଚିତ ହୁଅନ୍ତି । ଦେଖାଯାଉଅଛି—ନିରୁଦ୍ଧାବସ୍ଥାରେ ମନ ଲୟ ବା ବିନାଶପ୍ରାପ୍ତ ହୁଏ । ମନ ଯଦି ବିନାଶପ୍ରାପ୍ତ ହେଲା ତେବେ ଯୋଗ ସାଧନ କିଏ କରିବ ? କିନ୍ତୁ ତାହା ନୁହେଁ, ମନ ଏବଂ ଆତ୍ମା ସ୍ୱତନ୍ତ୍ର ସ୍ୱତନ୍ତ୍ର ପଦାର୍ଥ ଅଟନ୍ତି । ଯେଉଁ ସମୟରେ ମନୋବୃତ୍ତି ସମସ୍ତ ବିନଷ୍ଟ ହୋଇଯାଏ, ଆତ୍ମା ଆପଣାର ପ୍ରକୃତ ରୂପରେ ପ୍ରତିଷ୍ଠିତ ଥାଆନ୍ତି ତାହାହିଁ ପ୍ରକୃତ ଯୋଗାବସ୍ଥା ।

୫ । ବୃତ୍ତୟଃ ପଞ୍ଚ ତୟ୍ୟଃ କ୍ଲିଷ୍ଟା ଅକ୍ଲିଷ୍ଟାଃ ।

ଯେଉଁ ପାଞ୍ଚ ପ୍ରକାର ମନୋବୃତ୍ତିର ଉଲ୍ଲେଖ କରାଯାଇଅଛି ତାହା ପୁଣି ଦୁଇଭାଗରେ ବିଭକ୍ତ, ଯଥା—କ୍ଲିଷ୍ଟ ଅର୍ଥାତ୍ କ୍ଳେଶଦାୟକ, ଅକ୍ଲିଷ୍ଟ ଅର୍ଥାତ୍ ( ସଂସାରର ) ଦୁଃଖନାଶକ ।

କୌଣସି ବିଷୟ ସହିତ ସମ୍ପର୍କ ହେଲେ ଚିତ୍ତ ସେହି ବିଷୟାକାର ପ୍ରାପ୍ତ ହୁଏ । ସେହି ବିଷୟାକାର ପ୍ରାପ୍ତିର ନାମ ବୃତ୍ତି । ଦେହସ୍ଥ ଇନ୍ଦ୍ରିୟ ଏବଂ ବହିଃସ୍ଥ ବିଷୟ ଏହି ଦୁହିଙ୍କର ସମ୍ବନ୍ଧ ହେତୁରୁ ମନ ବିବିଧ ପ୍ରକାର ପରିଣାମ ପ୍ରାପ୍ତ ହେଉଅଛି । ସେହି ପରିଣାମର ନାମ ବୃତ୍ତି । ବିଷୟ ଅସଂଖ୍ୟ; ସୁତରାଂ ବୃତ୍ତି ସମସ୍ତ ସଂଖ୍ୟାତୀତ । ଏହି ଅସଂଖ୍ୟ ବୃତ୍ତି ଶ୍ରେଣୀ ବିଭାଗରେ ଏକ ଅଂଶରେ ପାଞ୍ଚ, ଅନ୍ୟ ପ୍ରକାରେ ଦୁଇରୁ ଅଧିକ ନୁହେଁ । ଦୁଇ ଭାଗର ବିଷୟ ଏହି—

କ୍ଲିଷ୍ଟବୃତ୍ତି—ରାଗ, ଦ୍ୱେଷ, ହିଂସା, କାମ, କ୍ରୋଧ ପ୍ରଭୃତି ବୃତ୍ତି ସକଳର ନାମ କ୍ଲିଷ୍ଟ ଅର୍ଥାତ୍ ଦୁଃଖଦାୟକ ବୃତ୍ତି । କାରଣ ଏମାନେ ଦୁଃଖର କାରଣ ଅଟନ୍ତି ।

ଶ୍ରଦ୍ଧା, ଭକ୍ତି, ବୈରାଗ୍ୟ, ମୈତ୍ରୀ ପ୍ରଭୃତି ବୃତ୍ତି ସକଳ ଅକ୍ଲିଷ୍ଟ ଅର୍ଥାତ୍ ଦୁଃଖନାଶକ ଏବଂ ସୁଖଦାୟକ ବୃତ୍ତି ଅଟନ୍ତି । ସହଜ ଜ୍ଞାନରେ ଦେଖାଯାଉଅଛି କ୍ଲିଷ୍ଟ ବୃତ୍ତି, ସକଳ ହେୟ, ଅକ୍ଲିଷ୍ଟ ବୃତ୍ତି ସକଳ ଉପାଦେୟ ଅଟେ । ମାତ୍ର ଯୋଗ ସମୟରେ କି ହେୟ, କି ଉତ୍କୃଷ୍ଟ ସମସ୍ତ ବୃତ୍ତିକୁ ନିରୋଧ କରିବା ଆବଶ୍ୟକ । ଅନ୍ୟ କଳ୍ପେ ପାଞ୍ଚ ଭାଗର ନାମ ବୋଲାଯାଉଅଛି ।

୬ । ପ୍ରମାଣ-ବିପର୍ଯ୍ୟୟ-ବିକଳ୍ପ-ନିଦ୍ରା-ସ୍ମୃତୟଃ ।

ପ୍ରମାଣ ବୃତ୍ତି, ବିପର୍ଯ୍ୟୟ ବୃତ୍ତି, ବିକଳ୍ପ ବୃତ୍ତି, ନିଦ୍ରାବୃତ୍ତି ଏବଂ ସ୍ମୃତି ବୃତ୍ତି । ଏହି ପାଞ୍ଚ ପ୍ରକାର ବୃତ୍ତିର ଲକ୍ଷଣ ବୋଲାଯାଉଅଛି ।

ପ୍ରମାଣ ବୃତ୍ତି —

୭ । ପ୍ରତ୍ୟକ୍ଷାନୁମାନାଗମାଃ ପ୍ରମାଣାନି ।

ପ୍ରତ୍ୟକ୍ଷ ଅନୁମାନ ଆଗମ ଏହି ତିନି ପ୍ରକାରକୁ ପ୍ରମାଣବୃତ୍ତି ବୋଲାଯାଏ ।

ଇନ୍ଦ୍ରିୟ ସହିତ ବାହ୍ୟବସ୍ତୁର ସଂଯୋଗ ହେବା ମାତ୍ରକେ ସେହି ବସ୍ତୁର ସ୍ୱରୂପବୋଧକ ଯେଉଁ ପ୍ରକୃତ ଜ୍ଞାନ ଜନ୍ମେ ତାହାର ନାମ ପ୍ରତ୍ୟକ୍ଷ । ଗୋଟିଏ ବସ୍ତୁ ପ୍ରତ୍ୟକ୍ଷ ହେଲା ଉତ୍ତାରେ ତତ୍ ସହଚର ଅନ୍ୟ ଅପ୍ରତ୍ୟକ୍ଷ ବସ୍ତୁର ଯେଉଁ ଜ୍ଞାନ ତାହାର ନାମ ଅନୁମାନ । ଯେମନ୍ତ କ ପର୍ବତରୁ ଧୂଆଁ ବାହାରୁଅଛି । ସେହି ଧୂଆଁ ଦେଖି ଆମ୍ଭେମାନେ ଜାଣିଲୁ ତାହାର ସହଚର ଅଗ୍ନି ( ଆମ୍ଭମାନଙ୍କ ଦୃଷ୍ଟି ଅଗୋଚରରେ ) ପର୍ବତ ମଧ୍ୟରେ ରହିଅଛି ।

ବିଶ୍ୱସ୍ତ ବାକ୍ୟ ଶ୍ରବଣ କରିବା ଉତ୍ତାରେ ତଦ୍‌ବାକ୍ୟବୋଧକ ପଦାର୍ଥର ଜ୍ଞାନ ଜନ୍ମିବାର ନାମ ଆଗମ ।

୮ । ବିପର୍ଯ୍ୟୟୋ ମିଥ୍ୟା ଜ୍ଞାନମତଦ୍ରୂପ ପ୍ରତିଷ୍ଠଂ ।

ଯେ ଜ୍ଞାନ ମିଥ୍ୟା; ଅର୍ଥାତ୍ ପ୍ରଥମରେ ଯେଉଁ ଜ୍ଞାନ ଜନ୍ମିଥିଲା କ୍ଷଣକ ଉତ୍ତାରେ ତାହା ଅନ୍ୟରୂପରେ ଜଣାଗଲା ତାହାର ନାମ ବିପର୍ଯ୍ୟୟ । ଯଥା — ପ୍ରଥମରେ ଖଣ୍ଡେ ଦଉଡ଼ି ଦେଖି ସାପ ଜ୍ଞାନକରି ଚମକି ଉଠିଲୁଁ, ମାତ୍ର ପରକ୍ଷଣରେ ଜଣାଗଲା ତାହା ସାପ ନୁହେଁ ଦଉଡ଼ି । ମରୁଭୂମିରେ ଗୋଟିଏ ଜଳପ୍ରବାହ ଦୃଷ୍ଟିଗୋଚର ହେବାରୁ ମନେ ହେଲା ଗୋଟିଏ ନଈ ପ୍ରବାହିତ ହେଉଅଛି; ମାତ୍ର ପରକ୍ଷଣରେ ଜାଣିଲୁଁ ଏହା ନଈ ନୁହେଁ, ମରୀଚିକା ।

୯ । ଶବ୍ଦ ଜ୍ଞାନାନୁପାତୀ ବସ୍ତୁଶୂନ୍ୟୋ ବିକଳ୍ପଃ ।

ପ୍ରକୃତରେ ବସ୍ତୁ ନାହିଁ ଅଥଚ ଶବ୍ଦ ମାତ୍ର ଶୁଣି ମନରେ ଏକ ପ୍ରକାର ବୃତ୍ତି ଜନ୍ମିଲା ତାହାର ନାମ ବିକଳ୍ପ । ଯେମନ୍ତ ଆକାଶକୁସୁମ ବୋଲି କୌଣସି ପଦାର୍ଥ ନାହିଁ ଅଥଚ ଶବ୍ଦ ମାତ୍ର ଶୁଣି ମନରେ ବୃତ୍ତି ଜନ୍ମିଲା ଅର୍ଥାତ୍ ବସ୍ତୁର ଯଥାର୍ଥ ସ୍ୱରୂପ ବିବେଚନା ନ କରି ଶବ୍ଦମାତ୍ର ଶ୍ରବଣ ଦ୍ୱାରା କଳ୍ପନାତ୍ମକ ବୃତ୍ତିର ନାମ ବିକଳ୍ପ ।

୧୦ । ଅଭାବ ପ୍ରତ୍ୟୟାଲମ୍ବନା ବୃତ୍ତି ନିଦ୍ରା ।

ଯହିଁରେ ସମସ୍ତ ବୃତ୍ତି ବିଲୀନ ହୁଏ ସେ ଅଜ୍ଞାନକୁ ଅବଲମ୍ବନ କରି ଯେତେବେଳେ ମନୋବୃତ୍ତି ଉଦିତ ଥାଏ ତେତେବେଳେ ତାହା ନିଦ୍ରା ବା ସୁଷୁପ୍ତି ନାମରେ କଥିତ ହୁଏ । ବାସ୍ତବରେ ନିଦ୍ରା ମଧ୍ୟ ଏକପ୍ରକାର ମନୋବୃତ୍ତି । ସତ୍ତ୍ୱଗୁଣର ଆଚ୍ଛାଦନ ଏବଂ ତମୋଗୁଣର ଉତ୍ପାଦନ ଅବସ୍ଥାକୁ ଆମ୍ଭେମାନେ ନିଦ୍ରା ବୋଲୁଁ । ଅଜ୍ଞାନହିଁ ନିଦ୍ରାବୃତ୍ତିର ଆଲମ୍ବନ । ତମୋମୟ ନିଦ୍ରାବୃତ୍ତିର ଉଦୟ ହେଲେ ସର୍ବପ୍ରକାଶକ ସତ୍ତ୍ୱଗୁଣଟି ଲୁପ୍ତ ହୋଇଯାଏ । ଲୋକମାନେ କହନ୍ତି ମୁଁ ଶୋଇ ପାଇଥିଲି । ମୋହର ଜ୍ଞାନ ନ ଥିଲା; ମାତ୍ର ତେତେବେଳେ ଯେ ଜ୍ଞାନ ନଥିଲା ଏମନ୍ତ ନୁହେଁ, ଅଜ୍ଞାନ ବିଷୟକ ଜ୍ଞାନ ଥିଲା । ସେଥିପାଇଁ ଜାଗ୍ରତ ହୋଇ ନିଦ୍ରାସମୟର ଅଜ୍ଞାନ ବୃତ୍ତିକୁ ସ୍ମରଣ କରନ୍ତି ।

("ଉ ସା: ୧ମଖଣ୍ଡ ୮ମସଂଖ୍ୟା,)

୧୧ । ଅନୁଭୂତ ବିଷୟା ସମ୍ପ୍ରମୋଷଃ ସ୍ମୃତିଃ ।

ବସ୍ତୁ ଥରେ ମାତ୍ର ଅନୁଭୂତ; ଅର୍ଥାତ୍ ପ୍ରମାଣ ବୃତ୍ତିରେ ଆରୂଢ଼ ହେଲେ ତାହା ଆଉ ଯାଏ ନାହିଁ ।

ସଂସ୍କାରରୂପରେ ପ୍ରତିଷ୍ଠିତ ଥାଏ । ସେହି ରହିବାର ନାମ ସ୍ମୃତି । ଏହାର ତାତ୍ପର୍ଯ୍ୟ ଏହି ଯେ ଜାଗ୍ରତ ଅବସ୍ଥାରେ ଆମ୍ଭେମାନେ ଯାହା ଦେଖି ଶୁଣି କିମ୍ବା ଅନୁଭବ କରୁ ଚିତ୍ତ ମଧ୍ୟରେ ସେଥିର ସଂସ୍କାର ଆବଦ୍ଧ ହୋଇ ରହେ । ଉତ୍ତେଜନାର କାରଣ ଉପସ୍ଥିତ ହେଲେ ସେହି ସଂସ୍କାର ପ୍ରବଳ ହୋଇ ଚିତ୍ତରେ ସେହି ପୂର୍ବାନୁଭୂତ ବସ୍ତୁର ସ୍ୱରୂପକୁ ପୁନରୁଦିତ କରିଦିଏ । ସେହି ସମୁଦିତ ମନୋବୃତ୍ତିର ନାମ ସ୍ମୃତି ବା ସ୍ମରଣ । ଯେଉଁ ପାଞ୍ଚପ୍ରକାର ମନୋବୃତ୍ତିର ବିଷୟ ଉଲ୍ଲେଖ କରାଗଲା, ଯୋଗ ସମୟରେ ସେହି ସମସ୍ତ ମନୋବୃତ୍ତିକୁ ରୁଦ୍ଧ କରିବାକୁ ହୁଏ । ରୁଦ୍ଧ କରିବାର ଦୁଇଗୋଟି ଉପାୟ ଅଛି—ପ୍ରଥମ ଅଭ୍ୟାସ, ଦ୍ୱିତୀୟ ବୈରାଗ୍ୟ ।

୧୨ । ଅଭ୍ୟାସ ବୈରାଗ୍ୟାଭ୍ୟାଂ ତନ୍ନିରୋଧ ।

ଅଭ୍ୟାସ ଏବଂ ବୈରାଗ୍ୟ ଦ୍ୱାରା ଉଲ୍ଲିଖିତ ସମସ୍ତ ବୃତ୍ତିର ନିରୋଧ ହୋଇଥାଏ । ବୈରାଗ୍ୟ ଜନମିଲେ ଚିତ୍ତର ବହିର୍ଗତି ଫେରିଯାଇ ଅନ୍ତର୍ଗତି ହୁଏ; ଅର୍ଥାତ୍ କେବଳ ଆତ୍ମାପ୍ରତି ତାହାର ଅଭିନିବେଶ ଜନ୍ମେ । କ୍ରମରେ ଏକାଗ୍ରତା ଏବଂ ନିରୁଦ୍ଧାବସ୍ଥା ଉପସ୍ଥିତ ହୁଏ । ଏହି ଏକାଗ୍ରତା ଏବଂ ନିରୁଦ୍ଧତ୍ୱ ସ୍ଥାୟୀ କରିବା ନିମନ୍ତେ ଅଭ୍ୟାସର ପ୍ରୟୋଜନ । ଏହାକୁ ସ୍ଥାୟୀ ଓ ଦୃଢ଼ କରିବାକୁ ହେଲେ ଅଭ୍ୟାସ ବିନା ଅନ୍ୟ କୌଣସି ଉପାୟ ନାହିଁ ।

ଯାହାର ଯେ ବସ୍ତୁ ପ୍ରତି ବିରାଗ ଜାତ ହୁଏ, ଚିତ୍ତ କେତେବେଳେ ସେ ବସ୍ତୁ ନିମନ୍ତେ ଚଞ୍ଚଳ ହୁଏ ନାହିଁ କିମ୍ବା ସେ ବସ୍ତୁକୁ ଲୋଡ଼େ ନାହିଁ । ସେହିପରି ବାହ୍ୟଜଗତରେ ସମସ୍ତ ବସ୍ତୁପ୍ରତି ଯଦି ବୈରାଗ୍ୟ ଜାତ ହୁଏ, ତେବେ ସେ ସମସ୍ତ ବସ୍ତୁପ୍ରତି ଚିତ୍ତର ଅବଶ୍ୟ ବୈରାଗ୍ୟ ଜାତ ହେବ; ଅର୍ଥାତ୍ ସେହି ସମସ୍ତ ବସ୍ତୁ ପାଇବା ପାଇଁ ଚିତ୍ତ କଦାଚ ଚଞ୍ଚଳ ହେବ ନାହିଁ । ମାତ୍ର ବୈରାଗ୍ୟଠାରୁ ଅଭ୍ୟାସର କ୍ଷମତା ଅତ୍ୟନ୍ତ ଅଧିକ । ଅଭ୍ୟାସ ପ୍ରବଳ ହେଲେ ତାହା ସ୍ୱଭାବର ସମାନ ବଳବାନ୍ ହୁଏ । ଜୀବର ମନ ଚିରକାଳ ଚଞ୍ଚଳତା ଅଭ୍ୟାସ କରିଅଛି । ତେଣୁ ସେ ସ୍ଥିର ହୋଇ ରହି ପାରେ ନାହିଁ । ପୁଣି ଯେବେ ତାହାର ସ୍ଥିରତା ଅଭ୍ୟାସ କରିବ, ତେବେ ସେ କାହିଁକି ସ୍ଥିର ହୋଇ ନ ରହିବ ? ଅତଏବ ସ୍ପଷ୍ଟ ଜଣାପଡ଼ୁଅଛି, ବୈରାଗ୍ୟ ଏବଂ ଅଭ୍ୟାସ ଦ୍ୱାରା ଚିତ୍ତର ଏକତାନ ବୃତ୍ତି ସ୍ଥାୟୀ ହୋଇ ରହିପାରେ ।

୧୩ । ତତ୍ରସ୍ଥିତୌ ଯତ୍ନୋଽଭ୍ୟାସଃ ।

ଚିତ୍ତକୁ ସ୍ଥିର କରିବା ନିମନ୍ତେ ଯତ୍ନ ଅର୍ଥାତ୍ ଯହିଁରେ ରାଜସ ତାମସ ବୃତ୍ତି ଉଦିତ ନ ହୁଏ ସେପରି ଯତ୍ନକୁ ଅଭ୍ୟାସ ବୋଲାଯାଏ । ଅଭ୍ୟାସର ସଂକ୍ଷିପ୍ତ ଲକ୍ଷଣ ଏହି—ଅନ୍ୟ ବିଷୟ ଚିନ୍ତା ତ୍ୟାଗକରି ଚିତ୍ତକୁ ଯତ୍ନପୂର୍ବକ ବାରମ୍ବାର ଏକାଗ୍ର ବା ଏକତାନ କରିବା ଏବଂ ସେଥିର ପୂର୍ବ ସାଧନ ଯମ ନିୟମାଦି ସାତ-ପ୍ରକାର ଯୋଗାଙ୍ଗର ଅନୁଷ୍ଠାନ କରିବା । ସ୍ଥୂଳକଥା ଏହି ଯେ ଯେଉଁ ଯତ୍ନଦ୍ୱାରା ଚିତ୍ତର ଏକାଗ୍ରତା ପ୍ରତିଷ୍ଠିତ ହୁଏ, ସେହିରୂପ ଯତ୍ନ ଏବଂ ତଦ୍ରୂପ ଅନୁଷ୍ଠାନ କରିବାର ନାମ ଅଭ୍ୟାସ । ଅଭ୍ୟାସ ଦୃଢ଼ ହେଲେ ଚିତ୍ତକୁ ଯେତେବେଳେ ଇଚ୍ଛା ସେତେବେଳେ ଏକତାନ କରି ପାରିବ ।

ବିଷୟରୁ ଏକାବେଳକେ ସମ୍ପୂର୍ଣ୍ଣରୂପେ ନିସ୍ପୃହ ହେଲେ ବଶୀକାର ନାମକ ବୈରାଗ୍ୟ ଜନ୍ମେ । ଅର୍ଥାତ୍ ଐହିକ ଏବଂ ପାରଲୌକିକ ସୁଖ ଭୋଗେଚ୍ଛା ପରିତ୍ୟାଗ କଲେ କ୍ରମରେ ଉତ୍କୃଷ୍ଟ ବୈରାଗ୍ୟ ଜନ୍ମେ ।

ବାସ୍ତବିକ ବୈରାଗ୍ୟ ଜନ୍ମିବା ଅତ୍ୟନ୍ତ କଠିନ ଅଟେ । ଭୋଗସ୍ପୃହା ପରିତ୍ୟାଗର ନାମ ବୈରାଗ୍ୟ । ପରନ୍ତୁ ତାହା ବସ୍ତୁ ଏବଂ ବିବେକର ଅଧୀନ । ଯେବେ

ଅନୁସନ୍ଧାନ କରି ପ୍ରତ୍ୟେକ ବସ୍ତୁ ଓ ଦୋଷ ବିଶେଷ-ରୂପେ ଅନୁଭବ କରି ପାରିବ ତେବେ ସେଥିରୁ ସ୍ପୃହା ନିବୃତ୍ତି ହେବ; ନଚେତ୍ କଦାଚ ହେବନାହିଁ । ଅନୁ-ସନ୍ଧାନ ଦ୍ୱାରା ଶତଶତ ବସ୍ତୁର ଦୋଷ ଦେଖି ସେଥିର ସ୍ପୃହାରୁ ନିବୃତ୍ତ ହେଲେ ସହସ୍ର ସହସ୍ର ବସ୍ତୁର ଦୋଷ ସହଜରେ ଦୃଷ୍ଟହେବ ଏବଂ ସେଥିରୁ ସ୍ପୃହା ସହଜରେ ନିବୃତ୍ତ ହେବ । ବିବେକ ସାହାଯ୍ୟରେ ପ୍ରତ୍ୟେକ ବସ୍ତୁର ଦୋଷ ଏବଂ ଦୁଃଖପ୍ରଦ ଗୁଣ ସନ୍ଧାନ କଲେ ସହଜରେ ସେହି ସମସ୍ତ ବସ୍ତୁର ପ୍ରକୃତ ଗୁଣ ଜଣାପଡ଼ିବ ଏବଂ ସେଥିରେ ସହଜରେ ବୈରାଗ୍ୟ ଜାତ ହେବ ।

୧୪ । ସତୁ ଦୀର୍ଘକାଳ ନୈରନ୍ତର୍ଯ୍ୟ ସତ୍କାର ସେବିତୋ ଦୃଢ଼ଭୂମିଃ ।

ସେପରି ଅଭ୍ୟାସ ଦୀର୍ଘକାଳ ପର୍ଯ୍ୟନ୍ତ ସର୍ବଦା ଯତ୍ନ ସହିତ ସମ୍ପନ୍ନ କଲେ କ୍ରମଶଃ ତାହା ଦୃଢ଼ ଏବଂ ଅବିଚଳିତ ହୁଏ ।

ବାସ୍ତବରେ ଉକ୍ତପ୍ରକାର ଅଭ୍ୟାସ ଦୁଇ ଚାରି ଦିନରେ ଦୃଢ଼ ହୁଏ ନାହିଁ ଏବଂ ଅଯତ୍ନରେ କଲେ ମଧ୍ୟ ହୁଏ ନାହିଁ । ଶ୍ରଦ୍ଧା, ଭକ୍ତି ଏବଂ ଉତ୍ସାହ ସହିତ ସର୍ବଦା ଅଭ୍ୟାସ କରି ପାରିଲେ ତାହା ଦୀର୍ଘକାଳରେ ସିଦ୍ଧ ହୁଏ । ସେପରି ଯୋଗାଭ୍ୟାସ ଦୃଢ଼ ହେଲେ ତୁମ୍ଭ ମନ ତୁମ୍ଭର ଅଧୀନ ହୋଇ ରହିବ । ସାଧାରଣ ଲୋକେ ଯେମନ୍ତ ମନର ଅଧୀନ, ତୁମ୍ଭେ ସେପରି ହେବନାହିଁ । ସେ ସମୟରେ ତୁମ୍ଭର ସ୍ୱାଧୀନ ଶକ୍ତିକୁ ଯେତେବେଳେ ଇଚ୍ଛା ତେତେବେଳେ ଏବଂ ଯେଉଁଠାରେ ଇଚ୍ଛା ସେଠାରେ ଆବେଶ କରି ପାରିବ । ଅଭ୍ୟାସ ଯେମନ୍ତ ଅତ୍ୟଧିକ ଯତ୍ନସାଧ୍ୟ, ବୈରାଗ୍ୟ ପୁଣି ତତୋଧିକ ତ୍ୟାଗସାଧ୍ୟ ।

୧୫ । ଦୃଷ୍ଟାନୁଶ୍ରବିକ ବିଷୟ ବିତୃଷ୍ଣସ୍ୟ ବଶୀକାର ସଂଜ୍ଞା ବୈରାଗ୍ୟମ୍ ।

ଦେଖିବା ଏବଂ ଶାସ୍ତ୍ରରେ କଥିତ ଥିବା ଏହି ଦୁଇଟି ବୈରାଗ୍ୟର ବିଷୟ ଅର୍ଥାତ୍ ପରିତ୍ୟକ୍ତ ବସ୍ତୁ ଦୁଇ ପ୍ରକାର । ଦୃଷ୍ଟ ଏବଂ ଅଦୃଷ୍ଟ । ଯାହା ଦେଖିବାକୁ ପାଉଁ ତାହା ଦୃଷ୍ଟ ଏବଂ ଯାହା ଦେଖିବାକୁ ନ ପାଉଁ ତାହା ଅଦୃଷ୍ଟ । ସ୍ତ୍ରୀ, ଅନ୍ନ, ପାନ ଏବଂ ଅନୁଲେପନ ପ୍ରଭୃତି ବର୍ତ୍ତମାନ ଭୋଗସାଧନ ବସ୍ତୁ ସମସ୍ତ ଦୃଷ୍ଟ ଏବଂ ସ୍ୱର୍ଗ, ଅମୃତ, ଅପ୍ସରା, ଅମର ରତ୍ନ ଏ ସମସ୍ତ ପାରଲୌକିକ ଭୋଗ୍ୟ ବସ୍ତୁ ଅଦୃଷ୍ଟ । ଯେହେତୁ ଏହି ସମସ୍ତ ବସ୍ତୁର ଅସ୍ତିତ୍ୱ କିମ୍ବା ଭୋଗ ବର୍ତ୍ତମାନ ଶରୀରରେ ଅନୁଭୂତ ହୁଏ ନାହିଁ । ଏଥି ଉତ୍ତାରେ ଭୋଗ କରିବାକୁ ହେବ, ଏପରି ପ୍ରତ୍ୟାଶା ଦ୍ୱାରା ଆମ୍ଭେମାନେ ଏହାର ଆକାର ଏବଂ ଅସ୍ତିତ୍ୱ କଳ୍ପନା କରନେଉଁ । ଶାସ୍ତ୍ର ପ୍ରତି ବିଶ୍ୱାସ କରୁଁ ବୋଲି ଆମ୍ଭମାନଙ୍କର ଏପରି ପ୍ରତ୍ୟାଶା ଜାତ ହୁଏ । ଯାହାହେଉ ଯେବେ ଉକ୍ତ ଦୁଇ ବିଷୟ ଅର୍ଥାତ୍ ଐହିକ ଏବଂ ପାରତ୍ରିକ ସୁଖର କ୍ଷଣସ୍ଥାୟିତ୍ୱ ଦୋଷ ଅନୁଭବ କରି ପାରୁଁ ତେବେ ସେ ସମସ୍ତ ପ୍ରତି ସହଜରେ ବୈରାଗ୍ୟ ଜାତ ହେବ । ବୈରାଗ୍ୟର ଅଙ୍କୁରାବସ୍ଥାଠାରୁ ତାହାର ପୂର୍ଣ୍ଣତା ପ୍ରାପ୍ତିର ଅବସ୍ଥା ପର୍ଯ୍ୟନ୍ତ ଆଲୋଚନା କରି ଦେଖିଲେ ତାହାର ଚାରି-ପ୍ରକାର ଅବସ୍ଥା ଦୃଷ୍ଟହେବ । ପ୍ରଥମ—ଯତମାନ, ଦ୍ୱିତୀୟ—ବ୍ୟତିରେକ, ତୃତୀୟ—ଏକେନ୍ଦ୍ରିୟ, ଚତୁର୍ଥ—ବଶୀକାର । ଚିତ୍ତର ବିଷୟାନୁରାଗ ନଷ୍ଟକରିବାର ଚେଷ୍ଟା କରିବାର ନାମ ଯତମାନ । ଏହାହିଁ ବୈରାଗ୍ୟର ପ୍ରଥମାବସ୍ଥା । କେଉଁ ଅନୁରାଗ ନଷ୍ଟ ହେଲା, କେଉଁ ଅନୁରାଗ ଜାଗ୍ରତ ଅଛି ଏପରି ପରୀକ୍ଷା କରିବା ଉତ୍ତାରେ ସଞ୍ଜୀବ ଅନୁରାଗ ସମସ୍ତଙ୍କୁ ବିନାଶ କରିବାକୁ ଚେଷ୍ଟା କରିବାର ନାମ ବ୍ୟତିରେକ । ଏହା ବୈରାଗ୍ୟର ଦ୍ୱିତୀୟ ଅବସ୍ଥା ଅଟେ । ଚିତ୍ତ କୌଣସି ବିଷୟ ପ୍ରତି ଅନୁରକ୍ତ ନ ହୋଇ ସମୟ ସମୟରେ କୌଣସି ବିଷୟ ପ୍ରତି ଉତ୍ସୁକ ହେବାର ନାମ ଏକେନ୍ଦ୍ରିୟ । ଏହା ବୈରାଗ୍ୟର ତୃତୀୟାବସ୍ଥା । କ୍ରମଶଃ ସମସ୍ତ ବିଷୟ ପ୍ରତି

ଯେତେବେଳେ ଅନୁରାଗ ବା ଔତ୍ସୁକ୍ୟ ଛୁଟିଯାଇ ମନ ଏକତାନ ହେବ ତେତେବେଳେ ଜାଣିବ ବୈରାଗ୍ୟ ଚତୁର୍ଥ; ଅର୍ଥାତ୍ ତୃଷ୍ଣା ଅବସ୍ଥା ପ୍ରାପ୍ତ ହୋଇଅଛି । ଏହି ବର୍ଣ୍ଣିତ ଜ୍ଞାନ ଜାତ ହେଲେ ସ୍ୱର୍ଗ ଲୋକ କଥା କେଣିକ ଥାଉ ବ୍ରହ୍ମଲୋକ ପ୍ରତି ମଧ୍ୟ ତୁଚ୍ଛଜ୍ଞାନ ଜାତ ହୁଏ । ଏହି ବୈରାଗ୍ୟ ଯୋଗଜ୍ଞାନର ଚରମସୀମା, ଯୋଗ ବା ସମାଧିର ଅସାଧାରଣ ଉପକରଣ ।

୧୬ । ତତ୍‌ପରଂ ପୁରୁଷ ଖ୍ୟାତେର୍ଗୁଣ ବୈତୃଷ୍ଣ୍ୟଂ ।

ସେଥିର ଅବ୍ୟବହିତ ପରେ ଅର୍ଥାତ୍ ସେହିଭଳି ବୈରାଗ୍ୟ ଜନ୍ମିଲା ଉତ୍ତାରେ ଆପେ ଆପେ ପୁରୁଷ ଖ୍ୟାତି ଅର୍ଥାତ୍ ପ୍ରକୃତି ପୁରୁଷର ପାର୍ଥକ୍ୟ ଜ୍ଞାନ ଜାତ ହୁଏ । ସେ ସମୟରେ ତାଙ୍କର ଗୁଣପ୍ରତି ଅର୍ଥାତ୍ ପ୍ରକୃତି ପ୍ରତି ମଧ୍ୟ ବିତୃଷ୍ଣା ଜାତହୁଏ । ପ୍ରାକୃତିକ ଐଶ୍ୱର୍ଯ୍ୟ ସେକାଳର ଆଉ ତାହାଙ୍କୁ ମୋହିତ କରି ପାରେ ନାହିଁ । ତେଣୁ ସେ ତେତେବେଳେ ନିର୍ବିଘ୍ନରେ ନିରୋଧ ସମାଧିର ଆଶ୍ରୟ ନେଇ କାଳାନ୍ତପାତ କରିବାକୁ ସମର୍ଥ ହୁଅନ୍ତି ।

ଯୋଗର ବିଶେଷ ବିଶେଷ ଲକ୍ଷଣ ବା ଅବସ୍ଥା ଯାହା ଶାସ୍ତ୍ରରେ ବର୍ଣ୍ଣିତ ଅଛି ସେ ସମସ୍ତ ବିଷୟ ଶ୍ରବଣ କରନ୍ତୁ ।

୧୭ । ବିତର୍କ ବିଚାରାନନ୍ଦାସ୍ମିତାନୁ
ଗମାତ୍ ସମ୍ପ୍ରଜ୍ଞାତଃ ।

ତର୍କ, ବିଚାର, ଆନନ୍ଦ, ଅସ୍ମିତା ଏହି ଚାରି ପ୍ରକାର ଅବସ୍ଥା ବା ପ୍ରଭେଦ ଥିବାରୁ ସମ୍ପ୍ରଜ୍ଞାତ ସମାଧି ବା ଯୋଗ ଚାରି ପ୍ରକାର ବୋଲି କଥିତ ହୋଇଅଛି । ଏହି ବିଷୟଟି ପରିଷ୍କାର ରୂପେ ବୁଝାଇବାକୁ ହେଲେ ଅନେକ କଥା ବୋଲିବାକୁ ହୁଏ । ଯଥା ଏକ ବସ୍ତୁର ଭାବନା ବା ଉତ୍କଟ ଚିନ୍ତା ପ୍ରୟୋଗର ନାମ ଯୋଗ ଓ ସମାଧି । ସର୍ବବୃତ୍ତି ନିରୋଧ; ଅର୍ଥାତ୍ ଚିତ୍ତର ନିରାଲମ୍ବ ଅବସ୍ଥା ମଧ୍ୟ ଯୋଗ ଓ ସମାଧି । ଶେଷୋକ୍ତ ସମାଧିର ପ୍ରଥମାବସ୍ଥାରେ ଭାବ୍ୟ; ଅର୍ଥାତ୍ ପଦାର୍ଥ ଯାହାକୁ ଭାବୁଥାଉଁ ତହିଁର ଜ୍ଞାନ ଥାଏ ସତ୍ୟ; ମାତ୍ର କ୍ରମଶଃ ସେ ଜ୍ଞାନର ଅଭାବ ହୋଇଯାଏ । ଚିତ୍ତ ତେତେବେଳେ ବୃତ୍ତିଶୂନ୍ୟ ବା ନିରାଲମ୍ବ ହୋଇ କେବଳ ଅସ୍ତିତ୍ୱ ମାତ୍ରରେ ଅବସ୍ଥିତ ଥାଏ । ସେହି ସମସ୍ତ ଆଲୋଚନା କରି ଯୋଗୀମାନେ ବୋଲିଅଛନ୍ତି ଯୋଗ ଦୁଇ ପ୍ରକାର । ସମ୍ପ୍ରଜ୍ଞାତ ସମାଧି ଓ ଅସମ୍ପ୍ରଜ୍ଞାତ ସମାଧି, ଅର୍ଥାତ୍ ଭାବ୍ୟ ପଦାର୍ଥର କିଞ୍ଚିତ୍ ଜ୍ଞାନଥାଏ ବୋଲି ତାହାର ନାମ ସମ୍ପ୍ରଜ୍ଞାତ ସମାଧି । କୌଣସି ପ୍ରକାର ବୃତ୍ତି ବା ଜ୍ଞାନ ଥାଏ ନାହିଁ ବୋଲି ତାହାର ନାମ ଅସମ୍ପ୍ରଜ୍ଞାତ ସମାଧି ।

ବାଣୁଆମାନେ ଯେମନ୍ତ ପ୍ରଥମେ ସ୍ଥୂଳଲକ୍ଷ୍ୟ ବିନ୍ଧିବାକୁ ଶିକ୍ଷା କରନ୍ତି; ପୁଣି କ୍ରମେ କ୍ରମେ ସୂକ୍ଷ୍ମ ସୂକ୍ଷ୍ମତର ବସ୍ତୁକୁ ଲକ୍ଷ୍ୟ କରି ବିନ୍ଧିବାକୁ ଅଭ୍ୟାସ କରନ୍ତି, ସେହିପରି ଯୋଗୀମାନେ ପ୍ରଥମେ ସ୍ଥୂଳତର ଶାଳଗ୍ରାମ କିମ୍ବା ଅନ୍ୟ କୌଣସି କଳ୍ପିତ ଦେବମୂର୍ତ୍ତି ଅଥବା କୌଣସି ଭୌତିକ ପଦାର୍ଥ ଅବଲମ୍ବନ କରି ତାହା ଉପରେ ଭାବନାସ୍ରୋତ ପ୍ରବାହିତ କରିବାକୁ ଶିକ୍ଷା କରନ୍ତି । କ୍ରମେ ସୂକ୍ଷ୍ମଠାରୁ ସୂକ୍ଷ୍ମତମ ପଦାର୍ଥ ପ୍ରତି ଧ୍ୟାନ ପ୍ରବାହ ପ୍ରବାହିତ କରନ୍ତି । ଏଥିରୁ ଜଣାଗଲା ଯେ ଧ୍ୟେୟ; ଅର୍ଥାତ୍ ଧ୍ୟାନ କରିବାର ବସ୍ତୁ ଦୁଇପ୍ରକାର, ସ୍ଥୂଳ ଓ ସୂକ୍ଷ୍ମ । ଏହି ସ୍ଥୂଳ ସୂକ୍ଷ୍ମ ମଧ୍ୟ ଦୁଇପ୍ରକାର, ଯଥା; ବାହ୍ୟସ୍ଥୂଳ ଏବଂ ବାହ୍ୟସୂକ୍ଷ୍ମ, ଆଧ୍ୟାତ୍ମିକ ସ୍ଥୂଳ ଏବଂ ଆଧ୍ୟାତ୍ମିକ ସୂକ୍ଷ୍ମ । କ୍ଷିତି, ଜଳ, ତେଜ, ପବନ ଓ ଆକାଶ ଏହି ପାଞ୍ଚ ପ୍ରକାର ପଦାର୍ଥ ବାହ୍ୟସ୍ଥୂଳ ନାମରେ କଥିତ ହୁଏ ଏବଂ ଇନ୍ଦ୍ରିୟମାନେ ଆଧ୍ୟାତ୍ମିକ ସ୍ଥୂଳ ନାମରେ କଥିତ ହୁଅନ୍ତି । ଏମାନଙ୍କର କାରଣୀଭୂତ ପରମାଣୁ ସମସ୍ତ ଏବଂ ଅହଂତତ୍ତ୍ୱ ଓ ବୁଦ୍ଧିତତ୍ତ୍ୱ ନାମକ ମୂଳ ପଦାର୍ଥକୁ ଯଥାକ୍ରମେ ବାହ୍ୟସୂକ୍ଷ୍ମ ଓ ଆଧ୍ୟାତ୍ମିକ ସୂକ୍ଷ୍ମ ନାମ ଦିଆଯାଏ । ଏମାନଙ୍କୁ ଛାଡ଼ି

ଆଉ ଆତ୍ମା ଏବଂ ଈଶ୍ୱର ଏହି ଦୁଇ ଭାବ୍ୟ ବସ୍ତୁ ଅଛନ୍ତି । ଏହି ସମସ୍ତ ଭାବ୍ୟ ଅବଲମ୍ବନକରି ଭାବନା ପ୍ରବାହ ପ୍ରବାହିତ କରି ପାରିଲେ ଭାବ୍ୟବସ୍ତୁର କ୍ଷମତା ଅନୁସାରେ ଭିନ୍ନ ଭିନ୍ନ ପ୍ରକାର ଫଳଲାଭ ହୁଏ । ସମାଧି ଆରମ୍ଭରେ ବାହ୍ୟସ୍ଥୂଳରେ ଆବେଗ ଅର୍ଥାତ୍ ସାକ୍ଷାତ୍କାର ସ୍ୱରୂପିଣୀ ପ୍ରଜ୍ଞା ଜନ୍ମେ, ତେବେ ତାହାକୁ ବିତର୍କ ବୋଲାଯାଏ ଏବଂ ବାହ୍ୟ ସୂକ୍ଷ୍ମର ସାକ୍ଷାତ୍କାର ଲାଭ ହେଲେ ତାହା ବିଚାର ନାମରେ ଆଖ୍ୟାତ ହୁଏ । କୌଣସି ଆଧ୍ୟାତ୍ମିକ ସ୍ଥୂଳ ଯେବେ ସମାଧିର ଅବଲମ୍ବନ ହୁଏ ଆଉ ସେଥିରେ ଧ୍ୟାନଜ ପ୍ରଜ୍ଞା ଜନ୍ମେ—ତେବେ ସେ ଅବସ୍ଥାର ନାମ ଆନନ୍ଦ ଏବଂ ବୁଦ୍ଧି ସମ୍ବଳିତ ଜୀବାତ୍ମାରେ ଯେବେ ସେପରି ଆବେଗ ଜନ୍ମେ, ତେବେ ତାହାର ନାମ ଅସ୍ମିତା । ଏହିପ୍ରକାର ଚାରିପ୍ରକାର ଯୋଗର ନାମ ସବିତର୍କ, ସବିଚାର, ସାନନ୍ଦ ଏବଂ ସାସ୍ମିତା । ଏମାନଙ୍କୁ ଛାଡ଼ି ଈଶ୍ୱରଙ୍କଠାରେ ଯେଉଁ ସମ୍ପ୍ରଜ୍ଞାତ ଯୋଗ ସାଧିତ ହୁଏ, ତାହା ସ୍ୱତନ୍ତ୍ର ଏବଂ ସେଥିର ଫଳ ମଧ୍ୟ ଭିନ୍ନ ଅଟେ । ଈଶ୍ୱର ଓ ଆତ୍ମାରେ ସମ୍ପ୍ରଜ୍ଞାତ ଯୋଗ ସିଦ୍ଧ କରିପାରିଲେ ମନୁଷ୍ୟର ଆଉ କୌଣସି କର୍ତ୍ତବ୍ୟ ବାକି ରହେ ନାହିଁ । ସେତେବେଳେ ପୂର୍ଣ୍ଣକାମ ହୋଇ ନିତ୍ୟତୃପ୍ତ ଅବସ୍ଥାରେ କଳ୍ପକଳ୍ପାନ୍ତ ଅତିବାହନ୍ କରିବାକୁ ସକ୍ଷମ ହୁଏ । ଉପରଲିଖିତ ଭାବ୍ୟସମୂହରୁ ଯେ କୌଣସି ଭାବ୍ୟ ଉପରେ ଭାବନା ପ୍ରବାହ ପ୍ରବାହିତ କରିବ—କ୍ରମଶଃ ଧ୍ୟାନ ପରିପକ୍ୱ ବା ପ୍ରଗାଢ଼ ହେଲେ ଚିତ୍ତ ସେ କାଳରେ ସେହି ଧ୍ୟେୟ ବସ୍ତୁର ସାରୂପ୍ୟ ପ୍ରାପ୍ତ; ଅର୍ଥାତ୍ ତନ୍ମୟ ହୋଇ ଯାଇ ଅବିଚଳିତ ରୂପେ ପ୍ରତିଷ୍ଠିତ ଥାଏ । ସେ କାଳରେ ଅନ୍ୟ କୌଣସି ଜ୍ଞାନ ବା ମନୋବୃତ୍ତି ଉଦିତ ଥାଏ ନାହିଁ । ଉଦିତ ହେଲେ ମଧ୍ୟ ଧ୍ୟେୟ ବସ୍ତୁଠାରୁ ବିଚଳିତ ହୁଏ ନାହିଁ । ସେ ସମୟରେ ସମ୍ପ୍ରଜ୍ଞାତ ସମାଧି ଉଦିତ ହୋଇଅଛି ବୋଲି ଜାଣିବ । ସେହି ସମ୍ପ୍ରଜ୍ଞାତ ସମାଧି ସମ୍ବନ୍ଧରେ ଆହୁରି ମଧ୍ୟ ଜ୍ଞାତବ୍ୟ କିଛି କଥା ଅଛି, ତାହା ଏହି—ଚିନ୍ତାକରି ଦେଖ ଯେତେବେଳେ ତୁମ୍ଭେ ଘଟ କି ପଟର ଧ୍ୟାନ କର ସେତେବେଳେ ସେହି ଘଟ ବା ପଟ ସହିତରେ ମୃତ୍ତିକା ବା ବସ୍ତ୍ରର ଜ୍ଞାନ ଅବଶ୍ୟ ଥାଏ, ସେହି ସମୟରେ ଅହଂଜ୍ଞାନ ମଧ୍ୟ ଥାଏ । ପୁଣି କେବେ କେବେ ଏମନ୍ତ ହୁଏ ଯେ ଘଟ ବା ପଟ ସହିତରେ ମୃତ୍ତିକା ବା ବସ୍ତ୍ରର ଜ୍ଞାନ ଅବଶ୍ୟ ଥାଏ ସେହି ସମୟରେ ଅହଂ ଜ୍ଞାନ ମଧ୍ୟ ଥାଏ । ପୁଣି କେବେ କେବେ ଏମନ୍ତ ହୁଏ ଯେ ଘଟଜ୍ଞାନ ଲୁପ୍ତ ହୋଇ ଯାଇ କେବଳ ଅହଂଜ୍ଞାନ ଓ ମୃତ୍ତିକା ଜ୍ଞାନ ପରସ୍ପର ଜଡ଼ିତହୋଇ ଯାଇ ହରିହର ମୂର୍ତ୍ତି ପରି ଏକ ଅଭିନ୍ନ ଆକାରରେ ବର୍ତ୍ତମାନ ଥାଏ । ପୁଣି ଏମନ୍ତ ମଧ୍ୟ ହୁଏ ଯେ ଉକ୍ତ ଦୁଇ ଜ୍ଞାନ ପରସ୍ପର ପୃଥକ୍ ଥାଏ; କିନ୍ତୁ ଅଶ୍ୱିନୀକୁମାର ପରି ଆଭ୍ୟନ୍ତରିକ ସମ୍ବନ୍ଧ ବିଚ୍ଛିନ୍ନ ହୁଏ ନାହିଁ । କେବେ କେବେ ଏମନ୍ତ ମଧ୍ୟ ଘଟେ ଯେ ଅନ୍ୟାନ୍ୟ ସମସ୍ତ ଜ୍ଞାନ ଲୁପ୍ତ ହୋଇ ଯାଇ କେବଳ ଘଟଜ୍ଞାନ ଅଥବା ମୃତ୍ତିକା ଜ୍ଞାନ ଅଥବା କେବଳ ଅହଂଜ୍ଞାନ ବର୍ତ୍ତମାନ ଥାଏ । ଏହା ହୁଏ କି ନାହିଁ କିଞ୍ଚିତ ଚିନ୍ତାକଲେ ଜାଣି ପାରିବ । ଯେଉଁ ଲୋକ କେବେ ଭାବୁ ଭାବୁ ହତଜ୍ଞାନ ହୋଇଅଛନ୍ତି, ଅନ୍ୟମନସ୍କ ହୋଇ ଅଛନ୍ତି ସେ ବୁଝି-ପାରିବେ ଏହା ହୁଏ କି ନାହିଁ । କେବଳ ସେହି ଲୋକ ଉକ୍ତ ବିଷୟର ସତ୍ୟତା ବୁଝିପାରିବେ; ଅନ୍ୟ ଲୋକ ପାରିବେ କି ନାହିଁ ସନ୍ଦେହର ବିଷୟ ଅଟେ । ଯାହା-ହେଉ ଉକ୍ତ ଦୃଷ୍ଟାନ୍ତରେ ଧ୍ୟାନ ବା ସମାଧିର ପରିପାକ ଅବସ୍ଥାରେ ଯେବେ ଧ୍ୟେୟ ବସ୍ତୁଜ୍ଞାନ ବିନା ଅନ୍ୟ ବସ୍ତୁର ଜ୍ଞାନ ନ ଥାଏ ଅର୍ଥାତ୍ ଅହଂଜ୍ଞାନ କିମ୍ବା ଧ୍ୟେୟ ବସ୍ତୁର ଉପାଦାନ ଜ୍ଞାନ କିମ୍ବା ତାହାର ନାମ ଜ୍ଞାନ ନ ଥାଏ (ପ୍ରତିମାକାର ଜ୍ଞାନ ବିନା ସେହି ପ୍ରତିମା ନିର୍ମାଣର ଉପାଦାନ ପ୍ରସ୍ତର କି ମୃତ୍ତିକାର ଜ୍ଞାନ ନ ଥାଏ) ଅର୍ଥାତ୍ ଚିତ୍ତ ଯେବେ ଧ୍ୟେୟ ବସ୍ତୁରେ ତନ୍ମୟ ହୋଇଯାଏ, ତେବେ ସେ ପ୍ରକାର ସମାଧିକୁ ସବିତର୍କ ସମାଧି ବୋଲି ନ ଯାଇ ଅବିତର୍କ ସମାଧି ବୋଲି ଯାଏ । ସବିଚାର ସ୍ଥଳରେ ଉକ୍ତ ପ୍ରକାର ତନ୍ମୟତା ଘଟିଲେ ତାହାକୁ ନିର୍ବିଚାର ବୋଲାଯିବ । ସାନନ୍ଦ ଓ

ସାସ୍ମିତା ନାମକ ସମାଧିରେ ଉକ୍ତବିଧ ତନ୍ମୟୀଭାବ ଜନ୍ମିଲେ ଯଥାକ୍ରମେ ବିଦେହଲୟ ଓ ପ୍ରକୃତି ଲୟ ବୋଲଯିବ । ଆତ୍ମା ଓ ଈଶ୍ୱରବିଷୟକ ସମ୍ପ୍ରଜ୍ଞାତ ସମାଧିର ପରିପାକ ଦଶାରେ ଉକ୍ତବିଧ ଏକତାନତା ଜନ୍ମିଲେ ଯଥାକ୍ରମେ ନିର୍ବାଣ ଓ ଈଶ୍ୱର ସାଯୁଜ୍ୟ ପ୍ରଦାୟକ ସମାଧି ବୋଲଯିବ ।

କୌଣସି କୌଣସି ଯୋଗୀ ବୋଲନ୍ତି ଯେ, ଯେ ଯୋଗୀ କୌଣସି ଭୂତ ବା ଇନ୍ଦ୍ରିୟ ପ୍ରତି ତନ୍ମୟୀଭାବର ଭାବନା ପ୍ରବାହ ଉତ୍‌ଥାପିତ କରି ଚିତ୍ତକୁ ସର୍ବତୋଭାବରେ ତନ୍ମୟ କରି ପଞ୍ଚତ୍ୱପ୍ରାପ୍ତ ହୁଅନ୍ତି, ମରଣ ଉତ୍ତାରେ ମଧ୍ୟ ଯେବେ ତାହାଙ୍କର ସେହି ତନ୍ମୟତା ବର୍ତ୍ତମାନ ଥାଏ, ତେବେ ତାହାକୁ ବିଦେହଲୟ ବୋଲଯିବ । ପ୍ରକୃତି ଏବଂ ମହତ୍ତ୍ୱ ଅହଙ୍କାରତତ୍ତ୍ୱ ଅଥବା କୌଣସି ତନ୍ମାତ୍ରାରେ ଲୀନ ହେଲେ ତାହାକୁ ଆମ୍ଭେମାନେ ପ୍ରକୃତିଲୟ ବୋଲି ଉଲ୍ଲେଖ କରିବୁଁ । ସମ୍ପ୍ରଜ୍ଞାତ ସମାଧି କଥା ବୋଲଗଲା, ଏବେ ଆମ୍ଭେମାନେ ଅସମ୍ପ୍ରଜ୍ଞାତ ସମାଧି କଥା କହିବୁ ।

( କ୍ରମଶଃ )

( ଉ.ସା. ୧ମ ବର୍ଷ ୭ମ ସଂଖ୍ୟା ଶ୍ରାବଣ ୧୯୦୪ )

———

## ଯୋଗଶାସ୍ତ୍ର

( ପୂର୍ବାନୁବୃତ୍ତି )

( ପାତଞ୍ଜଳ ଦର୍ଶନ )

ବିରାମ ପ୍ରତ୍ୟୟାଭ୍ୟାସ ପୂର୍ବଃ
ସଂସ୍କାର ଶେଷୋଽନ୍ୟଃ ।୧୮।

ମନୋବୃତ୍ତି ନିବୃତ୍ତିର ଅର୍ଥ ବିରାମ । ମନୋବୃତ୍ତିମାନଙ୍କର ନିବୃତ୍ତିର ପ୍ରଧାନ କାରଣ ବୈରାଗ୍ୟ । ବାରମ୍ବାର ବୈରାଗ୍ୟ ଜାତ ହେଲେ ମନର କୌଣସି ବୃତ୍ତି ସ୍ଥିର ହୋଇ ରହିପାରେ ନାହିଁ । ମନ ତେତେବେଳେ ଦଗ୍‌ଧବୀଜ ପରି ଶକ୍ତିହୀନ ହୋଇ ପଡ଼ିଥାଏ । ମାତ୍ର ମନର ବୃତ୍ତି ସମସ୍ତ ଚାଲିଗଲା ଉତ୍ତାରେ ତାହାର ଯେ ଭାବ ଥାଏ ତାହାର ନାମ ସଂସ୍କାର । ସେପରି ସଂସ୍କାରଯୁକ୍ତ ଚିତ୍ତାବସ୍ଥାରେ ନାମ ଅସମ୍ପ୍ରଜ୍ଞାତ ସମାଧି ।

ଅସମ୍ପ୍ରଜ୍ଞାତ ସମାଧି ଦୀର୍ଘକାଳ ସ୍ଥାୟୀ ହେଲେ ଚିତ୍ତ ଆପେ ଭାବଚ୍ୟୁତ ହୋଇଯାଏ । ତେଣୁ ସହଜରେ ନିରବଲମ୍ବତା ଘଟେ । ସେପରି ନିରବଲମ୍ବତାର ନାମ ଅସମ୍ପ୍ରଜ୍ଞାତ ସମାଧି । "ଅତ୍ର ନ ତ କିଞ୍ଚିତ ପ୍ରଜ୍ଞାୟତେ" । ସେ ଅବସ୍ଥାରେ କୌଣସି ପ୍ରକାର ମନୋବୃତ୍ତି ଥାଏ ନାହିଁ । ଏମନ୍ତ ଅବସ୍ଥାରେ ଚିତ୍ତ ପ୍ରସୁପ୍ତ ଏବଂ ଅଭାବ ପ୍ରାପ୍ତ ହେଲପରି ପଡ଼ି ରହିଥାଏ । କଠୋରତମ ବୈରାଗ୍ୟ ଅଭ୍ୟାସର ଶେଷ ସୀମା ପର୍ଯ୍ୟନ୍ତ ଯାଇ ପାରିଲେ ଏମନ୍ତ ନିରବଲମ୍ବତା ଘଟେ; ନଚେତ୍ ଘଟେ ନାହିଁ । ସେପରି ଅସଂପ୍ରଜ୍ଞାତ ସମାଧି ସମସ୍ତ ଲୋକର ହୁଏ ନାହିଁ । ସମ୍ପ୍ରଜ୍ଞାତ ସମାଧିରେ ଯାହାର ତୃପ୍ତି ଜାତ ହୁଏ ନାହିଁ ସେହି ଯୋଗୀର ଅସମ୍ପ୍ରଜ୍ଞାତ ସମାଧି ହୁଏ । କେବଳ ସେହି ଯୋଗୀ ମନ ମଧ୍ୟରୁ ସକଳ ପ୍ରକାର ଚିନ୍ତା ତ୍ୟାଗ କରିବାକୁ ଏବଂ ଚିତ୍ତକୁ ନିରବଲମ୍ବନ କରିବାକୁ ସକ୍ଷମ ହୁଅନ୍ତି । ଚିତ୍ତକୁ ନିରବଲମ୍ବ କରିବାର ପ୍ରଧାନ ଉପାୟ ଅତୃପ୍ତି, ଅର୍ଥାତ୍ ଚିତ୍ତ ମଧ୍ୟରେ କୌଣସି ପ୍ରକାର ବୃତ୍ତିକୁ ଉଦିତ ହେବାକୁ ନ ଦେବା—ସମ୍ପ୍ରଜ୍ଞାତ ସମାଧିକୁ ମଧ୍ୟ ରହିବାକୁ ଦେବ ନାହିଁ । ଏହିପରି ଦୃଢ଼ ସଂକଳ୍ପ କରି ରହିବ । ଏପରି ଦୃଢ଼ ସଂକଳ୍ପ ଧାରଣ କଲେ ଚିତ୍ତ କ୍ରମଶଃ ନିରବଲମ୍ବ ହୋଇ ଆସେ । ସମ୍ପ୍ରଜ୍ଞାତ ସମାଧି ଅର୍ଥାତ୍ ଧ୍ୟେୟ ବସ୍ତୁ ପରିତ୍ୟାଗ କଲେ ମଧ୍ୟ ଯେବେ ସେ ସମୟରେ ଅନ୍ୟ କୌଣସି ବୃତ୍ତି ମନକୁ ଆସେ ତେବେ ତାହାକୁ ମଧ୍ୟ ମନରୁ ଦୂର କରି ଦେବ ।

ଅର୍ଥାତ୍ ଯେ କୌଣସି ବୃତ୍ତି ଆସିବ ତାହାକୁ ମନ ମଧ୍ୟରୁ ଦୂର କରି ଦେବ । ବାରମ୍ବାର ଏହି ପ୍ରକାର କଲେ ଅଭ୍ୟାସ କ୍ରମଶଃ ଦୃଢ଼ ହୋଇଯାଏ । ଅବଶେଷରେ ସେହି ଦୃଢ଼ାଭ୍ୟାସ ପ୍ରଭାବରେ ଚିତ୍ତ ଆଉ କୌଣସି ବିଷୟ ଗ୍ରହଣ କରିବ ନାହିଁ । କ୍ରମଶଃ ପ୍ରସୁପ୍ତ ବା ଲୟ ପ୍ରାପ୍ତ ହେଲା ପରି ପଡ଼ିରହିବ । ଏଥିରୁ ଚିତ୍ତ ସେ କାଳରେ ନିଶ୍ଚଳ ନିରବଲମ୍ବ ଏବଂ ସୁପ୍ରତିଷ୍ଠ ଅବସ୍ଥା ପ୍ରାପ୍ତ ହେବ । ସେହି ସୁପ୍ରତିଷ୍ଠ ଅବସ୍ଥା ହିଁ ଯୋଗୀମାନଙ୍କର ଅସମ୍ପ୍ରଜ୍ଞାତ ଯୋଗ ଏବଂ ନିର୍ବୀଜ ସମାଧି ।

ଭବ ପ୍ରତ୍ୟୟୋ ବିଦେହ
ପ୍ରକୃତି ଲୟାନାମ୍ ।୧୯।

ବିଦେହ ଲୟ ଏବଂ ପ୍ରକୃତି ଲୟ ଏହି ଦୁଇ ପ୍ରକାର ଯୋଗୀର ଯେ ସମ୍ପ୍ରଜ୍ଞାତ ଯୋଗ ତାହା ଭବ ପ୍ରତ୍ୟୟ; ଅର୍ଥାତ୍ ଅଜ୍ଞାନମୂଳକ ଏବଂ ଯାତାୟାତର କାରଣ, ମୁକ୍ତିର କାରଣ ନୁହେଁ ।

ସମ୍ପ୍ରଜ୍ଞାତ ଯୋଗ ଦୁଇ ପ୍ରକାର । ଭବ ପ୍ରତ୍ୟୟ ଏବଂ ଉପାୟ ପ୍ରତ୍ୟୟ । ବିଦେହ ଲୟ ଏବଂ ପ୍ରକୃତି ଲୟ ଏହି ଦୁଇପ୍ରକାର ଯୋଗୀର ଯେ ସମ୍ପ୍ରଜ୍ଞାତ ଯୋଗ ତାହାକୁ ଭବପ୍ରତ୍ୟୟ ଯୋଗ ବୋଲୁଯାଏ । ମୁମୁକ୍ଷୁ ଲୋକମାନେ ବିଦେହ ଲୟ ହେବାକୁ ଇଚ୍ଛା କରନ୍ତି ନାହିଁ । ପ୍ରକୃତି ଲୟ ହେବାକୁ ମଧ୍ୟ ଇଚ୍ଛା କରନ୍ତି ନାହିଁ । ତେଣୁ ସେମାନେ ସେହି ଭବ ପ୍ରତ୍ୟୟ ଅର୍ଥାତ୍ ଅଜ୍ଞାନମୂଳକ ଏବଂ ନଶ୍ୱର ଫଳ ସମ୍ପ୍ରଜ୍ଞାତ ଯୋଗ ଇଚ୍ଛା କରନ୍ତି ନାହିଁ । ବିଦେହ ଲୟ ବିଷୟ ଶୁଣନ୍ତୁ ।

ଯେଉଁମାନେ କୌଣସି ମହାଭୂତରେ ଅଥବା ସୃଷ୍ଟିକ୍ରମ ଇନ୍ଦ୍ରିୟରେ ସମ୍ପ୍ରଜ୍ଞାତ ଯୋଗ ସୁସିଦ୍ଧ କରି ଅନନ୍ତ ଦେହପାତ ହେଲେ ମଧ୍ୟ ସେମାନଙ୍କର ଯୋଗ ନଷ୍ଟ ହୁଏ ନାହିଁ । ବରଞ୍ଚ ସେମାନେ ଦେହପାତ ଉତ୍ତାରେ ସେହି ମହାଭୂତରେ ସେହି ଇନ୍ଦ୍ରିୟରେ ଥାଇ ଲୟପ୍ରାପ୍ତ ହୋଇଥାନ୍ତି । ସେମାନଙ୍କର ନାମ ବିଦେହ ଲୟ । ଆଉ ଯେଉଁମାନେ ଅବ୍ୟକ୍ତ ( ପ୍ରକୃତି ) ମହତ୍ତ୍ୱ, ଅହଙ୍କାର ଅଥବା କୌଣସି ପ୍ରକାର ତନ୍ମାତ୍ର ବିଷୟରେ ଚିତ୍ତ ଲୟ କରିଅଛନ୍ତି ସେମାନଙ୍କର ନାମ ପ୍ରକୃତି ଲୟ । ପ୍ରଥମୋକ୍ତ ବିଦେହଲୟ ଓ ଶେଷୋକ୍ତ ପ୍ରକୃତି ଲୟ ଏହି ଦୁଇପ୍ରକାର ଯୋଗୀହିଁ ମୁକ୍ତିଫଳ ଏବଂ କୈବଲ୍ୟ ଫଳରୁ ବଞ୍ଚିତ ହୁଅନ୍ତି । ଯେହେତୁ ସେମାନଙ୍କର ସେହି ସମ୍ପ୍ରଜ୍ଞାତ ଯୋଗ ଭବ ପ୍ରତ୍ୟୟ; ଅର୍ଥାତ୍ ଭବ ବୋଲନ୍ତେ ଅବିଦ୍ୟା, ପ୍ରତ୍ୟୟ ବୋଲନ୍ତେ କାରଣ— ଅବିଦ୍ୟାର କାରଣ ଅଟେ । ଯେଣୁ ସେମାନେ ସମସ୍ତେ ଆତ୍ମପଦାର୍ଥରେ ମନୋଲୟ କରିଥିବାରୁ କୈବଲ୍ୟ ଲାଭରେ ଅସମର୍ଥ ହୁଅନ୍ତି । ନିଦ୍ରା ଉତ୍ତାରେ ଜାଗ୍ରତାବସ୍ଥା ପ୍ରାପ୍ତି ପରି ସେମାନଙ୍କର ଚିତ୍ତ ପୁନର୍ବାର ଯଥାକାଳରେ ସାଂସାରିକ ଅବସ୍ଥା ପ୍ରାପ୍ତ ହୁଏ । ତେଣୁ ମୁମୁକ୍ଷୁ ଅର୍ଥାତ୍ ମୁକ୍ତିଇଚ୍ଛାକାଂକ୍ଷୀ ଲୋକମାନେ ବିଦେହ ଲୟ କିମ୍ବା ପ୍ରକୃତି ଲୟ ହେବାକୁ ଇଚ୍ଛା କରନ୍ତି ନାହିଁ । ଭବ ପ୍ରତ୍ୟୟ ଯୋଗର ଅଭ୍ୟାସ କାମନା ମଧ୍ୟ କରନ୍ତି ନାହିଁ ।

ଶ୍ରଦ୍ଧା ବୀର୍ଯ୍ୟ ସ୍ମୃତି ସମାଧିଂ
ପ୍ରଜ୍ଞା ପୂର୍ବକ ଇତରେଷାମ୍ । ୨୦ ।

ଯେଉଁମାନେ ବିଦେହଲୟ ଏବଂ ପ୍ରକୃତିଲୟ ନୁହନ୍ତି, ଅର୍ଥାତ୍ ଯେଉଁମାନେ ମୁମୁକ୍ଷୁ ବା କୈବଲ୍ୟାଭିଳାଷୀ ସେମାନଙ୍କର ଯୋଗ ଉପାୟ ପ୍ରତ୍ୟୟ । ଅର୍ଥାତ୍ ସେମାନଙ୍କର ଯୋଗ ବା ସମାଧି ଶ୍ରଦ୍ଧା, ବୀର୍ଯ୍ୟ, ସ୍ମୃତି, ସମାଧି ଏବଂ ପ୍ରଜ୍ଞା କ୍ରମଶଃ ଉତ୍ପନ୍ନ ହୁଏ । ତେଣୁ ସେମାନେ ଆତ୍ମସାକ୍ଷାତ୍କାର ଲାଭ କରି ପ୍ରକୃତି ଆଲିଙ୍ଗନରୁ ମୁକ୍ତ ହୁଅନ୍ତି ।

ପ୍ରଥମରେ ସେମାନଙ୍କର ଯୋଗବ୍ରତ ଆତ୍ମତତ୍ତ୍ୱ ସାକ୍ଷାତ୍‌କାର ପ୍ରତି ଶ୍ରଦ୍ଧା ଜନ୍ମେ, ପରେ ବୀର୍ଯ୍ୟ, ତହିଁ ଉତ୍ତାରେ ସ୍ମୃତି ଶେଷରେ ଏକାଗ୍ରତା ତହିଁ ଉତ୍ତାରେ ତଦ୍‌ବିଷୟକ ପ୍ରଜ୍ଞା ଜନ୍ମେ । ପ୍ରଜ୍ଞାଲାଭ ଉତ୍ତାରେ ସେମାନଙ୍କର ଉତ୍କୃଷ୍ଟତମ ସମାଧି ଜନ୍ମେ ଏବଂ ତହିଁରୁ ସେମାନେ ପ୍ରକୃତି ନିର୍ମୁକ୍ତତା ବା କୈବଲ୍ୟ ଲାଭ କରନ୍ତି । ଯୋଗ ବା ଯୋଗଫଳ ପ୍ରତି ଚିତ୍ତ ପ୍ରସନ୍ନ ହେବାର ନାମ ଶ୍ରଦ୍ଧା । ଶ୍ରଦ୍ଧା ଜନ୍ମିଲେ କ୍ରମେ ତହିଁରୁ ବୀର୍ଯ୍ୟ ଅର୍ଥାତ୍ ସମଧିକ ଉତ୍ସାହ ଜନ୍ମେ । ବୀର୍ଯ୍ୟ ଜନ୍ମିଲେ ସ୍ମୃତି; ଅର୍ଥାତ୍ ଅନୁଭୂତ ପଦାର୍ଥର ଅବିସ୍ମରଣ ହୁଏ । ଲୋକେ ତାହାକୁ ଚିତ୍ତର ଅବ୍ୟାକୁଳତା ବା ଧ୍ୟାନ ଶକ୍ତି ବୋଲନ୍ତି । ଚିତ୍ତର ଅବ୍ୟାକୁଳତା ବା ଧ୍ୟାନ ଶକ୍ତି ଜନ୍ମିଲେ ସମାଧି; ଅର୍ଥାତ୍ ଚିତ୍ତର ଏକାଗ୍ରତା ଜନ୍ମେ । ଏକାଗ୍ରତା ଜନ୍ମିଲେ ହିଁ ପ୍ରଜ୍ଞା; ଅର୍ଥାତ୍ ଜ୍ଞାତବ୍ୟ ବିଷୟର ଅନୁଭୂତି ହୁଏ । ଲୋକେ ଯାହାକୁ ବସ୍ତୁର ସ୍ୱରୂପ ସାକ୍ଷାତ୍କାର ବୋଲନ୍ତି ।

ଯୋଗୀମାନଙ୍କ ବୋଲିବାରେ ତାହାର ନାମ ପ୍ରଜ୍ଞା । ବାସ୍ତବରେ ଶ୍ରଦ୍ଧା ହେଲେହିଁ ଉତ୍ସାହ ବା ଯତ୍ନ ହୁଏ, ଯତ୍ନ ହେଲେ ଧ୍ୟାନଶକ୍ତି ଜନ୍ମେ । ଧ୍ୟାନଶକ୍ତି ପ୍ରଭାବରେ ଏକାଗ୍ରତା ଦୃଢ଼ ହୁଏ । ଏକାଗ୍ରଚିତ୍ତ ହୋଇପାରିଲେ ଜ୍ଞାତବ୍ୟ ସାକ୍ଷାତ୍କାର ହୁଏ । ଜ୍ଞାତବ୍ୟ ସାକ୍ଷାତ୍‌କାର ହେବା ମାତ୍ରକେ ଯୋଗର ସମସ୍ତ କାର୍ଯ୍ୟ ବା ଅଙ୍ଗ ପୂର୍ଣ୍ଣ ହୁଏ । ସମ୍ପ୍ରଜ୍ଞାତ ଯୋଗ ଯେବେ ଏପରି ଉପାୟ ପରମ୍ପରା ଯୋଗେ ଏପରି ପ୍ରଣାଳୀ କ୍ରମରେ ଈଶ୍ୱର ଅଥବା ଆପଣା ଆତ୍ମା ଅବଲମ୍ବନ କରି ଉତ୍ପନ୍ନ ହୁଏ, ତାହାହେଲେ କୈବଲ୍ୟ ଲାଭ ହୁଏ; ନତୁବା ସ୍ୱର୍ଗାଦି ମାତ୍ର ଲାଭ ହୁଏ । କୈବଲ୍ୟ ଲାଭ ହେଲେ ପୁନର୍ବାର ସଂସାରକୁ ଆସିବାକୁ ହୁଏ ନାହିଁ । ନତୁବା ନିଶ୍ଚୟ ସଂସାରକୁ ଆସିବାକୁ ହେବ ।

ତୀବ୍ର ସମ୍ବେଗାନାମାସନ୍ନଃ । ୨୧ ।

କାର୍ଯ୍ୟ ପ୍ରବୃତ୍ତିର ମୂଳୀଭୂତ ସଂସ୍କାର ବିଶେଷର ନାମ ସମ୍ବେଗ । ସେହି ସମ୍ବେଗ ଯେଉଁମାନଙ୍କର ପ୍ରବଳ ସେମାନଙ୍କର ଶୀଘ୍ର ଶୀଘ୍ର ସମାଧି ହୁଏ ।

ଫଳରେ ଉଲ୍ଲିଖିତ ସମାଧି ଅବଲମ୍ବନ କଲେ ମଧ୍ୟ ସମସ୍ତଙ୍କ ଭାଗ୍ୟରେ ସମାନରୂପେ କିମ୍ବା ସମାନ ସମୟରେ ଫଳଲାଭ ସଂଘଟନ ହୁଏ ନାହିଁ । ତାହାର କାରଣ ଏହି ଯେ କାର୍ଯ୍ୟ ସମ୍ପାଦନର ମୂଳ କାରଣ ଯେଉଁ ସଂସ୍କାର ବା ମନୋବୃତ୍ତି ତାହା ସମସ୍ତଙ୍କର ସମାନ ନୁହେଁ । କାହାର ତୀବ୍ର କାହାର କାହାର ବା ମୃଦୁ । ଯାହାର କାର୍ଯ୍ୟଶକ୍ତି ତୀବ୍ର, ସେ ସମସ୍ତଙ୍କଠାରୁ ଶୀଘ୍ର କାର୍ଯ୍ୟ ସମ୍ପାଦନ କରିପାରେ, ଅନ୍ୟ ଲୋକେ ତାହାର ସମାନ ହୋଇ ପାରନ୍ତି ନାହିଁ ।

କାର୍ଯ୍ୟଶକ୍ତି ବା କାର୍ଯ୍ୟ ସମ୍ପାଦନର ମୂଳ କାରଣ ସଂସ୍କାର କଣ ତାହା ଶୁଣନ୍ତୁ- ଯେଉଁ ଶକ୍ତି ଥିବା ଯୋଗୁ କାର୍ଯ୍ୟ କରିବା ପୂର୍ବେ ମନ ମଧ୍ୟରେ ସମସ୍ତ କାର୍ଯ୍ୟର ବିବରଣ ଅଥବା କାର୍ଯ୍ୟର ଇତି କର୍ତ୍ତବ୍ୟତା ସକଳ ଶୀଘ୍ର ପ୍ରକାଶ ପାଏ, ଚିତ୍ତର ସେହି ଶକ୍ତିର ନାମ ସଂସ୍କାର । ଏହାର ଅନ୍ୟ ନାମ ସମ୍ବେଗ । ଏହି ସମ୍ବେଗ ଯାହାର ତୀବ୍ର, ସେ ଶୀଘ୍ର କାର୍ଯ୍ୟ କରିପାରେ, ଅନ୍ୟ ଲୋକ ସେପରି ପାରନ୍ତି ନାହିଁ; ଏଥି ସକାଶେ ତୀବ୍ର ସମ୍ବେଗ ସମ୍ପନ୍ନ ଯୋଗିମାନେହିଁ ଶୀଘ୍ର ସମାଧି ଲାଭ କରନ୍ତି, ଅନ୍ୟ ପକ୍ଷରେ ବିଳମ୍ବ ହୁଏ ।

ମୃଦୁ ମଧ୍ୟାଧିମାତ୍ରତ୍ୱାତ୍ ସୋଽପି ବିଶେଷଃ ।୨୨।

ମୃଦୁ, ମଧ୍ୟ ଏବଂ ଅଧିମାତ୍ର ପ୍ରଭୃତି ଭେଦ ଥିଲେହେଁ ସେଥିରେ ମଧ୍ୟ ପୁଣି ବିଶେଷ ଅଛି । ଏହାର ତାତ୍ପର୍ଯ୍ୟ ଏହି ଯେ ପୂର୍ବେ ଯେ ଶ୍ରଦ୍ଧା ପ୍ରଭୃତି ଉପାୟ କଥା ବୋଲାଯାଇଅଛି, ସେ ସକଳ ସମସ୍ତଙ୍କର ସମାନ

ନୁହେଁ । କାହାର ବା ମୃଦୁ, କାହାର ବା ମଧ୍ୟ, କାହାର ବା ଅଧିମାତ୍ର, ଅର୍ଥାତ୍ ଅତି ପ୍ରବଳ । ଏଥିସକାଶେ କାର୍ଯ୍ୟ ସିଦ୍ଧିକାଳର ତାରତମ୍ୟ ହୋଇଥାଏ । ଯାହାର ଶ୍ରଦ୍ଧାଦି ମୃଦୁ, ତାହାର କିଛି ବିଳମ୍ବ ହୁଏ ଏବଂ ଯାହାର ଶ୍ରଦ୍ଧାଦି ଅତି ପ୍ରବଳ ତାହାର କାର୍ଯ୍ୟ ସମସ୍ତଙ୍କଠାରୁ ଶୀଘ୍ର ସମ୍ପନ୍ନ ହୁଏ । ଏଥିକୁ ବୋଲାଗଲା ଯେ ଯୋଗୀମାନଙ୍କର ଯୋଗ-ଶକ୍ତି ବା ସମ୍ବେଗ ତୀବ୍ର ହେଲେ ଏବଂ ଶ୍ରଦ୍ଧାଦି ଉପାୟ ସକଳ ସମଧିକ ପ୍ରବଳ ବା ତୀକ୍ଷ୍ଣ ହେଲେହେଁ ଶୀଘ୍ର ଶୀଘ୍ର ସମାଧି ହୁଏ । ନତୁବା କିଛି ବିଳମ୍ବ ହୁଏ ।

ଈଶ୍ୱର ପ୍ରଣିଧାନାଦ୍‌ବା ।୨୩

ସମ୍ପ୍ରଜ୍ଞାତ ସମାଧି ଲାଭର ଅନ୍ୟ ଏକ ସୂକ୍ଷ୍ମ ଉପାୟ ଅଛି । ସେ ଉପାୟ ଈଶ୍ୱର ପ୍ରଣିଧାନ; ଅର୍ଥାତ୍ ଈଶ୍ୱର ଉପାସନା । ଈଶ୍ୱର ଅନୁଧ୍ୟାନ ଯୋଗରେ ମଧ୍ୟ ଜୀବର ସମାଧି ଲାଭ ହୁଏ । ଯୋଗୀମାନଙ୍କର ଈଶ୍ୱର ଉପାସନା ବିବରଣ ସଂକ୍ଷେପରେ ବୋଲୁଅଛୁଁ । ଈଶ୍ୱରଙ୍କ ପ୍ରତି ବିଶିଷ୍ଟ ଭକ୍ତି ଉଚ୍ଛ୍ୱସିତ କରିବା ଆଉ ଉପାସନା ଏ ଦୁହେଁ ତୁଲ୍ୟ କଥା । କାୟିକ, ମାନସିକ, ବାଚନିକ ସମସ୍ତ ବ୍ୟାପାରକୁ ଈଶ୍ୱରଙ୍କ ଅଧୀନ ଜ୍ଞାନ କରିବାକୁ ହେବ, ଯେତେବେଳେ ଯେଉଁ କାର୍ଯ୍ୟ କରିବ ଫଳ ପ୍ରତି ଦୃଷ୍ଟି ନ ରଖି, ସୁଖବାସନା ନ କରି ସମସ୍ତ କାର୍ଯ୍ୟହିଁ ସେହି ପରମଗୁରୁ ପରାତ୍ପର ପରମେଶ୍ୱରଙ୍କୁ ଅର୍ପଣ କରିବ, କୌଣସି କର୍ମ ନ କରିବା ବେଳେ କେବଳ ତାହାଙ୍କୁ ଧ୍ୟାନ କରିବ । ଅକାତରରେ ପୁଲକିତ ଚିତ୍ତରେ ଅନବରତ ଏହିପରି କଲେ ତୁମ୍ଭର ଉପାସନା ସିଦ୍ଧ ହେବ । ଯେତେବେଳେ ଦେଖିବ ତୁମ୍ଭର ଅଭିଳଷିତ ସିଦ୍ଧି ସକାଶେ ସେହି ପରମଗୁରୁ ପରମେଶ୍ୱରଙ୍କ ଶୁଭାନୁଗ୍ରହ ତୁମ୍ଭ ଆତ୍ମାରେ ଅଧିରୂଢ଼ ହୋଇଅଛି, ତେତେବେଳେ ସେହି ଉତ୍କୃଷ୍ଟତମ ସମ୍ପ୍ରଜ୍ଞାତ ସମାଧି ଲାଭର ଆଉ ଅଧିକ ବିଳମ୍ବ ନାହିଁ ।

ଈଶ୍ୱର କିଏ ? ସେ ବିଷୟ କିଞ୍ଚିତ୍ ବୋଧଗମ୍ୟ ନ ହେଲେ ତତ୍‌ପ୍ରତି ବିଶିଷ୍ଟ ଭକ୍ତି ଜନ୍ମିବାର ସମ୍ଭାବନା ନାହିଁ । ସେଥିସକାଶେ ପରମ କରୁଣାମୟ ମହାତ୍ମା ପତଞ୍ଜଳି ସେହି ଭବରୂପୀ ପରମଗୁରୁ ପରମେଶ୍ୱର-ଙ୍କର ଉପଦେଶ ଦେଇ ଅଛନ୍ତି । ପରନ୍ତୁ ଭାବୁକ ନ ହେଲେ ତାହାଙ୍କର ସେହି ଅତ୍ୟଳ୍ପ ଉପଦେଶ ଯୋଗରେ ସେହି ମହାମହିମ ସର୍ବନିୟନ୍ତା ସର୍ବଶ୍ରେଷ୍ଠ ବିଶ୍ୱପତିଙ୍କ ସ୍ୱରୂପ ମନୋମଧ୍ୟରେ ଆରୂଢ଼ ହୁଏ ନାହିଁ । ମହାତ୍ମା ପତଞ୍ଜଳି କହିଅଛନ୍ତି—

କ୍ଲେଶ କର୍ମ ବିପାକାଶୟୈରପରାମୃଷ୍ଟଃ ପୁରୁଷ ବିଶେଷ ଈଶ୍ୱରଃ ।୨୪।

କ୍ଲେଶ, କର୍ମ, ବିପାକ ଏବଂ ଆଶୟ ଯାହାଙ୍କୁ ସ୍ପର୍ଶ କରି ନ ପାରେ, ଯାବନ୍ତ ସଂସାରୀ ଆତ୍ମା ଏବଂ ଯାବନ୍ତ ମୁକ୍ତାତ୍ମାରୁ ଯେ ସ୍ୱତନ୍ତ୍ର ବା ମୁକ୍ତ—ସେ ଈଶ୍ୱର ।

କ୍ଲେଶ—ଯାହା ଆତ୍ମା ଚିତ୍ତ ସହିତ ଏକୀଭୂତ ହୋଇ ଭୋଗ କରୁଅଛି ଏବଂ ଯାହା ଥିବାରୁ ଆତ୍ମାର ଜୀବନାମ ହୋଇଅଛି ।

କର୍ମ—ଅର୍ଥାତ୍ ନାନାପ୍ରକାର କ୍ରିୟା ଜୀବ ଯାହା ପ୍ରତି ମୁହୂର୍ତ୍ତରେ ଅନୁଷ୍ଠାନ କରୁଅଛି ।

ବିପାକ—ଅର୍ଥାତ୍ କର୍ମଫଳ ଯାହାକି ସୁଖ ଦୁଃଖାଦି ଏବଂ ଭୋଗ ନାମରେ ପରିଚିତ ।

ଆଶୟ—ଅର୍ଥାତ୍ ସଂସ୍କାର । କର୍ମଫଳ ଉତ୍ତାରେ ଚିତ୍ତ ମଧ୍ୟରେ ଯେଉଁ ଭାବର ଉଦୟ ହୁଏ ।

ଯେ ମହାପୁରୁଷ ଜୀବପର କ୍ଳେଶଭୋଗୀ ନୁହନ୍ତି, ଅର୍ଥାତ୍ ଯେ ସର୍ବ-କ୍ଳେଶ-ବିମୁକ୍ତ, ଜୀବ ପରି ଯାହାଙ୍କୁ କ୍ଳେଶ ଭୋଗ କରିବାକୁ ନ ହୁଏ, ସୁଖ, ଦୁଃଖ, ଜାତି, ଆୟୁ ଭୋଗ କରିବାକୁ ନ ହୁଏ, ସେ ଈଶ୍ୱର । ଈଶ୍ୱର ନିତ୍ୟ ଅନାଦି ନିରତିଶୟ ଏବଂ ଅନନ୍ତ । ସଂସାରୀ ଆତ୍ମା ଯେମନ୍ତ ଚିତ୍ତ ସହିତ ଏକୀଭୂତ ଥିବାରୁ ବାସନା ନାମକ ସଂସ୍କାରର ବଶୀଭୂତ ହୁଏ, ପରମେଶ୍ୱର ସେରୂପ ନୁହନ୍ତି । ସେ ଅଚିତ୍; ସୁତରାଂ ବାସନା ରହିତ ଚିତ୍ତନିଷ୍ଠା-ଜନ୍ୟ ଜ୍ଞାନ ଏବଂ ତଜ୍ଜନ୍ୟ ଇଚ୍ଛା ସହିତ ତାହାଙ୍କର ସ୍ୱାଭାବିକ ଜ୍ଞାନ ଏବଂ ସ୍ୱାଭାବିକ ଇଚ୍ଛା ଶକ୍ତିର ତୁଳନା ହୁଏ ନାହିଁ । ସେ ଅସାଧାରଣ ଅଚିନ୍ତ୍ୟ କ୍ଳେଶମୁକ୍ତ ଏବଂ ଦେହାଦି ରହିତ ଆତ୍ମା ବା ପରମପୁରୁଷ ।

ତତ୍ର ନିରତିଶୟଂ ସର୍ବଜ୍ଞବୀଜଂ ।୨୫।

ତାହାଙ୍କଠାରେ ନିରତିଶୟ ଜ୍ଞାନ ଥିବାରୁ ସେ ସର୍ବଜ୍ଞ । ଉକ୍ତ ସାଧକ ହୃଦୟରେ ସେ ଆପେ ପ୍ରକାଶ ପାଆନ୍ତି । ତାହାଙ୍କ ସ୍ୱରୂପ ଅନ୍ୟକୁ ବୋଧଗମ୍ୟ କରାଇବାକୁ ହେଲେ ଅନୁମାନର ସାହାଯ୍ୟ ନେବାକୁ ହୁଏ । ସେ ଅନୁମାନ ଏହିପରି କି—ସକଳ ଆତ୍ମାରେ କିଛି ହେଲେ ହେଁ ଜ୍ଞାନ ଅଛି । ସକଳ ଆତ୍ମା ଭୂତ, ଭବିଷ୍ୟତ,ବର୍ତ୍ତମାନ ବୁଝିପାରନ୍ତି । କେହି ଅଳ୍ପ କେହି ବା ବେଶି ବୁଝିପାରେ, ପୁଣି ସେମାନଙ୍କଠାରୁ ଅଧିକଜ୍ଞ ଆତ୍ମା ମଧ୍ୟ ଅଛି । ଯାହାଠାରୁ ଅଧିକଜ୍ଞ ସର୍ବଜ୍ଞ ଆଉ କେହି ନାହିଁ, ସେ ପରମଗୁରୁ, ପରମେଶ୍ୱର । ଯେମନ୍ତ ଅଳ୍ପତାର ଶେଷସୀମା ପରମାଣୁ , ବୃହତ୍ତ୍ୱର ଶେଷସୀମା ଆକାଶ, ସେହିପରି ଜ୍ଞାନଶକ୍ତିର ଅଳ୍ପତାର ପରକାଷ୍ଠା କ୍ଷୁଦ୍ରଜୀବ, ଆତିଶଯ୍ୟର ପରକାଷ୍ଠା ଈଶ୍ୱର ।

( କ୍ରମଶଃ )

(ଉ: ସା: ୯ମ ଖଣ୍ଡ ୧ମ ସଂଖ୍ୟା ଚୈତ୍ର ୧୩୦୫)

---

## ନନାଙ୍କ ପାଞ୍ଜି

"ବିଷମପ୍ୟମୃତଂ କ୍ୱଚିଦ୍‌ଭବେଦମୃତଂ ବା ବିଷଂ"

ମହାକବି କାଳିଦାସେ ଏ କଥାଟା ଚେରଦିନ ହେଲା ବୋଲି ଯାଇଅଛନ୍ତି । କଥାଟା ଠିକ ସତ; ଆଉ ଯେ ଯାହା କହନ୍ତୁ ମୋ ପକ୍ଷରେ ମାତ୍ର ବର୍ତ୍ତମାନ ଖୁବ ଘଟିଅଛି । କ୍ୟାଁ ଏ କଥାଟା ବୋଇଲି ଜାଣନ୍ତି ? ଏହି ଯେ ଉତ୍କଳସାହିତ୍ୟର ଉଜ୍ଜ୍ୱଳ ନିମନ୍ତେ ସାକାର "ଉତ୍କଳ ସାହିତ୍ୟ" ବାହାରି ଅଛନ୍ତି, ଅବଶ୍ୟ ସମସ୍ତେ କହିବେ ଏହା ଅମୃତ ତୁଲ୍ୟ ପଦାର୍ଥ; ମାତ୍ର ମୋ ପକ୍ଷରେ ନୁହେଁ । କାରଣଟା ଅବଶ୍ୟ ଫିଟାଇ ନ କହିଲେ ଆପଣ ବୁଝି ପାରିବେ ନାହିଁ ।

କାଗଜଟା ବାହାରିବା ଦିନଠାରୁ ସମ୍ପାଦକ ମୋତେ ଧଡ଼ପଗଡ଼ ଲଗାଇ ଅଛନ୍ତି—ତୁ କବିତା ଲେଖ, କବିତା ଲେଖ । ଖଞ୍ଜ ଅଖଞ୍ଜ ସମସ୍ତଙ୍କର ଅଛି; କବିତା ନ ଲେଖିବାରୁ ସେ ଦିନ ଫୁଲସଞ୍ଜବେଳେ ସମ୍ପାଦକ ତ ବିଚ ବଜାରରେ ଘୋର ଖପା ! ମୋ ମୁହଁରେ ହାତ ହଲାଇ କହିଲେ, "କବିତାଗୁଡ଼ାକ ତାଳ ପକାଇଲ"— ଅରେ ବାବୁ ବୁଝି ଏମନ୍ତି କଥା କହିଲେ ସିନା ହେବ ! ଆଗେ ଦେଖିବାକୁ ହେବ, କବିତା ଲେଖିବାକୁ ମୋହର ବେଳ ଅଛି କି ନାହିଁ । ଦାନ୍ତ ଘଷିବା ମଥେଇ ଲଗାଇବା ଗୁଡ଼ ଖାଇବା ହାତ କାମ ଗୃହଥିର କରିବାକୁ ହୁଏ, ପୁଣି ଡେବିରିହାତ ସେହିପରି । ଖେଳିବା ବୁଲିବା କଥା ତ ଅଛି । ଅନ୍ୟ ଲୋକର ସାହାଯ୍ୟ ବିନା ମୋତେ ନିଜେ ଏସବୁ କର୍ମ କରିବାକୁ ହୁଏ । ବୋଲିବା ହେଉ ତ ଲେଖିବାକୁ ବେଳ କାହିଁ ? ଆପଣ ମନରେ ବିଗୁରିଲେଣି ଲୋକଟା କବି ନୁହେଁ, ସେଥିପାଇଁ ଲେଖି ନ ପାରି ମିଛଟାରେ ଏତେ ବାହାନା; କିନ୍ତୁ ଏଟା ଆପଣଙ୍କର ଭୟଙ୍କର ଭୁଲ—ଉତ୍କଟ ଭୁଲ୍ । ଜଗତରେ କେଉଁ ଲୋକଟା କବି ନୁହେଁ, ଅବଧାନ ? କେବଳ

ଲେଖିବା ନ ଲେଖିବା କଥା । ଦେଖନ୍ତୁ ବନମାଳୀ ବେଚେହର ଗଭୀର - ଲୋକଟା କାଳଆ, ବେଢ଼ଙ୍ଗରେ ଚନ୍ଦନ ବୋଲି ହୋଇଅଛି, ଆଉ ଖଣ୍ଡେ ହଳଦିଆ ଲୁଗା ପିନ୍ଧିଅଛି । ଆପଣ ଦେଖିଲେ, ମୁଁ ଦେଖିଲି, ତୁମ୍ଭେ ଯାହା ବୁଝିଲ ମୁ ତାହା ବୁଝିଲି । ଜୟଦେବ ଦେଖି ଟିପି ପକାଇଲେ "ଚନ୍ଦନଚର୍ଚ୍ଚିତ ନୀଳ କଳେବର ପୀତ ବସନ ବନମାଳୀ ।" ବୁଝିବା ହେଲେ ଠିକ ? ତୁମ୍ଭେ ଆମ୍ଭେ ଗଲୁଁ ଗାଧୋଇ, ଜୟଦେବ ହେଲେ କବି । ସମସ୍ତେ ଯଦି କବି, ମୁଁ କାହିଁ ଗୁଡ଼ିତଳେ ଯିବି ?

ଆଚ୍ଛା ମୁଁ ରାଜି ହେଲି କବିତା ଲେଖିବି ବୁଝି ସମଜିତ ଲେଖିବାକୁ ହେବ ? ମହାକବି ଭାରବି ବୋଲିଅଛନ୍ତି, "ସହସା ବିଦଧୀତ ନ କ୍ରିୟାଂ—" ଅସ୍ୟାର୍ଥ—"ବୁଝି ବିଚାରି କର୍ମକଲେ, ସେ ଦୋଷ ନ ଲାଗଇ ଭଲେ ।" ବଡ଼େବଡ଼େ ବୋଲି ଯାଇ ଅଛନ୍ତି "ଶହେ ଭକା ଏକ ଲେଖା" ଶହେଥର କହିବ, ଥରେ ଲେଖିବ ନାହିଁ । ଦେଖୁନାହଁ ମୌଲବି ସାହେବ ସ୍ୱୟଂ ରାଜରାଜେଶ୍ୱରୀଙ୍କୁ ଗାଳି ଦେଇ ଦେହ ଝାଡ଼ି ଦେଇ ଗଲେ, ଆଉ ତିଳକ ? ତାଙ୍କ ବେବର୍ତ୍ତୀଙ୍କ ନାମରେ ଦିପଦ କଣ ଲେଖି ଜେଲରେ ପଚୁଅଛନ୍ତି । ଆପେ ବୁଝେ ବୋଧା – ଶୁଣି ଶିଖେ ଅଧା; ଦେଖି ଶିଖେ ଗଧା । ଆମ୍ଭ ସମ୍ପାଦକ ଭାରି ହୁସିଆର ଲୋକ; ଦେଖି ଶିଖିଲେଣି । ଆମ୍ଭେ କବିତା ଲେଖିଦେଲୁଁ; ସେ ତାହା ଉପରେ କୈଫିୟତ କାଟି ବସିଲେ— "ଏ ଲେଖା ଭଲ ମନ୍ଦ ପାଇଁ ଆମ୍ଭେମାନେ ଲଗାପଗା ନୋହୁଁ ।" ଶୁଣିବାରେ ସମ୍ପାଦକ ଜଣେ— "ଆମ୍ଭେମାନେ" ବହୁବଚନ କି ସକାଶେ ? ଓହୋ, ଜଣା ପଡ଼ିଲା ପରି ! ସମ୍ପାଦକ ନିଜେ; ଆଉ ତାହାଙ୍କ ଓଆଲ ଓଆରସ, ଆଉ ତାହାଙ୍କ ସ୍ଥୂଳାଭିଷିକ୍ତ ଉତ୍ତରାଧିକାରୀ କେହି ଲଗା ନୁହନ୍ତି । ସେ କଥା ଭଲମନ୍ଦ ଆମ୍ଭେ ଭୁଲିଲୁଁ । ସମ୍ପାଦକ ମନରେ ବୁଝିଛନ୍ତି, ସେ ଏକା ସିଆଣା, ଆଉ ସମସ୍ତେ ହୁଣ୍ଡା ! ଗ୍ରାହକ ବରଷକୁ ଯେ ଟଙ୍କା ଯୋଡ଼ିଏ ଦେବେ ତାହା ସେ ଅଣ୍ଟିରେ ଖୋସନ୍ତୁ, ଝୁଙ୍କି ମୋ ମୁଣ୍ଡରେ । ଅର୍ଥାତ୍ ମୁଁ ପଣସ ମୁଣ୍ଡାଇବି କଣ୍ଟାଗୁଡ଼ିକ ମୋ ମୁଣ୍ଡରେ ଭୁଷୁ, ମିଠା କୋଷାଗୁଡ଼ିକ ସମ୍ପାଦକ ଟପ୍ ଟପ୍ କରି ଗିଳିବେ । ମାଷ୍ଟ ମିଷ୍ଟର ଏମ୍. ଏସ୍. ଦାସ ସେ ଦିନ ବିଲାତରୁ ଫେରିଆସି କଲେଜ ଘରେ ପାଟିକରି କହିଲେ, "ସ୍ୱାର୍ଥ ତ୍ୟାଗ କରି ଦେଶର ଉପକାର କରି ନ ପାରିଲେ ତୁମ୍ଭେ ମଣିଷ ହୋଇ ପାରିବ ନାହିଁ ।" ସତ—ଠିକ୍ ସତ, ଶହେ ଅଷ୍ଟୋତ୍ତର ଥର ସତ । ସମ୍ପାଦକ ବୋଲୁ-ଅଛନ୍ତି ଦେଶର ଉପକାର ନିମନ୍ତେ "ସାହିତ୍ୟ" ପ୍ରଚାର କରା ଯାଇଅଛି, ସେଥିରୁ ଲେଖକମାନେ ଦେଶହିତୈଷୀ । ସୁତରାଂ ମିଷ୍ଟର ଦାସଙ୍କ ମତରେ ସେମାନେ ମଣିଷ, ଦୁଇଧାଡ଼ି ଲେଖିଲେ ଯଦି ମଣିଷଟାଏ ହୋଇଯିବୁ ଏତେ ସହଜ ବାଟ ଛାଡ଼ିବାର ନୁହେଁ ।

ଆଗେ ବିଚାରି କରାଯାଉ, ଉତ୍କଳ ସାହିତ୍ୟ କଣ—ସେଥିରେ କଣ ଲେଖିବାକୁ ହେବ । ଦେଶର ଅଜ୍ଞାନାନ୍ଧକାର ଦୂର କରିବା ନିମନ୍ତେ ସାହିତ୍ୟ-ଆଲୋକ ଦରକାର । ଆଲୁଅ ତ ନାନାପ୍ରକାର—ମଶାଲ, ଧୂପ, ଲଣ୍ଠନ ଇତ୍ୟାଦି ଇତ୍ୟାଦି ।

ଉପେନ୍ଦ୍ରଭଞ୍ଜ ଚନ୍ଦ୍ରଉଦିଆ - ଆଲୁଅର ଭାରି ଯମକ, ଭାରି ତେଜ, ମାତ୍ର ଭାରି ଧୂଆଁ । ସେ ଧୂଆଁ ବାବୁମାନଙ୍କ ନାକରେ ପଶିବାରୁ ନାକ ବୁଜିଧରି କହିଲେ ଛି ଛି—ଗନ୍ଧି—ଗନ୍ଧି ଅଶ୍ଳୀଳ । ବାବୁମାନେ ନିର୍ଧୂମ ଗ୍ୟାସ ଆଲୁଅ, ହରିକେନ ଲଣ୍ଠନ ଆଲୁଅ ଦେଖିଲେଣି । ଚନ୍ଦ୍ରଉଦିଆରେ ମନ କାହିଁ ରସିବ ? କିନ୍ତୁ ବିଦେଶୀ କାଦ୍ୟ, ନଭେଲ ଲଣ୍ଠନ ଭିତରେ କେତେପ୍ରକାର ଗନ୍ଧ ଅଛି, ବାବୁମାନଙ୍କର ତେତେ ଟହିଲକୁ ଦୃଷ୍ଟ କାହିଁ ? ହେଲା ଗ୍ୟାସ ଲଣ୍ଠନ ଭଲ ନିର୍ଧୂମ ଆଲୁଅ । ମାତ୍ର ସେଥିରେ ଭୁମ୍ଭର କଣ

ବାବୁ ? 'ପର ଲୁଟା ପିନ୍ଧ ଯାତକୁ ଯାଇ, ଲୋକେ ପଚ୍ଛରିଲେ ମୁଣ୍ଡ ହଲାଇ ।' ଯାହା ଆଲୁଅରେ ନାଚ କୁଦ ହେଉଅଛ, ସେ ଗାଲରେ ବୁନ୍ଦୁଡ଼ା ମାରି ଛଡ଼ାଇ ନେଲେ କ'ଣ କରିବ ? ଚନ୍ଦ୍ରଉଦଆ ନଭିଲେ ଯେ ତୁମ୍ଭ ଦେଶ ଅନ୍ଧକାର । ଆଗେ ନିଜେ ଘୋସ ଆଲୁଅ ବାହାର କର, ତେଣିକି ପଛେ ଚନ୍ଦ୍ରଉଦଆ ଫୋପାଡ଼ି ଦେବ ।

ଦୀନବନ୍ଧୁ ଅଭିମନ୍ୟୁ ମସାଲ—ତୁମ୍ଭର ତେଲ ଅର୍ଥାତ୍ ସ୍ନେହ ନ ଢାଳିଲେ ସେ ତ କନା ବଡ଼ାଟାଏ ?

ଜଗନ୍ନାଥ ଦାସ—ବଇଠା-ଘରେ ଘରେ ବଇଠା, ଘରେ ଘରେ ଆଲୁଅ ।

ଦୀପିକା, ସ୍ୱଚ୍ଛୋଦିଣୀ ପ୍ରଭୃତି ଚରଖି ବାଣ—ଦୂରୁଛନ୍ତି, ଘୂରୁଛନ୍ତି, ଚାରିଆଡ଼େ ଝୁଲ ବୁଣି ପଡ଼ୁଅଛି; ଘୂରି ବନ୍ଦହେଲେ କନ୍ଥୁ ଅନ୍ଧକାର । ମୟୂରଭଞ୍ଜରୁ ଏକ ହାଉଇ ବାଣର ପ୍ରଭା ଲଞ୍ଜ ମେଲାଇ ଚର୍କ୍ଷନ କରି ବାହାରିଲା । ଓଡ଼ିଶାରେ ଚହଳ ପଡ଼ିଗଲା, ସମସ୍ତେ ଆଁ କରି ଉପରକୁ ଅନାଇଲେ; ଏ ହାଉଇ କେତେଦୂର ଉଠିବ କିଏ ଜାଣେ ? ବ୍ରହ୍ମଲୋକ ଧ୍ରୁବଲୋକ ପର୍ଯ୍ୟନ୍ତ ଉଠିଯିବ । ଓଡ଼ିଶାର କପାଳ ଫିଟିଲା ।

ପ୍ରଭା ଉଦେ ଦେଖି କବିଏ ଭାଳିଲେ
ଗଲା ଏବେ ସବୁ ଦୁଃଖ ।

କେତିକିନ୍ତୁ କବିତା, ନେବୁ ଟଙ୍କା ଦେଇ
ପଢ଼ିବେ ସକଳ ଲୋକ ।

ଓଡ଼ିଆ କବିଙ୍କ ସାଙ୍ଗରେ ଭୁଲିବାକୁ ହୀନମନ କେହି ଆଉ ଅଛନ୍ତି କି ନାହିଁ, କଲିକତା ଜୁଅଲଜିକେଲ ଗୋଟାରେ ଏରେ ଖୋଜିବାକୁ ମୋହର ଇଚ୍ଛା ଅଛି । ଏମାନଙ୍କ ଦୁର୍ଦ୍ଦଶା ଦେଖି ହାସ୍ୟ-କରୁଣ-ବିମିଶ୍ର ଏକ ଅପୂର୍ବ ଭାବ ମନରେ ଉଦିତ ହୁଏ । କବିଗୁଡ଼ାକ ମନରେ ଫେସି ଉଠିଲା; ସମ୍ଭାଳି ନ ପାରି ଲେଖି ପକାଇଲେ । ଛାପା ଅକ୍ଷର ଦେଖି ତ ସ୍ୱର୍ଗପ୍ରାପ୍ତି । ଏଣେ ଛାପାଖାନା ପିଅଦା ଅଣ୍ଟାଭିଡ଼େ—କବିତା ପଢ଼ିବାକୁ କେହି ନାହିଁ; ସୁତରାଂ ମୁଁ ଯେ ଜଣେ କବି ଏକଥା କେହି ଜାଣିଲେ ନାହିଁ । ଦୁର୍ଦ୍ଦଶା ଧୋଉଣୁ ଶୁଖୁଣୁ ନ ସରେ ।

ବର୍ତ୍ତମାନ ମୟୂରଭଞ୍ଜରେ ସଦାବ୍ରତ—ବିନା ପଇସାରେ କବିତା ଛାପା—ପୁଣି ଲୋକମାନେ ପଢ଼ିବେ ତାହା ଉପରେ ଦକ୍ଷିଣା—ଅମୃତ—ମାହେନ୍ଦ୍ର—ଶୁଭଯୋଗ—ସ୍ୱୟଂ ସ୍ପର୍ଶ । ଅଷାଢ଼ିଆ ପାଣି ପାଇ ବାହୁଣି ବେଙ୍ଗ ପରି ଓଡ଼ିଶାର ଏମୁଣ୍ଡରୁ ସେମୁଣ୍ଡଯାଏ କବିମାନେ ରଡ଼ି ଛାଡ଼ିଲେ । ସବୁ କବିର ଠିକଣା ନ ପାଇ ମୁଁ ସେମାନଙ୍କୁ ତିନି ଶ୍ରେଣୀରେ ଭାଗକରି ପକାଇଲି । ଅର୍ଥାତ୍ ବନ୍ଧାକବି, ଉଲ୍ଲୁକବି ଏବଂ ଫୁଲ-କବି । ସୁଧୁ ମଧୁ ବନ୍ଧାକବିମାନେ ଏକ ଏକ ଚାଲରେ ଚାଲିକା ଦାଉ ! ଧୂର୍ଜ୍ଜଟି ଭଳିଆଙ୍କୁ ଉଲ୍ଲୁକବି ଶ୍ରେଣୀରେ ଧର । ଗଣି ପୋଛି ଧାଡ଼ି ଧାଡ଼ି ଅକ୍ଷର ବସାଇବାରେ ଖୁବ ଟାଣ । ଭାବର ଗାମ୍ଭୀର୍ଯ୍ୟ ଅତଳସ୍ପର୍ଶ, ଶବ୍ଦ-ଲାଳିତ୍ୟ ତଥୈବଚ ! ଅଥଚ ମନ୍ଦଃ କବି ଯଶଃ ପ୍ରାର୍ଥୀ । ଅଜଣା ଫୁଲକବି କଥା ଛାଡ଼ । କଡ଼ ପୁଞ୍ଜିବା ଯାଏ ପ୍ରଭା ପ୍ରକାଶ ପାଇଲା ନାହିଁ । ଅଥ ବଦାକ ବାଣ—

ଗୋଟାଏ ପାହାଡ଼ିଆ କବିତାରେ ବନ୍ଧାକବିଙ୍କ ନାମରେ ଟିକସ ଲଗାଇ ଦେଇ ନନା ଆଗକରି ଶଏ-ଟଙ୍କା ଅଣ୍ଟିରେ ଖୋସି ନେଲେ । ବ୍ରାହ୍ମଣମାନେ ସ୍ୱଜାତି—ହିଂସକ, ଏ କଥାଟା ଠିକ । ବାମଣ୍ଡାରୁ ମାଲୁ ଗୋସାଇଁ ଡାକଦେଲେ, "ଆରେ ଶଠ—ଏ କଣ ? ମାଙ୍କଡ଼ା ପଥରିଆ କବିତାଟାର ଦକ୍ଷିଣା ଶଏଟଙ୍କା ?" ନନା ବୋଇଲେ, "ଆରେ ହଁ ଭଲରେ

[illegible] ମୁଁ ତ ହେଲ ସଭାରତ୍ନ, ମୁଁ ଥାଉଁ ଥାଉଁ ପଧାନଲୋକେ ଟଙ୍କା ବାନ୍ଧି ନେବେ ? ଲଗାଓ ତଣ୍ଡିଆ ବାହାର କର କବିମାନଙ୍କୁ—" ଅତଃପର—

ଶ୍ରୀ ମହାଭାରତ କଥା କରନ୍ତୁ ଶ୍ରବଣ ।
ଗାଇବେ ମୟୂରଭଞ୍ଜେ ବିଶୁଦ୍ଧ ବ୍ରାହ୍ମଣ ॥
ନମାଇବୁଁ ଉଡ଼ିଆରେ ବଙ୍ଗଭାଷା କାଟି ।
ଦେଖିବୁଁ କିଏ ମୋ ଆଉ ପିଟାଇବ ପାଟି ॥
ହରି ହରି ବୋଲ ଭାଇ ଆନନ୍ଦ ମନରେ ।
ଦକ୍ଷିଣା ଗୁଡ଼ିକ ପଡ଼ୁ ବ୍ରାହ୍ମଣ ହସ୍ତରେ ॥

କବିଗୁଡ଼ାକ ତଣ୍ଡିଆ ଖାଇ ଶ୍ରାବଣ କୃଷ୍ଣବାଣିରେ ଗୀତ ଧରିଲେ—

"ଯେତେରୂପେ ମୋ ଭରସା ଥିଲା ରେ
ବ୍ରାହ୍ମଣଟା ସବୁ ସାରି ଦେଲା ରେ ॥"

ଛାଡ଼ନ୍ତୁ ସେ ସବୁ କଥା, ମୂଳକଥା ଧରନ୍ତୁ ! ମୁଁ ସ୍ୱୀକାର କଲି ଲେଖିବି, ମାତ୍ର କଣ ଲେଖିବି ?

ରାଜନୀତି—

ଛୁଡ଼-ଗୁଡ଼ ସେକଥା ତୁଣ୍ଡରେ ଧର ନାହିଁ । ତିଳକ ଆଡ଼କୁ ଅନାଅ ।

ଧର୍ମନୀତି—

କାହାର ଧର୍ମରେ ହାତ ଲଗାଇବାକୁ ଆଇନରେ ଏକାବେଳକେ ମନା ।

ଅର୍ଥନୀତି—

ଅର୍ଥ ମନର୍ଥଂ ସତ୍ୟଂ ସତ୍ୟଂ ।

ବାଣିଜ୍ୟ ନୀତି—

ହସ୍ତରେ ପୁଞ୍ଜି ନାହିଁ ।

କୃଷିନୀତି—

ଦେଶୀ ସବୁ ଖରାପ, ଗୃହବାସ ମଧ୍ୟ ସେହିପରି, ସାଇରେନ୍ ସାହିରକୁ ଗଲେ ମୋ ଜାତି ଯିବ ।

ସମାଜନୀତି—

ହିନ୍ଦୁ ସମାଜ ଏ ପର୍ଯ୍ୟନ୍ତ ଶୁକ ଶୁକ ହେଉଅଛି, ଜୀବନ ଥାଉଁ ଥାଉଁ ସଂସ୍କାର ନିଷିଦ୍ଧ ।

ହେ ସମ୍ପାଦକ ମହାଶୟ, ଦେଖନ୍ତୁ, ମୁଁ ଲେଖିବାକୁ ରାଜିଥିଲି; ମାତ୍ର ଲେଖିବାର କଥା ତ କିଛି ନାହିଁ; କିନ୍ତୁ ଆପଣ ନିରାଶ ହେବେ ନାହିଁ । ମୋ ନନା ବାଇ ମହାନ୍ତି ମୁକୁନ୍ଦ ଦେବଙ୍କ ଅଡ଼େଇ ଅଙ୍କରେ ସ୍ୱର୍ଗକୁ ଯିବାବେଳେ ତାହାଙ୍କ ମହାମୂଲ୍ୟ ପାଞ୍ଜି ସବୁ ହେବା କରି ଯାଇଥିଲେ, ସେଥିରୁ କେତେବଡ଼ା ପାଞ୍ଜି ମୋ ଭାଗରେ ପଡ଼ିଅଛି । ମୁଁ ତାକୁ ତର୍ଜ୍ଜମା କରି ଆପଣଙ୍କୁ ଦେବି । ଆପଣ ଯଦି ଲୋକମାନଙ୍କୁ ଶୁଣାଇ ଦୁଇ ପଇସା ଭିଆଇ ପାରନ୍ତି, ଆପଣଙ୍କ କପାଳ, ଆଉ ମୋ ହାତ ଯଶ—

(ଉତ୍କଳସାହିତ୍ୟ ୨ୟ ୨ୟ ସଂଖ୍ୟା ଫାଲ୍‌ଗୁନ, ୧୩୦୫)

— ——

ଜଣେ ଉପନ୍ୟାସ ଲେଖକ ବୋଲିଅଛନ୍ତି, କୌଣସି ଗ୍ରନ୍ଥ ପଢ଼ିବା ପୂର୍ବେ ଗ୍ରନ୍ଥକର୍ତ୍ତାଙ୍କ ବିଷୟ ଜାଣିବା ଉଚିତ । ସତ କଥା ତ, ଅଜଣା ଲୋକ କଥା ଶୁଣିବାକୁ କିଁଆ ଭଲ ଲଗିବ ? ମାତ୍ର ଆମ୍ଭ ନନା

ଶ୍ରୀଯୁତ ବାଇ ମହାନ୍ତିଙ୍କୁ ନ ଚହ୍ନିବା ଲୋକ ଦେଶରେ କେହି ଥିବା ବିଷୟରେ ଆମ୍ଭର ଘୋର ସନ୍ଦେହ ଅଛି । ଯଦି ଥାଆନ୍ତି, ତଥାପି ସେମାନଙ୍କ ଅସ୍ତିତ୍ୱ ସ୍ୱୀକାର କରିବାକୁ ଆମ୍ଭେ ରାଜି ନାହୁଁ । ନନାଙ୍କ ପାଞ୍ଜିର ନାମ ମଧ୍ୟ ସମସ୍ତେ ଶୁଣି ଅଛନ୍ତି । ତାଙ୍କର ବିଦ୍ୟା, ବୁଦ୍ଧି, ଲେଖା ଦିଗନ୍ତ ପ୍ରସାରିଣୀ । ସମାଜମାଡ, ରାଜମାଡ, ସୁମାଡ କୁମାଡ ସବୁ ମଣ୍ଡରେ ସେ ଖୁବ୍ ଚାଣୁଆ ଥିଲେ । ତଥାପି ନନାଙ୍କ ପାଞ୍ଜି ପ୍ରକାଶ କରିବା ପୂର୍ବେ ତାଙ୍କ ଜୀବନ-ଚରିତ ଲେଖିଥାନ୍ତୁ; କିନ୍ତୁ ସେ ସ୍ୱର୍ଗ ଗମନ କରିଅଛନ୍ତି, ତହିଁର ଖବର ନ ଆସିବା ପର୍ଯ୍ୟନ୍ତ ସେ ବିଷୟରେ ହାତ ଦେଇ ନ ପାରୁ । ପାଞ୍ଜିର ଦୁଇପୃଷ୍ଠା ପାଠ ଆଜି ଶୁଣିବାକୁ ଅବଧାନ ହେଉ ।

## ଜ୍ଞାନ ଗଛର ଫଳ

ସରକାରଙ୍କର ଆଜ୍ଞା, ତୁମ୍ଭେମାନେ ସବୁ କର, ନକଲି ଛୁଇଁବ ନାହିଁ । ସରକାରୀ ମହାପୁରାଣ ବାଇବେଲ ଗ୍ରନ୍ଥରେ ଲେଖାଅଛି, ପରମେଶ୍ୱର ଆଦି ପିତା ମାତା ଆଦମ ଏବଂ ଇବାଙ୍କୁ ଆଦମ ନାମକ ତୋଟାରେ ଛାଡ଼ିଦେଇ କହିଲେ, "ହେ ନର ନାରୀ ! ତୁମ୍ଭେମାନେ ତୋଟାର ସବୁ ଫଳ ଖାଇବ, କେବଳ ଜ୍ଞାନବୃକ୍ଷର ଫଳରେ ହାତ ଦେବ ନାହିଁ ।" ମାତ୍ର ଆଦିମାତା ଇବା ଘରି ଓଲେଇ ଥିଲେ, ସେ ଲୁଚିଇ ଜ୍ଞାନଗଛର ଫଳଟି ଖାଇ ପକାଇଲେ ଏବଂ ଆପଣା ସ୍ୱାମୀଙ୍କୁ ଖୁଆଇଲେ । ଆଦିମାତା ଇବା ଆଚ୍ଛା ଭଲ କାମ କରି ଅଛନ୍ତି । ସେ ଜ୍ଞାନଫଳ ଖାଇବାକୁ ଶିଖାଇ ନଥିଲେ ଆମ୍ଭେମାନେ ଘୋର ଅଜ୍ଞାନ ଅନ୍ଧକାରେ ଥାନ୍ତୁ । ପରମେଶ୍ୱର କି ସକାଶେ ଜ୍ଞାନର ଫଳ ଖାଇବାକୁ ମନା କରିଥିଲେ, ତାହା ଆମ୍ଭଙ୍କୁ ଭଲ ଜଣା । ମନୁଷ୍ୟମାନେ ସ୍କୁଲ କଲେଜରେ ସାଏନ୍ସ ଲଜିକ୍ ଏବଂ ଚୌପାଢ଼ିରେ ସ୍ୱବାକ ଦର୍ଶନ, ନ୍ୟାୟ ପଢ଼ି ତାହାଙ୍କୁ ଅମାନ୍ୟ କରିବେ ଏହି ଭୟରେ ସେ ଜ୍ଞାନ ଫଳ ଖାଇବାକୁ ନିଷେଧ କରିଥିଲେ । ଯାହାହେଉ, ଆଦିମାତା ଇବା ଖୁବ ଭଲ କାମ କରିଅଛନ୍ତି । ଆମ୍ଭେ ପ୍ରସ୍ତାବ କରୁଁ ତାହାଙ୍କୁ ଧନ୍ୟବାଦ ଦେବା ନିମନ୍ତେ ଗୋଟିଏ ସଭା ଆହ୍ୱାନ କରାଯାଉ ।

ଫଳ ପାଚିଲେ ଗଛରୁ ଆପେ ଝଁପ୍ କରି ତଳେ ଝସିପଡ଼େ ଏ କଥା କାହାକୁ ଜଣା ନ ଥିଲା - କେବଳ ନିଉଟନ ଜାଣିଥିଲେ । ଜ୍ଞାନଫଳ ତ ସମସ୍ତେ ଖାଉ-ଅଛନ୍ତି, ଚିହ୍ନିପାରି କିଏ ? ସେଟା କି ସହଜ କଥା ? ବହୁ ଅନୁସନ୍ଧାନ ବହୁ ଆଲୋଚନା ବହୁ ଶାସ୍ତ୍ର ଅଧ୍ୟୟନ କରି ଅଭିଧାନ ଘାଣ୍ଟି ଚକଟି ଆମ୍ଭେମାନେ ଏହି ନିଗୂଢ଼ ତତ୍ତ୍ୱଜ୍ଞାନ ପାଇଅଛୁଁ । ଜଗନ୍ତର ଲୋକଙ୍କ ହିତ କାମନାରେ ଆମ୍ଭେ ସେହି ଫଳଟି ଚହ୍ନାଇ ଦେବୁଁ । ନିଉଟନଙ୍କ ଖ୍ୟାତି ପରି ଆମ୍ଭ ଖ୍ୟାତି ଯେ ଜଗତରେ ରଟନା ହେବ, ସେ ବିଷୟରେ ଆମ୍ଭର କିଛି ମାତ୍ର ସନ୍ଦେହ ନାହିଁ ।

ସେହି ଜ୍ଞାନଗଛର ଫଳଟିର ନାମ "ଖବର କାଗଜ" । ଇଂରେଜ, ଫରାସି, ଜର୍ମାନ, ଆମେରିକାନ ଲୋକମାନେ ଜ୍ଞାନଫଳ ଖୁବ ଖାଆନ୍ତି, ସେଥିସକାଶେ ସେମାନେ ଏଡ଼େ ଜ୍ଞାନୀ । ଫରାସି ଦେଶର ଶଗଡ଼ଆ-ମାନଙ୍କ ପକେଟରେ ମଧ୍ୟ ଜ୍ଞାନଫଳ ଥାଏ । ଇଂଲଣ୍ଡର ଲୋକମାନେ ତେଲ ଲୁଣ ଧୂଆଁପତ୍ର ପରି ଜ୍ଞାନଫଳ କିଣନ୍ତି । ସାନ୍ତାଳ, ଭୂମିଜ, ହାଡ଼ି, ବାଉରି ଘୋର ମୂର୍ଖ, କାରଣ ଜ୍ଞାନଫଳ ସେମାନଙ୍କ ପାଟିରେ ବାଜେ ନାହିଁ । ଓଡ଼ିଆମାନେ—ହାଲକୁ ଟିକିଏ ଟିକିଏ ଚାଖିବାକୁ ଶିଖିଅଛନ୍ତି । ହେ ଉତ୍କଳ ଭାଇମାନେ, ଜ୍ଞାନବୃକ୍ଷର ଫଳ ଜାଣିଲ ତ ? ଗୁଣ ଶୁଣିଲ ତ ? ଏବେ ଖାଅ । ପେଟେ ପେଟେ ଖାଅ । ସତ କଥା; ଆଜିକାଲି ହାଟପାଳିକୁ ହାଟପାଳି ଓଡ଼ିଶାକୁ ଢେର ଜ୍ଞାନଫଳ ଆମଦାନି ହେଉଅଛି; ମାତ୍ର ଏଗୁଡ଼ାକ ଯେ ବିଲାତି ଏପେଲ, ବାଦାମ, ଅଙ୍ଗୁର । ତୁମ୍ଭ ଦେଶୀ ଗଛର ଫଳ କାହିଁ ? ବିଦେଶୀ ଫଳଗୁଡ଼ାକ ଖୁବ୍ ମିଠା,

ସତ କଥା, ମାତ୍ର ବିଦେଶୀ ଫଳଗୁଡ଼ାକ ଓଡ଼ିଆ ପେଟରେ ପଚିବ କିଆଁ ? ଆଉ ପେଟରେ ନ ପଚିଲେ ଦେହରେ ଲଗିବ ନାହିଁ ତ ? ତୁମ୍ଭ ଦେଶୀ ଆମ୍ବ ଖାଅ, ପଣସ ଖାଅ, ବେଲ ଖାଅ । ଏହି ଯେ "ଉତ୍କଳ ସାହିତ୍ୟ" ଦେଖୁଅଛୁ, ଏହା ଗୋଟିଏ ଭଲ ଜ୍ଞାନଫଳ, ସମସ୍ତେ କିଣ, ଖାଅ, ବନ୍ଧୁମାନଙ୍କୁ ନିମନ୍ତ୍ରଣ କରି ଖୁଆଅ ।

(ଉ. ସା. ୨ୟ ଖଣ୍ଡ ୩ୟ ସଂଖ୍ୟା)

---

## ଅତ ହୋମ

ପୁଣ୍ୟାଶ୍ରମ ନୈମିଷାରଣ୍ୟରେ ମହର୍ଷି ଶୁକଦେବ ରାଜା ପରୀକ୍ଷିତଙ୍କଠାରେ ଯେଉଁ ନିଗୂଢ଼ ତତ୍ତ୍ୱ ବିଦ୍ୟାମାନ ପ୍ରକାଶ କରିଥିଲେ ତାହା ଗୁପ୍ତ ଭାଗବତ ମହାପୁରାଣ ନାମରେ କଥିତ ହୁଏ । କଳିଯୁଗରେ ଲୋକମାନେ ଅଳ୍ପାୟୁ ଏବଂ ଅଳ୍ପଜ୍ଞାନ ବିଶିଷ୍ଟ ହେବାର ଏବଂ ଏହି ଚତୁର୍ବର୍ଗ ଫଳଦାୟକ ପ୍ରତ୍ୟକ୍ଷ ମୁକ୍ତିପ୍ରଦ ତତ୍ତ୍ୱବିଦ୍ୟାର ମର୍ମ ହୃଦୟଙ୍ଗମ କରି ନ ପାରି ଏହାକୁ ଅମାନ୍ୟ କରି ମହାପାତକ ଅର୍ଜନ କରିବାର ଜାଣି ଉକ୍ତ ମହାଗ୍ରନ୍ଥ ମହର୍ଷି ଶୁକଦେବ ଆପଣା ଆଶ୍ରମ ଗୃହରେ ଖୋସି ଦେଇଥିଲେ । ଆମ୍ଭର ନନା ସାଆନ୍ତେ ଶ୍ରୀମାନ୍ ବାଇଧର ମହାନ୍ତି ବହୁତ ତତ୍ତ୍ୱାନୁସନ୍ଧାନ ଓ ବହୁ ଗବେଷଣା ଦ୍ୱାରା ଏହା ଅବଗତ ହୋଇ କଳିଯୁଗର ପତିତ ଲୋକମାନଙ୍କ ଉଦ୍ଧାର ବାସନାରେ ଉକ୍ତ ମହାପୁରାଣ ଆବିଷ୍କାର କରି ଅଳ୍ପବୁଦ୍ଧି ବିଶିଷ୍ଟ ଲୋକମାନଙ୍କ ସହଜ ବୋଧ ନିମନ୍ତେ ତାହାର ସଞ୍ଜୀବନ ନାମକ ଅନୁବାଦ ପ୍ରକାଶ କରି ଯାଇ ଅଛନ୍ତି । ଆମ୍ଭେମାନେ ବହୁ ଆୟାସରେ ସ୍ୱୀକାର ପୂର୍ବକ ସାମନ୍ତଙ୍କ ପଞ୍ଜିକା ସ୍ତୂପ ମଧ୍ୟରୁ ଉକ୍ତ ଅନୁବାଦ ସଂଗ୍ରହ କରି ପ୍ରାଣିମାନଙ୍କ କଲ୍ୟାଣ ନିମନ୍ତେ ପ୍ରକାଶ କରୁଅଛୁଁ ।

---

ଶ୍ରୀ ଶ୍ରୀ ଗୁରୁଦେବ ନମଃ ।
ଶ୍ରୀ ଶ୍ରୀ ଶ୍ରୀ ଗୁପ୍ତ ଭାଗବତ ।

ନାରାୟଣଂ ନମସ୍କୃତ୍ୟ – ଏହି ଶ୍ଲୋକ ଉଚ୍ଚାରଣ କରି ଗ୍ରନ୍ଥପାଠ ଆରମ୍ଭ କରିବ ।·

ଶ୍ରୀ ପରୀକ୍ଷିତ ଉବାଚ

ହେ ବ୍ରହ୍ମ ତତ୍ତ୍ୱବିଦ୍, ହେ ଋଷିକୁଳ ପୁଙ୍ଗବ,· ହେ ଶୁକଦେବ, ଆପଣଙ୍କ ଶ୍ରୀ ମୁଖରୁ ବିବିଧ ବ୍ରହ୍ମତତ୍ତ୍ୱବିଦ୍ୟା-ସମ୍ବଳିତ ନିଗୂଢ଼ ତତ୍ତ୍ୱମାନ ଶ୍ରବଣ କରି କୃତାର୍ଥ ହୋଇଅଛୁଁ, ସମ୍ପ୍ରତି ଗୁପ୍ତ ଭାଗବତ ବିଷୟରେ କିଞ୍ଚିତ ଉପଦେଶ ଦେବାକୁ ଆଜ୍ଞା ହେଉ ।

---

ଶ୍ରୀ ଶୁକ ଉବାଚ

ହେ କୁରୁକୁଳ ତିଳକ, ହେ ନୃପତି ଚୂଡ଼ାମଣି, ଆମ୍ଭେ ବୁଝିଲୁଁ ତୁମ୍ଭେ ଜଣେ ଯଥାର୍ଥ ତତ୍ତ୍ୱଦର୍ଶୀ ବ୍ରହ୍ମଜ୍ଞ ଅଟ । ଦୁଗ୍ଧଭାଣ୍ଡରେ ଯେମନ୍ତ ସର—ମଣ୍ଡାପିଷ୍ଟକରେ ପୁର—ମିଷ୍ଟାନ୍ନ ମଧ୍ୟରେ କାକରା, ବ୍ୟଞ୍ଜନ ମଧ୍ୟରେ ସାକରା, ସେହିପରି ସମସ୍ତ ପୁରାଣ ମଧ୍ୟରେ ଗୁପ୍ତଭାଗବତ ସାର ପୁରାଣ ଅଟେ । ସାଧୁହୃଦୟ ନିର୍ମଳଚରିତ୍ର ବହୁଶାସ୍ତ୍ରଦର୍ଶୀ ତତ୍ତ୍ୱଜ୍ଞାନୀ ଲୋକ ବିନା ଅନ୍ୟ ଲୋକ ଏହି ମହାପୁରାଣର ସାରମର୍ମ ହୃଦୟଙ୍ଗମ କରିବାକୁ ସମର୍ଥ ହେବେ ନାହିଁ । ମାତ୍ର ତୁମ୍ଭେ ସବୁ ଗୁଣରେ ନିପୁଣ ଅଛ । ଏଥି ସକାଶେ ତୁମ୍ଭଠାରେ ଅତି ନିଗୂଢ଼ ଗୁପ୍ତ ବିଦ୍ୟାମାନ ପ୍ରକାଶ କରିବାକୁ ପ୍ରସ୍ତୁତ ଅଛୁ । ତୁମ୍ଭର ସମ୍ପ୍ରତି ଯାହା ଯାହା ଜାଣିବାକୁ ଅଭିଳାଷ, ପ୍ରକାଶ କର ।

---

ଶ୍ରୀ ପରୀକ୍ଷିତ ଉବାଚ

ମହର୍ଷିଙ୍କ ଆଜ୍ଞା ପାଇ ବେନହାତ ଯୋଡ଼ ଆପଣା ମସ୍ତକରେ ଥୋଇ ରାଜା ପରୀକ୍ଷିତ ପ୍ରଶ୍ନ କଲେ—ହେ ମହର୍ଷେ, ଏହି ବ୍ରହ୍ମାଣ୍ଡ ମଧ୍ୟରେ ଜମ୍ବୁଦ୍ୱୀପେ ଭରତଖଣ୍ଡେ ଉତ୍କଳ ନାମରେ ଯେଉଁ ପୁଣ୍ୟକ୍ଷେତ୍ର ଅଛି, ଯେଉଁ ପବିତ୍ର ଦେଶର ରେଣୁମାତ୍ର ସ୍ପର୍ଶକରି ଭରତଖଣ୍ଡ ବାସିମାନେ ଆପଣାମାନଙ୍କୁ କୃତାର୍ଥ ଓ ନିଷ୍ପାପ ଜ୍ଞାନ କରୁଅଛନ୍ତି, ପୁଣି ଯେଉଁ କ୍ଷେତ୍ର ସମସ୍ତ ଦେବଦେବୀଙ୍କର ଲୀଳାଭୂମି ଅଟେ, ପୁଣି ଯେଉଁ ଦେଶର ଭୂମି ବିବିଧ ଶସ୍ୟଶାଳିନୀ ପୁଣ୍ୟତୋୟା ନଦୀମାଳିନୀ ଶସ୍ୟଶ୍ୟାମଳା ଏବଂ ଗିରିକୁନ୍ତଳା ଅଟେ, ପୁଣି ପୂର୍ବକାଳରେ ଯେଉଁ ଦେଶବାସିମାନେ ଶୂରବୀର, କବି ଏବଂ ବିବିଧ ଶିଳ୍ପବିଦ୍ୟା ନିପୁଣ ଥିଲେ ଏବଂ ଯେଉଁ ଦେଶବାସିମାନଙ୍କର ଶିଳ୍ପ ସମ୍ଭୂତ ଶୃଙ୍ଗଶୈଳୋପମ ମନ୍ଦିର ମାନଙ୍କ କୀର୍ତ୍ତିବିନାଶୀ କାଳ ବହୁ ଯୁଗ ଯୁଗାନ୍ତରରେ ମଧ୍ୟ ସ୍ପର୍ଶ କରି ପାରିନାହିଁ, ବର୍ତ୍ତମାନ କେଉଁ ମହାପାପ ହେତୁରୁ ସେହି ଉତ୍କଳୀୟମାନେ ହୀନ ଦଶାକୁ ଲଭି ବିଦେଶୀୟ ଲୋକମାନଙ୍କଠାରେ ଦୃଢ଼ମସ୍ତକ ପଶୁବିଶେଷ ନାମରେ ଅଭିହିତ ହେଉଅଛନ୍ତି । ଏହାର କାରଣ ବୋଲିବାକୁ ଆଜ୍ଞା ହେଉ । ହେ ମୁନିପୁଙ୍ଗବ, ଶୁଣି କୃତାର୍ଥ ହେବି ।

———

ରାଜା ପରୀକ୍ଷିତଙ୍କ ପ୍ରଶ୍ନ ଶୁଣି, ତ୍ରିକାଳଜ୍ଞ, ମୁନିଶ୍ରେଷ୍ଠ ଶୁକଦେବ ବିଶୁଦ୍ଧ ଜାହ୍ନବୀ ଜଳରେ ଆଚମନ କରିସାରି ଧ୍ୟାନ ପରାୟଣ ହେଲେ ଏବଂ ଯୋଗବଳରେ ହସ୍ତାମଳକବତ୍ ସମସ୍ତ ବିଷୟ ଦିବ୍ୟନେତ୍ରରେ ଦେଖି ପାରି ବୋଇଲେ—

ଶ୍ରୀ ଶୁକ ଉବାଚ—

ହେ କୁରୁକୁଳ-ଆନନ୍ଦ-ବର୍ଦ୍ଧନ, ହେ ରାଜ ଶ୍ରେଷ୍ଠ, ତୁମ୍ଭେ ଯେଉଁ ଅତି ଗୂଢ଼ ତତ୍ତ୍ୱ ବିଦ୍ୟା ପ୍ରଶ୍ନ କରିଅଛ ତାହାର ବୃତ୍ତାନ୍ତ ବୋଲୁଅଛୁଁ, ଶୁଦ୍ଧ ଚିତ୍ତରେ ଶ୍ରବଣ କର । ପୁଣ୍ୟଭୂମି ଉତ୍କଳର ଅଧିବାସିମାନେ ପରମ ସୁଖରେ ବାସ କରୁଥିଲେ । ସେମାନଙ୍କ ଭକ୍ତିରେ ବଶୀଭୂତ ହୋଇ ଭୂତଭାବନ ଭବାନୀପତି କୈଳାସ ପରିତ୍ୟାଗ ପୂର୍ବକ ଏକାମ୍ର କାନନରେ ଏବଂ ନାରାୟଣ କମଳାକାନ୍ତ ଗୋଲୋକ ଧାମ ତ୍ୟାଗକରି କ୍ଷୀର ସମୁଦ୍ର ତଟରେ ବାସ କରିବାକୁ ଲାଗିଲେ । ସେମାନଙ୍କ ଭେଟ ନିମନ୍ତେ ଦେବତାମାନଙ୍କ ରାଜା ଯେ ଇନ୍ଦ୍ର ଉତ୍କଳଭୂମିକୁ ଗମନାଗମନ କରିବାକୁ ଲାଗିଲେ । ଇନ୍ଦ୍ରଙ୍କ ଗହଣରେ ପୁଷ୍କର ଆବର୍ତ୍ତକ ସମ୍ବର୍ତ୍ତକ ମେଘମାନେ ଆସିବାରୁ ଉତ୍କଳଭୂମିରେ ଜଳପ୍ରାବଲ୍ୟ ହୋଇ ଗ୍ରାମ ଓ ଶସ୍ୟକ୍ଷେତ୍ର ମାନ ଭାସି ଯିବାକୁ ଲାଗିଲା । ସେଥିରେ ବାହୁବଳ ଗର୍ବିତ ଉତ୍କଳୀୟ ମାନେ କଟକ ବାରବାଟୀଠାରେ ଏକ ବିରାଟ ସଭା ବସାଇ ଦେବରାଜ ଇନ୍ଦ୍ରଙ୍କୁ ଶାସନ କରିବା ସକାଶେ ପରାମର୍ଶ ସ୍ଥିର କଲେ । ତେଣୁ ସ୍ୱର୍ଗ-ପୁରକୁ ପାଇକମାନଙ୍କୁ ନେଇଯିବା ସକାଶେ କାଠଯୋଡ଼ି ମଧ୍ୟରୁ ଗୋଟିଏ ଶିଡ଼ୀ ପ୍ରସ୍ତୁତ କରିବାକୁ ଆରମ୍ଭକଲେ । ଗୁପ୍ତଚର ଦେବତା ଏବିଷୟ ଗୁପ୍ତଭାବରେ ସ୍ୱର୍ଗପୁରରେ ଦେବସଭାରେ ଜଣାଇଲା । ତହୁଁ ଦେବରାଜ କ୍ରୋଧ ପ୍ରକାଶ ପୂର୍ବକ ମର୍ତ୍ତ୍ୟକୁ ଓହ୍ଲାଇ ଆସି ଗୋଟାଏ ପଦାଘାତ କରି କାଠଯୋଡ଼ିର ଶିଡ଼ୀକୁ ବଙ୍କାକରି ଦେଲେ—ଏବଂ ଉତ୍କଳୀୟମାନଙ୍କୁ ଫଟେକରି ଏକ ସ୍ଥାନରେ ଶିଡ଼ୀ ଭଙ୍ଗି ଦେବାରୁ ତାହା ଫଟେମୁଖାଘାଟ ନାମରେ କଥିତ ହେଲା ଏବଂ ଦେବରାଜ କ୍ରୋଧରେ ଅଭିଶାପ ଦେଇ କହିଲେ, ହେ ନିର୍ବୋଧ ମନୁଷ୍ୟମାନେ, ଏଥିଉତ୍ତାରେ ତୁମ୍ଭ ବଂଶଧରମାନେ ସାଧାରଣରେ ନିର୍ବୋଧ ବୋଲି ପରିଚିତ ହେବେ ଏବଂ ତୁମ୍ଭମାନଙ୍କର ସମସ୍ତ ଗୌରବ ଲୁପ୍ତ ହେବ—ଆମ୍ଭ ମେଘମାନେ

ଆସି ପ୍ରତିବର୍ଷ ଉତ୍କଳର ପୂର୍ବାଂଶ ଭସାଇ ଦେଉଥିବେ- — ଏବଂ ପଶ୍ଚିମାଂଶରେ ଜଙ୍ଗଲ ବୃଦ୍ଧିହେବ, ସେଥିରେ ବ୍ୟାଘ୍ର ଭଲ୍ଲୁକ ମାନେ ରହି ତୁମ୍ଭମାନଙ୍କୁ କାମୁଡ଼ିବେ ଏବଂ ତୁମ୍ଭେମାନେ ଭରତ ଖଣ୍ଡ ରାଜଧାନୀ ନିବାସୀ ଆଚଣ୍ଡାଳ ଛତିଶବର୍ଣ୍ଣଙ୍କଠାରେ ଜଳବାହକ ଏବଂ ଶ୍ୱେତଦ୍ୱୀପ ବାସିଙ୍କଠାରେ ଉଦ୍ୟାନପାଳ ଏବଂ ବସ୍ତ୍ରରକ୍ଷକ ରୂପେ ନିଯୁକ୍ତ ହୋଇ ଜୀବିକା ନିର୍ବାହ କରିବ ଏହା ସତ୍ୟ, ସତ୍ୟ, ତିବାର ସତ୍ୟ । ଏଥିର ଅନ୍ୟଥା ହେବନାହିଁ । ଦେବରାଜଙ୍କ ଅଭିଶାପ ପ୍ରଭାବରୁ ଉତ୍କଳୀୟମାନେ ହୀନାବସ୍ଥା ପ୍ରାପ୍ତ ହୋଇ "ବିପଦେ ମଧୁସୂଦନ" ସ୍ମରଣ କଲେ । ଉଚ୍ଚରେ ଡାକ ପାଡ଼ି କହିଲେ, "ହେ ମଧୁସୂଦନ,— ହେ ରମାରମଣ, ହେ ଗୋଲୋକବିହାରୀ, ହେ ବଂଶୀଧାରୀ, ଆମ୍ଭମାନଙ୍କୁ ରକ୍ଷାକର; ଦେବରାଜଙ୍କ ଶାପରୁ ଉଦ୍ଧାର କର ।"

ସେ ସମୟରେ ଅର୍ଦ୍ଧରାତ୍ରି ଗତ ହୋଇ ଯାଇଥିଲା, ଭଗବାନ୍ ଲକ୍ଷ୍ମୀକାନ୍ତ ନିଖିଳ ବ୍ରହ୍ମାଣ୍ଡ ମଧ୍ୟରେ ଛପନ୍ନା କୋଟି ଜୀବଙ୍କୁ ପଡ଼ ବାଣ୍ଟି ଦେଇ ଆପେ କଞ୍ଚନ ମଣୋହି ସାରି ପଲଙ୍କରେ ବିଜେ ହୋଇଅଛନ୍ତି, ଲକ୍ଷ୍ମୀ ଠାକୁରାଣୀ ବଡ଼ଆ ରାଙ୍ଗି ପ୍ରଭୁଙ୍କ ହସ୍ତରୁ ବଢ଼ାଇ ଦେଉଅଛନ୍ତି, ଏମନ୍ତ ସମୟରେ ପ୍ରଭୁଙ୍କ ପଲଙ୍କ କମ୍ପିତ ହେବାକୁ ଲାଗିଲା । ଭକ୍ତବତ୍ସଳ ଭଗବାନ୍ ଆର୍ତ୍ତମାନଙ୍କ ଦୁଃଖ ବିମୋଚନ ନିମନ୍ତେ ସେହି ଘୋର ତମିସ୍ରାବ-ଗୁଣ୍ଠିତା ରଜନୀରେ ଯାତ୍ରା କଲେ । ପ୍ରଭୁ ଅନ୍ଧକାର ରାତିରେ ଏକାକୀ ଯାତ୍ରା କରିବାର ଦେଖି ଲକ୍ଷ୍ମୀଠାକୁରାଣୀ ସଙ୍ଗେ ସଙ୍ଗେ ବାହାରିଲେ । ମାର୍ଗରେ ଦସ୍ୟୁବନ୍ତି ଠାକୁରାଣୀ ପ୍ରଭୁଙ୍କୁ ଜଣାଇଲେ, "ହେ ଗୋଲୋକ ପତେ, ଅନୁଗ୍ରହକରି ଦୁଃଖୀ ମାନଙ୍କର ଦୁଃଖ ମୋଚନ କର, ଆମ୍ଭେ ମଧ୍ୟ ସେମାନଙ୍କ ଶସ୍ୟକ୍ଷେତ୍ରରେ ଚିରକାଳ ବିରାଜିତ ଥିବୁଁ ।" ଏଥୁ ଅନନ୍ତରେ ଭଗବାନ୍ ଆକାଶ ମାର୍ଗରେ ବିରାଜିତ ହୋଇ ଶୂନ୍ୟବାଣୀରେ ଉଚ୍ଚୈସ୍ୱରେ ଆଜ୍ଞାକଲେ "ହେ ଉତ୍କଳୀୟମାନେ, ଦେବରାଜ ସତ୍ୟବାଦୀ, ତାହାଙ୍କ ଅଭିଶାପ ଅବ୍ୟର୍ଥ, ତୁମ୍ଭେମାନେ ସେହି ଅଭିଶାପ ପ୍ରଭାବରେ ଅବଶ୍ୟ ଦୁର୍ଦ୍ଦଶାକୁ ଭଜିବ, ମାତ୍ର ସେଥିରୁ ମୁକ୍ତ ପାଇବାର ସନ୍ଧାନ କହୁଅଛୁଁ ଶ୍ରବଣ କର—

"କଳିଯୁଗ ମଧ୍ୟଭାଗରେ ଆମ୍ଭ ନାମ ଧାରଣ କରି ଆମ୍ଭ ଅଂଶରୁ ଏକ ମହାପୁରୁଷ ଜନ୍ମଗ୍ରହଣ କରିବେ । ସେହି ପୁରୁଷ ଶ୍ୱେତ ଦ୍ୱୀପରୁ ଭ୍ରମଣ କରି ଆସି ଏହି ବାରବାଟୀ ପୁଣ୍ୟ କ୍ଷେତ୍ରରେ ରାଜସୂୟ ଅଶ୍ୱମେଧ ଯଜ୍ଞ ସମାନ ଏକ ଅଭିହୋମ ଯଜ୍ଞ ଆରମ୍ଭ କରିବେ, ସେହି ଯଜ୍ଞ ଯାବନିକ ଭାଷାରେ ଏଟ୍ ହୋମ (At Home) ନାମରେ କଥିତ ହେବ— ସେହି ଯଜ୍ଞର ବିଧି ପାଳନ କଲେ ତୁମ୍ଭେମାନେ ଶାପରୁ ମୁକ୍ତ ହୋଇ ପରମ ସୌଭାଗ୍ୟ ଲାଭ କରିବ ।

"ଏହି ଯଜ୍ଞର ବିଧି ତୁମ୍ଭମାନଙ୍କୁ ବୋଲୁଅଛୁ, ମନୋଯୋଗ ପୂର୍ବକ ଶ୍ରବଣ କର । ରାଜସୂୟ ଏବଂ ଅଶ୍ୱମେଧ ଯଜ୍ଞ ପରି ଏହା ମହାଯଜ୍ଞ ଚତୁର୍ବର୍ଗ ଫଳପ୍ରଦ ଅଟେ । ଯଜ୍ଞକର୍ତ୍ତା ଶୁଦ୍ଧାଚାରୀ ହୋଇ ଶନିବାସର ସାୟାହ୍ନ ସମୟରେ ନଗରବାସୀ ଭଦ୍ରଲୋକମାନଙ୍କୁ ଆହ୍ୱାନ ପୂର୍ବକ ସଭାକରିବେ । ସଭ୍ୟମାନେ ଯଥେଷ୍ଟ ପରିମାଣରେ ତାମ୍ବୁଳ ଚର୍ବଣ ଏବଂ ଧୂମ୍ରପାନ କରି ଗୋଟିଏ ନ୍ୟସନଲ ବଙ୍କ ( National bank ) ସ୍ଥାପନ କରିବେ । ସେହି ବଙ୍କ ପାଣ୍ଠି ଓଡ଼ିଶାର ସର୍ବଶ୍ରେଣୀର ଲୋକଙ୍କଠାରୁ ସଂଗ୍ରହ କରାଯିବ । ଯେଉଁମାନେ ବଙ୍କରେ ମୁଦ୍ରା ନ୍ୟସ୍ତ କରିବେ, ପ୍ରତି ସମ୍ବତ୍ସରରେ ସେମାନଙ୍କୁ ଲାଭ ଦୃଷ୍ଟିରେ ବୃଦ୍ଧି ଦିଆଯିବ । ବଙ୍କ ଧନରେ ଉତ୍କଳର ଜଙ୍ଗଲ ମାହାଲ ଓ ସମୁଦ୍ର କୂଳବର୍ତ୍ତୀ ପତିତ ଭୂମି କର୍ଷଣ କରାଯାଇ ଚା, ନୀଳ ପ୍ରଭୃତି ଲାଭକର କୃଷିମାନ କରାଯିବ ଏବଂ ଅନ୍ୟଲୋକଠାରୁ ସ୍ୱର୍ଣ୍ଣ, ରୌପ୍ୟ ଏବଂ ଭୂମି ପ୍ରଭୃତି ରଖି ବୃଦ୍ଧିରେ ମୁଦ୍ରା ଋଣ ଦେବେ ଏବଂ ଉତ୍କଳ ଭୂମିର

ଲ ପ୍ରାପ୍ତ ଶିଳ୍ପମାନଙ୍କର ଉନ୍ନତି ବିଧାନ କରି ସେହି ଶିଳ୍ପଜାତ ଦ୍ରବ୍ୟମାନ ବାଣିଜ୍ୟ ନିମନ୍ତେ ବିଦେଶକୁ ପ୍ରେରଣ କରିପିବ । ହେ ଉତ୍କଳୀୟମାନେ, ଆମ୍ଭର ଏହି ବର ଗ୍ରହଣ ନ କଲେ କଦାଚ କଦାଚ ଇନ୍ଦ୍ର ଶାପରୁ ମୁକ୍ତ ହେବନାହିଁ—

ଏତେକ ବୋଲି ଭଗବାନ,
ଶୂନ୍ୟରେ ହେଲେ ଅନ୍ତର୍ଦ୍ଧାନ ।
ଗୁପତେ ଭାଗବତ କଥା,
ଶୁଣିଲେ ମରେ ଦେହ ବ୍ୟଥା ।
ଯେ ଲୋକ ପଇସାର ରଙ୍କା,
ପାଇବ ଟଣ ଟଣ ଟଙ୍କା ।
ଅପତ୍ୟ ନାହିଁ ଯାହା ଘରେ,
ତା ପୁଅ ଡେଇଁବ ଦାଣ୍ଡରେ ।
ସମ୍ପଦ ଯିବ ଘରେ ଭରି,
ସୁଖ ତା ବୋଇଲେ ନ ସରି ।
ଯେ କରେ ଭକ୍ତିରେ ଶ୍ରବଣ,
ସାଧୁ ଭକତ ସେହି ଜଣ ।
ଅମାନ୍ୟ କରିବ ଯେ ଗୀତ,
ଦଣ୍ଡ ପଇବ ସମୁଚିତ ।
ନିଶ୍ଚେ ସେ ବୁଢ଼ା ହେବ କାଳେ,
ପାଚିଣ ଯିବ ମୁଣ୍ଡ ବାଳେ ।
ଖସି ପଡ଼ିବ ଦାନ୍ତମାନ,
ଚୋବାଇ ନ ପାରିବ ପାନ ।
ଅମାନ୍ୟ କଲେ ଗୀତ ଶୁଣି,
ମୁଣ୍ଡରେ ଚଢିବେ ଉକୁଣୀ ।
ନ କର ଗ୍ରନ୍ଥ ଉପହାସ,
ଗୀତେ ଭଣିଲେ ବେଦବ୍ୟାସ ।
ବାଇ ମହାନ୍ତି ଅନୁବାଦ,
ଶ୍ରବଣେ ତୁଟଇ ପ୍ରମାଦ ।

ଇତି ଶ୍ରୀ ଗୁପ୍ତଭାଗବତେ ମହାପୁରାଣେ ପ୍ରଥମସ୍କନ୍ଧେ ଶୁକ ପରୀକ୍ଷିତ ସମ୍ବାଦେ 'ଅଷ୍ଟ ହୋମ' ନାମ ସାର୍ଦ୍ଧ ଦୁଇ ଅଧ୍ୟାୟ ।

ଶ୍ରୀ ପଞ୍ଚୁଚନ୍ଦ୍ର ଧୀରେନ୍ଦ୍ର ମହାନ୍ତି

( ଉ. ସା. ୨ୟଖଣ୍ଡ ୪ର୍ଥ ସଂଖ୍ୟା ବୈଶାଖ ୧୩୦୫ )

---

ଧର୍ମବକ ଧର୍ମପୁତ୍ର ଯୁଧିଷ୍ଠିରଙ୍କୁ ଚାରୋଟି ସଓ୍ୱାଲ କଲେ—

୧ -- କା ଚ ବାର୍ତ୍ତା ?
୨—କିମାଶ୍ଚର୍ଯ୍ୟମ୍ ?
୩—କଃ ପନ୍ଥା ?
୪—କଶ୍ଚ ମୋଦତେ ?

ସଓ୍ୱାଲରେ ଯୁଧିଷ୍ଠିର ଯେଉଁ ଯବାବ ଦେଲେ, ତାହା ଠିକ ନ ହେବାରୁ, ନନା ପାଞ୍ଜିରେ ନିମ୍ନଲିଖିତ ଜବାବ ଟିପି ରଖି ଯାଇଅଛନ୍ତି—

୧—'ସାହିତ୍ୟ'ରେ ଛପା ହୁଏ ନାନାରୂପ କଥା
ଆହେ ବାରଚର ଜାଣ ତାହା ନାମ ବାର୍ତ୍ତା ।

୨—ଡାକରେ ପଠାଇ ଦେଇ 'ଉତ୍କଳ ସାହିତ୍ୟ'
ସଂପାଦକ ଚିଠି ଲେଖୁଛନ୍ତି ନିତ୍ୟ ନିତ୍ୟ ।
ଗ୍ରାହକ ଦେବାକୁ ମୂଲ୍ୟ କରେ ଧରିବରଂ
ଆହେ ଧର୍ମବକ କିମାଶ୍ଚର୍ଯ୍ୟ ମତଃ ପରଂ ।

୩—ଇଂଲଣ୍ଡ ଜର୍ମାନ ଫ୍ରାନ୍ସ ଗ୍ରୀସ ଆମେରିକା,
ସମସ୍ତେ ପଢ଼ନ୍ତି ବହୁ ମାସିକ ପତ୍ରିକା ।
ଦେଶର ଉନ୍ନତି ହେବ ପାଳିଲେ ସେ କଥା,
ଆହେ ଧର୍ମବକ ମହାଜନ ଗତ ପନ୍ଥା ।

୪ ବନଯାଜ କାମକରି ପଡ଼ିଥିବ ଥକ
ଗଛତରେ କୋଠରୀ ମଧ୍ୟେ ପକାଇ ଚଉକ,
"ଉତ୍କଳ ସାହିତ୍ୟ" ଖଣ୍ଡ ପଢ଼ ବସି ବସି,
ଆହେ ଧର୍ମବକ ହେବ ଭାରି ମନ ଖୁସି ।

ଶ୍ରୀ ପଞ୍ଚୁଚନ୍ଦ୍ର ଧୀରେନ୍ଦ୍ର ମହାନ୍ତି

(ଉ: ସା: ୩ୟ ଖଣ୍ଡ ୭ମ ସଂଖ୍ୟା ଶ୍ରାବଣ ୧୯୦୭)

---

## ସିରାଜ ଉଦ୍ଦୌଲାଙ୍କ ଗୃହଶାଳୀ ଏବଂ ଗୁରୁଦକ୍ଷିଣା

ଆମ୍ଭେମାନେ ପିଲାଦିନରୁ ଶୁଣି ଆସୁଅଛୁଁ, ବଙ୍ଗ ବିହାର,ଓଡ଼ିଶାର ଶେଷ ସ୍ୱାଧୀନ ନବାବ ସିରାଜଉଦ୍ଦୌଲା ଜଣେ ଭାରି ଅତ୍ୟାଚାରୀ ନୃଶଂସ ଏବଂ ପରସ୍ୱାପହାରକ ଥିଲେ । ଯୌବନ, ଧନ, ସମ୍ପତ୍ତି, ପ୍ରଭୁତ୍ୱ, ଅବିବେକତା ଏହି ଗୁଣଗୋଟି ଏକାଧାରରେ ବର୍ତ୍ତମାନ ଥିବାରୁ କୌଣସି ପ୍ରକାର ଦୁଷ୍କାର୍ଯ୍ୟ ତାହାଙ୍କ ପକ୍ଷରେ ଅକରଣୀୟ ନ ଥିଲା । ମାନୀର ମାନସମ୍ଭ୍ରମ, ଧନୀର ଧନସମ୍ପତ୍ତି ତାହାଙ୍କ ରାଜତ୍ୱ ସମୟରେ ରକ୍ଷାକରିବା ଦୁରୂହ ବ୍ୟାପାର ହୋଇ ପଡ଼ିଥିଲା । ଯୁବତୀ ସୁନ୍ଦରୀ କୁଳାଙ୍ଗନାମାନେ ନିଶ୍ଚିନ୍ତ ମନରେ ନିଦ୍ରା ଯାଇ ପାରୁ ନ ଥିଲେ । ଏ ସମସ୍ତ ଇଂରେଜୀ ଇତିହାସର କଥା, ଲେଖକ ଅବଶ୍ୟ ଇଂରେଜ । ଆମ୍ଭେମାନେ ଚିରକାଳ ଏକତରଫା କଥା ଶୁଣି ଶୁଣି ଏକ ପ୍ରକାର ସିଦ୍ଧାନ୍ତରେ ଉପନୀତ ହୋଇ ପଡ଼ିଅଛୁଁ । ବର୍ତ୍ତମାନ କୌଣସି କୌଣସି ବଙ୍ଗ ଲେଖକ (ଅବଶ୍ୟ ଇତିହାସବେତ୍ତା) ସିରାଜ ଉଦ୍ଦୌଲାଙ୍କ ନିର୍ଦ୍ଦୋଷିତା ସପ୍ରମାଣ ଏବଂ ନ୍ୟାୟପରତା ଓ ମହତ୍ତ୍ୱ ପ୍ରତିପନ୍ନ କରିବା ନିମନ୍ତେ ବିବିଧ ଯୁକ୍ତି ପ୍ରୟୋଗପୂର୍ବକ ନାନା ପ୍ରସ୍ତାବର ଅବତାରଣା କରୁଅଛନ୍ତି । ସେମାନଙ୍କ ମତରେ ସିରାଜ ସମ୍ବନ୍ଧୀୟ ଇତିହାସ ଲିଖିତ ବିଷୟ ସର୍ବୈବ ମିଥ୍ୟା, ଲେଖକମାନେ ଘୋର ମିଥ୍ୟାବାଦୀ, ସିରାଜଙ୍କ ନିତାନ୍ତ ପୈଶାଚିକ କାର୍ଯ୍ୟ ଯେ ଅନ୍ଧକୂପ ହତ୍ୟା—ସେଇଟା କେବଳ ବିଦ୍ୱେଷକଳୁଷିତ କାଳ୍ପନିକ କଥା ମାତ୍ର । ସେମାନଙ୍କର ପ୍ରଧାନଯୁକ୍ତି ଏହି ଯେ, ଅନ୍ଧକୂପ ବୋଲି ଗୋଟିଏ ଘର ଥିଲେ, ତାହାର କାନ୍ଥଭିତ ଥାଆନ୍ତା ? ନବ ଲେଖକମାନେ ଆହୁରି ମଧ୍ୟ ପ୍ରମାଣ କରିବାକୁ ଯାଉଅଛନ୍ତି ଯେ, ସିରାଜ ଆକବରଙ୍କ ପରି ଜଣେ ନ୍ୟାୟପର ଏବଂ ନେପୋଲିୟନଙ୍କ ପରି ବୀର ଥିଲେ—ଇତ୍ୟାଦି ଇତ୍ୟାଦି ।

ଆମ୍ଭେମାନେ ବୋଲୁଁ ତଥାସ୍ତୁ - କାରଣ ଆମ୍ଭେମାନେ ଇତିହାସଜ୍ଞ ନୋହୁଁ, ମଧ୍ୟ ସିରାଜ ମାମଲାର ପୁରୁଣା ନଥି ପତ୍ର କିଛି ଦେଖିବାକୁ ସୁଯୋଗ ପାଇନାହୁଁ, ଏ କ୍ଷେତ୍ରରେ ସପକ୍ଷରେ ବା ବିପକ୍ଷରେ କିଛି କହିବା କଥା ନିତାନ୍ତ ଅପରିଣାମଦର୍ଶିତାର କାର୍ଯ୍ୟ ଅଟେ । ତେବେ ଏତିକ ମାତ୍ର କଥା ସର୍ବବାଦିସମ୍ମତ ଯେ—ସେ (ନବାବ ସିରାଜଉଦ୍ଦୌଲା) ନିତାନ୍ତ ତୁଚ୍ଛ କାରଣରେ ତାହାଙ୍କ ମାତୃସ୍ଥାନୀୟା ପୂଜନୀୟା ଖୁଡ଼ୀଙ୍କୁ ପାଣିରେ ବୁଡ଼ାଇ ମାରି ପକାଇଥିଲେ । ଏ କଥା ନିଶ୍ଚୟ ଯେ ରାଜବଲ୍ଲଭ, ଉମୀଚାନ୍ଦ, ଜଗତ୍ ସେଠ ପ୍ରଭୃତି ଦେଶର ମହାମାନ୍ୟ ରାଜଭକ୍ତ ପ୍ରବୀଣ ଲୋକମାନେ ସିରାଜ ବିନାଶର ପ୍ରଧାନ ଚକ୍ରାନ୍ତକାରୀ ଅଟନ୍ତି, ଏ କଥା ଅବଶ୍ୟ ସମସ୍ତଙ୍କୁ ସ୍ୱୀକାର କରିବାକୁ ହେବ ଯେ, ପୂଜନୀୟା ପ୍ରାତଃସ୍ମରଣୀୟା ଦାନଶୀଳା ସାକ୍ଷାତ୍ ଦୟାର ମୂର୍ତ୍ତିମତୀ ଦେବୀ ରାଣୀ ଭବାନୀଙ୍କ ଅମଙ୍ଗଳକାମନା ସିରାଜ ଅତିକ୍ରମ କରି ପାରିନାହାନ୍ତି । ଏ ଉତ୍ତରରେ କି ତାହାଙ୍କର ସଚ୍ଚରିତ୍ରତା ଓ ନ୍ୟାୟପରତାର ପ୍ରମାଣ ସଂଗ୍ରହ କରିବାର ଆବଶ୍ୟକ ହେବ ? ଆମ୍ଭେମାନେ ସିରାଜଙ୍କ ଗୃହଜୀବନ ଏବଂ ଗୁରୁ ଦକ୍ଷିଣା ସମ୍ବନ୍ଧରେ ଦୁଇଗୋଟି ଘଟନା ଶୁଣିଅଛୁଁ ।

ପିଲାଦିନେ ପାର୍ଶି ପଢ଼ିବା ସମୟରେ ସିରାଜଙ୍କର ଗୋଟିଏ ସହପାଠୀ ପିଲା ଥିଲା । ସେହି ନିର୍ବୋଧ ପିଲାଟା ଦିନକରେ ଦୁଇପୃଷ୍ଠା ପାଠ ବେଶି ପଢ଼ିଯିବାରୁ ନବାବ ପିଲାଟାକୁ ମାଡ଼ବସି ତାହାର ଆଖି ଖୋଳି ପକାଇଲେ । ଏକଥା ବୃଦ୍ଧ ନବାବ ଆଲିବର୍ଦ୍ଦିଙ୍କ କାନରେ ପଡ଼ିବାରୁ ସ୍ନେହପରିପୂର୍ଣ୍ଣ ନବାବ କହିଲେ, "ଅବଶ୍ୟ, ଅବଶ୍ୟ ଆମ୍ଭ ସିରାଜ ହେଉଛି ମୁଲୁକର ନବାବ । ଏ ବେଆଦବ ପିଲାଟା ପାଠରେ ନବାବଙ୍କୁ ଜିଣିବାକୁ ଚାହୁଁଥିଲା ।"

ଆଉ ଗୋଟିଏ କଥା ଶୁଣନ୍ତୁ, ସିରାଜଉଦ୍ଦୌଲା ନବାବୀ ତକ୍ତରେ ବସିବା ମାତ୍ରକେ ପ୍ରଥମେ କୁଲିଖାଁଙ୍କୁ ତଲବ କଲେ । କୁଲିଖାଁ ସିରାଜଙ୍କ ଶିକ୍ଷାଗୁରୁ । ପିଲାଦିନେ ପାର୍ଶି ପଢ଼ାଇଥିଲେ । ଓସ୍ତାଦଜୀଙ୍କୁ ତଲବ ହେବାରୁ ସମସ୍ତ ଲୋକେ ନବାବଙ୍କୁ ଧନ୍ୟ ଧନ୍ୟ କହିବାକୁ ଲାଗିଲେ । ନବାବସାହେବ ଭାରି ଗୁରୁଭକ୍ତ । ସିଂହାସନରେ ବସି ପ୍ରଥମେ ଓସ୍ତାଦ୍‌ଜୀଙ୍କର ଉନ୍ନତିର ପଦ କଳ୍ପନା କଲେ । କେହି କେହି ନିକଟରେ ଖାସ୍ ମୁନ୍‌ସୀଗିରିରେ ତାହାଙ୍କୁ ଦେଖିଥିଲେ । କୁଲିଖାଁ ସହର ମଧ୍ୟରେ ଜଣେ ବିଖ୍ୟାତ ମୌଲବୀ ଅଟନ୍ତି, ଆରବୀ ଇଲମରେ ତାଙ୍କ ବରାବର ଦରବାରରେ କେହି ନ ଥିବାର ଶୁଣାଅଛି, ବୟସରେ ପ୍ରବୀଣ, ନବାବ ବଂଶର ଶିକ୍ଷାଗୁରୁ । କିନ୍ତୁ ତାଙ୍କ ଘରେ ଲକ୍ଷ୍ମୀସରସ୍ୱତୀଙ୍କ ବିବାଦ ମୀମାଂସା ହୋଇ ନ ଥିବାରୁ ସୁଖରେ ସଂସାର ଚଳେ ନାହିଁ । ନବାବସାହେବଙ୍କ ତଲବ ପାଇ ମୌଲବୀସାହେବ ଦରବାରୀ ପୋଷାକ ପିନ୍ଧି ତରବର ହୋଇ ଧାଇଁଲେ । ଯିବାବେଳେ ବାଟ ଦୁଇପାଖରୁ ଶତ ଶତ ଲୋକ ତାହାଙ୍କୁ ସଲାମ କରିବାକୁ ଲାଗିଲେ । କାରଣ, କଥାଟା ସହର ମଧ୍ୟରେ ରାଷ୍ଟ୍ର ହୋଇପଡ଼ିଥିଲା । ଅନ୍ୟଦିନେ ଗାଁ ମାଇକିନିଆମାନେ ମିଆଁଙ୍କ ଦୁଆର ମାଡ଼ନ୍ତି ନାହିଁ । ଆଜି ପଲପଲ ଜମା ହୋଇ ମିଆଁଣୀଙ୍କୁ ସଲାମକରି ତାହାଙ୍କ ନସିବ ଫେରିବ ଏବଂ ସେ ଯେ ହାତୀରେ ଚଢ଼ି ଦରବାରରୁ ଫେରିବେ ଇତ୍ୟାଦି କଥା ଜଣାଉଅଛନ୍ତି । ମିଆଁଣୀ ଖୁସିଟାଏ ହୋଇ କହିଲେ, 'ଆଲ୍ଲା ତାଲ୍ଲାକା ମରଜି ।'

କୁଲିଖାଁ ସିଂହାସନ ସାକ୍ଷାତରେ ଉପସ୍ଥିତ ହୋଇ ଦସ୍ତୁର ମୁତାବକ୍ ଭୂମି ଏବଂ ମସ୍ତକ ହସ୍ତଦ୍ୱାରା ସ୍ପର୍ଶକରି ତିନଥର କୁର୍ନିଶ କଲେ । ନବାବସାହେବ ତାହାଙ୍କୁ ଅନାଇ ଗମ୍ଭୀର ସ୍ୱରରେ କହିଲେ, "କି ରେ ଆମ୍ଭଙ୍କୁ ପାଠ ନ ଆସିବାରୁ ଦୁଇବେତ ପିଟିଥିଲୁ, ତୋର ୟାଦ୍ ଅଛି ତ ? ଆମ୍ଭେ ଯେ ନବାବ ହେବୁଁ, ଏ'କଥା ତୋତେ ଜଣା ନ ଥିଲା ପରା । ଜଲ୍ଲାଦ—ଇସ୍‌କୁ ଦୋ ଟୁକ୍‌ରା କର୍ ।" ଜଲ୍ଲାଦ କିଞ୍ଚିତ୍ ବିଳମ୍ବ କରିବାରୁ, ନବାବ ଖପା ହୋଇ ଗମ୍ଭୀର ସ୍ୱରରେ କହିଲେ, "ଜଲ୍‌ଦି ହୁକୁମ ତାମିଲ କର, ନଚେତ୍ ଆମ୍ଭେ ନିଜେ ଯାଇ ତୁମ୍ଭ ଦୁଇଜଣଙ୍କୁ ଏକଜାଗା କରିଦେବୁ ।" ଅତଃପର ଘଟନା ଲେଖିବା ଅନାବଶ୍ୟକ । ଦରବାରର ଲୋକମାନେ ଭୟରେ ଦୀର୍ଘନିଶ୍ୱାସଟାଏ ମଧ୍ୟ ପକାଇ ପାରିଲେ ନାହିଁ ।

( ଉ: ସା: ୩ୟ ଖଣ୍ଡ, ୭ମ ସଂଖ୍ୟା, ୧୮୯୭ )

---

## ଉତ୍କଳ ଭାଷାର ଭୂତ ଭବିଷ୍ୟତ୍

ତିରିଶ ବର୍ଷରୁ ଊର୍ଦ୍ଧ୍ୱକାଳର କଥା, ସେ ସମୟରେ ବର୍ତ୍ତମାନ ପ୍ରଚଳିତ ଶିକ୍ଷାବିଭାଗର ବାଲ୍ୟାବସ୍ଥା ଉତ୍କଳର ସମସ୍ତ ସ୍କୁଲ ସଂଖ୍ୟା ଦକ୍ଷିଣହସ୍ତର ଅଙ୍ଗୁଳି-ସମଷ୍ଟିର ସଂଖ୍ୟା ଅତିକ୍ରମ କରୁ ନ ଥିଲା । ମୁଦ୍ରିତ ଉତ୍କଳ ପୁସ୍ତକ ସଂଖ୍ୟା ୬ ଖଣ୍ଡ ମାତ୍ର * । ବିଦ୍ୟାଳୟ-

* ୧ ନୀତିକଥା ୩ ଭାଗ, ୨ ନୀତିବୋଧ, ୩ ହିତୋପଦେଶ, ୪ ସଟନ ଇତିହାସ, ୫ ଲେପ୍ସି ବ୍ୟାକରଣ, ୬ ବତିଶ ସିଂହାସନ ।

ମାନଙ୍କରେ ଇତିହାସ, ସାହିତ୍ୟ, ଭୂଗୋଳ, ଗଣିତ ପ୍ରଭୃତି ବଙ୍ଗଭାଷାରେ ପଠିତ ହେଉଥିଲା, ନାମ ମାତ୍ର ଖଣ୍ଡିଏ ସାହିତ୍ୟ ଉତ୍କଳ ଭାଷାରେ ଥିଲା । ସମସ୍ତ ଉତ୍କଳରେ ଜଣେ ମାତ୍ର ଡେପୁଟି ଇନସ୍‌ପେକ୍ଟର । ସେ ସ୍କୁଲ ସମୂହରେ ହର୍ତ୍ତାକର୍ତ୍ତା ବିଧାତା ଥିଲେ । ସେ ମଧ୍ୟ ବିଦେଶୀ ସାଲତମାମୀ ରିପୋର୍ଟଟି ସୁନ୍ଦର ଭାଷାରେ ସଜାଇ ଇନ୍‌ସ୍ପେକ୍‌ଟର ସାହେବଙ୍କ ଅଫିସକୁ ପଠାଇବା ସେମାନେ ଏକମାତ୍ର କର୍ତ୍ତବ୍ୟ ବୋଲି ମଣୁଥିଲେ ।

ସେହି ସମୟରେ ବାଲେଶ୍ୱର ଜିଲା ସ୍କୁଲରେ ଜଣେ ପଣ୍ଡିତ ନିଯୁକ୍ତ ଥିଲେ । ସେ ବଙ୍ଗଦେଶୀ, ନାମ କାନ୍ତିଚନ୍ଦ୍ର ଭଟ୍ଟାଚାର୍ଯ୍ୟ, ସ୍କୁଲରେ ଓଡ଼ିଆ ପଢ଼ାଇବା ପାଇଁ ତାହାଙ୍କ ପ୍ରତି ଆଦେଶ ହେଲା । ଆପେ ଉତ୍କଳଭାଷା ଶିଖିବାକୁ ଲାଗିଲେ; କିନ୍ତୁ ଆପେ ପଢ଼ି ପିଲାମାନଙ୍କୁ ପଢ଼ାଇବା ତାହାଙ୍କର ମନୋମତ ହେଲା ନାହିଁ । ବିଶେଷ ପରିଶ୍ରମ କରି ଅସାରଯୁକ୍ତିପୂର୍ଣ୍ଣ ଖଣ୍ଡିଏ ପୁସ୍ତକ ଲେଖିଲେ, ତାହାର ନାମ 'ଓଡ଼ିଆ ସ୍ୱତନ୍ତ୍ର ଭାଷା ନୁହେ' । ଏହା ବଙ୍ଗ ଭାଷାର କଦର୍ଯ୍ୟ ଅପଭ୍ରଂଶ ମାତ୍ର; ଅର୍ଥାତ୍ ବଙ୍ଗଭାଷାରେ କେତେ ଗୁଡ଼ିଏ କଦର୍ଯ୍ୟ ଜଙ୍ଗଲି ଭାଷା ମିଶି ଓଡ଼ିଆରୂପେ ପରିଣତ ହୋଇଛି । ଏଥିକୁ ଉତ୍କଳଭାଷାକୁ ଏକାବେଳକେ ଓଡ଼ିଶାରୁ ଉଠାଇ ଦେବା ଉଚିତ । ସେହି ସମୟରେ ସରକାରୀ କାର୍ଯ୍ୟ ଉପଲକ୍ଷରେ ଉତ୍କଳରେ ବାସ କରୁଥିବା ସମସ୍ତ ବଙ୍ଗବାସୀ କାନ୍ତି ବାବୁଙ୍କର ପୃଷ୍ଠପୋଷକତା କରିବାକୁ ଲାଗିଲେ । ବାଲେଶ୍ୱରବାସୀ କେତେଜଣ ଯୁବକ ମାତୃଭାଷା ରକ୍ଷା ନିମନ୍ତେ ଭୟଙ୍କର ଆନ୍ଦୋଳନ କରିବାକୁ ଲାଗିଲେ । କଟକରେ "ଉତ୍କଳଦୀପିକା" ସେହି ସମୟରେ ଆପଣା କର୍ତ୍ତବ୍ୟ କର୍ମ ସାଧନାରେ ତ୍ରୁଟିକରି ନ ଥିଲେ । ଆନ୍ଦୋଳନ କ୍ରମଶଃ ବୃଦ୍ଧି ପ୍ରାପ୍ତ ହୋଇ ରାଜପୁରୁଷମାନଙ୍କ କର୍ଣ୍ଣଗୋଚରହେଲା । ଉତ୍କଳର ତାତ୍କାଳିକ କମିଶନର ମହାମତି ରେଭେନ୍‌ସା ଏବଂ ବାଲେଶ୍ୱର ଜିଲ୍ଲାର କଲେକ୍‌ଟର ଭାଷାତତ୍ତ୍ୱବିତ୍ ଶ୍ରୀଯୁକ୍ତ ବାମସ୍ ସାହେବ ମହୋଦୟମାନଙ୍କ ଆଦେଶରେ ଉତ୍କଳ ବିଦ୍ୟାଳୟମାନଙ୍କରୁ ବଙ୍ଗଭାଷା ଏକାବେଳକେ ବିଦାୟ ପ୍ରାପ୍ତ ହେଲା । ଉତ୍କଳର ଭାଷାଇତିହାସର ଏହା ଗୋଟିଏ ନିତାନ୍ତ ଗୁରୁତର ଏବଂ ବିଶେଷ ଘଟନା ଅଟେ । ଉତ୍କଳବାସୀମାନେ ଚିରକାଳ ଏହି ମହାତ୍ମାମାନଙ୍କ ନାମ ସ୍ମରଣ କରିବେ ।

ସେହି ଦିନଠାରୁ ଅଦ୍ୟାବଧି ଆମ୍ଭେମାନେ କୌଣସି କୌଣସି ବଙ୍ଗବାସୀଙ୍କ ମୁଖରୁ ସର୍ବଦା ଶୁଣି ଆସୁଅଛୁଁ, କେଉଁଦିନ ହେଲେ ଉତ୍କଳଭାଷା ଉଠିଯିବ । ଆମ୍ଭେମାନେ କିପରି ଏହି ଭବିଷ୍ୟତ୍ ବାଣୀ ସମ୍ବନ୍ଧରେ ସନ୍ଦିହାନ ହେବୁ ? ପୃଥିବୀରେ କିଛି ହିଁ ଚିରସ୍ଥାୟୀ ନୁହେ । ଶତଯୁଗ ପରେ ହେଉ ବା ସହସ୍ର ଯୁଗାନ୍ତରେ ହେଉ, ମହାପ୍ରଳୟ ସମୟରେ ଉତ୍କଳ ଦେଶ ସହିତ ଉତ୍କଳ ଭାଷା ନିଶ୍ଚୟ ଉଠିଯିବ !

ଅଳ୍ପଦିନ ପୂର୍ବେ କଟକଠାରେ ଜଣେ ଶିକ୍ଷିତ ବଙ୍ଗାଳୀବାବୁଙ୍କ ସହିତ ଉପସ୍ଥିତ ବିଷୟ ଦେନି କଥୋପକଥନ ହୋଇଥିଲା । ସେ କହିଲେ, "ଉତ୍କଳୀୟମାନେ ବଙ୍ଗଭାଷାର ସମ୍ବାଦପତ୍ର ଏବଂ ପୁସ୍ତକ ଯେପରି ଆଗ୍ରହସହିତ ପାଠ କରନ୍ତି, ମାତୃଭାଷା ଅଧ୍ୟୟନରେ ସେପରି ଆଗ୍ରହ ଦେଖାଯାଏ ନାହିଁ, ସୁତରାଂ ଉତ୍କଳଭାଷାର ଅବନତି ଅନିବାର୍ଯ୍ୟ ।" ପ୍ରତ୍ୟେକ ଉତ୍କଳବାସୀ ପକ୍ଷରେ ଏହା ଗୋଟିଏ ଚିନ୍ତାର ବିଷୟ ଅଟେ । ଆମ୍ଭେମାନେ ଜଗତର ଇତିହାସରେ ସୁସ୍ପଷ୍ଟ ରୂପେ ଦେଖିବାକୁ ପାଉଁ, ମାତୃଭାଷା ବିନା କୌଣସି ଜାତି ଉନ୍ନତି ଲାଭ କରିପାରି ନାହାନ୍ତି । ଏହାର ମଧ୍ୟ ଶତ ଶତ ପ୍ରମାଣ ବିଦ୍ୟମାନ ଅଛି, ମାତୃଭାଷାର ଅନାଦରକାରୀ ଏବଂ ଅବଜ୍ଞାକାରୀ ଜାତିର ଅବନତି ଏବଂ ବିନାଶ ଅନିବାର୍ଯ୍ୟ ଅଟେ । ଯାହାହେଉ ଉତ୍କଳ ଭାଷାର ଭବିଷ୍ୟତ ପରିଣାମ ବିଷୟରେ କିଛି କହିବା ପୂର୍ବେ ଏହାର ସ୍ୱରୂପ ଏବଂ ପରମାୟୁ ସମ୍ବନ୍ଧରେ ଦୁଇ ଚାରି କଥା ବୋଲିବା ଆବଶ୍ୟକ ।

ମାନବଧର୍ମଶାସ୍ତ୍ର ଏବଂ ମହାଭାରତାଦି ମହାପୁରାଣ-ମାନଙ୍କରେ ଉତ୍କଳ ଦେଶର ନାମୋଲ୍ଲେଖ ଦେଖାଯାଏ । ଇଉରୋପୀୟ ପୁରାତତ୍ତ୍ୱବିତ୍‌ମାନଙ୍କ ମତରେ ମାନବଧର୍ମଶାସ୍ତ୍ର ତ୍ରିସହସ୍ର ବର୍ଷ ପୂର୍ବେ ରଚିତ ହୋଇଥିବାର ଅନୁମିତ ହୁଏ । ସୁତରାଂ, ତ୍ରିସହସ୍ର ବର୍ଷପୂର୍ବେ ଏହି ପବିତ୍ର ଉତ୍କଳ ଦେଶ ଯେ କୃଷ୍ଣସାର ବିଚରଣଭୂମି ଆର୍ଯ୍ୟଜାତିର ଅଧ୍ୟୁଷିତ ଥିଲା, ସେ ବିଷୟରେ ଅନ୍ୟ ପ୍ରମାଣ ପ୍ରୟୋଗ କରିବା ଅନାବଶ୍ୟକ । ସର୍ବାଦୌ ଉତ୍କଳଦେଶରେ କେଉଁ ଭାଷା ପ୍ରଚଳିତ ଥିଲା, ସେ ବିଷୟ ଆଲୋଚନା କରିବାର ଆବଶ୍ୟକ । ଭାଷା ସମାଜର ଜନନୀସ୍ୱରୂପା ଅଟନ୍ତି । ଲୋକମାନେ ଆପଣା ପିତୃ ମାତୃ ନାମ ଉଲ୍ଲେଖ କରି ଆତ୍ମପରିଚୟ ଦେବାପରି ଜାତିମାନେ ଆପଣା ମାତୃଭାଷାର ନାମ ଉଲ୍ଲେଖ କରି ଆତ୍ମପରିଚୟ ଦେଇଥାନ୍ତି । ଯଥା—ଦାଶରଥି । ପାଣ୍ଡବ, କୌନ୍ତେୟ, ଜାନକୀ ଅର୍ଥାତ୍—ଦଶରଥ ପୁତ୍ର, ପଣ୍ଡୁର ପୁତ୍ର, କୁନ୍ତୀର ପୁତ୍ର, ଜନକର କନ୍ୟା ଇତ୍ୟାଦି । ଜାତିମାନଙ୍କର ଆତ୍ମପରିଚୟ ମଧ୍ୟ ସେହିପରି, ଯଥା—ଇଂରେଜ,ଜର୍ମାନ୍, ଆରବ, ବଙ୍ଗାଳୀ ଅର୍ଥାତ୍ ଏମାନଙ୍କର ମାତୃଭାଷା ଇଂରେଜୀ, ଜର୍ମାନ, ଆରବୀ, ବଙ୍ଗଳା ଇତ୍ୟାଦି । ସୁତରାଂ, ବୋଲଯାଇପାରେ ପୂର୍ବକାଳୀୟ ଉତ୍କଳୀୟ-ମାନଙ୍କର ମାତୃଭାଷାର ନାମ ଉତ୍କଳ । ଜଗତ୍ ପରିବର୍ତ୍ତନଶୀଳ; ପ୍ରତିନିୟତ ଯାବନ୍ତ ବସ୍ତୁର ପରିବର୍ତ୍ତନ ଘଟୁଅଛି । ଏଥିକୁ ବର୍ତ୍ତମାନ ପ୍ରଚଳିତ ଉତ୍କଳଭାଷା ସହିତ ପୂର୍ବ ପ୍ରଚଳିତ ଭାଷାର ଆକାରଗତ ସାମଞ୍ଜସ୍ୟ ଥିବାର ସାହସପୂର୍ବକ ବୋଲଯାଇ ନ ପାରେ । ତେବେ ସେ ସମୟରେ ଲିଖିତ ଭାଷା ଥିଲା କି ନାହିଁ ଏହା ବିଚାର୍ଯ୍ୟ ବିଷୟ ଅଟେ । ଦେଖାଯାଏ ସର୍ବାଦୌ ଆର୍ଯ୍ୟମାନଙ୍କର କୌଣସି ପ୍ରକାର ଲିଖିତ ଭାଷା ନ ଥିଲା । ଅତି ପୂର୍ବକାଳରେ ଆର୍ଯ୍ୟମାନେ ଶୁଣି ଶୁଣି ବେଦ ଅଧ୍ୟୟନ କରୁଥିଲେ, ଏଥି ସକାଶେ ବେଦର ନାମ ଶ୍ରୁତି । କାଳକ୍ରମରେ ଭାରତବର୍ଷରେ ଆର୍ଯ୍ୟମାନଙ୍କର ଲିଖିତ ଭାଷା ଉତ୍ପନ୍ନ ହୋଇଅଛି । ଶ୍ରୀ ଶ୍ରୀ ଜଗନ୍ନାଥ ଦେବଙ୍କ ମାଦଳା ପାଞ୍ଜି ଲିଖନ ଖ୍ରୀଷ୍ଟାବ୍ଦ ୬୦୦ ସନରେ ଆରବ୍ଧ ହୋଇଅଛି । ଆମ୍ଭେମାନେ ସହସ୍ରବର୍ଷ ପୂର୍ବେ ଲିଖିତ, ସୁମାର୍ଜିତ, ପୂର୍ଣ୍ଣାଙ୍ଗବିଶିଷ୍ଟ ଉତ୍କଳ କବିତାମାନ ପାଠ କରିଅଛୁଁ । ଏଥିକୁ ମସିହା ଜନ୍ମପୂର୍ବେ ଏ ଦେଶରେ ଯେ ଲିଖିତ ଭାଷା ଥିଲା, ଏହା ଅନୁମାନ କରିବା ସଙ୍ଗତ ନୁହେ । ଭାଷାତତ୍ତ୍ୱ ବିଷୟରେ ବିଶେଷ ଜ୍ଞାନ ନ ଥିଲେ ଏ ସମ୍ବନ୍ଧରେ ନିଶ୍ଚିତ କାଳ ନିରୂପଣ କରାଯାଇ ନ ପାରେ । ଦୁର୍ଭାଗ୍ୟ—ଆମ୍ଭେମାନେ ଏହି ଦୁଇ ବିଷୟରେ ନିତାନ୍ତ ଅନଭିଜ୍ଞ । ସୁତରାଂ, ଏ ସମ୍ବନ୍ଧରେ କିଛି କଥା କହିବାକୁ ଯିବା ନିର୍ଲଜ୍ଜତା ମାତ୍ର । ତେବେ ଏ ସମ୍ବନ୍ଧରେ ସର୍ବସାଧାରଣ ବିଦିତ ଦୁଇ ଚାରି କଥା କହି ପ୍ରସ୍ତାବର ଉପସଂହାର କରିବାକୁ ଇଚ୍ଛା କରୁଁ । ଉତ୍କଳଭାଷାନଭିଜ୍ଞ ବଙ୍ଗବାସୀମାନଙ୍କ କଥା ଛାଡ଼ିଦିଅ ଏବଂ ଉତ୍କଳର ବିଦ୍ୱେଷୀ ଅଥବା ଅବଜ୍ଞାକାରୀମାନଙ୍କ କଥା ଅବଶ୍ୟ ସ୍ୱତନ୍ତ୍ର । ମାତ୍ର କୌଣସି କୌଣସି ଶିକ୍ଷିତ ଉତ୍କଳୀୟ ଆପଣା ଭାଷାଭିଜ୍ଞତା ପ୍ରତି ନିର୍ଭର କରି ବୋଲି ବସନ୍ତି, ବଙ୍ଗଭାଷାର ସମକକ୍ଷତା କରିବାକୁ ଉତ୍କଳ ପକ୍ଷରେ ଅର୍ଦ୍ଧଶତାବ୍ଦୀ କାଳ ଆବଶ୍ୟକ । ଅବଶ୍ୟ ସାର ଅସାର ନାନାପ୍ରକାର କାବ୍ୟ, ନାଟକ, ନଭେଲ ଏବଂ ବିଜ୍ଞାନ ବିଷୟକ ଅନେକ ଗ୍ରନ୍ଥ ବଙ୍ଗଭାଷାରେ ମୁଦ୍ରିତ ହୋଇ ଗଲାଣି । ମାତ୍ର ଆମ୍ଭମାନଙ୍କ ଜୀବନକାଳରେ ପ୍ରତ୍ୟକ୍ଷ ଦେଖିଅଛୁ, ଏ ସମସ୍ତ ପୁସ୍ତକର ପରମାୟୁ ବିଂଶତି ବର୍ଷରୁ ଅଧିକ ନୁହେ । ଉତ୍କଳର ଦାରିଦ୍ର୍ୟ, ଶିକ୍ଷିତ ଲୋକମାନଙ୍କର ମାତୃଭାଷା ଚର୍ଚ୍ଚାରେ ତାଚ୍ଛଲ୍ୟ ଏବଂ ଧନଶାଳୀ ଲୋକମାନଙ୍କର ଗ୍ରନ୍ଥକ୍ରୟ ବିଷୟରେ ବ୍ୟୟକୁଣ୍ଠତା ପ୍ରଭୃତି ଗୁରୁତର କାରଣମାନ ବିଦ୍ୟମାନ ଥାଉଁ ଥାଉଁ ନୂତନ ନୂତନ ପୁସ୍ତକ ସହସା ପ୍ରଚାରର ଆଶା ବିଡ଼ମ୍ବନା ମାତ୍ର । ପୁସ୍ତକର ସଂଖ୍ୟାବାହୁଲ୍ୟ

ବିଷୟ ଥାଉ, ଦୁଇ ତିନି ଶତ ବର୍ଷ ପୂର୍ବେ ରଚିତ ଗ୍ରନ୍ଥ ଦେଖି ଭାରତର ୭ଗୋଟି ପ୍ରଧାନ ପ୍ରଚଳିତ ଭାଷା ସହିତ ତୁଳନା କରି ଦେଖାଯାଉ, ଉତ୍କଳ ଭାଷା ପୂର୍ଣ୍ଣ ଅଙ୍ଗସୌଷ୍ଠବ ଏବଂ ସାରବତ୍ତା ପ୍ରାପ୍ତ ହୋଇଅଛି କି ନାହିଁ ।

ସନ ୧୮୮୨ ମସିହାର ସରକାରୀ ଜନସଂଖ୍ୟା ତାଲିକା ଅନୁସାରେ ଭାରତବର୍ଷରେ ବୟାଶୀ ଲକ୍ଷ ଉତ୍କଳଭାଷୀ ମନୁଷ୍ୟ ବାସ କରୁଥିବାର ଜଣାଯାଏ । ମାତ୍ର ଏହି ସଂଖ୍ୟା ଅଭ୍ରାନ୍ତ ଓ ପ୍ରକୃତ ବୋଲି ଆମ୍ଭେମାନେ ସ୍ୱୀକାର କରିବାକୁ ପ୍ରସ୍ତୁତ ନୋହୁଁ । ବିଷୟ କର୍ମ ଉପଲକ୍ଷରେ ଆମ୍ଭେମାନେ ଉତ୍କଳର ଦକ୍ଷିଣରେ ବିଶାଖାପତ୍ତନ, ପଶ୍ଚିମରେ ହଜାରିବାଗ, ଗୁଲିବସା, ଉତ୍ତରରେ ତମଲୁକ, ଦାନ୍ତଣ, କାନ୍ଥି ପ୍ରଭୃତି ସ୍ଥାନରେ ଭ୍ରମଣ କରି ତଦ୍ଦେଶବାସୀମାନଙ୍କର ଗାର୍ହସ୍ଥ୍ୟ ଭାଷା ବିଷୟ କେତେକ ପରିମାଣରେ ଅବଗତ ହୋଇଅଛୁଁ । ସେମାନେ ବାହାରେ ଆପଣାମାନଙ୍କୁ ତେଲଙ୍ଗା, ହିନ୍ଦୁସ୍ଥାନୀ ଏବଂ ବଙ୍ଗାଳୀ ବୋଲି ପରିଚୟ ଦିଅନ୍ତି; ମାତ୍ର ସେମାନଙ୍କର ଗାର୍ହସ୍ଥ୍ୟ ଭାଷା ଉତ୍କଳ ଏବଂ ସେମାନଙ୍କ ଗାର୍ହସ୍ଥ୍ୟ ଆୟ ବ୍ୟୟ ପ୍ରଭୃତି ଉତ୍କଳ ଭାଷାରେ ଲିଖିତ ହୁଏ ଏବଂ ଅନେକ ସମ୍ଭ୍ରାନ୍ତ ଲୋକଙ୍କ ଘରେ ଜଗନ୍ନାଥ ଦାସଙ୍କ ଭାଗବତ ଗାଦି ବିଧି ଅନୁସାରେ ପୂଜାପ୍ରାପ୍ତ ହେଉଅଛି । ଚବିଶ ପରଗନା, ଦେଓଘର, କଲିକତା ପ୍ରଭୃତି ସ୍ଥାନରେ ଶତାବ୍ଦୀ ପ୍ରାୟ ଗତ ହେଲା, ଅନେକ ଉତ୍କଳୀୟ ଚିରସ୍ଥାୟୀରୂପେ ବାସ କରୁଥିଲେ ମଧ୍ୟ ଅଦ୍ୟାବଧି ମାତୃଭାଷା ପରିତ୍ୟାଗ କରି ପାରି ନାହାନ୍ତି । ସେମାନଙ୍କୁ ଏବଂ ସନ୍ ୧୮୮୨ ମସିହାଠାରୁ ୧୯୦୦ ମସିହା ପର୍ଯ୍ୟନ୍ତ ବର୍ଦ୍ଧିତ ଜନସଂଖ୍ୟା ଧରିଗଲେ ଉତ୍କଳଭାଷୀ ସଂଖ୍ୟା କୋଟି ଅତିକ୍ରମ କରିଯିବ । ଏପରି ବହୁ ସନ୍ତାନବତୀ ସାରଗର୍ଭା ଅଙ୍ଗସୌଷ୍ଠବସମ୍ପନ୍ନା ଉତ୍କଳଭାଷାର ଅବନତିର କାରଣ କଅଣ ?

ଭାଷା ଉନ୍ନତିର ଅନ୍ୟତମ ବିଶେଷ କାରଣ ରାଜାନୁକୂଲ୍ୟ । ରାଜାନୁକୂଲ୍ୟ ତେଣିକି ଥାଉ, ଅଦ୍ୟାବଧି ପାଞ୍ଚଶତ ବର୍ଷ ଯାବତ୍ ଉତ୍କଳ ସ୍ୱାଧୀନତା ହରାଇବା ଦିନଠାରୁ ଦେଶଭାଷା ବିବିଧ ପ୍ରକାରେ ରାଜ ଅତ୍ୟାଚାରର ମଧ୍ୟ ଅନ୍ତଃସାରବିଶିଷ୍ଟ ଜୀବନୀ ଶକ୍ତି ଥିବାରୁ କେନ୍ଦ୍ରୀଭୂତ ନିଧନାପତ୍ତି ଅତିକ୍ରମ କରି ଜୀବନ ମାତ୍ର ଧାରଣକରି ରହିଅଛି ।

ଭାରତ ଇତିହାସରୁ ଜଣାଯାଏ, ମୁସଲମାନମାନେ ଅନ୍ୟାନ୍ୟ ଦେଶପରି ଉତ୍କଳ ଦେଶକୁ ସହଜରେ କବଳିତ କରିବାକୁ ସମର୍ଥ ହୋଇ ନ ଥିଲେ । ଦୁଇଶତ ବର୍ଷରୁ ଅଧିକକାଳ ସୁବର୍ଣ୍ଣରେଖା କୂଳରେ ସେମାନଙ୍କୁ ଖଣ୍ଡାଏତମାନଙ୍କଠାରେ ବାହୁବଳର ପରୀକ୍ଷା ଦେବାକୁ ହୋଇଥିଲା । ଏହି ସୁଦୀର୍ଘକାଳ ଯାବତ୍ ଆତ୍ମରକ୍ଷାରେ ନିଯୁକ୍ତ ଥିବାରୁ ଉତ୍କଳୀୟମାନେ ଭାଷା ଆଲୋଚନା କରିବା ନିମନ୍ତେ ସୁଯୋଗ ପାଇ ନାହାନ୍ତି, ତହିଁ ଉତ୍ତାରେ—

## ମରହଟ୍ଟା ଯୁଗ

ମହାତ୍ମା ଶିବାଜୀଙ୍କ ରାଜ୍ୟ ବିସ୍ତାରର ଉଦ୍ଦେଶ୍ୟ "ଧର୍ମ ସଂରକ୍ଷଣାୟ" । ଯେଉଁ ମହାବୀର ଧର୍ମ ସେତୁବନ୍ଧ ବାନ୍ଧି ମୋଗଲ ଲଙ୍କାର ବିନାଶସାଧନ ନିମନ୍ତେ କୃତସଙ୍କଳ୍ପ ହୋଇଥିଲେ, ତାହାଙ୍କ ବଂଶଧରମାନଙ୍କର ବ୍ୟବସାୟ ହେଲା ଅନ୍ୟଲୋକ ଗୁହଳରୁ, ତୋଟାରୁ, କ୍ଷେତରୁ ସଂଗ୍ରହ ଫସଲ ଲୁଣ୍ଠପାଠ । ଦୁର୍ଭାଗ୍ୟପ୍ରଯୁକ୍ତ ଉତ୍କଳ ଭୂମି ସେହି ଲୁଣ୍ଠିଆର ମରହଟ୍ଟାମାନଙ୍କ ହସ୍ତଗତ ହେଲା । ନାଗପୁରରୁ ଜଣେ ଜଣେ ଫୌଜଦାର ନିଯୁକ୍ତ ହୋଇ ଆସି ଓଡ଼ିଶା ଶାସନ କରିବାକୁ ଲାଗିଲେ, ଶାସନ—ଅର୍ଥାତ୍ ଯେନ ତେନ ପ୍ରକାରେ ପ୍ରଜାଙ୍କଠାରୁ ଅର୍ଥ ସଂଗ୍ରହ । ନୂତନ ଫୌଜଦାର ନିଯୁକ୍ତ ସମୟରେ ନାଗପୁର

ରାଜଦରବାରରେ ଝିଟିପିଟି ଠାରୁ ଶାଳଗ୍ରାମ ପର୍ଯ୍ୟନ୍ତ କାରବାରୀ ଫର୍ଣ୍ଣିବାସ୍, ସବ୍‌ନାପ, କର୍କନାସ, ଚୀଟନାପ, ପୋଟନାପ ଇତ୍ୟାଦି ସମସ୍ତଙ୍କୁ ପ୍ରଣାମୀ ଦେବାକୁ ହୁଏ । ଫୌଜଦାର ବିଚାରର ଅପରାଧ କଣ ? ଅଣ୍ଟିରୁ ଯେଉଁ ଟଙ୍କାଟା ଦେଉଅଛି ସେଇଟା ତ ତାଲ୍‌କରୁ ଉଠାଇବାକୁ ହେବ । ପୁଣି ଠିକ ମିଅାଦ ସମୟରେ ରାଜସରକାରରେ ଟଙ୍କା ପେଠ ନ ହେଲେ ପଛକୁ ପଛ ଆଉଜଣେ ଫୌଜଦାର ନିଯୁକ୍ତ ହେବାର କଥା । ଏହି ସମସ୍ତ କାରଣରୁ "ଆତ୍ମାନଂ ସତତଂ ରକ୍ଷେତ୍" ନୀତିଶାସ୍ତ୍ର ପ୍ରତି ଦୃଷ୍ଟି ରଖି ଚଳିବାକୁ ଗଲେ ପ୍ରଜାପାଳନ କିପରି ହେଉଥିବ, ସେକଥା ବୋଲିବାର ଅନାବଶ୍ୟକ । ଏଦେଶ 'ଚଉପୁରିଲେ ଗୀତ ଗାଏ' ପ୍ରଜାମାନେ ଧନପ୍ରାଣ ଘେନି ବ୍ୟସ୍ତ, ବିଦ୍ୟାଚର୍ଚ୍ଚାର ବେଳ କାହିଁ ? ଆମ୍ଭମାନଙ୍କୁ ଅପ୍ରାସଙ୍ଗିକ ରୂପେ ଗୋଟିଏ କଥା କହିବାକୁ ହେଉଅଛି । ମରହଟ୍ଟା ସହସ୍ର ପ୍ରକାର ଅତ୍ୟାଚାର କରିଥିଲେ ମଧ୍ୟ ତାହାଙ୍କ ପ୍ରସାଦରୁ ଉତ୍କଳର ସହସ୍ର ସହସ୍ର ବ୍ରାହ୍ମଣ ପରିବାର ଅଦ୍ୟାବଧି ପ୍ରତିପାଳିତ ହେଉଅଛନ୍ତି । ଏହି ମରହଟ୍ଟା-ଯୁଗ ପୂର୍ବ ଏବଂ ମଧ୍ୟଭାଗର ସର୍ବ ଶେଷରେ—

## ମୁସଲମାନ୍ ଯୁଗ

ଇଂରେଜଙ୍କ ରାଜଶାସନର ମୂଳସୂତ୍ର ପ୍ରଜାମାନଙ୍କ ଜାତିଗତ ଧର୍ମ ଏବଂ ଭାଷା ଅକ୍ଷୁଣ୍ଣ ରଖି ପ୍ରଜାପାଳନ କରିବା; ମାତ୍ର ମୁସଲମାନ ନୀତି ସେଥିର ବିପରୀତ । ଅପୌରାଣିକ ଧର୍ମ, ଅପୌରାଣିକ ଭାଷା ବିଜିତ ଦେଶରେ ରଖିବାକୁ ସେମାନେ ଏକାବେଳକେ ନାରାଜ ଥିଲେ । ଉତ୍କଳଦେଶ ହସ୍ତଗତ କରି ମୁସଲମାନ ରାଜକୀୟ କାର୍ଯ୍ୟାଳୟରୁ ଉତ୍କଳ ଭାଷା ଏକାବେଳକେ ଉଠାଇ ଦେଇ ପାରସ୍ୟ ଭାଷା ଚଳାଇଲେ । କେବଳ ଦାରୁଣ ବେବନ୍ଦସ୍ତ ମାଟିବଂଶ ଓଝାମାନେ ଆପଣା ଜୀବନରକ୍ଷା ନିମନ୍ତେ ଉତ୍କଳଭାଷାର ଜୀବନ ରକ୍ଷା କରିଥିଲେ । ତହିଁ ଉତ୍ତାରେ ସୌଭାଗ୍ୟ ଯୁଗ ବା—

## ଇଂରେଜୀ ଯୁଗ

ଯଦିବା ଅଦ୍ୟାବଧି ୯୬ ବର୍ଷ କାଳ ଯାବତ୍ ଉତ୍କଳ ଭୂମି ବ୍ରିଟିଶ ଗଭର୍ଣ୍ଣମେଣ୍ଟଙ୍କ କରତଳନ୍ୟସ୍ତ ହୋଇ-ଅଛି; ମାତ୍ର ସାକ୍ଷାତ୍ ସମ୍ବନ୍ଧରେ ଗଭର୍ଣ୍ଣମେଣ୍ଟଙ୍କଠାରୁ ଆଶାନୁରୂପ ଅନୁଗ୍ରହ ପ୍ରାପ୍ତି ଏହା ଅଦୃଷ୍ଟରେ ଘଟି ନ ଥିଲା । ଏହା ବଙ୍ଗଳା ହତାର ଗୋଟିଏ ବାଜେ ଶପୋର୍ଟ ଜମିଦାରୀ ସ୍ୱରୂପ ଥିଲା । ଗତ ନଅଙ୍କର ଭୟଙ୍କର ଲୋକକ୍ଷୟକର ଦୁର୍ଭିକ୍ଷ ଉତ୍ତାରେ ଏହା ଉପରେ ଗଭର୍ଣ୍ଣମେଣ୍ଟଙ୍କର କୃପାଦୃଷ୍ଟି ପଡ଼ିବାର ସୂତ୍ରପାତ । ଅଦାଲତମାନଙ୍କରେ ପୂର୍ବବତ୍ ପାରସ୍ୟ ଭାଷା ଚଳି ଆସୁଥିଲା । ଇଂରେଜ ହାକିମମାନେ କେବଳ ଇଂରେଜୀରେ ଦସ୍ତଖତ୍ ମାତ୍ର କରୁଥିଲେ । ସମନ, ଓଆରଣ୍ଟ, ଗୁହାଜବାନବନ୍ଦ, ରୋବକାରୀ ପ୍ରଭୃତି ସମସ୍ତ ବିଷୟ ଅମଲମାନେ ପାରସ୍ୟ ଭାଷାରେ ଲେଖୁଥିଲେ । ଓକିଲ, ଡେପୁଟୀ, ସଦର ଅମିନ, ସଦର ଆଲା କାହାରିକୁ ଇଂରେଜୀ ଶିଖିବାକୁ ହେଉ ନ ଥିଲା । ଅଦାଲତ ବାହାରେ ଭଦ୍ରଲୋକମାନେ ସମସ୍ତ ଚିଠି ଚପାଟି ଏମନ୍ତ କି ଘର ଖର୍ଚ୍ଚ ହିସାବ ପର୍ଯ୍ୟନ୍ତ ପାରସୀରେ ଲେଖୁଥିଲେ । ସେ କାଳରେ ପାରସ୍ୟ-ମିଶ୍ରିତ ଓଡ଼ିଆ କଥା କହିବା ଭଦ୍ରତା ଏବଂ ବିଦ୍ୱତ୍ତାର ପରିଚାୟକ ଥିଲା । ଆମ୍ଭମାନଙ୍କର ଠିକ ସନ ତାରିଖ ସ୍ମରଣ ହେଉ ନାହିଁ, ଆଜକୁ ପ୍ରାୟ ୪୦ ବର୍ଷର କଥା, କଟକବାସୀ କେତେଜଣ ଭଦ୍ରଲୋକ ଦରଖାସ୍ତ କରି ଉତ୍କଳର ଅଦାଲତମାନଙ୍କରୁ ପାରସ୍ୟ ଭାଷା ଉଠାଇ ଦେଲେ । ସେହିଦିନଠାରୁ ପାରସ୍ୟ ଭାଷା ଶନୈଃ ଶନୈଃ ବିଲୟ ପ୍ରାପ୍ତ ହେଲାଣି । ଅଦାଲତମାନଙ୍କରେ ଉତ୍କଳ ଏବଂ ଇଂରେଜୀ ଦୁଇଭାଷା ଚଳିବା ନିମନ୍ତେ ଗଭର୍ଣ୍ଣମେଣ୍ଟ ଆଜ୍ଞା କରିଅଛନ୍ତି । ବହୁ ଶତାବ୍ଦୀ ଉତ୍ତାରେ

ଉତ୍କଳ ପକ୍ଷରେ ଏହି ସୁଯୋଗ ଘଟିଅଛି । ମାତ୍ର ଅଦାଲତମାନଙ୍କରେ ଯେତେଦୂର ଦେଶୀୟ ଭାଷା ଚଳିବାର ଗଭର୍ଣ୍ଣମେଣ୍ଟଙ୍କର ଇଚ୍ଛା, ତାହାଠାରୁ ଢେର କମ ଚଳୁଥିବାର ଦେଖାଯାଏ । ତାହାର କାରଣ ଏହି ଅଦାଲତର ପ୍ରାୟ ସମସ୍ତ କର୍ମଚାରୀ ଏବଂ ଅମଲା ଇଂରେଜୀ ପଢ଼ୁଆ । ଚିର ଅଭ୍ୟାସ ହେତୁରୁ ତଥା ହାକିମମାନଙ୍କ ସୁଖବୋଧ ନିମନ୍ତେ ସମସ୍ତ କାର୍ଯ୍ୟ ଇଂରେଜୀରେ ଚଳାଇବାକୁ ଗୃହୀତ । ଏଣେ ହାକିମମାନେ ହେଲେ ଇଂରେଜ, ସେମାନଙ୍କ ବୁଝିବା ପକ୍ଷରେ ଖୁବ୍ ସହଜ ହେଲା, କହିଲେ "So much the better" ଆଉ ବି. ଏ. ପାଶିଆ ହାକିମମାନେ କହିଲେ—ଆରେ ଛି ! କେଉଁଏ ବର୍ଷକାଳ ଇଂରେଜୀ ଘୋଷି ଘୋଷି ହାକିମ ହେଲୁଁ, ମିଶିଲରେ ବସି ଓଡ଼ିଆ ଲେଖିବୁଁ ? ଏ ଉତ୍ତରେ ସୁବର୍ଣ୍ଣ ଯୁଗ ବା—

## ରେଭେନ୍‌ସା ଯୁଗ

ଆଜି ଆମ୍ଭମାନଙ୍କର ସୁପରିଚିତ, ରେଭେନ୍‌ସା ସାହେବଙ୍କ ପବିତ୍ର ନାମ ସ୍ମରଣକରି କୃତାର୍ଥ ହେଲୁ । ବର୍ତ୍ତମାନ ଉତ୍କଳ ଭୂମି ଯେତେଦୂର ଉନ୍ନତିଲାଭ କରିଅଛି, ଉକ୍ତ ମହାତ୍ମା ସେ ସମସ୍ତ ଉନ୍ନତିର ମୂଳାଧାର ଅଟନ୍ତି । ଆମ୍ଭେମାନେ ଗଭର୍ଣ୍ଣମେଣ୍ଟଙ୍କଠାରୁ ଯାହା କିଛି ପାଇବାର ପ୍ରତ୍ୟାଶା କରୁ, ଉକ୍ତ ମହାତ୍ମା ପ୍ରାୟ ସମସ୍ତ ଆଶା ପୂର୍ଣ୍ଣ କରି ଦେଇ ଅଛନ୍ତି । ଉକ୍ତ ମହାତ୍ମାଙ୍କ ସମୟଠାରୁ ଉତ୍କଳଭାଷାର ପ୍ରକୃତ ଉନ୍ନତି, ପ୍ରକୃତ ଆଲୋଚନା ଆରବ୍ଧ ହୋଇଅଛି । ଉତ୍କଳ-ଭାଷା ଇତିହାସରେ ଉକ୍ତ ମହାତ୍ମାଙ୍କ ପବିତ୍ର ନାମ ସୁବର୍ଣ୍ଣ ଅକ୍ଷରରେ ଲିଖିତ ହୋଇ ରହିବ । ଆମ୍ଭମାନଙ୍କୁ ଦାରୁଣ ଦୁଃଖର ସହିତ ଗୋଟିଏ କଥା ଲେଖିବାକୁ ହେଉଅଛି । ବର୍ତ୍ତମାନ ସାନଲାଟ ଶ୍ରୀଯୁକ୍ତ ଉଡ଼ବରନ ସାହେବ ଉତ୍କଳ ଭାଷା ମୁଣ୍ଡ ଟେକିବା ବେଳରେ ଠେଙ୍ଗାଏ କସିଦେଇ ଗଲେ । ଉକ୍ତ ମହୋଦୟ ସମ୍ବଲପୁର ଅଦାଲତମାନଙ୍କରୁ ଉତ୍କଳ ଭାଷା ଉଠାଇ ଦେଇ ଯେଉଁ କ୍ଷତି କରି ଗଲେ, ସେ କ୍ଷତି ସହଜରେ ପୂର୍ଣ୍ଣ ହେବାର ନୁହେ । ଉତ୍କଳବାସୀମାନେ ଚିରକାଳ ଏହି କଥା ସ୍ମରଣ କରି ଦୀର୍ଘ ନିଃଶ୍ୱାସ ପକାଇବେ । ଉକ୍ତ ମହାତ୍ମାଙ୍କୁ ବଙ୍ଗ ପ୍ରେସିଡେନ୍‌ସିର ସମସ୍ତ ଲୋକେ ଧନ୍ୟ ଧନ୍ୟ କହୁଅଛନ୍ତି, ମାତ୍ର ଉତ୍କଳର—

"ଅମୃତମ୍ବାବଦର୍ମୀଶ୍ୱରେଚ୍ଛୟା"

ବର୍ତ୍ତମାନ ଉତ୍କଳ ଭାଷା ଆଶାନୁରୂପ ଉନ୍ନତି ପକ୍ଷରେ ରାଜନୀୟ ବିଭାଗ ଗୋଟିଏ ବିଶେଷ ଅନ୍ତରାୟ-ରୂପେ ବିଦ୍ୟମାନ ରହିଅଛି । ବଙ୍ଗ, ମଧ୍ୟପ୍ରଦେଶ, ମାନ୍ଦ୍ରାଜହିତା ତଥା ଗଡ଼ଜାତ ଏହି ଚାରି ଅଂଶରେ ବିଭକ୍ତ ଥିବାରୁ ଉତ୍କଳଭାଷୀମାନଙ୍କ ମଧ୍ୟରେ ପରସ୍ପର ସହାନୁଭୂତି ଜନ୍ମିବା ଏବଂ ମିଳିମିଶି କିଛି କାର୍ଯ୍ୟ କରିବା ପକ୍ଷରେ ସୁଯୋଗ ଘଟୁ ନାହିଁ । ମାତ୍ର ରେଲପଥ, ବାଣିଜ୍ୟ ଏବଂ ସଦ୍ଧ୍ୟୋଚାରବୃଦ୍ଧି ସଙ୍ଗେ ସଙ୍ଗେ ଏହି ଅନ୍ତରାୟ ଅନ୍ତରିତ ହେବାର ଆଶା କରାଯାଇ ପାରେ ।

ହେ ଉତ୍କଳବାସୀ ମହାଶୟଗଣ ! ଆପଣମାନେ ମନେ ରଖନ୍ତୁ, ମାତୃଭାଷାର ଉନ୍ନତି ବିନା ଦେଶୋନ୍ନତିର ଅନ୍ୟ ଉପାୟ ନାହିଁ । ସୌଭାଗ୍ୟପ୍ରଯୁକ୍ତ ଆମ୍ଭେମାନେ ପ୍ରଜାହିତୈଷୀ ଗଭର୍ଣ୍ଣମେଣ୍ଟ ପାଇଛୁ । ଚତୁର୍ଦ୍ଦିଗରେ ଅନାଇ ଦେଖ, ପ୍ରଜାଶିକ୍ଷାପାଇଁ ଗଭର୍ଣ୍ଣମେଣ୍ଟ ଜଳସ୍ରୋତ ପରି ଟଙ୍କା ଢାଳି ଦେଉଅଛନ୍ତି । ହେ ଶିକ୍ଷିତ ସମ୍ପ୍ରଦାୟ, ଆପଣ ଆପଣା କର୍ତ୍ତବ୍ୟ ବୁଝି, ହେଲାରେ ରହି ହରାଅ ନାହିଁ । ବର୍ତ୍ତମାନ ସବୁପ୍ରକାର ସୁଯୋଗ ମିଳିଅଛି, ଏହି ଅଳସ୍ୟ ବା ତାଚ୍ଛଲ୍ୟରେ ମାତୃଭାଷା ପ୍ରତି ଅନାଦର କରି, ଚିରକାଳ ଅନ୍ୟଜାତି ଠାରେ ଅନାଦୃତ, ଅବଜ୍ଞାତ ହୋଇ ରହିବ ।

( ଉ. ହା ୩ୟ ଭାଗ—୧୯୦୦ ସାଲ )

——— —

## ଓ୍ୱାଲଟେୟାର ଦର୍ଶନ

ଓ୍ୱାଲ୍ଟେୟର ର ନାମ ବହୁଦିନରୁ ଶୁଣି ଆସୁଥିଲୁଁ । ଓ୍ୱାଲ୍ଟେୟାର ଇଂରେଜ ମନୋମୋହିତ ସାଗର କୂଳବର୍ତ୍ତୀ ସୁନ୍ଦର ବନ୍ଦର । ଓ୍ୱାଲ୍ଟେୟାର ସ୍ୱାସ୍ଥ୍ୟକର ସ୍ଥାନ ବୋଲି ଅନେକ ବିଖ୍ୟାତ କବିରାଜ ଏବଂ ଡାକ୍ତରଙ୍କର ଅଭିମତ । ସ୍ୱାସ୍ଥ୍ୟ ଲାଭ ଉଦ୍ଦେଶ୍ୟରେ ବଙ୍ଗଦେଶୀୟ ଅନେକ ଭଦ୍ରଲୋକ ଏ ସ୍ଥାନରେ ବସବାସ କରୁଅଛନ୍ତି । ଓ୍ୱାଲ୍ଟେୟାର ବଙ୍ଗଳା ନାଗପୁର ଲାଇନ୍‌ରେ ଗୋଟିଏ ପ୍ରଧାନ ଇଷ୍ଟେସନ । ପ୍ରାତଃକାଳରେ କଟକଠାରୁ ଯେଉଁ ମେଲ ଟ୍ରେନ୍ ଯାଏ, ଠିକ୍ ସନ୍ଧ୍ୟାସମୟରେ ଓ୍ୱାଲ୍-ଟେୟାରରେ ପହୁଞ୍ଚେ । ଏହି ଓ୍ୱାଲ୍ଟେୟାର ଦେଖିବା ସକାଶେ ବହୁକାଳରୁ ମନରେ ଆଶା ପୋଷଣ କରି ଆସୁଥିଲୁଁ ।

ଉତ୍କଳର ଶିକ୍ଷିତ ସ୍ୱଦେଶବତ୍ସଳ ସୁସନ୍ତାନମାନେ ଗତ ଅପ୍ରେଲମାସର ୧୧।୧୨ ତାରିଖରେ ବ୍ରହ୍ମପୁର ଠାରେ ମାତୃସେବା ସମାପ୍ତ କରି ସ୍ୱ ସ୍ୱ ଗନ୍ତବ୍ୟ ସ୍ଥାନକୁ ଯାତ୍ରା କଲା ଉତ୍ତାରେ ଆମ୍ଭେମାନେ ସେମାନଙ୍କଠାରୁ ବିଦାୟ ଗ୍ରହଣ କରି ଅପ୍ରେଲ୍ ମାସ ୨୪ ତାରିଖ ଦିବା ୧୨ ଘଣ୍ଟା ସମୟରେ ବ୍ରହ୍ମପୁର ଷ୍ଟେସନ୍‌ରୁ ଟିକଟ କ୍ରୟ କରି ମାନ୍ଦ୍ରାଜଗାମୀ ଟ୍ରେନରେ ଯାତ୍ରା କଲୁଁ । ସନ୍ଧ୍ୟା ୭ଘଟିକା ସମୟରେ ଟ୍ରେନ୍ ଓ୍ୱାଲଟେୟାରରେ ଉପସ୍ଥିତ ହେଲା । ବ୍ରହ୍ମପୁର ନର୍ମାଲ ସ୍କୁଲର ଶିକ୍ଷକ ବାବୁ ଗୋପୀନାଥ ଦାସଙ୍କଠାରୁ ପତ୍ର ପାଇ ପ୍ରିନ୍‌ସ ବିକ୍ରମ ଦେଓ ବର୍ମାଙ୍କ ପ୍ରେରିତ ବାବୁ ବଜ୍ର ନନା ଦେଓ ଆମ୍ଭମାନଙ୍କ ଅପେକ୍ଷାରେ ପ୍ଲାଟଫରମରେ ଦଣ୍ଡାୟମାନ ଥିଲେ । ଟ୍ରେନ୍‌ରୁ ଅବତରଣ କଲା ମାତ୍ରକେ ତାଙ୍କ ସହିତ ସାକ୍ଷାତ୍ ହେଲା । ବାବୁ ନନା ଦେଓ ଆମ୍ଭମାନଙ୍କୁ ଅତି ଯତ୍ନ ଏବଂ ଆଦର ସହିତ ରାଜକୀୟ ଅଶ୍ୱ ଶକଟରେ ଘେନି ଗଲେ । ଆମ୍ଭମାନଙ୍କ ବସା ନିମନ୍ତେ ବିଶାଖା-ପତ୍ତନ ସହର ମଧ୍ୟଭାଗରେ ଗୋଟିଏ କ୍ଷୁଦ୍ର ସୁନ୍ଦର ଦ୍ୱିତଳ ଗୃହ ନିରୂପିତ ଥିଲା । ପ୍ରିନ୍‌ସ ବିକ୍ରମ ଦେଓଙ୍କ ନିଯୁକ୍ତ କର୍ମଚାରୀମାନେ ଆମ୍ଭମାନଙ୍କ ପ୍ରୟୋଜନର ଅତିରିକ୍ତ ଦ୍ରବ୍ୟ ଆୟୋଜନ କରି ଦେଲେ । ଆହାରାଦି କରି ପରମାନନ୍ଦରେ ରାତ୍ରିଯାପନ କଲୁଁ ।

ଆମ୍ଭେମାନେ ପ୍ରିନ୍‌ସ ବିକ୍ରମ ଦେଓଙ୍କ ସହିତ କଥୋପକଥନ ଦ୍ୱାରା ତାଙ୍କର ସ୍ୱଦେଶବାତ୍ସଲ୍ୟ ମାତୃଭାଷା ପ୍ରତି ଅନୁରାଗ, ସରଳତା ଏବଂ ମହତ୍ତ୍ୱର ପରିଚୟ ପାଇ ଅତ୍ୟନ୍ତ ପ୍ରୀତି ଲାଭ କରିଅଛୁଁ । ତାଙ୍କର ଯତ୍ନ ଏବଂ ଆତିଥ୍ୟ ଚିରଜୀବନ ବିସ୍ମୃତ ହୋଇ ପାରିବୁ ନାହିଁ ।

୨୫ତାରିଖ ଅପରାହ୍ଣ ସମୟରେ ବାବୁ ବଜ୍ର ନନା ଦେଓ ଆମ୍ଭମାନଙ୍କୁ ସଙ୍ଗରେ ଘେନି ସହର ଦେଖାଇ-ବାକୁ ଲାଗିଲେ । ବିଶାଖାପତ୍ତନ ସହରକୁ ଇଂରେଜ-ମାନେ ସହଜ ଉଚ୍ଚାରଣ ନିମନ୍ତେ ବୈଜାଗ ନାମ ଦେଇ ଅଛନ୍ତି ।

ବୈଜାଗ ସହରଟି ସମୁଦ୍ରକୂଳରେ ଉତ୍ତର ଦକ୍ଷିଣକୁ ବିସ୍ତୃତ । ସିନ୍ଧୁର ଲହରୀମାଳା ନିରନ୍ତର ସହରର ପାଦଦେଶ ଧୌତ କରୁଅଛି । ସହରର ମଧ୍ୟ-ଭାଗରେ ସଡ଼କଟି ପ୍ରଶସ୍ତ । ଅତି ସରଳ ଏବଂ ପରିଷ୍କୃତ ପରିଚ୍ଛନ୍ନ । ସହର ମଧ୍ୟରେ ଆଡ଼ମ୍ବରପୂର୍ଣ୍ଣ ତାଦୃଶ ବୃହତ୍ ଅଟ୍ଟାଳିକା ନାହିଁ; ମାତ୍ର ମଧ୍ୟବୃତ୍ତ ଏବଂ କ୍ଷୁଦ୍ର କ୍ଷୁଦ୍ର ଇଷ୍ଟକାଳୟଗୁଡ଼ିକ ନିର୍ମଳ, ସୁଗଠିତ ଏବଂ ସୁନ୍ଦର । ନଗରବାସୀମାନଙ୍କର ସାଧାରଣ ଭାଷା ତୈଲଙ୍ଗ; ମାତ୍ର ନାନା ଦେଶୀୟ ଲୋକମାନଙ୍କ ସଂସ୍ରବରେ କେହି କେହି ହିନ୍ଦି ଭାଷା ଜାଣୁଥିବାର ଦେଖିଲୁଁ । ଆମ୍ଭେମାନେ ଭାରତବର୍ଷର ଅନେକ ସ୍ଥାନ ଭ୍ରମଣକରି ଦେଖିଅଛୁଁ, ଇୟୁରୋପର ଫରାସି ଭାଷା ପରି ଭାରତରେ ହିନ୍ଦି ଭାଷା ସର୍ବତ୍ର ପ୍ରଚଳିତ ।

ନଗରର ଦକ୍ଷିଣ ଭାଗରେ ପୋଲିସ ଷ୍ଟେସନ୍ ଏବଂ ରାଜକୀୟ କାର୍ଯ୍ୟାଳୟମାନ ଅବସ୍ଥିତ । ଓ୍ୱାଲ୍‌ଟେୟାର ଷ୍ଟେସନଠାରୁ ବୈଜାଗ ଶାଖା ରେଲ ଲାଇନ୍ ଯାଇ ସହରର ଦକ୍ଷିଣ ଉପକଣ୍ଠସ୍ଥ ସାଗର ଜଳକୁ ସ୍ପର୍ଶ କରିଅଛି । ଏହି ଶାଖା ଲାଇନ୍‌ଟିକୁ ସଳଖରେ ଦକ୍ଷିଣ ଦିଗକୁ ନେବା ସକାଶେ ନଗର ଦକ୍ଷିଣ ପ୍ରାନ୍ତସ୍ଥ ଗୋଟିଏ ଅନୁଚ୍ଚ ପର୍ବତ ଭେଦ କରି ମାର୍ଗ ପ୍ରସ୍ତୁତ ହୋଇଥିଲା । ବୃଷ୍ଟିକାଳରେ ରେଲ ଗମନ ବେଳେ ପର୍ବତ ଦୁଇପାର୍ଶ୍ୱରୁ ପ୍ରସ୍ତରଖଣ୍ଡ ଖସିପଡ଼ି ଗମନଶୀଳ ରେଲଶକଟ ନଷ୍ଟ କରିବାର ସମ୍ଭବ । ରାସ୍ତା ପ୍ରସ୍ତୁତ ହେବା ଉତ୍ତାରେ ଇଞ୍ଜିନିଅରମାନେ ଏ ପ୍ରକାର ଆଶଙ୍କା କରିବାରୁ ଏହି ନବନିର୍ମିତ ପାର୍ବତ୍ୟ ମାର୍ଗଟି ପରିତ୍ୟକ୍ତ ହୋଇଅଛି । ଏଥିରେ ପ୍ରାୟ ଲକ୍ଷାଧିକ ଟଙ୍କା ବ୍ୟୟ ହୋଇଥିଲା ।

ରେଲଧାରରେ ଦୁଇଗୋଟି ଜେଠିଯନ୍ତ୍ର ଥିବାର ଦେଖିଲୁଁ । ଏହି ଯନ୍ତ୍ର ସାହାଯ୍ୟରେ ଷ୍ଟିମାର ଏବଂ ରେଲର ମାଲ ଆଦାନ ପ୍ରଦାନ ହୁଏ । ସାଗରଗାମୀ ଗୋଟିଏ ବୃହତ୍ ଷ୍ଟିମାର ଏବଂ କେତେଗୁଡ଼ିଏ ଦେଶୀୟ କ୍ଷୁଦ୍ର କ୍ଷୁଦ୍ର ପୋତ ଜେଟି ସମ୍ମୁଖସ୍ଥ ସମୁଦ୍ରଜଳରେ ଭାସମାନ ଥିବାର ଦେଖିଲୁଁ । ଏହା ଗୋଟିଏ ପ୍ରଧାନ ବନ୍ଦର ହେଲେ ମଧ୍ୟ ଆମ୍ଭେମାନେ ଆଶାନୁରୂପ ବାଣିଜ୍ୟ କୋଳାହଳ ଦେଖିଲୁ ନାହିଁ । ବଣିକମଣ୍ଡଳୀର କ୍ଷିପ୍ରକାରିତା ଉତ୍ସାହ ଉଦ୍ୟମ ଶୃଙ୍ଖଳ୍ୟ କାର୍ଯ୍ୟ ତତ୍ପରତାର ଚିହ୍ନ – ତାଦୃଶ ଦୃଷ୍ଟ ହେଲନାହିଁ । ସମସ୍ତେ ଯେପରି ଧୀରସ୍ଥିର ଶାନ୍ତଭାବରେ ସ୍ୱ ସ୍ୱ କାର୍ଯ୍ୟରେ ନିଯୁକ୍ତ ଅଛନ୍ତି । ରେଲ ଲାଇନ ନିକଟସ୍ଥ ସମୁଦ୍ର କୂଳରେ କ୍ଷୁଦ୍ର କ୍ଷୁଦ୍ର ପ୍ରସ୍ତରଖଣ୍ଡ ରାଶିକୃତ ହୋଇ ପଡ଼ିଥିବାର ଦେଖିଲୁଁ । ଏ ସମସ୍ତ ଷ୍ଟିମାର ବେଲଷ୍ଟ ବୋଲି ପ୍ରଥମତଃ ଆମ୍ଭମାନଙ୍କର ଧାରଣା ଜନ୍ମିଥିଲା । ମାତ୍ର ଜନୈ ଦେଓ ବାବୁ ବୁଝାଇ ଦେଲେ, ଏ ସମସ୍ତ ଲୌହପ୍ରସ୍ତର । ଲୌହ ପ୍ରସ୍ତୁତ ହେବା ନିମନ୍ତେ ବିଲାତ ଯିବ । ଷ୍ଟିମାର ଗଡ଼ାୟତ ଭଡ଼ା ଏବଂ ବିଲାତି କାରିଗରମାନଙ୍କ ବେତନ ଦେଇ ଆମ୍ଭମାନଙ୍କ ଦେଶଜାତ ଲୌହ ବ୍ୟବହାର କରିବୁଁ ! ହାୟ ! ଆମ୍ଭମାନଙ୍କ ଏହି ଦୁର୍ଭାଗ୍ୟ କେବେ ଅପନୀତ ହେବ ?

ଗୁଡ଼ ହରିଡ଼ା କୋଚିଲ୍ ପ୍ରଭୃତି ଅରଣ୍ୟଜାତ ଫଳ ଏ ସ୍ଥାନରୁ ବିଦେଶକୁ ରପ୍ତାନି ହୋଇଥାଏ ।

ସାଗରଜଳର ଏକ ଅଂଶ ବୈଜାଗ ସହରର ଶେଷ ଦକ୍ଷିଣସୀମା ବାଟେ ସଙ୍କୀର୍ଣ୍ଣ ଭାବରେ ପ୍ରବେଶ କରି ନଗରର ପଶ୍ଚିମ ପ୍ରାନ୍ତରରେ ହ୍ରଦାକାରରେ ବିସ୍ତୃତ ହୋଇଅଛି । ହ୍ରଦଟି ତାଦୃଶ ଗଭୀର ବୋଲି ବୋଧହୁଏ ନାହିଁ । ଏହି ଚିଲ୍‌କା ଏବଂ ସାଗର ଜଳମୁହାଣ ସ୍ଥାନରେ ମନୁଷ୍ୟମାନଙ୍କ ଯିବା ଆସିବା ନିମନ୍ତେ ଗୋଟିଏ ଭାସମାନ ଲୌହସେତୁ ପ୍ରସ୍ତୁତ ହୋଇଅଛି ।

ସହରର ଦକ୍ଷିଣପ୍ରାନ୍ତ ପର୍ବତ ଉପରେ ଖ୍ରୀଷ୍ଟାନମାନଙ୍କର ଉଦ୍ୟାନବେଷ୍ଟିତ ସୁନ୍ଦର ସୁଗଠିତ ଭଜନାଳୟ (ଗିର୍ଜା) ନଗରର ମୁକୁଟମଣି ରୂପେ ବହୁଦୂର ପର୍ଯ୍ୟନ୍ତ ସୁଦୃଶ୍ୟ । ସେ ଗିର୍ଜାର କିଞ୍ଚିତ୍ ଦକ୍ଷିଣ ପୂର୍ବଭାଗ ସହର ମଧ୍ୟକୁ ଖଣ୍ଡଶୈଳ ଉପରେ ମୁସଲମାନମାନଙ୍କର ମଧ୍ୟ ଗୋଟିଏ ମସ୍‌ଜିଦ ନିର୍ମିତ ହୋଇଅଛି । ବୈଜାଗ ସହରର ଦକ୍ଷିଣ ପ୍ରାନ୍ତରେ ଇଷ୍ଟଇଣ୍ଡିଆନ୍ ଫିରିଙ୍ଗୀମାନଙ୍କ ବାସ-ଗ୍ରାମଟି କ୍ଷୁଦ୍ର କ୍ଷୁଦ୍ର ପରିଷ୍କୃତ ପରିଚ୍ଛନ୍ନ ଇଷ୍ଟକାଳୟରେ ପରିପୂର୍ଣ୍ଣ । ଏହି ଗ୍ରାମପ୍ରାନ୍ତ ପୂର୍ବଭାଗ ସମୁଦ୍ରକୂଳରେ ନଗରବାସୀମାନେ ବସି ସାନ୍ଧ୍ୟସମୀରଣ ସେବନ କରିବା ନିମନ୍ତେ ଗୋଟିଏ ଉଚ୍ଚ ସ୍ଥାନରେ ଇଷ୍ଟକନିର୍ମିତ ସ୍ଥାୟୀ ଆସନ ପ୍ରସ୍ତୁତ ହୋଇଅଛି । ସ୍ଥାନଟି ଆମ୍ଭମାନଙ୍କୁ ଅତୀବ ମନୋହର ବୋଧ ହେଲା । କେତେଗୁଡ଼ିଏ ଇଂରେଜ ପୁରୁଷ ଏବଂ ମହିଳା ଏବଂ କେତେଜଣ ସ୍ଥାନୀୟ ଭଦ୍ରଲୋକ ନିଶ୍ଚିନ୍ତ ମନରେ ଏ ସ୍ଥାନରେ ବସି ସାଗର, ସାଗରର ଲହରୀଲୀଳା ଦର୍ଶନ କରୁଥିବାର ଦେଖିଲୁଁ । ସପ୍ତାହରେ ଦୁଇଦିନ ସାୟାହ୍ନ ସମୟରେ ବାୟୁସେବନକାରୀମାନଙ୍କ ଚିତ୍ତବିନୋଦନ ନିମନ୍ତେ ଏ ସ୍ଥାନରେ ବେଣ୍ଡ ବାଜେ । ଏ ସ୍ଥାନରେ

ଗୋଟିଏ ବୃହଦାକାର ତୋପ ଅଛି । ପ୍ରତିଦିନ ରବି ନ ଘଟିକା ସମୟରେ ଅଓଆଜ ହୋଇଥାଏ ।

ଏହି ବିହାରସ୍ଥାନ ନିକଟରେ ସାଗରଗାମୀ ପୋତର ସାଙ୍କେତିକ ଅଲୋକସ୍ତମ୍ଭ ଅଛି । ଦେଖିଲୁଁ ପୁରୁଣା ଅଲୋକସ୍ତମ୍ଭଟି ଭଙ୍ଗି ଦିଆଯାଇ ଗୋଟିଏ ଅତ୍ୟୁଚ୍ଚ ଆଲୋକସ୍ତମ୍ଭ ନିର୍ମିତ ହେଉଅଛି ।

ଏହି ସ୍ଥାନର କିଞ୍ଚିତ୍ ଦକ୍ଷିଣ ଅଂଶ ସମୁଦ୍ରକୂଳରେ ମହ୍ୟଜୀବୀ ନୋଳିଆମାନଙ୍କର ଗ୍ରାମ ଥିଲା । କେତେକ ବର୍ଷ ପୂର୍ବେ ମାନ୍ଦ୍ରାଜ ଗଭର୍ଣ୍ଣର ଷ୍ଟିମାର୍ ଯୋଗେ ବୈଜାଗ ଆସିଥିଲେ । ଷ୍ଟିମାର୍ ଉପରକୁ ଏହି ଗ୍ରାମଟି ଅସୁନ୍ଦର ଦିଶିବାରୁ ନୋଳିଆମାନଙ୍କୁ ଖର୍ଚ୍ଚା ଦିଆଯାଇ ଗ୍ରାମ ଉଠାଇ ଦିଆ ଯାଇଅଛି । ସେଥିର କେତେକ ଅଂଶ ବର୍ତ୍ତମାନ ସମୟରେ ମ୍ୟୁନିସିପାଲିଟି ଅଧୀନରେ ପତିତ ଅବସ୍ଥାରେ ଅଛି । ଏହି ସ୍ଥାନ ସକଳ ଯେ ସୁନ୍ଦର ସୌଧାବଳୀରେ ସୁଶୋଭିତ ହେବ, ଏହା ସହଜରେ ଅନୁମାନ କରାଯାଇପାରେ ।

ଏହି ସ୍ଥାନର କିଞ୍ଚିତ୍ ଉତ୍ତରାଂଶରେ ଉଚ୍ଚ ପାଷାଣ ଡିପ ଉପରେ ସୁନ୍ଦର ଚିକିତ୍ସାଳୟ ନିର୍ମିତ ହୋଇଅଛି । ମହାରାଜ ଜଗାରାଓ ସେହି ଚିକିତ୍ସାଳୟର କେତେକ ଅଂଶ ସ୍ୱ ବ୍ୟୟରେ ନିର୍ମାଣ କରାଇ ଦେଇଥିବାରୁ ଗେଟ୍ ଉପରେ ତାଙ୍କ ନାମ ଅଙ୍କିତ ହୋଇଅଛି ।

ସହରର ଦକ୍ଷିଣ ପ୍ରାନ୍ତ ରେଲ୍‌ଲାଇନ ଠାରୁ ଓଯ୍ୟାଲ୍‌ଟେୟାରର ପ୍ରାୟ ଶେଷ ସୀମା ପର୍ଯ୍ୟନ୍ତ ସମୁଦ୍ର କୂଳେ କୂଳେ ଉତ୍ତର ଦକ୍ଷିଣ ବିସ୍ତୃତ ବାଲି ଉପରେ ଗୋଟିଏ ସୁନ୍ଦର ସଡ଼କ ପ୍ରସ୍ତୁତ ହୋଇଅଛି । ଅନେକ ସ୍ଥାନରେ ସାଗରଲହରୀ ପ୍ରାୟ ସେହି ସଡ଼କକୁ ସ୍ପର୍ଶ କରୁଅଛି । ପ୍ରଭାତ ଏବଂ ସନ୍ଧ୍ୟା ସମୟରେ ଏହି ମାର୍ଗରେ ଭ୍ରମଣ କରିବା ଅତ୍ୟନ୍ତ ସୁଖକର ଅଟେ । ନିନା ଦେଓ ବାବୁଙ୍କଠାରୁ ଶୁଣିଲୁଁ ମହାରାଜ ଗଜପତି ରାଓ ପଚିଶ-ହଜାର ଟଙ୍କା ବ୍ୟୟ କରି ଏହି ମାର୍ଗ ନିର୍ମାଣ କରାଇ ଦେଇଅଛନ୍ତି । ନିଶ୍ଚୟ ତାଙ୍କର ଅର୍ଥ ବ୍ୟୟ ସାର୍ଥକ ହୋଇଅଛି ।

ମାନ୍ଦ୍ରାଜ ସମୀପବର୍ତ୍ତୀ ସମୁଦ୍ର ମଧ୍ୟରେ ଥିବା ହାରବର ପରି ଏଠାରେ ସମୁଦ୍ର ମଧ୍ୟରେ ହାରବର ନିର୍ମାଣ ହେବା ନିମନ୍ତେ ଗଭର୍ଣ୍ଣମେଣ୍ଟ ମଞ୍ଜୁର କରିଥିବାର ଶ୍ରବଣ କଲୁ ।

ବୈଜାଗ ସହର ମଧ୍ୟରେ ଗୋଟିଏ ସ୍ଥାୟୀ ନାଟ୍ୟଶାଳା ପ୍ରସ୍ତୁତ ହେଉଅଛି । ପ୍ରିନ୍ସ ବିକ୍ରମ ଦେଓଙ୍କର ସେଥିରେ ବିଶେଷ ଯତ୍ନ ଥିବାର ଦେଖିଲୁ । ମଧ୍ୟ ସେ ସ୍ଥାନରେ ଅଭିନୟ ନିମନ୍ତେ ଉକ୍ତ ମହାତ୍ମା ଆନ୍ଧ୍ରଭାଷାରେ ଖଣ୍ଡିଏ ନାଟକ ରଚନା କରୁଅଛନ୍ତି । ଆମ୍ଭେମାନେ ସଙ୍ଗୀତ ରାଧାମାଧବ ନାଟକ ପାଠ କରି ବୁଝିଅଛୁ, ତାଙ୍କର ନାଟକ ରଚନା କରିବାର ଶକ୍ତିର ଅଭାବ ନାହିଁ । ଉତ୍କଳଭାଷାରେ ଆହୁରି ନାଟକ ତାଙ୍କ ହସ୍ତରୁ ପାଇବାକୁ ଆଶା କରୁଁ ।

ବିଦେଶୀୟ ଲୋକମାନଙ୍କ ସୁବିଧା ନିମନ୍ତେ ବୈଜାଗ ସହରର ଉତ୍ତର ପ୍ରାନ୍ତରେ ଟରନାଲ ଚୈଲ୍‌ଟ୍ରି ନାମକ ଗୋଟିଏ ସୁନ୍ଦର ପ୍ରଶସ୍ତ ପାନ୍ଥନିବାସ ପ୍ରସ୍ତୁତ ହୋଇଅଛି । ଆମ୍ଭେମାନେ ସେହି ଚୈଲ୍‌ଟ୍ରି ମଧ୍ୟରେ ଭ୍ରମଣ କରି ଦେଖିଛୁଁ, ବାସ କରିବା ନିମନ୍ତେ ସର୍ବଶ୍ରେଣୀ ଲୋକମାନଙ୍କ ପକ୍ଷରେ ତାହା ଉପଯୋଗୀ ଅଟେ । ଚୈଲ୍‌ଟ୍ରି ଚତୁର୍ଦ୍ଦିଗରେ ନାରକେଳ ବୃକ୍ଷମାନ ଅଳ୍ପ ଦିବସପୂର୍ବେ ରୋପିତ ହୋଇଅଛି । ବୃକ୍ଷଗୁଡ଼ିକ ବୃଦ୍ଧିପ୍ରାପ୍ତ ହେଲେ ପରମ ରମଣୀୟ ରୂପଧାରଣ କରିବ । ନଗର ମଧ୍ୟରେ ଆହୁରି ମଧ୍ୟ ଗୋଟିଏ ପାନ୍ଥ ନିବାସ ଅଛି । ପାନ୍ଥ ନିବାସକୁ ତୈଲଙ୍ଗୀ ଭାଷାରେ ଛତ୍ରମୁ ବୋଲାଯାଏ । ଟର୍‌ନଲ ଚୈଲ୍‌ଟ୍ରି ନିର୍ମାଣରେ ପ୍ରାୟ ୩୦ ସହସ୍ର ଟଙ୍କା ବ୍ୟୟ ହୋଇଥିବ । ଭେଦାଦ୍ୱାରା ଏହି ଟଙ୍କା ସଂଗୃହୀତ ହୋଇଅଛି । ପ୍ରଧାନ ଦାତାମାନଙ୍କ

ନାମ ଏବଂ ଦତ୍ତମୁଦ୍ରାର ସଂଖ୍ୟା ପ୍ରସ୍ତର ଫଳକରେ ଖୋଦିତ ହୋଇ ଟ୍ରେଲ୍‌ଟି ପ୍ରବେଶଦ୍ୱାର ସମୀପସ୍ଥ ଭିତ୍ତିରେ ସଂଲଗ୍ନ କରାଯାଇ ଅଛି । ଟରିନାଲ ଟ୍ରେଲ୍‌ଟିରେ ପାନ୍ଥମାନେ ବିନା ଭଡ଼ାରେ ତିନି ଦିବସ ରହି ପାରିବେ । ଅନେକ ଦିନ ରହିବାକୁ ହେଲେ ଦୈନିକ ଗୃହଅଣା ହିସାବରେ ଭଡ଼ା ଦେବାକୁ ହେବ । ଯେପରି ସୁନ୍ଦର ସୁବିଧାଜନକ ବାସସ୍ଥାନ, ସେଥିରେ ଦୈନିକ ଗୃହଅଣା ଭଡ଼ା ଅକିଞ୍ଚିତ୍କର ଅଟେ । ଟରିନାଲ ନାମରେ ଜଣେ ଲୋକପ୍ରିୟ କଲେକ୍ଟର ସାହେବ ଭିଜାଗାପାଟନାରେ ଥିଲେ, ତାଙ୍କ ସ୍ମୃତିଚିହ୍ନ ସକାଶେ ଏହି ଟ୍ରେଲ୍‌ଟି ଉତ୍ସୃଷ୍ଟ ହୋଇଅଛି ।

ପାନ୍ଥନିବାସର ପୂର୍ବ ପାର୍ଶ୍ୱରେ ଗୋଟିଏ ଗଣ୍ଡଶୈଳ ଅଛି । ନନ୍ଦା ଦେଓ ବାବୁଙ୍କ ପ୍ରମୁଖାତ୍ ଅବଗତ ହେଲୁଁ ସେହି ଶୈଳ କଟାଯାଇ ତାହାର ପ୍ରସ୍ତରରାଶିରେ ନଗରର ପଶ୍ଚିମ ପ୍ରାନ୍ତସ୍ଥ ଚିଲ୍‌କା ପୋତାଇ ଦିଆ ଯିବାର ପ୍ରସ୍ତାବ ଚାଲୁଅଛି । ତାହା-ହେଲେ ନଗରବୃଦ୍ଧି ସକାଶେ ଅନେକ ସ୍ଥାନ ମିଳିବ । ଇଂରେଜଙ୍କ ଅସାଧ୍ୟ କିଛି ନାହିଁ ।

ଟ୍ରେଲ୍‌ଟିର କିଞ୍ଚିତ୍ ଉତ୍ତର ଭାଗରେ ସୁନ୍ଦର ସୁବିସ୍ତୃତ ଆମ୍ରକାନନ ପରିବେଷ୍ଟିତ ମହାରାଜ ଗଜପତି ରାଓଙ୍କର ରାଜଭବନ । ଆମ୍ଭେମାନେ ଉଦ୍ୟାନ ମଧ୍ୟକୁ ଯାଇ ତାହା ଦେଖିବା ସକାଶେ ସମୟ ଏବଂ ସୁଯୋଗ ପାଇନାହୁଁ । ମାତ୍ର ବାହାରରୁ ଆମ୍ଭମାନଙ୍କୁ ଉଦ୍ୟାନଟି ଅଶୋକବନ ପରି ବୋଧ ହେଲା ।

ଏଠାରେ ଯେ ଗୋଟିଏ ମାନମନ୍ଦିର ଅଛି, ଏହା ଆମ୍ଭମାନଙ୍କୁ ପୂର୍ବରୁ ଜଣା ନ ଥିଲା । ଏହି ମାନମନ୍ଦିରଟି କାଶୀ ବା ଜୟପୁରର ମାନମନ୍ଦିରର ସମାନ କି ନାହିଁ, କହି ନପାରୁଁ । ନନ୍ଦା ଦେଓ ବାବୁ ଦୂରରୁ ହାତ ବଢ଼ାଇ ଗୃହଟି ମାତ୍ର ଦେଖାଇ ଦେଲେ ।

ଦକ୍ଷିଣ ଦେଶସ୍ଥ ଅନ୍ୟାନ୍ୟ ସହରପରି ଆମ୍ଭେମାନେ ଭୈଜାଗ ସହରରେ ମଧ୍ୟ ଉପଯୁକ୍ତ ମିଷ୍ଟାନ୍ନ ଦୋକାନ ଦେଖିଲୁ ନାହିଁ । ଯେ ସମସ୍ତ ଦୋକାନ ଅଛି, ତାହା ନେତ୍ରତୃପ୍ତିକର ଓ ରୁଚିକର ବୋଲି ବୋଧ ହେଲା ନାହିଁ । ବୋଧହୁଏ ଅନ୍ଧ୍ର ଲୋକେ ମିଷ୍ଟାନ୍ନକୁ ତାଦୃଶ ପସନ୍ଦ କରନ୍ତି ନାହିଁ । ଆମ୍ଭେମାନେ ଏଠାରେ ଯଥେଷ୍ଟ ପରିମାଣରେ ଉତ୍କୃଷ୍ଟ ରସଗୋଲା, କଟୁରି ପୁଣି ପାଇ ଆଶ୍ଚର୍ଯ୍ୟ ବୋଧ କଲୁଁ । ସେ ସବୁ ପ୍ରିନ୍‌ସ ବିକ୍ରମ ଦେଓଙ୍କ ସ୍ୱଗୃହ ପ୍ରସ୍ତୁତ ।

ଛ' ଜଣ ଉତ୍କଳୀୟ ଯୁବକଙ୍କ ସହିତ ଏ ସ୍ଥାନରେ ସାକ୍ଷାତ୍ ହେଲା । ସେମାନେ ଚିକ୍‌କାଲି, ବ୍ରହ୍ମପୁର, ଦିମୁସର ପ୍ରଭୃତି ସ୍ଥାନରୁ ଯାଇ ଇଂରାଜୀ ଶିକ୍ଷା ନିମନ୍ତେ ଏ ସ୍ଥାନରେ ବାସ କରୁଅଛନ୍ତି । ସ୍ୱଜାତି ସ୍ୱଦେଶ-ବାସୀମାନଙ୍କୁ ଭଗବାନ୍ କିରୂପ ଏକ ମାୟା ସୂତ୍ରରେ ଗ୍ରନ୍ଥନ କରି ରଖିଅଛନ୍ତି । ଏହି ଯୁବକଗୁଡ଼ିକ ନିଃସମ୍ପର୍କୀୟ ହେଲେ ମଧ୍ୟ ଆମ୍ଭେମାନେ ବିଦେଶରେ ଏମାନଙ୍କୁ ଦେଖି ଅତ୍ୟନ୍ତ ଆନନ୍ଦିତ ହେଲୁ । ଯୁବକ-ଗୁଡ଼ିକ ମଧ୍ୟ ଆମ୍ଭମାନଙ୍କ ଆଗମନ ସମ୍ବାଦ ପାଇ ଆନନ୍ଦ ପୂର୍ବକ ଆମ୍ଭମାନଙ୍କ ସହିତ ସାକ୍ଷାତ୍ କରିବାକୁ ପୁନଃପୁନଃ ଆସିଥିଲେ ଏବଂ ଆମ୍ଭମାନଙ୍କୁ ବିଶେଷ ଆଦର ସମ୍ମାନ କରିଥିଲେ । ଯୁବକଗୁଡ଼ିକଙ୍କ ଉତ୍ସାହ, ସରଳତା, ସାଧୁବ୍ୟବହାର, ହୃଦୟୋନ୍ମୁଖୀ ପ୍ରଭୃତିର ନିଦର୍ଶନ ପାଇ ଅତ୍ୟନ୍ତ ଆନନ୍ଦିତ ହେଲୁ । ଏହି ଯୁବକଗୁଡ଼ିକ ପ୍ରିନ୍‌ସ ବିକ୍ରମ ଦେଓଙ୍କଠାରୁ ବିଶେଷ ସାହାଯ୍ୟ ପାଉଥିବାର ଜଣାଗଲା । ଦୁଃଖର ବିଷୟ, ଆନ୍ଧ୍ର ଶିକ୍ଷକମାନଙ୍କଠାରୁ ତାଦୃଶ ସହାନୁଭୂତି ସୁବିଧା ପାଉଥିବାର କଥୋପକଥନ ଦ୍ୱାରା ଜଣାଗଲା ନାହିଁ । ବିଚ୍ଛିନ୍ନ ଉତ୍କଳର ଖଣ୍ଡ ଏକତ୍ର ହେଲେ ଶିକ୍ଷାର୍ଥୀ ଯୁବକମାନଙ୍କୁ ଏପରି ଅନାଥ ଭାବରେ ବିଦେଶରେ ଭ୍ରମଣ କରିବାକୁ ହେବ ନାହିଁ ।

ଓ୍ୱାଲଟେୟାର ଗୋଟିଏ ସ୍ୱତନ୍ତ୍ର ନଗର ନୁହେ । ବୈଜାଗର ଉତ୍ତର ଅଂଶର ନାମ ଓ୍ୱାଲଟେୟାର । କେତେକ ବର୍ଷ ପୂର୍ବେ ଏହା ଜଙ୍ଗଲମୟ ଥିଲା । ବୈଜାଗ ନଗରବାସୀମାନେ ଏଠାରେ ପାରିଧି କରୁଥିଲେ । ଆପାତତଃ ଇଂରେଜମାନେ ଜଙ୍ଗଲ ପରିଷ୍କାର କରି ଓ୍ୱାଲ୍‌ଟେୟାର ନାମ ଦେଇଅଛନ୍ତି । ଓ୍ୱାଲଟେୟାର ଘନବସତିପୂର୍ଣ୍ଣ ନୁହେଁ । ଏ ଦେଶର ଇଂରେଜବସତି ଯେପରି ହୋଇଥାଏ, ସେହିପରି । ଗୋଟିଏ ଗୋଟିଏ ଖଣ୍ଡଶୈଳ ଉପରେ, କଦାଚିତ୍ ପ୍ରାନ୍ତର ମଧ୍ୟରେ ଗୋଟିଏ ଗୋଟିଏ ବଙ୍ଗଳା । ଏହି ବଙ୍ଗଳାଗୁଡ଼ିକ ପରସ୍ପର ଦୂରବର୍ତ୍ତୀ, ସମ୍ପର୍କବିଚ୍ଛିନ୍ନ, କଦାଚିତ୍ ଫଳପୁଷ୍ପର ଉଦ୍ୟାନ ବେଷ୍ଟିତ । ପ୍ରତ୍ୟେକ ବଙ୍ଗଳା ଭିନ୍ନ ଭିନ୍ନ ଆକାରରେ ଗଠିତ । ଶୈଳଶିଖରସ୍ଥ ବଙ୍ଗଳାକୁ ଯିବା ସକାଶେ ପର୍ବତ ପାଦଦେଶରୁ ସୋପାନାବଳୀ ନିର୍ମିତ । ପ୍ରତ୍ୟେକ ବଙ୍ଗଳାର ଅଳିନ୍ଦକୁ ସାଗର ଲହରୀ ସୁନ୍ଦର ଦୃଶ୍ୟ ହୁଏ । ଏଠାରେ ଅବିରତ ପ୍ରବଳ ବେଗରେ ସଜଳ ପବନ ପ୍ରବାହିତ ହେଉଅଛି । ଗ୍ରୀଷ୍ମର ମାତ୍ର ସମ୍ପର୍କ ନାହିଁ । କୌଣସି କୌଣସି ବଙ୍ଗଳାର ଚତୁର୍ଦ୍ଦିଗରେ ବିରଳ କେତକୀକୁଞ୍ଜ ସୁଶୋଭିତ ।

ସମୁଦ୍ରକୂଳ ନାରିକେଳ ଓ ତାଳ ବୃକ୍ଷରେ ପରିପୂର୍ଣ୍ଣ ।

ମହାକବି କାଳିଦାସ ବୋଧହୁଏ ଏହିପରି ସ୍ଥାନ ଦେଖି ଲେଖିଅଛନ୍ତି—

"ଦୂରାଦୟଶ୍ଚକ୍ରନିଭସ୍ୟ ତନ୍ୱୀ
ତମାଲ ତାଳୀ ବନରାଜି ନୀଳା ।
ଆଭାତିବେଲା ଲବଣାମ୍ବୁରାଶେ—
ର୍ଧାରା ନ ବଦ୍ଧେବ କଳଙ୍କ ରେଖା ।"

ଓ୍ୱାଲଟେୟାରର ଉତ୍ତରାଂଶରେ ଘନବସତି-ବିଶିଷ୍ଟ ଗୋଟିଏ ଗ୍ରାମ ଅଛି । ଏ ସ୍ଥାନରେ ନାନା-ପ୍ରକାର ନିତ୍ୟପ୍ରୟୋଜନୀୟ ଦ୍ରବ୍ୟମାନ ସତରାଚର ବିକ୍ରୟ ହୁଏ । କହିବା ବାହୁଲ୍ୟ, ଏହା ଦେଶୀୟ ଲୋକମାନଙ୍କ ବାସର ଉପଯୋଗୀ ଗ୍ରାମ ଅଟେ । ସାଧାରଣ ମଧ୍ୟବିତ୍ତମାନଙ୍କ ବାସର ଉପଯୋଗୀ ଅନେକ ଗୃହ ଏଠାରେ ଭଡ଼ା ସକାଶେ ରହିଅଛି । ସ୍ୱାସ୍ଥ୍ୟଲାଭ ଉଦ୍ଦେଶ୍ୟରେ ଅନେକଗୁଡ଼ିଏ ବଙ୍ଗଦେଶୀୟ ଲୋକ ଏ ସ୍ଥାନରେ ବାସ କରୁଅଛନ୍ତି । କେତେକ ଜଣ ବଙ୍ଗବାସୀ ଭଦ୍ରଲୋକଙ୍କ ସହିତ ସାକ୍ଷାତ ହୋଇଥିଲା ।

୨୮ ତାରିଖ ପ୍ରାତଃକାଳରେ ପ୍ରିନ୍‌ସ ବିକ୍ରମ ଦେଓ ବର୍ମା ତଥା ବୈଜାଗଠାରୁ ବିଦାୟ ଗ୍ରହଣ କଲି । ସେହି ରାତ୍ରି ଅନ୍ଧକାରରେ ବାବୁ ବଡ଼ ନନା ଦେଓଙ୍କ ମୂର୍ତ୍ତି ବାଗି ନିକଟରେ ଦେଖିବାକୁ ପାଇଲି । ପୁନଃ ପୁନଃ ନିଷେଧ କଲେ ମଧ୍ୟ ଉକ୍ତ ମହାଶୟ ପ୍ରାୟ ଦୁଇ ମାଇଲ ବାଟ ରେଲ ଷ୍ଟେସନ୍‌କୁ ସଙ୍ଗେ ସଙ୍ଗେ ଆସିଲେ । ଟ୍ରେନ୍ ଛାଡ଼ିବାକୁ ବିଳମ୍ବ ଥିଲା । ନନା ଦେଓ ବାବୁ ଆମ୍ଭମାନଙ୍କୁ ଷ୍ଟେସନ୍‌ର ଭିନ୍ନ ଭିନ୍ନ ସ୍ଥାନ ଦେଖାଇ ଏହାର ପୂର୍ବ ଇତିହାସ କହିବାକୁ ଲାଗିଲେ ।

ପୂର୍ବାହ୍ନ ୭ ଘଟିକା ସମୟରେ ନନା ଦେଓ ବାବୁ ଆପେ ଟିକେଟ ଖରଦ କରି ଆଣି ଆମ୍ଭମାନଙ୍କୁ ରେଲରେ ବସାଇ ଦେଇ ବିଦାୟ ଗ୍ରହଣ କଲେ । ବୈଜାଗର ପ୍ରାକୃତିକ ଦୃଶ୍ୟ, ପ୍ରିନ୍‌ସ ବିକ୍ରମ ଦେଓଙ୍କର ଆତିଥେୟତା, ବଡ଼ ନନା ଦେଓ ବାବୁଙ୍କର ଯତ୍ନ ଏବଂ ବନ୍ଧୁତା ଯାବଜ୍ଜୀବନ ହୃଦୟପଟରେ ଅଙ୍କିତ ଥିବ ।

ବଂଶୀଧ୍ୱନି କରି ରେଲ ଚାଲିଲା, ଆମ୍ଭେମାନେ ଶକୁନ୍ତଳାର ଏହି ଶ୍ଳୋକଟି ସ୍ମରଣ କରୁ କରୁ ଯାତ୍ରା କଲୁ ।

"ଗଚ୍ଛତି ପୁରଃ ଶରୀରଂ
ଧାବତି ପଶ୍ଚାଦସଂସ୍ଥିତ ଚେତଃ
ଚୀନାଂ ଶୁକମିବ କେତୋଃ
ପ୍ରତିବାତଂ ନୀୟ ମାନସ୍ୟ ।"

ଦିବା ୧୨ ଘଣ୍ଟା ସମୟରେ ଟ୍ରେନ୍ ଛତ୍ରପୁରରେ ପହଞ୍ଚିଲା । ଦୂରରୁ ଦେଖିଲୁଁ, ବାବୁ ଦୀନବନ୍ଧୁ ପାଳ ବି. ଏ. ଆମ୍ଭମାନଙ୍କ ଅପେକ୍ଷାରେ ପ୍ରଚଣ୍ଡ ଖରାରେ ପ୍ଲାଟଫରମରେ ଛିଡ଼ାହୋଇ ଅଛନ୍ତି । ରେଲରୁ ଅବତରଣ କରି ତାଙ୍କ ଘରେ ଅତିଥି ହେଲୁଁ ।

ଛତ୍ରପୁର ସାଗରକୂଳବର୍ତ୍ତୀ ଗୋଟିଏ କ୍ଷୁଦ୍ର ସହର ବା ବୃହତ୍‌ଗ୍ରାମ । ନିରନ୍ତର ଶୀତଳ ପବନ ପ୍ରବଳବେଗରେ ପ୍ରବାହିତ ହେଉଅଛି । ଗ୍ରୀଷ୍ମର ସମ୍ପର୍କ ନାହିଁ । ଯଦିଚ ଏହା ସମୁଦ୍ରକୂଳବର୍ତ୍ତୀ ସ୍ଥାନ, ମାତ୍ର ଗୋଟିଏ ଖାଡ଼ି ବା ବ୍ରେକ୍ ୱାଟରର ଦ୍ୱାରା ସାଗରଜଳ ଗ୍ରାମରୁ ବିଚ୍ଛିନ୍ନ । ଏଠାରେ ଗଞ୍ଜାମ ଜିଲ୍ଲାର କଲେକ୍ଟରଙ୍କ କଚେରି ଅଛି । କଚେରିର ଅମଲା ସଂଖ୍ୟା ପ୍ରାୟ ୧୨୦ ଜଣ, ସେଥିମଧ୍ୟରୁ ଚାରିଜଣ ମାତ୍ର ଉତ୍କଳୀ । ଛତ୍ରପୁର ଗ୍ରୀଷ୍ମକାଳରେ ବାସ କରିବାର ଉପଯୋଗୀ ସ୍ଥାନ ଅଟେ ।

( ଉ. ସା. ୭ମ ଭାଗ, ୧ମ ସଂଖ୍ୟା, ବୈଶାଖ, ୧୩୧୦ )

---

## ଶ୍ରୀକ୍ଷେତ୍ରରେ ଚୈତନ୍ୟ ମହାପ୍ରଭୁ

ଚୈତନ୍ୟଦେବଙ୍କ ବିଷୟ ଲେଖିବା ପୂର୍ବେ ତାହାଙ୍କ ଜାତିକୁଳ ସମ୍ବନ୍ଧରେ କିଞ୍ଚିତ୍ ଆଲୋଚନା କରିବା ବୋଧକରୁଁ ଅସଙ୍ଗତ ହେବନାହିଁ । ଚୈତନ୍ୟ ଦେବଙ୍କ ଜନ୍ମସ୍ଥାନ ନବଦ୍ୱୀପ, ପିତାଙ୍କ ନାମ ଜଗନ୍ନାଥ ମିଶ୍ର, ଜନନୀ—ଶଚୀ ଦେବୀ । ଏହାଙ୍କର ଦୁଇ ସ୍ତ୍ରୀ, ପଦ୍ମାବତୀ ପ୍ରଥମା, ଦ୍ୱିତୀୟା ସ୍ତ୍ରୀଙ୍କ ନାମ ବିଷ୍ଣୁପ୍ରିୟା ।
ଚୈତନ୍ୟ ଦେବ ଉତ୍କଳ ଶ୍ରେଣୀ ବ୍ରାହ୍ମଣ—ଜାତିରେ ଓଡ଼ିଆ । ତାଙ୍କର ଆଦିମ ବାସସ୍ଥାନ ଯାଜପୁର । ଏହାଙ୍କ ପିତାମହ ଉପେନ୍ଦ୍ର ମିଶ୍ର ପ୍ରତାପରୁଦ୍ର ଦେବଙ୍କ ଦ୍ୱାରା ଉତ୍ପୀଡ଼ିତ ହୋଇ ଶ୍ରୀହଟ୍ଟ ପଳାଇ ଯାଇଥିଲେ । ସୁଦୀର୍ଘକାଳରୁ ନବଦ୍ୱୀପ ସଂସ୍କୃତଶିକ୍ଷାର ପୀଠସ୍ଥାନ ବୋଲି ପରିଚିତ । ଚୈତନ୍ୟଦେବଙ୍କ ପିତା ଜଗନ୍ନାଥ-ମିଶ୍ର ସଂସ୍କୃତ ଅଧ୍ୟୟନ ଉପଲକ୍ଷରେ ନବଦ୍ୱୀପରେ ବାସ କରୁଥିଲେ । ସେହି ଅବସ୍ଥାରେ ଶ୍ରୀଚୈତନ୍ୟଙ୍କ ଜନ୍ମ । ଚୈତନ୍ୟ ଦେବଙ୍କ ଜନ୍ମସ୍ଥାନ ନବଦ୍ୱୀପ; ମାତ୍ର ଆମ୍ଭେମାନେ ତାହାଙ୍କୁ ଓଡ଼ିଆ ବ୍ରାହ୍ମଣ ବୋଲି ପରିଚୟ ଦେଉଅଛୁଁ । ଏଥିରେ କେହି କେହି ଆପତ୍ତି ଉତ୍ଥାପନ କରି ପାରନ୍ତି; ଏ କ୍ଷେତ୍ରରେ ଆତ୍ମପକ୍ଷ ସମର୍ଥନ ନିମନ୍ତେ କେତେକ କଥା କହିବା ଆବଶ୍ୟକ ବୋଧ କରୁଅଛୁଁ । ମନେକରନ୍ତୁ, ଜନ୍ ବିମ୍ସ ଇଂରେଜ ସିଭିଲିୟାନ୍; କାର୍ଯ୍ୟୋପଲକ୍ଷରେ କଟକରେ ବାସ କରିବା ସମୟରେ ତାହାଙ୍କର ଏକ ପୁତ୍ର ଜାତ ହେଲା—ନାମ ରବର୍ଟ । ଆପଣ କଣ ରବର୍ଟଙ୍କୁ ଓଡ଼ିଆ ପିଲା କହିବେ, ନା ଇଂରେଜ ପିଲା କହିବେ ? ଅବଶ୍ୟ ଆମ୍ଭେମାନେ ବଙ୍ଗଳାର ସର୍ବଶ୍ରେଷ୍ଠ ସମ୍ବାଦପତ୍ର ସୋମପ୍ରକାଶର ସୁବିଖ୍ୟାତ ସମ୍ପାଦକ ପଣ୍ଡିତ ଦ୍ୱାରକାନାଥ ବିଦ୍ୟାଭୂଷଣଙ୍କୁ ଓଡ଼ିଆ ବୋଲି ପରିଚୟ ଦେବାକୁ ସାହସ କରି ନ ପାରୁଁ । କାରଣ ତାହାଙ୍କ ପୂର୍ବପୁରୁଷ ଓଡ଼ିଆ ବ୍ରାହ୍ମଣ ହେଲେ ମଧ୍ୟ ସେମାନେ ବହୁକାଳ ଯାବତ୍ ଉତ୍କଳ ସମ୍ପର୍କ ପରିତ୍ୟାଗ କରି ଯାଇଅଛନ୍ତି । ଶତାଧିକ ବର୍ଷାବଧି ଅନେକ ବଙ୍ଗୀୟ କାୟସ୍ଥ ଓ ବ୍ରାହ୍ମଣ ବଙ୍ଗରୁ ସମ୍ପୂର୍ଣ୍ଣରୂପେ ବିଚ୍ଛିନ୍ନ ହୋଇ ଆସି ଉତ୍କଳରେ ବାସ କରୁଥିଲେ ମଧ୍ୟ ସେମାନେ ଆପଣାକୁ ବଙ୍ଗାଳୀ ବୋଲି ପରିଚୟ ଦେବାକୁ ଗୌରବର ବିଷୟ ଜ୍ଞାନ କରିଥାନ୍ତି । ଏହି ଭାବରେ ଆମ୍ଭେମାନେ ଛୋଟନାଗପୁରର ସୁବିଖ୍ୟାତ ସ୍କୁଲ ଇନ୍‌ସ୍ପେକ୍ଟର ରାୟ ବାଣେଶ୍ୱର ଚକ୍ରବର୍ତ୍ତୀ ବାହାଦୁର ଏବଂ ନୀଳକଣ୍ଠ ସାର୍ବଭୌମ ଓ ଭବାନୀଚରଣ ପଞ୍ଚାନନ ପ୍ରଭୃତିଙ୍କୁ ଓଡ଼ିଆ ବ୍ରାହ୍ମଣ ବୋଲି ପରିଚୟ ଦେଇପାରୁଁ । କାରଣ ଏମାନଙ୍କ ମୂଳ ପୁରୁଷ ଗୋପୀଜନ ମିଶ୍ର ଉତ୍କଳ ଶ୍ରେଣୀ କାଶ୍ୟପ ଗୋତ୍ରୀୟ ଯଜୁର୍ବେଦୀ ବ୍ରାହ୍ମଣ, ଯାଜପୁରରୁ ଉଠି ଯାଇ ହୁଗୁଳି ଜିଲ୍ଲାରେ ବାସ କରିଥିଲେ । ମାତ୍ର ଯୁକ୍ତି ଏବଂ ସତ୍ୟତାର ଅନୁରୋଧରେ

ଆମ୍ଭେମାନେ ସେମାନଙ୍କୁ ଓଡ଼ିଆ ବୋଲି ପରିଚୟ ଦେବାକୁ ନିତାନ୍ତ ଅନିଚ୍ଛୁକ । କାରଣ ସେମାନେ ଉତ୍କଳଦେଶରୁ ସମସ୍ତ ବିଷୟରେ ସମ୍ପୂର୍ଣ୍ଣରୂପେ ସମ୍ପର୍କ ବିଚ୍ଛିନ୍ନ କରିଯାଇଅଛନ୍ତି । ବଙ୍ଗର ବଉଳ୍ପ ନିଃସମ୍ପର୍କୀୟ କେତେକ କାୟସ୍ଥ ପ୍ରଭୃତି ଜାତି ଜନ୍ମସ୍ଥାନ, କର୍ମକ୍ଷେତ୍ର, ସୁଖ ସୌଭାଗ୍ୟର ଲୀଳାଭୂମି କଥା ବିସ୍ମୃତ ହୋଇ ଯେ ଆପଣାକୁ ବଙ୍ଗାଳୀ ବୋଲି ପରିଚୟ ଦେଇଥାନ୍ତି, ସେଥିର ଗୋଟିଏ ଭାରି ମଜ୍‌ବୁଦ କାରଣ ଅଛି— ଓଡ଼ିଶାଟା ପରା ଭାରି କଦର୍ଯ୍ୟ ଦେଶ, ଓଡ଼ିଆଗୁଡ଼ାକ ନିତାନ୍ତ ଶ୍ରେଷ୍ଠଜାତି । ସୁତରାଂ, ଜାଣିଶୁଣି କବୁଲ ଜବାବ ଦେବା ସେମାନଙ୍କ ମତରେ ନିତାନ୍ତ ନିର୍ବୋଧତାର କାର୍ଯ୍ୟ ଅଟେ । ସେଦିନ ଜଣେ ବଙ୍ଗାଳୀ ବାବୁ ମିଷ୍ଟର ଦାସଙ୍କୁ କହିଥିଲେ—"ଆପଣ ତ ଜଣେ ବଙ୍ଗାଳୀ, ଓଡ଼ିଆ କିଁଆ ହେବେ ?" ଦାସେ ତାହାର ଉପଯୁକ୍ତ ଜବାବ ଦେଇଥିଲେ, "ଆମ୍ଭେ ଜାଣୁ, ଆମ୍ଭ ସାତପୁରୁଷ ଓଡ଼ିଆ ଅଟନ୍ତି";ଅର୍ଥାତ୍ ସେହି ବଙ୍ଗାଳୀବାବୁଙ୍କ ମତରେ ଓଡ଼ିଶାରେ ଏତେ ଗୋଟାଏ ଲୋକ ଜନ୍ମିବା ସମ୍ଭବପର ନୁହେଁ । ମାତ୍ର ବଙ୍ଗଦେଶର ସୁପ୍ରସିଦ୍ଧ ଲେଖକ ମାନନୀୟ ଜଜ ବାବୁ ସାରଦାଚରଣ ମିତ୍ର ଏମ୍. ଏ., ବି. ଏଲ୍. ଗତ ଚୈତ୍ର ମାସ ପ୍ରବାସୀରେ ଚୈତନ୍ୟ ଦେବଙ୍କର ସମ୍ବନ୍ଧରେ ଯେଉଁ ପ୍ରବନ୍ଧ ଲେଖିଅଛନ୍ତି, ସେଥିର ଏକ ଅଂଶର ମର୍ମ ଏହି—"ଓଡ଼ିଆମାନେ ବଙ୍ଗାଳୀ ଜାତି ପରି ଭୀରୁ କାପୁରୁଷ ନୁହନ୍ତି । ସତର ଜଣ ପଠାଣ ପାଇକ ଡରରେ ବଙ୍ଗଳାର ସ୍ୱାଧୀନ ରାଜା ଦରଦ୍ୱାର ଛାଡ଼ି ପଳାଇ ଯାଇଥିଲେ, ମାତ୍ର ଓଡ଼ିଆମାନେ କ୍ରମାଗତ ଯୁଦ୍ଧ କରି ଦୁଇଶତ ବର୍ଷ ପର୍ଯ୍ୟନ୍ତ ପଠାଣମାନଙ୍କୁ ସୁବର୍ଣ୍ଣରେଖାର ଜଳ ଛୁଇଁବାକୁ ଦେଇନାହାନ୍ତି ଏବଂ ଓଡ଼ିଆମାନେ ଦୀର୍ଘକାଳଯାବତ୍ ତ୍ରିବେଣୀ ପର୍ଯ୍ୟନ୍ତ ଅଧିକାର କରିଥିଲେ ।" ଆମ୍ଭେମାନେ କି ସେହି ମହାପୁରୁଷମାନଙ୍କ ବଂଶଧର ?

ବୋଧହୁଏ କଥାପ୍ରସଙ୍ଗରେ ଆମ୍ଭେମାନେ କିଞ୍ଚିତ୍ ଦୂରରେ ଆସି ପଡ଼ିଛୁଁ । କୌଣସି ବିଷୟ ଲେଖିବା ସମୟରେ କେତେକ ଅବାନ୍ତର ବିଷୟ ଆସି ପଡ଼ି-ଯାଇଥାଏ । ଯାହାହେଉ ଆମ୍ଭେମାନେ ବର୍ତ୍ତମାନ ପ୍ରସ୍ତାବିତ ବିଷୟ ଲେଖିବାକୁ ପ୍ରବୃତ୍ତ ହେଲୁଁ ।

"ଯଦା ଯଦାହି ଧର୍ମସ୍ୟ ଗ୍ଲାନିର୍ଭବତି ଭାରତ
ଅଭ୍ୟୁତ୍‌ଥାନମଧର୍ମସ୍ୟ ତଦାତ୍ମାନଂ ସୃଜାମ୍ୟହଂ ।
ପରିତ୍ରାଣାୟ ସାଧୂନାଂ ବିନାଶାୟ ଚ ଦୁଷ୍କୃତାଂ
ଧର୍ମ ସଂସ୍ଥାପନାର୍ଥାୟ ସମ୍ଭବାମି ଯୁଗେ ଯୁଗେ ।"

ଭଗବାନଙ୍କର ଶ୍ରୀମୁଖ ବାକ୍ୟ—ଧର୍ମର ଗ୍ଲାନି ଅଧର୍ମର ଅଭ୍ୟୁତ୍‌ଥାନ ଉପସ୍ଥିତ ହେଲେ ଆମ୍ଭେ ଆପଣାକୁ ସୃଜନ କରୁଁ । ଦୁଷ୍କୃତକାରୀମାନଙ୍କର ବିନାଶ, ସାଧୁମାନଙ୍କ ପରିତ୍ରାଣ ଏବଂ ଧର୍ମ ସଂରକ୍ଷଣ ସକାଶେ ଆମ୍ଭେ ଯୁଗେ ଯୁଗେ ଜନ୍ମଗ୍ରହଣ କରୁଁ ।

ବାସ୍ତବରେ ଜଗତର ଧର୍ମରାଜ୍ୟର ଇତିହାସ ଆଲୋଚନା କଲେ ଭଗବାନଙ୍କ ଶ୍ରୀମୁଖ ବାକ୍ୟର ସଫଳତା ସହଜରେ ଉପଲବ୍‌ଧି ହୁଏ । କେବଳ ଅଧର୍ମର ବିନାଶ ଓ ସତ୍ୟଧର୍ମର ପ୍ରଚାର ନିମନ୍ତେ ଖ୍ରୀଷ୍ଟ, ମହମ୍ମଦ, ବୁଦ୍ଧ, ନାନକ, ଚୈତନ୍ୟ ଏବଂ ରାମ-ମୋହନଙ୍କର ଆବିର୍ଭାବ । ବଙ୍ଗ ଦେଶରେ ଯେଉଁ ସମୟରେ ଧର୍ମ ନାମରେ ନାନା ପ୍ରକାର କୁତ୍ସିତ କ୍ରିୟାକାଣ୍ଡ ଅନୁଷ୍ଠିତ ହେଉଥିଲା, ପଞ୍ଚ ମ କାର ସେବନ ଲୋକେ ଉନ୍ମତ୍ତ ଥିଲେ, ଠିକ୍ ସେହି ସମୟରେ ଚୈତନ୍ୟ ଦେବଙ୍କ ଉତ୍ପତ୍ତି । ଭକ୍ତ ସମ୍ପ୍ରଦାୟଙ୍କ ମନର ଧାରଣା, ଚୈତନ୍ୟ ଦେବ ବ୍ରହ୍ମ ସ୍ୱରୂପ ଅଟନ୍ତି, ମାତ୍ର-

ଚୈତନ୍ୟୋ ଭଗବଦ୍ ଭକ୍ତଃ
ନ ଚ ପୂର୍ଣ୍ଣୋ ନଚାଂଶକଃ ।

ଯାହାହେଉ ମହାତ୍ମା ଚୈତନ୍ୟଦେବ ଈଶ୍ୱରଙ୍କ ଅନୁଗୃହୀତ ମହାପୁରୁଷ ରୂପେ ଅନନ୍ତକାଳ ଯେ ପୂଜିତ ହେବେ, ସେ ବିଷୟରେ ସଂଶୟଜନ୍ମିବାର କାରଣ

ଦେଖିନାହୁଁ । ବଙ୍ଗୋତ୍କଳ ପ୍ରଦେଶସ୍ଥ ଅନେକ ଦେବାଳୟରେ ଚୈତନ୍ୟ ମୂର୍ତ୍ତି ଅନ୍ୟାନ୍ୟ ଦେବ ବିଗ୍ରହ ପ୍ରାୟ ପୂଜିତ ହେଉଅଛି ଏବଂ ଚିରକାଳ ହେବ ।

ଶିକ୍ଷା କିମ୍ବା ସହବାସ ଗୁଣରେ ଯେ ଚୈତନ୍ୟ ଦେବ ଧର୍ମ ପ୍ରଚାର କାର୍ଯ୍ୟରେ ନିଯୁକ୍ତ ହୋଇଥିଲେ, ତାହା ନୁହେ । ତାହାଙ୍କ କାର୍ଯ୍ୟାବଳୀ ଆଲୋଚନା କଲେ ସହଜରେ ପ୍ରତୀତ ହୁଏ, ଭଗବାନ ଯେମନ୍ତ ପାଷଣ୍ଡଦଳର ଦଳନ ଏବଂ ପତିତମାନଙ୍କର ଉଦ୍ଧାର ନିମନ୍ତେ ଉପଯୁକ୍ତ ସମୟରେ ତାହାଙ୍କୁ ପୃଥିବୀକୁ ପ୍ରେରଣ କରିଥିଲେ । ଚୈତନ୍ୟଦେବଙ୍କ ଯଜ୍ଞୋପବୀତ ଧାରଣ ସମୟରେ ଯେଉଁ ଘଟନା ଘଟିଥିଲା, ଲୋଚନଦାସ ପଣ୍ଡିତ ଚୈତନ୍ୟମଙ୍ଗଳ ଗ୍ରନ୍ଥରେ ସେ ବିଷୟ ଏହିପରି ବର୍ଣ୍ଣନ କରିଅଛନ୍ତି :—

ବିଶ୍ୱମ୍ଭର କର୍ଣ୍ଣେ ମନ୍ତ୍ର କହେ ତାର ବାପ
ଦଣ୍ଡକରେ ଦେଖି ଡରେ ଡରାଇଲ ପାପ ।
ଭିକ୍ଷା ମାଗି ଏ ପ୍ରଭୁ ଆଶ୍ରମ ଆଚାର
'ସନ୍ନ୍ୟାସ ଆଶ୍ରମ ସର୍ବ ଆଶ୍ରମେର ସାର ।
ଯୁଗଧର୍ମ ସନ୍ନ୍ୟାସ କରିବ ମନେ ଛିଲ
ମୁଣ୍ଡନେର କାଲେ ସେଇ ମନେତେ ପଡ଼ିଲ ।
ଏଇ ମତ ହଲ ବୁଲି ହଇଲ ଆଦେଶ,
କାଲି ସବଜନେର ଆମି ଘୁଞ୍ଚାଇବ କ୍ଳେଶ ।

ଚୈତନ୍ୟଦେବ ଏହି କଥା ମନରେ କରନ୍ତେ— "ପ୍ରେମାରମ୍ଭେ ମହାଦମ୍ଭେ ହୁଙ୍କାର ଗର୍ଜନ କରିବାକୁ ଲାଗିଲେ ।"

'ଚମକି ଲାଗିଲ ଦେଖି ସକଳ ବ୍ରାହ୍ମଣ'

× × ×

'ସୁଦର୍ଶନ ଆଦି ଯତ ପଣ୍ଡିତ ପ୍ରଧାନ
ଏକତ୍ର ହଇୟା ସବେ କରେ ଅନୁମାନ ॥
ସକଲ ପଣ୍ଡିତ ଦେଖି କରଏ ବିଚାର
ମାନୁଷ ନା ହୟ ଏହି ଶଚୀର କୁମାର ॥

ଉପସ୍ଥିତ ପଣ୍ଡିତମାନେ ସ୍ଥିର କଲେ ଏହି ବାଳକ ବିଷ୍ଣୁ ଅଂଶରୁ ଜାତ ହୋଇଅଛନ୍ତି । ସମସ୍ତେ ଏକ ବାକ୍ୟରେ କହିଲେ—

'ଲୋକ ନିସ୍ତାରିତେ ପ୍ରଭୁ ଯୁଗେ ଯୁଗେ ଜନ୍ମ'

ଯଜ୍ଞୋପବୀତ ଧାରଣ କରିବା ଉତ୍ତାରେ ଚୈତନ୍ୟ ଦେବ ଦିନେ ରଜନୀ ଯୋଗରେ ସ୍ୱପ୍ନ ଦେଖିଲେ— ଲୋଚନ ଦାସ ସେ ବିଷୟ ଏହିପରି ବର୍ଣ୍ଣନ କରିଅଛନ୍ତି—

ନିଜ ପରିଜନ ଆର ପୁରଜନ ସବ
ସବେ ସେହି ଦେଶେ ଆର କରେ ଅନୁଭବ ।
ହେନମତେ ନିଜ ଜନ ସଙ୍ଗେ ଆଛେ ପ୍ରଭୁ !
ସ୍ୱପ୍ନ କହେ ସବାକାର ହାସେ ଲହୁ ଲହୁ ॥
ଶୁନ ସର୍ବ ଦିନ ସ୍ୱପ୍ନ ଦେଖିଲୁ ରଜନୀ ।
ଆଚମ୍ବିତେ ମୋରଠାଇଁ ଅଇଲ ଦ୍ୱିଜମଣି ॥
ମୋର କର୍ଣ୍ଣେ କହିଲ ସନ୍ନ୍ୟାସ ମନ୍ତ୍ର ଏକ ।
ଏସନ ଆମାର ମନେ ଆଛେ ପରତେକ ।
ଯାବତ ହୃଦୟେ ମୋର ପ୍ରବେଶିଲେ ମନ୍ତ୍ର ।
ସେ ଅବଧି ହଇଆ ମୋର ନ ହୟ ସ୍ୱତନ୍ତ୍ର ॥

ଏହି ସ୍ୱପ୍ନ ଦେଖିବାର କିଛିଦିନ ଉତ୍ତାରେ ଦିନେ —

ବାୟୁବ୍ୟାଧି ଛଲେ କୈଲ ପ୍ରେମ ପରକାଶ ।
ଭକ୍ତଗଣେ ଲୟା କୈଲ ବିବିଧ ବିଲାସ ॥

( ଚୈତନ୍ୟ ଚରିତାମୃତ )

"ଆର ଏକଦିନ କେଶବ ଭାରତୀ ।
ଆଇଲ ସନ୍ନ୍ୟାସୀବର ଅତି ଶୁଦ୍ଧମତି ॥ ଚୈ: ଚ:

ସେହି ସନ୍ନ୍ୟାସୀ କେଶବ ଭାରତୀ ସମସ୍ତଙ୍କ ସାକ୍ଷାତରେ କହିଲେ—

"ଶୁଣ ଶୁଣ ସର୍ବଜନ ଆମାର ଉତ୍ତର
ସନ୍ନ୍ୟାସ କରିବେ ଏଇ ଦେବ ବିଶ୍ୱମ୍ଭର ।
ଛାଡ଼ିୟା ଯାଇବେ ପ୍ରଭୁ ଆପଣାର ବାସ
ଜନନୀ ଛାଡ଼ିୟା ଆର ନିଜ ସବ ଦାସ ।

( ଚୈତନ୍ୟ ମଙ୍ଗଳ )

ତବେ ତ କରିଲ ପ୍ରଭୁ ଗୟାତେ ଗମନ
ଈଶ୍ୱରପୁରୀର ସଙ୍ଗେ ତଥାଇ ମିଲନ ।
ଦୀକ୍ଷା ଅନନ୍ତର ହୈଲ ପ୍ରେମ ପରକାଶ

× × × ×

( ଚୈତନ୍ୟ ଚରିତାମୃତ )

ଚୈତନ୍ୟଦେବ ଗୟାଧାମରୁ ଫେରିଆସି ପୁନର୍ବାର ଗୃହବାସୀ ହେଲେ; କିନ୍ତୁ ପାଷଣ୍ଡ ଦଳର ଉଦ୍ଧାର ନିମନ୍ତେ ଯାହାଙ୍କର ଆବିର୍ଭାବ, ସ୍ୱର୍ଗୀୟ ଅଗ୍ନି ଯାହାଙ୍କ ହୃଦୟରେ ପ୍ରଜ୍ୱଳିତ ହେଉଅଛି, ସଂସାରର ମାୟାବନ୍ଧନ କି ତାହାଙ୍କୁ ଆୟତ୍ତ କରି ରଖିପାରେ ? ଶଚୀଦେବୀଙ୍କର ନେତ୍ରମଣି ବିଷ୍ଣୁପ୍ରିୟାଙ୍କର ହୃଦୟସର୍ବସ୍ୱ ଜ୍ଞାତିକୁଟୁମ୍ବ ଏବଂ ବିଦ୍ୟାର୍ଥୀମାନଙ୍କର ପରମାଶ୍ରୟ ଚୈତନ୍ୟଦେବ ପୃଥିବୀର କୋଟି କୋଟି ମହାପାପୀଙ୍କ ପରିତ୍ରାଣ ସକାଶେ ପୂର୍ଣ୍ଣଯୌବନ ଚତୁର୍ବିଂଶତି ବର୍ଷ ବୟସରେ ସନ୍ନ୍ୟାସ ଗ୍ରହଣ କଲେ । ଚୈତନ୍ୟ ଚରିତାମୃତରେ ଏହିପରି ବର୍ଣ୍ଣିତ ଅଛି :—

"ଏ ସବୁ ପାଷଣ୍ଡୀ ତବେ ହଇବେ ନିସ୍ତାର
ଆର କୋନ ଉପାୟ ନାହିଁ ଏଇ ଯୁକ୍ତି ସାର ।
ଏଇ ଦୃଢ଼ ଯୁକ୍ତି କରି ପ୍ରଭୁ ଆଛେ ଘରେ
କେଶବଭାରତୀ ଆଇଲ ନଦିୟା ନଗରେ ।
ପ୍ରଭୁ ତାରେ ନମସ୍କାର କୈଲ ନିମନ୍ତ୍ରଣ
ଭିକ୍ଷା କରାଇୟା ତାରେ କୈଲ ନିବେଦନ ।

× × ×

ଭାରତୀ କହେନ ତୁମି ସର୍ବ ଅନ୍ତର୍ଯ୍ୟାମୀ
ଯେ କହ ସେ କରିବ ସ୍ୱତନ୍ତ୍ର ନହି ଆମି ।
ଏତ ବଲି ଭାରତୀ କାଟୋୟାତେ ଗେଲ
ମହାପ୍ରଭୁ ତାହା ଯାଇ ସନ୍ନ୍ୟାସ କରିଲ ।"

ସନ୍ନ୍ୟାସଗ୍ରହଣ ଉତ୍ତାରେ ନବଦ୍ୱୀପରେ ଯାଇ ଭକ୍ତ ଏବଂ ପାରିଷଦମଣ୍ଡଳୀ ସହିତ ହରିସଂକୀର୍ତ୍ତନରେ ଉନ୍ମତ୍ତ ଥାନ୍ତି, ଏମନ୍ତ ସମୟରେ ନୀଳାଚଳରେ ଶ୍ରୀମୂର୍ତ୍ତି ଦର୍ଶନ ସକାଶେ ତାହାଙ୍କର ପ୍ରବୃତ୍ତି ଜାତ ହେଲା । ଚୈତନ୍ୟ ଭାଗବତରେ ସେ ବିଷୟ ଏହିପରି ବର୍ଣ୍ଣିତ ଅଛି—

"ବାହ୍ୟ ପ୍ରକାଶିୟା ପ୍ରଭୁ ନିଜ କୁତୂହଳେ
ବଲିଲେନ ଆମି ଚଲିଲାମ ନୀଳାଚଳେ ।
ଜଗନ୍ନାଥ ପ୍ରଭୁର ହଇଲ ଆଜ୍ଞା ମୋରେ
ନୀଳାଚଳେ, ତୁମି ଝାଟ ଆଇସ ସତ୍ୱରେ ।
ଏ ତ ବଲି ହଇଲେନ ପ୍ରଭୁ ପୂର୍ବମୁଖ
ଭକ୍ତସବ ପାଇଲେନ ପରାନନ୍ଦ ସୁଖ
ତାନ ଇଚ୍ଛା ତିହୋଁ ସେ ଜାନେନ ସବମାତ୍ର
ତାନ ଅନୁଗ୍ରହେ ଜାନେ ତ ନ କୃପାପାତ୍ର ।

× × ×

ଗଙ୍ଗାମୁଖ ହଇୟା ଚଲିଲ ଗୌରଚନ୍ଦ୍ର

× × ×

ନିତ୍ୟାନନ୍ଦ ସହିତ ସେ ନିମା ସେଇ ଗ୍ରାମେ
ଆଛିଲେନ କୋନ ପୁଣ୍ୟବନ୍ତେର ଆଶ୍ରମେ ।
ତବେ ଆରଦିନେ କତକ୍ଷଣେ ଭକ୍ତଗଣ
ଆସିୟା ପାଇଲ ସବେ ପ୍ରଭୁ ଦରଶନ ।
ତବେ ପ୍ରଭୁ ସର୍ବ ଭକ୍ତଗଣ କରି ସଙ୍ଗେ
ନୀଳାଚଳ ପ୍ରତି ଶୁଭ କରିଲେନ ରଙ୍ଗେ ।
ସେହିଠାରେ ମହାପ୍ରଭୁ ନିତ୍ୟାନନ୍ଦଙ୍କୁ କହିଲେ—
"ଶ୍ରୀବାସାଦି କରି ଯତ ସବ ଭକ୍ତଗଣ
ସବାର କରହ ଗିୟା ଦୁଃଖ ବିମୋଚନ ।
ଏଇ କଥା ତୁମି ଗିୟା ବଲିଓ ସବାରେ
ଆମି ଯାବ ନୀଳାଚଳ-ଚନ୍ଦ୍ର ଦେଖିବାରେ ।

ସବାର ଅପେକ୍ଷା ଆମି କରି ଶାନ୍ତିପୁରେ
ରହିବାକ ଶ୍ରୀ ଅଦ୍ୱୈତ ଆଚାର୍ଯ୍ୟେର ଘରେ ।
ତା ସବା ଲଇୟା ତୁମି ଆସିବା ସତ୍ୱର
ଆମି ଯାଇ ହରିଦାସେର ଫୁଲିୟା ନଗର ।

× × ×

ହେନ ମତେ ଶ୍ରୀଗୌର ସୁନ୍ଦର ଶାନ୍ତିପୁରେ
କରିଲ ଅଶେଷ ରଙ୍ଗ ଶ୍ରୀ ଅଦ୍ୱୈତଘରେ ।
ପୋହାଇଲ ନିଶା ପ୍ରଭୁ କରି ନିଜ କୃତ୍ୟ
ବସିଲେନ ଚତୁର୍ଦ୍ଦିଗେ ବେଢ଼ି ସବ ଭୃତ୍ୟ ।
ପ୍ରଭୁ ବଲେନ ଆମି ଚଲିଲାମ୍ ନୀଲାଚଲେ
କିଛୁ ଦୁଃଖ ନା କରିବା ତୋମରା ସକଲେ ।
ନୀଲାଚଲ-ଚନ୍ଦ୍ର ଦେଖି ଆମି ପୁନର୍ବାର
ଆସିୟା ହଇବ ସଙ୍ଗୀ ତୋମା ସବାକାର ।
ସବେ ଗିୟା ଗୃହେ ସବେ କରହ କୀର୍ତ୍ତନ
ଜନ୍ମଜନ୍ମ ତୁମି ସବ ଆମାର ଜୀବନ ।
ଭକ୍ତଗଣ ବଲେ ପ୍ରଭୁ ଯେ ତୋମାର ଇଚ୍ଛା
କାର ଶକ୍ତି ତାହା କରିବାରେ ପାରେ ମିଛା ।

ସେହି ସମୟରେ ପଠାଣମାନଙ୍କ ସହିତ ଓଡ଼ିଶା ମହାରାଜାଙ୍କର ଯୁଦ୍ଧ ହେଉଥିଲା । ଭକ୍ତମାନେ ତାହା ସ୍ମରଣ କରାଇ ଦେଇ ପ୍ରଭୁଙ୍କୁ କହିଲେ—

"ତଥାପିହ ହଇୟାଛେ ଦୁର୍ଘଟ ସମୟ
ସେ ରାଜ୍ୟେ ଏଖନ କେହ ପଥ ନାହିଁ ବୟ ।
ଦୁଇ ରାଜ୍ୟେ ହଇୟାଛେ ଅତ୍ୟନ୍ତ ବିବାଦ
ମହା ଦସ୍ୟୁ ସ୍ଥାନେ ସ୍ଥାନେ ପରମ ପ୍ରମାଦ ।

× × ×

ପ୍ରଭୁ କଲେ ଯେ ସେ କେବେ ଉତ୍ପାତ ନାହୟ
ଅବଶ୍ୟ ଚଲିବ ମୁଇଁ ବଲିଲୁଁ ନିଶ୍ଚୟ ।
ବୁଝିଲେନ ଅଦ୍ୱୈତ ପ୍ରଭୁର ଚିତ୍ତ ବୃତ୍ତି
ଚଲିଲେନ ନୀଳାଚଲେ ନା ହୈଲ ନିବୃତ୍ତି ।

× × ×

ସେଇକ୍ଷଣେ ମହାପ୍ରଭୁ ମତ୍ତ ସିଂହଗତି
ଚଲିଲେନ ଶୁଭ୍ର କରି ନୀଳାଚଲ ପ୍ରତି ।

× × ×

ନିତ୍ୟାନନ୍ଦ ଗଦାଧର ମୁକୁନ୍ଦ ଗୋବିନ୍ଦ
ସଂହତି ଜଗଦାନନ୍ଦ ଆର ବ୍ରହ୍ମାନନ୍ଦ ।

ମାର୍ଗମଧ୍ୟରେ ରାମଚନ୍ଦ୍ର ଖାଁ ସହିତ ଭେଟ ହେବାରୁ ସେ ପ୍ରଭୁଙ୍କୁ ଜଣାଇଲା—

ସବେମାସ ହଇୟାଛେ ବିଷମ ସମୟ
ସେ ଦେଶେ ଏ ଦେଶେ କେହ ପଥ ନାହିଁ ବୟ ।
ରାଜାର ନିଶୂଲ ପୁତିଆଛେ ସ୍ଥାନେ ସ୍ଥାନେ
ପଥିକ ପାଇଲେ ଜାଣୁ ବଲି ଲୟ ପ୍ରାଣେ

× × ×

ଜାତି ପ୍ରାଣଧନ କେନେ ଆମାର ନ ଯାୟ ।
ରବେ ଆଜ ତୋମା ପଠାଇବ ସର୍ବଥାୟ ।
ଶୁନିୟା ହଇଲ ସୁଖୀ ବୈକୁଣ୍ଠେର ନାଥ

ସେହିଠାରେ ରାମଚନ୍ଦ୍ର ଖାଁ ଶ୍ରୀଚୈତନ୍ୟଙ୍କ ଯାତ୍ରା ସକାଶେ ନୌକା ଆଣି ଦେଲେ ।

ହେନଇ ସମୟେ କହେ ରାମଚନ୍ଦ୍ର ଖାନ
ନୌକା ଆସି ଘାଟେ ପ୍ରଭୁ ହୈଲ ବିଦ୍ୟମାନ ।
ତତକ୍ଷଣେ ହରି ବଲି ଗୌରାଙ୍ଗ ସୁନ୍ଦର
ଉଠିଲେନ ଗିୟା ପ୍ରଭୁ ନୌକାର ଉପର ।
ଶୁଭଦୃଷ୍ଟେ ଲୋକେରେ ବିଦାୟ ଦିୟା ଘରେ ।
ଚଲିଲେନ ପ୍ରଭୁ ନୀଳାଚଲ ନିଜ ସ୍ଥରେ ।

ସେ ସମୟରେ ବଙ୍ଗଦେଶରେ ମାର୍ଗ ନିତାନ୍ତ ଦୁର୍ଗମ ଓ ଭୟସଙ୍କୁଳ ଥିଲା । ଦେଶ ଅରାଜକ ପ୍ରାୟ । ସୁବାଦାର ପଠାଣ କର୍ମଚାରୀମାନେ ଲୁଣ୍ଠନଦ୍ୱାରା ଅର୍ଥସଂଗ୍ରହ କରିବାକୁ କର୍ତ୍ତବ୍ୟକର୍ମର ପରାକାଷ୍ଠା ବୋଲି ଜ୍ଞାନ

କରୁଥିଲେ । ଓଡ଼ିଶାର ମାର୍ଗ ଅପେକ୍ଷାକୃତ ସୁଗମ ଥିଲା । ଏଥିପାଇଁ ଧର୍ମପ୍ରାଣ ଜଗନ୍ନାଥ ଯାତ୍ରୀମାନେ ଅତି ସଭୟ ଓ ନୀରବ ଭାବରେ ଅନ୍ଧକାର ମଧ୍ୟରେ ନୌକା ଯୋଗେ ମାର୍ଗ ଅତିକ୍ରମ କରିବାକୁ ବାଧ୍ୟ ହେଉଥିଲେ । ଶ୍ରୀଚୈତନ୍ୟଙ୍କ ଆଜ୍ଞାରେ ଶ୍ରୀମୁକୁନ୍ଦ ନୌକାରେ ବସି କୀର୍ତ୍ତନ ଆରମ୍ଭ କରିବାରୁ—

"ଅବୋଧ ନାବିକ ବଲେ ହଇଲ ସଂଶୟ
ବୁଝିଲାମ୍ ଆଜ ଆର ପ୍ରାଣ ନାହିଁ ରୟ ।
କୂଳେତେ ଉଠିଲେ ବାଘ ଲଇୟା ପଲାୟ
ଜଲତେ ପଡ଼ିଲେ କୁମ୍ଭୀରେତେ ଧରେ ଖାୟ ।
ନିରନ୍ତର ଏ ପାଣିତେ ଡାକାଇତ ଫିରେ
ପାଇ ଲଇ ଧନ ପ୍ରାଣ ଦୁଇ ନାଶ କରେ ।
ଏତେକ ଯାବତ ଉଡ଼ିଶାର ଦେଶେ ପାଇ
ତାବତ ନୀରବ ହତ ସକଲ ଗୋସାଇଁ ।
ସଙ୍କୋଚ ହଇଲ ସବେ ନାବିକେର ବୋଲେ
ପ୍ରଭୁ ସେ ଭାସେନ ନିରବଧି ପ୍ରେମଜଲେ ।
କ୍ଷଣେକ ଉଠିୟା ପ୍ରଭୁ କରିଲ ହୁଙ୍କାର
ସବାରେ ବଲିଲେନ କେନେ ଭୟ କର କାର ।
ଏଇ ନା ସମ୍ମୁଖେ ସୁଦର୍ଶନ ଚକ୍ର ଫିରେ
ବୈଷ୍ଣବ ଜନରେ ନିରବଧି ବିଘ୍ନ ହରେ ।
କିଛୁ ଚିନ୍ତା ନାହିଁ କର ହରି ସଂକୀର୍ତ୍ତନ

× × ×

ଶୁଣିୟା ପ୍ରଭୁର ବାକ୍ୟ ସର୍ବ ଭକ୍ତଗଣ
ଆନନ୍ଦେ ଲାଗିଲ ତବେ କରିତେ କୀର୍ତ୍ତନ ।
ହେନମତେ ମହାପ୍ରଭୁ ସଂକୀର୍ତ୍ତନ ରସେ
ପ୍ରବେଶ ହୋଇଲ ଆସି ଶ୍ରୀଉତ୍କଳ ଦେଶେ
ଉତ୍ତରିଲ ଗିୟା ନୌକା ଶ୍ରୀପ୍ରୟାଗ ଘାଟେ
ନୌକା ହୈତେ ମହାପ୍ରଭୁ ଉଠିଲେନ ତଟେ ।
ପ୍ରବେଶ କରିଲ ଗୌରଚନ୍ଦ୍ର ଉଡ୍ର ଦେଶେ

× × ×

ସେଇ ସ୍ଥାନେ ଆଛେ ତାର ଗଙ୍ଗାଘାଟ ନାମ ।

ଏହି ଗଙ୍ଗାଘାଟ ଗଙ୍ଗାନଦୀର କୂଳବର୍ତ୍ତୀ ଅଟେ । ଏହାର ଅନ୍ୟତମ ନାମ ପ୍ରୟାଗଘାଟ । ଭାଗୀରଥୀ ଏହି ସ୍ଥାନରେ ବିବିଧ ଶାଖାରେ ବିଭକ୍ତ ହୋଇ ପ୍ରବାହିତ ହେଉଅଛନ୍ତି । ପାଣ୍ଡବଜ୍ୟେଷ୍ଠ ଯୁଧିଷ୍ଠିର ଏହିଠାରେ ଏକ ଶିବଲିଙ୍ଗ ସ୍ଥାପନ କରିଅଛନ୍ତି, ତାହାର ନାମ ଅମୂଲିଙ୍ଗ । ଏହି ଘାଟରେ ନୌକାରୁ ଓହ୍ଲାଇ ଓଡ୍ର ଦେଶରେ ପହଞ୍ଚିଲେ; ଅର୍ଥାତ୍ ସେ ସମୟରେ ଏହି ସ୍ଥାନ ଉତ୍କଳ ଅଧିକାରଭୁକ୍ତ ଥିଲା । ବର୍ତ୍ତମାନ ୨୪ ପରଗନା ଅନ୍ତର୍ଭୁକ୍ତ ହୋଇଅଛି । ଜୟାନନ୍ଦ ମିଶ୍ରେ ବୋଲନ୍ତି—"ଦେବ ନଦ ପାର ହୈୟା ସେୟା ଖାଲ ଦିୟା ଉତ୍ତରିୟା ତାମ୍ରଲିପ୍ତେ ।" ତାମ୍ରଲିପ୍ତ ଅର୍ଥାତ୍ ତମଲୁକ ଓଡ୍ର ଅନ୍ତର୍ଗତ ଥିଲା । ଆମ୍ଭେମାନେ ଦେଖିଅଛୁଁ, ତମଲୁକ ପର୍ଯ୍ୟନ୍ତ ଓଡ଼ିଆମାନଙ୍କର ବାସ ଅଟେ । ମାତ୍ର କ୍ରମଶଃ ସେମାନେ ବଙ୍ଗାଳୀ ପାଲଟି ଗଲେଣି । ତଥାପି ଅଦ୍ୟାବଧି ଅନେକ ଲୋକଙ୍କ ଘରେ ଜଗନ୍ନାଥ ଦାସ ଭାଗବତ ଗାଦି ପୂଜିତ ହେଉଅଛି ।

ସର୍ବରାତ୍ରି ସେଇ ଗ୍ରାମେ କରି ସଂକୀର୍ତ୍ତନ
ଉଷାକାଲେ ମହାପ୍ରଭୁ କରିଲ ଗମନ ।

× × ×

ଏଇମତେ ମହାପ୍ରଭୁ ଚଲିଆ ଆସିତେ,
କତ ଦିନେ ଉତ୍ତରିଲେ ସୁବର୍ଣ୍ଣରେଖାତେ ।
ସୁବର୍ଣ୍ଣରେଖାର ଜଲ ପରମ ନିର୍ମଲ
ସ୍ନାନ କରିଲେନ ପ୍ରଭୁ ବୈଷ୍ଣବ ସକଲ ।

× × ×

ମୁହୂର୍ତ୍ତେକେ ଗେଲ ପ୍ରଭୁ ଜଲେଶ୍ୱର ଗ୍ରାମେ
ବରାବର ଗେଲ ଜଲେଶ୍ୱର ଦେବ ସ୍ଥାନେ ।

ଜଲେଶ୍ୱରରେ ଏକ ସୁପ୍ରସିଦ୍ଧ ମହାଦେବ ମନ୍ଦିର ଏବଂ ଅନ୍ୟାନ୍ୟ ଦେବାଳୟ ଅଛି ।

ଏଇ ମତେ ଜଳେଶ୍ୱରେ ଏକ ଶାକ୍ତନ୍ୟାସୀ ବେଶ
ଆସିୟା ପ୍ରଭୁର ପଥେ କରିଲ ଆଦେଶ ।
ମହାପ୍ରଭୁ ସେହି ଶାକ୍ତକୁ ଉଦ୍ଧାର କରି—
ଆଇଲ ରେମୁଣା ଗ୍ରାମେ ଗୌରାଙ୍ଗ ଶ୍ରୀହରି ।

× × ×

ରେମୁଣାୟ ଦେଖି ନିଜ ମୂର୍ତ୍ତି ଗୋପୀନାଥ
ବିସ୍ତର କରିଲ ନୃତ୍ୟ ଭକ୍ତବର୍ଗ ସାଥ ।

ରେମୁଣା ଗ୍ରାମ ବାଲେଶ୍ୱର ଜିଲ୍ଲା ସଦର ମହକୁମାଠାରୁ ପାଞ୍ଚମାଇଲ ଦୂର ପଶ୍ଚିମରେ ଅବସ୍ଥିତ । ଏ ସ୍ଥାନର ଗୋପୀନାଥ ଜଉ ଦେବ ମନ୍ଦିର ବଙ୍ଗୋତ୍କଳ ଦେଶରେ ସୁପ୍ରସିଦ୍ଧ । ବଙ୍ଗଦେଶୀୟ ଅନେକ ଶ୍ରୀକ୍ଷେତ୍ର ଯାତ୍ରୀ ଦର୍ଶନ ନିମନ୍ତେ ଏଠାକୁ ଯାଇଥାନ୍ତି । ଶିବ ଚତୁର୍ଦ୍ଦଶୀ ବାସି ଦିବସଠାରୁ ପୂର୍ଣ୍ଣିମା ପର୍ଯ୍ୟନ୍ତ ଏଠାରେ ମହୋତ୍ସବ ହୋଇଥାଏ, ଅନେକ ଯାତ୍ରୀ ରୁଣ୍ଡ ହୋଇଥାନ୍ତି ।

କତ ଦିନେ ମହାପ୍ରଭୁ ଗୌରାଙ୍ଗ ସୁନ୍ଦର
ଆଇଲେକ ଯାଜପୁର ବ୍ରାହ୍ମଣ ନଗର ।

× × ×

ମହାତୀର୍ଥ ବହେ ତଥା ନଦୀ ବୈତରଣୀ
ଯାର ଦରଶନେ ପାପ ପାଳାୟେ ଆପନି ।
ଜନ୍ତୁ ମାତ୍ର ସେ ନଦୀର ହଇଲେଇ ପାର
ଦେବଗଣେ ଦେଖେ ଚତୁର୍ଭୁଜେର ଆକାର ।

× × ×

ଯାଜପୁରେ ଆଛୟେ ଯତେକ ଦେବସ୍ଥାନ
ଲକ୍ଷ ଲକ୍ଷ ବତ୍ସରେଓ ଲଇତେ ପାରି ନାମ,
ଦେବାଳୟ ନାହିଁ ହେନ ନାହିଁ ତଥାସ୍ଥାନ
କେବଳ ଦେବର ବାସ ଯାଜପୁର ଗ୍ରାମ ।
ପ୍ରଥମେ ଦଶାଶ୍ୱମେଧ ଘାଟ ନ୍ୟାସୀମଣି
ସ୍ନାନ କରିଲେକ ଭକ୍ତ ସହିତ ଆପନି ।
ତବେ ପ୍ରଭୁ ଗେଲ ଆଜ ବରାହ ସମ୍ମୁଖେ
ବିସ୍ତର କରିଲ ନୃତ୍ୟ ଗୀତ ପ୍ରେମରସେ ।
ବଡ଼ ସୁଖୀ ହୈଲ ପ୍ରଭୁ ଦେଖି ଯାଜପୁର

ପୂର୍ବ ପୁରୁଷମାନଙ୍କ ଜନ୍ମସ୍ଥାନ ପୁଣ୍ୟକ୍ଷେତ୍ର ଯାଜପୁରର ପ୍ରତ୍ୟେକ ଦେବାଳୟ, ପ୍ରତ୍ୟେକ ଗ୍ରାମ ଦେଖିବା ସକାଶେ ଭକ୍ତବୃନ୍ଦଙ୍କୁ ପରିତ୍ୟାଗ କରି ଏକାକୀ ପ୍ରଚ୍ଛନ୍ନ ଭାବରେ ଭ୍ରମଣ କରିବାକୁ ଲାଗିଲେ । ଭକ୍ତବୃନ୍ଦ ପ୍ରଭୁଙ୍କୁ ନ ଦେଖି ମହାବ୍ୟସ୍ତ ହେବାରୁ ନିତ୍ୟାନନ୍ଦ ଠାକୁର ସେମାନଙ୍କୁ ବୁଝାଇ କହିଲେ—

ନିତ୍ୟାନନ୍ଦ ବଲେ ସବେ ସ୍ଥିର କର ଚିତ୍ତ
ଜାନିଲାମ ପ୍ରଭୁ ଗିୟାଛେନ ଯେ ନିମିତ୍ତ ।
ନିଭୃତେ ଠାକୁର ସବ ଯାଜପୁର ଗ୍ରାମ
ଦେଖିବେନ ଦେବାଳୟ ଯତ ପୁଣ୍ୟସ୍ଥାନ ।

× × ×

ପ୍ରଭୁଓ ବୁଲିୟା ସବ ଯାଜପୁର ଗ୍ରାମ
ଦେଖିୟା ଯତେକ ଯାଜପୁର ପୁଣ୍ୟସ୍ଥାନ
ସର୍ବ ଭକ୍ତଗଣ ଯଥା ଆଛେନ ବସିୟା
ଆରଦିନ ସେଇ ସ୍ଥାନେ ମିଲିଲ ଆସିୟା ।

ଯାଜପୁରର ପ୍ରତ୍ୟେକ ଗ୍ରାମ ପ୍ରତ୍ୟେକ ଦେବାଳୟ ଭ୍ରମଣ ପୂର୍ବକ ଚୈତନ୍ୟ ଦେବ ସେ ସ୍ଥାନରୁ ଯାତ୍ରା କଲେ —

ହେନମତେ ମହାନନ୍ଦେ ଶ୍ରୀଗୌର ସୁନ୍ଦର
ଆଇଲେନ କତ ଦିନେ କଟକ ନଗର
ଭାଗ୍ୟବତୀ ମହାନଦୀ ଜଲେ କରି ସ୍ନାନ
ଆଇଲେନ ପ୍ରଭୁ ସାକ୍ଷୀଗୋପାଲେର ସ୍ଥାନ

ସାକ୍ଷୀଗୋପାଳ ଦର୍ଶନ କରି—

"ତବେ ପ୍ରଭୁ ଆଇଲେନ ଶ୍ରୀ ଭୁବନେଶ୍ବର
ଗୁପ୍ତକାଶୀବାସ ଯଥା କରେନ ଶଙ୍କର
ସର୍ବ ତୀର୍ଥ ଜଲ ଯଥା ବିନ୍ଦୁବିନ୍ଦୁ ଆଣି
ବିନ୍ଦୁ ସରୋବର ଶିବ ସୃଜିଲ ଆପନି ।
ଶିବପ୍ରିୟ ସରୋବର ଜାଣି ଶ୍ରୀଚୈତନ୍ୟ
ସ୍ନାନ କରି ବିଶେଷେ କରିଲ ଅତି ଧନ୍ୟ ।

× × ×

ନୃତ୍ୟ ଗୀତ ଶିବ ଅଗ୍ରେ କରିଲ ଆନନ୍ଦ
ସେ ରାତି ରହିଲ ସେଇ ସ୍ଥାନେ ଗୌରଚନ୍ଦ୍ର
ସେହି ସ୍ଥାନେ ଶିବ ପାଇଲେନ ଯେଇମତେ
ସେଇ କଥା କହି ସ୍କନ୍ଦପୁରାଣେର ମତେ ।

ଶ୍ରୀଚୈତନ୍ୟ ଭୁବନେଶ୍ବରରେ ନିତ୍ୟକର୍ମାଦି ସମାପ୍ତ କରି ସେ ସ୍ଥାନରୁ ଯାତ୍ରା କଲେ—

ପଥେ ଯତ ଦେଶ ଏ ସୁକୃତି ନରଗଣ,
ତାରା ବଲେ ଏଇ ତ ସାକ୍ଷାତ ନାରାୟଣ ।
ଚତୁର୍ଦ୍ଦିଗେ ବେଢ଼ିୟା ଚଲୟ ଭକ୍ତଗଣ,
ଆନନ୍ଦ ଧାରାୟ ପୂର୍ଣ୍ଣ ସବାର ନୟନ ।
ସବେ ଗୃହ ଦଣ୍ଡ ପ୍ରଭୁ ପ୍ରେମେର ଆବେଶେ,
ପ୍ରହର ଦିନେକ ଆସି ହଲ ପରବେଶେ ।
ଆଇଲେନ ପ୍ରଭୁ ମାତ୍ର ଆଠାର ନାଲାୟ,
ସର୍ବ ଭାବ ସମ୍ବରଣ କଲ ଗୌରରାୟ ।

ମନ୍ଦିର ସିଂହଦ୍ୱାରଠାରେ ଉପସ୍ଥିତ ହୋଇ ଭକ୍ତମାନଙ୍କୁ କହିଲେ—

"ତୋମରା ତ ଆମାର କରିଲା ବନ୍ଧୁକାଯ,
ଦେଖାଇଲ ଆଣି ଜଗନ୍ନାଥ ମହାରାଜ ।
ଏବେ ଆଗେ ତୋମରା ଚଲହ ଦେଖିବାରେ,
ଆମି ବା ଯାଇବ ଆଗେ ତାହା ବଲ ମୋରେ ।
ମୁକୁନ୍ଦ ବଲେନ ତବେ ଆଗେ ତୁମି ଯାଓ,
ଭାଲ ବଲି ଚଲିଲେନ ଶ୍ରୀ ଗୌରାଙ୍ଗରାୟ ।

ପ୍ରବେଶ ହଇଲ ଗୌରଚନ୍ଦ୍ର ନୀଳାଚଲେ
ପ୍ରବେଶ ହଇଲ ଆସି ପୁରୀର ଭିତରେ ।
ଆଦେଶ ଚଲିଲା ପ୍ରଭୁ ଜଗନ୍ନାଥ ମନ୍ଦିରେ
ଜଗନ୍ନାଥ ଦେଖି ପ୍ରେମେ ହଇଲା ଅସ୍ଥିରେ ।
ଜଗନ୍ନାଥ ଆଲିଙ୍ଗିତେ ଚଲିଲ ଧାଇୟା
ମନ୍ଦିରେ ପଡ଼ିଲା ପ୍ରେମେ ଆବିଷ୍ଟ ହଇୟା ।

ଏହି ସମୟରେ ଦୈବାତ୍ ସାର୍ବଭୌମ ଉପସ୍ଥିତ ହେଲେ । ଚୈତନ୍ୟଦେବଙ୍କ ସହିତ ତାଙ୍କର ଭେଟ ହେଲା ।

ପ୍ରଭୁର ସୌନ୍ଦର୍ଯ୍ୟ ଆର ପ୍ରେମେର ବିକାର
ଦେଖି ସାର୍ବଭୌମ ହୈଲ ଆନନ୍ଦ ଅପାର ।

ଶ୍ରୀଚୈତ୍ୟ ପ୍ରେମରେ ଆବିଷ୍ଟ ହୋଇ ଅଚେତନ ଭାବରେ ଥିଲେ । ସେହି ସମୟରେ ଜଗନ୍ନାଥ ଦେବଙ୍କ ଭୋଗର ସମୟ ଉପସ୍ଥିତ । ମାତ୍ର ଭୋଗସ୍ଥାନରେ ଚୈତନ୍ୟଦେବ ଅଚେତନ ହୋଇ ପଡ଼ି ଅଛନ୍ତି—

ସାର୍ବଭୌମ ତବେ ଉପାୟ ଚିନ୍ତିଲ
ଶିଷ୍ୟ ପଡ଼ୁଆ ଦ୍ୱାରା ନିଲ ବହାଇୟା
ଘରେ ଆନି ପବିତ୍ର ସ୍ଥାନେ ରଖିଲ ଶୋଆଇୟା ।
ଶ୍ୱାସ ପ୍ରଶ୍ୱାସ ନାହିଁ ସୁଧି ଉଦର ସ୍ପନ୍ଦନ
ଦେଖିୟା ଚିନ୍ତିତ ହୈଲ ଭଟ୍ଟାଚାର୍ଯ୍ୟେର ମନ ।
ସୂକ୍ଷ୍ମ ତୂଲା ଆନି ନାସା ଅଗ୍ରତେ ଧରିଲ
ଈଷତ ଚଲୟେ ତୂଲା ଦେଖି ଧୈର୍ଯ୍ୟ ହୈଲ ।
ଦେଖି ଭଟ୍ଟାଚାର୍ଯ୍ୟ ମନେ କରେନ ବିଚାର
ଏଇ କୃଷ୍ଣେର ମହାପ୍ରେମ ସାତ୍ତ୍ୱିକ ବିକାର

× × ×

ଏତ ଚିନ୍ତି ଭଟ୍ଟାଚାର୍ଯ୍ୟ ଆଛେନ ବସିୟା
ନିତ୍ୟାନନ୍ଦାଦି ସିଂହଦ୍ୱାରେ ଉତ୍ତରିଲ ଗିୟା,

ତାହା ଦେଖି ଲୋକ କହେ ଅନ୍ୟାନ୍ୟ ବାତ
ଏଇ ସନ୍ନ୍ୟାସୀ ଆସି ଦେଖି ଜଗନ୍ନାଥ ।
ମୂର୍ଚ୍ଛିତ ହଇୟା ଚେତନ ନା ହୟ ଶରୀରେ
ସାର୍ବଭୌମ ଲୟାଁ ଗେଲ ଆପଣାର ଘରେ ।
ଶୁନି ତବେ ଜାନିଲେନ ମହାପ୍ରଭୁର କାର୍ଯ୍ୟ
ହେନ କାଲେ ଆଇଲ ତାହାଁ ଗୋପୀନାଥାଚାର୍ଯ୍ୟ ।

ମୁକୁନ୍ଦ ନିତ୍ୟାନନ୍ଦ ପ୍ରଭୃତି ପାରିଷଦବୃନ୍ଦ ପ୍ରଭୁଙ୍କ ଦଶାପ୍ରାପ୍ତି ଓ ସାର୍ବଭୌମ ଗୃହରେ ଅବସ୍ଥାନ ବିଷୟ ଶୁଣି ସମସ୍ତେ ବିଚାର କଲେ—

ଚଲ ସବେ ଯାଇ ସାର୍ବଭୌମର ଭବନ
ପ୍ରଭୁ ଦେଖି ପାଛେ କରିବ ଈଶ୍ୱର ଦରଶନ ।
ଏତେ ବଲି ଗୋପୀନାଥ ସବାରେ ଲଇୟା ।
ସାର୍ବଭୌମ ଘରେ ଗେଲା ହରଷିତ ହୟାଁ ।
ସାର୍ବଭୌମ ସ୍ଥାନେ ଗିୟା ପ୍ରଭୁକେ ଦେଖିଲ
ପ୍ରଭୁ ଦେଖି ଆଚାର୍ଯ୍ୟର ଦୁଃଖ ହର୍ଷ ହୈଲ ।
ସାର୍ବଭୌମ ଜାନିୟା ସବା ନିଲ ଅଭ୍ୟନ୍ତରେ
ନିତ୍ୟାନନ୍ଦ ଗୋସାଇଁରେ ତେହ କୈଲ ନମସ୍କାରେ ।

ସେ ସ୍ଥାନରେ ଭକ୍ତବୃନ୍ଦ ପ୍ରଭୁଙ୍କୁ ଅଚୈତନ୍ୟ ଅବସ୍ଥାରେ ପଡ଼ିଥିବାର ଦେଖି ଦୁଃଖିତ ଏବଂ ଆନନ୍ଦିତ ହେଲେ ଏବଂ ସାର୍ବଭୌମଙ୍କ ପୁତ୍ର ଚନ୍ଦନେଶ୍ୱରଙ୍କୁ ସାଙ୍ଗରେ ନେଇ ଜଗନ୍ନାଥ ଦର୍ଶନକୁ ଗଲେ । ଦର୍ଶନ ଉତ୍ତାରେ ବାହୁଡ଼ି ଆସି ପ୍ରଭୁଙ୍କ ତଦବସ୍ଥା ଦେଖିଲେ । ତହିଁ ଉତ୍ତାରେ ପ୍ରଭୁଙ୍କ ନିକଟରେ—

ଉଚ୍ଚ କରି କରେ ସବେ ନାମ ସଂକୀର୍ତ୍ତନ
ତୃତୀୟ ପ୍ରହରେ ହୈଲ ପ୍ରଭୁର ଚେତନ ।
ହୁଂକାର କରିୟା ଉଠେ ହରି ହରି ବଲି
ଆନନ୍ଦେ ସାର୍ବଭୌମ ତାର ଲୈଲ ପଦଧୂଳି ।

ତଦନନ୍ତର ପ୍ରଭୁ ପାରିଷଦଗଣ ପରିବେଷ୍ଟିତ ହୋଇ ସମୁଦ୍ର ସ୍ନାନକୁ ଗଲେ । ସ୍ନାନ ଉତ୍ତାରେ ସାର୍ବଭୌମଙ୍କ ନିମନ୍ତ୍ରଣାନୁସାରେ ତାହାଙ୍କ ଘରେ ଭୋଜନ କଲେ । ସାର୍ବଭୌମ ପ୍ରଭୁଙ୍କ ସକାଶେ ମନ୍ଦିରରୁ ବିବିଧ ପ୍ରକାର ମହାପ୍ରସାଦ ଅଣାଇ ରଖିଥିଲେ । ପାରିଷଦ ପରିବେଷ୍ଟିତ ହୋଇ ପ୍ରଭୁ ପଂକ୍ତି ଭୋଜନରେ ବସିଥାନ୍ତି, ସାର୍ବଭୌମ ଭକ୍ତିପୂର୍ବକ ପରିବେଷଣ କରୁଥାନ୍ତି—

ସାର୍ବଭୌମ ପରିବେଷଣ କରେନ ଆପନେ
ପ୍ରଭୁ କହେ ମୋରେ ଦଓ ଲାଫରା ବ୍ୟଞ୍ଜନେ ।
ପିଠା ପାନା ଦେହ ତୁମି ଇହା ସବାକାରେ
ତବେ ଭଟ୍ଟାଚାର୍ଯ୍ୟ କହେ ଯୋଡ଼ି ବେନିକରେ ।
ଜଗନ୍ନାଥ କୈଛେ କରିୟାଛେନ ଭୋଜନ
ଆଜି ସବ ମହାପ୍ରସାଦେ କର ଆସ୍ୱାଦନ
ଏତ ବଲି କରାଇୟା ପିଠା ପାନା ସବ ଖାଓୟାଇଲ
ଭିକ୍ଷା କରାଇୟା ଆଚମନ କରାଇଲ ।

ତଦନନ୍ତର ପ୍ରଭୁ ଯାଇ ଗୋପୀନାଥ ଆଚାର୍ଯ୍ୟଙ୍କ ଗୃହରେ ବସା କରି ରହିଲେ । ଦିନକରେ ସାର୍ବଭୌମ ପ୍ରଭୁଙ୍କ ବାସସ୍ଥାନ ପିତା, ଜାତି, ଗୁରୁ ପ୍ରଭୃତିର ପରିଚୟ ଗୋପୀନାଥ ଆଚାର୍ଯ୍ୟଙ୍କୁ ପଚାରିବାରେ ଆଚାର୍ଯ୍ୟ ଆପଣେ ପ୍ରଭୁଙ୍କର ପ୍ରକୃତ ପରିଚୟ ସାର୍ବଭୌମଙ୍କୁ ଦେଲେ । ସାର୍ବଭୌମ ବୈଦାନ୍ତିକ; ସୁତରାଂ ନିରାକାରବାଦୀ ! କିନ୍ତୁ ଚୈତନ୍ୟଦେବ ସାକାରବାଦୀ । କଥା ପ୍ରସଙ୍ଗରେ ଧର୍ମ ବିଷୟରେ ତର୍କ ଉଠିଲା । ଉଭୟେ ସ୍ୱ ସ୍ୱ ମତ ସମର୍ଥନ ନିମନ୍ତେ ଶାସ୍ତ୍ରୀୟ ବିଭିନ୍ନ ପ୍ରକାର ପ୍ରମାଣ-ପ୍ରୟୋଗ କରିବାକୁ ଲାଗିଲେ । ଅବଶେଷରେ ଶ୍ରୀମଦ୍ଭାଗବତ ୧ମ ସ୍କ, ୭ମ ଅ: ଆତ୍ମାରାମ ୧୦ମ ଶ୍ଳୋକ ପାଠକରି ସାର୍ବଭୌମ ୯ ପ୍ରକାର ବ୍ୟାଖ୍ୟା ଦ୍ୱାରା ଆତ୍ମପକ୍ଷ ସମର୍ଥନ କଲେ । ମାତ୍ର ଚୈତନ୍ୟ ଦେବ ସାର୍ବଭୌମକୃତ ବ୍ୟାଖ୍ୟା ଏକାବେଳକେ ପରିତ୍ୟାଗ କରି ଭିନ୍ନ ଭାବରେ ଅଷ୍ଟାଦଶ ପ୍ରକାର ବ୍ୟାଖ୍ୟା କରନ୍ତେ

ସାର୍ବଭୌମ ପରାଜୟ ସ୍ୱୀକାର କଲେ ଏବଂ ଚୈତନ୍ୟ-ଦେବଙ୍କ ଶ୍ରୀଚରଣରେ ପ୍ରଣତ ହୋଇ ଶିଷ୍ୟତ୍ୱ ସ୍ୱୀକାର କଲେ ।

———

## ଶ୍ରୀକ୍ଷେତ୍ରରେ ଚୈତନ୍ୟ ମହାପ୍ରଭୁ

ଉତ୍କଳଭୂମିରେ ବୌଦ୍ଧଧର୍ମ ବିନାଶର ଆସନ୍ନ କାଳ ଉପସ୍ଥିତ ଅଥବା ବିନଷ୍ଟପ୍ରାୟ । ଲୋକ-ମାନଙ୍କର ଧର୍ମ ମତରେ କିଛି ସ୍ଥିରତା ନାହିଁ, ଶୈବଧର୍ମ ଏବଂ ନାନାପ୍ରକାର ଉପଧର୍ମରେ ଦେଶ-ପ୍ଲାବିତ, ଅନାହୂତ ଇସଲାମ ଧର୍ମ ଉତ୍କଳର ଉତ୍ତରଦ୍ୱାର ସୁବର୍ଣ୍ଣରେଖା କୂଳରେ ନାସିକାପ୍ରବେଶ କରାଇବାକୁ ଉଦ୍ୟତ, ଠିକ୍ ସେହି ଧର୍ମ-ବିପ୍ଲବ ସମୟରେ 'ଧର୍ମ ସଂରକ୍ଷଣାର୍ଥାୟ' ଭଗବାନଙ୍କ ଅବତାର ରୂପେ ଯେପରି ଜଗନ୍ନାଥ ଦାସ ଏବଂ ଚୈତନ୍ୟ ଦେବଙ୍କର ଆବିର୍ଭାବ । ଉତ୍କଳଖଣ୍ଡରେ ପବିତ୍ର ବୈଷ୍ଣବ ଧର୍ମର ପ୍ରଚାରକ ଉଲ୍ଲିଖିତ ଦୁଇ ମହାପୁରୁଷ ଅଟନ୍ତି । ସ୍ୱକୀୟ ମତ ପ୍ରଚାର ବିଷୟରେ ଉଭୟେ ଏକକୁ ଆରେକ ସହାୟ ହୋଇଥିଲେ । ବର୍ତ୍ତମାନ ଉତ୍କଳଖଣ୍ଡରେ ଯେଉଁ ସାର୍ବଭୌମ ବୈଷ୍ଣବ ଧର୍ମ ପ୍ରଚଳିତ ଅଛି, ତାହାର ବୀଜବପନକାରୀ ଅତଏବ ଜଗନ୍ନାଥ ଦାସେ ଅଟନ୍ତି । ଚୈତନ୍ୟଦେବଙ୍କ ଉତ୍କଳ ଦେଶକୁ ଶୁଭାଗମନ ପୂର୍ବରୁ ଜଗନ୍ନାଥ ଦାସ ବୀଜବପନ କରିଥିଲେ । ଚୈତନ୍ୟଦେବଙ୍କ ଯତ୍ନରେ ତାହା ବୃକ୍ଷରୂପେ ପରିଣତ ହୋଇଅଛି । ଜଗନ୍ନାଥ ଦାସଙ୍କ ଉକ୍ତ ବୀଜର ଆଶ୍ରୟ ଗ୍ରହଣ କରି ନ ଥିଲେ ଚୈତନ୍ୟ ଦେବଙ୍କ ମତ ଅଦ୍ୟାବଧି ସ୍ଥାୟିତ୍ୱ ଲାଭ କରିଥାନ୍ତା କି ନାହିଁ, ସମ୍ପୂର୍ଣ୍ଣ ସନ୍ଦେହର ବିଷୟ ଅଟେ । ବଙ୍ଗଦେଶରେ ଚୈତନ୍ୟ ଦେବଙ୍କ ମତ କର୍ତ୍ତାଭଜା, ବାଉଲ ପ୍ରଭୃତି ନାନାସମ୍ପ୍ରଦାୟଦ୍ୱାରା ନାନାପ୍ରକାର ବିକୃତ ଭାବ ଧାରଣ କରିଅଛି । ମାତ୍ର ଜଗନ୍ନାଥ ଦାସ ଯେଉଁ ବୀଜ ବପନ କରିଥିଲେ, ତଦୁତ୍ପନ୍ନ ବୃକ୍ଷ ଅଦ୍ୟାବଧି ଅକ୍ଷୁଣ୍ଣଭାବରେ ରହିଅଛି । ସେଥିରେ ହସ୍ତକ୍ଷେପ କରିବାକୁ କେହି ସାହସୀ ହୋଇ ନାହାନ୍ତି । କେବଳ ଧର୍ମ କାହିଁ, ଭାଷାପ୍ରଚାର ବିଷୟରେ ଉତ୍କଳଭୂମି ଜଗନ୍ନାଥ ଦାସଙ୍କଠାରେ ସମ୍ପୂର୍ଣ୍ଣ ଋଣୀ । ଅଦ୍ୟାବଧି ପ୍ରାୟ ଅର୍ଦ୍ଧସହସ୍ର ବର୍ଷ ଗତ ହୋଇଅଛି । କୋଟି କୋଟି ନର ନାରୀ କାଳସ୍ରୋତରେ ଭାସି ଯାଇଅଛନ୍ତି, ମାତ୍ର ନିରକ୍ଷର ଗୋପାଳକ ଶିଶୁଠାରୁ ରାଜା ମହାରାଜା ପର୍ଯ୍ୟନ୍ତ ଏପରି କେହି ଲୋକ ଥିଲେ ବା ଅଛନ୍ତି ଯାହାଙ୍କୁ ଜଗନ୍ନାଥ ଦାସଙ୍କର ଅନ୍ତତଃ ଦୁଇପଦ କବିତା ନ ପଇଟେ; ଅଥବା ଯେ ଦାସଙ୍କ ନାମ ଶୁଣିନାହାନ୍ତି ଏହା ଆମ୍ଭେମାନେ ଅନୁମାନ କରି ପାରୁନାହୁଁ । ଭାଷା ଏବଂ ଧର୍ମପ୍ରଚାର ସମ୍ବନ୍ଧରେ ଉତ୍କଳଭୂମି ଅଚ୍ୟୁତ, ଅନନ୍ତ, ଯଶୋବନ୍ତ, ବଳରାମ ଏବଂ ଜଗନ୍ନାଥ ଦାସ ଏହି ପଞ୍ଚ ମହାପୁରୁଷଙ୍କଠାରେ ବିଶେଷ ଋଣୀ । ମାତ୍ର ଏମାନଙ୍କ ମଧ୍ୟରେ ଜଗନ୍ନାଥ ଦାସ ସର୍ବପ୍ରଧାନ ଅଟନ୍ତି ।

ବିବିଧ ପୁରାଣରେ ବର୍ଣ୍ଣିତ ଅଛି ଚୈତନ୍ୟ ଦେବ ଶ୍ରୀକୃଷ୍ଣ ଅଂଶରୁ ଏବଂ ଜଗନ୍ନାଥ ଦାସ ରାଧିକା ଅଂଶରୁ ବୈକୁଣ୍ଠଧାମରୁ ଆସି ପୃଥିବୀରେ ଅବତୀର୍ଣ୍ଣ ହୋଇଥିଲେ । ଏହି ପୌରାଣିକ ବାକ୍ୟପ୍ରତି ଆସ୍ଥା ସଂସ୍ଥାପନ କରିବା ବିଷୟରେ କୁଣ୍ଠିତ ଅଧୁନାତନ ପାଶ୍ଚାତ୍ୟ ଜ୍ଞାନାଲୋକପ୍ରାପ୍ତ ଏପରି ଅନେକ ପାଠକ ଥାଇ ପାରନ୍ତି । ମାତ୍ର ଚୈତନ୍ୟ ଦେବ ଓ ଜଗନ୍ନାଥ ଦାସ ଏ ଉଭୟ ଯେ ଅପ୍ରାକୃତ ଏବଂ ଈଶ୍ୱରଙ୍କ ବିଶେଷ ଅନୁଗୃହୀତ ମହାପୁରୁଷ ଥିଲେ, ନିଶ୍ଚୟ ଏ ବିଷୟର ପ୍ରତିବାଦ କରିବାକୁ କେହି ସାହସୀ ହେବେ ନାହିଁ ।

ଅତଏବ ଜଗନ୍ନାଥ ଦାସ ଏବଂ ଚୈତନ୍ୟ ଦେବଙ୍କ ପରସ୍ପର ମିଳନ ସମ୍ବାଦ ଆମ୍ଭେମାନେ ଜଗନ୍ନାଥଚରିତାମୃତରୁ ଉଦ୍ଧାର କରିବୁଁ । ତତ୍ପୂର୍ବେ

ଜଗନ୍ନାଥଙ୍କ ଜନ୍ମବୃତ୍ତାନ୍ତ ଏବଂ ବାଲ୍ୟଜୀବନ ସମ୍ବନ୍ଧରେ କବି ଦିବାକର ଯାହା ଲେଖିଯାଇଅଛନ୍ତି, ତାହା ଉଲ୍ଲେଖ କରିବା ଅସଙ୍ଗତ ହେବ ନାହିଁ ।

ଗୋଲୋକ ବୈକୁଣ୍ଠଧାମରେ ଶ୍ରୀକୃଷ୍ଣଚନ୍ଦ୍ର ମାନବ-ରୂପରେ ପୃଥିବୀରେ ଜନ୍ମଗ୍ରହଣ କରିବା ସକାଶେ ସ୍ୱୀକୃତ ହୋଇ ଶ୍ରୀମତୀ ରାଧିକାଙ୍କୁ କହିଲେ :—

'ପୁଣ ଅଂଶମା ରାଧା ତୁହିଁ', ବୋଇଲେ ଜାତ ହୁଅ ମହୀ ।
ମନ୍ତ୍ର ରାଜା ରାମାଦି ନାମ, ସଂସାରେ କରାଅ କୀର୍ତ୍ତନ ।
ଅଜ୍ଞାପ୍ରମାଣେ ସେ ଅଇଲେ, ଓଡ଼ିଶା ରାଜ୍ୟେ ଜନ୍ମ ହେଲେ ।
ନାମ କପିଳେଶ୍ୱର ପୁର, ଶାସନ ମଧ୍ୟେ ତାଙ୍କ ଘର ।
ପୁରାଣପଣ୍ଡା ଭଗବାନ, ପଦ୍ମା ବୋଲିଣ ପତ୍ନୀ ନାମ ।
ଜନମ ନୋହେ ଯେବେ ମହୀ, ତେବେ ସେ ଭକ୍ତ ହୁଏ ନାହିଁ ।
ତେଣୁ ସେ ପତ୍ନୀର ଉଦରେ ଜନ୍ମିଲେ ବାଳକ ବେଶରେ
ଭାଦ୍ରବ ଶୁକ୍ଳାଷ୍ଟମୀ ଦିନ, ବେଳ ମଧ୍ୟାହ୍ନ କାଳେ ଜନ୍ମ ।
ବୁଧ ଅନୁରାଧା ବାସରେ, ମାହେନ୍ଦ୍ରଗୁରୁଙ୍କ ବେଳାରେ ।

× × ×

ଦ୍ୱାଦଶ ବରଷର ବେଳେ, ପିତା ବିବାହ ବିଚାରିଲେ ।
ପିତାଙ୍କୁ ବିଭା ନାସ୍ତି କଲେ, ସମଗ୍ର ବିଦ୍ୟାକୁ ଘୋଷିଲେ ।
ଯଜୁର୍ବେଦ ସାମ ବେଦକୁ, କଣ୍ଠସ୍ଥ କଲେ ସେ ତାହାକୁ ।
କଳାପ ବର୍ଦ୍ଧମାନ ଦୁଇ, ରଖିଲେ ଜିହ୍ୱାଅଗ୍ରେ ଥୋଇ ।
ସକଳ ଶାସ୍ତ୍ର ପୂର୍ଣ୍ଣ ହେଲେ, ଭାଗବତ ସମଗ୍ର ଘୋଷିଲେ ।
ଶ୍ରୀରାମାୟଣ ଗ୍ରନ୍ଥ ସାଧି, ଭାଗବତରେ ଦେଲେ ବୁଦ୍ଧି ।
ଦ୍ୱାଦଶ ସ୍କନ୍ଧ ଭାଗବତ, ଟୀକାଟିପ୍ପଣୀ ଯେ ସମସ୍ତ ।
ହେଲା ଅଷ୍ଟାଦଶ ବରଷ, ଏମାନ ସାଧିଲେ ବିଶେଷ ।

× × ×

ଜଗନ୍ନାଥ ଦାଶେ ଅଷ୍ଟାଦଶ ବର୍ଷ ବୟସ ସମୟରେ ସମସ୍ତ ଶାସ୍ତ୍ର ଅଧ୍ୟୟନ ସମାପ୍ତ କରି ଧର୍ମାଚରଣରେ ପ୍ରବୃତ୍ତ ହୋଇଥିଲେ । ଜଗତର ପ୍ରାଣୀମାନଙ୍କ ସଦ୍‌ଗତିର ଉପାୟ ଉଦ୍ଭାବନରେ ପ୍ରବୃତ୍ତ ଥାନ୍ତି, ଏମନ୍ତ ସମୟରେ ଶ୍ରୀଚୈତନ୍ୟ ଦେବଙ୍କ ସହିତ ତାହାଙ୍କର ଭେଟ ହେଲା ।

ଶ୍ରୀ ଅତିବଡ଼ ଜଗନ୍ନାଥ, ଦଶମସ୍କନ୍ଧ ଭାଗବତ ।
ଶ୍ରୀବ୍ରହ୍ମ ସୁନ୍ଦର ବିଚାର, କରନ୍ତି ଗଉଡ଼ଣ ଆଗର ।
ଏହି ସମୟେ ଶ୍ରୀଚୈତନ୍ୟ, ସଙ୍ଗେ ଘେନିଣ ସଖାଗଣ ।
ବଟତଳରେ ବିଜେ କଲେ, ପୁରାଣ ଶୁଣି ତୋଷ ହେଲେ ।
ପ୍ରେମ ଭାବରେ ଶ୍ରୀଚୈତନ୍ୟ, ଦାଶଙ୍କୁ କଲେ ଆଲିଙ୍ଗନ ।

ଶ୍ରୀଚୈତନ୍ୟ ଜଗନ୍ନାଥ ଦାଶଙ୍କୁ ଆଲିଙ୍ଗନ କରି ଅଢ଼େଇ ଦିବସ ପର୍ଯ୍ୟନ୍ତ ଭାବାବେଶରେ ଅଚୈତନ୍ୟାବସ୍ଥାରେ ଥିଲେ—

"ଅଢ଼ାଇ ଦିବସ ପର୍ଯ୍ୟନ୍ତେ, ବୁଡ଼ି ରହିଲେ ଭାବଚିତ୍ତେ ।"

× × ×

ବୈଷ୍ଣବବୃନ୍ଦ ଯେତେ ଥିଲେ, ମାନ୍ୟକରି ବସାକୁ ଗଲେ
ପ୍ରତିଦିବସ ଚଇତନ୍ୟ, ଆସନ୍ତି କରି ଦରଶନ ।
ବଟତଳେ ପୁରାଣ ଶୁଣି, ଦଣ୍ଡେ ରହନ୍ତି ପ୍ରେମ ଗୁଣି ।"
ମାତ୍ର ତାହାଙ୍କର ସହଚରମାନେ ବଙ୍ଗଦେଶୀୟ ।
"ବୈଷ୍ଣବବୃନ୍ଦ ଯେତେ ଥିଲେ, ଏମନ୍ତ ଦେଖି ବିଚାରିଲେ,
ଉତ୍କଳ ବ୍ରାହ୍ମଣ ସହିତେ, ଭାବ ବଢ଼ାଇଲେ ନିରତେ ।
ଏହି ରାଜ୍ୟରେ ଏ ରହିବେ, ଉତ୍କଳୀ ଧର୍ମ ଆଚରିବେ ।
ଏ ସବୁ ଛଡ଼ାଇବା ଆମ୍ଭେ, ଏମନ୍ତ ବିଚାରି ଆରମ୍ଭେ ।"

ଏହି କଥା ପରସ୍ପର ବିଚାର କରି ଶ୍ରୀ ଚୈତନ୍ୟ ଦେବଙ୍କୁ—ବୋଇଲେ ଉତ୍କଳୀ ବ୍ରାହ୍ମଣ, ଅସ୍ପର୍ଶ ଦେଖି ଯେ ଆପଣ ଏହାଙ୍କୁ ସ୍ପର୍ଶ କରିବାରେ, ନିଷେଧ ଅଛି ଯେ ଶାସ୍ତ୍ରରେ । ଚୈତନ୍ୟ ଦେବ ବୈଷ୍ଣବମାନଙ୍କ ବାକ୍ୟ ଶୁଣି ବିରକ୍ତ ହୋଇ କହିଲେ—

ଦ୍ୱାରକାପୁରେ ଭଗବାନ, ବ୍ରାହ୍ମଣେ କରିଛନ୍ତି ମାନ୍ୟ ।
ସର୍ବ ଦେବତା ବିଷ୍ଣୁ ଦେହେ,
ବ୍ରାହ୍ମଣ ଦେହେ ବିଷ୍ଣୁ ରହେ ।

× × ×

ଏ ବାରତା ଦାଶେ ପାଇଲେ, ପ୍ରଭୁଙ୍କ ଦର୍ଶନକୁ ଗଲେ ।
କେତେ ଅଭଡ଼ା ଘେନି କରେ,
ମିଳିଲେ ଯାଇ ମଠଠାରେ ।
ସାରିଣ ସମୁଦ୍ର ସ୍ନାହାନ, ବସାରେ ବିଜେ ଶ୍ରୀ ଚୈତନ୍ୟ
ଦାଶେ ଧୋଇଣ ବେନିହସ୍ତ, ପ୍ରଭୁଙ୍କୁ କଲେ ଦଣ୍ଡବତ ।
ଆଜ୍ଞା ଯେ କଲେ ଶ୍ରୀ ଚୈତନ୍ୟ, ଆସହେ ଦାସେ ଭକ୍ତିପୂର୍ଣ୍ଣ
ଜ: ଚ:

ଚୈତନ୍ୟ ଦେବଙ୍କ ଅଭ୍ୟର୍ଥନା ଗ୍ରହଣ କରି ଜଗନ୍ନାଥ ଦାଶ ଆସନ ଗ୍ରହଣ କଲେ । ଭକ୍ତି ସମ୍ବନ୍ଧରେ ଗୁରୁତତ୍ତ୍ୱ ସମ୍ବନ୍ଧରେ ଉଭୟଙ୍କ ମଧ୍ୟରେ କେତେକ୍ଷଣ ପର୍ଯ୍ୟନ୍ତ କଥୋପକଥନ ହେଲା । ଜଗନ୍ନାଥ ଦାଶଙ୍କର ଧର୍ମ ଏବଂ ଭକ୍ତିତତ୍ତ୍ୱ ବିଷୟରେ ପ୍ରଗାଢ଼ ଜ୍ଞାନ ଦେଖି ଶ୍ରୀ ଚୈତନ୍ୟଦେବ ଆଜ୍ଞା କଲେ—"ହେ ଦାଶେ, ଧାର୍ମିକତାରେ ଏବଂ ଜ୍ଞାନଗୌରବରେ ତୁମ୍ଭେ ଆମ୍ଭଠାରୁ ଅତି ବଡ଼ ଅଟ, ଏଥିକୁ 'ଅତିବଡ଼' ଏହି ପଦ ପାଇବାର ଯୋଗ୍ୟ ।" ପାରିଷଦମଣ୍ଡଳୀଙ୍କ ସାକ୍ଷାତରେ ଅତିବଡ଼ ଜଗନ୍ନାଥ ଦାଶ ବୋଲି ସମ୍ବୋଧନ କଲେ । ଜଗନ୍ନାଥ ଚରିତାମୃତରେ ବର୍ଣ୍ଣିତ ଅଛି—

"ଆପଣା ଶ୍ରୀଅଙ୍ଗ ପାଟ୍ଟେଡ଼ି, କଷାବସନ ଅଙ୍ଗ କାଢ଼ି ।
ଦାଶଙ୍କ ଶିରେ ବାନ୍ଧି ଦେଲେ, ଅତି ବଡ଼ ବୋଲି
ବୋଇଲେ ।
ପ୍ରତି ଦିବସ ସ୍ନେହଚିତ୍ତେ, ଡାକନ୍ତି ଅତିବଡ଼ ନିତ୍ୟେ ।
ଶ୍ରୀ ଅତିବଡ଼ ଜଗନ୍ନାଥ, ଡାକନ୍ତି ମାନବ ସମସ୍ତ ।
ମହାପ୍ରଭୁଙ୍କ ମୁଖୁଁ ଶୁଣି, ସର୍ବେ ବୋଇଲେ ଏହି ବାଣୀ ।
ଏ ଭାବେ ଗଲା କେତେ ଦିନ, ଶ୍ରୀ ପୁରୁଷୋତ୍ତମେ ଚୈତନ୍ୟ
ଅତିବଡ଼ ବୋଲି ବୋଲନ୍ତେ, ବୈଷ୍ଣବ ଦୁଃଖ କଲେ ଚିତ୍ତେ
ଓଡ଼ିଆ ବ୍ରାହ୍ମଣ ଅଣାଇ, ବୋଇଲେ ଅତିବଡ଼ ଏହି ।
ଆଜିପର୍ଯ୍ୟନ୍ତ ସେବା କଲୁଁ, ସମସ୍ତେ ସାନ ପଦେ ଗଲୁଁ ।
ଏହାଙ୍କ ସଙ୍ଗେ ଯେବେ ଥିବା, ଏହି କଥା ସିନା ଶୁଣିବା ।

× × ×

ଏମନ୍ତେ କେତେ ଦିନ ଗଲା, ଅତିବଡ଼ କଥା ବାଧିଲା ।

× × ×

ଚୈତନ୍ୟ ଦେବ ପରମ୍ପରରେ ଏହି ବିଷୟ ଅବଗତ ହୋଇ ପାରିଷଦମାନଙ୍କୁ କହିଲେ, ଏହି କ୍ଷେତ୍ରର ମହିମା ଅପାର, ଏ ସ୍ଥାନବାସୀ ବିପ୍ରଗଣ ପୂଜନୀୟ ଅଟନ୍ତି—ଅତିବଡ଼ ଜଗନ୍ନାଥ ଦାଶ ସତ୍କୁଳ ଜାତ ବ୍ରାହ୍ମଣ, ବିଦ୍ୱାନ୍ ଏବଂ ଧାର୍ମିକପ୍ରଧାନ । ଆମ୍ଭ ମତରେ ସେ ଆମ୍ଭଠାରୁ ଅତି ବଡ଼ ଅଟନ୍ତି—

"ଏ କ୍ଷେତ୍ର ଟେକା ଯେ ପାଷାଣ ଟିଙ୍କର କାଷ୍ଠ ବାଲିମାନ ।
ଅନ୍ୟ ରାଜ୍ୟକୁ ସେ ଦେବତା, ମନୁଷ୍ୟ ଅବା କେତେ
କଥା ।
ଏ ଘେନି ଅତିବଡ଼ ବାଣୀ ଦାଶଙ୍କୁ ଚିତ୍ତ ନୁହେ ପୁଣି ।

× × ×

ଏ ଭାବ ପ୍ରଭୁ ମୁଖୁଁ ଶୁଣି, ସର୍ବ ବୈଷ୍ଣବ ଦୁଃଖ ମଣି ।
ବିଚାର କଲେ ସର୍ବ ଚିତ୍ତେ, ଥିବାର ନୁହେଁଟି ଉଚିତେ ।
ଏ ଭାବ ମନରେ ଭାଳିଲେ, ପ୍ରଭୁଙ୍କ ସ୍ନେହ ଦୂର କଲେ ।
ମହାପ୍ରଭୁଙ୍କ ସଙ୍ଗ ଛାଡ଼ି, ଯାଜନଗ୍ରକୁ ଦେଲେ ଧାଡ଼ି ।
ରହିଲେ ଯାଜନଗ୍ରେ ଯାଇଁ, ଏଣେ ଶ୍ରୀଚୈତନ୍ୟ ଗୋସାଇଁ
ଷଟ୍ ମୂର୍ତ୍ତି ବୈଷ୍ଣବଙ୍କ ତୁଲେ, ଶ୍ରୀ ପୁରୁଷୋତ୍ତମେ ରହିଲେ
ଭକ୍ତମାନଙ୍କ ସ୍ନେହ ଚିତ୍ତେ, ଦୟା ବହିଲେ ହୃଦଗତେ ।
ବୈଷ୍ଣବ ହରିଦାସ ନାମ, ସକଳ ମତେ ପ୍ରିୟତମ ।
ତାଙ୍କୁ ପେଷିଲେ ଦୟାବହି, ଏବ ମହନ୍ତେ ଆଣ ଯାଇ ।
ପଟିକାରେ ଶ୍ଲୋକ ଲେଖିଲେ, ହରିଦାସଙ୍କ ହସ୍ତେ ଦେଲେ

× × ×

ଆଜ୍ଞାରେ ହରିଦାସ ଗଲେ, ଯାଜନଗରରେ ପ୍ରବେଶିଲେ ।
ସର୍ବ ବୈଷ୍ଣବେ ମାନ୍ୟ କରି, ବସିଲେ ସଭାକୁ ବିସ୍ତାରି ।
ସର୍ବ ବୈଷ୍ଣବ ସନ୍ମୁଖେ, ପତ୍ରିକା ଦେଲେକ ଅଗ୍ରତେ ।
ଜଗଦାନନ୍ଦ ଚକ୍ରବର୍ତ୍ତୀ, ସଭାରେ ଶ୍ରୀମୁଖେ ପଢ଼ନ୍ତି ।

ବୈଷ୍ଣବମାନଙ୍କ ପ୍ରତି ଶ୍ରୀଚୈତନ୍ୟ ଦେବଙ୍କ ପତ୍ର-
"ତୃଣାଦପି ସୁନୀଚେନ ତରୋରପି ସହିଷ୍ଣୁନା,
ଅମାନିନା ମାନଦେନ କୀର୍ତ୍ତନୀୟଃ ସଦା ହରିଃ"
ଶୁଣି ବୈଷ୍ଣବେ ସ୍ଥିର ହୋଇ, ବୋଇଲେ ହରିଦାସେ ଚାହିଁ ।
ଆମ୍ଭରେ ସ୍ନେହ ଅଛି ଯେବେ, ଏଠାରୁ ଯେନ ଯାନ୍ତୁ ତେବେ ।
ନ ଦେଖି ଚୈତନ୍ୟ ଚରଣ, ନ ଯିବୁଁ ଏ କ୍ଷେତ୍ରବରେଣ
ଶୁଣିଣ ହରିଦାସେ ଗଲେ, ପ୍ରଭୁଙ୍କୁ ଏ କଥା କହିଲେ ।
ଶୁଣିଣ ଚୈତନ୍ୟ ଗୋସାଇଁ, ଅତିବଡ଼ ଦାଶଙ୍କୁ ଚାହିଁ ।
ବୋଇଲେ ଯାଜନଗ୍ରେ ଯିବା, ସକଳ ବୈଷ୍ଣବେ ଆଣିବା ।
ଅତିବଡ଼ ସ୍ୱାମୀ ବୋଇଲେ, ମୋ ଲାଗି ସର୍ବେ ରୁଷି ଗଲେ
ସେଠାକୁ ଯିବି ମୁଁ କେମନ୍ତେ, କ୍ରୋଧ କରିବେ ସର୍ବେ ଚିତ୍ତେ ।
ଶ୍ରୀ ମହାପ୍ରଭୁ ଆଜ୍ଞା ଦେଲେ, ମିଶାଇ ଦେବି ତାଙ୍କ ତୁଲେ
ଆମ୍ଭର ବଚନ ରହିବ, ତାଙ୍କ ତୁମ୍ଭର ପ୍ରୀତି ହେବ ।
ଷଷ୍ଟ ମୂର୍ତ୍ତି ବୈଷ୍ଣବ ସଙ୍ଗେ, ଯାଜନଗରେ ପ୍ରଭୁ ବିଜେ ।
ପ୍ରବେଶ ଯାଜନଗ୍ରେ ଯାଇ, ବୈଷ୍ଣବବୃନ୍ଦ ଛନ୍ତି ଯହିଁ ।
ଶୁଣି ବୈଷ୍ଣବେ ତୁଷ୍ଟ ହେଲେ, ଦୂରକୁ ପାଛୋଟି ଆଇଲେ
ଆଗତ ସ୍ୱାଗତ ଭୋଜନ, ଏ ଭାବେ ଗଲା କେତେ ଦିନ ।
ଅନେକ ଅତୀବ ହରଷେ, ଡାକିଲେ ଅତିବଡ଼ ଦାଶେ ।
ପୂର୍ବକଥା ଯେତେ ଶୁଣିଲେ, ବୈଷ୍ଣବେ ଅତି ଦୁଃଖ କଲେ ।
ଯେଉଁ କଥାକୁ ଏତେ ଦୂର, ଏବେ ବୋଇଲେ ମେ ଉତ୍ତର ।
ପୁରୁଷୋତ୍ତମେ ଯେବେ ଯିବା, ଏହି କଥା ସିନା ଶୁଣିବା

ଏହି କଥା ଶୁଣି ଚୈତନ୍ୟ ଦେବ କହିଲେ—
ତୁମ୍ଭେ ବା ଦୁଃଖ କରି ଚିତ୍ତ, ଏ ଅତିବଡ଼ ଜଗନ୍ନାଥ ।
ଆମ୍ଭ ବଚନ ଅନ୍ୟ ନୋହି, ଏ ଅତି ବଡ଼ ଯୋଗ୍ୟ ହୋଇ ।

ଆମ୍ଭେମାନେ ଏ କ୍ଷେତ୍ରରେ ଦୁଇଗୋଟି କଥା ଦେଖୁଅଛୁଁ; ଚୈତନ୍ୟ ଦେବଙ୍କର ଉତ୍କଳଦେଶ ପ୍ରତି ଶ୍ରଦ୍ଧା ଓ ସ୍ୱଜାତୀୟ ବିପ୍ରପ୍ରୀତି ଏବଂ ସାଧୁ ସର୍ବତ୍ୟାଗୀ ବୈଷ୍ଣବମାନଙ୍କର ବିଦ୍ୱେଷ ଭାବ । ଶ୍ରୀ ଚୈତନ୍ୟ ଦେବଙ୍କର ପିତୃ ଦେଶ, ପିତାମହଙ୍କ ଜନ୍ମସ୍ଥାନ, ସ୍ୱ ମତ ପ୍ରଚାରର ପ୍ରଶସ୍ତ କ୍ଷେତ୍ର ଉତ୍କଳ ଦେଶପ୍ରତି ଏତେ ଦୂର ମାୟା, ପ୍ରୀତି ଏବଂ ଭକ୍ତି ଥିଲା ଯେ, ସେ ସନ୍ନ୍ୟାସ ଜୀବନର ଚତୁର୍ବିଂଶତି ବର୍ଷ ଯାବତ୍ ଉତ୍କଳ ତ୍ୟାଗ କରି ଯାଇ ନାହାନ୍ତି—

"ଛଅ ବଚ୍ଛର କୈଲ ଐଛେ ଗମନାଗମନ ।

× × ×

ଶେଷ ଅଷ୍ଟାଦଶ ବର୍ଷ ନୀଳାଚଲେ ବାସ ।"

ଚୈ: ଚ:

ଉତ୍କଳୀୟମାନଙ୍କ ପ୍ରତି ମଧ୍ୟ ତାହାଙ୍କର ପ୍ରଗାଢ଼ ସ୍ନେହ ଏବଂ ପ୍ରୀତି ଥିଲା । ବଙ୍ଗୀୟ ଯେ ସମସ୍ତ ମହାପୁରୁଷ ପ୍ରଭୁଙ୍କର ନିତାନ୍ତ ଅନ୍ତରଙ୍ଗ, ତରୁଣ ସହଚର, ଧର୍ମ ଚର୍ଚ୍ଚା, ଧର୍ମ ପ୍ରଚାର ବିଷୟରେ ପ୍ରଧାନ ସହାୟ ଏବଂ ଛାୟା ରୂପେ ତାହାଙ୍କର ଅନୁଗାମୀ ହୋଇଥିଲେ, କେବଳ ଜଣେ ଉତ୍କଳୀ ବ୍ରାହ୍ମଣ ଜଗନ୍ନାଥ ଦାଶଙ୍କ ଅନୁରୋଧରେ ସମସ୍ତଙ୍କୁ ପରିତ୍ୟାଗ କରିବାକୁ କୁଣ୍ଠିତ ହେଲେ ନାହିଁ । ଜଗନ୍ନାଥ ଦାଶଙ୍କ ସହିତ ଶ୍ରୀଚୈତନ୍ୟଙ୍କର ମିଳନ ସମ୍ବନ୍ଧରେ ଆମ୍ଭେମାନେ ପ୍ରଭୁଙ୍କ ଚରିତ୍ରରେ ଗୋଟିଏ ବିଶେଷତ୍ୱ ଦେଖୁଅଛୁଁ । ଚୈତନ୍ୟ ଦେବଙ୍କ ବିଶ୍ୱାସ, ଜଗତ୍ ସଂସାରରେ କେହି ତାହାଙ୍କର ନୁହେ । ସେ କାହାର ନୁହନ୍ତି । ହୃଦୟବଲ୍ଲଭ ନେତ୍ରପ୍ରତିମା ବିଷ୍ଣୁପ୍ରିୟାଙ୍କୁ କର୍ତ୍ତବ୍ୟ ଅନୁରୋଧରେ ପରିତ୍ୟକ୍ତ

ପୁଷ୍ପମାଳା ପରି ଏବଂ ଜନନୀ ଶଚୀ ଦେବୀଙ୍କ ମସ୍ତକର କେଶ ପମାନ ସହଜରେ ପରିତ୍ୟାଗ କରି ଆସିଲେ । ଗୃହତ୍ୟାଗ ସମୟରେ କହିଥିଲେ—

"ଧରିଯୋଗୀର ବେଶ ଯାବ ଦେଶେ ଦେଶେ"
ଯଥା ଗେଲେ ପାବ ପ୍ରାଣନାଥେର ଉଦ୍ଦେଶେ ।"

ସ୍ୱ ଦଳ ସହିତ ନୀଳାଚଳଯାତ୍ରା ସମୟରେ ଗଙ୍ଗାପାର ହୋଇ "ଓଡ୍ର" ଦେଶ ମଧ୍ୟରେ ଆସୁଅଛନ୍ତି, ବାଟରେ—

"କତ ଦୂରେ ଗେଲେ ମାଧ ଦାସୀ ଦୁରଗୃର
ରଖିଲେକ ଦାନ ଗୃହେନ ଦେଖି ଯାଇବାର"
ଚୈ: ମ:

ମାଧ ପ୍ରଭୁଙ୍କ ତେଜ ଦେଖି ବିନା ଦାନରେ ବାଟ ଛାଡ଼ିଦେଲା ଏବଂ ପ୍ରଭୁଙ୍କ ସହଯାତ୍ରୀମାନଙ୍କୁ ଲକ୍ଷ୍ୟକରି ପଚାରିଲା—

"ଜିଜ୍ଞାସିଲ ତୋମାର କତକ ଲୋକ ହୟ ।
ଚୈ: ମ:

ପ୍ରଭୁ କହେ ଜଗତେ ଆମାର କେହ ନୟ
ଆମି ଓ କାହାର ନହି କହିଲ ନିଶ୍ଚୟ ।
................ ... ଏକ ଆମି ଦୁଇ ନାହିଁ
ଅଥଚ.................ସକଲ ଆମାର ।"

ଅର୍ଥାତ୍ ସେ ବିଶ୍ୱାସ କରନ୍ତି, ସେ ବିଶ୍ୱସଂସାରର ଏବଂ ବିଶ୍ୱସଂସାର ତାହାଙ୍କର ।

ସେହି ସମଦର୍ଶୀ ସନ୍ୟାସୀ ପ୍ରଭୁ ଜଗନ୍ନାଥ ଦାଶଙ୍କୁ ବିଶେଷ ଆପଣାର ଜ୍ଞାନ କରି ତାହାଙ୍କୁ ହୃଦୟ ସମର୍ପଣ କରିଥିଲେ ଏବଂ ସେହି ଜଗନ୍ନାଥ ଦାଶଙ୍କ ସହବାସ ଅନୁରୋଧରେ ଶ୍ରୀକ୍ଷେତ୍ରଧାମକୁ ଧର୍ମାର୍ଜନ ଓ ଧର୍ମ ପ୍ରଚାରର ପ୍ରଶସ୍ତ କ୍ଷେତ୍ର କରି ସମସ୍ତ ଜୀବନ ଅତିବାହିତ କରିଥିଲେ ।

ନିଶ୍ଚିତ ଯେ ସମସ୍ତ ମହାପୁରୁଷ କେବଳ ଚୈତନ୍ୟ ଦେବଙ୍କ ଦତ୍ତ ଧର୍ମ ଭାବରେ ଏବଂ ତାହାଙ୍କ ପ୍ରେମରେ ଉନ୍ମତ୍ତ ହୋଇ "ସ୍ୱର୍ଗାଦପି ଗରୀୟସୀ" ଜନନୀ ଜନ୍ମଭୂମି, ହୃଦୟବଲ୍ଲଭ ଜ୍ଞାତି ପରିଜନ ସଂସାର ବନ୍ଧନର ରଜ୍ଜୁସ୍ୱରୂପ ଯଥାସର୍ବସ୍ୱ ଅବଲୀଳାକ୍ରମେ ପରିତ୍ୟାଗ ପୂର୍ବକ ପ୍ରଭୁଙ୍କ ପଶ୍ଚାଦ୍‌ଗାମୀ ଏବଂ ଛାୟା ସମାନ ଅହର୍ନିଶ ନିକଟବର୍ତ୍ତୀ ଥିଲେ ଏବଂ ପ୍ରଭୁଙ୍କ କ୍ଷଣିକ ବିରହରେ ଯେଉଁମାନଙ୍କୁ ଜଗତ୍ ସଂସାର ତମିସାଚ୍ଛନ୍ନ ପରି ପ୍ରତୀୟମାନ ହେଉଥିଲା, ସେମାନେ ଅତି ତୁଚ୍ଛ ଅସମ୍ମାନ ସହ୍ୟ କରିବାକୁ କ୍ଷମ ହେଲେ ନାହିଁ । ବୈଷ୍ଣବମାନେ ଆପଣାମାନଙ୍କୁ ପ୍ରଭୁଙ୍କର ନିତାନ୍ତ ବିଶ୍ୱସ୍ତ ଭକ୍ତ ଓ ବିଶେଷ ଅନୁଗୃହୀତ ବୋଲି ଜ୍ଞାନ କରୁଥିଲେ । ମାତ୍ର ଜଗନ୍ନାଥ ଦାଶ ଅତିବଡ଼ ପଦ ପାଇବାରୁ "ତୃଣାଦପି ସୁନୀଚେନ—ତରୋରପି ସହିଷ୍ଣୁନା—" ବୈଷ୍ଣବ ଧର୍ମର ବୀଜମନ୍ତ୍ର ବିସ୍ମରଣ ପୂର୍ବକ ଅନ୍ୟଥା ବୁଝିଲେ । ଆମ୍ଭେମାନେ ମଧ୍ୟ ଦେଖୁଅଛୁଁ କେବଳ ଚୈତନ୍ୟଙ୍କର ତାତ୍କାଳିକ ସଙ୍ଗୀମାନଙ୍କର ନୁହେ, ବଙ୍ଗଦେଶୀୟ ଅନ୍ୟାନ୍ୟ ବୈଷ୍ଣବ-ମଣ୍ଡଳୀର ମଧ୍ୟ ଜଗନ୍ନାଥ ଦାଶଙ୍କ ପ୍ରତି ଗୋଟାଏ ଉପରି ପ୍ରଚ୍ଛନ୍ନ ବିଦ୍ୱେଷ ଭାବ ଥିଲା ପରି ଜଣାଯାଏ । ଗୋସ୍ୱାମୀ ଗ୍ରନ୍ଥକାରମାନେ ଚୈତନ୍ୟ ଦେବଙ୍କ ଶ୍ରୀକ୍ଷେତ୍ରସ୍ଥ ତାବନ୍ତୀୟ ଲୀଳା ଆପଣା ଆପଣା ଗ୍ରନ୍ଥରେ ବିଶଦ-ଭାବରେ ବର୍ଣ୍ଣନ କରି ଯାଇଅଛନ୍ତି । ପ୍ରଭୁଙ୍କ କ୍ଷେତ୍ରସ୍ଥ ଲୀଳାମଧ୍ୟରେ ସାର୍ବଭୌମଙ୍କ ସହିତ ଶାସ୍ତ୍ରାର୍ଥ ବିଚାର ଏବଂ ଜଗନ୍ନାଥ ଦାଶଙ୍କ ସହିତ ସମ୍ମିଳନ ଏହି ଦୁଇ ଗୋଟି ପ୍ରଧାନ ଘଟଣା । ମିଳନ ସମୟରେ ଉଭୟଙ୍କ ବୟସ ସମାନ; ଅର୍ଥାତ୍ ୨୪ ବର୍ଷ ହୋଇଥିଲା । ଚୈତନ୍ୟ ଦେବଙ୍କ ଜନ୍ମ ୧୪୦୭ ଶକ, ଫାଲ୍‌ଗୁନ ପୂର୍ଣ୍ଣିମା, ଜଗନ୍ନାଥ ଦାଶଙ୍କ ଜନ୍ମ ମଧ୍ୟ ୧୪୦୭ ଶକ, ଭାଦ୍ର ଶୁକ୍ଳାଷ୍ଟମୀ । ଉଭୟେ ଯେମନ୍ତ ପରାମର୍ଶ କରି ଜନ୍ମଗ୍ରହଣ କରିଥିଲେ । ଜଗନ୍ନାଥ ଦାଶଙ୍କ ସହିତ ସମ୍ମିଳନ ବୃତ୍ତାନ୍ତ ଉଲ୍ଲେଖ କରିଥିଲେ ବୋଧ କରୁଁ ଚୈତନ୍ୟଚରିତା-

ମୃତରେ ଦଶଅଧ୍ୟାୟ ପାଠ ବଳ ପଡ଼ିଆଛନ୍ତି; ମାତ୍ର କୃଷ୍ଣଦାସ କବିରାଜ ବା ଅନ୍ୟ ଗ୍ରନ୍ଥକାର ଜଗନ୍ନାଥ ଦାଶଙ୍କ ନାମୋଲ୍ଲେଖ ଭିନ୍ନ ଅନ୍ୟ କୌଣସି ପ୍ରସଙ୍ଗ ଲେଖି ନାହାନ୍ତି ।

"ଶ୍ରୀନାଥ ଚକ୍ରବର୍ତ୍ତୀ ଆର ଉଦ୍ଧାରନ ଦାସ
ଜିତା ମିଶ୍ର କାଠକାଟା ଜଗନ୍ନାଥ ଦାଶ ।
ଚୈ: ଭା:

ବୈଷ୍ଣବ ଗୋସାଇଁମାନେ ଯେ କେବଳ ଜଗନ୍ନାଥ ଦାଶଙ୍କୁ ତ୍ୟାଗ କରିଯାଇଥିଲେ ଏମନ୍ତ ନୁହେଁ, ଉତ୍କଳ ଦେଶ ପ୍ରତି ମଧ୍ୟ ସେମାନଙ୍କର କେମନ୍ତ ଗୋଟାଏ କ୍ରୋଧ ଥିଲା । ଗୋସ୍ୱାମୀ ବୃନ୍ଦାବନ ଦାସ ଚୈତନ୍ୟ ଭାଗବତରେ ଲେଖିଅଛନ୍ତି—

"ଗଙ୍ଗାତୀରେ ପୁଣ୍ୟସ୍ଥାନ ସକଲ ଥାକିତେ ।
ବୈଷ୍ଣବ ଜନ୍ମୟେ କେନ ଅଶୌଚ ଦେଶେତେ ।"

ଅର୍ଥାତ୍ ଓଡ଼ିଶା ପରି ଅପବିତ୍ର ଦେଶରେ ବୈଷ୍ଣବ ଜନ୍ମିବା ଅନୁଚିତ ।

"ଆପନେ ହଇଲା ଅବତୀର୍ଣ୍ଣ ଗଙ୍ଗାତୀରେ
ସଙ୍ଗେର ପାର୍ଷଦ ଜନ୍ମାୟେକ ଦୂରେ ଦୂରେ !"

× × ×

"ଯେ ଦେଶେ ପାଣ୍ଡବ ଗେଲ କାହିଁ କଦାଚିତ ।
ଚୈତନ୍ୟ ଦେବ କ ସକାଶେ ଅପାଣ୍ଡବା ଦେଶକୁ ଆସିଥିଲେ ବୃନ୍ଦାବନ ଦାସଠାକୁରେ ସେଥିର ଗୋଟାଏ କୈଫିୟତ ଦେଇଅଛନ୍ତି :—

"ସଂସାର ତାରିତେ ଶ୍ରୀଚୈତନ୍ୟ ଅବତାର ।"

× × ×

ଶୋଚ୍ୟ ଦେଶ ଶୋଚ୍ୟ କୁଲେ ଆପନ ସମାନ
ଜନ୍ମାଇୟା ବୈଷ୍ଣବ ସବାରେ କରେ ତ୍ରାଣ ।
ଚୈ: ଭା:

ଅର୍ଥାତ୍ ଶୋଚ୍ୟ ଦେଶ ଓ ଶୋଚ୍ୟ କୁଳରେ ଆପଣା ସମାନ ବୈଷ୍ଣବ ଜନ୍ମାଇ ସେମାନଙ୍କୁ ଉଦ୍ଧାର କରିବାକୁ ହେବ, ଶ୍ରୀ ଚୈତନ୍ୟ ଦେବଙ୍କର ଏହିପରି ଉଦ୍ଦେଶ୍ୟ ଥିଲା, ସେଥି ସକାଶେ ସେ ପୃଥିବୀ ସାରା ଖୋଜ ଖୋଜ କରି ଗୋଟାଏ ଅପବିତ୍ର ଦେଶ ଓଡ଼ିଶା ପାଇଥିଲେ ।

ମାତ୍ର ସ୍ୱୟଂ ଶ୍ରୀଚୈତନ୍ୟ ମହାପ୍ରଭୁଙ୍କର କିପରି ଧାରଣା ଥିଲା, ତାହା ଶ୍ରୀମୁଖ ବାକ୍ୟରୁ ବୁଝନ୍ତୁ ।

"ଯଦ୍ୟପ୍ୟେଷ ଜଗନ୍ନାଥଃ ସର୍ବଗଃ ସର୍ବଭାବନଃ
ସନ୍ତି କ୍ଷେତ୍ରାଣି ଶୂନ୍ୟାନି ସର୍ବ ପାପହରାଣି ବୈ ।
ଏତତ୍ କ୍ଷେତ୍ରଂ ବରଂ ଅସ୍ୟ ବପୁର୍ଭୂତଂ ମହାତ୍ମନଃ
ସ୍ୱୟଂ ବପୁଷ୍ମାନ୍ ତତ୍ରାସ୍ତେ ସ୍ୱନାମ୍ନା ଖ୍ୟାପିତଂ ହି ତା
ତତ୍ର ଯେ ସ୍ଥାତୁମିଚ୍ଛନ୍ତି ତେ ସର୍ବେଽପି ହତାଂହସଃ ।
କିଂ ପୁନସ୍ତତ୍ର ତିଷ୍ଠନ୍ତୋ ଯେ ପଶ୍ୟନ୍ତି ଗଦାଧରମ୍"
(ସ୍କନ୍ଦପୁରାଣ ଉତ୍କଳଖଣ୍ଡ ପ୍ରଥମ ଅଧ୍ୟାୟ, ୯ । ୧୦ । ୧୧। ଶ୍ଳୋକ । )

ଅସ୍ୟାର୍ଥଃ— ଯେବେହେଁ ଏହି ଜଗନ୍ନାଥ ସର୍ବବ୍ୟାପୀ ସକଳର କାରଣ ଏବଂ ବହୁଳ ପାପନାଶକ ଅନ୍ୟାନ୍ୟ କ୍ଷେତ୍ର ମଧ୍ୟ ଅଛି; ତଥାପି ଏହି କ୍ଷେତ୍ରଟି ସେହି ମହାତ୍ମା ଭଗବାନଙ୍କର ବପୁଃସ୍ୱରୂପ ହେବାରୁ ସବୁଠାରୁ ଶ୍ରେଷ୍ଠତ୍ୱ ଲାଭ କରିଅଛି । ଏହି ମହାପ୍ରଭୁ ସ୍ୱୟଂ ବିଗ୍ରହଧାରୀ ହୋଇ ଏହି ସ୍ଥାନରେ ଅବସ୍ଥାନ କରୁଅଛନ୍ତି ଏବଂ ଏହି କ୍ଷେତ୍ରକୁ ସ୍ୱନାମରେ ବିଖ୍ୟାତ କରିଅଛନ୍ତି । ଏ ସ୍ଥାନରେ ଯେଉଁମାନେ ଅବସ୍ଥାନ କରିବାକୁ ଇଚ୍ଛା କରନ୍ତି, ସେମାନଙ୍କର ସମସ୍ତ ପାପ ବିନଷ୍ଟ ହୁଏ ଏବଂ ଯେଉଁମାନେ ବାସକରି ଗଦାଧରଙ୍କ ସେହି ମୂର୍ତ୍ତି ଦର୍ଶନ କରୁଅଛନ୍ତି ସେମାନଙ୍କ ସୌଭାଗ୍ୟ ବର୍ଣ୍ଣନାତୀତ ।

ଅପିଚ ସୁଦୀର୍ଘକାଳ ଯାବତ୍ ଯେଉଁ ଲୋକ ମର୍ତ୍ତ୍ୟ-ଧାମରେ ସ୍ୱର୍ଗଧାମ ସ୍ୱରୂପ, ବୌଦ୍ଧ ଭିକ୍ଷୁମାନଙ୍କର

ଧାନକ୍ଷେତ୍ର, ବୈଷ୍ଣବ ସାଧୁମାନଙ୍କର ଲୀଳାଭୂମି, ଶୈବ, ଗାଣପତ୍ୟ ଓ ଶାକ୍ତ ସମସ୍ତଙ୍କର ଆଶ୍ରୟ ସ୍ଥାନ ସେହି ଦେଶ 'ଅପାଣ୍ଡବ', 'ଶୌଚ୍ୟ', ଦେଶବାସୀ ପତିତ । ଶ୍ରୀବୃନ୍ଦାବନ ଦାସ ଠାକୁରଙ୍କ ଉଦ୍ଦେଶ୍ୟରେ ଓଲଟି ହେବା ଛାଡ଼ ଆଉ କଣ କହିବୁଁ । ପାରିଷଦ ବୈଷ୍ଣବବୃନ୍ଦର ବା ପରବର୍ତ୍ତୀ ଗ୍ରନ୍ଥକାର ଗୋସ୍ୱାମୀ-ମାନଙ୍କର ବିରକ୍ତିର ଦୁଇଗୋଟି କାରଣ ଦେଖୁଅଛୁ ।

୧ମ । ସେମାନଙ୍କ ମତରେ ଚୈତନ୍ୟଦେବ ସ୍ୱୟଂ ବିଷ୍ଣୁଙ୍କ ଅବତାର; ସୁତରାଂ ତାଙ୍କଠାରୁ ଆଉ ଜଣେ ବଡ଼ ହେବା ଅସମ୍ଭବ ।

୨ୟ । ଏତେ ଭକ୍ତ ଓ ପାରିଷଦ ଥାଉ ଥାଉ କେବଳ ଜଗନ୍ନାଥ ଦାଶେ ଅତିବଡ଼ ପଦ ପାଇବେ, ଏହା ନିତାନ୍ତ ଅସହ୍ୟ କଥା ।

ଏ ବିଷୟ ଏହି ପର୍ଯ୍ୟନ୍ତ ହେଉ । ଏ ଉତ୍ତାରେ ପାଜନଗରରେ ବୈଷ୍ଣବମଣ୍ଡଳୀ- ପ୍ରଭୁଙ୍କ ଶ୍ରୀମୁଖରୁ ଯେତେବେଳେ ସ୍ପଷ୍ଟ ଶୁଣିଲେ —

"ଆମ୍ଭ ବଚନ ଆନ ନୋହି,
ଏ ଅତିବଡ଼ ଯୋଗ୍ୟ ହୋଇ ।"
"ଏକଥା ବୈଷ୍ଣବେ ଶୁଣିଲେ, ମହାପ୍ରଭୁଙ୍କୁ ଛାଡ଼ିଦେଲେ ।
ବଣ ବିଷ୍ଣୁପୁରକୁ ଯାଇ, ରହିଲେ ସ୍ଥାନ କରି ତହିଁ ।"
ବୈଷ୍ଣବ ବୃନ୍ଦ ଚାଲିଯିବାରୁ—
"ଏଣେ ଚୈତନ୍ୟ ବିଜେ କଲେ,
ପୁରୁଷୋତ୍ତମରେ ରହିଲେ ।"

ମାତ୍ର ଧର୍ମପ୍ରାଣ ବୈଷ୍ଣବବୃନ୍ଦ ପ୍ରଭୁଙ୍କ ବିଚ୍ଛେଦ ସହି ନ ପାରି—

"ପୁଣି ହିଁ ସମ୍ବତ୍ସର ଅନ୍ତେ, ସର୍ବ ବୈଷ୍ଣବ ଶୁଦ୍ଧଚିତ୍ତେ ।
ଶ୍ରୀ ପୁରୁଷୋତ୍ତମ ଦର୍ଶନ, ହୁଅନ୍ତେ ମନ ଛନ ଛନ ।
ମାଧ ଦାସଙ୍କୁ ଡକାଇଲେ, ମହାପ୍ରଭୁଙ୍କୁ ଭାଷା ଦେଲେ,
ସେ ମାଧଦାସ ଚାଲିଗଲେ, ପ୍ରଭୁଙ୍କୁ ଦଣ୍ଡବତ ହେଲେ,
ପୁଣି ପୁଚ୍ଛିଲେ ଶ୍ରୀ ଚୈତନ୍ୟ, ବୈଷ୍ଣବ ଚରିତ ବିଧାନ ।
ସେ ମାଧ ଦାସ କହେ ବାଣୀ; ତୁମ୍ଭ ପ୍ରସାଦେ ସର୍ବ ପୁଣି
ସର୍ବ କୁଶଳ ସର୍ବ ସିଦ୍ଧି, ଭକ୍ତ କରିଛନ୍ତି ସଂସିଦ୍ଧି ।
ଶୁଣିଣ ପ୍ରଭୁ ହର୍ଷ ହେଲେ, ରୋମାଞ୍ଚ ଅଶ୍ରୁଜଳ ଗଳେ ।
ସେ ମାଧ କହିଲେ ଅଗ୍ରତେ, ଏମନ୍ତେ କିଛି ଦିନ ଅନ୍ତେ,
ବାଞ୍ଛନ୍ତି ପାରିଷଦଗଣ, ତୀର୍ଥକୁ କରିବା ଭ୍ରମଣ ।"

ମାତ୍ର ହେ ମହାପ୍ରଭୋ ! ତୁମ୍ଭେ ତ—

ଉତ୍କଳରାଜ୍ୟରେ ରହିଲ, ଉତ୍କଳଧର୍ମ ଆଚରିଲ ।
ମାଧ ଦାସଙ୍କ ବାକ୍ୟ ଶ୍ରବଣ କରି ପ୍ରଭୁ ଆଜ୍ଞା କଲେ—
"କହିବ ମାଧ ଦାସେ ଯାଇ, ଏହି ପତିକା ତହିଁ ଦେଇ ।

× × ×

ସେ ମାଧ ଦାସେ ଆଜ୍ଞା ନେଲେ, ବୈଷ୍ଣବମଣ୍ଡଳୀରେ ଦେଲେ ।
ତହିଁରେ ଅଛି ଲେଖା ହୋଇ, କାଶୀଧାମ ଦେଖିଛି ମୁହିଁ ।
ମଧୁପୁର ଗୋପନଗର, ବୃନ୍ଦାବନ ଦ୍ୱାରକାପୁର ।
ଗଙ୍ଗାଦ୍ୱାର ଗଙ୍ଗା ସଙ୍ଗମ, ଅଯୋଧ୍ୟା ବଦରିକାଶ୍ରମ ।
ଏ ସର୍ବସ୍ଥାନେ କୃଷ୍ଣ ଥିଲେ, ଯୁଗାନ୍ତ ହେଲେ ଛାଡ଼ିଗଲେ ।
ଛାଡ଼ି ସକଳ କ୍ଷେତ୍ର ତୀର୍ଥ, ନୀଳକନ୍ଦରେ ଜଗନ୍ନାଥ ।
ମୂର୍ତ୍ତି ଯେ ଜଗତକୁ ମୋହି, ତେଣୁ ଆଶ୍ରେ କରିଛି ମୁହିଁ ।
ନୀଳାଚଳ ସମାନେ ସ୍ଥାନ, ଜଗତେ ନାହିଁ ବୋଲି ଜାଣ ।
ଏ ଦେହ ଥିବା ପରିଯନ୍ତ, ଛାଡ଼ିବି ନାହିଁ କଦାଚିତ ।
ଏ ଭାଷା ଶୁଣିଣ ବୈଷ୍ଣବେ, ବିଚାର କଲେ ମନେ ସର୍ବେ
ବିଚାରୁଥିଲୁଁ ଆମ୍ଭେ ଚିତ୍ତେ, ଦୟା ବହିବେ ଶଚୀସୁତେ ।
ଅତିବଡ଼ ପଦ ଛଡ଼ାଇ; ପାଶକୁ ପୁଣି ନେବେ ସେହି ।
ଶ୍ରୀପୁରୁଷୋତ୍ତମେ ନ ଯିବା, କି ଆଶେ ଭକତି କରିବା ।
ଏ ଉତ୍ତାରେ ବୈଷ୍ଣବବୃନ୍ଦ—

ଛାଡ଼ି ପୁରୁଷୋତ୍ତମ ଆସ, ଶ୍ରୀ ବୃନ୍ଦାବନେ କଲେ ବାସ ।
ଥୋକେ ଦିବସ ବୃନ୍ଦାବନରେ ରହିବା ଉତ୍ତାରେ —
ଦ୍ୱାଦଶ ମହନ୍ତ ଯେ ଥିଲେ, କେଉଁଠି ଦେଶକୁ ଅଇଲେ ।
ଦ୍ୱାଦଶ ସ୍ଥାନେ କରି ଘର, ଆଦରି ରହିଲେ ସଂସାର ।
ସେ କାଳେ ମଠ ଥିଲି ହୋଇ, ଏବେ ଦ୍ୱାଦଶ ପାଟ କହି ।
ଶ୍ରୀ ଚଇତନ୍ୟ ବାଲ୍ୟକାଳେ, ନବଦ୍ୱୀପରେ ଉଦେ ହେଲେ
ନଦୀୟା ନବଦ୍ୱୀପ ଘାଟ, ସେ ଅଟେ ଚୈତନ୍ୟଙ୍କ ପାଟ ।
ଖଡ଼ଦ ଗ୍ରାମପାଟ କଲେ, ନିତ୍ୟାନନ୍ଦ ପ୍ରଭୁ ରହିଲେ ।
ଶାନ୍ତିପୁରରେ ଶ୍ରୀ ଅଚ୍ୟୁତ, ପାଟ ଯେ ତାହାଙ୍କ ବିହିତ ।
ଆମୁଆ ପାଟରେ ଠାକୁର, ଗୌରୀଦାସ ପଣ୍ଡିତଙ୍କର ।
ଖାନାକୁଲ କୃଷ୍ଣ ନଗର, ପାଟେ ଅଭିରାମ ଠାକୁର ।
ଚନ୍ଦନପୁର ପାଟ ହୋଇ, ତହିଁରେ ଶ୍ରୀଦାସ ଗୋସାଇଁ
ମଲ୍ଲିପଡ଼ାରେ ଯେଉଁ ପାଟ, ତହିଁ ଜଗଦାସ ମଣ୍ଡିତ ।
ରାମକେଳ ଗ୍ରାମପାଟରେ, ଶ୍ରୀ ରୂପ ଗୋସାଇଁ ତହିଁରେ
ଆଗ୍ରାଦ୍ୱୀପ ପାଟ ଯା କହି, ତହିଁରେ ଶ୍ରୀଘୋଷ ଗୋସାଇଁ
ଯାଜ ନଗରରେ ପାଟ ସାଜେ, ଆଚାର୍ଯ୍ୟ ଗୋସାଇଁଙ୍କ ବିଜେ
ବରାନଗର ପାଟ ସୁନ୍ଦର, ଶ୍ରୀ ଭାଗବତାଚାର୍ଯ୍ୟଙ୍କର ।
ପାଣିହାଟି ଗ୍ରାମ ପାଟରେ, ଶ୍ରୀ ସୁନ୍ଦରାନନ୍ଦ ଠାକୁରେ ।
କଷାଫଳଟି ଯାର ନାମ, ସାରଙ୍ଗ ଗୋସାଇଁ ଆଶ୍ରମ
ବୈଷ୍ଣବ ଗୋସାଇଁମାନେ ଏ ସମସ୍ତ ପାଟରେ ରହନ୍ତେ—
ଏ କଥା ବୁଝି ଶ୍ରୀଚୈତନ୍ୟ, ମଥୁରା ଦାସକୁ ଭଣିଲେ ।
ବୋଇଲେ ବୃନ୍ଦାବନେ ଯିବ, ବୈଷ୍ଣବମାନଙ୍କୁ ଆଣିବ ।
ମଥୁରା ଦାସେ ଆଜ୍ଞା ନେଲେ, ବୃନ୍ଦାବନରେ ପ୍ରବେଶିଲେ ।

ଶ୍ରୀ ଚୈତନ୍ୟଦେବଙ୍କ ଆଜ୍ଞାପତ୍ର ମଥୁରା ଦାସଙ୍କ ହସ୍ତରୁ ପାଇ—

କୋଡ଼ିଏ ମୂର୍ତ୍ତି ସଜହେଲେ, ଗୁଣ୍ଡିଚା ଯାତ୍ରାକୁ ଅଇଲେ ।
ଜ: ଚ:

ପ୍ରଥମ ବରଷର ଅଦ୍ୱୈତାଦି ଭକ୍ତଗଣ
ପ୍ରଭୁରେ ଦେଖିତେ କୈଲ ନୀଳାଦ୍ରି ଗମନ ।
ରଥଯାତ୍ରା ଦେଖି ତାହା ରୈଲ ଚାରିମାସ,
ପ୍ରଭୁସଙ୍ଗେ ନୃତ୍ୟଗୀତ ପରମ ଉଲ୍ଲାସ ।
ବିଦାୟ ସମୟ ପ୍ରଭୁ କହିଲ ସବାରେ,
ପ୍ରତ୍ୟବ୍ଦ ଆସିବା ସବେ ଗୁଣ୍ଡିଚା ଦେଖିବାରେ ।
ପ୍ରଭୁ ଆଜ୍ଞାୟ ଭକ୍ତଗଣ ପ୍ରତ୍ୟବ୍ଦ ଆସିଯା
ଗୁଣ୍ଡିଚା ଦେଖିଯା ଯାନ୍ ପ୍ରଭୁରେ ମିଳିଯା ।
ଦ୍ୱାଦଶ ବତ୍ସର ଐଛେ କୈଲ ଗତାଗତ
ଅନ୍ୟୋନ୍ୟେ ଦୁହାଁର ଦୁହାଁ ନାହିଁ ଅବସ୍ଥିତ ।
ଚୈ· ଚ·

———

## କବି ଗୋପାଳକୃଷ୍ଣ ପଟ୍ଟନାୟକ

ଉତ୍କଳଭାଷାର ଗୌରବବର୍ଦ୍ଧନକାରୀ ପ୍ରାଚୀନ କବିମାନଙ୍କ ମଧ୍ୟରେ ଗୋପାଳକୃଷ୍ଣ ଜଣେ ଅନ୍ୟତମ ଅଟନ୍ତି । ବଙ୍ଗଦେଶରେ ଚଣ୍ଡୀ ଦାସ, ବିଦ୍ୟାପତି, ଗୋବିନ୍ଦ ଦାସଙ୍କ ପରି ଆମ୍ଭମାନଙ୍କ ଗୋପାଳକୃଷ୍ଣ ଜଣେ ବୈଷ୍ଣବ କବି । ଏହାଙ୍କର ପ୍ରାପ୍ୟ ସମସ୍ତ କବିତା ରାଧା-କୃଷ୍ଣଙ୍କ ଲୀଳାଘଟିତ । କବିଙ୍କ ରଚିତ କୌଣସି ଏକ ବିଶେଷ ମହାକାବ୍ୟ ନାହିଁ; ମାତ୍ର ବିବିଧ ରାଗରାଗିଣୀ-ଯୁକ୍ତ ଅସଂଖ୍ୟ ସଙ୍ଗୀତ ଏବଂ ଖଣ୍ଡକାବ୍ୟ ବହୁଳପରି-ମାଣରେ ବିଦ୍ୟମାନ ଅଛି । କବି ଗୋପାଳକୃଷ୍ଣଙ୍କ ପ୍ରପୌତ୍ର ବାବୁ ରାମକୃଷ୍ଣପଟ୍ଟନାୟକଙ୍କଠାରୁ ଆମ୍ଭେମାନେ ଦୁଇଖଣ୍ଡ ହସ୍ତଲିଖିତ ପୁସ୍ତକ ଉପହାରସ୍ୱରୂପ ପ୍ରାପ୍ତ ହୋଇଅଛୁଁ । ସେଥିରେ ଅନେକଗୁଡ଼ିଏ ସଙ୍ଗୀତ ସଂଗୃହୀତ ଅଛି । ଶୁଣିଲୁଁ ଏତଦ୍‌ଭିନ୍ନ କବିକୃତ ଆହୁରି ମଧ୍ୟ ଅନେକ ସଙ୍ଗୀତ ଅଛି । କବି ରଚିତ କବିତାମାନ ସ୍ୱହସ୍ତରେ ପୁସ୍ତକାକାରରେ କିଛି ଲେଖି ରଖି ଯାଇ-ନାହାନ୍ତି । ସେ କାଗଜରେ କବିତାମାନ ଲେଖି ଦିଅନ୍ତି, ଅନ୍ୟ ଲୋକେ ତାହା ନକଲ କରି ନେଉଥିଲେ । ଏଥିରେ ତାହାଙ୍କ କୃତ ଅନେକ କବିତା ଯେ ବିଲୁପ୍ତ ହୋଇ ଯାଇଥିବ, ଏକଥା ସହଜରେ ଅନୁମେୟ ।

କବି ଗୋପାଳକୃଷ୍ଣ ଶାଳବାହନ ଅବ୍ଦ ୧୭୦୭ ଆଷାଢ଼ ମାସ ୧୧ ଦିନ ଶୁକ୍ଳ ପ୍ରତିପଦ୍ ଦିବସରେ ଜନ୍ମଗ୍ରହଣ କରିଥିଲେ । ୧୭୭୮ ଅବ୍ଦରେ ପରଲୋକପ୍ରାପ୍ତ ହୋଇଅଛନ୍ତି; ସୁତରାଂ ତାହାଙ୍କ ଜୀବନକାଳ ୭୧ ବର୍ଷ ମାତ୍ର ଅଟେ । ଗୋପାଳକୃଷ୍ଣଙ୍କ ପିତାଙ୍କ ନାମ ବନବାସୀ ପଟ୍ଟନାୟକ; ମାତାଙ୍କ ନାମ ଲଳିତା ଦେବୀ । ବନବାସୀ ଯେପରି ଅସାଧାରଣ ପଣ୍ଡିତ—ଲଳିତା ଦେବୀ ମଧ୍ୟ ସେହିପରି ସାଧ୍ୱୀ ଏବଂ ପତିପରାୟଣା ଥିଲେ । ଆମ୍ଭେମାନେ ପୃଥିବୀସ୍ଥ ଯେ କେତେଜଣ ମହାପୁରୁଷଙ୍କ ଜୀବନଚରିତ ପାଠ କରିଅଛୁ, ପ୍ରାୟ ସମସ୍ତେ ସାଧ୍ୱୀ ପତିପରାୟଣା ଗର୍ଭଜାତ । ଏଥିରୁ ରକ୍ତମାଂସର ପବିତ୍ରତା ସହିତ ମାନସିକ ମହତ୍ତ୍ୱର ନିକଟ ସମ୍ବନ୍ଧ ଥିବାର ସ୍ପଷ୍ଟ ପ୍ରତୀୟମାନ ହୁଏ । ଜନନୀର ମାନସିକ ପବିତ୍ର ଭାବନିଚୟରେ ସନ୍ତାନମାନେ ପ୍ରାୟ ଉତ୍ତରାଧିକାରୀ ହୋଇଥାନ୍ତି । ଏଥିରୁ ପୁତ୍ରର ମହତ୍ତ୍ୱ ଏବଂ ଗୌରବ ଜନନୀ ପୁଣ୍ୟାନୁଷ୍ଠାନର ଫଳ ସମ୍ଭୂତ ବୋଲି ସିଦ୍ଧାନ୍ତ କରିବା ଅସଙ୍ଗତ ନୁହେ । ଗୋପାଳକୃଷ୍ଣ ଏକମାତ୍ର ପୁତ୍ର ଥିବାରୁ ଜନକ ଜନନୀଙ୍କର ଅତ୍ୟନ୍ତ ସ୍ନେହାଧାର ଥିଲେ । ଏହା ନୈସର୍ଗିକ ନିୟମର ପରିଚାୟକ ଅଟେ । ମାତ୍ର ଲଳିତା ଦେବୀଙ୍କର ପୁତ୍ରସ୍ନେହ ଏହାର ମଧ୍ୟ ସୀମା ଲଙ୍ଘନ କରିଥିଲା । ଅଶିକ୍ଷିତା ତଥା ପୁତ୍ରବତ୍ସଳା ଜନନୀମାନେ ସନ୍ତାନମାନଙ୍କୁ ପ୍ରାୟ ଶ୍ରମସାଧ୍ୟ କର୍ମରେ ନିଯୁକ୍ତ କରିବାକୁ ସମ୍ମତ ହୁଅନ୍ତି ନାହିଁ, ପୁଣି ସନ୍ତାନର ବାଲ୍ୟସୁଲଭ ଶୃଙ୍ଖଲ୍ୟଜନିତ ଦୋଷ ସଂଶୋଧନରେ ମଧ୍ୟ ଔଦାସିନ୍ୟ ଅବଲମ୍ବନ କରିଥାନ୍ତି । ଜନକ ଜନନୀଙ୍କର ନିର୍ବୋଧ ଜନୋଚିତ ପୁତ୍ରବାତ୍ସଲ୍ୟ ବାଲ୍ୟକାଳରେ ଗୋପାଳକୃଷ୍ଣଙ୍କର ଅନିଷ୍ଟର କାରଣ ହୋଇ ପଡ଼ିଥିଲା । କବି ଶୈଶବାବସ୍ଥାରେ ଦାଣ୍ଡେ ଦାଣ୍ଡେ ଗ୍ରାମ୍ୟ ନିଷ୍କର୍ମ । ଇତର ବାଳକମାନଙ୍କ ସହିତ ଦିନଯାକ କ୍ରୀଡ଼ା କୌତୁକରେ ଯାପନ କରିବାର ବିଶେଷ ସୁଯୋଗ ପ୍ରାପ୍ତ ହୋଇଥିଲେ । ମାତ୍ର ଅନଳ ସାମାନ୍ୟ ଆଚ୍ଛାଦନରେ ଚିରଦିନ ପ୍ରଚ୍ଛନ୍ନଭାବରେ ରହିପାରେ ନାହିଁ । ସାମାନ୍ୟ ପ୍ରକାର ସୁଯୋଗ ପ୍ରାପ୍ତ ହେଲେ ଆପଣାର ସ୍ୱଭାବସିଦ୍ଧ ଧର୍ମ ପ୍ରକାଶ କରିଥାଏ । ଗୋପାଳକୃଷ୍ଣଙ୍କର ସ୍ୱାଭାବିକ ପ୍ରତିଭା ଏତେ ଦିନ ପର୍ଯ୍ୟନ୍ତ ଜନକ ଜନନୀଙ୍କର ଔଦାସିନ୍ୟରୂପ ଆଚ୍ଛାଦନରେ ଆବୃତ ହୋଇଥିଲା, ଘଟନା ବିଶେଷରେ ତାହା ପ୍ରକାଶ ହୋଇ ପଡ଼ିଲା । ଦିନକରେ ଗୃହସମୀପସ୍ଥ ବୈରାଗୀ ପଟ୍ଟନାୟକଙ୍କ ମଣ୍ଡପରେ ଏହାଙ୍କର ପିତା କେତେକ ଜଣ ପଣ୍ଡିତଙ୍କ ସହିତ ବସି ବିଦଗ୍ଧ ନାଟକ ବ୍ୟାଖ୍ୟା କରୁଥିଲେ, ବାଳକ ଗୋପାଳକୃଷ୍ଣ ପାଖରେ ବସି ଶ୍ଳୋକାର୍ଥ ଶ୍ରବଣ କରୁଥାନ୍ତି । ସଭା ଭଙ୍ଗ ଉତ୍ତାରେ ଜଣେ ପଣ୍ଡିତ ଗୋପାଳକୃଷ୍ଣଙ୍କୁ ଲକ୍ଷ୍ୟ କରି କହିଲେ, "ଆହା କି ପରିତାପର କଥା, ଏପରି ପଣ୍ଡିତର ପୁତ୍ରଟା ମୂର୍ଖ ହୋଇଗଲା ।" ଉପସ୍ଥିତ ସମସ୍ତ ଲୋକେ ଏ କଥା ଶ୍ରବଣ କଲେ । ସାମୁଦ୍ରିକ ବିଦ୍ୟାବିତ୍ ବାସୁଦେବ ପଟ୍ଟନାୟକ ନାମକ ଜଣେ ଲୋକ ଗୋପାଳକୃଷ୍ଣଙ୍କୁ ଅନାଇ କହିଲେ, "ଦେଖା ତ ବାପା ତୋ ହାତ—ତୋହର ବିଦ୍ୟା ହେବ କି ନାହିଁ ଦେଖିବା ।" ଏଥି ଉତ୍ତାରେ ସେ ପିଲାର ହାତ ଦେଖି ପ୍ରକାଶ୍ୟ ଭାବରେ କହିଲେ, "ନାହିଁ ନାହିଁ, ଏ ପିଲା କଦାଚ ମୂର୍ଖ ହେବ ନାହିଁ, ଏ ଜଣେ ଅସାଧାରଣ ଲୋକ ହେବ, ଉତ୍କଳ ରାଜ୍ୟରେ ଏହା ନାମରେ ଡିଣ୍ଡିମ ବାଜିବ ।" ବସ୍ତୁତଃ ଦେଖାଗଲା, ବାସୁଦେବ ପଟ୍ଟନାୟକ ସାମୁଦ୍ରିକ ବିଦ୍ୟାରେ ବୃଥା ଶ୍ରମ କରି ନ ଥିଲେ । ବାଳକ ଗୋପାଳକୃଷ୍ଣ ସମସ୍ତ କଥା ଶୁଣିଲେ, ତାହାଙ୍କର ହୃଦୟ ନିହିତ ନୈସର୍ଗିକ ଜ୍ଞାନ ଉତ୍ତେଜିତ ହୋଇ ଉଠିଲା । ଘରକୁ ଆସି ଜନନୀଙ୍କୁ କହିଲେ, "ମା, ମତେ ଭାତ ଦିଅ, ମୁଁ ଖାଇ ଚାଟଶାଳୀକୁ ପାଠ ପଢ଼ିବାକୁ ଯିବି !" ମାତା ଶୁଣି ଅତ୍ୟନ୍ତ ଆନନ୍ଦିତ ହୋଇ କହିଲେ, "ମୋହର ଆଜ ପରମ ସୌଭାଗ୍ୟର ବିଷୟ, ତୋ ମୁହଁରୁ ଏହା ଶୁଣିଲି ।" ଏଥି ଉତ୍ତାରେ ଜନନୀ ଅତ୍ୟନ୍ତ ଆନନ୍ଦ ଓ ଉତ୍ସାହ ସହିତ ପୁତ୍ରକୁ କୋଳରେ ବସାଇ ଭାତ ଖୁଆଇ ପଠାଇଦେଲେ । ଯଥାରୀତି

ଅଧ୍ୟୟନ ଚଳିଲା । ଗୋପାଳକୃଷ୍ଣ ଶାଳୀବାହନ ୧୭୧୫ ସାଲରେ ଖଡ଼ିପାଠ ସମାପ୍ତ କରି ଗଡ, ଗ୍ରନ୍ଥ ଏବଂ କାବ୍ୟ ପ୍ରଭୃତି ପଢ଼ିବାକୁ ଲାଗିଲେ ।

ଗୋପାଳକୃଷ୍ଣଙ୍କର ପ୍ରାଥମିକ ସଂସ୍କୃତ ଗୁରୁଙ୍କ ନାଁ ବାଇକୁଳ ମହାପାତ୍ର । ଏହାଙ୍କଠାରୁ ସେ ଅମରକୋଷ, ଅଭିଧାନ ଏବଂ ଜମରବ୍ୟାକରଣ ପଢ଼ିଥିଲେ । ୧୭୨୬ ଅବ୍ଦରେ ବ୍ୟାକରଣ ଏବଂ ଅଭିଧାନ ସମାପ୍ତ କରି ଗୋସ୍ୱାମୀକୃତ ଗ୍ରନ୍ଥମାନ ଅଧ୍ୟୟନ କଲେ । ପୂର୍ବ କାଳରେ ଭଦ୍ରସନ୍ତାନମାନେ ବ୍ୟାୟାମ ଚର୍ଚ୍ଚାରେ ବିମୁଖ ନ ଥିଲେ; ବିଶେଷତଃ ରାଜପାରିଷଦମାନଙ୍କୁ ଯଥାରୀତି ବ୍ୟାୟାମ ଶିକ୍ଷା କରିବାକୁ ହେଉଥିଲା । ଗୋପାଳକୃଷ୍ଣ ଉପଯୁକ୍ତରୂପେ ବ୍ୟାୟାମ ଶିକ୍ଷା କରିଥିଲେ । କବି ଗୋପାଳକୃଷ୍ଣ ଭଦ୍ରବଂଶଜ ରାଜାନୁଗୃହୀତ ବିଦ୍ୱାନ୍ ଏବଂ ବଳିଷ୍ଠ ଥିଲେ ମଧ୍ୟ ଅତିଶୟ ଶିଷ୍ଟାଚାରୀ ଓ ନିରହଙ୍କାର ଥିଲେ । ତାହାଙ୍କ ସମୟରେ ବିଶେଷତଃ ଉଚ୍ଚଜାତି ମଧ୍ୟରେ ବାଲ୍ୟବିବାହରୂପ କଦର୍ଯ୍ୟ ପ୍ରଥା ନ ଥିଲା । ଗୋପାଳକୃଷ୍ଣଙ୍କର ୨୫ ବର୍ଷ ବୟସ ସମୟରେ ବିବାହ ହୋଇଥିଲା । ସ୍ତ୍ରୀଙ୍କର ନାମ ସୁଲକ୍ଷଣା । ନାମାନୁସାରେ ଏହି ସ୍ତ୍ରୀ ମଧ୍ୟ ସୁଲକ୍ଷଣା ଏବଂ ଲାବଣ୍ୟମୟୀ ଥିଲେ ।

ଗୋପାଳକୃଷ୍ଣଙ୍କର ଜନ୍ମସ୍ଥାନ ପାରଳାଖିମିଣ୍ଡି; ମାତ୍ର ଏହାଙ୍କ ପୂର୍ବପୁରୁଷମାନଙ୍କ ଆଦିମ ନିବାସ ଯାଜପୁର । ପାରଳାଖିମିଣ୍ଡିର ପୂର୍ବତନ ମହାରାଜାମାନେ ରାଜକାର୍ଯ୍ୟ ଚଳାଇବା ନିମନ୍ତେ ଯାଜପୁରରୁ ତିନି ଜଣ ଶିକ୍ଷିତ କରଣ ନେଇ ଯାଇଥିଲେ । ସେହି କର୍ମଚାରୀମାନଙ୍କ ଉପାଧି ପାତ୍ର । ସେହି ତିନି ଜଣ କରଣଙ୍କ ଉତ୍ତରାଧିକାରୀ ଶତାଧିକ ଘର କରଣ ବର୍ତ୍ତମାନ ପାରଳାଖିମିଣ୍ଡିରେ ଶାଖାପ୍ରଶାଖା ବିସ୍ତାର କରି ବାସ କରୁଅଛନ୍ତି ।

ଆମ୍ଭେମାନେ ଦେଖିଲୁଁ ପାରଳାଖିମିଣ୍ଡି ଅଧିବାସୀମାନଙ୍କ ମଧ୍ୟରେ କରଣ, ବ୍ରାହ୍ମଣ ଏବଂ ତେଲଗୁ ଏହି ତିନି ଶ୍ରେଣୀର ଲୋକ ପ୍ରଧାନ । ଏମାନେ ରାଜାନୁଗୃହୀତ ଏବଂ ଅଧିକାଂଶ ରାଜକର୍ମଚାରୀ ଅଟନ୍ତି । ଏମାନେ କେହିହେଁ ପାରଳାଖିମିଣ୍ଡିର ଆଦିମନିବାସୀ ନୁହନ୍ତି । ରାଜକାର୍ଯ୍ୟ ଉପଲକ୍ଷରେ ତଥା ରାଜସମ୍ମାନରେ ଆହୂତ ହୋଇ ଉତ୍କଳ, ମଧ୍ୟପ୍ରଦେଶ ଏବଂ ଦାକ୍ଷିଣାତ୍ୟରୁ ଆସି ପୁରୁଷପରମ୍ପରା ଦୀର୍ଘକାଳ ଯାବତ୍ ବାସିନ୍ଦାରୂପେ ଅଧିବାସ କରୁଅଛନ୍ତି ।

ପାରଳାଖିମିଣ୍ଡିର ପୂର୍ବତନ ମହାରାଜ ପଦ୍ମନାଭ ନାରାୟଣ ଦେଓଙ୍କ ଅଧିକାର ସମୟରେ ରାଜ୍ୟ ମଧ୍ୟରେ ଗୋଟିଏ ବିଦ୍ରୋହ ସଙ୍ଘଟିତ ହୋଇଥିଲା । କବି ଗୋପାଳକୃଷ୍ଣ ବିଦ୍ରୋହଲିପ୍ତ ଲୋକମାନଙ୍କ ସହିତ ସମ୍ପର୍କ ରଖିଥିବା ବିଷୟ ରାଜାଙ୍କ ମନରେ ସନ୍ଦେହ ଜାତ ହେଲା । ଏହି ସୂତ୍ରରେ ଅନ୍ୟାନ୍ୟ ୩୦ଜଣ ଲୋକ ସହିତ ଗୋପାଳକୃଷ୍ଣ ରାଜ୍ୟରୁ ତାଡ଼ିତ ହୋଇଥିଲେ । ବୋଧହୁଏ ରାଜବିଦ୍ରୋହିତା ଅପରାଧରେ ତାହାଙ୍କର ସର୍ବସ୍ୱ ମଧ୍ୟ ଅପହୃତ ହୋଇଥିଲା । କାରଣ ସେ ସମୟରେ ତାହାଙ୍କୁ ଅନ୍ନବସ୍ତ୍ର ସକାଶେ ବିଶେଷ ଅସୁବିଧା ଭୋଗ କରିବାକୁ ହୋଇଥିଲା ।

ଗୋପାଳକୃଷ୍ଣ ଏହିପରି ପାରଳାଖିମିଣ୍ଡିରୁ ତାଡ଼ିତ ହୋଇ ଗଞ୍ଜାମ ସହରନିବାସୀ ବକ୍ସିବାକ୍ ଚକ୍ରପାଣି ପଟ୍ଟନାୟକଙ୍କ ଆଶ୍ରୟରେ ବାସ କରିଥିଲେ । ଏକଦା ସାୟାହ୍ନ ସମୟରେ ଉକ୍ତ ଚକ୍ରବାକ୍ ଚକ୍ରପାଣି, ଗୋପାଳକୃଷ୍ଣ ଏବଂ ଅନ୍ୟାନ୍ୟ କେତେଜଣ ଭଦ୍ରଲୋକଙ୍କ ସହିତ ବାୟୁସେବନ ନିମନ୍ତେ ଋଷିକୁଲ୍ୟା ନଦୀକୂଳରେ ଭ୍ରମଣ କରୁଥିଲେ । ଏହି ସମୟରେ ନାନାଲଙ୍କାରବିଭୂଷିତା ପରମା ସୁନ୍ଦରୀ ଗୋଟିଏ କୁଳବଧୂ ଯୁବତୀ ସ୍ତ୍ରୀ ମସ୍ତକୋପରି ଜଳକୁମ୍ଭ ସ୍ଥାପନ କରି ଚାଲିଗଲା । ସେହି ଯୁବତୀକୁ ଲକ୍ଷ୍ୟ କରି ଗୋଟିଏ କବିତା

ରଚନା କରିବା ନିମନ୍ତେ ଉକ୍ତ ଚକ୍ରପାଣି ପଟ୍ଟନାୟକ ସମସ୍ତଙ୍କୁ ଅନୁରୋଧ କଲେ । ତଦନୁସାରେ ସମସ୍ତେ ଗୋଟିଏ ଗୋଟିଏ କବିତା ରଚନା କଲେ । ସେଥି-ମଧ୍ୟରେ ଗୋପାଳକୃଷ୍ଣଙ୍କ କବିତା ସର୍ବୋତ୍କୃଷ୍ଟ ହୋଇ-ଥିଲା । ଗୋପାଳକୃଷ୍ଣଙ୍କର ଏହା ସର୍ବପ୍ରଥମ କବିତା । କବିତା ପାଠ କରି ସମସ୍ତେ ବିମୋହିତ ହୋଇଥିଲେ । ଏହି ସୂତ୍ରରେ ଗୋପାଳକୃଷ୍ଣଙ୍କ ହୃଦୟରେ ଅସାଧାରଣ କବିତ୍ୱ ଶକ୍ତି ନିହିତ ଅଛି ବୋଲି ପ୍ରଥମେ ଅନୁମିତ ହେଲା । ଚକ୍ରପାଣି ପଟ୍ଟନାୟକ ଜଣେ ବହୁଦର୍ଶୀ ଏବଂ ଗୁଣଗ୍ରାହୀ ଲୋକ ଥିଲେ ବୋଲି ଜଣାଯାଏ । ଗୋପାଳ-କୃଷ୍ଣ ଯେ ଜଣେ ଅସାଧାରଣ କବି ହେବେ, ପ୍ରଥମ କବିତାଟି ଶୁଣି ସେ ସ୍ପଷ୍ଟ ବାକ୍ୟରେ ପ୍ରକାଶ କରିଥିଲେ ଏବଂ କବିତା ଲିଖନ ଅଭ୍ୟାସ କରିବା ନିମନ୍ତେ କବିଙ୍କୁ ଅନୁରୋଧ କରିଥିଲେ । ସେ ସମୟଠାରୁ ୩୪ ବର୍ଷ ବୟଃକ୍ରମ ପର୍ଯ୍ୟନ୍ତ ୧୦ ବର୍ଷକାଳ ସେ କବିତା ରଚନାରେ ନିଯୁକ୍ତ ଥିଲେ । ଆମ୍ଭେମାନେ ତତ୍କାଳ ରଚିତ କେତେଗୁଡ଼ିଏ କବିତା ପାଠ କରିଅଛୁଁ । କବିତା-ଗୁଡ଼ିକ ଯୁବଜନସୁଲଭ ପ୍ରଣୟଗୀତି ମାତ୍ର । ସେଥିରେ ଯେ କବିଙ୍କର ନୈସର୍ଗିକ କବିତ୍ୱ ଶକ୍ତି ପ୍ରକାଶ ପାଇଅଛି, ସେ ବିଷୟ ଅସ୍ୱୀକାର କରିବାର ଆପତ୍ତି ନାହିଁ; ମାତ୍ର ଦୁଃଖର ବିଷୟ ପ୍ରଣୟଗୀତି ଲେଖିବାକୁ ଯାଇ କବି ଯେମନ୍ତ ସୀମା ଲଙ୍ଘନ କରି ଯାଇଅଛନ୍ତି । ଆଦିରସ ଘଟିତ କବିତା ଲେଖିବା ସମୟରେ କବିଙ୍କୁ ଏତେଦୂର ସ୍ୱାଧୀନତା ଦେବାର ଅନ୍ତତଃ ଆମ୍ଭମାନଙ୍କୁ ଯୁକ୍ତିସଙ୍ଗତ ବୋଲି ବୋଧ ହେଉନାହିଁ । ବୋଧକରୁଁ ସୁରୁଚିସମ୍ପନ୍ନ ଆମ୍ଭମାନଙ୍କ ଏହି ଉକ୍ତିର ପ୍ରତିବାଦ କରିବାକୁ ସାହସୀ ହେବେ ନାହିଁ । ଆମ୍ଭମାନଙ୍କର ଘୋର ଆଶଙ୍କା, କେଜାଣି ଏକ ସମୟରେ ଏହି ସୁନ୍ଦର କବିତାଗୁଡ଼ିକ ବିଲୁପ୍ତ ହୋଇଯିବ । କବିଙ୍କ ଶିକ୍ଷା ଅଧିକାଂଶ ବୈଷ୍ଣବଗ୍ରନ୍ଥ ସୂତରାଂ; ରାଧାକୃଷ୍ଣଙ୍କ ଲୀଳାଘଟିତ ବିଷୟ । ରାଧାକୃଷ୍ଣଙ୍କ ଲୀଳାବିଷୟକ କବିତା ଯେତେଦୂର ଆଦିରସଘଟିତ ହେଉ ସେଗୁଡ଼ିକୁ ପ୍ରାଚୀନ ହିନ୍ଦୁସମାଜ ( ବର୍ତ୍ତମାନ ମଧ୍ୟ କେତେକ ଲୋକ ) ଧର୍ମଗ୍ରନ୍ଥ ବୋଲି ଗଣ୍ୟ କରୁଥିଲେ । ବିଶେଷରେ ଗୋପାଳକୃଷ୍ଣଙ୍କ ସମୟରେ ଆଦିରସଘଟିତ କବିତା ସର୍ବସାଧାରଣରେ ବିଶେଷ ଆଦରଣୀୟ ଥିଲା । ଏ କ୍ଷେତ୍ରରେ କବି କବିତା ଲେଖିବା ସମୟରେ ମୁକ୍ତହସ୍ତ ହେବା ସ୍ୱାଭାବିକ ଅଟେ । ଆମ୍ଭମାନଙ୍କ କବି ନୈସର୍ଗିକଦତ୍ତ ସମସ୍ତ ପ୍ରତିଭା ଯେ କେବଳ ଆଦିରସ ବର୍ଣ୍ଣନାରେ ଢାଳିଦେଇ ଯାଇଅଛନ୍ତି, ଏଥି ସକାଶେ ଆମ୍ଭେମାନେ ତାହାଙ୍କ ପ୍ରତି ଅନୁଯୋଗ କରିବାକୁ ଇଚ୍ଛୁକ ନୋହୁଁ । ଏହା କେବଳ କବିଙ୍କର ସ୍ୱେଚ୍ଛାଚାରିତାର ଫଳ ନୁହେ; ଅନେକ ପରିମାଣରେ ଯୁଗର ସାଦର ଆହ୍ୱାନ । କବି ଯେଉଁ ଯୁଗରେ ଜନ୍ମ-ଗ୍ରହଣ କରିଥିଲେ, ସେ ଯୁଗରେ ଈଦୃଶ କବିତା ସର୍ବସାଧାରଣରେ ଆଦରଣୀୟ ବସ୍ତୁ ଥିଲା । ଏଥିକୁ ଆମ୍ଭମାନଙ୍କ ମତରେ ଏପରି ଦୋଷ କବିଙ୍କର ବିକୃତ ରୁଚିର ପରିଚାୟକ ବୋଲି କହିଲେ କବିଙ୍କ ପ୍ରତି ଅନ୍ୟାୟ ବ୍ୟବହାର କରିବାର ହେବ । ଦ୍ୱିତୀୟତଃ, କବିଙ୍କ ଶିକ୍ଷାପ୍ରଣାଳୀ ପ୍ରତି ମଧ୍ୟ କଟାକ୍ଷପାତ କରିବା ଅସଙ୍ଗତ ନୁହେ । ସେ ଜଣେ ଘୋର ବୈଷ୍ଣବ ଥିଲେ । ତାହାଙ୍କ ଶିକ୍ଷଣୀୟ ବିଷୟ ସଂସ୍କୃତ ଭାଷାରେ ବୈଷ୍ଣବୀୟ ଗ୍ରନ୍ଥାବଳୀ । ସୁତରାଂ ବିଷୟ ନିର୍ବାଚନ ସମ୍ବନ୍ଧରେ ତାହାଙ୍କ ଦୃଷ୍ଟି ବହୁବିସ୍ତାରିଣୀ ହେବା ସମ୍ଭବପର ନ ଥିଲା । ବର୍ତ୍ତମାନ ପାଶ୍ଚାତ୍ୟ ଶିକ୍ଷା ପ୍ରଭାବରୁ ଲୋକମାନଙ୍କ ରୁଚି, ଆମୋଦପ୍ରମୋଦ, ଧର୍ମବିଶ୍ୱାସ, ଆଶା ଆକାଙ୍କ୍ଷା ସବୁ ପରିବର୍ତ୍ତିତ ହୋଇ ଯାଇଅଛି । ଏହି ସ୍ରୋତ ବିପରୀତମୁଖ ହେବାର ଅସମ୍ଭବ ଏବଂ ବାଞ୍ଛନୀୟ ମଧ୍ୟ ନୁହେ । ଏ କ୍ଷେତ୍ରରେ ନିରବଚ୍ଛିନ୍ନ ଅନାବୃତ ଆଦିରସ-ଘଟିତ କବିତାମାନ ରାଧାକୃଷ୍ଣଙ୍କ ଚରିତ ଓ ଲୀଳା ବୋଲି ଲୋକେ ଧର୍ମବିଶ୍ୱାସରେ ପାଠ କରି ପ୍ରେମରେ ଢଳି ପଡ଼ିବେ, ଏ କଥା ବିଶ୍ୱାସ କରିବାକୁ ସାହସ ହେଉନାହିଁ । ତଥାପି ଉତ୍କଳଭାଷା ଯେ ଗୋପାଳକୃଷ୍ଣଙ୍କ-ଠାରେ ଆଂଶିକ ଋଣୀ ଏକଥା ଅସ୍ୱୀକାର କରିବାକୁ ଆମ୍ଭମାନଙ୍କର ଆପତ୍ତି ନାହିଁ ଏବଂ କବି ଯେଉଁ

ପ୍ରତିଭାର ପରିଚୟ ଦେଇ ଯାଇଅଛନ୍ତି, ତାହା କସ୍ମିନ୍ କାଳେ ବିଲୁପ୍ତ ହେବାର ସମ୍ଭାବନା ଅଳ୍ପ ।

ମାନବଭାଗ୍ୟ ପରିବର୍ତ୍ତନଶୀଳ । କବି ଗୋପାଳକୃଷ୍ଣ ଗଞ୍ଜାମ ଜିଲ୍ଲାରେ ଥାଉଁ ଥାଉଁ ତାହାଙ୍କର ଅବସ୍ଥାନ୍ତର ଘଟିଲା । ପାରଳାଖେମିଣ୍ଡିର ତତ୍କାଳୀନ ଗୁଣଗ୍ରାହୀ ମହାରାଜା ଶ୍ରୀ ଶ୍ରୀ ଗଜପତି ଜଗନ୍ନାଥନାରାୟଣ ଦେଓଙ୍କ ଠାରେ କବି ଗୋପାଳକୃଷ୍ଣଙ୍କର ଗୁଣବତ୍ତା ପ୍ରକାଶିତ ହେବାରୁ ସେ ଅତି ସମ୍ମାନପୂର୍ବକ କବିଙ୍କୁ ଆହ୍ୱାନ କରି ମାସିକ ଏକଶତ ଟଙ୍କା ବେତନରେ ରାଜକାର୍ଯ୍ୟରେ ନିଯୁକ୍ତ କରିଥିଲେ । ଜଗତ୍‌ସିଂହପୁର ମଖାସା ଏହି ସମୟରେ କବି ପୁରସ୍କାରସ୍ୱରୂପ ପ୍ରାପ୍ତ ହୋଇଥିଲେ ।

କବି ଗୋପାଳକୃଷ୍ଣ ମିତାଚାରୀ ଥିବାରୁ ସୁସ୍ଥ ଶରୀରରେ ଜୀବନ ଯାପନ କରିବାକୁ ସମର୍ଥ ହୋଇ-ଥିଲେ । ସେ ପ୍ରାତ୍ୟହିକ ନିୟମିତ ରାଜକାର୍ଯ୍ୟ ସମାଧାନ ଉତ୍ତାରେ ଅବସର ପ୍ରାପ୍ତି ମାତ୍ରକେ ଗ୍ରନ୍ଥ ଅଧ୍ୟୟନ ଓ ରଚନାରେ ନିଯୁକ୍ତ ହେଉଥିଲେ ।

କବି ଗୋପାଳକୃଷ୍ଣଙ୍କର ଦୁଇ ପୁତ୍ର, ଜ୍ୟେଷ୍ଠ-ପୁତ୍ରର ନାମ ଗୌରଚନ୍ଦ୍ର, କନିଷ୍ଠର ନାମ କରୁଣାନିଧି । କବିଙ୍କର ଷଷ୍ଟିତମ ବର୍ଷ ବୟସରେ ଜ୍ୟେଷ୍ଠ ପୁତ୍ର ଗୌରଚନ୍ଦ୍ର ମାନବଲୀଳା ସମ୍ବରଣ କରିଥିଲେ । ଠିକ୍ ଏହି ସମୟରେ କବି କୋଇଲି ରଚନା କରିଅଛନ୍ତି । ପୁସ୍ତକ ଖଣ୍ଡିକ କରୁଣ ଏବଂ ବାତ୍ସଲ୍ୟରସରେ ପୂର୍ଣ୍ଣ । ବୋଧହୁଏ ପୁତ୍ରଶୋକ ବିସ୍ମୃତ ହେବା ନିମନ୍ତେ କବି ରଚନା କାର୍ଯ୍ୟରେ ମନୋଯୋଗୀ ହୋଇଥିଲେ । ମାନବ ଶୋକ ଏବଂ ଦୁର୍ଭାଗ୍ୟହସ୍ତରୁ ରକ୍ଷାପାଇବା ନିମନ୍ତେ ଯେତେ ଚେଷ୍ଟା କରୁ ପଛକେ ଭବିତବ୍ୟ ଅତିକ୍ରମ କରିବା ସାଧ୍ୟାତୀତ । 'ଏକସ୍ୟ ଦୁଃଖସ୍ୟ ନ ଯାବଦନ୍ତଃ'—ଶୋକ ଉପରେ ଶୋକ । କବିଙ୍କ ଦ୍ୱିତୀୟ ପୁତ୍ର ମଧ୍ୟ ଶେଷଜୀବନରେ ତାହାଙ୍କୁ କନ୍ଦାଇ ଚାଲିଗଲେ । ଏପରି ଅବସ୍ଥାରେ କବିଙ୍କ ପକ୍ଷରେ ଯାହା ଘଟିବାର ଘଟିଲା ।

ମାନବର ପଦମର୍ଯ୍ୟାଦା ସୁଖ ସମ୍ପତ୍ତି ଜୀବନ ପର୍ଯ୍ୟନ୍ତ କ୍ଷଣଭଙ୍ଗୁର । ଗୋପାଳକୃଷ୍ଣ ସମସ୍ତ ଛେଳ ଚାଲି ଯାଇଅଛନ୍ତି; ମାତ୍ର ସେ ମାତୃଭାଷାକୁ ଯାହା ଦେଇ ଯାଇଅଛନ୍ତି, ସେଥିସକାଶେ ଉତ୍କଳ ଦେଶରେ ଚିରକାଳ ତାହାଙ୍କ ନାମ ଜାଜ୍ୱଲ୍ୟମାନ ଥିବ ।

ଆମ୍ଭେମାନେ କବିଙ୍କ କବିତ୍ୱ ଏବଂ କବିତା ସମ୍ବନ୍ଧରେ କେତେକ କଥା ପ୍ରକାଶ କରିବାକୁ ଇଚ୍ଛୁକ ଥିଲେ ମଧ୍ୟ ଶାରୀରିକ ଅସ୍ୱାସ୍ଥ୍ୟ ନିବନ୍ଧନ କୃତକାର୍ଯ୍ୟ ହୋଇ ପାରିନାହୁଁ । ଏ କ୍ଷେତ୍ରରେ ଭବିଷ୍ୟତ ସମ୍ବନ୍ଧରେ ପ୍ରତିଜ୍ଞାବଦ୍ଧ ହେବା ଅପରିଣାମଦର୍ଶିତାର କାର୍ଯ୍ୟ ଅଟେ । ତେବେ ସମୟରେ ସୁଯୋଗ ଘଟିବା ଅସମ୍ଭବ ନୁହେଁ ।




( ଉ. ସା. ୮ମ ଭାଗ, ୬ଷ୍ଠ ସଂଖ୍ୟା, ଆଶ୍ୱିନ ୧୩୧୨ )

---

## କବି ମାଇକେଲ ମଧୁସୂଦନ ଦତ୍ତ ଏବଂ ମେଘନାଦ ବଧ କାବ୍ୟ

କବି ମାଇକେଲ ମଧୁସୂଦନ ଦତ୍ତ ବଙ୍ଗଭାଷାରେ ଅନେକଗୁଡ଼ିଏ କାବ୍ୟ ଲେଖି ଯାଇଅଛନ୍ତି । ସେଥି-ମଧ୍ୟରେ ମେଘନାଦ ବଧ ସର୍ବ ପ୍ରଧାନ । କବିଙ୍କର ଯାହା କିଛି ଗୌରବ, ମେଘନାଦ ସକାଶେ । ବଙ୍ଗ-ଦେଶୀୟ ଅନେକ ଶିକ୍ଷିତ ଲୋକଙ୍କ ମତରେ ମେଘ-ନାଦ ବଧ ମହାକାବ୍ୟ । କାରଣ ମହାକାବ୍ୟର ବହୁଳ ଲକ୍ଷଣ ଏଥିରେ ବିଦ୍ୟମାନ । କାବ୍ୟଗତ ବିଷୟଟି କବି କଳ୍ପନାପ୍ରସୂତ ସ୍ୱତନ୍ତ୍ର ଘଟନା ନୁହେ । ରାମାୟଣ କଳ୍ପତରୁର ଗୋଟିଏ ଶାଖାର କଲମ ବୃକ୍ଷ-ରୂପେ ପରିଣତ । ଭୁବନବିଖ୍ୟାତ ମହାକାବ୍ୟ ରାମାୟଣ ସାହିତ୍ୟ-ଜଗତରେ ପ୍ରଦୀପ୍ତ କିରଣମାଳୀ ମହାସୂର୍ଯ୍ୟସ୍ୱରୂପ । ଉତ୍ତରଚରିତ, ଅନର୍ଘରାଘବ, ମହା-ନାଟକ, ଭୋଜଚମ୍ପୂ ପ୍ରଭୃତି କାବ୍ୟମାନ ଚନ୍ଦ୍ର, ବୃହସ୍ପତି, ଶୁକ୍ର ଗ୍ରହମଣ୍ଡଳୀ । କଥିତ ଗ୍ରହମାନଙ୍କର ଦିନକରେ ପ୍ରଦୀପ୍ତ ହେଲେ ମଧ୍ୟ ଗଗନ ପ୍ରାଙ୍ଗଣରେ ସ୍ୱ ସ୍ୱ ତେଜରେ ସ୍ୱତନ୍ତ୍ର ରୂପରେ ଦେଦୀପ୍ୟମାନ । ଏହି ହିସାବରେ ମେଘନାଦ ବଧ କାବ୍ୟକୁ କେଉଁ

ସ୍ଥାନୀୟ କଳ୍ପନା କରାଯାଇ ପାରେ ବିସ୍ମୟର ବିଷୟ ଅଟେ ।

ବଙ୍ଗଦେଶର ମହାରଥୀମାନେ ମାଇକେଲଙ୍କୁ କବି ଶ୍ରେଣୀର ଶୀର୍ଷ ସ୍ଥାନରେ ଆସନ ପ୍ରଦାନ କରି ଅଛନ୍ତି । ବାସ୍ତବିକ ମାଇକେଲ୍ ଯେ ଜଣେ ବହୁଭାଷାବିତ୍ ସୁପଣ୍ଡିତ ଏବଂ ଅସାଧାରଣ ପ୍ରତିଭାଶାଳୀ ପୁରୁଷ ଥିଲେ, ସେ ବିଷୟ ଅସ୍ୱୀକାର କରିବାକୁ କାହାର ଆପତ୍ତି ନାହିଁ । ଏମନ୍ତ ସ୍ଥଳରେ ମନ୍ତବ୍ୟ ପ୍ରକାଶ କରିବାକୁ ଯିବା ଆମ୍ଭମାନଙ୍କ ପରି ସ୍ୱଳ୍ପଧୀ ଲୋକମାନଙ୍କ ପକ୍ଷରେ ଧୃଷ୍ଟତା ପ୍ରକାଶ ମାତ୍ର । ତଥାପି ଯେଉଁ ମହାକାବ୍ୟକୁ ଆମ୍ଭେମାନେ ଧର୍ମଗ୍ରନ୍ଥ ରୂପେ ଅର୍ଚ୍ଚନା କରିଥାଉଁ ଏବଂ କାବ୍ୟ ବର୍ଣ୍ଣିତ ଯେଉଁ ବିଷୟଗୁଡ଼ିକ ଆମ୍ଭମାନଙ୍କ ନିକଟରେ ଧ୍ରୁବ ସତ୍ୟ ବୋଲି ବିଶ୍ୱାସ ଏବଂ ଯେଉଁ ଗ୍ରନ୍ଥଗତ ଚରିତଗୁଡ଼ିକ ହିନ୍ଦୁଜାତିର ହୃଦୟପଟରେ ପ୍ରସ୍ତରାଙ୍କିତ ରେଖାବତ୍ ଚିହ୍ନିତ ହୋଇଅଛି, ସେହି ବର୍ଣ୍ଣିତ ବିଷୟ ବା ଚରିତଗୁଡ଼ିକ କେହି ରୂପାନ୍ତରିତ ବା ବିକୃତ ଭାବରେ ଅଙ୍କିତ କଲେ ହିନ୍ଦୁ ହୃଦୟରେ ଆଘାତ ଲାଗିବାର କଥା । ଏଥିକୁ ଏ ସମ୍ବନ୍ଧରେ ମନ୍ତବ୍ୟ ପ୍ରକାଶ କରିବାକୁ ଅନଧିକାର ଚର୍ଚ୍ଚା ବୋଲିପାରି ନ ପାରେ । ଏ କଥା ମଧ୍ୟ ବୋଲିବା ଆବଶ୍ୟକ । ପ୍ରବନ୍ଧ ଲେଖକ ପରି ସାମାନ୍ୟ ଲୋକ ପକ୍ଷରେ ଭ୍ରମ ପ୍ରମାଦ ଘଟିବା ନିତାନ୍ତ ସ୍ୱାଭାବିକ । ପ୍ରକୃତରେ ଆମ୍ଭେମାନେ ଯେବେ ଭ୍ରମ ବିହ୍ୱଳ ହୋଇଥାଉଁ, କୃପା କରି କେହି ଦେଖାଇ ଦେଲେ ଅତ୍ୟନ୍ତ ଅପ୍ୟାୟିତ ହେବୁଁ ।

ସ୍ୱକୀୟ କୌଣସି ମତ ପ୍ରକାଶ କରିବା ପୂର୍ବେ ଗ୍ରନ୍ଥଗତ ଚରିତ ଏବଂ ବିଷୟ ସଂକ୍ଷେପରେ କେତେକ କଥା କହିବା ନିତାନ୍ତ ଆବଶ୍ୟକ ବୋଲି ବିବେଚନା କରୁଁ ।

ମେଘନାଦ ବର୍ଣ୍ଣିତ କାବ୍ୟର ପ୍ରଧାନ ନାୟକ । ଆଲଙ୍କାରିକମାନେ ପ୍ରଧାନ ନାୟକର ଯେ ସବୁ ଗୁଣ ଥିବାର ଉଚିତ ବୋଲି ନିର୍ଦ୍ଦେଶ କରନ୍ତି, ମେଘନାଦଠାରେ ସେ ସମସ୍ତ ବିଦ୍ୟମାନ । ମାତ୍ର ମେଘନାଦ ବାସବବିଜେତା ହୋଇଥିଲେ, ଯେତେ ବଡ଼ ବୀର ହୋଇଥିଲେ; କିନ୍ତୁ ଧର୍ମବୀର ନୁହନ୍ତି । ପ୍ରବୀଣ ପିତା, ରକ୍ଷୋବଂଶର ସର୍ବ ପ୍ରଧାନ ନେତା ପିତା, ତ୍ରିଭୁବନ ବିଖ୍ୟାତ ପିତା ଗୋଟିଏ ବନଚାରୀ ନିରାଶ୍ରୟ ଲୋକର ସର୍ବସ୍ୱ ଧର୍ମପତ୍ନୀକୁ ତସ୍କରବତ୍ ଅପହରଣ କରି ଆଣିଲେ, ଗୋଟିଏ ପତିଗତପ୍ରାଣା ନିରାଶ୍ରୟା ସତୀ ଯୁବତୀ ବନ୍ଦିନୀ ଅବସ୍ଥାରେ ଦିବାନିଶି ହାହାକାର କରୁଅଛି; ସେଥି ସକାଶେ ଇନ୍ଦ୍ରଜିତ ପିତାକୁ ପଦେ ମଧ୍ୟ ହିତକଥା ବୁଝାଇ କହିଲେ ନାହିଁ, ବରଞ୍ଚ ପିତାର ଗର୍ହିତ କାର୍ଯ୍ୟରେ ପରମ ସହାୟ । କବି ଇନ୍ଦ୍ରଜିତଙ୍କୁ ସର୍ବ ବିଷୟରେ ଟେକାଟେକି କରିବାକୁ ଚେଷ୍ଟା କରିଅଛନ୍ତି ସତ୍ୟ; ମାତ୍ର ଗୋଟିଏ ଆଦର୍ଶ ପୁରୁଷରୂପେ ପରିଣତ କରାଇ ପାରି ନାହାନ୍ତି ।

**ପ୍ରମୀଳା**—ପ୍ରମୀଳା ପ୍ରଧାନ ନାୟକର ଧର୍ମପତ୍ନୀ; ସୁତରାଂ ପ୍ରଧାନ ନାୟିକା । ମହର୍ଷି ବାଲ୍ମୀକି ପ୍ରମୀଳାକୁ ରାଜକୁଳବଧୂରୂପେ ବର୍ଣ୍ଣନ କରିଅଛନ୍ତି ଏବଂ କୁଳବଧୂ ରୂପେ ଅନ୍ତଃପୁରରେ ସ୍ଥାନ ଦେଇ ଅଛନ୍ତି । ମାତ୍ର ମେଘନାଦ ବଧରେ ପ୍ରମୀଳାର ଚରିତ ଅସାଧାରଣ ଏବଂ କବିଙ୍କର ମୌଳିକ କଳ୍ପନାର ଅନ୍ୟତର ଜାଜ୍ୱଲ୍ୟମାନ ନିଦର୍ଶନ । କବି ଯେମନ୍ତ ଏହି ଚରିତଟିରେ ସମସ୍ତ ରଙ୍ଗ ଢାଳି ଦେଇଅଛନ୍ତି । ବାସ୍ତବିକ, ପ୍ରମୀଳା ଅଭାବରେ କାବ୍ୟର ଗୌରବ ବହୁ ପରିମାଣରେ ଖର୍ବ ହେବାର ସମ୍ଭାବନା । ବରଞ୍ଚ ରକ୍ଷୋବଂଶ ପାଟମହାଦେଈ ମନ୍ଦୋଦରୀ ଅଭାବରେ କାବ୍ୟର ଅଙ୍ଗହାନିର ସମ୍ଭାବନା ବିରଳ; ମାତ୍ର ପ୍ରମୀଳା ଚରିତ ମେଘନାଦ ବଧ କାବ୍ୟର ଗୌରବ—ମେରୁଦଣ୍ଡ ସ୍ଥାନୀୟ ଅଟେ ।

ପ୍ରଥମରେ ପ୍ରମୀଳାକୁ ପ୍ରଥମ ସର୍ଗରେ ଭେଟିଲୁଁ । ଇନ୍ଦ୍ରଜିତ ସମର ଅନୁକୂଳ କରିଅଛନ୍ତି, ପ୍ରମୀଳା ଉପସ୍ଥିତ । ସ୍ୱାମୀଙ୍କୁ ଧରି, "ତୁମ୍ଭ ବିରହରେ ଦାସୀ କିପରି ବଞ୍ଚିବ" କହି ଖୁବ୍ କାନ୍ଦୁଥିଲେ । ସେ ସ୍ୱାମୀର ଶୌର୍ଯ୍ୟ ବୀର୍ଯ୍ୟ ପ୍ରତି ସନ୍ଦେହବତୀ, କେଜାଣି ସଂଗ୍ରାମରୁ ବାହୁଡ଼ିବେ କି ନାହିଁ । ଏହା ତ ସ୍ୱାଭାବିକ, ପ୍ରିୟଜନର ଅମଙ୍ଗଳ ଆଶଙ୍କା ସହଜରେ ମନ ମଧ୍ୟରେ ସମୁଦିତ ହୁଏ; ମାତ୍ର ଇନ୍ଦ୍ର ବିଜୟୀ ଇନ୍ଦ୍ରଜିତ ରମଣୀଠାରୁ ଏପରି ଆଚରଣ ପ୍ରତ୍ୟାଶା କରାଯାଏ ନାହିଁ ।

ତହିଁ ଉତ୍ତାରେ ୩ୟ ସର୍ଗରେ ପ୍ରମୀଳାକୁ ଦେଖିଲୁ । ଇନ୍ଦ୍ରଜିତ ସମରକ୍ଷେତ୍ରକୁ ଯାଇନାହାନ୍ତି; ମାତ୍ର ପ୍ରମୀଳା ଭୟବିହ୍ୱଳା, ରୋରୁଦ୍ୟମାନା, ଶୂନ୍ୟନୀଡ଼ କପୋତୀବତ୍ ବିଳାପ ପରାୟଣା । ବାସନ୍ତୀ ସଖୀ ତାହାଙ୍କ ପ୍ରବୋଧ ନିମନ୍ତେ ପୁଷ୍ପ ତୋଳିବା ସକାଶେ ଉପବନକୁ ଘେନିଗଲେ । ପୁଷ୍ପ ଚୟନ, ମାଳା ଗ୍ରନ୍ଥନ ଉତ୍ତାରେ ପ୍ରମୀଳା ଆହୁରି ପରସ୍ତେ କାନ୍ଦିଲେ । ପୁଣି ସହସା ସାହସ ବଢ଼ିଗଲା । ଶ୍ରୀରାମଚନ୍ଦ୍ରଙ୍କ ସହିତ ଯୁଦ୍ଧ ସକାଶେ ପ୍ରସ୍ତୁତ । ପ୍ରହରଣ ବିମଣ୍ଡିତା ଦାନବୀବାହିନୀ ଧରି ବାହାରିଲେ ଏବଂ "ନାଦିଲ ଦାନବବାଳା ହୁହୁଙ୍କାର ରବେ"; ଅର୍ଥାତ୍ ରାବଣର ବହୂ ଘରେ ଗୋଟାଏ ହୁହୁଙ୍କାର ରଡ଼ି ଛାଡ଼ିଲେ, ସେ କଣ ରଡ଼ି ପରି ରଡ଼ି ? "କାମ୍ପିଲ ଲଙ୍କା ଆତଙ୍କେ, କାମ୍ପିଲ ନିଷାଦୀ, ରଥୀ" ରାଜା, କୁଳବଧୂ ବିହଙ୍ଗ, ସିଂହ, ବନରେ ହସ୍ତୀ, ଜଳରେ ଜଳଚରବୃନ୍ଦ ସମସ୍ତେ କମ୍ପିଲେ, ଅର୍ଥାତ୍ ଜଗତରେ ସମସ୍ତେ କମ୍ପିଗଲେ । ସସୈନ୍ୟା ପ୍ରମୀଳା ଶ୍ରୀରାମ ଶିବିରରେ ଉପସ୍ଥିତ । ସନ୍ଧି ବା ଯୁଦ୍ଧ ପ୍ରସ୍ତାବ ଘେନି ପ୍ରମୀଳାର ଦାସୀ ନୃମୁଣ୍ଡମାଳିନୀ ଶ୍ରୀରାମଚନ୍ଦ୍ରଙ୍କ ନିକଟକୁ ଗଲେ । ଦାସୀ ରୂପ ଦେଖି ବାନରବାହିନୀ ଭୟବିହ୍ୱଳ । ଦାସୀ ହସ୍ତସ୍ଥ ଧନୁ ଦେଖି ଶ୍ରୀରାମଚନ୍ଦ୍ର କହିଲେ, "ମୁଁ ହରଧନୁ ସହଜରେ ଭାଙ୍ଗି ଅଛି; ମାତ୍ର ଏ ଧନୁରେ ଗୁଣ ଦେବାକୁ ଅକ୍ଷମ ।" ସୁତରାଂ ଭୟବିହ୍ୱଳ ହୋଇ ବାଟ ଛାଡ଼ିଦେଲେ । ତହିଁ ଉତ୍ତାରେ ପ୍ରମୀଳାର ସ୍ୱାମୀ ସହିତ ସମ୍ମିଳନ । ପାଠକ, ମନେ ରଖିବେ, ପ୍ରମୀଳାର ଇଙ୍ଗିତ ମାତ୍ରକେ ରାକ୍ଷସୀବାହିନୀ ପ୍ରସ୍ତୁତ, ଯେମନ୍ତ କି ସମସ୍ତେ ଶିକ୍ଷିତା ସମର ଅଭ୍ୟସ୍ତା । ହିନ୍ଦୁ କାବ୍ୟ ପୁରାଣରେ ନିଦର୍ଶନାଭାବ, ଏହି ନୂତନତ୍ୱ ସକାଶେ ପ୍ରଶଂସାର କଥା ଥିଲେ ତାହା ବର୍ତ୍ତମାନ କବିଙ୍କର ପ୍ରାପ୍ୟ ।

ଷଷ୍ଠ ସର୍ଗରେ ପ୍ରମୀଳା ସ୍ୱାମୀସହ ହିନ୍ଦୁରମଣୀ ତୁଲ୍ୟ ସହମୃତା । ଏହିଟା ରାକ୍ଷସକୁଳରେ ନୂତନ ପ୍ରଥା ।

ପ୍ରମୀଳା ଚରିତ୍ରରେ ଆମ୍ଭେମାନେ କେତେଗୋଟି ଅସମାନ ଦୃଶ୍ୟ ଦେଖୁଅଛୁଁ —

ଏକ ସମୟରେ ପ୍ରମୀଳା କୁଳବଧୂ ପରି ଭୟବିହ୍ୱଳା; ଅନ୍ୟ ସମୟରେ ଉଗ୍ରଚଣ୍ଡା ସମରପ୍ରାର୍ଥିନୀ, ଲଜ୍ଜାହୀନା, ନିଶୀଥ ସମୟରେ ଶତ୍ରୁ ଶିବିରବର୍ତ୍ତିନୀ ।

ଆଉ ଗୋଟିଏ କଥା, ମହର୍ଷି ବା ସ୍ୱୟଂ କବି ଲଙ୍କାଗଡ଼ର ଯେଉଁ ମାନଚିତ୍ର ଦେଇଅଛନ୍ତି, ସେଥିରେ ପ୍ରମୀଳା ଶ୍ରୀରାମଙ୍କ ଶିବିର ସମୀପବର୍ତ୍ତିନୀ ହେବା ଅସମ୍ଭବ । କବି ଯେମନ୍ତ ପ୍ରମୀଳାର ବଳବିକ୍ରମ ପ୍ରକାଶ ନିମନ୍ତେ ମାର୍ଗ ଅମାର୍ଗ, ସମୟ ଅସମୟ ପ୍ରତି ଦୃଷ୍ଟି ନିକ୍ଷେପ ନ କରି ତାହାକୁ ଜବରଦସ୍ତି ଶ୍ରୀରାମଙ୍କ ସମୀପବର୍ତ୍ତିନୀ କରାଇ ଅଛନ୍ତି । ପୁଣି ପ୍ରମୀଳା ନିଶୀଥରେ ଶତ୍ରୁ ସହ ସମର କରିବାକୁ ସୁସଜ୍ଜିତା, ମେଦିନୀ କମ୍ପମାନା; ମାତ୍ର ଇନ୍ଦ୍ରଜିତ ବା ରାବଣଙ୍କୁ କିଛି ଜଣା ନାହିଁ, ଏମନ୍ତ କି ଲଙ୍କାଗଡ଼ଦ୍ୱାର ପ୍ରହରୀମାନଙ୍କୁ ମଧ୍ୟ ସମ୍ବାଦ ଜଣାନାହିଁ । ଆହୁରି ମଧ୍ୟ ଦେଖନ୍ତୁ, ଅସ୍ତ୍ରହସ୍ତା ପ୍ରମୀଳା ସ୍ୱାମୀସମୀପବର୍ତ୍ତିନୀ ହେବା ସମୟରେ ଇନ୍ଦ୍ରଜିତ ତାଙ୍କୁ ଚିହ୍ନି ପାରିଲେ ନାହିଁ । ଦାମ୍ପତ୍ୟ ପ୍ରଣୟର ପରାକାଷ୍ଠା !

**ଶ୍ରୀରାମ ଲକ୍ଷ୍ମଣ**—ହିନ୍ଦୁଙ୍କ ବିଶ୍ୱାସ, ଭୂଭାରହରଣ ନିମନ୍ତେ ଶ୍ରୀରାମଚନ୍ଦ୍ରରୂପେ ବୈକୁଣ୍ଠବିହାରୀ ବିଷ୍ଣୁଙ୍କର ଅବତାର । ମହର୍ଷି ବାଲ୍ମୀକି ଶ୍ରୀରାମଚନ୍ଦ୍ରଙ୍କୁ ସେହି ଭାବରେ ଚିତ୍ରିତ କରିଅଛନ୍ତି । ମାତ୍ର ମେଘନାଦ ବଧରେ ଶ୍ରୀରାମଚନ୍ଦ୍ର ଜଣେ ସାଧାରଣ ମାନବରୁ ବଳି ଅଧିକ ନୁହନ୍ତି, ଗୋଟିଏ ତୁଚ୍ଛ ଦାସୀ ହସ୍ତସ୍ଥ ଧନୁ ଦେଖି ଭୀତ, ଚକିତ । ଏହା ତାହାଙ୍କ ବଳବିକ୍ରମର ଜାଜ୍ୱଲ୍ୟ-ମାନ ନିଦର୍ଶନ । ବଳବିକ୍ରମରେ ସମ୍ମୁଖ ସମରରେ ଅଶକ୍ତ ହୋଇ ସତ୍ୟସନ୍ଧ ଶ୍ରୀରାମଚନ୍ଦ୍ର, ନ୍ୟାୟପରାୟଣ ବିଭୀଷଣ, କର୍ତ୍ତବ୍ୟନିଷ୍ଠ ସୁମିତ୍ରାନନ୍ଦନ ଅନ୍ୟାୟରୂପେ ଅସ୍ତ୍ରହୀନ ଇନ୍ଦ୍ରଜିତକୁ ବଧ କରିବା ନିମନ୍ତେ କୁଣ୍ଠିତ ନୁହନ୍ତି । ଲକ୍ଷ୍ମଣଙ୍କ ମହାବୀରତ୍ୱର ଏବଂ ନ୍ୟାୟନିଷ୍ଠାର ନିଦର୍ଶନ ଆମ୍ଭେମାନେ ଶତ ଶତ ସ୍ଥାନରେ ଦେଖିଅଛୁଁ । ମାତ୍ର ସେହି ଲକ୍ଷ୍ମଣ ଦସ୍ୟୁ ଭାବରେ ନିଶି ଅନ୍ଧକାରରେ ପରଗୃହରେ ପ୍ରବେଶ କଲେ । ବୀରତ୍ୱର ମଧ୍ୟ ପରିଚୟ ଦେଖନ୍ତୁ, ଇନ୍ଦ୍ରଜିତ କୌଣସି ଅସ୍ତ୍ର ନ ପାଇ ପୂଜାପାତ୍ର କୋଷା ଫୋପାଡ଼ି ପାରିଲେ, ସେହି କୋଷାଘାତରେ ଲକ୍ଷ୍ମଣ ଅଚେତନ ଓ ପପାତ ଧରଣୀ ତଳେ ! ଇନ୍ଦ୍ରଜିତକୁ ଲକ୍ଷ୍ମଣ ବଧ କରି ନାହାନ୍ତି, ଯୁଦ୍ଧ ତ କିଛି ହୋଇନାହିଁ ବୋଲିବାକୁ ହେବ, ବଧ କଲେ ମାୟାଦେବୀ, ଲକ୍ଷ୍ମଣ ଉପଲକ୍ଷ ମାତ୍ର ।

ଇନ୍ଦ୍ରଜିତ ବଧ ଦେଖି ବିଭୀଷଣ କାନ୍ଦିଲେ । ତାହାଙ୍କୁ କାନ୍ଦିବାର ଦେଖି ଲକ୍ଷ୍ମଣ ମଧ୍ୟ କାନ୍ଦିବାକୁ ବସିଗଲେ । ଶ୍ରୀରାମଚନ୍ଦ୍ର ଚାତକବତ୍ ଚାହିଁ ବସିଅଛନ୍ତି, ଏତେବଡ଼ ବିଜୟବାର୍ତ୍ତା ଶୀଘ୍ର ଦେବା ଆବଶ୍ୟକ, ଲକ୍ଷ୍ମଣ ଏ କଥା ମନରେ କଲେ ନାହିଁ, ଏହା କି ସ୍ୱାଭାବିକ ?

ଅନ୍ଧକାର ସଂସର୍ଗରେ ପ୍ରଦୀପର ପ୍ରଭା ପରିସ୍ଫୁଟ ହୁଏ । ମହର୍ଷି ବାଲ୍ମୀକି ତ୍ରିଭୁବନବିଦ୍ୱେଷୀ ଦେବମାନବ ବିଦ୍ରୋହୀ ରାବଣର ସଂସର୍ଗକୁ ଆଣି ଶ୍ରୀରାମଚନ୍ଦ୍ରଙ୍କ ଦେବତ୍ୱ ଫୁଟାଇଅଛନ୍ତି; ମାତ୍ର ବର୍ତ୍ତମାନ କବି ଯୁଗପତ୍ ରାକ୍ଷସ ଜାତିର ଅଭ୍ୟୁତ୍ଥାନ ଓ ଶ୍ରୀରାମଚନ୍ଦ୍ରଙ୍କ ଦେବତ୍ୱ ଯଥାସାଧ୍ୟ ହ୍ରାସ କରାଇ ଦୁଇଜଣଙ୍କୁ ସମଧରାତଳରେ ଉଭା କରାଇବାକୁ ଚେଷ୍ଟା କରିଅଛନ୍ତି ।

**ହନୁମାନ୍**—ମହାବୀର ଏହି କଥାଟା ହନୁମାନ୍ ପକ୍ଷରେ ରୂଢ଼ି ହୋଇ ପଡ଼ିଅଛି । ସାଗରଲଙ୍ଘନ, ଏକେଶ୍ୱର ଲଙ୍କା ବିନାଶ ବୀରତ୍ୱର ଉଜ୍ଜ୍ୱଳ ପ୍ରମାଣ । ମାତ୍ର ବର୍ତ୍ତମାନ ସେହି ପବନନନ୍ଦନ ମହାବୀର ହନୁମାନଙ୍କୁ ଦେଖନ୍ତୁ, ନୃମୁଣ୍ଡମାଳିନୀ ଦାସୀ ହସ୍ତସ୍ଥ ଧନୁ ଦେଖି ସେ ଭୟବିହ୍ୱଳ । ଲକ୍ଷ୍ମଣ ବଧ ପାଇ ରାବଣ ଧାବିତ, ମାର୍ଗରୋଧୀ ହନୁମାନକୁ ଗୋଟିଏ କାଣ୍ଡ ମାରିଲା, ସେହି କାଣ୍ଡ ଦେହରେ ବାଜିଛି କି ନାହିଁ ସନ୍ଦେହ; ମାତ୍ର ହନୁ 'ପିତୃନାମ ସ୍ମରିୟା' ବାପାଲୋ ବାପାଲୋ ବୋଲି କହି ପଳାଇ ଗଲେ । କେବଳ ହନୁମାନ କାହିଁକି ଶ୍ରୀରାମଚନ୍ଦ୍ରଙ୍କ ପକ୍ଷରେ ଜଣେ ମଧ୍ୟ ବୀର ନାହିଁ, ଆଉ ଯେତେ ବେଦପାଠୀ ବୀର ରାକ୍ଷସ ମଧ୍ୟରେ ।

**ସୀତା** ମହର୍ଷି ବାଲ୍ମୀକିଙ୍କ ବର୍ଣ୍ଣିତା ଲକ୍ଷ୍ମୀସ୍ୱରୂପା ପରମସତୀ ଜନକତନୟା ସୀତାଙ୍କ ଚରିତ୍ର ଜଗତରେ ଅତୁଳନୀୟ । ଭାରତ ଭୂମିରେ ଆଜି ପର୍ଯ୍ୟନ୍ତ ଯେତେ ପୁରାଣକାର, ଯେତେ କାବ୍ୟକାର ସତୀ ସାଧ୍ୱୀ ନାୟିକା ଗଠନ କରି ଯାଇଅଛନ୍ତି, ସୀତା ସେମାନଙ୍କ ସମସ୍ତଙ୍କ ହୃଦୟରେ ବିଦ୍ୟମାନ । ହିନ୍ଦୁ ସୀତାତୁଲ୍ୟ ପୁତ୍ରବଧୂ, ସୀତାତୁଲ୍ୟ କନ୍ୟା କାମନା କରେ ।

ମହର୍ଷି ବାଲ୍ମୀକି ଅଶୋକବନବାସିନୀ ଜନକ-ନନ୍ଦିନୀଙ୍କୁ କିରୂପଭାବରେ ଚିତ୍ରିତ କରୁଅଛନ୍ତି, ଅତି ସଂକ୍ଷେପରେ ସେ ସମ୍ବନ୍ଧରେ ଦୁଇଚାରି ଗୋଟି କଥା ବୋଲିବାକୁ ଇଚ୍ଛା କରୁଁ । କାରଣ ମେଘନାଦବଧରେ କେବଳ ସେହି ଅବସ୍ଥାରେ ତାହାଙ୍କୁ ଦେଖି ପାରୁଅଛୁଁ । ରାମାୟଣର ସୀତା ଏକାକିନୀ, ଅଶୋକବନ

ବନ୍ଦିନୀ, ଭୟଙ୍କରୀ ନିଶାଚରୀ ବେଷ୍ଟିତା । ସୀତା କେବଳ ପତିଗତପ୍ରାଣା ବାହ୍ୟଜ୍ଞାନ ବିରହିତା । ସୀତାଙ୍କ ହୃଦୟ ରାମଚନ୍ଦ୍ରମୟ । ରାମନାମ ମାତ୍ର ଜପମନ୍ତ୍ର । ଦେବମାନବ ତ୍ରାସକାରୀ ରାବଣ ସମ୍ମୁଖରେ ଉପସ୍ଥିତ, ମଧୁରବାକ୍ୟରେ ବିନୀତଭାବରେ ହାତଯୋଡ଼ି ତ୍ରିଭୁବନସ୍ଥ ସମସ୍ତ ସମ୍ପତ୍ତିର ପ୍ରଲୋଭନ ଦେଖାଇଲା । ମୈଥିଳୀ ପାଷାଣୀ । ଚେଟୀମାନେ ବିକଟମୁଖରେ ଭକ୍ଷଣ କରିବାକୁ ଧାଇଁଲେ । ସୀତା ଦେବୀ ନିର୍ଭୀତା । ମହର୍ଷି ବାଲ୍ମୀକି ଏ ସ୍ଥାନରେ ଧର୍ମବଳର ଅସୀମ ଶକ୍ତିର ଅତି ସୁନ୍ଦର ନିଦର୍ଶନ ଦେଖାଇ ଯାଇ ଅଛନ୍ତି । ସରମା ଜନକନନ୍ଦିନୀର ହିତୈଷିଣୀ ମାତ୍ର । ଅବକାଶକ୍ରମେ କେବଳ ସାନ୍ତ୍ୱନା-ପ୍ରଦାୟିନୀ । ଆଉ ମେଘନାଦ ବଧ କାବ୍ୟସ୍ଥା ସୀତାଙ୍କ ଚିତ୍ର ଦେଖନ୍ତୁ—ସୀତା ଦେବୀ ଅଶୋକବନରେ ବନ୍ଦିନୀ । ଦୁଃଖ ସୁଖ କଥା କହି ମନକୁ ଭୁଲାଇବାପାଇଁ ସୌଭାଗ୍ୟକ୍ରମେ ସରମା ସଖୀକୁ ସମୀପରେ ପାଇଅଛନ୍ତି । ସୀତାଙ୍କ ଦୁଃଖର କାରଣ, ସେ ବନ୍ଦିନୀ ଅବସ୍ଥାରେ ଅଛନ୍ତି । ପଞ୍ଚବଟୀବନ ଗୋଦାବରୀ ତଟସ୍ଥ ଋଷିପତ୍ନୀମାନଙ୍କୁ ହରାଇ ଅଛନ୍ତି, ଏହି ଦୁଃଖ । କୁରଙ୍ଗୀମାନଙ୍କ ସହିତ ନାଚୁଥିଲେ, ବନରେ ଗୀତଗାଇ ବୁଲୁଥିଲେ, ତାହା ବର୍ତ୍ତମାନ ନାହିଁ, ଏହି ଦୁଃଖ । ଭ୍ରମରରୂପ ନାତୁଣୀଜୁଆଇଁମାନଙ୍କୁ ହରାଇ ଅଛନ୍ତି, ଏହି ଦୁଃଖରେ କାତର, ଇତ୍ୟାଦି ଇତ୍ୟାଦି । ଆହୁରି ମଧ୍ୟ ଦେଖନ୍ତୁ—ସରମାକୁ ରାମାୟଣର ପାଞ୍ଚକାଣ୍ଡ ପାଠ ଶୁଣାଇବା ନିମନ୍ତେ କବି ଜାନକୀଙ୍କୁ ଖୁବ୍ ଅବକାଶ ଓ ଧୈର୍ଯ୍ୟ ପ୍ରଦାନ କରିଅଛନ୍ତି । କବି ଶୃଜ କୌଶଳପୂର୍ବକ ସୀତା ଦେବୀଙ୍କଦ୍ୱାରା ରାମାୟଣର ବର୍ଣ୍ଣନ କରାଇ କାବ୍ୟର ଅଙ୍ଗ ବେଶ ପୁଷ୍ଟ କରିଅଛନ୍ତି; ମାତ୍ର ଏହା ସ୍ୱୀକାର କରିବାକୁ ହେବ, ଏଥିରେ ସୀତାଦେବୀଙ୍କର କେତେକ ପରିମାଣରେ ସୀତାତ୍ୱ ନଷ୍ଟ ହୋଇଅଛି । ସୀତାଦେବୀଙ୍କ ମହିମା ପ୍ରକାଶର ଶ୍ରେଷ୍ଠ କ୍ଷେତ୍ର ବନତ୍ରୟ—ଅଶୋକବନ, ପଞ୍ଚବଟୀ ବନ, ବାଲ୍ମୀକି ତପୋବନ । ବର୍ଣ୍ଣିତ କାବ୍ୟ ମହର୍ଷି ଆଶ୍ରମ-ସମ୍ପର୍କଶୂନ୍ୟ । ଆଉ ଦୁଇ ସ୍ଥାନରେ ସୀତାଙ୍କୁ ତ ଦେଖିଲେ ? ସୀତାଦେବୀଙ୍କ ଚରିତ୍ର ହିନ୍ଦୁଲଳନାମାନଙ୍କର ଅନୁକରଣୀୟ, ଏମନ୍ତ କି ପ୍ରତ୍ୟେକ ହିନ୍ଦୁକୁଳବଞ୍ଚ ସନ୍ତାର ହୃଦୟପଟରେ ସୀତାଦେବୀଙ୍କ ଚିତ୍ର ଅଙ୍କିତ ରହିଅଛି । ଯେଉଁମାନେ ରାମାୟଣ ବୃତ୍ତାନ୍ତ କଦାଚ ଶ୍ରବଣ କରିନାହାନ୍ତି, ସେମାନଙ୍କ ହୃଦୟରେ ମଧ୍ୟ ମାତୃପରମ୍ପରା ସୀତାଦେବୀଙ୍କ ଛାୟା ପ୍ରତିଫଳିତ ହୋଇ ରହିଅଛି । ବର୍ତ୍ତମାନ ଆମ୍ଭମାନଙ୍କୁ ଦୁଃଖର ସହିତ ବୋଲିବାକୁ ହେଉଅଛି, କବି ସୀତାଚରିତ୍ର ଅଙ୍କନ କରିବା ହିନ୍ଦୁ ସାଧାରଣର ଦୁର୍ଭାଗ୍ୟର ବିଷୟ ଅଟେ ।

ଆମ୍ଭେମାନେ ଏପର୍ଯ୍ୟନ୍ତ ମେଘନାଦବଧ କାବ୍ୟର କେତେଗୋଟି ନାୟକନାୟିକାଙ୍କ ଚରିତ୍ରଗତ କେତେକ ବିଷୟ ବର୍ଣ୍ଣନ କଲୁଁ । ମାତ୍ର କେବଳ ନାୟକ ନାୟିକା ଘେନି କାବ୍ୟ ନୁହେ । ଭାଷା କାବ୍ୟର ଶରୀର, ନାୟକ ନାୟିକା ବୃତ୍ତିଚୟ, ଭାବ ତାହାର ଜୀବନ, ଅଳଙ୍କାର ତ ଅଳଙ୍କାର । କାବ୍ୟ ସମ୍ବନ୍ଧରେ ସାଧାରଣ ଭାବରେ ମନ୍ତବ୍ୟ ପ୍ରକାଶ କରିବା ପୂର୍ବେ ଅନ୍ୟାନ୍ୟ ବିଷୟ ସମ୍ବନ୍ଧରେ କେତେକ କଥା ବୋଲିବା ନିତାନ୍ତ ଆବଶ୍ୟକ ବିବେଚନା କରୁଁ ।

**ଭାଷା**—ବଙ୍ଗଭାଷା ବଙ୍ଗଯୋଷା ସମାନ ତରଳା, ସରଳା ଏବଂ ମଧୁରନାଦିନୀ ଅଟେ । ମାତ୍ର ଉପସ୍ଥିତ କାବ୍ୟକାର ଯେମନ୍ତ ତାହାକୁ କିଞ୍ଚିତ୍ ଜଟିଳା, କୁଟିଳା ଓ ପୁରୁଷନାଦିନୀ କରି ପକାଇଅଛନ୍ତି ବୋଲି ବୋଧହୁଏ । ଏକଥା ଧ୍ରୁବ ସତ୍ୟ; କବି ତାହାକୁ ରାଜପୁତରମଣୀ ସମାନ ତେଜସ୍ୱିନୀ କରିଅଛନ୍ତି ।

ଅଳଙ୍କାର ସମ୍ବନ୍ଧରେ ନିଶ୍ଚିତରୂପେ ବୋଲିଯାଇପାରେ, କବି ସ୍ୱଦେଶୀୟ ଓ ବିଦେଶୀୟ ଅତି ଅପୂର୍ବ, ଅତି ମହାର୍ଘ, ଅତି ସୁଗଠିତ ଅଳଙ୍କାରଦ୍ୱାରା କାବ୍ୟ ଅଙ୍ଗକୁ ବିମଣ୍ଡିତ କରାଇ ଅତି ସୁନ୍ଦରରୂପେ

ସଜ୍ଜିତ କରାଇଅଛନ୍ତି ଏବଂ କର୍ତ୍ତବ୍ୟ ଅନୁରୋଧରେ ଏହା ମଧ୍ୟ ବୋଲିବାକୁ ହେଉଅଛି ଯେ, ଅଳଙ୍କାର ଭାରରେ କାବ୍ୟ ଯେମନ୍ତ ଲସରପସର ହୋଇ ଗଲୁଅଛି ।

ନିତାନ୍ତ ଦୁଃଖିତ ହୋଇ ଲେଖିବାକୁ ହେଉଅଛି, କାବ୍ୟଗତ ବିଷୟଟିର ସମ୍ପୂର୍ଣ୍ଣ ଗୌରବ ହୃଦୟଙ୍ଗମ କରିବାକୁ ଆମ୍ଭେମାନେ ଅକ୍ଷମ । ହିସାବ ଅନୁସାରେ ଷଷ୍ଠ ସର୍ଗରେ ମେଘନାଦବଧଠାରେ କାବ୍ୟ ସମାପ୍ତ ହେବାର ଉଚିତ । ନ ହେଲେ ମେଘନାଦର ଅନ୍ତ୍ୟେଷ୍ଟି-କ୍ରିୟା ଅଥବା ଆନୁଷଙ୍ଗିକ ଲକ୍ଷ୍ମଣଶକ୍ତି ଶେଲ ସକାଶେ ଆଉ ଏକ ସର୍ଗ ପାଠ ଚଳିପାରେ; ମାତ୍ର କବି ଅକାରଣ ଯେମନ୍ତ ଆଉ କେତେକ ସର୍ଗ ବଢ଼ାଇ ଦେଇ ଅଛନ୍ତି ।

ଆଉ ଗୋଟିଏ କଥା, ତ୍ରେତା ଯୁଗରେ ରାମ-ରାବଣ ସମର ସଂଘଟନ—ତ୍ରେତା ଶେଷ କଳିର ଅବ୍ୟବହିତ ପୂର୍ବେ କୁରୁ ପାଣ୍ଡବଙ୍କ ଉତ୍ପତ୍ତି । ମାତ୍ର ଆମ୍ଭେମାନେ ସମାଲୋଚ୍ୟ କାବ୍ୟରେ ଶ୍ରୀକୃଷ୍ଣ, ଅର୍ଜ୍ଜୁନ, କୀଚକ, ବୃହନ୍ନଳା, ହିଡ଼ିମ୍ବା ସମସ୍ତଙ୍କୁ ଦେଖୁଅଛୁଁ ।

ପ୍ରଥମ ସର୍ଗରେ କୁମାର ସମ୍ଭବୀୟ ହରଧ୍ୟାନ-ଭଙ୍ଗର ବିକୃତରୂପେ ପୁନରାବୃତ୍ତିନୟ । ପୁଣି ମହାଦେବଙ୍କ ହସ୍ତରେ କବି ଯେ ସମସ୍ତ କାର୍ଯ୍ୟ କରାଇଅଛନ୍ତି, ବିବେକବିଶିଷ୍ଟ ସାଧାରଣ ଜଣେ ମାନବ ମଧ୍ୟ ସେପରି କାର୍ଯ୍ୟ କରିବାକୁ ସଙ୍କୁଚିତ ହେବ । ପାର୍ବତୀ, ଇନ୍ଦିରା, ଇନ୍ଦ୍ରାଣୀ, ମହାଦେବଙ୍କଗୃହକ ଷଡ଼ଯନ୍ତ୍ରକାରିଣୀ, ତାରକ-ବିଜୟୀ ଦେବ ସେନାପତି କାର୍ତ୍ତିକେୟ ଗୋଟିଏ କୋମଳାଙ୍ଗ ଶିଶୁମାତ୍ର । ଉପାସକ ଆପଣା ଉନ୍ନତ ଚରିତ୍ର ସମସ୍ତ ଉପାସ୍ୟ ଦେବଦେବୀ ପ୍ରତି ଆରୋପ କରିଥାନ୍ତି, ଅଥବା ଦେବ ଦେବୀଙ୍କ ଉନ୍ନତ ଚରିତ୍ର ସମସ୍ତ ଉପାସକର ଅନୁକରଣୀୟ । ଏକ ସମ୍ପ୍ରଦାୟ ହିନ୍ଦୁ ଜଘନ୍ୟଚରିତ୍ର ଦେବ ଦେବୀଙ୍କ ଉପାସକ, ବିଦେଶୀୟ ଦେବମାନଙ୍କୁ ଏ କଥା ବୁଝାଇବାକୁ କବି ଯଥେଷ୍ଟ ଅବକାଶ ଦେଇନାହାନ୍ତି କି ?

କାବ୍ୟରେ ସ୍ୱର୍ଗ ନରକ ବର୍ଣ୍ଣନ ଅନାବଶ୍ୟକ, ନୂତନତ୍ୱବିହୀନ । ହିନ୍ଦୁ କାବ୍ୟକାର ପୁରାଣକାରମାନଙ୍କ ପ୍ରସାଦରୁ ଆମ୍ଭେମାନେ ଅନେକ ସ୍ୱର୍ଗନରକ ଦର୍ଶନ କରିଅଛୁଁ । ବର୍ଣ୍ଣିତ ସ୍ୱର୍ଗ ନରକରେ ଜ୍ଞାତବ୍ୟ ବିଷୟ ଅଧିକ କଣ ଅଛି ? ଅଧିକରେ ଖ୍ରୀଷ୍ଟାନ୍ ସ୍ୱର୍ଗନରକର ଅନନ୍ତତ୍ୱର ଆଭାସ ଏଥିରେ ବିଦ୍ୟମାନ । ହିନ୍ଦୁର ବିଶ୍ୱାସ, ସ୍ୱର୍ଗ ନରକରେ ସ୍ଥାନ ସ୍ୱତନ୍ତ୍ର ସ୍ୱତନ୍ତ୍ର; ଅଧିକାରୀ ମଧ୍ୟ ସ୍ୱତନ୍ତ୍ର ସ୍ୱତନ୍ତ୍ର । ମେଘନାଦବଧ କାବ୍ୟ ମତରେ ଇଂରେଜ ଜେଲ ପରି ଯମପୁରୀରେ ଦୁଇଟା ଡିପାର୍ଟ-ମେଣ୍ଟ— ଦେୱାନ ଏବଂ ଫୌଜଦାରୀ ।

କବି ଏହି ସୂତ୍ର ଅବଲମ୍ବନ କରି ସ୍ୱର୍ଗ ନରକର ଅବତାରଣା କରିଅଛନ୍ତି—

ଲକ୍ଷ୍ମଣ ଶକ୍ତିଶେଲରେ ପତିତ, ଦଶରଥଙ୍କଠାରୁ ବଞ୍ଚିବାର ବ୍ୟବସ୍ଥା ଆଣିବାକୁ ହେବ । ଦଶରଥ ଯମପୁରୀରେ, ସୁତରାଂ ଶ୍ରୀରାମଚନ୍ଦ୍ରଙ୍କୁ ସେ ସ୍ଥାନକୁ ଯିବାକୁ ପଡ଼ିଲା । ମାତ୍ର ସେ ସଳଖେ ସଳଖେ ଦଶରଥଙ୍କ ନିକଟକୁ ଗଲେ ନାହିଁ, ନରକର ପ୍ରତ୍ୟେକ ସ୍ଥାନ ବୁଲି ବୁଲି ଦେଖିଲେ, ପ୍ରତ୍ୟେକ ପାପୀର ବିଧି ବ୍ୟବସ୍ଥା ବୁଝିଲେ । ବ୍ରହ୍ମାଣ୍ଡରେ ଯେତେ ଜଣାଶୁଣା ମହାପୁରୁଷ ସ୍ୱର୍ଗକୁ ଯାଇଅଛନ୍ତି, ସମସ୍ତଙ୍କ ସହିତ ଆଳାପ କଲେ । ଏଣେ ରାତ୍ରି ମଧ୍ୟରେ ବ୍ୟବସ୍ଥା ନ ହେଲେ ଲକ୍ଷ୍ମଣ ରକ୍ଷାପାଇବେ ନାହିଁ; ମାତ୍ର ଶ୍ରୀରାମଚନ୍ଦ୍ର ସ୍ୱର୍ଗ ନରକ ଦର୍ଶନରେ ନିଯୁକ୍ତ ।

ଆହୁରି ମଧ୍ୟ ଲକ୍ଷ୍ମଣଙ୍କ ଶକ୍ତିଶେଳ ସମୟରେ ଚିତ୍ରଟା ଦେଖନ୍ତୁ—ପୁତ୍ରହନ୍ତା ଲକ୍ଷ୍ମଣଙ୍କୁ ମାରିବା ସକାଶେ ରାବଣ ଧାବିତ, ଶ୍ରୀରାମଚନ୍ଦ୍ର ବାଟ ଓଗାଳିଲେ; ଯୁଦ୍ଧ କରିବାକୁ ପ୍ରସ୍ତୁତ; କିନ୍ତୁ ରାବଣ ଯବାବ ଦେଲେ,

"ହେ ବୈକୁଣ୍ଠନାଥ ! ତୁମ୍ଭେ ଆଜଦିନେ ବଞ୍ଚିରହ, ଅର୍ଥାତ୍ କାଲି ତୁମ୍ଭଙ୍କୁ ମାରି ପକାଇବି, ଆଜି ତୁମ୍ଭ ଭାଇ ବବିରି ଲକ୍ଷ୍ମଣଙ୍କୁ ମାରି ଆସେ ।" ଏକଥା ଶ୍ରବଣ କରି ଶ୍ରୀରାମଚନ୍ଦ୍ର 'ମୌନ ସମ୍ମତି ଲକ୍ଷଣଂ' ପରି ବିଶ୍ରାମ-ନିମନ୍ତେ ଧୀରେ ଧୀରେ ଶିବିରକୁ ଚାଲିଗଲେ । ଭ୍ରାତୃସ୍ନେହର ପରାକାଷ୍ଠା !

ଏହି ସମସ୍ତ କାରଣ ବିଦ୍ୟମାନରେ କେହି ଯେବେ ମେଘନାଦବଧକୁ ଜାତୀୟ କାବ୍ୟ ଓ ମହାକାବ୍ୟ ବୋଲିବାକୁ ପ୍ରସ୍ତୁତ ହୁଅନ୍ତି, ହେଉନ୍ତୁ !

ଅଉ ଗୋଟିଏ ପ୍ରଶ୍ନ, ଆମ୍ଭେମାନେ କି ସକାଶେ ମେଘନାଦବଧ ପାଠ କରିବୁଁ ? କାବ୍ୟପାଠରେ ଆମୋଦ ଅଛି, ପୁଣି ନିର୍ଦ୍ଦୋଷରେ ସମୟ କାଟେ । ଦୁଇବାଜି ପଶା ଖେଳିଲେ କିମ୍ବା ଉଦ୍ୟାନରେ ଭ୍ରମଣ କଲେ ତ ଆମୋଦ ଜାତ ହେବ, ସେଥିରେ ସନ୍ଦେହ କରିବାର କାରଣ ନାହିଁ । କବି ଭୟ, କ୍ରୋଧ, ଖେଦ, ସାହସ, କରୁଣ ପ୍ରଭୃତି ରସର ଅବତାରଣା ଯେପରି କୌଶଳରେ ଓ ପୂର୍ଣ୍ଣମାତ୍ରାରେ କରିଅଛନ୍ତି, ତାହା ବଙ୍ଗଭାଷାର ଅନ୍ୟ କାବ୍ୟରେ ଦୁର୍ଲ୍ଲଭ । ଗ୍ରନ୍ଥ ପାଠ ସମୟରେ ପାଠକ ଯେ ସ୍ଥାନେ ସ୍ଥାନେ ଖେଦ, ସ୍ତମ୍ଭିତ, ରୋମାଞ୍ଚିତ ଓ ଚକିତ ହୋଇ ପଡ଼ିବେ, ଏ କଥା ଅତୀବ ନିଶ୍ଚୟ । ଏହି ହିସାବରେ ମେଘନାଦବଧ ମହାକାବ୍ୟ ଓ ମାଇକେଲ ଅମର କବି, ଏହା ଧ୍ରୁବସତ୍ୟ । ମାତ୍ର କାବ୍ୟପାଠର ଉଦ୍ଦେଶ୍ୟ କେବଳ ଆମୋଦ ସମ୍ଭୋଗ ନୁହେ । ଆମୋଦ ସମ୍ଭୋଗ ଗୌଣ, ଉପଦେଶ ମୁଖ୍ୟ ଉଦ୍ଦେଶ୍ୟ । କାବ୍ୟ ଜନସମାଜର ଗୁରୁ ଓ ଉପଦେଷ୍ଟା । କାବ୍ୟଗତ ନାୟକ ଓ ନାୟିକାଙ୍କ ଚରିତ୍ର ଚରିତ୍ରଗଠନର ପରମ ସହାୟ । ଆମ୍ଭମାନଙ୍କ ଚରିତ୍ରଗଠନର ସାହାଯ୍ୟକାରୀ ମେଘନାଧବଧରୁ ଏମନ୍ତ ଗୋଟିଏ ଚରିତ୍ର ଦେଖାନ୍ତୁ ତ ? ଦୁଃଖରେ ସୁଖରେ, ସମ୍ପଦରେ ବିପଦରେ, ହର୍ଷରେ ବିଷାଦରେ କେଉଁ ଅବସ୍ଥାରେ କେଉଁ ଚରିତ୍ର ଆମ୍ଭମାନଙ୍କ ମନରେ ଉଦିତ ହେବ ? ଆମ୍ଭମାନଙ୍କର ସାହଚର୍ଯ୍ୟ କରିବାଭଳି ଗୋଟିଏ ଚରିତ୍ର ଅଛି କି ? ଆମ୍ଭମାନଙ୍କ ମନରେ ଉଦାର ମହତ୍ତ୍ୱ ଆଣି ଦେବ କିମ୍ବା ସ୍ୱାଭାବିକୀ ବିବେକଶକ୍ତିକୁ ଉତ୍ତେଜିତ କରି ଦେବ, ଏମନ୍ତ କିଛି ଚରିତ୍ର ଅଛି କି ? ଅଥବା ଏମନ୍ତ କିଛି ନୈତିକ ଉପଦେଶ ଅଛି, ଯାହା କି ସମାଜର ନୈତିକ ଶୃଙ୍ଖଳାକୁ ଦୃଢ଼ କରି-ପାରେ ? କିମ୍ବା ମନମଧ୍ୟରେ ଏମନ୍ତ କିଛି ଭକ୍ତିର ଉଦ୍‌ଭବ ହେବ, ଯହିଁରେ କି ଅନନ୍ତ ପରବ୍ରହ୍ମଙ୍କ ସତ୍ତା ଅନୁଭବ କରିବାକୁ କ୍ଷମ ହୋଇ ପାରିବୁଁ ? ତେବେ କି ସକାଶେ ଆମ୍ଭମାନଙ୍କ ପବିତ୍ର ଗ୍ରନ୍ଥର ବିକୃତ ଆକାର ଦର୍ଶନ କରିବୁଁ ? ହିନ୍ଦୁର ରାମାୟଣ ସମ୍ବନ୍ଧରେ ଯେଉଁ ଧାରଣା ଅଛି, ତାହା ଚିରକାଳ ଥାଉ, ତାହା ଯଦି ଭ୍ରାନ୍ତଧାରଣା ହୁଏ, ତାହା ମଧ୍ୟ ବାଞ୍ଛନୀୟ । ରାମାୟଣପାଠ ସମୟରେ ଚରିତ୍ରଗୁଡ଼ିକ ଆମ୍ଭମାନଙ୍କ ନୟନରେ ନୃତ୍ୟ କରେ, ଘଟନାବଳୀ ପ୍ରତ୍ୟକ୍ଷବତ୍ ପ୍ରତୀୟମାନ ହୁଏ । ଫଟୋଗ୍ରାଫ—ଦର୍ପଣ ପତିତ ଛାୟା ପରି ଚିରକାଳ ସକାଶେ ହୃଦୟପଟରେ ଚିତ୍ରିତ ହୋଇଯାଏ, ଘଟନା ପଶ୍ଚାଦ୍‌ଭାଗରେ ମନ ଧାବିତ ହୁଏ, ସେ ଧାବନ ଅବିଶ୍ରାନ୍ତ । ପୁନର୍ବାର ବୋଲୁଅଛୁଁ, ଜାତୀୟ ଉଚ୍ଚତମ ଚରିତ୍ର ଆଦର୍ଶରେ କାବ୍ୟ ଚିତ୍ରିତ, ଫଳାନ୍ତରେ କାବ୍ୟଗତ ଚରିତ୍ର ଜାତୀୟ ଚରିତ୍ରଗଠନର ପରମ ସହାୟ ।

କାବ୍ୟ ଓ ଧର୍ମଗ୍ରନ୍ଥର ସ୍ୱାତନ୍ତ୍ର୍ୟ ଅନୁଭବ କରିବାକୁ ସଧାରଣ ହିନ୍ଦୁପକ୍ଷରେ ବିଳମ୍ବ ଅଛି । ପଶ୍ଚାତ୍ୟ ଜ୍ଞାନାଲୋକପ୍ରାପ୍ତ ହିନ୍ଦୁମାନଙ୍କ କଥା ସ୍ୱତନ୍ତ୍ର, ସେମାନଙ୍କ ସଂଖ୍ୟା ମଧ୍ୟ ପରିମିତ । ହିନ୍ଦୁର ଧାରଣା, ରାମାୟଣ କାବ୍ୟ, ରାମାୟଣ ଧର୍ମଗ୍ରନ୍ଥ, ଯେଉଁ ହିନ୍ଦୁସନ୍ତାନ ରାମାୟଣ ଗ୍ରନ୍ଥ ସ୍ପର୍ଶ ମଧ୍ୟ କରିନାହିଁ, ସେ ମଧ୍ୟ ରାମାୟଣୀ ନୀତିର ଅନୁଶାସନରେ ଚାଳିତ । ପିତୃ-ଭକ୍ତି, ସନ୍ତାନବାତ୍ସଲ୍ୟ, ଭ୍ରାତୃସ୍ନେହ, ପତିପରାୟଣତା

ପ୍ରଭୃତି ସଦ୍‌ଗ୍ରନ୍ଥ ସମସ୍ତ ହିନ୍ଦୁ ରାମାୟଣରୁ ଶିକ୍ଷା କରିଅଛି । ହିନ୍ଦୁ ରାମଚନ୍ଦ୍ର ପରି ପୁତ୍ର କାମନା କରେ । ହିନ୍ଦୁ ପୁତ୍ରବଧୂ ଓ କନ୍ୟାଙ୍କୁ ଆଶୀର୍ବାଦ କରେ, ତୁ ସୀତା ସମାନ ସତୀ ହୋ । ଧର୍ମବଳ ହିଁ ପ୍ରକୃତ ବଳ, ଏଥିର ଜାଜ୍ୱଲ୍ୟମାନ ଦୃଷ୍ଟାନ୍ତ ରାମାୟଣରେ ବିଦ୍ୟମାନ । ଏମନ୍ତକି ରାମାୟଣକୁ ବାହାର କରି ନେଲେ ହିନ୍ଦୁର ହିନ୍ଦୁତ୍ୱ ଆଧାରଶୂନ୍ୟ ହୋଇ ପଡ଼ିବ ।

ହିନ୍ଦୁଜାତିର ଯଦି କିଛି ଗୌରବ କରିବାର ବସ୍ତୁ ଥାଏ, ତାହା ବେଦ, ମହାଭାରତ ଓ ରାମାୟଣ । ରାଷ୍ଟ୍ରବିପ୍ଳବ ତଥା ବିବିଧ ଅତ୍ୟାଚାରରେ ହିନ୍ଦୁ ଗତ-ସର୍ବସ୍ୱ, ମାତ୍ର ହିନ୍ଦୁର ପ୍ରକୃତ ଗୌରବ-ସ୍ତମ୍ଭ-ଚୂଡ଼ାକୁ କେହି ସ୍ପର୍ଶ ମଧ୍ୟ କରି ପାରିନାହିଁ, ପାରିବ ନାହିଁ । ଏହି ସ୍ତମ୍ଭର ମୂଳଦୁଆ ହିନ୍ଦୁ ହୃଦୟରେ ନିହିତ, ଚୂଡ଼ା ଧ୍ରୁବଲୋକ ବିଷ୍ଣୁଲୋକ ସ୍ପର୍ଶୀ, ସ୍ତମ୍ଭଲଗ୍ନ ରତ୍ନରାଜିର ବିମଳ ଜ୍ୟୋତି ହିନ୍ଦୁର ଶିରା-ଉପଶିରା ବାହି ରକ୍ତ ବିନ୍ଦୁରେ ପ୍ରତିଫଳିତ । ଏହି ପରମ ପୂଜ୍ୟ ଦେବ-ମନ୍ଦିର କମ୍ବା ତହିଁର ଅଧିଷ୍ଠାତ୍ରୀ ଦେବପ୍ରତିମା ଗୁଡ଼ିକୁ କେହି ଭିନ୍ନ ରୂପରେ କଦର୍ଯ୍ୟ ରୂପରେ ଚିତ୍ରିତ କଲେ ହିନ୍ଦୁ ହୃଦୟରେ ଆଘାତ ଲାଗିବାର କଥା । ଏଥି ସକାଶେ ଆମ୍ଭେମାନେ ମେଘନାଦ ବଧ କାବ୍ୟ ସମ୍ବନ୍ଧରେ ଏତେ କଥା କହିଲୁଁ ।

(ଉ. ସା. ୮।୧୨ ସଂଖ୍ୟା)

---

## ବାଲେଶ୍ୱର ବନ୍ଦରରେ ଓଲନ୍ଦାଜ ଜାତି

ଠିକ୍ କେଉଁ ସମୟରେ ଉତ୍କଳଭୂମି ପାଶ୍ଚାତ୍ୟ ଶକ୍ତିସମୂହଦ୍ୱାରା ପ୍ରଥମେ ଅଧ୍ୟୁଷିତ ହେଲା, ତାହା ନିରୂପଣ କରିବା ସହଜସାଧ୍ୟ ନୁହେଁ । ମାତ୍ର ଇୟୁରୋପୀୟ ଜାତିମାନଙ୍କ ମଧ୍ୟରୁ ସର୍ବପ୍ରଥମ ଯେ ଓଲନ୍ଦାଜ ଜାତି ଉତ୍କଳରେ ପଦାର୍ପଣ କରିଥିଲେ, ଏହା ଏକ ପ୍ରକାର ନିଃସଂଶୟରୂପେ ବୋଲିଯାଇ ପାରେ । କେବଳ ବାଣିଜ୍ୟ ବ୍ୟାପାର ହିଁ ଇୟୁରୋପ ଭୂମିର ଉନ୍ନତିର ମୂଳ କାରଣ, ଏହା ଧ୍ରୁବ ସତ୍ୟ ଅଟେ । ବାଣିଜ୍ୟେ ଲକ୍ଷ୍ମୀଙ୍କର ବାସ, ଇୟୁରୋପ ଖଣ୍ଡ ଏଥିର ଜାଜ୍ୱଲ୍ୟମାନ ପ୍ରମାଣ ସ୍ଥଳ । ବାଣିଜ୍ୟବ୍ୟପଦେଶରେ ସେମାନେ ପୃଥିବୀର ସର୍ବାଂଶରେ ଆପଣା ଆପଣା ଗୌରବ ଓ ଆଧିପତ୍ୟ ବିସ୍ତାର କରିବାକୁ କ୍ଷମ ହୋଇଅଛନ୍ତି । ସେମାନଙ୍କର ସାର୍ବଭୌମ ରାଜଦଣ୍ଡ ତୁଳାଦଣ୍ଡର ରୂପାନ୍ତର ମାତ୍ର । ଏହି ଯେ ପୃଥିବୀର ଅର୍ଦ୍ଧଖଣ୍ଡ ପ୍ରାପ୍ୟ ଆମେରିକା ଆବିଷ୍କାର; ବାଣିଜ୍ୟ ବ୍ୟପଦେଶହିଁ ସେଥିର ମୂଳୀଭୂତ କାରଣ ଅଟେ ।

ଅତି ସୁଦୀର୍ଘ କାଳରୁ ଇୟୁରୋପବାସୀମାନେ ରତ୍ନଗର୍ଭା ଭାରତଭୂମିର ନାମ ଅବଗତ ଥିଲେ; ମାତ୍ର ମାର୍ଗ ଅବିଦିତ ଥିବାରୁ ସେମାନେ ସାକ୍ଷାତ୍ ସମ୍ବନ୍ଧରେ ଭାରତବର୍ଷକୁ ଆସି ବାଣିଜ୍ୟ ବ୍ୟାପାରରେ ଲିପ୍ତ ହେବାକୁ ଅକ୍ଷମ ଥିଲେ । ଭାରତୀୟ ପଣ୍ୟଦ୍ରବ୍ୟ ପାରସ୍ୟ, ସୁଏଜ, ମିଶର ପ୍ରଭୃତି ସ୍ଥଳମାର୍ଗରେ ଯାଇ ବହୁ ମୂଲ୍ୟରେ ଇୟୁରୋପର ବିପଣୀମାନଙ୍କରେ ବିକ୍ରୟ ହେଉଥିଲା । ମାତ୍ର ଇୟୁରୋପରୁ ଭାରତକୁ ଆସିବାର ଜଳମାର୍ଗ ଥିବାର ସମ୍ଭବ, ଏହିପରି ଗୋଟିଏ ଧାରଣା ଦୀର୍ଘକାଳ ଯାବତ୍ ସେମାନେ ମନରେ ପୋଷଣ କରିଥିଲେ । ଅନନ୍ତର ପଞ୍ଚଦଶ ଶତାବ୍ଦୀର ସୁପ୍ରସିଦ୍ଧ ନାବିକ ଭାସ୍କୋଡ଼ଗାମାଙ୍କଦ୍ୱାରା ଉତ୍ତମାଶା ଅନ୍ତରୀପ ଦକ୍ଷିଣପାର୍ଶ୍ୱସ୍ଥ ସମୁଦ୍ର ମଧ୍ୟରେ ମାର୍ଗ ଆବିଷ୍କୃତ ହେବାରୁ ଶବଦର୍ଶୀ ଗୃଧ୍ରପ୍ରାୟ ଦଳ ଦଳ ଇୟୁରୋପୀୟ ବଣିକ୍ ଭାରତଭୂମିରେ ଉପନୀତ ହେବାକୁ ଲାଗିଲେ । ସେ ଯାହା ହେଉ, ୟୁରୋପୀୟ ଜାତି ସହିତ ଉତ୍କଳର ସମ୍ବନ୍ଧ ବିଷୟରେ ସଂକ୍ଷେପରେ ଦୁଇ ଚାରି କଥା ବୋଲିବା ଏହି ପ୍ରସ୍ତାବର ଉଦ୍ଦେଶ୍ୟ ଅଟେ ।

ଇୟୁରୋପ ମଧ୍ୟରେ ପର୍ତ୍ତୁଗିଜ ଜାତି ପୋତଚାଳନା ବିଦ୍ୟାବିତ୍ ବିଶେଷ ପାରଦର୍ଶୀ—ଏହିମାନେ ଉତ୍କଳ-

ତରଙ୍ଗସଙ୍କୁଳ ସମୁଦ୍ର ଉପରେ ବାଣ୍ଟ କଡ଼ାଇ ସର୍ବଦା ଅଗ୍ରସର ହୋଇଥିବାର ପ୍ରମାଣ ମିଳେ । ଏହି ଜାତି ପ୍ରଥମେ ବଙ୍ଗୋପସାଗର ମଧ୍ୟରେ ପ୍ରବେଶ କରି ସୁମାତ୍ରା ଓ ଯବ ଦ୍ୱୀପରେ ବାଣିଜ୍ୟ ବିସ୍ତାର କରିଥିଲେ । ମାତ୍ର ସୁମାତ୍ରା ଦ୍ୱୀପରେ ସେମାନଙ୍କର ପ୍ରଧାନ କୋଠି ଥିଲା । ଅତି ପୂର୍ବକାଳରୁ ତାମ୍ରଲିପ୍ତ ଓ ବାଲେଶ୍ୱର ନାମ ସାଗରଗର୍ଭସ୍ଥ ଦ୍ୱୀପବାସୀମାନଙ୍କୁ ବିଦିତ ଥିଲା । ନୌବାଣିଜ୍ୟ ବିଷୟରେ ବାଲେଶ୍ୱର ଗୋଟିଏ ସୁପ୍ରଶସ୍ତ ସ୍ଥାନ ଅଟେ । ଏଥିପାଇଁ ଏହାର ନାମ ବନ୍ଦର ବାଲେଶ୍ୱର । ଓଲନ୍ଦାଜମାନେ ପ୍ରଥମେ ସୁମାତ୍ରା ଦ୍ୱୀପରୁ ଆସି ଉତ୍କଳଭୂମି ସ୍ପର୍ଶ କରିଥିବାର ଯଥେଷ୍ଟ ପ୍ରମାଣ ବିଦ୍ୟମାନ ରହିଅଛି । ବାଲେଶ୍ୱର ସହରର ପୂର୍ବ-ଉତ୍ତରବାହିନୀ ବଳଙ୍ଗ ନଦୀର ବାଲିଘାଟ ନାମକ ସ୍ଥାନରୁ ପଶ୍ଚିମ ଦିଗକୁ ଯେଉଁ ଗୋଟିଏ ଶାଖା ବାହାରି ଯାଇଅଛି, ତାହାର ନାମ ଓଲନ୍ଦା ନାଳ । ସର୍ବପ୍ରଥମ ଓଲନ୍ଦାଜ ବୋଇତ ସେହି ନାଳରେ ପ୍ରବେଶ କରିଥିବାରୁ ଓଲନ୍ଦାଜ ନାଳ ( ବା କଥିତ ନାମ ଓଲନ୍ଦା ନାଳ ) ଏହି ଆଖ୍ୟା ଧାରଣ କରିଅଛି । ଏହି ନାଳର ଦୈର୍ଘ୍ୟ ପ୍ରାୟ ଏକ କ୍ରୋଶ ଅଟେ । ଆମ୍ଭେମାନେ ପ୍ରତ୍ୟକ୍ଷ କରିଅଛୁଁ ୫୦ ବର୍ଷ ପୂର୍ବ ପର୍ଯ୍ୟନ୍ତ ଏହି ନାଳଟି ଦେଶୀୟ ପୋତମାନଙ୍କରେ ପରିପୂର୍ଣ୍ଣ ଥିଲା । ବର୍ତ୍ତମାନ ତାହା ପ୍ରାୟ ପୋତା ପଡ଼ି ଯାଇଅଛି । ନାଳକୂଳରେ ଯେ ସମସ୍ତ ବଙ୍କଶାଳ ଓ ଗୋଦାମମାନ ( ବୋଇତ ନିର୍ମାଣସ୍ଥାନ ଓ ବିଶ୍ରାମସ୍ଥାନ ) ବିଦ୍ୟମାନ ଥିଲା, ସେଥିର ଚିହ୍ନ ମାତ୍ର ମଧ୍ୟ ବର୍ତ୍ତମାନ ନାହିଁ । ନାଳର ଦକ୍ଷିଣ ପ୍ରାନ୍ତରେ ଗୋଟିଏ ଗ୍ରାମ ଅଛି, ତାହାର ନାମ ଓଲନ୍ଦାସାହି । ଏହି ଗ୍ରାମରେ ଓଲନ୍ଦାଜମାନଙ୍କର କୋଠି ଓ ଦୋକାନ ଥିଲା । ଏହି ଗ୍ରାମ ମଧ୍ୟରେ ଦୁଇ ଗୋଟି ବିଶାଳ ସମାଧିସ୍ତମ୍ଭ ଓ ଗୋଟିଏ ଗୁମ୍ବଜ ଭିନ୍ନ ଅନ୍ୟ ପ୍ରକାର ଚିହ୍ନ ମାତ୍ର ନାହିଁ । ପରିବର୍ତ୍ତନ ସୂତ୍ରରେ ହସ୍ତଗତ ହୋଇଥିବାରୁ ଏହି ଗ୍ରାମଟି ଇଂରେଜ ବାହାଦୁରଙ୍କ ହସ୍ତଗତ ହୋଇଅଛି ଏବଂ ଏହା ଗଭର୍ଣ୍ଣମେଣ୍ଟଙ୍କ ଖାସମହାଲ ଅଟେ । ବର୍ତ୍ତମାନ ରାଜା ବୈକୁଣ୍ଠନାଥ ଦେ ବାହାଦୁର ଏହାର ସରବରାକାର ଅଟନ୍ତି । ଏହି ଗ୍ରାମର ପଶ୍ଚିମ ପ୍ରାନ୍ତ ଗ୍ରାମର ନାମ ଦିନାମାର ଡଙ୍ଗା, ଅପଭ୍ରଂଶ ନାମ ଡିଙ୍ଗେମାର ଡଙ୍ଗା । ଏହି ଗ୍ରାମରେ ଦିନାମାର ଜାତିର କୋଠି ଥିଲା । ବାଲେଶ୍ୱର ଟାଉନର ପ୍ରାୟ ଦୁଇ ମାଇଲ ପୂର୍ବ ଫରାସୀ ବଣିକମାନଙ୍କର କୋଠିର ନାମ ଫରାସୀଡଙ୍ଗା । ଏହି କ୍ଷୁଦ୍ର ଗ୍ରାମଟି ବର୍ତ୍ତମାନ ମଧ୍ୟ ଫରାସୀମାନଙ୍କ ଖାସ ଦଖଲରେ ଅଛି । ଇଂରେଜୀ କୌଣସି ପ୍ରକାର ବିଧିବିଧାନ ଏଠାରେ ପ୍ରଚଳିତ ନାହିଁ, ବଙ୍ଗଦେଶର ଚନ୍ଦନନଗରସ୍ଥ ଫରାସୀ ଗଭର୍ଣ୍ଣମେଣ୍ଟ ଦ୍ୱାରା ଶାସିତ ହୁଏ ଏବଂ ପ୍ରଜାମାନଙ୍କ ନିକଟରୁ ରାଜସ୍ୱ ଆଦାୟ କରିବା ନିମନ୍ତେ ଜଣେ ସରବରାକାର ନିଯୁକ୍ତ ଅଛନ୍ତି । ଇଂରେଜ ବଣିକମାନେ ସର୍ବଶେଷରେ ବାଲେଶ୍ୱରକୁ ଆଗମନ କରିଥିବାର ଜଣାଯାଏ । କାରଣ ସେମାନେ ସହର ମଧ୍ୟରେ ପ୍ରଥମେ ପ୍ରବେଶ କରି ନାହାନ୍ତି, ବଳଙ୍ଗ ନଦୀର ମୁହାଣ ବଳରାମଗଡ଼ି ନାମକ ସ୍ଥାନରେ କୋଠି ସ୍ଥାପନ କରିଥିଲେ । ସେ ସ୍ଥାନରେ ଗୋଟିଏ ମାତ୍ର ପ୍ରାଚୀନ ଇଷ୍ଟକାଳୟ ରୂପାନ୍ତର ଧାରଣ କରି ବର୍ତ୍ତମାନ ମଧ୍ୟ ବିଦ୍ୟମାନ ଅଛି । ଜମିଦାରମଣ୍ଡଳ ବଂଶ ତାହାର ଅଧିକାରୀ ଅଟନ୍ତି ।

ଉଲ୍ଲିଖିତ ଗୋରା ଜାତି ପ୍ରଥମେ ଉତ୍କଳଭୂମିରେ ପ୍ରବେଶ କରିଥିଲେ ମଧ୍ୟ ବଙ୍ଗଦେଶକୁ ଯାଇ ସେଠାରେ ପ୍ରଧାନ କୋଠି ସ୍ଥାପନ କରିବାକୁ ହୋଇଥିଲା । କାରଣ ବଳଙ୍ଗ ନଦୀମୁହାଣ ତାଦୃଶ ଗଭୀର ନୁହେ ଏବଂ ନଦୀ ମଧ୍ୟ କ୍ଷୀଣକାୟା ଓ ଅପେକ୍ଷାକୃତ ସ୍ୱଳ୍ପଜଳବିଶିଷ୍ଟ । ସାଗରଗାମୀ ବଳିତ ବଡ଼ ବଡ଼ ବୋଇତ ଏହି ନଦୀ ମଧ୍ୟରେ ସହଜରେ ପ୍ରବେଶ କରିବାକୁ ଅକ୍ଷମ । ନଦୀମୁହାଣଠାରୁ ପ୍ରାୟ ୨ । ୩ କ୍ରୋଶ ଦୂରରେ ସେମାନଙ୍କୁ ନଙ୍ଗର କରି ରହିବାକୁ ହୁଏ । ବର୍ତ୍ତମାନ ଇଂରେଜ ଗଭର୍ଣ୍ଣମେଣ୍ଟ ସେଠାରେ ଗୋଟିଏ ବୟା

ପକାଇ ଚହ୍ନିତ କରାଇ ଦେଇଅଛନ୍ତି, ବାଲେଶ୍ୱର-ବାସୀମାନେ ତାହାକୁ ବାହାର ବିଁଯ୍ଆ ସ୍ଥାନ ବୋଲନ୍ତି । ଆମ୍ଭେମାନେ ପୂର୍ବେ କହିଅଛୁଁ ବାଲେଶ୍ୱର ନୌବାଣିଜ୍ୟ ବିଷୟରେ ବିଶେଷ ଉପଯୋଗୀ ସ୍ଥାନ ଏବଂ ଚିରକାଳ ପଣ୍ୟଦ୍ରବ୍ୟ ମଧ୍ୟ ବିଶେଷ ସୁଲଭ । ଏ ସ୍ଥାନରେ ପଣ୍ୟଦ୍ରବ୍ୟ ମଧ୍ୟରେ ବସ୍ତ୍ର, ଚାଉଳ, ଲୁହା, ଲବଣ, ବନଜଦ୍ରବ୍ୟ ଚିରପ୍ରସିଦ୍ଧ । ଦୁଃଖର ବିଷୟ ତଣ୍ଡୁଳ ଓ ବନଜଦ୍ରବ୍ୟ ଭିନ୍ନ ଅନ୍ୟ ସମସ୍ତ ପ୍ରକାର ବାଣିଜ୍ୟ ବିଲୁପ୍ତ ହୋଇଅଛି । ଏକ ସମୟରେ ଇଉରୋପୀୟ ଅପ୍ସରାମାନେ ଆପଣା ଆପଣା ସୌନ୍ଦର୍ଯ୍ୟର ପରାକାଷ୍ଠା ପ୍ରଦର୍ଶନାର୍ଥେ ସୂକ୍ଷ୍ମ ବସ୍ତ୍ର ନିକାଶେ ବାଲେଶ୍ୱରକୁ ଚାହିଁ ବସୁଥିଲେ । ବର୍ତ୍ତମାନ ଏହା ଶୁଣିବାର କଥା ଅଟେ । ବାଲେଶ୍ୱରୀ ଲୌହରେ ବଙ୍ଗଦେଶ ପରିପୂର୍ଣ୍ଣ ହେଉଥିଲା । କଲିକତାର ଦୋକାନମାନଙ୍କରେ ବାଲେଶ୍ୱରୀ ଲୌହ ଉଚ୍ଚ ଦରରେ ବିକ୍ରୟ ହେଉଥିବାର କଥାଟି ମଧ୍ୟ ଗୋଟିଏ ଐତିହାସିକ ପ୍ରସଙ୍ଗ ମଧ୍ୟରେ ଗଣ୍ୟ ହୋଇଅଛି । ବାଲେଶ୍ୱର ଟାଉନର ପୂର୍ବପ୍ରାନ୍ତବର୍ତ୍ତୀ ପୁରୁଣା ବାଲେଶ୍ୱର ଗ୍ରାମରେ ଅନେକଗୁଡ଼ିଏ ଲୁହାର କାରଖାନା ଥିଲା । କର୍ମକାରମାନେ କୌଣସି ଯନ୍ତ୍ର ସାହାଯ୍ୟ ବିନା ସହଜ ଉପାୟରେ କି ପ୍ରକାର ୩୦ । ୪୦ ମହଣ ଭାରବିଶିଷ୍ଟ ନଙ୍ଗର ଢାଳିବାକୁ ସମର୍ଥ ହେଉଥିଲେ, ଆମ୍ଭେମାନେ ବର୍ତ୍ତମାନ କଳ୍ପନା କରିବାକୁ ଅକ୍ଷମ । ପୁରୁଣା ବାଲେଶ୍ୱରର ଲୌହ-କାରଖାନାଗୁଡ଼ିକ ଯେ କେବଳ ଦେଶୀୟ ବୋଇତର ଉପକରଣ ପ୍ରସ୍ତୁତ କରିବାରେ ନିଯୁକ୍ତ ଥିଲେ ତାହା ନୁହେଁ, ବିଲାତି ବୋଇତଗୁଡ଼ିକ ମଧ୍ୟ ସେମାନଙ୍କଠାରୁ ସଉଦା କରୁଥିଲେ—ସେଦିନ ଯାଇଛି । ବାଲେଶ୍ୱର-ବାସୀମାନେ ବର୍ତ୍ତମାନ ଗୋଟିଏ ପେଞ୍ଚକଣ୍ଟା ସକାଶେ ବିଲାତକୁ ଚାହିଁ ବସିଅଛନ୍ତି । ବିଶାଳ ବଙ୍ଗଦେଶର ପ୍ରାୟ ଅର୍ଦ୍ଧାଂଶ ସ୍ଥାନର ଲବଣ ଅଭାବ ବାଲେଶ୍ୱର ଦୂର କରୁଥିଲା । ଭଗବାନ ବାଲେଶ୍ୱର ଉପକୂଳେ କୋଟି କୋଟି ମହଣ ଲବଣ ଢାଳି ଦେଇଅଛନ୍ତି । ଥାଉ, ଭଗବାନଙ୍କର ସେହି ଭଣ୍ଡାର ଅକ୍ଷୁଣ୍ଣ ଅବସ୍ଥାରେ ଥାଉ ।

ନଦୀର ସଙ୍କୀର୍ଣ୍ଣତା ତଥା ବାଣିଜ୍ୟର ବିବିଧ ବିସ୍ତାର ନିମନ୍ତେ ବିଲାତି ବଣିକମାନଙ୍କୁ ବଙ୍ଗଦେଶରେ ପ୍ରଧାନ ଖଟି ସ୍ଥାପନ କରିବାକୁ ହୋଇଥିଲା । ହୁଗୁଳିରେ ଓଲନ୍ଦାଜ, ଶ୍ରୀରାମପୁରରେ ଦିନେମାର, ଚନ୍ଦନନଗରରେ ଫରାସୀ, ସର୍ବଶେଷରେ ସୂତାନଟି ଗୋବିନ୍ଦପୁରରେ ଇଂରେଜମାନେ ଦୋକାନ ମେଲିଥିଲେ । ଆମ୍ଭେମାନେ ଯେଉଁ ସମୟର କଥା ବୋଲୁଅଛୁଁ, ସେ ସମୟରେ କଲିକତା ଜଗତ ମଧ୍ୟରେ ହୁଁଡା ସ୍ଥାନ ପାଇ ନ ଥିଲା ।

ବଙ୍ଗଦେଶରେ ମଧ୍ୟ ଓଲନ୍ଦାଜମାନେ ପ୍ରଥମ ପଦାର୍ପଣ କରିଥିବାର ଯଥେଷ୍ଟ ପ୍ରମାଣ ବିଦ୍ୟମାନ ଅଛି । ଅନ୍ୟାନ୍ୟ ଜାତିଠାରୁ ଓଲନ୍ଦାଜମାନଙ୍କର କାରବାର ବିଶେଷ ବହୁଳତା ଲାଭ କରିଥିବାର ସମ୍ଭବ । ସେମାନଙ୍କର ଧନ ସମ୍ପତ୍ତି ଓ କାରବାର ଏତେଦୂର ବିସ୍ତୀର୍ଣ୍ଣ ହୋଇ ପଡ଼ିଥିଲା ଯେ, ସେ ସମସ୍ତ ନିରାପଦରେ ରକ୍ଷା କରିବା ନିମନ୍ତେ ହୁଗୁଳି ଗ୍ରାମରେ ଗୋଟିଏ ଦୁର୍ଗ ନିର୍ମାଣ ଓ ସେନାନିବେଶ ସ୍ଥାପନ କରିବାକୁ ହୋଇଥିଲା । ହୁଗୁଳିସ୍ଥ ଓଲନ୍ଦାଜମାନଙ୍କର ଖସଟେଭସ ଦୁର୍ଗର ଅନେକ ଦିନ ଉତ୍ତାରେ ଇଂରେଜ-ମାନଙ୍କର କଲିକତାସ୍ଥ ଫୋର୍ଟ ଉଇଲିୟମ ଦୁର୍ଗ ନିର୍ମିତ ହୋଇଅଛି । ବର୍ତ୍ତମାନ ଫୋର୍ଟ ଉଇଲିୟମ ଦୁର୍ଗର ନିର୍ମାଣକାର୍ଯ୍ୟ ସନ ୧୭୫୭ ସାଲରେ ଆରମ୍ଭ ସନ ୧୭୭୩ ସାଲରେ ଶେଷ ହୋଇଥିଲା । ଏହି ଦୁର୍ଗ ନିର୍ମାଣରେ ତିନି କୋଟି ଟଙ୍କା ବ୍ୟୟ ହୋଇଅଛି । ମାତ୍ର ଓଲନ୍ଦାଜ ଖସଟେଭସ ଦୁର୍ଗ କେବେ ନିର୍ମିତ ଓ ସେଥିରେ କେତେ ଟଙ୍କା ବ୍ୟୟ ହୋଇଥିଲା, ଜାଣିବାର ଉପାୟ ନାହିଁ । ଫୋର୍ଟ ଉଇଲିୟମଠାରୁ ଖସଟେଭସ ବହୁ ଗୁଣରେ ନିକୃଷ୍ଟ ଥିଲା, ଏକଥା ନିଶ୍ଚିତରୂପେ ବୋଲାଯାଇ ପାରେ । ଆମ୍ଭମାନଙ୍କର ପରମ ସୌଭାଗ୍ୟ,

ଓଲନ୍ଦାଜ ଦୋକାନ ସବୁତ ଖ୍ରୀଷ୍ଟାବ୍ଦର ଶେଷ ପର୍ଯ୍ୟନ୍ତ ବିଲୁପ୍ତ ହୋଇ ଯାଇଅଛି । ସୌଭାଗ୍ୟର କାରଣ ପଶ୍ଚାତ୍ ପ୍ରକାଶ ପାଇବ । ପୂର୍ବଭାଗରେ ବଣିକ-ସମିତି ଉପାଧିଧାରୀ ପର୍ତ୍ତୁଗୀଜ ବଣିକଦଳ ବାଣିଜ୍ୟ ଆରମ୍ଭ କରିଥିଲେ । ସେମାନଙ୍କର ପ୍ରଧାନ ଖଟି ସ୍ଥାନ ଥିଲା ସୁମାତ୍ରା ଦ୍ୱୀପରେ । କାରଣ ସେମାନେ ସେହି ସ୍ଥାନରେ ପ୍ରଥମେ ଉପନିବେଶ ସ୍ଥାପନ କରିଥିଲେ ମଧ୍ୟ ସେ ସ୍ଥାନକୁ କେନ୍ଦ୍ରସ୍ୱରୂପ କରି ସାଗରସ୍ଥ ଦ୍ୱୀପ-ସମୂହ, ପୂର୍ବ-ଉପଦ୍ୱୀପ, ବଙ୍ଗଦେଶ, ଉତ୍କଳଦେଶ ପ୍ରଭୃତି ସ୍ଥାନମାନଙ୍କରେ କାରବାର କରିବା ବିଶେଷ ସୁବିଧାଜନକ ଥିଲା । ହିନ୍ଦୁ ପ୍ରଥମ ବଙ୍ଗୋତ୍କଳ ଦେଶରେ ଇଉରୋପୀୟ ଅନ୍ୟାନ୍ୟ ଜାତିଠାରୁ ପର୍ତ୍ତୁଗୀଜମାନେ ବିଶେଷ ପ୍ରାଧାନ୍ୟ ଲାଭ କରିଥିଲେ ଓ ସେମାନଙ୍କର ବାଣିଜ୍ୟ ବ୍ୟାପାର ବିଶେଷ ଲାଭଜନକ ଥିଲେ ମଧ୍ୟ କେବଳ ବଣିକ-ସମିତି ନିଯୁକ୍ତ ପ୍ରଧାନ କର୍ମଚାରୀମାନଙ୍କ ଅସାଧୁତା ଓ ଚୌର୍ଯ୍ୟାପରାଧରୁ ସେମାନେ ଉଚ୍ଛନ୍ନ ହୋଇଅଛନ୍ତି । ପର୍ତ୍ତୁଗୀଜ ବଣିକ-ଦଳର ବିଲୟପ୍ରାପ୍ତି ଆମ୍ଭମାନଙ୍କର ସୌଭାଗ୍ୟର ବିଷୟ ବୋଲିବାକୁ ହେବ । ଏପରି ଅସଚ୍ଚରିତ୍ର ଜାତି ସହିତ ଦୀର୍ଘକାଳ ସଂସର୍ଗରେ ଯେ ନିତାନ୍ତ ଅଶୁଭ ଫଳ ଲାଭ ହୋଇଥାନ୍ତା, ଏକଥାର ପ୍ରମାଣ ନିମନ୍ତେ ବାକ୍ୟବ୍ୟୟ ଅନାବଶ୍ୟକ । ଅବଶ୍ୟ ପର୍ତ୍ତୁଗୀଜ ଜାତୀୟ ଚରିତ୍ର ସମ୍ବନ୍ଧରେ ଆମ୍ଭେମାନେ ନିତାନ୍ତ ଅନଭିଜ୍ଞ, ମାତ୍ର ଯେଉଁ ଜାତିର ପ୍ରଧାନ କର୍ମଚାରୀମାନେ ଆପଣା ଆପଣା ପ୍ରଭୁବର ସର୍ବନାଶ କରିବାକୁ ତତ୍ପର, ସେ ଜାତି କିପରି ଚରିତ୍ରବିଶିଷ୍ଟ ଅନୁମାନ କରିବା କଷ୍ଟସାଧ୍ୟ ନୁହେଁ । ମଘ ଓଲନ୍ଦାଜ ଡକାଇତ-ମାନେ ଆରାକାନ ଓ ସନ୍ଦୀପରେ ଖଟି ସ୍ଥାପନ କରି ବଙ୍ଗଦେଶରେ ଘୋର ଡକାଏତି କରୁଥିବାର ଆମ୍ଭେମାନେ ପୁସ୍ତକାଦିରେ ପାଠ କରଅଛୁଁ । ଓଲନ୍ଦାଜ ସର୍ବପ୍ରଧାନ ଡକାଏତ ଗଞ୍ଜାଲିଶ ନାମ ଅଦ୍ୟାବଧି ବହୁ ଲୋକ ବିସ୍ମୃତ ହୋଇ ପାରି ନାହାନ୍ତି ।

ବର୍ତ୍ତମାନ ଲୋହିତସାଗର, ସୁଏଜ, ଭୂମଧ୍ୟସାଗର ମଧ୍ୟରେ ମାର୍ଗ ଆବିଷ୍କୃତ ହେବାରୁ ଇଉରୋପୀୟ ପୋତମାନଙ୍କର ଗମନାଗମନ ଯେପରି ସହଜସାଧ୍ୟ ଓ ସ୍ୱଳ୍ପକାଳ ସାପେକ୍ଷ ହୋଇଅଛି, ପୂର୍ବେ ସେପରି ନ ଥିଲା । ପୂର୍ବେ ବାଷ୍ପୀୟପୋତ ଆବିଷ୍କୃତ ହୋଇ ନ ଥିଲା ଏବଂ ପୋତମାନ ମଧ୍ୟ ନିକୃଷ୍ଟ ପ୍ରଣାଳୀରେ ନିର୍ମିତ ହେଉଥିଲା । ସେମାନଙ୍କୁ ଉତ୍ତାଳତରଙ୍ଗସଙ୍କୁଳ ଆଟଲାଣ୍ଟିକ ମହାସାଗର ଅତିକ୍ରମ ଏବଂ ଆଫ୍ରିକାର ଅର୍ଦ୍ଧାଂଶ ବେଷ୍ଟନ କରି ଆସିବାକୁ ହେଉଥିଲା । ଅଖିଳ ସହାୟତାରେ ପୋତମାନ ଚାଳିତ ହେଉ-ଥିବାରୁ ଖୁବ ଅନୁକୂଳ ପବନ ପ୍ରାପ୍ତ ହେଉଥିଲେ ମଧ୍ୟ ଅର୍ଦ୍ଧ ବର୍ଷରୁ ନ୍ୟୂନରେ ଭାରତକୁ ଆସିବାକୁ ସମର୍ଥ ହେଉ ନ ଥିଲେ । ପ୍ରତିକୂଳ ପବନ ପ୍ରାପ୍ତ ହେଲେ କୌଣସି କୌଣସି ବୋଇତକୁ ମାର୍ଗ ମଧ୍ୟରେ ବର୍ଷାଧିକ କାଳ କ୍ଷେପଣ କରିବାକୁ ପଡ଼ୁଥିଲା । ମାର୍ଗର ଦୁର୍ଗମତା ଓ ସ୍ଥିତିର ଅସ୍ଥିରତା ଏବଂ ଅନ୍ୟାନ୍ୟ କାରଣରୁ ପୂର୍ବେ ଇଉରୋପୀୟ ଲଳନାମାନେ ଭାରତକୁ ଆସିପାରୁ ନ ଥିଲେ । ଇଉରୋପୀୟ ଚରିତ୍ରହୀନ ଲୋକମାନେ ଏ ଦେଶୀୟ ନିମ୍ନଶ୍ରେଣୀ ସ୍ତ୍ରୀମାନଙ୍କ ସଂସର୍ଗରେ ଗୋଟିଏ ଜାତି ସୃଷ୍ଟି କରିଥିଲେ, ସେମାନଙ୍କୁ ଫିରିଙ୍ଗି ବୋଲାଯାଏ । ବିଶେଷରେ ପର୍ତ୍ତୁଗୀଜ ଜାତି ମାଳୟଦେଶୀୟ ସ୍ତ୍ରୀମାନଙ୍କ ସଂସର୍ଗରେ ଏହି ଜାତିର ବାହୁଲ୍ୟ ସମ୍ପାଦନ କରି ଯାଇଅଛନ୍ତି । ୫୦ ବର୍ଷ ପୂର୍ବେ ଆମ୍ଭେମାନେ ବାଲେଶ୍ୱର ଓଲନ୍ଦା ସାହିରେ ଉକ୍ତ ଜାତୀୟ କେତେଗୋଟି ଜରାଜୀର୍ଣ୍ଣା ରମଣୀ ଦେଖିଥିଲୁଁ । ବୋଧ କରୁଁ ବର୍ତ୍ତମାନ ଭାରତରୁ ସେହି ବଂଶ ବିଲୁପ୍ତ ହୋଇଅଛନ୍ତି । ଫିରିଙ୍ଗି ଜାତିର ଉତ୍ପତ୍ତି ସମ୍ବନ୍ଧରେ ଯାହା ବୋଲ; ମାତ୍ର ସେହି ବଂଶଜ ଏନ୍ଦ୍ରୁପେନ୍ଦ୍ରୁମାନେ ଯେ ଆର୍ଯ୍ୟବଂଶସମ୍ଭୂତ କୁଳୀନ ବ୍ରାହ୍ମଣମାନଙ୍କଠାରୁ ଢେର୍ ମର୍ଯ୍ୟାଦାବିଶିଷ୍ଟ, ସେ କଥା ବୋଲିବା ବାହୁଲ୍ୟ ମାତ୍ର । ଏମନ୍ତ କି କୌଣସି ଆର୍ଯ୍ୟସନ୍ତାନ ଆପଣା ଆପଣାକୁ ଏନ୍ଦ୍ରୁପେନ୍ଦ୍ରୁ ବଂଶଜ

ବୋଲି ପରିଚୟ ଦେବାକୁ ବ୍ୟାକୁଳ । ଆମ୍ଭେମାନେ ଅନୁମାନଦ୍ୱାରା ଅନୁଭବ କରୁଅଛୁଁ, ଇଯୁରୋପୀୟ ଜାତିମାନଙ୍କ ମଧ୍ୟରେ ଓଲନ୍ଦାଜ ଜାତି କାର୍ଯ୍ୟର ଶିଥିଳଚରିତ୍ର ଓ ବିଳାସପରାୟଣ । ବିଳାସ ବ୍ୟସନ ନିତାନ୍ତ ଅର୍ଥସାପେକ୍ଷ ଅଟେ । ଓଲନ୍ଦାଜ ବଣିକ-ସମିତିର ନିଯୁକ୍ତ ପ୍ରଧାନ କର୍ମଚାରୀମାନେ ଉପଯୁକ୍ତରୂପେ ବର୍ତ୍ତନ ପାଉଥିଲେ ମଧ୍ୟ ସେଥିରେ ସେମାନଙ୍କର ଅସଙ୍ଗତ ବାବୁଗିରି ଚଳୁ ନ ଥିଲା । ତାତ୍କାଳିକ ଓଲନ୍ଦାଜମାନେ ବିଶେଷ ଆଡ଼ମ୍ବରପ୍ରିୟ ଓ ବ୍ୟୟଶୀଳ ଥିଲେ; ସୁତରାଂ ମୁନିବ ଗନ୍ତାଘରର ଲୁଣ୍ଠନ ଭିନ୍ନ ସେମାନଙ୍କର ଗତ୍ୟନ୍ତର ନ ଥିଲା । କଥିତ ଅଛି, ହୁଗୁଳିସ୍ଥ ଓଲନ୍ଦାଜ ପ୍ରଧାନ କର୍ମଚାରୀଙ୍କ ବ୍ୟୟ ବାର୍ଷିକ ୫° ସହସ୍ର ଟଙ୍କାରୁ ନ୍ୟୂନ ନ ଥିଲା । ବଙ୍ଗୋତ୍କଳ ଦେଶୀୟ ବାଣିଜ୍ୟ ବିଶେଷ ଲାଭକର ଥିଲେ ମଧ୍ୟ ପ୍ରତିବର୍ଷ ବିଶେଷ କ୍ଷତି ହେବାକୁ ଲାଗିଲା । ସୁମାତ୍ରାସ୍ଥିତ ଓଲନ୍ଦାଜ ସମିତିର ପ୍ରଧାନ କର୍ମଚାରୀ ଉପାୟାନ୍ତର ନ ଦେଖି ଏତଦ୍ଦେଶୀୟ ବାଣିଜ୍ୟ ବ୍ୟବସାୟ ଉଠାଇ ଦେବାକୁ ମନସ୍ଥ କଲେ । ସୁମାତ୍ରା ଦ୍ୱୀପରେ ଓଲନ୍ଦାଜମାନଙ୍କର ବିଶେଷ କାରବାର ଥିଲେ ମଧ୍ୟ ଇଂରେଜ ବଣିକଦଳ ମଧ୍ୟ ସେ ସ୍ଥାନରେ ଦୋକାନ ମେଲିଥିଲେ । ଠିକ୍ ସେହି ସମୟରେ ସୁମାତ୍ରା ବାଣିଜ୍ୟରେ ଇଂରେଜ ବଣିକ-ଦଳର ଲୋକସାନ ହେବାରୁ ସେ ସ୍ଥାନର ଦୋକାନ କୋଠି ଓଲନ୍ଦାଜମାନଙ୍କୁ ବଦଳ ଦେଇ ସେମାନେ ଭାରତୀୟ ଓଲନ୍ଦାଜ କାରବାର ଗ୍ରହଣ କଲେ । ସେହି ସୂତ୍ରରେ ବଙ୍ଗଳାର ହୁଗୁଳି ଓ ବାଲେଶ୍ୱରର ଓଲନ୍ଦା ସାହି ଇଂରେଜମାନଙ୍କ ହସ୍ତଗତ ହୋଇଅଛି । ମାନବ ଜାତିର ଅଦୃଷ୍ଟଲିପିର କ୍ଷଣଭଙ୍ଗୁରତାର ପରିଚୟ ଦେବା ନିମନ୍ତେ ଉଲ୍ଲିଖିତ ଓଲନ୍ଦା ସାହିରେ ଦୁଇ ଗୋଟି ସମାଧିସ୍ତମ୍ଭ ଦଣ୍ଡାୟମାନ ଅଛି । ସେହି ସମାଧିସ୍ତମ୍ଭରେ ଅଙ୍କିତ ଲିପି ଯଥା:—

ପ୍ରଥମ ସ୍ତମ୍ଭଟି ସମଷଡ଼ଭୂଜାକୃତି । ପ୍ରତ୍ୟେକ ଭୂଜର ପରିମାଣ ପ୍ରାୟ ୧୫ ଫୁଟ, ସ୍ତମ୍ଭର ଉଚ୍ଚତା ପ୍ରାୟ ୩° ଫୁଟ ଅଟେ । ସ୍ତମ୍ଭରେ ଅଙ୍କିତ ଅକ୍ଷରଗୁଡ଼ିକ ବିଲୁପ୍ତ ହୋଇଅଛି । କେବଳ ଏକ ଧାଡ଼ିରେ ଏହି କେତୋଟି ମାତ୍ର ଅକ୍ଷର ଦୃଷ୍ଟ ହୁଏ—

N B E L L A S Y J L Y

ଦ୍ୱିତୀୟ ସ୍ତମ୍ଭଟି ମଧ୍ୟ ସମଷଡ଼ଭୂଜାକୃତି । ସମାଧି-ସ୍ତମ୍ଭର ପ୍ରତ୍ୟେକ ବାହୁ ପରିମାଣ ପ୍ରାୟ ୧୫ ଫୁଟ, ଉଚ୍ଚତା ୨୫ ଫୁଟ । ଏହି ସ୍ତମ୍ଭ ପୃଷ୍ଠରେ ଦୁଇ ଗୋଟି ଫଳକରେ ଏହି କେତୋଟି ଅକ୍ଷର ଅଙ୍କିତ ଅଛି—

L I M S<br>
× × × × G G R A A F<br>
I S E V L N G<br>
N O B I I T<br>
V L M B<br>
0 6

M I C H I E I L L I A N S<br>
B V R G G R A A F<br>
V A N S E V E M<br>
H V I S E N O B I I T<br>
2 3 November-1696

ଏହି ଦୁଇ ଗୋଟି ସମାଧିସ୍ତମ୍ଭ ଭିନ୍ନ ପ୍ରାୟ ଭୂମିସଂଲଗ୍ନ ଆଉ ଦୁଇ ଗୋଟି ଇଷ୍ଟକନିର୍ମିତ ସମାଧି ଅଛି ବୋଧ କରୁଁ, କୌଣସି ନିମ୍ନସ୍ଥ କର୍ମଚାରୀ ଏହାର ନିମ୍ନ ଭାଗରେ ଅନନ୍ତ ନିଦ୍ରାଭିଭୂତ ଅଛନ୍ତି ।

ଓଲନ୍ଦାସାହିର ଦକ୍ଷିଣ ପ୍ରାନ୍ତରେ ଗୋଟିଏ ଖିଲାଣଯୁକ୍ତ କ୍ଷୁଦ୍ର ଗୁମ୍ବଜ ଗୃହ ଶତ ଶତ ବର୍ଷ ବ୍ୟାପି ପ୍ରକୃତି ସହିତ ଯୁଦ୍ଧ କରି ବିଜୟୀ ବୀର ସମାନ ଦଣ୍ଡାୟମାନ ଅଛି । ବୋଧ କରୁ, ଏହି ଗୃହଟି ଓଲନ୍ଦାଜ ଜାତିର ଭଜନାଳୟ ଥିଲା ।

( ଉ.ସା. ୯ମ ଭାଗ, ୯ମ ସଂଖ୍ୟା )

———

## ଗୋତ୍ର

ହିନ୍ଦୁର ପ୍ରତ୍ୟେକ ପୁଣ୍ୟକାର୍ଯ୍ୟ ବା କ୍ରିୟାକଳାପ ଅନୁଷ୍ଠାନ ସଙ୍କଳ୍ପରେ ସ୍ୱକୀୟ ନାମୋଚ୍ଚାରଣ ପୂର୍ବେ ବଂଶୀୟ ଗୋତ୍ରପତିଙ୍କ ନାମ ଉଲ୍ଲେଖ କରିବା ବିଧି । ଗୋତ୍ର ଶବ୍ଦ ହିନ୍ଦୁତ୍ୱ ତଥା ବଂଶ ପରିଚୟସୂଚକ ଅଟେ । ଭାରତବର୍ଷବାସୀ ଯାହାର ଗୋତ୍ର ନାମ ଅବ୍ୟକ୍ତ ସେ ଅନାର୍ଯ୍ୟ । ହିନ୍ଦୁ ଶବ୍ଦଟି ଆର୍ଯ୍ୟର ପ୍ରତିଶବ୍ଦ ଅଟେ । ହିନ୍ଦୁ ଏହା ଆରବୀୟ ଶବ୍ଦ । ପ୍ରାୟ ପାଞ୍ଚ ସହସ୍ରବର୍ଷ ପୂର୍ବେ ଆମ୍ଭମାନଙ୍କ ଆଦିପୁରୁଷ ମାନେ ଆସିଆ ମହାଦେଶର ମଧ୍ୟଭାଗରୁ ଆଗମନ ପୂର୍ବକ ପ୍ରଥମେ ସିନ୍ଧୁନଦୀକୂଳ ବା ସିନ୍ଧୁ ଦେଶରେ ବାସ କରିଥିବାରୁ ପାଶ୍ଚାତ୍ୟ ଜାତିମାନେ ଏମାନଙ୍କୁ ସିନ୍ଧୁ ଜାତି ବୋଲି ଆଖ୍ୟା ପ୍ରଦାନ କରିଥିଲେ । ଆରବ୍ୟ ବର୍ଣ୍ଣମାଳାରେ ସକାର ନାହିଁ, ସକାର ହକାର ରୂପେ ଉଚ୍ଚାରିତ ହୁଏ । ଯଥା,—ସିନ୍ଧୁଜାତି = ହିନ୍ଦୁଜାତି, ସପ୍ତାହ = ହପ୍ତା ଇତ୍ୟାଦି । ସେ ଯାହାହେଉ ଜାତୀୟ କ୍ରିୟାକଳାପ ଅନୁଷ୍ଠାନ ସମୟରେ ହିନ୍ଦୁମାନେ ଗୋତ୍ରପତି ଋଷିଙ୍କ ନାମ ଉଲ୍ଲେଖ ପୂର୍ବକ କି ସକାଶେ ଆତ୍ମ ପରିଚୟ ଦେଇ ଥାଆନ୍ତି ସେଥି ସମ୍ବନ୍ଧେ କିଞ୍ଚିତ ଆଲୋଚନା କରିବା ଏହି ପ୍ରସ୍ତାବର ଉଦ୍ଦେଶ୍ୟ ଅଟେ ।

ବ୍ୟାକରଣ ବିଧାନ ଅନୁସାରେ 'ଗୋତ୍ର' ଶବ୍ଦ ଏହିପରି ସିଦ୍ଧ ହୋଇପାରେ, ଯଥା;—ଗୋ + ତ୍ରୈ + ଡ = ଗୋତ୍ର । ଗାନ୍ ତ୍ରାୟତେ ଇତି ଗୋତ୍ର । ( ଗବତେ ଶବ୍ଦୟତି ପୂର୍ବଂ ପୁରୁଷାନ୍ ଯତ୍ର ଇତି ଭରତ । ଏହା ଅବଶ୍ୟ ଭାବାର୍ଥ ଅଟେ । ) ଉଲ୍ଲିଖିତ ଦୁଇପ୍ରକାର ସାଧନାନୁସାରେ ଗୋ ଶବ୍ଦର ପ୍ରକୃତଅର୍ଥ ଗୋରୁମାନଙ୍କର ତ୍ରାଣକାରୀ । ଅର୍ଥାତ୍ ଗୋଗୋଷ୍ଠ ଯେଉଁସ୍ଥାନରେ ବାସ କରି ରକ୍ଷା ପାଇଥାଆନ୍ତି ବା ନିରାପଦ ନିମନ୍ତେ ଯେଉଁ ସ୍ଥାନରେ ଗୋଗୋଷ୍ଠକୁ ରଖାଯାଏ । ଏହାର ପ୍ରତିଶବ୍ଦ ଗୋହାଳ, ଗୁଆଡ଼, ଅଙ୍କି ଇତ୍ୟାଦି ହୋଇପାରେ ।

ଆଦିମ କାଳରେ ଭାରତବର୍ଷସ୍ଥ ନବାଗତ ଆର୍ଯ୍ୟଜାତିର ପଶୁପାଳନ ଏକମାତ୍ର ବ୍ୟବସାୟ ଥିଲା । କୃଷିକାର୍ଯ୍ୟ ସାଧାରଣରେ ତାଦୃଶ ପ୍ରଚଳିତ ନ ଥିଲା ବା କୃଷିକାର୍ଯ୍ୟରେ ନିଯୁକ୍ତ ହେବା ନିମନ୍ତେ ସ୍ଥିର ହୋଇ ପାରି ନଥିଲେ । ପଶୁପଲର ବୃଦ୍ଧି ଓ ନିରାମୟରେ ରହିବା ସକାଶେ ବେଦୋକ୍ତ କେତେଗୁଡ଼ିଏ ସୂକ୍ତରେ ପ୍ରାର୍ଥନା ଥିବାର ଦେଖାଯାଏ । ଋଗ୍‌ବେଦ ଅଷ୍ଟମମଣ୍ଡଳରୁ କେତେଗୋଟି ସୂକ୍ତରେ ଗୋଧନ ବିଷୟ ଉଲ୍ଲେଖ ଅଛି । ପ୍ରଥମେ ଅଳ୍ପସଂଖ୍ୟକ ନବାଗତ ଆର୍ଯ୍ୟ ସିନ୍ଧୁ ଓ ସରସ୍ୱତୀ କୂଳରେ କେତେଗୁଡ଼ିଏ କ୍ଷୁଦ୍ର କ୍ଷୁଦ୍ର ପଲ୍ଲିସମାଜ ସ୍ଥାପନ କରି ବାସ କରୁଥିବାର ଜଣାଯାଏ । ତତ୍‌କାଳେ ସମସ୍ତ ଭାରତଭୂମି ନିବିଡ଼ ଅରଣ୍ୟପୂର୍ଣ୍ଣ ଓ ହିଂସ୍ରଜନ୍ତୁ ଏବଂ ଅନାର୍ଯ୍ୟ ଜାତିଙ୍କ ଦ୍ୱାରା ଅଧିଷ୍ଠିତ କ୍ଷେତ୍ର ଥିଲା । କୌଣସି ସ୍ଥାନରେ ରାଜ୍ୟ ସ୍ଥାପିତ ହୋଇ ନାହିଁ । ଆମ୍ଭମାନଙ୍କ ପୁରାତନ ମହର୍ଷି ମାନେ ସମସ୍ତେ କିନ୍ତୁ ବନବାସୀ ଓ ତପସ୍ୟ ଗୃହୀ ନ ଥିଲେ । ପୂର୍ବୋକ୍ତ ରୂପ ପଲ୍ଲିସମାଜରେ ଦାରା ପୁତ୍ର ପରିବାର ସହିତ ଥୋକେ ଋଷି ବାସ କରୁଥିଲେ । ସେମାନଙ୍କର ସମ୍ପତ୍ତି ଏକମାତ୍ର ଗୋଧନ ଥିଲା । ବର୍ତ୍ତମାନ ଯେପରି ରାଜଧାନୀମାନଙ୍କରେ ରାଜକୀୟ କୋଷାଗାର ଅର୍ଥାତ୍ ଖଜଣାଖାନା ସ୍ଥାପିତ ଅଛି, ଆଦିମ ସମୟରେ ପଲ୍ଲିପତି ଋଷିମାନଙ୍କର ମଧ୍ୟ ଜାତୀୟ ସମ୍ପତ୍ତି ଗୋଧନର ଗୋତ୍ର ଅର୍ଥାତ୍ ଗୋହାଳ ପଲ୍ଲିପତି ବାସସ୍ଥାନ ନିକଟରେ ରହୁଥିଲା । ବର୍ତ୍ତମାନ ରାଜାଙ୍କ ଅଧିକାରଭୁକ୍ତ ସ୍ଥାନ ଯେପରି ରାଜ୍ୟ ନାମରେ କଥିତ ହୁଏ, ଆଦିମ କାଳରେ ସେହିପରି ପଲ୍ଲିପତି ଋଷିଙ୍କ ଅଧିକୃତ ସ୍ଥାନ ଗୋତ୍ର ନାମରେ ଅଭିହିତ ହେଉଥିଲା । ଦଳପତି ଅଧୀନରେ ଥିବା ସମସ୍ତ ଅଧିବାସୀ ଆପଣା ଆପଣା ପଲ୍ଲିପତି ଗୋତ୍ରବାସୀ ବୋଲି ଆତ୍ମ ପରିଚୟ ଦେଉଥିଲେ । ଗୋତ୍ର ଶବ୍ଦଟି ତତ୍କାଳେ ରାଜ୍ୟ ବା ଜିଲ୍ଲା ସ୍ୱରୂପ ବ୍ୟବହୃତ ହେଉଥିଲା । ବର୍ତ୍ତମାନ ଆର୍ଯ୍ୟଜାତି ଅସଂଖ୍ୟ ଶାଖା-ପ୍ରଶାଖା ଏବଂ ଅସଂଖ୍ୟାତୀତ ଦଳରେ ବିଭକ୍ତ

ହୋଇ ଭାରତବର୍ଷର ସର୍ବତ୍ର ବିକୀର୍ଣ୍ଣ ହୋଇ ପଡ଼ିଥିଲେ ମଧ୍ୟ ଜାତୀୟ ବା ଧର୍ମ ସମ୍ବନ୍ଧୀୟ କ୍ରିୟା-କଳାପ ଅନୁଷ୍ଠାନ ସମୟରେ ଆଦିମ ଗୋତ୍ରବାସୀ ବୋଲି ଆତ୍ମପରିଚୟ ଦେଇଥାଆନ୍ତି । ଆମ୍ଭେମାନେ ଶାସ୍ତ୍ରାଦିରେ ଚିତ୍ତିବାଂଶତ୍ ଜଣ ଗୋତ୍ରପତିଙ୍କ ନାମ ଉଲ୍ଲେଖ ଥିବାର ଦେଖିବାକୁ ପାଉଁ । ଯଥା -

"ଶାଣ୍ଡିଲ୍ୟ କାଶ୍ୟପ ଶ୍ଚୈବ ବାତ୍ସ୍ୟଃ ସାବର୍ଣ୍ଣିକ ସ୍ତଥା ।
ଭରଦ୍ୱାଜୋ ଗୌତମଶ୍ଚ ସୌକାଲୀନସ୍ତଥାପରଃ ।
କଲ୍କଷ ଶ୍ଚାଗ୍ନି ବୈଶ୍ୟଶ୍ଚ କୃଷ୍ଣାତ୍ରେୟ ବଶିଷ୍ଟକୌ ।
ବିଶ୍ୱାମିତ୍ରଃ କୁଶିକଶ୍ଚ କୌଶିକଶ୍ଚ ତଥାପରଃ
ଘୃତ କୌଶିକ ମୌଦ୍‌ଗଲୌ ଆଲମ୍ୟାନଃ ପରାଶରଃ
ସୌପାୟନସ୍ତଥାତ୍ରିଶ୍ଚ ବାସୁକୀ ରୋହିତସ୍ତଥା ।
ବୈୟାଘ୍ର ପଦ୍ୟକଶ୍ଚୈବ ଜମଦଗ୍ନସ୍ତଥାପରଃ ।
ଚତୁର୍ବିଂଶତି ବୈଗୋତ୍ରା କଥିତା ପୂର୍ବ ପଣ୍ଡିତୈ ।

ମାନବ ଧର୍ମ ଶାସ୍ତ୍ରରେ ପ୍ରଥମେ ଏହି ଚତୁର୍ବିଂଶତି ଗୋତ୍ରପତିଙ୍କ ନାମ ଉଲ୍ଲେଖ ଥିଲା । ତଥାହି ମନୁଃ—

"ଜମଦଗ୍ନି ର୍ଭରଦ୍ୱାଜୋ ବିଶ୍ୱାମିତ୍ରା ତ୍ରିଗୌତମ
ବଶିଷ୍ଠ କାଶ୍ୟପାଗସ୍ତ୍ୟା ମୁନୟୋ ଗୋତ୍ର କାରଣଃ
ଏତେଷାଂ ଯାନ୍ୟ ପତ୍ୟାନି ତାନି ଗୋତ୍ରାଣି ମନ୍ୟତେ
ସୌକାଲୀନ୍ୟକ ମୌଦଗଲ୍ୟୋ ପରାଶର ବୃହସ୍ପତି
କାଞ୍ଚନୋ ବସ୍ତୁ କୌଶିକୌ କାତ୍ୟାୟନାତ୍ରେୟ କାନ୍ୱକାଃ
କୃଷ୍ଣାତ୍ରେୟ ସାଙ୍କୃତଶ୍ଚ କୌଣ୍ଡିଲ୍ୟୋ ଗର୍ଗ ସଂଜ୍ଞକଃ ।
ଆଙ୍ଗିରସ ଇତି ଖ୍ୟାତଃ ଅନାବୃକାଖ୍ୟ ସଞ୍ଜିତଃ
ଅବ୍ୟ ଜୈମିନି ବୃଦ୍ଧାଖ୍ୟାଃ ଶାଣ୍ଡିଲ୍ୟ ବାତ୍ସ୍ୟ ଏବ ଚ
ସାବର୍ଣ୍ଣ୍ୟାଲମ୍ୟାନବୈୟାଘ୍ର ପଦ୍ୟଶ୍ଚ ଘୃତ କୌଶିକଂ ।
ଶକ୍ତିଃ କାମ୍ବାୟନ ଶ୍ଚୈବ ବାସୁକୀ ଗୌତମ ତଥା
ଶୁନକଃ ସୌପାୟନ ଶ୍ଚୈବ ମୁନୟଃ ଗୋତ୍ର କାରଣ
ଏତେଷାଂ ଯାନ୍ୟ ପତ୍ୟାନି ତାନି ଗୋତ୍ରାଣି ମନ୍ୟତେ ।

( ସର୍ବେ ଦ୍ୱିତତ୍ତ୍ୱାରଂଶତ ଗୋତ୍ରା )

ବର୍ତ୍ତମାନ ହିନ୍ଦୁଜାତି ଅଧଃପତନର ଚରମ ସୀମାରେ ଉପସ୍ଥିତ । ଆପଣାମାନଙ୍କୁ ହିନ୍ଦୁଜାତି ବୋଲି ପରିଚୟ ଦେଉଥିଲେ ମଧ୍ୟ ଏମାନଙ୍କର ପରମ-ପୂଜନୀୟ ଜଗତସ୍ଥ ସର୍ବଜାତି ସମ୍ମାନାସ୍ପଦ ବେଦ-ବିଧିମାନ ବିସ୍ମୃତ ହୋଇ ଅତି ଜଘନ୍ୟରୂପ ଧର୍ମାନୁ-ଷ୍ଠାନରେ ନିଯୁକ୍ତ । ବେଦସ୍ତୁତ ମହାଦେବତା ବର୍ତ୍ତମାନ ଗ୍ରାମ ପ୍ରାନ୍ତଭାଗରେ ଦୁଇ ପଶୁର ପରିମିତ ଉପଳ ଖଣ୍ଡରୂପେ କାକ ଶ୍ୟେନ ପ୍ରଭୃତି ମାନଙ୍କ * * * ପଦାର୍ଥରେ ଚର୍ଚ୍ଚିତ ହୋଇ ବିରାଜିତ ଅଛନ୍ତି, ତଦ୍ରୂପ ଗୋତ୍ରପତି ମହର୍ଷିମାନେ ପଶୁପକ୍ଷୀ ତିର୍ଯ୍ୟଗ୍ ଜାତିରେ ପର୍ଯ୍ୟବସିତ ହେବା ବିଚିତ୍ର ନୁହେଁ ।

ଭରଦ୍ୱାଜ ଋଷି = ଭଦଭଦଳିଆ ପକ୍ଷୀ ।
କାଶ୍ୟପ = କଇଁଛ ।
କଣ୍ଡୂଣ୍ୟ = କଣ୍ଡରୁଣୀ ।
କୃଷ୍ଣାତ୍ରେୟ = କୃଷ୍ଣମୃଗ ।
ନାଗେଶ୍ୱର = ନାଗସାପ ଇତ୍ୟାଦି ।

ଥୋକେ ଅଜ୍ଞ ଲୋକେ ଭଦଭଦଳିଆ ପକ୍ଷୀ, ନାଗସାପ ଓ କଇଁଛ ପ୍ରଭୃତିକୁ ଗୋତ୍ରପତିରୂପେ ନମସ୍କାର କରୁଥିବାର ଲେଖକ ଦେଖିଅଛି । ଲେଖକ ଏହା ମଧ୍ୟ ଦେଖିଅଛି କୌଣସି ଗଡ଼ଜାତରେ ଏକ ବ୍ରାହ୍ମଣ ପରିବାର ଶମ୍ବର ମାଂସ ରୁଚିପୂର୍ବକ ଭକ୍ଷଣ କରନ୍ତି । ଲୋମଗୁଡ଼ିକ ସୁନ୍ଦରରୂପେ ପରିଷ୍କାର କରି-ଦେଲେ ମନୁ ବ୍ୟବସ୍ଥାନୁସାରେ ବିଚାର ବରାହକରେ ଆପତ୍ତି ନାହିଁ; ମାତ୍ର ମୃଗମାଂସ ସେହି ପରିବାର ପରିବାରରେ ନିଷିଦ୍ଧ, କାରଣ ମୃଗ ସେହି ବ୍ରାହ୍ମଣ ପରିବାରର ଗୋତ୍ର ଅଟନ୍ତି । ଇତି ।

(ମୁକୁର ୨ୟଭାଗ-୧୧ଶ ସଂଖ୍ୟା ଫାଲଗୁନ ଓ ଚୈତ୍ର ୧୩୧୫)

———

## ମେଘଦୂତର ବଙ୍ଗାନୁବାଦ

( ଶ୍ରୀଯୁକ୍ତ ଅଖିଳଚନ୍ଦ୍ର ପାଲିତ କୃତ,
ଛପା ଏବଂ କାଗଜ ଅତି ସୁନ୍ଦର; ମୂଲ୍ୟ ୫।୯ ମାତ୍ର ।)

ମହାକବି କାଳିଦାସକୃତ ସଂସ୍କୃତ ଭାଷାର ଜଗଦ୍‌ବିଖ୍ୟାତ ଶ୍ରେଷ୍ଠତମ ଖଣ୍ଡକାବ୍ୟର ଯେପରି ଅନୁବାଦ ହେବାର ଉଚିତ, ଆମ୍ଭମାନଙ୍କ ବିବେଚନାରେ ଏହି ଅନୁବାଦଟି ଠିକ୍ ତଦ୍ରୂପ ହୋଇଅଛି । ନିଶ୍ଚୟରୂପେ ବୋଲିଯାଇପାରେ ଭାଷାରେ ଏହାଠାରୁ ଉତ୍କୃଷ୍ଟ ଅନୁବାଦ ହୋଇ ନ ପାରେ । ମୂଳଗ୍ରନ୍ଥର ଭାବନିଚୟ ହୃଦୟଙ୍ଗମ କରାଇବା ସକାଶେ ଯାହା କିଛି ପ୍ରୟୋଜନ, ଅନୁବାଦକ ମହାଶୟ ସେଥିର ଆୟୋଜନ କରିବାକୁ ତ୍ରୁଟି କରିନାହାନ୍ତି । ସଂସ୍କୃତଭାଷାରେ ଅନଭିଜ୍ଞ ବା ପ୍ରଥମ ଶିକ୍ଷାର୍ଥୀମାନଙ୍କ ପକ୍ଷରେ ନିଶ୍ଚୟ ବିଶେଷ ଉପଯୋଗୀ ହୋଇଅଛି ।

ପ୍ରଥମେ ପ୍ରତ୍ୟେକ ଶ୍ଳୋକର ସ୍ୱତନ୍ତ୍ର ସ୍ୱତନ୍ତ୍ରରୂପେ ପଦ୍ୟାନୁବାଦ, ତାହା ନିମ୍ନରେ ବିଶଦ ସୁଖବୋଧ୍ୟ ଭାଷାରେ ଗଦ୍ୟାନୁବାଦ, ଅନେକ ସ୍ଥଳରେ ଏହି ଗଦ୍ୟାନୁବାଦ ଟୀକାସ୍ୱରୂପ ହୋଇଅଛି । ଟୀକାରେ ଶ୍ଳୋକଗତ କଠିନ ଶବ୍ଦମାନଙ୍କର ସରଳ ଚଳିତ ଅର୍ଥ ଦିଆଯାଇଅଛି । ମୂଳ ସହିତ ଅନୁବାଦ ମିଳାଇ ପାଠ କରିବା ସୁବିଧା ନିମନ୍ତେ ଶେଷଭାଗରେ ସମସ୍ତ ମୂଳଶ୍ଳୋକ ଦିଆଯାଇଅଛି । ଗ୍ରନ୍ଥଗତ ନଦୀ, ପର୍ବତ ଓ ସ୍ଥାନମାନଙ୍କର ଭୌଗୋଳିକ ଅବସ୍ଥାନର ବ୍ୟାଖ୍ୟା ଏବଂ ଗ୍ରନ୍ଥଗତ ବ୍ୟକ୍ତିମାନଙ୍କର ବିବରଣ ସ୍ୱତନ୍ତ୍ର ସ୍ୱତନ୍ତ୍ରରୂପେ ପରିଚୟ କରାଇଦେବା ନିମନ୍ତେ ଅନୁବାଦକ ମହାଶୟ ତ୍ରୁଟି କରିନାହାନ୍ତି । ଆମ୍ଭେମାନେ ସାହସ ପୂର୍ବକ ବୋଲିପାରୁଁ, ଏହି ସମାଲୋଚ୍ୟ ଗ୍ରନ୍ଥ ଖଣ୍ଡିକ ପାଠ କଲି ଉତ୍ତାରେ କାବ୍ୟଗତ ବିଷୟ ସଙ୍ଗତି ନିମନ୍ତେ ପୁସ୍ତକାନ୍ତର ସାହାଯ୍ୟ ଲୋଡ଼ିବା ଅନାବଶ୍ୟକ ।

ମହାକବି କାଳିଦାସଙ୍କ ଜୀବନୀ ସମ୍ବନ୍ଧେ ନାନା ମତ ପ୍ରଚଳିତ ଅଛି । ସେଥିମଧ୍ୟରୁ ଯେଉଁ ମତ ଅଧୁନାତନ ବିଦ୍ୱନ୍ମଣ୍ଡଳୀରେ ଅପେକ୍ଷାକୃତ ପ୍ରାମାଣିକରୂପେ ଗୃହୀତ, ଗ୍ରନ୍ଥକର୍ତ୍ତା ସେହି ମତ ଅବଲମ୍ବନ କରି ଉକ୍ତ ଜଗଦ୍‌ବିଖ୍ୟାତ ମହାକବିଙ୍କ ଜୀବନୀ ପ୍ରକାଶ କରିଅଛନ୍ତି ।

ମେଘଦୂତର ଅନେକ ଅନୁବାଦ ନାନାଭାଷାରେ ବାହାରି ଅଛି; ବର୍ତ୍ତମାନ ମଧ୍ୟ ଅନୁବାଦ ସ୍ରୋତର ବିରାମ ନାହିଁ । ସୌଭାଗ୍ୟପ୍ରଯୁକ୍ତ ଆମ୍ଭେମାନେ କେତେଖଣ୍ଡ ଅନୁବାଦ ପାଠ କରିବାକୁ ସୁଯୋଗ ପାଇଥିଲୁଁ । ସେଥିମଧ୍ୟରୁ ଉତ୍କଳଭାଷାରେ ରାଧାନାଥ ଅନୁବାଦ, ବଙ୍ଗ ଭାଷାରେ ଉପସ୍ଥିତ ଅନୁବାଦ ପ୍ରକୃତ ବିଶଦ ଅଭ୍ରାନ୍ତ ଅନୁବାଦ ବୋଲି ଆମ୍ଭମାନଙ୍କର ବିଶ୍ୱାସ ।

ଶ୍ରୀଯୁକ୍ତ ଅଖିଳଚନ୍ଦ୍ର ପାଲିତ ପୂର୍ବବଙ୍ଗ ପ୍ରାନ୍ତବର୍ତ୍ତୀ ସା × × ରାଜ୍ୟ କୁଚବିହାର ନିବାସୀ ଅଟନ୍ତି । ବଙ୍ଗବାସୀମାନେ × × ଭାଷାକୁ ଅବଜ୍ଞା ନେତ୍ରରେ ଦେଖିଥାଆନ୍ତି; ମାତ୍ର × × କବିତାର ମର୍ଯ୍ୟାଦା ରକ୍ଷା କରିବା ବିଷୟରେ କୁଣ୍ଠିତ ନୁହନ୍ତି । ବଙ୍ଗଦେଶର ଅନ୍ୟତମ ପ୍ରସିଦ୍ଧ କବି ଶ୍ରୀଯୁକ୍ତ ରଙ୍ଗଲାଲ ବନ୍ଦ୍ୟୋପାଧ୍ୟାୟ ମହାଶୟ ଉତ୍କଳର ପ୍ରାଚୀନ କାବ୍ୟମାନ ଖୁବ୍ ଯତ୍ନପୂର୍ବକ ପାଠ କରୁଥିବାର ଦେଖିଅଛୁଁ । କେତେଖଣ୍ଡ କାବ୍ୟର ଭୂୟସୀ ପ୍ରଶଂସା ତାହାଙ୍କ ମୁଖରୁ ଶୁଣିଅଛୁଁ । ରହସ୍ୟ ସନ୍ଦର୍ଭ ନାମକ ବଙ୍ଗଳା ମାସିକ ପତ୍ରିକାରେ ତାହାଙ୍କଦ୍ୱାରା ପ୍ରକାଶିତ ବୈଦେହୀଶବିଳାସ ଓ ରସକଲ୍ଲୋଳର କେତେକ ଅନୁବାଦ ଆମ୍ଭେମାନେ ପାଠ କରିଅଛୁଁ । ଉପସ୍ଥିତ ଅଖିଳବାବୁ ରାଧାନାଥ ରାୟଙ୍କ ଜୀବନୀ ସମ୍ବନ୍ଧେ ଯେଉଁ ପ୍ରବନ୍ଧ ଉତ୍କଳ-ସାହିତ୍ୟରେ ପ୍ରକାଶ କରିଅଛନ୍ତି, ସେଥିରୁ ତାହାଙ୍କ ଉତ୍କଳଭାଷାରେ ଅଭିଜ୍ଞତା ଓ ଆଧୁନିକ

ଗ୍ରନ୍ଥମାନଙ୍କରେ ପଟଥଷ୍ଟ ପାରଦର୍ଶିତା ଥିବାର ପ୍ରମାଣ ମିଳେ ।

ପାଲିତ ମହାଶୟ ରାଧାନାଥ ବାବୁଙ୍କ ମେଘଦୂତ ଅନୁବାଦ ଆଲୋଚନା କରି ସେଥିରୁ କେତୋଟି କବିତା ଆପଣା ଗ୍ରନ୍ଥରେ ସନ୍ନିବେଶ କରିଥିବାର ଦେଖି ଆମ୍ଭେମାନେ ଆନନ୍ଦିତ ହେଲୁଁ ।

ଆମ୍ଭେମାନେ ସମ୍ବାଦ ପାଇଅଛୁଁ, ଅନୁବାଦକ ଅଖିଳବାବୁ ଜଣେ ଯୁବକ ଅଟନ୍ତି; ମାତ୍ର ତାହାଙ୍କର ଅନ୍ୟତର ଗ୍ରନ୍ଥ ହୃଦୟଗାଥା କବିତାଗତ ଭାବର ମୌଳିକତା, ବର୍ଣ୍ଣନାର ସ୍ୱାଭାବିକତା ଓ ଭାଷାର ଭାବ-ପ୍ରବଣତା ବିଷୟ ଆଲୋଚନା କଲେ ସେ ଜଣେ ପ୍ରବୀଣ ଭାବୁକ ବୋଲି ଅନୁମିତ ହୁଅନ୍ତି । ଯାହାହେଉ, ସେ ସମ୍ପ୍ରତି ବଙ୍ଗଦେଶରେ ଶ୍ରେଷ୍ଠ କବି ପଦରେ ବାଚ୍ୟ ହୋଇପାରିବେ । ତାହାଙ୍କର କବିତାମାଳା ସେଥିର ସୂଚନା କରାଉଅଛନ୍ତି । ପୁସ୍ତକଖଣ୍ଡିକ ଅନେକ ଦିନ ହେଲା ଆମ୍ଭମାନଙ୍କ ହସ୍ତଗତ ହୋଇଥିଲେ ହେଁ ବାଲେଶ୍ୱର ସଂସ୍କୃତ ଟୋଲସ୍ଥ ମେଘଦୂତ ପାଠାର୍ଥୀ ଛାତ୍ରମାନଙ୍କଠାରେ ଥିବାରୁ ଆମ୍ଭେମାନେ ଦେଖିବାକୁ ସୁଯୋଗ ପାଇ ନଥିଲୁଁ । ଟୋଲସ୍ଥ ଛାତ୍ରମାନଙ୍କ ପକ୍ଷରେ ଏ ପୁସ୍ତକ ଖଣ୍ଡିକ ବିଶେଷ ଉପଯୋଗୀ ନିଃସନ୍ଦେହରୂପେ କହିବାକୁ ପାରୁଁ ।

ଶ୍ରୀଯୁକ୍ତ ଅଖିଳଚନ୍ଦ୍ର ପାଲିତ ବଙ୍ଗଭାଷାରେ, ୬ରାଧାନାଥ ଉତ୍କଳଭାଷାରେ ମେଘଦୂତର ପଦ୍ୟାନୁବାଦ କରି କପରି × × ହୋଇଅଛନ୍ତି, ସେଥିର ନିଦର୍ଶନ ଦର୍ଶାଇବା ନିମନ୍ତେ ଗୋଟିଏ ଶ୍ଳୋକ ଉଭୟ ଅନୁବାଦକଙ୍କ ଅନୁବାଦିତ ଦୁଇଗୋଟି କବିତା ପ୍ରକାଶ କରୁଅଛୁଁ ।

## ମୂଳ

"ବିଦ୍ୟୁଦ୍ୱନ୍ତଂ ଲଳିତ ବନିତାଃ ସେନ୍ଦ୍ରଚାପଂ ସଚିତ୍ରାଃ
ସଙ୍ଗୀତାୟ ପ୍ରହତ ମୁରଜାଃ ସ୍ନିଗ୍ଧ ଗମ୍ଭୀର ଘୋଷମ୍ ।
ଅନ୍ତସ୍ତୋୟଂ ମଣିମୟ ଭୁବସ୍ତୁଙ୍ଗମଭ୍ରଂ ଲିହାଗ୍ରାଃ
ପ୍ରାସାଦସ୍ତ୍ୱାଂ ତୁଳୟିତୁମଲଂ ଯତ୍ର ତୈସ୍ତୈ ର୍ବିଶେଷୈଃ
(ଉତ୍ତରମେଘ ୧)

ପାଲିତଙ୍କ ଅନୁବାଦ—
ସୁଗୃହ ପ୍ରାସାଦ ଅଲକା ଭିତର,—
ତୁଳନାୟ ଠିକ ତୋମାର ମତନ;
ତଥାୟ ଲଳିତ ଲଳନା ନିକର,
ତବ କୋଲେ ଶୋଭେ ଦାମିନୀ ଯେମନ;
ବିବିଧ ଚିତ୍ରର ଛବି ଅଗଣନ
ଶୋଭେ ତଥା,—ଯଥା ଇନ୍ଦ୍ରଧନୁ ତବ
ଗଭୀର ମଧୁର ତବ ଗରଜନ,
ତଥାୟ ଉଠିଛେ ମୁରଜେର ରବ;
ମଣିବିରଚିତ କୁଟ୍ଟିମ ତାହାର
ସ୍ୱଚ୍ଛ ଜଲରାଶି ତୋମାର ଯେମନ,
ଆକାଶେତେ ତୁମି,—ଓ ଦିକେ ଆବାର
ଉଚ୍ଚଶିରେ ତାରା ସ୍ପର୍ଶିଛେ ଗଗନ ।

ଏହି ପଦ୍ୟାନୁବାଦ ତଳେ ବ୍ୟାଖ୍ୟା ସ୍ୱରୂପ ଗଦ୍ୟାନୁବାଦ, ସର୍ବସାଧାରଣଙ୍କ ନିମନ୍ତେ କଠିନ ଶବ୍ଦମାନଙ୍କର ଅର୍ଥ ଦିଆ ଯାଇଅଛି ।

୬ ରାଧାନାଥ ରାୟ ଅନୁବାଦ ।—
ଅଳକାହର୍ମ୍ୟେ ରଙ୍ଗେ ନବ ଯୋଷିତ
ତୋ ଅଙ୍ଗେ ନୀରଧର ସ୍ପର୍ଶ ତଡ଼ିତ;
ଅଳକା ସୌଧେ ଶକ୍ର ମୋହେ ନୟନ,
ଇନ୍ଦ୍ର କୋଦଣ୍ଡ ତୋର ଅଙ୍ଗେ ଯେସନ ।
ତୋ ସ୍ନିଗ୍ଧ ମନ୍ଦ୍ରନାଦ ପରାୟେ ତହିଁ
ମୁରଜ ମନ୍ଦ୍ରନାଦ ନୃତ୍ୟ ସ୍ଫୁରିକ

ଉତ୍କଳ ମନ୍ଦିରଶ୍ରୀ ପ୍ରାଙ୍ଗଣେ ତାର,
ଯୋଗନେ ଗର୍ଜେ ଘୋର ଶୁଷ୍କ ଅସାର ।
(ମୁକୁର, ୩ୟ ଭାଗ, ୮ମ ସଂଖ୍ୟା, ମାର୍ଗଶିର ୧୩୩୭)

---

## ସଭାପତି ଅଭିଭାଷଣ

ସଭ୍ୟ ମହାଶୟଗଣ,

ଏହି ସଭାରେ ଯୋଗ ଦେବା ସକାଶ ପଣ୍ଡିତ ମୃତ୍ୟୁଞ୍ଜୟ ରଥ ବାଣୀଭୂଷଣ ମହାଶୟଙ୍କଠାରୁ ପ୍ରଥମ ପତ୍ର ପାଇ ଆଶ୍ଚର୍ଯ୍ୟ ହେଲି—ମନରେ ବିଚାର କଲି, କଟକରେ ମୋଠାରୁ ଶତ ଶତ ଗୁଣରେ ଅଧିକ ବିଦ୍ୱାନ୍ ବୁଦ୍ଧିମାନ୍ ଉପଯୁକ୍ତ ଅନେକ ଲୋକ ବିଦ୍ୟମାନ ଅଛନ୍ତି । ସେମାନଙ୍କ ଯୋଗେ ସଭାର କାର୍ଯ୍ୟ ସୁଚାରୁରୂପେ ନିର୍ବାହ ହୋଇପାରେ, ତେବେ ମୋ ପରି କ୍ଷୀଣବୁଦ୍ଧି ବିକଳେନ୍ଦ୍ରିୟ ଜରାଜୀର୍ଣ୍ଣ ଲୋକଟାକୁ ଆହ୍ୱାନ କି ସକାଶେ ? ନିଶ୍ଚୟ ରଥ ମହାଶୟଙ୍କର ଲୋକ ନିର୍ବାଚନରେ ତ୍ରୁଟି ହୋଇଅଛି । ତେଣୁ, ତାହାଙ୍କର ଭ୍ରମ ସଂଶୋଧନ ସକାଶ ଅସ୍ୱୀକାରସୂଚକ ପତ୍ର ଲେଖିଲି; ମାତ୍ର ପଣ୍ଡିତ ମହାଶୟ ମୋ ନିବେଦନ-ପତ୍ର ପ୍ରତି ଦୃଷ୍ଟିପାତ ନ କରି ପୁନର୍ବାର ଦୃଢ଼ତା ସହିତ ଆହ୍ୱାନସୂଚକ ପତ୍ର ଲେଖିଲେ । ପଣ୍ଡିତ ମହାଶୟଙ୍କ ପତ୍ର ପାଠର ଅବ୍ୟବହିତ ପରେ ମୁଁ ଖଣ୍ଡିଏ ଖବର-କାଗଜରେ ଚୁଁଚୁଁଡ଼ା ମୁକାମରେ ବଙ୍ଗ ସାହିତ୍ୟ ସମ୍ମିଳନୀର ୫ମ ଅଧିବେଶନରେ ବଙ୍ଗର ଶ୍ରେଷ୍ଠ ପୁରୁଷ ମହାରାଜା ମଣୀନ୍ଦ୍ର ଚନ୍ଦ୍ର ନନ୍ଦୀ ଏବଂ ଅବସରପ୍ରାପ୍ତ ହାଇକୋର୍ଟର ଜଜ ଏବଂ ତତ୍ତୁଲ୍ୟ ମହାତ୍ମାମାନଙ୍କର ଯୋଗଦାନ, ସଭାର କୃତକାର୍ଯ୍ୟତା ଏବଂ ବଙ୍ଗ ସାହିତ୍ୟ ଉନ୍ନତିକଳ୍ପେ ପଞ୍ଚାଶ ସହସ୍ର ଟଙ୍କା ସଂଗ୍ରହ ଇତ୍ୟାଦି ବିଷୟ ପାଠ କରନ୍ତେ ମନରେ କେମନ୍ତ ଗୋଟାଏ ବ୍ୟାକୁଳତା ଜାତ ହେଲା । ବିଚାର କଲି, ଉତ୍କଳର ସମସ୍ତ ଶ୍ରେଣୀର ପ୍ରଧାନ ଲୋକମାନେ ମାତୃଭାଷାର ଉନ୍ନତି କାମନାରେ କେବେ ଏକତ୍ରିତ ହେବେ ! ହାୟ, ସେ ଶୁଭଦିନ କେବେ ଆସିବ ? ସଙ୍ଗେ ସଙ୍ଗେ ମୋ ମନରେ ଗୋଟିଏ ପୁଣି ନିର୍ବେଦ ଉପସ୍ଥିତ ହେଲା । ବିଚାର କଲି ଯେଉଁ ଲୋକ ଉତ୍କଳସାହିତ୍ୟ ସମାଜର ସାଦର ଆହ୍ୱାନ ଇଚ୍ଛାପୂର୍ବକ ପ୍ରତ୍ୟାଖ୍ୟାନ କରିପାରେ, ତାହାର ସନ୍ତାପ କପଟତାର ରୂପାନ୍ତର ବିନା ଆଉ କଣ ହୋଇପାରେ ?—ମୁଁ ଯେତେ ଅଯୋଗ୍ୟ ହୁଏଁ ପଛକେ, ମାତୃଭାଷା ଉନ୍ନତି ସମ୍ବନ୍ଧେ ବ୍ୟକ୍ତିଗତ ଭାବରେ ମୋହର ତ ଗୋଟାଏ କର୍ତ୍ତବ୍ୟ ଅଛି । ସେଥିବାନ୍ଧରେ ଯୋଗ ଦେବା ସକାଶ ଗୁଣ୍ଡିଚମୂଷା ମଧ୍ୟ ଅବହେଳା କରିନାହିଁ । ନିଜର କଞ୍ଚିତ୍ ଆର୍ଥିକ କ୍ଷତି ବା ପରିଶ୍ରମ ସ୍ୱୀକାର ନ କରି ଅନ୍ୟର ମୁଖାପେକ୍ଷୀ ହୋଇ ରହିବି, ଏହା କେମନ୍ତ କଥା । ମୋ ଦୃଷ୍ଟାନ୍ତ ଅବଲମ୍ବନକାରୀଙ୍କୁ ଦୋଷୀ କରିବାର ମୋହର କିଛିମାତ୍ର ଅଧିକାର ନାହିଁ । ସାହିତ୍ୟିକ ଚର୍ଚ୍ଚା ତେବେ କିପରି ହେବ ? ଏହି ସମସ୍ତ କଥା ଚିନ୍ତା କରି ରଥ ମହାଶୟଙ୍କୁ ତତ୍‌କ୍ଷଣାତ୍ ସମ୍ମତିସୂଚକ ପତ୍ର ଲେଖିଲି ।

ସଭାରେ ଯୋଗଦାନ କରିବାର ମୋହର ଆନ୍ତରିକ ଆଗ୍ରହର ଅନ୍ୟତର କାରଣ ଏହି କି, ବାଲେଶ୍ୱରରେ ଶୁଣିଥିଲି, ଏହି ସମିତି ଯୁବକମାନଙ୍କ ଯୋଗେ ପ୍ରତିଷ୍ଠିତ ଏବଂ ଚାଳିତ—ଉତ୍କଳର ଭାବୀ ଆଶା ଭରସାର ସ୍ଥଳ ଉଦୀୟମାନ ସେହି ଯୁବକମାନଙ୍କୁ ଏବଂ ମାତୃଭାଷାର ଉନ୍ନତିକାମୀ ମହାତ୍ମାମାନଙ୍କୁ ଏକତ୍ର ସମାବେଶ ଦେଖି ମୋହର ଶେଷପ୍ରାୟ ଜୀବନକୁ ଧନ୍ୟ ଜ୍ଞାନ କରିବି । ଯେଉଁ ସ୍ଥାନରେ ବାକ୍‌ଦେବୀର ଆରାଧନା ହୁଏ, ସେ ସ୍ଥାନ ପୁଣ୍ୟକ୍ଷେତ୍ର, ତୀର୍ଥସ୍ଥାନ । ବେଦାଦିରେ ପାଠ କରିବାକୁ ପାଉଁ, ମହର୍ଷିମାନେ ଏକତ୍ର ହୋଇ ବାକ୍‌ଦେବୀର ଆରାଧନା ଏବଂ ସ୍ଥଳଭାଗକୁ ତୀର୍ଥସ୍ଥାନ ଜ୍ଞାନ କରୁଥିଲେ । ନୈମିଷାରଣ୍ୟ ସେହି ଭାବର ତୀର୍ଥସ୍ଥାନ ।

ନିଶ୍ଚୟ କଥା, ମାତୃଭାଷା ପ୍ରତି ଶିକ୍ଷିତ ଲୋକମାନଙ୍କର ଅଯତ୍ନ ଗୋଟିଏ ନୈରାଶ୍ୟର କାରଣ ହୋଇ ପଡ଼ିଥିଲା । ବର୍ତ୍ତମାନ ଶିକ୍ଷିତ ମହାତ୍ମାମାନଙ୍କର ଏ ସମ୍ବନ୍ଧେ ସମବେତ କର୍ମାନୁଷ୍ଠାନ ଦେଖି ମନ ମଧ୍ୟରେ ଆଶା ପୋଷଣ କରାଯାଇପାରେ । ମାତୃଭାଷାର ଦୁର୍ଦ୍ଦଶା ଆଉ ଦୀର୍ଘକାଳ ସ୍ଥାୟିନୀ ନୁହେ । ବର୍ତ୍ତମାନ ସଭାସ୍ଥ ମହାତ୍ମାମାନଙ୍କ ଉତ୍ସାହ ଏବଂ ଯତ୍ନ ଦେଖି ଆଶା ଧ୍ରୁବ ଧାରଣାରେ ପରିଣତ ହୋଇଛି । ମୁଁ ଉତ୍କଳ ସାହିତ୍ୟ ଏବଂ ମୁକୁରରେ ଶିକ୍ଷିତ ଯୁବକମାନଙ୍କର ଲିଖିତ ଉପର୍ଯ୍ୟୁପରି କେତେଗୋଟି ପ୍ରବନ୍ଧ ଏବଂ କବିତା ମନୋଯୋଗ ସହିତ ପାଠ କରିଛି । ଶବ୍ଦବିନ୍ୟାସର ଶୃଙ୍ଖଳା, ଭାଷାର ପାରିପାଟ୍ୟ, ଭାବର ପ୍ରଗାଢ଼ତା ଦେଖି ମୁଁ ମନରେ ନିଶ୍ଚୟ କରିଛି, ଏହି ପ୍ରତିଭାଶାଳୀ ଯୁବକମାନେ ସମୟରେ ଚିହ୍ନିତ ଗ୍ରନ୍ଥକାର ରୂପେ ପରିଚିତ, ଏ ଦେଶର ମୁଖୋଜ୍ଜ୍ୱଳକାରୀ ରୂପେ ବିଖ୍ୟାତ ହେବେ । ସେମାନଙ୍କ ଯୋଗେ ମାତୃଭାଷା ବିଶେଷ ଉନ୍ନତି ଲାଭ କରିବ, ଏହା ନିଃସନ୍ଦେହରୂପେ ବୋଲି ଯାଇପାରେ । ସତ୍ୟତା ଅନୁରୋଧରେ ମୋତେ ନିତାନ୍ତ ସଙ୍କୁଚିତ ଭାବରେ ଏହା ମଧ୍ୟ ବୋଲିବାକୁ ହେଉଛି, କେତେଗୁଡ଼ିଏ କବିତା ପାଠ କଲେ ଲେଖକ ଯେ ପ୍ରାଚୀନ ଉତ୍କଳ ଭାଷା ଆଲୋଚନା କରିଅଛନ୍ତି, ଏମନ୍ତ ବୋଧ ହୁଏ ନାହିଁ । ଅନ୍ୟ ସମ୍ବନ୍ଧେ ଯାହା ହେଉ ପ୍ରାଚୀନ ଗ୍ରନ୍ଥକାର ଉପେନ୍ଦ୍ର ଭଞ୍ଜ, ଦୀନକୃଷ୍ଣ, କବିସୂର୍ଯ୍ୟ ବା ଜଗନ୍ନାଥ ଦାସ ଶବ୍ଦ ବିନ୍ୟାସ ବା ମାର୍ଜିତ ରଚନା ପ୍ରଣାଳୀ ଦେଖାଇ ଯାଇଛନ୍ତି । ନିଃସନ୍ଦେହ ସେ ସମସ୍ତ ବର୍ତ୍ତମାନ ନୂତନ ଗ୍ରନ୍ଥକାରମାନଙ୍କ ପ୍ରତି ଆଦର୍ଶସ୍ଥଳ । ମୁଁ ପ୍ରଖ୍ୟାତନାମା କବି ରାଧାନାଥଙ୍କ ଯୌବନ ଜୀବନ ବିଷୟ ଜାଣେ, ସେ କବିତା 'ଲେଖିବା ପୂର୍ବେ କେତେ ବରଷ ପର୍ଯ୍ୟନ୍ତ ପ୍ରାଚୀନ ଉତ୍କଳ କାବ୍ୟ ବିଶେଷରେ ଉପେନ୍ଦ୍ର ଭଞ୍ଜ କବିତା ଅତି ମନୋଯୋଗ ସହିତ ବିଶେଷ ଭାବରେ ଆଲୋଚନା କରିଥିଲେ । ମୁଁ ସମୟ ସମୟରେ କିଛି କିଛି କବିତା ଲେଖିବାକୁ ଚେଷ୍ଟା କରିବା ସମୟେ ଦୀନକୃଷ୍ଣ ଏବଂ ଜଗନ୍ନାଥ ଦାସଙ୍କ ପଦାଙ୍କ ଅନୁସରଣ କରି ଥାଏଁ । ଦୀନକୃଷ୍ଣ ବା ଭଞ୍ଜ କବି ଅତି ଅଳ୍ପ ଅକ୍ଷରରେ ଯେଉଁ ପ୍ରଗାଢ଼ ବିସ୍ତୃତ ଭାବମାନ ସଂକ୍ଷେପରେ ପ୍ରକାଶ କରି ଯାଇଅଛନ୍ତି, ବର୍ତ୍ତମାନ ଭାରତ ପ୍ରଚଳିତ ଯେ କୌଣସି ପ୍ରଥମ ଶ୍ରେଣୀ ଭାଷା ମଧ୍ୟରେ ବିରଳ ପ୍ରାୟ ।

କି ଧର୍ମାଲୋଚନା—କି ଜ୍ଞାନାର୍ଜନ—କି ବିଷୟ ଚର୍ଚ୍ଚା କ୍ଷେତ୍ର—ସମସ୍ତ ସମୟରେ ସହାୟ ହୁଏ, ଏଥି ସକାଶ ଏହାର ନାମ ସାହିତ୍ୟ । ସାହିତ୍ୟ ଜାତିର ଜୀବନ, ଜାତିର ବଳ, ଜାତିର ପଦମର୍ଯ୍ୟାଦା ରକ୍ଷାର ଏକମାତ୍ର ଅବଲମ୍ବନ । ଯେଉଁ ଦେଶର ଯେଉଁ ଜାତିର ସାହିତ୍ୟ ଉନ୍ନତ ନୁହେ, ସେ ଦେଶବାସୀଙ୍କ ଏହି ସମସ୍ତ ମାର୍ଗ ଅତି ସଂକୀର୍ଣ୍ଣ । ନିଶ୍ଚୟ କଥାଭାଷା ବା ଜାତୀୟ ସାହିତ୍ୟ ଜନସମାଜର ଉନ୍ନତି ପ୍ରତି ସମ୍ପୂର୍ଣ୍ଣ ନିର୍ଭର କରେ । ଏକମାତ୍ର ସାହିତ୍ୟକୁ ସମ୍ମୁଖରେ ଧରି ଜନସାଧାରଣରେ ଆତ୍ମପ୍ରତିଷ୍ଠା ସ୍ଥାପନର ପ୍ରୟାସ ଜାତୀୟ ଜୀବନ ଜାତୀୟ ଉନ୍ନତିର ଅବସ୍ଥା ସ୍ଥିର କରାଯାଇ ପାରେ । ଯେଉଁ ଜାତିର ଭାଷା ଅବନତ, ନିଶ୍ଚୟ ସେ ଜାତି ଜାଗ୍ରତ ହୋଇ ନାହାନ୍ତି । ସେମାନଙ୍କର ଉଦ୍ୟମଶୀଳତା ଅଭାବ, ପୁଣି ସେ ଜାତି ଆତ୍ମ ନିର୍ଭର କରିବାକୁ ସକ୍ଷମ ନୁହନ୍ତି । ନିଶ୍ଚୟ ସେ ଜାତିର ହୃଦୟ ବିଶେଷ ଜ୍ଞାନ ଭାବରେ ଉତ୍ତେଜନା ପ୍ରାପ୍ତ ହୋଇନାହିଁ । ସେ ଜାତି ଆତ୍ମଗୌରବ ରକ୍ଷଣରେ ଅସମର୍ଥ । ସଭ୍ୟ ଜନସମାଜରେ ସେ ଜାତିର ସ୍ଥାନ ସବ ନିମ୍ନ । ସେ ଜାତିର ପଦମର୍ଯ୍ୟାଦା ନିତାନ୍ତ ପରିନତ । ସେ ଜାତି ସଭ୍ୟ ଜାତିମଣ୍ଡଳରେ ଚିର ଉପହସିତ ଏବଂ ଅବଜ୍ଞାତ । ମହୋଦୟଗଣ ! ଭାଷାପ୍ରତିଚକ୍ଷୁ ଅବଲମ୍ବନରେ ଅମ୍ଭମାନଙ୍କ ଜାତିକୁ ଅନାଉନ୍ତୁ । ସଭ୍ୟ ସମାଜରେ ଆମ୍ଭମାନଙ୍କ ସ୍ଥାନ କେଉଁଠାରେ । ସଭ୍ୟ ମହୋଦୟଗଣ ! ଅମ୍ଭମାନଙ୍କ ଜାତୀୟ ଉନ୍ନତିର କି ଉପାୟ ନାହିଁ - ଅବଶ୍ୟ ଅଛି,

ତାହା ମଧ୍ୟ ସହଜ ସାଧ୍ୟ । ସେହି ଉପାୟ ଆମ୍ଭମାନଙ୍କ ଶ୍ରଦ୍ଧା-ଯତ୍ନ-କଷ୍ଟର ତ୍ୟାଗ ସ୍ୱୀକାର ପ୍ରତି ନିର୍ଭର କରେ । ଆପଣା ଉନ୍ନତି ସାଧନରେ ଆପେ ଯତ୍ନ ନ କରି ଫଳ ପ୍ରତ୍ୟାଶାରେ ଅନ୍ୟ ପ୍ରତି ନିର୍ଭର କରିବା ବିଡ଼ମ୍ବନା ମାତ୍ର । ଅବଶ୍ୟ ବର୍ତ୍ତମାନ ଆମ୍ଭେମାନେ ପୃଥିବୀ ବ୍ୟାପ୍ତ ବିଷୟ ସମ୍ପତ୍ତି ଗରିଷ୍ଠ ରାଜଭାଷା ଇଂରେଜୀ ଭାଷା ଅଧ୍ୟୟନରେ ବିଶେଷ ଯତ୍ନଶୀଳ । ମାତ୍ର ନିଶ୍ଚୟ ଜାଣିବେ, ପ୍ରକୃତ ସାହିତ୍ୟ ମାତୃଭାଷାର ସମ୍ପତ୍ତି । ଯେ ପର୍ଯ୍ୟନ୍ତ ମାତୃଭାଷା ଉନ୍ନତି ଲାଭ କରି ନାହିଁ, ସେ ପର୍ଯ୍ୟନ୍ତ ଆମ୍ଭେମାନେ ପ୍ରକୃତ ସାହିତ୍ୟରସାସ୍ୱାଦନରୁ ବଞ୍ଚିତ । ଶତ ସହସ୍ର ରୂପେ ଚେଷ୍ଟା କଲେ ମଧ୍ୟ ପରକୀୟ ଭାଷାକୁ ଆତ୍ମସାତ୍ କରିବାକୁ ତୁମ୍ଭେ ନିତାନ୍ତ ଅକ୍ଷମ । ପାର୍ଶ୍ୱବର୍ତ୍ତୀ ଘଟଣାବଳୀ ପ୍ରତି ଦେଖନ୍ତୁ, ଏହା ଯେମନ୍ତ ପ୍ରକୃତିର ଅମୋଘ ଆଦେଶ । ଭଗବାନ ଯେମନ୍ତ ଭିନ୍ନ ଭିନ୍ନ ଜାତି ସକାଶେ ଭିନ୍ନ ଭିନ୍ନ ଭାଷା ବିଧାନ କରି ଦେଇ ଅଛନ୍ତି । ଏହା ଆମ୍ଭମାନଙ୍କର କଳ୍ପନାସମ୍ଭୂତ କଥା ନୁହେ । ଇଂରେଜୀ ଧର୍ମଶାସ୍ତ୍ର ବାଇବଲରେ ସୁସ୍ପଷ୍ଟ ଲେଖାଅଛି—ପରମେଶ୍ୱର ଲୋକମାନଙ୍କର ଭାଷା ପୃଥକ୍ ପୃଥକ୍ ବିଧାନ କରି ଦେଲେ । ଆମ୍ଭମାନଙ୍କ ଆର୍ଯ୍ୟ ଧର୍ମଶାସ୍ତ୍ରରେ ମଧ୍ୟ ଉପସ୍ଥିତ ବିଷୟରେ ଅନେକ ପ୍ରମାଣ ବିଦ୍ୟମାନ ରହିଅଛି । ଭଗବାନ ବୁଦ୍ଧଦେବ ବୁଝିଥିଲେ, ଜଗତସ୍ଥ ସମସ୍ତ ଲୋକ ଏକ ପରମେଶ୍ୱରଙ୍କ ସନ୍ତାନ । ସୁତରାଂ ଭ୍ରାତୃ ସମ୍ବନ୍ଧରେ ଆବଦ୍ଧ ମାତ୍ର ଦେଶ ଭେଦେ ଜଳବାୟୁଭେଦରେ ଆକାର, ପ୍ରକୃତି ଏବଂ ଭାଷା ପୃଥକ୍ ପୃଥକ୍ । ପୂର୍ବକାଳ ଭାରତବର୍ଷରେ ଏକମାତ୍ର ସଂସ୍କୃତ ଭାଷା ଆଲୋଚ୍ୟ ଏବଂ ଧର୍ମଗ୍ରନ୍ଥ ଲିଖିତ ଭାଷା ଥିଲା । ମାତ୍ର ଭଗବାନ ସଂସ୍କୃତ ଭାଷା ପରିତ୍ୟାଗ କରି ତାହାଙ୍କ ମାତୃଭାଷା ପାଲି ଭାଷାରେ ଲିଖିତ ଉପଦେଶ ଦେଇଯାଇଅଛନ୍ତି । ବୌଦ୍ଧ ଧର୍ମଶାସ୍ତ୍ର ପାଲିଭାଷାରେ ଲିଖିତ । ତାହାଙ୍କ ସମୟଠାରୁ ଭାରତରେ ପୈଶାଚୀ, ମାଗଧୀ, ଦ୍ରାବିଡ଼ ଏବଂ ଅନ୍ୟାନ୍ୟ ପ୍ରାଦେଶିକ ଭାଷାମାନ ଲିଖିତ ଏବଂ ଆଲୋଚ୍ୟ ଭାଷାରୂପେ ପରିଣତ ହୁଏ । ଆମ୍ଭେମାନେ ଅନୁମାନ କରୁଁ ଉତ୍କଳ ଭାଷା ବୌଦ୍ଧ ଯୁଗଠାରୁ ଲିଖିତ ଭାଷାରୂପେ ବ୍ୟବହୃତ ହୋଇଅଛି । ଉତ୍କଳର ନାନା ପ୍ରଦେଶରେ ଚୂଳାଭଣା, ଶରୀରଭେଦ ବା ଶରୀର ଭେଦ ଆତ୍ମଜ୍ଞାନ ନାମକ ଅନେକଗୁଡ଼ିଏ ପୁସ୍ତକ ଦେଖିବାକୁ ମିଳେ । ଦୀର୍ଘକାଳ ଯାବତ୍ ଲେଖକ ଓ ପାଠକ ପରମ୍ପରା ଯୋଗୁଁ ଏହାର ଭାବ ଓ ଭାଷା ଅନେକ ପରିବର୍ତ୍ତିତ ହୋଇଅଛି; ମାତ୍ର ମୂଳ ବିଷୟ ବୌଦ୍ଧ ଭାବରେ ପରିପୂର୍ଣ୍ଣ ।

ପୃଥିବୀର ଇତିହାସ ଆଲୋଚନା କରି ଦେଖନ୍ତୁ, କେହି ଜାତି ପରକୀୟ ଭାଷା ବଳରେ ପ୍ରକୃତ ଉନ୍ନତି ଲାଭ କରିବାକୁ ସକ୍ଷମ ହୋଇନାହିଁ । ଜାତି ମଧ୍ୟରେ ପରକୀୟ ଭାଷାର ପ୍ରଭାବ କିପରି ଜାଣନ୍ତି ? ନଦୀରେ ବଢ଼ି ପାଣି ପ୍ରବେଶ କରି । ବଢ଼ି ପାଣି ନଦୀର ଗର୍ଭ ଓ କୂଳ ଏବଂ ନଦୀର ନିଜ ଜଳକୁ ଆନ୍ଦୋଳିତ କରି ଉନ୍ମତ୍ତ ଭାବରେ ଧାବିତ ହେଉଥାଏ; ମୂଳ ସ୍ରୋତ ରହିତ ହେଲେ ବଢ଼ିର ଚିହ୍ନ ମାତ୍ର ସ୍ଥାନେ ସ୍ଥାନେ ସ୍ଥାପନ କରି ନବାଗତ ପାଣି ବହିଯାଏ । ୫୦।୬୦ ବରଷ ପୂର୍ବରେ ଏହି ଉତ୍କଳ ଦେଶରେ ପାରସ୍ୟ ଭାଷା ରାଜଭାଷା; ସୁତରାଂ ଆଲୋଚ୍ୟ ଭାଷାରୂପେ ବ୍ୟବହୃତ ହେଉଥିଲା । ସମ୍ଭ୍ରାନ୍ତ ଲୋକଙ୍କ ଘର ପିଲାମାନେ ବିଧି ରକ୍ଷା କରି ଅବଧାନ ଚାଟଶାଳୀରେ ଉଡ଼ାଙ୍କ ଫେଡ଼ାଙ୍କ ନଳ ଭିଆଣ ପର୍ଯ୍ୟନ୍ତ ଉତ୍କଳ ଭାଷାର ପାଠ ସମାପ୍ତ କରି ପାରସି ପଢ଼ିବା ପାଇଁ ଆଖୁନଜୀ ସେବାରେ ନିଯୁକ୍ତ ହେଉଥିଲେ । ସେ ସମୟରେ ପାର୍ସିମିଶା ଓଡ଼ିଆ ବା ବଙ୍ଗଳାରେ କଥା କହିବା ଜ୍ଞାନବାନର ପରିଚୟକସ୍ୱରୂପ ଥିଲା । ବଡ଼ ଲୋକମାନେ ପାରସ୍ୟ ଭାଷାରେ ଘରର ଆୟ ବ୍ୟୟ ହିସାବ ରଖୁଥିଲେ । କେବଳ ଭାଗବତ ରାମାୟଣ ପ୍ରଭୃତି ଧର୍ମ ଶାସ୍ତ୍ର ଉତ୍କଳ ଭାଷାକୁ

ଧରି ରଖିଥିଲ । ହାୟ, ଆମ୍ଭମାନଙ୍କ ପୂର୍ବ ପୁରୁଷମାନେ ରାଜଭାଷା ସହିତ ମାତୃଭାଷା ଚର୍ଚ୍ଚା କରୁଥିଲେ, ଆମ୍ଭମାନଙ୍କ ପାଇଁ କେତେ ସମ୍ପତ୍ତି ସଞ୍ଚିତ ରହିଥାନ୍ତା ।

ଆଉ ଗୋଟିଏ କଥା, ବର୍ତ୍ତମାନ କାଳରେ ରାଜଭାଷା ଇଂରେଜୀରେ ବହୁଳ ଚର୍ଚ୍ଚା ହେଉଅଛି ସତ୍ୟ; ମାତ୍ର ଏହି ଦୁରୂହ ବିଦେଶୀୟ ଭାଷା ନିମ୍ନ ଶ୍ରେଣୀ ପର୍ଯ୍ୟନ୍ତ ପ୍ରବେଶ କରିବା ସହଜ ବ୍ୟାପାର ନୁହେଁ । ପୁଣି ସର୍ବସାଧାରଣ କନ୍ୟା ଭଗ୍ନୀମାନେ ଏହି ଭାଷାକୁ ଆୟତ୍ତ କରି ପାରିବେ ଏପରି ଆଶା କରିବା ବିଡ଼ମ୍ବନା ମାତ୍ର । ବାଲ୍ୟ ଜୀବନର ପ୍ରକୃତ ଶିକ୍ଷୟିତ୍ରୀ ଉପଦେଷ୍ଟ୍ରୀ ମାତାମାନେ ଶିକ୍ଷିତା ନ ହେଲେ ଜାତି ମଧ୍ୟରେ ପ୍ରକୃତ ଶିକ୍ଷା ବିସ୍ତାର କଦାଚ ସମ୍ଭବପର ନୁହେଁ, ଅନ୍ତତଃ ଭବିଷ୍ୟତ ମାତାମାନଙ୍କୁ ଶିକ୍ଷିତା କରାଇବା ନିମନ୍ତେ ମାତୃଭାଷାର ଉନ୍ନତି ନିତାନ୍ତ ଆବଶ୍ୟକ ଅଟେ । ଆମ୍ଭମାନଙ୍କ ଭାବୀ ପୁରୁଷ ପୁତ୍ର ପୌତ୍ରମାନଙ୍କ ଭରଣପୋଷଣ ବା ସୁଖ ସ୍ୱାଚ୍ଛନ୍ଦ୍ୟ ବିଧାନ ନିମନ୍ତେ ଅର୍ଥୋପାର୍ଜ୍ଜନ ବା ସଞ୍ଚୟ ସକାଶ କେତେ ଯେ ଯତ୍ନ କରିଥାଉଁ । ସେମାନଙ୍କୁ ସଭ୍ୟ ସମାଜରେ ଗଣ୍ୟ କରାଇବା ନିମନ୍ତେ ଏବଂ ସେମାନଙ୍କ ଜ୍ଞାନାର୍ଜନର ମାର୍ଗ ପ୍ରଶସ୍ତ ନିମନ୍ତେ ଦେଶୀୟ ସାହିତ୍ୟ ଉନ୍ନତି କି ପ୍ରୟୋଜନୀୟ ନୁହେଁ ? ଆମ୍ଭମାନଙ୍କ ନିକଟ ପ୍ରତିବାସୀ ବଙ୍ଗୀୟ ଜନସମାଜର ଅବସ୍ଥା ପ୍ରତି ଦୃଷ୍ଟିପାତ କରନ୍ତୁ, ସେମାନେ ବର୍ତ୍ତମାନ ସଭ୍ୟସମାଜରେ ଗୌରବ ଲାଭ ନିମନ୍ତେ କେତେଦୂର କ୍ଷମ ହେଲେଣି । ବର୍ତ୍ତମାନ ପୃଥିବୀରେ ଚଳିତ ଅନ୍ୟାନ୍ୟ ପ୍ରଧାନ ପ୍ରଧାନ ଭାଷା ସହିତ ବାହୁ ମିଳାଇ ଅନେକଗୁଡ଼ିଏ ବଙ୍ଗ ଭାଷା ଲିଖିତ ପୁସ୍ତକ ନାନା ଭାଷାରେ ଅନୁବାଦିତ । ସେଥି ସକାଶ ବଙ୍ଗ ସନ୍ତାନମାନଙ୍କର ଜଗତରେ ଏତେଦୂର ପ୍ରତିଷ୍ଠା । ଯଦି ବଙ୍ଗ ଭାଷା ସେମାନଙ୍କ ଠାରୁ ବାହାର କରି ନିଆଯାଏ, ସେମାନଙ୍କ ସ୍ଥାନ କେଉଁଠାରେ ହେବ ? ଆପଣମାନେ ଅବଶ୍ୟ ଜାଣନ୍ତି, ସେମାନେ ଅଦମ୍ୟ ଉତ୍ସାହ, ଅଧ୍ୟବସାୟ, ମାତୃଭାଷା ପ୍ରତି ପ୍ରୀତି ବଳରେ ଅଳ୍ପକାଳ ମଧ୍ୟରେ ଏପରି ସୁଯଶ ଅର୍ଜ୍ଜନରେ ସମର୍ଥ ହୋଇଛନ୍ତି । ଜଗତରେ ଭାରତଭୂମିର ଯେ ଏତେ ଗୌରବ, ସଂସ୍କୃତ ଭାଷା କି ସେଥିର ମୂଳାଧାର ନୁହେ ? ଭାରତରେ ବର୍ତ୍ତମାନ ୩୬୪ ପ୍ରକାର ଭାଷା ପ୍ରଚଳିତ ଅଛି । ସେଥିମଧ୍ୟରେ ଯେତେ ପ୍ରକାର ଲିଖିତ ପ୍ରସିଦ୍ଧ ଭାଷା ଅଛି, ପ୍ରାଚୀନତ୍ୱରେ ଅଙ୍ଗ-ସୌଷ୍ଠବ ଗୁଣରେ ଉତ୍କଳ ଭାଷା କାହାରିଠାରୁ ନିଷ୍ଟୟ ନ୍ୟୂନ ନୁହେ । ପ୍ରତ୍ନତତ୍ତ୍ୱବିଦ୍ ମହାପଣ୍ଡିତ ବେଣ୍ଟଲି ସାହେବଙ୍କ ମତରେ ପ୍ରାୟ ୪୨ ଶତ ବରଷ ପୂର୍ବେ ଲିଖିତ ମାନବ ଧର୍ମଶାସ୍ତ୍ରରେ ଉତ୍କଳର ନାମ ଉଲ୍ଲେଖ ଅଛି, ଅନ୍ୟ କେତେଜଣ ମହାତ୍ମା ମାନବ ଧର୍ମଶାସ୍ତ୍ର ଛ ସହସ୍ର ବର୍ଷ ପୂର୍ବ ଲିଖିତ ପ୍ରମାଣ କରାଇବା ନିମନ୍ତେ ନାନା ପ୍ରକାର ଯୁକ୍ତିର ଅବତାରଣା କରାଇ ଯାଇଛନ୍ତି । ମହାଭାରତ ଓ ଅନ୍ୟାନ୍ୟ ପୁରାଣ ଏବଂ ସ୍ମୃତି ଶାସ୍ତ୍ରରେ ଉତ୍କଳର ନାମ ପୁନଃ ପୁନଃ ଉଲ୍ଲିଖିତ ଥିବାର ଦେଖାଯାଏ । ୨୫ ଶତ ବରଷ ପୂର୍ବେ ଯୁବକ ଶାକ୍ୟସିଂହ ଭାବୀ ଶ୍ୱଶୁରଙ୍କ ନିକଟରେ ଆତ୍ମବିଦ୍ୟାର ପରିଚୟ ଦେବା ନିମନ୍ତେ ଯେଉଁ ୬୪ ପ୍ରକାର ଅକ୍ଷର ଲେଖିଥିଲେ, ସେଥି ମଧ୍ୟରେ ଉତ୍କଳାକ୍ଷର ଅନ୍ୟତମ ଅଟେ । ପନ୍ଦର ଶତ ବରଷ ପୂର୍ବରେ ଉତ୍କଳରେ ଲିଖିତ ପୃଷ୍ଠାଙ୍କ ଭାଷା ବିଦ୍ୟମାନ ଥିବାର ଦେଖାଯାଏ । ହାୟ ! ଆମ୍ଭମାନଙ୍କ ଦୁର୍ଭାଗ୍ୟ,କି ଅଯତ୍ନଶୀଳ, ଏମନ୍ତ ପ୍ରାଚୀନ ଏମନ୍ତ ଅଙ୍ଗ ସୌଷ୍ଠବ ସମ୍ପନ୍ନା ଭାଷା ପ୍ରାପ୍ତ ହୋଇ ମଧ୍ୟ ତାହାର ସଦ୍‌ବ୍ୟବହାରରେ ଉଦାସୀନ ହୋଇଅଛୁଁ । ଅଙ୍ଗ ପ୍ରସାଦନ ବିରହିତା ସ୍ୱଭାବ-ସୁନ୍ଦରୀ ମଧ୍ୟ ସହଜ ଦୃଷ୍ଟିରେ ନିତାନ୍ତ କୁତ୍ସିତା ପରି ପ୍ରତୀୟମାନ ହୁଏ । ମଧୁମକ୍ଷିକା ନାନା ପୁଷ୍ପରେ ବିଚରଣ କରି ଆପଣା ପାଇଁ ଏବଂ ଭାବୀ ପୁରୁଷମାନଙ୍କ ସକାଶେ ମଧୁଚକ୍ର ଭଣ୍ଡାରରେ ମଧୁ ସଞ୍ଚୟ କରି ରଖେ । ଆମ୍ଭମାନଙ୍କ ସାକ୍ଷାତରେ ବର୍ତ୍ତମାନ ବିଷମ୍ଭ ବହୁଳା ଅଙ୍ଗ ସୌଷ୍ଠବ ଗରିଷ୍ଠା ସୁପ୍ରସିଦ୍ଧ ଭାଷାମାନ ଏବଂ ଭାରତୀୟ

ସମସ୍ତ ଭାଷାର ଜନନୀ ସ୍ୱରୂପା ସଂସ୍କୃତ ଭାଷା ବିଦ୍ୟମାନ । ଆମ୍ଭେମାନେ ସେଥିରୁ ସାରାଂଶମାନ ଗ୍ରହଣ କରି ମାତୃଭାଷାର ଉନ୍ନତି ବିଧାନ କରିବାକୁ ସହଜରେ କ୍ଷମ ହୋଇପାରୁଁ ।

ଆମ୍ଭମାନଙ୍କ ମାତୃଭାଷାର ଉନ୍ନତି ସକାଶ କିଏ ଦାୟୀ ? ଦେଶର ପ୍ରତ୍ୟେକ ଲୋକ ଦାୟୀ ଅଟନ୍ତି । ପ୍ରତ୍ୟେକ ଲୋକ ଅର୍ଥ କଣ ଦେଶର ପନ୍ଦର ପଣ ଲୋକ ଅଶିକ୍ଷିତ, ସେମାନେ କିଛି ବୁଝନ୍ତି ନାହିଁ । ଆମ୍ଭମାନଙ୍କର ବୋଲିବାର ଉଦ୍ଦେଶ୍ୟ ପ୍ରତ୍ୟେକ ଶିକ୍ଷିତ ଲୋକ ଏଥିସକାଶ ଦାୟୀ । ସେମାନେ ଆପଣା ଆପଣା କର୍ମରେ ଅବହେଳା କଲେ ନିଜ ପ୍ରତି, ଦେଶପ୍ରତି, ଭାବୀପୁରୁଷମାନଙ୍କ ପ୍ରତି, ନଯୁନପ୍ରତିମାରୂପା କନ୍ୟା ଭଗ୍ନୀମାନଙ୍କ ପ୍ରତି ଅବହେଳା କରିବାର ହୁଏ । କର୍ତ୍ତବ୍ୟର ଅବହେଳା ପ୍ରତ୍ୟବାୟର ହେତୁଭୂତ କି ନାହିଁ, ଆପଣମାନେ ବିଚାର କରି ଦେଖନ୍ତୁ, ଆମ୍ଭମାନଙ୍କର ଏତିକି ମାତ୍ର ପ୍ରାର୍ଥନା ।

ଯେଉଁ ଲୋକ ମାତୃଭାଷା ଚର୍ଚ୍ଚା ଏବଂ ଉନ୍ନତି ସାଧନରେ ବିମୁଖ, ତାହାଙ୍କ ମନରେ ସ୍ୱଦେଶପ୍ରୀତି ସ୍ୱଜାତିପ୍ରୀତିର ବିରଳ ସଞ୍ଚାର ବୋଲି ନିଷ୍ଟୟରୂପେ ବୋଲି ଯାଇପାରେ । ସ୍ୱଦେଶ ସ୍ୱଜାତି ଅର୍ଥ ସ୍ୱଦେଶ ଭାଷା; ଅର୍ଥାତ୍ ଭାଷାର ନାମାନୁସାରେ ଦେଶର ଏବଂ ଜାତିର ନାମକରଣ ହୋଇଥାଏ । କେଉଁଟା ବଙ୍ଗ ଦେଶ ? ଅର୍ଥ—ଯେଉଁ ଦେଶରେ ବଙ୍ଗଭାଷା ପ୍ରଚଳିତ । କିଏ ବଙ୍ଗାଳୀ ଜାତି —ଅର୍ଥ ଯେଉଁମାନେ ବଙ୍ଗଭାଷାରେ କଥୋପକଥନ କରନ୍ତି । ଭାଷା ବା ଦେଶର ଉନ୍ନତିକାମୀମାନଙ୍କ ପକ୍ଷରେ ଉଭୟ ପ୍ରତି ପ୍ରୀତି ପ୍ରୟୋଜନୀୟ ।

ଉପସ୍ଥିତ ପ୍ରସଙ୍ଗରେ କିଞ୍ଚିତ୍ ଦୂରବର୍ତ୍ତୀ କଥା ହେଲେ ମଧ୍ୟ ମୁଁ ଗୋଟିଏ ବିଷୟ ଏଠାରେ ଉଲ୍ଲେଖ କରିବାକୁ ଇଚ୍ଛା କରେଁ । କେତେକ ବର୍ଷ ପୂର୍ବେ ବିଷୟ ବିଶେଷ ସମ୍ବନ୍ଧରେ ଉତ୍କଳୀ ଏବଂ ବଙ୍ଗାଳୀ ଜାତି ମଧ୍ୟରେ କିଞ୍ଚିତ୍ ମନୋମାଳିନ୍ୟର କାରଣ ଘଟିଥିଲା । କୌଣସି ଜଣେ ବଙ୍ଗବାସୀ ଉତ୍କଳ ନାମ ଉଲ୍ଲେଖ କରି ବିଦ୍ରୂପ ସୂଚକ କିଛି କଥା କହିବାରୁ ବାବୁ ମଧୁସୂଦନ ଦାସ ସ୍ୱାଭାବିକ ତେଜସ୍ୱିନୀ ଭାଷାରେ ଉତ୍ତର ଦେଲେ, "ତୁମ୍ଭେ ମୋହର ନିନ୍ଦାବାଦ କରିପାର, ମୋତେ ଗାଳି ଦେଇପାର; ମାତ୍ର ମୋ ଦେଶର ନାମୋଲ୍ଲେଖ କରିବାର ତୁମ୍ଭର କିଛିମାତ୍ର ଅଧିକାର ନାହିଁ ।" ଯାହାର ଏତେ ଦୂର ଦେଶପ୍ରୀତି, ସେ ଦେଶପାଇଁ ସମସ୍ତ ଅର୍ଥ, ସମସ୍ତ ସାମର୍ଥ୍ୟ ସହଜରେ ସମର୍ପଣ କରିପାରେ । କେବଳ କଥାରେ ନୁହେ, ମଧୁବାବୁ ଜୀବନରେ ସେଥିର ନିଦର୍ଶନ ଦେଖାଉ ଅଛନ୍ତି । ମୁଁ ଦିନକ ପାଇଁ ଏ କଥା ଭୁଲିନାହିଁ, କେତେ ପୁଣ୍ୟ ବଳରେ କେତେ ଯୁଗଯୁଗାନ୍ତ ଉତ୍ତାରେ ଉତ୍କଳଭୂମି ଏମନ୍ତ ଗୋଟିଏ ସନ୍ତାନ ଲାଭ କରିଛନ୍ତି । ମଧୁବାବୁ ଗୋଟିଏ ଶାପଭ୍ରଷ୍ଟ ଦେବତା ।

ମାନବ ମାତ୍ରର ସ୍ୱଭାବସିଦ୍ଧ ଧର୍ମଜନନୀ ବା ଜନ୍ମଭୂମିର ନିନ୍ଦାବାଦ ଅସହ୍ୟ—ହେଲେ ଯେଉଁମାନେ ସେମାନଙ୍କ ଅଭାବ ମୋଚନରେ ତତ୍ପର, ସେହିମାନେ କେବଳ ସୁସନ୍ତାନ ପଦବାଚ୍ୟ ।

ଜାତୀୟ ସାହିତ୍ୟ ଉନ୍ନତିକଳ୍ପେ ଶିକ୍ଷିତ ଲୋକମାନଙ୍କର ଗୁଟିଗୋଟି ଉପାୟ ଅବଲମ୍ବନ କରିବାର ଉଚିତ—

୧ । ଜାତୀୟ ସାହିତ୍ୟ ପାଠ କର;
୨ । ପାଠ କରାଅ;
୩ । ଲେଖ;
୪ । ଲେଖାଅ —

ମୋତେ ସଙ୍କୁଚିତ ଓ ଦୁଃଖିତ ଭାବରେ ବୋଲିବାକୁ ହେଉଛି, ଆମ୍ଭମାନଙ୍କ ମଧ୍ୟରେ ଉଚ୍ଚ ଶିକ୍ଷିତ ଲୋକ ମଧ୍ୟରେ ମାତୃଭାଷାର ଚର୍ଚ୍ଚା କରି

ପଢ଼ିବାର ରୁଚି ଜାତ ହୋଇନାହିଁ; ଅଥବା ବଡ଼ ବଡ଼ ଆକାର ସୁନ୍ଦର ବନ୍ଧାଇ ନାନା ଭାବପୂର୍ଣ୍ଣ ପୁସ୍ତକମାନ ସଚରାଚର ସେମାନଙ୍କ ହସ୍ତରେ ଥିବାରୁ ସାମାନ୍ୟ ବନ୍ଧାଇ ଚଟି ବହି ପ୍ରତି ଅବଜ୍ଞା ଜାତ ହେବା ସ୍ୱାଭାବିକ। ହେଲେ ସେମାନଙ୍କର ବିଚାର କରିବାର ଉଚିତ, ଅନ୍ୟର ସୌଭାଗ୍ୟବତୀ ମାତାକୁ ଭକ୍ତି ଓ ପୂଜା କରିବା ସମୟରେ ହେ ଦରିଦ୍ର ସନ୍ତାନ, ସେହି ସମୟରେ ମାତାର ଅବସ୍ଥା ଉନ୍ନତି ସକାଶେ ଯତ୍ନ କରିବାର ଅଥବା ଅବଜ୍ଞାଭାବରେ ତାହାକୁ ତଡ଼ି ଦେବାର ଉଚିତ—ଏହା ଆପଣମାନଙ୍କର ବିଚାର୍ଯ୍ୟ ବିଷୟ ଅଟେ। ଶ୍ରେଷ୍ଠ ଲୋକର କାର୍ଯ୍ୟକୁ ଇତର ସାଧାରଣେ ଅନୁକରଣ କରିଥାନ୍ତି। ଶିକ୍ଷିତ ସମାଜରେ ଯଦି ମାତୃଭାଷାର ଏପରି ଦୁର୍ଦ୍ଦଶା ହୁଏ, ଇତର ସାଧାରଣଠାରୁ ଅଧିକ କଣ ପ୍ରତ୍ୟାଶା କରାଯାଇ ପାରେ। ଭାଷା ଚର୍ଚ୍ଚା, ସମିତିରେ ଆପଣମାନେ ଉପେନ୍ଦ୍ର ଭଞ୍ଜ ବା ଜଗନ୍ନାଥ ଦାସ ନାମ ଶୁଣିଲେ ହାତ ତାଳି ଦେଇଥାନ୍ତି, ଅଥବା ବର୍ତ୍ତମାନ ଯୁଗର କବି ରାଧାନାଥର ନାମ ଆପଣମାନଙ୍କ ଠାରେ କେତେ ଆଦରର ସାମଗ୍ରୀ; ମାତ୍ର ଅନ୍ୱେଷଣ କରି ଦେଖନ୍ତୁ ତ ସେମାନଙ୍କ ରଚିତ ପୁସ୍ତକ ଆପଣମାନଙ୍କ ଘରେ କେତେ ଖଣ୍ଡ ଅଛି ! ସାହିତ୍ୟ କଥା ଛାଡ଼ି ଦିଅ, ଧର୍ମ ଚର୍ଚ୍ଚା ଭାବରେ ଦେଖନ୍ତୁ ପ୍ରତ୍ୟେକ ଖ୍ରୀଷ୍ଟାନ ଘରେ ବାଇବେଲ ପୁସ୍ତକ, ପ୍ରତ୍ୟେକ ମୁସଲମାନ ଘରେ କୋରାନ ବର୍ତ୍ତମାନ, ଉତ୍କଳର ଜାତୀୟ ଧର୍ମ ଗ୍ରନ୍ଥ ଜଗନ୍ନାଥ ଦାସ ଭାଗବତ ଆପଣମାନଙ୍କ ଘରୁ ବାହାରିବ ତ ? କଟକ କଲେଜର ଭୂତପୂର୍ବ ପ୍ରିନ୍‌ସିପଲ ସ୍ୱର୍ଗୀୟ ନୀଳକଣ୍ଠ ମଜୁମଦାରଙ୍କ ସହିତ ମୋହର ବିଶେଷ ସଦ୍ଭାବ ଥିବାରୁ ମୁଁ ସଚରାଚର ତାହାଙ୍କ ବସାକୁ ଯାଉଥିଲି, ଦେଖେଁ ତାହାଙ୍କ ଘରେ ରାଶିକୃତ ବଙ୍ଗଳା ପୁସ୍ତକ ସଞ୍ଚିତ, ନୂତନ ପୁସ୍ତକ ପ୍ରଚାର ମାତ୍ର ସେ ଖଣ୍ଡେ ଖଣ୍ଡେ କିଣି ଥାନ୍ତି। ମୁଁ ଦିନେ ପଚାରିଲି ଆପଣଙ୍କୁ ତ କେବେ ବଙ୍ଗଳା ପୁସ୍ତକ ପଢ଼ିବାର ଦେଖାଯାଏ ନାହିଁ; ତେବେ କି ସକାଶ କିଣିଥାନ୍ତି—ମୋ ପ୍ରଶ୍ନର ସେ ଠିକ ଏହି ଉତ୍ତର ଦେଇଥିଲେ—

"ଆମର ମାତୃଭାଷାର ପୁସ୍ତକ ମୁଁ ଯଦି ନ କିଣେ, ତେବେ ଅନ୍ୟମାନେ କାହିଁକି କିଣିବେ। ତାହାହେଲେ ମାତୃଭାଷାର ଉନ୍ନତି ହେବ ନାହିଁ। ଆପଣଙ୍କ ଦେଶରେ ଲୋକମାନେ ତାହା ବୁଝନ୍ତି ନାହିଁ; ତେଣୁ ଓଡ଼ିଆ ଭାଷାର ଏତେ ଅବନତି।"

ବାଲେଶ୍ୱରରେ ବର୍ତ୍ତମାନ ମୋହର ଦୁଇ ଜଣ ବଙ୍ଗାଳୀ ବନ୍ଧୁ ଅଛନ୍ତି। ରାଶିକୃତ ବଙ୍ଗଳା ପୁସ୍ତକ ସେମାନଙ୍କ ଘରେ ସଞ୍ଚିତ, ଅଥଚ ପଢ଼ିବାର ସେମାନଙ୍କର ଅବକାଶ ନାହିଁ।

ଭଦ୍ର ମହାଶୟଗଣ, ଅନୁଗ୍ରହ କରି ଆପଣମାନଙ୍କ ଆଲମାରି ପ୍ରତି ଦୃଷ୍ଟିପାତ କରନ୍ତୁ, କେତେ ମୂଲ୍ୟବାନ୍ ଇଂରେଜୀ ଓ ସଂସ୍କୃତ ପୁସ୍ତକ ସଞ୍ଚିତ ଅଛି, ଥିବାର ମଧ୍ୟ ନିତାନ୍ତ ଆବଶ୍ୟକ; ମାତ୍ର ସୌଖିନ ଭାବରେ କେତେ ଖଣ୍ଡ ବଙ୍ଗଳା ପୁସ୍ତକ ମଧ୍ୟ କିଣି ରଖିଛନ୍ତି, ମାତ୍ର ଓଡ଼ିଆ ପୁସ୍ତକ କେତେ କିଣି ଅଛନ୍ତି କି ? ଅନାଦୃତ ବସ୍ତୁର ଉନ୍ନତି ସମ୍ଭାବନା ନିତାନ୍ତ ବିରଳ।

ଉତ୍କଳ ପୁସ୍ତକ ପରି ଉତ୍କଳ ସାମୟିକ ପତ୍ରିକା-ମାନଙ୍କର ଦୁର୍ଦ୍ଦଶା ମଧ୍ୟ ତତୋଽଧିକ। ବଙ୍ଗ ଦେଶରେ ବର୍ତ୍ତମାନ ୧୦୭ ଖଣ୍ଡ ମାସିକ ପତ୍ରିକା ଉତ୍ସାହପୂର୍ଣ୍ଣ ବେଗରେ ଚଳୁଛି, ଉତ୍କଳର ଦୁର୍ଦ୍ଦଶା ଦେଖ। ମୁଁ ବାବୁ ବିଶ୍ୱନାଥ କର, ବାବୁ ବ୍ରଜସୁନ୍ଦର ଦାସ ମହାଶୟମାନଙ୍କୁ ଶତବାର ଧନ୍ୟବାଦ ପ୍ରଦାନ କରିଥାଏଁ। ସେମାନେ ଜୀବନ ବ୍ରତକରି ଉପଯୁକ୍ତ ଲାଭର ପ୍ରତ୍ୟାଶା ପରିତ୍ୟାଗପୂର୍ବକ ମନ ପ୍ରାଣ ସମର୍ପଣ କରି ନ ଥିଲେ ଉତ୍କଳରୁ ମାସିକ ପତ୍ରିକାର ନାମ ପର୍ଯ୍ୟନ୍ତ ବିଲୁପ୍ତ ହୋଇ ଥାଆନ୍ତା। ମୁଁ ଏଥି ପୂର୍ବେ ଦୁଇଜଣ ଶିକ୍ଷିତ ପଦସ୍ଥ ଲୋକଙ୍କୁ ଉତ୍କଳ ସାହିତ୍ୟର

ଗ୍ରାହକ ହେବା ସକାଶ ଅନୁରୋଧ କରିଥିଲି, ଜଣେ ଉତ୍ତର ଦେଲେ 'ଓଡ଼ିଆ କାଗଜରେ କଣ ଅଛି ଯେ, ଟଙ୍କା ଦେଇ କିଣିବୁଁ ।' ଅନ୍ୟ ଜଣେ ଉତ୍ତର ଦେଇଥିଲେ, 'ନିତାନ୍ତ ସ୍ୱଦେଶହିତୈଷିତା ଦେଖାଇ ବାକୁ ନ ଗଲେ କେହି ଓଡ଼ିଆ କାଗଜ କିଣେ ନାହିଁ ।' ସେମାନେ କେବେହେଲେ ସାହିତ୍ୟ ଓ ମୁକୁର ସ୍ପର୍ଶ କରିଥିଲେ ନିଶ୍ଚୟ ବୋଲନ୍ତେ ଏହି ଦୁଇଖଣ୍ଡି ବଙ୍ଗଳାର ଅନେକ ଦ୍ୱିତୀୟ ଶ୍ରେଣୀ-ପତ୍ରିକାରୁ ନ୍ୟୂନ ନୁହନ୍ତି । ସାପ୍ତାହିକ ପତ୍ରିକାର ଅବସ୍ଥା ମଧ୍ୟ ତଦ୍ରୂପ । ପତ୍ରିକା ବଙ୍ଗ ଦେଶର ସୋମ ପ୍ରକାଶ ଓ ଏଡ଼ୁକେଶନ ଗେଜେଟର ସମସାମୟିକ । ଆମ୍ଭମାନଙ୍କ ପରି ୪୦ ବରଷ ପୂର୍ବେ ବଙ୍ଗୀୟ ଭ୍ରାତାମାନେ ମାତୃଭାଷା ପ୍ରତି ଉଦାସୀନ ଥିଲେ, ସେତେବେଳେ ସୋମ ପ୍ରକାଶ ଏଡ଼ୁକେଶନର ଗ୍ରାହକ ସଂଖ୍ୟା ଦୁଇ ହଜାରରୁ ବେଶି ନ ଥିଲେ । ବଙ୍ଗଳାରେ ବର୍ତ୍ତମାନ ସାମୟିକ ପତ୍ରିକା ଅସଂଖ୍ୟ, କେବଳ କଲିକତାରୁ ପ୍ରତି ସପ୍ତାହରେ ପ୍ରାୟ ୪ ଲକ୍ଷ ଖଣ୍ଡ ପତ୍ରିକା ବାହାରି ଥାଏ । ବଙ୍ଗଳାରେ ଗୋଟିଏ କଥା ଅଛି 'ସବେ ଧନ ନୀଲମଣି' । ଉତ୍କଳ ପତ୍ରିକା ଅବସ୍ଥାରୁ ଆପଣା ଜାତୀୟ ମର୍ଯ୍ୟାଦା ବୁଝନ୍ତୁ । ଅଥଚ ମୁଁ ଜାଣେ, ଉତ୍କଳ ପତ୍ରିକାର ଦୁଇଗୁଣ ବଙ୍ଗଳା ପତ୍ରିକା ଉତ୍କଳକୁ ଆସିଥାଏ । ଧନ ଯତ୍ନ ପରିଶ୍ରମ ବ୍ୟୟ ବିନା ଜଗତରେ କୌଣସି କାର୍ଯ୍ୟ ସାଧିତ ହୋଇ ନାହିଁ । ମହୋଦୟଗଣ, ଆପଣମାନେ ଦୁର୍ଦ୍ଦଶାଗ୍ରସ୍ତ ଉତ୍କଳ ଭାଷା ଆଲୋଚନା ନିମନ୍ତେ ଆପଣା ଆପଣାର ଅମୂଲ୍ୟ ସମୟ ବ୍ୟୟ କରନ୍ତୁ, ଏପରି ଅନୁରୋଧ କରିବାକୁ ମୋହର ସାହସ ଅଣ୍ଟୁ ନାହିଁ; ମାତ୍ର ଜାତୀୟ ମର୍ଯ୍ୟାଦା ବର୍ଦ୍ଧନ ମାତୃଭାଷାର ଲେଖକମାନଙ୍କୁ ଉତ୍ସାହ ଦାନ ସକାଶେ ମାସିକ କିଛି କିଛି ଅର୍ଥବ୍ୟୟ ସ୍ୱୀକାର କରି ପତ୍ରିକା ଓ ପୁସ୍ତକ ଅନାୟାସରେ କ୍ରୟ କରି ପାରନ୍ତି । ଅତଃପର କେତେ ଲେଖକ ବାହାରି ପଡ଼ିବେ । ଇଂରେଜରେ ଦେଖିବେ ଗୋଟିଏ ଢଗ ଅଛି, "Whether there is a want. there a supply" ଗୁଡ଼ଖଲିଆଗଞ୍ଜ ଠାରେ ପୂର୍ବେ ପଇସାକର ମୁଢ଼ି କିଣିବାକୁ ମିଳୁ ନ ଥିଲା, ବର୍ତ୍ତମାନ ଅନେକ ମିଷ୍ଟାନ୍ନ ଦୋକାନ ବିଦ୍ୟମାନ । ଯେହେତୁ ସେଠାରେ ବର୍ତ୍ତମାନ ଗ୍ରାହକର ଭିଡ଼ ଲାଗିଛି । ମୁଁ ଜାଣେ ବର୍ତ୍ତମାନ ବଙ୍ଗବାସୀମାନେ କନ୍ୟା ଓ ଭଗ୍ନୀମାନଙ୍କ ସକାଶ ଗୋଟିଏ ଖରଚର ଦଫା ନିର୍ଣ୍ଣୟ କରିଛନ୍ତି ।

ମହୋଦୟଗଣ, ଆମ୍ଭମାନଙ୍କ ଗୃହଲକ୍ଷ୍ମୀରୂପା କନ୍ୟା ଭଗ୍ନୀମାନେ ଅବସର କାଳରେ ଯେପରି ବୃଥା ଗଳ୍ପ, ଅସାର ଚିନ୍ତା ବା ଆଳସ୍ୟରେ ସମୟ ନଷ୍ଟ ନ କରନ୍ତି, ସେଥିପାଇଁ ସେମାନଙ୍କ ସମ୍ମୁଖରେ ପୁସ୍ତକ ଓ ପତ୍ରିକା ସଂଗ୍ରହ କରି ରଖନ୍ତୁ । ଇଂଲଣ୍ଡ ଓ ଆମେରିକା-ବାସୀ ଅତି ନିମ୍ନଶ୍ରେଣୀ ଲୋକ ମଧ୍ୟ ଘର ଖର୍ଚ୍ଚ ତେଲ ଲୁଣ ପରି ପ୍ରତିଦିନ ପତ୍ରିକା ଓ ପୁସ୍ତକ କିଣିବା ନିମନ୍ତେ କିଛି କିଛି ଅର୍ଥବ୍ୟୟ କରିଥାନ୍ତି । ଏଥିପାଇଁ ସେମାନଙ୍କର ଜଗତ୍‌ବ୍ୟାପୀ ଆଧିପତ୍ୟ ଏବଂ ସମାଦର ।

ସମ୍ପ୍ରତି ଉତ୍କଳରେ ଅନେକ ପ୍ରତିଭାଶାଳୀ ଶିକ୍ଷିତ ଲୋକ ବର୍ତ୍ତମାନ; ଇଚ୍ଛା କଲେ ସେମାନେ ସୁନ୍ଦର ସୁନ୍ଦର ଗ୍ରନ୍ଥ ଲେଖି ପାରିବେ । ଶିକ୍ଷିତ ଲୋକେ ଅଭ୍ୟାସ କଲେ ସହଜରେ ସୁଲେଖକ ହୋଇପାରିବେ । ଅସଂଖ୍ୟ କ୍ଷୁଦ୍ର ଉଇ କଣିକା କଣିକା ମାଟି ପକାଇ ଉଚ୍ଚ ଟିକର (ହୁଙ୍କା) ନିର୍ମାଣ କରନ୍ତି । ସମବେତ ଜନରେ କି କାର୍ଯ୍ୟ ସାଧିତ ହୋଇ ନ ପାରେ । ସତ୍ୟ କଥା, ବର୍ତ୍ତମାନ ଉତ୍କଳର ଲେଖକମାନେ ନିତାନ୍ତ ଦରିଦ୍ର, ସେମାନଙ୍କର ଅନେକ ଲେଖା ଅର୍ଥାଭାବରୁ ପଡ଼ି ରହିଅଛି । ଦୁଃଖର କଥା ଉତ୍କଳରେ ନିତାନ୍ତ ଅଭାବ, ଅତି ସୁନ୍ଦର ଲିଖିତ ଅତି ଉପଯୁକ୍ତ ଖଣ୍ଡିଏ ଅଭିଧାନ ଅର୍ଥ ଭାବରୁ ପଣ୍ଡିତ ଗୋପୀନାଥ ନନ୍ଦ ପ୍ରକାଶ କରିବାକୁ ଏ ପର୍ଯ୍ୟନ୍ତ ସମର୍ଥ ହେଲେ ନାହିଁ । ଏହି ସମସ୍ତ ଦୃଷ୍ଟାନ୍ତଦୃଷ୍ଟିରେ ଅନେକ ସୁଲେଖକ ହାତ ଗୋଟାଇ

ବସିଲେଣି । ନୂଆ ବା କଏ ଲେଖିବ ? ମାତ୍ର ତୁମ୍ଭେ ବୋକାମି ଗଢ଼କ ଦୁଇ ହୁଅ, ହାଟରେ ଭଡ଼ ଭାଙ୍ଗି ହେବ ନାହିଁ ।

ବୌଦ୍ଧ ଧର୍ମ ବିଷୟ ଆଲୋଚନା ଏହି ସଭାର ଅନ୍ୟତମ ଉଦ୍ଦେଶ୍ୟ ଅଟେ । ଚିରନ୍ତନ ପ୍ରଥାନୁସାରେ ସଭାପତିଙ୍କୁ କିଛି ବୋଲିବାକୁ ହୁଏ । ଏଥିପାଇଁ ସେ ସମ୍ବନ୍ଧେ ବୌଦ୍ଧମତ ଆଲୋଚନା ଅଦ୍ୟକାର ସଭାର ଉଦ୍ଦେଶ୍ୟ । ଏଥି ସମ୍ବନ୍ଧେ ଗୋଟିଏ ସୁନ୍ଦର ପ୍ରବନ୍ଧପାଠ କରିଛନ୍ତି । ଆଉ ଅଧିକ କିଛି ବୋଲିବାର ପ୍ରୟୋଜନ ନାହିଁ । ଚିରନ୍ତନ ପ୍ରଥା ଅନୁସାରେ ସଂକ୍ଷେପରେ କେତୋଟି କଥା ବୋଲି କାର୍ଯ୍ୟ ଶେଷ କରିବାକୁ ଇଚ୍ଛା କରେଁ ।

ଆଜକୁ ୪୦ ବରଷ ପୂର୍ବେ ଜଣେ ବହୁଦର୍ଶୀ ୧୧ ଟା ଭାଷାରେ ସୁପଣ୍ଡିତ ଇଂରେଜ ଯେ କି ନିଜେ ଖ୍ରୀଷ୍ଟାନ ଅଟନ୍ତି, ମୋତେକେତେଥର କହିଥିଲେ, ବୌଦ୍ଧ ଧର୍ମ ପୃଥିବୀରେ ଶ୍ରେଷ୍ଠତମ ଧର୍ମ । ପ୍ରକୃତ ଧର୍ମ ଶିକ୍ଷା କରିବାକୁ ହେଲେ ବୌଦ୍ଧ ଦର୍ଶନଶାସ୍ତ୍ର ଅଧ୍ୟୟନ କରିବା ଉଚିତ ।

ଉକ୍ତ ମହାତ୍ମାଙ୍କ ମୁଖରୁ ଏହି କଥା ଶୁଣି ମୁଁ ବୌଦ୍ଧ ଧର୍ମ ମତ ଜାଣିବାକୁ ଇଚ୍ଛା କରେଁ । ଉଦ୍ଦେଶ୍ୟ ସାଧନ ନିମନ୍ତେ ପାଲି ଭାଷାରେ ଲିଖିତ ଲଳିତବିସ୍ତର ଯାକେ ଏବଂ ଅନ୍ୟାନ୍ୟ ଗ୍ରନ୍ଥ ଅଧ୍ୟୟନ ଆରମ୍ଭ କରିଥିଲି । ଉପଯୁକ୍ତ ଶିକ୍ଷକ ଅଭାବରୁ ଯଦିଚ ଉକ୍ତ ଗ୍ରନ୍ଥମାନ ଭଲରୂପେ ଆୟତ୍ତ କରିବାକୁ ସକ୍ଷମ ହୋଇନାହିଁ; ମାତ୍ର ଯେତେଦୂର ପଢ଼ିଲି ସେଥିରୁ ଏତିକି ମାତ୍ର ଉପଦେଶ ପ୍ରାପ୍ତ ହୋଇଅଛି, ବୌଦ୍ଧ ଧର୍ମ ବିଜ୍ଞାନମୟ ଦର୍ଶନଶାସ୍ତ୍ର ଉପରେ ପ୍ରତିଷ୍ଠିତ । ଧର୍ମର ପ୍ରଧାନ ଅଙ୍ଗ ଉଦାରତା, ଦୟା, ପରୋପକାରିତା, ମୈତ୍ରୀ, ପ୍ରାଣୀହିତୈଷଣା ପ୍ରଭୃତି ଗୁଣମାନଙ୍କର ଉଚ୍ଚଶିକ୍ଷା ବୌଦ୍ଧ ଦର୍ଶନଶାସ୍ତ୍ର ପ୍ରଦାନ କରେ । ସେହି ଧର୍ମର ଏପରି ଗୋଟାଏ ମହୀୟସୀ ଶକ୍ତି ନ ଥିଲେ ସାମାନ୍ୟ ଭିକ୍ଷୁମାନଙ୍କ ଦ୍ୱାରା ଏହି ଧର୍ମ ଜଗଦ୍‌ବ୍ୟାପ୍ତ ହେବାକୁ ସକ୍ଷମ ହୋଇ ନ ଥାନ୍ତା । ସମସ୍ତ ଆସିଆ, ୟୁରୋପ, ଆଫ୍ରିକାରେ ଏହି ଧର୍ମ ବ୍ୟାପ୍ତ ହୋଇଥିଲା ଏବଂ କଲମ୍ବସ୍ ଆବିର୍ଭାବର ସହସ୍ରାଧିକ ବର୍ଷ ପୂର୍ବେ ବୌଦ୍ଧ ଭିକ୍ଷୁମାନେ କାମସ୍କଟ୍‌କା ବାଟରେ ଆମେରିକା ଯାଇଥିବାର ପ୍ରମାଣ ବିଦ୍ୟମାନ ରହିଅଛି । ବର୍ତ୍ତମାନ ଅବସାଦ ସମୟରେ ମଧ୍ୟ ପୃଥିବୀର ଲୋକ ସମଷ୍ଟିର ଏକ ତୃତୀୟାଂଶ ବୌଦ୍ଧ ଧର୍ମାବଲମ୍ବୀ । ଏ କଥା ଉଲ୍ଲେଖ କରିବା ନିଷ୍ପ୍ରୟୋଜନ, ବର୍ତ୍ତମାନ ପ୍ରଚଳିତ ପୃଥିବୀର ସମସ୍ତ ପ୍ରଧାନ ଧର୍ମ ମଧ୍ୟରେ ବୌଦ୍ଧଧର୍ମ ଅଗ୍ରଜ ।

ଭଗବାନ ବାସୁଦେବ ଅର୍ଜୁନଙ୍କୁ ବୋଲିଥିଲେ —

"ଯଦା ଯଦାହି ଧର୍ମସ୍ୟ ଗ୍ଲାନିର୍ଭବତି ଭାରତ,
ଅଭ୍ୟୁତ୍ଥାନମଧର୍ମସ୍ୟ ତଦାତ୍ମାନଂ ସୃଜାମ୍ୟହଂ ।"

ପୃଥିବୀର ଧର୍ମ ଇତିହାସ ପାଠ କଲେ ସୁସ୍ପଷ୍ଟ ଜଣାଯାଏ, ଭଗବାନ ବାସୁଦେବଙ୍କ ଶ୍ରୀମୁଖ ବାଣୀ ଅକ୍ଷରେ ଅକ୍ଷରେ ସତ୍ୟ । ପୃଥିବୀର ଆଦି ଧର୍ମ ସନାତନଧର୍ମ । ବୈଦିକ ଧର୍ମରେ ଗ୍ଲାନି ଉପସ୍ଥିତ ହେବା ସମୟରେ ଭଗବାନ ଶାକ୍ୟ ସିଂହଙ୍କର ଆବିର୍ଭାବ । ଉତ୍କଳ ବିରାଜିତ ଜଗନ୍ନାଥଦେବ ବୌଦ୍ଧାବତାର ନାମରେ କଥିତ । ବୌଦ୍ଧଧର୍ମର ପ୍ରବଳ ଶତ୍ରୁ ବ୍ରାହ୍ମଣମାନେ ମଧ୍ୟ ବୁଦ୍ଧଦେବଙ୍କୁ ଈଶ୍ୱରାବତାର ବୋଲି ଅସ୍ୱୀକାର କରିବାକୁ ଅକ୍ଷମ— ଅଧିକନ୍ତୁ ବୋଲନ୍ତି ଜଗତର ରାକ୍ଷସମାନଙ୍କ; ଅର୍ଥାତ୍ ବୌଦ୍ଧ ଧର୍ମାବଲମ୍ବୀମାନଙ୍କ ବିନାଶ ନିମନ୍ତେ କପଟରେ ସେମାନଙ୍କ ମଧ୍ୟରେ ଭଗବାନ୍ ବୁଦ୍ଧରୂପେ ଅବତୀର୍ଣ୍ଣ ହୋଇଥିଲେ । ହେ ବ୍ରାହ୍ମଣଗଣ—ତୁମ୍ଭମାନଙ୍କର ବିଶ୍ୱାସ ଅନୁସାରେ ଉପାସ୍ୟ ଦେବତା ଈଶ୍ୱରଙ୍କ ପ୍ରତି କପଟତା ଦୋଷ ଆରୋପ କରି ଯେ କି ମହାପାପ

ଅର୍ଜନ କରିଛ, ସେ କଥା ଟିକେ ଚିନ୍ତାକରି ଦେଖ । ଯେଉଁ ମହାପ୍ରାଣ ସାମାନ୍ୟ ପଶୁପକ୍ଷୀର ମଧ୍ୟ କଷ୍ଟ ଅସହିଷ୍ଣୁ, ସେ କୋଟି କୋଟି ଲୋକ ବିନାଶ ନିମନ୍ତେ କପଟତା ଅବଲମ୍ବନ କରିବେ; ଆପଣମାନଙ୍କ ବିନା ନିତାନ୍ତ ବିଦ୍ୱେଷ ଦୂଷିତ ହୋଇ ଆଉ କିଏ ଏ କଥା କହି ଘୋର ମହାପାପ ଅର୍ଜନ କରିବାକୁ ସାହସୀ ହେବ ।

ଭାରତର ପରମ ସୌଭାଗ୍ୟ ଭଗବାନ୍ ବୁଦ୍ଧଦେବ ଜନ୍ମଗ୍ରହଣ କରିଥିଲେ, ମହାଦୁର୍ଭାଗ୍ୟ ଭାରତରୁ ବୌଦ୍ଧଧର୍ମର ଉଚ୍ଛେଦ କାରଣ । କି ରାଜନୀତି, କି ଧର୍ମନୀତି କି ଭାଷା ବିସ୍ତାର ସମସ୍ତ ବିଷୟରୁ ଉନ୍ନତିର ପରାକାଷ୍ଠା କେବଳ ବୌଦ୍ଧଧର୍ମ ପ୍ରଭାବରୁ ଭାରତ ଲାଭ କରିଥିଲା । ଭାରତର ଏକଛତ୍ରପତି ଅଶୋକ, ବିନ୍ଦୁସାର, ଚନ୍ଦ୍ରଗୁପ୍ତ, ଶିଳାଦିତ୍ୟ ବା ହର୍ଷବର୍ଦ୍ଧନ ପ୍ରଭୃତି ଅସଂଖ୍ୟ ସାର୍ବଭୌମ ସମ୍ରାଟ୍‌ମାନଙ୍କର ଆବିର୍ଭାବ ବୌଦ୍ଧ ଯୁଗରେ ହୋଇଥିଲା । ବୌଦ୍ଧ ଧର୍ମର ବିନାଶ ସଙ୍ଗେ ଭାରତର ଏକତା ଏବଂ ସ୍ୱାଧୀନତା ଛିନ୍ନଭିନ୍ନ ଓ ଅନ୍ୟର କରାୟତ୍ତ । ଭାରତର ପ୍ରାଦେଶିକ ଭାଷାମାନ ବୌଦ୍ଧ ପ୍ରଭାବରେ ଉନ୍ନତି ଲାଭ କରେ; ପ୍ରକୃତ ମାନବ-ହିତୈଷଣା ବୌଦ୍ଧ ଧର୍ମ ଭାରତକୁ ଅଥବା ପୃଥିବୀକୁ ଶିକ୍ଷା ଦେଇଅଛି । ପୀଡ଼ିତମାନଙ୍କ ନିମନ୍ତେ ଜଗତ୍‌ବ୍ୟାପୀ ଔଷଧାଳୟ ବିସ୍ତାର, ସର୍ବସାଧାରଣରେ ଶିକ୍ଷାଦାନ, ଧର୍ମପ୍ରଚାର, ପାନ୍ଥନିବାସ ସ୍ଥାପନ ପ୍ରଭୃତି ସୁମହତ୍ କାର୍ଯ୍ୟର ବୌଦ୍ଧଯୁଗରେ ଜଗତରେ ପ୍ରଥମ ସୂତ୍ରପାତ । ବୌଦ୍ଧ ଯୁଗରେ ପ୍ରଥମେ ଭାରତରେ ବିଶ୍ୱବିଦ୍ୟାଳୟ ସ୍ଥାପିତ । ବିହାର ନାଳନ୍ଦାରେ ବାର ସହସ୍ର ଶିଷ୍ୟ ଛାତ୍ରାବାସରେ ରହି ଅଧ୍ୟୟନ କରୁଥିଲେ । ବୌଦ୍ଧ ଭିକ୍ଷୁମାନେ ତତ୍‌କାଳୀନ ନିବିଡ଼ ଅରଣ୍ୟ ଓ ହିଂସ୍ରଜନ୍ତୁ-ପୂର୍ଣ୍ଣ ସମସ୍ତ ଏସିଆ, ୟୁରୋପ, ଆଫ୍ରିକା ମଧ୍ୟରେ ଭ୍ରମଣ କରି ପଶୁବତ୍ ଅସଭ୍ୟ ଲୋକମାନଙ୍କୁ ଯେ ଭାବରେ ଧର୍ମ ଓ ବିଦ୍ୟା ଶିକ୍ଷାଦାନ ଓ ପୀଡ଼ିତ ଲୋକର ସେବା ଶୁଶ୍ରୂଷା କରୁଥିଲେ, ତାହା ଚିନ୍ତା କଲେ ମନ ସ୍ତମ୍ଭିତ ହୋଇପଡ଼େ । ଉତ୍ତାଳ ସମୁଦ୍ର ଲହରୀ ଲଙ୍ଘନପୂର୍ବକ କେବଳ ଜଣେ ଭିକ୍ଷୁ ଡଙ୍ଗା ଖଣ୍ଡିକରେ ଚଢ଼ି ଜାପାନ ଯାଇଥିଲେ । ସେହି ଏକମାତ୍ର ଭିକ୍ଷୁକ ଜାପାନ ରାଜ୍ୟର ଧର୍ମ ପ୍ରତିଷ୍ଠାତା ଅଟନ୍ତି । ବର୍ତ୍ତମାନ ବୌଦ୍ଧ ଧର୍ମର ଅବସାଦ ସମୟରେ ମଧ୍ୟ ପୃଥିବୀର ଲୋକ ସମଷ୍ଟିର ଏକ ତୃତୀୟାଂଶ ଲୋକ ଉକ୍ତ ଧର୍ମାବଲମ୍ବୀ ଅଟନ୍ତି । ହିନ୍ଦୁମାନଙ୍କ ଯୋଗେ କେତେ ଲକ୍ଷ ନିରୀହ ବୌଦ୍ଧ ଭିକ୍ଷୁକର ମସ୍ତକ ଚୂର୍ଣ୍ଣ ହୋଇଅଛି । ତହିଁରୁ ବଳି ଭାରତର ଗୁରୁତର କ୍ଷତି ବୌଦ୍ଧଧର୍ମ ଗ୍ରନ୍ଥମାନ ବିନାଶ-ପ୍ରାପ୍ତ । ଗ୍ରନ୍ଥ ବିନାଶ ସମୟରେ କୌଣସି ସଦାଶୟ ବ୍ରାହ୍ମଣଙ୍କ ଯୋଗେ ଅମର ସିଂହକୃତ ଅଭିଧାନ ରକ୍ଷା ପାଇଥିବାର କଥିତ ହୁଏ । ସଂସ୍କୃତରେ ଶବ୍ଦାବଳୀର ନାମ ଲିଙ୍ଗାନୁଶାସନ ନିର୍ଣ୍ଣୟ କରିବା ଅତି ଦୁରୂହ ବିଷୟ । କେବଳ ଅମରକୋଷରେ ସୁଗମ ଶିକ୍ଷା ପ୍ରଣାଳୀ ବିଦ୍ୟମାନ । ଅମରକୋଷ ସଂସ୍କୃତ ଭାଷାରେ ଅମୂଲ୍ୟ ନିଧି । ତାହା ଜଣେ ବୌଦ୍ଧ ଧର୍ମା-ବଲମ୍ବୀଙ୍କ ରଚିତ । ବଙ୍ଗ ବିଜେତା ନିରକ୍ଷର ବକ୍ତିୟାର ଖିଲିଜୀ ବିହାରସ୍ଥ ନାଳନ୍ଦା ଅଧିକାରପୂର୍ବକ ପୁସ୍ତକାଳୟ ପ୍ରତି ଦୃଷ୍ଟିପାତ କରି ପଚାରିଲେ, ଏ ସମସ୍ତ କୋରାଣ କି ନାହିଁ ? କୋରାଣ ନ ଥିବାର ଶୁଣି ସମସ୍ତ ପୁସ୍ତକ ବିନାଶ କରିବା ନିମନ୍ତେ ଆଦେଶ କରିବାରୁ ତାହାଙ୍କ ସମଭିବ୍ୟାହାରୀ ବହୁ ସଂଖ୍ୟକ ସେନା ସେହି ସମସ୍ତ ପୁସ୍ତକ ଦଗ୍ଧ କରି ଏକ ମାସ ପର୍ଯ୍ୟନ୍ତ ରୁଟି ସେକିଥିଲେ । ବର୍ତ୍ତମାନ ସୁସଭ୍ୟ ଇଂରେଜମାନେ ବହୁ ଯତ୍ନ ଆୟାସ ସ୍ୱୀକାର ପୂର୍ବକ ଦୁଷ୍ପ୍ରାପ୍ୟ ବୌଦ୍ଧ ଦର୍ଶନ-ମାନ ସଂଗ୍ରହରେ ଯତ୍ନଶୀଳ ହୋଇଛନ୍ତି । ସଭ୍ୟ ମହୋଦୟଗଣ, ଗୁଣଗ୍ରାହିତା ସମ୍ବନ୍ଧେ ହିନ୍ଦୁମୁସଲମାନ ଇଂରାଜ ମଧ୍ୟରେ ପାର୍ଥକ୍ୟ ବୁଝନ୍ତୁ । ଭାରତରୁ ବୌଦ୍ଧ-ଧର୍ମ ବିତାଡ଼ନ ମହାଦୁର୍ଭାଗ୍ୟର ବିଷୟ । ଗୋଟିଏ ଅନ୍ୟତମ କାରଣ ଏହି କି ମୁସଲମାନମାନେ ଯେମନ୍ତ ତୁରସ୍କ ଆରବ ପାରସ୍ୟ ନାମ ଉଚ୍ଚାରଣ କରି ଆତ୍ମ-

ଗୌରବ ପ୍ରକାଶ କରିଥାନ୍ତି, ତଦ୍ରୂପ ଆମ୍ଭେମାନେ ଚୀନ ଜାପାନ ବର୍ମା ପ୍ରଭୃତିଙ୍କୁ ଧର୍ମ ବନ୍ଧୁ ଜ୍ଞାନ କରି କେତେ ଆତ୍ମପ୍ରସାଦ ଅନୁଭବ କରୁଥାଉଁ ।

କଥିତ ହୁଏ ଭଗବାନ୍ ଶାକ୍ୟସିଂହଙ୍କ ଜୀବନ-କାଳରେ ଉତ୍କଳରେ ବୌଦ୍ଧଧର୍ମ ପ୍ରଚାରିତ ହୁଏ, ତାହା ସାତଶହ ବରଷ ପର୍ଯ୍ୟନ୍ତ ଅପ୍ରତିହତ ଭାବରେ ଆଧିପତ୍ୟ ବିସ୍ତାର କରିଥିଲା । ତଦନନ୍ତର ଭାରତର ଅନ୍ୟାନ୍ୟ ଦେଶ ପରି କ୍ରମଶଃ ବିତାଡ଼ିତ ହୁଏ । ଖ୍ରୀଷ୍ଟୀୟ ଆଠଶତ ବରଷରେ ଉତ୍କଳରେ ଅର୍ଦ୍ଧେକ ହିନ୍ଦୁ ଅର୍ଦ୍ଧେକ ବୌଦ୍ଧ ଧର୍ମାବଲମ୍ବୀ ବିଦ୍ୟମାନ ଥିବାର ଚୀନ ପରିବ୍ରାଜକ ୟୁୟୁନଚୟାଂ (ହୁଏନସାଂ) ଦେଖିଛନ୍ତି ।

ଉତ୍କଳରେ ବୌଦ୍ଧମାନଙ୍କର ପ୍ରଧାନ ପୀଠସ୍ଥାନ ଖଣ୍ଡଗିରି, ଜୈନମାନଙ୍କର ଉଦୟଗିରି, ସୌରମାନଙ୍କର କୋଣାର୍କ, ଶୈବମାନଙ୍କର ଭୁବନେଶ୍ୱର, ଶାକ୍ତମାନଙ୍କର ବିରଜା ଓ ବୈଷ୍ଣବମାନଙ୍କର ପୁରୀ କ୍ଷେତ୍ର ଅଟେ । ସଭ୍ୟ ମହୋଦୟଗଣ, ବିଚାର କରି ଦେଖନ୍ତୁ, ଭାରତ-ପ୍ରଚଳିତ ସମସ୍ତ ପ୍ରଧାନ ଧର୍ମର ସମବେତ ଏତେ ସବୁ ପ୍ରଧାନ ପୀଠ ସ୍ଥାନ ଭାରତରେ ଅଥବା ସମସ୍ତ ପୃଥିବୀ ମଧ୍ୟରେ ଅନ୍ୟ କୌଣସି ଦେଶ ଅଛି କି ନାହିଁ । ସମସ୍ତ ଶ୍ରେଣୀର ଧର୍ମପ୍ରଚାରକମାନେ, ଧର୍ମାଚାର୍ଯ୍ୟମାନେ ଉତ୍କଳରେ ଏମନ୍ତ କିଛି ମାହାତ୍ମ୍ୟ ମହିମା ଅନୁଭବ କରିଥିଲେ, ଯହିଁରେ କି ସେମାନେ ଏକ ସଙ୍ଗରେ ବସି ପରାମର୍ଶ କଲାପରି ଏ ସ୍ଥାନରେ ଶ୍ରେଷ୍ଠ ପୀଠସ୍ଥାନ ସ୍ଥାପନ କରି ଯାଇଛନ୍ତି । ଚୈତନ୍ୟଦେବଙ୍କ ଜୀବନର ସାର ଶ୍ରେଷ୍ଠ ଅଂଶ ଉତ୍କଳରେ ଅତିବାହିତ । ଉତ୍କଳ ଭୂମି ପୁଣ୍ୟମୟ, ଏହାର ପ୍ରତ୍ୟେକ ରେଣୁ ପୁଣ୍ୟ ପ୍ଲାବିତ । ଭାରତର ସମସ୍ତ ଦିଗ ସୀମାନ୍ତଠାରୁ ଲକ୍ଷ ଲକ୍ଷ ଲୋକ ଆସି ଉତ୍କଳର ରେଣୁ ସ୍ପର୍ଶ କରି ଆପଣା ଆପଣା ଜୀବନକୁ ଧନ୍ୟ ଜ୍ଞାନ କରୁଛନ୍ତି । ମହାରାଷ୍ଟ୍ରପତି ଶିବାଜୀ ଦିନେ ଭୁବନେଶ୍ୱରଠାରେ ଠିଆହୋଇ କହିଥିଲେ, "ଉତ୍କଳ ଦେବନିବାସ ସ୍ଥାନ; ମାନବ ଏଥିରେ ବାସ କରିବାର ଯୋଗ୍ୟ ନୁହେଁ ।"

ମହୋଦୟଗଣ !

ଆପଣମାନଙ୍କୁ ଅନେକ କଷ୍ଟ ଦେଲିଣି – ଆଉ ବେଳ ନାହିଁ । କେବଳ ମୋ ମନର କେତୋଟି କଥା ପୁନରାବୃତ୍ତି କରି ନିବୃତ୍ତ ହେବି ।

ମହୋଦୟଗଣ, ଏହି ପ୍ରାଚୀନ ପୁଣ୍ୟମୟ-ନୈସର୍ଗିକ-ଶୋଭା-ସମ୍ପଦ-ଭଣ୍ଡାରପୂର୍ଣ୍ଣ ଦେଶରେ ବାସ କରି ମଧ୍ୟ ଆମ୍ଭେମାନେ ସଭ୍ୟ ସମାଜରେ କିପରି ଭାବରେ ପରିଚିତ ହେଉଅଛୁଁ - ଆପଣମାନଙ୍କ ପୂର୍ବ ପୁରୁଷମାନଙ୍କ ବୀରତ୍ୱ, ଶିଳ୍ପକୌଶଳ, ବୁଦ୍ଧିମତ୍ତା, ଧୀରତା ଧର୍ମାନୁଷ୍ଠାନ ବିଷୟ ବେଳେ ମନ ମଧ୍ୟରେ ଚିନ୍ତା କରନ୍ତୁ; ଏହି ବିଂଶ ଶତାବ୍ଦୀ ଜ୍ଞାନ ବିଜ୍ଞାନ ବାହୁଲ୍ୟ ପ୍ରଚାର ସମୟରେ ଆମ୍ଭେମାନେ କେତେ ଦୂର ପଛରେ ପଡ଼ିଛୁଁ ଏହା ମଧ୍ୟ ଚିନ୍ତାର ବିଷୟ ଅଟେ । ଆଉ କଥାରେ ହେବ ନାହିଁ, ଆସନ୍ତୁ କାର୍ଯ୍ୟରେ ନିଯୁକ୍ତ ହେଉଁ । ମିଷ୍ଟର ଦାସେ ଆମ୍ଭମାନଙ୍କୁ କାତରଭାବରେ କେତେଥର କହିଛନ୍ତି; "ଦିନମାନ ୨୪ ଘଣ୍ଟା ମଧ୍ୟରେ ଅନ୍ତତଃ ୫ ମିନିଟ ସକାଶେ ହେଲେ ସ୍ୱଦେଶ ବିଷୟ ଚିନ୍ତା କର ।" କେବଳ ଚିନ୍ତା ନୁହେ, ସ୍ୱଦେଶ, ସ୍ୱଜାତି ଓ ମାତୃଭାଷା ସକାଶେ କାର୍ଯ୍ୟ କରିବାକୁ ହେବ; ତ୍ୟାଗ ସ୍ୱୀକାର କରିବାକୁ ହେବ । ଅର୍ଥ ବିନା କିଛି କାର୍ଯ୍ୟ ସିଦ୍ଧି ହୁଏ ନାହିଁ ।

ମାତୃଭାଷା ଉନ୍ନତି ସକାଶ ଅନ୍ତତଃ ଦିନକର ଆୟ ଦାନ କରିବା ପ୍ରସ୍ତାବ ହୋଇଥିଲା । ଆସନ୍ତୁ ଆଜିଠାରୁ ସେ ପ୍ରସ୍ତାବ କାର୍ଯ୍ୟରେ ପରିଣତ କରାଇବାକୁ ଚେଷ୍ଟା କରିବା । ଶିକ୍ଷିତ ଯୁବକ ଦଳ ସ୍ୱଦେଶର ଆଶା ଭରସା ସ୍ଥଳ । ମୋହର ବିଶେଷ ପ୍ରାର୍ଥନାପୂର୍ଣ୍ଣ ଆଶା

ଆଜଦିନ ଏହି ଶୁଭ ମୂହୂର୍ତ୍ତଠାରୁ ସେମାନେ କାର୍ଯ୍ୟ-କ୍ଷେତ୍ରରେ ଅବତୀର୍ଣ୍ଣ ହେବେ ।

[ କଟକ ଆଲୋଚନା ସଭାର ଚତୁର୍ଥ ବାର୍ଷିକ—ଅଧିବେଶନରେ ପ୍ରଦତ୍ତ ]

(ମୁକୁର ୭ମ ଭାଗ, ୧ମ ସଂଖ୍ୟା, ବୈଶାଖ ୧୩୧୯ସାଲ—ଅପ୍ରେଲ ୧୯୧୮ରେ ପ୍ରକାଶିତ )

---

## ଶୂଦ୍ର ଓ ବେଦାଧିକାର

ବେଦ, ଜେନ୍ଦାବସ୍ତା, ବାଇବେଲ, କୋରାଣ ପ୍ରଭୃତି ପୃଥିବୀବିଖ୍ୟାତ ଶାସ୍ତ୍ରମାନ ବିଶେଷ ବିଶେଷ ସମ୍ପ୍ରଦାୟର ଧର୍ମଗ୍ରନ୍ଥ ଅଟନ୍ତି । ପ୍ରତ୍ୟେକ ସମ୍ପ୍ରଦାୟ ନିଜ ନିଜ ଅବଲମ୍ବିତ ଧର୍ମଗ୍ରନ୍ଥକୁ ଈଶ୍ୱରଦତ୍ତ ବୋଲି ବିଶ୍ୱାସ ଏବଂ ଗ୍ରହଣ କରିଥାନ୍ତି । ସେ ସମ୍ବନ୍ଧରେ କୌଣସି କଥା ବୋଲିବା ଆମ୍ଭମାନଙ୍କର କର୍ତ୍ତବ୍ୟ ବା ଉପସ୍ଥିତ ପ୍ରବନ୍ଧର ଉଦ୍ଦେଶ୍ୟ ନୁହେ । କେବଳ ହିନ୍ଦୁସମାଜ-ସମ୍ମାନିତ ବେଦଶାସ୍ତ୍ର ସମ୍ବନ୍ଧରେ କେତେଗୋଟି କଥା ବୋଲିବା ଉପସ୍ଥିତ ପ୍ରବନ୍ଧ ଅବତାରଣାର ଉଦ୍ଦେଶ୍ୟ ଅଟେ ।

ଆର୍ଯ୍ୟସନ୍ତାନମାନେ ବେଦକୁ ଅପୌରୁଷେୟ ଏବଂ ଈଶ୍ୱରଦତ୍ତ ବୋଲି ବିଶ୍ୱାସ ଏବଂ ସମ୍ମାନ କରିଥାନ୍ତି ! ଉପସ୍ଥିତ ମତର ଅନୁକୂଳ ଏବଂ ପ୍ରତିକୂଳରେ ପୂର୍ବ ପୂର୍ବ ଆଚାର୍ଯ୍ୟମାନଙ୍କ କଥିତ ବହୁବିଧ ଯୁକ୍ତିପୂର୍ଣ୍ଣ ଅଭିମତ ବିଦ୍ୟମାନ । ଏ କ୍ଷେତ୍ରରେ ଏହି କ୍ଷୁଦ୍ର ପ୍ରବନ୍ଧରେ ସେ ସମ୍ବନ୍ଧରେ କୌଣସି ପ୍ରକାର ମତ ପ୍ରକାଶ କରିବାକୁ ଅଗ୍ରସର ହେବା ନିତାନ୍ତ ଅପ୍ରୟୋଜନୀୟ ବିଷୟ ଅଟେ । ତେବେ ଆର୍ଯ୍ୟସମାଜ ବେଦାନୁଶାସନରେ ପରିଚାଳିତ ଏହି ପ୍ରବନ୍ଧର କ୍ଷୁଦ୍ରତମ ଲେଖକଟି ଆପଣାକୁ ଜଣେ ଆର୍ଯ୍ୟସମାଜଭୁକ୍ତ ବୋଲି ବିଶ୍ୱାସ କରେ । ଏଥିକୁ ବ୍ୟକ୍ତିଗତ ଭାବରେ ବେଦ ସମ୍ବନ୍ଧରେ କିଛି କଥା ବୋଲିବା ଏହା ପକ୍ଷରେ ନିତାନ୍ତ ଅନଧିକାର ଚର୍ଚ୍ଚା ବୋଲି ବିଶ୍ୱାସ କରାଯାଇ ନ ପାରେ ।

ମାନବାତ୍ମାର ଉଦ୍ଧାର ସକାଶେ ଈଶ୍ୱର ସ୍ୱୟଂ ଯଦି କୌଣସି ଗ୍ରନ୍ଥ ଜଗତକୁ ପ୍ରେରଣ କରିଥାନ୍ତି, ପରିଦୃଶ୍ୟମାନ ଯୁକ୍ତିସଙ୍ଗତ ହେତୁବାଦ ଦୃଷ୍ଟିରେ ନିଃସନ୍ଦେହରୂପେ ବୋଲାଯାଇ ପାରେ, ସେ ଗ୍ରନ୍ଥ ବେଦ ଅଟେ । ଏହି ଉକ୍ତିର ପୋଷଣ ନିମନ୍ତେ କେତେଗୋଟି କଥା ଉଲ୍ଲେଖ କରିବା ଆବଶ୍ୟକ ବୋଲି ବୋଧକରୁଁ ।

ବିଶ୍ୱସ୍ରଷ୍ଟା ବିଶ୍ୱପତି ମାନବାତ୍ମାର ଉଦ୍ଧାର ନିମନ୍ତେ ଯଦି କୌଣସି ଶାସ୍ତ୍ର ଜଗତକୁ ପ୍ରେରଣ କରିଥାନ୍ତି, ତେବେ ସେ ଆତ୍ମା ସୃଷ୍ଟି ସଙ୍ଗେ ସଙ୍ଗେ ଶାସ୍ତ୍ର ପ୍ରେରଣ କରିଥିବେ, ଏହା ହିଁ ଯୁକ୍ତିସଙ୍ଗତ କଥା ଅଟେ । ପୃଥିବୀ ସୃଷ୍ଟିର ବହୁ ସହସ୍ର ବା ବହୁଲକ୍ଷ ବର୍ଷ ଉତ୍ତାରେ ମାନବାତ୍ମାର ଉଦ୍ଧାର ନିମନ୍ତେ ଧର୍ମଗ୍ରନ୍ଥର ଅଭାବ ଦୃଷ୍ଟିରେ ଖଣ୍ଡିଏ ଧର୍ମଗ୍ରନ୍ଥ ପ୍ରେରଣ କଲେ, ଏହା କଦାଚ ସମ୍ଭବପର ନୁହେ । ତାହାହେଲେ, ଈଶ୍ୱରଙ୍କ ଭବିଷ୍ୟଦର୍ଶିତ୍ୱ ପ୍ରତି ଦୋଷାରୋପ କରିବାକୁ ହୁଏ । ଈଶ୍ୱରନିର୍ଦ୍ଦିଷ୍ଟ ଧର୍ମଗ୍ରନ୍ଥ ଅବଲମ୍ବନ ବିନା ମାନବାତ୍ମାର ପରିତ୍ରାଣର ଉପାୟାନ୍ତର ଅଭାବ, ଏପରି ଯୁକ୍ତି ଯଦି ସଂସିଦ୍ଧ ରୂପେ ଗ୍ରହଣ କରାଯାଏ, ଅନ୍ତତଃ ଆମ୍ଭମାନଙ୍କ ବୋଧଗମ୍ୟ ହେବା ସକାଶେ ପ୍ରଶ୍ନ କରିପାରୁଁ—ପରବର୍ତ୍ତୀ ଶାସ୍ତ୍ରକୁ ଯେବେ ଈଶ୍ୱରପ୍ରେରିତ ବୋଲି ବିଶ୍ୱାସ କରାଯାଏ ଏବଂ ସେହି ଶାସ୍ତ୍ରର ଉପଦେଶ ଗ୍ରହଣ ବିନା ମାନବାତ୍ମାର ଉଦ୍ଧାରର ଗତ୍ୟନ୍ତର ନାହିଁ, ଏହା ଯଦି ଯୁକ୍ତିସଙ୍ଗତ ହୁଏ, ତେବେ ସେହି ତଥାକଥିତ ଧର୍ମଗ୍ରନ୍ଥ ପ୍ରକାଶ ପୂର୍ବେ ଯେଉଁ ସମସ୍ତ ମାନବାତ୍ମା ପରଲୋକ ଯାତ୍ରା କରିଅଛନ୍ତି, ସେମାନଙ୍କର ଗତି କିପ୍ରକାର ହୋଇଥିବାର ସମ୍ଭବ ? ଏ କଥା ଧ୍ରୁବ

ସତ୍ୟ ଯେ, ଆବହମାନକାଳରୁ ମାନବାତ୍ମାସହିତ ବେଦ ଲୋକସମାଜରେ ପ୍ରକାଶିତ ହୋଇଅଛି । ବେଦ ଅବତୀର୍ଣ୍ଣ ହେବାର କାଳନିର୍ଣ୍ଣୟ କରିବାକୁ ଗଲେ ମାନବାତ୍ମାର ଆବିର୍ଭାବର କାଳ ନିର୍ଣ୍ଣୟ କରିବାର ଆବଶ୍ୟକ ହୋଇପଡ଼ିବ । ପକ୍ଷପାତିତା ଅନୁରୋଧରେ ବା ଆତ୍ମଗୌରବ ପ୍ରକାଶ ସକାଶେ ଆମ୍ଭେମାନେ ଏ କଥା ବୋଲିବାକୁ ସାହସ କରୁଅଛୁଁ ଏକଥା ଯେମନ୍ତ କେହି ମନରେ ବିଚାର ନ କରିବେ । ପୃଥିବୀସ୍ଥ ସଭ୍ୟ ଏବଂ ଜ୍ଞାନାଲୋକସମ୍ପନ୍ନ ବିଭିନ୍ନ ଦେଶବାସୀ ଜ୍ଞାନୀପ୍ରତ୍ନ-ତତ୍ତ୍ୱବିତ୍ ପଣ୍ଡିତମାନେ ବେଦାବିର୍ଭାବ କାଳ ଅଶୀତି ସହସ୍ର ବା ଲକ୍ଷ ବର୍ଷ ପୂର୍ବକାଳ ବୋଲି ସ୍ଥିରକରିବା ନିମନ୍ତେ ବୃଥା ଆୟାସ ସ୍ୱୀକାର କରି ଅଭ୍ରାନ୍ତ ମୀମାଂସାରେ ଉପନୀତ ହୋଇ ପାରି ନାହାନ୍ତି ବୋଲି ସେମାନଙ୍କ ଆତ୍ମକଥିତ ବାକ୍ୟାବଳୀରୁ ପ୍ରକାଶିତ ହୁଏ । ଯେବେ ହେଁ ବେଦାବିର୍ଭାବ କାଳ ସମ୍ବନ୍ଧରେ ଭିନ୍ନ ଦେଶୀୟ ପଣ୍ଡିତଗଣ ମତର ସାମଞ୍ଜସ୍ୟ ରକ୍ଷା କରିବାକୁ ସମର୍ଥ ହୋଇ ପାରିନାହାନ୍ତି; ମାତ୍ର ପୃଥିବୀର ସମସ୍ତ ଜ୍ଞାନୀ, ସମସ୍ତ ପ୍ରତ୍ନତତ୍ତ୍ୱବିତ୍ ପଣ୍ଡିତ ବେଦକୁ ପୃଥିବୀର ଆଦି ଧର୍ମଶାସ୍ତ୍ର ବୋଲି ଏକବାକ୍ୟରେ ନିଃସନ୍ଦେହ-ରୂପେ ପ୍ରକାଶ କରିବାକୁ କିଛି ମାତ୍ର ଦ୍ୱିଧା ବିଚାର କରି ନାହାନ୍ତି । ଥୋକେ ପାଶ୍ଚାତ୍ୟ ପଣ୍ଡିତ ସେମାନଙ୍କ କଥିତ ମୌଳିକ ଭାଷା ମଧ୍ୟରେ ବୈଦିକ ଭାଷାର ଧାତୁଗତ ସାମଞ୍ଜସ୍ୟ ଥିବାର ଦେଖି ଋଗ୍‌ବେଦକୁ ସେମାନଙ୍କର ଆଦିମ ଧର୍ମଗ୍ରନ୍ଥ ବୋଲି ସୁସ୍ପଷ୍ଟରୂପେ ପ୍ରକାଶ କରିବାକୁ କିଛି ମାତ୍ର କୁଣ୍ଠିତ ହୋଇ ନାହାନ୍ତି । ସେମାନଙ୍କ ମତରେ ପୃଥିବୀସ୍ଥ ଆଦି ସଭ୍ୟଜାତିର ଧର୍ମଶାସ୍ତ୍ର ବେଦ । ସେହି ଜାତି ଆର୍ଯ୍ୟ ନାମରେ ପରିଚିତ ହେଉଥିଲେ । ବଂଶ ବାହୁଲ୍ୟ ଯୋଗୁ ସେହି ଜାତି ପୃଥିବୀ ମଧ୍ୟରେ ଇତସ୍ତତଃ ବିକୀର୍ଣ୍ଣ ହୋଇ ପଡ଼ିଅଛନ୍ତି । ପରସ୍ପର ସମ୍ପର୍କ ବିଚ୍ଛିନ୍ନତା ଓ ଦୂର ଦେଶରେ ବାସଯୋଗୁ, ସେମାନଙ୍କ ଭାଷା ପୃଥକ୍ ହୋଇ ପଡ଼ିଅଛି ।

ଧର୍ମଗ୍ରନ୍ଥର ଭାଷା ସମ୍ବନ୍ଧରେ ବିଚାର କରିବାକୁ ଗଲେ ସହଜରେ ମନ ମଧ୍ୟରେ ଏପରି ଭାବର ଉଦୟ ହେବାନିତାନ୍ତ ସମ୍ଭବ ଯେ, ଈଶ୍ୱରଦତ୍ତ ଧର୍ମଶାସ୍ତ୍ରର ଏପରି ଭାଷା ହେବା ଉଚିତ, ଯହିଁରେ କି ସମସ୍ତ ଜାତିର ସମାନ ଅଧିକାର ବର୍ତ୍ତମାନ ଥିବ । ଈଶ୍ୱର ଯଦି ଜାତିବିଶେଷ ପାଇଁ କୃପା କରି ସେହି ଜାତିକଥିତ ଭାଷାରେ ଧର୍ମଶାସ୍ତ୍ର ପ୍ରଦାନ କରିଥାନ୍ତି, ତେବେ ଅନ୍ୟ-ଜାତିର ଈଶ୍ୱରଙ୍କ ପ୍ରତି ପକ୍ଷପାତିତା ଦୋଷାରୋପ କରିବା ଖୁବ୍ ଅଧିକାର ଅଛି । ମାତ୍ର ଏପରି ଭାବକୁ ମନମଧ୍ୟରେ ସ୍ଥାନ ଦେବା ମଧ୍ୟ ପ୍ରତ୍ୟବାୟର କାରଣ ଅଟେ । ବୈଦିକ ଭାଷା ଦେଶବିଶେଷ ବା ଜାତି-ବିଶେଷ ମଧ୍ୟରେ ଚଳିତ ଭାଷା ନୁହେ । କୌଣସି ସମୟରେ ଥିଲା, ସେଥିର ମଧ୍ୟ ନିଶ୍ଚୟ ପ୍ରମାଣାଭାବ ।

ବୈଦିକ ସଂସ୍କୃତ ଧର୍ମଗ୍ରନ୍ଥର ଭାଷା ଅଟେ । ଏହାପ୍ରତି ପୃଥିବୀସ୍ଥ ସମସ୍ତ ଜାତିର ସମାନ ଅଧିକାର । ଉପସ୍ଥିତ କାଳରେ ମଧ୍ୟ ଦେଖନ୍ତୁ, ଆମେରିକା, ଇଂଲଣ୍ଡ, ଫ୍ରାନ୍‌ସ, ଜର୍ମାନୀ, ଚୀନ, ଜାପାନ ସମସ୍ତ ସଭ୍ୟ ଦେଶସ୍ଥ ବିଦ୍ୟାଳୟମାନଙ୍କରେ ସମାନ ଭାବରେ ପଠିତ ହେଉଅଛି । ଏଥିକୁ ଆମ୍ଭେମାନେ ସାହସ ପୂର୍ବକ ବୋଲିପାରୁଁ, ସଂସ୍କୃତ ଜାତିସାଧାରଣର ଭାଷା, ବେଦ ଜାତିସାଧାରଣ ଧର୍ମଗ୍ରନ୍ଥ; ସୁତରାଂ ବେଦାଧ୍ୟୟନରେ ଜାତି ସାଧାରଣର ସମାନ ଅଧିକାର ।

ସେ ଯାହାହେଉ ପ୍ରବନ୍ଧର ମୂଳ ଉଦ୍ଦେଶ୍ୟ, ବେଦାଧିକାରୀଙ୍କ ସମ୍ବନ୍ଧରେ କିଛି କଥା ବୋଲିବା ।

ବେଦାଧିକାରୀ କିଏ ? ଅର୍ଥାତ୍ କେଉଁ ଲୋକର ବେଦ ଅଧ୍ୟୟନ କରିବାର ଅଧିକାର ଅଛି ? ଏହି ପ୍ରଶ୍ନର ସଂକ୍ଷିପ୍ତ ସରଳ ଉତ୍ତର ଏହି ଯେ—ବେଦ ସନାତନ ଧର୍ମଗ୍ରନ୍ଥ, ମାନବଜାତି ସହିତ ସୃଷ୍ଟ, ଏହା ଧର୍ମର ମୌଳିକ ସତ୍ୟସମଷ୍ଟିର ସଂଗ୍ରହ ମାତ୍ର । ଜାତି, ଧର୍ମ, ବର୍ଣ୍ଣ, ସ୍ତ୍ରୀ, ପୁରୁଷ ନିର୍ବିଶେଷରେ ସମସ୍ତ ମାନବ

ଏହା ଅଧ୍ୟୟନରେ ଅଧିକାରୀ; ମାତ୍ର ସଚରାଚର ଦେଖା ଯାଏ, ଭାରତୀୟ ବ୍ରାହ୍ମଣମାନେ ବେଦକୁ ନିତାନ୍ତ ନିଜସ୍ୱ ଜ୍ଞାନକରି ଅପର ଜାତିକୁ ଏହା ସମ୍ପର୍କରୁ ଦୂରରେ ରହିବା ସକାଶେ ଦୃଢ଼ରୂପେ ଆଦେଶ କରିବାକୁ କିଛିମାତ୍ର କୁଣ୍ଠିତ ନୁହନ୍ତି ।

"ସ୍ତ୍ରୀ ଶୂଦ୍ରଦ୍ୱିଜବନ୍ଧୂନାଂ ତ୍ରୟୀନ ଶ୍ରୁତିଗୋଚରା ।"

ଏହି ଶ୍ଳୋକାର୍ଦ୍ଧ ବ୍ରାହ୍ମଣମାନଙ୍କର ସ୍ୱପକ୍ଷ ସମର୍ଥନର ଉକ୍ତି । ମାତ୍ର ନିଶ୍ଚୟ ଏହା କୌଣସି ପ୍ରାମାଣିକ ଶାସ୍ତ୍ରର ବଚନ ନୁହେ, ବ୍ରାହ୍ମଣମାନଙ୍କ କଳ୍ପିତ ବାକ୍ୟ ଅଟେ । ସତ୍ୟ କଥା, ବ୍ରାହ୍ମଣମାନେ ଏକା ବେଦାଧ୍ୟୟନରେ ଉପଯୁକ୍ତ, ଏହା ବୋଲିବା ନିତାନ୍ତ ଅସଙ୍ଗତ କଥା ନୁହେ—ମାତ୍ର ଏପରି ବ୍ରାହ୍ମଣ କିଏ ? ଯଦି ଶାସ୍ତ୍ରୀୟ ଆଦେଶ ପ୍ରତି ଆସ୍ଥା ସ୍ଥାପନ ପୂର୍ବକ ବୋଲାଯାଏ, ଜନ୍ମଗତ ଭାବରେ କିମ୍ବା ଛ—ଣି ସୂତ୍ରଧାରୀଙ୍କୁ ବ୍ରାହ୍ମଣ ବୋଲିବା କଦାଚ ଯୁକ୍ତିସଙ୍ଗତ ନୁହେ । ଯେ ହେତୁ—ଶାସ୍ତ୍ରୀୟ ଉକ୍ତି ଯଥା—

"ଜନ୍ମନା ଜାୟତେ ଶୂଦ୍ରଃ ସଂସ୍କାରାଦ୍ଦ୍ୱିଜ ଉଚ୍ୟତେ ।
ବେଦାଭ୍ୟାସୀ ଭବେଦ୍ ବିପ୍ରଃ ବ୍ରହ୍ମଜାନାତି ବ୍ରାହ୍ମଣଃ ।"

ଯେଉଁ ଲୋକ ବେଦାଭ୍ୟାସୀ ବା ବ୍ରହ୍ମଜ୍ଞ ସେହି ମଧ୍ୟ କେବଳ ଜନ୍ମଗତ ଦାବି ବା ସୂତ୍ରଚିହ୍ନରେ ଆପଣାଙ୍କୁ ବ୍ରାହ୍ମଣ ବୋଲି ପରିଚୟ ଦେବାକୁ ଲଜ୍ଜିତ ନୁହନ୍ତି । ଏପରି ଲୋକପକ୍ଷରେ ବେଦ ସମ୍ବନ୍ଧରେ କିଛି କଥା ବୋଲିବାର ଅଧିକାର ଅଛି କି ? ଧର୍ମଶାସ୍ତ୍ରର ଆଦେଶାନୁସାରେ ଏପରି ଲୋକ ବ୍ରାହ୍ମଣ କୁଳରେ ଜନ୍ମଗ୍ରହଣ କରିଥିଲେ ମଧ୍ୟ ଚଣ୍ଡାଳ ଶ୍ରେଣୀରେ ଗଣ୍ୟ ହେବାର ଯୋଗ୍ୟ ଅଟନ୍ତି -

"ଚଣ୍ଡାଳୋଽପି ଦ୍ୱିଜଶ୍ରେଷ୍ଠଃ ହରିଭକ୍ତିପରାୟଣଃ ।
ହରିଭକ୍ତିବିହୀନସ୍ତୁ ଦ୍ୱିଜୋଽପି ଶ୍ୱପଚାଧମଃ ।"

ଆମ୍ଭମାନଙ୍କ ପ୍ରାମାଣିକ ଶାସ୍ତ୍ରମାନଙ୍କରେ ବହୁସ୍ଥାନରେ ଉଲ୍ଲେଖ ଅଛି, ବଂଶଗତ ବା ଜନ୍ମଗତ ଭାବରେ ଲୋକ ବ୍ରାହ୍ମଣ ଅଭିଧାନରେ ବାଚ୍ୟ ହୋଇ ନ ପାରେ, ଜ୍ଞାନ ଏବଂ କର୍ମ ବ୍ରାହ୍ମଣତ୍ୱ ସମ୍ପାଦନରେ ଉପାୟ ମାତ୍ର ଅଟେ । ଭଗବାନ୍ ବାସୁଦେବଙ୍କ ଶ୍ରୀମୁଖ ବାକ୍ୟ ଶୁଣନ୍ତୁ —

"ଚାତୁର୍ବର୍ଣ୍ଣ୍ୟଂ ମୟା ସୃଷ୍ଟଂ ଗୁଣକର୍ମବିଭାଗଶଃ ।
ତସ୍ୟ କର୍ତ୍ତାରମପି ମାଂ ବିଦ୍ଧ୍ୟକର୍ତ୍ତାରମବ୍ୟୟଂ ।"

ଗୁଣ ଏବଂ କର୍ମ ଅନୁସାରେ ବ୍ରାହ୍ମଣ ଆଦି ଚାରିବର୍ଣ୍ଣ ପୃଥକ୍ ପୃଥକ୍ ରୂପେ ଭଗବାନ ସୃଷ୍ଟି କରିଅଛନ୍ତି । ଶ୍ଳୋକର ଭାବାର୍ଥରୁ ଏହା ମଧ୍ୟ ଜଣାଯାଏ, ଯଦିଚ ଭଗବାନ୍ ସ୍ୱୟଂ ଜାତିଚତୁଷ୍ଟୟର ସ୍ରଷ୍ଟା; ମାତ୍ର ଜାତିବିଭାଗ ସ୍ଥାନରେ ସେ ଅକର୍ତ୍ତା ଅଟନ୍ତି । ଗୁଣ ଏବଂ କର୍ମ ଅନୁସାରେ ତୁମ୍ଭେମାନେ ଚାରିଜାତିରେ ବିଭକ୍ତ ହୁଅ । ଅର୍ଥାତ୍ ଭଗବାନ୍ ମାତୃଗର୍ଭରୁ ମାନବର ଜାତି ନିର୍ଣ୍ଣୟ କରି ଦେଇ ନାହାନ୍ତି । ଏହି ବାକ୍ୟର ପୋଷକତାରେ ପୁରାଣାଦି ଶତ ଶତ ସ୍ଥାନରେ ବଚନମାନ ଉଲ୍ଲେଖ ଥିବାର ଦେଖାଯାଏ । ପ୍ରାମାଣିକ ପୁରାଣ ମହାଭାରତ ଏବଂ ଭାଗବତରୁ ଦୁଇଗୋଟି ମାତ୍ର ଶ୍ଳୋକ ଉଦ୍ଧାର କରି ଦେଉଅଛୁଁ —

"ଯସ୍ୟ ଯଲ୍ଲକ୍ଷଣଂ ପ୍ରୋକ୍ତଂ
ପୁଂସ ବର୍ଣ୍ଣାଭିବ୍ୟଞ୍ଜକଂ
ଯଦନ୍ୟତ୍ରାପି ଦୃଶ୍ୟେତ
ତତ୍ତେ ନୈବ ବିନିର୍ଦ୍ଦିଶେତ୍ ।"

( ଭାଗବତ )

ଅର୍ଥାତ୍ ବର୍ଣ୍ଣାଭିବ୍ୟଞ୍ଜକ ଯାହାର ଯେଉଁ ଲକ୍ଷଣ ପୂର୍ବରେ ବୋଲା ଯାଇଅଛି, ତାହା ଅନ୍ୟ ବର୍ଣ୍ଣ ସମ୍ଭୂତ ବ୍ୟକ୍ତିଠାରେ ଦେଖା ଗଲେ ତାହାକୁ ମଧ୍ୟ ସେହି ଜାତି ବୋଲି ସ୍ଥିର କରିବ ।

"ଶୂଦ୍ରେ ଚୈତଦ୍ ଭବେଦ୍ ଲକ୍ଷ୍ୟଂ
ଦ୍ୱିଜେ ତଚ୍ଚ ନ ବିଦ୍ୟତେ ।
ନ ସ ଶୂଦ୍ରୋ ଭବେଚ୍ଛୂଦ୍ରଃ
ବ୍ରାହ୍ମଣୋ ନ ଚ ବ୍ରାହ୍ମଣଃ ।"

( ମହାଭାରତ )

ଅର୍ଥ—ଶୂଦ୍ରଠାରେ ଯେବେ ସଦ୍‌ଗୁଣ ଦୃଷ୍ଟ ହୁଏ, ବ୍ରାହ୍ମଣଠାରେ ଯଦି ସଦ୍‌ଗୁଣ ଦେଖା ନ ଯାଏ, ତେବେ ସେ ଶୂଦ୍ର ନୁହେ-ବ୍ରାହ୍ମଣ, ସେ ବ୍ରାହ୍ମଣ ନୁହେ—ଶୂଦ୍ର ଅଟେ । ଅର୍ଥାତ୍ ଆମ୍ଭମାନଙ୍କର ପ୍ରାମାଣିକ ଶାସ୍ତ୍ରମାନଙ୍କରେ ସୁସ୍ପଷ୍ଟରୂପେ ଉଲ୍ଲେଖ ଅଛି—ବ୍ରାହ୍ମଣ କୂଳରେ ଜାତ ହେଉ ବା ନ ହେଉ, ସେ କଥା ଧର୍ତ୍ତବ୍ୟ ମଧ୍ୟରେ ନୁହେ । ଜ୍ଞାନୀ, ସଚ୍ଚରିତ୍ର, ଈଶ୍ୱରପରାୟଣ ଲୋକ ହିଁ ବ୍ରାହ୍ମଣ ଆଖ୍ୟା ଧାରଣ କରିବାର ଉପଯୁକ୍ତ ଅଟନ୍ତି ।

ଛାନ୍ଦୋଗ୍ୟ ଉପନିଷଦରେ ଉକ୍ତ ସ୍ୱୈରିଣୀ ଦାସୀ, ଜାବାଲୀ ନନ୍ଦନ ସତ୍ୟକାମ କେବଳ ସତ୍ୟବାଦିତା ଗୁଣରେ ଋଷି ଗୌତମଙ୍କଦ୍ୱାରା ଗୁରୁଗୋତ୍ର ଧାରଣ ପୂର୍ବକ ବ୍ରାହ୍ମଣତ୍ୱ ଲାଭ କରିଥିଲେ । ତେବେ ସ୍ପଷ୍ଟ-ରୂପେ ଜଣାଯାଉଅଛି, ସଚ୍ଚରିତ୍ରତା, ବ୍ରହ୍ମନିଷ୍ଠା ଏବଂ ଜ୍ଞାନ ହିଁ ବ୍ରାହ୍ମଣତ୍ୱ ଲାଭର ଏକମାତ୍ର ଉପାୟ । 'ନାନ୍ୟଃ ପନ୍ଥା ବିଦ୍ୟତେ ଅୟନାୟ ।'

ପୁରୁଷାନୁକ୍ରମିକ ଅଧିକାର ପାର୍ଯ୍ୟସ୍ତ ବଳରେ ବ୍ରାହ୍ମଣମାନେ ଅନ୍ୟ ଜାତିମାନଙ୍କୁ ବେଦାଧିକାରିତ୍ୱରୁ ବଞ୍ଚିତ କରିବାକୁ ଚେଷ୍ଟା କରିଥାନ୍ତି । ସେମାନଙ୍କର ଉକ୍ତି, ଗୌତମ ଗୃତ୍ସମଦ ସୂର୍ଯ୍ୟ, ବାପୁ ପ୍ରଭୃତି ମହର୍ଷିମାନେ ବେଦସ୍ରଷ୍ଟା ଅଟନ୍ତି ଏବଂ ସେମାନେ ବ୍ରାହ୍ମଣ ଥିବାରୁ, ସୁତରାଂ ବଂଶାଧିକାରିତ୍ୱ ସୂତ୍ରେ ତଥାକଥିତ ବ୍ରାହ୍ମଣମାନେ ଏକମାତ୍ର ବେଦାଧିକାରୀ ଅଟନ୍ତି । ବର୍ତ୍ତମାନ ବୁଝିବାର ଆବଶ୍ୟକ, ଉକ୍ତ ଋଷିମାନେ ଜାତିଗତ ବା ଗୁଣକର୍ମାନୁଯାୟୀ ବ୍ରାହ୍ମଣ ଥିଲେ । ହେଉ, ସ୍ୱୀକାର କଲୁ, ମନ୍ତ୍ରଦ୍ରଷ୍ଟାମାନେ ବ୍ରାହ୍ମଣ—ତୁମ୍ଭର ସେଥିରେ କି ଅଧିକାର ? ଶୁଣିବାକୁ ପାଉଁ, ଦିଲ୍ଲୀ ମୋଗଲ ସମ୍ରାଟଙ୍କର କେତେଜଣ ବଂଶଧର ବର୍ତ୍ତମାନ ଖାନସମା ଓ ଦର୍ଜି କର୍ମରେ ନିଯୁକ୍ତ ଅଛନ୍ତି; ସେମାନେ ଯେବେ ପୈତୃକ ସ୍ୱତ୍ତ୍ୱ ଅଧିକାର ବଳରେ ଭାରତରେ ଆଧିପତ୍ୟ ବିସ୍ତାର କରିବାକୁ ଇଚ୍ଛା କରନ୍ତି, ସେମାନଙ୍କ ଚେଷ୍ଟା ଯେମନ୍ତ ଉପହାସ୍ୟାସ୍ପଦ ଏବଂ ଦଣ୍ଡଯୋଗ୍ୟ, ବର୍ତ୍ତମାନ ନିରାମୂର୍ଖ ବୋଷେଇଆ ପଣ୍ଡା ଆଦି ସତପଥୀ ବା ହୋଟେଲ ମନ୍ଦିର ମହନ୍ତ ଗୋପୀ ତିହାଡ଼ୀ ବେଦାଧି-କାରୀ ବଂଶ ପରିଚୟ ବଳରେ ଅନ୍ୟ ଜାତିକୁ ତହିଁରୁ ବଞ୍ଚିତ କରିବାକୁ ଚେଷ୍ଟା କରିବା ମୋଗଲ ବଂଶଧର ଫଇଜ୍ ମିଆଁଠାରୁ ଊଣା ଉପହସନୀୟ ଓ ଦଣ୍ଡଯୋଗ୍ୟ ନିଶ୍ଚୟ ହେବେ ନାହିଁ । ଆମ୍ଭମାନେ ନ ହେଲା ତର୍କଚ୍ଛଳରେ ସ୍ୱୀକାର କରୁ, ଗୌତମ ଗୃତ୍ସମଦ ପ୍ରଭୃତି ଜନ୍ମଗତ ବ୍ରାହ୍ମଣ ଥିଲେ; ମାତ୍ର ବୈଦିକ ଋଷି ଦିବୋଦାସ ଜନ୍ମଗତ ଶୂଦ୍ର ଥିଲେ ତ ? ତେବେ ତାଙ୍କ ଉତ୍ତରାଧିକାରୀ ଶୂଦ୍ରମାନେ କି ସକାଶେ ବେଦାଧିକାରୀ ନ ହେବେ ? ବ୍ରାହ୍ମଣ-ମାନେ ବେଦାଧ୍ୟାୟୀ ହେଉନ୍ତୁ, ହିନ୍ଦୁ ସମାଜ ଉଜ୍ଜ୍ୱଳ ହେଉ, କୁସଂସ୍କାର ଓ କ୍ଷୁଦ୍ର ପକ୍ଷମାନ ଦୂର ହେଉ, ଏହା ନିତାନ୍ତ ବାଞ୍ଛନୀୟ; ମାତ୍ର ଆପେ ବେଦସମ୍ପର୍କ ତ୍ୟାଗୀ ହୋଇ ଅନ୍ୟ ଜାତିର ବେଦପାଠ ଦେଖି ରଡ଼ି ଛାଡ଼ିବା ଦେଖିଲେ ଈଶପ୍ ଫେବ୍‌ଲର ଦାସଗଦା ଉପରେ ଶାୟିତ ପ୍ରାଣୀବିଶେଷ କଥା ସହଜରେ ଆମ୍ଭମାନଙ୍କ ମନରେ ପଡ଼ଯାଏ । ବ୍ରାହ୍ମଣମାନଙ୍କ ଅସଙ୍ଗତଦାବୀ ଏବଂ ଅତ୍ୟାଗ୍ରହ ହେତୁରୁ ଭାରତରୁ ବେଦବିଦ୍ୟା ବିଲୁପ୍ତ ପ୍ରାୟ ହୋଇଥିଲା । ଇଷ୍ଟ ଇଣ୍ଡିଆ କମ୍ପାନୀର ସମସ୍ତ ଭାରତ ମଧ୍ୟରେ ବହୁବର୍ଷ ବ୍ୟାପୀ ଅନ୍ୱେଷଣରେ ଜୟପୁର ମହାରାଜାଙ୍କ ପୁସ୍ତ-କାଳୟରୁ ଖଣ୍ଡେ ଋଗ୍‌ବେଦର ପାଣ୍ଡୁଲିପି ବାହାରିଥିଲା । ଅନ୍ୟଥା ଅଦ୍ୟ ଭାରତର ସର୍ବତ୍ର ପ୍ରଚଳିତ ଦେଖୁଅଛ,

ତାହା କେବଳ ବିଦ୍ୟାର ଗୌରବ ରକ୍ଷାକାରୀ ଇଂରେଜ ପ୍ରସାଦାତ୍ । ଭଗବାନ୍ ବିଷ୍ଣୁ ବରାହ ରୂପ ଧାରଣ କରି ଥରେ ବିଲୁପ୍ତ ବେଦକୁ ଉଦ୍ଧାର କରିଥିଲେ; ଦ୍ୱିତୀୟ ଥର ଇଂରେଜ 'ଧୃତବାନସି ବେଦଂ' । ହେ ବ୍ରାହ୍ମଣଗଣ, କୃତଜ୍ଞତା ସ୍ୱୀକାର ଯଦି ପୁଣ୍ୟକାର୍ଯ୍ୟ ବୋଲି ଜ୍ଞାନକର, ବରାହ ମୂର୍ତ୍ତି ନିକଟରେ ଇଂରେଜ ମୂର୍ତ୍ତି ବସାଇ ଅର୍ଚ୍ଚନା କର । ସମାଲୋଚ୍ୟ ବିଷୟରେ କେବଳ ଇତର ସାଧାରଣଙ୍କ ମତ ପ୍ରତି ଲକ୍ଷ୍ୟ କରି ଏତେ ଆନ୍ଦୋଳନ କରିବାର ପ୍ରୟୋଜନ ନ ଥିଲା; ମାତ୍ର ଭାରତରେ ହିନ୍ଦୁଧର୍ମର ପୁନଃ ପ୍ରତିଷ୍ଠାତା, ଅସାଧାରଣ ବାଗ୍ମୀ, ବହୁଶାସ୍ତ୍ରଦର୍ଶୀ, ମନ୍ତ୍ରପୂର୍ଣ୍ଣ ବହୁ ଉପାଦେୟ ଗ୍ରନ୍ଥର ରଚୟିତା, ପୂଜ୍ୟପାଦ ଶଙ୍କରାଚାର୍ଯ୍ୟ ଯେ ସ୍ଥଳେ ଆଲୋଚ୍ୟ ବିଷୟର ଅନୁକୂଳରେ ସ୍ୱମତ ପ୍ରକାଶ କରି ଯାଇଅଛନ୍ତି, ସେ ସ୍ଥଳେ ବିରୁଦ୍ଧ ପ୍ରତି ତାଚ୍ଛଲ୍ୟ ପ୍ରଦର୍ଶନ କରିବା ସହଜ ବ୍ୟାପାର ନୁହେ । ହିନ୍ଦୁମାନଙ୍କ ମତରେ 'ଶଙ୍କରଃ ଶଙ୍କରସ୍ୟାଂଶଃ'—ଶଙ୍କରଙ୍କ ନାମରେ ହିନ୍ଦୁସମାଜ ଗୌରବାନ୍ୱିତ, ଏପରି ଶଙ୍କରଙ୍କ ସମ୍ବନ୍ଧରେ କୌଣସି ମତ ପ୍ରକାଶ କରିବାକୁ ଯିବା ମାଦୃଶ କ୍ଷୁଦ୍ର ପ୍ରାଣୀମାନଙ୍କ ପକ୍ଷରେ ନିଶ୍ଚୟ ଅସୀମ ସାହସିକତାର କାର୍ଯ୍ୟ ଅଟେ । ମାତ୍ର ସତ୍ୟ ଓ ନ୍ୟାୟ ପଦ ତଳେ ଜଗତ୍ ଅବନତ । ଶାସ୍ତ୍ରୀୟ ବିଚାରରେ ଶଙ୍କର ଦିଗ୍‌ବିଜୟୀ ଥିଲେ ସତ୍ୟ; ମାତ୍ର ଭୂତସାକ୍ଷୀ ଇତିହାସ ପ୍ରକାଶ କରେ, ବୌଦ୍ଧ ଓ ଜୈନମାନଙ୍କ ବିନାଶ ସାଧନ ନିମନ୍ତେ ଶଙ୍କର ଅନୁଦାର ମତ ପ୍ରକାଶ କରିବାକୁ କିଛିମାତ୍ର କୁଣ୍ଠିତ ହୋଇ ନାହାନ୍ତି । ଉପସ୍ଥିତ ବିଷୟଟି ମଧ୍ୟ ସେଥି ସମ୍ବନ୍ଧରେ ଅନ୍ୟତମ ପ୍ରମାଣ ଅଟେ ।

"ସର୍ବଂ ଖଳ୍ୱିଦଂ" (ଛାନ୍ଦୋଗ୍ୟ ଉପନିଷଦ୍)
"ଈଶାବାସ୍ୟମିଦଂ ସର୍ବଂ" (ଈଶୋପନିଷଦ୍)

ପ୍ରଭୃତି ବଚନମାନ ଶଙ୍କରଙ୍କର ପ୍ରଧାନ ଅବଲମ୍ବନ ଥିଲା । ଶଙ୍କର ନିଜ ପ୍ରଣୀତ ହସ୍ତାମଲକ ନାମକ କ୍ଷୁଦ୍ର ପୁସ୍ତକରେ ମଧ୍ୟ ଜଗତ୍ ବ୍ରହ୍ମମୟ ବୋଲି ପ୍ରକାଶ କରି ଯାଇଅଛନ୍ତି । "ସୋଽହଂ" ଅର୍ଥାତ୍ ମାନବଆତ୍ମା ଈଶ୍ୱରମୟ, ଶଙ୍କରଙ୍କର ଏହା ଜପ ମନ୍ତ୍ର । ପୁଣି ଶଙ୍କର ଅଦ୍ୱୈତ ମତର ପୋଷକ ଅଟନ୍ତି । ସେହି ଶଙ୍କର ପୁଣି ଶୂଦ୍ର ପକ୍ଷରେ ବେଦାଧ୍ୟୟନର ଅବୈଧତା ପ୍ରତିପନ୍ନ କରିବାକୁ କିଛିମାତ୍ର କୁଣ୍ଠିତ ହୋଇ ନାହାନ୍ତି । ଏହା ଯେ ତାହାଙ୍କ ନିଜ ମତର ସମ୍ପୂର୍ଣ୍ଣ ପ୍ରତିକୂଳ, ଏକଥା ଚିନ୍ତା କରିବାକୁ ବୋଧହୁଏ ସେ ଅବକାଶ ପ୍ରାପ୍ତ ହୋଇ ନ ଥିଲେ । ବର୍ତ୍ତମାନ ଯେ କୌଣସି ଲୋକ ଶଙ୍କରଙ୍କୁ ପ୍ରଶ୍ନ କରିପାରେ, ଶୂଦ୍ର ଆତ୍ମାରେ କି ବ୍ରହ୍ମସତ୍ତାର ଅଭାବ ? ବୋଧହୁଏ, କୁସଂସ୍କାରଚ୍ଛନ୍ନ ସ୍ୱାର୍ଥପର ବ୍ରାହ୍ମଣମାନଙ୍କ ମନୋରଞ୍ଜନ ସକାଶେ ଶଙ୍କର ଈଦୃଶ ଅନୁଦାର ମତ ପ୍ରକାଶ କରିବାକୁ ବାଧ୍ୟ ହୋଇଥିଲେ । ପ୍ରବଳ ପରିପନ୍ଥୀ ବୌଦ୍ଧ ଓ ଜୈନମାନଙ୍କ ବିନାଶ ସାଧନ ନିମନ୍ତେ ଅନୁଦାର ବ୍ରାହ୍ମଣମାନଙ୍କ ମନୋରଞ୍ଜନ କରିବାର ପ୍ରୟୋଜନୀୟତା ଅନୁଭବ କରିଥିଲେ, ଏପରି ଅନୁମାନ କରିବା ଅସଙ୍ଗତ ନୁହେଁ ।

ବ୍ରାହ୍ମଣମାନଙ୍କ ମତରେ ସ୍ତ୍ରୀ, ଶୂଦ୍ର ବେଦରେ ଅନଧିକାରୀ; ମାତ୍ର ଗାର୍ଗୀ, ଅନସୂୟା ମୈତ୍ରେୟୀ, ସୁଲଭା ପ୍ରଭୃତି ସୁପ୍ରସିଦ୍ଧା ବ୍ରହ୍ମବାଦିନୀମାନଙ୍କ ପବିତ୍ର ନାମ ବିଦ୍ୟମାନତାରେ ଶଙ୍କର ନାରୀଜାତି ସମ୍ବନ୍ଧରେ କୌଣସି ମତ ପ୍ରକାଶ କରିବାକୁ ସାହସ କରି ନାହାନ୍ତି । ତାହାଙ୍କର ଯାହା କିଛି ଆକ୍ରମଣ ନିରୀହ ଶୂଦ୍ର ଜାତି ସମ୍ବନ୍ଧରେ । ହେଲେ ଶୂଦ୍ର ଜାତିର ବେଦରେ ଅନଧିକାରିତ୍ୱ ପ୍ରମାଣ ନିମନ୍ତେ ଶଙ୍କର ବିଶେଷ ଯୁକ୍ତିସଙ୍ଗତ ବା ଶାସ୍ତ୍ରୀୟ ପ୍ରମାଣ ପ୍ରୟୋଗ କରିବାକୁ ସମର୍ଥ ହୋଇ ନାହାନ୍ତି । ଆତ୍ମପକ୍ଷ ସମର୍ଥନ ନିମନ୍ତେ ଯେଉଁ ଯୁକ୍ତିମାନ ପ୍ରୟୋଗ କରି ଯାଇଅଛନ୍ତି, ସେ ସମସ୍ତ ନିତାନ୍ତ ଅକିଞ୍ଚିତ୍କର ଅଟେ ।

ଶଙ୍କରଙ୍କ ମତରେ ଅନଗ୍ନିତ୍ୱ ବେଦାଧ୍ୟୟନ ନିଷେଧର ଗୋଟିଏ ପ୍ରଧାନ କାରଣ । ମାତ୍ର ଏହି ଯୁକ୍ତି

ନିତାନ୍ତ ଅସାର ଅଟେ । ଆହିତାଗ୍ନିସ୍ୱ ଅଗ୍ନି ସଂସ୍ଥାପନ ବିନା ଲୋକେ ବେଦାଧ୍ୟୟନରେ ଅଧିକାର ଲାଭ କରିବାକୁ ଅକ୍ଷମ ହେବେ, ଏ ସମ୍ବନ୍ଧରେ ବୈଦିକ ମତରେ କୌଣସି ପ୍ରମାଣ ଅଭାବ । ପ୍ରତ୍ୟୁତ ଏହା ବିପକ୍ଷରେ ବହୁସଂଖ୍ୟକ ପ୍ରବଳ ପ୍ରମାଣ ବିଦ୍ୟମାନ । ଶୂଦ୍ର ରାଜା ଦାନଶ୍ରୁତି ବା ଦାସୀପୁତ୍ର ବିଦୁରଙ୍କ ସ୍ୱାଧ୍ୟାୟିତ୍ୱ ଏବଂ ବ୍ରହ୍ମବାଦିତ୍ୱ ମହର୍ଷି ମଣ୍ଡଳରେ ସ୍ୱୀକୃତ ଏବଂ ସମ୍ମାନିତ । ପ୍ରାଚୀନ ଶାଳ, ସତ୍ୟଯଜ୍ଞ, ଇନ୍ଦ୍ରଦ୍ୟୁମ୍ନ, ଜନ ଏବଂ ବୁଡ଼ିଲ ଗୃହସ୍ଥ ଅନଗ୍ନିକ ଉପନୟନ ବିହୀନ ପାଞ୍ଚଜଣ ଶିଷ୍ୟ କେକୟ ରାଜ ଅଶ୍ୱପତିଙ୍କଠାରୁ ବ୍ରହ୍ମବିଦ୍ୟା ଲାଭ କରିଥିବାର ଛାନ୍ଦୋଗ୍ୟ ଉପନିଷଦରେ ପ୍ରକାଶ । ପୁଣି ଶୂଦ୍ର ଋଷି କବଷ, ଏଲୁଷ ଭୃଗୁ ଓ ଅଙ୍ଗିରା ମହର୍ଷିମାନଙ୍କ ଅନୁମୋଦନରେ ଯଜ୍ଞାଧିକାର ପ୍ରାପ୍ତି ବିଷୟ ଐତରେୟ ବ୍ରାହ୍ମଣରେ ଉଲ୍ଲେଖ ଥିବାର ଦେଖାଯାଏ ।

ଶଙ୍କରଙ୍କର ଅନ୍ୟତମ, ଉପନୟନ ବିନା କେହି ବେଦାଧ୍ୟୟନରେ ଅଧିକାରୀ ହୋଇ ନ ପାରେ । ପ୍ରମାଣ ସ୍ଥଳରେ ଯେବେ ଏକଥା ଗ୍ରାହ୍ୟ କରାଯାଏ, ତାହା ହିଁ ହେଉ । ବେଦାଧ୍ୟୟନ ପୂର୍ବେ ଶୂଦ୍ରମାନେ ଯଜ୍ଞୋପବୀତ ଧାରଣ କରନ୍ତୁ । ଶୂଦ୍ରପକ୍ଷରେ ଉପବୀତ ଧାରଣ ନିଷେଧ—ବେଦରେ ଏମନ୍ତ କିଛି କଥା ସୁସ୍ପଷ୍ଟରୂପେ ଉଲ୍ଲେଖ ନାହିଁ । ଉପନୟନ ସହିତ ବେଦାଧ୍ୟୟନର ନିତ୍ୟନୈମିତ୍ତିକ ସମ୍ବନ୍ଧ, ଅନ୍ୟାନ୍ୟ ଶାସ୍ତ୍ରରେ ମଧ୍ୟ ଏଥିର ପ୍ରମାଣାଭାବ ।

ବେଦରେ ଉଲ୍ଲେଖ ଅଛି ସତ୍ୟ, ବ୍ରାହ୍ମଣତନୟ ଉପନୟନ ଉତ୍ତାରେ ବେଦାଧ୍ୟୟନ ନିମନ୍ତେ ଗୁରୁ-କୁଳକୁ ଗମନ କରିବ । ଅନ୍ୟାନ୍ୟ ହେତୁବାଦରୁ ଜଣାଯାଏ, ବ୍ରାହ୍ମଣତନୟ ବୟଃପ୍ରାପ୍ତ ହେବା ଉତ୍ତାରେ ଗୁରୁକୁଳକୁ ଗମନ କରିବ । ଏ କଥାର ଉଦ୍ଦେଶ୍ୟ ଏହାହିଁ ଅଟେ । ଗାର୍ଗୀ ମୈତ୍ରେୟୀ ପ୍ରଭୃତି ନାରୀମାନେ ଉପବୀତ ଧାରିଣୀ ନୁହନ୍ତି, ସେମାନେ କି ପ୍ରକାର ବେଦବାଦିନୀ ହେଲେ ?

ଶଙ୍କରଙ୍କର ଅନ୍ୟତମ ଉକ୍ତି—ଶୂଦ୍ରର ଜ୍ଞାନ ସୀମାବଦ୍ଧ, ସୁତରାଂ ସେ ବେଦାଧ୍ୟୟନରେ ଅନଧିକାରୀ । ଏହି ଯୁକ୍ତି ନିତାନ୍ତ ଅସାର—ପ୍ରତ୍ୟୁତ ବର୍ତ୍ତମାନ କାଳରେ ନିତାନ୍ତ ହାସ୍ୟକର ଅଟେ । ସଂଶୟ ସମାକୁଳ ପ୍ରାଚୀନ ପୌରାଣିକ ଶାସ୍ତ୍ରୀୟ ପ୍ରମାଣ ପରିତ୍ୟାଗ କରନ୍ତୁ, ବର୍ତ୍ତମାନ ପ୍ରତ୍ୟକ୍ଷ ପ୍ରମାଣ ଦେଖନ୍ତୁ—ସ୍ୱର୍ଗୀୟ ରମେଶ ଚନ୍ଦ୍ର, ବ୍ରଜେନ୍ଦ୍ରନାଥ ଶୀଲ, ମହା ମହୋପାଧ୍ୟାୟ ମୋକ୍ଷମୂଲର ବା ଗୋଲଷ୍ଟୁକରଙ୍କ ସମାସନରେ ବସିବାକୁ ପ୍ରାଚୀନ ଯାସ୍କ, ମହେନ୍ଦ୍ର ବା ଆଧୁନିକ ମହାତ୍ମା ଦୟାନନ୍ଦ ସରସ୍ୱତୀ ପ୍ରଭୃତିଙ୍କୁ ଛାଡ଼ି କେତେଜଣ ବ୍ରାହ୍ମଣ ମିଳିବେ ? ମହାରାଷ୍ଟ୍ର, ତୈଲଙ୍ଗ, ଦ୍ରାବିଡ଼ ବ୍ରାହ୍ମଣମାନେ ବର୍ତ୍ତମାନ କାଳରେ ବେଦର କେତେକ ସମ୍ମାନ ରକ୍ଷା କରିଅଛନ୍ତି ସତ, ଅନ୍ୟ ଦେଶୀୟ ବ୍ରାହ୍ମଣମାନେ ବେଦ ସମ୍ପର୍କ ଏକାବେଳକେ ତ୍ୟାଗ କରିଅଛନ୍ତି ବୋଇଲେ ଅତ୍ୟୁକ୍ତି ହେବ ନାହିଁ ।

ହିନ୍ଦୁଜାତିର ସାରସମ୍ପଦ ପୃଥିବୀ ସମ୍ମାନିତ ଗୀତାଶାସ୍ତ୍ର । ଗୀତା ଏ ସମ୍ବନ୍ଧରେ କି ମତ ପ୍ରକାଶ କରୁଅଛି, ଦେଖିବାର ଆବଶ୍ୟକ । ଭଗବାନ୍ ବାସୁଦେବଙ୍କ ଶ୍ରୀମୁଖ ବାକ୍ୟ—

"ସମୋଽହଂ ସର୍ବଭୂତେଷୁ
ନମେ ଦ୍ୱେଷ୍ୟୋଽସ୍ତି ନ ପ୍ରିୟଃ"
ଗୀତା—୯ ଅ: ୨୯ ଶ୍ଳୋକ

ଭଗବାନଙ୍କ ଦୃଷ୍ଟିରେ ବ୍ରାହ୍ମଣ ଶୂଦ୍ର ସମସ୍ତେ ସମାନ । ତିନି ପ୍ରକାର ତପଃ ସାଧନ କରିବାର ପ୍ରତ୍ୟେକ ଲୋକର ଅଧିକାର ଅଛି । ବାକ୍ୟମୟ ତପସ୍ୟା ଯଥା —

"ଅନୁଦ୍‌ବେଗ କରଂ ବାକ୍ୟଂ
ସତ୍ୟ ପ୍ରିୟହିତଞ୍ଚ ଯତ
ସ୍ୱାଧ୍ୟାୟାଭ୍ୟସନଂ ଚୈବ
ବାଙ୍ମୟଂ ତପ ଉଚ୍ୟତେ ।"
ଗୀତା—୧୭ ଅ: ୧୫ ଶ୍ଳୋକ

ବାଙ୍ମୟ ତପଃ ସାଧନ କରିବାର ସମସ୍ତଙ୍କର କର୍ତ୍ତବ୍ୟ; ସୁତରାଂ ବେଦ ପାଠରେ ସମସ୍ତଙ୍କର ଅଧିକାର ଅଛି ।

ବ୍ରହ୍ମଜ୍ଞାନୀ ତତ୍ତ୍ୱଦର୍ଶୀ ପକ୍ଷରେ ବେଦପାଠ ନିତାନ୍ତ ଅକାଙ୍କ୍ଷିତକର—ବରଞ୍ଚ ଅନାବଶ୍ୟକ ।

"ତ୍ରୈଗୁଣ୍ୟ ବିଷୟା ବେଦା ନିସ୍ତ୍ରେଗୁଣ୍ୟ ଭବାର୍ଜ୍ଜୁନ ।
—ଗୀତା

"ଯାମିମାଂ ପୁଷ୍ପିତାଂ ବାଚଂ ପ୍ରବଦନ୍ତ୍ୟ ବିପଶ୍ଚିତଃ ।
ବେଦବାଦରତାଃ ପାର୍ଥ ନାନ୍ୟଦସ୍ତୀତିବାଦିନଃ ।
କାମାତ୍ମାନଃ ସ୍ୱର୍ଗପରାଃ ଜନ୍ମକର୍ମ ଫଳପ୍ରଦାଃ ।
କ୍ରିୟା ବିଶେଷବହୁଳା ଭୋଗୈଶ୍ୱର୍ଯ୍ୟ ଗତିଂ ପ୍ରତି ।
ଭୋଗୈଶ୍ୱର୍ଯ୍ୟ ପ୍ରସକ୍ତାନାଂ ତୟାପହୃତ ଚେତସାଂ ।
ବ୍ୟବସାୟାତ୍ମିକା ବୁଦ୍ଧିଃ ସମାଧୌ ନ ବିଧୀୟତେ ।"
—ଗୀତା

"ଯାବନର୍ଥ ଉଦପାନେ ସର୍ବତଃ ସମ୍ପ୍ଲୁତୋଦକେ ।
ତାବାନ୍ ସର୍ବେଷୁ ବେଦେଷୁ ବ୍ରାହ୍ମଣସ୍ୟ ବିଜାନତଃ ।"

ବର୍ତ୍ତମାନ ଅନ୍ୟାନ୍ୟ ଶାସ୍ତ୍ରୀୟ ବଚନ ପରିତ୍ୟାଗ କରାଯାଉ । ମୂଳ ବେଦରେ ଉପସ୍ଥିତ ବିଷୟ ସମ୍ବନ୍ଧରେ କି ଆଦେଶ ଦେଖିବା ଆବଶ୍ୟକ ।

"ଯଥେମାଂ ବାଚଂ କଲ୍ୟାଣୀ ମାବଦାନି ଜନେଭ୍ୟ
ବ୍ରହ୍ମରାଜନ୍ୟାଭ୍ୟାଂ ଶୂଦ୍ରାୟ ଚାର୍ଯ୍ୟାୟ ଚ ସ୍ୱାୟ ଚାରଣାୟ ।"
—ଯଜୁର୍ବେଦ

( ପରମେଶ୍ୱରଙ୍କ ଆଦେଶ )

ଯେମନ୍ତ ଆମ୍ଭେ ଲୋକମାନଙ୍କ ସକାଶେ ଏହି କଲ୍ୟାଣକାରିଣୀ "ବାଚମ୍" ଅର୍ଥାତ୍ ବେଦବିହିତ ବାଣୀ ଉପଦେଶ ଦେଉଅଛୁଁ, ତୁମ୍ଭେ ସେହିପରି ଅନୁଷ୍ଠାନ କରିବ । ଆମ୍ଭେ ବ୍ରାହ୍ମଣ କ୍ଷତ୍ରିୟ ବୈଶ୍ୟ ଶୂଦ୍ର ନିଜ ଭୃତ୍ୟ ଏବଂ ନାରୀମାନଙ୍କ ସକାଶେ ଏହି ବେଦ ପ୍ରକାଶ କରୁଅଛୁଁ ।

ତୁମ୍ଭେ ଯଦି ବେଦର ମହାବାକ୍ୟକୁ ଅସମ୍ମାନ କରି ସ୍ତ୍ରୀ, ଶୂଦ୍ରମାନଙ୍କୁ ବେଦାଧ୍ୟୟନରୁ ବଞ୍ଚିତ କର, ତେବେ ତୁମ୍ଭେ ନାସ୍ତିକ ନାମରେ କି ସକାଶେ କଥିତ ନ ହେବ ? ଯେହେତୁ—

"ନାସ୍ତିକୋ ବେଦନିନ୍ଦକଂ ।"

କି ଶାରୀରିକ ଗଠନ, କି ମାନସିକ ବୃତ୍ତି, କି ଇନ୍ଦ୍ରିୟ ଚେଷ୍ଟା, ସମସ୍ତ ବିଷୟରେ ପରମେଶ୍ୱର ସକଳ ଜାତିକୁ ତୁଲ୍ୟରୂପେ ନିର୍ମାଣ କରିଅଛନ୍ତି । ଏମନ୍ତ ସ୍ଥଳରେ ଜ୍ଞାନାର୍ଜନ ସକାଶେ ନାରୀଜାତି ବା ଶୂଦ୍ରମାନଙ୍କୁ ବେଦାଧ୍ୟୟନରୁ ବଞ୍ଚିତ କରିବେ, ଏହା କି ସମ୍ଭବପର ?

"କନ୍ୟାପ୍ୟେବଂ ପାଳନୀୟା ଶିକ୍ଷଣୀୟାତିଯତ୍ନତଃ ।"

ଏହା ମଧ୍ୟ ଶାସ୍ତ୍ର ବଚନ । ଶିକ୍ଷଣୀୟା ଅର୍ଥାତ୍ ବେଦ ବିଦ୍ୟା ଶିକ୍ଷଣୀୟା, ଏହା ଶାସ୍ତ୍ରୀୟ ଅନୁଶାସନ ଅଟେ । ପ୍ରାଚୀନ ୟୁହୁଦୀ ଜାତି ନାରୀଜାତିର ଆତ୍ମା ଅଛି ବୋଲି ଅସ୍ୱୀକାର କରୁଥିଲେ । ସେମାନଙ୍କ ମତରେ ସ୍ତ୍ରୀ ଜାତି ପଶୁ ସମାନ । ସ୍ତୋତ୍ରପାଠ ବା ପ୍ରାର୍ଥନା ସମୟରେ ସ୍ତ୍ରୀ-ଜାତିକୁ ଦୂରରେ ରଖୁଥିଲେ । ହେ ଆର୍ଯ୍ୟ ସନ୍ତାନ ! ତୁମ୍ଭେମାନେ କି ସ୍ତ୍ରୀମାନଙ୍କୁ ସେହିପରି ଜ୍ଞାନକର ?

'ଇଦଂ ମନ୍ତ୍ରଂ ପତ୍ନୀ ପଠେତ୍ ।'

ଶଙ୍କର ବା ତଚ୍ଛିଷ୍ୟ ବ୍ରାହ୍ମଣମାନଙ୍କର ସୁସ୍ପଷ୍ଟ ଆଦେଶ—

"ଶୂଦ୍ରମାନଙ୍କୁ ଜ୍ଞାନଶିକ୍ଷା ଦେବ ନାହିଁ, ଶୂଦ୍ରମାନଙ୍କ ନିକଟରେ ବେଦାଧ୍ୟୟନ କରିବ ନାହିଁ । ଶୂଦ୍ର ଯଦି ବେଦ ମନ୍ତ୍ର ଶୁଣେ, ତେବେ ତାହା କାନରେ ଗରମ ସୀସା ବା ଲକ୍ଷା ଢାଳି ଦେବ । ଶୂଦ୍ରମାନଙ୍କୁ ଉଚ୍ଚ ରାଜପଦରେ ନିଯୁକ୍ତ କରିବ ନାହିଁ—ଇତ୍ୟାଦି ଇତ୍ୟାଦି ।

ହେ ବ୍ରାହ୍ମଣମଣ୍ଡଳ ! ଜ୍ଞାନ-ବିଜ୍ଞାନ-ସମ୍ପନ୍ନ, ସାମ୍ୟ-ମୈତ୍ରୀ-ସ୍ୱାଧୀନତା ପ୍ରବର୍ତ୍ତକ, ବିଂଶ ଶତାବ୍ଦୀରେ ଆପଣମାନଙ୍କ ସ୍ୱାର୍ଥକଳୁଷିତ ଅନୁଦାର ମତ କାହିଁ ଭାସିଗଲାଣି । ପ୍ରତ୍ୟକ୍ଷ ଦେଖୁନାହାନ୍ତି—ଆଚାର୍ଯ୍ୟ ରମେଶ ଦତ୍ତଙ୍କ ବୈଦିକ ଟୀକାର କେତେ ସହସ୍ର ବା ଲକ୍ଷ ବ୍ରାହ୍ମଣ ସନ୍ତାନ ଶିକ୍ଷାର୍ଥୀ ? କେତେ ଶୂଦ୍ର ପ୍ରଫେସରଙ୍କ ସମ୍ମୁଖରେ ଶିକ୍ଷାର୍ଥୀ ବ୍ରାହ୍ମଣ ସନ୍ତାନଗଣ କରଯୋଡ଼ି ଦଣ୍ଡାୟମାନ । ଆଉ ରାଜପଦ ? ବାବୁ ରାଜକିଶୋର ଦାସ ହାକିମ—ଗୋବିନ୍ଦ ପାଣ୍ଡେ, ଗୋପି ତ୍ରିପାଠୀ ତାଙ୍କର ଅର୍ଦଲୀ ଓ ଚୋବେଇଆ ପଣ୍ଡା । ଆଉ କଣ ଲୋଡ଼ା ?

( ଉ: ସା: ୧୬ଶ ଭାଗ, ୩ୟ ସଂଖ୍ୟା, ଆଷାଢ଼ ୧୯୧୩ )

———

## ଅଭିଭାଷଣ

ଏହି ଉତ୍କଳ ସାହିତ୍ୟ-ସମାଜର ସ୍ଥାୟୀ ସଭାପତି-ପଦ ଗ୍ରହଣ ସକାଶେ ସମ୍ପାଦକ ବାବୁ ମଧୁସୂଦନ ଦାସ ମହାଶୟଙ୍କଠାରୁ ଆଦେଶପତ୍ର ପାଇ ଆଶ୍ଚର୍ଯ୍ୟ ବୋଧ କଲି, ଯେହେତୁ ମନରେ କଲି, ମୁଁ ଯେଉଁମାନଙ୍କ ସାକ୍ଷାତ୍‌ରେ ବସିବାର ଅଯୋଗ୍ୟ, ଏପରି ଅନେକ ଜ୍ଞାନୀ ଏବଂ ବହୁଦର୍ଶୀ ବ୍ୟକ୍ତି କଟକରେ ବିଦ୍ୟମାନ ଥାଉଁ ଥାଉଁ ମତେ ଆହ୍ୱାନ କରିବା ସମ୍ପାଦକ ମହାଶୟଙ୍କ ପକ୍ଷରେ ବଡ଼ ଭୁଲ କାର୍ଯ୍ୟ ହୋଇଅଛି । ଯାହା-ହେଉ, ମୁଁ ଏହି ମହା ସମ୍ମାନିତ ପଦରେ ବରିତ ହୋଇ ଆପଣଙ୍କୁ ଯେ ଗୌରବାନ୍ୱିତ ଜ୍ଞାନ କରି ନାହିଁ, ଏ କଥାଟା କହିବା ମୋ ପକ୍ଷରେ ଠିକ୍ ହେବ ନାହିଁ । କୌଣସି ଜଣେ ସାମାନ୍ୟ କିରାଣୀକୁ ଡିପୋଟି କାର୍ଯ୍ୟରେ ନିଯୁକ୍ତ କଲେ ତାହାର ଆନନ୍ଦ ପ୍ରକାଶ କରିବା ସ୍ୱାଭାବିକ; କିନ୍ତୁ ମକଦ୍ଦମା ବିଚାର ଏବଂ ରାୟ ଲେଖିବା ସମୟରେ ସେ ଆନନ୍ଦର ପରିମାଣଟା ଅନୁଭବ କରେ ।

ସେ ଯାହାହେଉ ଏହାର ନାମ ଉତ୍କଳସାହିତ୍ୟ ସମାଜ । ମୁଁ ଯେ ସ୍ଥଳେ ସଭାପତିରୂପେ ଉପସ୍ଥିତ, ସେ ସ୍ଥଳେ ଉପସ୍ଥିତ ସଭ୍ୟ ମହାଶୟଗଣ ମୋଠାରୁ କିଞ୍ଚିତ୍ ହେଲେ ମଧ୍ୟ ଉତ୍କଳଭାଷାର ଉତ୍ପତ୍ତି ବିସ୍ତୃତି ଉନ୍ନତି ସମ୍ବନ୍ଧରେ କିଛି କଥା ଶୁଣିବାକୁ ଇଚ୍ଛା କରୁଅଛନ୍ତି । ଦୁର୍ଭାଗ୍ୟ ଯେ, ମୁଁ ସେ ବିଷୟରେ ଅଜ୍ଞ ଅଥବା ସେ ସମ୍ବନ୍ଧରେ ମୁଁ ଯାହା ଦୁଇ ଚାରି କଥା ଜାଣେ, ତାହା କହିବାକୁ ଗଲେ ଏତେ ଅଧିକ ହୋଇପଡ଼ିବ ଯେ, ସେଥିରେ ଶ୍ରୋତାମାନଙ୍କ ଧୈର୍ଯ୍ୟଚ୍ୟୁତି ହେବା ଖୁବ୍ ସମ୍ଭବ । ଆମ୍ଭମାନଙ୍କ ଧର୍ମଶାସ୍ତ୍ରମାନଙ୍କରୁ ପ୍ରମାଣ ପାଉଅଛୁଁ ଯେ, ଉଡ୍ର ନାମକ ଏକ ପ୍ରଦେଶ ଏହି ଅଞ୍ଚଳରେ ବିଦ୍ୟମାନ ଥିଲା । ସେ ଦେଶବାସୀମାନେ ଓଡ଼ ବା ଓଡ଼ିଆ ନାମରେ କଥିତ ହେଉଥିଲେ, ସେହି ଓଡ୍ର ଦେଶ ଖୋରଧା ଅଞ୍ଚଳ ଅଟେ । ବର୍ତ୍ତମାନ କାଳରେ ମଧ୍ୟ ଖୋରଧାର ଚତୁଃପାର୍ଶ୍ୱସ୍ଥ ଲୋକେ ତାହାକୁ ଓଡ଼ିଶା ବୋଲି କହିଥାନ୍ତି । ଇଷ୍ଟ-ଇଣ୍ଡିଆ-କୋମ୍ପାନୀ ପ୍ରଥମ ଉତ୍କଳଖଣ୍ଡରେ ପଦାର୍ପଣ ସମୟରେ ଖୋରଧା ସହିତ ସେମାନଙ୍କର ବିଶେଷ ସମ୍ପର୍କ ଥିବାରୁ ସମସ୍ତ ଉତ୍କଳଖଣ୍ଡ ଓଡ଼ିଶା ନାମରେ ସେମାନଙ୍କ ସେର-ସ୍ତାରେ ଅଭିହିତ ହୋଇଅଛି । ତତ୍ପରେ ଆମ୍ଭେମାନେ ମହାଭାରତ, ଭାଗବତ ପ୍ରଭୃତି ପୁରାଣରୁ ଉତ୍କଳଦେଶ ନାମ ଶୁଣିବାକୁ ପାଉଁ ।

ଗଜପତିବଂଶୀୟ ରାଜାମାନେ ବଙ୍ଗ, ଉତ୍କଳ, କର୍ଣ୍ଣାଟ, ଯୁକ୍ତପ୍ରଦେଶରେ ଯେଉଁ ରାଜ୍ୟ ସ୍ଥାପନ କରିଥିଲେ, ଉତ୍କଳ ତାହାର ଏକ ଅଂଶ । କଳିଙ୍ଗ ଦେଶର ଉତ୍ତରାଞ୍ଚଳର ନାମ ଉତ୍କଳ ବା ଉତ୍କଳିଙ୍ଗ । ଏହି ଉତ୍କଳ ଦେଶର ସୀମା ସମୟରେ ତ୍ରିବେଣୀଠାରୁ ଗୋଦାବରୀ ପର୍ଯ୍ୟନ୍ତ ବିସ୍ତୃତ ଥିଲା, ଯଦିଚ ସେହି ଉତ୍କଳ ଛିନ୍ନ ଭିନ୍ନ ହୋଇଅଛି । ବର୍ତ୍ତମାନ ମଧ୍ୟ ଉତ୍ତର ସୀମା ଗଙ୍ଗା କୂଳରେ, ଦକ୍ଷିଣ ଗୋଦାବରୀ କୂଳରେ ପ୍ରାଚୀନ ଉତ୍କଳବାସୀମାନଙ୍କ ବଂଶଧରମାନଙ୍କର ଅନେକ ଗ୍ରାମ ବିଦ୍ୟମାନ ଥିବାର ଦେଖାଯାଏ ଏବଂ ସେମାନେ ବଂଶଗତ ବ୍ୟବହାର ହେତୁରୁ ଆଜି ପର୍ଯ୍ୟନ୍ତ ଉତ୍କଳ ଭାଷାରେ କଥୋପକଥନ କରୁଅଛନ୍ତି ।

ଆମ୍ଭେମାନେ ଯେଉଁ ଉତ୍ତରଜାତିର ନାମ ଉଲ୍ଲେଖ କରିଅଛୁଁ, ସେମାନଙ୍କର କୌଣସି ଲିଖିତ ପଠିତ ଭାଷା ବିଦ୍ୟମାନ ଥିଲା କି ନାହିଁ, ସେଥିର ବିଶ୍ୱାସଯୋଗ୍ୟ ପ୍ରମାଣର ଅଭାବ । କେହି କେହି ଅନୁମାନ କରନ୍ତି, କୁଟିଳାକ୍ଷର ସେମାନେ ବ୍ୟବହାର କରୁଥିଲେ ।

ବର୍ତ୍ତମାନ ଉତ୍କଳ ଭାଷା ଦୁଇ ସହସ୍ର ବର୍ଷ ପୂର୍ବେ ଯେ ବିଦ୍ୟମାନ ଥିଲା, ଏ କଥା ନିଃସନ୍ଦେହ ରୂପେ ବୋଲିଯାଇ ପାରେ । ଯେହେତୁ ଗୋଟିଏ ଭାଷା ପୂର୍ଣ୍ଣାଙ୍ଗ ରୂପେ-ବ୍ୟାକରଣ ସମ୍ମତରୂପେ ଆକାର ଧାରଣ କରିବାକୁ ପ୍ରାୟ ସହସ୍ର ବର୍ଷ ଆବଶ୍ୟକ । ଏକ ହଜାର ବର୍ଷର ପୂର୍ଣ୍ଣାଙ୍ଗ କବିତା ଦେଖିବାକୁ ମିଳେ, ଅବଶେଷରେ ମହାରାଜା ପୁରୁଷୋତ୍ତମ ଦେବଙ୍କ ସମୟରେ ଉତ୍କଳ ଭାଷା ବହୁ ପରିମାଣରେ ଉନ୍ନତି ଲାଭ କରିଥିଲା, ସେହି ସମୟରେ ଅନେକଗୁଡ଼ିଏ ଧର୍ମଗ୍ରନ୍ଥ ଏବଂ କାବ୍ୟଗ୍ରନ୍ଥ ରଚିତ ହେବାର ଜଣାଯାଏ ।

ମୁସଲମାନ ଏବଂ ମରହଟ୍ଟାମାନଙ୍କ ଏ ଦେଶକୁ ଆଗମନଠାରୁ ଉତ୍କଳ ଭାଷାର ପତନର କାଳ ଆରମ୍ଭ ହେଲା । ତାହାଙ୍କର ତଥାକଥିତ ରାଜେଶ୍ୱରମାନେ ଯେ କୌଣସି ରୂପେ ହେଉ କର ସଂଗ୍ରହରେ ବ୍ୟସ୍ତ ଏବଂ ପ୍ରଜାସାଧାରଣ ଶାସନର ଶୈଥିଲ୍ୟ ହେତୁରୁ ଏତେଦୂର ବ୍ୟସ୍ତ ହୋଇ ପଡ଼ିଥିଲେ ଯେ, ସେମାନଙ୍କର ଶାସ୍ତ୍ରାଲୋଚନା କରିବାର ଅବକାଶ ନ ଥିଲା ଏବଂ ଆଭ୍ୟନ୍ତରୀଣ ଗୋଳମାଳ ହେତୁରୁ ଅନେକ ଗ୍ରନ୍ଥ ବିଲୁପ୍ତ ହୋଇଅଛି । ପ୍ରଜାସାଧାରଣ ଏତେଦୂର ବ୍ୟସ୍ତ ହୋଇ ପଡ଼ିଥିଲେ ମଧ୍ୟ ଆପଣାର ମାତୃଭାଷା ଲିଖିତ ଅନେକ ଗୁଡ଼ିଏ କାବ୍ୟ ଏବଂ ଧର୍ମଗ୍ରନ୍ଥ ଆପଣା ହୃଦୟ ମଧ୍ୟରେ ଗୋପନ କରି ରଖିଥିଲେ । ସେହି ହେତୁରୁ ବର୍ତ୍ତମାନ ଶତ ଶତ ପ୍ରାଚୀନ ଗ୍ରନ୍ଥ ଦେଖିବାକୁ ପାଉଅଛୁଁ । ଏଥି ପୂର୍ବେ ଉତ୍କଳଭାଷାର ବିନାଶର ଅନ୍ୟତମ କାରଣ ଏହି କି, ମୁସଲମାନଙ୍କ ଆଗମନଠାରୁ ୧୮୩୭ ସାଲ ପର୍ଯ୍ୟନ୍ତ ରାଜକୀୟ ଭାଷା ପାର୍ଶି ଥିଲା । ଉତ୍କଳବାସୀ ପାର୍ଶି ଜାଣି ନ ଥିବାରୁ ଭିନ୍ନ ଦେଶୀୟ ଲୋକେ ରାଜକର୍ମଚାରୀରୂପେ ଉତ୍କଳରେ ପୂର୍ଣ୍ଣ ହୋଇଗଲେ । ରାଜଭାଷା ପାର୍ଶି ଥିବା ହେତୁରୁ ଦେଶୀୟ ଭାଷା ଅଧ୍ୟୟନ ପ୍ରତି କାହାରି ଆସ୍ଥା ରହିଲା ନାହିଁ । ଆମ୍ଭମାନଙ୍କ ପ୍ରଜାହିତୈଷୀ ଗଭର୍ଣ୍ଣମେଣ୍ଟ ଯଦିଚ ଅର୍ଦ୍ଧଶତାବ୍ଦୀ ଗତ ହେଲା ଆମ୍ଭମାନଙ୍କ ଶିକ୍ଷା ବିଷୟରେ ବିଶେଷ ମନୋଯୋଗୀ ହୋଇଅଛନ୍ତି; ମାତ୍ର ଦେଶୀୟ ଲୋକେ ମାତୃଭାଷା ଚର୍ଚ୍ଚା ବିଷୟରେ ମନୋଯୋଗୀ ହେବା ୪୦ ବର୍ଷରୁ ଅଧିକ ନୁହେଁ । ଏଥିପାଇଁ ଭାରତବର୍ଷର ଅନ୍ୟାନ୍ୟ ଶିକ୍ଷିତ ଜାତିମାନଙ୍କ ମଧ୍ୟରେ ଆମ୍ଭମାନଙ୍କ ମାତୃଭାଷା ଅବନତ ହୋଇପଡ଼ିଅଛି ।

ଗୋଟିଏ ମାପଦଣ୍ଡିକୁ ମାପିଲେ ପୁଷ୍କରିଣୀର ଜଳର ଗାମ୍ଭୀର୍ଯ୍ୟ ଜଣାଯାଏ । ସେହିପରି ଦେଶ ମଧ୍ୟରେ ପ୍ରଚଳିତ ସାମୟିକ ପତ୍ରିକାର ବିଷୟ ଆଲୋଚନା କଲେ ଆମ୍ଭମାନଙ୍କ ମାତୃଭାଷା କିପରି ଅବସ୍ଥାରେ ଅଛି ସହଜରେ ଜଣାଯିବ । ବର୍ତ୍ତମାନ ବଙ୍ଗଦେଶରେ ମାସିକ ପତ୍ରିକା ୩୦୦ ଖଣ୍ଡ, ମାନ୍ଦ୍ରାଜରେ ୧୪୯ ଖଣ୍ଡ,

ବୋମ୍ବାଇରେ ୩୦୩ ଖଣ୍ଡ, ପଞ୍ଜାବରେ ୧୦୩ ଖଣ୍ଡ ଯୁକ୍ତପ୍ରଦେଶରେ ୯୮ ଖଣ୍ଡ, ବିହାରରେ ୨୦ ଖଣ୍ଡ, ମଧ୍ୟପ୍ରଦେଶରେ ୧୫ ଖଣ୍ଡ, ଆସାମରେ ୪ ଖଣ୍ଡ, ଆଉ ଆପଣମାନେ ବିଶେଷ ମନୋଯୋଗୀ ହୋଇ ଶୁଣନ୍ତୁ, ଉତ୍କଳରେ ଦୁଇଖଣ୍ଡି ମାତ୍ର ମାସିକ ପତ୍ରିକା ବିଦ୍ୟମାନ; ସେମାନଙ୍କ ଅବସ୍ଥା ମଧ୍ୟ ସେପରି ସ୍ୱଚ୍ଛଳ ନୁହେଁ ।

ସରକାର ବାହାଦୁରଙ୍କ ବିଶେଷ ଅନୁଗ୍ରହ ବିଶେଷ ପନ୍ଥ ହେତୁରୁ ସକଳ ଜ୍ଞାନର ଆକର ସ୍ଥୂଳ ଇଂରେଜୀ-ଭାଷା ଶିକ୍ଷାର ଦ୍ୱାର ଆମ୍ଭମାନଙ୍କ ସମ୍ମୁଖରେ ଉନ୍ମୁକ୍ତ । ତଦ୍ଦ୍ୱାରା ଦର୍ଶନ ବିଜ୍ଞାନ ରସାୟନ ପ୍ରଭୃତି ଉଚ୍ଚାଙ୍ଗ ଶିକ୍ଷା ସହଜରେ ଲାଭ କରିପାରୁଁ । ମଧ୍ୟ ଦେଶର ଜ୍ଞାନୋନ୍ନତି ପକ୍ଷରେ ଏହା ବିଶେଷ ସହାୟ; କିନ୍ତୁ ଏହା ସର୍ବ-ସାଧାରଣଙ୍କର ବୁଦ୍ଧିର ଗମ୍ୟ ହେବ ନାହିଁ । ଯେଉଁ କୃଷକ ଏବଂ ଶିଳ୍ପୀମାନେ ଦେଶର ମେରୁଦଣ୍ଡସ୍ୱରୂପ ଏବଂ ଯେଉଁମାନଙ୍କୁ ବିଜ୍ଞାନସମ୍ମତରୂପେ ଶିକ୍ଷାଦେଇ ସେମାନଙ୍କ ଅବସ୍ଥା ଉନ୍ନତ କରାଇବାକୁ ହେବ । ପୁଣି ଯେଉଁ ଜନନୀ ସମାଜ ଉପରେ ବାଲ୍ୟଶିକ୍ଷା ନିର୍ଭର କରେ, ସେମାନଙ୍କ ସକାଶେ ମାତୃଭାଷାର ଉନ୍ନତି ଏବଂ ବହୁଳଚର୍ଚ୍ଚା ନିତାନ୍ତ ଆବଶ୍ୟକ । ସହସ୍ର ବର୍ଷ ଚେଷ୍ଟାରେ ମଧ୍ୟ ବିଦେଶୀୟ ଭାଷା ସେମାନଙ୍କ ମଧ୍ୟରେ ପ୍ରଚଳିତ ହୋଇ ପାରିବ ନାହିଁ । ବିଦେଶୀୟ ଭାଷା ଅବଲମ୍ବନରେ କୌଣସି ଜାତି ଉନ୍ନତି ଲାଭ କରିଅଛନ୍ତି, ଏଥିର ପ୍ରମାଣାଭାବ । ଆମ୍ଭେମାନେ ଏଠାରେ ଗୋଟିଏ ମାତ୍ର ଦୃଷ୍ଟାନ୍ତ ଦେଖାଇ ପାରୁଁ, ଲାଇବ୍ରେରିଆ ପ୍ରଦେଶର ମୁକ୍ତ ଦାସ ଜାତିମାନଙ୍କର ରାଜକୀୟ ଏବଂ ଅଧୀନ ଭାଷା ଇଂରାଜୀ । ଶତବର୍ଷ ମଧ୍ୟରେ ସେହି ଜାତି ସାଧାରଣ ଉନ୍ନତି ମାର୍ଗକୁ କିଞ୍ଚିତ୍ ହେଲେ ଅଗ୍ରସର ହୋଇଅଛନ୍ତି, ଏ କଥା ବୋଲିଯାଇ ନ ପାରେ । ଓ‌ଏଲ୍‌ସ ଦେଶ-ବାସୀମାନେ ଏଥିର ମର୍ମ ବିଶେଷରୂପେ ଅବଗତ ଅଛନ୍ତି । ଇଂରାଜୀ ସେମାନଙ୍କର ପ୍ରତିବେଶୀ ଭାଷା ଏବଂ ସେହି ଭାଷା ସହିତ ନିଜ ଭାଷାର ଅନେକ ସୌସାଦୃଶ୍ୟ ଥିଲେ ମଧ୍ୟ ମାତୃଭାଷାର ରକ୍ଷାପାଇଁ ସେମାନେ ପ୍ରାଣପଣେ ଚେଷ୍ଟା କରୁଅଛନ୍ତି । ପରକୀୟ ଭାଷା ଶିକ୍ଷା ଜଳଉପରେ ଘୃତବିନ୍ଦୁ ପତନବତ୍; ଅର୍ଥାତ୍ ଶିକ୍ଷାକାରୀ ହୃଦୟରେ ଜ୍ଞାନ ଆବଦ୍ଧ ରହେ । ମାତୃଭାଷା ଶିକ୍ଷା ଜଳ ଉପରେ ତୈଳବିନ୍ଦୁ ପତନବତ୍; ଅର୍ଥାତ୍ ଦେଶମଧ୍ୟରେ ସର୍ବତ୍ର ବିସ୍ତାର ଲାଭ କରେ । ଗୋଟିଏ ନିତାନ୍ତ ନିରକ୍ଷର ଗାଈରଖା ପିଲା ଗୋରୁ ଛାଡ଼ିଦେଇ ଗଛ ମୂଳରେ ବସି ଦୁଇପଦ ଭାଗବତ କିମ୍ବା ଉପେନ୍ଦ୍ର ଭଞ୍ଜ ଗୀତ ଗାଉଥାଏ । କେତେଦିନ ଚେଷ୍ଟାରେ ସେ ମିଲ୍‌ଟନ କିମ୍ବା ସେକ୍‌ସପୀୟରଙ୍କ କବିତା ଆବୃତ୍ତି କରି ପାରିବ, ତାହା ଆପଣମାନେ ବିବେଚନା କରନ୍ତୁ ।

ଇଂରାଜୀ ବେଦରେ ଲିଖିତ ଅଛି; ଈଶ୍ୱର ସମସ୍ତଙ୍କର ଗୋଟିଏ ଗୋଟିଏ ଭାଷା ନିରୂପଣ କରି ଦେଇଅଛନ୍ତି, କିନ୍ତୁ ପ୍ରକୃତରେ ଦେଖାଯାଏ, ଜଳବାୟୁ ଏବଂ ମାନବ ପ୍ରକୃତିର ଉପଯୋଗୀ ଭାଷା ସ୍ୱତନ୍ତ୍ର । ପୁରାଣରେ ଲିଖିତ ଅଛି, ଭାଷା ବ୍ରାହ୍ମମୟୀ, ସେହି ଭାଷା ହେତୁରୁ ମାନବସମାଜ ଏକତ୍ର ଆବଦ୍ଧ ଥାଏ । ଏଥିପାଇଁ ମାତୃଭାଷା ଅଧ୍ୟୟନ ଅନ୍ୟତମ ପୁଣ୍ୟ କାର୍ଯ୍ୟ ଅଟେ । ଏଥିପାଇଁ ଅନ୍ୟତମ ଅବତାରସ୍ୱରୂପ ମହାତ୍ମା ରାଜା ରାମମୋହନ ରାୟ କହି ଯାଇଅଛନ୍ତି—ଈଶ୍ୱର ଧ୍ୟାନ, କର୍ତ୍ତବ୍ୟପାଳନ, ମାତୃଭାଷାର ଉନ୍ନତି ସାଧନ ଚେଷ୍ଟା ପରମଧର୍ମ ଅଟେ । ଆର୍ଯ୍ୟ ପୌରାଣିକ ତେତିଶକୋଟି ଦେବତା କଳ୍ପନା କରିଅଛନ୍ତି; କିନ୍ତୁ ସର୍ବଶ୍ରେଷ୍ଠା ମହାଦେବୀ ଜନ୍ମଭୂମି ବିଷୟ ଉଲ୍ଲେଖ ମଧ୍ୟ କରିନାହାନ୍ତି । ୪୦ ବର୍ଷ ପୂର୍ବେ ବଙ୍ଗକବି ଜନ୍ମଭୂମିକୁ ମହାଦେବୀରୂପେ କଳ୍ପନା କରିଅଛନ୍ତି । କିନ୍ତୁ ତାହାଙ୍କର ତିନିଶ ବର୍ଷ ପୂର୍ବେ ଉତ୍କଳକବି ଦୀନକୃଷ୍ଣଦାସ ଜନ୍ମ-ଭୂମିକୁ ମହାଦେବୀରୂପେ ବର୍ଣ୍ଣନା କରିଅଛନ୍ତି ।

ଆମ୍ଭମାନଙ୍କର ପ୍ରତିବାସୀ ବଙ୍ଗଭାଷା ଆଜ ପୃଥିବୀ-ବିଖ୍ୟାତ । ତୁଳନାରେ ଆମ୍ଭେମାନେ କେତେ ତଳେ

ପଡ଼ଅଛୁଁ । ୫୦।୬୦ ବର୍ଷ ପୂର୍ବେବଙ୍ଗଭାଷା ଅତି ଅପୂର୍ଣ୍ଣ ଅବସ୍ଥାରେ ଥିଲା । ଆଜି ଆମ୍ଭମାନଙ୍କର ସହସ୍ରାଧିକ ବର୍ଷରେ ଗଠିତ ଭାଷା ଅପଚଳିତା ହୋଇ ପଡ଼ଅଛି ।

ଯଦିଚ ରାମମୋହନ ରାୟ ବଙ୍ଗଳାଭାଷାର ଗଦ୍ୟର ଉତ୍ପତ୍ତିକାରକ; କିନ୍ତୁ ଫୋର୍ଟ ଉଇଲିୟମ ଦୁର୍ଗରେ ନବାଗତ ସିଭିଲିଆନ୍‌ମାନଙ୍କର ବଙ୍ଗ ଭାଷା ଶିକ୍ଷା ନିମନ୍ତେ ଯେଉଁ ମହାତ୍ମା ଖଣ୍ଡିଏ ଗଦ୍ୟଗ୍ରନ୍ଥ ରଚନା କରିଥିଲେ, ବୋଧହୁଏ ତାହାଙ୍କର ନାମ ମୃତ୍ୟୁଞ୍ଜୟ ତର୍କପଞ୍ଚାନନ, ସେ ଜଣେ ଉତ୍କଳ ଶ୍ରେଣୀୟ ବ୍ରାହ୍ମଣ ଏବଂ ନିବାସ ଯାଜପୁର । ଗୋପାଳ ଦାସ ବା ଗୋପାଳ ଓଡ଼ିଆ ନାମକ ଯାଜପୁରନିବାସୀ ଜଣେ ଉତ୍କଳୀ ଅର୍ଦ୍ଧ-ଶତାବ୍ଦୀ ପୂର୍ବେ ଅନେକ ଗୁଡ଼ିଏ ଆଦର୍ଶ ସଙ୍ଗୀତ ରଚନାକରି ବଙ୍ଗବାସୀମାନଙ୍କୁ ଦେଇଥିଲେ ।

ଯଦିବା ବଙ୍ଗର ଗୃହଲକ୍ଷ୍ମୀମାନଙ୍କ ମଧ୍ୟରେ ବର୍ତ୍ତମାନ ଉଣା ଅଧିକ ୩।୪ ଶତ ସାନ ବଡ଼ କବି ଥିବେ, ୫୦।୬୦ ବର୍ଷ ପୂର୍ବେ ଜଣେ ହେଲେ ଦୁଇଧାଡ଼ି କବିତା ଲେଖିବା ଅନ୍ତତଃ ଲେଖକ ଜାଣେ ନାହିଁ । ମାତ୍ର ପ୍ରାୟ ଦୁଇଶତ ବର୍ଷ ପୂର୍ବେ ଗୋଟିଏ ଉତ୍କଳ କରଣ କନ୍ୟା ମାଧବୀ ଦେବୀ ଯେଉଁ ପଦ୍ୟାବଳୀ ଲେଖି ଯାଇଅଛନ୍ତି, ଉକ୍ତ ବୈଷ୍ଣବ ଗୋସ୍ୱାମୀମାନେ ଅଦ୍ୟାବଧି ଭକ୍ତିପୂର୍ବକ ପାଠ କରୁଅଛନ୍ତି ।

ବ୍ରହ୍ମାନନ୍ଦ ଭାରତୀ ପ୍ରାୟ ୩ ଶତ ବର୍ଷ ପୂର୍ବେ ଚଟ୍ଟଳ ଅଞ୍ଚଳରେ ତାନ୍ତ୍ରିକ ଧର୍ମର ପ୍ରଚାରକ ଥିଲେ । ସେ ଅନେକ ସାର୍ବଭୌମିକ ପଣ୍ଡିତଙ୍କୁ ଯୁକ୍ତିବଳରେ ଜୟ କରିଥିବା କଥା ଚଟ୍ଟଳ ଅଞ୍ଚଳରେ ପ୍ରଚଳିତ ଅଛି । ଯାହାଙ୍କ ପରିତ୍ୟକ୍ତ ଗାଦିରେ ଅନେକଗୁଡ଼ିଏ ଉତ୍କଳ ଭାଷା ଗ୍ରନ୍ଥ ବହୁବର୍ଷ ପର୍ଯ୍ୟନ୍ତ ଥିଲା, ଏ କଥା ଲେଖକଙ୍କୁ ଜଣା । ଆଜି ବର୍ତ୍ତମାନ ତାଙ୍କର ଧର୍ମମତାବଲମ୍ବୀ ସହସ୍ର ସହସ୍ର ଲୋକ ଉକ୍ତ ଅଞ୍ଚଳରେ ଅଛନ୍ତି । ଏ ସବୁ କଥା କହିବାର ଉଦ୍ଦେଶ୍ୟ ଏହି ଯେ, ପୂର୍ବେ ଉତ୍କଳବାସୀ କ୍ଷମ ଲୋକମାନେ ମାତୃଭାଷାଚର୍ଚ୍ଚା ଉପରେ ପ୍ରତିବାସୀମାନଙ୍କ ଭାଷାରେ ମଧ୍ୟ ଗ୍ରନ୍ଥମାନ ଲେଖିଥିଲେ ଏବଂ ପ୍ରଚାର କରୁଥିଲେ । ଅମ୍ଭେମାନେ କି ସେହିମାନଙ୍କ ବଂଶଧର !

ବଙ୍ଗଭାଷାର ଅସୀମ ଉନ୍ନତିକାଳ ଅର୍ଦ୍ଧ ଶତାବ୍ଦୀ ମଧ୍ୟରେ ଅଟେ । ଯଦିଚ ମହାତ୍ମା ଈଶ୍ୱରଚନ୍ଦ୍ର ବିଦ୍ୟାସାଗର ବଙ୍ଗଭାଷାର ମୂଳ ଉନ୍ନତିକାରକ; କିନ୍ତୁ ସେମାନଙ୍କର ଭାଷା ବିଦ୍ୟାଳୟ ଏବଂ ପୁସ୍ତକାଳୟ ମଧ୍ୟରେ ଆବଦ୍ଧ ଥିଲା । ବଙ୍କିମଚନ୍ଦ୍ରଙ୍କ ଉପନ୍ୟାସ, ଦୀନବନ୍ଧୁଙ୍କ ନାଟକ ଏବଂ ଜଗଦ୍‌ବିଖ୍ୟାତ ରବୀନ୍ଦ୍ରନାଥଙ୍କ ସଙ୍ଗୀତ ସକାଶେ ବଙ୍ଗଭାଷା ହଠାତ୍ ଖ୍ୟାତି ଲାଭ କରିଅଛି । ଆଗେ ଶିକ୍ଷିତ ବଙ୍ଗବାସୀମାନେ ଅବଜ୍ଞା-ନେତ୍ରରେ ମାତୃଭାଷାକୁ ଦେଖୁଥିଲେ । ବର୍ତ୍ତମାନ ବଙ୍ଗଦେଶୀୟ ଶିକ୍ଷିତା କୁଳଲକ୍ଷ୍ମୀ ଏବଂ କର୍ମକ୍ଳାନ୍ତ ଶିକ୍ଷିତ ବଙ୍ଗବାସୀମାନଙ୍କ ହସ୍ତରେ ସର୍ବଦା ମାତୃଭାଷାର ପୁସ୍ତକ ଦେଖିବାକୁ ମିଳେ ଏବଂ ବର୍ତ୍ତମାନ ବଙ୍ଗଦେଶୀୟ ରାଜା, ମହାରାଜା ସମସ୍ତ ଶ୍ରେଣୀର ଲୋକେ ମାତୃଭାଷାର ଉନ୍ନତିକଳ୍ପେ ବିଶେଷ ଯତ୍ନଶୀଳ ହେବାରୁ ଭାଷା ଏତେଦୂର ଉନ୍ନତି ଲାଭ କରିଅଛି । ଏଥିକୁ ନିଃସନ୍ଦେହରୂପେ ବୋଲାଯାଇପାରେ, ଜାତିସାଧାରଣ ମଧ୍ୟରେ ମାତୃଭାଷା ପ୍ରଚାର କରିବା ଆବଶ୍ୟକ ହେଲେ ଉପନ୍ୟାସ, ନାଟକ, ସଙ୍ଗୀତ ଏହି ତିନିଶ୍ରେଣୀର ଗ୍ରନ୍ଥ ବହୁଳ ପ୍ରଚାର ଆବଶ୍ୟକ ।

ବଙ୍ଗଭାଷାର ପ୍ରାୟ ୭୦୦ ଖଣ୍ଡ ମାସିକ ପତ୍ରିକାର ପ୍ରଚାର ଦେଖାଯାଏ । ଉପନ୍ୟାସହୀନ କୌଣସି ପତ୍ରିକା ନାହିଁ । ସେହି ଉପନ୍ୟାସ ପ୍ରଲୋଭନରୁ ମାସିକ ପତ୍ରିକା ସଂଖ୍ୟା ଏତେ ବଢ଼ିଅଛି । ସମୟ ସମୟରେ ଲୋକସାଧାରଣରେ ନାଟକ ବା ଉପନ୍ୟାସ ଅସୀମ ଶକ୍ତି ପ୍ରକାଶ କରିଥାଏ । ବଙ୍ଗଦେଶରେ ନୀଳଦର୍ପଣ ନାଟକ ଏବଂ କୁଳୀନକୁଳସର୍ବସ୍ୱ ନାଟକ

ଦେଶ ମଧ୍ୟରେ କି ଅସୀମ ଉପକାର ସାଧନ କରି ଯାଇଅଛି, ତାହା ଶିକ୍ଷିତ ଲୋକମାନଙ୍କୁ ଅବଗତ ଅଛନ୍ତି ।

ଆପଣମାନେ ତାନପୁରା ଯନ୍ତ୍ର ଦେଖିଥିବେ । ଅନେକଗୁଡ଼ିଏ ପିତ୍ତଳ ତାର ଝଁନଝଁନ କରୁଥାଏ । ଗୋଟିଏ ଲୌହ ତାର ଆସି ମ୍ୟାଉଁ ଶବ୍ଦ କଲେ କେତେ ସୁମଧୁର ଶବ୍ଦ ବାହାରିପଡ଼େ । ଭାରତବର୍ଷର ପ୍ରତ୍ୟେକ ଶିକ୍ଷିତ ଲୋକ ହୃଦୟରେ ଜନ୍ମଭୂମି ପ୍ରତି ଭକ୍ତି ବିରାଜିତ । ମାତ୍ର ସମସ୍ତେ ସ୍ୱତନ୍ତ୍ର ଥିଲେ ! ଉପନ୍ୟାସକାର ଗୋଟିଏ ଶବ୍ଦ ଦେଖାଇ ଉଚ୍ଚାରଣ କଲେ "ବନ୍ଦେ ମାତରଂ"; ହିମାଳୟରୁ କୁମାରିକା ପର୍ଯ୍ୟନ୍ତ ଏକତାନ ଉଠିଲା "ବନ୍ଦେ ମାତରମ୍" ଅଙ୍କଲ ଟମସ୍ କେବିନ ଉପନ୍ୟାସ ପାଠ କରି ଲକ୍ଷ ଲକ୍ଷ ଆମେରିକାବାସୀ ଦାସ ବ୍ୟବସାୟ ବିପକ୍ଷରେ ଜୀବନ ଦାନ ନିମନ୍ତେ ରଣକ୍ଷେତ୍ରକୁ ଧାବିତ ହୋଇଥିଲେ ।

ଥୋକେ ଲୋକ ମନରେ କରନ୍ତି, ଇଂରାଜୀ ଶିକ୍ଷା ପ୍ରଭାବରୁ ଉପନ୍ୟାସ ନାମ ଜାଣିଲୁଁ ; କିନ୍ତୁ ନିଶ୍ଚୟ କଥା, ଉପନ୍ୟାସ, ନାଟକ, ଦର୍ଶନଶାସ୍ତ୍ରର ଉତ୍ପତ୍ତିସ୍ଥାନ ଭାରତବର୍ଷ ଅଟେ । ଦର୍ଶନ କିମ୍ବା ନାଟକ ବିଷୟରେ ଯଦିଚ କାହାରି କିଛି ବକ୍ତବ୍ୟ ନାହିଁ, କିନ୍ତୁ ଦୃଢ଼ରୂପେ ବୋଲାଯାଇପାରେ, ବହୁ ସହସ୍ର ବର୍ଷ ପୂର୍ବେ ରଚିତ ବେଦରେ ଲିଖିତ ନଚିକେତା ଉପାଖ୍ୟାନ କିମ୍ବା ଇନ୍ଦ୍ର ବରୁଣ ସମ୍ବାଦକୁ ବୈଦିକ ଉପନ୍ୟାସ ବୋଲାଯାଇ ପାରେ । ଏଥିରେ ଯଦି କାହାରି କିଛି ଆପତ୍ତି ଥାଏ, ତେବେ ସର୍ବସାଧାରଣରେ ଧର୍ମଗ୍ରନ୍ଥ ପ୍ରଚାର ନିମନ୍ତେ ଭଗବାନ୍ ବେଦବ୍ୟାସ ଅଷ୍ଟାଦଶ ପୁରାଣ ବା ଉପନ୍ୟାସ ରଚନା କରିଅଛନ୍ତି । ଏହି ପୌରାଣିକ ବାକ୍ୟ ଅସ୍ୱୀକାର କରିବା କାହାରି ଆୟତ୍ତ ନାହିଁ । ସମସ୍ତ ପୁରାଣ ରଚନା କରି ମହାଭାରତ ପରିଶିଷ୍ଟରେ ସ୍ୱୟଂ ଭଗବାନ ବେଦବ୍ୟାସ ଈଶ୍ୱରଙ୍କଠାରେ କ୍ଷମାପ୍ରାର୍ଥନା କରିଅଛନ୍ତି—

ରୂପଂ ରୂପବିବର୍ଜିତସ୍ୟ ଭବତୋ ଧ୍ୟାନେନ ଯଦ୍‌ବର୍ଣ୍ଣିତଂ
ସ୍ତୁତ୍ୟାନିର୍ବଚନୀୟତା ଖିଳ ଗୁରୋ ଦୂରୀକୃତଂ ଯନ୍ମୟା,
ବ୍ୟାପିତ୍ୱଞ୍ଚ ବିନାଶିତଂ ଭଗବତୋ ଯତ୍ତୀର୍ଥଯାତ୍ରାଦିନା
କ୍ଷନ୍ତବ୍ୟଂ ଜଗଦୀଶ ତଦ୍‌ବିକଳତା ଦୋଷତ୍ରୟଂ ମତ୍‌କୃତଂ ।

କେହି ବା ମନରେ କରିବେ, ମୁଁ ଦୁଇଖଣ୍ଡ ସାମାନ୍ୟ ଉପନ୍ୟାସ ଲେଖିଅଛି ବୋଲି ଉପନ୍ୟାସର ଏତେ ପ୍ରଶଂସା କଲି; କିନ୍ତୁ ମୋ ନିଜ ପକ୍ଷର କୈଫିୟତ୍ ଏହି ଯେ, ଗୋଟିଏ ନିବିଡ଼ ଜଙ୍ଗଲରେ ବାଟ ନ ଥିଲେ କୁଲିଶ୍ରେଣୀର ଲୋକ ଜଙ୍ଗଲ କାଟି ବାଟର ସୃଷ୍ଟି କରିଦେଲା ଉତ୍ତାରେ ଜ୍ଞାନବନ୍ତ ଇଞ୍ଜିନିୟରମାନେ ଆସି ସୁନ୍ଦର ସଡ଼କ ପ୍ରସ୍ତୁତ କରିଥାନ୍ତି । ଅତଃପର ଶିକ୍ଷିତ ଲୋକମାନେ ଭଲ ଉପନ୍ୟାସ ଲେଖିବେ, ସେଥିପାଇଁ ମୁଁ ଗୋଟିଏ ସୃଷ୍ଟି କରିଯାଉଅଛି ।

ମହାରାଜା ବାମଣ୍ଡା, ମହାରାଜା ସୋନପୁର, ମହାରାଜା ଶକଟି, ମହାରାଜା ଧରାକୋଟ, ମହାରାଜା ସୁରଙ୍ଗି, ପାରଳାଖେମୁଣ୍ଡି ରାଜବଂଶ, ଟିକାଲିର କୁମାର, ତାଳଚେର, ବଡ଼ଖେମୁଣ୍ଡି ରାଜେଶ୍ୱର ମହୋଦୟଗଣ ଯେ ସ୍ଥଳରେ ନିଜେ କାବ୍ୟକାର, ନାଟକ ଲେଖକ, ସଙ୍ଗୀତଜ୍ଞ ଏବଂ ଗ୍ରନ୍ଥକର୍ତ୍ତାଙ୍କ ଉତ୍ସାହଦାତାରୂପେ ଆବିର୍ଭୂତ ହୋଇଅଛନ୍ତି, ସେ ସ୍ଥଳରେ ଅଚିର ଭବିଷ୍ୟତ୍ ମଧ୍ୟରେ ଉତ୍କଳଭାଷା ଉନ୍ନତି ଲାଭ କରିବ, ନିଃସନ୍ଦେହ ରୂପେ ବୋଲାଯାଇ-ପାରେ । ଦେଶୀୟ ଭାଷାର ଉନ୍ନତି ଦେଶପତିମାନଙ୍କ ପ୍ରତି ସମ୍ପୂର୍ଣ୍ଣ ନିର୍ଭର କରେ । ଭାରତର ବିକ୍ରମାଦିତ୍ୟ ଭୋଜ, ବିଦେଶରେ ଏଲିଜାବେଥ, ମହାରାଜା ଜର୍ଜ ବା ଉଇଲିୟମ ପ୍ରମାଣସ୍ଥଳ ।

ବର୍ତ୍ତମାନ ମୁଁ ମାତୃଭାଷାରେ ସହସା ଉନ୍ନତିର ଅନ୍ତରାୟ ସମ୍ବନ୍ଧରେ କଥା କେତୋଟି କହିବାକୁ ଇଚ୍ଛାକରେ । ଉତ୍କଳର କେତେ ତପସ୍ୟାବଳରେ ରାଜରାଜେଶ୍ୱରଙ୍କର ପ୍ରଧାନ ପ୍ରତିନିଧି ଉତ୍କଳରେ ପଦାର୍ପଣ କରିଥିଲେ ।

ସେ ସମୟରେ କୋଟି ଉତ୍କଳବାସୀ ବହୁ ଆଶା ଓ ଅକାଙ୍କ୍ଷା ହୃଦୟରେ ପୋଷଣ କରି ପ୍ରତୀକ୍ଷାମୂର୍ତ୍ତି ନୟନରେ ରହିଁ ବସିଥିଲେ । ମହାମହିମ ଏପରି ଗୋଟିଏ ବର ଦେଇପିବେ, ଯଦ୍ଦ୍ୱାରା ଉତ୍କଳର ସମସ୍ତ ଦୁଃଖ ଦୁର୍ଦ୍ଦଶା ଦୂର ହେବ । ସେ ବର କଣ ନା, ଛିନ୍ନ-ଭିନ୍ନ ଉତ୍କଳକୁ ଏକତ୍ର କରିବା । ଦୁର୍ଭାଗ୍ୟବଶତଃ ଆମ୍ଭମାନଙ୍କର କେଉଁ ମହାପାପରୁ କେଜାଣି ଆପାତତଃ ସେ ଆଶା ପୂର୍ଣ୍ଣ ହେଲ ନାହିଁ; କିନ୍ତୁ ଉତ୍କଳବାସୀ ଚିରକାଳ ରାଜଭକ୍ତ, ରାଜ୍ୟେଶ୍ୱରଙ୍କୁ ମହତ୍ତଦେବତା ତୁଲ୍ୟ ଜ୍ଞାନ କରନ୍ତି । ଯେହି ଦେବତାଙ୍କଠାରୁ ବର ସହଜଲଭ୍ୟ ନୁହେଁ । ଘର୍ଘକାଲ ତପସ୍ୟା, ସାଧନା, ଧାରଣା ଆବଶ୍ୟକ । ଆଜିଠାରୁ ଉତ୍କଳବାସୀ ପୁତ୍ର-ପୌତ୍ରାଦିକ୍ରମେ ପ୍ରତିନିୟତ ଆପଣା ଦୁର୍ଦ୍ଦଶା ମୋଚନ ନିମନ୍ତେ ପ୍ରାର୍ଥନା ଜଣାଇଲେ ନିଶ୍ଚୟ ଦିନେ ମହାମହିମଙ୍କ ହୃଦୟସ୍ଥ ସିଂହାସନ ଟଳିପିବ । ଅବଶ୍ୟ ଆଶା ପୂର୍ଣ୍ଣ ହେବ ।

ବର୍ତ୍ତମାନ ସର୍ବସାଧାରଣଙ୍କଠାରେ ମୋର ଗୋଟିଏ କ୍ଷୁଦ୍ର ନିବେଦନ । ସମ୍ପ୍ରତି ଖରସୂଆଁ ସିଂହଭୂମର ଅଧିବାସୀମାନେ ମାତୃଭାଷା ହରାଇ ଘର୍ଘକାଲ ଯାବତ୍ କଷ୍ଟ ଭୋଗ କରୁଅଛନ୍ତି । ଆସନ୍ତୁ ଆମ୍ଭେମାନେ ସେହି ବିଚ୍ଛିନ୍ନ ଭ୍ରାତାମାନଙ୍କୁ କୋଳକୁ ନେବା ସକାଶେ ଯତ୍ନ କରିବା । ଗୋଟିଏ କ୍ଷୁଦ୍ର ଉପାୟ ମୋ ହୃଦୟରେ ଉଦିତ ହେଉଅଛି । କେତେ ଜଣ ଦେଶହିତୈଷୀ ଶିକ୍ଷିତ ଯୁବକ କେତେକ ହଜାର ଉତ୍କଳୀୟଙ୍କ ସ୍ୱାକ୍ଷର ଗ୍ରହଣ କରି ସରକାର ବାହାଦୁରଙ୍କ ଠାକୁ ପଠାଉନ୍ତୁ ।

ଦେବତାଙ୍କ ଆବିର୍ଭାବ ବ୍ୟର୍ଥ ହୁଏ ନାହିଁ । ଦର-ବାର ସମୟରେ ସ୍ୱୟଂ କବି ସ୍ୱଦେଶବତ୍ସଳ ମାତୃଭାଷାର ଉନ୍ନତିକାମୀ ବାମଣ୍ଡା ଏବଂ ସୋନପୁର ରାଜ୍ୟର ଅଧିପତିମାନେ ଏହି କଟକକୁ ଶୁଭାଗମନ ପୂର୍ବକ ଏହି ସାହିତ୍ୟ ସମାଜକୁ ସାହାଯ୍ୟ ଦାନ କରିଥିବା ହେତୁରୁ ସମାଜ ଉତ୍ସାହିତ ହୋଇଛନ୍ତି । ସମୟରେ ସଫଳ-କାମ ହେବେ, ସନ୍ଦେହ ନାହିଁ ।

ଉତ୍କଳ ଭାଷାର ଅବନତିର କାରଣ ଦାରିଦ୍ର୍ୟ । ଦାରିଦ୍ର୍ୟ ହେତୁରୁ ଲେଖକମାନେ ପୁସ୍ତକ ପ୍ରକାଶ କରିବାକୁ ଅକ୍ଷମ । ଦୃଷ୍ଟାନ୍ତସ୍ଥଳରେ ଗୋଟିଏ କଥା କହିପାରେ—ଉତ୍କଳରେ ଖଣ୍ଡିଏ ଭଲ ଅଭିଧାନର ନିତାନ୍ତ ଅଭାବ । ପାରଳାଖିମୁଣ୍ଡିନିବାସୀ ଭାଷା-ତତ୍ତ୍ୱବିଦ୍ ପଣ୍ଡିତ ଗୋପୀନାଥ ନନ୍ଦ ଯୁଗାନ୍ତବ୍ୟାପୀ ପରିଶ୍ରମ ସ୍ୱୀକାର ପୂର୍ବକ ଖଣ୍ଡିଏ ଉତ୍କୃଷ୍ଟ ଅଭିଧାନ ପ୍ରଣୟନ କରି ପ୍ରକାଶ ନିମନ୍ତେ ୫।୬ବର୍ଷ କାଳ ଦ୍ୱାରେ ଦ୍ୱାରେ ବୁଲି ଅକୃତକାର୍ଯ୍ୟ ହୋଇଥିଲେ । ସେହି ପୁସ୍ତକ ଛାପା ହେଲେ ଖଣ୍ଡିଏ ଖଣ୍ଡିଏ କ୍ରୟ କରିବା ସକାଶେ ପ୍ରାୟ ଦୁଇ ତିନି ଶତ ଲୋକ ତାହାଙ୍କୁ ପତ୍ର ଲେଖିଥିଲେ । ବଙ୍ଗଦେଶର ପୁସ୍ତକ ପ୍ରକାଶକ ସମିତି ପରି ଉତ୍କଳରେ କେହି ବ୍ୟବସାୟୀ ଦଳ ଏହି ଅଭିଧାନ ପ୍ରକାଶ କରିଥିଲେ, ଦୁଇ ତିନି ବର୍ଷ ମଧ୍ୟରେ ଅନ୍ତତଃ ଦୁଇ ହଜାର ଟଙ୍କା ଲାଭ କରିବାକୁ ସମର୍ଥ ହୋଇଥାନ୍ତେ ବୋଲି ମୁଁ ବିଶ୍ୱାସ କରେଁ । ଦ୍ୱିତୀୟତଃ ଏ ଦେଶର ଧନବନ୍ତମାନେ ପୁସ୍ତକ କିଣିବାକୁ ଅନିଚ୍ଛୁକ ଏବଂ ଶିକ୍ଷିତ ଲୋକେ ଅର୍ଥାଭାବରୁ ମୂଲ୍ୟବାନ୍ ପୁସ୍ତକ କିଣିବାକୁ ଅକ୍ଷମ । ଏହି ଦୁର୍ଯୋଗ ନିବାରଣ ନିମନ୍ତେ ମୁଁ ବଙ୍ଗବାସୀ ପତ୍ରିକାର କାର୍ଯ୍ୟାବଳୀ ଉଲ୍ଲେଖ କରିବାକୁ ଇଚ୍ଛା କରେଁ । ବଙ୍ଗବାସୀ ୫ଟଙ୍କା ମୂଲ୍ୟର ଉତ୍କୃଷ୍ଟ ପୁସ୍ତକମାନ ଆଠ ଅଣାରେ ବିକ୍ରୟ କରିବାରୁ ଘରେ ଘରେ ପୁସ୍ତକ ପୂର୍ଣ୍ଣ ହୋଇଗଲା । ଏହି ଉପାୟରେ ବଙ୍ଗବାସୀ ପତ୍ରିକା ୨୨୫ ଟଙ୍କା ମୂଳଧନରୁ ସମ୍ପ୍ରତି ୧୦।୧୨ ଲକ୍ଷ ଟଙ୍କାର ଅଧିକାରୀ ହୋଇ ଅଛନ୍ତି । ଉପାୟ ଏହିକି, ଇଞ୍ଜିନ୍ ପ୍ରେସ୍‌ରେ ଏକା-ବେଳକେ କୋଡ଼ିଏ ହଜାର ଖଣ୍ଡ ବହି ଛାପା କରି-ଦେଲେ; ପ୍ରତି ଖଣ୍ଡ ବହିରେ ଛଅ ଅଣା ଖର୍ଚ୍ଚ ପଡ଼େ ।

ନିଜର ଦୁଇଅଣା ଲାଭ ରହିଯାଏ । ବର୍ଷକ ମଧ୍ୟରେ କୋଡ଼ିଏ ହଜାର ଦୁଇଅଣା ଲାଭ ପାଆନ୍ତି । ସେହିପରି ଗ୍ରନ୍ଥ ଉତ୍କଳ-ଗ୍ରନ୍ଥକାର ଏକ ହଜାର ଛାପା କଲେ ଖଣ୍ଡପ୍ରତି ତିନି ଟଙ୍କା ଖରଚ ପଡ଼େ । ଗ୍ରନ୍ଥକାର ଆପଣା ପାଇଁ ଲାଭ ଦୁଇ ଟଙ୍କା ବସାଇ ଦିଅନ୍ତି । ପାଞ୍ଚ ଟଙ୍କା ମୂଲ୍ୟର ବହି କିଏ କିଣୁଛି ? ଖୁବ୍ ତପସ୍ୟାବାନ୍ ଗ୍ରନ୍ଥକାରଙ୍କ ପୁସ୍ତକ ଯୁଗାନ୍ତପରେ ପ୍ରେସ-ମୁଖ ଦେଖି-ପାରେ । ମୁଁ ଆଶା ଏବଂ ପ୍ରାର୍ଥନା କରେଁ, ଏହି ସାହିତ୍ୟ ସମାଜ ଏ ବିଷୟରେ କିଞ୍ଚିତ୍ ଆଲୋଚନା କରିବେ ।

ଉତ୍କଳ ଭାଷାର ଅବନତିର ଅନ୍ୟ ତମ ଅନ୍ତରାୟ, ରାଜେଶ୍ୱରଙ୍କ ଅନୁଗ୍ରହର ଅଭାବ । ବଙ୍ଗଦେଶର ଅନେକ ଗ୍ରନ୍ଥକାରଙ୍କୁ ଉତ୍ସାହ ଦେବା ନିମନ୍ତେ ରାଜ-ସରକାର ସେମାନଙ୍କ ଉଚିତ ପୁସ୍ତକ କିଣି କରି ସାଧାରଣରେ ବିତରଣ କରି ଦିଅନ୍ତି । କେତେକ ଦରିଦ୍ର ଗ୍ରନ୍ଥକାର ବୃତ୍ତି ଲାଭ କରୁଥିବାର ଶୁଣିଅଛୁଁ । କିନ୍ତୁ ଉତ୍କଳରେ ତାହାର ଏକାନ୍ତ ଅଭାବ । ମୁଁ ପୂର୍ବେ କହିଅଛି, ରାଜେଶ୍ୱରଙ୍କ ସୁଦୃଷ୍ଟି ବିନା କୌଣସି ଦେଶର ଭାଷା ଉନ୍ନତି ଲାଭ କରିନାହିଁ । ହେଲେ, ଗୋଟିଏ ବିଷୟ ପ୍ରକାଶ ନ କଲେ ମୋ ପକ୍ଷରେ କୃତଘ୍ନତା ହେବ । ୪୫ ବର୍ଷ ପୂର୍ବରେ ମୁଁ କେତେ ଖଣ୍ଡ ସାମାନ୍ୟ ସ୍କୁଲ ପାଠ୍ୟପୁସ୍ତକ ରଚନା କରି ସରକାର ବାହାଦୁରଙ୍କଠାରୁ ହଜାରେ ଟଙ୍କା ପୁରସ୍କାର ପାଇଥିଲି । ବାବୁ ଜଗନ୍ନାଥ ରାଓ ଦୁଇ ସହସ୍ର ଟଙ୍କା ପାଇଥିବାର ମୁଁ ଶୁଣିଅଛି । ପ୍ରାତଃସ୍ମରଣୀୟ ରେଭେନ୍‌ସା ସାହେବ ଏବଂ କବିବର ରାଧାନାଥ ରାୟ ଆମ୍ଭମାନଙ୍କର ପୃଷ୍ଠପୋଷକ ଥିଲେ । ମୁଁ ବୋଧକରେଁ, ବର୍ତ୍ତମାନ ଉତ୍କଳର ଦରିଦ୍ର ଗ୍ରନ୍ଥକର୍ତ୍ତାମାନଙ୍କ ବିଷୟ କେହି ଗଭର୍ଣ୍ଣମେଣ୍ଟଙ୍କୁ ଜଣାଇଲେ ଉତ୍କଳବାସୀ କୃତକାର୍ଯ୍ୟ ହୋଇ ପାରନ୍ତେ । ବର୍ତ୍ତମାନ ବଙ୍ଗଦେଶରେ ଅନେକ ମାତୃଭାଷା-ଉନ୍ନତି-କାମୀ ମହାତ୍ମା ବଙ୍ଗବାସୀ ଲାଟସାହେବଙ୍କ ଦରବାରରେ ଏବଂ ଅନ୍ୟାନ୍ୟ ବିଭାଗରେ ପ୍ରଧାନ କର୍ମଚାରୀରୂପେ ନିଯୁକ୍ତ ଥିବାରୁ ସେମାନଙ୍କର ଯତ୍ନ ଓ ଅନୁରୋଧରେ ବଙ୍ଗଦେଶର ଗ୍ରନ୍ଥକର୍ତ୍ତାମାନେ ସାହାଯ୍ୟପ୍ରାପ୍ତ ହୋଇ ନୂତନ ନୂତନ ଗ୍ରନ୍ଥ ରଚନା ବିଷୟରେ ମନୋଯୋଗୀ ହୋଇ-ଅଛନ୍ତି । ମୁଁ ଆଶା କରେଁ, ଉତ୍କଳବାସୀ ଦରିଦ୍ର ଗ୍ରନ୍ଥକାରମାନେ ହିନେ ସେହିପରି ମହାରାଜ-ପ୍ରସାଦ ଭୋଗ କରିବାକୁ ସମର୍ଥ ହେବେ ।

ସଭାସ୍ଥ ମହାଶୟ ଗଣ, ମୁଁ କର୍କଶ ଭାଷାରେ ଅସୁନ୍ଦର ବାକ୍ୟରେ ଆପଣମାନଙ୍କୁ ଅନେକ କଷ୍ଟ ଦେଲି । ସମ୍ପ୍ରତି ମୁଁ ଗୋଟିଏ ସୁମଧୁର ବୈଦିକ ମନ୍ତ୍ର ଉଲ୍ଲେଖ କରିବି । ଆପଣମାନେ ଅନୁଗ୍ରହ ପୂର୍ବକ ଦୁଇ ମିନିଟ୍ ସକାଶେ ହୃଦୟ ମଧ୍ୟରେ ପରମବ୍ରହ୍ମଙ୍କୁ ଧ୍ୟାନ କରନ୍ତୁ ।

### ସ୍ତବ

ଓଁ ଯାଂ ମେଧାଂ ଦେବଗଣାଃ ପିତରଶ୍ଚ ଉପାସତେ ।
ତୟା ମାମଦ୍ୟ ମେଧାଙ୍ଗଂ କୁରୁ ସ୍ୱାହା ॥

ଯେଉଁ ଜ୍ଞାନକୁ ଦେବତାମାନେ ଓ ପିତୃଗଣ ଉପାସନା କରିଥାନ୍ତି, ହେ ପରମେଶ୍ୱର ! ସେହି ଜ୍ଞାନ-ଦ୍ୱାରା ଆମ୍ଭ ଉତ୍କଳବାସୀଙ୍କୁ ଜ୍ଞାନବାନ କର ।

ଓଁ ଶାନ୍ତିଃ ଶାନ୍ତିଃ ଶାନ୍ତିଃ । ହରି ଓଁ ।

(ତା ୭ । ୧ । ୧୯୧୪ ଉ. ସା. ସମାଜର
ବାର୍ଷିକ ଉତ୍ସବକୁ ପ୍ରେରିତ)

---

## ଉତ୍କଳ ସାହିତ୍ୟରେ ପ୍ରାଣପ୍ରତିଷ୍ଠା

( ପ୍ରତିବାଦ )

ଗତ ସଂଖ୍ୟା ଉତ୍କଳ-ସାହିତ୍ୟରେ ବାବୁ କୃଷ୍ଣପ୍ରସାଦ ଚୌଧୁରୀ ମହାଶୟ ଶୀର୍ଷାଙ୍କିତ ପ୍ରବନ୍ଧଟି ପ୍ରକାଶ କରି ଅଛନ୍ତି । ଯେ ସେ ଲୋକଙ୍କ ଲିଖିତ ପ୍ରବନ୍ଧ ସ୍ୱତନ୍ତ୍ର

କଥା—ମାତ୍ର ଚୌଧୁରୀ ମହାଶୟ ସାହିତ୍ୟସଂସାରରେ ଜଣେ ସୁପରିଚିତ—ବିଶେଷରେ ଏହି ସାହିତ୍ୟ ପତ୍ରିକାର ପ୍ରାଥମିକ ପରିଚାଳକମାନଙ୍କ ମଧ୍ୟରେ ଅନ୍ୟତମ ଥିଲେ । ଏପରି ସ୍ଥଳରେ ତାଙ୍କର ଦୋଷାଶ୍ରିତ ମତକୁ ନିର୍ବିବାଦରେ ସାହିତ୍ୟ ମଧ୍ୟରେ ସ୍ଥାନ ଦେବାର ଉପଯୁକ୍ତତା ନିଶ୍ଚୟ କେହି ଅନୁମୋଦନ କରିବେ ନାହିଁ ।

ବ୍ୟକ୍ତିଗତ ଭାବରେ ଚୌଧୁରୀ ମହାଶୟ ମୋହର ସୁପରିଚିତ ବନ୍ଧୁ, ପୁଣି ସେ ଜଣେ ସଦାଶୟ ଜ୍ଞାନୀ ବହୁଦର୍ଶୀ ଲୋକ ବୋଲି ମୋହର ଧାରଣା । ଏପରି ସ୍ଥଳରେ ତାଙ୍କ ମତର ପ୍ରତିବାଦ କରିବାକୁ ଗଲେ; ସହଜରେ ମନ ମଧ୍ୟରେ କେମନ୍ତ ଗୋଟାଏ ଲଜ୍ଜା ସମ୍ବଳିତ ସଙ୍କୋଚ ଉପସ୍ଥିତ ହେବା ନିତାନ୍ତ ସ୍ୱାଭାବିକ; ମାତ୍ର ନ୍ୟାୟ ଏବଂ ସତ୍ୟର ଅନୁରୋଧ କୌଣସି ପ୍ରକାର ପ୍ରତିବନ୍ଧକ ଗ୍ରାହ୍ୟ ନ କରି ପ୍ରବଳରୂପେ ଅଗ୍ରସର ହେବାକୁ ପ୍ରସ୍ତୁତ ହୁଏ ।

ପ୍ରତିବାଦ ସ୍ଥଳରେ ବିବିଧ ପ୍ରକାର ପ୍ରମାଣ ପ୍ରୟୋଗ ବା ନାନା ଯୁକ୍ତିର ଅବତାରଣା ଦ୍ୱାରା ପ୍ରବନ୍ଧର କଳେବର ବଢ଼ାଇବା ବିଷୟରେ ଆମ୍ଭମାନଙ୍କ ସାମର୍ଥ୍ୟ ବା ସମୟର ଅଭାବ । ଅତି ସଂକ୍ଷେପରେ ଅତି ସରଳ ଭାବରେ ଆମ୍ଭମାନଙ୍କ ବକ୍ତବ୍ୟ ବିଷୟ ପ୍ରକାଶ କରିବାକୁ ଇଚ୍ଛା କରୁଁ ।

ଆମ୍ଭମାନଙ୍କ ମନ୍ତବ୍ୟ ପ୍ରକାଶ କରିବା ପୂର୍ବେ ଗୋଟିଏ ଅତି ପୁରାତନ ନୈୟାୟିକ ଆଖ୍ୟାୟିକା ପ୍ରକାଶ କରୁଅଛୁଁ ।

ଦିନେ ଥୋକେ ଅନ୍ଧ ହାତୀ ଦେଖିବାକୁ ଯାଇଥିଲେ । ହାତୀର ପୂର୍ଣ୍ଣ ଆକାର ଅବଶ୍ୟ ଦେଖିବାର ତ ସେମାନଙ୍କର ଶକ୍ତି ନାହିଁ, ହାତରେ ଅଣ୍ଡାଳି ଅଣ୍ଡାଳି ହାତୀର ଆକାର ଦେଖି ଆସିଥିଲେ ।

ଅନ୍ୟତ୍ର ଏକତ୍ର ବସି ହାତୀର ଆକାର ପ୍ରକାର ବିଷୟ ବର୍ଣ୍ଣନା କରିବାକୁ ଲାଗିଲେ । ଯେଉଁ ଲୋକ ଲାଞ୍ଜ ଶେଷଭାଗ ଦେଖିଥିଲା, ସେ କହିଲା, ହାତୀଟା ଗୁଞ୍ଜୁଣି ପରି । ଲାଞ୍ଜ ଗୋଟାକ ଯେଉଁ ଲୋକ ଅଣ୍ଡାଳି ଦେଖିଥିଲା, ସେ କହିଲା ନାହିଁ, ହାତୀଟା ଗୋଟାଏ ମୋଟା ଠେଙ୍ଗା ପରି । ଲମ୍ବା କାନ ଦେଖିଥିବା ଲୋକ କହିଲା, ନିଶ୍ଚୟ ନୁହେ, ମୁଁ ମହାପ୍ରଭୁଙ୍କ ଧଣ୍ଡା ଧରି କହିପାରେଁ, ହାତୀ ଠିକ୍ କୁଲା ପରି ଇତ୍ୟାଦି ।

ଚୌଧୁରୀ ମହାଶୟ ଆପଣା ଦେଶ ସମ୍ବନ୍ଧରେ ଯାହା ଅବଗତ ଅଛନ୍ତି, କହନ୍ତୁ; ମାତ୍ର ମୁଁ ଗିରିକିରୀଟଶାଳିନୀ, ବହୁଳ ବିଜନବିପିନସଙ୍କୁଳା, ଶସ୍ୟସମ୍ଭାର ଶ୍ୟାମଳା, ସତତ ସିନ୍ଧୁ ସଲିଳ ପଦବିଧୌତା ମୋ ମାତୃଭୂମିର ଯେଉଁ ଆକାର ଦେଖିଅଛି, ଏହାର ଅବସ୍ଥା ସମ୍ବନ୍ଧରେ ଯାହା ଯତ୍‌କିଞ୍ଚିତ ଜାଣେ, ତେତିକ ବର୍ଣ୍ଣନ କରିବାକୁ ପ୍ରସ୍ତୁତ ଅଛି ।

ଚୌଧୁରୀ ମହାଶୟ ବୋଲନ୍ତି—"ଉତ୍କଳଭୂମି ଅନୁର୍ବର ଦେଶ ।"

ନିଶ୍ଚୟ ନୁହେ —ମେଦିନୀପୁର ସୁନ୍ଦରବନର ହାଲି ଆବାଦି ଗଙ୍ଗା ଏବଂ ପଦ୍ମାର ଉପକୂଳ ପ୍ରଦେଶକୁ ଛାଡ଼ି ପଶ୍ଚିମରେ ଦ୍ୱାରଭଙ୍ଗାଠାରୁ ପଞ୍ଜାବ ପର୍ଯ୍ୟନ୍ତ—ଦକ୍ଷିଣରେ ଆସେତୁବନ୍ଧ ରାମେଶ୍ୱର ଉର୍ବରତା ଗୁଣରେ ଉତ୍କଳ ସହିତ ଉପମାସ୍ଥଳ ଅଧିକାର କରିବାକୁ ଯୋଗ୍ୟ, ଏପରି କୌଣସି ପ୍ରଦେଶର ନାମ ଚୌଧୁରୀ ମହାଶୟ ଉଲ୍ଲେଖ କରି ପାରିବେ କି ? ଉତ୍କଳର ଅନ୍ୟାନ୍ୟ ପ୍ରଦେଶର କଥା ଥାଉ, ଏହି କ୍ଷୁଦ୍ର ବାଲେଶ୍ୱର କଥା ଧରନ୍ତୁ । ଏହା ଦେଶମାତୃକା ଭୂମି ଅଭାବରୁ ବରଞ୍ଚ ଅନ୍ୟାନ୍ୟ ପ୍ରଦେଶ ଭୂମିଠାରୁ ଅପେକ୍ଷାକୃତ ଅନୁର୍ବର । ମରିସସ୍ ଦ୍ୱୀପ, କୋଚିନ୍, କଚ୍ଛ, କଲମ୍ବୋ, ଲାକ୍ଷାଦ୍ୱୀପ, ଗୋଦାବରୀ ଜିଲ୍ଲାର କେତେକ ଅଂଶ ଆହାର ପାଇଁ ବାଲେଶ୍ୱର ଜିଲ୍ଲାର ମୁଖାପେକ୍ଷୀ । କୌଣସି ଅନୁର୍ବର

ଜିଲ୍ଲା ବର୍ଷକ ଚଳିବା ଭଳି ଖୋରାକ ଘରେ ରଖି ଏତେଗୁଡ଼ାଏ ଜିଲ୍ଲା ପୋଷିପାରେ କି ? ଚୌଧୁରୀ ମହାଶୟ ୫୦।୬୦ ବର୍ଷ ପୂର୍ବେ ଥରେ ବାଲେଶ୍ୱରକୁ ଆସିଥିଲେ, ଲଙ୍କା, ଲକ୍ଷା, ଦକ୍ଷିଣ ପ୍ରଦେଶ ଓ ଅନ୍ୟାନ୍ୟ ଦ୍ୱୀପର ବୋଇତମାନ ଆସି ବୁଢ଼ାବଳଙ୍ଗ ନଈଜଳକୁ କିପରି ଘୋଡ଼ାଇ ପକାଇ ଅଦୃଶ୍ୟ କରି ରଖିଥାନ୍ତି, ଆମ୍ଭେମାନେ ଦେଖିଥାଉ । କୋଡ଼ିଏ ବର୍ଷ ପୂର୍ବେ କୌଣସି ଗୋଟିଏ ବର୍ଷରେ ବାଲେଶ୍ୱର ଛୟାନବେ ଲକ୍ଷ ମହଣ ଚାଉଳ ବାହାର ଲୋକଙ୍କୁ ବିକିଥିବାର ଆମ୍ଭେମାନେ ହିସାବ ଶୁଣିଥିଲୁଁ । ବର୍ତ୍ତମାନ ମଧ୍ୟ ଚୌଧୁରୀ ମହାଶୟ ବାଲେଶ୍ୱର ମାଖବାଟେ ରେଲରେ ଯିବା ସମୟରେ ଷ୍ଟେସନ ଦୁଇପାର୍ଶ୍ୱରେ ପର୍ବତ ପ୍ରମାଣ ଚାଉଳର ବସ୍ତା ଗଦା ଥିବାର ଦେଖି ପାରିବେ । (ଅବଶ୍ୟ ଚାଉଳ ମୌସମ ସମୟରେ )

ଆମ୍ଭେମାନେ ଯେତେଦୂର ଅବଗତ ଅଛୁଁ, ସାହସ କରି କହିପାରୁଁ, ଊଷର ବୋଲି ଗୋଟାଏ ଜିଲ୍ଲାରେ କୌଣସି ସ୍ଥାନରେ ଭୂମି ପଡ଼ିତ ନାହିଁ । ଉତ୍କଳ ଗଡ଼ଜାତ ଭୂମିମାନ କିପରି ଉର୍ବର, କି ପ୍ରକାର ଶସ୍ୟ-ପ୍ରସୂ, ଚୌଧୁରୀ ମହାଶୟ ବାମଣ୍ଡା ଅଞ୍ଚଳରୁ ଅଢ଼େଇ ସେରିଆ ସାଲଗମ ଓ ଦଶସେରିଆ ଫୁଲକୋବି ଅଣାଇ ଦେଖି ପାରନ୍ତି ।

୨ । ଚୌଧୁରୀ ମହାଶୟଙ୍କ ଉକ୍ତି—

‘ଏହାର ଅଧିକାଂଶ ଘୋର ବନାକୀର୍ଣ୍ଣ’ । ଚୌଧୁରୀ ମହାଶୟ ଯେ ଭାବରେ ଏ ବିଷୟ ବୋଲନ୍ତୁ; ମାତ୍ର ଆମ୍ଭମାନଙ୍କ ବିବେଚନାରେ ଏଇଟା ଉତ୍କଳର ପରମ ସୌଭାଗ୍ୟ—ପ୍ରଭୁଙ୍କର ଅପାର କରୁଣା । ବହୁଲକ୍ଷ ଟଙ୍କାର ମହାମୂଲ୍ୟ କାଷ୍ଠ ଏବଂ ବିବିଧ ପ୍ରକାର ମହାମୂଲ୍ୟ ଖଣିଜ ଦ୍ରବ୍ୟ ଏହା ମଧ୍ୟରେ ନିହିତ ରହିଛି । ଦୁର୍ଭାଗ୍ୟ, ନିର୍ବୋଧ ଆମ୍ଭେମାନେ ସେଥିର ଫଳଭୋଗରୁ ବଞ୍ଚିତ ରହିଅଛୁଁ; ଅନ୍ୟ ଲୋକେ ଆମ୍ଭମାନଙ୍କ ଆଖି ଆଗରେ ମୁଣି ପୂରାଇ ଟଙ୍କା ନେଇ ଯାଉଛନ୍ତି । ଅବଶ୍ୟ ମାତୃ ଅଞ୍ଚଳରେ ବନ୍ଧାଧନ ଦିନେ ହେଲେ ସନ୍ତାନମାନଙ୍କ ଉପକାରରେ ଆସିବ ।

ଚୌଧୁରୀ ମହାଶୟ କହନ୍ତି—“ଉପକୂଳ ଭାଗ ସର୍ବଦା ତରଙ୍ଗାୟିତ ଥିବାରୁ ପୋତାଶ୍ରୟ ପକ୍ଷରେ ଏକାବେଳକେ ଅନୁର୍ବର ନୁହେଁ ।”

ଚୌଧୁରୀ ମହାଶୟଙ୍କର ଏହା ନିତାନ୍ତ ଶୋଚନୀୟ ଭ୍ରମ ଅଟେ । ବାଲେଶ୍ୱର, ଧାମରା, ଗୋପାଳପୁର ତିନି-ଗୋଟି ଉପଯୁକ୍ତ ପୋତାଶ୍ରୟ ବିଦ୍ୟମାନତାରେ ସେ କିପରି ଏ ପ୍ରକାର କଥା କହିବାକୁ ସାହସୀ ହେଲେ, ଆମ୍ଭମାନଙ୍କ କ୍ଷୁଦ୍ରଜ୍ଞାନରେ ଅନୁମାନ କରିବା ଅସାଧ୍ୟ ବିଷୟ ଅଟେ । ଉତ୍କଳର ଦକ୍ଷିଣକୁ ସେତୁବନ୍ଧ ପର୍ଯ୍ୟନ୍ତ ଅନୁପାତରେ ଆଉ କେତେଗୋଟି ପୋତାଶ୍ରୟ ବିଦ୍ୟମାନ ଅଛି, ଚୌଧୁରୀ ମହାଶୟ ଗଣନା କରି କହି ପାରିବେ କି ? ଚତୁର୍ଦ୍ଦଶ ଶତାବ୍ଦୀ ଆରମ୍ଭଠାରୁ ଷୋଡ଼ଶ ଶତାବ୍ଦୀ ପର୍ଯ୍ୟନ୍ତ ବାଲେଶ୍ୱର ବନ୍ଦର ଜଗଦ୍ବିଖ୍ୟାତ ଦିନେମାର, ଓଲନ୍ଦାଜ, ଫରାସୀ ଓ ଇଂରେଜମାନଙ୍କର ପ୍ରଧାନ ବାଣିଜ୍ୟ କ୍ଷେତ୍ର ଥିଲା । ସେମାନଙ୍କ ପ୍ରଧାନ କର୍ମଚାରୀମାନଙ୍କ ଗଗନସ୍ପର୍ଶୀ ସମାଧିସ୍ତମ୍ଭମାନ ଦଣ୍ଡାୟମାନ । ପୋତା ପଡ଼ିଥିବା ବଡ଼ ବଡ଼ ଜାହାଜର ଗୋଦର (ପୋତାଶ୍ରୟ) ଚିହ୍ନମାନ ଗତ ବାଣିଜ୍ୟଲକ୍ଷ୍ମୀଙ୍କ ଅବସ୍ଥାନ ସମ୍ବନ୍ଧରେ ସାକ୍ଷ ଦେବାପାଇଁ ବିଦ୍ୟମାନ ରହିଅଛି ।

ଚୌଧୁରୀ କହନ୍ତି—“ଉତ୍କଳ ବହିର୍ବାଣିଜ୍ୟ ଜାଣେ ନାହିଁ ।” ଦିନେ ଲୁହା, ଧାନ, ପଶୁଶୃଙ୍ଗ ସକାଶେ ବିଳାତର ନାନା ଅଞ୍ଚଳର ଲୋକେ ଉତ୍କଳକୁ ଚାହିଁ ବସିଥିଲେ । ଅବଶ୍ୟ “ତେ ହି ନୋ ଦିବସାଗତାଃ ।” ଇଉରୋପୀୟ ବିଦ୍ୟାଧରୀମାନେ ନାଟ୍ୟରଙ୍ଗମଞ୍ଚ ଶୋଭା ସମ୍ପାଦନ ନିମନ୍ତେ ବାଲେଶ୍ୱର ଜାତ ଲୁଗାକୁ ଆଦର-ପୂର୍ବକ ଚାହିଁ ବସୁଥିଲେ । ଆମ୍ଭମାନଙ୍କ ଏହି ପ୍ରଳାପ-

ପ୍ରାସ୍ତୁ ବାକ୍ୟ ଶୁଣି ଚୌଧୁରୀ ମହାଶୟ୍ କଣ କହିବେ, ଆମ୍ଭେମାନେ ଅନୁମାନ କରିବାକୁ ଅକ୍ଷମ । ବାଲେଶ୍ୱର ବୁଢ଼ାବଳଙ୍ଗ ନଦୀ ବଳରାମଗଡ଼ି ମୁହାଣର ( ଡେଲ୍ଟା ) ଝିଭୁଜାକାର ବାଲି ଚଡ଼ାକୁ ଅଙ୍ଗୁଳି ବଢ଼ାଇ କହି ପାରନ୍ତି—ହଁ, ବର୍ତ୍ତମାନ ସ୍ଥାନ ଇଷ୍ଟିମାର, ସ୍ଥାନ ଜାହାଜ ସିନା ଯା ଆସ କରୁଛନ୍ତି, ବଡ ବଡ ଜାହାଜ କପରି ଆସିବ ? ଠିକ୍ ସତ, ଖୁବ୍ ସତ କଥା । ଏହି ବାଲିଗଣିକୁ ଖୋଳି ଦେଉଛି କିଏ ? ଏଣେ ରେଲ କହୁଛି, ପ୍ରୟୋଜନ କଣ ? ଶୁଣିଛୁଁ ଏଥିପାଇଁ ମିଷ୍ଟର ଦାସଙ୍କ ପ୍ରାଣ କାନ୍ଦିଥିଲି—ସେଥିପାଇଁ ପଦେ କଥା କହି କିରଣ ହୋଇଅଛନ୍ତି ।

ଚୌଧୁରୀ—ମୋଗଲ ବା ମହାରାଷ୍ଟ୍ରୀୟ ଶାସନ କାଳରେ ଏହା କୌଣସି ପ୍ରକାର ସ୍ୱାତନ୍ତ୍ର୍ୟ ଲଭ କରି ପାରି ନ ଥିଲି—ଇତ୍ୟାଦି, ଇତ୍ୟାଦି ।

୧୨୦୩ ଖ୍ରୀଷ୍ଟାବ୍ଦରେ ମୁସଲମାନ କର୍ତ୍ତୃକ ବଙ୍ଗ ଅଧିକାରଠାରୁ ପଞ୍ଚଦଶ ଶତାବ୍ଦୀ ପ୍ରଥମ ଭାଗ ପର୍ଯ୍ୟନ୍ତ ମୁସଲମାନ ଅସଂଖ୍ୟ ସୈନ୍ୟ ସହି ପୁନଃ ପୁନଃ ଯୁଦ୍ଧଯାତ୍ରା କରି ମଧ୍ୟ ବାରମ୍ବାର ପରାସ୍ତ ହୋଇଥିଲି—କଥାଟା ଆଜକାଲକା ପିଲମାନଙ୍କ ମୁଖରୁ ମଧ୍ୟ ଶୁଣିବାକୁ ପାଉଁ । ବଙ୍ଗ ବେହାର ମୁସଲମାନ ପଦଦଳିତ ହେବା ସମୟରେ ଉତ୍କଳର ସ୍ୱାଧୀନ ପତାକା ଫର ଫର ହୋଇ ପବନରେ ଉଡ଼ୁଥିଲି । କି ମୁସଲମାନ, କି ମରହଟ୍ଟା ବାହୁବଳରେ କେହି ଉତ୍କଳକୁ ପରାସ୍ତ କରି ପାରି ନାହାଁନ୍ତି । ସ୍ୱାଧୀନ ରାଜାଙ୍କ ବୈରାଗ୍ୟ ଉତ୍କଳର ପତନର କାରଣ ଅଟେ । ତଥାଚ ଅତି ପ୍ରାଚୀନ ବଂଶ ସାମନ୍ତ ରାଜାମାନେ ଅଦ୍ୟାବଧି ଆପଣା ଆପଣା ସିଂହାସନରେ ବିରାଜିତ ଅଛନ୍ତି, ମରହଟ୍ଟା ବା ମୁସଲମାନ କେହି ସେମାନଙ୍କୁ ସିଂହାସନଚ୍ୟୁତ କରିବାକୁ କ୍ଷମ ହୋଇ ନ ଥିଲେ—ସାମାନ୍ୟ ନାମମାତ୍ର କରରେ ସେମାନଙ୍କ ସହିତ ମୈତ୍ରୀ ସ୍ଥାପନ କରିଥିଲେ । ତାହା ମଧ୍ୟ ନବକୋଟି କର୍ଣ୍ଣାଟୋତ୍କଳ ବର୍ଗେଶ୍ୱର ସମ୍ରାଟଙ୍କ ଔଦାସୀନ୍ୟର ଫଳ ଥିଲି । ଭାରତର କୌଣସି ପ୍ରଦେଶରେ ଏତେ ଅଧିକ ସଂଖ୍ୟକ ଅତି ପ୍ରାଚୀନ ସମ୍ମାନିତ ସାମନ୍ତ ରାଜାଙ୍କ ସମାବେଶ ଦେଖିବାକୁ ମିଳିବ କି ?

ଚୌଧୁରୀ—(ଉତ୍କଳର) ଲୋକେ ମୋଟ ଗୁଡ଼ଳ ଖାଇ ମୋଟଲୁଗା ପିନ୍ଧି ଦିନ କାଟୁଥିଲେ । କାଟୁଥିଲେ ? ନାହିଁ, ନାହିଁ, ଆଜି ମଧ୍ୟ କାଟୁଛନ୍ତି । ଦେଶ ରକ୍ଷକ ଶୂନ୍ୟ ! ପଠାଣ ମରହଟ୍ଟା ବାଡ଼ଆ ବାଡ଼େଇରେ ଗ୍ରାମକୁ ଗ୍ରାମ ପଦା—ତାହା ଉପରେ ପୁଣି ପିଣ୍ଡାରୀ—ନାଗା ସନ୍ନ୍ୟାସୀଙ୍କ ଲୁଟତରାଜ, ଆଜିଯାଏ ଉତ୍କଳ ଭଲ କରି ମୁଣ୍ଡ ଟେକି ପାରିଲି ନାହିଁ । ଦୟାମୟ ପ୍ରଭୁ ବ୍ରିଟିଶ ଗବର୍ଣ୍ଣମେଣ୍ଟଙ୍କୁ ନ ପଠାଇଥିଲେ ଏହାର ଦଶା କଣ ହୋଇଥାନ୍ତା, କିଏ କହିପାରେ ? ଉତ୍‌ଥାନ ପତନ ଜଗତର ନିୟମ । ଗ୍ରୀସ ରୋମ ଯାଇଅଛି—ପ୍ରାଚୀନ ମିଶର କାହିଁ ?

"ସଦୁପରେ କ୍ୱ ଗତା ମଥୁରାପୁରୀ
ରଘୂପତେଃ କ୍ୱ ଗତୋତ୍ତର କୋଶଳା ।"

ଚୌଧୁରୀ—ଏହାର ଗୋଟିଏ ସମ୍ପଦ ( ବିରାଟ ପ୍ରକୃତି ) ଦେଖି ବୌଦ୍ଧ ଯତିମାନେ ଏଠାରେ ବାସ କରିଥିଲେ ।

ଚୌଧୁରୀ ମହାଶୟ ପ୍ରତ୍ନତତ୍ତ୍ୱ ଆଡ଼କୁ ଟିକିଏ ଅନାଇ ଚିନ୍ତାକଲେ ସହଜରେ ବୁଝିପାରିବେ, ପ୍ରାକୃତିକ ଶୋଭାମୟ ଧନଧାନ୍ୟ ପୂର୍ଣ୍ଣ ଜନବହୁଳ ସ୍ଥାନ ଭିନ୍ନ ଜୈନ ଯତିଏ ଅନ୍ୟତ୍ର ସଂଘ ସ୍ଥାପନ କରି ନାହାନ୍ତି । ହେଲି, ଏ ସମସ୍ତ ବୌଦ୍ଧ ସଂଘ କୀର୍ତ୍ତି; ମାତ୍ର କିହାଣ ମୁଗୁର କାହାର ? ଏ କଥା ଏତିକିରେ ଥାଉ । ଚୌଧୁରୀଙ୍କ ଅନୁମାନ, ଅଶୋକ ଯୁଗରୁ ଉତ୍କଳ ସାହିତ୍ୟର ସୂତ୍ରପାତ ।

ଚୌଧୁରୀଙ୍କ ଅନୁମାନକୁ ଖୁବ୍ ଗୋଟାଏ ମାରାତ୍ମକ କଥା ବୋଲି ଗ୍ରହଣ କରି ପାରିଲୁ ନାହିଁ । ଏଥିସକାଶେ ଆମ୍ଭେମାନେ ସେପରି କିଛି ଦୁଃଖିତ ନୋହୁଁ । ଚୌଧୁରୀଙ୍କ ଅନୁମାନର ଅସାରତା ପ୍ରମାଣ କରାଇବାକୁ ଗଲେ ଢେର କଥା କହିବାର ଆବଶ୍ୟକ । ମାତ୍ର ସାହିତ୍ୟ ଅନେକ ଲେଖକଙ୍କ ଆଶ୍ରୟ ସ୍ଥଳ । ଆମ୍ଭେମାନେ ଗୁଡ଼ାଏ ଜାଗା ମାଡ଼ିବସିଲେ ଚଳିବ କିଁଆ ? ଏଥିକୁ ଆମ୍ଭେମାନେ ସଂକ୍ଷେପରେ ଏତିକି କହି ରଖୁଅଛୁଁ । ଅଶୋକାଗମନର ଅନେକ ପୂର୍ବେ ଉତ୍କଳ-ସାହିତ୍ୟର ବିଦ୍ୟମାନତା ସ୍ୱୀକାର ଅଯୌକ୍ତିକ ନୁହେ ।

ଚୌଧୁରୀଙ୍କ ଉକ୍ତି—ନାନା କାରଣରୁ ପ୍ରାଚୀନ ଉତ୍କଳସାହିତ୍ୟ ଉର୍ବର ହୋଇ ପାରିନାହିଁ ।

ପ୍ରସଙ୍ଗଟା ଉତ୍ଥାପନ କରିବା ପୂର୍ବେ ଭାରତୀୟ ପ୍ରାଚୀନ ପ୍ରାଦେଶିକ ଅନ୍ୟାନ୍ୟ ଭାଷା ସହିତ ତୁଳନା କରି ଦେଖିଥିଲେ ଭଲ ହୋଇଥାନ୍ତା । ଚୌଧୁରୀ ମହାଶୟ କିଞ୍ଚିତ ପରିଶ୍ରମ ସ୍ୱୀକାର କରି ଅନୁସନ୍ଧାନ କରି ଦେଖିଲେ ସହଜରେ ବୁଝିପାରିବେ । ସହସ୍ରାଧିକ ବର୍ଷପୂର୍ବେ ଲିଖିତ ପୂର୍ଣ୍ଣାଙ୍ଗ ଉତ୍କଳଭାଷା ବିଦ୍ୟମାନ । ସେ ସମୟରେ ପ୍ରକୃତ ହିନ୍ଦିଛଡ଼ା ଅନ୍ୟାନ୍ୟ ପ୍ରାଦେଶିକ ଭାଷା ସୃଷ୍ଟ ମଧ୍ୟ ହୋଇ ନାହିଁ । ଯେ କୌଣସି ଭାଷା ହେଉ, ଅତି ଊଣାରେ ପାଞ୍ଚଶତ ବର୍ଷ ଚର୍ଚ୍ଚା ବିନା ଭାଷା ସୁଗଠିତ ବ୍ୟାକରଣସଙ୍ଗତ ହୋଇ ନ ପାରେ । ଆଠଶତ ବର୍ଷ ପୂର୍ବେ ଲିଖିତ କେଶବକୋଇଲି,ଭୋଳିମନ ପ୍ରଭୃତି ସଙ୍ଗୀତର ଭାଷା ଆକାର ଧାରଣ କରିବା ପୂର୍ବେ ଅନେକ ଶତ ବର୍ଷ ପର୍ଯ୍ୟନ୍ତ ଯେ ଭାଷାର ଚର୍ଚ୍ଚା ହୋଇଥିଲା, ଏହା ନିଃସନ୍ଦେହରେ ବୋଲିଯାଇ ପାରେ ।

ଚୌଧୁରୀ--କେବଳ ଚୈତନ୍ୟଙ୍କ ସମୟରେ (ଏ ଭାଷାର ) ଯତ୍କିଞ୍ଚିତ୍ ଉନ୍ନତି ଘଟିଥିଲା । ଚୌଧୁରୀ ମହାଶୟଙ୍କର ଏହା ସମ୍ପୂର୍ଣ୍ଣ ଭୁଲ୍ । ଉତ୍କଳକୁ ଚୈତନ୍ୟଙ୍କ ଆଗମନ ପୂର୍ବେ ପଞ୍ଚସଖାଙ୍କ ଗୁରୁ ପରବର୍ତ୍ତୀ ଶିଷ୍ୟପରମ୍ପରାଦ୍ୱାରା ସୁମାର୍ଜିତ ଭାଷାରେ ଶତସହସ୍ର ଗ୍ରନ୍ଥ ରଚିତ ହୋଇଥିଲା । ଜଗନ୍ନାଥ ଦାସଙ୍କକୃତ ଭାଗବତ ଚୈତନ୍ୟଙ୍କ ସମବର୍ତ୍ତୀ କାଳର ଲେଖା ସତ୍ୟ; ମାତ୍ର ଅନ୍ୟ ବିଦେଶୀୟ ଭାଷା ଆଦର୍ଶରେ ନୁହେ । ସେ ସମୟକୁ ଉତ୍କଳଭାଷା ସେହିପରି ଆକାର ଧାରଣ କରିଥିଲା । ଏକଥା ଚୌଧୁରୀ ମହାଶୟ ଯଦି ଅସ୍ୱୀକାର କରନ୍ତି, ଦେଖାନ୍ତୁ—କେଉଁ ଭାଷା ଆଦର୍ଶରେ ଲିଖିତ ସେ ଭାଷାର ନମୁନା ଦେଖାନ୍ତୁ ।

ପାଞ୍ଚଶତ ବର୍ଷ ପୂର୍ବେ ଅଧିକାଂଶ ପୁରାଣ ଉତ୍କଳ ପଦ୍ୟାକାରରେ ସରଳଭାଷାରେ ଅନୁବାଦିତ ହୋଇଥିଲା । ତତ୍ପରବର୍ତ୍ତୀ କାଳରେ ଅଷ୍ଟାଦଶ ପୁରାଣ ପଦ୍ୟାକାରରେ ଅନୁବାଦିତ ହୋଇଥିଲା । ଭାରତର କେଉଁ ପ୍ରାଦେଶିକ ଭାଷାରେ ପ୍ରାଚୀନ ସମସ୍ତ ପଦ୍ୟାନୁବାଦ ଅଛି, ଚୌଧୁରୀ ମହାଶୟ ଦେଖାଇ ପାରିବେ କି ? ଚୌଧୁରୀ ମହାଶୟଙ୍କ ମତରେ ପୁରାତନ ଉତ୍କଳଭାଷାରେ କେବଳ ଅନୁବାଦ, ମୌଳିକ ଗ୍ରନ୍ଥ ନାହିଁ । ଅତି ପ୍ରାଚୀନକାଳରେ ମୌଳିକ ଗ୍ରନ୍ଥ ଅର୍ଥ—ନୂତନ ଭାବରେ ବାକ୍ୟ ରଚନା, ପୌରାଣିକ ଦାର୍ଶନିକ ବିଷୟମାନ ନୂତନ ଭାବରେ ପ୍ରକାଶ । ଭାରତର ସମସ୍ତ ପ୍ରାଦେଶିକ ଭାଷାର ଏହି ଅବସ୍ଥା, ଉତ୍କଳରେ ମଧ୍ୟ ତାହା ଘଟିଥିଲା । ଆମ୍ଭମାନଙ୍କ ଉକ୍ତିର ସତ୍ୟତା ପ୍ରମାଣ କରାଇବାର ଉପାୟ ନାହିଁ ।

ପୂର୍ବେ ଚଉପାଢ଼ିମାନଙ୍କରେ, ଭାଗବତଘର-ମାନଙ୍କରେ ଗ୍ରନ୍ଥପାଠ ଓ ସମାଲୋଚନା ହେଉଥିଲା—ଗ୍ରନ୍ଥକର୍ତ୍ତାମାନେ ଉତ୍ସାହିତ ହୋଇ ନୂତନ ନୂତନ ଗ୍ରନ୍ଥ ରଚନା କରିବାରେ ନିଯୁକ୍ତ ଥିଲେ । ରାଷ୍ଟ୍ରବିପ୍ଳବ ସମୟରେ ଲୋକେ ପ୍ରାଣରକ୍ଷା କରିବାରେ ବ୍ୟସ୍ତ, ପୁଣି ଅନ୍ନାଭାବ । ଗ୍ରନ୍ଥ ରକ୍ଷା କରୁଅଛି କିଏ ?

ମୁସଲମାନମାନଙ୍କ ଦ୍ୱାରା ସମସ୍ତ ଭଗବତଘର ବିନଷ୍ଟ ହୋଇ ଯାଇଅଛି, ପୁଣି ସେମାନେ ଇଚ୍ଛାପୂର୍ବକ ସମସ୍ତ ଗ୍ରନ୍ଥ ବିନାଶ କରି ପକାଇ ଅଛନ୍ତି ।

ଚୌଧୁରୀ—ଉତ୍କଳରେ ଲୋକେ କଣ ଏପରି ଗୋଟାଏ ନିର୍ଜୀବ ସାହିତ୍ୟ ନେଇ ଚଳି ପାରିବେ ?

ଉତ୍କଳସାହିତ୍ୟର ସେହିପରି ଜୀବନୀ ଶକ୍ତି ଥିବାରୁ ବହୁ ଶତ ବର୍ଷବ୍ୟାପୀ ଅତ୍ୟାଚାରର ସହି ମଧ୍ୟ ଆଜିଯାଏ ପଡ଼ି ରହିଅଛି । କିଏ ବୋଲେ, ଭାଷାଟା ନିର୍ଜୀବ ? ଚୌଧୁରୀ ମହାଶୟଙ୍କର ଗୋଟାଏ କଥା ସମ୍ପୂର୍ଣ୍ଣରୂପେ ଅନୁମୋଦନୀୟ । କେବଳ ଉତ୍କଳ-ସାହିତ୍ୟ କଥା କଣ ବୋଲୁଛନ୍ତି, ଭାରତୀୟ ସମସ୍ତ ପ୍ରାଦେଶିକ ସାହିତ୍ୟ କେବଳ ଇଂରାଜୀ ସାହିତ୍ୟ ସହାୟତାରେ ଉନ୍ନତିସ୍ରୋତରେ ଧାବିତ ହୋଇଛନ୍ତି । ବିଂଶ ଶତାବ୍ଦୀର ଉନ୍ନତିଯୁଗରେ ଉତ୍କଳସାହିତ୍ୟ କଣ ପଛକୁ ପଡ଼ି ରହିବ ? ପ୍ରକୃତ କଥା ଧରିବାକୁ ଗଲେ ସାହିତ୍ୟର ବର୍ତ୍ତମାନ ଯୁଗର ଆରମ୍ଭକାଳ ପନ୍ଦର କୋଡ଼ିଏ ବର୍ଷରୁ ଅଧିକ ନୁହେ । ତତ୍ପୂର୍ବେ ଶିକ୍ଷିତ ସମ୍ପ୍ରଦାୟଙ୍କ ଦୃଷ୍ଟି ଏହା ପ୍ରତି ତାଦୃଶ ନ ଥିଲା । ସେ ସମୟ, ସେ ଭାବ ଗତ ହୋଇଅଛି । ବର୍ତ୍ତମାନ ଶିକ୍ଷିତ ସମାଜ ମାତୃ-ଭାଷାର ଉନ୍ନତିକାମନାରେ ଲାଗି ପଡ଼ିଛନ୍ତି—ଏଥିରୁ ଏହାର ପ୍ରକୃତ ଉନ୍ନତି ଅବଶ୍ୟମ୍ଭାବୀ ।

ଚୌଧୁରୀ ମହାଶୟଙ୍କର ଲେଖାରେ ଆହୁରି ଢେରଗୁଡ଼ିଏ ପ୍ରତିବାଦର ବିଷୟ ଥିଲେ ମଧ୍ୟ ଆମ୍ଭେମାନେ ଏତିକି ଲେଖି ନିବୃତ୍ତ ହେଲୁଁ ।

( ଉ: ସା: ୧୦ଶ ଭାଗ, ୨ୟ ସଂଖ୍ୟା, ୧୩୨୩ )